# ମହାଭାରତ

## ଦ୍ରୋଣ ପର୍ବ




ଗୋବିନ୍ଦଚନ୍ଦ୍ର ମହାପାତ୍ର

# ମହାଭାରତ

## ଦ୍ରୋଣ ପର୍ବ




ଗୋବିନ୍ଦଚନ୍ଦ୍ର ମହାପାତ୍ର

ପ୍ରକାଶକ—
ଓଡ଼ିଶା ସାହିତ୍ୟ ଏକାଡ଼େମୀ
[redacted]ନେଶ୍ୱର-୧

ମୁଦ୍ରାକର—
ସୁଲେଖା ପ୍ରିଣ୍ଟର୍ସ
କଟକ-୨

ପ୍ରଥମ ମୁଦ୍ରଣ
୧୯୭୫

ମୂଲ୍ୟ—
ସତରଟଙ୍କା ମାତ୍ର

# ଦ୍ରୋଣ ପର୍ବ

## ସୂଚୀ

| ଅଧ୍ୟାୟ | ବିଷୟ | | ପୃଷ୍ଠା |
|---|---|---|---|
| ୫୧ | ଯୁଧିଷ୍ଠିରଙ୍କ ପ୍ରଳାପ | | ୧୭୯ |
| ୫୨ | ଅକମ୍ପନ-ନାରଦ ସମ୍ବାଦ | | ୧୮୧ |
| ୫୩ | ମୃତ୍ୟୁ ଉତ୍ପତ୍ତି | ... | ୧୮୫ |
| ୫୪ | ମୃତ୍ୟୁ-ପ୍ରଜାପତି ସମ୍ବାଦ | ... | ୧୮୭ |
| ୫୫ | ଷୋଡ଼ଶ ରାଜକୀୟ ଉପାଖ୍ୟାନ | ... | ୧୯୨ |
| ୫୬ | ସୁହୋତ୍ରଙ୍କ ଦାମୀପଣ | | ୧୯୬ |
| ୫୭ | ପୌରବ ବୃତ୍ତାନ୍ତ | | ୧୯୮ |
| ୫୮ | ଶିବ ଚରିତ | | ୧୯୯ |
| ୫୯ | ଶ୍ରୀରାମଙ୍କ ଚରିତ | | ୨୦୧ |
| ୬୦ | ଭଗୀରଥ ଚରିତ | ... | ୨୦୩ |
| ୬୧ | ଦିଲୀପଙ୍କ ଉତ୍କର୍ଷ କଥନ | | ୨୦୫ |
| ୬୨ | ମାନ୍ଧାତା ଚରିତ | | ୨୦୬ |
| ୬୩ | ଯଯାତି ଉପାଖ୍ୟାନ | ... | ୨୦୮ |
| ୬୪ | ଅମ୍ବରୀଷ ଚରିତ | ... | ୨୧୦ |
| ୬୫ | ଶଶବିନ୍ଦୁ ଚରିତ | | ୨୧୧ |
| ୬୬ | ଗୟ ଚରିତ | | ୨୧୩ |
| ୬୭ | ରନ୍ତିଦେବ ଉପାଖ୍ୟାନ | | ୨୧୫ |
| ୬୮ | ଭରତ ଚରିତ | | ୨୧୭ |
| ୬୯ | ପୃଥୁ ଚରିତ | | ୨୧୮ |
| ୭୦ | ପରଶୁରାମ ଉପାଖ୍ୟାନ | | ୨୨୧ |
| ୭୧ | ଯୁଧିଷ୍ଠିରଙ୍କୁ ବ୍ୟାସଙ୍କ ଆଶ୍ୱାସନା | | ୨୨୪ |
| ୭୨ | ଅର୍ଜୁନଙ୍କ କୋପ | | ୨୨୬ |
| ୭୩ | ଅର୍ଜୁନଙ୍କ ପ୍ରତିଜ୍ଞା | | ୨୩୪ |
| ୭୪ | ଜୟଦ୍ରଥଙ୍କୁ ଆଶ୍ୱାସନା | | ୨୩୮ |
| ୭୫ | ଶ୍ରୀକୃଷ୍ଣଙ୍କ ବାଣୀ | ... | ୨୪୧ |
| ୭୬ | ଅର୍ଜୁନଙ୍କ ଉକ୍ତି | ... | ୨୪୪ |
| ୭୭ | ସୁଭଦ୍ରାଙ୍କୁ ଆଶ୍ୱାସନା | | ୨୪୭ |

|

# ମହାଭାରତ

## ଦ୍ରୋଣ ପର୍ବ

### ପ୍ରଥମ ଅଧ୍ୟାୟ

ନାରାୟଣ, ନରଶ୍ରେଷ୍ଠ ନର, ଦେବୀ ସରସ୍ୱତୀ ଓ ବ୍ୟାସଙ୍କୁ ନମସ୍କାର କରି ଜୟର ପାଠ କରିବ ।

ଜନମେଜୟ କହିଲେ—ବ୍ରହ୍ମନ୍ ! ଅନୁପମ ସତ୍ତ୍ୱ, ଓଜ ଓ ବଳଯୁକ୍ତ ଭୀଷ୍ମ ପାଞ୍ଚାଳରାଜ ଶିଖଣ୍ଡୀଙ୍କ ଦ୍ୱାରା ନିହତ ହେଲେ । ଏହା ଶୁଣି ରାଜା ଧୃତରାଷ୍ଟ୍ର ଶୋକରେ ବ୍ୟାକୁଳ ହୋଇ କ'ଣ ପ୍ରତୀକାର କଲେ ? ତାଙ୍କ ପୁତ୍ର ଦୁର୍ଯ୍ୟୋଧନ, ଭୀଷ୍ମ, ଦ୍ରୋଣ ପ୍ରମୁଖ ମହାରଥୀଙ୍କ ସାହାଯ୍ୟରେ ପାଣ୍ଡବଙ୍କୁ ପରାଜିତ କରି ତାଙ୍କ ରାଜ୍ୟ ନେବାକୁ ଇଚ୍ଛା ରଖିଥିଲେ । ହେ ତପୋଧନ ! ସମସ୍ତ ଧନୁର୍ଦ୍ଧାରୀଙ୍କ ମଧ୍ୟରେ ଶ୍ରେଷ୍ଠ ଭୀଷ୍ମଙ୍କ ମୃତ୍ୟୁ ହେବାରୁ ସେମାନେ ଯାହା ଚେଷ୍ଟା କରିଥିଲେ, ତାହା ମୋତେ କହନ୍ତୁ । ୪ ।

ବୈଶମ୍ପାୟନ କହିଲେ—ଜନମେଜୟ ! ଜ୍ୟେଷ୍ଠପିତାଙ୍କ ମୃତ୍ୟୁ ଶୁଣି ରାଜା ଧୃତରାଷ୍ଟ୍ର ଚିନ୍ତା ଓ ଶୋକସମୁଦ୍ରରେ ନିମଗ୍ନ ହୋଇ ଉଦ୍‌ବିଗ୍ନ-ଚିତ୍ତରେ ସେହି ଦୁଃଖଦାୟିନୀ ଘଟଣାକୁ ଚିନ୍ତା କରୁଥିବା ସମୟରେ ବିଶୁଦ୍ଧାତ୍ମା ସଞ୍ଜୟ ତାଙ୍କ ପାଖରେ ଉପସ୍ଥିତ ହୋଇଥିଲେ । ରାତିରେ କୁରୁକ୍ଷେତ୍ର ଶିବିରରୁ ହସ୍ତିନାପୁରକୁ ଆସିଥିବା ସଞ୍ଜୟଙ୍କୁ ଦେଖି ଧୃତରାଷ୍ଟ୍ର ସେଠାକାର ସମାଚାର ପଚାରିଲେ । ଭୀଷ୍ମଙ୍କ ମୃତ୍ୟୁ ସମ୍ବାଦ ଶୁଣି ତାଙ୍କ ମନ ଅତ୍ୟନ୍ତ ଉତ୍ସାହଶୂନ୍ୟ ହୋଇ ଯାଇଥିଲା । ସେ ନିଜ ପୁତ୍ରମାନଙ୍କ ବିଜୟ କାମନାରେ ଆତୁର ହୋଇ ବିଳାପ କରୁଥିଲେ । ୮ ।

ଧୃତରାଷ୍ଟ୍ର କହିଲେ—ସଞ୍ଜୟ ! କୌରବମାନେ ଅତ୍ୟନ୍ତ ପରାକ୍ରମୀ ମହାତ୍ମା ଭୀଷ୍ମଙ୍କ ନିମିତ୍ତ ଶୋକ କରି ପୁନଃ କ'ଣ କଲେ ? ସେହି ବୀର ଭୀଷ୍ମଙ୍କ ମୃତ୍ୟୁରେ କୌରବମାନେ ଶୋକସାଗରରେ ବୁଡ଼ି ଯାଇଥିବେ । ତା'ପରେ ସେମାନେ କ'ଣ କଲେ ? ପାଣ୍ଡବଙ୍କ ସେହି ବିଶାଳ-ସେନା ତ୍ରୈଲୋକ୍ୟର ମଧ୍ୟ ଭୟ ଉତ୍ପାଦନ କରିପାରେ । ସେହି ଭୟ ସମୟରେ ଦୁର୍ଯ୍ୟୋଧନ-ସେନାରେ କିଏ ଏପରି ମହାରଥୀ ଥିଲେ, ଯାହାଙ୍କ ଆଶ୍ରୟ ପାଇ ସମରାଙ୍ଗଣରେ କୌରବମାନେ ଭୟଭୀତ ହୋଇ ନ ଥିଲେ ? ଭୀଷ୍ମଙ୍କ ମୃତ୍ୟୁ ପରେ ସମସ୍ତ ରାଜନ୍ୟ-ଗଣ କ'ଣ କଲେ, ତାହା ମୋତେ କହନ୍ତୁ । ୧୩ ।

ସଞ୍ଜୟ କହିଲେ—ରାଜନ୍ ! ଭୀଷ୍ମଙ୍କ ମୃତ୍ୟୁ ପରେ ଆପଣଙ୍କ ପୁତ୍ରମାନେ ଯାହା କଲେ, ତାହା ମୁଁ କହୁଛି, ଏକାଗ୍ରଚିତ୍ତରେ ଶୁଣନ୍ତୁ । ରାଜନ୍ ! ଯେତେବେଳେ ସତ୍ୟପରାକ୍ରମୀ ଭୀଷ୍ମ ମାରିହୋଇଗଲେ, ସେତେବେଳେ ଆପଣଙ୍କ ପୁତ୍ରମାନେ ଓ ପାଣ୍ଡବମାନେ ପୃଥକ୍ ପୃଥକ୍ ଭାବେ ଚିନ୍ତାରେ ନିମଗ୍ନ ହେଲେ । ସେମାନେ କ୍ଷତ୍ରିୟଧର୍ମକୁ ବିଚାର କରି ବିସ୍ମିତ ଓ ପ୍ରସନ୍ନ ହେଲେ । ତଦନନ୍ତର ନିଜର କଠୋର ଧର୍ମକୁ ନିନ୍ଦା କରି ଭୀଷ୍ମ କଲେ ଓ ପରାକ୍ରମୀ ଭୀଷ୍ମଙ୍କ ପାଇଁ ଶରଶଯ୍ୟା ରଚନା କଲେ, ପରସ୍ପର କଥୋପକଥନ କରି ଭୀଷ୍ମଙ୍କ ରକ୍ଷାର ବ୍ୟବସ୍ଥା କରି ଭୀଷ୍ମଙ୍କ ଅନୁମତିରେ ତାଙ୍କୁ ପ୍ରଦକ୍ଷିଣ କରି କାଳପ୍ରେରିତ କ୍ଷତ୍ରିୟଗଣ ପୁଣି ଯୁଦ୍ଧ ପାଇଁ ବାହାରିଲେ ।

ତଦନନ୍ତର ବାଦ୍ୟଶବ୍ଦ ସହିତ ଉଭୟ-ସେନା ଯୁଦ୍ଧରେ ପ୍ରବୃତ୍ତ ହେଲେ । ରାଜେନ୍ଦ୍ର ! ଯେଉଁ ସମୟରେ ଭୀଷ୍ମ ରଥ ଉପରେ ପତିତ ହେଲେ, ସେ ସମୟକୁ ସୂର୍ଯ୍ୟ ଅସ୍ତ ହେଉଥିଲେ । ମହାତ୍ମା ଭୀଷ୍ମ ସେମାନଙ୍କୁ ଯୁଦ୍ଧ ବନ୍ଦ କରିବା ପାଇଁ ପରାମର୍ଶ ଦେଲେ । ତଥାପି ସେମାନେ କ୍ରୋଧର ବଶୀଭୂତ ହୋଇ ଭୀଷ୍ମଙ୍କ କଥନକୁ ଅବଜ୍ଞା କରି ହସ୍ତରେ ଶସ୍ତ୍ରାସ୍ତ୍ର ଧାରଣ କରି ଯୁଦ୍ଧରେ ପ୍ରବୃତ୍ତ ହେଲେ । ୨୨ ।

ଆପଣଙ୍କ ପୁତ୍ରମାନଙ୍କର ଓ ଆପଣଙ୍କର ଅବିବେକରୁ ଭୀଷ୍ମଙ୍କ ବଧ ହୋଇଥିବାରୁ କୌରବମାନେ ମୃତ୍ୟୁର ଅଧୀନ ହୋଇଥିଲେ । ଯେପରି

ହିଂସ୍ର ଜନ୍ତୁପୂର୍ଣ୍ଣ ବନରେ ରକ୍ଷକହୀନ ଛେଳି ଓ ମେଣ୍ଢା ଉଦ୍‌ବିଗ୍ନ ହୁଅନ୍ତି, ସେହିପରି ଆପଣଙ୍କ ପୁତ୍ରଗଣ ଓ ସୈନିକ ଭୀଷ୍ମ-ରହିତ ହୋଇ ମନେ ମନେ ଅତ୍ୟନ୍ତ ଉଦ୍‌ବିଗ୍ନ ହୋଇଥିଲେ । ଭୀଷ୍ମ ଧରାଶାୟୀ ହେବାରୁ କୌରବସେନା ନକ୍ଷତ୍ରହୀନ ଆକାଶ ପରି ଶ୍ରୀହୀନ ହୋଇ, ବାୟୁ ବନ୍ଦ ହେବାରୁ ନାୟକ ବିହୀନ ଅସୁରସେନା ସଦୃଶ ଉଦ୍‌ବିଗ୍ନ ହେଲେ । ଭୀଷ୍ମ ଧରାଶାୟୀ ହୁଅନ୍ତେ କୌରବସେନା ବିଧବା ସୁନ୍ଦରୀ ସଦୃଶ, ଜଳରହିତ ନଦୀ ସଦୃଶ, ଯୂଥପତିହୀନ ମୃଗୀ ସଦୃଶ ଓ ବିଶାଳ କନ୍ଦର ପରି ବିଚଳିତ ଓ ଶ୍ରୀହୀନ ହୋଇଥିଲେ । ୨୮ ।

ବଳବାନ୍ ପାଣ୍ଡବଙ୍କ ଦ୍ୱାରା ଅତ୍ୟନ୍ତ ପୀଡ଼ିତ ହୋଇ ଆପଣଙ୍କ ସେନା ସମୁଦ୍ରରେ ବାତାହତ ଭଗ୍ନ ନୌକାପରି ବିପତ୍ତିରେ ପଡ଼ିଥିଲେ । ସେ ସମୟରେ ଆପଣଙ୍କ ସେନାର ଅଧିକାଂଶ ଘୋଡ଼ା, ହାତୀ, ରଥ ଓ ପଦାତି ମରିଯାଇଥିଲେ । ସେହି ସେନାର ପ୍ରତ୍ୟେକ ସୈନିକ ଭୀଷ୍ମଙ୍କ ଅଭାବରେ ସମ୍ଭବ ପାତାଳରେ ବୁଡ଼ିଯାଉଥିଲେ । ଯେପରି ଗୃହସ୍ଥର ମନ ଅତିଥି ପ୍ରତି ଓ ବିପଦ୍‌ଗ୍ରସ୍ତ ଲୋକର ମନ ମିତ୍ରପ୍ରତି ଆକୃଷ୍ଟ ହୁଏ, ସେହିପରି କୌରବମାନଙ୍କ ମନ ସେ ସମୟରେ ଶସ୍ତ୍ରଧାରୀଙ୍କ ମଧ୍ୟରେ ଶ୍ରେଷ୍ଠ ଓ ଭୀଷ୍ମତୁଲ୍ୟ ପରାକ୍ରମୀ କର୍ଣ୍ଣଙ୍କ ପ୍ରତି ଆକୃଷ୍ଟ ହୋଇଥିଲା; ସମସ୍ତେ କର୍ଣ୍ଣ କର୍ଣ୍ଣ ବୋଲି ଡାକ ପକାଇଲେ । ସେମାନେ କହିବାକୁ ଲାଗିଲେ, ସୂତ-ପୁତ୍ର କର୍ଣ୍ଣ ଆମର ହିତୈଷୀ, ସେ ଆମପାଇଁ ଶରୀରକୁ ମଧ୍ୟ ତ୍ୟାଗ କରି ପାରନ୍ତି । ମନ୍ତ୍ରୀ ଓ ବନ୍ଧୁମାନଙ୍କ ସହିତ ଯଶସ୍ୱୀ କର୍ଣ୍ଣ ଦଶଦିନ ହେଲା ଯୁଦ୍ଧ କରିନାହାନ୍ତି । ତାଙ୍କୁ ଶୀଘ୍ର ଡାକ, ବିଳମ୍ବ କର ନାହିଁ । ୩୪ ।

ରାଜନ୍ ! ଯେତେବେଳେ ବଳ ଓ ପରାକ୍ରମଯୁକ୍ତ ରଥୀମାନଙ୍କର ଗଣନା କରାଯାଉଥିଲା, ସେ ସମୟରେ ସମସ୍ତ କ୍ଷତ୍ରିୟଙ୍କ ସମକ୍ଷରେ ମହାବାହୁ କର୍ଣ୍ଣଙ୍କୁ ଅର୍ଦ୍ଧରଥୀ କହିଥିଲେ ; ଯଦ୍ୟପି ସେ ଦୁଇରଥୀଙ୍କ ସମାନ ରଥୀ ଓ ଅତିରଥୀଙ୍କ ଗଣନାରେ ସେ ଅଗ୍ରଗଣ୍ୟ ଓ ସମ୍ମାନର ପାତ୍ର । ଯୁଦ୍ଧକ୍ଷେତ୍ରରେ ଅସୁର ଓ ଦେବତାମାନଙ୍କ ସହିତ ମଧ୍ୟ ସେ ଯୁଦ୍ଧ କରିପାରନ୍ତି । ରାଜନ୍ ! ତାଙ୍କୁ ଅର୍ଦ୍ଧରଥୀ କହିବାରୁ କ୍ରୋଧବଶତଃ କର୍ଣ୍ଣ ଭୀଷ୍ମଙ୍କୁ କହିଥିଲେ, ଆପଣଙ୍କ ଜୀବିତାବସ୍ଥାରେ ମୁଁ କେବେ ଯୁଦ୍ଧ କରିବି

ନାହିଁ । ଯଦି ଆପଣ ଏହି ମହାଯୁଦ୍ଧରେ ପାଣ୍ଡବଙ୍କୁ ମାରିପାରିବେ, ତେବେ ମୁଁ ଦୁର୍ଯ୍ୟୋଧନଙ୍କ ଅନୁମତି ନେଇ ବନକୁ ଚାଲିଯିବି । ଅଥବା ଯଦି ପାଣ୍ଡବମାନେ ଆପଣଙ୍କୁ ମାରି ସ୍ୱର୍ଗରେ ପଠାଇବେ, ତେବେ ମୁଁ ଏକମାତ୍ର ରଥର ସହାୟତାରେ ସେହି ସମସ୍ତଙ୍କୁ ମାରିବି, ଯାହାଙ୍କୁ ଆପଣ ରଥୀ ବୋଲି ସ୍ୱୀକାର କରୁଛନ୍ତି । ଏପରି କହି ଯଶସ୍ୱୀ କର୍ଣ୍ଣ ଆପଣଙ୍କ ପୁତ୍ରର ସମ୍ମତି ଅନୁସାରେ ଦଶଦିନ ହେଲା ଯୁଦ୍ଧରେ ସମ୍ମିଳିତ ହୋଇ-ନାହାନ୍ତି । ୪୧ ।

ହେ ଭରତ ! ସମରାଙ୍ଗଣରେ ପରାକ୍ରମୀ ଭୀଷ୍ମ ଯୁଧିଷ୍ଠିରଙ୍କର ଅନେକ ଯୋଦ୍ଧାଙ୍କୁ ମାରିଛନ୍ତି । ସେହି ସତ୍ୟପ୍ରତିଜ୍ଞ ଭୀଷ୍ମଙ୍କ ମୃତ୍ୟୁ ପରେ ଆପଣଙ୍କର ପୁତ୍ରଗଣ କର୍ଣ୍ଣଙ୍କୁ ସ୍ମରଣ କଲେ, ଯେପରି ନଦୀ ପାର ହେବାକୁ ଇଚ୍ଛୁକ ଲୋକ ନୌକାକୁ ସ୍ମରଣ କରେ । ସମସ୍ତ ରାଜାଙ୍କ ସହିତ ଆପଣଙ୍କ ପୁତ୍ର ଓ ସୈନିକ ହା କର୍ଣ୍ଣ ! ବୋଲି ବିଳାପ କରି କହିଲେ, ହେ କର୍ଣ୍ଣ ! ତୁମର ପରାକ୍ରମର ଅବସର ଆସିଅଛି । ଯେଉଁ କର୍ଣ୍ଣ ଦୁର୍ଯ୍ୟୋଧନ ପାଇଁ ନିଜର ଶରୀର ମଧ୍ୟ ତ୍ୟାଗ କରିପାରେ, ସେହି କର୍ଣ୍ଣଙ୍କୁ ସମସ୍ତ ସୈନିକ ଡାକିବାକୁ ଲାଗିଲେ ।

ରାଜନ୍ ! ପରଶୁରାମଙ୍କଠାରୁ ଅସ୍ତ୍ରବିଦ୍ୟା ପ୍ରାପ୍ତ ହୋଇଥିବା କର୍ଣ୍ଣଙ୍କ ପରାକ୍ରମ ଦୁର୍ନିବାର୍ଯ୍ୟ । ଏଣୁ ଆମ୍ଭମାନଙ୍କର ମନ କର୍ଣ୍ଣପ୍ରତି ଆକୃଷ୍ଟ ହେଲା, ଯେପରି ବିପଦ୍‌ଗ୍ରସ୍ତ ମନୁଷ୍ୟର ମନ ମିତ୍ର ପ୍ରତି ଆକୃଷ୍ଟ ହୁଏ । ରାଜନ୍ ! ଯେପରି ଭଗବାନ୍ ବିଷ୍ଣୁ ଦେବତାଙ୍କୁ ରକ୍ଷା କରନ୍ତି, ସେହିପରି କର୍ଣ୍ଣ ଆମ୍ଭମାନଙ୍କୁ ବିପତ୍ତିରୁ ଉଦ୍ଧାର କରିବା ପାଇଁ ସମର୍ଥ । ୪୭ ।

ବୈଶମ୍ପାୟନ କହିଲେ—ଜନମେଜୟ ! ଯେତେବେଳେ ସଞ୍ଜୟ ଏହିପ୍ରକାର ବାରମ୍ବାର କର୍ଣ୍ଣର ନାମ ଉଚ୍ଚାରଣ କରୁଥିଲେ, ସେତେବେଳେ ରାଜା ଧୃତରାଷ୍ଟ୍ର ବିଷଧର ସର୍ପ ସମାନ ନିଃଶ୍ୱାସ ନେଇ ଏପରି କହିଲେ—

ଧୃତରାଷ୍ଟ୍ର କହିଲେ—ସଞ୍ଜୟ ! ଯେତେବେଳେ ତୁମ୍ଭମାନଙ୍କର ମନ କର୍ଣ୍ଣପ୍ରତି ଆକୃଷ୍ଟ ହେଲା, ସେତେବେଳେ କ'ଣ କର୍ଣ୍ଣଙ୍କୁ ସେଠାରେ

ଦେଖିଥିଲ ? ଏପରି ସଙ୍କଟରେ ପଡ଼ି ବିଚଳିତ ଓ ଭୟଭୀତ ହୋଇ ନିଜର ରକ୍ଷାକୁ ପ୍ରାର୍ଥନା କରୁଥିବା କୌରବଙ୍କ ପ୍ରାର୍ଥନାକୁ କର୍ଣ୍ଣ ନିଷ୍ଫଳ କରି ନାହାଁନ୍ତି ତ ? ଭୀଷ୍ମଙ୍କ ମୃତ୍ୟୁ ପରେ ଯୁଦ୍ଧସ୍ଥଳରେ କୌରବଙ୍କର ଯେଉଁ ଦୁର୍ବଳତା ଆସିଥିଲା, ତାକୁ ଧନୁର୍ଦ୍ଧାରୀ କର୍ଣ୍ଣ ଦୂର କରିଛନ୍ତି ତ ? ସେହି ଅପୂର୍ଣ୍ଣ ଅଂଶକୁ ପୂର୍ଣ୍ଣକରି କର୍ଣ୍ଣ ଶତ୍ରୁମାନଙ୍କ ମନରେ ଭୟ ଉତ୍ପନ୍ନ କରାଇଥିଲେ ତ ? ଜଗତରେ କର୍ଣ୍ଣଙ୍କୁ ପୁରୁଷସିଂହ କୁହାଯାଏ । ସେହି ରଣଭୂମିରେ ଶୋକାର୍ତ୍ତ ଓ କ୍ରନ୍ଦନ କରୁଥିବା ନିଜର ବନ୍ଧୁଗଣଙ୍କ ରକ୍ଷା ଓ କଲ୍ୟାଣ ପାଇଁ ମୋ ପୁତ୍ରର ବିଜୟାଭିଳାଷକୁ ସଫଳ କଲେ ? । ୪୮ ।

# ଦ୍ୱିତୀୟ ଅଧ୍ୟାୟ

ରାଜନ୍ ! ଭୀଷ୍ମଙ୍କ ମୃତ୍ୟୁ ପରେ କୌରବସେନା ଭୟଭୀତ ହୋଇଛନ୍ତି—ଏହା ଅବଗତ ହୋଇ ଆପଣଙ୍କ ପୁତ୍ରଙ୍କ ସୈନ୍ୟମାନଙ୍କୁ ବିପଦରୁ ଉଦ୍ଧାର କରିବା ନିମିତ୍ତ ଅଧିରଥ ସୂତ-ପୁତ୍ର କର୍ଣ୍ଣ ଖାଇପରି ଆସି ଉପସ୍ଥିତ ହେଲେ । ୧ । ପୁରୁଷଶ୍ରେଷ୍ଠ ଅକ୍ଷୟବ୍ରତ ମହାରଥ ଶାନ୍ତନୁପୁତ୍ର ଭୀଷ୍ମ ହତ ହୋଇ ଅଛନ୍ତି—ଏହା ଶ୍ରବଣ କରି ଧନୁର୍ଦ୍ଧାରିପ୍ରବର ଅରିମର୍ଦ୍ଦନ କର୍ଣ୍ଣ ଦୁର୍ଯୋଧନଙ୍କ ନିକଟରେ ସହସା ଉପସ୍ଥିତ ହେଲେ । ୨ । ରଥିଶ୍ରେଷ୍ଠ ଭୀଷ୍ମ ଶତ୍ରୁମାନଙ୍କ ଦ୍ୱାରା ନିହତ ହୁଅନ୍ତେ ଆପଣଙ୍କ ପୁତ୍ରମାନଙ୍କ ସୈନ୍ୟମାନେ ସାଗର-ନିମଗ୍ନ ନୌକା ସଦୃଶ ହୋଇଥିଲେ ; ପିତା ଯେପରି ପୁତ୍ରମାନଙ୍କୁ ରକ୍ଷା କରନ୍ତି, ସେହିପରି ସେହି ସୈନ୍ୟମାନଙ୍କୁ ଉଦ୍ଧାର କରିବା ନିମନ୍ତେ କର୍ଣ୍ଣ କୁରୁବୃନ୍ଦଙ୍କ ସମୀପରେ ଉପସ୍ଥିତ ହେଲେ । ୩ ।

ସେ ଆସି କହିଲେ, "ଚନ୍ଦ୍ରଙ୍କଠାରେ କଳଙ୍କ ଯେପରି ନିତ୍ୟ ପ୍ରତିଷ୍ଠିତ, ସେହିପରି ଧୃତି, ବୁଦ୍ଧି, ପରାକ୍ରମ, ବଳ, ସତ୍ୟ ଓ ପ୍ରିୟ ବାକ୍ୟ, ଦିବ୍ୟ ଅସ୍ତ୍ର, ନମ୍ରତା ଓ ଲଜ୍ଜାସହିତ ଗୁଣମାନ ଭୀଷ୍ମଙ୍କଠାରେ ସର୍ବଦା ବିଦ୍ୟମାନ ଥିଲା । ତାଙ୍କଠାରେ ଈର୍ଷା ନ ଥିଲା । ସେହି କୃତଜ୍ଞ ଦ୍ୱିଜ-ରକ୍ଷକ ପରବୀର-ହନ୍ତା ଭୀଷ୍ମ ହତ ହୋଇ ଥିବାରୁ ଆମ୍ଭେ ସମସ୍ତ ବୀରମାନଙ୍କୁ ମୃତ ବୋଲି ମନେ କରୁଅଛୁଁ । ୫ ।

ଇହଲୋକରେ କର୍ମର ପରିପାକ ହେଉଥିବାରୁ ଅର୍ଥାତ୍ କର୍ମର ଫଳ ଭୋଗ କରିବାକୁ ହୁଅଇ ବୋଲି କୌଣସି ପଦାର୍ଥ ନିତ୍ୟ ନୁହେଁ ଅର୍ଥାତ୍ ସମସ୍ତ ପଦାର୍ଥ ପରିଣାମୀ । ଯେତେବେଳେ ମହାବ୍ରତ ଭୀଷ୍ମ ନିହତ ହୋଇ ଅଛନ୍ତି, ତେତେବେଳେ ଆମ୍ଭେମାନେ ଯେ ଆଗାମୀ ସୂର୍ଯ୍ୟୋଦୟ ପର୍ଯ୍ୟନ୍ତ ଜୀବିତ ରହିବୁଁ, ତହିଁର ଆଶା ଅବା କପରି କରିବୁଁ ? ୭ । ବସୁ-ପ୍ରଭାବ, ବସୁ-ବୀର୍ଯ୍ୟ, ପୃଥିବୀପତି ଭୀଷ୍ମ ଯେତେବେଳେ ବସୁ-ଲୋକକୁ ଗମନ କରି ଅଛନ୍ତି, ତୁମ୍ଭେମାନେ ଅର୍ଥ, ପୁତ୍ର, ପୃଥିବୀ, କୁରୁସମୂହ ଓ ଏହି ସୈନ୍ୟବୃନ୍ଦ —ଏ ସମସ୍ତଙ୍କ ନିମିତ୍ତ ଶୋକ କର । ୮ ।

ସଞ୍ଜୟ କହିଲେ—ମହାତେଜସ୍ୱୀ ବରଦାନକର୍ତ୍ତା ଅସୀମ-ବଳଶାଳୀ ଶାନ୍ତନୁକୁମାର ଭୀଷ୍ମ ନିହତ ହେବାରୁ ଓ କୁରୁସୈନ୍ୟମାନେ ପରାଜିତ ହେବାରୁ କର୍ଣ୍ଣ ପୂର୍ବୋକ୍ତ କଥା କହୁଁ କହୁଁ ଅତ୍ୟନ୍ତ ଦୁଃଖିତ ହେଲେ ଓ ତାହାଙ୍କ ଚକ୍ଷୁରୁ ଅଶ୍ରୁପାତ ହେଲା । ହେ ରାଜନ୍ ! କର୍ଣ୍ଣଙ୍କର ଈଦୃଶ ବଚନ ଶ୍ରବଣ କରି ଆପଣଙ୍କର ପୁତ୍ରମାନେ ଓ ସୈନିକବୃନ୍ଦ ଉଚ୍ଚସ୍ୱରରେ କ୍ରନ୍ଦନ କଲେ ଓ ସେମାନଙ୍କ ଚକ୍ଷୁରୁ ଅଶ୍ରୁ ବର୍ଷଣ ହେଲା । ୯ । ଅନନ୍ତର ପୁନର୍ବାର ମହାଯୁଦ୍ଧ ଆରମ୍ଭ ହେବାରୁ ସୈନ୍ୟମାନେ ଆପଣା ଆପଣା ସୈନ୍ୟମାନଙ୍କୁ ଉତ୍ତମରୂପେ ସଜିତ କଲେ । ଏହା ଦେଖି ସର୍ବ-ମହାରଥ-ଶ୍ରେଷ୍ଠ କର୍ଣ୍ଣ ରଥିଶ୍ରେଷ୍ଠମାନଙ୍କୁ ପୁନର୍ବାର ଏହି ହର୍ଷ-ପ୍ରଦ ବାକ୍ୟ କହିଲେ । ୧୦ ।

ଏହି ଜଗତ୍ ସର୍ବଦା ଗତିଶୀଳ ଓ କ୍ଷଣ-ସ୍ଥାୟୀ, ଏହି ବିଷୟ ଚିନ୍ତା କରି ଆମ୍ଭେ ସମସ୍ତ ଅସ୍ଥିର ଦେଖୁଅଛୁଁ ! କିନ୍ତୁ ଆପଣମାନେ ଥାଉଁ ଥାଉଁ ଗିରି ସଦୃଶ କୁରୁଶ୍ରେଷ୍ଠ ଭୀଷ୍ମ ଯୁଦ୍ଧରେ କପରି ନିହତ ହେଲେ ? ୧୧ । ମହାରଥ ଶାନ୍ତନୁ-ନନ୍ଦନ ଭୀଷ୍ମ ପୃଥିବୀତଳସ୍ଥିତ ସୂର୍ଯ୍ୟ-ସଦୃଶ ଥିଲେ । ସେ ନିହତ ହୋଇଥିବାରୁ ଯେପରି ବୃକ୍ଷ ପର୍ବତ-ଉତ୍ପାଟନ-କାରୀ ବାୟୁକୁ ସହି ପାରନ୍ତି ନାହିଁ, ସେହିପରି ନରପତିମାନେ ଧନଞ୍ଜୟର ପରାକ୍ରମକୁ ସହନ କରିବାକୁ ଅକ୍ଷମ ହୋଇ ଅଛନ୍ତି । ୧୨ । ଯେପରି ଯୁଦ୍ଧରେ କୁରୁସୈନ୍ୟମାନଙ୍କୁ ମହାତ୍ମା ଭୀଷ୍ମ ରକ୍ଷା କରି ଆସୁଥିଲେ, ସେହିପରି ଯୁଦ୍ଧସ୍ଥଳରେ ଶତ୍ରୁପୀଡ଼ିତ ଏହି କୌରବ ସେନାଙ୍କୁ ମୋତେ ରକ୍ଷା କରିବାକୁ ପଡ଼ିବ । ୧୩ ।

ଏହି ଦାୟିତ୍ୱ ମୁଁ ଆପଣା ଉପରେ ନେଲି । ମୁଁ ଜାଣୁଛି, ସଂସାର ଅନିତ୍ୟ, ଯୁଦ୍ଧକୁଶଳ ଭୀଷ୍ମ ମଧ୍ୟ ଯୁଦ୍ଧରେ ମଲେ, ତେଣୁ ଏପରି ସମୟରେ ମୁଁ ଆଉ ଭୟ କାହାକୁ କରିବି ? ୧୪ ।

ମୁଁ ସେହି ବୀର ପାଣ୍ଡବମାନଙ୍କୁ ନିଜ ବାଣଦ୍ୱାରା ଯମସଦନକୁ ପଠାଇ ରଣକ୍ଷେତ୍ରରେ ବିଚରଣ କରିବି ଓ ସଂସାରରେ ଉତ୍ତମ ଯଶର ଅଧିକାରୀ ହେବି ଅଥବା ଶତ୍ରୁଙ୍କ ହସ୍ତରେ ମୃତ୍ୟୁବରଣ କରି ସର୍ବଦା ପାଇଁ ଏଠାରେ ଶୋଇ ରହିବି । ୧୫ ।

ଯୁଧିଷ୍ଠିର ଧୈର୍ଯ୍ୟ, ବୁଦ୍ଧି, ସତ୍ୟ ଓ ସତ୍ତ୍ୱଗୁଣଯୁକ୍ତ, ଭୀମସେନର ପରାକ୍ରମ ମଧ୍ୟ ଅୟୁତ ହସ୍ତିତୁଲ୍ୟ, ଅର୍ଜୁନ ମଧ୍ୟ ଦେବରାଜ ଇନ୍ଦ୍ରଙ୍କ ପୁତ୍ର ଓ ତରୁଣ, ଏଣୁ ପାଣ୍ଡବଙ୍କ ସେନାକୁ ଦେବତାମାନେ ମଧ୍ୟ ସୁଗମରେ ଜୟ କରିପାରିବେ ନାହିଁ । ୧୬ । ଯେଉଁ ରଣଭୂମିରେ ଯମରାଜ ତୁଲ୍ୟ ନକୁଳ ଓ ସହଦେବ, ସାତ୍ୟକି ଓ ଭଗବାନ୍ ଶ୍ରୀକୃଷ୍ଣ ଛିଦ୍ୟମାନ, ସେହି ସେନାକୁ ଜୟ କରିବା ସହଜ ନୁହେଁ । ମନସ୍ୱୀ ପୁରୁଷ ତପକୁ ତପଦ୍ୱାରା ଓ ପ୍ରଚଣ୍ଡ ବଳକୁ ବଳଦ୍ୱାରା ନିବାରଣ କରନ୍ତି । ଏହା ଭାବି ମୋ ମନ ମଧ୍ୟ ଶତ୍ରୁମାନଙ୍କୁ ରୋକିବାପାଇଁ ଦୃଢ଼ ନିଶ୍ଚୟ କରିଅଛି ତଥା ନିଜର ରକ୍ଷାପାଇଁ ପର୍ବତ ସଦୃଶ ଅବିଚଳିତ ଭାବରେ ସ୍ଥିତ । ୧୮ ।

କର୍ଣ୍ଣ ନିଜ ସାରଥିକୁ କହିଲେ, ସୂତ ! ମୁଁ ଆଜି ଯୁଦ୍ଧକୁ ଯାଇ ଏହି ଶତ୍ରୁମାନଙ୍କର ପ୍ରଭାବକୁ ନଷ୍ଟ କରି ତାଙ୍କୁ ଜୟ କରିବି । ମୋ ମିତ୍ର ସହିତ କେହି ଦ୍ରୋହ କରିବ, ଏହା ମୋର ସହ୍ୟ ନୁହେ । ବିପତ୍ତି ସମୟରେ ଯେ ସହାୟତା କରେ, ସେହି ହିଁ ମିତ୍ର । ସତ୍ ପୁରୁଷଙ୍କର କର୍ତ୍ତବ୍ୟସ୍ୱରୂପ ଏହି ଶ୍ରେଷ୍ଠ କର୍ମକୁ ମୁଁ ସମ୍ପୂର୍ଣ୍ଣ କରିବି, ଅଥବା ନିଜର ପ୍ରାଣ ପରିତ୍ୟାଗ କରି ଭୀଷ୍ମଙ୍କ ପଥ ଅନୁସରଣ କରିବି । ମୁଁ ସଂଗ୍ରାମ ଭୂମିରେ ସମସ୍ତ ଶତ୍ରୁ ସଂହାର କରି ପାରିବି ଅଥବା ତାଙ୍କ ହାତରେ ମରି ବୀରଲୋକକୁ ଗମନ କରିବି ।

ସୂତ ! ଦୁର୍ଯୋଧନର ପୁରୁଷାର୍ଥ ନଷ୍ଟ ହୋଇଅଛି । ତାଙ୍କର ସ୍ତ୍ରୀ ଓ ପିଲାମାନେ କାନ୍ଦି କାନ୍ଦି ହାହା ହାହା ଡାକ ଛାଡ଼ୁଛନ୍ତି । ଏହି ଅବସରରେ

ମୋର କର୍ତ୍ତବ୍ୟ କ'ଣ, ମୁଁ ଜାଣେ, ତେଣୁ ମୁଁ ଆଜ ଦୁର୍ଯ୍ୟୋଧନର ଶତ୍ରୁଙ୍କୁ ଅବଶ୍ୟ ଜୟ କରିବି । କୌରବରକ୍ଷା ଓ ପାଣ୍ଡବଙ୍କ ବଧ ଇଚ୍ଛାରେ ପ୍ରାଣର ଭୟ ନ ରଖି ଏହି ଯୁଦ୍ଧରେ ସମସ୍ତ ଶତ୍ରୁ ସଂହାର କରି ପକାଇବି ଓ ଦୁର୍ଯ୍ୟୋଧନଙ୍କୁ ସମସ୍ତ ରାଜ୍ୟ ଅର୍ପଣ କରିଦେବି । ତୁମେ ମୋ ଶରୀରରେ ବିଚିତ୍ର ସ୍ୱର୍ଣ୍ଣମୟ କବଚକୁ ବାନ୍ଧି ଦିଅ ଓ ମସ୍ତକରେ ସୂର୍ଯ୍ୟ ସଦୃଶ ତେଜସ୍ୱୀ ଶିରସ୍ତ୍ରାଣକୁ ରଖିଦିଅ । ଅଗ୍ନି, ବିଷ ଓ ସର୍ପ ସଦୃଶ ଭୟଙ୍କର ବାଣ ଓ ଧନୁକୁ ନେଇ ଆସ । ମୋର ସେବକ ବାଣପୂର୍ଣ୍ଣ ଷୋହଳ ଗୋଟି ତୂଣୀରକୁ ରଖିଦିଅ । ଅନେକ ଖଡ୍‌ଗ, ଶକ୍ତି, ଗଦା ଓ ଶଙ୍ଖକ ଆଣି ରଖ । ହାତୀକୁ ବାନ୍ଧିବା ପାଇଁ ପ୍ରସ୍ତୁତ ଏହି ବିଚିତ୍ର ସ୍ୱର୍ଣ୍ଣିଳ ଦଉଡ଼ିକୁ ଓ କମଳଚିହ୍ନଯୁକ୍ତ ଧ୍ୱଜକୁ ଆଣ । ଏତଦ୍‌ବ୍ୟତୀତ, ମାଙ୍ଗଳିକ, ମାଳା ଓ ଲଜା ଆଦି ପ୍ରସ୍ତୁତ କର । ୨୫ ।

ହେ ସୂତପୁତ୍ର ! ତୁମ୍ଭେ ଶୀଘ୍ର ମୋ ପାଇଁ ଶୀଘ୍ରଗାମୀ ମନ୍ତ୍ରପୂତ ଜଳରେ ସ୍ନାତ ହୃଷ୍ଟପୁଷ୍ଟ ଓ ଆଭୂଷଣଯୁକ୍ତ ଘୋଡ଼ାଙ୍କୁ ନେଇ ଆସ । ତୁମେ ସେହି ଘୋଟକଯୁକ୍ତ ରଥକୁ ଶୀଘ୍ର ଆଣ, ଯେଉଁ ରଥ ସୂର୍ଯ୍ୟ ଓ ଚନ୍ଦ୍ର ସଦୃଶ ପ୍ରକାଶିତ ହେଉଥିବ ଓ ଯୁଦ୍ଧୋପଯୋଗୀ ସାମଗ୍ରୀ ଦ୍ୱାରା ପୂର୍ଣ୍ଣଥିବ । ଧନୁଶର, ପ୍ରତ୍ୟଞ୍ଚା, କବଚ ଆଦି ସାମଗ୍ରୀ ନେଇ ଶୀଘ୍ର ପ୍ରସ୍ତୁତ ହୁଅ । ରଣଯାତ୍ରାର ଆବଶ୍ୟକ ସାମଗ୍ରୀ ଆଣି ମୋ ଗଳାରେ ମାଳା ଦେଇ ବିଜୟଯାତ୍ରା ପାଇଁ ଶୀଘ୍ର ଦୁନ୍ଦୁଭି ବଜାଅ ।

ସୂତ ! ଏହି ସବୁ କାର୍ଯ୍ୟ ଶୀଘ୍ର ସମ୍ପୂର୍ଣ୍ଣ କରି ଯେଉଁଠାରେ ଅର୍ଜୁନ, ଭୀମସେନ, ଯୁଧିଷ୍ଠିର ସ୍ଥିତ, ସେହିଠାକୁ ଚାଲ । ସେହି ଯୁଦ୍ଧ-ସ୍ଥଳରେ ମୁଁ ତାଙ୍କୁ ମାରିବି ବା ନିଜେ ମରିବି । ଯେଉଁ ସେନାରେ ଯୁଧିଷ୍ଠିର, ଭୀମସେନ, ଅର୍ଜୁନ, ବାସୁଦେବ ଓ ସାତ୍ୟକି ଉପସ୍ଥିତ, ସେହି ସେନାକୁ ମୁଁ ରାଜାମାନଙ୍କ ଦ୍ୱାରା ଅଜେୟ ମନେ କରେ, ତଥାପି ମୁଁ ସମରଭୂମିରେ ସାବଧାନ ହୋଇ ଯୁଦ୍ଧ କରିବି ଓ ମୃତ୍ୟୁ ମଧ୍ୟ ଅର୍ଜୁନଙ୍କୁ ରକ୍ଷା କଲେ ମୁଁ ତାଙ୍କ ସମକ୍ଷରେ ଅର୍ଜୁନଙ୍କୁ ସଂହାର କରିବି ଅଥବା ସ୍ୱୟଂ ଭୀଷ୍ମଙ୍କ ମାର୍ଗ ଅନୁସରଣ କରିବି । ଏପରି ହୋଇ ନ ପାରେ ଯେ, ମୁଁ ସେହି ବଳବାନ୍‌ଙ୍କ ସମ୍ମୁଖକୁ ନ ଯିବି । ଏଣୁ ଏତିକି କହୁଛି,

ଯେଉଁମାନେ ମିତ୍ରଦ୍ରୋହୀ ଓ ଯେଉଁମାନଙ୍କ ମନ ପାପପୂର୍ଣ୍ଣ, ସେମାନେ ମୋ ସଙ୍ଗରେ ନ ଯାଆନ୍ତୁ ! ୩୩ ।

ସଞ୍ଜୟ କହିଲେ—ରାଜନ୍ ! କର୍ଣ୍ଣ ଏହିପରି ବଚନ କହି ବେଗ-ଗାମୀ ରଥ ଉପରେ ଆରୋହଣ କରି ଯୁଦ୍ଧ-ବିଜୟ ଅଭିଳାଷରେ ବାହାରି ପଡ଼ିଲେ । ସେ ସମୟରେ କର୍ଣ୍ଣ ଯୁଦ୍ଧର ସେହି ସ୍ଥାନକୁ ଗଲେ, ଯେଉଁଠାରେ ଭୀଷ୍ମଙ୍କର ଦେହାବସାନ ହୋଇଥିଲା । ମଣିମୁକ୍ତାଦି ଅଳଂକୃତ ରଥଦ୍ୱାରା ତେଜସ୍ୱୀ କର୍ଣ୍ଣ ବିଶାଳ ସେନା ନେଇ ଯୁଦ୍ଧଭୂମିରେ ପହଞ୍ଚିଲେ । ସେତେ-ବେଳେ ଅଗ୍ନି ସଦୃଶ ତେଜସ୍ୱୀ ରଥ-ଆରୂଢ଼ କର୍ଣ୍ଣ ବିମାନରେ ଉପବିଷ୍ଟ ଇନ୍ଦ୍ରଙ୍କ ତୁଲ୍ୟ ସୁଶୋଭିତ ହେଉଥିଲେ । ୩୭ ।



# ତୃତୀୟ ଅଧ୍ୟାୟ

ସଞ୍ଜୟ କହିଲେ—ଅମିତତେଜସ୍ୱୀ ମହାତ୍ମା ଭୀଷ୍ମ ବାଣଶଯ୍ୟା ଉପରେ ଶୋଇଥିଲେ । ସେ ସମୟରେ ପ୍ରଳୟକାଳୀନ ମହାବାୟୁ ଦ୍ୱାରା ଶୁଷ୍କ ସମୁଦ୍ର ସଦୃଶ ଜଣା ପଡ଼ୁଥିଲେ । ସମସ୍ତ କ୍ଷତ୍ରିୟଙ୍କୁ ଧ୍ୱଂସ କରିବାରେ ସମର୍ଥ ପିତାମହ ଭୀଷ୍ମଙ୍କୁ ସବ୍ୟସାଚୀ ଦ୍ୱାରା ନିହତ ଦେଖି ଆପଣଙ୍କ ପୁତ୍ରଗଣଙ୍କର ବିଜୟାଶା ଭଗ୍ନ ହୋଇଥିଲା । ତାଙ୍କର ନିଜ କଲ୍ୟାଣର ଆଶା ନ ଥିଲା । ଭୀଷ୍ମ ଯମୁନାର ଜଳପ୍ରବାହ ସଦୃଶ ବାଣସମୂହ-ଦ୍ୱାରା ବ୍ୟାପ୍ତ ହୋଇ ଏପରି ଜଣା ଯାଉଥିଲେ, ଯେପରି ମୈନାକ ପର୍ବତକୁ ମହେନ୍ଦ୍ର ତଳକୁ ଖସାଇ ଦେଇଛନ୍ତି । ସେହି ଯୁଦ୍ଧସ୍ଥାନରେ ଭୀଷ୍ମଙ୍କୁ ଏପରି ଅବସ୍ଥାରେ ଦେଖି ମହାତେଜସ୍ୱୀ କର୍ଣ୍ଣ ରଥରୁ ଅବତରଣ କରି ଅଭିବାଦନ-ପୂର୍ବକ ଗଦ୍‌ଗଦ ସ୍ୱରରେ କହିଲେ । ୯ ।

ଭାରତ ! ମୁଁ କର୍ଣ୍ଣ, ଆପଣ ମଙ୍ଗଳମୟ ବଚନ ଦ୍ୱାରା ମୋତେ କିଛି କହନ୍ତୁ ଓ ମୋ ଉପରେ କଲ୍ୟାଣ ଦୃଷ୍ଟି ନିକ୍ଷେପ କରନ୍ତୁ । ଏହି ଲୋକରେ କେହି ନିଜ ପୁଣ୍ୟ କର୍ମର ଫଳ ଉପଭୋଗ କରେ ନାହିଁ । କାରଣ,

ବୃଦ୍ଧାବସ୍ଥା ପର୍ଯ୍ୟନ୍ତ ଆପଣ ଧର୍ମରେ ରତ ଥିଲେ; ତଥାପି ଆପଣଙ୍କର ଏ ଅବସ୍ଥା । କୁରୁଶ୍ରେଷ୍ଠ ! କୋଣ ସଂଗ୍ରହ, ମନ୍ତ୍ରଣା, ବ୍ୟୂହ-ରଚନା ଓ ଅସ୍ତ୍ର ଶସ୍ତ୍ରର ଚାଳନା ବିଷୟରେ କୌରବବଂଶରେ ଆପଣଙ୍କ ସଦୃଶ କେହି ନାହାନ୍ତି । ଆଜଠାରୁ ଯୁଦ୍ଧ ପାଣ୍ଡବ କୌରବମାନଙ୍କୁ ସେହିପରି ବିନାଶ କରିବେ, ଯେପରି ବ୍ୟାଘ୍ର ହରିଣ ମାନଙ୍କୁ କରେ । ବର୍ତ୍ତମାନ ସବ୍ୟସାଚୀ ଅର୍ଜୁନଙ୍କ ଠାରୁ କୌରବମାନେ ଏପରି ଭୟଭୀତ ହେବେ, ଯେପରି ବଜ୍ରଧାରୀ ଇନ୍ଦ୍ରଙ୍କ ଠାରୁ ଅସୁର ଭୟଭୀତ ହୁଅନ୍ତି । ଆଜ ଗାଣ୍ଡୀବ ଧନୁ ବିନର୍ଗତ ବାଣ କୌରବମାନଙ୍କୁ ଭୟଭୀତ କରିବ । ପ୍ରଜ୍ଜ୍ୱଳିତ ବହ୍ନି-ଶିଖା ପରି ବର୍ତ୍ତମାନ ଅର୍ଜୁନର ବାଣ କୌରବମାନଙ୍କୁ ଭସ୍ମ କରିବ । ପ୍ରଜ୍ଜ୍ୱଳିତ ଅଗ୍ନି ସଦୃଶ ଅର୍ଜୁନ ଓ ବାୟୁ ସଦୃଶ ଶ୍ରୀକୃଷ୍ଣ-ଏଥିରେ ସଂଶୟ ନାହିଁ ।

ଶଙ୍ଖ ଓ ଗାଣ୍ଡୀବ ଧନୁର ସ୍ୱନ ଶ୍ରବଣ କରି ସମସ୍ତ କୁରୁସୈନ୍ୟ ଭୟପ୍ରାପ୍ତ ହେବେ । ଯଦି ଶତ୍ରୁସୂଦନ ଅର୍ଜୁନଙ୍କ ଉଡ଼ୁଥିବା ରଥର ଭୟଙ୍କର ସ୍ୱନ ଉତ୍ଥିତ ହୁଏ, ତାହାକୁ ଆପଣଙ୍କ ବ୍ୟତୀତ ଅନ୍ୟ କୌଣସି କ୍ଷତ୍ରିୟ ସହି ପାରିବ ନାହିଁ । ମନୀଷୀ ବ୍ୟକ୍ତିମାନେ ଯେଉଁ ଅର୍ଜୁନଙ୍କର ଦିବ୍ୟ କର୍ମ-ମାନଙ୍କୁ ପ୍ରଶଂସା କରନ୍ତି, ସେହି ଅର୍ଜୁନଙ୍କ ସହିତ ଆପଣଙ୍କ ବ୍ୟତୀତ ଅନ୍ୟ କେଉଁ ରାଜା ଯୁଦ୍ଧ କରିବାକୁ ସମର୍ଥ ହେବ ?

ମହାତ୍ମା ତ୍ର୍ୟମ୍ବକ ମହେଶ୍ୱର ସହିତ ଓ ନିବାତକବଚ ଅସୁରମାନଙ୍କ ସହିତ ଅର୍ଜୁନଙ୍କର ଯୁଦ୍ଧ ହୋଇଥିଲା । ସେହି ତ୍ର୍ୟମ୍ବକଙ୍କ ଠାରୁ ଅର୍ଜୁନ ଦୁର୍ଲ୍ଲଭ ବର ପ୍ରାପ୍ତ ହୋଇଅଛନ୍ତି । ଦେବଦାନବପୂଜିତ କ୍ଷତ୍ରିୟାନ୍ତକ ଭୀଷଣ ପରଶୁରାମଙ୍କୁ ଆପଣ ଯୁଦ୍ଧରେ ପରାଜିତ କରିଥିଲେ । ଆପଣ ଏପରି ବଳଶାଳୀ ହୋଇ ମଧ୍ୟ ଯେଉଁ ପାଣ୍ଡୁପୁତ୍ର ଅର୍ଜୁନଙ୍କୁ ପୂର୍ବରୁ ଜୟ କରି ପାରିନାହାନ୍ତି, ତାହାଙ୍କ ସହିତ ଆଉ କିଏ ଯୁଦ୍ଧ କରି ପାରିବ ? । ୨୪ । ଆପଣ ଯଦି ଆମ୍ଭଙ୍କୁ ଅନୁମତି ଦିଅନ୍ତି, ତେବେ ଆମ୍ଭେ ଆଜ ସେହି ଉଗ୍ର ଦୃଷ୍ଟିହିର ଆଶୀବିଷ ସଦୃଶ ରଣଦକ୍ଷ ଶୂର ପାଣ୍ଡବଙ୍କୁ ଅସ୍ତ୍ର ବଳରେ ବିନାଶ କରିବୁଁ । ୨୫ ।

# ଚତୁର୍ଥ ଅଧ୍ୟାୟ

ସଞ୍ଜୟ କହିଲେ :— କର୍ଣ୍ଣ ଏହିପରି ପୁନଃ ପୁନଃ କହିବାରୁ ସେ ସମସ୍ତ ଶ୍ରବଣ କରି କୁରୁବୃଦ୍ଧ ପିତାମହ ଭୀଷ୍ମ ପ୍ରୀତମାନସରେ ଦେଶ-କାଳୋଚିତ ଏହି ବାକ୍ୟମାନ କହିଲେ—ସମୁଦ୍ର ଯେପରି ନଦୀବୃନ୍ଦର, ଭାସ୍କର ଯେପରି ଜ୍ୟୋତିର୍ଗଣର ଓ ସାଧୁମାନେ ଯେପରି ସତ୍ୟର ଆଶ୍ରୟ ଓ ଉର୍ବରା ଜମି ଯେପରି ବୀଜମାନଙ୍କର ଓ ପର୍ଜ୍ଜନ୍ୟ ଯେପରି ସ୍ଥାବର, ଜଙ୍ଗମର ଆଶ୍ରୟ ସ୍ଥଳ, ସେହିପରି ତୁମ୍ଭେ ସୁହୃଦ୍‌ମାନଙ୍କର ଆଶ୍ରୟ ହୁଅ । ଦେବବୃନ୍ଦ ଯେପରି ଇନ୍ଦ୍ରଙ୍କର ଅନୁଜୀବୀ ହୁଅନ୍ତି, ତୁମ୍ଭର ବାନ୍ଧବମାନେ ସେହିପରି ତୁମ୍ଭର ଅନୁଜୀବୀ ହୁଅନ୍ତୁ । ୩ । ତୁମ୍ଭେ ଶତ୍ରୁମାନଙ୍କର ମାନ ହରଣ କରି, ମିତ୍ରମାନଙ୍କର ଆନନ୍ଦକୁ ବୃଦ୍ଧି କରି, ବିଷ୍ଣୁ ଯେପରି ଦେବତାମାନଙ୍କର ଗତି, ତୁମ୍ଭେ ସେହିପରି କୁରୁମାନଙ୍କର ଗତି ହୁଅ । ହେ କର୍ଣ୍ଣ ! ତୁମ୍ଭେ ଦୁର୍ଯ୍ୟୋଧନଙ୍କର ପ୍ରିୟ କାର୍ଯ୍ୟ କରିବାକୁ ଇଚ୍ଛା କରି ରାଜପୁରକୁ ଯାଇ କାମ୍ବୋଜମାନଙ୍କୁ ଜୟ କରିଅଛ ଓ ଗିରିବ୍ରଜର ନଗ୍ନଜିତ୍ ପ୍ରଭୃତି-ମାନଙ୍କୁ ଓ ବିଦେହ, ଗାନ୍ଧାର ଓ ଅମ୍ବଷ୍ଠମାନଙ୍କୁ ମଧ୍ୟ ନିଜ ବାହୁବଳ ଦ୍ୱାରା ଜୟ କରିଅଛ । ୬ । ହେ କର୍ଣ୍ଣ ! ହିମାଳୟ ଦୁର୍ଗବାସୀ ରଣକର୍କଶ କିରାତ-ମାନଙ୍କୁ ତୁମ୍ଭେ ପୂର୍ବେ ଦୁର୍ଯ୍ୟୋଧନଙ୍କର ବଶବର୍ତ୍ତୀ କରାଇଅଛ ।

ଯୁଦ୍ଧରେ ଉତ୍କଳ, ମେକଳ, ପୌଣ୍ଡ୍ର, କଳିଙ୍ଗ, ଆନ୍ଧ୍ର, ନିଷାଦ, ତ୍ରିଗର୍ତ୍ତ ଓ ବାହ୍ଲିକ ଦେଶର ରାଜାମାନଙ୍କୁ ତୁମ୍ଭେ ପରାଜିତ କରିଅଛ । ୮ । ହେ ବୀର କର୍ଣ୍ଣ ! ତୁମ୍ଭେ ଦୁର୍ଯ୍ୟୋଧନଙ୍କର ହିତ କାମନା କରି ଅସଂଖ୍ୟ ରାଜାଙ୍କୁ ନିଜ ବାହୁବଳ ଦ୍ୱାରା ସେହି ସବୁ ଯୁଦ୍ଧରେ ପରାଜିତ କରିଅଛ । ୯ । ହେ ବତ୍ସ ! ଯେପରି ଦୁର୍ଯ୍ୟୋଧନ କୌରବମାନଙ୍କର ଗତି, ସେହିପରି ତୁମ୍ଭେ ମଧ୍ୟ ସବାନ୍ଧବ କୌରବମାନଙ୍କର ଗତି ହୁଅ । ୧୦ । ଆମ୍ଭେ ମଙ୍ଗଳ ବାକ୍ୟରେ ତୁମ୍ଭକୁ କହୁଅଛୁଁ, ତୁମ୍ଭେ ଯାଇ ଶତ୍ରୁମାନଙ୍କ ସହିତ ଯୁଦ୍ଧ କର; ତୁମ୍ଭେ କୁରୁମାନଙ୍କୁ ଶାସନ କର ଓ ଦୁର୍ଯ୍ୟୋଧନଙ୍କୁ ଜୟଯୁକ୍ତ କର । ଦୁର୍ଯ୍ୟୋଧନ ଆମ୍ଭର ପୌତ୍ର ଓ ତୁମ୍ଭେ ମଧ୍ୟ ଆମ୍ଭର ପୌତ୍ର ସମାନ । ଧର୍ମରେ ଆମ୍ଭେମାନେ ଦୁର୍ଯ୍ୟୋଧନଙ୍କର ଯେପରି, ତୁମ୍ଭର ମଧ୍ୟ ସେହିପରି ।

ହେ ନରଶ୍ରେଷ୍ଠ ! ସାଧୁମାନଙ୍କ ସଙ୍ଗରେ ବାସ କରିବା ଯୋନିକୃତ ସମ୍ବନ୍ଧଠାରୁ ଶ୍ରେଷ୍ଠ ଅଟେ ବୋଲି ମନୀଷୀ ବ୍ୟକ୍ତିମାନେ କହି ଅଛନ୍ତି ; ଅତଏବ ତୁମ୍ଭେ ସନ୍ଧିଯୁକ୍ତ ହୋଇ କୁରୁମାନେ ତୁମ୍ଭର ଆପଣାର ବୋଲି ସ୍ଥିର କର ଓ ଦୁର୍ଯୋଧନଙ୍କ ସଦୃଶ କୁରୁମାନଙ୍କୁ ରକ୍ଷା କର । ୧୪ ।

ଭୀଷ୍ମଙ୍କର ଏହି ସମସ୍ତ ବାକ୍ୟ ଶ୍ରବଣ କରି ସୂର୍ଯ୍ୟପୁତ୍ର କର୍ଣ୍ଣ ଭୀଷ୍ମଙ୍କ ଚରଣଦ୍ୱୟ ବନ୍ଦନ କଲେ ଓ ସମସ୍ତ ଧନୁର୍ଦ୍ଧରଙ୍କ ନିକଟକୁ ଗମନ କଲେ । ୧୫ । ଯୋଦ୍ଧାମାନେ ଯୁଦ୍ଧ ନିମନ୍ତେ ଯେପରି ମହତ୍ ଭାବରେ ଅବସ୍ଥିତ କରିଅଛନ୍ତି, ତାହା କର୍ଣ୍ଣ ଅବଲୋକନ କଲେ ଓ ସେହି ସମସ୍ତ ବ୍ୟୂଢ଼ ଓ ଅସ୍ତ୍ରବଦ୍ଧୋରସ୍କ ସୈନ୍ୟମାନଙ୍କୁ ଅତିଶୟ ଉତ୍ସାହିତ କଲେ । ୧୬ । ସେହି ସେନାଗ୍ରଣୀ ମହାତ୍ମା ମହାବାହୁ କର୍ଣ୍ଣ ଯୁଦ୍ଧ କରିବାକୁ ଉପସ୍ଥିତ ହୋଇଅଛନ୍ତି, ଏହା ଦେଖି ଦୁର୍ଯୋଧନ ପ୍ରଭୃତି କୁରୁମାନେ ଅତ୍ୟନ୍ତ ଆନନ୍ଦିତ ହେଲେ ଓ କ୍ଷ୍ୱେଡ଼ିତ, ଆସ୍ଫୋଟିତ, ସିଂହନାଦ ଓ ଧନୁଷ୍ଟଙ୍କାର ପ୍ରଭୃତି ନାନାପ୍ରକାର ଶବ୍ଦ କରି ତାହାଙ୍କୁ ସମ୍ପୂର୍ଣ୍ଣ ରୂପେ ଅଭିନନ୍ଦିତ କଲେ । ୧୭ ।

---

# ପଞ୍ଚମ ଅଧ୍ୟାୟ

ସଞ୍ଜୟ କହିଲେ—ହେ ରାଜନ୍ ! ପୁରୁଷଶ୍ରେଷ୍ଠ ରଥାରୂଢ଼ କର୍ଣ୍ଣ ଯୁଦ୍ଧ କରିବାକୁ ଉଦ୍ୟତ ଅଛନ୍ତି ଦେଖି ଦୁର୍ଯୋଧନ ତାହାଙ୍କୁ ହୃଷ୍ଟଚିତ୍ତରେ କହିଲେ ଯେ, ଆମ୍ଭର ଏହି ସୈନ୍ୟମାନେ ତୁମ୍ଭ ବାହୁବଳଦ୍ୱାରା ରକ୍ଷିତ ହୋଇ ସନାଥ ହେଲେ ବୋଲି ମନେ କରୁଅଛୁଁ ; ବର୍ତ୍ତମାନ ଯାହା ଉଚିତ ଓ ହିତକର, ତାହା ସ୍ଥିର କର । ୨ ।

କର୍ଣ୍ଣ କହିଲେ—ହେ ପୁରୁଷସିଂହ ! ବର୍ତ୍ତମାନ କି କାର୍ଯ୍ୟ କର୍ତ୍ତବ୍ୟ, ତାହା ଆପଣ କହିବା ହେଉନ୍ତୁ ; ଯେହେତୁ ଆପଣ ନୃପତିମାନଙ୍କ ମଧ୍ୟରେ ବୁଦ୍ଧିମତ୍ତମ ଅଟନ୍ତି । ସ୍ୱାମୀ ସ୍ୱୟଂ ଯେପରି କାର୍ଯ୍ୟକୁ ଦେଖନ୍ତି, ଅପର ଲୋକେ ସେପରି ଦେଖି ପାରନ୍ତି ନାହିଁ । ୩ । ହେ ନୃପ ! ସମସ୍ତ ରାଜା ଆପଣଙ୍କ

ବାକ୍ୟ ଶୁଣିବାକୁ ଉତ୍ସୁକ ଅଛନ୍ତ ; ଆମ୍ଭର ଧାରଣା ଯେ, ଆପଣ କଦାଚ ଅନ୍ୟାୟ୍ୟ କହିବେ ନାହିଁ । ୪ ।

ଦୁର୍ଯ୍ୟୋଧନ କହିଲେ—ହେ କର୍ଣ୍ଣ ! ବୟସରେ, ବଳରେ ଓ ଜ୍ଞାନରେ ଶ୍ରେଷ୍ଠ ଯେ ଭୀଷ୍ମ ସେ ସେନାପତି ହୋଇଥିଲେ ଓ ଯୋଦ୍ଧାମାନଙ୍କର ସମସ୍ତ ଗୁଣ ତାହାଙ୍କଠାରେ ବିଦ୍ୟମାନ ଥିଲା । ୫ । ସେହି ଯଶସ୍ୱୀ ଶ୍ରେଷ୍ଠ ମହାତ୍ମା ଭୀଷ୍ମ ଦଶଦିନ ପର୍ଯ୍ୟନ୍ତ ଯୁଦ୍ଧରେ ଶତ୍ରୁମାନଙ୍କୁ ହତ କରି ଆମ୍ଭମାନଙ୍କୁ ରକ୍ଷା କରିଥିଲେ । ୬ । ଦୁଷ୍କର କର୍ମ ସମ୍ପାଦନ କରି ସେ ସ୍ୱର୍ଗକୁ ଗମନ କରିଅଛନ୍ତି । ବର୍ତ୍ତମାନ ତୁମ୍ଭେ କାହାକୁ ସେନାପତି କରିବାକୁ ବିବେଚନା କରୁଅଛ ? ୭ । ହେ ବୀରବର ! ନାବିକଶୂନ୍ୟ ହେଲେ ନୌକା ଯେପରି ଜଳରେ କ୍ଷଣମାତ୍ର ରହି ପାରଇ ନାହିଁ, ନାୟକଶୂନ୍ୟ ହେଲେ ସୈନ୍ୟମାନେ ସେହିପରି ଯୁଦ୍ଧରେ କ୍ଷଣେମାତ୍ର ରହି ପାରନ୍ତି ନାହିଁ । ୮ ।

କର୍ଣ୍ଣଧାରବିହୀନ ନୌକା ଓ ସାରଥିଶୂନ୍ୟ ରଥ ଯେପରି ସ୍ଥାନଚ୍ୟୁତ ହୁଏ, ସେନାପତି-ହୀନ ସୈନ୍ୟମାନେ ସେହିପରି ସ୍ଥିର ହୋଇ ରହି ପାରନ୍ତି ନାହିଁ । ଯେପରି ବିଦେଶୀୟ ବଣିକ ପଥ ପ୍ରଦର୍ଶକ ବ୍ୟତିରେକେ ବିପଦ୍‌ଗ୍ରସ୍ତ ହୁଏ, ସେହିପରି ସୈନ୍ୟମାନେ ନାୟକହୀନ ହେଲେ ବିପଦରେ ପତିତ ହୁଅନ୍ତି । ୧୦ । ଆମ୍ଭ ସୈନ୍ୟମାନଙ୍କ ମଧ୍ୟରେ ଯେତେ ମହାତ୍ମା ଅଛନ୍ତି, ସେମାନଙ୍କ ମଧ୍ୟରେ ଭୀଷ୍ମଙ୍କ ପରେ ସେନାପତି ହେବାକୁ ଉପଯୁକ୍ତ କିଏ ଅଛନ୍ତି, ତାହା ଦେଖ । ତୁମ୍ଭେ ଯାହାଙ୍କୁ ସେନାପତିର ଉପଯୁକ୍ତ ବୋଲି ବୋଧ କରିବ, ଆମ୍ଭେମାନେ ତାହାଙ୍କୁ ନିଶ୍ଚୟ ସେନାପତି କରିବୁଁ । ୧୨ ।

କର୍ଣ୍ଣ କହିଲେ—ଏହି ପୁରୁଷଶ୍ରେଷ୍ଠ ମହାତ୍ମା ନରପତିମାନେ ସମସ୍ତେ ସେନାପତି ହେବାର ଉପଯୁକ୍ତ, ଏଥିରେ ଆମ୍ଭର ସନ୍ଦେହ ନାହିଁ । ୧୩ । ଏମାନେ ସମସ୍ତେ କୁଳୀନ, ଜ୍ଞାନବାନ୍, ବଳବିକ୍ରମସମ୍ପନ୍ନ ଓ ବୁଦ୍ଧିମାନ୍ । ଏମାନଙ୍କର ଶରୀର ଅତିଦୃଢ଼ । ଏମାନେ ଯୁଦ୍ଧରୁ ନିବୃତ୍ତ ହୁଅନ୍ତି ନାହିଁ ; ଆହୁରି ଏମାନେ କୃତଜ୍ଞ, ଓ ହ୍ରୀମନ୍ତ ଅଟନ୍ତି । ତଥାପି ଏ ସମସ୍ତଙ୍କୁ ଏକସମୟରେ ସେନାପତି କରାଯାଇ ନ ପାରେ ; ଅତଏବ ଏମାନଙ୍କ ମଧ୍ୟରୁ ବିଶେଷ-ଗୁଣ-ସମ୍ପନ୍ନ କୌଣସି ଏକ ବ୍ୟକ୍ତିକୁ ସେନାପତି କରିବା

ଉଚିତ । ୧୫ । ମାତ୍ର ଏହି ରାଜାମାନେ ପରସ୍ପର ସ୍ପର୍ଦ୍ଧା କରନ୍ତି । ଏମାନଙ୍କ ମଧ୍ୟରୁ ଜଣକୁ ସମ୍ମାନ ଦେଖାଇଲେ ଅନ୍ୟ ସମସ୍ତେ ବିମନା ହେବେ ଓ ଆପଣଙ୍କର ମଙ୍ଗଳାକାଂକ୍ଷୀ ହୋଇ ଯୁଦ୍ଧ କରିବେ ନାହିଁ । ୧୬ । ଏହି ହେତୁରୁ ଦ୍ରୋଣାଚାର୍ଯ୍ୟଙ୍କୁ ସେନାପତି କରିବା ଉଚିତ, ଯେହେତୁ ସେ ଯୋଦ୍ଧାମାନଙ୍କ ମଧ୍ୟରେ ଶ୍ରେଷ୍ଠ ଓ ଶସ୍ତ୍ରଧାରୀମାନଙ୍କ ମଧ୍ୟରେ ପ୍ରଧାନ ଓ ମଧ୍ୟ ସ୍ଥବିର ଓ ମାନନୀୟ ଅଟନ୍ତି । ୧୭ । ବୃହସ୍ପତି ଓ ଶୁକ୍ରଙ୍କ ନୀତିଶାସ୍ତ୍ର ଅନୁସାରେ କହୁଅଛୁଁ ଯେ, ବ୍ରହ୍ମଜ୍ଞ-ଶ୍ରେଷ୍ଠ ଦୁର୍ଦ୍ଧର୍ଷ ଦ୍ରୋଣାଚାର୍ଯ୍ୟ ଥାଉଁ ଥାଉଁ ଆଉ କେହି ସେନାପତି ହୋଇ ନ ପାରନ୍ତି । ୧୮ । ହେ ଭାରତ ! ଆପଣଙ୍କର ଏହି ରାଜ-ବୃନ୍ଦ ମଧ୍ୟରେ ତାଙ୍କପରି କୌଣସି ରାଜା ନାହାନ୍ତି, ଯେ କି ଦ୍ରୋଣାଚାର୍ଯ୍ୟ ଯୁଦ୍ଧକୁ ଗଲେ ତାହାଙ୍କ ଅନୁଗମନ ନ କରିବେ । ୧୯ । ହେ ରାଜନ୍ ! ଦ୍ରୋଣମହାଶୟ ସେନାପତିମାନଙ୍କ ମଧ୍ୟରେ ପ୍ରଧାନ, ଶସ୍ତ୍ର-ଧାରିମାନଙ୍କ ମଧ୍ୟରେ ପ୍ରଧାନ ଓ ବୁଦ୍ଧିମାନ୍‌ଗଣ ମଧ୍ୟରେ ପ୍ରଧାନ ଅଟନ୍ତି ଓ ମଧ୍ୟ ସେ ଆପଣଙ୍କର ଗୁରୁ । ୨୦ । ହେ ଦୁର୍ଯୋଧନ ! ଅସୁରମାନଙ୍କୁ ଜୟ କରିବା ନିମିତ୍ତ ଅମରବୃନ୍ଦ ଯେପରି କାର୍ତ୍ତିକେୟଙ୍କୁ ସେନାପତି କରିଥିଲେ, ସେହିପରି ଏହି ଆଚାର୍ଯ୍ୟଙ୍କୁ ଆପଣ ଶୀଘ୍ର ସେନାପତି କରନ୍ତୁ ।

## ଷଷ୍ଠ ଅଧ୍ୟାୟ

ସଞ୍ଜୟ ବୋଇଲେ—କର୍ଣ୍ଣଙ୍କର ବଚନ ଶ୍ରବଣ କରି ସେନାମଧ୍ୟରେ ଥିବା ଦ୍ରୋଣାଚାର୍ଯ୍ୟଙ୍କୁ ରାଜା ଦୁର୍ଯୋଧନ କହିଲେ—ଆପଣ ବର୍ଣ୍ଣରେ, କୁଳରେ ଓ ଶାସ୍ତ୍ରରେ ଶ୍ରେଷ୍ଠ । ବୟସରେ, ବୁଦ୍ଧିରେ, ବଳରେ, ନୈପୁଣ୍ୟରେ, ଦୁର୍ଦ୍ଧର୍ଷତାରେ, ଅର୍ଥଜ୍ଞାନରେ ମଧ୍ୟ ଆପଣ ଶ୍ରେଷ୍ଠ ଅଟନ୍ତି । ପୁଣି ନୀତିଶାସ୍ତ୍ର, ଜୟ, ତପସ୍ୟା, କୃତଜ୍ଞତା ଓ ଅନ୍ୟାନ୍ୟ ଗୁଣମାନଙ୍କରେ ଆପଣ ପ୍ରଧାନ ଅଟନ୍ତି । ରାଜବୃନ୍ଦର ଆପଣଙ୍କ ସମାନ ଆଉ କେହି ରକ୍ଷକ ନାହିଁ । ୩ ।

ହେ ଦ୍ୱିଜଶ୍ରେଷ୍ଠ ! ଇନ୍ଦ୍ର ଯେପରି ଦେବତାମାନଙ୍କୁ ରକ୍ଷା କରନ୍ତି, ଆପଣ ସେହିପରି ଆମ୍ଭମାନଙ୍କୁ ରକ୍ଷା କରନ୍ତୁ । ଆପଣଙ୍କୁ ସେନାପତି କରି ଆମ୍ଭେ ଶତ୍ରୁମାନଙ୍କୁ ଜୟ କରିବାକୁ ଇଚ୍ଛା କରୁଁ । ୪ । ଯେପରି ରୁଦ୍ରଗଣ

ମଧ୍ୟରେ କାପାଳୀ, ବସୁମାନଙ୍କ ମଧ୍ୟରେ ହୁତାଶନ, ଯକ୍ଷମାନଙ୍କ ମଧ୍ୟରେ କୁବେର ଓ ଦେବଗଣଙ୍କ ମଧ୍ୟରେ ଇନ୍ଦ୍ର ଶ୍ରେଷ୍ଠ ଅଟନ୍ତି ଏବଂ ଯେପରି ବିପ୍ରମାନଙ୍କ ମଧ୍ୟରେ ବଶିଷ୍ଠ, ଜ୍ୟୋତିର୍ଗଣ ମଧ୍ୟରେ ଭାସ୍କର, ପିତୃଗଣ ମଧ୍ୟରେ ଧର୍ମରାଜ, ଜଳଜନ୍ତୁମାନଙ୍କ ମଧ୍ୟରେ ବରୁଣ, ନକ୍ଷତ୍ରମାନଙ୍କ ମଧ୍ୟରେ ଶଶୀ ଓ ଦୈତ୍ୟମାନଙ୍କ ମଧ୍ୟରେ ଶୁକ୍ର ଶ୍ରେଷ୍ଠ ଅଟନ୍ତି, ସେହିପରି ଆମ୍ଭମାନଙ୍କ ସମସ୍ତ ସେନାପତିଙ୍କ ମଧ୍ୟରେ ଆପଣ ଶ୍ରେଷ୍ଠ ଅଟନ୍ତି । ଆପଣ ସେନାପତି ହୁଅନ୍ତୁ । ୭ ।

ହେ ଅନଘ ! ଏହି ଏକାଦଶ ଅକ୍ଷୌହିଣୀ ସେନା ଆପଣଙ୍କ ବଶ-ବର୍ତ୍ତିନୀ ହେଉନ୍ତୁ । ଆପଣ ଏହି ସମସ୍ତ ସୈନ୍ୟଙ୍କଦ୍ୱାରା ବ୍ୟୂହ ରଚନା କରି ଇନ୍ଦ୍ର ଯେପରି ଦାନବମାନଙ୍କୁ ବିନାଶ କରିଥିଲେ, ଆପଣ ସେହିପରି ଶତ୍ରୁମାନଙ୍କୁ ସଂହାର କରନ୍ତୁ । ୮ । କାର୍ତ୍ତିକେୟ ଯେପରି ଦେବଗଣଙ୍କ ଆଗରେ ଗମନ କରନ୍ତି, ଆପଣ ସେହିପରି ଆମ୍ଭମାନଙ୍କର ଆଗରେ ଗମନ କରନ୍ତୁ । ଗୋବୃନ୍ଦ ଯେପରି ବୃଷଭର ପଛରେ ଯା'ନ୍ତି, ସେହିପରି ଯୁଦ୍ଧରେ ଆମ୍ଭେମାନେ ଆପଣଙ୍କର ଅନୁଗମନ କରିବୁଁ । ୯ । ଆପଣଙ୍କୁ ସମ୍ମୁଖରେ ଦେଖି ଉଗ୍ରଧନ୍ୱା ମହାଧନୁର୍ଦ୍ଧର ଅର୍ଜ୍ଜୁନ ଦିବ୍ୟଧନୁ ବିସ୍ତାର କରି ଶର ପ୍ରହାର କରିପାରିବେ ନାହିଁ । ୧୦ । ହେ ପୁରୁଷବ୍ୟାଘ୍ର ! ଆପଣ ସେନାପତି ହେଲେ ଯୁଧିଷ୍ଠିରଙ୍କୁ ଆଉ ତାହାଙ୍କ ଅନୁଚର ଓ ବାନ୍ଧବମାନଙ୍କୁ ଆମ୍ଭେ ଯୁଦ୍ଧରେ ଅବଶ୍ୟ ଜୟ କରିବୁଁ । ୧୧ ।

ସଞ୍ଜୟ କହିଲେ—ଦ୍ରୋଣାଚାର୍ଯ୍ୟଙ୍କୁ ଦୁର୍ଯ୍ୟୋଧନ ଏହି ପ୍ରକାରେ କହିବାରୁ ସମସ୍ତ ରାଜା ମହାନ୍ ସିଂହନାଦ କରି ଆପଣଙ୍କ ପୁତ୍ରମାନଙ୍କୁ ଆନନ୍ଦିତ କଲେ ଓ "ଜୟ" "ଜୟ" ଶବ୍ଦଦ୍ୱାରା ଦ୍ରୋଣଙ୍କୁ ସମ୍ମାନିତ କଲେ । ୧୨ । ସେନାବୃନ୍ଦ ମଧ୍ୟ ହୃଷ୍ଟ ଚିତ୍ତରେ ଦୁର୍ଯ୍ୟୋଧନଙ୍କୁ ଅଗ୍ରବର୍ତ୍ତୀ କଲେ ଓ ମହଦ୍ ଯଶଃପ୍ରାର୍ଥୀ ହୋଇ ଦ୍ୱିଜଶ୍ରେଷ୍ଠ ଦ୍ରୋଣଙ୍କୁ ସମ୍ବର୍ଦ୍ଧନା କଲେ । ତାପରେ ଦ୍ରୋଣାଚାର୍ଯ୍ୟ ଦୁର୍ଯ୍ୟୋଧନଙ୍କୁ କହିଲେ । ୧୩ ।

# ସପ୍ତମ ଅଧ୍ୟାୟ

ଦ୍ରୋଣ କହିଲେ—ସମସ୍ତ ବେଦ ଓ ବେଦର ଷଡ଼ଙ୍ଗମାନ ଆମ୍ଭଙ୍କୁ ବିଦିତ ଅଛି ଓ ମାନବୀ ଅର୍ଥବିଦ୍ୟା, ଶୈବ ଅସ୍ତ୍ର ଓ ଅନ୍ୟାନ୍ୟ ନାନା ପ୍ରକାର ଅସ୍ତ୍ରଶସ୍ତ୍ରମାନଙ୍କୁ ଆମ୍ଭେ ଜାଣୁଁ । ୧ । ଆପଣମାନେ ଜୟାକାଂକ୍ଷୀ ହୋଇ ଆମ୍ଭଠାରେ ଯେଉଁ ସବୁ ଗୁଣମାନ ଅଛି ବୋଲି କହିଲେ, ସେହି ସମସ୍ତ ଗୁଣକୁ ଆମ୍ଭେ ସତ୍ୟ କରିବା ଇଚ୍ଛାରେ ପାଣ୍ଡବ-ମାନଙ୍କ ସହିତ ଯୁଦ୍ଧ କରିବୁଁ । ୨ । କିନ୍ତୁ ହେ ରାଜନ୍ ! ଧୃଷ୍ଟଦ୍ୟୁମ୍ନଙ୍କୁ ଯୁଦ୍ଧରେ ଆମ୍ଭେ କଦାଚ ହତ କରି ପାରିବୁ ନାହିଁ । ଯେହେତୁ ସେହି ପୁରୁଷଶ୍ରେଷ୍ଠ ଧୃଷ୍ଟଦ୍ୟୁମ୍ନ ଆମ୍ଭଙ୍କୁ ବଧ କରିବା ନିମିତ୍ତ ସୃଷ୍ଟ ହୋଇ ଅଛନ୍ତି । ୩ । ଆମ୍ଭେ ସମସ୍ତ ସୋମବଂଶୀୟଙ୍କୁ ବିନାଶ କରିବୁଁ ଓ ଅନ୍ୟାନ୍ୟ ସମସ୍ତ ସୈନ୍ୟଙ୍କ ସହ ଯୁଦ୍ଧ କରିବୁଁ । ପାଣ୍ଡବମାନେ ହର୍ଷଯୁକ୍ତ ହୋଇ ଆମ୍ଭସହିତ ଯୁଦ୍ଧ କରିବାକୁ ସମର୍ଥ ହେବେ ନାହିଁ । ୪ ।

ସଞ୍ଜୟ କହିଲେ—ହେ ରାଜନ୍ ! ଦ୍ରୋଣଙ୍କଠାରୁ ଏହିପରି ଅନୁଜ୍ଞା ପ୍ରାପ୍ତ ହୋଇ ଦୁର୍ଯ୍ୟୋଧନ ତାହାଙ୍କୁ ବିଧିପୂର୍ବକ ସେନାପତି କଲେ । ଅନନ୍ତର ପୂର୍ବକାଳରେ ଇନ୍ଦ୍ରାଦି ଦେବଗଣ ଯେପରି ସ୍କନ୍ଦଙ୍କୁ ସେନାପତି ପଦରେ ବରଣ କରିଥିଲେ, ସେହିପରି ଦୁର୍ଯ୍ୟୋଧନ ପ୍ରଭୃତି ରାଜାମାନେ ଦ୍ରୋଣଙ୍କୁ ସେନାପତି ପଦରେ ଅଭିଷିକ୍ତ କଲେ । ୬ ।

ତତ୍ପରେ ଦ୍ୱିଜଶ୍ରେଷ୍ଠମାନଙ୍କର ପୁଣ୍ୟାହବାଚନ ଓ ସ୍ୱସ୍ତିବାଚନ ସହ ଜୟ ଶବ୍ଦଦ୍ୱାରା, ସୂତ, ମାଗଧ ଓ ବନ୍ଦିମାନଙ୍କର ସ୍ତବ ଓ ଗୀତଧ୍ୱନି ଦ୍ୱାରା ଓ ସୁଭଗାମାନଙ୍କର ନର୍ତ୍ତନ ଦ୍ୱାରା କୌରବବୃନ୍ଦ ଦ୍ରୋଣଙ୍କର ଯଥାବିଧି ସତ୍କାର କରି ପାଣ୍ଡବମାନଙ୍କୁ ପରାଜିତ ବୋଲି ଜ୍ଞାନ କଲେ । ୯ ।

ସଞ୍ଜୟ ବୋଇଲେ — ମହାରଥ ଭରଦ୍ୱାଜନନ୍ଦନ ଦ୍ରୋଣ ସେନାପତି ପଦ ପ୍ରାପ୍ତ ହୋଇ ସୈନ୍ୟମାନଙ୍କୁ ବ୍ୟୂହବଦ୍ଧ କଲେ ଓ ସମରା-ଭିକାଷୀ ହୋଇ ଆପଣଙ୍କ ପୁତ୍ରମାନଙ୍କ ସଙ୍ଗରେ ଯାତ୍ରା କଲେ । ୧୦ । ସିନ୍ଧୁରାଜ, କଳିଙ୍ଗରାଜ ଓ ଆପଣଙ୍କ ପୁତ୍ର ବିକର୍ଣ୍ଣ—ଏମାନେ କବଚ ଧାରଣ

କରି ଦ୍ରୋଣଙ୍କ ଦକ୍ଷିଣ ପାର୍ଶ୍ୱରେ ଅବସ୍ଥାନ କଲେ । ପ୍ରଧାନ ପ୍ରଧାନ ଅଶ୍ୱାରୋହୀମାନଙ୍କୁ ଓ ପ୍ରାସଯୋଧୀ ଗାନ୍ଧାର ସୈନ୍ୟମାନଙ୍କୁ ସଙ୍ଗରେ ଘେନି ଶକୁନି ସେମାନଙ୍କ ପଶ୍ଚାଦ୍‌ଭାଗରେ ଗମନ କଲେ । କୃପ, କୃତବର୍ମା, ଚିତ୍ରସେନ, ବିବିଂଶ ଓ ଦୁଃଶାସନ ପ୍ରଭୃତି ବୀରମାନେ ଦ୍ରୋଣଙ୍କର ବାମ ପାର୍ଶ୍ୱ ରକ୍ଷା କରି ଗମନ କଲେ । ଯବନ ଓ ଶକମାନେ କାମ୍ବୋଜ ଦେଶର ରାଜା ସୁଦକ୍ଷିଣଙ୍କୁ ଆପଣାର ଅଗ୍ରବର୍ତ୍ତୀ କରି ଅତି ବେଗଗାମୀ ଅଶ୍ୱରେ ଆରୋହଣ ପୂର୍ବକ ସେମାନଙ୍କ ପଛରେ ଧାବମାନ ହେଲେ । ମଦ୍ର, ତ୍ରିଗର୍ତ୍ତ, ଅମ୍ବଷ୍ଠ, ପ୍ରତୀଚ୍ୟ, ଉଦୀଚ୍ୟ ଓ ମାଳବ ଦେଶର ବୀରମାନେ ଓ ଶିବିବୃନ୍ଦ ଏବଂ ଶୂରସେନ, ଶୂଦ୍ର, ମଳଦ, ସୌବୀର, କିତବ, ପ୍ରାଚ୍ୟ ଓ ଦାକ୍ଷିଣାତ୍ୟ— ଏହି ଦେଶମାନଙ୍କର ଯୋଦ୍ଧାମାନେ ଆପଣଙ୍କ ପୁତ୍ର ଦୁର୍ଯ୍ୟୋଧନଙ୍କୁ ଅଗ୍ରବର୍ତ୍ତୀ କରି କର୍ଣ୍ଣଙ୍କର ପୃଷ୍ଠରକ୍ଷକ ହୋଇ ଗମନ କଲେ । ୧୭ ।

ସୂର୍ଯ୍ୟଙ୍କ ପୁତ୍ର କର୍ଣ୍ଣ ସମସ୍ତ ସୈନ୍ୟଙ୍କୁ ଉତ୍ସାହିତ କଲେ ଓ ଆପଣାର ସୈନ୍ୟମାନଙ୍କୁ ହର୍ଷିତ କରି ଆପଣଙ୍କ ପୁତ୍ର-ମାନଙ୍କ ସହ ସମସ୍ତ ଧନୁର୍ଦ୍ଧରଙ୍କ ଅଗ୍ରଗାମୀ ହେଲେ । ହସ୍ତୀ-କକ୍ଷ ନାମକ କର୍ଣ୍ଣଙ୍କର ମହାକେତୁ ତେଜରେ ସୂର୍ଯ୍ୟସମାନ ଶୋଭା ପାଇଲା । ଭୀଷ୍ମ ନିହତ ହୋଇଥିବାରୁ ଲୋକମାନଙ୍କ ମନରେ ଯେ ଦୁଃଖ ହୋଇଥିଲା, କର୍ଣ୍ଣଙ୍କୁ ଦେଖି ସେ ଦୁଃଖକୁ ସେ ସମୟରେ କେହି ମନରେ ପକାଇଲେ ନାହିଁ । ରାଜାମାନେ ଓ କୁରୁବୃନ୍ଦ ଭୀଷ୍ମଶୋକକୁ ପାଶୋରି ପକାଇଲେ । ବହୁସଂଖ୍ୟକ ଯୋଦ୍ଧା ମିଳିତ ଓ ହୃଷ୍ଟ ହୋଇ ଅନ୍ୟୋନ୍ୟରେ ଏହିପ୍ରକାର କଥୋପକଥନ କଲେ ଯେ, ପାଣ୍ଡବମାନେ କର୍ଣ୍ଣଙ୍କୁ ଅବଲୋକନ କରି ଯୁଦ୍ଧରେ ସ୍ଥିର ହୋଇ ରହି ପାରିବେ ନାହିଁ । କର୍ଣ୍ଣ ଯୁଦ୍ଧରେ ଇନ୍ଦ୍ରାଦି ଦେବଗଣଙ୍କୁ ପରାଜିତ କରିପାରନ୍ତି । ସେ ଯେ ଦୁର୍ବଳ, ହୀନବୀର୍ଯ୍ୟ ପାଣ୍ଡବମାନଙ୍କୁ ଜୟ କରିବେ, ଏଥିରେ ଆଉ ସନ୍ଦେହ କଅଣ ? ବାହୁ-ବଳଶାଳୀ ଭୀଷ୍ମ ଯୁଦ୍ଧରେ ପାଣ୍ଡବଗଣଙ୍କୁ ରକ୍ଷା କରିଅଛନ୍ତି । ପରନ୍ତୁ ସମୟରେ କର୍ଣ୍ଣ ସେମାନଙ୍କୁ ତୀକ୍ଷ୍ଣ ଶରଦ୍ୱାରା ବିନାଶ କରିବେ । ହେ ନରନାଥ ! ସେହି ମିଳିତ ସୈନ୍ୟମାନେ ଏହିପରି ଆପଣା ମଧ୍ୟରେ

କଥୋପକଥନ କଲେ ଓ ରାଧେୟ କର୍ଣ୍ଣଙ୍କୁ ପୂଜା ଓ ପ୍ରଶଂସା କରି ନିର୍ଗତ ହେଲେ ।

ହେ ରାଜନ୍ ! ଦ୍ରୋଣାଚାର୍ଯ୍ୟ ଆମ୍ଭମାନଙ୍କର ଯେଉଁ ବ୍ୟୂହ ରଚନା କଲେ, ତାହାର ନାମ ଶକଟବ୍ୟୂହ ! ଶତ୍ରୁମାନଙ୍କ ମଧ୍ୟରେ ମହାତ୍ମା ଧର୍ମରାଜ ପ୍ରୀତମାନସ ହୋଇ ଯେଉଁ ବ୍ୟୂହ ରଚନା କଲେ, ତାହାର ନାମ କ୍ରୌଞ୍ଚବ୍ୟୂହ । । ୨୫ । ପୁରୁଷଶ୍ରେଷ୍ଠ କୃଷ୍ଣ ଓ ଧନଞ୍ଜୟ—ଏ ଦୁହେଁ କପିଧ୍ୱଜରଥରେ ଚଢ଼ି ବ୍ୟୂହ ମୁଖରେ ଅବସ୍ଥିତ ହେଲେ । ୨୬ । ପାଣ୍ଡୁପୁତ୍ର ମହାତ୍ମା ଅର୍ଜ୍ଜୁନଙ୍କର ତେଜ ଅପରିମିତ । ତାହାଙ୍କ ରଥର କପିକେତନ ସମସ୍ତ ସୈନ୍ୟଙ୍କ ମଧ୍ୟରେ ଶ୍ରେଷ୍ଠ ଓ ସମସ୍ତ ଧନୁର୍ଦ୍ଧରଙ୍କର ଆଶ୍ରୟସ୍ୱରୂପ ଥିଲା ଓ ସେହି ଆକାଶଗାମୀ କପିକେତୁ ପାଣ୍ଡବପକ୍ଷୀୟ ସୈନ୍ୟମାନଙ୍କୁ ପ୍ରଦୀପ୍ତ କଲା । ଯେପରି ଯୁଗାନ୍ତ କାଳରେ ପ୍ରଦୀପ୍ତ ସୂର୍ଯ୍ୟ ପୃଥିବୀକୁ ପ୍ରକାଶିତ କରିବାର ଦେଖାଯାଏ, ସେହିପରି ଧୀମାନ୍ ଅର୍ଜ୍ଜୁନଙ୍କର ସେହି କପିକେତୁ ପ୍ରଦୀପ୍ତ ହେବାର ଦେଖାଗଲା । ଅର୍ଜ୍ଜୁନଙ୍କ ଶ୍ୱେତଘୋଟକ-ଯୁକ୍ତ ରଥରେ ଭୂତଶ୍ରେଷ୍ଠ ବାସୁଦେବ ଓ ଚକ୍ରଶ୍ରେଷ୍ଠ ସୁଦର୍ଶନ ଆଉ ବୀରଶ୍ରେଷ୍ଠ ପାର୍ଥ ଓ ଧନୁଶ୍ରେଷ୍ଠ ଗାଣ୍ଡୀବ—ଏହି ଚାରିଗୋଟି ତେଜ ଏକତ୍ର ବିରାଜିତ ହେବାରୁ ସେହି ରଥ ଉଦ୍ୟତ କାଳଚକ୍ରପ୍ରାୟ ଶତ୍ରୁମାନଙ୍କ ସମ୍ମୁଖରେ ସ୍ଥିତ ହେଲା ।

ଆପଣଙ୍କ ସୈନ୍ୟମାନଙ୍କ ଆଗରେ 'ସହସା କର୍ଣ୍ଣ ରହିଲେ ଓ ପାଣ୍ଡବମାନଙ୍କ ସୈନ୍ୟଗଣଙ୍କ ସମ୍ମୁଖରେ ସହସା ଅର୍ଜ୍ଜୁନ ଅବସ୍ଥିତ କଲେ । ତତ୍ପରେ କର୍ଣ୍ଣ ଓ ଅର୍ଜ୍ଜୁନ ଏ ଦୁହେଁ ଯୁଦ୍ଧରେ ଜାତସଂରମ୍ଭ ହେଲେ ଓ ପରସ୍ପର-ବିଦ୍ୱେଷୀ ହୋଇ ଅନ୍ୟୋନ୍ୟରେ ଦୃଷ୍ଟିପାତ କଲେ ।

ଅନନ୍ତର ମହାରଥୀ ଦ୍ରୋଣ ସହସା ଯୁଦ୍ଧ କ୍ଷେତ୍ରରେ ଉପସ୍ଥିତ ହେବାରୁ ପୃଥିବୀ ଘୋର ଆର୍ତ୍ତନାଦରେ ପୂର୍ଣ୍ଣ ହୋଇ କମ୍ପିତ ହେଲା । ତତ୍ପରେ ଯେପରି କୌଶେୟ (ପଟବସ୍ତ୍ର) ସମୂହ ସୂର୍ଯ୍ୟଙ୍କୁ ଓ ଆକାଶକୁ ଆବୃତ କରେ, ସେହିପରି ତୀବ୍ରମୂଳ ଧୂଳିରାଶି ବାୟୁଦ୍ୱାରା ଉତ୍ଥିତ ହୋଇ ଆକାଶକୁ ଓ ସୂର୍ଯ୍ୟଙ୍କୁ ସମ୍ପୂର୍ଣ୍ଣରୂପେ ଘୋଡ଼ାଇ ପକାଇଲା । ମେଘଶୂନ୍ୟ ଆକାଶରୁ ଅସ୍ଥି ଓ ରୁଧିର ବୃଷ୍ଟି ହେଲା । ୩୯ । ହେ ରାଜନ୍ ! ସହସ୍ର ସହସ୍ର ଗୃଧ୍ର, ଶ୍ୟେନ, କଙ୍କ ଓ ବାୟସ ଆପଣଙ୍କ

ସେନାବୃନ୍ଦର ଉପରେ ପତିତ ହେଲେ । ବହୁ ଭୟପ୍ରଦ ଗୋମାୟୁମାନେ କଠୋର ଶବ୍ଦ କଲେ ଓ ମାଂସଭକ୍ଷଣରେ, ଶୋଣିତପାନରେ ଉତ୍ସୁକ ହୋଇ ଆପଣଙ୍କ ସୈନ୍ୟମାନଙ୍କ ଦକ୍ଷିଣ ବାଟେ ଗମନ କଲେ । ନିଜ ନିଜ ପୁଚ୍ଛରେ ଦିଗସମସ୍ତ ଆବୃତ କରି ଆପଣଙ୍କ ସେନାଗଣଙ୍କ ଆଗରେ ନିର୍ଘାତ ଓ କମ୍ପ ସହ ପତିତ ହେଲେ । ହେ ରାଜନ୍ ! ସେନାପତିଙ୍କ ଗମନ ସମୟରେ ଗର୍ଜ୍ଜନଶୀଳ ଓ ବିଦ୍ୟୁତ୍‌ଯୁକ୍ତ ମେଘ ସୂର୍ଯ୍ୟଙ୍କର ମହାପରିଧିକୁ ଆବୃତ କଲା; ବୀରମାନଙ୍କର ପ୍ରାଣନାଶକ ଏହି ଦୁର୍ନିମିତ୍ତମାନ ଜାତ ହେଲା ଓ ଅନ୍ୟାନ୍ୟ ଅନେକ ପ୍ରକାର ସୁଦାରୁଣ ଉତ୍ପାତ ସବୁ ପ୍ରାଦୁର୍ଭୂତ ହେଲା ।

ତତ୍ପରେ ପରସ୍ପର ବଧୈଷୀ କୁରୁ ଓ ପାଣ୍ଡବମାନଙ୍କ ମଧ୍ୟରେ ଘୋର ଯୁଦ୍ଧ ଆରମ୍ଭ ହେଲା ; ସେମାନଙ୍କ ଶବ୍ଦରେ ଜଗତ୍ ପୂର୍ଣ୍ଣ ହେଲା । ପାଣ୍ଡବ ଓ କୌରବମାନେ ସୁସଂରବ୍ଧ ଓ ଜୟାକାଂକ୍ଷୀ ହୋଇ ଶାଣିତ ଶରଦ୍ୱାରା ପରସ୍ପରକୁ ପ୍ରହାର କଲେ । ମହାଧନୁର୍ଦ୍ଧର ମହାତେଜସ୍ୱୀ ଦ୍ରୋଣାଚାର୍ଯ୍ୟ ଶତଶତ ତୀକ୍ଷ୍ଣ ଶରମାନଙ୍କୁ ବର୍ଷଣ କରି ପାଣ୍ଡବମାନଙ୍କ ସୈନ୍ୟମାନଙ୍କ ପ୍ରତି ମହାବେଗରେ ଧାବମାନ ହେଲେ ।

ଯେତେବେଳେ ପାଣ୍ଡବମାନେ ଦେଖିଲେ ଯେ, ଦ୍ରୋଣ ଯୁଦ୍ଧ କରିବାକୁ ଆସୁଅଛନ୍ତି, ତେତେବେଳେ ସେମାନେ ସୃଞ୍ଜୟଗଣଙ୍କ ଉପରେ ବାଣ ବର୍ଷଣ କଲେ । ମେଘସମୂହ ବାୟୁଦ୍ୱାରା ଯେପରି ଖଣ୍ଡଖଣ୍ଡ ହୋଇ ଉଡ଼ିଯାଏ, ସେହିପରି ପାଞ୍ଚାଳ ଦେଶର ମହତୀ ସେନାକୁ ଦ୍ରୋଣ ଶରଦ୍ୱାରା ଭେଦ କରିବାରୁ ସେମାନେ ସଂକ୍ଷୋଭିତ ହୋଇ ଛିନ୍ନଭିନ୍ନ ହୋଇଗଲେ । ଯୁଦ୍ଧରେ ଦ୍ରୋଣ ଅନେକାନେକ ଦିବ୍ୟ ଅସ୍ତ୍ର ବର୍ଷଣ କରି କ୍ଷଣକ-ମଧ୍ୟରେ ପାଣ୍ଡବ ଓ ସୃଞ୍ଜୟମାନଙ୍କୁ ବ୍ୟଥିତ କଲେ । ଇନ୍ଦ୍ର ଯେପରି ଦାନବସମୂହକୁ ବଧ କରନ୍ତି, ସେହିପରି ଦ୍ରୋଣ ଧୃଷ୍ଟଦ୍ୟୁମ୍ନଙ୍କୁ ଓ ତାହାଙ୍କ ପଶ୍ଚାଦ୍‌ଗାମୀ ପାଞ୍ଚାଳମାନଙ୍କୁ ବଧ କରିବା ନିମିତ୍ତ ଉଦ୍ୟତ ହେବାରୁ ସେମାନେ ଅତିଶୟ କମ୍ପମାନ ହେଲେ ।

ଅନନ୍ତର ମହାରଥ ଯାଜ୍ଞସେନି, ଦିବ୍ୟାସ୍ତ୍ର-କୋବିଦ, ଶୂର, ଧୃଷ୍ଟଦ୍ୟୁମ୍ନ ଶରବର୍ଷା କରନ୍ତେ ଦ୍ରୋଣଙ୍କର ସୈନ୍ୟସମୂହ ବିବିଧ

ପ୍ରକାରରେ ଛିନ୍ନଭିନ୍ନ ହୋଇଗଲେ । ପୃଷତ ନନ୍ଦନ ବଳବାନ୍ ଧୃଷ୍ଟଦ୍ୟୁମ୍ନ ଦ୍ରୋଣଙ୍କ ଶରସମୂହକୁ ନିଜ ଶର ବର୍ଷଣ ଦ୍ୱାରା ନିବାରଣ କଲେ ଓ କୁରୁସୈନ୍ୟବୃନ୍ଦଙ୍କୁ ନିହତ କରିବାରେ ପ୍ରବୃତ୍ତ ହେଲେ । ତଦନନ୍ତର ମହାଧନୁର୍ଦ୍ଧର ଦ୍ରୋଣ ଯୁଦ୍ଧରେ ପ୍ରବୃତ୍ତ ହୋଇ ନିଜର ସୈନ୍ୟ-ମାନଙ୍କୁ ସମ୍ୟକ୍ ପ୍ରକାରରେ ବ୍ୟବସ୍ଥାପିତ କଲେ ଓ ଧୃଷ୍ଟଦ୍ୟୁମ୍ନଙ୍କ ପ୍ରତି ଧାବମାନ ହେଲେ । ଇନ୍ଦ୍ର ଯେପରି ଅତି କ୍ରୁଦ୍ଧ ହୋଇ ଦାନବମାନଙ୍କ ପ୍ରତି ବାଣ ବର୍ଷଣ କରନ୍ତି, ସେହିପରି ଦ୍ରୋଣ ଧୃଷ୍ଟଦ୍ୟୁମ୍ନଙ୍କ ପ୍ରତି ହଠାତ୍ ଯେଉଁ ବାଣ ବର୍ଷଣ କରିବାରେ ପ୍ରବୃତ୍ତ ହେଲେ, ତାହା ସୁମହତ୍ । ସିଂହ ଯେପରି କ୍ଷୁଦ୍ର ମୃଗମାନଙ୍କୁ ଛିନ୍ନ ଭିନ୍ନ କରି ପକାଏ, ସେହିପରି ଦ୍ରୋଣଙ୍କ ଶରବର୍ଷଣ ଦ୍ୱାରା ପାଣ୍ଡବ ଓ ସୃଞ୍ଜୟଗଣ କମ୍ପିତ ହୋଇ ବାରମ୍ବାର ଭଗ୍ନ ହୋଇଗଲେ । ହେ ରାଜନ୍ ! ବଳବାନ୍ ଦ୍ରୋଣ ପାଣ୍ଡବମାନଙ୍କ ସୈନ୍ୟ ମଧ୍ୟରେ ଅଦ୍ଭୁତ ଭାବରେ ଆଲୋକ ଚକ୍ର ସଦୃଶ ବିଚରଣ କଲେ । ୫୩ ।

ସ୍ଫଟିକ ସଦୃଶ ସ୍ୱଚ୍ଛପତାକାଯୁକ୍ତ ଦ୍ରୋଣଙ୍କର ରଥ ଶାସ୍ତ୍ର-ନିୟମାନୁସାରେ ନିର୍ମିତ ହୋଇଥିଲା । ଅଥଚ ତହିଁରେ ସଂଯୁକ୍ତ ସେହି ପତାକା ବାୟୁଦ୍ୱାରା ଚଞ୍ଚଳ ହେଉଥିଲା । ସେହି ରଥରେ ଯୋଜିତ ଅଶ୍ୱବୃନ୍ଦ ମଧ୍ୟ ନୃତ୍ୟ ଗତିରେ ଧାବମାନ ହେଉଥିଲେ । ସେହି ରଥରେ ଦ୍ରୋଣ ଆରୋହଣ କରି ଗମନ କରିବା ସମୟରେ ତାହା ଆକାଶମାର୍ଗରେ ନଗର ବିଚରଣ କଲା ପ୍ରାୟ ପ୍ରତୀୟମାନ ହେଉଥିଲା । ଈଦୃଶ ରଥାରୂଢ଼ ହୋଇ ଦ୍ରୋଣ ଶତ୍ରୁସେନାଙ୍କୁ ଜାସିତ କରି ସେମାନଙ୍କୁ ସଂହାର କରିବାରେ ପ୍ରବୃତ୍ତ ହେଲେ । ୫୪ ।

# ଅଷ୍ଟମ ଅଧ୍ୟାୟ

ସଞ୍ଜୟ କହିଲେ—ପାଣ୍ଡବମାନେ ଦେଖିଲେ ଯେ ଦ୍ରୋଣ ସେମାନଙ୍କର ଅଶ୍ୱ, ସାରଥି, ରଥ ଓ ହସ୍ତୀମାନଙ୍କୁ ନିହତ କଲେ । ତହୁଁ ପାଣ୍ଡବଗଣ ଅତ୍ୟନ୍ତ ବ୍ୟଥିତ ହେଲେ ଓ କୌଣସି ଉପାୟରେ ଦ୍ରୋଣଙ୍କୁ ନିବାରଣ କରି ପାରିଲେ ନାହିଁ । ୧ ।

ଅନନ୍ତର ରାଜା ଯୁଧିଷ୍ଠିର ଧୃଷ୍ଟଦ୍ୟୁମ୍ନ ଓ ଧନଞ୍ଜୟ ଏ ଦୁହିଁଙ୍କୁ କହିଲେ ଯେ, ତୁମ୍ଭେମାନେ ସର୍ବପ୍ରକାରରେ ଯତ୍ନ କରି ଦ୍ରୋଣଙ୍କୁ ନିବାରଣ କର । ୨ । ଅର୍ଜୁନ ସମସ୍ତ ମହାରଥୀଙ୍କ ସହିତ ମିଳିତ ହୋଇ ଓ ଧୃଷ୍ଟଦ୍ୟୁମ୍ନ ଆପଣା ଅନୁଚରବର୍ଗଙ୍କ ସଙ୍ଗରେ ସେନ ଦ୍ରୋଣଙ୍କୁ ଆକ୍ରମଣ କଲେ । ୩ । କୈକେୟଗଣ, ଘଟୋତ୍କଚ, ଯୁଧିଷ୍ଠିର, ନକୁଳ, ସହଦେବ, ମତ୍ସ୍ୟରାଜ, ଦ୍ରୁପଦପୁତ୍ରମାନେ, ଦ୍ରୌପଦୀପୁତ୍ରମାନେ, ଧୃଷ୍ଟକେତୁ, ସାତ୍ୟକି, ଚେକିତାନ, ମହାରଥ ଯୁଯୁତ୍ସୁ ଓ ପାଣ୍ଡବମାନଙ୍କର ଅନ୍ୟାନ୍ୟ ଅନୁଗତ ପାର୍ଥିବମାନେ ସମସ୍ତେ କ୍ରୁଦ୍ଧ ଓ ସନ୍ତୁଷ୍ଟ ହୋଇ ଆପଣା ଆପଣା କୁଳବୀର୍ଯ୍ୟ ଅନୁସାରେ ଯୁଦ୍ଧକାର୍ଯ୍ୟ କରିବାରେ ପ୍ରବୃତ୍ତ ହେଲେ । ୬ ।

ପାଣ୍ଡବମାନେ ଯେତେବେଳେ ଯୁଦ୍ଧରେ ଆପଣାର ସୈନ୍ୟମାନଙ୍କୁ ରକ୍ଷା କଲେ, ସେତେବେଳେ ଭରଦ୍ୱାଜନନ୍ଦନ ଦ୍ରୋଣ କୋପାବିଷ୍ଟ ହୋଇ ଚକ୍ଷୁଦ୍ୱୟ ଘୂର୍ଣ୍ଣନ କଲେ ଓ ପାଣ୍ଡବ ପକ୍ଷକୁ ଚାହିଁ ରହିଲେ । ୭ । ଯେପରି ବାୟୁ ମେଘମାନଙ୍କୁ କମ୍ପିତ କରେ, ସେହିପରି ଯୁଦ୍ଧଦୁର୍ମଦ ଦ୍ରୋଣ ଅତିଶୟ କୁପିତ ହୋଇ ରଥରେ ଅବସ୍ଥାନ ପୂର୍ବକ ପାଣ୍ଡବ ସୈନ୍ୟମାନଙ୍କୁ ଦଗ୍ଧ କରିବାକୁ ପ୍ରବୃତ୍ତ ହେଲେ । ୮ । ସେ ବୃଦ୍ଧ ହେଲେ ହେଁ ଯୁବା ପୁରୁଷ ପରି ଉନ୍ମତ୍ତ ହୋଇ ରଥ, ଅଶ୍ୱ, ଗଜ ଓ ପଦାତିମାନଙ୍କ ପ୍ରତି ଧାବମାନ ହେଲେ ଓ ଇତସ୍ତତଃ ବିଚରଣ କଲେ । ୯ ।

ହେ ରାଜନ୍ ! ଦ୍ରୋଣଙ୍କର ଅଶ୍ୱସମୂହ ରକ୍ତବର୍ଣ୍ଣ ଓ ବାୟୁପରି ବେଗଗାମୀ ଅଟନ୍ତି । ସେହି କୁଳୀନ ଅଶ୍ୱସବୁ ରକ୍ତଲିପ୍ତାଙ୍ଗ ଓ ଅବିଶ୍ରାନ୍ତ ହୋଇ ଗମନ କଲାବେଳେ ଶୋଭା ବିସ୍ତାର କରୁଥିଲେ । ୧୦ । ସତ୍ୟବ୍ରତ ଦ୍ରୋଣ କାଳସଦୃଶ କ୍ରୁଦ୍ଧ ହୋଇ ପାଣ୍ଡବଙ୍କ ସୈନ୍ୟମାନଙ୍କୁ ଆକ୍ରମଣ କଲେ, ଏହା ଦେଖି ପାଣ୍ଡବ ଯୋଦ୍ଧାମାନେ ଚାରିଆଡ଼େ ପଳାଇଗଲେ । ୧୧ । ସେହି ସୈନ୍ୟବୃନ୍ଦର ପଳାୟନ ସମୟରେ ଓ ପୁନରାବର୍ତ୍ତନ କାଳରେ ଆଉ ସେମାନଙ୍କର ବିଲୋକନ ଓ ଅବସ୍ଥିତି କାଳରେ ଯୁଦ୍ଧକ୍ଷେତ୍ରରେ ଭୟଙ୍କର ପରମ ଦାରୁଣ ଶବ୍ଦ ଉତ୍ପନ୍ନ ହେଲା । ୧୨ । ସେହି ଶବ୍ଦ ଶୂରମାନଙ୍କର ହର୍ଷଜନକ ଓ ଭୀରୁମାନଙ୍କର ଭୟବର୍ଦ୍ଧନ ହୋଇଥିଲା ଓ

ଏହା ପୃଥିବୀ ଓ ଆକାଶ ମଣ୍ଡଳକୁ ପୂର୍ଣ୍ଣ କରିଥିଲା । ୧୩ । ତପୂରେ ରଣ ସ୍ଥଳରେ ଦ୍ରୋଣ ଆପଣାର ନାମକୁ ଶୁଣାଇ ଶତ୍ରୁମାନଙ୍କ ଉପରେ ଶତ ଶତ ଶର ବର୍ଷଣ କଲେ ଓ ଆପଣାର ମୂର୍ତ୍ତିକୁ ଅତି ଭୟଙ୍କର କଲେ । ୧୪ । ହେ ପ୍ରଭୋ ! ବଳଶାଳୀ ଦ୍ରୋଣ ସ୍ଥବିର ହେଲେହେଁ ସେ ଯୁବା ସଦୃଶ ହୋଇ ପାଣ୍ଡବମାନଙ୍କ ସେନା ମଧ୍ୟରେ ଅନ୍ତକ ସଦୃଶ ଉଗ୍ର ରୂପ ଧାରଣ କରି ବିଚରଣ କଲେ । ୧୫ । ସେ ଯୋଦ୍ଧାମାନଙ୍କର ମସ୍ତକ ସବୁକୁ ଓ ଅଳଙ୍କାର ଭୂଷିତ ବାହୁମାନଙ୍କୁ କାଟି ପକାଇଲେ ଓ ଶତ୍ରୁମାନଙ୍କ ରଥମାନଙ୍କୁ ମନୁଷ୍ୟ-ଶୂନ୍ୟ କରି ମହାରବ କଲେ । ୧୬ । ହେ ବିଭୋ ! ଗୋସମୂହ ଶୀତଦ୍ୱାରା ପୀଡ଼ିତ ହେଲେ ଯେପରି କମ୍ପିତ ହୁଅନ୍ତି, ସେହିପରି ଦ୍ରୋଣଙ୍କ ହର୍ଷଜନିତ ଶବ୍ଦ, ବାଣ-ବେଗ ଦ୍ୱାରା ଶତ୍ରୁବୀରବୃନ୍ଦ କମ୍ପିତ ହେଲେ । ୧୭ । ଦ୍ରୋଣଙ୍କର ରଥଘୋଷ, ଜ୍ୟାନିନାଦ ଓ ଧନୁଃଶବ୍ଦଦ୍ୱାରା ଆକାଶରେ ମହାଶବ୍ଦ ଉତ୍ପନ୍ନ ହେଲା ।୧୮। ତାହାଙ୍କର ଧନୁରୁ ସହସ୍ର ସହସ୍ର ଶର ନିଃସୃତ ହୋଇ ଦିଗମାନଙ୍କୁ ଆଚ୍ଛନ୍ନ କଲା ଓ ସେହି ସମସ୍ତ ଶର ଗଜ, ତୁରଙ୍ଗ, ଶତାଙ୍ଗ ଓ ପଦାତିମାନଙ୍କ ଉପରେ ପତିତ ହେଲା । ୧୯ ।

ଯେଉଁ ଦ୍ରୋଣ ଧନୁର ମହାବେଗକୁ ଜାତ କରି ଅସ୍ତ୍ରମାନଙ୍କ ଦ୍ୱାରା ପ୍ରଜ୍ୱଳିତ ଓ ଅଗ୍ନି ସଦୃଶ ହୋଇଥିଲେ, ତାହାଙ୍କୁ ପାଣ୍ଡବ ଓ ପାଞ୍ଚାଳ ସେନାମାନେ ଆକ୍ରମଣ କଲେ । ୨୦ । ମାତ୍ର ଦ୍ରୋଣ ସେହି ଶତ୍ରୁସୈନ୍ୟମାନଙ୍କୁ ଓ ସେମାନଙ୍କ ସଙ୍ଗରେ ଥିବା ଗଜ, ଅଶ୍ୱ, ପଦାତିମାନଙ୍କୁ ଯମାଳୟକୁ ପ୍ରେରଣ କଲେ ଓ ମଧ୍ୟ ଅଳ୍ପ ସମୟ ମଧ୍ୟରେ ସେ ଶତ୍ରୁବୃନ୍ଦର ରକ୍ତ ଦ୍ୱାରା ପୃଥିବୀକୁ କର୍ଦ୍ଦମମୟୀ କରିଦେଲେ । ୨୧ । ଦ୍ରୋଣ ଅବିରାମ ଭାବରେ ପରମାସ୍ତ୍ରମାନଙ୍କୁ ବିସ୍ତୃତ କଲେ ଓ ଅନେକାନେକ ଶର ନିକ୍ଷେପ କରି ଚତୁଆଡ଼େ ଶର-ଜାଳ ସୃଷ୍ଟି କଲେ । ସେ ସମୟରେ ସେ ଶରଜାଳ ସବୁଆଡ଼କୁ ଦେଖା-ଯାଉଥିଲା । ୨୨ । ଯେପରି ମେଘସମୂହରେ ବିଦ୍ୟୁତ୍ ବିଚରଣ କରେ, ସେହିପରି ରଥ, ଅଶ୍ୱ, ଓ ପଦାତିସମୂହରେ ଦ୍ରୋଣଙ୍କର ରଥ-ପତାକା ବିଚରଣ କରୁଥିଲା, ଏହା ଆମ୍ଭେ ଦେଖିଲୁଁ । ୨୩ । ମହାବଳଶାଳୀ

ଦ୍ରୋଣ ଧନୁର୍ବାଣ ହସ୍ତରେ ଧରି କେକେୟ ଦେଶର ରାଜା ପଞ୍ଚଭ୍ରାତା ଓ ପାଞ୍ଚାଳ ରାଜାଙ୍କୁ ଶରଦ୍ୱାରା ମଥନ କଲେ ଓ ଯୁଧିଷ୍ଠିରଙ୍କ ସୈନ୍ୟ ମଧ୍ୟରେ ପ୍ରବେଶ କଲେ । ୨୪ । ଭୀମସେନ, ଅର୍ଜ୍ଜୁନ, ଶିନିଙ୍କ ନାତି ସାତ୍ୟକି, ଦ୍ରୁପଦ ରାଜାଙ୍କ ପୁତ୍ରମାନେ, ଶୈବନନ୍ଦନବୃନ୍ଦ, କାଶୀପତି ଓ ଶିବିରାଜ— ଏମାନେ ସମସ୍ତେ ହୃଷ୍ଟ ଚିତ୍ତରେ ସିଂହନାଦ କଲେ ଓ ଶରସମୂହ ଦ୍ୱାରା ଦ୍ରୋଣଙ୍କୁ ଆଚ୍ଛାଦନ କଲେ । ୨୫ । ଦ୍ରୋଣଙ୍କ ଧନୁରୁ ଯେଉଁ ସବୁ ଶର ବିନିର୍ମୁକ୍ତ ହେଲେ, ସେ ସମସ୍ତର ପୁଙ୍ଖ ଅର୍ଥାତ୍ ମୂଳଭାଗ ସୁବର୍ଣ୍ଣ ଦ୍ୱାରା ରଚିତ । ସେହି ସମସ୍ତ ବାଣ ଶତ୍ରୁ ପକ୍ଷୀୟ ଗଜ, ଅଶ୍ୱ ଓ ପଦାତିବୃନ୍ଦର ଶରୀର ଭେଦ କରି ରକ୍ତାକ୍ତ ହୋଇ ପୃଥିବୀ ମଧ୍ୟରେ ପ୍ରବେଶ କଲେ । ୨୬ । ଶରାଘାତରେ ବିଦ୍ଧ ହୋଇ ପଡ଼ି ଯାଇଥିବା ଗଜ, ଅଶ୍ୱ ଓ ଯୋଦ୍ଧାମାନଙ୍କ ଦ୍ୱାରା ପାଣ୍ଡବପକ୍ଷୀୟ ରଣଭୂମି ଆବୃତ ହୋଇଥିଲା । ଆକାଶ କଳାମେଘ ଦ୍ୱାରା ଆଚ୍ଛାଦିତ ହେଲେ ଯେପରି ଦେଖାଯାଏ, ସେହି ରଣଭୂମି ସେହିପରି ପ୍ରତୀୟମାନ ହୋଇଥିଲା । ୨୭ ।

ଆପଣଙ୍କ ପୁତ୍ର ଦୁର୍ଯ୍ୟୋଧନଙ୍କର ହିତୈଷୀ ହୋଇ ଦ୍ରୋଣ, ସାତ୍ୟକି, ଭୀମ, ଅର୍ଜ୍ଜୁନ, ଅଭିମନ୍ୟୁ, କାଶୀପତି, ସେନାପତି ଧୃଷ୍ଟଦ୍ୟୁମ୍ନ ଓ ଅନ୍ୟାନ୍ୟ ବୀରମାନଙ୍କୁ ହଠାତ୍ ପୀଡ଼ିତ କରିବାରେ ପ୍ରବୃତ୍ତ ହେଲେ । ୨୮ ।

ହେ କୌରବେନ୍ଦ୍ର ମହାରାଜ ! ଯୁଦ୍ଧରେ ସେହି ମହାତ୍ମା ଦ୍ରୋଣ ଏହି ସମସ୍ତ କାର୍ଯ୍ୟ ଓ ଅନ୍ୟାନ୍ୟ ପରାକ୍ରମର କାର୍ଯ୍ୟମାନ କରିଥିଲେ । ପ୍ରଳୟକାଳୀନ ସୂର୍ଯ୍ୟ ଯେପରି ଲୋକ ସମୂହକୁ ସନ୍ତାପିତ କରନ୍ତି, ସେହିପରି ଦ୍ରୋଣ ଶତ୍ରୁପକ୍ଷୀୟମାନଙ୍କ ସନ୍ତାପିତ କରି ଇହଲୋକରୁ ସ୍ୱର୍ଗଧାମକୁ ଗମନ କଲେ । ୨୯ । ସୁବର୍ଣ୍ଣ-ରଥାରୂଢ଼ ସେହି ଶୂର ଦ୍ରୋଣ ଏହିପରି ପାଣ୍ଡବଙ୍କର ଲକ୍ଷ ଲକ୍ଷ ଯୋଦ୍ଧାଙ୍କୁ ସଂହାର କରି ଧୃଷ୍ଟଦ୍ୟୁମ୍ନଙ୍କ ଦ୍ୱାରା ନିଜେ ଯୁଦ୍ଧରେ ନିହତ ହେଲେ । ୩୦ । ଯୁଦ୍ଧରେ ପରାଙ୍ମୁଖ ଓ ଶକ୍ତିଶାଳୀ—ଏପରି ଦୁଇ ଅକ୍ଷୌହିଣୀରୁ ଅଧିକ ଶତ୍ରୁସୈନ୍ୟମାନଙ୍କୁ ସେହି ଧୃତିମାନ୍ ଦ୍ରୋଣ ନିହତ କରି ପରମଗତିକୁ ପ୍ରାପ୍ତ ହେଲେ । ୩୧ । ହେ ରାଜନ୍ ! ପାଞ୍ଚାଳବୃନ୍ଦ ପାଣ୍ଡବମାନଙ୍କ ସହିତ ଏକତ୍ରିତ ହୋଇ ଅଶୁଭ

ଓ ନିଷ୍ଠୁର କର୍ମମାନଙ୍କ ଦ୍ୱାରା ସୁବର୍ଣ୍ଣ-ରଥାସୀନ ଦ୍ରୋଣଙ୍କୁ ନିହତ କଲେ । ନିହତ ହେବା ପୂର୍ବରୁ ଦ୍ରୋଣ ମଧ୍ୟ ଦୁରୂହ କର୍ମମାନ ସମ୍ପାଦନ କରି-ଥିଲେ । ୩୨ ।

ହେ ରାଜନ୍ ! ଯୁଦ୍ଧରେ ଦ୍ରୋଣାଚାର୍ଯ୍ୟ ନିହତ ହୁଅନ୍ତେ ପ୍ରାଣି-ସମୂହର ଓ ସୈନ୍ୟବୃନ୍ଦର ନିନାଦରେ ନଭୋମଣ୍ଡଳ ପରିପୂର୍ଣ୍ଣ ହେଲା । ୩୩ । ପ୍ରାଣୀମାନଙ୍କର "ଅହୋଧିକ୍" ଏହିପରି ଶବ୍ଦ ଭୂମି, ଅନ୍ତରୀକ୍ଷ, ସ୍ୱର୍ଗ, ଦିକ୍ ଓ ବିଦିକ୍‌ମାନଙ୍କୁ ଅନୁନାଦିତ କରି ଭୂମୁଳଭାବରେ ସମୁତ୍‌ଥିତ ହେଲା ।୩୪। ଦେବଗଣ, ପିତୃଗଣ ଓ ଦ୍ରୋଣଙ୍କର ପୂର୍ବ ବାନ୍ଧବ-ଗଣ ମହାରଥ ଭରଦ୍ୱାଜଙ୍କୁ ସେହି ରଣକ୍ଷେତ୍ରରେ ନିହତ ହେବାର ଦେଖିଲେ । ୩୫ । ପାଣ୍ଡବମାନେ ଜୟଲାଭ କରି ସିଂହନାଦ କରିବାକୁ ଆରମ୍ଭ କଲେ ଓ ସେହି ସିଂହନାଦ ଦ୍ୱାରା ଭୂମଣ୍ଡଳ କମ୍ପିତ ହେଲା । ୩୬ ।



# ନବମ ଅଧ୍ୟାୟ

ଧୃତରାଷ୍ଟ୍ର କହିଲେ—ସମସ୍ତ ଅସ୍ତ୍ରଧାରୀଙ୍କ ମଧ୍ୟରେ ଦ୍ରୋଣ ଅସ୍ତ୍ରଯୁଦ୍ଧ-ନିପୁଣ ହେଲେହେଁ ସେ ଏପରି କି କାର୍ଯ୍ୟ କଲେ ଯେ, ତାହାଙ୍କୁ ପାଣ୍ଡବ ଓ ସୃଞ୍ଜୟମାନେ ନିହତ କରିବାକୁ ସମର୍ଥ ହୋଇଥିଲେ ? ୧ । ତାହାଙ୍କର ରଥ କ'ଣ ଭାଙ୍ଗି ଯାଇଥିଲା ? ସେ ଶର ନିକ୍ଷେପ କଲାବେଳେ ତାହାଙ୍କର ଧନୁ କଅଣ ଭଗ୍ନ ହୋଇ ଯାଇଥିଲା ? କିମ୍ବା ସେ ଅସାବଧାନ ଥିବା ସମୟରେ ତାହାଙ୍କର ମୃତ୍ୟୁ ହେଲା ? ୨ ।

ହେ ତାତ ! ସେହି ଦାନ୍ତ ମହାରଥ ଦ୍ରୋଣ ତ ଶତ୍ରୁମାନଙ୍କର ଦୁର୍ଦ୍ଧର୍ଷଣୀୟ ଥିଲେ । ସେହି କୃତୀ ଦ୍ୱିଜଶ୍ରେଷ୍ଠ ଦିବ୍ୟାସ୍ତ୍ରଧାରୀ ଅସ୍ତ୍ର ଯୁଦ୍ଧରେ ମଧ୍ୟ ପାରଙ୍ଗମ ଥିଲେ , ଅଥଚ ବିଚିତ୍ରଯୋଧୀ ଅକ୍ଷୟ୍ୟ-ବୀର ସେହି ଦ୍ରୋଣ ଦୂରରୁ ଲକ୍ଷ୍ୟକୁ ଅବ୍ୟର୍ଥଭାବରେ ବିନ୍ଧ ପାରୁଥିଲେ ଓ ସେ ଧନୁର୍ବିଦ୍ୟାପୂର୍ଣ ହୋଇ ଅସଂଖ୍ୟ ସ୍ୱର୍ଣ୍ଣପୁଙ୍ଖଯୁକ୍ତ ବାଣ

ସମୃଦ୍ଧକୁ ବର୍ଜିତ କରୁଥିଲେ । ଏହିପରି ଦାରୁଣ କର୍ମ କରୁଥିବା କାଳରେ ପାର୍ଷତ ବଂଶୀୟ ପାଞ୍ଚାଳ ରାଜପୁତ୍ର ଧୃଷ୍ଟଦ୍ୟୁମ୍ନ କି ପ୍ରକାରରେ ତାହାଙ୍କୁ ବଧ କଲେ ? ମହାତ୍ମା ଧୃଷ୍ଟଦ୍ୟୁମ୍ନ ଦ୍ରୋଣଙ୍କୁ ନିହତ କରିବାରୁ ଆମ୍ଭଙ୍କୁ ସ୍ପଷ୍ଟ ବୋଧ ହେଉଅଛି ଯେ, ଦୈବ ହିଁ ପୁରୁଷକାର ଅପେକ୍ଷା ବଳବାନ୍ ଅଟେ । ୭ । ଯେଉଁ ବୀର ଦ୍ରୋଣ ଅସ୍ତ୍ରମାନଙ୍କୁ ପ୍ରୟୋଗ କରିବା, ସନ୍ଧାନ କରିବା, ମୋକ୍ଷ ଓ ସଂହାର କରିବା—ଏହି ଚତୁଃପ୍ରକାର ଅସ୍ତ୍ରବିଦ୍ୟାରେ ପ୍ରତିଷ୍ଠିତ ଥିଲେ ଓ ଯେ ଧନୁର୍ଦ୍ଧାରୀମାନଙ୍କର ଆଚାର୍ଯ୍ୟ ଥିଲେ, ତାହାଙ୍କର ଯୁଦ୍ଧରେ ନିହତ ହେବା କଥା ଆମ୍ଭଠାରେ କିପରି କୀର୍ତ୍ତନ କରୁଅଛ ? ସେହି ବ୍ୟାଘ୍ରଚର୍ମାବୃତ ସୁବର୍ଣ୍ଣରଥସ୍ଥ କନକମଣ୍ଡିତ ଶିରସ୍ତ୍ରାଣ-ଭୂଷିତ ଦ୍ରୋଣ ଅଦ୍ୟ ହତ ହୋଇଥିବାର ଶ୍ରବଣ କରି ଆମ୍ଭେ ଶୋକ ନିବାରଣ କରିପାରୁ-ନାହୁଁ । ୮ ।

ହେ ସଞ୍ଜୟ ! ଏ କଥା ସତ୍ୟ ଅଟେ ଯେ, ପର ଦୁଃଖରେ କେହି ପ୍ରାଣତ୍ୟାଗ କରି ପାରେ ନାହିଁ, କାରଣ ଦ୍ରୋଣଙ୍କ ନିହତ ହେବାର ବାର୍ତ୍ତା ଶ୍ରବଣ କରି ମଧ୍ୟ ମନ୍ଦଧୀ ମୁଁ ଏ ପର୍ଯ୍ୟନ୍ତ ଜୀବିତ ଅଛି । ୯ । ବର୍ତ୍ତମାନ ଦୈବବଳ ହିଁ ପ୍ରଧାନ ; ଆଉ ପୁରୁଷକାର ନିରର୍ଥକ ବୋଲି ବୋଧ ହେଉଅଛି । ଆମ୍ଭର ହୃଦୟ ନିଶ୍ଚୟ ଲୌହନିର୍ମିତ ମନେ କରୁଅଛୁଁ । ଅତଏବ ଦ୍ରୋଣଙ୍କର ମରଣବାର୍ତ୍ତା ଶ୍ରବଣ କରି ସୁଦ୍ଧା ଆମ୍ଭର ହୃଦୟ ଶତ ଖଣ୍ଡ ହୋଇ ଫାଟି ଯାଉନାହିଁ । ବିଦ୍ୟାର୍ଥୀ ବ୍ରାହ୍ମଣଗଣ ଓ ରାଜପୁତ୍ରମାନେ ବ୍ରହ୍ମଅସ୍ତ୍ର ଓ ଦୈବଅସ୍ତ୍ର ବିଦ୍ୟାକୁ ଶିକ୍ଷାକରିବା ନିମନ୍ତେ ଯେଉଁ ଦ୍ରୋଣଙ୍କୁ ଉପାସନା କରୁଥିଲେ, ସେ କି ପ୍ରକାର ଅଦ୍ୟ ମୃତ୍ୟୁମୁଖରେ ପତିତ ହେଲେ ? ସମୁଦ୍ର ଶୁଖିଗଲେ, ସୁମେରୁ ପର୍ବତ ପତିତ ହେଲେ ଓ ଭାସ୍କର ତଳକୁ ଖସି ପଡ଼ିଲେ ଯେପରି ଅସହନୀୟ ହୁଏ, ସେହିପରି ଦ୍ରୋଣଙ୍କ ମୃତ୍ୟୁ ଆମ୍ଭେ ସହି ପାରୁନାହୁଁ ।

ଯେଉଁ ଶତ୍ରୁତାପନ ଦ୍ରୋଣ ଦୁଷ୍ଟଲୋକମାନଙ୍କର ପ୍ରତିଯୋଦ୍ଧା ଥିଲେ ଓ ଧାର୍ମିକମାନଙ୍କର ରକ୍ଷକ ଥିଲେ ; ଯେ ଦରିଦ୍ର ଓ ଦୁରବସ୍ଥାପନ୍ନ ଲୋକମାନଙ୍କ ନିମନ୍ତେ ପ୍ରାଣତ୍ୟାଗ କରିବାକୁ ସୁଦ୍ଧା ପ୍ରସ୍ତୁତ ଥିଲେ; ଯାହାଙ୍କର ବିକ୍ରମ ହେତୁରୁ ଆମ୍ଭ ଭାଗ୍ୟହୀନ ପୁତ୍ରମାନଙ୍କର ଜୟଲାଭ

ଆଶା ଥିଲା ଓ ଯେ ବୁଦ୍ଧିରେ ବୃହସ୍ପତି ଓ ଶୁକ୍ରାଚାର୍ଯ୍ୟଙ୍କ ସଦୃଶ ଥିଲେ, ସେହି ଦ୍ରୋଣ କପରି ନିହତ ହେଲେ ? ତାହାଙ୍କର ସିନ୍ଧୁ ଦେଶୀୟ ବୃହତ୍ ଅଶ୍ୱମାନେ ରକ୍ତବର୍ଣ୍ଣ, ବଳଶାଳୀ, ଧୀର ଓ ହିରଣ୍ମୟ ଜାଲରେ ସମାବୃତ ଥିଲେ । ସେମାନେ ବାୟୁତୁଲ୍ୟ ବେଗଗାମୀ ଓ ହ୍ରେଷାରବକାରୀ ଓ ଯୁଦ୍ଧରେ ସେମାନେ ସମସ୍ତ ଶସ୍ତ୍ର ଅତିକ୍ରମ କରି ଦୃଢ଼ଭାବରେ ରଥକୁ ଉତ୍ତମ ରୂପେ ବହନ କରୁଥିଲେ । ଦ୍ରୋଣଙ୍କର ଈଦୃଶ ଘୋଟକମାନେ ଯୁଦ୍ଧରେ ବିହ୍ୱଳ ହୋଇ ଯାଇଥିଲେ କି ? ହେ ତାତ ! ସେହି ଦ୍ରୋଣଙ୍କ ସୁବର୍ଣ୍ଣ ରଥରେ ସଯୋଜିତ ଘୋଟକମାନେ ହସ୍ତୀମାନଙ୍କର ବୃଂହିତ ଶବ୍ଦ, ଶଙ୍ଖଧ୍ୱନି, ଦୁନ୍ଦୁଭି ଧ୍ୱନି ଓ ଧନୁର୍ଗୁଣ ଶବ୍ଦରେ ଏବଂ ଶରବର୍ଷଣ ଓ ଅନ୍ୟାନ୍ୟ ଶସ୍ତ୍ର ପତନ ଦ୍ୱାରା ବିଚଳିତ ହେଉ ନ ଥିଲେ । ସେମାନେ ବ୍ୟଥା ବା ଶ୍ୱାସ ଦ୍ୱାରା କ୍ଳେଶ ଅନୁଭବ କରୁ ନ ଥିଲେ ଓ ସେହି ଶୀଘ୍ରଗାମୀ ଅଶ୍ୱସମୂହ ଶତ୍ରୁମାନଙ୍କର ଅଜେୟ ଥିଲେ । ଅତଏବ ଏହି ଅଶ୍ୱମାନଙ୍କ ସାହାଯ୍ୟରେ ଶତ୍ରୁମାନଙ୍କୁ ପରାସ୍ତ କରିବାର ଆଶା ଥିଲା । ତଥାପି ଈଦୃଶ ଗୁଣବିଶିଷ୍ଟ ତୁରଙ୍ଗବୃନ୍ଦ ପାଣ୍ଡବ ସୈନ୍ୟମାନଙ୍କ କର୍ତ୍ତୃକ ନରବୀର ସଦୃଶ ହତ ହେଲେ । ସେମାନେ କି ନିମିତ୍ତ ପାଣ୍ଡବ ସୈନ୍ୟମାନଙ୍କଠାରୁ ରକ୍ଷା ପାଇଲେ ନାହିଁ ? ଯାହାଙ୍କ ବିକ୍ରମରେ ଶତ୍ରୁପକ୍ଷୀୟ ଶୂରମାନେ ଯୁଦ୍ଧରେ କ୍ରନ୍ଦନ କରୁଥିଲେ, ସେହି ଦ୍ରୋଣ ସ୍ୱର୍ଣ୍ଣ-ଶୋଭିତ ଉତ୍ତମ ରଥରେ ଆରୋହଣ କରି କୀଦୃଶ କାର୍ଯ୍ୟ କରିଥିଲେ ? ଧନୁର୍ଦ୍ଧରବୃନ୍ଦ ଯାହାଙ୍କଠାରୁ ବିଦ୍ୟା ଶିକ୍ଷା କରି ସମସ୍ତ ଲୋକରେ ଜୀବିକା ନିର୍ବାହ କରନ୍ତି, ସେହି ସତ୍ୟସନ୍ଧ ବଳବାନ୍ ଦ୍ରୋଣ କ'ଣ କରିଥିଲେ ?

ଇନ୍ଦ୍ର ଯେପରି ସ୍ୱର୍ଗରେ ଦ୍ରୋଣ ସେହିପରି ଧନୁର୍ଦ୍ଧରଗଣଙ୍କ ମଧ୍ୟରେ ଶ୍ରେଷ୍ଠ ।୨୨। ସେହି ଭୀଷଣକର୍ମା ଦ୍ରୋଣଙ୍କ ନିକଟକୁ କେଉଁମାନେ ପ୍ରତିଯୁଦ୍ଧରେ ଗମନ କରିଥିଲେ ? ଦ୍ରୋଣଙ୍କୁ ଦେଖି ପାଣ୍ଡବମାନେ ପୂର୍ବରୁ ପଳାୟନ କରିଥିଲେ । ତତ୍ପରେ ପାଞ୍ଚାଳ ଦେଶର ଯୋଦ୍ଧାମାନଙ୍କୁ ଓ ସମସ୍ତ ସୈନ୍ୟଙ୍କୁ ସଙ୍ଗରେ ଘେନି ଅନୁଜମାନଙ୍କ ସହିତ ଧର୍ମରାଜ ଯୁଧିଷ୍ଠିର ଦିବ୍ୟାସ୍ତ୍ର ପ୍ରୟୋଗକାରୀ ମହାବଳ ଦ୍ରୋଣଙ୍କୁ ପୁଣି କି ପ୍ରକାର ଘେରିଆଣି ଆକ୍ରମଣ କଲେ ? ବୋଧହୁଏ ଅର୍ଜ୍ଜୁନ ଆତ୍ମପକ୍ଷର ଅନ୍ୟାନ୍ୟ ରଥୀମାନଙ୍କୁ ପ୍ରଥମରେ

ଶରଦ୍ୱାରା ସମାବୃତ କରିବାରୁ ପାପାତ୍ମା ଧୃଷ୍ଟଦ୍ୟୁମ୍ନ ଦ୍ରୋଣଙ୍କୁ ଆକ୍ରମଣ କରିଥିଲା ।

ଅର୍ଜୁନଙ୍କ ଦ୍ୱାରା ସଂରକ୍ଷିତ ହୋଇ ଧୃଷ୍ଟଦ୍ୟୁମ୍ନ ଏକା ଦ୍ରୋଣଙ୍କୁ ନିହତ କରିପାରେ । ତେଜସ୍ୱୀ ଦ୍ରୋଣଙ୍କୁ ବଧ କରିପାରିବା ଭଳି ବ୍ୟକ୍ତି ଧୃଷ୍ଟଦ୍ୟୁମ୍ନଙ୍କ ବ୍ୟତୀତ ଅନ୍ୟ କାହାରିକୁ ଆମ୍ଭେ ଦେଖୁନାହୁଁ । ୨୭ । ଯେପରି ପିପୀଲିକାଗଣ ସର୍ପକୁ ବେଢ଼ି ବ୍ୟାକୁଳିତ କରନ୍ତି, ସେହିପରି କେକେୟ, ଚେଦି, କାରୁଷ, ମତ୍ସ୍ୟ ଓ ଅନ୍ୟାନ୍ୟଦେଶୀୟ ରାଜାମାନଙ୍କ କର୍ତ୍ତୃକ ପରିବେଷ୍ଟିତ ହୋଇ ବଳିଷ୍ଠ ରୌଦ୍ରକର୍ମା ଧୃଷ୍ଟଦ୍ୟୁମ୍ନ ଅତି ଦୁରୂହ କାର୍ଯ୍ୟରେ ଆସକ୍ତ ଥିବା ଦ୍ରୋଣାଚାର୍ଯ୍ୟଙ୍କୁ ବ୍ୟାକୁଳିତ କରି ନିହତ କରିଅଛି—ଏହା ଆମ୍ଭ ଧାରଣା । ଯେଉଁ ଦ୍ରୋଣାଚାର୍ଯ୍ୟ ସମସ୍ତ ବେଦ-ବେଦାଙ୍ଗ ଓ ଇତିହାସମାନଙ୍କୁ ଅଧ୍ୟୟନ କରିଥିଲେ, ସମୁଦ୍ର ଯେପରି ନଦୀଗଣର ଆଶ୍ରୟସ୍ଥାନ, ସେହିପରି ଯେଉଁ ଦ୍ରୋଣ ବ୍ରାହ୍ମଣମାନଙ୍କର ଆଶ୍ରୟସ୍ଥଳୀ ଥିଲେ ଓ ଯେଉଁ ଶତ୍ରୁତାପନ ଦ୍ରୋଣ କ୍ଷତ୍ରିୟ ଧର୍ମ ଓ ବ୍ରାହ୍ମଣ ଧର୍ମ—ଏ ଉଭୟ ଧର୍ମର ଆଶ୍ରୟ ଥିଲେ, ସେହି ବୃଦ୍ଧ ବ୍ରାହ୍ମଣ କିପରି ଶସ୍ତ୍ରଦ୍ୱାରା ନିହତ ହେଲେ ?

ଦ୍ରୋଣ ଅସହିଷ୍ଣୁ ହୋଇ ପାଣ୍ଡବମାନଙ୍କ ନିମନ୍ତେ ଆମ୍ଭଠାରୁ ଅନେକ କ୍ଳେଶ ପାଇଥିଲେ । କ୍ଷମାର ଅଯୋଗ୍ୟ କୁନ୍ତୀପୁତ୍ରମାନଙ୍କୁ କ୍ଷମା କରିଥିଲେ ; ତାହାଁର ଏହି ଫଳ ପ୍ରାପ୍ତ ହେଲା । ଯେଉଁ ଦ୍ରୋଣଙ୍କ କର୍ମଦ୍ୱାରା ପୃଥିବୀସ୍ଥ ଧନୁର୍ଦ୍ଧର ଜୀବିକା ନିର୍ବାହ କରନ୍ତି, ସେହି ସତ୍ୟସନ୍ଧ ସୁକୃତୀ ଦ୍ରୋଣଙ୍କୁ ପାଣ୍ଡବମାନେ ରାଜ୍ୟଲୋଭରେ କିପରି ହତ କଲେ ? ସେ ସ୍ୱର୍ଗର ଇନ୍ଦ୍ରପରି ମହାବଳ, ମହାସତ୍ତ୍ୱ ଓ ଶ୍ରେଷ୍ଠ ଥିଲେ । କ୍ଷୁଦ୍ର ମତ୍ସ୍ୟ-ମାନେ ତିମିକୁ ନିହତ କଲା ପ୍ରାୟ ପାର୍ଥଗଣ ତାହାଙ୍କୁ କିପରି ବିନାଶ କଲେ ? ଲଘୁହସ୍ତ, ବଳବାନ୍, ଦୃଢ଼ଧନ୍ୱା, ଅରିମର୍ଦ୍ଦନ କୌଣସି ପୁରୁଷ ବିଜୟାକାଂକ୍ଷୀ ହୋଇ ଯାହାଙ୍କ ନିକଟରେ ଉପସ୍ଥିତ ଥିଲେ ପ୍ରାଣ ନେଇ ଫେରି ଆସେ ନାହିଁ ଓ ବେଦକାମୀ ବ୍ରାହ୍ମଣମାନଙ୍କର ବ୍ରହ୍ମଘୋଷ ଓ ଧନୁର୍ବେଦମାନଙ୍କର ଜ୍ୟାଘୋଷ ଆଜୀବନ ଯାହାଙ୍କୁ ପରିତ୍ୟାଗ କରି ନ ଥିଲେ ; ଯେ ସିଂହ ଓ ହସ୍ତୀ ସଦୃଶ ପରାକ୍ରମଶାଳୀ ଆଉ ଲଜ୍ଜାଶୀଳ

ମ୍ ଅପରାଜିତ ଥିଲେ ସେହି ଅପାନ ପୁରୁଷଶ୍ରେଷ୍ଠ ଦ୍ରୋଣଙ୍କର ମୃତ୍ୟୁକଥା ଆମ୍ଭଠାରେ ଅସହ୍ୟ ହେଉଅଛି ।

ହେ ସଞ୍ଜୟ ! ଯେ ନିଜେ ଦୁର୍ଦ୍ଧର୍ଷ ଓ ଯାହାଙ୍କର ବଳ ଓ ଯଶକୁ ଅନ୍ୟ କେହି ବ୍ୟକ୍ତି ଧର୍ଷଣ କରି ପାରନ୍ତି ନାହିଁ, ସେହି ଦ୍ରୋଣଙ୍କୁ କୁରୁପ୍ରବୀରମାନଙ୍କ ସମ୍ମୁଖରେ ଧୃଷ୍ଟଦ୍ୟୁମ୍ନ କିପରି ବଧ କଲା ? ତାହାଙ୍କୁ ରକ୍ଷା କରିବା ନିମନ୍ତେ ତାହାଙ୍କ ନିକଟରେ ଆଉ କେଉଁମାନେ ତାହାଙ୍କ ଅଗ୍ରଭାଗରେ ଯୁଦ୍ଧ କରିଥିଲେ ? କେଉଁମାନେ ଅବା ଦୁର୍ଗମ ଗତିକୁ ଅଙ୍ଗୀକାର କରି ତାହାଙ୍କ ପଶ୍ଚାଦ୍‌ଭାଗରେ ଯୁଦ୍ଧ କରିଥିଲେ ? କେଉଁମାନେ ତାହାଙ୍କ ଦକ୍ଷିଣ ଓ ବାମଭାଗ ରକ୍ଷା କରିଥିଲେ ? । ୩୯ । ଦ୍ରୋଣ ଯେତେବେଳେ ତାହାଙ୍କର ଅଗ୍ରବର୍ତ୍ତୀ ହୋଇଥିଲେ, କେଉଁମାନେ ଅବା ସେଠାରେ ତନୁ ତ୍ୟାଗ କରି ପ୍ରତିକୂଳ ମରଣକୁ ପ୍ରାପ୍ତ ହୋଇଥିଲେ ? । ୪୦ । ତାହାଙ୍କ ଯୁଦ୍ଧରେ କେଉଁମାନେ ପରମଗତିକୁ ପ୍ରାପ୍ତ ହୋଇଛନ୍ତି ? ତାହାଙ୍କ ରକ୍ଷା ନିମନ୍ତେ ଯେଉଁ କ୍ଷତ୍ରିୟମାନେ ନିଯୁକ୍ତ ହୋଇଥିଲେ, ସେହି ମନ୍ଦଗତି କ୍ଷତ୍ରିୟବୃନ୍ଦ କି ଭୟରେ ତାହାଙ୍କୁ ପରିତ୍ୟାଗ କରିଥିଲେ ? ୪୧ । ସେ କି ରକ୍ଷକବିହୀନ ଓ ଏକାକୀ ହୋଇ ଶତ୍ରୁମାନଙ୍କ ଦ୍ୱାରା ନିହତ ହୋଇ ଅଛନ୍ତି ?

ଦ୍ରୋଣ ମହାଶୂର ଅଟନ୍ତି । ଭୟଙ୍କର ଆପଦ ପଡ଼ିଲେ ସୁଦ୍ଧା ସେ ଶତ୍ରୁମାନଙ୍କୁ ପିଠି ଦେଖାନ୍ତି ନାହିଁ ଅର୍ଥାତ୍ ଯୁଦ୍ଧରୁ ଭୟରେ କଦାପି ପଳାନ୍ତି ନାହିଁ । ତାହାଙ୍କୁ ତେବେ ଶତ୍ରୁମାନେ କିପରି ନିହତ କଲେ ? ହେ ସଞ୍ଜୟ ! ଆର୍ଯ୍ୟ ବ୍ୟକ୍ତିମାନେ ଅତ୍ୟନ୍ତ ବିଷମ ବିପଦରେ ମଧ୍ୟ ଶକ୍ତି, ପରାକ୍ରମ ଦେଖାନ୍ତି ବୋଲି ଯାହା କଥିତ ଅଛି, ସେ ଗୁଣ ମଧ୍ୟ ଦ୍ରୋଣଙ୍କଠାରେ ବିଦ୍ୟମାନ ଥିଲା । ହେ ବତ୍ସ ! ଆମ୍ଭର ମନ ମୁଗ୍‌ଧ ହେଉଅଛି । ବର୍ତ୍ତମାନ ନିବୃତ୍ତ ହୁଅ, ସଂଜ୍ଞା ଲାଭ କଲେଁ ପୁନର୍ବାର ତୁମ୍ଭଙ୍କୁ ପଚାରିବୁଁ । ୪୫ ।



# ଦଶମ ଅଧ୍ୟାୟ

ବୈଶମ୍ପାୟନ ବୋଇଲେ—ସୂତପୁତ୍ର ସଞ୍ଜୟଙ୍କୁ ଧୃତରାଷ୍ଟ୍ର ଏହି ପ୍ରକାରେ ପ୍ରଶ୍ନ କରି ଦୁଃଖରେ ଅତ୍ୟନ୍ତ କାତର ହେଲେ ଓ ଆପଣା ପୁତ୍ରମାନଙ୍କ ଜୟରେ ନିରାଶ ହୋଇ ଭୂମି ଉପରେ ପତିତ ହେଲେ । ୧ । ଧୃତରାଷ୍ଟ୍ର ଏହିପରି ସଂଜ୍ଞାହୀନ ହୋଇ ପଡ଼ିଯିବାର ଦେଖି ପରିଚାରିକାମାନେ ସୁଶୀତଳ ଜଳ ତାହାଙ୍କ ଉପରେ ସେଚନ କଲେ ଓ ପବିତ୍ର ଗନ୍ଧଯୁକ୍ତ ବ୍ୟଜନ ଦ୍ୱାରା ତାହାଙ୍କୁ ବିଞ୍ଚିଲେ । ୨ । ସେ ଭୂମିରେ ପଡ଼ିଯିବାର ଦେଖି ଭରତକୁଳ ସ୍ତ୍ରୀମାନେ ତାହାଙ୍କୁ ଚାରିଆଡ଼ୁ ବେଢ଼ି ବସିଲେ ଓ ହସ୍ତଦ୍ୱାରା କଳେବର ସ୍ପର୍ଶ କଲେ । ୩ । ଉତ୍ତମ ନାରୀମାନଙ୍କ କଣ୍ଠସବୁ ଶୋକବାଷ୍ପ ଦ୍ୱାରା ରୁଦ୍ଧ ହେଲା । ସେମାନେ ଧୀରେ ଧୀରେ ରାଜାଙ୍କୁ ଭୂମିରୁ ଉଠାଇ ଆସନରେ ବସାଇଲେ । ୪ । ରାଜା ମୂର୍ଚ୍ଛାରେ ନିଶ୍ଚେଷ୍ଟ ହୋଇ ଆସନରେ ବସିଲେ ଓ ସ୍ତ୍ରୀମାନେ ତାହାଙ୍କୁ ସେହି ସମୟରେ ଚାରିଆଡ଼ୁ ବ୍ୟଜନ କରିବାରେ ପ୍ରବୃତ୍ତ ହେଲେ । ୫ । ତତ୍ପରେ ରାଜା କ୍ରମେ କ୍ରମେ ଚେତନା ପାଇ କମ୍ପିତ ଶରୀରରେ ସଞ୍ଜୟଙ୍କୁ ପୁନର୍ବାର ଯଥାତଥ ଭାବରେ ପଚାରିଲେ । ୬ ।

ଧୃତରାଷ୍ଟ୍ର କହିଲେ – ସୂର୍ଯ୍ୟ ଯେପରି ଆପଣାର ତେଜୋରାଶି ଦ୍ୱାରା ଅନ୍ଧକାର ବିନାଶ କରି ଉଦୟ ହୁଅନ୍ତି, ସେହିପରି ଅଜାତଶତ୍ରୁ ଯୁଧିଷ୍ଠିର ଦ୍ରୋଣଙ୍କ ସମ୍ମୁଖରେ ଉପସ୍ଥିତ ହୁଅନ୍ତେ ତାହାଙ୍କୁ କିଏ ନିବାରଣ କରିଥିଲେ ? ୭ । ଋତୁମତୀ କରିଣୀର ସଙ୍ଗମ ବାଞ୍ଛା କରି ମାତଙ୍ଗ ଯେପରି ଅନ୍ୟ ହସ୍ତିମାନଙ୍କୁ ପ୍ରହାର କରେ ଓ ମଦଗଳିତ ତରସ୍ୱୀ, କ୍ରୁଦ୍ଧ, ପ୍ରମତ୍ତ ଓ ଆସକ୍ତଚିତ୍ତ ହୋଇଥାଏ, ସେହିପରି ଅଜେୟ ମାତଙ୍ଗତୁଲ୍ୟ ସତ୍ୟସଙ୍ଗର ଯୁଧିଷ୍ଠିର କୌରବବୀରମାନଙ୍କୁ ଅତିକ୍ରମ କରି ଏକାକୀ ସମୁଦାୟ ଦୁର୍ଯ୍ୟୋଧନବଳକୁ ଘୋରଚକ୍ଷୁଦ୍ୱାରା ଦଗ୍ଧ କରି ପାରନ୍ତି । ୧୦ । ଏବଂ ଯେ ଦୃଷ୍ଟିପାତ କଲା ମାତ୍ରେ ଶତ୍ରୁମାନେ ନଷ୍ଟ ହୋଇ ଯାଇପାରନ୍ତି, ସେହି ଅକ୍ଷୟ ଧନୁର୍ଦ୍ଧର ଦାନ୍ତ ବହୁମତ ଓ ବିଜୟାସକ୍ତ ଯୁଧିଷ୍ଠିରଙ୍କୁ କେଉଁ ଯୋଦ୍ଧାମାନେ ନିବାରଣ କରିଥିଲେ ? ୧୧ । ଆତ୍ମପକ୍ଷୀୟ କେଉଁ

ଯୋଦ୍ଧାମାନେ ସେହି ଦୁର୍ଦ୍ଧର୍ଷ ନରବ୍ୟାଘ୍ର, ଅକ୍ଷୟବୀର, ମହା ଧନୁର୍ଦ୍ଧର କୁନ୍ତୀପୁତ୍ର ରାଜା ଯୁଧିଷ୍ଠିରଙ୍କ ନିକଟକୁ ଯୁଦ୍ଧାର୍ଥ ଗମନ କରିଥିଲେ ?

ଯେଉଁ ମହାବଳଶାଳୀ, ମହାକାୟ, ମହୋତ୍ସାହସମ୍ପନ୍ନ, ଅଯୁତହସ୍ତୀ ତୁଲ୍ୟ ପରାକ୍ରମୀ ଭୀମ ଶତ୍ରୁସୈନ୍ୟମାନଙ୍କ ମଧ୍ୟରେ ମହତ୍ କର୍ମମାନ ସମ୍ପାଦନ କରନ୍ତି, ସେହି ଭୀମ ଅତ୍ୟନ୍ତ ବେଗରେ ଦ୍ରୋଣଙ୍କୁ ଆକ୍ରମଣ କରିବା ସମୟରେ କେଉଁ କେଉଁ ଶୂରମାନେ ଯୁଦ୍ଧରେ ତାହାଙ୍କର ସମ୍ମୁଖୀନ ହୋଇଥିଲେ ? ୧୯ । ନବ ମେଘବର୍ଣ୍ଣ ଯେଉଁ ଅର୍ଜ୍ଜୁନ ଗୁଣଦ୍ୱାରା ମେଘ ସଦୃଶ ଅତ୍ୟନ୍ତ ବୀର୍ଯ୍ୟବାନ୍ ଥିଲେ, ମେଘରେ ବିଦ୍ୟୁତ୍ ଶୋଭା ପାଇଲା ପରି ଯାହାଙ୍କଠାରେ ଧନୁ ଶୋଭା ପାଉଥିଲା, ଯାହାଙ୍କ ରଥନେମିଶବ୍ଦ ମେଘ ଗର୍ଜ୍ଜନ ତୁଲ୍ୟ ଶୁଣା ଯାଉଥିଲା, ଯେ ଶରଶବ୍ଦଦ୍ୱାରା ଅତ୍ୟନ୍ତ ଦୁର୍ଦ୍ଧର୍ଷ ହୋଇଥିଲେ; ଇନ୍ଦ୍ର ଯେପରି ଜଳ ବର୍ଷଣ କରନ୍ତି, ଯେଉଁ ଅର୍ଜ୍ଜୁନ ରୋଷରୂପ ପବନ ଦ୍ୱାରା ଉଦ୍ଧୂତ ହୋଇ ଅଶନିସମ ବାଣବର୍ଷଣ କରୁଥିଲେ, ଆଉ ତଳ ଓ ନେମିଶବ୍ଦ ଦ୍ୱାରା ସମସ୍ତ ଦିଗକୁ ବିସ୍ଫୂର୍ଜ୍ଜନ କରି ଶୋଣିତ ରୂପ ଜଳରେ ପୃଥ୍ୱୀ ଦିଗକୁ ବୁଡ଼ାଇ ଦେଇଥିଲେ ଓ ଯେ ଭୟଙ୍କର ଶବ୍ଦ କରି ମୃତ ମନୁଷ୍ୟ କଳେବରରେ ପୃଥିବୀ ତଳକୁ ପୂର୍ଣ୍ଣକରି ରୌଦ୍ରମୂର୍ତ୍ତି ଧାରଣ ପୂର୍ବକ ଆଗମନ କରିଥିଲେ; ଯେଉଁ ଧୀମାନ୍ ଅର୍ଜ୍ଜୁନ ବିଜୟୀ ଗାଣ୍ଡୀବଧନୁକୁ ଧାରଣ କରି ଗୃଧ୍ରପତ୍ର ସଂଯୁକ୍ତ ଓ ଶିଳାଶାଣିତ ଶରସମୂହ ଦ୍ୱାରା ଦୁର୍ଯ୍ୟୋଧନ-ଙ୍କର ପୂର୍ବବର୍ତ୍ତୀ ଯୋଦ୍ଧାମାନଙ୍କୁ ଅଭିଷେଚନ କରିଥିଲେ, ସେହି ଅର୍ଜ୍ଜୁନଙ୍କୁ ଦେଖି ତୁମ୍ଭମାନଙ୍କ ମନ ତେତେବେଳେ କିପରି ହୋଇଥିଲା ? ୨୦ ।

ଯେତେବେଳେ କପିଧ୍ୱଜ ଅର୍ଜ୍ଜୁନ ଶରବର୍ଷଣଦ୍ୱାରା ଗଗନ ମଣ୍ଡଳକୁ ଆଚ୍ଛନ୍ନ କରି ଆଗମନ କରିଥିଲେ, ତେତେବେଳେ ତାହାଙ୍କୁ ଦେଖି ତୁମ୍ଭେ-ମାନେ କିପରି ହୋଇଥିଲ ? ୨୧ । ଅର୍ଜ୍ଜୁନ ତୁମ୍ଭମାନଙ୍କ ନିକଟକୁ ଅତି ଭୟଙ୍କର ଶବ୍ଦ କରି ମାଡ଼ି ଆସିଥିଲେ । ଗାଣ୍ଡୀବଧନୁର ସେହି ଭୟଙ୍କର ଶବ୍ଦ ଶୁଣି ଶୁଣି ତୁମ୍ଭମାନଙ୍କ ସୈନ୍ୟମାନେ ତ ବିନାଶପ୍ରାପ୍ତ ହୋଇନାହାନ୍ତି ? ୨୨ । ପବନ ଯେପରି ପ୍ରବଳ ବେଗରେ ପ୍ରବାହିତ ହୋଇ ମେଘମାନଙ୍କୁ ବିଧ୍ୱସ୍ତ କରିଦିଏ, ସେହିପରି ଶରସମୂହ ଦ୍ୱାରା ଧନଞ୍ଜୟ ତୁମ୍ଭମାନଙ୍କ ପ୍ରାଣ ନଷ୍ଟକରି ନାହାନ୍ତି ତ ? ୨୩ । ଯାହାଙ୍କ ନାମ ଶୁଣିଲେ ସୈନ୍ୟମାନଙ୍କ ଆଗରେ ଯେତେ

ଲୋକ ଥାଆନ୍ତି, ସମସ୍ତେ କମ୍ପିତ ହୁଅନ୍ତି, ସେହି ଗାଣ୍ଡୀବଧନୁର୍ଦ୍ଧାରୀ ଅର୍ଜ୍ଜୁନଙ୍କ ପରାକ୍ରମକୁ କେଉଁ ବ୍ୟକ୍ତି ସମରରେ ସହି ପାରିବ ? ୨୪ ।

ସେହି ଅର୍ଜ୍ଜୁନଙ୍କ ଯୁଦ୍ଧରେ ସୈନ୍ୟମାନେ କମ୍ପିତ ହୋଇଥିଲେ ଓ ବୀରମାନେ ଅବଶ୍ୟ ଭୟଯୁକ୍ତ ହୋଇଥିଲେ ; ଏପରି ଅବସ୍ଥାରେ କେଉଁ କେଉଁ ବୀରମାନେ ଦ୍ରୋଣଙ୍କୁ ଛାଡ଼ି ପଳାଇ ନ ଥିଲେ ଓ କେଉଁ କେଉଁ କ୍ଷୁଦ୍ର ବ୍ୟକ୍ତିମାନେ ବା ତାହାଙ୍କୁ ଛାଡ଼ି ଭୟରେ ପଳାଇ ଯାଇଥିଲେ ? ୨୫ । ସେହି ଅମାନୁଷ ଜେତା ଧନଞ୍ଜୟଙ୍କ ସହିତ ଯୁଦ୍ଧ କରି କେଉଁ କେଉଁ ବୀରମାନେ ମୃତ ହୋଇ ଅଛନ୍ତି ? ୨୬ । ସେହି ଶ୍ୱେତାଶ୍ୱ ଅର୍ଜ୍ଜୁନଙ୍କର ବେଗ ଓ ବର୍ଷାସମୟର ମେଘଗର୍ଜ୍ଜନ ସଦୃଶ ତାହାଙ୍କର ସେଉଁ ଗାଣ୍ଡୀବ ଧନୁର ନିର୍ଘୋଷ, ତାହାକୁ ଆମ୍ଭ ସେନାମାନେ ସହନ କରିବାକୁ ଅସମର୍ଥ ଅଟନ୍ତି । ୨୭ । କୃଷ୍ଣ ଯେଉଁ ରଥର ସାରଥି ଓ ଅର୍ଜ୍ଜୁନ ଯେଉଁ ରଥର ରଥୀ ଅଟନ୍ତି, ଏମନ୍ତ ରଥକୁ ଦେବାସୁର-ମାନେ ମଧ୍ୟ ଜୟ କରି ପାରିବେ ନାହିଁ ବୋଲି ଆମ୍ଭେ ବିବେଚନା କରୁଁ । ୨୮ ।

ସତ୍ୟ-ପରାକ୍ରମ ପାଣ୍ଡବ-ନନ୍ଦନ ନକୁଳ ଯୁବା, ଶୂର, ସୁକୁମାର, ଦର୍ଶନୀୟ, ମେଧାବୀ, ନିପୁଣ ଓ ଧୀମାନ୍ ଥିଲେ ; ସେ ଯେତେ-ବେଳେ ଯୁଦ୍ଧରେ ମହାଶବ୍ଦ କରି ସୈନ୍ୟମାନଙ୍କୁ ପୀଡ଼ିତ କରୁଥିଲେ ଓ ଦ୍ରୋଣଙ୍କୁ ଆକ୍ରମଣ କରିଥିଲେ, ତେତେବେଳେ କେଉଁ ବୀରମାନେ ସେହି ନକୁଳଙ୍କୁ ନିବାରଣ କରିଥିଲେ ? ୩୦ । କ୍ରୁଦ୍ଧ ଆଶୀବିଷ ସଦୃଶ ଅଜିଶୟ ଦୁର୍ଜ୍ଜୟ ଓ ଆର୍ଯ୍ୟବ୍ରତ, ଅମୋଘବାଣ, ଲଜ୍ଜାଶୀଳ ଓ ଅପରାଜିତ ଯେଉଁ ସହଦେବ, ସେ ଯୁଦ୍ଧରେ ଆମ୍ଭ ସୈନ୍ୟମାନଙ୍କୁ ମର୍ଦ୍ଦନ କରି ଆସୁଥିବା କାଳରେ ତାହାଙ୍କୁ କେଉଁ କେଉଁ ବୀରମାନେ ଅବରୋଧ କରିଥିଲେ ? ୩୨ । ଯେ ସୌବୀର ରାଜାଙ୍କର ମହତୀ ସେନାକୁ ପ୍ରମଥିତ କରି ସର୍ବାଙ୍ଗସୁନ୍ଦରୀ ଭୋଜ-କନ୍ୟାଙ୍କୁ ମହିଷୀ ସ୍ୱରୂପ ଗ୍ରହଣ କରିଥିଲେ, ଯେଉଁ ପୁରୁଷସିଂହଙ୍କଠାରେ ସତ୍ୟ, ଧୈର୍ଯ୍ୟ, ଶୌର୍ଯ୍ୟ ଓ ବ୍ରହ୍ମଚର୍ଯ୍ୟ—ଏ ଗୁଣମାନ ସର୍ବଦା ବିଦ୍ୟମାନ ଥିଲା, ଯେ ବଳବାନ୍, ସତ୍ୟକର୍ମା, ଅଦୀନ, ଅପରାଜିତ ଓ ଯୁଦ୍ଧରେ ବାସୁଦେବଙ୍କ ସମାନ ଅଟନ୍ତି, ଯେ ବାସୁଦେବଙ୍କୁ ପ୍ରାପ୍ତ ହୋଇ ମଧ୍ୟ ଅର୍ଜ୍ଜୁନଙ୍କ ଉପଦେଶ

ଅନୁସାରେ ଶର ପ୍ରୟୋଗ କାର୍ଯ୍ୟରେ ଦକ୍ଷତା ଲାଭ କରି ଅଛନ୍ତି ଓ ଯେ ଅସ୍ତ୍ରବିଦ୍ୟାରେ ଅର୍ଜ୍ଜୁନଙ୍କ ସମାନ ଅଟନ୍ତି, ଏପରି ଯେ ସାତ୍ୟକି ସେ ଯେତେବେଳେ ଦ୍ରୋଣଙ୍କ ପ୍ରତି ଧାବମାନ ହେଲେ ତେତେବେଳେ ତାହାଙ୍କୁ କେଉଁ ବ୍ୟକ୍ତି ନିବାରଣ କରିଥିଲେ ? ୩୭। ଯେଉଁ ବୀର ସାତ୍ୟକି ବୃଷ୍ଣି ବଂଶ ମଧ୍ୟରେ ଓ ଧନୁର୍ଦ୍ଧରଗଣଙ୍କ ମଧ୍ୟରେ ଶ୍ରେଷ୍ଠ ଅଟନ୍ତି ଓ ଯେ ଅସ୍ତ୍ରରେ, ଯଶରେ ଓ ବିକ୍ରମରେ ପରଶୁରାମଙ୍କ ସମାନ ଅଟନ୍ତି, କେଶବଙ୍କଠାରେ ଯେପରି ତ୍ରୈଲୋକ୍ୟ ଅବସ୍ଥାନ କରଇ, ସେହିପରି ଯେଉଁ ସାତ୍ୟକିଙ୍କଠାରେ ସତ୍ୟ, ଧୃତି, ବୁଦ୍ଧି, ଶୌର୍ଯ୍ୟ ଓ ସର୍ବଶ୍ରେଷ୍ଠ ବ୍ରାହ୍ମ ଅସ୍ତ୍ର—ଏ ସମସ୍ତ ଥିଲେ ; ସେହି ଗୁଣସମ୍ପନ୍ନ ଦେବଦୁର୍ଜ୍ଜୟ, ମହାଧନୁର୍ଦ୍ଧର ସାତ୍ୟକିଙ୍କୁ କେଉଁ ବୀରମାନେ ନିବାରଣ କରିଥିଲେ ? ୩୯ ।

ଯେ ପାଞ୍ଚାଳମାନଙ୍କ ମଧ୍ୟରେ ପ୍ରଧାନ ବୀର ଓ ବାନ୍ଧବମାନଙ୍କ ମଧ୍ୟରେ ଅତ୍ୟନ୍ତ ପ୍ରିୟ ଅଟନ୍ତି, ଯେ ଘୋର ଯୁଦ୍ଧରେ ଅକାତର ହୋଇ ପ୍ରାଣ ବିସର୍ଜନ କରିପାରନ୍ତି, ଯେ ସର୍ବଦା ଉତ୍ତମ କର୍ମକୁ ଭଲ ପାଆନ୍ତି ଓ ଯେ ଅର୍ଜ୍ଜୁନର ହିତରେ ରତ ଥାଇ ଆମ୍ଭର ଅନିଷ୍ଟ କରିବାକୁ ଉଦ୍ୟତ ହୋଇଅଛନ୍ତି; ଆଉ ଯେ ଯମ, କୁବେର, ଆଦିତ୍ୟ, ମହେନ୍ଦ୍ର ଓ ବରୁଣତୁଲ୍ୟ ପ୍ରସିଦ୍ଧ ମହାରଥୀ ଅଟନ୍ତି, ସେହି ଉତ୍ତମୌଜା ଯୁଦ୍ଧରେ ଦ୍ରୋଣଙ୍କ ପ୍ରତି ଧାବମାନ ହେବା ସମୟରେ ତାହାଙ୍କୁ କେଉଁ ଶୂରମାନେ ନିବାରଣ କରିଥିଲେ ? ୪୨ ।ଯେଉଁ ଧୃଷ୍ଟକେତୁ ଚେଦିମାନଙ୍କଠାରୁ ଏକାକୀ ଅପସୃତ ହୋଇ ଆସି ପାଣ୍ଡବମାନଙ୍କର ଆଶ୍ରୟ ନେଇଅଛନ୍ତି ସେହି ଧୃଷ୍ଟକେତୁ ଦ୍ରୋଣଙ୍କ ଆଡ଼କୁ ଧାବମାନ ହେବା ସମୟରେ କିଏ ତାହାଙ୍କୁ ନିବାରଣ କରିଥଲେ ? ୪୩ । ଯେଉଁ କେତୁମାନ୍ ବୀର ଗିରିଦ୍ୱାରରେ ପଳାଇ ଯାଉଥିବା ଦୁରନ୍ତକର୍ମଣୀୟ ରାଜପୁତ୍ରଙ୍କୁ ବଧ କରିଥିଲେ, ସେହି କେତୁମାନ୍ ବୀରଙ୍କୁ ଦ୍ରୋଣଙ୍କ ନିକଟରୁ କିଏ ନିବାରଣ କରିଥିଲେ ? ୪୪ ।

ଯେଉଁ ନରଶ୍ରେଷ୍ଠଙ୍କୁ ସ୍ତ୍ରୀ ଓ ପୁରୁଷ ଉଭୟ ଜାତିର ଗୁଣାଗୁଣ ଜଣା ଅଛି ଓ ଯେ ମହାତ୍ମା ଭୀଷ୍ମଙ୍କର ମୃତ୍ୟୁର କାରଣ ଅଟନ୍ତି ସେହି ଅମ୍ଳାନ ଚେତା ଶିଖଣ୍ଡୀ ଯେତେବେଳେ ଦ୍ରୋଣଙ୍କ ସମ୍ମୁଖକୁ ଆସିଥିଲେ, ତେତେବେଳେ କେଉଁ ବୀରମାନେ ତାହାଙ୍କୁ ନିବାରଣ କରିଥିଲେ ? ୪୭ ।

ଯେଉଁ ଅଭିମନ୍ୟୁଙ୍କଠାରେ ଗୁରୁ ଧନଞ୍ଜୟଙ୍କ ଅପେକ୍ଷା ସମସ୍ତ ବିଦ୍ୟା ଅଧିକ ପରିମାଣରେ ଅଛି ଓ ଯାହାଙ୍କଠାରେ ଅସ୍ତ୍ର, ସତ୍ୟ ଓ ବ୍ରହ୍ମଚର୍ଯ୍ୟ ସର୍ବଦା ବିଦ୍ୟମାନ ଅଛି, ଆଉ ଯେଉଁ ଅଭିମନ୍ୟୁ ବୀର୍ଯ୍ୟରେ କୃଷ୍ଣଙ୍କ ସଦୃଶ, ବଳରେ ଧନଞ୍ଜୟଙ୍କ ସମାନ, ତେଜରେ ଆଦିତ୍ୟଙ୍କ ସଦୃଶ ଓ ବୁଦ୍ଧିରେ ବୃହସ୍ପତିଙ୍କ ପ୍ରାୟ ଅଟନ୍ତି, ସେହି ବ୍ୟାଦିତବଦନ ଅନ୍ତକତୁଲ୍ୟ ମହାତ୍ମା ଅଭିମନ୍ୟୁ ଦ୍ରୋଣଙ୍କ ପ୍ରତି ଧାବମାନ ହେବାର ଦେଖି କେଉଁ କେଉଁ ବୀରମାନେ ତାହାଙ୍କୁ ନିବାରଣ କରିଥିଲେ ? ୪୯ । ତରୁଣବୟସ୍କ, ତରୁଣବୁଦ୍ଧି, ପରବୀରଘାତୀ, ସୁଭଦ୍ରା-ନନ୍ଦନ ଅଭିମନ୍ୟୁ ଯେତେବେଳେ ଦ୍ରୋଣଙ୍କୁ ଆକ୍ରମଣ କଲେ, ସେତେବେଳେ ତୁମ୍ଭମାନଙ୍କର ମନ କେମନ୍ତ ହୋଇଥିଲା ? ୫୦ । ନଦୀମାନେ ଯେପରି ସମୁଦ୍ରାଭିମୁଖରେ ଧାବିତ ହୁଅନ୍ତି, ସେହିପରି ନରଶ୍ରେଷ୍ଠ ଦ୍ରୌପଦୀପୁତ୍ରମାନେ ଯେତେବେଳେ ଦ୍ରୋଣଙ୍କ ଅଭିମୁଖରେ ଧାବିତ ହେଲେ, ତେତେବେଳେ ସେମାନଙ୍କୁ କେଉଁ କେଉଁ ବୀରମାନେ ଅବରୋଧ କରିଥିଲେ ? ୫୧ । ଯେଉଁ ବାଳକମାନେ କୌତୁକ ଓ କ୍ରୀଡ଼ା ପରିତ୍ୟାଗପୂର୍ବକ ଦ୍ୱାଦଶବର୍ଷ କାଳ ଉତ୍ତମ ବ୍ରତ ଧାରଣ କରି ଅସ୍ତ୍ରଶିକ୍ଷାର୍ଥ ଭୀଷ୍ମଙ୍କ ନିକଟରେ ବାସ କରିଥିଲେ, ସେହି ଧୃଷ୍ଟଦ୍ୟୁମ୍ନ-ନନ୍ଦନ କ୍ଷତ୍ରଞ୍ଜୟ, କ୍ଷେତ୍ରଦେବ, କ୍ଷେତ୍ରବର୍ମା ଓ ମାନଦ—ଏହି ଚାରି ବୀରଙ୍କୁ ଦ୍ରୋଣଙ୍କଠାରୁ କେଉଁ କେଉଁ ବୀରମାନେ ନିବାରଣ କରିଥିଲେ ? ୫୩ ।

ଯୁଦ୍ଧରେ ବୃଷ୍ଣିଗଣ ଯାହାଙ୍କୁ ଶତଯୋଦ୍ଧା ଅପେକ୍ଷା ଅଧିକତର ବଳବାନ୍ ବୋଲି ବିବେଚନା କରନ୍ତି, ସେହି ମହାଧନୁର୍ଦ୍ଧର ଚେକିତାନଙ୍କୁ ଦ୍ରୋଣଙ୍କ ନିକଟରୁ କିଏ ନିବାରଣ କରିଥିଲା ? ୫୪ । ଯେ ଯୁଦ୍ଧରେ କଳିଙ୍ଗ ରାଜାମାନଙ୍କ ନିକଟରୁ କନ୍ୟା ହରଣ କରିଥିଲେ, ସେହି ଅଦୀନାତ୍ମା ବୃଦ୍ଧକ୍ଷେମ-ନନ୍ଦନ ଅନାଧୃଷ୍ଟି ଦ୍ରୋଣଙ୍କୁ ଆକ୍ରମଣ କଲାରୁ କିଏ ତାହାଙ୍କୁ ନିବାରଣ କଲା ? ୫୫ ।

ପାଣ୍ଡବମାନଙ୍କର ମାଉସୀର ପୁଅ ଯେ କୈକେୟ ପଞ୍ଚଭ୍ରାତା, ସେମାନେ ଜୟାଭିଳାଷୀ, ଧାର୍ମିକ ଓ ସତ୍ୟ-ପରାକ୍ରମ ଅଟନ୍ତି । ସେମାନଙ୍କର ବର୍ମ, ଆୟୁଧ ଓ ଧ୍ୱଜସବୁ ସାଧବାଣୀ ପୋକ ପରି ରକ୍ତବର୍ଣ୍ଣ

ଅଛି । ସେମାନେ ଦ୍ରୋଣଙ୍କୁ ବିନାଶ କରିବାକୁ ଆଗମନ କରିବାବେଳେ ସେମାନଙ୍କୁ କେଉଁ କେଉଁ ବୀରମାନେ ଆକ୍ରମଣ କରିଥିଲେ ? ୫୭ । ବାରଣାବତରେ ରାଜାମାନେ କ୍ରୋଧପୂର୍ଣ୍ଣ ଓ ମାରଣେଚ୍ଛୁ ହୋଇ ଛ'ମାସକାଳ ଯୁଦ୍ଧ କଲେ ହେଁ ଯେଉଁ ଯୋଧପତିଙ୍କୁ ପରାଜୟ କରି ପାରି ନାହାନ୍ତି, ସେହି ଧନୁର୍ଦ୍ଧରଶ୍ରେଷ୍ଠ, ଶୂର, ସତ୍ୟସନ୍ଧ ମହାବଳ, ନରଶ୍ରେଷ୍ଠ ଯୁଯୁତ୍ସୁଙ୍କୁ ଦ୍ରୋଣଙ୍କଠାରୁ କେଉଁ କେଉଁ ବୀରମାନେ ନିବାରଣ କରିଥିଲେ ? ୫୯ । ବାରାଣସୀରେ ଯେ କନ୍ୟାହରଣ କରିବା ପାଇଁ କନ୍ୟାର୍ଥୀ, ମହାରାଜ କାଶୀରାଜପୁତ୍ରଙ୍କୁ ଯୁଦ୍ଧରେ ଭଲ୍ଲଦ୍ୱାରା ରଥରୁ ପାତିତ କରିଥିଲେ ଓ ଯେ ଦ୍ରୋଣଙ୍କୁ ବିନାଶ କରିବା ନିମନ୍ତେ ସୃଷ୍ଟ ହୋଇଅଛି, ଯେ ପାଣ୍ଡବମାନଙ୍କ ମନ୍ତ୍ରିଶ୍ରେଷ୍ଠ ଓ ଦୁର୍ଯ୍ୟୋଧନର ଅନିଷ୍ଟ ନିମନ୍ତେ ଯାହାଙ୍କୁ ନିଯୁକ୍ତ କରାହୋଇଅଛି ; ଆଜି ଯେ ସମରରେ ଯୋଦ୍ଧାମାନଙ୍କର ଦହନକାରକ ଓ ବିଦାରଣକାରୀ, ସେହି ମହାରଥ ଧୃଷ୍ଟଦ୍ୟୁମ୍ନ ଦ୍ରୋଣଙ୍କ ପ୍ରତି ଧାବମାନ ହେବା ସମୟରେ ତାହାଙ୍କୁ କେଉଁ କେଉଁ ଶୂରମାନେ ନିବାରଣ କରିଥିଲେ ? ୬୨ ।

ଯେଉଁ ଶିଖଣ୍ଡୀ ଦ୍ରୁପଦରାଜଙ୍କ କୋଡ଼ରେ ପରିବର୍ଦ୍ଧିତ ହୋଇ ଅଛନ୍ତି ଓ ଯେ ଅସ୍ତ୍ରବେତ୍ତାମାନଙ୍କ ମଧ୍ୟରେ ଶ୍ରେଷ୍ଠ ଆଜି ଶସ୍ତ୍ରମାନଙ୍କ ଦ୍ୱାରା ପରିରକ୍ଷିତ, ସେହି ଶିଖଣ୍ଡୀଙ୍କୁ କେଉଁ କେଉଁ ଶୂରମାନେ ଦ୍ରୋଣଙ୍କ ନିକଟରୁ ନିବାରଣ କରିଥିଲେ ? ୬୩ ।

ଯେଉଁ ଶତ୍ରୁନିପାତକାରୀ, ମହାରଥ ଶୈବ୍ୟ ବସୁନ୍ଧରାକୁ ଚର୍ମବେଷ୍ଟନ କଲା ପ୍ରାୟ ସମଗ୍ର ପୃଥିବୀକୁ ମହାନ୍ ରଥଘୋଷ ଦ୍ୱାରା ପରିବେଷ୍ଟନ କରିଥିଲେ, ଯେ ପ୍ରଜାମାନଙ୍କୁ ପୁତ୍ରବତ୍ ପାଳନ କରି ସୁମିଷ୍ଟ ଅନ୍ନପାନ, ସୁସଜ୍ଜିତ ଓ ସୁଦକ୍ଷିଣାଯୁକ୍ତ ଦଶଟଗୋଟି ଅଶ୍ୱମେଧ ଓ ସର୍ବମେଧଯଜ୍ଞ ନିର୍ବିଘ୍ନରେ ସମ୍ପନ୍ନ କରିଥିଲେ ; ଗଙ୍ଗାସ୍ରୋତରେ ଯେତେ ବାଲି ଅଛି, ସେହି ପରିମାଣରେ ଯେଉଁ ଶୈବ୍ୟ ଯଜ୍ଞରେ ଗୋଦାନ କରିଅଛନ୍ତି ; ଯାହାଙ୍କ ଦୁଷ୍କର କର୍ମସମସ୍ତ ଅବଲମ୍ବନ କରି ଦେବବୃନ୍ଦ କହିଛନ୍ତି ଯେ, ଭୂତ-ଭବିଷ୍ୟତରେ ଏପରି କାର୍ଯ୍ୟ କେହି କରିବାକୁ ସମର୍ଥ ନୁହନ୍ତି ଓ ସ୍ଥାବର, ଜଙ୍ଗମ ତ୍ରୈଲୋକ୍ୟ ମଧ୍ୟରେ ଏହି ଶିବିବଂଶୀୟ ଉଶୀନର ରାଜାଙ୍କ ସଦୃଶ ଅନ୍ୟ କେହି ଯଜ୍ଞସମ୍ପାଦନକର୍ତ୍ତା ଜନ୍ମି ନାହାଁ କିମ୍ବା ଜନ୍ମିବ ନାହିଁ

ଓ ଲୋକବାସୀ ମାନବମାନେ ଯାହାଙ୍କ ସମାନ ଗତି ପାଇବେ ନାହିଁ, ସେହି ଉଶୀନରଙ୍କ ନପ୍ତା ପ୍ରବଳଶତ୍ରୁଘାତି ମହାରଥ ଶୈବ୍ୟ ଯେତେବେଳେ ଯମପରି ମୁଖ ବ୍ୟାଦାନ କରି ଦ୍ରୋଣଙ୍କ ପ୍ରତି ଧାବମାନ ହୋଇଥିଲେ, ତେତେବେଳେ କିଏ ତାହାଙ୍କୁ ନିବାରଣ କରିଥିଲେ ? ୭୦ ।

ଯୁଦ୍ଧରେ ଯେତେବେଳେ ଶତ୍ରୁମର୍ଦ୍ଦନକାରୀ ମତ୍ସ୍ୟରାଜ ବିରାଟ, ତାହାଙ୍କର ରଥ ଓ ସୈନ୍ୟମାନେ ଦ୍ରୋଣଙ୍କ ପ୍ରତି ଧାବମାନ ହେଲେ, ସେତେବେଳେ କେଉଁ କେଉଁ ବୀର ତାହାଙ୍କୁ ନିବାରଣ କରିଥିଲେ ? ୭୧ । ଯାହାଙ୍କଠାରୁ ଆମ୍ଭର ମହାଭୟ ହୁଏ, ସେହି ବୃକୋଦର-ପୁତ୍ର, ମହାବଳପରାକ୍ରମ, ମାୟାବୀ, ମହାକାୟ, ରାକ୍ଷସ ଘଟୋତ୍କଚ ପାଣ୍ଡବମାନଙ୍କର ଜୟାଭିଳାଷୀ ଓ ଆମ୍ଭମାନଙ୍କର କଣ୍ଟକସ୍ୱରୂପ ହୋଇ ଯେତେବେଳେ ଦ୍ରୋଣଙ୍କ ପ୍ରତି ଧାବମାନ ହେଲେ, ତେତେବେଳେ କିଏ ତାହାଙ୍କୁ ନିବାରଣ କଲା ? ୭୩ ।

ହେ ସଞ୍ଜୟ ! ଏମାନେ ଓ ଏତଦ୍‌ଭିନ୍ନ ଅନ୍ୟାନ୍ୟ ବୀରମାନେ ଯାହାଙ୍କ ପାଇଁ ଯୁଦ୍ଧରେ ପ୍ରାଣସୁଦ୍ଧା ତ୍ୟାଗ କରିବାକୁ ଉଦ୍ୟତ ଅଛନ୍ତି, ସେମାନଙ୍କର ଅଜେୟ ବା କଅଣ ଅଛି ? ୭୪ । ଲୋକନାଥ, ସନାତନ, ଶାର୍ଙ୍ଗଧନ୍ୱା, ପୁରୁଷ ପୁଙ୍ଗବ, ଲୋକଗୁରୁ, ଦିବ୍ୟଭାବାପନ୍ନ, ଦିବ୍ୟାତ୍ମବାନ୍, ନାରାୟଣ, ପ୍ରଭୁ କୃଷ୍ଣ ଯୁଦ୍ଧରେ ଯେଉଁ ପାଣ୍ଡବମାନଙ୍କର ସମ୍ୟକ୍ ପ୍ରକାରରେ ସହାୟ, ଆଶ୍ରୟ ଓ ହିତାର୍ଥୀ ଅଟନ୍ତି, ସେହି ପାଣ୍ଡବମାନଙ୍କର ପରାଜୟ ସମ୍ଭାବନା ବା କଅଣ ? ୭୬ । ତାହାଙ୍କର ଦିବ୍ୟ କର୍ମମାନଙ୍କୁ ବୁଧସମୂହ କୀର୍ତ୍ତନ କରନ୍ତି, ବର୍ତ୍ତମାନ ଆମ୍ଭେ ଆତ୍ମାର ସ୍ଥୈର୍ଯ୍ୟ ନିମନ୍ତେ ସେହି କର୍ମମାନ ଭକ୍ତିପୂର୍ବକ କୀର୍ତ୍ତନ କରିବୁଁ । ୭୭ ।



## ୧୧ ଅଧ୍ୟାୟ

ଧୃତରାଷ୍ଟ୍ର କହିଲେ—ହେ ସଞ୍ଜୟ ! ଗୋବିନ୍ଦ ଯେଉଁ ସମସ୍ତ ଦିବ୍ୟ କର୍ମମାନ କରିଅଛନ୍ତି, ସେ ସମସ୍ତ ଅନ୍ୟ କୌଣସି ପୁରୁଷ ଦ୍ୱାରା

ସାଧ୍ୟ ନୁହେଁ ; ଆମ୍ଭେ ଗୋବିନ୍ଦଙ୍କର ସେହି ସମସ୍ତ କର୍ମକୁ କୀର୍ତ୍ତନ କରୁଅଛୁଁ , ତାହା ତୁମ୍ଭେ ଶୁଣ । ୧ ।

ହେ ସଞ୍ଜୟ ! ଯେତେବେଳେ ମହାତ୍ମା କୃଷ୍ଣ ଗୋପକୁଳରେ ସମ୍ବର୍ଦ୍ଧିତ ହେଉଥିଲେ, ସେହି ସମୟରେ ତ ତାହାଙ୍କର ବାହୁବଳ ତ୍ରିଲୋକରେ ବିଖ୍ୟାତ ହୋଇଅଛି । ୨ । ସେହି ସମୟରେ ଉଚ୍ଚୈଃଶ୍ରବାର ସଦୃଶ ବଳଶାଳୀ, ବାୟୁତୁଲ୍ୟ ବେଗଗାମୀ ଓ ଯମୁନାତଟବାସୀ ହୟରାଜ କେଶୀକୁ କୃଷ୍ଣ ବଧ କରିଥିଲେ । ଆଉ ଗୋସମୂହର ଉପସ୍ଥିତ ମୃତ୍ୟୁସ୍ୱରୂପ ବୃଷରୂପଧାରୀ ଘୋରକର୍ମା ଦାନବକୁ ସେହି କୃଷ୍ଣ ଭୁଜଦ୍ୱୟ ଦ୍ୱାରା ବିନାଶ କରିଥିଲେ । ୪ । ମହାଶୂର ପ୍ରଳମ୍ବକୁ ଓ ନରକ ଜମ୍ଭପୀଠ ଓ ଅମର ସଦୃଶ ମୁରଦୈତ୍ୟକୁ ସେହି ପଦ୍ମଲୋଚନ କୃଷ୍ଣ ବଧ କରି ଅଛନ୍ତି । ୫ । ଆଉ ସେ ମଧ୍ୟ ଜରାସନ୍ଧ ଦ୍ୱାରା ପାଳିତ ମହାତେଜାଙ୍କୁ ସକୁସ ବଂଶରେ ବିକ୍ରମ ଦ୍ୱାରା ଅର୍ଥାତ୍ କୌଣସି ଅସ୍ତ୍ର ନ ଧରି ରଣରେ ନିପାତିତ କରିଅଛନ୍ତି । ୬ ।

ଯେଉଁ ଶୂରସେନ ରାଜା ସମଗ୍ର ଅକ୍ଷୌହିଣୀପତି ଓ ଯେ ଭୋଜରାଜଙ୍କର ମଧ୍ୟମ ଭ୍ରାତା, ଆଉ ଯେ ତେଜସ୍ୱୀ, ବୀର୍ଯ୍ୟବାନ୍, ସୁନାମା ଓ ରଣବିକ୍ରାନ୍ତ ଅଟନ୍ତି, ସେହି ଶୂରସେନ ରାଜାଙ୍କୁ ଓ ତାହାଙ୍କ ସୈନ୍ୟଗଣଙ୍କୁ ସେହି ଅମିତଧୀଶ କୃଷ୍ଣ ଏକା ବଳଦେବଙ୍କ ସାହାଯ୍ୟରେ ଦଗ୍ଧ କରି ଅଛନ୍ତି ।୮। ପରମକୋପନ ଦୁର୍ବାସା ଋଷିଙ୍କୁ କୃଷ୍ଣ ସସ୍ତ୍ରୀକ ହୋଇ ପୂଜା କରିବାରୁ ସେହି ଋଷି କୃଷ୍ଣଙ୍କୁ ଅନେକ ବରଦାନ କରିଥିଲେ । ୯ । ପଦ୍ମନେତ୍ର, ବୀର କୃଷ୍ଣ ସ୍ୱୟମ୍ବର ସ୍ଥଳରେ ରାଜାମାନଙ୍କୁ ପରାଜିତ କରି ଗାନ୍ଧାର ରାଜାର କନ୍ୟାକୁ ବିବାହ କରି ଅଛନ୍ତି । ସେହି ସମୟରେ ଅମର୍ଷମାଣ ରାଜାମାନେ ଉତ୍ତମଜାତୀୟ ଘୋଟକ ସଦୃଶ ତାହାଙ୍କ ବୈବାହିକ ରଥରେ ଯୁକ୍ତ ହୋଇ ପ୍ରତୋଦ (ଚାବୁକ) ଦ୍ୱାରା କ୍ଷତ-ବିକ୍ଷତ ହୋଇଥିଲେ । ୧୧ । ସମଗ୍ର ଅକ୍ଷୌହିଣୀ-ପତି, ମହାବାହୁ ରାଜା ଜରାସନ୍ଧଙ୍କୁ ସେହି ଜନାର୍ଦ୍ଦନ ଉପାୟ ଅବଲମ୍ବନ କରି ଭୀମଙ୍କ ଦ୍ୱାରା ହତ କରାଇ ଅଛନ୍ତି ।୧୨। ରାଜସେନାପତି, ବିକ୍ରମଶାଳୀ, ଚେଦିରାଜ ଶିଶୁପାଳ ଅର୍ଘ୍ୟନିମନ୍ତେ ବିବାଦ କରିବାରୁ କୃଷ୍ଣ

ତାହାଙ୍କୁ ପଶୁ ପରି ହତ କରି ଅଛନ୍ତି । ୧୩ । ଶାଲ୍ୱଙ୍କ ଦ୍ୱାରା ପରିରକ୍ଷିତ ଆକାଶସ୍ଥ ସୌଭନାମକ ଦୁରାସଦ ଦୈତ୍ୟପୁରକୁ ମଧୁବଂଶର ତିଳକ କୃଷ୍ଣ ନିଜର ବିକ୍ରମ ପ୍ରକାଶ କରି ସମୁଦ୍ର ଗର୍ଭରେ ପକାଇ ଦେଇ ଅଛନ୍ତି । ୧୪ ।

ଅଙ୍ଗ, ବଙ୍ଗ, କଳିଙ୍ଗ, ମାଗଧ, କାଶୀ, କୋଶଳ, ବାତ୍ସ୍ୟ, ଗାର୍ଗ୍ୟ, କାରୁଷ, ପୌଣ୍ଡ୍ର, ଆବନ୍ତ୍ୟ, ଦାକ୍ଷିଣାତ୍ୟ, ପାର୍ବତ୍ୟ, ଦାଶେରକ, କାଶ୍ମୀରକ, ଔରସିକ, ପିଶାଚ, ମୁଦ୍‌ଗଲ, କାମ୍ବୋଜ, ବାଟଧାନ, ଚୈଳ, ପାଣ୍ଡ୍ୟ, ତ୍ରିଗର୍ତ୍ତ, ମାଳବ ଓ ଅତ୍ୟନ୍ତ ଦୁର୍ଜୟ ଦରଦଦେଶୀୟ, ଆଉ ଖଶ ଓ ଶକଦେଶୀୟ ରାଜାମାନଙ୍କୁ ଓ ଅନୁଚର ସହିତ ଯବନ ରାଜାମାନଙ୍କୁ ଓ ଅନ୍ୟାନ୍ୟ ନାନାଦିଗରୁ ସମାଗତ ବ୍ୟକ୍ତିମାନଙ୍କୁ ସେହି ପଦ୍ମଲୋଚନ କୃଷ୍ଣ ଯୁଦ୍ଧରେ ପରାଜିତ କରି ଅଛନ୍ତି । ୧୮ ।

ମକରାଦି ଜଳଜନ୍ତୁବେଷ୍ଟିତ ସମୁଦ୍ରରେ ପ୍ରବେଶ କରି ଜଳମଧ୍ୟରେ ବାସ କରୁଥିବା ବରୁଣଙ୍କୁ କୃଷ୍ଣ ପୂର୍ବରେ ଜୟ କରିଅଛନ୍ତି । ୧୯ । ପାତାଳବାସୀ ପଞ୍ଚଜନ ନାମକ ଅସୁରକୁ କୃଷ୍ଣ ଯୁଦ୍ଧରେ ହତ କରି ପାଞ୍ଚଜନ୍ୟ ଶଙ୍ଖ ଲାଭ କରିଅଛନ୍ତି ।୨୦। ମହାବଳ କୃଷ୍ଣ ଅର୍ଜ୍ଜୁନଙ୍କ ସହିତ ଖାଣ୍ଡବ ବନ ଦାହନ ସମୟରେ ଅଗ୍ନିଙ୍କୁ ସନ୍ତୁଷ୍ଟ କରି ତାହାଙ୍କଠାରୁ ଆଗ୍ନେୟ ଅସ୍ତ୍ର ଓ ଦୁର୍ଦ୍ଧର୍ଷ ଚକ୍ର ପ୍ରାପ୍ତ ହୋଇ ଅଛନ୍ତି । ବୀର କୃଷ୍ଣ ଗରୁଡ଼ପୃଷ୍ଠରେ ଆରୋହଣ ପୂର୍ବକ ଅମରାବତୀକୁ ଯାଇ ଇନ୍ଦ୍ରଙ୍କୁ ତ୍ରାସିତ କରିଥିଲେ ଓ ତାହାଙ୍କ ଭବନରୁ ପାରିଜାତ ହରଣ କରିଥିଲେ । ୨୨ । କୃଷ୍ଣଙ୍କର ବିକ୍ରମ ଜାଣିପାରି ଇନ୍ଦ୍ର ମଧ୍ୟ ପାରିଜାତ ହରଣକୁ ସହନ କରି ରହିଲେ । କୃଷ୍ଣଙ୍କ ଦ୍ୱାରା କୌଣସି ରାଜା ଯେ ଅଜିତ ଅଛନ୍ତି, ଏହା ଆମ୍ଭେମାନେ ଶୁଣିନାହୁଁ । ୨୩ ।

ହେ ସଞ୍ଜୟ ! ଆମ୍ଭ ସଭାରେ ପୁଣ୍ଡରୀକାକ୍ଷ କୃଷ୍ଣ ଯେଉଁ ସମସ୍ତ ଅତି ଆଶ୍ଚର୍ଯ୍ୟ କର୍ମମାନ କରିଥିଲେ, ସେ ସମସ୍ତ ଅନ୍ୟ କୌଣସି ବ୍ୟକ୍ତି କି କରିପାରେ ?୨୪। ଆମ୍ଭେ ଭକ୍ତିଭାବରେ ଶରଣାପନ୍ନ ହୋଇ ସେହି ଈଶ୍ୱର କୃଷ୍ଣଙ୍କୁ ଯେପରି ଦର୍ଶନ କରିଥିଲୁଁ, ତଦ୍ଦ୍ୱାରା ଆମ୍ଭର ଶାସ୍ତ୍ରବିହିତ ସମସ୍ତ ବିଷୟମାନ ପ୍ରତ୍ୟକ୍ଷ ପରି ଜଣାଇଅଛି । ୨୫ । ହେ ସଞ୍ଜୟ ! ବିକ୍ରମୀ,

ବୁଦ୍ଧିମାନ୍ ହୃଷୀକେଶ କୃଷ୍ଣଙ୍କର କର୍ମର ଅନ୍ତକୁ କେହି ପ୍ରାପ୍ତହୋଇ ପାରିବ ନାହିଁ । ୨୯ ।

ଗଦ, ଶାମ୍ବ, ପ୍ରଦ୍ୟୁମ୍ନ, ବିଦୂରଥ, ଅଗାବହ, ଅନିରୁଦ୍ଧ, ଗୃରୁଦେଷ୍ଣ, ସାରଣ, ଉଲ୍ମୁକ, ନିଶଠ, ବୀର୍ଯ୍ୟବାନ୍ ଝିଲ୍ଲୀବଭ୍ରୁ, ପୃଥୁ, ବିପୃଥୁ, ଶମୀକ, ଅରିମେଜୟ ଇତ୍ୟାଦି ବଳବାନ୍ ଓ ପ୍ରହାରପଟୁ ବୃଷ୍ଣିବଂଶୀୟ ବୀରମାନେ ଯଦି ବୃଷ୍ଣିବୀର କେଶବଙ୍କ ଦ୍ୱାରା ଆହୂତ ହୋଇ ପାଣ୍ଡବମାନଙ୍କ ସୈନ୍ୟମାନଙ୍କର ଆଶ୍ରୟରେ କିଞ୍ଚିତ୍ ମାତ୍ର ଯୁଦ୍ଧ କରନ୍ତି, ତେବେ ସମସ୍ତ ବିଷୟ ସଂଶୟାପନ୍ନ ହୁଅଇ—ଏହା ଆମ୍ଭର ଧାରଣା । ୩୦ । ଜନାର୍ଦ୍ଦନ ଯେଉଁ ପକ୍ଷରେ, ଅଯୁତବଳଧାରୀ, କୈଳାସଶିଖରଭୁଲ୍ୟ ବୀର ବନମାଳୀ ହଳଧର ମଧ୍ୟ ସେହି ପକ୍ଷରେ । ୩୧ । ହେ ସଞ୍ଜୟ ! ଦ୍ୱିଜାତିସମୂହ ଯେଉଁ ବାସୁଦେବଙ୍କୁ ଅଖିଳ ଜଗତର ପିତା ବୋଲି କୀର୍ତ୍ତନ କରନ୍ତି, ସେହି ବାସୁଦେବ କି ପାଣ୍ଡବମାନଙ୍କ ନିମନ୍ତେ ଯୁଦ୍ଧ କରିବେ ? ୩୨ ।

ହେ ବତ୍ସ ସଞ୍ଜୟ ! ଯଦି ସେହି କୃଷ୍ଣ ପାଣ୍ଡବମାନଙ୍କ ନିମିତ୍ତ ସ୍ୱୟଂ ବର୍ମିତ ହୋଇ ଯୁଦ୍ଧ କରନ୍ତି, ତେବେ କେହି ତାହାଙ୍କର ପ୍ରତିଯୋଦ୍ଧା ହୋଇ ପାରିବେ ନାହିଁ । ୩୩ । ଯଦିଚ କୌରବବୃନ୍ଦ ଅତି କଷ୍ଟରେ ପାଣ୍ଡବମାନଙ୍କୁ ଜୟ କରି ପାରନ୍ତି, ତାହାହେଲେ ବାର୍ଷ୍ଣେୟ କୃଷ୍ଣ ନିଜେ ଅସ୍ତ୍ର ଧାରଣ କରି କୌରବମାନଙ୍କୁ ଓ ସେମାନଙ୍କର ନରପତିବୃନ୍ଦଙ୍କୁ ନିହତ କରି କୁନ୍ତୀଙ୍କୁ ପୃଥିବୀ ଦାନ କରି ପାରନ୍ତି । ୩୫ । ଯେଉଁ ରଥର ସାରଥି ସ୍ୱୟଂ ହୃଷୀକେଶ ଓ ଯୋଦ୍ଧା ଧନଞ୍ଜୟ ଅଟନ୍ତି, ସେହି ରଥର ସମ୍ମୁଖୀନ ହୋଇ କେଉଁ ରଥୀ ଯୁଦ୍ଧ କରିବାକୁ ପ୍ରବୃତ୍ତ ହେବ ? ୩୬ । ଅତଏବ କୌଣସି ଉପାୟରେ ସୁଦ୍ଧା କୌରବମାନଙ୍କର ଜୟ ଦେଖୁନାହୁଁ । ଯାହାହେଉ, ଯେ ପ୍ରକାର ଯୁଦ୍ଧ ହୋଇଥିଲା, ବର୍ତ୍ତମାନ ତାହା ସବୁ ଆମ୍ଭଠାରେ କହ । ୩୭ ।

ଅର୍ଜ୍ଜୁନ କୃଷ୍ଣଙ୍କର ଆତ୍ମା ଓ କୃଷ୍ଣ ମଧ୍ୟ କିରୀଟୀଙ୍କର ଆତ୍ମା ଅଟନ୍ତି । ଅର୍ଜ୍ଜୁନଙ୍କଠାରେ ନିତ୍ୟ ବିଜୟ ଓ କୃଷ୍ଣଙ୍କଠାରେ ଚିରନ୍ତନୀ କୀର୍ତ୍ତି ବିଦ୍ୟମାନ ଅଛି । ୩୮ । ଅର୍ଜ୍ଜୁନ ଲୋକରେ ଅଜେୟ ଅଟନ୍ତି ଓ କୃଷ୍ଣଙ୍କ-

ଠାରେ ସମସ୍ତ ଗୁଣମାନ ଅକ୍ଷୟ ଭୂୟିଷ୍ଠ ଭାବରେ ଓ ଅପରିମିତରୂପେ ବିଦ୍ୟମାନ ଅଛି । ୩୯ । ମୃତ୍ୟୁ ଯେଉଁ ଦୁର୍ଯ୍ୟୋଧନ ସମ୍ମୁଖରେ ବିଦ୍ୟମାନ ଅଛି, ସେହି ଦୁର୍ଯ୍ୟୋଧନ ମୋହବଶରୁ ଓ ଦୈବଦୁର୍ଘଟନାବଶତଃ ଦାଶାର୍ହ (ଦଶାର୍ହବଂଶୀୟ) କୃଷ୍ଣଙ୍କୁ ଓ ପାଣ୍ଡୁପୁତ୍ର ଅର୍ଜ୍ଜୁନଙ୍କୁ ଚିହ୍ନି ପାରୁନାହିଁ, ଏମାନେ ଦୁହେଁ ପୂର୍ବଦେବ ମହାତ୍ମା ନର ଓ ନାରାୟଣ ଅଟନ୍ତି ।୪୧। ଏମାନେ ଦୁହେଁ ଏକାତ୍ମା । ଏମାନେ ପୃଥକ୍ ପୃଥକ୍ ଦୁଇ ମୂର୍ତ୍ତି ଧରି ମର୍ତ୍ତ୍ୟଲୋକରେ ମାନବ-ଗଣର ନୟନଗୋଚର ହେଉଅଛନ୍ତି । ଏହି ଦୁର୍ଦ୍ଧର୍ଷ ଓ ଯଶସ୍ୱୀ ଦୁହେଁ ମନରେ ଇଚ୍ଛା କଲାମାତ୍ରକେ ଏହି ସେନାସବୁକୁ ବିନାଶ କରି ପାରନ୍ତି । ଏମାନେ ଏପରି କରିବାକୁ ସମର୍ଥ ହେଲେ ହେଁ ମାନବ ଶରୀର ଧାରଣ କରି-ଅଛନ୍ତି ବୋଲି ତାହା ଇଚ୍ଛା କରୁନାହାନ୍ତି । ମହାତ୍ମା ଭୀଷ୍ମ ଓ ଦ୍ରୋଣ— ଏ ଦୁହିଁଙ୍କର ମୃତ୍ୟୁ ଯୁଗବିପର୍ଯ୍ୟୟ ତୁଲ୍ୟ ଲୋକମାନଙ୍କୁ ମୋହଜନକ ବୋଧ ହେଉଅଛି । ଏଥିରୁ ସ୍ପଷ୍ଟ ଜଣା ଯାଉଅଛି ଯେ, ବ୍ରହ୍ମଚର୍ଯ୍ୟଦ୍ୱାରା, ବେଦା-ଧ୍ୟୟନ ଦ୍ୱାରା, ଅସ୍ତ୍ରଦ୍ୱାରା ବା ଅନ୍ୟ କୌଣସି କ୍ରିୟାଦ୍ୱାରା କେହି ମୃତ୍ୟୁମୁଖରୁ ପରିତ୍ରାଣ ପାଏ ନାହିଁ ।

ହେ ସଞ୍ଜୟ ! ଲୋକପୂଜିତ, ଅସ୍ତ୍ରପଣ୍ଡିତ ଓ ଯୁଦ୍ଧଦୁର୍ମଦ ଭୀଷ୍ମ ଓ ଦ୍ରୋଣ—ଏ ଦୁହିଁଙ୍କର ମୃତ୍ୟୁ ସମ୍ବାଦ ଶୁଣି ଆମ୍ଭେ କିପରି ଜୀବିତ ଅଛୁଁ ? ପୂର୍ବରେ ଯୁଧିଷ୍ଠିରଙ୍କର ଯେଉଁ ସମ୍ପତ୍ତି ଦେଖି ଆମ୍ଭେମାନେ ଅସୂୟା ପ୍ରକାଶ କରିଥିଲୁଁ, ବର୍ତ୍ତମାନ ଭୀଷ୍ମ ଓ ଦ୍ରୋଣଙ୍କର ବଧ ଶ୍ରବଣ କରି ଆମ୍ଭେମାନେ ଜାଣି ପାରିଲୁ ଯେ, ସେହି ସମ୍ପତ୍ତି ବର୍ତ୍ତମାନ ଯୁଧିଷ୍ଠିରଙ୍କ ଅନୁଗତା ହୋଇଅଛି, ଅର୍ଥାତ୍ ସେହି ସମ୍ପତ୍ତି ଆମ୍ଭମାନଙ୍କୁ ମିଳିବ ନାହିଁ । ଆମ୍ଭର ନିମନ୍ତେ ହିଁ କୁରୁବଂଶର ଏହି ପ୍ରକାର କ୍ଷୟ ଉପସ୍ଥିତ ହୋଇଅଛି । ୪୭ । ହେ ସୂତ ! ଯେଉଁ ଲୋକର କାଳ ପୂର୍ଣ୍ଣ ହୋଇଥାଏ, ତାହାର ବଧ ନିମନ୍ତେ ତୃଣ ମଧ୍ୟ ବଜ୍ରତୁଲ୍ୟ ହୁଏ । ଯେଉଁ ଯୁଧିଷ୍ଠିରଙ୍କ କୋପରେ ମହା-ଧନୁର୍ଦ୍ଧର ଭୀଷ୍ମ ଓ ଦ୍ରୋଣ ନିହତ ହେଲେ, ସେହି ଯୁଧିଷ୍ଠିର ଏହି ଲୋକ ମଧ୍ୟରେ ଅନନ୍ତ ଐଶ୍ୱର୍ଯ୍ୟକୁ ପ୍ରାପ୍ତ ହେଲେ । ଧର୍ମ ଯେ ପ୍ରକୃତି ବଶରୁ ଯୁଧିଷ୍ଠିରଙ୍କୁ ଆଶ୍ରୟ କରିଅଛି । ଆମ୍ଭମାନଙ୍କ ପ୍ରତି ଧର୍ମ ଅନୁକୂଳ ନୁହେଁ । ଏହି କ୍ରୂର କାଳ ଆମ୍ଭର ସମସ୍ତ ବିଷୟକୁ ବିନାଶ କରିବା ନିମନ୍ତେ ନିକଟବର୍ତ୍ତୀ ହୋଇଅଛି ।

ହେ ବତ୍ସ ! ମନସ୍ୱୀ ବ୍ୟକ୍ତିମାନେ ଯେଉଁ ବିଷୟକୁ ଏକପ୍ରକାର ଚିନ୍ତା କରନ୍ତି, ଦୈବ ବଶରୁ ତାହା ଅନ୍ୟ ପ୍ରକାର ହୋଇଥାଏ, ଏହା ଆମ୍ଭର ଧାରଣା । ଅତଏବ ଏହି ଅପରିହାର୍ଯ୍ୟ ସାଧାରଣତ ଅତି କଷ୍ଟଜନକ ଓ ଅନିବର୍ତ୍ତନୀୟ ଏହି ଯେଉଁ ବ୍ୟାପାର ଉପସ୍ଥିତ ହୋଇଅଛି, ସେ ବିଷୟରେ ଯାହା ଯେ ପ୍ରକାର ଘଟିଥିଲା, ତାହା କୀର୍ତ୍ତନ କର । ୫୧ ।

# ୧୨ ଅଧ୍ୟାୟ

ସଞ୍ଜୟ କହିଲେ—ହେ ମହାରାଜା ! ପାଣ୍ଡବ ଓ ସୃଞ୍ଜୟମାନେ ଦ୍ରୋଣଙ୍କୁ ଯେଉଁପରି ନିହତ କଲେ, ସେ ସମସ୍ତ ଆମ୍ଭେ ପ୍ରତ୍ୟକ୍ଷ କରିଅଛୁଁ । ସେ ସବୁ ଆପଣଙ୍କ ନିକଟରେ ବର୍ଣ୍ଣନ କରୁଅଛୁଁ, ଶ୍ରବଣ କରନ୍ତୁ । ୧ ।

ମହାରଥ ଭରଦ୍ୱାଜନନ୍ଦନ ଦ୍ରୋଣ ସମସ୍ତ ସେନାମାନଙ୍କ ମଧ୍ୟରେ ସେନାପତିତ୍ୱ ପ୍ରାପ୍ତ ହୋଇ ଆପଣଙ୍କ ପୁତ୍ରଙ୍କୁ କହିଲେ, ହେ ଭୂପାଳ ! ହେ ଭରତ ! କୌରବଶ୍ରେଷ୍ଠ ଭୀଷ୍ମ ନିହତ ହେଲାରୁ ଆପଣ ଯେ ଆମ୍ଭଙ୍କୁ ସେନାପତି କରି ମାନିତ କରିଅଛନ୍ତି, ତହିଁର ଫଳ ଆପଣ ଲାଭ କରନ୍ତୁ । ଆମ୍ଭେ ଆପଣଙ୍କର ଯେଉଁ ଅଭିଳାଷ ପୂର୍ଣ୍ଣ କରିବୁଁ, ତାହା ଆପଣ ଇଚ୍ଛାନୁସାରେ ପ୍ରାର୍ଥନା କରନ୍ତୁ । ୪ ।

ତତ୍ପରେ ରାଜା ଦୁର୍ଯ୍ୟୋଧନ କର୍ଣ୍ଣଦୁଃଶାସନାଦି ବୀରମାନଙ୍କ ଦ୍ୱାରା ପରିବୃତ ହୋଇ ସେହି ଦ୍ୱିଜଶ୍ରେଷ୍ଠ ଦୁରାସଦ ଆଚାର୍ଯ୍ୟଙ୍କୁ କହିଲେ, ଯଦି ଆପଣ ଆମ୍ଭଙ୍କୁ ବର ପ୍ରଦାନ କରନ୍ତି, ତେବେ ରଥିଶ୍ରେଷ୍ଠ ଯୁଧିଷ୍ଠିରଙ୍କୁ ଜୀବିତ ଅବସ୍ଥାରେ ଧରି ଆମ୍ଭ ନିକଟକୁ ଆଣିବା ହେଉନ୍ତୁ । ୬ ।

ଅନନ୍ତର କୁରୁମାନଙ୍କର ଗୁରୁ ଦ୍ରୋଣ ଆପଣଙ୍କର ପୁତ୍ରର ବାକ୍ୟ ଶ୍ରବଣ କରି ସେନାଗଣଙ୍କୁ ଅତିଶୟ ହର୍ଷିତ କଲେ ଓ ଆପଣଙ୍କ ପୁତ୍ରଙ୍କୁ କହିଲେ ଯେ, କୁନ୍ତୀପୁତ୍ର ରାଜା ଯୁଧିଷ୍ଠିର ଧନ୍ୟ ଅଟନ୍ତି । କିପାଇଁ ଆପଣ

ତାହାଙ୍କୁ ବଧ କରିବାକୁ ଇଚ୍ଛା ନ କରି ତାହାଙ୍କୁ ଗ୍ରହଣ କରିବାକୁ ଇଚ୍ଛା କରୁଅଛନ୍ତି ? ୮ । ହେ ନରଶ୍ରେଷ୍ଠ ! ଆପଣ କାହିଁକି ତାହାଙ୍କୁ ବଧ କରିବାକୁ ଇଚ୍ଛା କଲେ ନାହିଁ ? ତାହାଙ୍କୁ ବଧ କରିବା ନିମିତ୍ତ ଆପଣ ତ ଆମ୍ଭଙ୍କୁ କହିଲେ ନାହିଁ । ଏହା ବଡ଼ ଆଶ୍ଚର୍ଯ୍ୟର ବିଷୟ ଯେ ଧର୍ମରାଜଙ୍କର ଶତ୍ରୁ ହୋଇ କେହି ଜଣେ ନାହାନ୍ତି । ଆପଣ ତାହାଙ୍କୁ ଜୀବିତ ରଖିବାକୁ ଇଚ୍ଛା ରଖିବାରୁ ବୋଧ ହେଉଅଛି ଯେ, ଆପଣ ନିଜର କୁଳରକ୍ଷା କରୁଅଛନ୍ତି । ଅଥବା ହେ ଭରତଶ୍ରେଷ୍ଠ ! ଆପଣ ବର୍ତ୍ତମାନ ପାଣ୍ଡବମାନଙ୍କୁ ଯୁଦ୍ଧରେ ପରାଜୟ କରି ପରେ ଯୁଧିଷ୍ଠିରଙ୍କୁ ରାଜ୍ୟ ଦାନ ଦ୍ୱାରା ତାହାଙ୍କୁ ଭ୍ରାତୃସ୍ନେହରେ ଆବଦ୍ଧ କରିବାକୁ ଇଚ୍ଛା କରୁଅଛନ୍ତି । ଅତଏବ ଧୀମାନ୍ ରାଜା ଯୁଧିଷ୍ଠିର ଧନ୍ୟ ଓ ଶୁଭଲକ୍ଷଣଜନ୍ମା ଅଟନ୍ତି । ଯେତେବେଳେ ଆପଣ ତାହାଙ୍କୁ ସ୍ନେହ କରୁଅଛନ୍ତି, ଏଥିରୁ ଜଣାଯାଉଅଛି ଯେ, ସେ ଯଥାର୍ଥ ଅଜାତଶତ୍ରୁ ଅଟନ୍ତି । ୧୨ ।

ହେ ଭାରତ ! ଦ୍ରୋଣ ଏହିପରି କହନ୍ତେ ଆପଣଙ୍କର ପୁତ୍ରର ହୃଦୟରେ ଯେଉଁ ଭାବ ସର୍ବଦା ଥିଲା, ତାହା ହଠାତ୍ ପ୍ରକାଶିତ ହେଲା । ୧୩ । ବୃହସ୍ପତିଙ୍କ ସଦୃଶ ବ୍ୟକ୍ତିମାନେ ସୁଦ୍ଧା ସ୍ୱକୀୟ ଅଭିପ୍ରାୟ ଲୁଚାଇ ରଖିପାରନ୍ତି ନାହିଁ । ଅତଏବ ହେ ରାଜନ୍ ! ଆପଣଙ୍କର ପୁତ୍ର ପ୍ରଫୁଲ୍ଲ ମାନସରେ ଏହି ପ୍ରକାର କହିଲେ, ହେ ଆଚାର୍ଯ୍ୟ ! ଯୁଦ୍ଧରେ ଯୁଧିଷ୍ଠିରଙ୍କର ବଧ ହେଲେ ମୋହର ପ୍ରିୟ ହେବ ନାହିଁ, କାରଣ ଯୁଧିଷ୍ଠିର ନିହତ ହେଲେ ଅର୍ଜୁନ ଆମ୍ଭ ସମସ୍ତଙ୍କୁ ବିନାଶ କରିବ । ୧୫ । ପାଣ୍ଡବମାନଙ୍କୁ ଦେବତାମାନେ ମଧ୍ୟ ବିନାଶ କରିବାକୁ ସମର୍ଥ ନୁହନ୍ତି । ଯୁଦ୍ଧରେ ପାଣ୍ଡବମାନଙ୍କ ମଧ୍ୟରୁ କେହି ଜଣେ ଯଦି ବଞ୍ଚି ରହେ, ତେବେ କୌରବମାନଙ୍କୁ ନିଃଶେଷିତ କରିବ । ଏହି ହେତୁରୁ ସତ୍ୟପ୍ରତିଜ୍ଞ ରାଜା ଯୁଧିଷ୍ଠିରଙ୍କୁ ଆଣାଇ ପୁନର୍ବାର ବନଗମନର ପଣ ରଖି ଦ୍ୟୂତକ୍ରୀଡ଼ାରେ ତାହାଙ୍କୁ ପରାଜିତ କରିବୁଁ । ତାହାହେଲେ ପାଣ୍ଡବମାନେ ତାହାଙ୍କ ସଙ୍ଗରେ ପୁନର୍ବାର ବନକୁ ଗମନ କରିବେ । ୧୭ ।

ଏପରି ହେଲେ ଆମ୍ଭର ଦୀର୍ଘ କାଳ ପର୍ଯ୍ୟନ୍ତ ଜୟ ହେବ । ଅତଏବ ଆମ୍ଭେ କେବେ ହେଁ ଧର୍ମରାଜଙ୍କର ବଧକାମନା କରୁନାହୁଁ । ୧୮ । ବିଷୟ-

ମର୍ମଜ୍ଞ ଓ ବୁଦ୍ଧିମାନ୍ ଦ୍ରୋଣ ଦୁର୍ଯୋଧନଙ୍କର ଉକ୍ତ କୁଟିଳ ଅଭିପ୍ରାୟକୁ ଜାଣି ପାରି ଚିନ୍ତାପୂର୍ବକ ଏହିପରି ଛଳଯୁକ୍ତ ବର ଦାନ କଲେ ଯେ, ଯୁଦ୍ଧରେ ବୀର ଅର୍ଜୁନ ଯଦି ଯୁଧିଷ୍ଠିରଙ୍କୁ ରକ୍ଷା ନ କରନ୍ତି, ତାହାହେଲେ ଆମ୍ଭେ ସେହି ପାଣ୍ଡବଶ୍ରେଷ୍ଠ ଯୁଧିଷ୍ଠିରଙ୍କୁ ଆପଣଙ୍କ ବଶୀଭୂତ କରିଅଛୁଁ ବୋଲି ନିଶ୍ଚୟ ଜାଣିବ । ୨୦ । ହେ ବତ୍ସ ! ଯୁଦ୍ଧରେ ଇନ୍ଦ୍ରାଦି ଦେବତା-ମାନେ ଓ ଅସୁରବୃନ୍ଦ ମଧ୍ୟ ଧନଞ୍ଜୟଙ୍କର ସମ୍ମୁଖକୁ ଯାଇ ପାରନ୍ତି ନାହିଁ । ଆମ୍ଭେ ଅବା ତାହାଙ୍କର ଯୁଦ୍ଧ କପରି ସହି ପାରିବୁଁ ? ୨୧ । ସେ ଆମ୍ଭର ଶିଷ୍ୟ ଅଟନ୍ତି ସତ୍ୟ, କିନ୍ତୁ ଆମ୍ଭେ ତାହାଙ୍କୁ କେବଳ ପ୍ରଥମରେ ଅସ୍ତ୍ରଶିକ୍ଷା ଦେଇଥିଲୁଁ । ସେ ସୁକୃତୀ, ତରୁଣବୟସ୍କ ଓ ଯୁଦ୍ଧରେ ଏକାୟନଗତ ଅର୍ଥାତ୍ ସେ ଯୁଦ୍ଧ କରିବା ସମୟରେ ଜୟ ଓ ମରଣ - ଏ ଦୁଇ ବିଷୟ ମଧ୍ୟରୁ ଏକକୁ ନିଶ୍ଚୟ କରିଥାନ୍ତି । ଆଜି ସେ ଅସ୍ତ୍ର କାର୍ଯ୍ୟରେ ଆମଠାରୁ ଶ୍ରେଷ୍ଠ ଅଟନ୍ତି । ୨୨ ।

ହେ ରାଜନ୍ ! ସେ ଇନ୍ଦ୍ର ଓ ରୁଦ୍ରଙ୍କଠାରୁ ନାନା ପ୍ରକାର ଅସ୍ତ୍ରମାନ ପ୍ରାପ୍ତ ହୋଇ ଅଛନ୍ତି । ପୁଣି ଆପଣ ତାହାଙ୍କୁ ଅମର୍ଷିତ କରିଅଛନ୍ତି । ଏହି ହେତୁରୁ ଆମ୍ଭେ ତାହାଙ୍କୁ ଯୁଦ୍ଧରେ ପରାଜିତ କରି ପାରିବୁ ନାହିଁ । ୨୩ । ହେ ପୁରୁଷଶ୍ରେଷ୍ଠ ! ତାହାଙ୍କୁ ଧରି ଆଣି ପାରିଲେ ଆପଣଙ୍କର ଲାଭ ହେବ । ତାହାଙ୍କୁ ବଧ କଲେ ତୁମ୍ଭର କୌଣସି ପ୍ରକାରେ ଜୟ ହେବ ନାହିଁ । ଆମ୍ଭେ ପୂର୍ବରେ ଯେଉଁ ଉପାୟ କହିଅଛୁଁ, ସେହି ଉପାୟ କଲେ ସେ ଧରାଯାଇ ପାରିବେ । ୨୫ । ହେ ରାଜନ୍ ! ନରବ୍ୟାଘ୍ର କୁନ୍ତୀପୁତ୍ର ଧନଞ୍ଜୟ ଅପସାରିତ ହେଲାରୁ ଧର୍ମରାଜ ଯୁଧିଷ୍ଠିର ଯଦି ଯୁଦ୍ଧରେ ଆମ୍ଭ ଆଗରେ ମୁହୂର୍ତ୍ତ ମାତ୍ର ରହିବେ, ତେବେ ସତ୍ୟଧର୍ମ-ପରାୟଣ ସେହି ରାଜାଙ୍କୁ ଆମ୍ଭେ ଗ୍ରହଣ କରି ଆପଣଙ୍କ ବଶବର୍ତ୍ତୀ କରିବୁଁ । ଏଥିରେ ସନ୍ଦେହ ନାହିଁ । ୨୭ । ହେ ରାଜନ୍ ! ଇନ୍ଦ୍ରାଦି ଦେବଗଣ ଓ ଅସୁରମାନେ ମଧ୍ୟ ଯୁଧିଷ୍ଠିରଙ୍କୁ ଅର୍ଜୁନଙ୍କ ଆଗରେ ଆକ୍ରମଣ କରି ପାରିବେ ନାହିଁ ।୨୮।

ସଞ୍ଜୟ କହିଲେ—ଦ୍ରୋଣ ଏହିପରି ଯୁଧିଷ୍ଠିରଙ୍କୁ ନିଗ୍ରହ କରିବା ନିମନ୍ତେ ଛଳଭାବରେ ପ୍ରତିଜ୍ଞା କରିବାରୁ ମୂଢ଼ମତି ଆପଣଙ୍କର ପୁତ୍ରମାନେ ରାଜା ଯୁଧିଷ୍ଠିର ଗୃହୀତ ହୋଇଅଛନ୍ତି ବୋଲି ବୋଧ କଲେ । ୨୯ । ଆପଣଙ୍କ

ପୁଣି ଦୁର୍ଯ୍ୟୋଧନ ଦ୍ରୋଣଙ୍କୁ ପାଣ୍ଡବମାନଙ୍କ ସପକ୍ଷ ବୋଲି ଜାଣନ୍ତି । ଏହି ହେତୁରୁ ଦ୍ରୋଣଙ୍କ ପ୍ରତିଜ୍ଞାକୁ ଦୃଢ଼ କରିବା ନିମନ୍ତେ ସେହି ମନ୍ତ୍ରଣାକୁ ଅନେକ ଲୋକଙ୍କ ଆଗରେ ବ୍ୟକ୍ତ କରି ସେମାନଙ୍କୁ ଅବଗତ କରାଇ ଦେଲେ । ୩୦ । ହେ ଅରିନ୍ଦମ ! ତତ୍ପରେ ପାଣ୍ଡବରାଜ ଯୁଧିଷ୍ଠିରଙ୍କୁ ଗ୍ରହଣ କରିବାର ମନ୍ତ୍ରଣାକୁ ଦୁର୍ଯ୍ୟୋଧନ ସମସ୍ତ ସୈନ୍ୟଙ୍କ ମଧ୍ୟରେ ଉଦ୍‌ଘୋଷିତ କରିଦେଲେ । ୩୧ ।

# ୧୩ ଅଧ୍ୟାୟ

ସଞ୍ଜୟ କହିଲେ—ରାଜା ଯୁଧିଷ୍ଠିରଙ୍କର ନିଗ୍ରହ ବିଷୟରେ ଦ୍ରୋଣ ସୀମାବଦ୍ଧ ପ୍ରତିଜ୍ଞା କଲା ଉତ୍ତାରେ ଆପଣଙ୍କର ସେନାମାନେ ସେହି ବୃତ୍ତାନ୍ତ ଶ୍ରବଣ କରି ବାହୁଶବ୍ଦ ଓ ସିଂହନାଦ କରିବାକୁ ଆରମ୍ଭ କଲେ । ହେ ଭାରତ ! ଧର୍ମରାଜ ମଧ୍ୟ ତତ୍‌କ୍ଷଣାତ୍ ଆପ୍ତ ଅର୍ଥାତ୍ ବିଶ୍ୱାସୀ ଚରଦ୍ୱାରା ଦ୍ରୋଣଙ୍କର ଈଦୃଶ ପ୍ରତିଜ୍ଞା ଯଥାର୍ଥ ରୂପେ ଜାଣି ପାରିଲେ । ଅନନ୍ତର ଭାଇମାନଙ୍କୁ ଓ ଅନ୍ୟାନ୍ୟ ରାଜାମାନଙ୍କୁ ଅଣାଇ ଧର୍ମରାଜ ଯୁଧିଷ୍ଠିର ଧନଞ୍ଜୟଙ୍କୁ କହିଲେ, ହେ ପୁରୁଷବ୍ୟାଘ୍ର ! ତୁମ୍ଭେ ଆଜ ଦ୍ରୋଣଙ୍କର ପ୍ରତିଜ୍ଞା ତ ଶୁଣିଥିବ । ୪ । ବର୍ତ୍ତମାନ ଯେପରି ତାହା ସତ୍ୟ ନ ହୁଏ, ତାଦୃଶ ନୀତି ବିଧାନ କର । ହେ ଅମିତ୍ରକର୍ଷଣ ! ଦ୍ରୋଣ ଯାହା ପ୍ରତିଜ୍ଞା କରିଅଛନ୍ତି, ସେଥିରେ ଛଳନା ଅଛି । ହେ ମହାଧନୁର୍ଦ୍ଧର ! ସେ ସେହି ଛଳ ତୁମ୍ଭଙ୍କୁ ଲକ୍ଷ୍ୟ କରି ସମାଧାନ କରିଅଛନ୍ତି । ଅତଏବ ହେ ମହାବାହୋ ! ତୁମ୍ଭେ ଅଦ୍ୟ ଆମ୍ଭର ଅଗ୍ରବର୍ତ୍ତୀ ହୋଇ ଯୁଦ୍ଧ କର, ଯେପରି ଦ୍ରୋଣଙ୍କ ଦ୍ୱାରା ଦୁର୍ଯ୍ୟୋଧନର ମନୋରଥ ପୂର୍ଣ୍ଣ ନ ହୁଏ ।

ଅର୍ଜ୍ଜୁନ କହିଲେ—ହେ ରାଜନ୍ ! ଆଚାର୍ଯ୍ୟଙ୍କୁ ବଧ କରିବା ଆମ୍ଭର ଯେପରି କର୍ତ୍ତବ୍ୟ ନୁହେଁ, ଆପଣଙ୍କୁ ତ୍ୟାଗ କରିବା ମଧ୍ୟ ସେହିପରି ଆମ୍ଭର ଇଚ୍ଛା ନୁହେଁ । ହେ ପାଣ୍ଡବ ! ଯୁଦ୍ଧରେ ଯଦି ଆମ୍ଭଙ୍କୁ ପ୍ରାଣ ସୁଦ୍ଧା ପରିତ୍ୟାଗ କରିବାକୁ ହୁଏ, ତଥାଚ ଆମ୍ଭେ

କଦାଚ ଆଚାର୍ଯ୍ୟଙ୍କର ପ୍ରତିକୂଳ ହେବୁ ନାହିଁ । ଦୁର୍ଯ୍ୟୋଧନ ଯୁଦ୍ଧରେ ଆପଣଙ୍କୁ ନିଗ୍ରହ କରି ରାଜ୍ୟ ପାଇବାକୁ ଇଚ୍ଛା କରୁଅଛି । ମାତ୍ର ଏହି ଜୀବଲୋକରେ ସେହି ପାପାତ୍ମାର କାମନା କୌଣସି ପ୍ରକାରରେ ପରିପୂର୍ଣ୍ଣ ହେବ ନାହିଁ । ଯଦି ନକ୍ଷତ୍ରମଣ୍ଡଳକୁ ଘେନି ଆକାଶ ତଳେ ପଡ଼ିଯାଏ ଓ ପୃଥିବୀ ଯଦି ଖଣ୍ଡ ଖଣ୍ଡ ହୋଇଯାଏ, ତେବେ ସୁଦ୍ଧା ଆମ୍ଭେ ଜୀବିତ ଥାଉଁ ଥାଉଁ ଦ୍ରୋଣ ଆପଣଙ୍କୁ କଦାଚ ନିଗ୍ରହ କରି ପାରିବେ ନାହିଁ । ଯଦି ସ୍ୱୟଂ ବଜ୍ରଧାରୀ ଇନ୍ଦ୍ର ବା ନିଜେ ବିଷ୍ଣୁ ଦେବବୃନ୍ଦଙ୍କୁ ସଙ୍ଗରେ ଘେନି ଯୁଦ୍ଧରେ ଦ୍ରୋଣଙ୍କର ସାହାଯ୍ୟ କରନ୍ତି, ତଥାପି ସେ ଆପଣଙ୍କୁ ଧରି ନେଇ ପାରିବେ ନାହିଁ । ହେ ରାଜେନ୍ଦ୍ର ! ଆମ୍ଭେ ବଞ୍ଚି ଥାଉଁ ଥାଉଁ, ସର୍ବ-ଶସ୍ତ୍ରଧାରିଶ୍ରେଷ୍ଠ ଦ୍ରୋଣଙ୍କୁ ଆପଣଙ୍କର ଭୟ କରିବା ଉଚିତ ନୁହେ । ହେ ରାଜେନ୍ଦ୍ର ! ଆମ୍ଭେ ଆଉ ଗୋଟିଏ କଥା ନିବେଦନ କରୁଅଛୁଁ, ଶୁଣିବା ହେଉନ୍ତୁ— ଆମ୍ଭର ପ୍ରତିଜ୍ଞା କଦାଚ ଅନ୍ୟଥା ହୁଏ ନାହିଁ । ଆମ୍ଭେ ଯେ କେବେ ମିଥ୍ୟା କହିଅଛୁଁ କିମ୍ବା କେବେ ପରାଜୟ ପ୍ରାପ୍ତ ହୋଇଅଛୁଁ, ଅଥବା କୌଣସି ସମୟରେ ଅଙ୍ଗୀକୃତ ବିଷୟକୁ ପାଳନ କରିନାହୁଁ, ଏ ପ୍ରକାର କଥା ଆମ୍ଭର ସ୍ମରଣ ହେଉନାହିଁ । ୧୪ ।

ସଞ୍ଜୟ କହିଲେ—ହେ ମହାରାଜ ! ତତ୍ପରେ ମହାତ୍ମା ପାଣ୍ଡବମାନଙ୍କ ଶିବିରରେ ଶଙ୍ଖ, ଭେରୀ, ମୃଦଙ୍ଗ ଓ ଆନକ—ଏ ସବୁ ବାଦ୍ୟ ବାଜିଲା ଓ ଗଗନସ୍ପର୍ଶୀ ଅତି ଭୈରବ ସିଂହନାଦ ଓ ଧନୁ-ଜ୍ୟା ତଳଶବ୍ଦ ଉତ୍ଥିତ ହେଲା । ୧୬ । ମହାତେଜା ପାଣ୍ଡବମାନଙ୍କର ସେହି ଶଙ୍ଖନିର୍ଘୋଷ ଶ୍ରବଣ କରି ଆପଣଙ୍କ ସେନା ମଧ୍ୟରେ ମଧ୍ୟ ବାଦ୍ୟଶବ୍ଦ ଜାତ ହେଲା । ୧୭। ହେ ଭାରତ ! ତହିଁ ଉତ୍ତାରେ ଉଭୟପକ୍ଷୀୟ ସୈନ୍ୟମାନେ ଯୁଦ୍ଧେଚ୍ଛୁ ହୋଇ ଓ ବ୍ୟୂହବଦ୍ଧ ହୋଇ କ୍ରମେ କ୍ରମେ ସମରକ୍ଷେତ୍ରରେ ଅବତୀର୍ଣ୍ଣ ହେଲେ । ୧୮ ।

ତଦନନ୍ତର ପାଣ୍ଡବମାନଙ୍କ ସହିତ କୌରବମାନେ ଓ ପାଞ୍ଚାଳବୃନ୍ଦଙ୍କ ସହିତ ଦ୍ରୋଣ ଲୋମହର୍ଷଣ ତୁମୁଳ ଯୁଦ୍ଧ ଆରମ୍ଭ କଲେ । ୧୯ । ସୃଞ୍ଜୟ ସେନା ନାନାପ୍ରକାର ଯତ୍ନ କଲେହେଁ ଦ୍ରୋଣଙ୍କ ଦ୍ୱାରା ରକ୍ଷିତ ସେନାଙ୍କୁ ନିପାତିତ କରି ପାରିଲେ ନାହିଁ ଓ ଆପଣଙ୍କ ପୁତ୍ରର

ଉଦାରରଥ, ପ୍ରହରଣଶୀଳ ଯୋଦ୍ଧାମାନେ ମଧ୍ୟ ଅର୍ଜ୍ଜୁନଙ୍କ ଦ୍ୱାରା ପାଳିତ ପାଣ୍ଡବ ସେନାଙ୍କୁ ଧର୍ଷଣ କରିବାକୁ ସମର୍ଥ ହେଲେ ନାହିଁ । ୨୧ । ଗ୍ରୀଷ୍ମରେ ସୁପୁଷ୍ପିତ ବନରାଜି ପତ୍ରମାନଙ୍କୁ ସଙ୍କୁଚିତ କରି ଯେପରି ନିସ୍ତବ୍ଧଭାବେ ଥାଏ, ସେହିପରି ଉଭୟ ପକ୍ଷର ସେନାମାନେ ପରସ୍ପର ପରିରକ୍ଷିତ ହୋଇ ଶୋଭା ପାଇଲେ । ୨୨ ।

ହେ ରାଜନ୍ ! ରୁକ୍ମରଥ ଦ୍ରୋଣ ସୂର୍ଯ୍ୟଙ୍କ ସଦୃଶ ବିରାଜମାନ ହେଲେ ଓ ଶତ୍ରୁସେନା ମଧ୍ୟରେ ପରିଭ୍ରମଣ କରି ସେମାନଙ୍କୁ ରଥଦ୍ୱାରା ନିଷ୍ପେଷଣ କରିବାରେ ପ୍ରବୃତ୍ତ ହେଲେ । ୨୩ । ଯୁଦ୍ଧରେ ଦ୍ରୋଣ ଏକାକୀ ପ୍ରବୃତ୍ତ ହେଲେ ଓ ଲଘୁହସ୍ତରେ ଶରବର୍ଷଣପୂର୍ବକ ରଥାରୂଢ଼ ହୋଇ ଏପରି ଭାବରେ ବିଚରଣ କଲେ ଯେ, ପାଣ୍ଡବ ଓ ସୃଞ୍ଜୟମାନେ ଭୀତ ହୋଇ ତାହାଙ୍କୁ ଅନେକ ବୋଲି ଜ୍ଞାନ କଲେ । ୨୪ । ମହାରାଜ ! ଦ୍ରୋଣ ଯେଉଁସବୁ ଶର ନିକ୍ଷେପ କରୁଥିଲେ, ସେ ସବୁ ପାଣ୍ଡବସୈନ୍ୟଙ୍କର ଭୟ ଉତ୍ପାଦନ କରି ଇତସ୍ତତଃ ବିକ୍ଷିପ୍ତ ହେଉଥିଲେ । ୨୫ । ମଧ୍ୟାହ୍ନ ସମୟରେ ଶତରଶ୍ମି-ବିଶିଷ୍ଟ ସୂର୍ଯ୍ୟ ଯେପରି ଦେଖାଯାନ୍ତି, ଦ୍ରୋଣ ସେହିପରି ଦେଖାଯାଉ-ଥିଲେ । ୨୬ ।

ହେ ଭାରତ ! ଯେପରି କ୍ରୁଦ୍ଧ ଇନ୍ଦ୍ରଙ୍କ ପ୍ରତି ଦାନବମାନେ ଯୁଦ୍ଧରେ ଦୃଷ୍ଟିପାତ କରିବାକୁ ସକ୍ଷମ ହୁଅନ୍ତି ନାହିଁ, ସେହିପରି ପାଣ୍ଡବମାନଙ୍କ ପକ୍ଷର କେହି ବୀର ସେହି କ୍ରୁଦ୍ଧ ଦ୍ରୋଣଙ୍କ ପ୍ରତି ଦୃଷ୍ଟିପାତ କରି ପାରିଲେ ନାହିଁ । ୨୭ । ପ୍ରତାପବାନ୍ ଭରଦ୍ୱାଜନନ୍ଦନ ଚଞ୍ଚଳ ହୋଇ ସୈନ୍ୟମାନଙ୍କୁ ମୋହିତ କଲେ ଓ ଶାଣିତ ଶରଦ୍ୱାରା ଧୃଷ୍ଟଦ୍ୟୁମ୍ନସୈନ୍ୟମାନଙ୍କୁ କମ୍ପିତ କଲେ ଓ ଅଜିହ୍ମଗ ବାଣଦ୍ୱାରା ଦିଗସବୁକୁ ସଂରୁଦ୍ଧ ଓ ଆକାଶକୁ ଆଚ୍ଛନ୍ନ କରି ଯେଉଁ ସ୍ଥାନରେ ଧୃଷ୍ଟଦ୍ୟୁମ୍ନ ଥିଲେ, ସେହି ସ୍ଥାନରେ ପାଣ୍ଡବ ସେନାମାନଙ୍କୁ ମର୍ଦ୍ଦନ କଲେ । ୨୯ ।



# ୧୪ ଅଧ୍ୟାୟ

ସଞ୍ଜୟ କହିଲେ—ଯେପରି ଅନଳ ତୃଣାଦିଙ୍କୁ ଦହନ କରେ, ସେହିପରି ଦ୍ରୋଣ ପାଣ୍ଡବସେନା ମଧ୍ୟରେ ତୁମୁଳ ଯୁଦ୍ଧ ଆରମ୍ଭ କରି ସେମାନଙ୍କୁ ଦହନ କଲେ । ୧ । ସୁବର୍ଣ୍ଣରଥାରୂଢ଼ ଦ୍ରୋଣ କ୍ରୁଦ୍ଧ ଓ ସାକ୍ଷାତ୍ ଅଗ୍ନି ସଦୃଶ ହୋଇ ଶତ୍ରୁ ସୈନ୍ୟମାନଙ୍କୁ ଦହନ କଲେ । ଏହା ଦେଖି ସୃଞ୍ଜୟଗଣ କମ୍ପିତ ହେଲେ । ୨ । ଦ୍ରୋଣ ଯୁଦ୍ଧରେ ଏତେ ଶୀଘ୍ର ଶୀଘ୍ର ଧନୁକୁ ବିସ୍ତାର ପୂର୍ବକ ଆକର୍ଷଣ କଲେ ଯେ, ସେହି ଶରାସନର ଟଙ୍କାର ଶବ୍ଦ ବଜ୍ର-ନିର୍ଘୋଷ ପରି ଶୁଣାଗଲା । ୩ । ଶୀଘ୍ର ହସ୍ତରେ ସେ ଯେଉଁ ଅତି ଭୟଙ୍କର ବାଣମାନଙ୍କୁ ନିକ୍ଷେପ କରୁଥିଲେ, ସେସବୁ ରଥୀ, ସାଦୀ, ନାଗ, ଅଶ୍ୱ ଓ ପଦାତିମାନଙ୍କୁ ମର୍ଦ୍ଦନ କରୁଥିଲା । ୪ । ଗ୍ରୀଷ୍ମାବସାନରେ ବାୟୁ ସହାୟରେ ପୁନଃ ପୁନଃ ଗର୍ଜ୍ଜନ କରି ଯେପରି ମେଘ ଶିଳା ବର୍ଷଣ କରେ, ଦ୍ରୋଣାଚାର୍ଯ୍ୟ ସେହିପରି ବାଣ ବର୍ଷଣ କରି ବିପକ୍ଷମାନଙ୍କର ଭୟ ଉତ୍ପାଦନ କରୁଥିଲେ । ୫ ।

ହେ ରାଜନ୍ ! ପ୍ରଭୁ ଦ୍ରୋଣ ରଣକ୍ଷେତ୍ରରେ ଅଲୌକିକ ଭାବରେ ବିଚରଣ କରୁଥିଲେ ଏବଂ ଶତ୍ରୁମାନଙ୍କର କ୍ଷୋଭ ଓ ଭୟ ପ୍ରବର୍ଦ୍ଧିତ କରୁଥିଲେ । ୬ । ବିଦ୍ୟୁତ୍ ଯେପରି ମେଘ ମଧ୍ୟରେ ଶୋଭାପାଏ, ସେହିପରି ଦ୍ରୋଣଙ୍କର ସୁବର୍ଣ୍ଣମଣ୍ଡିତ ଶରାସନ ତାହାଙ୍କର ଭ୍ରମଣଶୀଳ ରଥରୂପ ମେଘ ମଧ୍ୟରେ ପୁନଃପୁନଃ ଶୋଭା ପାଉଥିଲା । ୭ । ଯୁଗାନ୍ତ କାଳରେ ନିୟନ୍ତା ଯେପରି ଭୟାନକ ନଦୀକୁ ପ୍ରବାହିତ କରନ୍ତି, ସେହିପରି ସେହି ସତ୍ୟବାନ୍, ପ୍ରାଜ୍ଞ, ଧର୍ମନିଷ୍ଠ, ବୀର ଦ୍ରୋଣ ଏକ ଭୟାନକ ନଦୀକୁ ପ୍ରବାହିତ କଲେ । ୮ । ହେ ରାଜନ୍ ! ସେହି ନଦୀ ଅମର୍ଷରୂପ ବେଗରୁ ଉତ୍ପନ୍ନ ହେଲା ଓ ତାହାର ଚତୁର୍ଦ୍ଦିଗରେ ମାଂସାହାରୀମାନେ ବିଚରଣ କଲେ । ସେହି ନଦୀ ସୈନ୍ୟରୂପ ଜଳବେଗରେ ପରିପୂର୍ଣ୍ଣ ହୋଇ ବୀରରୂପ ବୃକ୍ଷସମୂହକୁ ସ୍ରୋତଦ୍ୱାରା ଭସାଇ ନେଇଗଲା । ୯ । ଶୋଣିତ ସେହି ନଦୀର ଜଳସ୍ୱରୂପ, ରଥ ସବୁ ତାହାର ଆବର୍ତ୍ତ ସଦୃଶ ଆଉ ଅଶ୍ୱ ଓ ହସ୍ତୀମାନେ ତାହାର ତୀର ସ୍ୱରୂପ ହୋଇଥିଲେ । କବଚ

ସବୁ ସେହି ନଦୀର ଉତ୍ପଳ ସଦୃଶ, ମାଂସରାଶି ତାହାର ପଙ୍କତୁଲ୍ୟ; ମେଦ, ମଜ୍ଜା, ଅସ୍ଥି ତାହାର ବାଲୁକାସ୍ୱରୂପ ଓ ଯୋଦ୍ଧାମାନଙ୍କ ମସ୍ତକରୁ ଖସି ପଡ଼ିଥିବା ଉଷ୍ଣୀଷ ସବୁ ତାହାର ଫେନରାଶି ସଦୃଶ ହୋଇଥିଲା ।୧୦।

ସେହି ନଦୀ ସଂଗ୍ରାମରୂପ ମେଘରେ ପରିପୂର୍ଣ୍ଣ ହୋଇଥିଲା । ପ୍ରାସ ପ୍ରଭୃତି ଅସ୍ତ୍ର ସବୁ ତାହାର ମତ୍ସ୍ୟ ସ୍ୱରୂପ, ନର ଓ ନାଗ, ଅଶ୍ୱମାନେ ତାହାର ଜଳଜନ୍ତୁ ସଦୃଶ, ଶରବେଗ ତାହାର ପ୍ରବାହସମାନ, ଶରୀରସବୁ ସେହି ନଦୀର ଭାସମାନ କାଷ୍ଠ ତୁଲ୍ୟ ଓ ରଥସବୁ ତାହାର କଚ୍ଛପ ସଦୃଶ ହୋଇଥିଲା । ମସ୍ତକସମୂହ ପାଷାଣ ନିର୍ମିତ ତଟସଦୃଶ, ଖଡ଼୍ଗ ସବୁ ସେହି ନଦୀର ମୀନଗଣସମାନ, ଆଉ ରଥ ଓ ହସ୍ତିଯୂଥ ତାହାର ହ୍ରଦ-ସମାନ ହୋଇଥିଲା । ମହାରଥ ସବୁ ନାନାପ୍ରକାର ଆଭରଣରେ ବିଭୂଷିତ ହୋଇ ସେ ନଦୀର ଆବର୍ତ୍ତସ୍ୱରୂପ ହୋଇଥିଲେ ଓ ଭୂମିରେଣୁସବୁ ସେହି ନଦୀର ଊର୍ମିମାଳା ସଦୃଶ ହୋଇଥିଲା । ଏପରି ଯେଉଁ ଶୋଣିତ-ରୂପ ନଦୀ, ତାହା ମହାବୀର୍ଯ୍ୟବାନ୍ ବ୍ୟକ୍ତିବୃନ୍ଦର ସୁତରଣୀୟା ଓ ଭୀରୁ-ମାନଙ୍କର ଦୁସ୍ତରଣୀୟା ହୋଇଥିଲା । ୧୪ । ସେହି ନଦୀର ଶୋଣିତରୂପ ଜଳରେ ଶତଶତ ଶରୀରର ସମ୍ବାଧ ହେଲା । କଙ୍କ ଓ ଗୃଧ୍ରପକ୍ଷିମାନେ ତହିଁରେ ବିଚରଣ କଲେ ଓ ତାହାର ବେଗଦ୍ୱାରା ସହସ୍ର ସହସ୍ର ମହାରଥ ଯମାଳୟରେ ପ୍ରବିଷ୍ଟ ହେଲେ । ୧୫ । ସେହି ନଦୀରେ ଶୂରମାନେ ବ୍ୟାଳସଦୃଶ ସମାକୀର୍ଣ୍ଣ ହେଲେ ଓ ପ୍ରାଣିରୂପ ପକ୍ଷିମାନେ ତହିଁରେ ବିଦ୍ୟମାନ ଥିଲେ । ଛିନ୍ନଛତ୍ର ସମସ୍ତ ସେହି ନଦୀରେ ମହାକାୟ ହଂସସ୍ୱରୂପ ଓ ମୁକୁଟ ସମସ୍ତ ତହିଁରେ ବିବିଧ ପକ୍ଷିତୁଲ୍ୟ ଶୋଭା ପାଉଥିଲେ । ସେହି ନଦୀରେ ଚକ୍ରସବୁ କୂର୍ମ ରୂପରେ, ଗଦାସବୁ କୁମ୍ଭୀର ରୂପରେ ଓ ଶରସମସ୍ତ କ୍ଷୁଦ୍ର ମତ୍ସ୍ୟ ରୂପରେ ବିରାଜିତ ହୋଇଥିଲେ ।

ହେ ରାଜଶ୍ରେଷ୍ଠ ! ଯେଉଁ ଭୟଙ୍କର ନଦୀ କାକ, ଗୃଧ୍ର, ଶୃଗାଳସମୂହ ଦ୍ୱାରା ନିଷେବିତା ହୋଇଥିଲା ଓ ଯହିଁରେ ଶତ ଶତ ଶରୀରର ସମ୍ବାଧ ହେଉଥିଲା ଆଉ ଯେଉଁ ନଦୀ ବୀରମାନଙ୍କର କେଶଦ୍ୱାରା ଶୈବାଳବତୀ ହୋଇଥିଲା, ଏତାଦୃଶୀ ଭୀରୁଜନ-ଭୟପ୍ରଦାୟିନୀ ନଦୀକୁ ବଳଶାଳୀ ଦ୍ରୋଣ ଉତ୍ପାଦନ କରି ଶତ ଶତ ପ୍ରାଣୀମାନଙ୍କ ବିନାଶପୂର୍ବକ ସେହି ନଦୀର ପ୍ରବାହଦ୍ୱାରା

ସେମାନଙ୍କୁ ଯମାଳୟରେ ଉପନୀତ କଲେ । ୧୯ । ଯୁଧିଷ୍ଠିର ଓ ତାହାଙ୍କ ସଙ୍ଗରେ ଥିବା ରାଜାମାନେ ଦେଖିଲେ ଯେ, ଦ୍ରୋଣ ସର୍ବତ୍ର ସୈନ୍ୟମାନଙ୍କୁ ପରାଜିତ କରୁଅଛନ୍ତି । ଏହା ଦେଖି ସେମାନେ ଦ୍ରୋଣଙ୍କ ପ୍ରତି ଧାବମାନ ହେଲେ । ୨୦ । ପାଣ୍ଡବପକ୍ଷୀୟ ଶୂରମାନେ ଦ୍ରୋଣଙ୍କ ଆଡ଼କୁ ଧାବମାନ ହେବାର ଦେଖି **ଆପଣଙ୍କ ପକ୍ଷୀୟ ଦୃଢ଼ବିକ୍ରମ** ଯୋଦ୍ଧାମାନେ, **ପାଣ୍ଡବ** ସୈନ୍ୟମାନଙ୍କ ପ୍ରତି ଧାବିତ ହେଲେ । ଏହିପରି ହେବାରୁ ଉଭୟ ପକ୍ଷ ମଧ୍ୟରେ ଘୋର ଲୋମହର୍ଷଣ ଯୁଦ୍ଧ ଆରମ୍ଭ ହେଲା । ୨୧ । ଅସଂଖ୍ୟ ମାୟାବିଦ୍ୟାରେ ଦକ୍ଷ ଶକୁନି ସହଦେବଙ୍କୁ ଆକ୍ରମଣ କରି ତାହାଙ୍କୁ ଓ ତାହାଙ୍କର ସାରଥି, ଧ୍ୱଜ ଓ ରଥକୁ ଶାଣିତ ଶରଦ୍ୱାରା ବିଦ୍ଧ କଲେ । ୨୨। ମାଦ୍ରୀ ସୁତ ସହଦେବ କିଞ୍ଚିତ୍ କୁପିତ ହୋଇ ଶକୁନିର କେତୁ, ଧନୁ, ସାରଥି ଓ ଅଶ୍ୱମାନଙ୍କୁ ଛେଦନ କରି ଶେଷରେ ଶକୁନିକୁ ଷାଠିଏ ଗୋଟି ଶରଦ୍ୱାରା ବିଦ୍ଧ କଲେ । ୨୩ । ସୁବଳ ନନ୍ଦନ ଶକୁନି ଗଦା ଘେନି ରଥରୁ ଓହ୍ଲାଇଲେ ଓ ସେହି ଗଦାଦ୍ୱାରା ସହଦେବଙ୍କର ସାରଥିକୁ ରଥରୁ ନିପାତ କଲେ । ୨୪ । ହେ ରାଜନ୍ ! ସେହି ମହାବଳ ଶୂର ଦୁଇଜଣ ଅର୍ଥାତ୍ ସହଦେବ ଓ ଶକୁନି ଦୁହେଁ ରଥଶୂନ୍ୟ ହୋଇ ଗଦାମାନଙ୍କୁ ହସ୍ତରେ ଧଇଲେ ଓ ଶୃଙ୍ଗଥିବା ଦୁଇଗୋଟି ପର୍ବତ ସଦୃଶ ଯୁଦ୍ଧରେ କ୍ରୀଡ଼ା କଲେ । ୨୫ । ଦ୍ରୋଣ ପାଞ୍ଚାଳ ରାଜାଙ୍କୁ ଦଶଗୋଟି ବାଣ ଦ୍ୱାରା ବିଦ୍ଧ କଲେ, ତହୁଁ ପାଞ୍ଚାଳରାଜ ଦ୍ରୋଣଙ୍କୁ ବହୁଶର ଦ୍ୱାରା ବିଦ୍ଧ କଲେ । ଦ୍ରୋଣ ପୁଣି ତଦପେକ୍ଷା ଅଧିକ ଶରଦ୍ୱାରା ପାଞ୍ଚାଳରାଜଙ୍କୁ ବିଦ୍ଧ କଲେ । ୨୬ ।

ଭୀମସେନ କୋଡ଼ିଏ ଶାଣିତ ଶରଦ୍ୱାରା ବିବିଂଶତିକୁ ବିଦ୍ଧ କଲେ, ମାତ୍ର ତହିଁରେ ବିବିଂଶତି କମ୍ପିତ ହେଲେ ନାହିଁ, ଏହା ବଡ଼ ଅଦ୍ଭୁତ ପ୍ରତୀୟମାନ ହେଲା ।୨୭। ହେ ମହାରାଜ ! ବିବିଂଶତି ଭୀମଙ୍କର ଅଶ୍ୱ, ଧ୍ୱଜ ଓ ଧନୁ— ଏମାନଙ୍କୁ ଛେଦନକରି ପକାଇଲେ । ତହିଁରେ ବିବିଂଶତିର ସୈନ୍ୟମାନେ ପ୍ରଶଂସା କଲେ । ୨୮ ।

ବୀର ଭୀମସେନ ଯୁଦ୍ଧରେ ଶତ୍ରୁର ଏତାଦୃଶ ବିକ୍ରମ ସହି ନ ପାରି ଗଦାଦ୍ୱାରା ବିବିଂଶତିର ଶିକ୍ଷିତ ଅଶ୍ୱମାନଙ୍କୁ ନିପାତିତ କଲେ ।୨୯।

ହେ ରାଜନ୍ ! ମହାବଳ ବିବିଂଶତି ଅଶ୍ୱଶୂନ୍ୟ ରଥରୁ ଓହ୍ଲାଇ ଚର୍ମ ଗ୍ରହଣ କଲେ ଓ ଗୋଟିଏ ମତ୍ତହସ୍ତୀ ଅନ୍ୟ ଗୋଟିଏ ମତ୍ତହସ୍ତୀକୁ ଆକ୍ରମଣ କଲାପ୍ରାୟ ଭୀମସେନଙ୍କ ଉପରକୁ ଧାବମାନ ହେଲେ । ୩୦ ।

ନକୁଳ ଶଲ୍ୟଙ୍କର ଭାଗିନେୟ ଅଟନ୍ତି । ବୀର ଶଲ୍ୟ ସେହି ପ୍ରୀତିପାତ୍ର ନକୁଳଙ୍କୁ ଲଜ୍ଜିତ ଓ କୁପିତ କଲାପରି ହସି ହସି ଶରସମୂହ ଦ୍ୱାରା ଆଘାତ କଲେ । ୩୧ । ତତ୍ପରେ ପ୍ରତାପଶାଳୀ ନକୁଳ ଯୁଦ୍ଧରେ ଶଲ୍ୟଙ୍କର ଅଶ୍ୱ, ଛତ୍ର, ଧ୍ୱଜ, ସାରଥି ଓ ଧନୁକୁ ଛେଦନକରି ଶଙ୍ଖଧ୍ୱନି କଲେ । ୩୨ । କୃପାଚାର୍ଯ୍ୟ ଅନେକ ପ୍ରକାର ଶର ଧୃଷ୍ଟକେତୁ ଉପରକୁ ନିକ୍ଷେପ କଲେ । ସେ ସମସ୍ତ ଶରକୁ ଧୃଷ୍ଟକେତୁ ଛେଦନକରି ସତୁରିଗୋଟି ଶରଦ୍ୱାରା କୃପଙ୍କୁ ବିଦ୍ଧକଲେ ଓ ତିନିଗୋଟି ଶରଦ୍ୱାରା କୃପଙ୍କ ଧ୍ୱଜ କାଟି ପକାଇଲେ । ୩୩ । ବିପ୍ର କୃପାଚାର୍ଯ୍ୟ ମହତ୍ ଶରବର୍ଷଣ ଦ୍ୱାରା ଧୃଷ୍ଟକେତୁଙ୍କୁ ନିବାରଣ କରି ତାହାଙ୍କ ସହିତ ଯୁଦ୍ଧ କଲେ । ୩୪ । ସାତ୍ୟକି ନାରାଚ ଦ୍ୱାରା କୃତବର୍ମାର ବକ୍ଷସ୍ଥଳ ବିଦ୍ଧ କରି ପୁନର୍ବାର ସହାସ୍ୟ ବଦନରେ ସତୁରିଗୋଟି ଶର ଦ୍ୱାରା ତାହାଙ୍କୁ ବିଦ୍ଧ କଲେ । ୩୫ । ଶୀଘ୍ରଗାମୀ ବାୟୁ ଯେପରି ପର୍ବତକୁ କମ୍ପିତ କରି ପାରଇ ନାହିଁ, ଭୋଜବଂଶୀୟ କୃତବର୍ମା ସତସ୍ତରି ଗୋଟି ଶାଣିତ ଶରଦ୍ୱାରା ସେହିପରି ଶିନିନନ୍ଦନ ସାତ୍ୟକିଙ୍କୁ କମ୍ପିତ କରିବାକୁ ସମର୍ଥ ହେଲେ ନାହିଁ । ୩୬ ।

ସେନାପତି ଧୃଷ୍ଟଦ୍ୟୁମ୍ନ ସୁଶର୍ମାଙ୍କର ମର୍ମସ୍ଥାନରେ ଅତିଶୟ ଆଘାତ କଲେ । ସୁଶର୍ମା ମଧ୍ୟ ତୋମର ଦ୍ୱାରା ତାହାଙ୍କର ଜତ୍ରୁ ଦେଶରେ ଆଘାତ କଲେ । ୩୭ । ବିରାଟ ରାଜା ମହାବୀର୍ଯ୍ୟମାନ୍ ମତ୍ସ୍ୟଗଣଙ୍କ ଦ୍ୱାରା ପରିବୃତ ହୋଇ ଯୁଦ୍ଧରେ ସୂର୍ଯ୍ୟତନୟ କର୍ଣ୍ଣଙ୍କୁ ନିବାରିତ କଲେ; ଏହା ଅଦ୍ଭୁତ ପରି ଜଣାଗଲା । ୩୮ ।

ସେହି ସମୟରେ ସୂତପୁତ୍ର କର୍ଣ୍ଣଙ୍କର ଦାରୁଣ ପୌରୁଷ ପ୍ରକାଶିତ ହେଲା । କର୍ଣ୍ଣ ନତପର୍ବ ଶରମାନଙ୍କ ଦ୍ୱାରା ବିରାଟ ରାଜାଙ୍କର ସୈନ୍ୟମାନଙ୍କୁ ନିବାରଣ କଲେ । ୩୯ । ହେ ମହାରାଜ ! ଦ୍ରୁପଦରାଜା ସ୍ୱୟଂ ଭଗଦତ୍ତଙ୍କ ସହିତ ଯୁଦ୍ଧରେ ପ୍ରବୃତ୍ତ ହେଲେ । ସେ ଦୁଇଜଣଙ୍କ ମଧ୍ୟରେ ଅଦ୍ଭୁତ ଯୁଦ୍ଧ

ଲାଗିଲା ।୪୦। ପୁରୁଷ ଶ୍ରେଷ୍ଠ ଭଗଦତ୍ତ ନତପର୍ବ ଶରଦ୍ୱାରା ଦ୍ରୁପଦ ରାଜାଙ୍କୁ ବିଦ୍ଧ କରି ତାହାଙ୍କ ସାରଥି, ଧ୍ୱଜ, ଓ ରଥକୁ ବିଦ୍ଧ କଲେ । ୪୧ । ତତ୍ପରେ ଦ୍ରୁପଦରାଜ କ୍ରୁଦ୍ଧ ହୋଇ ଆନତପର୍ବ ଶରଦ୍ୱାରା ମହାରଥ ଭଗଦତ୍ତଙ୍କ ବକ୍ଷଃ ସ୍ଥଳରେ ଶୀଘ୍ର ଆଘାତ କଲେ । ୪୨ ।

ଅସ୍ତ୍ରବିଶାରଦ ଯୋଧଶ୍ରେଷ୍ଠ ସୋମଦତ୍ତଙ୍କ ପୁତ୍ର ଭୂରିଶ୍ରବା ଓ ଶିଖଣ୍ଡୀ—ଏ ଦୁହିଙ୍କ ମଧ୍ୟରେ ଯୁଦ୍ଧ ଲାଗିଲା । ସେହି ଯୁଦ୍ଧ ସମସ୍ତ ପ୍ରାଣିଙ୍କ ତ୍ରାସଜନକ ହୋଇଥିଲା । ୪୩ । ହେ ରାଜନ୍ ! ବୀର୍ଯ୍ୟଶାଳୀ ଭୂରିଶ୍ରବା ପ୍ରବଳ ବାଣ ସମୂହଦ୍ୱାରା ମହାରଥ ଯାଜ୍ଞସେନ ଶିଖଣ୍ଡୀଙ୍କୁ ଅତ୍ୟନ୍ତ ଆଛନ୍ନ କରି ପକାଇଲେ । ୪୪ । ହେ ପ୍ରଜାନାଥ ଭାରତ ! ଶିଖଣ୍ଡୀ କ୍ରୁଦ୍ଧ ହୋଇ ନବତି ଅର୍ଥାତ୍ ନବେଗୋଟି ବାଣଦ୍ୱାରା ସୋମଦତ୍ତଙ୍କ ପୁତ୍ରଙ୍କୁ ଅସ୍ଥିର କଲେ । ୪୫ ।

ଭୀଷଣ-କର୍ମା ରାକ୍ଷସ ଘଟୋତ୍କଚ ଓ ଅଳମ୍ବୁଷ—ଏ ଦୁଇଜଣ ପରସ୍ପର ଜୟାଭିଳାଷୀ ହୋଇ ଅତ୍ୟନ୍ତ ଅଦ୍ଭୁତ ଯୁଦ୍ଧ ଆରମ୍ଭ କଲେ ।୪୬। ଏହି ଦୁଇଜଣ ଦର୍ପ କରି ଅସଂଖ୍ୟ ମାୟା ଜାତ କଲେ ଓ ଅନ୍ତର୍ହିତ ହୋଇ ଅତି ବିସ୍ମୟଜନକ ଭାବରେ ଯୁଦ୍ଧରେ ବିଚରଣ କଲେ । ୪୭ । ଦେବାସୁର ଯୁଦ୍ଧ ସମୟରେ ମହା ପରାକ୍ରମୀ ବଳାସୁର ଓ ଇନ୍ଦ୍ର—ଏ ଦୁହିଙ୍କ ମଧ୍ୟରେ ଯେପରି ଯୁଦ୍ଧ ହୋଇଥିଲା, ଚେକିତାନ ଓ ଅନୁବିନ୍ଦଙ୍କ ମଧ୍ୟରେ ସେହିପରି ଅତି ଭୟାନକ ଯୁଦ୍ଧ ଲାଗିଲା । ୪୮ । ହେ ରାଜନ୍ ! ପୂର୍ବ କାଳରେ ବିଷ୍ଣୁ ଯେପରି ହିରଣାକ୍ଷ ସହିତ ଯୁଦ୍ଧ କରିଥିଲେ, ସେହିପରି ଲକ୍ଷ୍ମଣ କ୍ଷେତ୍ରଦେବଙ୍କ ସହିତ ଅତିଶୟ ଭାବରେ ଯୁଦ୍ଧ କଲେ । ୪୯ ।

ହେ ରାଜନ୍ ! ଅନନ୍ତର ବିଧିପୂର୍ବକ ସୁସଜ୍ଜିତ ଓ ଧାବମାନ ଅଶ୍ୱଦ୍ୱାରାଯୁକ୍ତ ରଥରେ ପୌରବ ଆରୋହଣ କରି ଅଭିମନ୍ୟୁଙ୍କ ଆଡ଼କୁ ମହାଶବ୍ଦ ସହିତ ଧାବମାନ ହେଲେ । ୫୦ । ତତ୍ପରେ ମହାବଳ ଅରିନ୍ଦମ ଅଭିମନ୍ୟୁ ଯୁଦ୍ଧାକାଂକ୍ଷୀ ହୋଇ ପୌରବଙ୍କ ଆଡ଼କୁ ଶୀଘ୍ର ଧାଇଁଲେ ଓ ତାହାଙ୍କ ସହିତ ମହାଯୁଦ୍ଧରେ ପ୍ରବୃତ୍ତ ହେଲେ । ୫୧ । ପୌରବ-ଶର-ସମୂହ ଦ୍ୱାରା ସୁଭଦ୍ରାନନ୍ଦନ ଅଭିମନ୍ୟୁଙ୍କୁ ଆଚ୍ଛାଦନ କଲେ । ଅର୍ଜ୍ଜୁନ-ନନ୍ଦନ

ମଧ୍ୟ ପୌରବଙ୍କର ଧ୍ୱଜ, ଛତ୍ର ଓ ଧନୁକୁ ଛେଦନ କରି ଭୂପୃଷ୍ଠକୁ ନିକ୍ଷେପ କଲେ । ୫୨ । ଏବଂ ସାତଗୋଟି ଆଶୁଗ ବାଣଦ୍ୱାରା ପୌରବଙ୍କୁ ବିଦ୍ଧ କଲେ ଓ ଆହୁରି ପାଞ୍ଚଗୋଟି ଶରଦ୍ୱାରା ତାହାଙ୍କର ସାରଥି ଓ ଅଶ୍ୱମାନଙ୍କୁ ବିଦ୍ଧ କଲେ । ୫୩ । ଅନନ୍ତର ଆର୍ଜୁନେୟ ଅଭିମନ୍ୟୁ ସେନାମାନଙ୍କୁ ଆନନ୍ଦିତ କରି ସିଂହବତ୍ ଗର୍ଜ୍ଜନ କଲେ ଓ ଶୀଘ୍ର ପୌରବନାଶକ ଶର ଗୋଟିଏ ପୁଣି ଗ୍ରହଣ କଲେ । ୫୪ ।

ହୃଦିକା-ନନ୍ଦନ କୃତବର୍ମା ଅଭିମନ୍ୟୁଙ୍କୁ ସେହି ଭୀଷଣ ବାଣ ଯୋଖିବାର ଦେଖି ଦୁଇଶର ଦ୍ୱାରା ତାହାଙ୍କର ସେହି ବାଣ ସହିତ ଶରାସନକୁ କାଟି ପକାଇଲେ । ୫୫ । ପରବୀର ହନ୍ତା ଅଭିମନ୍ୟୁ ସେହି ଛିନ୍ନ ଶରାସନ ତ୍ୟାଗ କରି ଚର୍ମ ଓ ଶାଣିତ ଖଡ଼୍‌ଗକୁ ଧାରଣ କଲେ ।୫୬। ଓ ଅନେକ ତାରା ଶୋଭିତ ସେହି ଚର୍ମ ଓ ଅସିକୁ ଶୀଘ୍ର ବୁଲାଇ ଓ ଗତି ବିଶେଷରେ ଭ୍ରମଣ କରି ଆପଣାର ବଳ ଦେଖାଇଲେ ।୫୭। ହେ ରାଜନ୍ ! ସେ ଚର୍ମ ଓ ଖଡ଼୍‌ଗକୁ ଅଭିମନ୍ୟୁ ଏପରି ଦ୍ରୁତଭାବରେ, ଭ୍ରାମଣ, ଉଦ୍‌ଭ୍ରାମଣ, କମ୍ପନ ଓ ପୁନରୁତ୍‌ଥାନ କଲେ ଯେ, ସେହି ଖଡ଼୍‌ଗ ଓ ଚର୍ମ ପୃଥକ୍ ପୃଥକ୍ ବାରି ହେଲା ନାହିଁ । ୫୮ ।

ଗରୁଡ଼ ଯେପରି ସମୁଦ୍ରକୁ କ୍ଷୋଭିତ କରି ନାଗମାନଙ୍କୁ ଧରି ଉପରକୁ ନିକ୍ଷେପ କରିଥିଲେ, ସେହିପରି ଅଭିମନ୍ୟୁ ଈର୍ଷାଯୁକ୍ତ ହୋଇ ହଠାତ୍ ଲମ୍ଫ ପ୍ରଦାନ କଲେ ଓ ସିଂହନାଦ କରି ପୌରବଙ୍କର ରଥ ଉପରେ ଆରୋହଣ କଲେ ମଧ୍ୟ, ତାହାଙ୍କ କେଶାକର୍ଷଣ କରି ପଦାଘାତ ଦ୍ୱାରା ସାରଥିର ପ୍ରାଣ ନାଶ କଲେ ଏବଂ ଅସିଦ୍ୱାରା ରଥର ଧ୍ୱଜ ଛେଦନ କଲେ । ୬୦ । ରାଜାମାନେ ପୌରବଙ୍କର କେଶ ଫିଟିଯାଇ ଥିବାର ଦେଖିଲେ । ଆଉ ସିଂହ ବୃଷଭକୁ ମାରିବା ନିମନ୍ତେ ତଳେ ପକାଇଥିଲେ ସେ ବୃଷ ଯେପରି ଅଚେତନ ହୋଇଥାଏ, ସେହିପରି ରାଜାମାନେ ପୌରବଙ୍କୁ ଅଚେତନ ହୋଇଥିବାର ଦେଖିଲେ । ୬୧ । କିନ୍ତୁ ଅନାଥ ପରି ହୋଇଥିଲେ ଯେଉଁ ପୌରବ, ତାହାଙ୍କର କେଶକୁ ଅଭିମନ୍ୟୁ ଆକର୍ଷଣ କରୁଥିବାର ଓ ପୌରବ ଅଭିମନ୍ୟୁଙ୍କ ବଶପ୍ରାପ୍ତ ହୋଇ ପତିତ ହୋଇଥିବାର ଦେଖି ରାଜା ଜୟଦ୍ରଥ ସହି ପାରିଲେ ନାହିଁ । ୬୨ ।

ସେ ମୟୂରାଙ୍କିତ ଓ କିଙ୍କିଣୀସମୂହ-ଯୁକ୍ତ ଢାଲ ଓ ଖଡ୍‌ଗକୁ ଧାରଣ କରି ଗର୍ଜ୍ଜନ ପୂର୍ବକ ରଥରୁ ଓହ୍ଲାଇ ଧାବମାନ ହେଲେ । ୬୩ । ତତ୍ପରେ ଅଭିମନ୍ୟୁ ଜୟଦ୍ରଥଙ୍କୁ ଦେଖି ପୌରବଙ୍କୁ ପରିତ୍ୟାଗ କଲେ ଓ ଶ୍ୟେନପକ୍ଷୀ ପରି ରଥ ଉପରୁ ଲମ୍ଫ ପ୍ରଦାନ କରି ତଳେ ଆସି ପଡ଼ିଲେ । ୬୪ । ଆଉ ଶତ୍ରୁମାନେ ଯେଉଁ ପ୍ରାସ, ପଟ୍ଟିଷ ଓ ନିସ୍ତ୍ରିଂଶ ସବୁ ଅଭିମନ୍ୟୁ ଉପରକୁ ଗୁଞ୍ଜଆଡ଼ୁ ମାଇଲେ, ସେ ସମସ୍ତକୁ ଅଭିମନ୍ୟୁ ଅସି ଦ୍ୱାରା ଛେଦନ କଲେ ଓ ଢାଲଦ୍ୱାରା ଅବରୋଧ କଲେ । ୬୫ ।

ବଳବାନ୍ ଶୂରଶ୍ରେଷ୍ଠ ଅଭିମନ୍ୟୁ ସୈନ୍ୟମାନଙ୍କୁ ନିଜ ବାହୁବଳ ଦେଖାଇ ସେହି ମହାଖଡ୍‌ଗ ଓ ଢାଲକୁ ଉତ୍ତୋଳନ କଲେ ଓ ଆପଣା ପିତା ଅର୍ଜ୍ଜୁନଙ୍କର ମହାଶତ୍ରୁ ବୃଦ୍ଧକ୍ଷେତ୍ରଙ୍କ ପୁତ୍ର ଜୟଦ୍ରଥଙ୍କ ସମ୍ମୁଖୀନ ହୋଇ ସିଂହ ହସ୍ତୀପ୍ରତି ଧାବମାନ ହେଲା ପ୍ରାୟ ଅଭିମନ୍ୟୁ ଜୟଦ୍ରଥଙ୍କ ଆଡ଼କୁ ଧାବମାନ ହେଲେ । ୬୬ । ସେ ଦୁହେଁ ବ୍ୟାଘ୍ର ଓ ସିଂହ ପରି ଖଡ୍‌ଗ, ଦନ୍ତ, ନଖ ଓ ଆୟୁଧ ଦ୍ୱାରା ପରସ୍ପର ସହର୍ଷ ହୋଇ ପ୍ରହାର କଲେ । ୬୮ । ଅସି ଓ ଚର୍ମର ସମ୍ପାତ, ଅଭିଘାତ ଓ ନିପାତ ଦ୍ୱାରା ସେହି ନରଶ୍ରେଷ୍ଠ ଦୁଇଜଣଙ୍କ ମଧ୍ୟରେ କେହି କିଛି ମାତ୍ର ଅବକାଶ ଦେଖି ପାରିଲେ ନାହିଁ । ୬୯ । ନିମ୍ନରେ ପତନ, ଖଡ୍‌ଗ ଗୁଳନ ଧ୍ୱନି, ଶସ୍ତ୍ରର ଅବକାଶ ପ୍ରଦର୍ଶନ ଓ ଶସ୍ତ୍ରର ବାହାରେ ଓ ଅନ୍ତର ପ୍ରଦେଶରେ ନିପାତ—ଏ ସମସ୍ତ ସେ ଦୁହିଁଙ୍କର ସମାନ ଭାବରେ ଦେଖାଗଲା । ୭° ।

ସେହି ଉଭୟ ମହାତ୍ମା ପକ୍ଷବାନ୍ ପର୍ବତ ପରି ବାହ୍ୟ ଓ ଅନ୍ତର ମାର୍ଗରେ ଗତି ବିଶେଷରେ ବିଚରଣ କରୁଥିବାର ଦୃଷ୍ଟ ହେଲେ । ୭୧ । ଅନନ୍ତର ଯଶସ୍ୱୀ ଅଭିମନ୍ୟୁ ଖଡ୍‌ଗ ନିକ୍ଷେପ କରୁଅଛନ୍ତି, ଏମନ୍ତ ସମୟରେ ଜୟଦ୍ରଥ ଅଭିମନ୍ୟୁଙ୍କର ଢାଲର ପ୍ରାନ୍ତଭାଗରେ ପ୍ରହାର କଲେ । ୭୨ । ସିନ୍ଧୁରାଜଙ୍କର ବଳ-ପ୍ରେରିତ ସେହି ମହାନ୍ ଖଡ୍‌ଗ, ଅଭିମନ୍ୟୁଙ୍କର ଢାଲ କଡ଼ରେ ଖଚିତ ହୋଇଥିବା ସ୍ୱର୍ଣ୍ଣପତ୍ରରେ ଲାଗି ଭଗ୍ନ ହେଲା । ୭୩ । ଖଡ୍‌ଗ ଭାଙ୍ଗିଯିବାର ଦେଖି ସିନ୍ଧୁରାଜ ଲମ୍ଫପ୍ରଦାନ କରି କ୍ଷଣକ ମଧ୍ୟରେ ଛଅପାଦ ଯାଇ ପୁଣି ଆପଣା ରଥରେ ଆରୋହଣ କଲେ । ୭୪ ।

ଅଭିମନ୍ୟୁ ଯୁଦ୍ଧରୁ ମୁକ୍ତ ହୋଇ ଉତ୍ତମ ରଥରେ ଅବସ୍ଥାନ କଲାରୁ ସବୁ ରାଜା ତାହାଙ୍କୁ ଚତୁର୍ଦ୍ଦିଗରୁ ବେଷ୍ଟନ କଲେ । ୭୫ । ଅନନ୍ତର ମହାବଳ ଅର୍ଜୁନ-ନନ୍ଦନ ଅଭିମନ୍ୟୁ ଜୟଦ୍ରଥଙ୍କ ଆଡ଼କୁ ଦୃଷ୍ଟିକଲେ ଓ ଖଡ୍‌ଗ, ଢାଲ ଉତ୍ତୋଳନ କରି ଗର୍ଜ୍ଜନ କଲେ । ୭୬ । ଭାସ୍କର ଯେପରି ଭୁବନରେ ତାପ ପ୍ରଦାନ କରନ୍ତି, ସେହିପରି ବୀର ଶତ୍ରୁହନ୍ତା ଅଭିମନ୍ୟୁ ସିନ୍ଧୁରାଜଙ୍କୁ ପରାଜିତ କରି ସୈନ୍ୟମାନଙ୍କୁ ତାପିତ କଲେ । ୭୭ ।

ଯୁଦ୍ଧରେ ଶଲ୍ୟ ଅଭିମନ୍ୟୁଙ୍କ ପ୍ରତି ପ୍ରଦୀପ୍ତ ଅଗ୍ନିଶିଖାପରି ଯେଉଁ ଭୀଷଣ ଶକ୍ତି ନିକ୍ଷେପ କଲେ, ତାହା ସବୁ ଲୌହମୟ ଓ କନକଭୂଷିତ ଥିଲା । ୭୮ । ଗରୁଡ଼ ଯେପରି ନାଗରାଜଙ୍କୁ ଗ୍ରହଣ କରନ୍ତି, ସେହିପରି ଅର୍ଜୁନ-ନନ୍ଦନ ଅଭିମନ୍ୟୁ ଲମ୍ଫ ପ୍ରଦାନ କରି ସେହି ବୈଦୁର୍ଯ୍ୟ-ଖଚିତ ଶକ୍ତିକୁ ଗ୍ରହଣ କଲେ ଓ ଖଣ୍ଡାକୁ ମଧ୍ୟ ଖୋଳରୁ ବାହାର କଲେ । ୭୯ । ଅମିତ-ତେଜା ସମସ୍ତ କ୍ଷତ୍ରିୟ ମିଳିତ ହୋଇ ତାହାଙ୍କର ବଳବୀର୍ଯ୍ୟ ଓ ଚଞ୍ଚଳତା ଅବଲୋକନ କରି ସିଂହନାଦ କରିବାକୁ ଆରମ୍ଭ କଲେ । ୮୦ । ବୀର ଶତ୍ରୁହନ୍ତା ସୁଭଦ୍ରାପୁତ୍ର ଅଭିମନ୍ୟୁ ଭୁଜବଳରେ ଶଲ୍ୟଙ୍କ ଆଡ଼କୁ ସେହି ବୈଦୁର୍ଯ୍ୟ-ଖଚିତ ଶକ୍ତିକୁ ନିକ୍ଷେପ କଲେ । ୮୧ । ସେହି ନିର୍ମୋକ-ଶୂନ୍ୟ ଭୁଜଙ୍ଗ-ସଦୃଶୀ ଶକ୍ତି ଶଲ୍ୟଙ୍କ ରଥରେ ପତିତ ହେଲା ଓ ସାରଥିକୁ ହତ କରି ତାହାଙ୍କୁ ରଥରୁ ଖସାଇ ପକାଇଲା । ୮୨ ।

ଅନନ୍ତର ବିରାଟ, ଦ୍ରୁପଦ, ଯୁଧିଷ୍ଠିର, ଧୃଷ୍ଟକେତୁ, ଧୃଷ୍ଟଦ୍ୟୁମ୍ନ, ସାତ୍ୟକି, ନକୁଳ, କୈକେୟ, ଭୀମ, ଶିଖଣ୍ଡୀ ଓ ଦ୍ରୌପଦୀଙ୍କର ପାଞ୍ଚପୁତ୍ର— ଏମାନେ ସମସ୍ତେ ସାଧୁ ସାଧୁ ଧ୍ୱନି କଲେ ଓ ଅପଳାୟନଶୀଳ ସୁଭଦ୍ରାପୁତ୍ରଙ୍କୁ ଆନନ୍ଦିତ କରିବା ନିମିତ୍ତ ନାନାପ୍ରକାର ବାଣ-ଶବ୍ଦ ଓ ଅତିଶୟ ସିଂହନାଦ କଲେ ।

ଶତ୍ରୁମାନଙ୍କର ଜୟ ହେଲାରୁ ସେମାନେ ହର୍ଷରେ ଯେଉଁ କୋଳାହଳ କଲେ, ତାହା ଆପଣଙ୍କ ପୁତ୍ରମାନେ ସହିପାରିଲେ ନାହିଁ । ୮୫ । ହେ ମହାରାଜ ! ଅନନ୍ତର ଯେପରି ମେଘମାନେ ପର୍ବତ ଉପରେ ବର୍ଷନ୍ତି, ସେହିପରି ଆପଣଙ୍କ ପକ୍ଷୀୟ ସମସ୍ତେ ମିଳିତ ହୋଇ ଚତୁର୍ଦ୍ଦିଗରୁ ଶାଣିତ ଶର

ସବୁ ସହସା ଅଭିମନ୍ୟୁଙ୍କ ଉପରେ ବର୍ଷଣ କଲେ । ୮୬ । ଶତ୍ରୁଘ୍ନ, ଆର୍ତ୍ତାୟନ-ନନ୍ଦନ ଶଲ୍ୟ ନିଜ ସାରଥିର ପରାଭବ ହୋଇଥିବାର ଦେଖି ଓ ନିଜପକ୍ଷର ପ୍ରିୟ ଇଚ୍ଛା କରି କ୍ରୁଦ୍ଧ ହୋଇ ସୁଭଦ୍ରାନନ୍ଦନ ଅଭିମନ୍ୟୁଙ୍କ ପ୍ରତି ଧାବମାନ ହେଲେ । ୮୭ ।



# ୧୫ ଅଧ୍ୟାୟ

ଧୃତରାଷ୍ଟ୍ର କହିଲେ—ହେ ସଞ୍ଜୟ ? ତୁମ୍ଭେ ଯେପରି ବିଚିତ୍ର ଯୁଦ୍ଧମାନ ବର୍ଣ୍ଣନା କଲ, ସେ ସମସ୍ତ ଶ୍ରବଣ କରି ଆମ୍ଭେ ଚକ୍ଷୁଷ୍ମାନ ହେବାକୁ ଇଚ୍ଛା କରୁଅଛୁଁ । ୧ । ଦେବାସୁର-ଯୁଦ୍ଧ-ସମାନ ଏ ଯେଉଁ ଆଶ୍ଚର୍ଯ୍ୟରୂପ କୁରୁ-ପାଣ୍ଡବ-ଯୁଦ୍ଧ, ତାହାକୁ ମାନବମାନେ ଜଗତରେ କୀର୍ତ୍ତନ କରିବେ । ୨। ଏହି ତୁମୁଳ ଯୁଦ୍ଧ ବିଷୟ ଶ୍ରବଣ କରି ଆମ୍ଭ ତୃପ୍ତିର ଶେଷ ହେବନାହିଁ, ଅତଏବ ତୁମ୍ଭେ ଅଭିମନ୍ୟୁଙ୍କ ଯୁଦ୍ଧ ଆମ୍ଭ ନିକଟରେ ପୁନର୍ବାର ବର୍ଣ୍ଣନ କର । ୩ ।

ସଞ୍ଜୟ କହିଲେ,—ଶଲ୍ୟ ଯେତେବେଳେ ଦେଖିଲେ ଯେ, ନିଜ ସାରଥି ବିଷାଦପ୍ରାପ୍ତ ହୋଇ ଅଛନ୍ତି, ତେତେବେଳେ ସେ କ୍ରୁଦ୍ଧ ହୋଇ ସର୍ବ ଲୌହମୟ ଗଦା ଉଦ୍ୟତ କଲେ, ଓ ନିନାଦ ସହିତ ରଥରୁ ଓହ୍ଲାଇଲେ । ଶଲ୍ୟ ପ୍ରଦୀପ୍ତ କାଳାଗ୍ନି ତୁଲ୍ୟ ଓ ଦଣ୍ଡହସ୍ତ ଯମସଦୃଶ ହୋଇ ଅଭିମନ୍ୟୁଙ୍କ ଆଡ଼କୁ ଆସୁଥିବାର ଦେଖି ଭୀମ ମହତୀ ଗଦା ଘେନି ଶଲ୍ୟଙ୍କପ୍ରତି ଅତି ବେଗରେ ଧାବମାନ ହେଲେ । ୬୦ । ଅଭିମନ୍ୟୁ ମଧ୍ୟ ବଜ୍ରସଦୃଶୀ ମହାଗଦା ଗ୍ରହଣ କଲେ । ଭୀମ ଅଭିମନ୍ୟୁଙ୍କୁ ନିଷେଧ କଲେ ହେଁ ଅଭିମନ୍ୟୁ ଶଲ୍ୟଙ୍କୁ "ଆସ ଆସ" ବୋଲି ଡାକିଲେ । ୬ । ପ୍ରତାପବାନ୍ ଭୀମସେନ ଅଭିମନ୍ୟୁଙ୍କୁ ବାରଣ କରି ଯୁଦ୍ଧରେ ଶଲ୍ୟଙ୍କ ଅଭିମୁଖରେ ଅଚଳ ସଦୃଶ ଅଟଳ ଭାବରେ ଅବସ୍ଥାନ କରି ରହିଲେ । ୭ ।

ଶାର୍ଦ୍ଦୂଳ ଯେପରି ହସ୍ତୀର ସମ୍ମୁଖକୁ ଯାଏ, ସେହିପରି ମହାବଳ ମଦ୍ରରାଜ ମଧ୍ୟ ଭୀମଙ୍କୁ ଦେଖି ଶୀଘ୍ର ତାହାଙ୍କ ଅଭିମୁଖବର୍ତ୍ତୀ ହେଲେ ।

ଅନନ୍ତର ତୂର୍ଯ୍ୟନନାଦ, ସହସ୍ର ସହସ୍ର ଶଙ୍ଖଧ୍ୱନି, ଭେରୀରବ ଓ ବୀର-ବୃନ୍ଦଙ୍କ ସିଂହନାଦ ଉତ୍ଥିତ ହେଲା । ୯ । ଆଉ ଶତ ଶତ କୁରୁପାଣ୍ଡବ ସେନା ସେମାନଙ୍କୁ ଏହିପରି ସମରୋନ୍ମୁଖ ହୋଇଥିବାର ଦେଖି ପରସ୍ପର ଆପଣା ଆପଣା ପକ୍ଷର ଜୟାଭିଳାଷୀ ହୋଇ ଗମନ କଲେ ଓ "ସାଧୁ" "ସାଧୁ" ଏପରି ଶବ୍ଦ କରିବାକୁ ଆରମ୍ଭ କଲେ । ୧୦ ।

ମଦ୍ରରାଜ ବ୍ୟତିରେକେ ଅନ୍ୟ କେହି ଯୁଦ୍ଧରେ ଭୀମସେନଙ୍କ ବେଗ ସହିପାରନ୍ତି ନାହିଁ ଓ ବୃକୋଦର ବ୍ୟତିରେକେ ଏହି ଜଗତରେ ଅନ୍ୟ କେହି ମହାତ୍ମା ମଦ୍ରରାଜଙ୍କର ଗଦାବେଗ ସହନ କରିବାକୁ ସାହସ କରି ପାରନ୍ତିନାହିଁ । ୧୨ । ଅନନ୍ତର ଭୀମସେନ ଯେତେବେଳେ ସ୍ୱର୍ଣ୍ଣପ୍ରଭାଯୁକ୍ତା ମହତୀ ଗଦା ଉଦ୍ଭ୍ରାମଣ କରିବାକୁ ଆରମ୍ଭ କଲେ, ତେତେବେଳେ ତାହା ପ୍ରଜ୍ୱଳିତ ହୋଇ ଲୋକମାନଙ୍କର ଚିତ୍ତ ବିନୋଦ କଲା । ୧୩ । ଅନ୍ୟ ପକ୍ଷରେ ଯେତେବେଳେ ଶଲ୍ୟ ମହାବିଦ୍ୟୁତ୍‌ସମ ପ୍ରଭାସମ୍ପନ୍ନ ମହତୀ ଗଦା ଗ୍ରହଣକରି ମଣ୍ଡଳାକାରରେ ପଦଗ୍ଭଳନା ପୂର୍ବକ ଭ୍ରମଣ କରିବାକୁ ଆରମ୍ଭ କଲେ, ତେତେବେଳେ ତାହାଙ୍କର ସେହି ଗଦା ସର୍ବପ୍ରକାରରେ ଶୋଭ-ମାନ ହେଲା । ୧୪ । ଶଲ୍ୟ ଓ ବୃକୋଦର ଦୁହେଁ ଗଦାରୂପ ଶୃଙ୍ଗ ଉଦ୍ୟତ କରି ଗର୍ଜ୍ଜନଶୀଳ ମହାବୃଷଭ ସଦୃଶ ମଣ୍ଡଳାକାରରେ ବିଚରଣ କଲେ । ୧୫ । ବର୍ତ୍ତୁଳାକାରରେ ଭ୍ରମଣ କରିବା ଓ ଗଦା ବୁଲାଇବା ବିଷୟରେ ସେହି ପୁରୁଷସିଂହ ଦୁହିଁଙ୍କ ମଧ୍ୟରେ କାହାରି କୌଣସି ପାର୍ଥକ୍ୟ ଦେଖାଗଲା ନାହିଁ । ୧୬ । ଭୀମସେନ ଶଲ୍ୟଙ୍କର ଭୀଷଣାକୃତି ମହତୀ ଗଦାକୁ ତାଡ଼ିତ କରନ୍ତେ, ସେହି ଗଦାରୁ ପ୍ରଦୀପ୍ତ ଅଗ୍ନିଶିଖା ବାହାରି ହେଲା ଓ ତାହା କମ୍ପିତ ହେଲା ।୧୭। ଆଉ ଭୀମସେନଙ୍କର ଗଦା ମଧ୍ୟ ଶଲ୍ୟଙ୍କ ଗଦାଦ୍ୱାରା ଅଭିହତ ହେବାରୁ ତାହା ବର୍ଷାଋତୁରେ ସନ୍ଧ୍ୟାକାଳୀନ ଖ-ଦ୍ୟୋତ-ମଣ୍ଡଳୀ ଦ୍ୱାରା ବେଷ୍ଟିତ ବୃକ୍ଷ ସଦୃଶ ପ୍ରଦୀପ୍ତ ହେଲା । ୧୮ । ହେ ଭରତ ! ଯୁଦ୍ଧରେ ମଦ୍ରରାଜଙ୍କର ଗ୍ଭଳିତ ଗଦା ମୁହୁର୍ମୁହୁଃ ଅଗ୍ନିବର୍ଷଣ କରି ନଭୋମଣ୍ଡଳକୁ ଉଜ୍ଜ୍ୱଳ କରୁଥିଲା । ୧୯ । କିନ୍ତୁ ମହତୀ ଉଲ୍‌କା ଆକାଶରୁ ଖସି ପଡ଼ୁଥିବା ସମୟରେ ଯେପରି ଦେଖାଯାଏ, ଭୀମସେନଙ୍କ ଗଦା ଶଲ୍ୟଙ୍କ ପ୍ରତି ନିକ୍ଷିପ୍ତ ହୁଅନ୍ତେ ସେହିପରି ଦେଖାଗଲା ଓ ସେହି ଗଦା ସୈନ୍ୟମାନଙ୍କୁ ସନ୍ତାପିତ କଲା ।୨୦। ଗଦାଯୋଦ୍ଧାମାନଙ୍କର ସେହି ଶ୍ରେଷ୍ଠ ଗଦା ଦୁଇଗୋଟି ପରସ୍ପର

ସଂଲଗ୍ନ ହୋଇ ନିଃଶ୍ୱାସତ୍ୟାଗ-କାରିଣୀ ଦୁଇଗୋଟି ନାଗକନ୍ୟା ସଦୃଶ ଅଗ୍ନି ଜାତ କରାଇଲା । ୨୧ । ଦୁଇଗୋଟି ମହାବ୍ୟାଘ୍ର ଯେପରି ନଖଦ୍ୱାରା ଓ ଦୁଇଗୋଟି ମହାଗଜ ଯେପରି ଦନ୍ତଦ୍ୱାରା ପରସ୍ପର ଯୁଦ୍ଧ କରନ୍ତି, ସେହିପରି ସେମାନେ ଦୁହେଁ ଶ୍ରେଷ୍ଠ ଗଦା ଘେନି ପରସ୍ପରକୁ ପ୍ରାପ୍ତ ହୋଇ ସମରରେ ବିଚରଣ କଲେ । ୨୨ ।

ଅନନ୍ତର ଅଳ୍ପ ସମୟ ମଧ୍ୟରେ ସେହି ମହାତ୍ମାଦୁହେଁ ଦେହାଦ୍ୱାରା ଅଭିହତ ଓ ମର୍ମାହତ ହୋଇ ପୁଷ୍ପିତ ପଳାଶ ବୃକ୍ଷ ପରି ଦୃଷ୍ଟ ହେଲେ ।୨୩। ଯେପରି ଇନ୍ଦ୍ରଙ୍କର ବଜ୍ରଶବ୍ଦ ସବୁଆଡ଼େ ଶ୍ରୁତ ହୁଏ, ସେହିପରି ସେହି ପୁରୁଷସିଂହ ଦୁହିଙ୍କର ଗଦାଘାତ ଶବ୍ଦ ସର୍ବତ୍ର ଶୁଣାଗଲା । ୨୪ । ପର୍ବତ ଭିଦ୍ୟମାନ ହେଲେ ମଧ୍ୟ ଯେପରି କମ୍ପିତ ହୁଏ ନାହିଁ, ସେହିପରି ଭୀମସେନ ବାମ ଓ ଦକ୍ଷିଣପାର୍ଶ୍ୱରେ ମଦ୍ରରାଜଙ୍କ ଗଦାଦ୍ୱାରା ଆହତ ହେଲେ ମଧ୍ୟ କମ୍ପିତ ହେଲେ ନାହିଁ । ୨୫ । ମହାବଳ ମଦ୍ରରାଜ ମଧ୍ୟ ଭୀମଙ୍କ ଗଦାଦ୍ୱାରା ଅଭିହତ ହୋଇ ବଜ୍ରାହତ ପର୍ବତ ପରି ଅଚଳ ଭାବରେ ଅବସ୍ଥିତ ହେଲେ, ଯେହେତୁ ମଦ୍ରରାଜ ଧୈର୍ଯ୍ୟଶାଳୀ ଅତ୍ୟନ୍ତ । ୨୬ । ତତ୍ପରେ ଦୁହେଁ ପୁନର୍ବାର ଗଦା ଉଠାଇ ମହାବେଗରେ ଭ୍ରମଣ କଲେ ଓ ପୁନର୍ବାର ଅନ୍ତରମାର୍ଗସ୍ଥ ହୋଇ ମଣ୍ଡଳାକାରରେ ଭ୍ରମଣ କଲେ । ୨୭ ।

ତଦନନ୍ତର ସହସା ଆଠ ପାଦ ଲମ୍ଫ ପ୍ରଦାନ କରି ହସ୍ତୀ ପରି ମିଳିତ ହୋଇ ଲୌହଦଣ୍ଡ ଦ୍ୱାରା ପରସ୍ପରକୁ ଆଘାତ କଲେ । ୨୮ । ଆଉ ପରସ୍ପରର ବେଗ ଓ ଗଦାଚାଳନାଦ୍ୱାରା ଆହତ ହୋଇ ଇନ୍ଦ୍ରଧ୍ୱଜ ଭୂତଳରେ ଖସିପଡ଼ିଲା ପରି ଦୁହେଁଯାକ ଏକସମୟରେ ପତିତ ହେଲେ । ୨୯ ।

ଅନନ୍ତର ଶଲ୍ୟ ବିହ୍ୱଳହୋଇ ପୁନଃ ପୁନଃ ନିଃଶ୍ୱାସ ତ୍ୟାଗ କରୁଥିବା ସମୟରେ ମହାବଳ କୃତବର୍ମା ଶୀଘ୍ର ତାହାଙ୍କ ସମୀପରେ ଉପସ୍ଥିତ ହେଲେ । ୩୦ । ହେ ମହାରାଜ ! ମଦ୍ରରାଜ ଗଦା ଦ୍ୱାରା ପୀଡ଼ିତ ହୋଇ ବିଚେଷ୍ଟ ଗଜସଦୃଶ ମୂର୍ଚ୍ଛାକୁଳ ହୋଇ ପଡ଼ିଲେ । ମଦ୍ରରାଜଙ୍କୁ ଏପରି ଦେଖି ତାହାଙ୍କୁ ମହାରଥ କୃତବର୍ମା ଶୀଘ୍ର ଆପଣା ରଥରେ ଚଢ଼ାଇ ସଂଗ୍ରାମ ମଧ୍ୟରୁ ଅପସାରିତ କରିନେଲେ । ୩୧ । କିନ୍ତୁ ସୁମହାବାହୁ ବୀର ଭୀମସେନ ନିମେଷକାଳ

ମତ୍ତସଦୃଶ ବିହ୍ୱଳ ରହିଲେ ଓ ପୁଣି ଉତ୍ଥିତ ହୋଇ ଗଦାକୁ ହସ୍ତରେ ଘେନି ଦଣ୍ଡାୟମାନ ହେବାର ଦେଖାଗଲେ । ୩୩ ।

ହେ ମାରିଷ ! ତତ୍ପରେ ଆପଣଙ୍କ ପୁତ୍ରମାନେ ମଦ୍ରରାଜଙ୍କୁ ପରାଜିତ ଦେଖି ହସ୍ତୀ, ପଦାତି, ଅଶ୍ୱ ଓ ରଥସହ ଅତିଶୟ କମ୍ପିତ ହେଲେ ।୩୪। ଜୟଶାଳୀ ପାଣ୍ଡବମାନେ କୌରବସୈନ୍ୟମାନଙ୍କୁ ପୀଡ଼ିତ କରିବାରୁ କୌରବସୈନ୍ୟମାନେ ଭୀତ ହୋଇ ବାୟୁଦ୍ୱାରା ଚାଳିତ ମେଘସମୂହ ସଦୃଶ ସବୁଦିଗକୁ ଧାବମାନ ହେଲେ । ୩୫ ।

ହେ ରାଜନ୍ ! ମହାରଥ ପାଣ୍ଡବମାନେ ଆପଣଙ୍କ ପକ୍ଷୀୟ ସମସ୍ତଙ୍କୁ ଜୟ କରି ଦୀପ୍ୟମାନ ଅଗ୍ନିସଦୃଶ ରଣରେ ବିରାଜମାନ ହେଲେ । ଆଉ ହର୍ଷିତ ହୋଇ ଅତିଶୟ ସିଂହନାଦ କଲେ ଓ ଶଙ୍ଖ, ଭେରୀ, ମୃଦଙ୍ଗ ଓ ଆନକ ବାଦ୍ୟମାନଙ୍କୁ ବଜାଇଲେ । ୩୬ ।

---

# ୧୬ ଅଧ୍ୟାୟ

ସଞ୍ଜୟ କହିଲେ— ହେ ରାଜନ୍ ! ବୀର୍ଯ୍ୟଶାଳୀ ବୃଷସେନ ଯେତେବେଳେ ଦେଖିଲେ ଯେ, ଆପଣଙ୍କର ସୁମହତ୍ ସୈନ୍ୟସମୂହ ଇତସ୍ତତଃ ଓ ଛିନ୍ନଭିନ୍ନ ହୋଇ ଯାଉଅଛନ୍ତି । ସେତେବେଳେ ସେ ଏକାକୀ ହୋଇ ଅସ୍ତ୍ରବିଦ୍ୟା ପ୍ରଭାବରେ ସମସ୍ତ ସୈନ୍ୟଙ୍କୁ ସଂସ୍ଥାପିତ କଲେ ଅର୍ଥାତ୍ ସୈନ୍ୟମାନଙ୍କୁ ଏକତ୍ରିତ କରି ରଖିଲେ, ଆଉ ଯୁଦ୍ଧରେ ଦଶଦିଗକୁ ବାଣ ନିକ୍ଷେପ କଲେ । ସେହି ବାଣସବୁ ବିପକ୍ଷମାନଙ୍କର ନର, ବାଜି, ରଥ ଓ ହସ୍ତୀ ସୈନ୍ୟମାନଙ୍କୁ ଭେଦ କରି ବିଚରଣ କଲେ ।୨ ।

ହେ ମହାରାଜ ! ତାହାଙ୍କର ସହସ୍ର ସହସ୍ର ପ୍ରଦୀପ୍ତ ବାଣସବୁ ଗ୍ରୀଷ୍ମକାଳର ସୂର୍ଯ୍ୟ କିରଣ ପରି ବିଚରଣ କଲେ । ୩ । ହେ ମହାରାଜ ! ରଥୀ ଓ ସାଦୀମାନେ ତାହାଙ୍କ ଶରରେ ପୀଡ଼ିତ ହୋଇ ବାତଭଗ୍ନ ବୃକ୍ଷପରି ସହସା ଭୂତଳରେ ପତିତ ହେଲେ । ୪ । ମହାରଥ ବୃଷସେନ

ଯୁଦ୍ଧରେ ଶତ ଶତ ଓ ସହସ୍ର ସହସ୍ର ଅଶ୍ୱ, ରଥ ଓ ଗଜଙ୍କୁ ବିନାଶ କଲେ । ୫ ।

ହେ ରାଜନ୍ ! ସଂଗ୍ରାମରେ ବୃଷସେନ ଏକାକୀ ହୋଇ ବିଚରଣ କରୁଥିବାର ଦେଖି ରାଜାମାନେ ମିଳିତ ହୋଇ ତାହାଙ୍କୁ ଚାରିଆଡ଼ୁ ବେଷ୍ଟନ କଲେ । ୬ । ନକୁଳଙ୍କ ପୁତ୍ର ଶତାନୀକ ବୃଷସେନଙ୍କ ନିକଟରେ ଉପସ୍ଥିତ ହୋଇ ତାହାଙ୍କ ଉପରକୁ ଦଶଗୋଟି ମର୍ମଭେଦୀ ବାଣ ନିକ୍ଷେପ କଲେ । ୭ । କର୍ଣ୍ଣଙ୍କ ପୁତ୍ର ବୃଷସେନ ମଧ୍ୟ ଶତାନୀକଙ୍କ ଶରାସନ ଛେଦନ କରି ରଥଧ୍ୱଜ କାଟି ତଳେ ପକାଇଦେଲେ । ଦ୍ରୌପଦୀଙ୍କ ଅନ୍ୟାନ୍ୟ ପୁତ୍ରମାନେ ସେମାନଙ୍କର ଭାଇ ଶତାନୀକଙ୍କ ସାହାଯ୍ୟାର୍ଥେ ସେଠାରେ ଉପସ୍ଥିତ ହେଲେ ଓ ଶରସମୂହ ଦ୍ୱାରା ଶୀଘ୍ର କର୍ଣ୍ଣପୁତ୍ରଙ୍କୁ ଆଚ୍ଛାଦନ କରି ତାହାଙ୍କୁ ଅଦୃଶ୍ୟ କରି ପକାଇଲେ ।

ହେ ମହାରାଜ ! ଯେପରି ମେଘସମୂହ ବୃଷ୍ଟିଦ୍ୱାରା ପର୍ବତଗଣଙ୍କୁ ଆଚ୍ଛାଦନ କରନ୍ତି, ସେହିପରି ଦ୍ରୋଣପୁତ୍ର ପ୍ରଭୃତି ମହାରଥମାନେ ସିଂହନାଦ କରି ମହାରଥ ଦ୍ରୌପଦୀ-ପୁତ୍ରମାନଙ୍କୁ ନାନାବିଧ ଶରଦ୍ୱାରା ଆଚ୍ଛାଦନ ପୂର୍ବକ ବେଗରେ ଧାବମାନ ହେଲେ । ୧୦ । ଏହା ଦେଖି ପାଞ୍ଚାଳ, କୈକେୟ, ମତ୍ସ୍ୟ, ସୃଞ୍ଜୟଗଣ ଓ ପୁତ୍ରହିତାର୍ଥୀ ପାଣ୍ଡବମାନେ ଆୟୁଧମାନ ଧରି ଶୀଘ୍ର ସେମାନଙ୍କ ଆଡ଼କୁ ବାହାରି ହେଲେ । ୧୧ ।

ଦାନବଗଣ ସହିତ ଦେବଗଣଙ୍କର ଯେପରି ଯୁଦ୍ଧ ହୋଇଥିଲା, ସେହିପରି ଆପଣଙ୍କ ଯୋଦ୍ଧୃଗଣ ସହ ପାଣ୍ଡବମାନଙ୍କର ଘୋରତର ଲୋମହର୍ଷଣ ଯୁଦ୍ଧ ଆରମ୍ଭ ହେଲା । ୧୨ । ଏହିପ୍ରକାରେ କୁରୁ ଓ ପାଣ୍ଡବ ବୀରମାନେ ପରସ୍ପର ପ୍ରତି ଆକ୍ରୋଶ କରି ସରୋଷଚକ୍ଷୁରେ ପରସ୍ପରକୁ ନିରୀକ୍ଷଣ କଲେ । ୧୩ । ଆକାଶରେ ଯୁଦ୍ଧାର୍ଥୀ ଗରୁଡ଼ ଓ ପନ୍ନଗମାନଙ୍କର ଶରୀର ଯେପରି ଦୃଷ୍ଟ ହୁଏ, ସେହି ଯୁଦ୍ଧାଭିଳାଷୀ ଅସୀମତେଜା ଯୋଦ୍ଧାମାନଙ୍କର ଶରୀର କ୍ରୋଧ ହେତୁରୁ ସେହିପରି ଦୃଷ୍ଟ ହେଲା ।୧୪।

ସେହି ରଣଭୂମିରେ ଭୀମ, କର୍ଣ୍ଣ, କୃପ, ଦ୍ରୋଣ, ଅଶ୍ୱତ୍ଥାମା, ଧୃଷ୍ଟଦ୍ୟୁମ୍ନ ଓ ସାତ୍ୟକି ପ୍ରଭୃତି ମହାବୀରମାନେ ଉପସ୍ଥିତ ଥିବାରୁ ସେ

ରଣଭୂମି ପ୍ରଳୟକାଳର ସମୁଦିତ ସୂର୍ଯ୍ୟସଦୃଶ ଦୀପ୍ତି ପ୍ରାପ୍ତ ହେଲା । ୧୫ । ମହାବଳ ଦାନବମାନଙ୍କ ସହିତ ବଳବାନ୍ ଦେବଗଣଙ୍କର ଯେପରି ଯୁଦ୍ଧ ହୋଇଥିଲା, ପରସ୍ପର-ପ୍ରହାରକାରୀ ଯୋଦ୍ଧାମାନଙ୍କ ମଧ୍ୟରେ ସେହିପରି ତୁମୁଳ ଯୁଦ୍ଧ ହେଲା । ୧୬ ।

ତତ୍ପରେ ଉନ୍ମଥିତସାଗର ଶବ୍ଦସଦୃଶ ଶବ୍ଦକାରୀ ଯୁଧିଷ୍ଠିରଙ୍କର ସୈନ୍ୟମାନେ ଆପଣଙ୍କ ସୈନ୍ୟମାନଙ୍କୁ ପ୍ରହାର କରିବାରେ ପ୍ରବୃତ୍ତ ହେଲେ । ତହିଁରେ ଆପଣଙ୍କ ସୈନ୍ୟମଧ୍ୟରୁ ଅନେକ ମହାରଥ ମଧ୍ୟ ପଳାୟନ କଲେ । ୧୭ ।

ସୈନ୍ୟମାନଙ୍କୁ ଶତ୍ରୁମାନଙ୍କ ଦ୍ୱାରା ବିଶେଷ ପୀଡ଼ିତ ହୋଇ ପଳାୟନ କରିବାର ଦେଖି ଦ୍ରୋଣ କହିଲେ, "ହେ ଶୂରବୃନ୍ଦ ! ତୁମ୍ଭେମାନେ ପଳାଇ ଯାଅ ନାହିଁ । ଏହା କହି ଦ୍ରୋଣାଚାର୍ଯ୍ୟ ଚତୁର୍ଦ୍ଦନ୍ତ ହସ୍ତୀ ସଦୃଶ ପାଣ୍ଡବ ସୈନ୍ୟ ମଧ୍ୟରେ ପ୍ରବିଷ୍ଟ ହୋଇ ଯୁଧିଷ୍ଠିରଙ୍କୁ ଆକ୍ରମଣ କଲେ । ୧୯ । ଯୁଧିଷ୍ଠିର କଙ୍କପକ୍ଷ ଯୁକ୍ତ ଶାଣିତ ଶରଦ୍ୱାରା ଦ୍ରୋଣଙ୍କୁ ବିଦ୍ଧ କଲେ । ଦ୍ରୋଣ ଯୁଧିଷ୍ଠିରଙ୍କର ଶରାସନକୁ ଛେଦନ କରି ଦ୍ରୁତ-ବେଗରେ ତାହାଙ୍କ ପ୍ରତି ଧାବମାନ ହେଲେ । ୨୦ । ଯେପରି ବେଳାଭୂମି ସାଗରକୁ ସୀମାତିକ୍ରମ କରିବାକୁ ଦିଏ ନାହିଁ, ସେହିରୂପେ ଚକ୍ରରକ୍ଷକ ପାଞ୍ଚାଳମାନଙ୍କ ଯଶସ୍କର କୁମାର ନାମକ ବୀର ଦ୍ରୋଣାଚାର୍ଯ୍ୟଙ୍କୁ ବାରଣ କଲେ । ୨୧ ।

ଦ୍ୱିଜଶ୍ରେଷ୍ଠ ଦ୍ରୋଣ କୁମାରଙ୍କ ଦ୍ୱାରା ନିବାରିତ ହେବାର ଦେଖି ପାଣ୍ଡବସେନା ସିଂହନାଦ ସହକାରେ ସାଧୁ ସାଧୁ ଶବ୍ଦ ଉଚ୍ଚାରଣ କଲେ । ୨୨ । ମହାବଳ କୁମାର ମଧ୍ୟ ସଂକ୍ରୁଦ୍ଧ ହୋଇ ପୁନଃ ପୁନଃ ସିଂହନାଦ କରି ଯୁଦ୍ଧରେ ବହୁ ସହସ୍ର ଶରଦ୍ୱାରା ଦ୍ରୋଣଙ୍କୁ ନିବାରଣ କରି ଅପରିଶ୍ରାନ୍ତ ଭାବରେ ଲଘୁହସ୍ତତା ଦ୍ୱାରା ତାହାଙ୍କର ବକ୍ଷଃସ୍ଥଳରେ ବାଣ ବିଦ୍ଧ କରିବାରେ ପ୍ରବୃତ୍ତ ହେଲେ । ୨୪ । ପରନ୍ତୁ ଦ୍ୱିଜଶ୍ରେଷ୍ଠ ଦ୍ରୋଣ ଆର୍ଯ୍ୟବ୍ରତ ମନ୍ତ୍ରାସ୍ତ୍ରକୁଶଳ ଚକ୍ରରକ୍ଷକ ସେହି ଶୂର କୁମାରକୁ ବିନଷ୍ଟ କଲେ । ୨୫ ।

ଅନନ୍ତର ଦ୍ୱିଜଶ୍ରେଷ୍ଠ ଦ୍ରୋଣ ସମୁଦାୟ ସୈନ୍ୟର ମଧ୍ୟଗତ ହୋଇ ସର୍ବ ଦିଗ ଭ୍ରମଣ ପୂର୍ବକ ନିଜ ସୈନ୍ୟମାନଙ୍କୁ ରକ୍ଷା କରିବାରେ ପ୍ରବୃତ୍ତ ହେଲେ । ଦ୍ରୋଣ ଶିଖଣ୍ଡୀଙ୍କୁ ଦ୍ୱାଦଶ ବାଣ ଦ୍ୱାରା, ଉତ୍ତମୌଜାଙ୍କୁ ବିଂଶତି ବାଣ ଦ୍ୱାରା, ନକୁଳଙ୍କୁ ପଞ୍ଚବାଣ ଦ୍ୱାରା, ସହଦେବଙ୍କୁ ସପ୍ତ ବାଣ ଦ୍ୱାରା, ଯୁଧିଷ୍ଠିରଙ୍କୁ ଦ୍ୱାଦଶ ବାଣ ଦ୍ୱାରା, ଦ୍ରୌପଦୀ ପୁତ୍ରମାନଙ୍କୁ ତିନ ତିନ ବାଣ ଦ୍ୱାରା, ସାତ୍ୟକିଙ୍କୁ ପଞ୍ଚ ବାଣ ଦ୍ୱାରା ଓ ମତ୍ସ୍ୟରାଜଙ୍କୁ ଦଶ ବାଣ ଦ୍ୱାରା ବିଦ୍ଧ କରି ଅନ୍ୟାନ୍ୟ ପ୍ରଧାନ ପ୍ରଧାନ ଯୋଦ୍ଧାମାନଙ୍କୁ ବିକ୍ଷୋଭିତ କଲେ । ପରେ କୁନ୍ତୀପୁତ୍ର ଯୁଧିଷ୍ଠିରଙ୍କୁ ଗ୍ରହଣ କରିବାକୁ ଅଗ୍ରସର ହେଲେ । ୨୯ ।

ହେ ରାଜନ୍ ! ତତ୍ପରେ ଯୁଗନ୍ଧର ବାତୋଦ୍ଧୂତ ମହାର୍ଣ୍ଣବ ତୁଲ୍ୟ କ୍ରୁଦ୍ଧ ମହାରଥ ଦ୍ରୋଣଙ୍କୁ ଶରବର୍ଷଣ ଦ୍ୱାରା ନିବାରଣ କଲେ । ୩୦ । ଦ୍ରୋଣ ସନ୍ନତପର୍ବ ଶରଦ୍ୱାରା ଯୁଧିଷ୍ଠିରଙ୍କୁ ଭଲ୍ଲ ଅସ୍ତ୍ରଦ୍ୱାରା ରଥ-ମାଡ଼ରୁ ନିପତିତ କଲେ । ୩୧ । ତହୁଁ ବିରାଟ, ଦ୍ରୁପଦ, କୈକେୟ ରାଜାମାନେ, ସାତ୍ୟକି, ଶିବି, ପାଞ୍ଚାଲ୍ୟ, ବ୍ୟାଘ୍ରଦତ୍ତ ବୀର୍ଯ୍ୟବାନ୍ ସିଂହସେନ ଓ ଅନ୍ୟାନ୍ୟ ବହୁ ଯୋଦ୍ଧା ଯୁଧିଷ୍ଠିରଙ୍କୁ ରକ୍ଷା କରିବା ମାନସରେ ଅଗ୍ରସର ହୋଇ ବହୁଶର ବର୍ଷଣ ଦ୍ୱାରା ଦ୍ରୋଣଙ୍କ ପଥ ଅବରୋଧ କଲେ । ହେ ରାଜନ୍ ! ପାଞ୍ଚାଲ୍ୟ ବ୍ୟାଘ୍ରଦତ୍ତ, ପଞ୍ଚାଶତ ଶାଣିତ ଶରଦ୍ୱାରା ଦ୍ରୋଣଙ୍କୁ ବିଦ୍ଧ କଲେ । ଏହା ଦେଖି ଲୋକ ଚିତ୍କାର କରିବାକୁ ଆରମ୍ଭ କଲେ । ୩୪ । ସିଂହସେନ ମହାରଥ ଦ୍ରୋଣଙ୍କୁ ଅତିଶୀଘ୍ର ବିଦ୍ଧକରି ବିପକ୍ଷ ମହାରଥମାନଙ୍କୁ ତ୍ରାସିତ ପୂର୍ବକ ଆନନ୍ଦ ସହକାରେ ହାସ୍ୟ କଲେ । ୩୫ ।

ଅନନ୍ତର ଦ୍ରୋଣ ନୟନ-ବିସ୍ଫାରଣ-ପୂର୍ବକ ଶରାସନ-ଜ୍ୟା ମାର୍ଜିତ ଓ ହସ୍ତତଳକୁ ମହାଶବ୍ଦିତ କରି ସିଂହସେନ ପ୍ରତି ଧାବମାନ ହେଲେ ଓ ଦୁଇଗୋଟି ଭଲ୍ଲ ଅସ୍ତ୍ରଦ୍ୱାରା ସିଂହସେନ ଓ ବ୍ୟାଘ୍ରଦତ୍ତ—ଏ ଦୁହିଙ୍କର ଦେହରୁ ସକୁଣ୍ଡଳ ମସ୍ତକ ଛେଦନ କରି ପକାଇଲେ । ୩୬ । ତହୁଁ ଉତ୍ତାରୁ ଶରସମୂହ ଦ୍ୱାରା ସେହି ସମସ୍ତ ପାଣ୍ଡବ ଯୋଦ୍ଧାମାନଙ୍କୁ ମର୍ଦ୍ଦିତ କରି ଯୁଧିଷ୍ଠିରଙ୍କର ରଥ ସମୀପରେ ଦ୍ରୋଣାଚାର୍ଯ୍ୟ ଯମସଦୃଶ ଅବସ୍ଥାନ କଲେ ।

ହେ ରାଜନ୍ ! ଯତବ୍ରତ ଦ୍ରୋଣ ସମୀପସ୍ଥ ହେଲାରୁ ଯୁଧିଷ୍ଠିରଙ୍କ ସେନା ମଧ୍ୟରେ "ରାଜା ହତ ହେଲେ" ବୋଲି ମହାଶବ୍ଦ ଉତ୍ଥିତ ହେଲା । ୩୯ । ଆପଣଙ୍କ ସୈନ୍ୟମାନେ ମଧ୍ୟ ଦ୍ରୋଣଙ୍କ ବିକ୍ରମ ଦେଖି କହିଲେ ଯେ ଆଜି ରାଜା ଦୁର୍ଯୋଧନ କୃତାର୍ଥ ହେବେ । ଏହି ମୁହୂର୍ତ୍ତରେ ଦ୍ରୋଣ ଯୁଧିଷ୍ଠିରଙ୍କୁ ସଂଗ୍ରାମରେ ଗ୍ରହଣ କରି ଆମ୍ଭମାନଙ୍କ ଓ ରାଜା ଦୁର୍ଯୋଧନଙ୍କ ସମୀପକୁ ସହର୍ଷ ଚିତ୍ତରେ ଆଗମନ କରିବେ । ୪୧ । ଆପଣଙ୍କ ସେନାମାନେ ଏହିପରି ଜଳ୍ପନା କରୁଅଛନ୍ତି, ଏମନ୍ତ ସମୟରେ ମହାରଥ କୁନ୍ତୀନନ୍ଦନ ଅର୍ଜ୍ଜୁନ ରଥରେ ଆରୋହଣ କରି ଦ୍ରୁତ ବେଗରେ ରଥଘୋଷ ଦ୍ୱାରା ରଣସ୍ଥଳକୁ ନିନାଦିତ କରି ଶରମାନଙ୍କ ଅସ୍ଥିଦ୍ୱାରା ପରିକୀର୍ଣ୍ଣ ପ୍ରେତକୂଳର ଅପହାରିଣୀ ଲୋକସଂହାରିଣୀ ଶୋଣିତମୟୀ ନଦୀକୁ ସୃଜନ ପୂର୍ବକ ଉପସ୍ଥିତ ହେଲେ । ଶୋଣିତ ସେହି ନଦୀର ଜଳସ୍ୱରୂପ ଓ ରଥ ଆବର୍ତ୍ତ ସ୍ୱରୂପ ହୋଇଥିଲେ । ୪୩ ।

ଅର୍ଜ୍ଜୁନ ସହସା ଇଷୁଜାଳରେ କୁରୁମାନଙ୍କୁ ବିଦ୍ରାବିତ, ଦିକ୍ ସମସ୍ତଙ୍କୁ ଆଚ୍ଛାଦିତ ଓ ଦ୍ରୋଣ ସନାମାନଙ୍କୁ ମୋହିତ କଲେ ଓ ସେହି ଶୋଣିତ ନଦୀକୁ ଶୀଘ୍ର ଉତ୍ତୀର୍ଣ୍ଣ ହୋଇ ଦ୍ରୋଣସୈନ୍ୟ ମଧ୍ୟରେ ଉପସ୍ଥିତ ହେଲେ । ଶରସମୂହ ସେହି ନଦୀର ମହାଫେନ ସ୍ୱରୂପ ଓ ପ୍ରାସାସ୍ତ୍ର ମତ୍ସ୍ୟ-ସମୂହ ସ୍ୱରୂପ ହୋଇଥିଲେ । ୪୫ । ଯଶସ୍ୱୀ କୁନ୍ତୀପୁତ୍ର ଅର୍ଜ୍ଜୁନ ଏମନ୍ତ ଶୀଘ୍ର ହସ୍ତରେ ବାଣସବୁ ସନ୍ଧାନ ଓ ନିକ୍ଷେପ କଲେ ଯେ, ତାହାଙ୍କର ଅବକାଶ କେହି ଲକ୍ଷ୍ୟ କରି ପାରିଲେ ନାହିଁ । ୪୬ ।

ହେ ମହାରାଜ ! କି ଦିଗ, କି ଅନ୍ତରୀକ୍ଷ, କି ଅଧଃ, କି ଊର୍ଦ୍ଧ୍ୱ, କିଛିମାତ୍ର ଦୃଷ୍ଟ ହେଲା ନାହିଁ; ସମସ୍ତ ଶରମୟ ହୋଇଗଲା । ୪୭ । ହେ ରାଜନ୍ ! ଗାଣ୍ଡୀବଧନ୍ୱା ଅର୍ଜ୍ଜୁନ ସେହି ସମରରେ କେବଳ ବାଣଦ୍ୱାରା ଘୋର ଅନ୍ଧକାର କରି ପକାଇଲେ । ୪୮ । ସେହି ସମୟରେ ସୂର୍ଯ୍ୟ ଧୂଳୀ ପଟଳୀରେ ସମାଚ୍ଛନ୍ନ ହୋଇ ଅସ୍ତଗତ ପ୍ରାୟ ହେବାରୁ କିଏ ଶତ୍ରୁ, କିଏ ମିତ୍ର, କିଛି ବୋଧଗମ୍ୟ ହେଲା ନାହିଁ । ୪୯ । ଅନନ୍ତର ଦ୍ରୋଣ ଓ ଦୁର୍ଯ୍ୟୋଧନ ପ୍ରଭୃତି କୁରୁମାନେ ନିବୃତ୍ତ ହୋଇ ସ୍ୱ ସ୍ୱ ସୈନ୍ୟମାନଙ୍କୁ ଅବହାର କରାଇଲେ । ଅର୍ଜ୍ଜୁନ ମଧ୍ୟ ବିପକ୍ଷମାନଙ୍କୁ ତ୍ରସ୍ତ ଓ ଯୁଦ୍ଧ-ପରାଙ୍ମୁଖ

ଦେଖି କ୍ରମେ କ୍ରମେ ସ୍ୱୀୟ ସୈନ୍ୟମାନଙ୍କୁ ନିବୃତ୍ତ କରାଇଲେ । ଯେପରି ଋଷିମାନେ ସୂର୍ଯ୍ୟଙ୍କୁ ସ୍ତବ କରନ୍ତି, ସେହିପରି ପାଣ୍ଡବ, ସୃଞ୍ଜୟ ଓ ପାଞ୍ଚାଳମାନେ ଆନନ୍ଦିତ ଚିତ୍ତରେ ମନୋଜ୍ଞ ବାକ୍ୟଦ୍ୱାରା ଅର୍ଜୁନଙ୍କୁ ପ୍ରଶଂସା କରିବାରେ ପ୍ରବୃତ୍ତ ହେଲେ ।

ଏହିରୂପେ ବାସୁଦେବଙ୍କୁ ସଙ୍ଗରେ ନେଇ ଧନଞ୍ଜୟ ଶତ୍ରୁମାନଙ୍କୁ ପରାଜିତ କଲେ ଓ ହୃଷ୍ଟଚିତ୍ତରେ ସୈନ୍ୟମାନଙ୍କୁ ଅଗ୍ରବର୍ତ୍ତୀ କରି ସ୍ୱ-ଶିବିରକୁ ପ୍ରସ୍ଥାନ କଲେ । ୫୩ । ଯେପରି ଚନ୍ଦ୍ର ନକ୍ଷତ୍ର-ସହିତ ନଭୋମଣ୍ଡଳରେ ବିରାଜମାନ ହୁଅନ୍ତି, ତଦ୍ରୂପ ପାଣ୍ଡୁନନ୍ଦନ ଅର୍ଜୁନ ଅତି ଉତ୍କୃଷ୍ଟ ଇନ୍ଦ୍ର ନୀଳମଣି, ପଦ୍ମରାଗମଣି, ସୁବର୍ଣ୍ଣ, ରୌପ୍ୟ, ହୀରକ, ପ୍ରବାଳ ଓ ସ୍ଫଟିକମଣିସହିତ ରଥରେ ଦୀପ୍ତିପ୍ରାପ୍ତ ହେଲେ ।



# ୧୭ ଅଧ୍ୟାୟ

ସଞ୍ଜୟ କହିଲେ-- ହେ ପ୍ରଜାନାଥ ! ଯୁଦ୍ଧରୁ ନିବୃତ୍ତ ହେବାପରେ ଉଭୟ ସେନା ଆପଣା ଆପଣା ଶିବିରରେ ଯଥାଗୁଳ୍ମ, ଯଥାଭାଗ ଓ ଯଥାବିଧିରେ ନିବିଷ୍ଟ ହେଲେ । ୧ । ଦ୍ରୋଣାଚାର୍ଯ୍ୟ ଦୁର୍ଯ୍ୟୋଧନଙ୍କୁ ଅବଲୋକନ ପୂର୍ବକ ଅତିଶୟ ଦୁର୍ମନା ହୋଇ ସଲ୍ଲଜଭାବରେ କହିଲେ । ୨ ।

ଆମ୍ଭେ ପୂର୍ବରୁ କହିଅଛୁଁ ଯେ ଧନଞ୍ଜୟ ଥାଉଁ ଥାଉଁ ଦେବତା-ମାନେ ସୁଦ୍ଧା ଯୁଧିଷ୍ଠିରଙ୍କୁ ଧରି ନେଇ ପାରିବେ ନାହିଁ । ୩ । ଆପଣମାନେ ଯତ୍ନପରାୟଣ ଥିଲେ ସୁଦ୍ଧା ଆପଣମାନଙ୍କ ସମକ୍ଷରେ ପାର୍ଥ ଯାହା କଲେ, ତାହା ଆପଣମାନେ ଦେଖିଲେ । ଅତଏବ "କୃଷ୍ଣ-ପାଣ୍ଡବ ଯେ ଅଜେୟ" ଆମ୍ଭର ଏ କଥାରେ ଆପଣ ସଂଶୟ କରିବେ ନାହିଁ । ୪ । ହେ ରାଜନ୍ ! ଯଦି କୌଣସି ଉପାୟଦ୍ୱାରା ଶ୍ୱେତବାହନ ଅର୍ଜୁନଙ୍କୁ ଯୁଧିଷ୍ଠିରଙ୍କ ନିକଟରୁ ଅପସାରିତ କରିପାରିବେ, ତାହାହେଲେ ଯୁଧିଷ୍ଠିର ଆପଣଙ୍କ ବଶବର୍ତ୍ତୀ ହେବେ । ୫ ।

ହେ ନୃପ ! କୌଣସି ବୀର ଅର୍ଜୁନଙ୍କୁ ଯୁଦ୍ଧରେ ଆହ୍ୱାନ କରି ତାହାଙ୍କୁ ସ୍ଥାନାନ୍ତରିତ କଲେ, ଯୁଦ୍ଧସ୍ଥଳରେ ଅର୍ଜୁନ ତାହାଙ୍କୁ ଜୟ ନ କରି କୌଣସି ପ୍ରକାରେ ନିବୃତ୍ତ ହେବେ ନାହିଁ । ୬ । ଅର୍ଜୁନ ଯେଉଁ ସମୟରେ ସେହି ଯୁଦ୍ଧରେ ନିଯୁକ୍ତ ଥିବେ, ସେହି ସମୟ ମଧ୍ୟରେ ଆମ୍ଭେ ସୈନ୍ୟମାନଙ୍କୁ ଭେଦ କରି ଧୃଷ୍ଟଦ୍ୟୁମ୍ନଙ୍କ ସାକ୍ଷାତରେ ଧର୍ମରାଜଙ୍କୁ ଧରି ଆଣିବୁଁ । ୭ । ଅର୍ଜୁନଙ୍କ ଅବସ୍ଥାନ କାଳରେ ଆମ୍ଭଙ୍କୁ ସମରରେ ସମାଗତ ଦେଖି ଯୁଧିଷ୍ଠିର ଯଦି ଯୁଦ୍ଧରୁ ପରାଙ୍ମୁଖ ନ ହୁଅନ୍ତି, ତେବେ ଆପଣ ତାହାଙ୍କୁ ଧୃତ ବୋଲି ଜାଣିବେ । ୮ ।

ହେ ମହାରାଜ ! ଏହିରୂପେ ଆମ୍ଭେ ଧର୍ମପୁତ୍ର ଯୁଧିଷ୍ଠିରଙ୍କୁ ଓ ତାହାଙ୍କ ଅନୁଚରବର୍ଗଙ୍କୁ ଆପଣଙ୍କ ବଶକୁ ଆଣିଦେବୁଁ, ଏଥିରେ ସଂଶୟ ନାହିଁ । ୯ । ପାଣ୍ଡବରାଜ ଯୁଧିଷ୍ଠିର ଯଦି ମୁହୂର୍ତ୍ତେମାତ୍ର ଯୁଦ୍ଧରେ ଅବସ୍ଥାନ କରନ୍ତି ଓ ସମରରୁ ଅପସୃତ ନ ହୁଅନ୍ତି, ତେବେ ଆମ୍ଭେ ଅବଶ୍ୟ ତାହାଙ୍କୁ ଧରି ଆଣିବୁଁ । ଧର୍ମରାଜଙ୍କୁ ଧରି ଆଣିଲେ, ତାହା ବିଜୟ ଅପେକ୍ଷା ଶ୍ରେଷ୍ଠ ହେବ । ୧୦ ।

ସଞ୍ଜୟ ବୋଇଲେ—ହେ ରାଜନ୍ ! ଦ୍ରୋଣଙ୍କର ତଦ୍ରୂପ ବଚନ ଶ୍ରବଣ କରି ଭ୍ରାତୃସହ ତ୍ରିଗର୍ତ୍ତାଧିପତି କହିଲେ ଯେ, ଗାଣ୍ଡୀବଧନ୍ୱା ଅର୍ଜୁନ ଆମ୍ଭମାନଙ୍କର ବାରମ୍ବାର ଅପକାର କରିଅଛି । ଆମ୍ଭେମାନେ ନିରପରାଧ ଥିଲେ ସୁଦ୍ଧା ସେ ଆମ୍ଭମାନଙ୍କ ପ୍ରତି ଅତ୍ୟାଚାର କରିଅଛି । ତାହାର ସେହି ସବୁ ବିବିଧ ଅତ୍ୟାଚାର ଶ୍ରବଣ କରି ଆମ୍ଭେମାନେ କ୍ରୋଧାନଳରେ ଦହ୍ୟମାନ ହେଉଥିବାରୁ ରାତିରେ ନିଦ୍ରା ହୁଏ ନାହିଁ । ୧୩ ।

ଭାଗ୍ୟକ୍ରମରେ ସେହି ଅସ୍ତ୍ର-ସମ୍ପନ୍ନ ଅର୍ଜୁନ ଯୁଦ୍ଧରେ ଆମ୍ଭମାନଙ୍କର ଚକ୍ଷୁଗୋଚର ହୋଇଅଛି । ଅତଏବ ଆମ୍ଭମାନଙ୍କର ଚିରାଭିଳଷିତ କାର୍ଯ୍ୟ ବର୍ତ୍ତମାନ ସମ୍ପନ୍ନ କରିବୁଁ । ୧୪ । ତାହାକୁ ରଣସ୍ଥଳରୁ ବହିଷ୍କୃତ କରି ନେଇ ନିହତ କରିବୁଁ, ତାହାହେଲେ ଏହି କାର୍ଯ୍ୟ ଆପଣଙ୍କର ପ୍ରିୟ ହେବ ଓ ଆମ୍ଭମାନଙ୍କର ମଧ୍ୟ ଯଶସ୍କର ହେବ । ୧୫ । ଆଜି ପୃଥିବୀ ଅର୍ଜୁନଶୂନ୍ୟ

କିମ୍ବା ତ୍ରିଗର୍ତ୍ତ-ଶୂନ୍ୟ ହେବ । ଆମ୍ଭେମାନେ ଆପଣମାନଙ୍କ ନିକଟରେ ଏହି ସତ୍ୟ ପ୍ରତିଜ୍ଞା କଲୁଁ ; ଏହା କଦାଚ ମିଥ୍ୟା ହେବନାହିଁ । ୧୭ ।

ହେ ମହାରାଜ ଭରତ ! ସତ୍ୟରଥ, ସତ୍ୟବର୍ମା, ସତ୍ୟେଷୁ ଓ ସତ୍ୟକର୍ମା—ଏହି ପଞ୍ଚଭ୍ରାତା ଶପଥ କରି ଅଯୁତ ରଥ ସହିତ ଯୁଦ୍ଧରେ ପ୍ରବୃତ୍ତ ହେଲେ । ୧୮ । ମାଳବ ଓ ତୁଣ୍ଡିକେରମାନେ ତିନି ଅଯୁତ ରଥ ସହିତ ଓ ତ୍ରିଗର୍ତ୍ତ ଦେଶୀୟ ପ୍ରସ୍ଥଳାଧିପତି ନରବ୍ୟାଘ୍ର ସୁଶର୍ମା ମାବେଲ୍ଲକ, ଲଳିତ, ମଦ୍ରକ ଓ ଭ୍ରାତୃଗଣଙ୍କୁ ସଙ୍ଗରେ ଘେନି ଏକ ଅଯୁତ ରଥ ସହ ଗମନକଲେ । ୨୦ ।

ଅନନ୍ତର ପ୍ରଧାନ ପ୍ରଧାନ ଯୋଦ୍ଧୃମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ ଅଯୁତ ରଥୀ ଶପଥ କରିବା ନିମନ୍ତେ ନାନା ସ୍ଥାନରୁ ଆସି ଉପସ୍ଥିତ ହେଲେ । ୨୧ । ତତ୍ପରେ ସମସ୍ତେ ଅଗ୍ନି ଆଣି ପୃଥକ୍ ପୃଥକ୍ କୁଶ, ଚୀର ଓ ବିଚିତ୍ର କବଚ ଧାରଣ କଲେ । ସେମାନେ ସମସ୍ତେ ଶତସହସ୍ର-ଦକ୍ଷିଣା-ପ୍ରଦାୟୀ, ବୀର, ଯାଗଶୀଳ, ପୁତ୍ରବାନ୍, ପୁଣ୍ୟଲୋକ ପ୍ରାପ୍ତିର ଯୋଗ୍ୟ ଓ କୃତକୃତ୍ୟ । ସମସ୍ତେ ବଦ୍ଧ-କବଚ, ଘୃତାକ୍ତ-କୁଶଚୀର-ପ୍ରଦାୟୀ ଓ ମୌଞ୍ଜୀମେଖଳାଧାରୀ ଥିଲେ । ଶରୀର ପ୍ରତି ନିଃସ୍ପୃହ ହୋଇ ଯଶଃ କାମନାରେ ଓ ବ୍ରହ୍ମଚର୍ଯ୍ୟ, ବେଦାଧ୍ୟୟନ ଓ ସଦକ୍ଷିଣ ଯଜ୍ଞଦ୍ୱାରା ମାନବଗଣ ଯେଉଁ ଲୋକକୁ ପ୍ରାପ୍ତ ହୁଅନ୍ତି, ସେହି ଲୋକକୁ ପ୍ରାପ୍ତ ହେବା ଅଭିଳାଷରେ ସେମାନେ ବ୍ରାହ୍ମଣମାନଙ୍କୁ ପୃଥକ୍ ପୃଥକ୍ ରୂପେ ନିଷ୍କ, ଗୋରୁ ଓ ବସ୍ତ୍ରଦାନ ଦ୍ୱାରା ପରିତୃପ୍ତ କଲେ । ଆଉ ପରସ୍ପର ସମ୍ଭାଷଣପୂର୍ବକ ଦୃଢ଼ ନିଶ୍ଚୟ ସହକାରେ ଅଗ୍ନି ଜଳାଇ ଯୁଦ୍ଧ ନିମନ୍ତେ ବ୍ରତ ଧାରଣ କଲେ ଏବଂ ଅର୍ଜ୍ଜୁନ-ବଧାର୍ଥେ ସେହି ଅଗ୍ନି ନିକଟରେ ସର୍ବଭୂତଙ୍କୁ ସାକ୍ଷୀ କରି ଉଚ୍ଚୈଃ-ସ୍ୱରରେ ଏହି ପ୍ରତିଜ୍ଞା କଲେ । ୨୮ ।

ସେମାନେ କହିଲେ ଯେ "ଆମ୍ଭେମାନେ ଯୁଦ୍ଧରେ ଅର୍ଜ୍ଜୁନଙ୍କୁ ବିନାଶ ନ କରି ଯଦି ନିବୃତ୍ତ ହେଉଁ କିମ୍ବା ତାହାଙ୍କଦ୍ୱାରା ପୀଡ଼ିତ ହୋଇ ଭୟରେ ଯୁଦ୍ଧରେ ପରାଙ୍ମୁଖ ହେଉଁ, ତାହାହେଲେ ଯେଉଁମାନେ ମିଥ୍ୟାବାଦୀ,

ବ୍ରହ୍ମଘାତୀ, ମଦ୍ୟପାୟୀ, ଗୁରୁଦାରରତ ଓ ବ୍ରହ୍ମସ୍ୱ-ଅପହାରୀ ଏବଂ ଯେଉଁ-ମାନେ ରାଜଦତ୍ତ ଅନ୍ନଦ୍ୱାରା ପାଳିତ ହୋଇ ଯଥା ସମୟରେ ରାଜକାର୍ଯ୍ୟ କରନ୍ତି ନାହିଁ, ଯେଉଁମାନେ ଶରଣାଗତ ବ୍ୟକ୍ତିଙ୍କୁ ପରିତ୍ୟାଗ କରନ୍ତି, ଯେଉଁମାନେ ଯାଚ୍ଞାକାରୀ ଲୋକକୁ ହନନ କରନ୍ତି, ଯେଉଁମାନେ ଗୃହଦାହ କରନ୍ତି, ଯେଉଁମାନେ ଗୋହତ୍ୟା କରନ୍ତି, ଯେଉଁମାନେ ଲୋକର ଅପକାର କରନ୍ତି, ଯେଉଁମାନେ ବ୍ରାହ୍ମଣଦ୍ୱେଷୀ, ଯେଉଁମାନେ ମୋହବଶରୁ ଋତୁ-କାଳରେ ଭାର୍ଯ୍ୟାଗମନ ନ କରନ୍ତି; ଯେଉଁମାନେ ଶ୍ରାଦ୍ଧ କରି ସେହିଦିନ ମୈଥୁନ କରନ୍ତି, ଯେଉଁମାନେ ଆତ୍ମାର ଯଥାର୍ଥ ଭାବ ଗୋପନ ରଖି ଅନ୍ୟ ପ୍ରକାର ପ୍ରକାଶ କରନ୍ତି, ଯେଉଁମାନେ "ନ୍ୟାସ" ଅପହରଣ କରନ୍ତି, ଯେଉଁମାନେ ପ୍ରତିଜ୍ଞା ପାଳନ ନ କରନ୍ତି, ଯେଉଁମାନେ ନପୁଂସକର ସହିତ ଯୁଦ୍ଧ କରନ୍ତି, ଯେଉଁମାନେ ଦରିଦ୍ର ଲୋକର ଦ୍ରବ୍ୟ ଅପହରଣ କରନ୍ତି, ଯେଉଁମାନେ ନାସ୍ତିକ, ଅଗ୍ନିତ୍ୟାଗୀ ଓ ଯେଉଁମାନେ ଅନ୍ୟାନ୍ୟ ପାପାଚରଣ କରନ୍ତି, ସେହିମାନେ ପରକାଳରେ ଯେଉଁ ସମସ୍ତ ପାପଲୋକକୁ ଗମନ କରନ୍ତି, ଆମ୍ଭେମାନେ ସେହିସବୁ ଲୋକକୁ ପ୍ରାପ୍ତ ହେବୁଁ ।

ଆଉ ଯଦି ଆମ୍ଭେମାନେ ଯୁଦ୍ଧରେ ଅଲୌକିକ ଦୁଷ୍କର କର୍ମ କରି-ପାରୁଁ, ତେବେ ଆମ୍ଭେମାନେ ଅଭୀଷ୍ଟ ଲୋକକୁ ପ୍ରାପ୍ତ ହେବୁଁ—ଏଥିରେ ସନ୍ଦେହ ନାହିଁ । ୩୬ । ହେ ରାଜନ୍ ! ସେମାନେ ଏହିରୂପେ କହି ଦକ୍ଷିଣ ଦିଗକୁ ଅର୍ଜ୍ଜୁନଙ୍କୁ ଆହ୍ୱାନ କରି ଯୁଦ୍ଧରେ ପ୍ରବୃତ୍ତ ହେଲେ । ୩୭ । ପର-ପୁରଞ୍ଜୟ ନରବ୍ୟାଘ୍ର ପାର୍ଥ ସେହି ରାଜାମାନଙ୍କ ଦ୍ୱାରା ଆହୂତ ହୋଇ ତତ୍‌କ୍ଷଣାତ୍ ଧର୍ମରାଜ ଯୁଧିଷ୍ଠିରଙ୍କୁ ଏହି ବାକ୍ୟ କହିଲେ । ୩୮ ।

ହେ ରାଜନ୍ ! ଯୁଦ୍ଧରେ ଆହୂତ ହେଲେ ମୁଁ ନିବୃତ୍ତ ହେବି ନାହିଁ, ଏହା ମୋହର ବ୍ରତ ଅଟେ । ମହାଯୁଦ୍ଧରେ ସଂଶପ୍ତକମାନେ ମୋତେ ଆହ୍ୱାନ କରୁଅଛନ୍ତି । ଏହି ସୁଶର୍ମା ଭ୍ରାତୃଗଣ ସହିତ ମିଳିତ ହୋଇ ମୋତେ ଯୁଦ୍ଧକୁ ଆହ୍ୱାନ କରୁଅଛନ୍ତି ; ଅତଏବ ତାହାଙ୍କୁ ଓ ତାହାଙ୍କର ଅନୁଚରବର୍ଗଙ୍କୁ ବଧ କରିବା ନିମନ୍ତେ ଆପଣ ମୋତେ ଅନୁମତି ଦିଅନ୍ତୁ । ୪୦ ।

ହେ ପୁରୁଷର୍ଷଭ ! ଏହି ଯୁଦ୍ଧାହ୍ୱାନ ମୋ ପକ୍ଷରେ ଅସହ୍ୟ; ଅତଏବ ଆପଣଙ୍କ ନିକଟରେ ସତ୍ୟ ପ୍ରତିଜ୍ଞା କରୁଅଛୁ ଯେ, ଶତ୍ରୁମାନଙ୍କୁ ଆପଣ ହତ ବୋଲି ନିଶ୍ଚିତରୂପେ ଜାଣନ୍ତୁ ।୪୧। ଯୁଧିଷ୍ଠିର କହିଲେ—ହେ ବତ୍ସ ! ଦ୍ରୋଣ ଯାହା କରିବାକୁ ଇଚ୍ଛା କରିଅଛନ୍ତି ତାହା ତୁମ୍ଭେ ଶୁଣିଅଛ । ଯଦ୍‌ଦ୍ୱାରା ତାହାଙ୍କ ଅଭିପ୍ରାୟ ସିଦ୍ଧ ନୁହେଁ, ତାହା କର । ୪୨ ।

ହେ ମହାରଥ ! ଦ୍ରୋଣ ବଳବାନ୍ , ଶୂର, ଶିକ୍ଷିତାସ୍ତ୍ର ଓ ଅଶ୍ରାନ୍ତ ଅଟନ୍ତି । ସେ ଆମ୍ଭଙ୍କୁ ଧରି ନେବା ନିମିତ୍ତ ପ୍ରତିଜ୍ଞା କରିଅଛନ୍ତି । ୪୩ । ଅର୍ଜ୍ଜୁନ କହିଲେ—ହେ ରାଜନ୍ ! ଏହି ପାଞ୍ଚାଳଶ୍ରେଷ୍ଠ ସତ୍ୟଜିତ୍ ଆଜି ଆପଣଙ୍କୁ ଯୁଦ୍ଧରେ ରକ୍ଷା କରିବେ । ଏ ଜୀବିତ ଥାଉଁ ଥାଉଁ ଦ୍ରୋଣାଚାର୍ଯ୍ୟ ଆପଣାର ଅଭିଳାଷ କଦାଚ ପୂର୍ଣ୍ଣ କରିପାରିବେ ନାହିଁ । ୪୪ ।

ହେ ପ୍ରଭୋ ! ଯଦି ଏହି ପୁରୁଷବ୍ୟାଘ୍ର ସତ୍ୟଜିତ୍ ସମରରେ ହତ ହୁଅନ୍ତି, ତାହାହେଲେ ସମସ୍ତେ ଏକତ୍ରିତ ହୋଇ ଆପଣଙ୍କୁ ରକ୍ଷା କଲେ ସୁଦ୍ଧା ଆପଣଙ୍କର କୌଣସି ପ୍ରକାରେ ରଣସ୍ଥଳରେ ରହିବାର ଉଚିତ ନୁହେଁ । ୪୫ ।

ସଞ୍ଜୟ ବୋଇଲେ—ଅନନ୍ତର ରାଜା ଯୁଧିଷ୍ଠିର ଅର୍ଜ୍ଜୁନଙ୍କୁ ସସ୍ନେହ ଦୃଷ୍ଟିରେ ଦେଖି ତାହାଙ୍କୁ ଆଲିଙ୍ଗନ କଲେ ଓ ଯୁଦ୍ଧ ନିମନ୍ତେ ଅନୁମତି ଦେଇ ଭୂରି ଭୂରି ଆଶୀର୍ବାଦ କଲେ । ୪୬ । ବଳବାନ୍ ପାର୍ଥ ଯୁଧିଷ୍ଠିରଙ୍କଠାରୁ ପୂର୍ବୋକ୍ତ ପ୍ରକାରରେ ଅନୁମତି ଗ୍ରହଣ କରି କ୍ଷୁଧିତ ସିଂହ କ୍ଷୁଧାଶାନ୍ତି ନିମନ୍ତେ ଯେପରି ମୃଗମାନଙ୍କ ପ୍ରତି ଧାବମାନ ହୁଏ, ସେହିପରି ତ୍ରିଗର୍ତ୍ତମାନଙ୍କ ପ୍ରତି ଧାବମାନ ହେଲେ । ୪୭ ।

ତଦନନ୍ତର ଯୁଧିଷ୍ଠିରଙ୍କୁ ଅର୍ଜ୍ଜୁନ-ବିହୀନ ହେବାର ଦେଖି ଦୁର୍ଯ୍ୟୋଧନଙ୍କର ସୈନ୍ୟମାନେ ଅତିଶୟ ଆନନ୍ଦିତ ହେଲେ ଓ ଅତ୍ୟନ୍ତ କ୍ରୁଦ୍ଧ ହୋଇ ଯୁଧିଷ୍ଠିରଙ୍କୁ ଗ୍ରହଣ କରିବା ନିମନ୍ତେ ଯତ୍ନଶୀଳ ହେଲେ ।୪୮। ଯେପରି ବର୍ଷାକାଳରେ ଗଙ୍ଗା ଓ ସରଯୂ ଉଭୟ ନଦୀର ପ୍ରବଳ ପ୍ରବାହ ସବେଗରେ ମିଳିତ ହୁଏ, ସେହିପରି କୁରୁ ଓ ପାଣ୍ଡବ ଉଭୟପକ୍ଷୀୟ ସେନାମାନେ ବଳପ୍ରକାଶପୂର୍ବକ ପରସ୍ପର ଯୁଦ୍ଧରେ ମିଳିତ ହେଲେ ।୪୯।



# ୧୮ ଅଧ୍ୟାୟ

ସଞ୍ଜୟ ବୋଇଲେ—ହେ ରାଜନ୍ ! ଅନନ୍ତର ସଂଶପ୍ତକମାନେ ସମତଳ ଭୂମିରେ ରଥଦ୍ୱାରା ଅର୍ଦ୍ଧଚନ୍ଦ୍ର ବ୍ୟୂହ ସଜ୍ଜିତ କରି ପରମହର୍ଷ ସହିତ ଯୁଦ୍ଧାର୍ଥ ଅବସ୍ଥିତ ହେଲେ । ୧ । ହେ ମାରିଷ ! ସେହି ନରବ୍ୟାଘ୍ର-ମାନେ କିରୀଟୀଙ୍କୁ ଆସିବାର ଦେଖି ହର୍ଷସହକାରେ ମହାଶବ୍ଦ କଲେ । ୨ । ସେହି ଶବ୍ଦ ଦ୍ୱାରା ଦିକ୍ ବିଦିକ୍ ଓ ଆକାଶ ସମାଚ୍ଛନ୍ନ ହେଲା । ମାତ୍ର ସବୁଦିଗ ସେହି ଶବ୍ଦଦ୍ୱାରା ପରିପୂର୍ଣ୍ଣ ଥିବାରୁ ତାହାର ପ୍ରତିଧ୍ୱନି ହେଲା ନାହିଁ । ୩ ।

ଧନଞ୍ଜୟ ସେମାନଙ୍କୁ ଅତିଶୟ ହର୍ଷଯୁକ୍ତ ଦେଖି ଈଷତ୍ ହାସ୍ୟକରି କୃଷ୍ଣଙ୍କୁ କହିଲେ, ହେ ଦେବକୀ-ନନ୍ଦନ ! ଦେଖ, ତ୍ରିଗର୍ତ୍ତରାଜଙ୍କ ଭ୍ରାତୃ-ନନ୍ଦନମାନେ ଅଦ୍ୟ ଯୁଦ୍ଧରେ ମୁମୂର୍ଷୁ ହୋଇ ରୋଦିତବ୍ୟ ବିଷୟରେ ହୃଷ୍ଟ ହୋଇଅଛନ୍ତି । ୪ । ଅଥବା ସେମାନଙ୍କର ଏହି ହର୍ଷମୟ ପ୍ରକୃତ ଉପସ୍ଥିତ ହୋଇଅଛି, ଯେହେତୁ କାପୁରୁଷମାନଙ୍କର ଦୁଷ୍ପ୍ରାପ୍ୟ ଲୋକକୁ ତ୍ରୈଗର୍ତ୍ତ-ମାନେ ପ୍ରାପ୍ତ ହେବେ—ଏଥିରେ ସନ୍ଦେହ ନାହିଁ । ୬ ।

ଅର୍ଜ୍ଜୁନ ମହାବାହୁ ହୃଷୀକେଶଙ୍କୁ ଏହି ପ୍ରକାରେ କହି ଯୁଦ୍ଧରେ ବ୍ୟୂହ-ସଜ୍ଜିତ ସେହି ତ୍ରିଗର୍ତ୍ତ ସୈନ୍ୟମାନଙ୍କର ସମୀପବର୍ତ୍ତୀ ହେଲେ । ୭ । ଅନନ୍ତର ସୁବର୍ଣ୍ଣାଳଂକୃତ ଦେବଦତ୍ତ ଶଙ୍ଖକୁ ଅର୍ଜ୍ଜୁନ ମହାବେଗରେ ବାଦନ କରି ମହାଶବ୍ଦରେ ସବଦିଗ୍ ପରିପୂରିତ କଲେ । ୮ । ସେହି ମହାଶବ୍ଦ ଶ୍ରବଣ କରି ସଂଶପ୍ତକ ସୈନ୍ୟମାନେ ପ୍ରସ୍ତରମୟୀ ମୂର୍ତ୍ତି ସଦୃଶ ନିଶ୍ଚେଷ୍ଟ ହୋଇ ଯୁଦ୍ଧକ୍ଷେତ୍ରରେ ଅବସ୍ଥାନ କଲେ । ୯ । ସେମାନଙ୍କର ବାହନମାନେ ଭୟରେ ଆଖି ତରାଟି ଦେଇ ସ୍ତବ୍ଧକର୍ଣ୍ଣ, ସ୍ତବ୍ଧଗ୍ରୀବ ଓ ସ୍ତବ୍ଧଚରଣ ହୋଇ ମୂତ୍ର ଓ ରୁଧିରସ୍ରାବ କଲେ । ୧୦ । ସେମାନେ ସଂଜ୍ଞା ଲାଭ କରି ସୈନ୍ୟମାନଙ୍କୁ ବ୍ୟବସ୍ଥାପିତ କଲେ ଓ ଏକାଳରେ ସମସ୍ତେ ଅର୍ଜ୍ଜୁନଙ୍କ ଉପରକୁ କଙ୍କପତ୍ରଯୁକ୍ତ ଶରମାନ ନିକ୍ଷେପ କଲେ ।୧୧।

ଅର୍ଜ୍ଜୁନ ପରାକ୍ରମ ପ୍ରକାଶ କରି ପଞ୍ଚଦଶ ବାଣଦ୍ୱାରା ସେହି ସହସ୍ର ସହସ୍ର ବାଣମାନଙ୍କୁ ଆକାଶ ପଥରେ ଖଣ୍ଡ ଖଣ୍ଡ କରି ପକାଇଲେ । ୧୨ ।

ଅନନ୍ତର ସେମାନେ ପ୍ରତ୍ୟେକ ଦଶଗୋଟି ବାଣ ଦ୍ୱାରା ଅର୍ଜ୍ଜୁନଙ୍କୁ ବିଦ୍ଧ କରିବାରୁ ଅର୍ଜ୍ଜୁନ ତିନି ତିନି ଗୋଟି ବାଣଦ୍ୱାରା ସେମାନଙ୍କୁ ପ୍ରତିବିଦ୍ଧ କଲେ । ୧୩ । ହେ ରାଜନ୍ ! ସେମାନେ ପ୍ରତ୍ୟେକ ପାଞ୍ଚ ପାଞ୍ଚଗୋଟି ବାଣଦ୍ୱାରା ପାର୍ଥଙ୍କୁ ବିଦ୍ଧ କଲେ । ପରାକ୍ରମୀ ଅର୍ଜ୍ଜୁନ ମଧ୍ୟ ସେମାନଙ୍କୁ ଦୁଇ ଦୁଇଗୋଟି ବାଣ ଦ୍ୱାରା ପ୍ରତିବିଦ୍ଧ କଲେ । ୧୪ । ସେମାନେ ସଂକ୍ରୁଦ୍ଧ ହୋଇ ମେଘମାଳା ବୃଷ୍ଟିଦ୍ୱାରା ତଡ଼ାଗକୁ ପୂର୍ଣ୍ଣ କଲା ପ୍ରାୟ କୃଷ୍ଣ ଓ ଅର୍ଜ୍ଜୁନଙ୍କୁ ପୁନର୍ବାର ଶରବର୍ଷଣ ଦ୍ୱାରା ପରିପୂରିତ କଲେ । ୧୫ ।

ଭ୍ରମରମାନେ ଯେପରି କୁସୁମସୁଶୋଭିତ ବୃକ୍ଷଗଣ ଉପରେ ପତିତ ହୁଅନ୍ତି, ସେହିପରି ସହସ୍ର ସହସ୍ର ବାଣ ଅର୍ଜ୍ଜୁନଙ୍କ ଉପରେ ପତିତ ହେଲା । ୧୬ । ଅନନ୍ତର ସୁବାହୁ ଦୃଢ଼ ଲୌହମୟ ତିରିଶଗୋଟି ଶରଦ୍ୱାରା ସବ୍ୟସାଚୀ ଧନଞ୍ଜୟଙ୍କର କିରୀଟକୁ ବିଦ୍ଧ କଲେ । ୧୭ । ଅର୍ଜ୍ଜୁନ ସେହି ମୁକୁଟ-ସଂଲଗ୍ନ ହେମପୁଙ୍ଖ ବାଣମାନଙ୍କ ଦ୍ୱାରା ସ୍ୱର୍ଣ୍ଣ-ଭୂଷଣ-ଭୂଷିତ ଦଣ୍ଡାୟମାନ ଯୂପତୁଲ୍ୟ ଶୋଭା ପାଇଲେ ଏବଂ ସେହି ଯୁଦ୍ଧରେ ଭଲ୍ଲାସ୍ତ୍ରଦ୍ୱାରା ସୁବାହୁଙ୍କର * ହସ୍ତାବାପ ଛେଦନ କରି ପୁନର୍ବାର ଶରବର୍ଷଣ ଦ୍ୱାରା ତାହାଙ୍କୁ ଆଚ୍ଛନ୍ନ କରି ପକାଇଲେ । ୧୯ ।

ଅନନ୍ତର ସୁଶର୍ମା, ସୁରଥ, ସୁଧର୍ମ୍ମା, ସୁଧନୁ ଓ ସୁବାହୁ—ଏମାନେ ପ୍ରତ୍ୟେକରେ ଦଶ ଦଶ ଗୋଟି ବାଣଦ୍ୱାରା ଅର୍ଜ୍ଜୁନଙ୍କୁ ବିଦ୍ଧ କଲେ । ୨୦ । ଅର୍ଜ୍ଜୁନ ସେ ସମସ୍ତଙ୍କୁ ପୃଥକ୍ ପୃଥକ୍ ବାଣଦ୍ୱାରା ପ୍ରତିବିଦ୍ଧ କରି ସେମାନଙ୍କ ରଥର କାଞ୍ଚନଧ୍ୱଜସମୂହକୁ ଭଲ୍ଲମାନଙ୍କ ଦ୍ୱାରା କାଟି ପକାଇଲେ । ୨୧ । ତତ୍ପରେ ଅର୍ଜ୍ଜୁନ ଶରସମୂହ ଦ୍ୱାରା ସୁଧନ୍ୱାର ଧନୁକୁ ଛେଦନ କରି ତାହାର ଅଶ୍ୱମାନଙ୍କୁ ଛେଦନ କଲେ ଓ ପରେ ତାହାର ଦେହରୁ ଉଷ୍ଣୀଷଯୁକ୍ତ ମସ୍ତକ ଅପହରଣ କଲେ । ୨୨ । ସେହି ବୀର ସୁଧନ୍ୱା ନିପତିତ ହେବାରୁ ତାହାଙ୍କର ଅନୁଚରମାନେ ଭୀତ ହୋଇ ଯେଉଁଠାରେ ଦୁର୍ଯ୍ୟୋଧନଙ୍କର ସୈନ୍ୟମାନେ ଥିଲେ, ସେହି ସ୍ଥାନକୁ ପଳାଇଲେ ।

---

( * ହସ୍ତାବାପ, ଚର୍ମନିର୍ମିତ ହସ୍ତାବରଣ ବିଶେଷ )

ସୂର୍ଯ୍ୟ ଯେପରି ନିଜର କିରଣଦ୍ୱାରା ଅନ୍ଧକାର ସଂହାର କରନ୍ତି, ଇନ୍ଦ୍ରନନ୍ଦନ ସଂକ୍ରୁଦ୍ଧ ହୋଇ ସେହିପରି ଅବିଚ୍ଛିନ୍ନ ଶର-ଜାଳ ଦ୍ୱାରା ସେହି ମହାରଥମାନଙ୍କୁ ସଂହାର କରିବାକୁ ଆରମ୍ଭ କଲେ । ୨୪ । ଅନନ୍ତର ସବ୍ୟସାଚୀ କ୍ରୁଦ୍ଧ ହେବାରୁ ସେହି ସୈନ୍ୟମାନେ ଭଗ୍ନ ହୋଇ ଚାରିଆଡ଼େ ପଳାଇଗଲେ । ଏହା ଦେଖି ତ୍ରିଗର୍ତ୍ତମାନଙ୍କର ଭୟ ଉପସ୍ଥିତ ହେଲା ।୨୫। ସେମାନେ ପାର୍ଥଙ୍କ ଦ୍ୱାରା ସନ୍ନତପର୍ବ ଶରସମୂହରେ ବଧ୍ୟମାନ ହୋଇ ତ୍ରସ୍ତ ମୃଗମାନଙ୍କ ସଦୃଶ ବିମୁଗ୍ଧ ହେଲେ । ୨୬ ।

ଅନନ୍ତର ତ୍ରିଗର୍ତ୍ତରାଜ କ୍ରୁଦ୍ଧ ହୋଇ ପଳାୟମାନ ମହାରଥମାନଙ୍କୁ କହିଲେ, ହେ ଶୂରମାନେ ! ତୁମ୍ଭେମାନେ କିପାଇଁ ପଳାଉଅଛ ? ଧୀର ହୁଅ ନାହିଁ । ପଳାଇବା ତୁମ୍ଭ ପକ୍ଷରେ ବ୍ୟର୍ଥ ଅଟେ । ୨୭ । ତୁମ୍ଭେମାନେ ପ୍ରଧାନ ପ୍ରଧାନ ବୀର ହୋଇ ସବୁ ସୈନ୍ୟଙ୍କ ସମକ୍ଷରେ ତାଦୃଶ ଉତ୍କଟ ଶପଥ କରିଅଛ; ବର୍ତ୍ତମାନ ଦୁର୍ଯ୍ୟୋଧନଙ୍କ ସୈନ୍ୟମଧ୍ୟକୁ ଯାଇ କଅଣ କହିବ ? ୨୮ । ଏପରି କର୍ମ କଲେ କି ଲୋକେ ଉପହାସ କରିବେ ନାହିଁ ? ଅତଏବ ତୁମ୍ଭେମାନେ ମିଳିତ ହୋଇ ଆଉ ଯେଉଁ ସୈନ୍ୟମାନେ ଅବଶିଷ୍ଟ ଅଛନ୍ତି, ସେମାନଙ୍କସହ ନିବୃତ୍ତ ହୁଅ । ୨୯ ।

ହେ ରାଜନ୍ ! ସେହି ବୀରମାନେ ତାହାଙ୍କର ଏହିସବୁ କଥା ଶୁଣି ପୁନର୍ବାର ପରସ୍ପରକୁ ହର୍ଷିତ କରି ମୁହୁର୍ମୁହୁଃ ସିଂହନାଦ ଓ ଶଙ୍ଖ ଧ୍ୱନି କଲେ । ୩୦ । ତତ୍ପରେ ନାରାୟଣୀ, ଗୋପାଳୀ ସେନାପ୍ରଭୃତି ସଂଶପ୍ତକ-ମାନେ ମୃତ୍ୟୁକୁ କେବଳ ନିବୃତ୍ତିର ଉପାୟ ମନେ କରି ପଳାୟନରୁ ନିବୃତ୍ତ ହେଲେ । ୩୧ ।

## ୧୯ ଅଧ୍ୟାୟ

ସଞ୍ଜୟ ବୋଇଲେ—ସେହି ସଂଶପ୍ତକମାନଙ୍କୁ ସମରରେ ପୁନର୍ବାର ପ୍ରବୃତ୍ତ ହେବାର ଦେଖି ମହାତ୍ମା ଅର୍ଜୁନ ବାସୁଦେବଙ୍କୁ ବୋଇଲେ । ୧ । ହେ ହୃଷୀକେଶ ! ସଂଶପ୍ତକମାନଙ୍କ ପ୍ରତି ଅଶ୍ୱଚାଳନା

କର । ଆମ୍ଭେ ବୋଧ କରୁଅଛୁଁ, ଏମାନେ ଜୀବତ ଥାଉଁ ଥାଉଁ ଯୁଦ୍ଧ ପରିତ୍ୟାଗ କରିବେ ନାହିଁ ।୨। ଅଦ୍ୟ ଆମ୍ଭର ବାହୁ, ଧନୁକ ଓ ଘୋରତର ଅସ୍ତ୍ରର ବଳ ଅବଲୋକନ କର । ଯେପରି ରୁଦ୍ରଦେବ ପଶୁମାନଙ୍କୁ ନିପାତ କରିଥିଲେ, ସେହିରୂପେ ଆମ୍ଭେ ଏମାନଙ୍କୁ ନିପାତ କରିବୁଁ । ୩ ।

ଅନନ୍ତର କୃଷ୍ଣ ହାସ୍ୟପୂର୍ବକ ଶୁଭ ବାକ୍ୟଦ୍ୱାରା ତାହାଙ୍କୁ ଅଭିନନ୍ଦନ କରି ଯେଉଁ ଯେଉଁ ସ୍ଥାନକୁ ଦୁର୍ଦ୍ଧର୍ଷ ଅର୍ଜୁନ ଯିବାକୁ ଇଚ୍ଛା କଲେ, ସେହି ସେହି ସ୍ଥାନକୁ ରଥ ଚାଳନା କଲେ । ୪ । ସେହି ପାଣ୍ଡୁରବର୍ଣ୍ଣ-ଅଶ୍ୱଯୁକ୍ତ ରଥ ଦ୍ରୁତ ବେଗରେ ଚାଳିତ ହେବାରୁ ଆକାଶଗାମୀ ବିମାନ ସଦୃଶ ରଣସ୍ଥଳରେ ଶୋଭା ପାଇଲା । ୫ । ହେ ରାଜନ୍ ! ପୂର୍ବ କାଳରେ ଦେବାସୁର ଯୁଦ୍ଧରେ ଇନ୍ଦ୍ରଙ୍କ ରଥ ଯେମନ୍ତ ଶୋଭା ପାଇଥିଲା, ଅର୍ଜୁନଙ୍କର ରଥ ମଣ୍ଡଳାକାର ଗତି ଓ ଗତି-ପ୍ରତ୍ୟାଗତି-କ୍ରମେ ଗମନ କରିବାରୁ ସେହି ରୂପେ ଶୋଭା ପାଇଲା । ୬ । ଅନନ୍ତର ବିବିଧ ଆୟୁଧ-ପାଣି ନାରାୟଣୀ ସେନା କ୍ରୁଦ୍ଧ ହୋଇ ଧନଞ୍ଜୟଙ୍କୁ ଶରସମୂହ ଦ୍ୱାରା ଆଚ୍ଛାଦନ କରି ପରିବେଷ୍ଟନ କଲେ । ୭ ।

ହେ ଭରତର୍ଷଭ ! ସେମାନେ ରଣସ୍ଥଳରେ କୃଷ୍ଣ ଓ କୁନ୍ତୀପୁତ୍ର ଧନଞ୍ଜୟ—ଏ ଦୁହିଙ୍କ ପ୍ରତି ଏପରି ଶରବର୍ଷଣ କଲେ ଯେ, ସେ ଦୁହେଁ ମୁହୂର୍ତ୍ତକାଳ ପର୍ଯ୍ୟନ୍ତ ଦେଖାଗଲେ ନାହିଁ । ୮ । ଅର୍ଜୁନ ସେହି ଯୁଦ୍ଧରେ ଦ୍ୱିଗୁଣ କ୍ରୁଦ୍ଧ ହୋଇ ଗାଣ୍ଡୀବ ଧନୁକୁ ମାର୍ଜିତ କରି ହସ୍ତରେ ଧଇଲେ ।୯। କ୍ରୋଧ ହେତୁରୁ ଅର୍ଜୁନଙ୍କ ମୁଖରେ ଭ୍ରୂକୁଟୀ ପ୍ରକାଶିତ ହେଲା ଓ ସେ ଦେବଦତ୍ତ ଶଙ୍ଖକୁ ବଜାଇଲେ । ୧୦ । ଅନନ୍ତର ଶତ୍ରୁମାନଙ୍କ ବିନାଶ ନିମନ୍ତେ "ତ୍ୱାଷ୍ଟ୍ରଦୈବତ" ଅସ୍ତ୍ର ପ୍ରୟୋଗ କଲେ । ସେହି ଅସ୍ତ୍ର ପ୍ରଭାବରୁ ଏକ ଅର୍ଜୁନ ପୃଥକ୍ ପୃଥକ୍ ଭାବରେ ସହସ୍ର ମୂର୍ତ୍ତିରେ ଆବିର୍ଭୂତ ହେଲେ । ସେମାନେ ବହୁଳ ଅର୍ଜୁନ ରୂପରେ ବିମୋହିତ ହୋଇ ଆପଣା ପକ୍ଷକୁ ଶତ୍ରୁ ବୋଲି ମନେ କରି ପରସ୍ପର ହଣାହଣି ହେଲେ । ସେମାନେ ମୁଗ୍ଧ ହୋଇ ଏହି ଗୋବିନ୍ଦ, ଏହି ଅର୍ଜୁନ, ଏହି ସେ ଦୁହେଁ—ଏହିପରି କୁହାକୁହି ହୋଇ ପରସ୍ପର ହଣାହଣି ହେଲେ । ୧୩ । ସେହି ଯୋଦ୍ଧାମାନେ ମୋହ-ବଶରୁ ପରମ ଅସ୍ତ୍ରଦ୍ୱାରା ପରସ୍ପର କ୍ଷୟପ୍ରାପ୍ତ ହୋଇ ପୁଷ୍ପିତ ପଳାଶବୃକ୍ଷ

ସଦୃଶ ଶୋଭା ପାଇଲେ । ୧୪ । ତତ୍ପରେ ଅର୍ଜ୍ଜୁନ-ପ୍ରେରିତ ସେହି ଉଷ୍ଟାସ୍ତ୍ର ପ୍ରତିପକ୍ଷ ବୀରମାନଙ୍କର ବିମୁକ୍ତ ସହସ୍ର ସହସ୍ର ଶରକୁ ଭସ୍ମସାତ୍ କରି ସେହିସବୁ ବୀରମାନଙ୍କୁ ଯମାଳୟକୁ ପ୍ରେରଣ କଲା । ୧୫ ।

ଅନନ୍ତର ବୀଭତ୍ସୁ ହାସ୍ୟ କରି ଲଳିତ, ମାଳବ, ମାବେଲ୍ଲକ ଓ ତ୍ରୈଗର୍ତ୍ତକ ଯୋଦ୍ଧାମାନଙ୍କୁ ଶରଦ୍ୱାରା ଅତିଶୟ ପୀଡ଼ିତ କରିବାରେ ପ୍ରବୃତ୍ତ-ହେଲେ । ୧୬ । ସେହି କ୍ଷତ୍ରିୟମାନେ ବୀର ଧନଞ୍ଜୟଙ୍କ ଶରରେ ପୀଡ଼ିତ ଓ କାଳପ୍ରେରିତ ହୋଇ ତାହାଙ୍କ ପ୍ରତି ନାନାବିଧ ଶରଜାଲ ବର୍ଷଣ କଲେ । ୧୭ । ସେହି ଘୋରତର ଶର-ବୃଷ୍ଟିଦ୍ୱାରା ଆଚ୍ଛନ୍ନ ହେବାରୁ କି ଅର୍ଜ୍ଜୁନ, କି କୃଷ୍ଣ, କି ରଥ, କିଛିମାତ୍ର ଦୃଷ୍ଟିଗୋଚର ହେଲା ନାହିଁ । ୧୮ । ତତ୍ପରେ ଉଦ୍ଦେଶ୍ୟ ଲାଭ ହୋଇଅଛି ମନେ କରି ସେମାନେ ହର୍ଷ ଧ୍ୱନି କଲେ ଓ "କୃଷ୍ଣାର୍ଜ୍ଜୁନ ହତ ହୋଇଅଛନ୍ତି" କହି ପରସ୍ପର ପ୍ରୀତିସହକାରେ ନିଜ ନିଜ ବସ୍ତ୍ର ପ୍ରକମ୍ପନ କଲେ ଏବଂ ସହସ୍ର ସହସ୍ର ଭେରୀ, ମୃଦଙ୍ଗ ଓ ଶଙ୍ଖଧ୍ୱନି ଓ ଭୟଙ୍କର ସିଂହନାଦ କରିବାରେ ପ୍ରବୃତ୍ତ ହେଲେ । ୨୦ ।

ତହିଁ ଉତ୍ତାରେ କୃଷ୍ଣଙ୍କ ଦେହରୁ ଘର୍ମ ନିଃସୃତ ହେଲା । ସେ ଖିନ୍ନ ହୋଇ ଅର୍ଜ୍ଜୁନଙ୍କୁ କହିଲେ—ହେ ଶତ୍ରୁଘାତି ପାର୍ଥ ! ତୁମ୍ଭେ କେଉଁଠାରେ ? ତୁମ୍ଭଙ୍କୁ ଆମ୍ଭେ ଦେଖୁନାହୁଁ । ତୁମ୍ଭେ କି ଜୀବିତ ଅଛ ? ୨୧ । ଧନଞ୍ଜୟ ତାହାଙ୍କ ବଚନ ଶ୍ରବଣ କରି ଶୀଘ୍ର ବାୟବ୍ୟ ଅସ୍ତ୍ରଦ୍ୱାରା ବିପକ୍ଷଙ୍କ ନିକ୍ଷିପ୍ତ ଶର-ବୃଷ୍ଟିକୁ ହରଣ କଲେ । ୨୨ । ଭଗବାନ୍ ବାୟୁ ଶୁଷ୍କପତ୍ର ତୁଲ୍ୟ ସେହି ଅଶ୍ୱ, ଗଜ, ରଥ ଓ ସଂଶପ୍ତକମାନଙ୍କୁ ଉଡ଼ାଇ ଦେଲେ । ୨୩ ।

ହେ ରାଜନ୍ ! ଯେପରି ପକ୍ଷୀମାନେ ବୃକ୍ଷରୁ ଉଡ଼ିଯିବା ସମୟରେ ଶୋଭା ପାଆନ୍ତି, ସେହିପରି ସେମାନେ ବାୟୁଦ୍ୱାରା ଉଡ୍ଡୀୟମାନ ହୋଇ ଶୋଭା ପାଇଲେ । ୨୪ । ଧନଞ୍ଜୟ ସେମାନଙ୍କୁ ତଦ୍ରୂପ ବ୍ୟାକୁଳିତ କରି ସତ୍ୱର ଶାଣିତ ବାଣ ଦ୍ୱାରା ସେମାନଙ୍କର ଶତଶତ ଓ ସହସ୍ର ସହସ୍ର ଯୋଦ୍ଧାମାନଙ୍କୁ ବଧନ କଲେ । ୨୫ । କୌଣସି କୌଣସି ଯୋଦ୍ଧାର ମସ୍ତକ, କୌଣସି କୌଣସି ଯୋଦ୍ଧାର ଅସ୍ତ୍ର ସହିତ ବାହୁ ଏବଂ କୌଣସି କୌଣସି ଯୋଦ୍ଧାର କରିଶୁଣ୍ଡ ସଦୃଶ ଉରୁ ଭଲ୍ଲ ଦ୍ୱାରା ଛେଦନ କରି

ଭୂମିରେ ପକାଇ ଦେଲେ । ୨୬ । ଧନଞ୍ଜୟ କାହାର ପୃଷ୍ଠ-ଛେଦନ, କାହାର ପଦକର୍ତ୍ତନ, କାହାର ମସ୍ତକଛେଦନ, କାହାର କରତଳଭେଦ, କାହାର ଅଙ୍ଗୁଳି-ଛେଦ କଲେ ଓ କାହାର ଅବା ଅନ୍ୟାନ୍ୟ ଅଙ୍ଗକୁ ଛେଦନ କରି ପକାଇଲେ । ୨୭ ।

ଗନ୍ଧର୍ବ-ନଗରାକାର ସୁସଜ୍ଜିତ ରଥସମୂହକୁ ଶରଜାଳ ଦ୍ୱାରା ଖଣ୍ଡ ଖଣ୍ଡ କରି ରାଜାମାନଙ୍କୁ ଅଶ୍ୱ, ରଥ ଓ ଗଜ ବିହୀନ କଲେ । ୨୮ । ସେହି ଯୁଦ୍ଧସ୍ଥଳରେ କୌଣସି କୌଣସି ସ୍ଥାନରେ ରଥମାନ ଛିନ୍ନଧ୍ୱଜ ହେବାରୁ ମୁଣ୍ଡିତ ତାଳବୃକ୍ଷ ସଦୃଶ ଶୋଭା ପାଇଲେ । ୨୯ । ଯେପରି ପର୍ବତମାନେ ବୃକ୍ଷସହ ଇନ୍ଦ୍ରଙ୍କ ବଜ୍ରରେ ଆହତ ହୋଇ ପତିତ ହୁଅନ୍ତି, ସେହିପରି ପତାକା, ଅଙ୍କୁଶ ଓ ଧ୍ୱଜଯୁକ୍ତ ହସ୍ତୀମାନେ ଉତ୍କୃଷ୍ଟ ଅସ୍ତ୍ରଧାରୀ ମନୁଷ୍ୟ ସହିତ ପତିତ ହେଲେ । ୩୦ ।

ପାର୍ଥଙ୍କ ଶରାଘାତରେ ଚାମର, ଅଳଙ୍କାର ଓ କବଚ ସମନ୍ୱିତ ଅଶ୍ୱମାନଙ୍କର ଅନ୍ତ୍ର ଓ ନେତ୍ର ସ୍ରସ୍ତ ହେଲା । ସେମାନେ ଗତାସୁ ହୋଇ ଆରୋହୀ ସହ ଭୂମିରେ ପତିତ ହେଲେ । ପାର୍ଥ-ବାଣରେ ଶତ୍ରୁପକ୍ଷୀୟ ପଦାତିମାନଙ୍କର ଅସି, ନଖର, ଋଷ୍ଟି ଓ ଅନ୍ୟାନ୍ୟ ଅସ୍ତ୍ରସବୁ ଛିନ୍ନ ହେଲା ଏବଂ ସେମାନଙ୍କର ବର୍ମ ଓ ମର୍ମ ଛିନ୍ନ ହେବାରୁ ସେମାନେ କାତର ଭାବରେ ରଣଭୂମିରେ ଶୟନ କଲେ । ୩୨ । କେହି କେହି ହତ ହୋଇ ଅଛନ୍ତି, କେହି କେହି ହତ ହେଉଅଛନ୍ତି, କେହି କେହି ପତିତ ହୋଇ-ଅଛନ୍ତି, କେହି କେହି ଭ୍ରମଣ କରୁଅଛନ୍ତି, କେହି କେହି ବା ଆର୍ତ୍ତନାଦ କରୁଅଛନ୍ତି ; ଈଦୃଶ ଅବସ୍ଥାପନ୍ନ ଯୋଦ୍ଧାମାନଙ୍କ ଦ୍ୱାରା ସେହି ରଣଭୂମି ଅତି ଭୟଙ୍କର ଭାବରେ ପ୍ରକାଶିତ ହେଲା । ୩୩ ।

ଯୁଦ୍ଧ ସମୟରେ ଉତ୍ଥିତ ଧୂଳି-ରାଶି ରକ୍ତ-ବୃଷ୍ଟିଦ୍ୱାରା ନିବାରିତ ହେଲା । ରଣଭୂମି ଶତ ଶତ କବନ୍ଧ ଦ୍ୱାରା ପୂର୍ଣ୍ଣ ହେବାରୁ ଦୁର୍ଗମ ହେଲା । ୩୪ । ବୀଭତ୍ସଙ୍କ ରଥ ପ୍ରଳୟକାଳରେ ପଶୁସଂହାରକ ରୁଦ୍ରଦେବଙ୍କ କ୍ରୀଡ଼ାସ୍ଥାନ ସଦୃଶ ଭୟଙ୍କର ଓ ବୀଭତ୍ସରୂପରେ ପ୍ରକାଶିତ ହେଲା । ୩୪ । ସଂଶପ୍ତକମାନେ ପାର୍ଥଙ୍କ ଶରରେ ପୀଡ଼ିତ ହେବାରୁ ସେମାନଙ୍କର ଅଶ୍ୱ,

ଗଜ ଓ ରଥୀ ବ୍ୟାକୁଳିତ ହେଲେ । ସେମାନେ କ୍ଷୀଣ ହୋଇ ଇନ୍ଦ୍ରଲୋକରେ ଆତିଥ୍ୟ ସ୍ୱୀକାର କରି ଅର୍ଥାତ୍ ସ୍ୱର୍ଗପ୍ରାପ୍ତି କାମନାରେ ଅର୍ଜ୍ଜୁନଙ୍କ ରଥ ଆଡ଼କୁ ଅଗ୍ରସର ହେଲେ । ୩୬ ।

ହେ ଭରତଶ୍ରେଷ୍ଠ ! ସେହି ରଣକ୍ଷେତ୍ର ନିହତ ମହାରଥମାନଙ୍କ ମୃତ-ଶରୀର ଦ୍ୱାରା ସର୍ବତ୍ର ସମାକୀର୍ଣ୍ଣ ହେଲା । ଅର୍ଜ୍ଜୁନ ଏହିପରି ରଣମତ୍ତ ହେବାରୁ ଦ୍ରୋଣାଚାର୍ଯ୍ୟ ଅବସର ବୁଝି ସେନାବ୍ୟୂହ ରଚନା କରି ଯୁଧିଷ୍ଠିରଙ୍କ ଆଡ଼କୁ ଧାବମାନ ହେଲେ । ଯୁଧିଷ୍ଠିରଙ୍କୁ ରକ୍ଷା କରିବା ଅଭିପ୍ରାୟରେ ପ୍ରହାରକ୍ଷମ ଯୁଧିଷ୍ଠିରପକ୍ଷୀୟ ବୀରମାନେ ସତ୍ୱର ହୋଇ ଧାବମାନ ଦ୍ରୋଣଙ୍କ ପ୍ରତିରୁଦ୍ଧ କଲେ ଓ ତଦ୍ଦ୍ୱାରା ଉଭୟ ପକ୍ଷରୁ ତୁମୁଳ ଯୁଦ୍ଧ ଆରମ୍ଭ ହେଲା । ୩୯ ।

---

## ୨୦ ଅଧ୍ୟାୟ

ସଞ୍ଜୟ କହିଲେ—ହେ ରାଜେନ୍ଦ୍ର ! ମହାରଥ ଭରଦ୍ୱାଜ-ନନ୍ଦନ ଦ୍ରୋଣ ସେହି ରାତ୍ରି ଅତିବାହିତ କଲା ପରେ ଦୁର୍ଯ୍ୟୋଧନଙ୍କ ନିକଟରେ ବହୁବିଧ ବାକ୍ୟ କହି ପାର୍ଥଙ୍କ ସହିତ ଯୁଦ୍ଧରେ ସଂଶପ୍ତକମାନଙ୍କର ଯୋଗ କରାଇ ଦେଲେ । ଅର୍ଜ୍ଜୁନ ସଂଶପ୍ତକମାନଙ୍କ ବଧାର୍ଥ ନିଷ୍କ୍ରାନ୍ତ ହେଲାରୁ ଦ୍ରୋଣ ନିଜ ସୈନ୍ୟମାନଙ୍କୁ ସୁପର୍ଣ୍ଣ ନାମକ ବ୍ୟୂହରେ ସଜ୍ଜିତ କରି ଧର୍ମ୍ମରାଜଙ୍କୁ ଧରିବା ମାନସରେ ପାଣ୍ଡବ ସୈନ୍ୟ ମଧ୍ୟରେ ପ୍ରବେଶ କଲେ । ୩ । ଯୁଧିଷ୍ଠିର ଦ୍ରୋଣଙ୍କ ବିରଚିତ ସେହି ସୁପର୍ଣ୍ଣ ବ୍ୟୂହକୁ ଦେଖି ଆପଣା ପକ୍ଷରୁ ମଣ୍ଡଳାର୍ଦ୍ଧ ବ୍ୟୂହ ରଚନା କଲେ ।

ମହାରଥ ଦ୍ରୋଣ ସେହି ସୁପର୍ଣ୍ଣ ବ୍ୟୂହର ମୁଖ ହେଲେ । ୪ । ରାଜା ଦୁର୍ଯ୍ୟୋଧନ ସହୋଦର ଓ ଅନୁଚରମାନଙ୍କ ସହିତ ତାହାର ମସ୍ତକ ହେଲେ । ଶର-ନିକ୍ଷେପ-ପ୍ରଧାନ କୃତବର୍ମ୍ମା ଓ କୃପ— ଏହି ଦୁଇଜଣ ତାହାର ଦୁଇ ଚକ୍ଷୁ ହେଲେ । ୫ । ଭୂତଶର୍ମା, କ୍ଷେମଶର୍ମା, ବୀର୍ଯ୍ୟବାନ୍, କରକାକ୍ଷ,

କଳିଙ୍ଗଗଣ, ଆଖୀରଗଣ, ଦାଶେରକଗଣ, ଶକଗଣ, ଯବନଗଣ, କାମ୍ବୋଜଗଣ, ହଂସରଥଗଣ, ଶୂରସେନଗଣ, ଦରଦଗଣ, ମଦ୍ରଗଣ ଓ କେକେୟଗଣ—ଏମାନେ ଗଜ, ଅଶ୍ୱ, ପଦାତି ସମୂହରେ ପରିବୃତ ଓ ଅନ୍ତବର୍ମିତ ହୋଇ ସେହି ବ୍ୟୂହର ଗ୍ରୀବାଦେଶରେ ଅବସ୍ଥାନ କଲେ । ଭୂରିଶ୍ରବା, ଶଲ୍ୟ, ସୋମଦତ୍ତ ଓ ବାହ୍ଲିକ—ଏହି ବୀରମାନେ ଏକ ଅକ୍ଷୌହିଣୀ ସେନାରେ ପରିବୃତ ହୋଇ ସେହି ବ୍ୟୂହର ଦକ୍ଷିଣ ପାର୍ଶ୍ୱରେ ଅବସ୍ଥାନ କଲେ । ଅବନ୍ତୀରାଜ ବିନ୍ଦ ଓ ଅନୁବିନ୍ଦ— ଏ ଦୁହେଁ ଏବଂ କାମ୍ବୋଜରାଜ ସୁଦକ୍ଷିଣ, ଏମାନେ ଦ୍ରୋଣପୁତ୍ର ଅଶ୍ୱତ୍ଥାମାଙ୍କୁ ସମ୍ମୁଖରେ ରଖି ବ୍ୟୂହର ବାମ ପାର୍ଶ୍ୱରେ ଅବସ୍ଥିତ ହେଲେ । କଳିଙ୍ଗ, ଅମ୍ବଷ୍ଠ, ମାଗଧ, ପୌଣ୍ଡ୍ର, ମଦ୍ରକ, ଗାନ୍ଧାର, ଶକୁନ, ପ୍ରାଚ୍ୟ, ପାର୍ବତୀୟ ଓ ବଶାତିଦେଶୀୟ ବୀରମାନେ ସେହି ବ୍ୟୂହର ପୃଷ୍ଠଦେଶରେ ଅବସ୍ଥାନ କଲେ । ସୂର୍ଯ୍ୟ-ନନ୍ଦନ କର୍ଣ୍ଣ ଜ୍ଞାତି, ପୁତ୍ର, ବାନ୍ଧବ ଓ ନାନାଦେଶୀୟ ମହତୀ ସେନା ସହିତ ସେହି ବ୍ୟୂହର ପୁଚ୍ଛ-ଦେଶରେ ସ୍ଥିତ ହେଲେ ।

ହେ ରାଜନ୍ ! ଜୟଦ୍ରଥ, ଭୀମରଥ, ସମ୍ପାତି, ଋଷଭ, ଜୟ, ଭୂମିଞ୍ଜୟ, ବୃଷ, କ୍ରାଥ ଓ ମହାବଳ ନୈଷଧରାଜ—ଏହି ସମସ୍ତ ଯୁଦ୍ଧ-ବିଶାରଦ ଯୋଦ୍ଧାମାନେ ବ୍ରହ୍ମଲୋକ କାମନାରେ ମହାସୈନ୍ୟମାନଙ୍କ ସହିତ ସେହି ବ୍ୟୂହର ବକ୍ଷଃସ୍ଥଳରେ ଅବସ୍ଥାନ କଲେ । ପଦାତି, ଅଶ୍ୱ, ରଥ ଓ ଗଜଯୁକ୍ତ ଦ୍ରୋଣଙ୍କ ବିହିତ ସେହି ବ୍ୟୂହ ପବନାନ୍ଦୋଳିତ ସାଗରତୁଲ୍ୟ ନୃତ୍ୟ କଲା । ଗ୍ରୀଷ୍ମ କାଳରେ ଯେପରି ବିଦ୍ୟୁତ୍ ସହ ମେଘମାନେ ଗର୍ଜ୍ଜନ କରୁଁ କରୁଁ ସବୁ ଦିଗରୁ ନିର୍ଗତ ହୁଅନ୍ତି, ସେହିପରି ସେହି ବ୍ୟୂହର ପକ୍ଷ ଓ ପ୍ରପକ୍ଷରୁ ଯୁଯୁତ୍ସୁମାନେ ନିର୍ଗତ ହେଲେ ।

ହେ ରାଜନ୍ ! ପ୍ରାଗ୍-ଜ୍ୟୋତିଷରାଜ ଭଗଦତ୍ତ ବିଧିବତ୍ ସଜ୍ଜିତ ଗଜରେ ଆରୋହଣପୂର୍ବକ ସେହି ବ୍ୟୂହ ମଧ୍ୟରେ ଅବସ୍ଥିତ ହୋଇ ଉଦୟ-ଗିରିସ୍ଥ ସୂର୍ଯ୍ୟ ସଦୃଶ ଶୋଭା ପାଇଲେ । ହେ ରାଜନ୍ ! କାର୍ତ୍ତିକୀ ପୂର୍ଣ୍ଣିମାରେ ଚନ୍ଦ୍ର ସଦୃଶ ମାଲ୍ୟ-ଦାମ-ଶୋଭିତ ଶ୍ୱେତଚ୍ଛତ୍ର ତାହାଙ୍କ ମସ୍ତକୋପରି ଧୃତ ହେବାରୁ ସେ ଅତିଶୟ ଶୋଭାନ୍ୱିତ ହେଲେ । ମହା ମେଘସମୂହ ପର୍ବତ ଉପରେ ଅତିଶୟ ବୃଷ୍ଟି କଲେ ସେ ପର୍ବତ ଯେପରି ଶୋଭାପାଏ,

ଭଗଦତ୍ତଙ୍କର ନୀଳାଞ୍ଜନ-ପ୍ରଭ ମଦାନ୍ଧ ହସ୍ତୀ ସେହିପରି ଶୋଭାପ୍ରାପ୍ତ ହେଲା । ନାନାବିଧ ଆୟୁଧ-ଭୂଷଣଧାରୀ ପର୍ବତ-ପ୍ରଦେଶୀୟ ବୀର ରାଜାମାନଙ୍କ ଦ୍ୱାରା ସମନ୍ୱିତ ହୋଇ ଭଗଦତ୍ତ ଦେବଗଣ-ପରିବୃତ ଇନ୍ଦ୍ରଙ୍କ ସଦୃଶ ଶୋଭା ପାଇଲେ ।

ଅନନ୍ତର ଯୁଧିଷ୍ଠିର ବିପକ୍ଷଙ୍କର ଅଜେୟ ସେହି ଅଲୌକିକ ବ୍ୟୂହ ଦେଖି ପାରାବତବର୍ଣ୍ଣବିଶିଷ୍ଟଅଶ୍ୱଯୋଜିତ ରଥାରୋହୀ ଧୃଷ୍ଟଦ୍ୟୁମ୍ନଙ୍କୁ କହିଲେ, ହେ ପ୍ରଭୋ ! ଆଜି ଆମ୍ଭେ ସେ ବ୍ରାହ୍ମଣର ଯେପରି ବଶବର୍ତ୍ତୀ ନ ହେଉଁ, ସେହିପରି ଉପାୟ ବିଧାନ କର । ୨୧ ।

ଧୃଷ୍ଟଦ୍ୟୁମ୍ନ କହିଲେ, ହେ ସୁବ୍ରତ ! ଦ୍ରୋଣାଚାର୍ଯ୍ୟ ବହୁ ଯତ୍ନ କଲେ ସୁଦ୍ଧା ଆପଣଙ୍କୁ ବଶବର୍ତ୍ତୀ କରିପାରିବେ ନାହିଁ । ଆମ୍ଭେ ଅଦ୍ୟ ଦ୍ରୋଣଙ୍କୁ ତାହାଙ୍କର ଅନୁଚରବୃନ୍ଦଙ୍କ ସହିତ ନିବାରଣ କରିବୁଁ । ୨୨ । ହେ କୌରବ୍ୟ ! ଆମ୍ଭେ ଜୀବିତ ଥାଉଁ ଥାଉଁ ଆପଣ ଚିନ୍ତିତ ହେବା ଉଚିତ ନୁହେଁ । ଯୁଦ୍ଧରେ ଦ୍ରୋଣ କଦାଚ ଆମ୍ଭଙ୍କୁ ଜୟ କରି ପାରିବେ ନାହିଁ । ୨୩ । ସଞ୍ଜୟ ବୋଇଲେ, ପାରାବତବର୍ଣ୍ଣବିଶିଷ୍ଟ ଅଶ୍ୱଯୋଜିତ ରଥରେ ଆରୂଢ଼ ମହାବଳ ଦ୍ରୁପଦତନୟ ଏହିପରି କହି ନିଜେ ବାଣ ବିକିରଣ କରୁଁ କରୁଁ ଦ୍ରୋଣାଭିମୁଖରେ ଅଗ୍ରସର ହେଲେ । ୨୪ ।

ଦ୍ରୋଣ ଧୃଷ୍ଟଦ୍ୟୁମ୍ନଙ୍କୁ ଯୁଦ୍ଧରେ ସମାଗତ ହେବାର ଦେଖି ଅନିଷ୍ଟ ଦର୍ଶନବତ୍ କ୍ଷଣକାଳ ଅତିଶୟ ହୃଷ୍ଟମନା ହେଲେ ନାହିଁ । ୨୫ । ତାହା ଦେଖି ଆପଣଙ୍କର ପୁତ୍ର ଶତ୍ରୁକର୍ଷଣ ଦୁର୍ମୁଖ ଦ୍ରୋଣଙ୍କର ପ୍ରିୟକାର୍ଯ୍ୟ କରିବା ମାନସରେ ଧୃଷ୍ଟଦ୍ୟୁମ୍ନଙ୍କୁ ଆକ୍ରମଣ କଲେ । ୨୬ । ହେ ଭାରତ ! ମହାଶୂର ଧୃଷ୍ଟଦ୍ୟୁମ୍ନଙ୍କ ସହିତ ଦୁର୍ମୁଖଙ୍କର ଅତିଭୟଙ୍କର ତୁମୁଳ ସଂଗ୍ରାମ ଆରମ୍ଭ ହେଲା । ୨୭ । ଧୃଷ୍ଟଦ୍ୟୁମ୍ନ ସତ୍ୱର ଶରଜାଲ ଦ୍ୱାରା ଦୁର୍ମୁଖଙ୍କୁ ଆଚ୍ଛନ୍ନ କରି ମହାଶର ସମୂହରେ ଦ୍ରୋଣଙ୍କୁ ଅବରୋଧ କ..ଲ । ୨୮ ।

ଦ୍ରୋଣଙ୍କୁ ଅବରୁଦ୍ଧ ହେବାର ଦେଖି ଦୁର୍ମୁଖ ଅତି କୁପିତ ହୋଇ ନାନାଲକ୍ଷଣଚିହ୍ନିତ ଶରସମୂହ ଦ୍ୱାରା ଧୃଷ୍ଟଦ୍ୟୁମ୍ନଙ୍କୁ ନିବାରଣ କଲେ ।୨୯।

ପାଞ୍ଚାଳ୍ୟ ଧୃଷ୍ଟଦ୍ୟୁମ୍ନ ଓ କୁରୁଶ୍ରେଷ୍ଠ ଦୁର୍ମୁଖ—ଏ ଦୁହେଁ ଯୁଦ୍ଧରେ ପ୍ରବୃତ୍ତ ହେବାରୁ ଦ୍ରୋଣ ବହୁବିଧ ଶରଦ୍ୱାରା ଯୁଧିଷ୍ଠିରଙ୍କ ସୈନ୍ୟମାନଙ୍କୁ ଦଗ୍ଧ କଲେ । ୩୦ । ଯେପରି ବାୟୁଦ୍ୱାରା ମେଘସମୂହ ଚତୁର୍ଦ୍ଦିଗରେ ବିଚ୍ଛିନ୍ନ ହୁଅନ୍ତି, ସେହିପରି ଦ୍ରୋଣଙ୍କ ବାଣଦ୍ୱାରା ଯୁଧିଷ୍ଠିରଙ୍କ ସୈନ୍ୟମାନେ ଇତସ୍ତତଃ ବିଚ୍ଛିନ୍ନ ହୋଇଗଲେ । ୩୧ ।

ହେ ରାଜନ୍ ! ସେହି ଯୁଦ୍ଧ ମୁହୂର୍ତ୍ତକାଳ ମାତ୍ର ଦେଖିବାକୁ ମଧୁର ଦର୍ଶନ ହୋଇଥିଲା । ତତ୍ପରେ ତାହା ଉନ୍ମତ୍ତ ସଦୃଶ ମର୍ଯ୍ୟାଦାଶୂନ୍ୟ ହେଲା । ୩୨ । ହେ ରାଜନ୍ ! ସେହି ଯୁଦ୍ଧରେ ଆତ୍ମପର ଜ୍ଞାନ ରହିଲା ନାହିଁ ; କେବଳ ଅନୁମାନ ଓ ସଙ୍କେତଦ୍ୱାରା ଯୁଦ୍ଧ ହେଲା । ୩୩ । ଯୋଦ୍ଧାମାନଙ୍କର ମସ୍ତକ, କଣ୍ଠ ଓ ବର୍ମସ୍ଥ ଭୂଷଣସମୂହରୁ ଉତ୍ଥିତ କିରଣ-ସମୂହ ସୂର୍ଯ୍ୟକିରଣ ସଦୃଶ ପ୍ରକାଶିତ ହେଉଥିଲା । ୩୪ । ରଥ, ଅଶ୍ୱ ଓ ହସ୍ତିମାନଙ୍କର ପତାକା ସବୁ ଇତସ୍ତତଃ ବିକ୍ଷିପ୍ତ ହେବାରୁ ସେମାନେ ବକରାଜିବିରାଜିତ ମେଘମାଳା ସଦୃଶ ଦୃଷ୍ଟ ହେଲେ । ୩୫ ।

ନରମାନେ ନରମାନଙ୍କୁ, ଅଶ୍ୱମାନେ ଅଶ୍ୱମାନଙ୍କୁ, ରଥୀମାନେ ରଥୀମାନଙ୍କୁ, ଶ୍ରେଷ୍ଠ ହସ୍ତିମାନେ ହସ୍ତିମାନଙ୍କୁ ଉଦ୍ଧତ ହୋଇ ହନନ କଲେ । ୩୬ । ସମୁତ୍ଥିତପତାକାବିଶିଷ୍ଟ ହସ୍ତିମାନେ କ୍ଷଣକାଳ ମଧ୍ୟରେ ପରସ୍ପର ତୁମୁଳ ଯୁଦ୍ଧରେ ପ୍ରବୃତ୍ତ ହେଲେ । ୩୭ । ସେମାନେ ସଂଲଗ୍ନ-ଗାତ୍ର ହୋଇ ପରସ୍ପର ପରସ୍ପରଙ୍କୁ ଆକର୍ଷଣ କଲେ । ସେମାନଙ୍କର ଦନ୍ତ-ସଂଘର୍ଷଣରେ ସଧୂମ ଅଗ୍ନି ଉତ୍ଥିତ ହେଲା । ସେମାନଙ୍କର ପତାକାମାନ ପ୍ରାକୀର୍ଣ୍ଣ ହେବାରୁ ଓ ଦନ୍ତସଂଘର୍ଷଣ ଦ୍ୱାରା ଅଗ୍ନି ଉତ୍ପତ୍ତି ହେବାରୁ ସେମାନେ ଆକାଶସ୍ଥ ବିଦ୍ୟୁତ୍‌ଯୁକ୍ତ ମେଘସଦୃଶ ଶୋଭା ପାଇଲେ । ୩୯ । ଶରତ୍-କାଳରେ ମେଘମାଳା ଦ୍ୱାରା ଆକାଶ ଯେପରି ସମାଚ୍ଛନ୍ନ ହୁଏ, ତଦ୍ରୂପ ରଣଭୂମି ହସ୍ତିମାନଙ୍କ ଦ୍ୱାରା ସମାଚ୍ଛନ୍ନ ହେଲା । ସେମାନଙ୍କ ମଧ୍ୟରୁ କେତେକ ଇତସ୍ତତଃ ବିକୀର୍ଣ୍ଣ ହେଲେ, କେତେକ ନିନାଦ କଲେ, ଆଉ କେତେ ସେହିଠାରେ ନିପତିତ ହେଲେ । ୪୦ । ହସ୍ତିମାନଙ୍କ ଉପରେ ବାଣ, ତୋମର ଓ ଅସ୍ତ୍ରବର୍ଷଣ ହେଲା । ତଦ୍ଦ୍ୱାରା ସେମାନେ ପୀଡ଼ିତ ହୋଇ ପ୍ରଳୟକାଳୀନ ମେଘ ସଦୃଶ ଗର୍ଜ୍ଜନ କଲେ । ୪୧ । ତୋମର ଓ ବାଣଦ୍ୱାରା

ଆହତ ହୋଇଥିବା ହସ୍ତିମାନଙ୍କ ମଧ୍ୟରୁ କେତେକ ହ୍ରାସିତ ହେଲେ, କେତେକ ମହାଶବ୍ଦ କଲେ ଓ କେତେକ ହସ୍ତୀ ଅନ୍ୟାନ୍ୟ ହସ୍ତିମାନଙ୍କ ଦନ୍ତ ଦ୍ୱାରା ଆହତ ହୋଇ ଔତ୍ପାତିକ ମେଘସଦୃଶ ଘୋରତର ଆର୍ତ୍ତନାଦ କଲେ । ୪୩ । ପ୍ରଧାନ ପ୍ରଧାନ ହସ୍ତିମାନେ ବିପକ୍ଷ ହସ୍ତିମାନଙ୍କଠାରେ ପ୍ରତିକୂଳାଚରଣ କରିବା ସକାଶେ ଅଙ୍କୁଶ ଦ୍ୱାରା ଆହତ ହୋଇ ବିପକ୍ଷ ହସ୍ତିମାନଙ୍କୁ ବିଷାଣ ପ୍ରହାରଦ୍ୱାରା ପୁନଃପୁନଃ ଉନ୍ମଥନ କଲେ । ୪୪ ।

ଉଭୟପକ୍ଷୀୟ ମାହୁନ୍ତମାନଙ୍କ ମଧ୍ୟରେ ପରସ୍ପର ଶର ଓ ତୋମର ଦ୍ୱାରା ଯୁଦ୍ଧ ହେବାରୁ ସେମାନେ ଅଙ୍କୁଶ ଓ ଅନ୍ୟାନ୍ୟ ଅସ୍ତ୍ରବିହୀନ ହୋଇ ହସ୍ତୀ ପୃଷ୍ଠରୁ ଭୂମିରେ ପତିତ ହେଲେ । ୪୫ । ଅନେକ ହସ୍ତୀ ମନୁଷ୍ୟହୀନ ହୋଇ ନିନାଦ କରୁଁ କରୁଁ ଛିନ୍ନମେଘ ସଦୃଶ ପରସ୍ପର ମିଳନ ପୂର୍ବକ ନିପତିତ ହେଲେ । ୪୬ । ଗଜାରୋହୀ ମନୁଷ୍ୟମାନେ ଆୟୁଧଶୂନ୍ୟ ହୋଇ ହସ୍ତିପୃଷ୍ଠରେ ପୀଡ଼ିତ ଓ ହତ ହୁଅନ୍ତେ ସେହି ବୃହତ୍ ହସ୍ତିମାନେ ସେମାନଙ୍କୁ ବହନ କରି ଏକଚର ଜନ୍ତୁ ସଦୃଶ ଇତସ୍ତତଃ ପଳାଇଗଲେ । ୪୭ । ତୋମରବୃଷ୍ଟି ଓ ପରଶ୍ୱଧ ଦ୍ୱାରା ତାଡ଼ିତ ଓ ତାଡ଼୍ୟମାନ ହୋଇ ଗଜମାନେ ଆର୍ତ୍ତନାଦ ପୂର୍ବକ ରଣଭୂମିରେ ପତିତ ହେଲେ । ୪୮ । ସେମାନଙ୍କର ଶୈଳସଦୃଶ ଶରୀରମାନ ଇତସ୍ତତଃ ପଡ଼ିବାରୁ ପୃଥିବୀ ଆହତ ହୋଇ ସହସା କମ୍ପିତା ଓ ନିନାଦିତା ହେଲେ । ୪୯ । ଆରୋହୀ ଓ ପତାକାସହ ପାତିତ ହୋଇଥିବା ମାତଙ୍ଗମାନଙ୍କ ଦ୍ୱାରା ପୃଥିବୀ ପର୍ବତସମୂହରେ ସମାଚ୍ଛାଦିତ ହୋଇଥିବା ପ୍ରାୟ ଶୋଭା ପାଇଲା । ୫୦ ।

ହସ୍ତ୍ୟାରୋହୀ ମାହୁନ୍ତମାନେ ରଥୀମାନଙ୍କର ଭଲ୍ଲାସ୍ତ୍ରରେ ନିର୍ଭିନ୍ନ-ହୃଦୟ ହୋଇ ଅଙ୍କୁଶ ଓ ତୋମର ପରିତ୍ୟାଗ ପୂର୍ବକ ଭୂମିରେ ପତିତ ହେଲେ । ୫୧ । ଗଜମାନେ ନାରାଚ ଆଘାତରେ କ୍ରୌଞ୍ଚପକ୍ଷୀ ତୁଲ୍ୟ ଶବ୍ଦ କରି କରି ସ୍ୱକୀୟ ଓ ପରକୀୟ ସୈନ୍ୟମାନଙ୍କୁ ମର୍ଦ୍ଦନ କରି ସ୍ଥିର ଆଡ଼ରେ ପତିତ ହେଲେ । ୫୨ । ହେ ରାଜନ୍ ! ଗଜ, ଅଶ୍ୱ, ଓ ଯୋଦ୍ଧାମାନଙ୍କର ଶରୀରସମୂହରେ ପୃଥିବୀ ସମାଚ୍ଛାଦିତା ଓ ମାଂସ ଶୋଣିତ-କର୍ଦ୍ଦମରେ ସମାକୁଳା ହେଲା । ୫୩ । ହସ୍ତିମାନେ ଦନ୍ତାଗ୍ରଭାଗଦ୍ୱାରା ଅତି ବୃହତ୍ ସଚକ୍ର ରଥ ଓ ରଥୀମାନଙ୍କୁ ଉତ୍କ୍ଷେପଣ କରି ରଥମାନଙ୍କୁ ଚକ୍ରବିହୀନ

କଲେ । ୫୪ । ରଥସବୁ ରଥିବିହୀନ ହେଲେ ଏବଂ ଅଶ୍ୱ ଓ ଗଜମାନେ ଆରୋହିବିହୀନ ହୋଇ ଭୟବ୍ୟାକୁଳଚିତ୍ତରେ ଶୃରଆଡ଼େ ପଳାୟନ କଲେ । ୫୫ ।

ଏହି ଯୁଦ୍ଧରେ ପିତା ପୁତ୍ରକୁ ଓ ପୁତ୍ର ପିତାକୁ ବଧ କଲେ, ଏହିପରି ତୁମୁଳ ଯୁଦ୍ଧ ହେବାରୁ କିଛିମାତ୍ର ବୋଧଗମ୍ୟ ହେଲା ନାହିଁ ।୫୬। ଲୋହିତ ବର୍ଣ୍ଣ କର୍ଦ୍ଦମରେ ମନୁଷ୍ୟମାନେ ଗୁଲ୍‌ଫ ପର୍ଯ୍ୟନ୍ତ ନିମଗ୍ନ ହେଲେ । ଏହା ଦେଖି ବୋଧ ହେଲା, ଯେମନ୍ତ ମହାବୃକ୍ଷ ସବୁ ପ୍ରଦୀପ୍ତ ଦାବାନଳରେ ପ୍ରୋଥିତ ହୋଇଅଛନ୍ତି । ୫୭ । ବସ୍ତ୍ର, କବଚ, ଛତ୍ର ଓ ପତାକାସବୁ ଶୋଣିତସିକ୍ତ ହେବାରୁ ସମସ୍ତ ରକ୍ତମୟ ଦେଖାଗଲା । ୫୮ । ଅଶ୍ୱ, ରଥୀ ଓ ମନୁଷ୍ୟ-ମାନେ ନିପାତିତ ହେଲାରୁ ରଥନେମିଦ୍ୱାରା ପୁନର୍ବାର ସେମାନେ ଆବର୍ତ୍ତିତ ଓ ବହୁଧା କର୍ତ୍ତିତ ହେଲେ । ୫୯ ।

ଏହି ଯୁଦ୍ଧରେ ସୈନ୍ୟମାନେ ମହାସାଗରସଦୃଶ ହେଲେ, ତହିଁରେ ଗତିଶୀଳ ଗଜମାନେ ମହାବେଗ ସ୍ୱରୂପ, ମୃତ ନରମାନେ ଶୈବାଳ ସ୍ୱରୂପ ଓ ଭ୍ରମଣଶୀଳ ରଥମାନେ ତୁମୁଳ ଆବର୍ତ୍ତ ସ୍ୱରୂପ ପ୍ରକାଶ ପାଇଲେ । ୬୦ । ଯୋଦ୍ଧାରୂପ ବଣିକମାନେ ଜୟରୂପ ଧନଲାଭରେ ଅଭିଳାଷୀ ହୋଇ ବାହନରୂପ ବୋଇତମାନଙ୍କୁ ଘେନି ସେହି ସାଗରରେ ଅବଗାହନ କଲେ ଓ ତହିଁରେ ନିମଗ୍ନ ହୋଇ ସୁଦ୍ଧା ମୋହପ୍ରାପ୍ତ ହେଲେ ନାହିଁ ।୬୧। ଚିହ୍ନବିଶିଷ୍ଟ ଯୋଦ୍ଧାମାନେ ଶରଜାଲରେ ସମାଚ୍ଛନ୍ନ ହେଲାରୁ ସେମାନଙ୍କ ମଧ୍ୟରେ କେଉଁ ବ୍ୟକ୍ତି ଚିହ୍ନବିହୀନ ବା ମୋହପ୍ରାପ୍ତ ହୋଇଅଛି, ତାହା ଜଣାଗଲା ନାହିଁ । ୬୨ । ଏହିରୂପ ଘୋରତର ଓ ଭୟଙ୍କର ଯୁଦ୍ଧରେ ଦ୍ରୋଣାଚାର୍ଯ୍ୟ ବିପକ୍ଷମାନଙ୍କୁ ମୋହିତ କରି ଯୁଧିଷ୍ଠିରଙ୍କ ପ୍ରତି ଧାବମାନ ହେଲେ । ୬୩ ।



## ୨୧ ଅଧ୍ୟାୟ

ସଞ୍ଜୟ କହିଲେ—ଅନନ୍ତର ଦ୍ରୋଣଙ୍କୁ ନିକଟବର୍ତ୍ତୀ ହେବାର ଦେଖି ଯୁଧିଷ୍ଠିର ନିର୍ଭୟ ଚିତ୍ତରେ ମହାଶର ବର୍ଷଣ ପୂର୍ବକ ତାହାଙ୍କ ସହିତ

ଯୁଦ୍ଧରେ ପ୍ରବୃତ୍ତ ହେଲେ । ୧ । ଯୂଥପତିଙ୍କୁ ମହାସିଂହ ଧରିବାକୁ ଉଦ୍ୟତ ହେଲେ ଗଜଯୂଥ ମଧ୍ୟରେ ଯେପରି ଶବ୍ଦ ହୁଏ ଯୁଧିଷ୍ଠିରଙ୍କ ସୈନ୍ୟମଧ୍ୟରେ ସେହିପରି କୋଳାହଳ ସମୁତ୍‌ଥିତ ହେଲା । ୨ ।

ଯୁଧିଷ୍ଠିରଙ୍କୁ ଧରିବା ନିମନ୍ତେ ଦ୍ରୋଣ ଯତ୍ନ କରୁଥିବାର ଦେଖି ସତ୍ୟବିକ୍ରମ, ଶୂର ସତ୍ୟଜିତ୍, ଯୁଧିଷ୍ଠିରଙ୍କ ରକ୍ଷା ନିମିତ୍ତ ଦ୍ରୋଣଙ୍କ ଉପରକୁ ଧାବମାନ ହେଲେ ।୩। ମହାବଳ ପରାକ୍ରାନ୍ତ ଦ୍ରୋଣାଚାର୍ଯ୍ୟ ଓ ସତ୍ୟଜିତ୍— ଏ ଦୁହେଁ ଇନ୍ଦ୍ର ଓ ବଳିରାଜସଦୃଶ ଯୁଦ୍ଧ କରିବାର ଦେଖି ସୈନ୍ୟମାନଙ୍କ ମଧ୍ୟରେ କ୍ଷୋଭ ଜାତ ହେଲା । ତତ୍ପରେ ମହାଧନୁର୍ଦ୍ଧର, ସତ୍ୟବିକ୍ରମ ସତ୍ୟଜିତ୍ ପରମାସ୍ତ୍ରନିକ୍ଷାସନପୂର୍ବକ ଶାଣିତ ଶରଦ୍ୱାରା ଦ୍ରୋଣଙ୍କୁ ଆଘାତ କଲେ ଏବଂ ତାହାଙ୍କ ସାରଥି ଉପରକୁ ସର୍ପବିଷ ସଦୃଶ ସାକ୍ଷାତ୍ ଯମ ତୁଲ୍ୟ ପାଞ୍ଚଗୋଟି ବାଣ ନିକ୍ଷେପ କରିବାରୁ ସାରଥି ମୂର୍ଚ୍ଛିତ ହେଲା ।୬। ତତ୍ପରେ ଶିକ୍ଷାଶ୍ଳାଘୀ ସତ୍ୟଜିତ୍ କ୍ରୁଦ୍ଧ ହୋଇ ଦଶଗୋଟି ବାଣଦ୍ୱାରା ଦ୍ରୋଣଙ୍କ ଅଶ୍ୱ, ପୃଷ୍ଠ-ରକ୍ଷକ ଓ ସାରଥିକୁ ବିଦ୍ଧ କଲେ । ତହିଁ ଉତ୍ତାରୁ ସୈନ୍ୟଙ୍କ ଅଗ୍ରଭାଗରେ ମଣ୍ଡଳାକାର ଗତିରେ ଭ୍ରମଣ କରି କ୍ରୁଦ୍ଧ ହୋଇ ଦ୍ରୋଣଙ୍କ ଧ୍ୱଜ ଛେଦନ କରି ପକାଇଲେ । ୮ ।

ଯୁଦ୍ଧରେ ସତ୍ୟଜିତ୍‌ଙ୍କର ତାଦୃଶ କର୍ମ ଦେଖି ଅରିନ୍ଦମ ଦ୍ରୋଣ ମନେ ମନେ ବିଚାର କଲେ ଯେ, ଏହାର ମୃତ୍ୟୁ ଉପସ୍ଥିତ ହୋଇଅଛି । ୯ । ଅନନ୍ତର ଆଚାର୍ଯ୍ୟ ସତ୍ୱର ହୋଇ ମର୍ମଭେଦୀ ଦଶଗୋଟି ତୀକ୍ଷ୍ଣ ବାଣଦ୍ୱାରା ସତ୍ୟଜିତ୍‌ର ବାଣ, ଶରାସନ ଛେଦ କରି ତାହାକୁ ବିଦ୍ଧ କଲେ । ୧୦ । ହେ ରାଜନ୍ ! ପ୍ରତାପଶାଳୀ ସତ୍ୟଜିତ୍ ଅତିଶୀଘ୍ର ଅନ୍ୟ ଗୋଟିଏ ଶରାସନ ଗ୍ରହଣ କରି କଙ୍କପତ୍ରବିଶିଷ୍ଟ ତିରିଶ ଗୋଟି ଶରଦ୍ୱାରା ଦ୍ରୋଣଙ୍କୁ ଆହତ କଲେ । ୧୧ । ଯୁଦ୍ଧରେ ଦ୍ରୋଣଙ୍କୁ ସତ୍ୟଜିତ୍ ଗ୍ରାସ କରି ପକାଇଲା ପରି ବୋଧ ହେବାରୁ ପାଞ୍ଚାଳ୍ୟ, ବୃକ ମଧ୍ୟ ସୁତୀକ୍ଷ୍ଣ ଶରଜାଳ ଦ୍ୱାରା ଦ୍ରୋଣଙ୍କୁ ପୀଡ଼ିତ କଲେ । ୧୨ ।

ପାଣ୍ଡବମାନେ ମହାରଥ ଦ୍ରୋଣଙ୍କୁ ଯୁଦ୍ଧରେ ଶରଜାଳ ଦ୍ୱାରା ସମାଚ୍ଛନ୍ନ ହେବାର ଦେଖି ହର୍ଷନାଦ ଓ ବସ୍ତ୍ର କମ୍ପନ କଲେ । ୧୩ ।

ହେ ରାଜନ୍ ! ସେହି ସମୟରେ ବଳବାନ୍ ବୃକ ମଧ୍ୟ ପରମ କ୍ରୁଦ୍ଧ ହୋଇ ଷାଠିଏ ଗୋଟି ଶରଦ୍ୱାରା ଦ୍ରୋଣଙ୍କ ବକ୍ଷଃସ୍ଥଳରେ ଆଘାତ କଲେ । ଏହା ଅଦ୍ଭୁତ ପ୍ରାୟ ହେଲା । ୧୪ । ମହାବେଗଶୀଳ ମହାରଥ ଦ୍ରୋଣ ସେମାନଙ୍କର ଶରବର୍ଷଣରେ ସମାଚ୍ଛନ୍ନ ହୋଇ କ୍ରୋଧରେ ଚକ୍ଷୁଦ୍ୱୟ ବିସ୍ତାରିତ କଲେ ଓ ଛତିଶଗୋଟି ଶର ଗ୍ରହଣ କରି ତଦ୍ଦ୍ୱାରା ସତ୍ୟଜିତ୍ର ଶରାସନ ଛେଦନ କଲେ । ଆଉ ବୃକକୁ ଓ ତାହାର ସାରଥି, ଅଶ୍ୱମାନଙ୍କୁ ମଧ୍ୟ ନିହତ କଲେ । ୧୬ ।

ତତ୍ପରେ ସତ୍ୟଜିତ୍ ଆଉ ଗୋଟିଏ ଦୃଢ଼ ଶରାସନ ଗ୍ରହଣ କରି ବହୁବାଣ ଦ୍ୱାରା ଦ୍ରୋଣଙ୍କୁ ଓ ତାହାଙ୍କର ସାରଥି, ଧ୍ୱଜ ଓ ଅଶ୍ୱମାନଙ୍କୁ ବିଦ୍ଧ କଲେ । ୧୭ । ଏହିପରି ପାଞ୍ଚାଳ୍ୟ ସତ୍ୟଜିତ୍ଙ୍କ ଦ୍ୱାରା ଯୁଦ୍ଧରେ ପୀଡ଼ିତ ହେବାରୁ ଦ୍ରୋଣ ତାହାଙ୍କୁ (ସତ୍ୟଜିତ୍ଙ୍କୁ) କ୍ଷମା କଲେ ନାହିଁ । ତାହାଙ୍କ ବିନାଶାର୍ଥ ସତ୍ୱର ହୋଇ ଦ୍ରୋଣ ବାଣ ବର୍ଷଣ କଲେ । ୧୮ । ସହସ୍ର ସହସ୍ର ବାଣ ବର୍ଷଣ କରି ସତ୍ୟଜିତ୍ଙ୍କର ଅଶ୍ୱ, ଧ୍ୱଜ, ଧନୁକ, ମୁଷ୍ଟି, ପୃଷ୍ଠ-ରକ୍ଷକ ଓ ସାରଥିକୁ ସମାକୀର୍ଣ୍ଣ କଲେ । ୧୯ । ଦ୍ରୋଣାଚାର୍ଯ୍ୟ ପୁନଃ ପୁନଃ ଶରାସନ ଛେଦନ କଲେ ସୁଦ୍ଧା ପରମାସ୍ତ୍ରକୁଶଳ ସତ୍ୟଜିତ୍ ଦ୍ରୋଣଙ୍କ ସହିତ ଯୁଦ୍ଧ କରିବାରେ ପ୍ରବୃତ୍ତ ହେଲେ । ୨୦ । ଦ୍ରୋଣ ମହାଯୁଦ୍ଧରେ ମହାତ୍ମା ସତ୍ୟଜିତ୍ଙ୍କୁ ତାଦୃଶ ଉଦ୍ଧତ ଦେଖି ଅର୍ଦ୍ଧଚନ୍ଦ୍ର ବାଣ ଦ୍ୱାରା ତାହାଙ୍କ ମସ୍ତକ କାଟି ପକାଇଲେ । ୨୧ ।

ସେହି ପାଞ୍ଚାଳ୍ୟ, ମହାରଥ, ମହାକାୟ ସତ୍ୟଜିତ୍ ସଂହାରପ୍ରାପ୍ତ ହେଲାରୁ ଯୁଧିଷ୍ଠିର ଦ୍ରୋଣଙ୍କୁ ଭୟ କରି ଶୀଘ୍ର ରଥଚାଳନା ପୂର୍ବକ ଯୁଦ୍ଧ-କ୍ଷେତ୍ରରୁ ଅପସୃତ ହେଲେ । ୨୨ । ପାଞ୍ଚାଳ, କେକେୟ, ଚେଦି, ମତ୍ସ୍ୟ, କାରୁଷ ଓ କୋଶଳବୃନ୍ଦ ଯୁଧିଷ୍ଠିରଙ୍କ ରକ୍ଷାର୍ଥେ ହୃଷ୍ଟ ହୋଇ ଦ୍ରୋଣଙ୍କୁ ଆକ୍ରମଣ କଲେ । ୨୩ । ଯେପରି ଅଗ୍ନି ତୂଳାରାଶିକୁ ଦଗ୍ଧ କରେ, ସେହିପରି ଶତ୍ରୁସୂଦନ ଦ୍ରୋଣାଚାର୍ଯ୍ୟ ଯୁଧିଷ୍ଠିରଙ୍କୁ ଧରିବା ନିମନ୍ତେ ସେହି ସୈନ୍ୟମାନଙ୍କୁ ଦଗ୍ଧ କଲେ । ୨୪ । ଦ୍ରୋଣଙ୍କ ଦ୍ୱାରା ପୁନଃ ପୁନଃ ସେହି ସୈନ୍ୟମାନେ ଦଗ୍ଧ ହେବାର ଦେଖି ମତ୍ସ୍ୟରାଜଙ୍କ କନିଷ୍ଠ ଭ୍ରାତା ଶତାନୀକ ତାହାଙ୍କ ଆଡ଼କୁ ଧାବମାନ ହେଲେ । ୨୫ ।

ସୂର୍ଯ୍ୟ-ରଶ୍ମି ସମାନ ପ୍ରଭାଯୁକ୍ତ କର୍ମାର ପରିମାର୍ଜିତ ଛଅଗୋଟି ଶରଦ୍ୱାରା ଦ୍ରୋଣଙ୍କୁ ଓ ତାହାଙ୍କ ସାରଥି ଓ ଅଶ୍ୱମାନଙ୍କୁ ଶତାନୀକ ବିଦ୍ଧ କରି ସିଂହନାଦ କଲେ । ୨୭ । କ୍ରୂର-କର୍ମା ଶତାନୀକ ଦୁଷ୍କର କର୍ମ କରିବା ମାନସରେ ଶତଶତ ଶରଦ୍ୱାରା ମହାରଥ ଦ୍ରୋଣଙ୍କୁ ସମାକୀର୍ଣ୍ଣ କରି ପୁନଃପୁନଃ ସିଂହନାଦ କଲେ । ଏହି ଅବକାଶରେ ଦ୍ରୋଣାଚାର୍ଯ୍ୟ ସତ୍ୱର ହୋଇ କ୍ଷୁରାସ୍ତ୍ର ଦ୍ୱାରା ଶତାନୀକଙ୍କ କୁଣ୍ଡଳଭୂଷିତ ମସ୍ତକ କାଟି ପକାଇଲେ ! ଏହା ଦେଖି ମତ୍ସ୍ୟଦେଶୀୟ ଯୋଦ୍ଧାମାନେ ପଳାୟନ କଲେ । ୨୮ ।

ଦ୍ରୋଣାଚାର୍ଯ୍ୟ ମତ୍ସ୍ୟଦେଶୀୟମାନଙ୍କୁ ଜୟ କରି ପୁନଃପୁନଃ ଚେଦି, କାରୁଷ, କେକେୟ, ପାଞ୍ଚାଳ, ସୃଞ୍ଜୟ ଓ ପାଣ୍ଡବ ସୈନ୍ୟମାନଙ୍କୁ ପରାଜିତ କଲେ । ୨୯ । ଅଗ୍ନି ବନକୁ ଦଗ୍‌ଧ କଲା ପ୍ରାୟ ମହାବୀର ଦ୍ରୋଣ କ୍ରୁଦ୍ଧ ହୋଇ ବିପକ୍ଷ ସୈନ୍ୟମାନଙ୍କୁ ଦହନ କରିବାର ଦେଖି ସୃଞ୍ଜୟମାନେ କମ୍ପିତ ହେଲେ । ୩୦ । ଦ୍ରୋଣାଚାର୍ଯ୍ୟ ଯେତେବେଳେ ଉତ୍କୃଷ୍ଟ ଶରାସନ ଆକର୍ଷଣ ପୂର୍ବକ କ୍ଷିପ୍ର ହସ୍ତରେ ଶତ୍ରୁମାନଙ୍କୁ ପୀଡ଼ନ କଲେ, ତେତେ-ବେଳେ ତାହାଙ୍କ ଧନୁର୍ଗୁଣ-ଶବ୍ଦ ସବୁ ଦିଗରେ ଶୁଣାଗଲା । ୩୧ । ଦ୍ରୋଣଙ୍କ ଲଘୁହସ୍ତ-ମୁକ୍ତ ଭୀଷଣ ବାଣମାନ ହସ୍ତୀ, ଅଶ୍ୱ, ପଦାତି, ରଥୀ ଓ ଗଜାରୋହୀମାନଙ୍କୁ ନିର୍ମ୍ମଥିତ କଲା । ୩୨ ।

ଶୀତଋତୁ ଶେଷରେ ବାୟୁମିଶ୍ରିତ ଗର୍ଜ୍ଜନଶୀଳ ମେଘ ଯେପରି ଶିଳାବର୍ଷଣ କରେ, ସେହିପରି ଦ୍ରୋଣାଚାର୍ଯ୍ୟ ସିଂହନାଦ କରି ଶରବର୍ଷଣ ଦ୍ୱାରା ଶତ୍ରୁମାନଙ୍କୁ ବାସିତ କଲେ । ୩୩ । ମିତ୍ରମାନଙ୍କର ଅଭୟପ୍ରଦ, ବଳୀ, ଶୂର, ଆଚାର୍ଯ୍ୟ ଦ୍ରୋଣ ଶତ୍ରୁସୈନ୍ୟମାନଙ୍କୁ କ୍ଷୋଭିତ କରି ସଂଗ୍ରାମଭୂମିର ଚତୁର୍ଦ୍ଦିଗରେ ବିଚରଣ କଲେ । ୩୪ । ଅମିତତେଜା ଦ୍ରୋଣଙ୍କର ହେମଭୂଷିତ ଶରାସନ ସେହି ସମୟରେ ମେଘମଧ୍ୟସ୍ଥ ବିଦ୍ୟୁତ୍ ସଦୃଶ ସର୍ବଦିଗରେ ପରିଦୃଷ୍ଟ ହେଲା । ୩୫ । ହେ ଭାରତ ! ଯେତେବେଳେ ଦ୍ରୋଣ ଯୁଦ୍ଧକ୍ଷେତ୍ରରେ ଭ୍ରମଣ କରୁଥିଲେ, ତେତେବେଳେ ତାହାଙ୍କର ରଥ-ଧ୍ୱଜସ୍ଥିତ ଶୋଭମାନ ଚର୍ଚ୍ଚିତ ବେଦୀ ହିମାଳୟ ଗିରିର ଶିଖର ତୁଲ୍ୟ ଦୃଷ୍ଟ ହେଲା । ୩୬ । ଯେପରି ସୁରାସୁର-ପୂଜିତ ବିଷ୍ଣୁ

ଦୈତ୍ୟମାନଙ୍କୁ ମର୍ଦ୍ଦନ କରନ୍ତୁ, ସେହିପରି ଦ୍ରୋଣାଚାର୍ଯ୍ୟ ପାଣ୍ଡବସୈନ୍ୟଙ୍କୁ ଅତିଶୟ ମର୍ଦ୍ଦିତ କଲେ । ୩୭ ।

ଶୂର, ସତ୍ୟବାଦୀ, ପ୍ରାଜ୍ଞ, ବଳବାନ୍ ସତ୍ୟବିକ୍ରମ, ମହାନୁଭବ, ଆଚାର୍ଯ୍ୟ ଦ୍ରୋଣ ପ୍ରଳୟକାଳୀନ ରୁଦ୍ରନିର୍ମିତା ପ୍ରାଣିସଂହାରିଣୀ ନଦୀସଦୃଶ ଭୀରୁମାନଙ୍କର ଭୟ-ଉତ୍ପାଦନୀ ଗୋଟିଏ ଭୀଷଣରୂପା ନଦୀ ସୃଷ୍ଟି କଲେ । କବଚସମୂହ ସେହି ନଦୀର ତରଙ୍ଗସ୍ୱରୂପ, ଧ୍ୱଜ ଆବର୍ତ୍ତସ୍ୱରୂପ, ଯୋଦ୍ଧାମାନେ କୂଳସ୍ୱରୂପ, ଗଜ ଓ ଅଶ୍ୱମାନେ ମହାଗ୍ରାହସ୍ୱରୂପ, ଅସିସମୂହ ମୀନସ୍ୱରୂପ, ବୀରମାନଙ୍କ ଅସ୍ଥି ଶର୍କରା ( ଖପରା ) ସଦୃଶ, ଭେରୀ ଓ ମୁରଜସମୂହ କଚ୍ଛପସ୍ୱରୂପ, ଚର୍ମ ଓ ବର୍ମ ନୌକାସ୍ୱରୂପ, କେଶସମୂହ ଶୈବାଳଶାଦ୍ୱଳସ୍ୱରୂପ, ଶରସମୂହ ପ୍ରବାହସ୍ୱରୂପ, ଧନୁ ସ୍ରୋତସ୍ୱରୂପ, ଛିନ୍ନବାହୁସମୂହ ସର୍ପସ୍ୱରୂପ, ରଣଭୂମି ପ୍ରବାହ-ସ୍ୱରୂପ, କୁରୁ ଓ ସୃଞ୍ଜୟଗଣ ଭାସମାନ ବସ୍ତୁସ୍ୱରୂପ, ମନୁଷ୍ୟର ଶିର ପାଷାଣସ୍ୱରୂପ, ଶକ୍ତି ମୀନସଦୃଶ, ଗଦା ଭେଳାସ୍ୱରୂପ, ଉଷ୍ଣୀଷ ଓ ବସନସମୂହ ଫେନସ୍ୱରୂପ, ବିକୀର୍ଣ୍ଣ ଅସ୍ତ୍ରସବୁ ସରୀସୃପସ୍ୱରୂପ, ମାଂସ ଓ ଶୋଣିତ କର୍ଦ୍ଦମସ୍ୱରୂପ, ହସ୍ତିମାନେ ଗ୍ରାହସ୍ୱରୂପ, ଧ୍ୱଜମାନେ ତୀରସ୍ଥ ବୃକ୍ଷସ୍ୱରୂପ ଏବଂ ସାଦୀମାନେ ସେହି ନଦୀର କୁମ୍ଭୀରସ୍ୱରୂପ ହୋଇଥିଲେ । ଦୁରାକ୍ରମଣୀୟା, ମୃତଦେହ-ସଂଘଟ୍ଟନ-ଯୁକ୍ତା, ଘୋରରୂପା, ଭୀଷଣଦର୍ଶନା, ତୀବ୍ରା, ବୀରସଂହାରିଣୀ, ଅନ୍ତକଗାମିନୀ ଓ ଦୁର୍ଗମ୍ୟା ସେହି ନଦୀରେ କ୍ଷତ୍ରିୟମାନେ ନିମଜ୍ଜିତ ହେଲେ । ଆଉ ତହିଁରେ ମହାଭୀଷଣ ମାଂସାଶୀ ରାକ୍ଷସ, କୁକୁର ଓ ଶୃଗାଳାଦି ଇତସ୍ତତଃ ଭ୍ରମଣ କଲେ । ୪୫ ।

ଯୁଧିଷ୍ଠିରଙ୍କର ଅଗ୍ରବର୍ତ୍ତୀ ରାଜାମାନେ କୃତାନ୍ତସଦୃଶ ମହାରଥ ଦ୍ରୋଣଙ୍କୁ ସୈନ୍ୟ ଦଗ୍‌ଧ କରିବାର ଦେଖି ତାହାଙ୍କ ପ୍ରତି ଧାବମାନ ହେଲେ । ୪୬ । ଆଦିତ୍ୟ ରଶ୍ମି-ଜାଲଦ୍ୱାରା ବିଶ୍ୱମଣ୍ଡଳ ଦଗ୍‌ଧ କଲା ପ୍ରାୟ ଶରସମୂହ ଦ୍ୱାରା ପାଣ୍ଡବ ସୈନ୍ୟଙ୍କୁ ଦଗ୍‌ଧ କରୁଥିଲେ ଯେଉଁ ଦ୍ରୋଣ, ତାହାଙ୍କୁ ସବୁ ରାଜା ମିଳିତ ହୋଇ ସର୍ବତୋଭାବରେ ନିବାରଣ କରିବାକୁ ଉଦ୍ୟତ ହେଲେ । ୪୭ ।

ଆପଣଙ୍କ ପକ୍ଷୀୟ ରାଜା ଓ ରାଜପୁତ୍ରମାନେ ଉଦ୍ୟତାସ୍ତ୍ର ହୋଇ ମହାଧନୁର୍ଦ୍ଧର ଦ୍ରୋଣଙ୍କର ଚତୁର୍ଦ୍ଦିଗରେ ଅବସ୍ଥାନ ପୂର୍ବକ ସେମାନଙ୍କୁ ଅବରୋଧ କଲେ । ଅନନ୍ତର ଶିଖଣ୍ଡୀ ନତପର୍ବ ପଞ୍ଚବାଣ, କ୍ଷତ୍ରଧର୍ମା ବିଂଶତି ବାଣ, ବସୁଦାନ ପଞ୍ଚବାଣ, ଉତ୍ତମୌଜା ତିନିବାଣ, କ୍ଷେତ୍ରଦେବ ସପ୍ତବାଣ, ସାତ୍ୟକି ଶତବାଣ, ଯୁଧାମନ୍ୟୁ ଅଷ୍ଟବାଣ, ଯୁଧିଷ୍ଠିର ଦ୍ୱାଦଶବାଣ, ଧୃଷ୍ଟଦ୍ୟୁମ୍ନ ଦଶବାଣ ଓ ଚେକିତାନ ତିନିଗୋଟି ବାଣ ଦ୍ୱାରା ଦ୍ରୋଣଙ୍କୁ ବିଦ୍ଧ କଲେ । ୫୧ । ତତ୍ପରେ ସତ୍ୟସନ୍ଧ ଦ୍ରୋଣ, ମଦସ୍ରାବୀ କୁଞ୍ଜର ସଦୃଶ ରଥିସୈନ୍ୟ-ମାନଙ୍କୁ ଅତିକ୍ରମ କରି ଦୃଢ଼ସେନଙ୍କୁ ନିପାତିତ କଲେ । ୫୨ । କ୍ଷେମରାଜା ନିର୍ଭୟରେ ଅସ୍ତ୍ର ପ୍ରହାର କରୁଥିବାର ଦେଖି ଦ୍ରୋଣ ତାହାଙ୍କୁ ନଅଗୋଟି ବାଣଦ୍ୱାରା ବିଦ୍ଧ କଲେ । ତହୁଁ କ୍ଷେମରାଜ ରଥରୁ ପତିତ ହେଲେ । ୫୩ ।

ଦ୍ରୋଣାଚାର୍ଯ୍ୟ ସେମାନଙ୍କ ମଧ୍ୟରେ ବିଚରଣ କରି ସ୍ୱପକ୍ଷୀୟମାନଙ୍କୁ ରକ୍ଷା କଲେ; କିନ୍ତୁ ସ୍ୱୟଂ କାହାରି ରକ୍ଷାଧୀନ ହେଲେ ନାହିଁ । ୫୪ । ବାରଗୋଟି ଶରଦ୍ୱାରା ଶିଖଣ୍ଡୀଙ୍କୁ ଓ ବିଂଶଗୋଟି ଶରଦ୍ୱାରା ଉତ୍ତମୌଜାଙ୍କୁ ଦ୍ରୋଣ ବିଦ୍ଧ କରି ଭଲ୍ଲଦ୍ୱାରା ବସୁଦାନଙ୍କୁ ଯମାଳୟକୁ ପ୍ରେରଣ କଲେ । ୫୫ । କ୍ଷେମଧର୍ମାଙ୍କୁ ଅଶୀଗୋଟି, ସୁଦକ୍ଷିଣଙ୍କୁ ଛବିଶଗୋଟି ଶରଦ୍ୱାରା ଏବଂ କ୍ଷେତ୍ରଦେବଙ୍କୁ ଭଲ୍ଲଦ୍ୱାରା ଦ୍ରୋଣ ରଥ-ମାଡ଼ରୁ ନିପାତିତ କଲେ । ୫୬ । ତତ୍ପରେ ଚତୁଃଷଷ୍ଟି ଶର ଦ୍ୱାରା ଯୁଧାମନ୍ୟୁଙ୍କୁ ଓ ତିରିଶଗୋଟି ଶରଦ୍ୱାରା ସାତ୍ୟକିଙ୍କୁ ବିଦ୍ଧ କରି ଦ୍ରୋଣ ଯୁଧିଷ୍ଠିରଙ୍କ ପ୍ରତି ଧାବମାନ ହେଲେ । ୫୭ ।

ରାଜସତ୍ତମ ଯୁଧିଷ୍ଠିର ବେଗବାନ୍ ଅଶ୍ୱମାନଙ୍କୁ ସଂଚାଳନ ପୂର୍ବକ ଗୁରୁ ଦ୍ରୋଣଙ୍କ ନିକଟରୁ ପ୍ରସ୍ଥାନ କଲେ । ସେହି ସମୟରେ ଦ୍ରୋଣଙ୍କୁ ପାଞ୍ଚାଳ-ରାଜନନ୍ଦନ ଆକ୍ରମଣ କଲେ । ୫୮ । ପାଞ୍ଚାଳ ରାଜନନ୍ଦନଙ୍କୁ ଓ ତାହାଙ୍କର ଅଶ୍ୱ, ସାରଥି ଓ ଶରାସନକୁ ବିଦ୍ଧ କରିବାରୁ ଆକାଶରୁ ଜ୍ୟୋତି ପଦାର୍ଥ ନିପତିତ ହେଲା ପ୍ରାୟ ସେ ହତ ହୋଇ ରଥରୁ ପତିତ ହେଲେ । ୫୯ । ପାଞ୍ଚାଳମାନଙ୍କର ସେହି ଯଶସ୍କର ରାଜପୁତ୍ର ହତ ହେବାରୁ "ଦ୍ରୋଣଙ୍କୁ ନିହତ କର, ଦ୍ରୋଣଙ୍କୁ ନିହତ କର" ଏହିପରି ଶବ୍ଦ ଶ୍ରୁତ ହେଲା । ୬୦ । ସେହି ଅତିସଂକ୍ରୁଦ୍ଧ ପାଞ୍ଚାଳ, ମତ୍ସ୍ୟ, କେକୟ, ସୃଞ୍ଜୟ ଓ ପାଣ୍ଡବସେନା-ମାନଙ୍କୁ ବଳଶାଳୀ ଦ୍ରୋଣ ବିକ୍ଷୋଭିତ କଲେ । ୬୧ ।

ଆଚାର୍ଯ୍ୟ ଦ୍ରୋଣ କୁରୁସେନାରେ ସମାବୃତ ହୋଇ ସାତ୍ୟକି, ଚେକିତାନ, ଧୃଷ୍ଟଦ୍ୟୁମ୍ନ, ଶିଖଣ୍ଡୀ, ବୃଦ୍ଧକ୍ଷେମ-ସୁତ, ଚିତ୍ରସେନ-ସୁତ, ସେନାବିନ୍ଦୁ, ସୁବର୍ଚ୍ଚା ଓ ଅନ୍ୟାନ୍ୟ ଭୂରି ଭୂରି ନାନାଦେଶୀୟ ରାଜାମାନଙ୍କୁ ପରାଜିତ କଲେ । ୭୩ । ହେ ମହାରାଜ ! ଆପଣଙ୍କ ପକ୍ଷର ଯୋଦ୍ଧାମାନେ ଜୟ ଲାଭ କରି ମହାଯୁଦ୍ଧରେ ଚତୁର୍ଦ୍ଦିଗକୁ ପଳାଉଥିବା ପାଣ୍ଡବସୈନ୍ୟ-ମାନଙ୍କୁ ହତ କଲେ । ୭୪ । ହେ ଭାରତ ! ଇନ୍ଦ୍ରଙ୍କ ଦ୍ୱାରା ହନ୍ୟମାନ ଦାନବ ସଦୃଶ ପାଞ୍ଚାଳ, ମତ୍ସ୍ୟ ଓ କେକେୟ ରାଜାମାନେ ମହାତ୍ମା ଦ୍ରୋଣଙ୍କୁ ଦେଖି କମ୍ପିତ ହେଲେ । ୭୫ ।

---

## ୨୨ ଅଧ୍ୟାୟ

ଧୃତରାଷ୍ଟ୍ର ବୋଇଲେ—ହେ ସଞ୍ଜୟ ! ସେହି ମହାଯୁଦ୍ଧରେ ପାଣ୍ଡବ ଓ ପାଞ୍ଚାଳ ସୈନ୍ୟମାନେ ଦ୍ରୋଣାଚାର୍ଯ୍ୟଙ୍କ ଦ୍ୱାରା ଭଗ୍ନ ହେବାରୁ କ୍ଷତ୍ରିୟ-ମାନଙ୍କର ଯଶସ୍କର, ସତ୍ପୁରୁଷମାନଙ୍କ ସେବିତ ଓ କାପୁରୁଷମାନଙ୍କର ଅସେବିତ ଅନ୍ୟ କେଉଁ ବ୍ୟକ୍ତି ଉତ୍କୃଷ୍ଟ ବୁଦ୍ଧି ଅବଲମ୍ବନ କରି ଯୁଦ୍ଧରେ ପ୍ରବୃତ୍ତ ହୋଇଥିଲେ ? ୨। ସୈନ୍ୟମାନେ ଭଗ୍ନ ହେଲା ପରେ ଯେଉଁ ବ୍ୟକ୍ତି ଯୁଦ୍ଧରେ ପ୍ରବୃତ୍ତ ହୁଅନ୍ତି, ସେହି କେବଳ ଶୂର ଓ ଉନ୍ନତ ବୀର ଅଟନ୍ତି । ଜୃମ୍ଭମାଣ ବ୍ୟାଘ୍ରତୁଲ୍ୟ, ମଦସ୍ରାବିକୁଞ୍ଜରସଦୃଶ ଯୁଦ୍ଧରେ ପ୍ରାଣତ୍ୟାଗ କରିବାକୁ ଉଦ୍ୟତ, କବଚଧାରୀ, ବିଚିତ୍ରଯୋଧୀ, ମହାଧନୁର୍ଦ୍ଧର, ଶତ୍ରୁକୁଳଭୟବର୍ଦ୍ଧନ, କୃତଜ୍ଞ, ଦୁର୍ଯ୍ୟୋଧନ-ହିତୈଷୀ, ସତ୍ୟବ୍ରତ, ନରବ୍ୟାଘ୍ର ଦ୍ରୋଣଙ୍କୁ ଦର୍ଶନ କରି ଯୁଦ୍ଧରେ ପ୍ରବୃତ୍ତ ହେବାଭଳି ପୁରୁଷ କି କେହି ନ ଥିଲେ ? ଏହା ବଡ଼ ଆଶ୍ଚର୍ଯ୍ୟର ବିଷୟ । ୫ । ହେ ସଞ୍ଜୟ ! ଯୁଦ୍ଧରେ ଶୂର ଦ୍ରୋଣଙ୍କୁ ତଦ୍ରୂପ ଅବସ୍ଥିତ ହେବାର ଦେଖି କେଉଁ କେଉଁ ବୀରମାନେ ତାହାଙ୍କର ଅଭିମୁଖୀ ନ ହୋଇଥିଲେ, ତାହା ଆମ୍ଭ ନିକଟରେ କୀର୍ତ୍ତନ କର ।

ସଞ୍ଜୟ କହିଲେ—ମହାରାଜ ! ଯେପରି ସିନ୍ଧୁର ପ୍ରବଳ ପ୍ରବାହ ଦ୍ୱାରା ନୌକା ବିଚଳିତ ହୁଏ, ସେହିପରି ପାଞ୍ଚାଳ, ପାଣ୍ଡବ, ମତ୍ସ୍ୟ, ଚେଦି,

ସୃଞ୍ଜୟ, କେକେୟମାନଙ୍କୁ ଦ୍ରୋଣଙ୍କର ଧନୁର୍ଯୁକ୍ତ ପ୍ରାଣସଂହାରକ ଶର-ସମୂହ ଦ୍ୱାରା ବିଚଳିତ ଓ ଛେଦିତ ହେବାର ଦେଖି କୌରବମାନେ ନିନାଦ ଓ ବିବିଧ ବାଦ୍ୟ ଦ୍ୱାରା ସମସ୍ତ ଯୁଦ୍ଧକ୍ଷେତ୍ରକୁ ପରିପୂରିତ କଲେ ଓ ବିପକ୍ଷଙ୍କର ରଥୀ, ଗଜାରୋହୀ ଓ ପଦାତିକ ସୈନ୍ୟମାନଙ୍କୁ ନିବାରିତ କଲେ । ୯ ।

ସୈନ୍ୟମଧ୍ୟସ୍ଥିତ ସ୍ୱଜନଗଣପରିବୃତ୍ତ ରାଜା ଦୁର୍ଯୋଧନ ପାଣ୍ଡବ-ମାନଙ୍କର ତାଦୃଶ ଅବସ୍ଥା ଦେଖି ପ୍ରହୃଷ୍ଟଚିତ୍ତରେ ହସି ହସି କର୍ଣ୍ଣଙ୍କୁ କହିଲେ । ୧୦ । ଦେଖ ରାଧେୟ ! ଯେପରି ବନ୍ୟ ମୃଗମାନେ ସିଂହଦ୍ୱାରା ତ୍ରାସିତ ହୁଅନ୍ତି, ସେହିପରି ପାଞ୍ଚାଳମାନେ ଦ୍ରୋଣଶର ଦ୍ୱାରା ତ୍ରାସିତ ହୋଇ ପଳାୟନ କରୁଅଛନ୍ତି ।୧୧। ସେମାନେ ଯେ ପୁନର୍ବାର ଆଉ ଯୁଦ୍ଧ କରିବେ, ଏପରି ଆମ୍ଭଙ୍କୁ ବୋଧ ହେଉନାହିଁ । ଯେପରି ପ୍ରବଳ ବାୟୁଦ୍ୱାରା ମହାବୃକ୍ଷ-ମାନେ ଭଗ୍ନ ହୁଅନ୍ତି, ସେହିପରି ଏମାନେ ଦ୍ରୋଣଙ୍କଦ୍ୱାରା ଭଗ୍ନ ହେଉଅଛନ୍ତି । ୧୨ । ମହାତ୍ମା ଦ୍ରୋଣଙ୍କର ରୁକ୍ମପକ୍ଷଶର ଦ୍ୱାରା ଏମାନେ ପୀଡ଼୍ୟମାନ ଓ ଘୂର୍ଣ୍ଣାୟମାନ ହୋଇ ଇତସ୍ତତଃ ନାନାଦିଗକୁ ଗମନ କରୁଅଛନ୍ତି । ପୁଣି ଦେଖ, କୌରବ୍ୟ ଓ ମହାତ୍ମା ଦ୍ରୋଣଙ୍କ ଦ୍ୱାରା ଅବରୁଦ୍ଧ ହୋଇ ଅଗ୍ନିବେଷ୍ଟିତ କୁଞ୍ଜର ସଦୃଶ ଅନ୍ୟାନ୍ୟ ଯୋଦ୍ଧା ମଣ୍ଡଳାକାରରେ ଭ୍ରମଣ କରୁଅଛନ୍ତି । ୧୪ । ଦ୍ରୋଣଙ୍କ ସୁଶାଣିତ ଶରସବୁ ସେମାନଙ୍କ ଶରୀରରେ ମଧୁମକ୍ଷିକା ସଦୃଶ ଆବଦ୍ଧ ହେବାରୁ ସେମାନେ ପଳାଇ ଯାଉ ଯାଉ ସେମାନଙ୍କର ଶରୀର ପରସ୍ପର ସଂଲଗ୍ନ ହେଉଅଛି । ୧୫ ।

ହେ କର୍ଣ୍ଣ ! ମହାକ୍ରୋଧୀ ଭୀମ ଅନ୍ୟାନ୍ୟ ପାଣ୍ଡବ ଓ ସୃଞ୍ଜୟ-ମାନଙ୍କରେ ବିହୀନ ହୋଇଅଛି । ପୁନଶ୍ଚ ଆମ୍ଭର ଯୋଦ୍ଧାମାନଙ୍କ ଦ୍ୱାରା ସେ ଅବରୁଦ୍ଧ ହୋଇଥିବାରୁ ଆମ୍ଭର ଅତୀବ ଆନନ୍ଦ ହେଉଅଛି । ୧୬ । ଆମ୍ଭର ସ୍ପଷ୍ଟ ବୋଧ ହେଉଅଛି ଯେ, ଦୁର୍ଗତି ଭୀମ ଆଜି ଜଗତକୁ ଦ୍ରୋଣମୟ ଦେଖି ଜୀବନ ଓ ରାଜ୍ୟରୁ ନିରାଶ ହେଉଅଛି । ୧୭ ।

କର୍ଣ୍ଣ ବୋଇଲେ — ଏହି ପୁରୁଷସିଂହ ମହାବାହୁ ଭୀମ ଜୀବିତ ଥାଉଁ ଥାଉଁ କଦାଚ ଯୁଦ୍ଧ ଛାଡ଼ିବେ ନାହିଁ । ଏହି ସିଂହନାଦକୁ ମଧ୍ୟ ସେ ସହିବେ ନାହିଁ । ୧୮ । ଆମ୍ଭ ବିବେଚନାରେ ପାଣ୍ଡବମାନେ ସମସ୍ତେ ଶୂର, ବଳବନ୍ତ,

କୃତାସ୍ତ୍ର ଓ ଯୁଦ୍ଧଦୁର୍ମଦ ଅଟନ୍ତି । ଏମାନେ ଯୁଦ୍ଧରୁ କଦାଚ ଭଗ୍ନ ହେବାର ନୁହନ୍ତି । ବିଷ, ଅଗ୍ନି, ଦ୍ୟୂତକ୍ରୀଡ଼ା ଓ ବନବାସଜନିତ କ୍ଲେଶ ସ୍ମରଣ କରି ଏମାନେ କଦାଚ ଯୁଦ୍ଧ ପରିତ୍ୟାଗ କରିବେ ନାହିଁ । ୨୦ । ଏହି ମହାବାହୁ ଅମିତତେଜା କୁନ୍ତୀପୁତ୍ର ବୃକୋଦର ଯୁଦ୍ଧରେ ପ୍ରବୃତ୍ତ ହେଲେ ଆମ୍ଭ-ମାନଙ୍କର ପ୍ରଧାନ ପ୍ରଧାନ ମହାରଥମାନଙ୍କୁ ସଂହାର କରିବେ । ୨୧ ।

ଅସି, ଧନୁକ, ଶକ୍ତି, ଅଶ୍ୱ, ନାଗ, ନର, ରଥ ଓ ଲୌହଦଣ୍ଡ ଦ୍ୱାରା ଆମ୍ଭମାନଙ୍କର ବହୁସଂଖ୍ୟକ ସୈନ୍ୟମାନଙ୍କୁ ବୃକୋଦର ବିନାଶ କରିବେ । ୨୨ । ସାତ୍ୟକି ପ୍ରଭୃତି ମହାରଥମାନେ, ପାଞ୍ଚାଳ, କେକେୟ, ମତ୍ସ୍ୟ ଓ ପାଣ୍ଡବମାନେ ଭୀମଙ୍କର ଅନୁବର୍ତ୍ତୀ ହେଉଅଛନ୍ତି ; ବିଶେଷତଃ ଅନ୍ୟାନ୍ୟ ପାଣ୍ଡବମାନେ ମଧ୍ୟ ଶୂର, ବଳବାନ୍, ମହାରଥ ଓ ପରାକ୍ରମଶାଳୀ ଅଟନ୍ତି । ପୁଣି କ୍ରୋଧପରାୟଣ ଭୀମ ଏମାନଙ୍କର ବିଶେଷରୂପେ ପ୍ରୟୋଜକ; ଏଣୁ ମେଘମାନେ ସୂର୍ଯ୍ୟଙ୍କୁ ଆବରଣ କଲା ପ୍ରାୟ କୁରୁଶ୍ରେଷ୍ଠ ପାଣ୍ଡବମାନେ ବୃକୋଦରଙ୍କୁ ପରିବେଷ୍ଟନ ପୂର୍ବକ ରକ୍ଷା କରି ଦ୍ରୋଣଙ୍କୁ ଆକ୍ରମଣ କରିବେ । ଯେପରି ମୁମୂର୍ଷୁ ପତଙ୍ଗମାନେ ମିଳିତ ହୋଇ ଅରକ୍ଷିତ ଦୀପକୁ ପୀଡ଼ନ କରନ୍ତି, ସେହିପରି ଉକ୍ତ ବୀରମାନେ ଅରକ୍ଷିତ ଯତବ୍ରତ ଦ୍ରୋଣାଚାର୍ଯ୍ୟଙ୍କୁ ପୀଡ଼ନ କରିବେ । ୨୬ । ଏମାନେ ସମସ୍ତେ କୃତାସ୍ତ୍ର ; ଅତଏବ ଏମାନେ ଦ୍ରୋଣାଚାର୍ଯ୍ୟଙ୍କୁ ନିବାରଣ କରିବାକୁ ଅବଶ୍ୟ ସମର୍ଥ ହେବେ, ଏଥିରେ ସନ୍ଦେହ ନାହିଁ ।

ଆମ୍ଭେ ବୋଧ କରୁଁ, ଦ୍ରୋଣଙ୍କ ପକ୍ଷରେ ଏହା ଅତି ଗୁରୁ ଭାର ହୋଇଅଛି । ଅତଏବ ଆଚାର୍ଯ୍ୟ ଯେଉଁ ସ୍ଥାନରେ ଅଛନ୍ତି, ସେହି ସ୍ଥାନକୁ ଆମ୍ଭମାନଙ୍କର ଗମନ କରିବା ଉଚିତ । ମହାଗଜ ବୃକମାନଙ୍କ ଦ୍ୱାରା ହତ ହେଲା ପ୍ରାୟ ଯତବ୍ରତ ଆଚାର୍ଯ୍ୟ ଯେପରି ହତ ନ ହୁଅନ୍ତି, ଏଥିରେ ଯତ୍ନବାନ୍ ହେବା । ୨୮ ।

ସଞ୍ଜୟ ବୋଇଲେ—ହେ ମହାରାଜ ! ରାଜା ଦୁର୍ଯ୍ୟୋଧନ କର୍ଣ୍ଣଙ୍କ ବଚନ ଶୁଣି ଭ୍ରାତୃମାନଙ୍କ ସହିତ ଅତିଶୀଘ୍ର ଦ୍ରୋଣଙ୍କ ରଥ ନିକଟକୁ ଧାବମାନ ହେଲେ । ନାନାବର୍ଣ୍ଣ ଅଶ୍ୱରେ ଆରୂଢ଼ ହୋଇଥିବା ପାଣ୍ଡବ-

ମାନେ ଦ୍ରୋଣଙ୍କୁ ବଧ କରିବା ନିମନ୍ତେ ରଣରେ ପ୍ରବୃତ୍ତ ହୋଇ ସେଠାରେ ମହାନ୍ ଶବ୍ଦ କଲେ । ୩୦ ।



# ୨୩ ଅଧ୍ୟାୟ

ଧୃତରାଷ୍ଟ୍ର କହିଲେ—ହେ ସଞ୍ଜୟ ! ଭୀମ ପ୍ରଭୃତି ଯେଉଁ ଯୋଦ୍ଧାମାନେ କ୍ରୁଦ୍ଧ ହୋଇ ଦ୍ରୋଣଙ୍କ ପ୍ରତି ଯୁଦ୍ଧୋଦ୍ୟତ ହୋଇଥିଲେ, ସେମାନଙ୍କ ରଥ-ଚିହ୍ନସବୁ ଆମ୍ଭ ନିକଟରେ କୀର୍ତ୍ତନ କର । ୧ ।

ସଞ୍ଜୟ କହିଲେ—ଋକ୍ଷବର୍ଣ୍ଣ ଅଶ୍ୱଯୁକ୍ତ ରଥରେ ଭୀମସେନଙ୍କୁ ଗମନ କରିବାର ଦେଖି ଶୂର ସାତ୍ୟକି ରଜତବର୍ଣ୍ଣବିଶିଷ୍ଟ-ଅଶ୍ୱଯୋଜିତ ରଥରେ ଆରୋହଣପୂର୍ବକ ଗମନ କଲେ । ୨ । ଗୃଦ୍ଧକପକ୍ଷିବର୍ଣ୍ଣ-ବିଶିଷ୍ଟ ଅଶ୍ୱଯୁକ୍ତ ରଥରେ ଦୁର୍ଦ୍ଧର୍ଷ ଯୁଧାମନ୍ୟୁ ଆରୋହଣ କରି ସ୍ୱୟଂ ଅଶ୍ୱମାନଙ୍କୁ ଚାଳନାପୂର୍ବକ ଦ୍ରୋଣଙ୍କ ରଥ ସମୀପକୁ ଧାବମାନ ହେଲେ । ୩ । ପାରାବତବର୍ଣ୍ଣବିଶିଷ୍ଟ ସୁବର୍ଣ୍ଣଭାଣ୍ଡଭୂଷିତ ମହାବେଗଶୀଳ-ଅଶ୍ୱଯୋଜିତ ରଥରେ ଆରୂଢ଼ ହୋଇ ପାଞ୍ଚାଳରାଜ-ସୁତ ଧୃଷ୍ଟଦ୍ୟୁମ୍ନ ଦ୍ରୋଣଙ୍କ ରଥ ନିକଟକୁ ଧାବମାନ ହେଲେ । ୪ ।

ପିତାଙ୍କୁ ସାହାଯ୍ୟ କରିବା ନିମନ୍ତେ ଓ ତାହାଙ୍କର ମନୋରଥ ସିଦ୍ଧ କରିବା ମାନସରେ ରକ୍ତବର୍ଣ୍ଣଅଶ୍ୱଯୁକ୍ତ ରଥରେ ଆରୂଢ଼ ହୋଇ ଧୃଷ୍ଟଦ୍ୟୁମ୍ନଙ୍କ ପୁତ୍ର ଯତବ୍ରତ କ୍ଷାତ୍ରଧର୍ମା ଯୁଦ୍ଧାଭିମୁଖରେ ଗମନ କଲେ । ୫ । ପଦ୍ମପତ୍ରବର୍ଣ୍ଣ ନିର୍ମଳଲୋଚନ ଉତ୍ତମାଳଂକୃତ-ଅଶ୍ୱଯୋଜିତ ରଥରେ ଶିଖଣ୍ଡୀଙ୍କ ପୁତ୍ର କ୍ଷେତ୍ରଦେବ ଆରୋହଣ କରି ସ୍ୱୟଂ ଅଶ୍ୱମାନଙ୍କୁ ବେଗରେ ଚାଳନାପୂର୍ବକ ଗମନ କଲେ । ୬ । ଶୁକପକ୍ଷିବର୍ଣ୍ଣସଦୃଶ କାମ୍ବୋଜଦେଶୀୟ ଅଶ୍ୱମାନେ ନକୁଳଙ୍କ ରଥକୁ ବେଗରେ ବହନ କରି ଆପଣଙ୍କ ସୈନ୍ୟମାନଙ୍କ ପ୍ରତି ଧାବମାନ ହେଲେ ।

ହେ ଭାରତ ! ମେଘବର୍ଣ୍ଣସଦୃଶ ଅଶ୍ୱଗଣ ହୃଷ୍ଟ ହୋଇ ଉତ୍ତମୌଜାଙ୍କୁ ବହନପୂର୍ବକ ଦୁର୍ଦ୍ଧର୍ଷ ଦ୍ରୋଣଙ୍କୁ ଲକ୍ଷ୍ୟ କରି ଯୁଦ୍ଧ ନିମିତ୍ତ କ୍ରୋଧରେ ଧାବମାନ ହେଲେ । ୮ । ବାୟୁତୁଲ୍ୟ ବେଗଗାମୀ, ତିତ୍ତିରସଦୃଶ ଚିତ୍ରବର୍ଣ୍ଣ ଅଶ୍ୱମାନେ ଉଦ୍ୟତାୟୁଧ ସହଦେବଙ୍କୁ ବହନ କଲେ । ୯ । ବାୟୁସଦୃଶ ଭୟାନକ ବେଗଶାଳୀ କୃଷ୍ଣବର୍ଣ୍ଣପୁଚ୍ଛବିଶିଷ୍ଟ ଗଜଦନ୍ତସଦୃଶ ଗୌରବର୍ଣ୍ଣ ଅଶ୍ୱମାନେ ନରସିଂହ ରାଜା ଯୁଧିଷ୍ଠିରଙ୍କୁ ବହନ କଲେ । ୧୦ । ସମସ୍ତ ସୈନ୍ୟ ପବନସଦୃଶ ବେଗବାନ୍ ଉତ୍ତମ ହେମବର୍ଣ୍ଣ ଅଶ୍ୱବାହନରେ ଦ୍ରୁତ ଗତିରେ ଯୁଧିଷ୍ଠିରଙ୍କର ଅନୁଗମନ କଲେ । ୧୧ ।

ସୁବର୍ଣ୍ଣଛତ୍ରଶୋଭିତ ପାଞ୍ଚାଳରାଜ ଦ୍ରୁପଦ ସେହିସବୁ ସୈନ୍ୟଙ୍କ ଦ୍ୱାରା ପରିରକ୍ଷିତ ହୋଇ ରାଜା ଯୁଧିଷ୍ଠିରଙ୍କର ପଶ୍ଚାଦ୍‌ଗମନ କଲେ । ୧୨ । ଯୁଦ୍ଧରେ ସର୍ବବିଧଶବ୍ଦସହିଷ୍ଣୁ ତାରକାକୃତି ଶୁକ୍ଳବର୍ଣ୍ଣଚନ୍ଦ୍ର-ଶୋଭିତଲଲାଟବିଶିଷ୍ଟ ହେମବର୍ଣ୍ଣାଭ ଅଶ୍ୱ ଦ୍ୱାରା ସଂଯୋଜିତ ରଥରେ ମହା ଧନୁର୍ଦ୍ଧର ଦ୍ରୁପଦ ଆରୋହଣ କରି ରାଜବୃନ୍ଦ ମଧ୍ୟରେ ଭୟଶୂନ୍ୟ-ଚିତ୍ତରେ ଗମନ କଲେ । ୧୩ । ସମସ୍ତ ମହାରଥଙ୍କ ସହିତ ରାଜା ବିରାଟ ଶୀଘ୍ର ଦ୍ରୁପଦଙ୍କ ଅନୁବର୍ତ୍ତୀ ହେଲେ । କେକୟଗଣ, ଶିଖଣ୍ଡୀ ଓ ଧୃଷ୍ଟକେତୁ, ଏମାନେ ଆପଣା ଆପଣା ସୈନ୍ୟମାନଙ୍କ ସହିତ ମତ୍ସ୍ୟରାଜ ବିରାଟଙ୍କର ଅନୁଗାମୀ ହେଲେ । ପାଟଳପୁଷ୍ପସବର୍ଣ୍ଣ (ଅର୍ଥାତ୍ ଶ୍ୱେତ ଓ ରକ୍ତବର୍ଣ୍ଣ) ଉତ୍କୃଷ୍ଟ ଅଶ୍ୱମାନ ସେହି ଅମିତ୍ରଘାତୀ ମତ୍ସ୍ୟରାଜଙ୍କୁ ବହନ କରି ଶୋଭା ପାଇଲେ । ହରିଦ୍ରାସମବର୍ଣ୍ଣ ହେମମାଳାଯୁକ୍ତ ବେଗବାନ୍ ଅଶ୍ୱମାନେ ବିରାଟରାଜଙ୍କ ପୁତ୍ର ଉତ୍ତରଙ୍କୁ ସତ୍ୱର ବହନ କଲେ ।

କେକୟରାଜପଞ୍ଚଭ୍ରାତା * ଇନ୍ଦ୍ରଗୋପକୀଟସଦୃଶବର୍ଣ୍ଣବିଶିଷ୍ଟ ଅଶ୍ୱଯୋଜିତ ରଥରେ ଗମନ କଲେ । ସେହି କେକୟମାନଙ୍କର ବର୍ଣ୍ଣ ସୁବର୍ଣ୍ଣତୁଲ୍ୟ ଦୀପ୍ତିଶାଳୀ ଓ ସେମାନଙ୍କର ରଥଧ୍ୱଜ ଲୋହିତବର୍ଣ୍ଣସମାନ, ହେମମାଳାପରିଧାୟୀ ଓ ସେମାନେ ସମସ୍ତେ ଶୂର ଓ ଯୁଦ୍ଧବିଶାରଦ । ସେମାନେ ବର୍ମିତ ହୋଇ ମେଘର ଜଳବର୍ଷଣ ତୁଲ୍ୟ ବାଣବର୍ଷଣପୂର୍ବକ

* ଇନ୍ଦ୍ରଗୋପକୀଟ—ସାଧବାଣୀ ପୋକ । (ସାଧବ ଘର ବୋହୂ )

ଗମନ କରିବାରେ ହୃଷ୍ଟ ହେଲେ । * ଆମପାବବର୍ଣ୍ଣବିଶିଷ୍ଟ ଭୂମ୍ବୁରୁଦତ୍ତ ଦିବ୍ୟ ଅଶ୍ୱସକଳ ପାଞ୍ଚାଳ୍ୟ ଶିଖଣ୍ଡୀଙ୍କୁ ବହନ କଲେ । ପାଞ୍ଚାଳମାନଙ୍କର ଦ୍ୱାଦଶ ସହସ୍ର ମହାରଥ ମଧ୍ୟରୁ ଛଅ ସହସ୍ର ମହାରଥ ଶିଖଣ୍ଡୀଙ୍କର ଅନୁଗମନ କଲେ ।

ହେ ଆର୍ଯ୍ୟ ! ସାରଙ୍ଗସଦୃଶ ଚିତ୍ରବର୍ଣ୍ଣବିଶିଷ୍ଟ ହୟଗଣ ନରସିଂହ ଶିଶୁପାଳଙ୍କର ପୁତ୍ର ଧୃଷ୍ଟକେତୁଙ୍କୁ ଲୀଳା ସହକାରେ ବହନ କଲେ । ଅତି ବଳବାନ୍ ଚେଦିରାଜ ଦୁର୍ଦ୍ଧର୍ଷ ଧୃଷ୍ଟକେତୁ କାମ୍ବୋଜ ଦେଶୀୟ ଭସ୍ମବର୍ଣ୍ଣାଭ ଅଶ୍ୱପୃଷ୍ଠରେ ଚଢ଼ି ଧାବମାନ ହେଲେ । † ପଲାଲଧୂମସବର୍ଣ୍ଣ ଶୀଘ୍ରଗାମୀ ଅଶ୍ୱମାନେ କୈକେୟପତି ସୁକୁମାର ବୃହତ୍‌କ୍ଷେତ୍ରଙ୍କୁ ବହନ କଲେ । ମଲ୍ଲିକାଲୋଚନ ( ଅର୍ଥାତ୍ ନିର୍ମଳଲୋଚନ ) ପଦ୍ମବର୍ଣ୍ଣ ବାହ୍ଲୀକ-ଦେଶୀୟ ସୁନ୍ଦର ଅଳଂକୃତ ଅଶ୍ୱମାନେ ଶିଖଣ୍ଡୀପୁତ୍ର ଶୂର କ୍ଷେତ୍ରଦେବଙ୍କୁ ବହନ କଲେ । କ୍ରୌଞ୍ଚବର୍ଣ୍ଣଯୁକ୍ତ ଉତ୍କୃଷ୍ଟ ଅଶ୍ୱଗଣ ଯୁବା ସୁକୁମାର ମହାରଥ କାଶୀରାଜପୁତ୍ରଙ୍କୁ ବହନ କଲେ ।

ହେ ରାଜନ୍ ! କୃଷ୍ଣଗ୍ରୀବ, ମନୋବେଗସମ ବେଗଶୀଳ, ଶ୍ୱେତବର୍ଣ୍ଣ, ସାରଥିର ଆଜ୍ଞାବହ ଅଶ୍ୱମାନେ ରାଜପୁତ୍ର ପ୍ରତିବିନ୍ଧ୍ୟଙ୍କୁ ବହନ କଲେ । ୨୭ । ଯୁଦ୍ଧରେ ମାସପୁଷ୍ପବର୍ଣ୍ଣବିଶିଷ୍ଟ ଅଶ୍ୱମାନେ ଭୀମଙ୍କ ପୁତ୍ର ପ୍ରିୟଦର୍ଶନ, ସୁତ-ସୋମଙ୍କୁ ବହନ କଲେ । ୨୮ । ସହସ୍ରସୋମଙ୍କ ସଦୃଶ ତେଜ଼ ଭୀମଙ୍କ ପୁତ୍ର କୁରୁମାନଙ୍କର ଉଦୟେନ୍ଦୁ ନାମକ ପୁରମଧ୍ୟସ୍ଥ ସୋମଲତା-ଦଳମଧ୍ୟରେ ଜାତ ହୋଇଥିବାରୁ ତାହାଙ୍କ ନାମ "ସୁତସୋମ" ହୋଇ-ଥିଲା । ୨୯ ।

ବଳବୀର୍ଯ୍ୟପ୍ରଭାନ୍ୱିତ ଶାଳପୁଷ୍ପବର୍ଣ୍ଣବିଶିଷ୍ଟ ଘୋଟକମାନେ ପ୍ରଶଂସ୍ୟ ନକୁଳପୁତ୍ର ଶତାନୀକଙ୍କୁ ବହନ କଲେ । ୩୧ । ଶାସ୍ତ୍ରବିଶାରଦ ଯୁଦ୍ଧରେ ପାର୍ଥସମ ଦ୍ରୌପଦୀପୁତ୍ର ଶ୍ରୁତକୀର୍ତ୍ତିଙ୍କୁ ଋଷପତ୍ରବର୍ଣ୍ଣବିଶିଷ୍ଟ

---

* ଆମ ପାତ୍ର—କଞ୍ଚାହାଣ୍ଡି ।

† ପଲାଲ ଧୂମ ବର୍ଣ୍ଣ—କୁଟା ବା ପୁଆଳ ଜାଳିଲେ ଉହିଁରୁ ଯେଉଁ ଧୂଆଁ ଉଠେ ସେହି ପରି ବର୍ଣ୍ଣ ।

ହସ୍ତିମାନେ ବହନ କଲେ । ୩୨ । ଯୁଦ୍ଧରେ କୃଷ୍ଣ ଓ ଅର୍ଜୁନଙ୍କ ଅପେକ୍ଷା ଅର୍ଦ୍ଧଗୁଣ ଅଧିକ କୁମାର ଅଭିମନ୍ୟୁଙ୍କୁ କପିଳବର୍ଣ୍ଣ ଅଶ୍ୱମାନେ ବହନ କଲେ । ୩୩ ।

ଧୃତରାଷ୍ଟ୍ରଙ୍କ ପୁତ୍ରଗଣମଧ୍ୟରୁ ଯୁଯୁତ୍ସୁ ନାମକ ଯେଉଁ ପୁତ୍ର ପାଣ୍ଡବମାନଙ୍କର ଆଶ୍ରୟ ଗ୍ରହଣ କରିଥିଲେ, ତାହାଙ୍କୁ ବୃହତ୍କାୟ ଅଶ୍ୱମାନେ ବହନ କଲେ । ୩୪ । ପଲାଲକାଣ୍ଡବର୍ଣ୍ଣବିଶିଷ୍ଟ ସୁନ୍ଦର ଅଳଂକୃତ ଅଶ୍ୱମାନେ ହୃଷ୍ଟ ହୋଇ ସେହି ତୁମୁଳ ଯୁଦ୍ଧରେ ବେଗଶୀଳ ବାର୍ଦ୍ଧକ୍ଷେମିଙ୍କୁ ବହନ କଲେ । ୩୫ । ସୁବର୍ଣ୍ଣ-ପତ୍ରାଚ୍ଛାଦିତ-ବକ୍ଷସ୍ଥଳ-ବିଶିଷ୍ଟ କୃଷ୍ଣବର୍ଣ୍ଣ ପାଦଯୁକ୍ତ ଅଶ୍ୱମାନେ ସାରଥି ଦ୍ୱାରା ସୁସଜ୍ଜିତ ହୋଇ କୁମାର ସୌଚିତ୍ତିଙ୍କୁ ବହନ କଲେ । ୩୬ । ସୁବର୍ଣ୍ଣମଣ୍ଡିତପୃଷ୍ଠଯୁକ୍ତ ହେମମାଳାଧାରୀ କୌଶେୟବର୍ଣ୍ଣବିଶିଷ୍ଟ ଧୈର୍ଯ୍ୟଶୀଳ ଅଶ୍ୱମାନେ ଶ୍ରେଣୀମାନ୍ ନାମକ ବୀରଙ୍କୁ ବହନ କଲେ । ୩୭ । ସୁବର୍ଣ୍ଣ-ମାଳାଧାରୀ, ବୀର୍ଯ୍ୟଶାଳୀ, ହେମ-ମଣ୍ଡିତ-ପୃଷ୍ଠ, ଉତ୍କୃଷ୍ଟ-ଭୂଷଣ-ବିଶିଷ୍ଟ ଅଶ୍ୱମାନେ ନରଶ୍ରେଷ୍ଠ ପ୍ରଶଂସ୍ୟ କାଶୀରାଜଙ୍କୁ ବହନ କଲେ । ୩୮ ।

ଅସ୍ତ୍ରବିଦ୍ୟା, ଧନୁର୍ବେଦ ଓ ବ୍ରାହ୍ମବେଦରେ ପାରଦର୍ଶୀ ସତ୍ୟଧୃତିଙ୍କି ଅରୁଣ-ବର୍ଣ୍ଣ ଅଶ୍ୱମାନେ ବହନ କଲେ । ୩୯ । ଯେଉଁ ବୀର ଦ୍ରୋଣଙ୍କୁ ବଧ କରିବାର ଭାର ଆପଣା ଉପରେ ଗ୍ରହଣ କରିଥିଲେ, ସେହି ପାଞ୍ଚାଳ ସେନାପତି ଧୃଷ୍ଟଦ୍ୟୁମ୍ନଙ୍କୁ ପାରାବତବର୍ଣ୍ଣବିଶିଷ୍ଟ ଅଶ୍ୱମାନେ ବହନ କଲେ । ୪୦ । ସତ୍ୟଧୃତି, ଯୁଦ୍ଧ-ଦୁର୍ମଦ, ସୌଚିତ୍ତି, ଶ୍ରେଣୀମାନ୍, ବସୁଦାନ ଓ କାଶୀରାଜପୁତ୍ର ବିଭୁ—ଏମାନେ ଧୃଷ୍ଟଦ୍ୟୁମ୍ନଙ୍କ ପଶ୍ଚାଦ୍‌ଗମନ କଲେ ।୪୧।

ପ୍ରଭଦ୍ରକ ଓ କାମ୍ବୋଜ ଦେଶୀୟ ଛଅସହସ୍ର ଯୋଦ୍ଧା ବେଗଶୀଳ, ସୁବର୍ଣ୍ଣମାଲ୍ୟଧାରୀ, ନାନାବର୍ଣ୍ଣବିଶିଷ୍ଟ ପ୍ରଧାନ ପ୍ରଧାନ ଅଶ୍ୱଯୁକ୍ତ ରଥରେ ଆରୋହଣ କରି ଶରାସନବିସ୍ତାରପୂର୍ବକ ଉଦ୍ୟତାସ୍ତ୍ର ହୋଇ ଗମନ କଲେ ।

ସେହି ଯୋଦ୍ଧାମାନଙ୍କର ରଥ ସ୍ୱର୍ଣ୍ଣବିଚିତ୍ରିତ ଧ୍ୱଜରେ ମଣ୍ଡିତ ହୋଇଥିଲା ; ସେମାନେ ଶତ୍ରୁମାନଙ୍କୁ ଶରଦ୍ୱାରା ପ୍ରକମ୍ପିତ କଲେ ଓ

ସମତୁଲ୍ୟ ହୋଇ ସ୍ୱପକ୍ଷ ସୈନ୍ୟମାନଙ୍କର ହର୍ଷ ଉତ୍ପାଦନପୂର୍ବକ ଧୃଷ୍ଟଦ୍ୟୁମ୍ନଙ୍କର ପଶ୍ଚାଦ୍‌ଗମନ କଲେ । ୪୪ । ପିଙ୍ଗଳଗୌରବର୍ଣ୍ଣବିଶିଷ୍ଟ ସୁବର୍ଣ୍ଣମାଲ୍ୟ-ଭୂଷିତ ପ୍ରଫୁଲ୍ଲଚିତ୍ତ ଅଶ୍ୱମାନେ ଚେକିତାନଙ୍କୁ ବହନ କଲେ । ୪୫ ।

ସବ୍ୟସାଚୀଙ୍କ ମାତୁଳ କୁନ୍ତିଭୋଜରାଜ ପୁରୁଜିତ୍ ଇନ୍ଦ୍ରଧନୁବର୍ଣ୍ଣଯୁକ୍ତ ଉତ୍ତମ-ଅଶ୍ୱଯୁକ୍ତ ରଥରେ ଆରୋହଣ କରି ଯୁଦ୍ଧକୁ ଗମନ କଲେ ।୪୬। ନକ୍ଷତ୍ରଖଚିତ ଆକାଶସଦୃଶ ନୀଳବର୍ଣ୍ଣ ଅଶ୍ୱମାନେ ରାଜାଙ୍କୁ ରୋଚମାନ-ଯୁଦ୍ଧକ୍ଷେତ୍ରକୁ ବହନ କଲେ । ୪୭ । କୃଷ୍ଣବର୍ଣ୍ଣପଦଯୁକ୍ତ ସ୍ୱର୍ଣ୍ଣଜାଲପରିଚ୍ଛଦ-ସମନ୍ୱିତ ଚିତ୍ରବର୍ଣ୍ଣ ଉତ୍କୃଷ୍ଟ ଅଶ୍ୱମାନେ ଜରାସନ୍ଧପୁତ୍ର ସହଦେବଙ୍କୁ ବହନ କଲେ । ୪୮ ।

ଶ୍ୱେନପକ୍ଷିତୁଲ୍ୟ ବେଗଶାଳୀ ପଦ୍ମମୃଣାଳ-ବର୍ଣ୍ଣବିଶିଷ୍ଟ ଅଶ୍ୱମାନେ ସୁଦାମାଙ୍କୁ ବହନ କଲେ ।୪୯। ପାଣ୍ଡୁରବର୍ଣ୍ଣଲୋମଯୁକ୍ତ ଶଶଲୋହିତବର୍ଣ୍ଣ-ବିଶିଷ୍ଟ ଅଶ୍ୱମାନେ ପାଞ୍ଚାଳଦେଶୀୟ ଗୋପତିପୁତ୍ର ସିଂହସେନଙ୍କୁ ବହନ କଲେ । ୫୦ । ସର୍ଷପପୁଷ୍ପବର୍ଣ୍ଣବିଶିଷ୍ଟ ଅଶ୍ୱମାନେ ପାଞ୍ଚାଳବିଖ୍ୟାତ ନରବ୍ୟାଘ୍ର ଜନମେଜୟଙ୍କୁ ବହନ କଲେ । ୫୧ । ମାଷବର୍ଣ୍ଣବିଶିଷ୍ଟ ବେଗ-ଗାମୀ ହେମମାଳାଧାରୀ ବୃହତ୍‌କାୟ ଅଶ୍ୱମାନେ ପାଞ୍ଚାଲ୍ୟଙ୍କୁ ବହନ କଲେ ; ସେହି ଅଶ୍ୱମାନଙ୍କର ମୁଖ ଚନ୍ଦ୍ରସଦୃଶ ଓ ପୃଷ୍ଠ ଦଧିସଦୃଶ ଶୁକ୍ଳବର୍ଣ୍ଣ ଥିଲା । ୫୨ ।

ଭଦ୍ରକଦେଶୀୟ କୃଷ୍ଣଗୌରବର୍ଣ୍ଣଯୁକ୍ତ ଶୌର୍ଯ୍ୟଶାଳୀ ଅଶ୍ୱମାନେ ଦଣ୍ଡଧାରଙ୍କୁ ବହନ କଲେ ; ସେହି ଅଶ୍ୱମାନଙ୍କ ଦେହ ପଦ୍ମକେଶରତୁଲ୍ୟ ଆଭାଯୁକ୍ତ ହୋଇଥିଲା । ୫୩ । ଈଷତ୍‌ଅରୁଣବର୍ଣ୍ଣଯୁକ୍ତ ଅଶ୍ୱମାନେ ସଂଯତ ହେବାରୁ ବଲ୍‌ଗିତଗତିପୂର୍ବକ ବ୍ୟାଘ୍ରଦତ୍ତଙ୍କୁ ବହନ କଲେ ; ସେହି ଅଶ୍ୱ-ମାନଙ୍କର ପୃଷ୍ଠ ମୂଷିକବର୍ଣ୍ଣତୁଲ୍ୟ ମଳିନ-ଶ୍ୱେତ ହୋଇଥିଲା । ୫୪ । ବିଚିତ୍ର-ମାଲ୍ୟଭୂଷିତ ଆଶ୍ଚର୍ଯ୍ୟ କୃଷ୍ଣବର୍ଣ୍ଣମସ୍ତକଯୁକ୍ତ ଅଶ୍ୱମାନେ ପାଞ୍ଚାଲ୍ୟ ନର-ବ୍ୟାଘ୍ର ସୁଧନ୍ୱାଙ୍କୁ ବହନ କଲେ । ୫୫ ।

ବଜ୍ରତୁଲ୍ୟ ଦୃଢ଼କାୟ ଇନ୍ଦ୍ରଗୋପକୀଟବର୍ଣ୍ଣବିଶିଷ୍ଟ ଦର୍ପଣବତ୍ ଚିକ୍‌କଣ ଅଦ୍ଭୁତ-ରୂପୀ ଅଶ୍ୱମାନେ ଚିତ୍ରାୟୁଧଙ୍କୁ ବହନ କଲେ । ୫୬ ।

ହେମମାଳାଧାରୀ ଅଶ୍ୱମାନେ କୋଶଳାଧିପତିଙ୍କ ପୁତ୍ର ସୁକ୍ଷେତ୍ରଙ୍କୁ ବହନ କଲେ ; ସେହି ଅଶ୍ୱମାନଙ୍କର ଉଦର ଚକ୍ରବାକସଦୃଶ ଈଷତ୍ ଶ୍ୱେତ ହୋଇଥିଲା । ୫୭ । ବିଚିତ୍ରବର୍ଣ୍ଣ, ବୃହଦାକାର, ଦାନ୍ତ, ହେମମାଳାଧାରୀ, ଉଚ୍ଚ, ଉତ୍କୃଷ୍ଟ ଅଶ୍ୱମାନେ ଯୁଦ୍ଧରେ କ୍ଷେମପୁତ୍ର ସତ୍ୟଧୃତିଙ୍କୁ ବହନ କଲେ ।୫୮।

ଶୁକ୍ଳ ଧ୍ୱଜ, ଶୁକ୍ଳ କବଚ, ଶୁକ୍ଳ ଅଶ୍ୱ, ଶୁକ୍ଳ ଧନୁକ—ଏମାନଙ୍କରେ ସମନ୍ୱିତ ହୋଇ ଶୁକ୍ଳନାମକ ରାଜା ଯୁଦ୍ଧକୁ ଧାବମାନ ହେଲେ । ୫୯ । ଶଶାଙ୍କସଦୃଶ ସମୁଦ୍ର ଅଶ୍ୱମାନେ ସମୁଦ୍ରସେନଙ୍କ ପୁତ୍ର ରୁଦ୍ରତେଜା ଚନ୍ଦ୍ର-ସେନଙ୍କୁ ବହନ କଲେ । ୬୦ । ନୀଳୋତ୍ପଳବର୍ଣ୍ଣବିଶିଷ୍ଟ ସୁବର୍ଣ୍ଣଭୂଷିତ ଚିତ୍ରମାଲ୍ୟଧାରୀ ଅଶ୍ୱମାନେ ଯୁଦ୍ଧରେ ଚିତ୍ରରଥ ଶୈବ୍ୟଙ୍କୁ ବହନ କଲେ ।୬୧।

ଶ୍ୟାମବର୍ଣ୍ଣବିଶିଷ୍ଟ ଅଶ୍ୱଶ୍ରେଷ୍ଠମାନେ ଯୁଦ୍ଧଦୁର୍ମଦ ଅଶ୍ୱସେନଙ୍କୁ ବହନ କଲେ ; ସେହି ଅଶ୍ୱମାନଙ୍କର ଲୋମରାଜି ଶ୍ୱେତଲୋହିତବର୍ଣ୍ଣ ହୋଇଥିଲା । ୬୨ । ମନୁଷ୍ୟମାନଙ୍କ ମଧ୍ୟରେ ଯେ ପ୍ରଧାନ ଶୂର ବୋଲି ବିଖ୍ୟାତ, ସେହି ପଟଚ୍ଚରହନ୍ତା ସମୁଦ୍ରାଧିପଙ୍କୁ ଶୁକ୍ଳବର୍ଣ୍ଣ ଅଶ୍ୱମାନେ ବହନ କଲେ । ୬୩ । ପଲାଶପୁଷ୍ପବର୍ଣ୍ଣବିଶିଷ୍ଟ ଅଶ୍ୱମାନେ ବିଚିତ୍ରାସ୍ତ୍ରଧାରୀ ଚିତ୍ରମାଲ୍ୟ-ଭୂଷିତ ଚିତ୍ରବର୍ମ-ସମ୍ପନ୍ନ ଚିତ୍ରଧ୍ୱଜ ଚିତ୍ରାୟୁଧଙ୍କୁ ବହନ କଲେ । ୬୪ । ନୀଳବର୍ଣ୍ଣ ଧ୍ୱଜ, ନୀଳବର୍ଣ୍ଣ କବଚ, ନୀଳବର୍ଣ୍ଣ ଧନୁ ଓ ନୀଳବର୍ଣ୍ଣ ଅଶ୍ୱମାନଙ୍କରେ ଶୋଭିତ ହୋଇ ନୀଳରାଜା ଯୁଦ୍ଧକୁ ଧାବମାନ ହେଲେ । ୬୫ । ନାନାରତ୍ନ-ଚିହ୍ନିତ ବର୍ମ, ଧ୍ୱଜ, କାର୍ମୁକ, ଅଶ୍ୱ ଓ ପତାକାରେ ସମନ୍ୱିତ ହୋଇ ଚିତ୍ରନାମକ ରାଜା ଯୁଦ୍ଧକୁ ଗମନ କଲେ । ୬୬ ।

ପୁଷ୍କରବର୍ଣ୍ଣ ଶ୍ରେଷ୍ଠ ହୟମାନେ ରୋଚମାନଙ୍କ ପୁତ୍ର ହେମବର୍ଣ୍ଣଙ୍କୁ ବହନ କଲେ । ୬୭ । ଯୁଦ୍ଧପାରଗ, ଉତ୍କୃଷ୍ଟ, କାର୍ଯ୍ୟକ୍ଷମ, ଶ୍ୱେତାଣ୍ଡ-ବିଶିଷ୍ଟ, କୁକ୍କୁଟାଣ୍ଡବର୍ଣ୍ଣ ଅଶ୍ୱମାନେ ଦଣ୍ଡକେତୁଙ୍କୁ ବହନ କଲେ ; ସେହି ଅଶ୍ୱମାନଙ୍କର ପୃଷ୍ଠ-ଦଣ୍ଡ ଶରଦଣ୍ଡତୁଲ୍ୟ ସିତଗୌରବର୍ଣ୍ଣ ହୋଇଥିଲା ।୬୮।

ଯାହାଙ୍କ ପିତା କୃଷ୍ଣଙ୍କ ଦ୍ୱାରା ନିହତ ହୋଇଥିଲେ ଓ ଯାହାଙ୍କ ଦୁର୍ଗଦ୍ୱାର ଭଗ୍ନ ହେବାରୁ ଆତ୍ମୀୟ ବନ୍ଧୁଗଣ ପଳାୟନ କରିଥିଲେ ; ଯେ

ସେହି ହେତୁରୁ ଭୀଷ୍ମ, ଦ୍ରୋଣ, ପରଶୁରାମ ଓ କୃପଙ୍କଠାରୁ ଅସ୍ତ୍ର ଲାଭ କରି ଅସ୍ତ୍ରବିଦ୍ୟାରେ ରୁକ୍ମୀ, କର୍ଣ୍ଣ, ଅର୍ଜୁନ ଓ କୃଷ୍ଣଙ୍କ ତୁଲ୍ୟ ହୋଇଥିଲେ ; ଯେ ଦ୍ୱାରକାବିନାଶ ଓ ସମସ୍ତ ପୃଥିବୀ ଜୟ କରିବାକୁ ଇଚ୍ଛା କରନ୍ତେ ତାହାଙ୍କର ପ୍ରାଜ୍ଞ ହିତାର୍ଥୀ ବନ୍ଧୁମାନଙ୍କ ଦ୍ୱାରା ନିବାରିତ ହୋଇ କୃଷ୍ଣଙ୍କ ସହିତ ଶତ୍ରୁତାପରିତ୍ୟାଗପୂର୍ବକ ସ୍ୱରାଜ୍ୟ ଶାସନ କରୁଅଛନ୍ତି, ସେହି ଐଶ୍ୱର୍ଯ୍ୟ-ବୀର୍ଯ୍ୟଶାଳୀ ପାଣ୍ଡ୍ୟରାଜ ସାଗରଚିହ୍ନିତଧ୍ୱଜସମନ୍ୱିତ ରଥରେ ଆରୋହଣ କରି ଦିବ୍ୟ ଶରାସନ ବିସ୍ତାରଣପୂର୍ବକ ଦ୍ରୋଣଙ୍କ ଅଭିମୁଖକୁ ଧାବମାନ ହେଲେ । ତାହାଙ୍କ ରଥରେ ବୈଦୁର୍ଯ୍ୟମଣିଜାଲଚ୍ଛାଦିତ ଚନ୍ଦ୍ର-ରଶ୍ମି ପ୍ରଭାବିଶିଷ୍ଟ ଅଶ୍ୱମାନେ ଯୋଜିତ ହୋଇଥିଲେ ।୭୩। ପାଣ୍ଡ୍ୟରାଜଙ୍କର ଅନୁଗାମୀ ଅୟୁତ ପ୍ରଧାନ ରଥମାନଙ୍କୁ ବାସକପୁଷ୍ପବର୍ଣ୍ଣବିଶିଷ୍ଟ ଅଶ୍ୱମାନେ ବହନ କଲେ ।୭୪।

ନାନାବର୍ଣ୍ଣଯୁକ୍ତ ଓ ନାନା ଆକୃତି ଓ ମୁଖବିଶିଷ୍ଟ ଅଶ୍ୱମାନେ ରଥଚକ୍ରଚିହ୍ନିତ ଧ୍ୱଜସମ୍ପନ୍ନ ଘଟୋତ୍କଚଙ୍କୁ ବହନ କଲେ । ୭୫ । ଯେଉଁ ବୀର ଏକାକୀ ଭରତବଂଶୀୟ ସମସ୍ତଙ୍କର ମତ ଲଙ୍ଘନ କରିଅଛନ୍ତି ଓ ସମୁଦାୟ ଅଭୀଷ୍ଟ ପରିତ୍ୟାଗ କରି ଭକ୍ତିଭାବରେ ଯୁଧିଷ୍ଠିରଙ୍କର ଆଶ୍ରୟ ଗ୍ରହଣ କରିଅଛନ୍ତି ; ସେହି ଉଚ୍ଚଧ୍ୱଜସମନ୍ୱିତ ସୁବର୍ଣ୍ଣମୟରଥାରୋହୀ ଲୋହିତଲୋଚନ ମହାବାହୁ ବୃହଦନ୍ତଙ୍କୁ ମହାକାୟ ମହାସତ୍ତ୍ୱ ଅଶ୍ୱମାନେ ବହନ କଲେ । ୭୬ ।

ସେନାମଧ୍ୟସ୍ଥିତ ଧର୍ମଜ୍ଞ ରାଜ-ଶ୍ରେଷ୍ଠ ଯୁଧିଷ୍ଠିରଙ୍କର ପୃଷ୍ଠରକ୍ଷକ-ମାନଙ୍କୁ ସୁବର୍ଣ୍ଣ-ବର୍ଣ୍ଣ ଉତ୍କୃଷ୍ଟ ଅଶ୍ୱମାନେ ବହନ କଲେ । ୭୮ । ଦେବ-ରୂପୀ ବହୁଳ ପ୍ରଭଦ୍ରକମାନେ ବିବିଧବର୍ଣ୍ଣବିଶିଷ୍ଟ ଉତ୍କୃଷ୍ଟ ଅଶ୍ୱବାହନରେ ଯୁଦ୍ଧକୁ ଧାବମାନ ହେଲେ ।୭୯। ହେ ରାଜେନ୍ଦ୍ର ! ଇନ୍ଦ୍ରଙ୍କ ସହିତ ଦେବତା-ମାନେ ଯେପରି ହୃଷ୍ଟ ହୁଅନ୍ତି, ଭୀମସେନଙ୍କ ସହିତ ସେହି କାଞ୍ଚନଧ୍ୱଜ ପ୍ରଭଦ୍ରକ ବୀରମାନେ ସେହିପରି ହୃଷ୍ଟ ହେଲେ । ୮୦ ।

ଧୃଷ୍ଟଦ୍ୟୁମ୍ନ ସେହିସବୁ ସୈନ୍ୟମାନଙ୍କୁ ଅତିକ୍ରମ କରି ଶୋଭିତ ହେଲେ ; ମାତ୍ର ଦ୍ରୋଣାଚାର୍ଯ୍ୟ ସମୁଦାୟ ସୈନ୍ୟଙ୍କୁ ଅତିକ୍ରମ କରି ଦୀପ୍ତି

ପାଇଲେ । ୮୧ । ହେ ମହାରାଜ ! ଦ୍ରୋଣାଚାର୍ଯ୍ୟଙ୍କର କୃଷ୍ଣାଜିନବିଶିଷ୍ଟ ଧ୍ୱଜ ଓ ସ୍ୱର୍ଣ୍ଣମୟ ଶୁଭ୍ର କମଣ୍ଡଳୁ ଅତୀବ ଶୋଭା ପାଇଲା ।୮୨। ଭୀମସେନଙ୍କର ରଜତମୟ ମହାସିଂହଚିହ୍ନିତ ଧ୍ୱଜ ଅତୀବ ଶୋଭା ପ୍ରକାଶ କରୁଥିଲା ଓ ସେହି ସିଂହର ଲୋଚନଦ୍ୱୟ ବୈଦୁର୍ଯ୍ୟମଣିରେ ନିର୍ମିତ ହୋଇଥିଲା । ୮୩ ।

କୁରୁଶ୍ରେଷ୍ଠ ମହାତେଜା ଯୁଧିଷ୍ଠିରଙ୍କର ଗ୍ରହଗଣାନ୍ୱିତ ସୁବର୍ଣ୍ଣମୟ ଚନ୍ଦ୍ରଚିହ୍ନିତ ଧ୍ୱଜ ଦୃଷ୍ଟିଗୋଚର ହେଉଥିଲା । ୮୪ । ତାହାଙ୍କର ସେହି ଧ୍ୱଜରେ ନନ୍ଦ ଓ ଉପନନ୍ଦ ନାମକ ଦୁଇଗୋଟି ବିପୁଳ ଦିବ୍ୟମୃଦଙ୍ଗ ଥିଲା । ସେହି ମୃଦଙ୍ଗଦ୍ୱୟ ଯନ୍ତ୍ରଦ୍ୱାରା ଆହତ ହୋଇ ମଧୁର ଓ ହର୍ଷବର୍ଦ୍ଧକ ଶବ୍ଦ କରୁଥିଲା । ୮୫ । ନକୁଳଙ୍କ ରଥଧ୍ୱଜ ଭୀଷଣ ଓ ଅତି ଉଗ୍ର ଏକଗୋଟି ସୁବର୍ଣ୍ଣପୃଷ୍ଠଯୁକ୍ତ ଶରଭଦ୍ୱାରା ଅଙ୍କିତ ହୋଇଥିଲା । ୮୬ । ସହଦେବଙ୍କ ଧ୍ୱଜରେ ଘଣ୍ଟା ଓ ପତାକାବିଶିଷ୍ଟ ଦୁର୍ଦ୍ଧର୍ଷ ଶତ୍ରୁଶୋକବର୍ଦ୍ଧକ ରଜତ-ନିର୍ମିତ ଗୋଟିଏ ଶ୍ରୀମାନ୍ ହଂସ ଶୋଭା ପାଉଥିଲା । ୮୭ ।

ଦ୍ରୌପଦୀଙ୍କ ପଞ୍ଚପୁତ୍ରଙ୍କର ପଞ୍ଚରଥର ଧ୍ୱଜରେ ଧର୍ମ, ବାୟୁ, ଇନ୍ଦ୍ର ଓ ଅଶ୍ୱିନୀକୁମାରଦ୍ୱୟଙ୍କ ପ୍ରତିମାମାନ ବିରାଜିତ ଥିଲେ । ୮୮ । କୁମାର ଅଭିମନ୍ୟୁଙ୍କ ରଥରେ ଉଜ୍ଜ୍ୱଳ ତପ୍ତକାଞ୍ଚନସଦୃଶ ହିରଣ୍ମୟ ଶାର୍ଙ୍ଗପକ୍ଷି-ଯୁକ୍ତ ଧ୍ୱଜ ଦୃଷ୍ଟ ହେଉଥିଲା । ୮୯ । ହେ ରାଜେନ୍ଦ୍ର ! ଘଟୋତ୍କଚ ରଥରେ ଗୃଧ୍ରଧ୍ୱଜ ଶୋଭା ପାଉଥିଲା ; ପୂର୍ବକାଳରେ ରାବଣର ଅଶ୍ୱସଦୃଶ ତାହାର ଅଶ୍ୱଗଣ କାମଗାମୀ ଥିଲେ । ୯୦ ।

ହେ ମହାରାଜ ! ଧର୍ମରାଜ ଯୁଧିଷ୍ଠିର ଦିବ୍ୟ ମହେନ୍ଦ୍ର ଧନୁକୁ ଓ ଭୀମସେନ ବାୟବ୍ୟ ଧନୁକୁ ଗ୍ରହଣ କରିଥିଲେ । ୯୧ । ଭଗବାନ୍ ବ୍ରହ୍ମା ତ୍ରୈଲୋକ୍ୟ ରକ୍ଷା ନିମନ୍ତେ ଯେଉଁ ଶରାସନ ନିର୍ମାଣ କରିଥିଲେ, ମହାବୀର ଅର୍ଜୁନ ସେହି ଦିବ୍ୟ ଅଜର ଗାଣ୍ଡୀବ ଧନୁକୁ ଗ୍ରହଣ କରି ଯୁଦ୍ଧକୁ ଗମନ କଲେ । ୯୨ । ମହାବୀର ନକୁଳ ବୈଷ୍ଣବ ଧନୁ, ସହଦେବ ଆଶ୍ୱିନ ଧନୁ, ଘଟୋତ୍କଚ ଅତିଭୀଷଣ ପୌଲସ୍ତ୍ୟ ଧନୁ ଓ ଦ୍ରୌପଦୀଙ୍କ ପଞ୍ଚପୁତ୍ର ରୌଦ୍ର, ଆଗ୍ନେୟ, କୌବେର, ଯାମ୍ୟ ଓ ଗିରିଶ ଶରାସନମାନଙ୍କୁ ଗ୍ରହଣ କରି ଗମନ କଲେ । ୯୪ । ରୋହିଣୀନନ୍ଦନ ବଳଭଦ୍ର ଯେଉଁ ରୌଦ୍ର ଧନୁକୁ

ପ୍ରାପ୍ତ ହୋଇଥିଲେ ଓ ପରେ ତୁଷ୍ଟ ହୋଇ ଯାହା ସେ ଅଭିମନ୍ୟୁଙ୍କୁ ଦେଇଥିଲେ, ସେହି ଧନୁକୁ ଘେନି ଅଭିମନ୍ୟୁ ଯୁଦ୍ଧକୁ ଗମନ କଲେ ।୯୫।

ହେ ମହାରାଜ ! ଯେଉଁସବୁ ଧ୍ୱଜବୃତ୍ତାନ୍ତ କୀର୍ତ୍ତନ କଲି, ତାହା ଛଡ଼ା ମହାବୀରମାନଙ୍କର ଅନ୍ୟାନ୍ୟ ଅସଂଖ୍ୟ ହେମମଣ୍ଡିତ ଶତ୍ରୁଶୋକବର୍ଦ୍ଧକ ଧ୍ୱଜମାନ ଦୃଷ୍ଟ ହେଉଥିଲା । ୯୬ । ହେ ମହାରାଜ ! ସେହି ସମୟରେ ଦ୍ରୋଣାଚାର୍ଯ୍ୟଙ୍କର କାପୁରୁଷଭୀରହିତ ସୈନ୍ୟମାନେ ଧ୍ୱଜସଂକୁଳ ହୋଇ ଚିତ୍ରାର୍ପିତ ପରି ବୋଧ ହେଉଥିଲେ । ୯୭ । ସ୍ୱୟମ୍ବରରେ ବୀରମାନଙ୍କର ଯେପରି କେବଳ ନାମ ଓ ଗୋତ୍ର ଶ୍ରୁତିଗୋଚର ହୁଏ, ଯୁଦ୍ଧକ୍ଷେତ୍ରରେ ସେହିପରି ଦ୍ରୋଣଙ୍କ ପ୍ରତି ଧାବମାନ ବୀରମାନଙ୍କର କେବଳ ନାମ ଓ ଗୋତ୍ର ଶ୍ରୁତିଗୋଚର ହେଉଥିଲା । ୯୮ ।

## ୨୪ ଅଧ୍ୟାୟ

ଧୃତରାଷ୍ଟ୍ର କହିଲେ—ହେ ସଞ୍ଜୟ, ବୃକୋଦର ପ୍ରଭୃତି ଯେଉଁସବୁ କ୍ଷତ୍ରିୟ ଯୁଦ୍ଧକୁ ସମାଗତ ହୋଇଥିଲେ, ସେମାନେ ଦେବତାମାନଙ୍କୁ ମଧ୍ୟ ବ୍ୟଥିତ କରିପାରନ୍ତି । ୧ । ଭାଗ୍ୟବଶରୁ ପୁରୁଷ କୌଣସି କାର୍ଯ୍ୟରେ ନିଯୁକ୍ତ ହୋଇଥାଏ ଓ ଭାଗ୍ୟବଶରୁ ନାନାବିଧ ପୁରୁଷାର୍ଥ ପ୍ରକାଶିତ ହୁଏ । ୨ ।

ଯେଉଁ ଯୁଧିଷ୍ଠିର ଅରଣ୍ୟରେ ଦୀର୍ଘକାଳ ପର୍ଯ୍ୟନ୍ତ ଜଟା ଓ ଅଜିନଧାରୀ ହୋଇ ମନୁଷ୍ୟମାନଙ୍କ ଅଜ୍ଞାତରେ କାଳାତିପାତ କରିଥିଲେ, ସେହି ଯୁଧିଷ୍ଠିର ବର୍ତ୍ତମାନ ଦୈବଯୋଗରୁ ଯୁଦ୍ଧ ନିମନ୍ତେ ମହତୀ ସେନା ସଂଗ୍ରହ କରିଅଛନ୍ତି ; ଅତଏବ ଆମ୍ଭ ପୁତ୍ର ପକ୍ଷରେ ଏହା ଅପେକ୍ଷା ଆଉ ଅଧିକ କି ଅଶୁଭ ହୋଇପାରେ ? । ୪ । ମନୁଷ୍ୟ ନିଶ୍ଚୟ ଭାଗ୍ୟଯୁକ୍ତ ହୋଇ ଜନ୍ମଗ୍ରହଣ କରେ, କାରଣ ସେ ଯାହା ସ୍ୱୟଂ ଇଚ୍ଛା ନ କରେ, ଭାଗ୍ୟ ତାହା କରାଇଦିଏ । ୫ । ଦ୍ୟୂତକ୍ରୀଡ଼ାଜନିତ ବନବାସାଦି ଦ୍ୱାରା ଯୁଧିଷ୍ଠିର କ୍ଳେଶିତ ହୋଇ ସୁଦ୍ଧା ଭାଗ୍ୟବଶରୁ ପୁନର୍ବାର ସହାୟପ୍ରାପ୍ତ ହେଲେ । ୬ ।

ମୂଢ଼ ଦୁର୍ଯ୍ୟୋଧନ ଆମ୍ଭ ନିକଟରେ ଏହିପରି କହିଥିଲେ ଯେ, ହେ ତାତ ! ବର୍ତ୍ତମାନ କେକେୟ ରାଜଗଣ, କାଶିକଗଣ ଓ କୋଶଳଗଣ ଯୁଦ୍ଧରେ ଆମ୍ଭ ପକ୍ଷରେ ସମାଗତ ହୋଇଅଛନ୍ତି ; ଚେଦିମାନେ ଓ ବଙ୍ଗଗଣ ଆମ୍ଭର ଆଶ୍ରୟ ନେଇଅଛନ୍ତି । ପୃଥିବୀର ଅଧିକାଂଶ ରାଜା ଯେପରି ଆମ୍ଭପକ୍ଷରେ ଅଛନ୍ତି, ସେହିପରି ପାଣ୍ଡବମାନଙ୍କ ପକ୍ଷରେ ନାହାନ୍ତି । ହେ ସୂତ ! ଆଜ ସେହି ସେନାମାନଙ୍କ ମଧ୍ୟରେ ଦ୍ରୋଣାଚାର୍ଯ୍ୟ ସୁରକ୍ଷିତ ହୋଇ ସୁଦ୍ଧା ଯେତେବେଳେ ଯୁଦ୍ଧରେ ଧୃଷ୍ଟଦ୍ୟୁମ୍ନଙ୍କ କର୍ତ୍ତୃକ ନିହତ ହେଲେ, ତେତେବେଳେ ଭାଗ୍ୟ ନ କହି ଆଉ କଅଣ କୁହାଯିବ ? ୯ ।

ଭାଗ୍ୟ ଏକା ବଳବାନ୍, ନଚେତ୍ ରାଜଗଣପରିବେଷ୍ଟିତ ସର୍ବଦା ଯୁଦ୍ଧାଭିନନ୍ଦୀ ସର୍ବାସ୍ତ୍ରପାରଗ ମହାବାହୁ ଦ୍ରୋଣଙ୍କର ମୃତ୍ୟୁର ସମ୍ଭାବନା କେଉଁଠାରେ ? ଭୀଷ୍ମ ଓ ଦ୍ରୋଣଙ୍କର ମୃତ୍ୟୁସମ୍ବାଦ ଶ୍ରବଣ କରି ଆମ୍ଭେ ଅତିଶୟ ସନ୍ତାପିତ ଓ ମୋହାବିଷ୍ଟ ହୋଇଅଛୁଁ, ବଞ୍ଚିବାକୁ ଆଉ ଉତ୍ସାହ ନାହିଁ । ୧୧ । ହେ ବତ୍ସ ସଞ୍ଜୟ ! ଦୁର୍ଯ୍ୟୋଧନଙ୍କଠାରେ ଆମ୍ଭର ଅତି ସ୍ନେହ ଥିବାର ଦେଖି ବିଦୁର ଆମ୍ଭଙ୍କୁ ଯାହା କହିଥିଲେ, ତାହା ବର୍ତ୍ତମାନ ଆମ୍ଭପକ୍ଷରେ ଓ ଆମ୍ଭ ପୁତ୍ରପକ୍ଷରେ ଘଟିଲା । ୧୨ ।

ତାହାଙ୍କ କଥା ଅନୁସାରେ ଯଦି ଆମ୍ଭେ ଦୁର୍ଯ୍ୟୋଧନଙ୍କୁ ପରିତ୍ୟାଗ କରି ଅନ୍ୟ ପୁତ୍ରମାନଙ୍କୁ ରକ୍ଷା କରିବାକୁ ଅଭିଳାଷୀ ହୋଇଥାଆନ୍ତୁ, ତେବେ ତାହା ନୃଶଂସ କାର୍ଯ୍ୟ ହୋଇଥିଲେ ସୁଦ୍ଧା ଅନ୍ୟ ପୁତ୍ରମାନେ ରକ୍ଷା ପାଇଥାଆନ୍ତେ । ୧୩ । ଯେଉଁ ଲୋକ ଧର୍ମ ତ୍ୟାଗ କରି ଅର୍ଥଲୋଭୀ ହୁଏ, ସେ ଇହଲୋକରେ ହୀନତା ଓ କ୍ଷୁଦ୍ରଭାବକୁ ପ୍ରାପ୍ତ ହୁଏ । ୧୪ । ହେ ସଞ୍ଜୟ ! ସମ୍ପ୍ରତି ଆମ୍ଭମାନଙ୍କର ଶ୍ରେଷ୍ଠ ଦ୍ରୋଣାଚାର୍ଯ୍ୟ ବିନାଶପ୍ରାପ୍ତ ହେବାରୁ ଏହି ରାଜ୍ୟର ସମସ୍ତ ଲୋକେ ଉତ୍ସାହଭଗ୍ନ ହେଲେ ; ଆଉ କେହି ଯେ ଅବଶିଷ୍ଟ ରହିବେ, ଏହା ଆମ୍ଭଙ୍କୁ ଦେଖାଯାଉ ନାହିଁ । ୧୫ ।

ଯେଉଁ କ୍ଷେମଶୀଳ ଧୁରନ୍ଧର ପୁରୁଷସିଂହ ଭୀଷ୍ମ ଓ ଦ୍ରୋଣ ଆମ୍ଭମାନଙ୍କର ସର୍ବଦା ପ୍ରଧାନ ଅବଲମ୍ବନ ଥିଲେ, ସେମାନେ ଯେତେ-

ବେଳେ ମୃତ ହୋଇଅଛନ୍ତି, ସେତେବେଳେ ଅନ୍ୟ ଲୋକେ କପରି ଜୀବିତ ରହିବେ ? ୧୬। ହେ ସଞ୍ଜୟ ! ଏହିକ୍ଷଣି ସ୍ପଷ୍ଟ କରି କହ, କି ରୂପେ ଯୁଦ୍ଧ ହୋଇଥିଲା ? କେଉଁ କେଉଁ ବୀରମାନେ ଯୁଦ୍ଧ କରିଥିଲେ ? କେଉଁମାନେ ପରାଜିତ ହୋଇଥିଲେ ? କେଉଁ କେଉଁ କ୍ଷୁଦ୍ରବ୍ୟକ୍ତିମାନେ ଭୟରେ ପଳାୟନ କରିଥିଲେ ? ୧୭ । ରଥିଶ୍ରେଷ୍ଠ ଧନଞ୍ଜୟ ଯାହା କରିଥିଲେ, ତାହା ଆମ୍ଭ ନିକଟରେ କହ । ଭ୍ରାତୃବ୍ୟ ବୃକୋଦରଙ୍କୁ ଆମ୍ଭେ ମହା ଭୟ କରୁଁ । ୧୮ ।

ହେ ସଞ୍ଜୟ ! ପାଣ୍ଡବମାନେ ଯୁଦ୍ଧରେ ପ୍ରବୃତ୍ତ ହେବାରୁ ଆମ୍ଭର ଅବଶିଷ୍ଟ ସୈନ୍ୟମାନଙ୍କ ମଧ୍ୟରେ ଯେଉଁ ଦାରୁଣ ସନ୍ନିପାତ ହୋଇଥିଲା, ତାହା କହ । ୧୯ । ହେ ବତ୍ସ ! ପାଣ୍ଡବମାନେ ଯୁଦ୍ଧରେ ପ୍ରବୃତ୍ତ ହେଲାରୁ ତୁମ୍ଭମାନଙ୍କର ମନ କପରି ହୋଇଥିଲା ଏବଂ ଆମ୍ଭମାନଙ୍କ ସୈନ୍ୟ ମଧ୍ୟରୁ କେଉଁ କେଉଁ ଶୂରମାନେ ସେମାନଙ୍କୁ ସେହି ସମୟରେ ନିବାରଣ କରିଥିଲେ, ତାହା କହ । ୨୦ ।

---

## ୨୫ ଅଧ୍ୟାୟ

ସଞ୍ଜୟ ବୋଇଲେ—ପାଣ୍ଡବମାନେ ସମସ୍ତେ ଦ୍ରୋଣାଚାର୍ଯ୍ୟଙ୍କୁ ଆକ୍ରମଣ କଲେ । ସେମାନଙ୍କର ଶରଜାଳ ଦ୍ୱାରା ଦ୍ରୋଣାଚାର୍ଯ୍ୟ ମେଘାଚ୍ଛନ୍ନ ସୂର୍ଯ୍ୟ ପ୍ରାୟ ପ୍ରଚ୍ଛାଦ୍ୟମାନ ହେଲେ । ଏହା ଦେଖି ଆମ୍ଭମାନଙ୍କର ମହାଭୟ ଉପସ୍ଥିତ ହେଲା । ୧ ।

ପାଣ୍ଡବ ସୈନ୍ୟଗଣ ଦ୍ୱାରା ସମୁତ୍ଥିତ ଧୂଳିପଟଳରେ ଆପଣଙ୍କ ସୈନ୍ୟମାନେ ଆଚ୍ଛନ୍ନ ହେଲେ । ଆମ୍ଭମାନଙ୍କର ଦୃଷ୍ଟିପଥ ରୁଦ୍ଧ ହୋଇଗଲା । ଦ୍ରୋଣ ହତ ହେଲେ ବୋଲି ଆମ୍ଭେମାନେ ମନେ କଲୁ । ୨। ସେହି ଶୂର ମହାଧନୁର୍ଦ୍ଧର ପାଣ୍ଡବ ସୈନ୍ୟମାନଙ୍କୁ କ୍ରୂର କର୍ମରେ ପ୍ରବୃତ୍ତ ହେବାର ଦେଖି ଦୁର୍ଯ୍ୟୋଧନ ନିଜ ସୈନ୍ୟମାନଙ୍କୁ ଶୀଘ୍ର ଉତ୍ସାହପୂର୍ଣ୍ଣ ବାକ୍ୟ କହିଲେ, "ହେ ରାଜାମାନେ ! ତୁମ୍ଭେମାନେ ଯଥାଶକ୍ତି ଉତ୍ସାହ ଓ

ବିକ୍ରମ ଅନୁସାରେ ସୁଯୋଗ ଦେଖି ପାଣ୍ଡବ ସୈନ୍ୟମାନଙ୍କୁ ନିବାରଣ କରି । ୪ । ଆପଣଙ୍କ ପୁତ୍ର ଦୁର୍ମର୍ଷଣ ଦୂରରୁ ଭୀମସେନଙ୍କୁ ଦେଖି ଆଚାର୍ଯ୍ୟଙ୍କ ପ୍ରାଣ ରକ୍ଷାକରିବା ମାନସରେ ଶରବର୍ଷଣ ପୂର୍ବକ ଭୀମଙ୍କ ପ୍ରତି ଧାବମାନ ହେଲେ ଓ ଯମତୁଲ୍ୟ କ୍ରୁଦ୍ଧ ହୋଇ ବାଣବର୍ଷଣ ଦ୍ୱାରା ଭୀମଙ୍କୁ ଆଚ୍ଛନ୍ନ କଲେ । ଭୀମ ମଧ୍ୟ ବାଣବୃଷ୍ଟି ଦ୍ୱାରା ତାହାଙ୍କୁ ବ୍ୟଥିତ କଲେ । ଏହିରୂପେ ତୁମୁଳଯୁଦ୍ଧ ଉପସ୍ଥିତ ହେଲା । ୬ ।

ରାଜା ଦୁର୍ଯ୍ୟୋଧନଙ୍କ ଆଦେଶକ୍ରମେ ପ୍ରାଜ୍ଞ, ଶୂର ଓ ପ୍ରହାର-ନିପୁଣ ରାଜାମାନେ ରାଜ୍ୟ ଓ ମୃତ୍ୟୁଭୟକୁ ତ୍ୟାଗ କରି ଶତ୍ରୁମାନଙ୍କ ପ୍ରତି ଧାବମାନ ହେଲେ । ୭ । ଦ୍ରୋଣଙ୍କ ପ୍ରତି ସମାଗତ ହୋଇଥିବା ସମର-ଶୋଭି ଶୂର ସାତ୍ୟକିଙ୍କୁ କୃତବର୍ମ୍ମା ନିବାରଣ କରିବାରେ ପ୍ରବୃତ୍ତ ହେଲେ । ୮ । ସାତ୍ୟକି ମଧ୍ୟ କ୍ରୁଦ୍ଧ ହୋଇ ଶରସମୂହ ଦ୍ୱାରା କ୍ରୋଧାବିଷ୍ଟ କୃତବର୍ମ୍ମାଙ୍କୁ ନିବାରଣ କରିବାକୁ ଆରମ୍ଭ କଲେ । ଯେପରି ଏକ ମତ୍ତହସ୍ତୀ ଅନ୍ୟ ମତ୍ତହସ୍ତୀକୁ ଆକ୍ରମଣ କରେ, ସେହିରୂପେ କୃତବର୍ମ୍ମା ମଧ୍ୟ ସାତ୍ୟକିଙ୍କୁ ଆକ୍ରମଣପୂର୍ବକ ବାଣବିଦ୍ଧ କଲେ । ୯ ।

ଦ୍ରୋଣଙ୍କ ନିକଟକୁ ଆସୁଥିବା ମହା ଧନୁର୍ଦ୍ଧର କ୍ଷତ୍ରଧର୍ମାଙ୍କୁ ସିନ୍ଧୁପତି ଉଗ୍ରଧନ୍ୱା ଜୟଦ୍ରଥ ଯତ୍ନବାନ୍ ହୋଇ ନିବାରଣ କଲେ । ୧୦ । କ୍ଷତ୍ରଧର୍ମା କ୍ରୋଧାକୁଳ ହୋଇ ସିନ୍ଧୁପତିଙ୍କ ଧ୍ୱଜ ଓ ଧନୁକୁ ଚ୍ଛେଦନ-ପୂର୍ବକ ଦଶଗୋଟି ନାରାଚ ଦ୍ୱାରା ତାହାଙ୍କର ସମସ୍ତ ମର୍ମ୍ମସ୍ଥାନକୁ ବିଦ୍ଧ କଲେ । ୧୧ । ସିନ୍ଧୁପତି ଲଘୁହସ୍ତରେ ଅନ୍ୟ ଧନୁ ଗ୍ରହଣ କରି ଲୌହମୟ ଶରମାନଙ୍କ ଦ୍ୱାରା କ୍ଷତ୍ରଧର୍ମାଙ୍କୁ ବିଦ୍ଧ କଲେ । ୧୨ । ଦ୍ରୋଣଙ୍କୁ ରକ୍ଷାକରିବା ନିମନ୍ତେ ସୁବାହୁ ଯତ୍ନବାନ୍ ହୋଇ ପାଣ୍ଡବହିତୈଷୀ ମହାରଥ ଶୂର ସ୍ୱୀୟଭ୍ରାତା ଯୁଯୁତ୍ସୁଙ୍କୁ ନିବାରଣ କଲେ । ୧୩ । ଶାଣିତ ଓ ବିଶାକ୍ତ କ୍ଷୁରଦ୍ୱୟଦ୍ୱାରା ଧନୁର୍ବାଣବିକ୍ଷେପକାରୀ ସୁବାହୁଙ୍କର ପରିଘତୁଲ୍ୟ ହସ୍ତଦ୍ୱୟ ଯୁଯୁତ୍ସୁ ଛେଦନ କଲେ । ୧୪ । ବେଳାଭୂମି ଯେପରି କ୍ଷୁବ୍ଧ ସାଗରକୁ ନିବାରଣ କରେ, ମଦ୍ରରାଜ ସେହିପରି ପାଣ୍ଡବଶ୍ରେଷ୍ଠ ଧର୍ମାତ୍ମା ରାଜା ଯୁଧିଷ୍ଠିରଙ୍କୁ ନିବାରଣ କଲେ । ୧୫ ।

ଧର୍ମରାଜ ମଧ୍ୟ ଅନେକ ଶରଦ୍ୱାରା ତାହାଙ୍କୁ ସମାକୀର୍ଣ୍ଣ କଲେ । ମଦ୍ରପତି ଚତୁଃଷଷ୍ଟି ଶରଦ୍ୱାରା ତାହାଙ୍କୁ ବିଦ୍ଧ କରି ପୁନଃପୁନଃ ଅତିଶୟ ନିନାଦ କଲେ । ୧୬ । ସେହି ସମୟରେ ଜ୍ୟେଷ୍ଠ ପାଣ୍ଡବ ଦୁଇଗୋଟି କ୍ଷୁରାସ୍ତ୍ର ଦ୍ୱାରା ସିଂହ ନିନାଦ କରି ମଦ୍ରପତିଙ୍କର ଧ୍ୱଜ ଓ ଧନୁକ ଛେଦନ କଲେ । ତାହା ଦେଖି ଲୋକମାନେ ଚିତ୍କାର ଶବ୍ଦ କଲେ । ୧୭ । ରାଜା ବାହ୍ଲିକ ସୈନ୍ୟ ପରିବୃତ ହୋଇ ସୈନ୍ୟପରିବେଷ୍ଟିତ ରାଜା ଦ୍ରୁପଦଙ୍କୁ ନିବାରଣ କରିବାରେ ପ୍ରବୃତ୍ତ ହେଲେ । ୧୮ । ମଦସ୍ରାବୀ ମହାଯୂଥପତି ହସ୍ତିଦ୍ୱୟଙ୍କ ଯୁଦ୍ଧସଦୃଶ ସୈନ୍ୟ ପରିବେଷ୍ଟିତ ସେହି ବୃଦ୍ଧ ଭୂପତିଦ୍ୱୟଙ୍କର ଘୋରତର ସଂଗ୍ରାମ ହେଲା । ପୂର୍ବକାଳରେ ଯେପରି ଇନ୍ଦ୍ର ଓ ଅଗ୍ନି ବଳୀଙ୍କ ସହିତ ଯୁଦ୍ଧ କରିଥିଲେ, ସେହିପରି ସସୈନ୍ୟ ଅବନ୍ତୀନାଥ ବିନ୍ଦ ଓ ଅନୁବିନ୍ଦ ସସୈନ୍ୟ ମତ୍ସ୍ୟରାଜ ବିରାଟଙ୍କ ପ୍ରତି ଶର ନିକ୍ଷେପ କଲେ । ୨୦ ।

ତହୁଁ ମତ୍ସ୍ୟ ସୈନ୍ୟମାନଙ୍କ ସହିତ କେକେୟ ସୈନ୍ୟମାନଙ୍କର ଦେବାସୁର ଯୁଦ୍ଧସଦୃଶ ଅତ୍ୟନ୍ତ କୋଳାହଳଯୁକ୍ତ ଯୁଦ୍ଧ ହେଲା । ଏହି ଯୁଦ୍ଧରେ ଅଶ୍ୱ, ହସ୍ତୀ ଓ ରଥମାନେ ନିର୍ଭୟରେ ଯୁଦ୍ଧ କଲେ । ୨୧ । ନକୁଳପୁତ୍ର ଶତାନୀକ ଦ୍ରୋଣଙ୍କ ପ୍ରତି ଶରନିକ୍ଷେପପୂର୍ବକ ଧାବମାନ ହେବାର ଦେଖି ସତ୍ତ୍ୱପତି ଭୂତବର୍ମ୍ମା ତାହାଙ୍କୁ ନିବାରଣ କଲେ । ୨୨ ।

ତହୁଁ ନକୁଳପୁତ୍ର ଶତାନୀକ ତିନଗୋଟି ସୁଶାଣିତ ଭଲ୍ଲଦ୍ୱାରା ଯୁଦ୍ଧରେ ଭୂତବର୍ମାଙ୍କର ବାହୁଦ୍ୱୟ ଓ ମସ୍ତକକୁ ଛେଦନ କରି ପକାଇଲେ । ୨୩ । ବିକ୍ରମଶୀଳ ଶରବର୍ଷଣକାରୀ ବୀର ସୁତସୋମଙ୍କୁ ଦ୍ରୋଣଙ୍କ ପ୍ରତି ଧାବମାନ ହେବାର ଦେଖି ବିବିଂଶତି ତାହାଙ୍କୁ ନିବାରଣ କଲେ । ୨୪ । ବର୍ମିତ ସୁତସୋମ ସଂକ୍ରୁଦ୍ଧ ହୋଇ ସରଳଗାମୀ ଶରସମୂହ ଦ୍ୱାରା ଆପଣା ପିତୃବ୍ୟ ବିବିଂଶତିଙ୍କୁ ବିଦ୍ଧ କରି ତାହାଙ୍କ ସମ୍ମୁଖକୁ ଆଉ ଅଗ୍ରସର ହେଲେ ନାହିଁ । ୨୫ । ଭୀମରଥ ଲୌହମୟ ଛଅଗୋଟି ଶାଣିତ ଶରଦ୍ୱାରା ସାରଥି ଓ ଅଶ୍ୱମାନଙ୍କ ସହିତ ଶାଲ୍ୱଙ୍କୁ ଯମାଳୟକୁ ପ୍ରେରଣ କଲେ । ୨୬ ।

ହେ ମହାରାଜ ! ଯେଉଁ ରଥରେ ମୟୂରସଦୃଶ ଅଶ୍ୱମାନେ ଯୋଜିତ ହୋଇଥିଲେ, ସେହି ରଥରେ ଆରୋହଣ କରି ଧାବମାନ

ହେଉଥିବା ଆପଣଙ୍କ ପୌତ୍ର ଶ୍ରୁତକର୍ମାଙ୍କୁ ଶତସେନପୁତ୍ର ନିବାରଣ କଲେ । ୨୭ । ପରସ୍ପର ବଧାଭିଳାଷୀ ହୋଇ ଆପଣଙ୍କର ସେହି ଦୁର୍ଦ୍ଧର୍ଷ ପୌତ୍ର-ମାନେ ସ୍ୱ ସ୍ୱ ପିତାଙ୍କ କାର୍ଯ୍ୟ ସିଦ୍ଧି ନିମନ୍ତେ ଘୋର ଯୁଦ୍ଧ କଲେ । ୨୮ । ସେହି ମହାଯୁଦ୍ଧରେ ପ୍ରତିବିନ୍ଧ୍ୟଙ୍କୁ ସମ୍ମୁଖରେ ଅବସ୍ଥାନ କରୁଥିବାର ଦେଖି ଅଶ୍ୱତ୍ଥାମା ନିଜ ପିତାଙ୍କ ମାନରକ୍ଷା ନିମନ୍ତେ ପ୍ରତିବିନ୍ଧ୍ୟଙ୍କୁ ଶରସମୂହ ଦ୍ୱାରା ନିବାରଣ କଲେ । ୨୯ ।

ନିଜ ପିତାଙ୍କର ମାନରକ୍ଷାର୍ଥେ ଯୁଦ୍ଧରେ ଅବସ୍ଥିତ ସେହି ସିଂହ-ଲାଙ୍ଗୁଳ-ଧ୍ୱଜସମନ୍ୱିତ କ୍ରୁଦ୍ଧ ଅଶ୍ୱତ୍ଥାମାଙ୍କୁ ପ୍ରତିବିନ୍ଧ୍ୟ ଶାଣିତ ଶରଦ୍ୱାରା ପ୍ରତିବିଦ୍ଧ କଲେ । ୩୦ । ହେ ନରଶ୍ରେଷ୍ଠ ! ବୀଜବପନ କାଳରେ କୃଷକ ଯେପରି ବୀଜ ବପନ କରେ, ଦ୍ରୋଣପୁତ୍ରଙ୍କୁ ସେହିପରି ଦ୍ରୌପଦୀପୁତ୍ର ଶରବର୍ଷଣ ଦ୍ୱାରା ସମାକୀର୍ଣ୍ଣ କଲେ । ୩୧ । ଦ୍ରୌପଦୀଗର୍ଭଜାତ ଅର୍ଜ୍ଜୁନ-ପୁତ୍ର ମହାରଥ ଶ୍ରୁତକୀର୍ତ୍ତିଙ୍କୁ ଦ୍ରୋଣଙ୍କ ଅଭିମୁଖକୁ ଧାବମାନ ହେବାର ଦେଖି ତାହାଙ୍କୁ ଦୁଃଶାସନପୁତ୍ର ନିବାରଣ କଲେ । ୩୨ ।

ଅର୍ଜ୍ଜୁନ ତୁଲ୍ୟ ବଳଶାଳୀ ଅର୍ଜ୍ଜୁନ-ନନ୍ଦନ ସୁଶାଣିତ ତିନିଗୋଟି ଭଲ୍ଲଦ୍ୱାରା ଦୁଃଶାସନ ପୁତ୍ରଙ୍କ ଧନୁ, ଧ୍ୱଜ ଓ ସାରଥିକି ଛେଦନ କରି ଦ୍ରୋଣଙ୍କ ନିକଟକୁ ଗଲେ । ୩୩ । ହେ ରାଜନ୍ ! ଉଭୟ ସେନାଙ୍କ ମଧ୍ୟରେ ଯେ ସମ୍ମତ ଅଟନ୍ତି, ସେହି ପଟଚ୍ଚରହନ୍ତାଙ୍କୁ ଲକ୍ଷ୍ମଣ ନିବାରଣ କଲେ । ୩୪ । କିନ୍ତୁ ଲକ୍ଷ୍ମଣଙ୍କର ଧନୁକ ଓ ଧ୍ୱଜକୁ ସେହି ପଟଚ୍ଚରହନ୍ତା ଛେଦନ କରି ତାହାଙ୍କ ପ୍ରତି ଶରବର୍ଷଣ ପୂର୍ବକ ଶୋଭାପ୍ରାପ୍ତ ହେଲେ ।୩୫।

ଯୁଦ୍ଧରେ ଧାବମାନ ଯଜ୍ଞସେନପୁତ୍ର ଯୁବା ଶିଖଣ୍ଡୀଙ୍କୁ ମହାପ୍ରାଜ୍ଞ ଯୁବା ବିକର୍ଣ୍ଣ ନିବାରଣ କଲେ । ୩୬ । ଶିଖଣ୍ଡୀ ଶରଜାଲଦ୍ୱାରା ତାହାଙ୍କୁ ସମାବୃତ କଲେ । ଆପଣଙ୍କ ପୁତ୍ର ବଳବାନ୍ ବିକର୍ଣ୍ଣ ମଧ୍ୟ ସେହି ବାଣମାନଙ୍କୁ ନିବାରଣ କରି ଯୁଦ୍ଧରେ ଶୋଭିତ ହେଲେ । ୩୭ । ଯୁଦ୍ଧରେ ଦ୍ରୋଣଙ୍କ ଅଭିମୁଖକୁ ଧାବମାନ ବୀର ଉତ୍ତମୌଜାଙ୍କୁ ଅଙ୍ଗଦ ଶରବୃଷ୍ଟି ଦ୍ୱାରା ନିବାରଣ କଲେ । ୩୮ । ସେହି ପୁରୁଷସିଂହଦ୍ୱୟଙ୍କ ମଧ୍ୟରେ ଯେଉଁ ତୁମୁଳ ସଂଗ୍ରାମ ହେଲା, ସେଥିରେ ସେ ଦୁହିଁଙ୍କର ଓ ସମସ୍ତ ସୈନ୍ୟଙ୍କର ପ୍ରୀତି ଜାତ-ହେଲା । ୩୯ ।

ଦ୍ରୋଣଙ୍କ ଅଭିମୁଖରେ ଧାବମାନ ବୀର ପୁରୁଜିତ୍ ବୃହଦନ୍ତଙ୍କୁ ବଳବାନ୍ ମହା ଧନୁର୍ଦ୍ଧର ଦୁର୍ମୁଖ ନିବାରଣ କଲେ । ୪୦ । ଦୁର୍ମୁଖଙ୍କ ଭ୍ରୂଦ୍ୱୟ ମଧ୍ୟରେ ପୁରୁଜିତ୍ ନାରାଚ ଅସ୍ତ୍ର ଦ୍ୱାରା ଆଘାତ କଲେ, ସେହି ନାରାଚ ଦ୍ୱାରା ବିଦ୍ଧ ହେବାରୁ ଦୁର୍ମୁଖଙ୍କ ମୁଖ ମୃଣାଳଯୁକ୍ତ ପଦ୍ମସଦୃଶ ଶୋଭମାନ ହେଲା ।

ଦ୍ରୋଣଙ୍କ ଅଭିମୁଖରେ ଧାବମାନ ଲୋହିତ ଧ୍ୱଜକୈକେୟରାଜ ପଞ୍ଚଭ୍ରାତାଙ୍କୁ କର୍ଣ୍ଣ ଶରସମୂହ ଦ୍ୱାରା ନିବାରଣ କଲେ । ୪୨ । ସେମାନେ ଅତ୍ୟନ୍ତ ସନ୍ତପ୍ତ ହୋଇ ଶରବର୍ଷଣ ଦ୍ୱାରା କର୍ଣ୍ଣଙ୍କୁ ଆଘାତ କଲେ । କର୍ଣ୍ଣ ମଧ୍ୟ ଶରବର୍ଷଣ ଦ୍ୱାରା ସେମାନଙ୍କୁ ପୁନଃ ପୁନଃ ଆଚ୍ଛନ୍ନ କରିବାରେ ପ୍ରବୃତ୍ତ ହେଲେ । ୪୩ । ସେମାନଙ୍କର ବାଣ ଦ୍ୱାରା ସେମାନେ ନିଜେ ଓ ସେମାନଙ୍କର ଅଶ୍ୱ, ସାରଥି, ଧ୍ୱଜ ଓ ରଥ ଆବୃତ ହେବାରୁ କର୍ଣ୍ଣ ଓ ସେହି ପଞ୍ଚଭ୍ରାତା କେହି କାହାରିକୁ ଦେଖି ପାରିଲେ ନାହିଁ । ୪୪ ।

ଦୁର୍ଜୟ, ଜୟ ଓ ବିଜୟ—ଏହି ତିନିପୁତ୍ର ନୀଳରାଜ, କାଶୀ-ରାଜ ଓ ଜୟତ୍ ସେନ—ଏହି ତିନି ଜଣଙ୍କୁ ନିବାରଣ କଲେ ।୪୫। ଯେପରି ଉଲ୍ଲୂକ, ମହିଷ, ବୃଷଭ ସହିତ ସିଂହ, ବ୍ୟାଘ୍ର ଓ ତରକ୍ଷୁର ଯୁଦ୍ଧ ହୁଏ, ସେହିପରି ସେମାନଙ୍କ ମଧ୍ୟରେ ଘୋରତର ଯୁଦ୍ଧ ହେଲା । ଏହା ଦେଖି ଦର୍ଶକମାନଙ୍କର ପ୍ରୀତିବର୍ଦ୍ଧନ ହେଲା । ୪୬ । କ୍ଷେମଧୂର୍ତ୍ତି ଓ ବୃହଦନ୍ତ—ଏ ଦୁଇଭ୍ରାତା ଦ୍ରୋଣାଭିମୁଖକୁ ଧାବମାନ ହେଉଥିବା ସାତ୍ୟକିଙ୍କୁ ତୀକ୍ଷ୍ଣ ଶରଦ୍ୱାରା ଯୁଦ୍ଧରେ ବିଦ୍ଧ କଲେ । ୪୭ । ଅରଣ୍ୟରେ ମଦସ୍ରାବୀ ମହାଗଜ-ଦ୍ୱୟ ସହିତ ଯେପରି ଏକ ସିଂହର ଯୁଦ୍ଧ ହୁଏ, ସେହିପରି ସେମାନଙ୍କ ମଧ୍ୟରେ ଅତି ତୁମୁଳ ଯୁଦ୍ଧ ହୋଇଥିଲା । ୪୮ । ଦ୍ରୋଣଙ୍କ ଅଭିମୁଖରେ ଧାବମାନ ଯୁଦ୍ଧପ୍ରିୟ ଏକମାତ୍ର ଅମ୍ବଷ୍ଠ ରାଜାଙ୍କୁ ଚେଦିରାଜ କ୍ରୁଦ୍ଧ ହୋଇ ଶରଦ୍ୱାରା ନିବାରଣ କଲେ । ୪୯ । ତହୁଁ ଅମ୍ବଷ୍ଠରାଜ ଅସ୍ଥିଭେଦକାରୀ ଶଳାକାଦ୍ୱାରା ଚେଦିରାଜଙ୍କୁ ବିଦାର୍ଣ୍ଣ କଲେ, ତଦ୍ୱାରା ଚେଦିରାଜ ଧନୁର୍ବାଣ ପରିତ୍ୟାଗ କରି ରଥରୁ ଭୂମିରେ ପତିତ ହେଲେ । ୫୦ ।

ମହାଶୟ ଶାରଦ୍ବତ କୃପ କ୍ଷୁଦ୍ରକ ଶରଦ୍ୱାରା ସଂକ୍ରୁଦ୍ଧ ବୃଷ୍ଣିବଂଶୀୟ ବାର୍ଦ୍ଧକ୍ଷେମୀଙ୍କ ନିବାରଣ କଲେ । ୫୧ । ଯେଉଁମାନେ ବିଚିତ୍ରଯୋଧୀ କୃପ ଓ ବାର୍ଦ୍ଧକ୍ଷେମୀଙ୍କର ଯୁଦ୍ଧ ଦେଖିଥିଲେ, ସେମାନେ ସେହି ଯୁଦ୍ଧରେ ଏତେଦୂର ନିବିଷ୍ଟ ଚିତ୍ତ ହୋଇଥିଲେ ଯେ, ସେମାନଙ୍କର ଅନ୍ୟ କୌଣସି କାର୍ଯ୍ୟରେ ପ୍ରବୃତ୍ତି ହେଲା ନାହିଁ । ୫୨ । ସୋମଦତ୍ତଙ୍କ ପୁତ୍ର ଦ୍ରୋଣଙ୍କ ପ୍ରତି ଧାବମାନ ଅତନ୍ଦ୍ରିତ ରାଜା ମଣିମାନଙ୍କୁ ଦ୍ରୋଣଙ୍କ ଯଶବୃଦ୍ଧି ଅଭିଳାଷରେ ଅବରୋଧ କଲେ । ୫୩ । ମଣିମାନ୍ ସତ୍ୱର ହୋଇ ସୋମଦତ୍ତନନ୍ଦନଙ୍କର ଧନୁ, ଧ୍ୱଜ, ପତାକା, ସାରଥି ଓ ଛତ୍ରମାନଙ୍କୁ ଛେଦନ କରି ରଥରୁ ତଳକୁ ପକାଇଦେଲେ । ୫୪ ।

ଅନନ୍ତର ଶତ୍ରୁହନ୍ତା ସୋମଦତ୍ତନନ୍ଦନ ଯୂପକେତୁ ଶୀଘ୍ର ରଥରୁ ଲମ୍ଫପ୍ରଦାନପୂର୍ବକ ତୀକ୍ଷ୍ଣ ଅସିଦ୍ୱାରା ଅଶ୍ୱ, ରଥ, ଧ୍ୱଜ ଓ ସାରଥି ସହିତ ମଣିମାନ୍‌ଙ୍କୁ ଛେଦନ କଲେ । ୫୫ । ତତ୍ପରେ ଯୂପକେତୁ ନିଜ ରଥରେ ଆରୋହଣ କରି ଅନ୍ୟ ଗୋଟିଏ ଧନୁଗ୍ରହଣପୂର୍ବକ ନିଜେ ଆପଣା ହାତରେ ଘୋଡ଼ାର ବାଗକୁ ଧରି ପାଣ୍ଡବୀ ସେନାକୁ ଦଗ୍ଧ କଲେ । ୫୬ ।

ଅସୁରମାନଙ୍କ ପ୍ରତି ଇନ୍ଦ୍ର ଯେପରି ଧାବମାନ ହୁଅନ୍ତି, ସେହିପରି ଦୁର୍ଜ୍ଜୟ ପାଣ୍ଡ୍ୟରାଜଙ୍କୁ ଧାବମାନ ହେବାର ଦେଖି ତାହାଙ୍କ ସମାନ ସମର୍ଥ ବୀର ବୃଷସେନ ତାହାଙ୍କୁ ନିବାରଣ କଲେ । ୫୭ । ଦ୍ରୋଣଙ୍କ ବିନାଶରେ ଅଭିଳାଷୀ ହୋଇ ଘଟୋତ୍କଚ ଗଦା, ପରିଘ, ନିସ୍ତ୍ରିଂଶ, ପଟ୍ଟିଶ, ଲଗୁଡ଼, ପ୍ରସ୍ତରାସ୍ତ୍ର, ଦଣ୍ଡ, ଭୁଶୁଣ୍ଡୀ, ପ୍ରାସ, ତୋମର, ସାୟକ, ମୂଷଳ, ମୁଦ୍‌ଗର, ଚକ୍ର, ଭିନ୍ଦିପାଳ, ପରଶ୍ୱଧ, ପାଂଶୁ, ବାତ, ଅଗ୍ନି, ସଲିଳ, ଭସ୍ମ, ଲୋଷ୍ଟ୍ର, ତୃଣ ଓ ବୃକ୍ଷ – ଏହି ସମୁଦାୟ ଅସ୍ତ୍ରଦ୍ୱାରା ସେମାନଙ୍କୁ ବ୍ୟଥିତ, ରୁଷ୍ଟ, ଭଗ୍ନ, ନିହତ, ବିକ୍ଷିପ୍ତ ଓ ବିଖଣ୍ଡିତ କରି ଦ୍ରୋଣଙ୍କ ଅଭିମୁଖକୁ ଧାବମାନ ହେଲେ । ୬୦ । ରାକ୍ଷସ ଅଳମ୍ବୁଷ କ୍ରୁଦ୍ଧ ହୋଇ ନାନାବିଧ ଅସ୍ତ୍ର ନିକ୍ଷେପ ଓ ନାନାବିଧ ଯୁଦ୍ଧ ଦେଖାଇ ରାକ୍ଷସ ଘଟୋତ୍କଚକୁ ପୀଡ଼ିତ କଲା । ୬୧ ।

ପୂର୍ବକାଳରେ ଯେପରି ଇନ୍ଦ୍ର ଓ ଶମ୍ବରାସୁରର ଯୁଦ୍ଧ ହୋଇଥିଲା, ରାକ୍ଷସାଧିପତିଙ୍କ ଅଗ୍ରଗଣ୍ୟ ସେହି ରାକ୍ଷସଦ୍ୱୟଙ୍କର ସେହିପରି ଯୁଦ୍ଧ ହେଲା । ଏହିପରି ଉଭୟପକ୍ଷୀୟ ରଥ, ଅଶ୍ୱ, ହସ୍ତୀ ଓ ପଦାତିସଂକୁଳ ସୈନ୍ୟମାନଙ୍କ ମଧ୍ୟରେ ଶତ ଶତ ଦ୍ୱନ୍ଦ୍ୱଯୁଦ୍ଧ ହୋଇଥିଲା । ୭୩ । ଦ୍ରୋଣଙ୍କର ବିନାଶ ଓ ଦ୍ରୋଣଙ୍କର ଜୀବନରକ୍ଷା—ଏହି ଉଭୟ ଉଦ୍ଦେଶ୍ୟରେ ସମାସକ୍ତ ଉଭୟପକ୍ଷୀୟ ଯୋଦ୍ଧାମାନଙ୍କ ମଧ୍ୟରେ ଯେପରି ଯୁଦ୍ଧ ହୋଇଥିଲା, ଏପରି ଯୁଦ୍ଧ ଆମ୍ଭେମାନେ ଆଉ କଦାଚ ଦେଖିନାହୁଁ ବା ଶୁଣିନାହୁଁ । ୭୪ । ହେ ପ୍ରଭୋ ! ସେହି ବହୁପ୍ରକାର ବିସ୍ତୃତ ଯୁଦ୍ଧ ପୃଥକ୍ ପୃଥକ୍ ଦୃଷ୍ଟି କରିବା ବେଳେ "ଏହି ଯୁଦ୍ଧ ଭୟାନକ", "ଏହି ଯୁଦ୍ଧ ଆଶ୍ଚର୍ଯ୍ୟ", "ଏହି ଯୁଦ୍ଧ ଅତି ତୀବ୍ର" ଏହିପରି ବୋଧ ହେଲା । ୭୫ ।



## ୨୭ ଅଧ୍ୟାୟ

ଧୃତରାଷ୍ଟ୍ର କହିଲେ—ହେ ସଞ୍ଜୟ ! ଏହିପରି ପାଣ୍ଡବପକ୍ଷୀୟ ଓ ମତ୍ପକ୍ଷୀୟ ବେଗଶୀଳ ଯୋଦ୍ଧାମାନେ କି ପ୍ରକାରରେ ଯୁଦ୍ଧ କରିଥିଲେ ଓ ଅର୍ଜୁନ ସଂଶପ୍ତକମାନଙ୍କ ସହିତ ଓ ସଂଶପ୍ତକମାନେ ଅର୍ଜୁନଙ୍କ ସହିତ କିପରି ଯୁଦ୍ଧ କରିଥିଲେ ? ୨ ।

ସଞ୍ଜୟ ବୋଇଲେ—ହେ ମହାରାଜ ! ଉଭୟପକ୍ଷୀୟ ଯୋଦ୍ଧାମାନେ ଉକ୍ତ ପ୍ରକାରେ ଆପଣା ଆପଣା ଭାଗ୍ୟ କ୍ରମେ ଯୁଦ୍ଧରେ ପ୍ରବୃତ୍ତ ଓ ପ୍ରତ୍ୟୁଦ୍‌ଗତ ହେଲାରୁ ଆପଣଙ୍କ ପୁତ୍ର ଦୁର୍ଯ୍ୟୋଧନ ହସ୍ତିସୈନ୍ୟମାନଙ୍କୁ ସଙ୍ଗରେ ଘେନି ଭୀମଙ୍କୁ ଆକ୍ରମଣ କଲେ । ୩ ।

ହେ ଆର୍ଯ୍ୟ ! ହସ୍ତୀ ଯେପରି ହସ୍ତୀ ସହିତ ଓ ବୃଷ ଯେପରି ବୃଷ ସହିତ ଯୁଦ୍ଧ କରେ, ସେହିପରି ଯୁଦ୍ଧକୁଶଳ ବାହୁବୀର୍ଯ୍ୟସମନ୍ୱିତ ଭୀମସେନ ରାଜା ଦୁର୍ଯ୍ୟୋଧନଙ୍କଦ୍ୱାରା ଆହୂତ ହୋଇ ଗଜସୈନ୍ୟ ପ୍ରତି ଧାବମାନ ହେଲେ ଓ କ୍ଷଣକାଳ ମଧ୍ୟରେ ଦୁର୍ଯ୍ୟୋଧନର ଗଜସୈନ୍ୟଙ୍କୁ ଛିନ୍ନଭିନ୍ନ

କଲେ । ୫ । ମଦସ୍ରାବୀ ଗିରିତୁଲ୍ୟ ଗଜମାନେ ଭୀମସେନଙ୍କ ନାରାଚ ଦ୍ୱାରା ଭିନ୍ନଦେହ ହୋଇ ମତ୍ତତାବିହୀନ ଓ ବିମୁଖ ହେଲେ । ୬ । ସମୁଦ୍ଧତ ବାୟୁ ଯେପରି ମେଘମାଳାଙ୍କୁ ଛିନ୍ନଭିନ୍ନ କରେ, ସେହିପରି ପବନପୁତ୍ର ଭୀମ ସେହି ଗଜସୈନ୍ୟମାନଙ୍କୁ ଛିନ୍ନଭିନ୍ନ କଲେ । ୭ ।

ଭୁବନ ମଧ୍ୟରେ ଉଦିତ ସୂର୍ଯ୍ୟ କିରଣଜାଳ ବିସ୍ତାରପୂର୍ବକ ଯେପରି ଶୋଭିତ ହୁଅନ୍ତି, ହସ୍ତିମାନଙ୍କ ପ୍ରତି ସେହିପରି ବାଣବର୍ଷଣ ଦ୍ୱାରା ଭୀମସେନ ଶୋଭା ପାଇଲେ । ୮ । ଯେପରି ଆକାଶରେ ମେଘମାନେ ସୂର୍ଯ୍ୟ କିରଣ ଦ୍ୱାରା ନାନା ବର୍ଣ୍ଣବିଶିଷ୍ଟ ଦେଖାଯାଆନ୍ତି । ଭୀମଙ୍କ ବାଣ ଦ୍ୱାରା ଅଭିହତ ହୋଇ ହସ୍ତିମାନେ ତଦ୍ରୂପ ଦେଖାଗଲେ । ୯ ।

ଭୀମ ସେହିପରି ଗଜମାନଙ୍କୁ ସମାହତ କରିବାର ଦେଖି ଦୁର୍ଯ୍ୟୋଧନ କ୍ରୁଦ୍ଧ ହୋଇ ତୀକ୍ଷ୍ଣ ଶରମାନଙ୍କ ଦ୍ୱାରା ତାହାଙ୍କୁ ପ୍ରତିବିଦ୍ଧ କଲେ । ୧୦ । ରକ୍ତଲୋଚନ ଭୀମ କ୍ଷଣକାଳ ମଧ୍ୟରେ ବିନାଶ କରିବାକୁ ଅଭିଳାଷୀ ହୋଇ ଶାଣିତ ଶରଦ୍ୱାରା ରାଜାଙ୍କୁ ବିଦ୍ଧ କଲେ । ୧୧ । ଦୁର୍ଯ୍ୟୋଧନ ସର୍ବାଙ୍ଗରେ ଶରବିଦ୍ଧ ହୋଇ କ୍ରୁଦ୍ଧ ହେଲେ, କିନ୍ତୁ ସୂର୍ଯ୍ୟରଶ୍ମି ତୁଲ୍ୟ ନାରାଚସମୂହ ଦ୍ୱାରା ହାସ୍ୟ କରୁଁ କରୁଁ ଭୀମସେନଙ୍କୁ ଆଘାତ କଲେ । ୧୨ । ପାଣ୍ଡୁପୁତ୍ର ଭୀମ ଶୀଘ୍ର ଗୋଟିଏ ଭଲ୍ଲଦ୍ୱାରା ତାହାଙ୍କ ଧ୍ୱଜସ୍ଥିତ ରତ୍ନଚିହ୍ନିତ ମଣିମୟ ନାଗକୁ ଓ ଅନ୍ୟ ଏକଗୋଟି ଭଲ୍ଲଦ୍ୱାରା ତାହାଙ୍କର ଧନୁକୁ ଛେଦନ କଲେ । ୧୩ ।

ହେ ଆର୍ଯ୍ୟ ! ଦୁର୍ଯ୍ୟୋଧନଙ୍କୁ ଭୀମକର୍ତ୍ତୃକ ପୀଡ଼୍ୟମାନ ହେବାର ଦେଖି ଭୀମଙ୍କ କ୍ଷୋଭ ଜନ୍ମାଇବା ନିମନ୍ତେ ଅଙ୍ଗରାଜ ହସ୍ତୀରେ ଆରୋହଣ କରି ସମାଗତ ହେଲେ । ୧୪ । ଅଙ୍ଗରାଜଙ୍କର ସେହି ହସ୍ତିଶ୍ରେଷ୍ଠ ମେଘତୁଲ୍ୟ ଗର୍ଜ୍ଜନ କରି ଆସୁଥିବାର ଦେଖି ଭୀମସେନ ନାରାଚମାନଙ୍କ ଦ୍ୱାରା ତାହାର କୁମ୍ଭର ମଧ୍ୟଭାଗକୁ ଅତିଶୟ ଆଘାତ କଲେ । ୧୫ । ସେହି ନାରାଚମାନ ତାହାର ଦେହ ଭେଦକରି ପୃଥିବୀରେ ପତିତ ହେଲା । ୧୬ । ହସ୍ତୀର ପତନ ସମୟରେ ସେହି ମ୍ଲେଚ୍ଛରାଜ ଅଙ୍ଗ ପତିତ ହୁଅନ୍ତେ ତତ୍କ୍ଷଣାତ୍ ବୃକୋଦର ଶୀଘ୍ରହସ୍ତରେ ଏକଗୋଟି ଭଲ୍ଲଦ୍ୱାରା ଅଙ୍ଗରାଜର ଶିରଚ୍ଛେଦନ କଲେ । ୧୭ । ସେହି ବୀର ନିପତିତ ହେଲାରୁ ତାହାଙ୍କ ସୈନ୍ୟମାନେ

ପଳାୟନ କଲେ । ଅଶ୍ୱ, ହସ୍ତୀ ଓ ରଥମାନେ ଭୀତ ଓ ତ୍ରସ୍ତ ହୋଇ ପଦାତିମାନଙ୍କୁ ମାଡ଼ିଦଳିଦେଇ ପଳାଇଗଲେ । ୧୮ ।

ସେହି ସୈନ୍ୟମାନେ ଭଗ୍ନ ହୋଇ ଚତୁର୍ଦ୍ଦିଗକୁ ପଳାୟନ କରିବାକୁ ଆରମ୍ଭ କରିବାରୁ ପ୍ରାଗ୍-ଜ୍ୟୋତିଷ ରାଜା ଭଗଦତ୍ତ ହସ୍ତୀରେ ଆରୋହଣ କରି ଭୀମଙ୍କ ପ୍ରତି ଧାବମାନ ହେଲେ । ୧୯ । ଯେଉଁ ହସ୍ତିଦ୍ୱାରା ଦେବରାଜ ଇନ୍ଦ୍ର ଦୈତ୍ୟ-ଦାନବମାନଙ୍କୁ ପରାଜୟ କରିଥିଲେ, ସେହି ବଂଶୀୟ ହସ୍ତିଦ୍ୱାରା ଭଗଦତ୍ତ ଭୀମଙ୍କୁ ଆକ୍ରମଣ କଲେ । ୨୦ । ସେହି ପ୍ରବଳ ବୃହତ୍ ହସ୍ତୀ ଆପଣାର ଦୁଇପଦ ଓ ସଙ୍କୁଚିତ ଶୁଣ୍ଡଦ୍ୱାରା ଭୀମସେନଙ୍କୁ ଆକ୍ରମଣ କଲା ଓ କ୍ରୁଦ୍ଧ ବିସ୍ଫୁରିତଲୋଚନ ହୋଇ ବୃକୋଦରଙ୍କୁ ଆକ୍ରମଣପୂର୍ବକ ତାହାଙ୍କ ଅଶ୍ୱ ସହିତ ରଥକୁ ବିଶେଷରୂପେ ଚୂର୍ଣ୍ଣ କଲା । ୨୨ ।

ଭୀମ ମଧ୍ୟ ପଦବ୍ରଜରେ ଧାବମାନ ହୋଇ ସେହି ହସ୍ତୀ ଦେହରେ ବିଲୀନ ହେଲେ । ଭୀମ ଅଞ୍ଜଳିକାଭେଦ ବିଦ୍ୟା ଜାଣିଥିବାରୁ ଦୂରକୁ ନିଷ୍କ୍ରାନ୍ତ ହେଲେ ନାହିଁ । ଭୀମସେନ ସେହି ନାଗକୁ ଆପଣାର ବଧାକାଂକ୍ଷୀ ଜାଣି ତାହାର ଦେହାଭ୍ୟନ୍ତରରେ ରହିଲେ ଓ କରଦ୍ୱାରା ମୂହୁର୍ମୁହୁଃ ସେହି ହସ୍ତୀ ଦେହରେ ପ୍ରହାର କଲେ । ୨୪ । ଅପୂର୍ବ ନାଗର ବଳଧାରୀ ସେହି ଶୋଭାନ୍ୱିତ ହସ୍ତୀ ଭୀମଙ୍କୁ ବିନାଶ କରିବାର ଇଚ୍ଛା କରି ଶୀଘ୍ର କୁଲାଳ-ଚକ୍ରବତ୍ ଅତି ଦ୍ରୁତବେଗରେ ଭ୍ରମଣ କଲା । ତହୁଁ ଭୀମ ତାହା ଦେହମଧ୍ୟରୁ ନିଷ୍କ୍ରାନ୍ତ ହୋଇ ତାହାର ଅଗ୍ରବର୍ତ୍ତୀ ହେଲେ । ସେହି ଗଜ ତତ୍କ୍ଷଣାତ୍ ଭୀମଙ୍କୁ ଶୁଣ୍ଡଦ୍ୱାରା ଅବନତ କରି ଦୁଇଜାନୁଦ୍ୱାରା ଆଘାତକଲା ଓ ଗ୍ରୀବା-ଦେଶବେଷ୍ଟନପୂର୍ବକ ବଧ କରିବାକୁ ଚେଷ୍ଟା କଲା । ବୃକୋଦର ଆବର୍ତ୍ତନ ଦ୍ୱାରା ଶୁଣ୍ଡବେଷ୍ଟନରୁ ମୁକ୍ତ ହୋଇ ପୁନର୍ବାର ତାହା ଦେହରେ ସଂଲଗ୍ନ ହେଲେ । ତହୁଁ ଭୀମ ଯେତେବେଳେ ଦେଖିଲେ ଯେ, ସ୍ୱସୈନ୍ୟ ମଧ୍ୟରୁ ପ୍ରତିଯୋଦ୍ଧା ଗଜ ଆସି ଉପସ୍ଥିତ ହେଲା, ସେତେବେଳେ ସେ ସେହି ହସ୍ତୀ ଦେହରୁ ନିଷ୍କ୍ରାନ୍ତ ହୋଇ ସେଠାରୁ ଶୀଘ୍ର ପ୍ରସ୍ଥାନ କଲେ ।

ହେ ଆର୍ଯ୍ୟ ! ଅନନ୍ତର ସମସ୍ତ ସୈନ୍ୟ "ଅହୋ ଧିକ୍ ଭୀମସେନ ହସ୍ତିଦ୍ୱାରା ନିହତ ହେଲେ", ଏହିପରି ମହାଘୋର ଶବ୍ଦ କଲେ ।

ହେ ରାଜନ୍ ! ପାଣ୍ଡବସେନାମାନେ ସେହି ହସ୍ତିଦ୍ୱାରା ତ୍ରାସିତ ହୋଇ ଯେଉଁଠାରେ ଭୀମ ଥିଲେ, ସେହି ସ୍ଥାନକୁ ଶୀଘ୍ର ଗମନ କଲେ । ଅନନ୍ତର ରାଜା ଯୁଧିଷ୍ଠିର ବୃକୋଦରଙ୍କୁ ନିହତ ମନେ କରି ପାଞ୍ଚାଳମାନଙ୍କୁ ସଙ୍ଗରେ ଘେନି ଚତୁର୍ଦ୍ଦିଗରୁ ଭଗଦତ୍ତଙ୍କୁ ପରିବେଷ୍ଟନ କଲେ । ଶତ୍ରୁତାପନ ରଥିଶ୍ରେଷ୍ଠମାନେ ରଥସମୂହଦ୍ୱାରା ରାଜା ଭଗଦତ୍ତଙ୍କୁ ବେଷ୍ଟନ କରି ତାହାଙ୍କ ଉପରକୁ ଶତସହସ୍ର ତୀକ୍ଷ୍ଣ ଶର ନିକ୍ଷେପ କରିବାରେ ପ୍ରବୃତ୍ତ ହେଲେ । ପର୍ବତେଶ୍ୱର ଭଗଦତ୍ତ ଅଙ୍କୁଶଦ୍ୱାରା ସେହି ବାଣମାନ ନିବାରଣ କରି ଗଜଦ୍ୱାରା ପାଣ୍ଡବ ଓ ପାଞ୍ଚାଳ ସେନାମାନଙ୍କୁ ଅତି ପୀଡ଼ିତ କଲେ ।

ହେ ନରନାଥ ! ଗଜଯୁଦ୍ଧରେ ବୃଦ୍ଧ ଭଗଦତ୍ତଙ୍କର ଅତିଶୟ ଅଦ୍ଭୁତ ବିକ୍ରମ ଦେଖିଲୁଁ । ଦଶାର୍ଣ୍ଣାଧିପତି ଚଞ୍ଚଳ ଓ ବକ୍ରଗାମୀ ମତ୍ତହସ୍ତିଦ୍ୱାରା ପ୍ରାଗ୍‌ଜ୍ୟୋତିଷପତିଙ୍କୁ ଆକ୍ରମଣ କଲେ । ଯେପରି ପୂର୍ବକାଳରେ ପକ୍ଷଯୁକ୍ତ ସବୃକ୍ଷ ପର୍ବତଦ୍ୱୟର ପରସ୍ପର ଯୁଦ୍ଧ ହୋଇଥିଲା, ତଦ୍ରୂପ ସେହି ଭୀଷଣମୂର୍ତ୍ତି ନାଗଦ୍ୱୟଙ୍କର ଯୁଦ୍ଧ ହେଲା । ପ୍ରାଗ୍‌ଜ୍ୟୋତିଷପତିଙ୍କର ନାଗ ପ୍ରଥମରେ ନିବୃତ୍ତ ଓ ଅପସୃତ ହୋଇ ତତ୍ପରେ ଗମନପୂର୍ବକ ଦଶାର୍ଣ୍ଣାଧିପତିଙ୍କ ନାଗର ପାର୍ଶ୍ୱ ପ୍ରଦେଶରେ ଆଘାତ କରି ତାହାକୁ ନିପାତିତ କଲା ।

ସେହି ହସ୍ତିର ପତନକାଳରେ ଦଶାର୍ଣ୍ଣପତିଙ୍କଠାରୁ ଆସନ ପ୍ରଚଳିତ ହୁଅନ୍ତେ ତତ୍‌କ୍ଷଣାତ୍ ଭଗଦତ୍ତ ସୂର୍ଯ୍ୟରଶ୍ମିପ୍ରଭ ତୀକ୍ଷ୍ଣ ସପ୍ତତୋମର ଦ୍ୱାରା ସେ ନାଗସ୍ଥିତ ଶତ୍ରୁଙ୍କୁ ସଂହାର କଲେ । ରାଜା ଯୁଧିଷ୍ଠିର ତାହାଙ୍କର ମହତ୍‌ରଥିସୈନ୍ୟଙ୍କୁ ବିଭାଗପୂର୍ବକ ରାଜା ଭଗଦତ୍ତଙ୍କୁ ଚତୁର୍ଦ୍ଦିଗରୁ ଅବରୋଧ କଲେ । ଯେପରି ପର୍ବତ ଉପରେ ଥିବା ବନରେ ଅଗ୍ନି ପ୍ରଜ୍ୱଳିତ ହୋଇ ଶୋଭା ପାଏ, ସେହିପରି ସେହି କୁଞ୍ଜରସ୍ଥ ଭଗଦତ୍ତ ରଥୀମାନଙ୍କଦ୍ୱାରା ଚତୁର୍ଦ୍ଦିଗରୁ ସମାବୃତ୍ତ ହୋଇ ଶୋଭମାନ ହେଲେ । ପରସ୍ପର ସଂଶ୍ଳିଷ୍ଟ ହୋଇ ଯେଉଁ ଉଗ୍ରଧନ୍ୱା ରଥୀମାନେ ପୁନଃ ପୁନଃ ଶରବର୍ଷଣ କରୁଥିଲେ, ସେହି ରଥିମଣ୍ଡଳୀମଧ୍ୟରେ ଭଗଦତ୍ତ ଗଜାରୋହଣପୂର୍ବକ ଭ୍ରମଣ କଲେ । ଅନନ୍ତର ରାଜା ପ୍ରାଗ୍‌ଜ୍ୟୋତିଷାଧିପତି ସେହି ମହାନାଗକୁ ଯୁଯୁଧାନଙ୍କ ପ୍ରତି ଚାଳିତ କଲେ । ତହୁଁ ସେହି ମହାନାଗ ଶୁଣ୍ଡଦ୍ୱାରା ଶିନିପୌତ୍ରର ରଥ ବେଷ୍ଟନ କରି ପ୍ରକ୍ଷେପ କଲା । ଯୁଯୁଧାନ ସେଠାରୁ ଅତିବେଗରେ ପଳାୟନ କଲେ ।

ଅନନ୍ତର ତାହାଙ୍କର ସାରଥି ସିନ୍ଧୁଦେଶୀୟ ମହାକାୟ ଅଶ୍ୱମାନଙ୍କର ଗତିକୁ ନିବୃତ୍ତ କରି ଲମ୍ଫପ୍ରଦାନପୂର୍ବକ ସାତ୍ୟକି ରଥରେ ଆରୋହଣ କଲେ । ହସ୍ତୀ ସେହି ଅବସର ମଧ୍ୟରେ ଶୀଘ୍ର ରଥମଣ୍ଡଳରୁ ନିଷ୍କ୍ରାନ୍ତ ହୋଇ ଚତୁର୍ଦ୍ଦିଗରେ ରଥସ୍ଥ ରାଜାମାନଙ୍କୁ ନିକ୍ଷେପ କଲା । ସମସ୍ତ ରାଜା ସେହି ଆଶୁଗାମୀ ହସ୍ତିଦ୍ୱାରା ତାସିତ ହୋଇ ସେହି ଏକମାତ୍ର ହସ୍ତୀକୁ ଶତଶତ ହସ୍ତୀ ବୋଲି ବୋଧ କଲେ । ଯେପରି ଦାନବମାନେ ଐରାବତସ୍ଥ ଦେବରାଜଙ୍କଦ୍ୱାରା ପୀଡ଼ିତ ହୋଇଥିଲେ, ସେହିପରି ସମସ୍ତ ପାଣ୍ଡବପକ୍ଷୀୟ ସୈନ୍ୟ ଗଜାରୋହୀ ଭଗଦତ୍ତଙ୍କଦ୍ୱାରା ପୀଡ଼ିତ ହେଲେ । ଯେତେବେଳେ ପାଞ୍ଚାଳମାନେ ଇତସ୍ତତଃ ପଳାୟନ କଲେ, ତେତେବେଳେ ସେମାନଙ୍କର ହସ୍ତୀ ଓ ଅଶ୍ୱମାନଙ୍କର ଅତି ମହାନ୍ ଭୟାନକ ଶବ୍ଦ ହେଲା ।

ପାଣ୍ଡୁ ସେନାମାନଙ୍କୁ ଭଗଦତ୍ତଙ୍କଦ୍ୱାରା ଏପରି ଯୁଦ୍ଧରେ ବିଧ୍ୱସ୍ତ ହେବାର ଦେଖି ଭୀମସେନ ଅତି କ୍ରୋଧଯୁକ୍ତ ହୋଇ ପୁନର୍ବାର ପ୍ରାଗ୍‌ଜ୍ୟୋତିଷପତି ଭଗଦତ୍ତଙ୍କ ପ୍ରତି ଧାବମାନ ହେଲେ । ପ୍ରାଗ୍‌ଜ୍ୟୋତିଷପତି ଭଗଦତ୍ତଙ୍କ ହସ୍ତୀ ସ୍ୱକୀୟ ଶୁଣ୍ଡନିଃସୃତ ବାରିଦ୍ୱାରା ଭୀମଙ୍କ ଅଶ୍ୱମାନଙ୍କୁ ପରିଷିକ୍ତ କରି ତ୍ରାସିତ କଲା । ତହୁଁ ଅଶ୍ୱମାନେ ଭୀମସେନଙ୍କୁ ଘେନି ସେଠାରୁ ପଳାୟନ କଲେ । ତଦନନ୍ତର ଆକୃତିଙ୍କ ପୁତ୍ର ଯମସଦୃଶ ହୋଇ ରଥରେ ଆରୋହଣପୂର୍ବକ ଶୀଘ୍ର ଶରବର୍ଷଣ ଦ୍ୱାରା ଭଗଦତ୍ତଙ୍କୁ ପରିଷିକ୍ତ ପୂର୍ବକ ଧାବମାନ ହେଲେ । ତହୁଁ ଉତ୍ତମଦେହସନ୍ଧିବିଶିଷ୍ଟ ପର୍ବତନାଥ ଭଗଦତ୍ତ ଏକଗୋଟି ନତପର୍ବ ଶରଦ୍ୱାରା ରୁଚପର୍ବାଙ୍କୁ ଯମସଦନକୁ ପ୍ରେରଣ କଲେ ।

ସେହି ବୀର ନିପତିତ ହେଲାରୁ ସୁଭଦ୍ରାସୁତ, ଦ୍ରୌପଦେୟଗଣ, ଚେକିତାନ, ଧୃଷ୍ଟକେତୁ ଓ ଯୁଯୁତ୍ସୁ ଭଗଦତ୍ତଙ୍କ ହସ୍ତୀକୁ ଅତିଶୟ ପୀଡ଼ିତ କରିବାରେ ପ୍ରବୃତ୍ତ ହେଲେ । ସେମାନେ ହସ୍ତୀକୁ ବିନାଶ କରିବା ଅଭିଳାଷରେ ଭୈରବନିନାଦପୂର୍ବକ ସେହି ହସ୍ତୀଉପରକୁ ମେଘଜଳଧାରା ସେଚନ କଲା ପ୍ରାୟ ଶରଧାରା ବର୍ଷଣ କଲେ । ଅନନ୍ତର ରଣପଣ୍ଡିତ ଭଗଦତ୍ତ ଅଙ୍କୁଶପାର୍ଷ୍ଣି ଓ ଅଙ୍ଗୁଷ୍ଠଦ୍ୱାରା ହସ୍ତୀକୁ ଉତ୍ତେଜନା କରି ଚାଳିତ କଲାରୁ ସେହି ହସ୍ତୀ ସ୍ତବ୍ଧକର୍ଣ୍ଣ ଓ ସ୍ତବ୍ଧଚକ୍ଷୁ ହୋଇ ଶୁଣ୍ଡ ପ୍ରସାରିତ କରି ଧାବିତଗମନପୂର୍ବକ ଯୁଯୁତ୍ସୁଙ୍କ ଅଶ୍ୱଉପରେ ପଦ ରଖି ତାହାଙ୍କ ସାରଥିକୁ ମର୍ଦ୍ଦିତ କଲା ।୭୧।

ହେ ରାଜେନ୍ଦ୍ର ! ତହୁଁ ଯୁଯୁତ୍ସୁ ଉଦ୍ୱିଗ୍ନଚିତ୍ତ ହୋଇ ରଥରୁ ଅପସୃତ ହେଲେ । ପରନ୍ତୁ ପାଣ୍ଡବ ପକ୍ଷର ଅନ୍ୟାନ୍ୟ ଯୋଧବୃନ୍ଦ ହସ୍ତୀର ବିନାଶ ଇଚ୍ଛା କରି ଭୀଷଣ ସିଂହନାଦପୂର୍ବକ ତାହାପ୍ରତି ଶରବର୍ଷଣ କଲେ । ଆପଣଙ୍କ ପୁତ୍ର ଯୁଯୁତ୍ସୁ ତ୍ରସ୍ତ ଓ ଭୀତ ହୋଇ ଲମ୍ଫପ୍ରଦାନପୂର୍ବକ ଅଭିମନ୍ୟୁଙ୍କ ରଥରେ ଆରୋହଣ କଲେ । ୫୮ । ଯେପରି ସୂର୍ଯ୍ୟ ଭୁବନମଧ୍ୟରେ ରଶ୍ମିଜାଳ ମୋଚନ କରି ପ୍ରଦୀପ୍ତ ହୁଅନ୍ତି, ସେହିପରି ରାଜା ଭଗଦତ୍ତ ଗଜସ୍ଥ ହୋଇ ଶତ୍ରୁମଣ୍ଡଳୀରେ ଶରଜାଳ ମୋଚନପୂର୍ବକ ଦୀପ୍ତି ପାଇଲେ । ୫୯ । ପରନ୍ତୁ ଅଭିମନ୍ୟୁ ବାରଗୋଟି ବାଣଦ୍ୱାରା, ଯୁଯୁତ୍ସୁ ଦଶଗୋଟି ଓ ଦ୍ରୌପଦେୟ-ମାନେ ଓ ଧୃଷ୍ଟକେତୁ ତିନି ତିନିଗୋଟି ବାଣଦ୍ୱାରା ତାହାଙ୍କୁ ବିଦ୍ଧ କଲେ ।୬୦।

ମହାମେଘ ସୂର୍ଯ୍ୟରଶ୍ମିଦ୍ୱାରା ଗ୍ରଥିତ ହେଲା ପ୍ରାୟ ସେହି ହସ୍ତୀ ଯୋଦ୍ଧାମାନଙ୍କର ଅତି ଯତ୍ନନିକ୍ଷିପ୍ତ ବାଣସମୂହରେ ଗ୍ରଥିତ ହୋଇ ଶୋଭା ପାଇଲା ।୬୧। ଶତ୍ରୁବାଣଦ୍ୱାରା ମର୍ଦ୍ଦିତ ହୋଇ ସୁଦ୍ଧା * ନିଯନ୍ତାର କୌଶଳ ଓ ପ୍ରଯତ୍ନରେ ଚାଳିତ ହେବାରୁ ସେହି ହସ୍ତୀ ଶତ୍ରୁମାନଙ୍କୁ ବାମ ଓ ଦକ୍ଷିଣ ପାର୍ଶ୍ୱରେ ନିକ୍ଷେପ କଲା । ୬୨ । ଯେପରି ଅରଣ୍ୟରେ ଗୋପାଳ ପଶୁମାନଙ୍କୁ ଦଣ୍ଡଦ୍ୱାରା ତାଡ଼ିତ କରେ, ସେହିପରି ଭଗଦତ୍ତ ବାରମ୍ବାର ସେହି ପାଣ୍ଡବ ସୈନ୍ୟମାନଙ୍କୁ ତାଡ଼ିତ କଲେ । ୬୩ । ଶ୍ୟେନପକ୍ଷୀ ଶୀଘ୍ର ଆକ୍ରମଣ କଲେ ଯେପରି କାକମାନଙ୍କ ମଧ୍ୟରେ ଶବ୍ଦ ହୁଏ, ପାଣ୍ଡବ ସୈନ୍ୟମାନଙ୍କ ପଳାୟନ ସମୟରେ ସେହିପରି ଅତିବ ଶବ୍ଦ ହେଲା । ୬୪ ।

ହେ ନୃପ ! ସେହି ସମୟରେ ଉକ୍ତ ମହାଗଜ ଅଙ୍କୁଶାହତ ହୋଇ ପୂର୍ବକାଳୀନ ପକ୍ଷଯୁକ୍ତ ପର୍ବତଶ୍ରେଷ୍ଠ ତୁଲ୍ୟ ମହାବେଗରେ ଗମନ କଲା । ବଣିକ୍‌ମାନେ କ୍ଷୁଭିତ ସମୁଦ୍ର ଦେଖି ଯେପରି ଭୀତ ହୁଅନ୍ତି, ଶତ୍ରୁମାନେ ସେହି ମହାଗଜକୁ ଦେଖି ତଦ୍ରୂପ ତ୍ରାସିତ ହେଲେ । ୬୫ । ତତ୍ପରେ ସେହି କ୍ଷତ୍ରିୟମାନଙ୍କ ଯୁଦ୍ଧରେ ହସ୍ତୀ, ଅଶ୍ୱ, ରଥ ଓ ପାର୍ଥିବମାନେ ଭୟରେ ପଳାୟନ କଲେ ! ପଳାୟନ କାଳରେ ସେମାନଙ୍କର ଅତି ଭୟାନକ ଶବ୍ଦଦ୍ୱାରା ଭୂମଣ୍ଡଳ, ଆକାଶ ମଣ୍ଡଳ, ସ୍ୱର୍ଗ, ଦିକ୍ ଓ ବିଦିକ୍— ସମାବୃତ ହେଲା । ୬୬ ।

* ( ନିଯନ୍ତା—ହସ୍ତିପକ ବା ମାହୁନ୍ତ )

ପୂର୍ବେ ଯୁଦ୍ଧକାଳରେ ବଜ୍ରୋଚନ ଯେପରି ସୁରକ୍ଷିତ ଦେବ-ସେନାମାନଙ୍କୁ ବିଲୋଡ଼ନ କରିଥିଲେ, ତଦ୍ରୂପ ରାଜା ଭଗଦତ୍ତ ସେହି ନାଗ-ଶ୍ରେଷ୍ଠଦ୍ୱାରା ଶତ୍ରୁ ସୈନ୍ୟମାନଙ୍କୁ ବିଲୋଡ଼ନ କଲେ । ୬୭ । ସେହି ସମୟରେ ବାୟୁ ବେଗରେ ବହିବାରୁ ଧୂଳିଦ୍ୱାରା ଆକାଶ ଓ ସୈନ୍ୟମାନେ ପୁନଃ ପୁନଃ ସମାଚ୍ଛନ୍ନ ହେଲେ ଓ ସେହି ହସ୍ତୀ ଦ୍ରୁତପଦରେ ଚତୁର୍ଦ୍ଦିଗରେ ଧାବିତ ହେବାରୁ ସେହି ଗୋଟିଏ ହସ୍ତୀକୁ ଅନେକଗୋଟି ଗଜଯୂଥ ଭୁଲ୍ଲ ମନେ କଲେ । ୬୮ ।



# ୨୨ ଅଧ୍ୟାୟ

ସଞ୍ଜୟ କହିଲେ—ହେ ମହାବାହୋ ! ଯୁଦ୍ଧରେ ପାର୍ଥ ଯେ ଯେ କାର୍ଯ୍ୟ କଲେ ବୋଲି ଆପଣ ଯାହା ମୋତେ ପଚାରିଅଛନ୍ତି, ସେସବୁ ମୁଁ କହୁଅଛି; ଆପଣ ଶୁଣିବା ହେଉନ୍ତୁ । ୧ । ଭଗଦତ୍ତ ଯୁଦ୍ଧରେ ଏହିପରି କାର୍ଯ୍ୟ କଲାରୁ କୁନ୍ତୀପୁତ୍ର ଅର୍ଜ୍ଜୁନ ଧୂଳିପଟଳ ଦେଖି ଓ ଗଜନିଃସ୍ୱନ ଶୁଣି କୃଷ୍ଣଙ୍କୁ କହିଲେ । ୨ । ହେ ମଧୁସୂଦନ ! ଆମ୍ଭେ ବୋଧ କରୁଁ ପ୍ରାଗ୍-ଜ୍ୟୋତିଷ ରାଜା ତ୍ୱରମାଣ ହୋଇ ଗଜଦ୍ୱାରା ସୈନ୍ୟମାନଙ୍କୁ ମର୍ଦ୍ଦିତ କରି ନିଷ୍କ୍ରାନ୍ତ ହେଲେ । ଏହି ନିଃସ୍ୱନ ନିଶ୍ଚୟ ସେହି ଗଜର ଅଟେ । ୩ । ଆମ୍ଭ ମତରେ ଭଗଦତ୍ତ ରାଜା ଗଜଯୁଦ୍ଧ କୌଶଳରେ ଇନ୍ଦ୍ର ଅପେକ୍ଷା ନ୍ୟୂନ ନୁହନ୍ତି । ପୃଥିବୀରେ ଗଜଯୁଦ୍ଧ ବିଶାରଦମାନଙ୍କ ମଧ୍ୟରେ ଭଗଦତ୍ତ ପ୍ରଥମ ବା ଦ୍ୱିତୀୟସ୍ଥାନୀୟ ଅଟନ୍ତି । ୪ । ତାହାଙ୍କ ହସ୍ତୀ ମଧ୍ୟ ଶ୍ରେଷ୍ଠ ଅଟେ । ଯୁଦ୍ଧରେ ସେହି ହସ୍ତୀର ପ୍ରତିଯୋଦ୍ଧା ହସ୍ତୀ ନାହିଁ । ସେହି ହସ୍ତୀ ସର୍ବ ଶସ୍ତ୍ରର ଅଗମ୍ୟ, କୃତକର୍ମା ଓ ଅଶ୍ରାନ୍ତ ଅଟେ । ୫ ।

ହେ ଅନଘ ! ସେ ସମସ୍ତ ଶସ୍ତ୍ରପ୍ରହାର ଓ ଅଗ୍ନିସ୍ପର୍ଶ ସହିପାରେ । ସେହି ଗୋଟିକ ହସ୍ତୀ ଆଜି ସମୁଦାୟ ପାଣ୍ଡବ ସୈନ୍ୟଙ୍କୁ ବିନାଶ କରିବ । ।୬। ଆମ୍ଭ ଦୁଇଜଣଙ୍କ ବ୍ୟତୀତ ସେହି ହସ୍ତୀକୁ ଅନ୍ୟ କେହି ନିବାରଣ କରିପାରିବେ ନାହିଁ । ଅତଏବ ଯେଉଁ ସ୍ଥାନରେ ପ୍ରାଗ୍ ଜ୍ୟୋତିଷପତି ଅଛନ୍ତି ତୁମ୍ଭେ ଶୀଘ୍ର ସେହି ସ୍ଥାନକୁ ରଥ ନିଅ । ୭ । ବୟଃକ୍ରମ ଓ ହସ୍ତିବଳ

ହେତୁରୁ ବର୍ଷିତ ସେହି ଭଗଦତ୍ତଙ୍କୁ ଅଦ୍ୟ ଆମ୍ଭେ ଇନ୍ଦ୍ରଙ୍କ ପ୍ରିୟ ଅତିଥି କରି ପଠାଇ ଦେବୁଁ ଅର୍ଥାତ୍ ଯମାଳୟକୁ ପ୍ରେରଣ କରିବୁଁ । ୮ ।

କୃଷ୍ଣ ଅର୍ଜୁନଙ୍କ ବଚନ ଶୁଣିବା ମାତ୍ରେ ଯେଉଁଠାରେ ଭଗଦତ୍ତ ପାଣ୍ଡବସେନାଙ୍କୁ ମର୍ଦ୍ଦନ କରୁଥିଲେ, ସେହିଠାକୁ ଯିବା ନିମନ୍ତେ ରଥ ଚଳାଇଲେ । ୯ । ତାହାଙ୍କୁ ଯିବାର ଦେଖି ଚତୁର୍ଦ୍ଦଶ ସହସ୍ର ସଂଶପ୍ତକ ମହାରଥମାନେ ତାହାଙ୍କୁ ପଛରୁ ଆହ୍ୱାନ କଲେ । ୧୦ । ସେହି ଚତୁର୍ଦ୍ଦଶ ସହସ୍ର ମହାରଥ ମଧ୍ୟରୁ ଦଶ ସହସ୍ର ତ୍ରିଗର୍ତ୍ତ ଦେଶୀୟ ଓ ଚାରିସହସ୍ର ବାସୁଦେବଙ୍କର ଅନୁଗତ ଥିଲେ । ୧୧ ।

ହେ ଆର୍ଯ୍ୟ ! ଏକ ଦିଗରୁ ଭଗଦତ୍ତ ସୈନ୍ୟମାନଙ୍କୁ ବିମର୍ଦ୍ଦନ କରୁଅଛି ଓ ଅପର ଦିଗରୁ ସଂଶପ୍ତକମାନେ ଅର୍ଜୁନଙ୍କୁ ଆହ୍ୱାନ କରୁଅଛନ୍ତି । ଏହି ହେତୁରୁ ଅର୍ଜୁନ ଚିନ୍ତା କଲେ ଏହିଠାରେ ରହିବି କିମ୍ବା ଯୁଧିଷ୍ଠିରଙ୍କ ନିକଟକୁ ଗମନ କରିବି ? ଏହି ଦୁଇ କର୍ମ ମଧ୍ୟରୁ କେଉଁ କର୍ମ ଶ୍ରେୟ ? ଏହିପରି ଚିନ୍ତା କରି ତାହାଙ୍କର ଚିତ୍ତ ଦ୍ୱିଧା ହେଲା ।୧୩। ହେ କୁରୁପ୍ରବର ! ଅର୍ଜୁନ ଏହିପରି ବିଚାର କରି ସ୍ଥିର କଲେ ଯେ, ସେ ସଂଶପ୍ତକମାନଙ୍କୁ ବଧ କରିବେ । ୧୪ ।

କପିପ୍ରବର-କେତନ, ବାସବାତ୍ମଜ ଅର୍ଜୁନ ସହସ୍ର ସହସ୍ର ସଂଶପ୍ତକ ରଥିମାନଙ୍କ ବିନାଶାର୍ଥ ଯୁଦ୍ଧରେ ସହସା ପ୍ରବୃତ୍ତ ହେଲେ । ଅର୍ଜୁନଙ୍କ ବଧୋପାୟରେ ଦୁର୍ଯ୍ୟୋଧନ ଓ କର୍ଣ୍ଣ, ଏହି ଦୁହିଁଙ୍କ ମନରେ ପୂର୍ବୋକ୍ତ ପ୍ରକାର ବୁଦ୍ଧି ଜାତ ହୋଇଥିଲା । ତେଣୁ ପ୍ରୋକ୍ତ ଘଟନାଦ୍ୱୟ ଦ୍ୱାରା ଅର୍ଜୁନଙ୍କ ମନରେ ଦ୍ୱୈଧ ଜନ୍ମାଇଲେ । ୧୬ । କିନ୍ତୁ ଅର୍ଜୁନ ଏହି ଦ୍ୱୈଧଭାବରେ ଦୋଳାୟମାନ ହୋଇ ନରଶ୍ରେଷ୍ଠ ସଂଶପ୍ତକମାନଙ୍କୁ ବଧ କରିବା ଦ୍ୱାରା ଦୁର୍ଯ୍ୟୋଧନ ଓ କର୍ଣ୍ଣ, ଏହି ଦୁହିଁଙ୍କର କଳ୍ପନାକୁ ବ୍ୟର୍ଥ କଲେ । ୧୭ ।

ଅନନ୍ତର ସଂଶପ୍ତକ ମହାରଥିମାନେ ଶତସହସ୍ର ନତପର୍ବ ଶରମାନ ଅର୍ଜୁନଙ୍କ ଉପରକୁ ନିକ୍ଷେପ କଲେ । ୧୮ । ହେ ରାଜନ୍ !

କୁନ୍ତୀପୁତ୍ର ଅର୍ଜ୍ଜୁନ, ଜନାର୍ଦ୍ଦନ କୃଷ୍ଣ ଅଶ୍ୱ ଓ ରଥସବୁ ସଂଶପ୍ତକମାନଙ୍କ ବାଣରେ ଆଚ୍ଛନ୍ନ ହେବାରୁ ଅଦୃଶ୍ୟ ହେଲେ । ଯେତେବେଳେ ଜନାର୍ଦ୍ଦନଙ୍କ ଅଙ୍ଗରୁ ସ୍ୱେଦ ନିଃସୃତ ହେଲା ଓ ସେ ମୋହପ୍ରାପ୍ତ ହେଲେ, ସେତେବେଳେ ପାର୍ଥ ବ୍ରହ୍ମାସ୍ତ୍ର ଦ୍ୱାରା ସଂଶପ୍ତକମାନଙ୍କୁ ବଧ କରିବାରେ ପ୍ରବୃତ୍ତ ହେଲେ ।୨୦। ଅର୍ଜ୍ଜୁନଙ୍କର ସେହି ବ୍ରହ୍ମାସ୍ତ୍ର ଦ୍ୱାରା ସଂଶପ୍ତକ ଯୋଦ୍ଧାମାନଙ୍କର ଧନୁ, ଶର, ଜ୍ୟା, ତଳଯୁକ୍ତ ଶତଶତ ଭୁଜ ଓ ପତାକାସମୂହ, ଅଶ୍ୱରାଜି, ସାରଥିଗଣ ଓ ରଥିମାନେ ଭୂପୃଷ୍ଠରେ ପତିତ ହେଲେ । ୨୧ । ବୃକ୍ଷଯୁକ୍ତ ପର୍ବତ-ଶିଖର ତୁଲ୍ୟ ଓ ମେଘସଦୃଶ ସୁସଜ୍ଜିତ ହସ୍ତିଗଣ ପାର୍ଥଙ୍କ ଶରରେ ଆରୋହୀ ସହ ଆହତ ହୋଇ ଭୂତଳଶାୟୀ ହେଲେ । ୨୨ ।

ଅର୍ଜ୍ଜୁନଙ୍କ ଶରଦ୍ୱାରା ନିର୍ମଥିତ ହୋଇ ଅଶ୍ୱମାନଙ୍କର କୁଥା, ବଲ୍‌ଗା ଓ ଭାଣ୍ଡ ସମସ୍ତ ଛିନ୍ନ ହୋଇଗଲା ଓ ଆରୋହୀ ସହ ଅଶ୍ୱମାନେ ଗତାସୁ ହୋଇ ଭୂତଳରେ ପତିତ ହେଲେ । ୨୩ । କରୀଟୀଙ୍କର ଭଲ୍ଲାସ୍ତ୍ରଦ୍ୱାରା ବୀରମାନଙ୍କର ଋଷ୍ଟି, ପ୍ରାସ, ଅସି, ନଖର, ମୁଦ୍‌ଗର ଓ ପରଶ୍ୱଧଯୁକ୍ତ ବାହୁସବୁ ଛିନ୍ନ ହୋଇ ପତିତ ହେଲା । ୨୪ । ହେ ଆର୍ଯ୍ୟ ! ନବୋଦିତ ଆଦିତ୍ୟସଦୃଶ ଅମ୍ବୁଜ ଓ ଚନ୍ଦ୍ରତୁଲ୍ୟ ରୂପ-ବିଶିଷ୍ଟ ନରମସ୍ତକ ସବୁ ଅର୍ଜ୍ଜୁନଙ୍କ ଶରସମୂହରେ ଛିନ୍ନ ହୋଇ ଭୂତଳଗାମୀ ହେଲା ।୨୫। ଫାଲ୍‌ଗୁନି କ୍ରୁଦ୍ଧ ହୋଇ ଶତ୍ରୁ ସଂହାର କରନ୍ତେ ପ୍ରାଣିବିନାଶ-କାରୀ ନାନାରୂପ ଶରସମୂହ ଦ୍ୱାରା ଶତ୍ରୁସୈନ୍ୟମାନେ ଭୂଷିତ ହୋଇ ଶୋଭା ପାଇଲେ । ୨୬ । ହସ୍ତୀ ପଦ୍ମବନକୁ ମନ୍ଥନ କଲା ପ୍ରାୟ ଧନଞ୍ଜୟ ଶତ୍ରୁ ସୈନ୍ୟମାନଙ୍କୁ କ୍ଷୋଭିତ କରିବାରୁ ଲୋକେ ତାହାଙ୍କୁ "ସାଧୁ ସାଧୁ" ବଚନ ଦ୍ୱାରା ପୂଜା କଲେ । ୨୭ ।

ଲକ୍ଷ୍ମୀପତି କୃଷ୍ଣ ଇନ୍ଦ୍ରତୁଲ୍ୟ ପାର୍ଥଙ୍କର ସେହି ଅଦ୍ଭୁତ କର୍ମ ଦେଖି ପରମବିସ୍ମିତ ହେଲେ ଓ କୃତାଞ୍ଜଳି ହୋଇ ତାହାଙ୍କୁ କହିଲେ, ହେ ପାର୍ଥ ! ତୁମ୍ଭେ ଆଜି ସମରରେ ଯେଉଁ କାର୍ଯ୍ୟ କଲ, ତାହା ମୋ ବିବେଚନାରେ ଇନ୍ଦ୍ର, ଯମ ଓ କୁବେରଙ୍କର ଦୁଷ୍କର ଅଟେ । ୨୮ । ଶତସହସ୍ର ସଂଶପ୍ତକ ମହାରଥିମାନେ ତୁମ୍ଭ ଶରଦ୍ୱାରା ଯୁଗପତ୍ ସମରରେ ପତିତ ହେବାର ଦେଖିଲୁଁ । ୩୦ । ହେ ରାଜନ୍ ! ଅନନ୍ତର ଯେଉଁ ସମସ୍ତ ସଂଶପ୍ତକ

ସେଠାରେ ଉପସ୍ଥିତ ଥିଲେ, ସେମାନଙ୍କୁ ଅର୍ଜ୍ଜୁନ ସଂହାର କରି କୃଷ୍ଣଙ୍କୁ କହିଲେ ଯେ, ଭଗଦତ୍ତଙ୍କ ନିକଟକୁ ରଥ ଚଳାଅ । ୩୧ ।

---

# ୨୮ ଅଧ୍ୟାୟ

ସଞ୍ଜୟ କହିଲେ—ଅନନ୍ତର ଅର୍ଜ୍ଜୁନ ଦ୍ରୋଣସୈନ୍ୟଙ୍କ ନିକଟକୁ ଗମନ କରିବାକୁ ଇଚ୍ଛା କରିବାରୁ ତାହାଙ୍କର ମନୋବେଗଗାମୀ ହେମ-ଭୂଷିତ ଶ୍ୱେତବର୍ଣ୍ଣ ଅଶ୍ୱମାନଙ୍କୁ କୃଷ୍ଣ ପରିଚାଳନା କଲେ । ୧ । ଦ୍ରୋଣଙ୍କ ଦ୍ୱାରା ତାପିତ ହେଉଥିବା ଯୁଧିଷ୍ଠିରାଦି ଭ୍ରାତାମାନଙ୍କୁ ସାହାଯ୍ୟ କରିବା ନିମନ୍ତେ ଅର୍ଜ୍ଜୁନ ପ୍ରସ୍ଥାନ କରିବାର ଦେଖି ସୁଶର୍ମା ଯୁଦ୍ଧାର୍ଥୀ ହୋଇ ଆପଣା ଭାଇମାନଙ୍କ ସହିତ ଅର୍ଜ୍ଜୁନଙ୍କ ପଶ୍ଚାଦ୍‌ଗମନ କଲେ । ୨ ।

ତତ୍ପରେ ଶ୍ୱେତବାହନ ଧନଞ୍ଜୟ କୃଷ୍ଣଙ୍କୁ କହିଲେ, ହେ ଅଚ୍ୟୁତ ! ଏଣେ ସୁଶର୍ମା ଓ ତାହାଙ୍କ ଭାଇମାନେ ଯୁଦ୍ଧ ନିମନ୍ତେ ଆମ୍ଭଙ୍କୁ ଆହ୍ୱାନ କରୁଅଛନ୍ତି । ୩ । ହେ ମଧୁସୂଦନ ! ଉତ୍ତର ଦିଗରେ ଆମ୍ଭମାନଙ୍କର ସୈନ୍ୟମାନେ ଧ୍ୱଂସପ୍ରାପ୍ତ ହେଉଅଛନ୍ତି । ସଂଶପ୍ତକମାନେ ଏହାଦ୍ୱାରା ଆମ୍ଭର ମନକୁ ଆଜି ଦ୍ୱୈଧୀଭୂତ କଲେ । ୪ । ଆମ୍ଭେ ବର୍ତ୍ତମାନ ସଂଶପ୍ତକମାନଙ୍କୁ ହନନ କରିବୁଁ କି ଶତ୍ରୁପୀଡ଼ିତ ସ୍ୱଜନମାନଙ୍କୁ ରକ୍ଷା କରିବୁଁ, ଏହି ଉଭୟ କାର୍ଯ୍ୟ ମଧ୍ୟରେ ଯାହା ଶ୍ରେୟସ୍କର, ତାହା ବିବେଚନା କରି କହ । ୫ ।

କୃଷ୍ଣ ଅର୍ଜ୍ଜୁନଙ୍କର ଏହି ବାକ୍ୟ ଶ୍ରବଣ କରି ତ୍ରିଗର୍ତ୍ତାଧିପତି ସୁଶର୍ମା ଯେଉଁ ଦିଗରେ ଅର୍ଜ୍ଜୁନଙ୍କୁ ଯୁଦ୍ଧ ନିମନ୍ତେ ଆହ୍ୱାନ କରୁଥିଲେ, ସେହିଦିଗକୁ ରଥ ଚାଳନା କଲେ । ୬ । ଅନନ୍ତର ଅର୍ଜ୍ଜୁନ ସାତଗୋଟି ବାଣରେ ସୁଶର୍ମାଙ୍କୁ ବିଦ୍ଧ କରି ଦୁଇଗୋଟି କ୍ଷୁରାସ୍ତ୍ର ଦ୍ୱାରା ତାହାଙ୍କର ରଥ, ଧ୍ୱଜ ଓ ଧନୁକୁ ଛେଦନ କରିପକାଇଲେ । ୭ । ଅର୍ଜ୍ଜୁନ ତ୍ୱରମାଣ ହୋଇ ଛଅଗୋଟି ଶରଦ୍ୱାରା ତ୍ରିଗର୍ତ୍ତାଧିପତିଙ୍କର ଭ୍ରାତାକୁ ଅଶ୍ୱ ଓ ସାରଥି ସହ ଯମାଳୟକୁ ପ୍ରେରଣ କଲେ । ୮ ।

ତଦନନ୍ତର ସୁଶର୍ମା ଅର୍ଜୁନଙ୍କୁ ଲକ୍ଷ୍ୟ କରି ଭୁଜଙ୍ଗୋପମ ଲୌହମୟୀ ଗୋଟିଏ ଶକ୍ତି ନିକ୍ଷେପ କଲେ ଓ କୃଷ୍ଣଙ୍କ ଉପରକୁ ମଧ୍ୟ ଗୋଟିଏ ତୋମର ନିକ୍ଷେପ କଲେ । ୯ । ଅର୍ଜୁନ ତିନି ତିନି ଗୋଟି ଶରଦ୍ୱାରା ସେହି ଶକ୍ତି ଓ ତୋମରକୁ ଛେଦନପୂର୍ବକ ଶରସମୂହ ଦ୍ୱାରା ସୁଶର୍ମାଙ୍କୁ ମୋହିତ କରି ନିବୃତ୍ତ ହେଲେ । ୧୦ । ତହୁଁ ଅର୍ଜୁନ ଭୂରି ଭୂରି ଶରବୃଷ୍ଟି କରୁଁ କରୁଁ ଉଗ୍ରମୂର୍ତ୍ତି ହୋଇ ଇନ୍ଦ୍ରସଦୃଶ ଆଗମନ କଲେ । ସେହି ସମୟରେ ଆପଣଙ୍କ ସୈନ୍ୟ ମଧ୍ୟରୁ କେହି ତାହାଙ୍କୁ ନିବାରଣ କରିପାରିଲେ ନାହିଁ । ୧୧ । ଅଗ୍ନି ଯେପରି ତୃଣକାଷ୍ଠାଦି ଦଗ୍ଧ କରେ, ସେହିପରି ଅର୍ଜୁନ ବାଣଦ୍ୱାରା ସମସ୍ତ କୌରବ୍ୟ ମହାରଥମାନଙ୍କୁ ଦହନ-ପୂର୍ବକ ଆଗମନ କଲେ । ୧୨ । ଲୋକେ ଯେପରି ଅଗ୍ନିସ୍ପର୍ଶ ସହନ କରିପାରନ୍ତି ନାହିଁ, ଧୀମାନ୍ କୁନ୍ତୀପୁତ୍ରଙ୍କ ଅସହ୍ୟ ବେଗକୁ ସେହିପରି ସେମାନେ ସହିପାରିଲେ ନାହିଁ । ୧୩ ।

ଏହିପରି ମହାବୀର ଧନଞ୍ଜୟ ଶରବର୍ଷଣ ଦ୍ୱାରା ସୈନ୍ୟମାନଙ୍କୁ ସମାଚ୍ଛନ୍ନ କରି ଗରୁଡ଼ପକ୍ଷୀ ସଦୃଶ ଅତି ବେଗରେ ପ୍ରାଗ୍‌ଜ୍ୟୋତିଷ-ପତିଙ୍କ ସମ୍ମୁଖରେ ସହସା ଉପସ୍ଥିତ ହେଲେ । ୧୪ । ଅର୍ଜୁନଙ୍କର ଯେଉଁ ଧନୁ ବିଶୁଦ୍ଧ, ଭରତ କୁଳର ମଙ୍ଗଳକାରୀ ଓ ଯେଉଁ ଧନୁ ଯୁଦ୍ଧରେ ଶତ୍ରୁ-ମାନଙ୍କର ଅଶ୍ରୁବର୍ଦ୍ଧନ, ସେହି ଧନୁକୁ କ୍ଷତ୍ରିୟକୁଳ ବିନାଶ ନିମିତ୍ତ ଅର୍ଜୁନ ଗ୍ରହଣ କଲେ । ଆପଣାର ଛଳଦ୍ୟୂତକାରୀ ପୁତ୍ର ହିଁ ସେହି କ୍ଷତ୍ରିୟକୁଳ ବିନାଶର ହେତୁ ଅଟନ୍ତି । ୧୬ ।

ହେ ମହାରାଜ ! ଯେପରି ନୌକା ପର୍ବତରେ ସଂଲଗ୍ନ ହେଲେ ବିଶୀର୍ଣ୍ଣ ହୋଇଯାଏ, ସେହିପରି ପାର୍ଥଦ୍ୱାରା ଅତିଶୟ ବିକ୍ଷୋଭମାଣ ହୋଇ ଆପଣଙ୍କ ସୈନ୍ୟମାନେ ଭଗ୍ନ ହୋଇଗଲେ । ୧୭ । ତତ୍ପରେ ଧନୁର୍ଦ୍ଧାରୀ-ମାନଙ୍କ ମଧ୍ୟରୁ ଦଶସହସ୍ର ବୀର ଯୁଦ୍ଧରେ କ୍ରୂରମୂର୍ତ୍ତି ହୋଇ ଜୟନିମିତ୍ତ ହେଉ ବା ପରାଜୟ ନିମିତ୍ତ ହେଉ, ଅର୍ଜୁନଙ୍କ ଉପରକୁ ଧାବମାନ ହେଲେ । ୧୮ । ଯୁଦ୍ଧରେ ସହନକ୍ଷମ ଅର୍ଜୁନ ତାଦୃଶ ଆପଦରେ ଅଧୀର ଓ ବ୍ୟସ୍ତଚିତ୍ତ ନ ହୋଇ ସେହି ଗୁରୁଭାର ଧାରଣ କଲେ । ୧୯ । ଯେପରି ମଦସ୍ରାବୀ ଷଷ୍ଟିବର୍ଷବୟସ୍କ ହସ୍ତୀ କ୍ରୁଦ୍ଧ ହୋଇ ନଳବନକୁ ମର୍ଦ୍ଦନ କରେ,

ସେହିପରି ଅର୍ଜ୍ଜୁନ କୁପିତ ହୋଇ ଆପଣଙ୍କର ସୈନ୍ୟମାନଙ୍କୁ ବିମର୍ଦ୍ଦିତ କଲେ । ୨୦ ।

ଏହିପ୍ରକାରେ ସୈନ୍ୟମାନେ ପ୍ରମଥିତ ହୁଅନ୍ତେ ନରାଧିପ ଭଗଦତ୍ତ ଆପଣାର ସେହି ହସ୍ତୀ ସହ ସହସା ଅର୍ଜ୍ଜୁନଙ୍କ ଉପରକୁ ଧାବମାନ ହେଲେ । ୨୧ । ନରଶ୍ରେଷ୍ଠ ଧନଞ୍ଜୟ ରଥଦ୍ୱାରା ସେହି ହସ୍ତୀକୁ ଆକ୍ରମଣ କଲେ । ସେହି ରଥ ଓ ହସ୍ତୀର ତୁମୁଳ ଯୁଦ୍ଧ ଆରମ୍ଭ ହେଲା । ୨୨ । ଧନଞ୍ଜୟ ଓ ଭଗଦତ୍ତ ଏହି ଦୁଇ ମହାବୀର ଶାସ୍ତ୍ରାନୁସାରେ ସଜ୍ଜିତ ରଥ ଓ ଗଜଦ୍ୱାରା ସଂଗ୍ରାମ ମଧ୍ୟରେ ବିଚରଣ କଲେ । ୨୩ । ଅନନ୍ତର ଭଗଦତ୍ତ ମେଘସଦୃଶ ମାତଙ୍ଗବାହନରେ ଅବସ୍ଥିତ ହୋଇ ମେଘବାହନ ଇନ୍ଦ୍ରତୁଲ୍ୟ ଧନଞ୍ଜୟଙ୍କ ଉପରେ ଶରବର୍ଷଣ କଲେ । ୨୪ । ବୀର୍ଯ୍ୟବାନ୍ ବାସବ-ନନ୍ଦନ ଶରବର୍ଷଣ କରି ଭଗଦତ୍ତଙ୍କର ଶରସମୂହ ତାହାଙ୍କଠାରେ ପହୁଞ୍ଚିବା ପୂର୍ବରୁ ସେ ସମସ୍ତଙ୍କୁ କାଟି ପକାଇଲେ । ୨୫ ।

ହେ ଆର୍ଯ୍ୟ ! ଅନନ୍ତର ରାଜା ଭଗଦତ୍ତ ସେହି ଶରବର୍ଷଣକୁ ନିବାରଣ କରି ସ୍ୱୀୟ ଶରସମୂହ ଦ୍ୱାରା ମହାବାହୁ ଅର୍ଜ୍ଜୁନ ଓ କୃଷ୍ଣଙ୍କୁ ବିଦ୍ଧ କଲେ । ୨୬ । ତତ୍ପରେ ମହାଶରଜାଳ ଦ୍ୱାରା କୃଷ୍ଣାର୍ଜ୍ଜୁନଙ୍କୁ ଆଚ୍ଛନ୍ନ କରି ସେମାନଙ୍କର ବଧ ନିମିତ୍ତ ତାହାଙ୍କର ସେହି ନାଗଶ୍ରେଷ୍ଠକୁ ଚାଳନା କଲେ । ୨୭ । ଜନାର୍ଦ୍ଦନ ସେହି କ୍ରୁଦ୍ଧ ଓ ଅନ୍ତକୋପମ ହସ୍ତୀକୁ ବେଗରେ ଆସୁଥିବାର ଦେଖି ଶୀଘ୍ର ବାମଦିଗକୁ ରଥଚାଳନା କଲେ । ୨୮ । ସେହି ସମୟରେ ଧନଞ୍ଜୟ ସେହି ହସ୍ତୀ ଓ ତାହାର ଆରୋହୀ ଭଗଦତ୍ତଙ୍କୁ ପଛରୁ ମୃତ୍ୟୁପାତ୍ର କରି ପାରିଥାନ୍ତେ । କିନ୍ତୁ ଧର୍ମକୁ ସ୍ମରଣ କରି ତାହା କଲେ ନାହିଁ । ୨୯ । ହେ ଆର୍ଯ୍ୟ ! ସେହି ସମୟରେ ସେହି ମହାଗଜ ଅସଂଖ୍ୟ ହସ୍ତୀ, ରଥ ଓ ଅଶ୍ୱମାନଙ୍କୁ ମର୍ଦ୍ଦନ କରି ସେ ସମସ୍ତଙ୍କୁ ବିନାଶ କଲା । ତାହା ଦେଖି ଅର୍ଜ୍ଜୁନ ଅତ୍ୟନ୍ତ କ୍ରୁଦ୍ଧ ହେଲେ । ୩୦ ।

# ୨୯ ଅଧ୍ୟାୟ

ଧୃତରାଷ୍ଟ୍ର କହିଲେ—ହେ ସଞ୍ଜୟ ! ଧନଞ୍ଜୟ କ୍ରୁଦ୍ଧ ହୋଇ ଭଗଦତ୍ତଙ୍କ ସହିତ କିପରି ଯୁଦ୍ଧ କଲେ ଓ ଭଗଦତ୍ତ ଧନଞ୍ଜୟଙ୍କୁ କଅଣ କହିଲେ ? ସେ ସମସ୍ତ ତୁମ୍ଭେ ଯଥାତଥ ଆମ୍ଭ ନିକଟରେ କୀର୍ତ୍ତନ କର । ୧ ।

ସଞ୍ଜୟ ବୋଇଲେ—ଯେତେବେଳେ କୃଷ୍ଣ ଓ ଅର୍ଜ୍ଜୁନ ଭଗଦତ୍ତଙ୍କ ସହିତ ସମବେତ ହେଲେ, ସେତେବେଳେ ସମସ୍ତ ଲୋକେ ସେ ଦୁହିଙ୍କୁ ମୃତ୍ୟୁର କରାଳ ଦାନ୍ତ ମଧ୍ୟରେ ପତିତ ହେବାର ଜ୍ଞାନ କଲେ । ୨ । ହେ ପ୍ରଭୋ ! ଭଗଦତ୍ତ ଗଜସ୍କନ୍ଧ ଉପରେ ଥାଇ ରଥସ୍ଥ କୃଷ୍ଣ ଓ ଅର୍ଜ୍ଜୁନଙ୍କ ପ୍ରତି ଅନବରତ ଶରଜାଳ ବର୍ଷଣ କଲେ ଏବଂ ପୂର୍ଣ୍ଣ ଆକୃଷ୍ଟ କାର୍ମୁକରୁ ନିଃସୃତ କୃଷ୍ଣଲୌହ ନିର୍ମିତ ଶିଳାଶାଣିତ ହେମପୁଙ୍ଖଯୁକ୍ତ ବାଣଦ୍ୱାରା ଦେବକୀପୁତ୍ରଙ୍କୁ ବିଦ୍ଧ କଲେ । ୪ । ଭଗଦତ୍ତଙ୍କ ପ୍ରେରିତ ଅଗ୍ନିସ୍ପର୍ଶ ସମ ସୁତୀକ୍ଷ୍ଣ ସୁପତ୍ରସମନ୍ୱିତ ବାଣମାନେ ଦେବକୀପୁତ୍ରଙ୍କୁ ଭେଦ କରି ପୃଥିବୀରେ ପ୍ରବିଷ୍ଟ ହେଲେ । ୫ ।

ପାର୍ଥ ଭଗଦତ୍ତଙ୍କ ଶରାସନଚ୍ଛେଦନପୂର୍ବକ ରଥରକ୍ଷକଙ୍କୁ ନିହତ କରି ଲାଳନ କଲା ପ୍ରାୟ ଭଗଦତ୍ତଙ୍କ ସହିତ ଯୁଦ୍ଧ କଲେ । ୬ । ଭଗଦତ୍ତ ତୀକ୍ଷ୍ଣ ରଶ୍ମିସମ ଚତୁର୍ଦ୍ଦଶ ତୀକ୍ଷ୍ଣ ତୋମର ଧନଞ୍ଜୟଙ୍କ ଉପରକୁ ନିକ୍ଷେପ କଲେ । ସେହି ପ୍ରତ୍ୟେକ ତୋମରକୁ ଧନଞ୍ଜୟ ତିନି ତିନି ଖଣ୍ଡ କରି କାଟି ପକାଇଲେ । ୭ । ତତ୍ପରେ ଧନଞ୍ଜୟ ମହତ୍ ଶରଜାଳ ଦ୍ୱାରା ହସ୍ତିର ବର୍ମ ଛେଦନ କରି ପକାଇଲେ । ସେହି ଛିନ୍ନବର୍ମ୍ମ ଖଣ୍ଡ ଖଣ୍ଡ ହୋଇ ଭୂମିରେ ପତିତ ହେଲା । ସେହି ହସ୍ତୀ ଅର୍ଜ୍ଜୁନଙ୍କ ଶରଦ୍ୱାରା ବିଶୀର୍ଣ୍ଣ-ବର୍ମା ଓ ଅତିଶୟ ବିଦ୍ଧ ହୋଇ ମେଘଶୂନ୍ୟ ବାରିଧାରାସିକ୍ତ ପର୍ବତରାଜ ସଦୃଶ ପ୍ରକାଶ ପାଇଲା । ୯ ।

ଅନନ୍ତର ଭଗଦତ୍ତ ବାସୁଦେବଙ୍କ ପ୍ରତି ହେମ ଦଣ୍ଡାନ୍ୱିତ ଲୌହ-ମୟ ଏକ ଗୋଟି ଶକ୍ତି ନିକ୍ଷେପ କଲେ । ଅର୍ଜ୍ଜୁନ ସତ୍ୱର ହୋଇ ସେହି

ଶକ୍ତିକୁ ଦୁଇଖଣ୍ଡ କରି କାଟି ପକାଇଲେ ଓ ପରେ ତାହାଙ୍କର ଛତ୍ର ଓ ଧ୍ୱଜକୁ ଛେଦନ କରି ହାସ୍ୟପୂର୍ବକ ଦଶଗୋଟି ଶରଦ୍ୱାରା ତାହାଙ୍କୁ ବିଦ୍ଧ କଲେ । ୧୧ ।

ହେ ଜନାଧିପ ! ଅର୍ଜୁନଙ୍କ ସୁପୁଙ୍ଖ ଓ କଙ୍କପତ୍ରଯୁକ୍ତ ଶରମାନଙ୍କ ଦ୍ୱାରା ଭଗଦତ୍ତ ଅତି ବିଦ୍ଧ ହେବାରୁ ସେ କ୍ରୁଦ୍ଧ ହୋଇ ଅର୍ଜୁନଙ୍କ ମସ୍ତକ ଉପରକୁ କେତେଗୁଡ଼ିଏ ତୋମର ନିକ୍ଷେପ କରି ସିଂହନାଦ କଲେ । ସେହି ତୋମର ଦ୍ୱାରା ଅର୍ଜୁନଙ୍କ କିରୀଟ ପରିବର୍ତ୍ତିତ ହେଲା । ୧୩ । ଅର୍ଜୁନ ସେହି କିରୀଟ ସଂଯତ କରୁଁ କରୁଁ ଭଗଦତ୍ତଙ୍କୁ କହିଲେ "ତୁମ୍ଭେ ବର୍ତ୍ତମାନ ଲୋକମାନଙ୍କୁ ଉତ୍ତମ ରୂପେ ଦେଖ ।" ଅର୍ଜୁନଙ୍କର ସେହି ବାକ୍ୟ ଶ୍ରବଣ କଲାରୁ ଭଗଦତ୍ତ ସଂକ୍ରୁଦ୍ଧ ହୋଇ ଗୋଟିଏ ଉଜ୍ଜ୍ୱଳ ଧନୁ ଗ୍ରହଣପୂର୍ବକ ଅର୍ଜୁନ ଓ କୃଷ୍ଣଙ୍କ ଉପରକୁ ଶରବର୍ଷଣ କଲେ । ୧୫ । ପାର୍ଥ ତ୍ୱରମାଣ ହୋଇ ଭଗଦତ୍ତଙ୍କ ଧନୁ ଓ ତୂଣୀର ମାନଙ୍କୁ ଛେଦନପୂର୍ବକ ବାସ୍ତରୀ ଗୋଟି ଶରଦ୍ୱାରା ତାହାଙ୍କର ସମୁଦାୟ ମର୍ମସ୍ଥାନରେ ବିଦ୍ଧ କଲେ । ୧୬ । ତହୁଁ ମର୍ମବିଦ୍ଧ ଭଗଦତ୍ତ ବ୍ୟଥିତ ହୋଇ ବୈଷ୍ଣବାସ୍ତ୍ର ମନ୍ତ୍ର ଦ୍ୱାରା ଅଙ୍କୁଶକୁ ଅଭିମନ୍ତ୍ରିତ କରି ଅର୍ଜୁନଙ୍କ ବକ୍ଷଃସ୍ଥଳକୁ ନିକ୍ଷେପ କଲେ । ୧୭ । କେଶବ ପାର୍ଥଙ୍କୁ ଆବରଣ କରି ଭଗଦତ୍ତଙ୍କ ପ୍ରେରିତ ସେହି ସର୍ବଘାତୀ ଅସ୍ତ୍ରକୁ ନିଜ ବକ୍ଷଃସ୍ଥଳରେ ଗ୍ରହଣ କଲେ । ୧୮ ।

ସେହି ବୈଷ୍ଣବାସ୍ତ୍ର କେଶବଙ୍କ ବକ୍ଷଃସ୍ଥଳରେ ପତିତ ହୋଇ ବୈଜୟନ୍ତୀମାଳା ସଦୃଶ ଶୋଭିତ ହେଲା । ସେହି ମାଳା ପଦ୍ମକୋଶ ଦ୍ୱାରା ଅତିଶୟ ବିରଚିତା, ସର୍ବର୍ତ୍ତୁ କୁସୁମ ଦ୍ୱାରା ପରିପୂର୍ଣ୍ଣା, ଅଗ୍ନି, ସୂର୍ଯ୍ୟ ଓ ଚନ୍ଦ୍ରସମ ପ୍ରଭାଯୁକ୍ତା ହୋଇଥିଲା । ଆଉ ତାହାର ପଲ୍ଲବମାନେ ଅଗ୍ନିତୁଲ୍ୟ ଉଜ୍ଜ୍ୱଳ ହୋଇଥିଲେ । ବାୟୁ କମ୍ପିତପଲ୍ଲବା ସେହି ପଦ୍ମପଲାଶବିଶିଷ୍ଟା ମାଳା କୃଷ୍ଣଙ୍କର ଅତସୀପୁଷ୍ପସମ ଶ୍ୟାମବର୍ଣ୍ଣ ବକ୍ଷଃସ୍ଥଳରେ ଅତିଶୟ ଶୋଭା ପାଇଲା । ଅନନ୍ତର ଅର୍ଜୁନ କ୍ଳାନ୍ତମନା ହୋଇ କୃଷ୍ଣଙ୍କୁ କହିଲେ—ହେ ପୁଣ୍ଡରୀକାକ୍ଷ ! ତୁମ୍ଭେ ଆମ୍ଭଙ୍କୁ ଏହା କହିଥିଲ, ହେ ଅନଘ ! ଆମ୍ଭେ ତୁମ୍ଭର କେବଳ ଅଶ୍ୱସଂଯମନ କରିବୁଁ, ଯୁଦ୍ଧ କରିବୁ ନାହିଁ, ତେବେ କି ନିମନ୍ତେ ଏ ନିଜ ପ୍ରତିଜ୍ଞା ରକ୍ଷା କଲ ନାହିଁ ? ଯଦି ଆମ୍ଭେ ବ୍ୟସନୀ କିମ୍ବା

ଅସ୍ତ୍ର ନିବାରଣ କରିବାକୁ ଅଶକ୍ତ ହୋଇଥାଆନ୍ତି, ତେବେ ତୁମ୍ଭର ଏହି କର୍ମ କରିବା ଉଚିତ ହୋଇଥାନ୍ତା । ମାତ୍ର ଆମ୍ଭେ ଥାଉଁ ଥାଉଁ ତୁମ୍ଭର ଏ କର୍ମ କରିବା ଉଚିତ ହୋଇନାହିଁ । ଆମ୍ଭେ ଧନୁର୍ବାଣ ଧାରଣ କଲେ ସୁରାସୁର ଓ ମର୍ତ୍ତ୍ୟଲୋକ ସହିତ ଜଗତକୁ ଜୟ କରିପାରିବୁଁ—ଏହା ତୁମ୍ଭଙ୍କୁ ବିଦିତ ଅଛି । ୨୪ ।

ଅନନ୍ତର ବାସୁଦେବ ଅର୍ଜୁନଙ୍କୁ ଏହି ଅର୍ଥଯୁକ୍ତ ବାକ୍ୟ କହିଲେ—ହେ ଅନଘ ପାର୍ଥ ! ତୁମ୍ଭେ ଗୋଟିଏ ଗୋପନୀୟ ପୁରାବୃତ୍ତ ଆମ୍ଭଠାରୁ ଶୁଣ । ୨୫ । ଆମ୍ଭର ଚାରିଗୋଟି ସନାତନ ମୂର୍ତ୍ତି ଅଛି । ଆମ୍ଭେ ଏହି ପୃଥିବୀରେ ଲୋକତ୍ରାଣାର୍ଥେ ଆପଣାକୁ ବିଭାଗ କରି ସେହି ଚାରିମୂର୍ତ୍ତିଦ୍ୱାରା ମନୁଷ୍ୟମାନଙ୍କର ହିତ ସାଧନ କରିଥାଉଁ । ୨୬ । ଆମ୍ଭର ଗୋଟିଏ ମୂର୍ତ୍ତି ଭୂଲୋକରେ ସ୍ଥିତ ହୋଇ ତପସ୍ୟା କରେ ଅର୍ଥାତ୍ ବଦରିକାଶ୍ରମରେ ନାରାୟଣ ରୂପରେ ଅବସ୍ଥିତ । ଦ୍ୱିତୀୟ ମୂର୍ତ୍ତି ଜଗତରେ ସତ୍ ଓ ଅସତ୍ କର୍ମ ଦର୍ଶନ କରେ ଅର୍ଥାତ୍ ପରମାତ୍ମା ରୂପରେ ଅବସ୍ଥିତ । ତୃତୀୟ ମୂର୍ତ୍ତି ମାନୁଷଲୋକ ଆଶ୍ରୟ କର୍ମ କରେ ଅର୍ଥାତ୍ କ୍ଷେତ୍ରଜ୍ଞ ରୂପରେ ଅବସ୍ଥିତ ଓ ଚତୁର୍ଥ ମୂର୍ତ୍ତି ନିଦ୍ରାରେ ସହସ୍ର ବର୍ଷକାଳ ଶୟନ କରିଥାଏ ଅର୍ଥାତ୍ ଜଳଶାୟିନୀ ମୂର୍ତ୍ତି ରୂପରେ ଅବସ୍ଥିତ । ୨୮ ।

ଯେତେବେଳେ ଆମ୍ଭର ଚତୁର୍ଥ ମୂର୍ତ୍ତି ସହସ୍ରବର୍ଷ ନିଦ୍ରା ପରେ ଉତ୍ଥାନ କରେ, ତେତେବେଳେ ସେହି ମୂର୍ତ୍ତି ବରଯୋଗ୍ୟ ମନୁଷ୍ୟମାନଙ୍କୁ ଉତ୍ତମ ଉତ୍ତମ ବର ପ୍ରଦାନ କରେ । ୨୯ । ସେହି ସମୟ ଉପସ୍ଥିତ ହେବାର ଜାଣି ଏକଦା ପୃଥିବୀ ଆମ୍ଭ ନିକଟରେ ତାହାଙ୍କ ପୁତ୍ର ନରକାସୁର ନିମନ୍ତେ ଯେଉଁ ବର ଯାଚ୍ଞା କରିଥିଲେ, ତାହା ଶୁଣ । ୩୦ ।

ପୃଥିବୀ କହିଲେ—"ଆମ୍ଭର ପୁତ୍ର ବୈଷ୍ଣବାସ୍ତ୍ରସମ୍ପନ୍ନ ହେଉ, ଯେମନ୍ତ ଦେବାସୁରମାନେ ତାହାକୁ ବଧ କରି ନ ପାରନ୍ତି, ଆପଣ ସେହିପରି ବର ଦାନ କରନ୍ତୁ । ୩୧ । ଆମ୍ଭେ ପୃଥିବୀଙ୍କର ଏହିପ୍ରକାରେ ପ୍ରାର୍ଥିତ ବର ଶୁଣି ସେହି ସମୟରେ ତାହାଙ୍କ ପୁତ୍ରକୁ ଅମୋଘ ପରମ ବୈଷ୍ଣବ ଅସ୍ତ୍ର ପ୍ରଦାନ କରି କହିଲୁଁ—"ହେ ପୃଥି ! ଏହି ବୈଷ୍ଣବାସ୍ତ୍ର ତୁମ୍ଭ ପୁତ୍ରର

ରକ୍ଷଣାର୍ଥେ ଦେଲୁଁ, ଏହା ଅମୋଘ ହେଉ ; ତୁମ୍ଭ ପୁତ୍ରକୁ କେହି ବଧ କରି ପାରିବେ ନାହିଁ ।୩୩। ତୁମ୍ଭ ପୁତ୍ର ଏହି ଅସ୍ତ୍ରଦ୍ୱାରା ଅଭିରକ୍ଷିତ ହୋଇ ସର୍ବଦା ଶତ୍ରୁବଳ ମର୍ଦ୍ଦନ କରିବ ଓ ସମସ୍ତ ଲୋକରେ ଦୁରାଧର୍ଷ ହେବ ।୩୪।

ମନସ୍ୱିନୀ ପୃଥ୍ୱୀଦେବୀ "ତାହା ହେଉ" ବୋଲି କହି କୃତକାର୍ଯ୍ୟ ହୋଇ ଗମନ କଲେ । ତାହାଙ୍କ ପୁତ୍ର ସେହି ନରକାସୁର ମଧ୍ୟ ଉକ୍ତ ଅସ୍ତ୍ର-ପ୍ରଭାବରୁ ଦୁରାଧର୍ଷ ଓ ଶତ୍ରୁତାପନ ହେଲେ । ୩୫ । ହେ ଆର୍ଯ୍ୟ ! ସେହି ନରକାସୁରଙ୍କଠାରୁ ବର୍ତ୍ତମାନ ଭଗଦତ୍ତ ସେହି ଅସ୍ତ୍ରକୁ ପ୍ରାପ୍ତ ହୋଇ-ଅଛନ୍ତି । ଇନ୍ଦ୍ର ଓ ରୁଦ୍ର ପ୍ରଭୃତି ଲୋକରେ ମଧ୍ୟ କେହି ଏହାଙ୍କର ଅବଧ୍ୟ ନାହିଁ । ୩୬ । ଏହିହେତୁରୁ ତୁମ୍ଭଙ୍କୁ ରକ୍ଷା କରିବା ନିମନ୍ତେ ଆମ୍ଭେ ଏହି ଅସ୍ତ୍ରକୁ ଅନ୍ୟଦିଗକୁ ଅପସାରିତ କଲୁଁ । ହେ ପାର୍ଥ ! ବର୍ତ୍ତମାନ ଏହି ପର୍ବତେଶ୍ୱର ବୈଷ୍ଣବାସ୍ତ୍ରବିହୀନ ହୋଇଅଛନ୍ତି ; ଅତଏବ ଆମ୍ଭେ ଯେପରି ପୂର୍ବକାଳରେ ଲୋକହିତାର୍ଥ ନରକାସୁରକୁ ବଧ କରିଥିଲୁଁ, ସେହିପରି ଦେବଶତ୍ରୁ ଓ ଯୁଦ୍ଧରେ ଦୁର୍ଦ୍ଧର୍ଷ ମହାସୁର ଏହି ଭଗଦତ୍ତଙ୍କୁ ତୁମ୍ଭେ ବିନାଶ କର । ୩୮ ।

ମହାବୀର ଧନଞ୍ଜୟ ମହାତ୍ମା ବାସୁଦେବଙ୍କଦ୍ୱାରା ଏହିପରି କଥିତ ହୋଇ ସହସା ଭଗଦତ୍ତଙ୍କ ଉପରକୁ ଶାଣିତ ଶରମାନ ନିକ୍ଷେପ କଲେ ।୩୯। ଅନନ୍ତର ମହାମନା ଅର୍ଜ୍ଜୁନ ଅସମ୍ଭ୍ରାନ୍ତଚିତ୍ତରେ ଭଗଦତ୍ତ ହସ୍ତୀର କୁମ୍ଭଦ୍ୱୟ ମଧ୍ୟରେ ଗୋଟିଏ ନାରାଚ ପ୍ରହାର କଲେ । ୪୦ । ଯେପରି ସର୍ପ ବଲ୍ମୀକ ମଧ୍ୟରେ ପ୍ରବେଶ କରେ ଓ ଯେପରି ବଜ୍ର ପର୍ବତ ଭେଦ କରେ, ତଦ୍ରୂପ ସେହି ଅର୍ଜ୍ଜୁନ-ନିକ୍ଷିପ୍ତବାଣ ସେହି ନାଗର କୁମ୍ଭମଧ୍ୟରେ ସପୁଙ୍ଖ ପ୍ରବେଶ କଲା । ୪୧ । ଯେପରି ସ୍ୱାମୀ ଦରିଦ୍ର ହେଲେ ତାହାର ଭାର୍ଯ୍ୟା ତାହା କଥା ଶୁଣେ ନାହିଁ, ତଦ୍ରୂପ ଭଗଦତ୍ତ ସେହି ହସ୍ତୀକୁ ବାରମ୍ବାର ଉତ୍ତେଜିତ କଲେ ମଧ୍ୟ ସେ ତତ୍କାଳରେ ତାହାଙ୍କର କଥା ଶୁଣିଲା ନାହିଁ ।୪୨। ଅଳ୍ପ ସମୟ ମଧ୍ୟରେ ସେହି କରିଶ୍ରେଷ୍ଠ ସ୍ତବ୍ଧ-ଗାତ୍ର ହୋଇ ଦନ୍ତଦ୍ୱୟଦ୍ୱାରା ପୃଥିବୀତଳ ସ୍ପର୍ଶ କରି ଅର୍ଥାତ୍ ଦୁଇ ଦାନ୍ତରେ ଭୂମୀ ଉପରେ ଭରା ଦେଇ ଆର୍ତ୍ତନାଦପୂର୍ବକ ପ୍ରାଣ ବିସର୍ଜନ କଲା । ୪୩ ।

ଅନନ୍ତର ଭଗବାନ୍ ବାସୁଦେବ ଅର୍ଜ୍ଜୁନଙ୍କୁ କହିଲେ, ହେ ପାର୍ଥ ! ମହାବଳଶାଳୀ ମହାବୀର ସୁଦୁର୍ଜ୍ଜୟ ରାଜା ଭଗଦତ୍ତ ଅତ୍ୟନ୍ତ ବୃଦ୍ଧ ହୋଇ ଥିବାରୁ ଜରାଦ୍ୱାରା ତାହାଙ୍କ କେଶକଳାପ ଶୁକ୍ଳ ହୋଇଅଛି ; ସର୍ବଦା ତାହାଙ୍କ ନେତ୍ର ମୁଦ୍ରିତ ହୋଇ ରହିଥାଏ । ତଥାପି ଯୁଦ୍ଧ ଉପସ୍ଥିତ ହେଲେ ଭ୍ରୂଦ୍ୱୟକୁ କରଦ୍ୱାରା ଉପରକୁ ଉତ୍ତୋଳନପୂର୍ବକ ଲଲାଟରେ ପଟ୍ଟବସ୍ତ୍ର ବାନ୍ଧି ଯୁଦ୍ଧରେ ବିପକ୍ଷମାନଙ୍କୁ ଜୟ କରନ୍ତି ; ଅତଏବ ତୁମ୍ଭେ ତାହାଙ୍କର ସେହି ଲଲାଟବେଷ୍ଟିତ ପଟ୍ଟବସ୍ତ୍ରକୁ ବର୍ତ୍ତମାନ ଛେଦନ କରି ସେହି ରାଜାଙ୍କୁ ବିନାଶକର । ୪୫ ।

କୃଷ୍ଣଙ୍କ ବାକ୍ୟ ଶୁଣି ଶରଦ୍ୱାରା ଅର୍ଜ୍ଜୁନ ଶୀଘ୍ର ସେହି ପଟ୍ଟବସ୍ତ୍ରକୁ ଛିନ୍ନ କରିବା ମାତ୍ରକେ ପ୍ରତାପାନ୍ୱିତ ଭଗଦତ୍ତ ବଦ୍ଧନେତ୍ର ହୋଇଯାଇ ସମୁଦାୟ ଜଗତକୁ ତମୋମୟ ଦେଖିଲେ । ତତ୍ପରେ ଅର୍ଜ୍ଜୁନ ଆନତପର୍ବ ଅର୍ଦ୍ଧଚନ୍ଦ୍ର ବାଣ ଦ୍ୱାରା ରାଜା ଭଗଦତ୍ତଙ୍କ ହୃଦୟକୁ ଭେଦ କଲେ । ରାଜା ଭଗଦତ୍ତ କିରୀଟୀଙ୍କ ବାଣଦ୍ୱାରା ଭିନ୍ନହୃଦୟ ଓ ଗତାସୁ ହୋଇ ଶର ଓ ଶରାସନକୁ ପରିତ୍ୟାଗ କଲେ । ଯେପରି ପଦ୍ମନାଡ଼କୁ ଆଘାତ କଲେ ପଦ୍ମଫୁଲର ପାଖୁଡ଼ା ଝଡ଼ି ପଡ଼େ, ତଦ୍ରୂପ ଭଗଦତ୍ତଙ୍କ ମସ୍ତକରୁ ଶ୍ରେଷ୍ଠ ଉଷ୍ଣୀଷ ପରିଭ୍ରଷ୍ଟ ହୋଇ ପତିତ ହେଲା । ୪୯ । ଯେପରି ସୁପୁଷ୍ପିତ କର୍ଣ୍ଣିକାର ବୃକ୍ଷ ବାୟୁବେଗଦ୍ୱାରା ଭଗ୍ନ ହୋଇ ପର୍ବତ ଶିଖରରୁ ପତିତ ହୁଏ, ସେହିପରି ମାଲ୍ୟବିଭୂଷିତ ରାଜା ଭଗଦତ୍ତ ସୁବର୍ଣ୍ଣଭୂଷଣଶୋଭିତ ଗିରିସନ୍ନିଭ ହସ୍ତୀରୁ ପତିତ ହେଲେ । ୫୦ । ଯେପରି ବଳବାନ୍ ବାୟୁ ଦ୍ରୁମମାନଙ୍କୁ ଭଗ୍ନ କରେ, ସେହିପରି ଇନ୍ଦ୍ରତନୟ ଅର୍ଜ୍ଜୁନ ଇନ୍ଦ୍ରବିକ୍ରମ, ଇନ୍ଦ୍ରସଖା ନରପତି ଭଗଦତ୍ତଙ୍କୁ ସଂହାର କରି ଆପଣଙ୍କ ଜୟାକାଂକ୍ଷୀ ଅନ୍ୟାନ୍ୟ ସୈନିକମାନଙ୍କୁ ବିନାଶ କଲେ । ୫୧ ।



## ୩୦ ଅଧ୍ୟାୟ

ସଞ୍ଜୟ ବୋଇଲେ—ଅନନ୍ତର ଇନ୍ଦ୍ରଙ୍କ ନିତ୍ୟପ୍ରିୟ ଓ ସଖା ସେହି ଅପରିମିତବଳଶାଳୀ ପ୍ରାଗ୍‌ଜ୍ୟୋତିଷପତିଙ୍କୁ ପାର୍ଥ ବିନାଶ କରି ପ୍ରଦକ୍ଷିଣ

କଲେ । ୧ । ତହୁଁ ଗାନ୍ଧାରରାଜଙ୍କର ଶତ୍ରୁମର୍ଦ୍ଦନକାରୀ ବୃଷକ ଓ ଅଚଳ ନାମକ ଦୁଇ ପୁତ୍ର ଯୁଦ୍ଧରେ ଅର୍ଜ୍ଜୁନଙ୍କୁ ବାଧା କଲେ । ସେମାନେ ଦୁହେଁ ମିଳିତ ହୋଇ ଅର୍ଜ୍ଜୁନଙ୍କ ଅଗ୍ର ଓ ପଶ୍ଚାଦ୍‌ଦେଶରେ ଅବସ୍ଥାନ କରି ଧନୁର୍ଦ୍ଧାରଣପୂର୍ବକ ମହାବେଗଶାଳୀ ନିଶିତ ଶରଦ୍ୱାରା ସୁବଳପୁତ୍ର ବୃଷକର ଅଶ୍ୱ, ଧନୁକ, ସାରଥି, ଛତ୍ର, ଧ୍ୱଜ ଓ ରଥକୁ ଟିକି ଟିକି କରି କାଟି ପକାଇଲେ ଓ ନାନାବିଧ ଆୟୁଧ ଦ୍ୱାରା ସୁବଳନନ୍ଦନ ବୃଷକ ପ୍ରଭୃତି ଗାନ୍ଧାରମାନଙ୍କୁ ପୁନଃ ପୁନଃ ବ୍ୟାକୁଳିତ କଲେ । ୫ । ଅର୍ଜ୍ଜୁନ ଅତି କ୍ରୁଦ୍ଧ ହୋଇ ବାଣସମୂହ ଦ୍ୱାରା ଉଦ୍ୟତାୟୁଧ ପଞ୍ଚଶତ ଗାନ୍ଧାରମାନଙ୍କୁ ଯମାଳୟକୁ ପ୍ରେରଣ କଲେ । ୬ ।

ଅନନ୍ତର ମହାଭୁଜ ବୃଷକଙ୍କ ରଥର ଅଶ୍ୱମାନେ ନିହତ ହୋଇ ଥିବାରୁ ସେ ଆପଣା ରଥରୁ ଅବତରଣ କରି ସ୍ୱୀୟ ଭ୍ରାତାଙ୍କର ରଥରେ ଆରୋହଣପୂର୍ବକ ଅନ୍ୟ ଗୋଟିଏ ଶରାସନ ଗ୍ରହଣ କଲେ । ୭ । ସେହି ଦୁଇଭ୍ରାତା ବୃଷକ ଓ ଅଚଳ ଏକ ରଥରେ ଆରୋହଣ କରି ଶରବର୍ଷଣ ଦ୍ୱାରା ପୁନଃ ପୁନଃ ଅର୍ଜ୍ଜୁନଙ୍କୁ ବାଧା କଲେ । ୮ । ଯେପରି ବୃତ୍ର ଓ ବଳାସୁର ଉଭୟେ ଇନ୍ଦ୍ରଙ୍କୁ ପ୍ରହାର କରିଥିଲେ, ସେହିପରି ଆପଣଙ୍କ ଶାଳକ କ୍ଷତ୍ରିୟ ମହାତ୍ମା ବୃଷକ ଓ ଅଚଳ ଦୁଇଭ୍ରାତା ମୁହୁର୍ମୁହୁଃ ଅର୍ଜ୍ଜୁନଙ୍କୁ ଅତିଶୟ ପ୍ରହାର କଲେ । ୯ । ଯେପରି ଗ୍ରୀଷ୍ମ ଋତୁର ମାସଦ୍ୱୟ ଅସହ୍ୟ ଉତ୍ତାପ ଦ୍ୱାରା ଲୋକଙ୍କୁ କଷ୍ଟ ଦିଏ, ସେହିପରି ସେହି ଦୁଇ ଗାନ୍ଧାର ବୀର ଲବ୍ଧ-ଲକ୍ଷ୍ୟ ଶରମାନଙ୍କ ଦ୍ୱାରା ଅର୍ଜ୍ଜୁନଙ୍କୁ ନିପୀଡ଼ିତ କଲେ । ୧୦ ।

ହେ ରାଜନ୍ ! ତଦନନ୍ତର ସେହି ରଥସ୍ଥିତ ସଂଶ୍ଳିଷ୍ଟାଙ୍ଗ ନରବ୍ୟାଘ୍ର ବୃଷକ ଓ ଅଚଳ ଦୁଇଭ୍ରାତାଙ୍କୁ ଅର୍ଜ୍ଜୁନ ଏକଗୋଟି ଶରଦ୍ୱାରା ବିନାଶ କଲେ । ୧୧ । ସମଲକ୍ଷଣବିଶିଷ୍ଟ, ସିଂହସଙ୍କାଶ, ଲୋହିତଲୋଚନ ମହାଭୁଜ ସେହି ବୀର ସହୋଦରଦ୍ୱୟ ଗତାସୁ ହୋଇ ସେହି ରଥରୁ ପତିତ ହେଲେ । ୧୨ । ସେମାନଙ୍କର ସେହି ବନ୍ଧୁଜନପ୍ରିୟ ଦେହଦ୍ୱୟ ଦଶ ଦିଗରେ ପବିତ୍ର ନାଶ ବିସ୍ତାର କରି ଭୂମିରେ ପଡ଼ି ରହିଲା । ୧୩ ।

ହେ ନରନାଥ ! ଯୁଦ୍ଧରେ ଅପରାଙ୍ମୁଖ ମାତୁଳ ଦ୍ୱୟଙ୍କୁ ନିହତ ହେବାର ଦେଖି ଆପଣଙ୍କ ପୁତ୍ରମାନେ ଅତିଶୟ ଅଶ୍ରୁମୋଚନ

କଲେ । ୧୪ । ତହୁଁ ଶଠ-ମାୟା-ବିଦ୍ୟା-ବିଶାରଦ ଶକୁନି ନିଜ ଭ୍ରାତୃ-ଦ୍ୱୟଙ୍କୁ ନିହତ ହେବାର ଦେଖି ଅର୍ଜୁନ ଓ କୃଷ୍ଣଙ୍କୁ ସମ୍ମୋହିତ କରି ମାୟାସୃଷ୍ଟି କଲା । ୧୫ । ସେହି ମାୟା ପ୍ରଭାବରୁ ଶତଶତ, ଲଗୁଡ଼, ଅୟଗୁଡ଼, ପ୍ରସ୍ତର, ଶତଘ୍ନୀ, ଶକ୍ତି, ଗଦା, ପରିଘ, ନିସ୍ତ୍ରିଂଶ, ଶୂଳ, ମୁଦ୍‌ଗର, ପଟ୍ଟିଶ, କମ୍ପନ, ଋଷ୍ଟି, ନଖର, ମୂଷଳ, ପରଶୁ, କ୍ଷୁର, କ୍ଷୁରପ୍ର, ନାଳୀକ, ବତ୍ସଦନ୍ତ, ଅସ୍ଥିସନ୍ଧି, ଚକ୍ର, ବିଶିଖ, ପ୍ରାସ ଓ ଅନ୍ୟାନ୍ୟ ବିବିଧ ଆୟୁଧ ନାନା ଦିଗରୁ ଆସି ଅର୍ଜୁନଙ୍କ ଉପରେ ପତିତ ହେଲା । ୧୮ । ଖର, ଉଷ୍ଟ୍ର, ମହିଷ, ବ୍ୟାଘ୍ର, ସିଂହ, ସୃମର, ଚିତ୍ରକ, ଋକ୍ଷ, ଶାଳୀବୃକ, ଗୃଧ୍ର, କପି, ସରୀସୃପ, ବିବିଧ ପକ୍ଷୀ ଓ ବିବିଧ ରାକ୍ଷସ କ୍ଷୁଧିତ ଓ ସଂକ୍ରୁଦ୍ଧ ହୋଇ ଅର୍ଜୁନଙ୍କ ପ୍ରତି ଧାବମାନ ହେଲେ । ୨୦ । ତହୁଁ ଦିବ୍ୟାସ୍ତ୍ରବିଶାରଦ ଶୂର କୁନ୍ତୀପୁତ୍ର ଧନଞ୍ଜୟ ଶରଜାଳ ବର୍ଷଣ ଦ୍ୱାରା ସେମାନଙ୍କୁ ପତିତ କଲେ । ୨୧ । ସେହି ମାୟା ନିର୍ମିତ ଜନ୍ତୁମାନେ ଶୂର ଅର୍ଜୁନଙ୍କର ପ୍ରବଳ ଦୃଢ଼ ଶରଦ୍ୱାରା ସମାହତ ହୋଇ ମହାଶବ୍ଦପୂର୍ବକ ପ୍ରାଣତ୍ୟାଗ କଲେ । ୨୨ ।

ଅନନ୍ତର ଅର୍ଜୁନଙ୍କର ରଥରେ ଅନ୍ଧକାର ପ୍ରାଦୁର୍ଭୂତ ହେଲା । ସେହି ଅନ୍ଧକାର ମଧ୍ୟରୁ କ୍ରୂର ବାକ୍ୟମାନ ଅର୍ଜୁନଙ୍କୁ ଭର୍ତ୍ସନା କଲା । ୨୩ । ସେହି ମହାଯୁଦ୍ଧରେ ଅର୍ଜୁନ ମହାଜ୍ୟୋତି ଅସ୍ତ୍ରଦ୍ୱାରା ସର୍ବପ୍ରାଣିଭୟଙ୍କର ସେହି ଘୋର ଅନ୍ଧକାରକୁ ବିନାଶ କଲେ । ଅନ୍ଧକାର ବିନଷ୍ଟ ହେଲାରୁ ଭୟାନକ ଜଳବର୍ଷଣ ଆବିର୍ଭୂତ ହେଲା । ଅନନ୍ତର ଅର୍ଜୁନ ଜଳ ବିନାଶାର୍ଥ ଆଦିତ୍ୟାସ୍ତ୍ର ପ୍ରୟୋଗ କଲେ । ସେହି ଅସ୍ତ୍ରଦ୍ୱାରା ସେହି ଜଳରାଶି ଶୁଷ୍କ ହୋଇଗଲା । ଶକୁନି ଏହିପରି ବହୁପ୍ରକାର ମାୟା ସୃଷ୍ଟି କଲେ । ଯେତେବେଳେ ଯେଉଁ ମାୟା କଲେ, ଅର୍ଜୁନ ହାସ୍ୟପୂର୍ବକ ଅସ୍ତ୍ରବଳଦ୍ୱାରା ତାହା ବିନାଶ କଲେ । ଏହିରୂପେ ମାୟାସବୁ ବିନଷ୍ଟ ହେଲାରୁ ଅର୍ଜୁନ-ଶରାହତ ଶକୁନି ସାମାନ୍ୟ ମାନବ ସଦୃଶ ଭୀତ ହୋଇ ବେଗଗାମୀ ଅଶ୍ୱଯାନରେ ପଳାୟନ କଲେ ।

ଅନନ୍ତର ଅସ୍ତ୍ରବିତ୍ ଅର୍ଜୁନ ଶତ୍ରୁମାନଙ୍କୁ କ୍ଷିପ୍ର ହସ୍ତକୁ ଦେଖାଇବା ପାଇଁ ଶରସମୂହ କୌରବସେନା ଉପରକୁ ବର୍ଷଣ କଲେ । ହେ ମହାରାଜ ! ଯେପରି ଗଙ୍ଗା ପର୍ବତକୁ ଭେଟିଲେ ଦ୍ୱିଧା ବିଭକ୍ତ ହୁଅନ୍ତି, ସେହିପରି

ଆପଣଙ୍କ ସୈନ୍ୟମାନେ ପାର୍ଥଙ୍କ ଦ୍ୱାରା ଦୁଇ ଭାଗରେ ବିଭକ୍ତ ହେଲେ । ହେ ରାଜନ୍ ! କିରୀଟୀଙ୍କ ଶରରେ ପୀଡ଼ିତ ହୋଇ କୌଣସି କୌଣସି ବୀର ଦ୍ରୋଣଙ୍କର ଓ କୌଣସି କୌଣସି ବୀର ଆପଣଙ୍କ ପୁତ୍ର ଦୁର୍ଯ୍ୟୋଧନଙ୍କର ଆଶ୍ରୟ ଗ୍ରହଣ କଲେ । ଅନନ୍ତର ସୈନ୍ୟମାନେ ଧୂଳିସମାଚ୍ଛନ୍ନ ହେବାରୁ ଅର୍ଜ୍ଜୁନ ଆଉ ଦୃଷ୍ଟିଗୋଚର ହେଲେ ନାହିଁ । କେବଳ ଦକ୍ଷିଣ ଦିଗରୁ ଗାଣ୍ଡୀବ ଧନୁର ନିର୍ଘୋଷ ଶ୍ରୁତ ହେଲା । ଶଙ୍ଖ, ଦୁନ୍ଦୁଭି ଓ ଅନ୍ୟାନ୍ୟ ବାଦ୍ୟଶବ୍ଦକୁ ଗାଣ୍ଡୀବ ନିର୍ଘୋଷ ଅତିକ୍ରମ କରି ଗଗନସ୍ପର୍ଶୀ ହେଲା । ଅନନ୍ତର ପୁନର୍ବାର ଦକ୍ଷିଣ ଦିଗରେ ଅର୍ଜ୍ଜୁନଙ୍କ ସହିତ ଚିତ୍ରଯୋଧୀ ଯୋଦ୍ଧାମାନଙ୍କର ସଂଗ୍ରାମ ହେଲା । ଆମ୍ଭେ ତେତେବେଳେ ଦ୍ରୋଣଙ୍କର ଅନୁବର୍ତ୍ତୀ ହେଲୁ ।

ହେ ଭାରତ ! ଯୁଧିଷ୍ଠିରଙ୍କ ସୈନ୍ୟମାନେ ଇତସ୍ତତଃ ଶତ୍ରୁମାନଙ୍କୁ ପ୍ରହାର କଲେ । ହେ ଭାରତ ! ଉଚିତ ସମୟ ପ୍ରାପ୍ତ ହୋଇ ଯେପରି ପ୍ରବଳ ବାୟୁ ଆକାଶସ୍ଥ ମେଘମାନଙ୍କୁ ବିଧ୍ୱସ୍ତ କରେ, ଅର୍ଜ୍ଜୁନ ସେହିପରି ଆପଣଙ୍କ ସୈନ୍ୟମାନଙ୍କୁ ବିଧ୍ୱସ୍ତ କଲେ । ୩୫ । ସେହି ଧାବମାନ, ଇନ୍ଦ୍ରବିକ୍ରମ ନରବ୍ୟାଘ୍ର ଅର୍ଜ୍ଜୁନଙ୍କୁ କେହି ନିବାରଣ କରିପାରିଲେ ନାହିଁ । ୩୬ । ଆପଣଙ୍କ ସୈନ୍ୟମାନେ ପାର୍ଥଙ୍କ ଶରଦ୍ୱାରା ଅତ୍ୟନ୍ତ ହନ୍ୟମାନ ଓ ବ୍ୟଥିତ ହୋଇ ଇତସ୍ତତଃ ପଳାୟନ କରିବାବେଳେ ସ୍ୱପକ୍ଷୀୟ ବହୁବିଧ ଲୋକଙ୍କୁ ବିଧ୍ୱସ୍ତ କଲେ । ୩୭ । ଅର୍ଜ୍ଜୁନଙ୍କ ହସ୍ତବିମୁକ୍ତ କଙ୍କପକ୍ଷବିଭୂଷିତ ତନୁଚ୍ଛେଦୀ ଶରସମୂହ ଶଲଭ ସଦୃଶ ଦଶଦିଗ ଆଚ୍ଛନ୍ନ କରି ପତିତ ହେଲା । ୩୮ ।

ହେ ଆର୍ଯ୍ୟ ! ସେହି ବାଣସମୂହ ତୁରଙ୍ଗ, ମାତଙ୍ଗ, ରଥାଙ୍ଗ ଓ ପଦାତିବର୍ଗଙ୍କୁ ଭେଦ କରି, ସର୍ପ ବଲ୍ମୀକରେ ପ୍ରବେଶ କଲା ପ୍ରାୟ ଭୂଗର୍ଭରେ ପ୍ରବିଷ୍ଟ ହେଲା । ୩୯ । ହସ୍ତୀ, ଅଶ୍ୱ ଓ ପଦାତିମାନଙ୍କ ପ୍ରତି ଅର୍ଜ୍ଜୁନ ଦୁଇଥର ଶରନିକ୍ଷେପ କଲେ ନାହିଁ, ଯେହେତୁ ସେମାନେ ପାର୍ଥଙ୍କର ଏକ ଏକ ଶରରେ ଆହତ ଓ ଗତାସୁ ହୋଇ ଭୂମିରେ ପତିତ ହେଲେ । ୪୦ । ଶରବିଦ୍ଧ ଓ ନିହତ ଅଶ୍ୱ, ହସ୍ତୀ ଓ ମନୁଷ୍ୟ-ମାନଙ୍କ ଦ୍ୱାରା ସେହିକାଳରେ ରଣସ୍ଥଳୀ ସମାକୀର୍ଣ୍ଣ ହୋଇ ବିଚିତ୍ର ରୂପ

ଧାରଣ କଲା । କୁକୁର, ଶୃଗାଳ ଓ କାକମାନେ ନିନାଦ କଲେ । ୮୧ । ପାର୍ଥଶରର ଦ୍ୱାରା ପୀଡ଼ିତ ହୋଇ ପିତା ପୁତ୍ରକୁ, ମିତ୍ର ମିତ୍ରକୁ, ପୁତ୍ର ପିତାକୁ ପରିତ୍ୟାଗ କଲେ । ଲୋକମାନେ ନିଜ ନିଜ ଜୀବନ ରକ୍ଷା କରିବାକୁ ଅଭିଳାଷୀ ହୋଇ ସ୍ୱସ୍ୱବାହନମାନଙ୍କୁ ପରିତ୍ୟାଗ କଲେ । ୮୨ ।



## ୩୧ ଅଧ୍ୟାୟ

ଧୃତରାଷ୍ଟ୍ର ବୋଇଲେ—ହେ ସଞ୍ଜୟ ! ଯେତେବେଳେ ଧନଞ୍ଜୟଙ୍କ ଦ୍ୱାରା ସେହି ସୈନ୍ୟମାନେ ଭଗ୍ନ ହେଲେ ଓ ତୁମ୍ଭେମାନେ ଦ୍ରୁତବେଗରେ ପ୍ରସ୍ଥାନ କଲ; ସେତେବେଳେ ତୁମ୍ଭମାନଙ୍କର ମନ କି ପ୍ରକାର ହୋଇଥିଲା । ୧ । ଛିନ୍ନଭିନ୍ନ ଓ ସ୍ଥାନଭ୍ରଷ୍ଟ ନିମନ୍ତେ ନିତାନ୍ତ ବ୍ୟାକୁଳ ସୈନ୍ୟମାନଙ୍କୁ ଏକତ୍ର କରିବା ନିତାନ୍ତ ଦୁଷ୍କର କାର୍ଯ୍ୟ ଅଟେ, ସେହି କାର୍ଯ୍ୟ କିପରି ସମ୍ପାଦିତ ହେଲା ? ତୁମ୍ଭେ ଆମ୍ଭ ସମକ୍ଷରେ କହ । ୨ ।

ସଞ୍ଜୟ ବୋଇଲେ—ହେ ପ୍ରଜାନାଥ ! ସେହି ସମୟରେ ଆପଣଙ୍କ ପୁତ୍ରଙ୍କର ପ୍ରିୟାଭିଳାଷୀ ବୀରମାନେ ଜଗତରେ ଯଶରକ୍ଷା ନିମନ୍ତେ ଦ୍ରୋଣଙ୍କ ସାହାଯ୍ୟାର୍ଥେ ତାହାଙ୍କ ନିକଟକୁ ଗମନ କଲେ । ୩ । ବିପକ୍ଷଙ୍କ ଅପ୍ରମାନ ସମୁଦ୍ୟତ ହୁଅନ୍ତେ ଓ ଯୁଧିଷ୍ଠିର ଦ୍ରୋଣଙ୍କୁ ଆକ୍ରମଣ କରିବା ନିମିତ୍ତ ତାହାଙ୍କ ନିକଟବର୍ତ୍ତୀ ହୁଅନ୍ତେ, ଆପଣଙ୍କ ପକ୍ଷୀୟ ବୀରମାନେ ସେହି ଭୟାନକ ସମରରେ ନିର୍ଭୀକଚିତ୍ତ ହୋଇ ସାଧୁସମ୍ମତ କର୍ମମାନ କରିବାରେ ପ୍ରବୃତ୍ତ ହେଲେ ।୪।

ଅପରିମିତବଳସମ୍ପନ୍ନ ମହାବୀର ଭୀମସେନ, ସାତ୍ୟକି ଓ ଧୃଷ୍ଟଦ୍ୟୁମ୍ନଙ୍କ ମଧ୍ୟରେ ଆପଣଙ୍କ ପକ୍ଷୀୟ ସେହି ବୀରମାନେ ଆପତିତ ହେଲେ । ୫ । ନିଷ୍ଠୁର ପାଞ୍ଚାଳମାନେ "ଦ୍ରୋଣଙ୍କୁ ନିହତ କର, ଦ୍ରୋଣଙ୍କୁ ନିହତ କର" ବୋଲି କହି ସ୍ୱପକ୍ଷ ଯୋଦ୍ଧାମାନଙ୍କୁ ଉତ୍ତେଜିତ କଲେ । ଆପଣଙ୍କ ପୁତ୍ରମାନେ "ଯେପରି ଦ୍ରୋଣ ନିହତ ନ ହୁଅନ୍ତି" "ଯେପରି ଦ୍ରୋଣ ନିହତ ନହୁଅନ୍ତି" କହି ସମସ୍ତ କୁରୁସୈନ୍ୟଙ୍କୁ ଉତ୍ତେଜିତ କଲେ । ୬ ।

ପାଣ୍ଡବପକ୍ଷଙ୍କ ପଣ—ଦ୍ରୋଣବଧ, କୁରୁପକ୍ଷ ପଣ—ଦ୍ରୋଣରକ୍ଷା, ଏହିରୂପେ ଦ୍ରୋଣଙ୍କୁ ପଣ ରଖି ଉଭୟପକ୍ଷ ମଧ୍ୟରେ ଦ୍ୟୂତକ୍ରୀଡ଼ା ଆରମ୍ଭ ହେଲା । ୭ । ପାଞ୍ଚାଳମାନଙ୍କର ଯେଉଁ ଯେଉଁ ରଥିମାନଙ୍କୁ ଦ୍ରୋଣ ପ୍ରମଥିତ କରିବାକୁ ପ୍ରବୃତ୍ତ ହେଉଥିଲେ, ପାଞ୍ଚାଳ୍ୟ, ଧୃଷ୍ଟଦ୍ୟୁମ୍ନ ସେହି ସେହି ରଥିମାନଙ୍କୁ ସାହାଯ୍ୟ କରିବାରେ ପ୍ରବୃତ୍ତ ହେଉଥିଲେ । ୮ । ସଂଗ୍ରାମ ଭୟଙ୍କର ହୋଇ ଉଠନ୍ତେ ବୀରମାନେ ଭୈରବ ନାଦ କରି ବୀରମାନଙ୍କ ପ୍ରତି ଧାବମାନ ହେଲେ । ଯୋଦ୍ଧା ପ୍ରତିଯୋଦ୍ଧାର ନିୟମ ରହିଲା ନାହିଁ, ସେ ସମସ୍ତ ବିପର୍ଯ୍ୟସ୍ତ ଘଟିଲା । ୯ । ସେହି ଯୁଦ୍ଧରେ ପାଣ୍ଡବମାନେ ଶତ୍ରୁଙ୍କୁ ଭୟ କଲେ ନାହିଁ । ସେମାନେ ଆପଣାର ବନବାସାଦି କ୍ଳେଶସବୁ ସ୍ମରଣ କରି ଆମ୍ଭ ସେନାମାନଙ୍କୁ ବିକମ୍ପିତ କଲେ । ୧୦ । ମହାସତ୍ତ୍ୱ ଲଜ୍ଜାଶୀଳ ପାଣ୍ଡବମାନେ ଅମର୍ଷବଶ ଓ ପ୍ରାଣନିଃସ୍ପୃହ ହୋଇ ସେହି ମହାଯୁଦ୍ଧରେ ଦ୍ରୋଣଙ୍କୁ ଦହନ କରିବାରେ ପ୍ରବୃତ୍ତ ହେଲେ । ୧୧ ।

ସେହି ଅମିତତେଜା ପାଣ୍ଡବମାନେ ପ୍ରାଣକୁ ପଣ କରି ତୁମୁଳ ଯୁଦ୍ଧ-ରୂପ ଦ୍ୟୂତକ୍ରୀଡ଼ା କଲେ । ସେମାନଙ୍କର ଅସ୍ତ୍ରପାତ, ଲୌହ ଓ ଶିଳାପାତ-ସ୍ୱରୂପ ହୋଇଥିଲା । ୧୨ । ସେହିପରି ଯୁଦ୍ଧ ପୂର୍ବକାଳରେ ବୃଦ୍ଧମାନେ ଦର୍ଶନ ବା ଶ୍ରବଣ କରିଥିବାର ସେମାନର ସ୍ମରଣ ନାହିଁ । ୧୩ । ସେହି ବୀରବିମର୍ଦ୍ଦନ ସମରରେ ପ୍ରତ୍ୟାବୃତ୍ତ ମହତ୍ ସୈନ୍ୟସମୂହର ଭାରଦ୍ୱାରା ପୃଥିବୀ ପୀଡ଼ିତା ହୋଇ ପ୍ରକମ୍ପିତା ହେଲା । ୧୪ । ଇତସ୍ତତଃ ଘୂର୍ଣ୍ଣାୟମାନ କୌରବସେନାମାନଙ୍କର ଅତି ଭୀଷଣ କଳରବ ନଭୋମଣ୍ଡଳକୁ ସ୍ତବ୍ଧ କରି ଯୁଧିଷ୍ଠିର ସୈନ୍ୟମାନଙ୍କ ମଧ୍ୟରେ ପ୍ରବେଶ କଲା । ୧୫ । ଅନନ୍ତର ରଣଗୁରୁ ଦ୍ରୋଣାଚାର୍ଯ୍ୟ ନିଶିତ ଶରସମୂହ ଦ୍ୱାରା ସହସ୍ର ସହସ୍ର ପାଣ୍ଡବ ସୈନ୍ୟଙ୍କୁ ଆକ୍ରମଣପୂର୍ବକ ପ୍ରଭଗ୍ନ କରିବାକୁ ଆରମ୍ଭ କଲେ । ୧୬ ।

ଅଦ୍ଭୁତକର୍ମା ଦ୍ରୋଣଙ୍କ ଦ୍ୱାରା ସୈନ୍ୟମାନଙ୍କୁ ପୀଡ଼ିତ ହେବାର ଦେଖି ସେନାପତି ପାଞ୍ଚାଳ୍ୟ ସ୍ୱୟଂ ଦ୍ରୋଣଙ୍କୁ ନିବାରଣ କରିବାରେ ପ୍ରବୃତ୍ତ ହେଲେ । ୧୭ । ସେହି ସମୟରେ ଦ୍ରୋଣ ଓ ପାଞ୍ଚାଳ୍ୟଙ୍କର ଅଦ୍ଭୁତ ଯୁଦ୍ଧ ହେଲା । ଆମ୍ଭଙ୍କୁ ବୋଧ ହୁଏ, ସେହି ଯୁଦ୍ଧର ଆଉ ଉପମା ନାହିଁ । ୧୮ । ଅନନ୍ତର ଯେପରି ଅଗ୍ନି ତୃଣ-ଗୃହମାନଙ୍କୁ ଦହନ କରେ, ସେହିରୂପେ ଶରସ୍ଫୁଲିଙ୍ଗ

ଓ ଧନୁ-ଶିଖା-ସମ୍ପନ୍ନ ଅନଳତୁଲ୍ୟ ନୀଳରାଜା କୌରବ ସେନାମାନଙ୍କୁ ଦଗ୍‌ଧ କରିବାରେ ପ୍ରବୃତ୍ତ ହେଲେ । ୧୯ ।

ପ୍ରତାପବାନ୍, ବଳୁଶ୍ରେଷ୍ଠ ଅଶ୍ୱତ୍‌ଥାମା ନୀଳରାଜାଙ୍କୁ ସୈନ୍ୟ ଦଗ୍‌ଧ କରିବାର ଦେଖି ହାସ୍ୟପୂର୍ବକ କହିଲେ । ୨୦ । ହେ ନୀଳରାଜ ! ଶରଶିଖା ଦ୍ୱାରା ବହୁ ଯୋଦ୍ଧାଙ୍କୁ ଦଗ୍‌ଧ କରିବାରେ ତୁମ୍ଭର ପ୍ରୟୋଜନ କଅଣ ? ତୁମ୍ଭେ କେବଳ ଆମ୍ଭ ସହିତ ଯୁଦ୍ଧ କର ଓ ଆମ୍ଭଙ୍କୁ କ୍ରୋଧ-ପୂର୍ବକ ସତ୍ୱର ପ୍ରହାର କର । ୨୧ ।

ପଦ୍ମନଳକରାକାର; ପଦ୍ମଲୋଚନ, ପ୍ରଫୁଲ୍ଲକମଳାନନ ଅଶ୍ୱତ୍‌ଥାମାଙ୍କୁ ନୀଳରାଜା ବାଣଦ୍ୱାରା ବିଦ୍ଧ କଲେ । ୨୨ । ଅଶ୍ୱତ୍‌ଥାମା ତାହାଙ୍କ ବାଣଦ୍ୱାରା ସହସା ଅତିବିଦ୍ଧ ହୋଇ ତୀକ୍ଷ୍‌ଣ ତିନିଗୋଟି ଭଲ୍ଲଦ୍ୱାରା ନୀଳରାଜାଙ୍କ ଧନୁ, ଧ୍ୱଜ ଓ ଛତ୍ରକୁ ଛେଦନ କରିପକାଇଲେ । ୨୩ । ଶ୍ରେଷ୍ଠ ଖଡ଼୍‌ଗ ଓ ଚର୍ମକୁ ଧାରଣପୂର୍ବକ ନୀଳରାଜା ପକ୍ଷୀ ସଦୃଶ ରଥରୁ ଲମ୍ଫ ପ୍ରଦାନ କରି ଅଶ୍ୱତ୍‌ଥାମାଙ୍କ ମସ୍ତକ ଛେଦନ କରିବାକୁ ଇଚ୍ଛା କଲେ । ୨୪ । ପରନ୍ତୁ ଅଶ୍ୱତ୍‌ଥାମା ହାସ୍ୟପୂର୍ବକ ଗୋଟିଏ ଭଲ୍ଲଦ୍ୱାରା ଉଦ୍ୟତ-ଖଡ଼୍‌ଗଧାରୀ ନୀଳରାଜାଙ୍କ ଦେହରୁ କୁଣ୍ଡଳଭୂଷିତ ସୁନାସାଶୋଭିତ ମସ୍ତକ କାଟି ପକାଇଲେ । ୨୫ । ପୂର୍ଣ୍ଣଚନ୍ଦ୍ର-ନିଭାନନ, ପଦ୍ମଲୋଚନ, ଦୀର୍ଘକାୟ, ନୀଳ-ପଦ୍ମକାନ୍ତିସମ୍ପନ୍ନ ନୀଳରାଜା ନିହତ ହୋଇ ଭୂମିରେ ନିପତିତ ହେଲେ । ୨୬ ।

ଉଜ୍ଜ୍ୱଳତେଜା ନୀଳ ଆଚାର୍ଯ୍ୟପୁତ୍ରଙ୍କଦ୍ୱାରା ନିହତ ହେବାରୁ ପାଣ୍ଡବ ସୈନ୍ୟମାନେ ଅତ୍ୟନ୍ତ ଆକୁଳ ଓ ବ୍ୟଥିତ ହେଲେ । ୨୭ । ହେ ଆର୍ଯ୍ୟ ! ସେହି ସମୟରେ ପାଣ୍ଡବମାନଙ୍କର ସମସ୍ତ ମହାରଥ ଚିନ୍ତା କଲେ ଯେ, ବର୍ତ୍ତମାନ ଅର୍ଜ୍ଜୁନ ଅବଶିଷ୍ଟ ସଂଶପ୍ତକ ଓ ନାରାୟଣୀ ସେନା ସହିତ ଦକ୍ଷିଣ ଦିଗରେ ଯୁଦ୍ଧ କରୁଅଛନ୍ତି । ସେ ବର୍ତ୍ତମାନ କି ପ୍ରକାର ଆସି ଆମ୍ଭମାନଙ୍କୁ ଏହି ଶତ୍ରୁ ହସ୍ତରୁ ତ୍ରାଣ କରିବେ ? ୨୮ ।



# ୩୨ ଅଧ୍ୟାୟ

ସଞ୍ଜୟ ବୋଇଲେ—ନିଜ ସୈନ୍ୟ ଶତ୍ରୁମାନଙ୍କ ଦ୍ୱାରା ବିଧ୍ୱସ୍ତ ହେବାର ଦେଖି ଭୀମସେନ ତାହା ସହି ପାରିଲେ ନାହିଁ ଓ ବାହ୍ଲୀକଙ୍କୁ ଷାଠିଏଗୋଟି ଶରଦ୍ୱାରା ଓ କର୍ଣ୍ଣଙ୍କୁ ଦଶଗୋଟି ଶରଦ୍ୱାରା ପ୍ରହାର କଲେ ।୧। ଭୀମଙ୍କ ପ୍ରାଣସଂହାର ମାନସରେ ତୀକ୍ଷ୍ଣଧାର ଅଜିହ୍ମଗ ବାଣମାନଙ୍କ ଦ୍ୱାରା ଦ୍ରୋଣାଚାର୍ଯ୍ୟ ଭୀମଙ୍କ ସମୁଦାୟ ମର୍ମସ୍ଥାନକୁ ଆଘାତ କଲେ । ୨ । ତତ୍ପରେ ପୁନର୍ବାର ଛବିଶ‌ଗୋଟି ବାଣଦ୍ୱାରା ତାହାଙ୍କୁ ବିଦ୍ଧ କଲେ । କର୍ଣ୍ଣ ଦ୍ୱାଦଶଗୋଟି, ରାଜା ଦୁର୍ଯ୍ୟୋଧନ ଛଅଗୋଟି ଓ ଅଶ୍ୱତ୍ଥାମା ସାତଗୋଟି ବାଣଦ୍ୱାରା ଭୀମଙ୍କୁ ସମାକୀର୍ଣ୍ଣ କଲେ । ମହାବଳ ଭୀମସେନ ମଧ୍ୟ ସେମାନଙ୍କୁ ପ୍ରତିବିଦ୍ଧ କଲେ । ୪ । ଭୀମସେନ ଦ୍ରୋଣଙ୍କୁ ପଚାଶଗୋଟି, କର୍ଣ୍ଣଙ୍କୁ ଦଶଗୋଟି, ଦୁର୍ଯ୍ୟୋଧନଙ୍କୁ ବାରଗୋଟି ଓ ଅଶ୍ୱତ୍ଥାମାଙ୍କୁ ଆଠଗୋଟି ବାଣଦ୍ୱାରା ବିଦ୍ଧ କରି ଘୋରନିନାଦପୂର୍ବକ ସେମାନଙ୍କ ସହିତ ଯୁଦ୍ଧରେ ପ୍ରବୃତ୍ତ ହେଲେ ।

ସେହି ତୁମୁଳ-ଯୁଦ୍ଧସ୍ଥଳରେ ଭୀମସେନ ମୃତ୍ୟୁନ୍ମୁଖ ଅବସ୍ଥାକୁ ପ୍ରାପ୍ତ ହୋଇ ପ୍ରାଣର ଆଶା ଛାଡ଼ି ଯୁଦ୍ଧରେ ପ୍ରବୃତ୍ତ ହୁଅନ୍ତେ ଅଜାତଶତ୍ରୁ ଯୁଧିଷ୍ଠିର "ଭୀମଙ୍କୁ ରକ୍ଷା କର" ବୋଲି ନିଜ ଯୋଦ୍ଧାମାନଙ୍କୁ ଆଦେଶ ଦେଲେ । ଅମିତତେଜା ଯୁଯୁଧାନ ପ୍ରଭୃତି ଓ ମାଦ୍ରୀ-ତନୟଦ୍ୱୟ ଭୀମସେନଙ୍କ ନିକଟକୁ ଗମନ କଲେ । ଭୀମ ପ୍ରଭୃତି ମହାବୀର୍ଯ୍ୟ ପୁରୁଷଶ୍ରେଷ୍ଠ ମହାରଥମାନେ ସୁ-ସଂରବ୍ଧ ଓ ସମବେତ ହୋଇ ମହାଧନୁର୍ଦ୍ଧରମାନଙ୍କ ରକ୍ଷିତ ଦ୍ରୋଣ ସୈନ୍ୟମାନଙ୍କୁ ଭେଦକରିବା ନିମନ୍ତେ ସମାଗତ ହେଲେ । ୯ ।

ରଥିଶ୍ରେଷ୍ଠ ଦ୍ରୋଣ ଅବ୍ୟଗ୍ର ଚିତ୍ତରେ ସେହି ମହାରଥିମାନଙ୍କୁ ପ୍ରତିଗ୍ରହଣ କଲେ । ଆପଣଙ୍କ ପକ୍ଷର ଯୋଦ୍ଧାମାନେ ମଧ୍ୟ ଅନ୍ତଃକରଣରୁ ମୃତ୍ୟୁଭୟ ତ୍ୟାଗ କରି ପାଣ୍ଡବପକ୍ଷୀୟ ଅତିବଳଶାଳୀ ସେହି ସମରଯୋଧୀ ମହାରଥ ବୀରମାନଙ୍କ ପ୍ରତି ଧାବମାନ ହେଲେ । ସେହି ସମୟରେ ସାଦୀ ସାଦୀଙ୍କୁ, ରଥିମାନେ ରଥିମାନଙ୍କୁ ପ୍ରହାର କଲେ । ୧୧ । ସେହି ଯୁଦ୍ଧରେ ଶକ୍ତି ଅସି ଓ ପରଶୁ ଅସ୍ତ୍ରମାନଙ୍କର ଅତିସମ୍ପାତ ହେଲା । ପ୍ରକୃଷ୍ଟ ରୂପରେ

ପରୁଷ ବାକ୍ୟ ପ୍ରୟୋଗପୂର୍ବକ ଅସି ଯୁଦ୍ଧ ହେଲା । ୧୨ । କୁଞ୍ଜରମାନଙ୍କର ପରସ୍ପର ସମ୍ପାତରୁ ମହାଦାରୁଣ ଯୁଦ୍ଧ ହେଲା । କେହି ହସ୍ତୀ ଉପରୁ କେହି ବା ଅଶ୍ୱ ପୃଷ୍ଠରୁ ନତମସ୍ତକରେ ପତିତ ହେଲେ । ୧୩ ।

କେହି କେହି ରଥୀ ବାଣନିର୍ଭିନ୍ନ ହୋଇ ରଥରୁ ପତିତ ହେଲେ । କେହି କେହି ମନୁଷ୍ୟ ବର୍ମଶୂନ୍ୟ ହୋଇ ପତିତ ହେବାରୁ ସେମାନଙ୍କର ବକ୍ଷଃସ୍ଥଳକୁ ହସ୍ତୀ ଆକ୍ରମଣ କରି ମସ୍ତକକୁ ଚୂର୍ଣ୍ଣ କଲା । କୌଣସି କୌଣସି ହସ୍ତୀ ଅପରନିପାତିତ ହସ୍ତୀ ଓ ମନୁଷ୍ୟମାନଙ୍କୁ ମର୍ଦ୍ଦନ କଲେ । ହସ୍ତୀ ଓ ଦନ୍ତଦ୍ୱାର ଅବମୀଗତ ହୋଇଥିବା ଅନେକ ରଥୀଙ୍କୁ ଭେଦ କଲେ । ନରମାନଙ୍କ ଅନ୍ତସବୁ କୌଣସି କୌଣସି ହସ୍ତୀ ଦନ୍ତରେ ସଂଲଗ୍ନ ହେବାରୁ ସେମାନେ ସେହି ଅନ୍ତ ସମେତ ହୋଇ ଶତଶତ ଲୋକଙ୍କୁ ମର୍ଦ୍ଦନପୂର୍ବକ ରଣକ୍ଷେତ୍ରରେ ଭ୍ରମଣ କଲେ । କୃଷ୍ଣଲୌହନିର୍ମିତବର୍ମଧାରୀ କୌଣସି କୌଣସି ହସ୍ତୀ ପତିତ ନର, ଅଶ୍ୱ, ରଥ ଓ ହସ୍ତିମାନଙ୍କୁ ସ୍ଥୂଳ ନଳବନ ସଦୃଶ ଚୂର୍ଣ୍ଣିତ କଲେ । ରାଜାମାନେ ଲଜ୍ଜାନ୍ୱିତ ହୋଇ କାଳବଶରୁ ଅତି ଦୁଃଖଜନକ ଗୃଧ୍ର-ପକ୍ଷି-ସ୍ତୀର୍ଣ୍ଣ ଶଯ୍ୟାରେ ଶୟନ କଲେ । ଏପରି ନିମର୍ଯ୍ୟାଦ ଯୁଦ୍ଧ ଉପସ୍ଥିତ ହେଲା ଯେ, ପିତା ପୁତ୍ରକୁ ଓ ପୁତ୍ର ପିତାକୁ ମୋହବଶରୁ ବଧ କଲେ । କୌଣସି ରଥର ଅକ୍ଷ ଭଗ୍ନ ଓ କୌଣସି ରଥର ଧ୍ୱଜ ଓ ଛତ୍ର ଛିନ୍ନ ହୋଇ ଭୂମିରେ ନିପତିତ ହେଲା । ୨୦ ।

କୌଣସି କୌଣସି ଅଶ୍ୱ ଛିନ୍ନ ଯୁଗ-କାଷ୍ଠର ଅର୍ଦ୍ଧଖଣ୍ଡକୁ ଘେନି ପଳାଇଗଲେ । କାହାର ଅସିମଣ୍ଡିତ ବାହୁ ଓ କାହାର ସକୁଣ୍ଡଳ ମସ୍ତକ ଛିନ୍ନ ହୋଇ ପତିତ ହେଲା । ୨୧ । କୌଣସି ବଳବାନ୍ ଗଜ ଭୂମିରେ ରଥକୁ ନିକ୍ଷେପ କରି ଚୂର୍ଣ୍ଣିତ କଲା । କୌଣସି ହସ୍ତୀ ରଥିକର୍ତ୍ତୃକ ନାରାଚ ଦ୍ୱାରା ସମାହତ ହୋଇ ଭୂମିରେ ପତିତ ହେଲା ଓ କୌଣସି ଅଶ୍ୱ ଗଜ-ଦ୍ୱାରା ନିହତ ହୋଇ ଆରୋହୀ ସହିତ ଭୂମିରେ ପତିତ ହେଲା ।

ସେହି ଯୁଦ୍ଧରେ 'ହା ତାତ' 'ହା ପୁତ୍ର' 'ହା ସଖେ' 'ତୁମ୍ଭେ କେଉଁଠାରେ ରହିଅଛ', "ରହ, କେଉଁଠାକୁ ଧାବମାନ ହେଉଅଛ ? ପ୍ରହାର କର, ଆହରଣ କର, ଏହାକୁ ବଧକର ।" ଏହିରୂପେ ଉଚ୍ଚାରିତ

ବିବିଧ ବାକ୍ୟସବୁ ହାସ୍ୟ, ଚିତ୍କାର ଓ ଗର୍ଜନ ସହିତ ଶ୍ରୁତହେଲା । ନର, ଅଶ୍ୱ ଓ ହସ୍ତୀମାନଙ୍କ ଶୋଣିତ ଧାରଦ୍ୱାରା ରଣସ୍ଥଳରେ ଉତ୍ଥିତ ଧୂଳି ଉପଶମିତ ହେଲା ଓ ଭୀରୁମାନଙ୍କର ଚିତ୍ତ ବ୍ୟାକୁଳିତ ହେଲା । କୌଣସି ରଥାରୋହୀ ବୀରର ସ୍ୱୀୟ ରଥଚକ୍ର ବିପକ୍ଷ ରଥିର ରଥଚକ୍ରରେ ସଂଲଗ୍ନ ହେବାରୁ ସେ ଅସ୍ତ୍ର ନିକ୍ଷେପ କଲା ଭଳି ଦୂରତ୍ୱ ଓ ସମୁଚିତ ସମୟ ନପାଇ ଗଦାଦ୍ୱାରା ଶତ୍ରୁର ମସ୍ତକ ଚୂର୍ଣ୍ଣକଲା ।

ସେହି ନିରାଶ୍ରୟ ଯୁଦ୍ଧରେ ଆଶ୍ରୟ ଲାଭାର୍ଥୀ ଶୂରମାନେ ପରସ୍ପର କେଶାକର୍ଷଣପୂର୍ବକ ମୁଷ୍ଟି ନଖ ଓ ଦନ୍ତଦ୍ୱାରା ଦାରୁଣ ଯୁଦ୍ଧ କରିବାରେ ପ୍ରବୃତ୍ତ ହେଲେ । କାହାର ଖଡ୍ଗ ସହିତ, କାହାର ଶରାସନ ସହିତ, କାହାର ବାଣ ସହିତ ଓ କାହାର ବା ଅଙ୍କୁଶ ସହିତ ବାହୁ ଛିନ୍ନ ହେଲା । କେହି କାହାପ୍ରତି ଆକ୍ରୋଶ କଲା, କେହି ବିମୁଖ ହୋଇ ପଳାୟନକଲା, କେହି ବା କାହାକୁ ନିକଟରେ ପାଇ ତାହାର ମସ୍ତକ ଛେଦନ କଲା, କେହି କେହି ଶବ୍ଦକରି ପଳାୟନକଲେ, କେହି କେହି ଶବ୍ଦ ଶ୍ରବଣକରି ସ୍ତବ୍ଧ ହେଲେ ଓ କେହି କେହି ଶାଣିତ ଶରଦ୍ୱାରା ଆତ୍ମପକ୍ଷର ଓ କେହିବା ପରପକ୍ଷର ଶିରଚ୍ଛେଦନ କଲେ ।

ଏହି ଯୁଦ୍ଧରେ ଗିରିଶୃଙ୍ଗ ତୁଲ୍ୟ କୌଣସି କୌଣସି ହସ୍ତୀ ନାରାଚ ଦ୍ୱାରା ନିହତ ହୋଇ ବର୍ଷାକାଳୀନ ନଦୀତଟସଦୃଶ ଭୂମିରେ ପତିତ ହେଲେ । ପର୍ବତୋପମ କୌଣସି ମଦସ୍ରାବୀ ହସ୍ତୀ ପଦଦ୍ୱାରା ଅଶ୍ୱ ଓ ସାରଥି ସହିତ ରଥୀକୁ ନିପୀଡ଼ିତ କରି ଭୂତଳରେ ଅବସ୍ଥାନ କଲା । କୃତାସ୍ତ୍ର ରୁଧିରସିକ୍ତ ଶୂରମାନଙ୍କୁ ପ୍ରହାର କରିବାର ଦେଖି ଦୁର୍ବଳଚିତ୍ତ ଭୀରୁ ବ୍ୟକ୍ତିମାନଙ୍କ ହୃଦୟରେ ମୋହ ଜାତହେଲା । ସମୁଦାୟ ସୈନ୍ୟ ଆବେଗଯୁକ୍ତ ହେଲେ ; ସେମାନଙ୍କ ଦ୍ୱାରା ସମୁତ୍ଥିତ ଧୂଳିରେ କିଛି ଦେଖାଗଲା ନାହିଁ ଓ ନିର୍ମର୍ଯ୍ୟାଦ ଯୁଦ୍ଧ ଉପସ୍ଥିତ ହେଲା ।

ଅନନ୍ତର ସେନାପତି ଧୃଷ୍ଟଦ୍ୟୁମ୍ନ "ଦ୍ରୋଣ ବଧର ସମୟ ଏହି ଉପସ୍ଥିତ ହୋଇଅଛି", ଏହାକହି ତ୍ୱରାଯୁକ୍ତ ପାଣ୍ଡବମାନଙ୍କୁ ଆହ୍ୱାନ କଲେ । ହଂସମାନେ ସରୋବରରେ ଆପତିତ ହେଲାପ୍ରାୟ

ବାହୁବଳଶାଳୀ ପାଣ୍ଡବମାନେ ସେନାପତିଙ୍କ ଶାସନାନୁସାରେ ଦ୍ରୋଣଙ୍କର ରଥପ୍ରତି ଧାବମାନ ହେଲେ । ଦୁର୍ଦ୍ଧର୍ଷ ଦ୍ରୋଣଙ୍କ ରଥ ନିକଟରେ "ଗ୍ରହଣ କର" "ଆକ୍ରମଣ କର", "ନିର୍ଭୟରେ ଛେଦନ କର" ଏହିରୂପେ ତୁମୁଳ ଶବ୍ଦ ହେଲା । ତହୁଁ ଦ୍ରୋଣ, କୃପ, କର୍ଣ୍ଣ, ଅଶ୍ୱତ୍ଥାମା, ଜୟଦ୍ରଥ, ଅବନ୍ତୀରାଜ, ବିନ୍ଦ ଓ ଅନୁବିନ୍ଦ ଏବଂ ଶଲ୍ୟ ସେମାନଙ୍କୁ ଶରନିକ୍ଷେପଦ୍ୱାରା ନିବାରଣ କଲେ । ଆର୍ଯ୍ୟଧର୍ମାନୁବର୍ତ୍ତୀ, ଦୁର୍ନିବାର, ଦୁରାସଦ, ପାଣ୍ଡବ ଓ ପାଞ୍ଚାଳ-ମାନେ ଶର ପୀଡ଼ିତ ହୋଇ ସୁଦ୍ଧା ଦ୍ରୋଣଙ୍କୁ ଛାଡ଼ିଲେ ନାହିଁ । ତହୁଁ ଦ୍ରୋଣ ଅତି କ୍ରୁଦ୍ଧହୋଇ ଶତ ଶତ ବାଣବର୍ଷଣ ଦ୍ୱାରା ଚେଦି, ପାଞ୍ଚାଳ ଓ ପାଣ୍ଡବ ପକ୍ଷୀୟମାନଙ୍କୁ ନିହତ କରିବାରେ ପ୍ରବୃତ୍ତ ହେଲେ ।

ହେ ଆର୍ଯ୍ୟ ! ଦ୍ରୋଣଙ୍କର ବଜ୍ରଧ୍ୱନିସଦୃଶ ଜ୍ୟା ଓ ତଳ ନିର୍ଘୋଷ ବହୁ ମନୁଷ୍ୟଙ୍କୁ ବ୍ୟଥିତ କରି ସର୍ବଦିଗରେ ଶ୍ରୁତ ହେଲା । ଇତି ମଧ୍ୟରେ ଅର୍ଜ୍ଜୁନ ବହୁ ସଂଶପ୍ତକମାନଙ୍କୁ ପରାଜୟ କରି ଯେଉଁସ୍ଥାନରେ ଦ୍ରୋଣ ପାଣ୍ଡବମାନଙ୍କୁ ମର୍ଦ୍ଦିତ କରୁଥିଲେ, ସେହିସ୍ଥାନକୁ ଆଗମନ କଲେ । ବହୁଳ ସଂଶପ୍ତକ ଯୋଦ୍ଧାମାନଙ୍କୁ ନିହତ କରି ଶରସମୂହ ରୂପ ମହାଆବର୍ତ୍ତଯୁକ୍ତ ଓ ଶୋଣିତରୂପ ମହାଜଳମୟ ହ୍ରଦରୁ ଉତ୍ତୀର୍ଣ୍ଣ ହୋଇ ଅର୍ଜ୍ଜୁନ ଦୃଷ୍ଟିଗୋଚର ହେଲେ ।

ସୂର୍ଯ୍ୟ ସମ ତେଜସ୍ୱୀ ସେହି କୀର୍ତ୍ତିମାନ୍ ଅର୍ଜ୍ଜୁନଙ୍କର ତେଜଃପ୍ରଦୀପ୍ତ ବାନରଧ୍ୱଜ ଚିହ୍ନ ଆମ୍ଭେମାନେ ଦର୍ଶନ କଲୁଁ । ଯୁଗାନ୍ତକାଳୀନ ଅର୍କସଦୃଶ ସେହି ଅର୍ଜ୍ଜୁନ ଶରରୂପ କିରଣଜାଳଦ୍ୱାରା ସଂଶପ୍ତକରୂପ ସମୁଦ୍ରକୁ ଶୋଷଣ କରି କୁରୁମାନଙ୍କୁ ଅତିଶୟ ତାପିତ କଲେ । ଯୁଗାନ୍ତ କାଳରେ ଉତ୍ଥିତ ଧୂମକେତୁ ଯେପରି ସର୍ବ ପ୍ରାଣୀଙ୍କୁ ଦଗ୍ଧ କରେ, ସେହିପରି ଅର୍ଜ୍ଜୁନ ଶସ୍ତ୍ର-ତେଜରେ କୁରୁମାନଙ୍କୁ ଦଗ୍ଧ କଲେ । ଗଜାରୋହୀ, ଅଶ୍ୱାରୋହୀ ଓ ରଥୀମାନେ ଅର୍ଜ୍ଜୁନଙ୍କର ଶରସମୂହଦ୍ୱାରା ଆହତ ହୋଇ ମୁକ୍ତକେଶରେ ଭୂମିରେ ପତିତ ହେଲେ । କେହି ଆର୍ତ୍ତସ୍ୱରରେ ରୋଦନ ଓ କେହି କେହି ବା ଚିତ୍କାର କରିବାକୁ ଆରମ୍ଭ କଲେ । ୪୮ । କେତେକ ଲୋକ ପାର୍ଥବାଣରେ ହତ ହୋଇ ପ୍ରାଣତ୍ୟାଗପୂର୍ବକ ନିପତିତ ହେଲେ ।

ଯେଉଁମାନେ ଦ୍ରୁତବେଗରେ ପଳାୟନ କଲେ ଓ ଯେଉଁମାନେ ପତିତ ବା ପରାଙ୍ମୁଖ ହେଲେ, ସେମାନଙ୍କୁ ଅର୍ଜ୍ଜୁନ କ୍ଷତ୍ରିୟଧର୍ମ ସ୍ମରଣ କରି ଆଘାତ କଲେ ନାହିଁ । ଅନେକଙ୍କର ରଥ, ଅଶ୍ୱ ଓ ହସ୍ତୀ ଇତସ୍ତତଃ ବିକୀର୍ଣ୍ଣ ହୋଇଗଲେ , ସେମାନେ ପରାଙ୍ମୁଖ ହେଲପ୍ରାୟ ହା-ହାକାର ରବ କରି "କର୍ଣ୍ଣ, କର୍ଣ୍ଣ" ବୋଲି ରୋଦନ କଲେ ।

ଶରଣାର୍ଥୀ କୁରୁମାନଙ୍କର ସେହି ଆର୍ତ୍ତକ୍ରନ୍ଦନ ଶ୍ରବଣ କରି "ଭୟ ନାହିଁ, ଭୟ ନାହିଁ" ବୋଲି କର୍ଣ୍ଣ ଅର୍ଜ୍ଜୁନଙ୍କ ଅଭିମୁଖକୁ ଗମନ କଲେ । କୌରବମାନଙ୍କ ମଧ୍ୟରେ ରଥିଶ୍ରେଷ୍ଠ ଅସ୍ତ୍ରଜ୍ଞ-ପ୍ରବର କର୍ଣ୍ଣ ଆତ୍ମପକ୍ଷୀୟ ସୈନ୍ୟମାନଙ୍କର ହର୍ଷ ବର୍ଦ୍ଧନ କରି ଆଗ୍ନେୟ ଅସ୍ତ୍ର ପ୍ରାଦୁର୍ଭୂତ କଲେ । ଦୀପ୍ତ ଧନୁର୍ବାଣଧାରୀ କର୍ଣ୍ଣଙ୍କର ଶରସମୂହକୁ ଧନଞ୍ଜୟ ଶରଜାଳଦ୍ୱାରା ନିବାରଣ କଲେ । କର୍ଣ୍ଣ ମଧ୍ୟ ଅସ୍ତ୍ରଦ୍ୱାରା ଅର୍ଜ୍ଜୁନଙ୍କର ଜ୍ୱଳିତ-ତେଜଃ-ସମ୍ପନ୍ନ ବାଣସବୁକୁ ନିବାରଣ କଲେ ଓ ପୁନର୍ବାର ଶରସମୂହ ବିସର୍ଜ୍ଜନ କରି ସିଂହନାଦ କଲେ ।

ମହାରଥ ଧୃଷ୍ଟଦ୍ୟୁମ୍ନ, ଭୀମ ଓ ସାତ୍ୟକି କର୍ଣ୍ଣଙ୍କ ସମୀପକୁ ଗମନ କରି ତାହାଙ୍କୁ ତିନି ତିନିଗୋଟି ବାଣଦ୍ୱାରା ବିଦ୍ଧ କଲେ । ରାଧାନନ୍ଦନ କର୍ଣ୍ଣ ଶରବୃଷ୍ଟିଦ୍ୱାରା ଅର୍ଜ୍ଜୁନଙ୍କ ଅସ୍ତ୍ର ନିବାରିତ କରି ତିନିଗୋଟି ଶରଦ୍ୱାରା ସେହି ତିନିଜଣଙ୍କର ଶରାସନ ଛେଦନ କଲେ । ସେହି ତିନି ବୀର ଛିନ୍ନାୟୁଧ ହୋଇ ବିଷହୀନ ସର୍ପବତ୍ ହେଲେ ଓ ରଥ ଉପରୁ ଶକ୍ତିମାନଙ୍କୁ ନିକ୍ଷେପ କରି ସିଂହସଦୃଶ ଅତ୍ୟନ୍ତ ନିନାଦ କଲେ । ତେଜପ୍ରଦୀପ୍ତ ଭୁଜଗସଦୃଶ ସେହି ମହାଶକ୍ତିମାନ ସେମାନଙ୍କ ହସ୍ତାଗ୍ରରୁ ମହାବେଗରେ ନିକ୍ଷିପ୍ତ ହୋଇ କର୍ଣ୍ଣଙ୍କ ପ୍ରତି ଗମନ କଲେ ।

ବଳବାନ୍ କର୍ଣ୍ଣ ତିନି ତିନିଗୋଟି ଅଜିହ୍ମଗ ଶରଦ୍ୱାରା ସେହି ସକଳ ଶକ୍ତିକୁ ଛେଦନ କରି ପାର୍ଥଙ୍କ ଉପରେ ବାଣବର୍ଷଣପୂର୍ବକ ନିନାଦ କଲେ । ଅର୍ଜ୍ଜୁନ ମଧ୍ୟ ସପ୍ତଗୋଟି ଶରଦ୍ୱାରା କର୍ଣ୍ଣଙ୍କୁ ବିଦ୍ଧ କରି ତିନିଗୋଟି ଶାଣିତ ଶରଦ୍ୱାରା କର୍ଣ୍ଣଙ୍କ କନିଷ୍ଠକୁ ନିହତ କଲେ । ତତ୍ପରେ ଛଅଗୋଟି ଅଜିହ୍ମଗ ବାଣଦ୍ୱାରା ଅର୍ଜ୍ଜୁନ ଶତ୍ରୁଞ୍ଜୟକୁ ନିହତ କରି ଭଲ୍ଲଦ୍ୱାରା ବିପାଠଙ୍କ ମସ୍ତକ-

କର୍ତ୍ତନପୂର୍ବକ ରଥ ଉପରୁ ଭୂମିରେ ନିପତିତ କଲେ । ଏହି ପ୍ରକାରେ କର୍ଣ୍ଣଙ୍କ ଏକାକୀ ଯୁଦ୍ଧ କରି ଧୃତରାଷ୍ଟ୍ରଙ୍କ ପୁତ୍ରଗଣଙ୍କର ଓ କର୍ଣ୍ଣଙ୍କ ସମକ୍ଷରେ କର୍ଣ୍ଣଙ୍କର ତିନିଗୋଟି ଭ୍ରାତାଙ୍କୁ ସଂହାର କଲେ ।

ଅନନ୍ତର ଭୀମ ସ୍ୱୀୟ ରଥରୁ ଗରୁଡ଼ସଦୃଶ ଉତ୍ପତିତ ହୋଇ ତୀକ୍ଷ୍ଣ ଅସିଦ୍ୱାରା କର୍ଣ୍ଣପକ୍ଷୀୟ ପଞ୍ଚଦଶ ଯୋଦ୍ଧାଙ୍କୁ ନିହତ କଲେ ଓ ପୁନର୍ବାର ସ୍ୱରଥରେ ଆରୋହଣ କରି ଅପର ଧନୁ ଗ୍ରହଣ ପୂର୍ବକ ଦଶଗୋଟି ଶରଦ୍ୱାରା କର୍ଣ୍ଣଙ୍କୁ ଓ ପାଞ୍ଚଗୋଟି ବାଣଦ୍ୱାରା ତାହାଙ୍କର ସାରଥି ଓ ଅଶ୍ୱମାନଙ୍କୁ ବିଦ୍ଧ କଲେ । ଧୃଷ୍ଟଦ୍ୟୁମ୍ନ ଭାସ୍ୱର ଅସି ଓ ଚର୍ମ ଗ୍ରହଣ କରି ନିଷଧ-ରାଜ ବୃହତ୍‌କ୍ଷତ୍ର ଓ ଚନ୍ଦ୍ରବର୍ମାଙ୍କୁ ବଧ କଲେ । ତତ୍ପରେ ନିଜ ରଥକୁ ଆଗମନ କରି ଅନ୍ୟ ଧନୁ ଧାରଣ ପୂର୍ବକ ସିଂହନାଦ କରି ତିନିସପ୍ତତି ବାଣଦ୍ୱାରା କର୍ଣ୍ଣଙ୍କୁ ବିଦ୍ଧ କଲେ । ଚନ୍ଦ୍ରସମ ପ୍ରଭାସମ୍ପନ୍ନ ସାତ୍ୟକି ମଧ୍ୟ ଅନ୍ୟ ଧନୁ ଧାରଣ କରି ଚତୁଃଷଷ୍ଟି ବାଣଦ୍ୱାରା କର୍ଣ୍ଣଙ୍କୁ ବିଦ୍ଧ କରି ସିଂହନାଦ କଲେ ଓ ସୁ-ନିକ୍ଷିପ୍ତ ଦୁଇଗୋଟି ଭଲ୍ଲଦ୍ୱାରା କର୍ଣ୍ଣଙ୍କର କାର୍ମୁକ ଛେଦନ କଲେ । ୬୮ । ପୁନର୍ବାର ତିନିଗୋଟି ବାଣଦ୍ୱାରା କର୍ଣ୍ଣଙ୍କ ବାହୁଦ୍ୱୟ ଓ ବକ୍ଷସ୍ଥଳରେ ଆଘାତ କଲେ । ତତ୍ପରେ ରାଜା ଦୁର୍ଯ୍ୟୋଧନ, ଦ୍ରୋଣ ଓ ଜୟଦ୍ରଥ—ଏମାନେ ସାତ୍ୟକିରୂପସାଗରରେ ନିମଜ୍ଜମାନ କର୍ଣ୍ଣଙ୍କୁ ଉଦ୍ଧାର କଲେ ।

ଆପଣଙ୍କ ପକ୍ଷର ଶତଶତ ଅନ୍ୟୋନ୍ୟପ୍ରହାରକ୍ଷମ ପତ୍ତି, ଅଶ୍ୱ, ରଥ ଓ ମାତଙ୍ଗମାନେ ବିପକ୍ଷଙ୍କ ତ୍ରାସ ଉତ୍ପାଦନ କରି କର୍ଣ୍ଣଙ୍କ ସମୀପକୁ ଧାବମାନ ହେଲେ । ଧୃଷ୍ଟଦ୍ୟୁମ୍ନ, ଭୀମ, ଅଭିମନ୍ୟୁ, ଅର୍ଜ୍ଜୁନ, ନକୁଳ ଓ ସହଦେବ—ଏମାନେ ସାତ୍ୟକିଙ୍କୁ ରକ୍ଷା କଲେ । ଏହିରୂପେ ଆପଣଙ୍କର ଓ ପାଣ୍ଡବପକ୍ଷୀୟ ଧନୁର୍ଦ୍ଧାରୀ ବୀରମାନଙ୍କ ମଧ୍ୟରେ ପରସ୍ପର ବିନାଶାର୍ଥ ଘୋର ଯୁଦ୍ଧ ହେଲା ।

ପଦାତି, ରଥୀ, ଗଜାରୋହୀ ଓ ସାଦିମାନେ ଯଥାକ୍ରମେ ଗଜାରୋହୀ, ସାଦୀ, ରଥୀ ଓ ପଦାତି ସହିତ ; ରଥୀ ଓ ଗଜାରୋହୀମାନେ ପଦାତି ସହିତ ; ରଥୀ ଓ ପଦାତିମାନେ ରଥୀ ଓ ଗଜାରୋହୀ ସହିତ ;

ସାଦୀ, ସାଦୀ ସହିତ ; ଗଜାରୋହୀ, ଗଜାରୋହୀ ସହିତ ; ରଥୀ ରଥୀ ସହିତ; ଆଉ ପଦାତି ପଦାତି ସହିତ ସମବେତ ହୋଇ ଯୁଦ୍ଧ କଲେ । ଏହିପ୍ରକାରେ ସେହି ନିର୍ଭୀକ ମହାଯୋଦ୍ଧାମାନଙ୍କ ମଧ୍ୟରେ ଜବ୍ୟାଦ-ହର୍ଷଣ ଯମରାଜ୍ୟ-ବର୍ଦ୍ଧନ ମହାସଂକୁଳ ସଂଗ୍ରାମ ଉପସ୍ଥିତ ହେଲା । ୭୫ । ଅନନ୍ତର ନର, ରଥ, ଅଶ୍ୱ ଓ ହସ୍ତୀ, ଏମାନଙ୍କଦ୍ୱାରା ବହୁଳ ହସ୍ତୀ, ରଥ, ପଦାତି ଓ ଅଶ୍ୱ ନିହତ ହେଲେ ।

ଗଜଦ୍ୱାରା ଗଜ, ଅଶ୍ୱଦ୍ୱାରା ଅଶ୍ୱ, ରଥୀଦ୍ୱାରା ଉଦ୍ୟତାସ୍ତ୍ର ରଥୀ ଓ ପଦାତିଦ୍ୱାରା ପଦାତିମାନେ ନିହତ ହେଲେ । ୭୬ । ରଥଦ୍ୱାରା ଗଜ, ବୃହତ୍ ଗଜଦ୍ୱାରା ବୃହତ୍ ଅଶ୍ୱ, ଅଶ୍ୱଦ୍ୱାରା ନର ଓ ପ୍ରବଳ ରଥୀଦ୍ୱାରା ଅଶ୍ୱ ପ୍ରମଥିତ ହୋଇ କ୍ଷୟପ୍ରାପ୍ତ ହେଲେ । କାହାର କାହାର ଜିହ୍ୱା, କାହାର କାହାର ଦଶନ, କାହାର ବା ଚକ୍ଷୁ ନିଃସୃତ ହେଲା ଓ କାହାର କାହାର ବର୍ମ ଓ କାହାର ଭୂଷଣ ପ୍ରମଥିତ ହୋଇଗଲା । ୭୭ । ଅନେକ ବୀର ବହୁବିଧ ସୁତୀକ୍ଷ୍ଣ ଅସ୍ତ୍ରଦ୍ୱାରା ନିହତ ହୋଇ ଭୟଙ୍କର ମୂର୍ତ୍ତି ଧାରଣ କରି ଧରାଶାୟୀ ହେଲେ । କେହି କେହି ଅଶ୍ୱ ଓ ଗଜର ପଦଘାତରେ ତାଡ଼ିତ ହୋଇ ପ୍ରୋଥିତ ହେଲେ ଓ କେହି ଅବା ରଥଚକ୍ରଦ୍ୱାରା କ୍ଷତବିକ୍ଷତ ହୋଇ ଅତ୍ୟନ୍ତ ଆକୁଳିତ ହେଲେ । ୭୮ ।

ସୁଦାରୁଣ, ଜନକ୍ଷୟକର ଓ ଶ୍ୱାପଦ, ପକ୍ଷୀ ଓ ରାକ୍ଷସମାନଙ୍କର ପ୍ରମୋଦକର ସେହି ଯୁଦ୍ଧରେ ମହାବଳ ଯୋଦ୍ଧାମାନେ କୁପିତ ହୋଇ ପରସ୍ପରସଂହାରପୂର୍ବକ ମହାବେଗରେ ବିଚରଣ କଲେ । ୭୯ । ହେ ଭାରତ ! ଅନନ୍ତର ଦିବାକର ଅସ୍ତାଚଳ ଅବଲମ୍ବନ କରନ୍ତେ ଉଭୟପକ୍ଷୀୟ ସେନା ଅତ୍ୟନ୍ତ ଛିନ୍ନଭିନ୍ନ ଓ ରୁଧିର-ସିକ୍ତ ହୋଇ ପରସ୍ପର ନିରୀକ୍ଷଣପୂର୍ବକ ନିଜନିଜ ଶିବିରାଭିମୁଖରେ ଧୀରେ ଧୀରେ ଗମନ କଲେ । ୮୦ ।



# ୩୩ ଅଧ୍ୟାୟ

ସଞ୍ଜୟ ବୋଇଲେ—ପୂର୍ବେ ଆମ୍ଭ ସୈନ୍ୟମାନେ ଅମିତତେଜା ଅର୍ଜ୍ଜୁନଙ୍କଦ୍ୱାରା ଯୁଦ୍ଧରେ ଭଗ୍ନ ହେବାରୁ ଓ ରାଜା ଯୁଧିଷ୍ଠିର ରକ୍ଷିତ ହୁଅନ୍ତେ ଦ୍ରୋଣାଚାର୍ଯ୍ୟଙ୍କ ସଂକଳ୍ପ ବିଫଳ ହେଲା ।୧। ଲବ୍ଧଲକ୍ଷ୍ୟ ବିପକ୍ଷମାନଙ୍କ ଦ୍ୱାରା ଆପଣଙ୍କପକ୍ଷୀୟ ସମସ୍ତେ ଯୁଦ୍ଧରେ ପରାଜିତ, ମ୍ଳାନ ଭାବାପନ୍ନ, ଧ୍ୱସ୍ତକବଚ, ଧୂଳିସମାଚ୍ଛନ୍ନ ଓ ଅତୀବ ଉପହାସଗ୍ରସ୍ତ ହୋଇ ଦଶଦିଗକୁ ଶୂନ୍ୟ ଦେଖି ଦ୍ରୋଣଙ୍କ ଅନୁମତିକ୍ରମେ ଅବହାର କଲେ ।୩।

ଅନନ୍ତର ପ୍ରାଣିମାନେ ଅର୍ଜ୍ଜୁନଙ୍କର ଅସଂଖ୍ୟ ଗୁଣ ପ୍ରଶଂସା ଓ କେଶବଙ୍କ ସହିତ ତାହାଙ୍କର ସୌହାର୍ଦ୍ଦ୍ୟ କୀର୍ତ୍ତନ କଲେ । ଆପଣଙ୍କପକ୍ଷୀୟ ସେହି ଯୋଦ୍ଧାମାନେ ଶାପଗ୍ରସ୍ତସଦୃଶ ଚିନ୍ତାପରାୟଣ ହେଲେ । ସେମାନଙ୍କର ବାକ୍ୟସ୍ଫୂର୍ତ୍ତି ହେଲା ନାହିଁ । ତଦନନ୍ତର ପ୍ରଭାତ ସମୟରେ ବାଗ୍ମିପ୍ରବର ଦୁର୍ଯ୍ୟୋଧନ ଶତ୍ରୁମାନଙ୍କର ବୃଦ୍ଧି ଦେଖି ଦୁର୍ମନା ଓ କ୍ରୁଦ୍ଧ ହୋଇ ସର୍ବ ଯୋଦ୍ଧାଙ୍କ ସମକ୍ଷରେ ପ୍ରଣୟ ଓ ଅଭିମାନବଶତଃ ଦ୍ରୋଣାଚାର୍ଯ୍ୟଙ୍କୁ କହିଲେ ।୬।

ହେ ଦ୍ୱିଜୋତ୍ତମ ! ଆମ୍ଭେମାନେ ନିଶ୍ଚୟ ଆପଣଙ୍କର ବଧ୍ୟ ପକ୍ଷ ହୋଇଅଛୁଁ । କାରଣ—ଆପଣ ଅଦ୍ୟ ଯୁଧିଷ୍ଠିରଙ୍କୁ ନିକଟରେ ପ୍ରାପ୍ତହୋଇ ସୁଦ୍ଧା ଗ୍ରହଣ କଲେ ନାହିଁ ।୭। ଆପଣ ଯୁଦ୍ଧରେ ଶତ୍ରୁକୁ ଗ୍ରହଣ କରିବାକୁ ଇଚ୍ଛା କଲେ ସେ ଦେବଗଣ ସହିତ ପାଣ୍ଡବମାନଙ୍କ ଦ୍ୱାରା ରକ୍ଷିତ ହେଲେ ସୁଦ୍ଧା ଆପଣଙ୍କ ଦୃଷ୍ଟିପଥକୁ ଆସି କଦାଚ ମୁକ୍ତ ପାଇପାରିବ ନାହିଁ ।୮। ଆର୍ଯ୍ୟମାନେ କୌଣସି ପ୍ରକାରେ ଭକ୍ତର ଆଶା ଭଙ୍ଗ କରନ୍ତି ନାହିଁ । କିନ୍ତୁ ଆପଣ ପୂର୍ବେ ଆମ୍ଭଙ୍କୁ ପ୍ରୀତିପୂର୍ବକ ବର ପ୍ରଦାନ କରି ପଶ୍ଚାତ୍ ତାହାର ଅନ୍ୟଥାଚରଣ କଲେ ।୯।

ଦ୍ରୋଣାଚାର୍ଯ୍ୟ ରାଜା ଦୁର୍ଯ୍ୟୋଧନଙ୍କଦ୍ୱାରା ଏହିରୂପେ କଥିତ ହୁଅନ୍ତେ ସେ ପ୍ରୀତ ହୋଇ ଦୁର୍ଯ୍ୟୋଧନଙ୍କୁ ବୋଇଲେ, ହେ ମହାରାଜ ! ଆମ୍ଭେ ଆପଣଙ୍କର ପ୍ରିୟକାର୍ଯ୍ୟ କରିବାକୁ ଚେଷ୍ଟା କରିଥାଉଁ, ଆପଣ

ଆମ୍ଭଙ୍କୁ ତାହାର ଅନ୍ୟଥାଭୂଷା ଜ୍ଞାନ କରିବେ ନାହିଁ । ୧୦ । କୃଷ୍ଣଜୀ ଯାହାକୁ ରକ୍ଷା କରନ୍ତି, ସୁର, ଅସୁର, ଗନ୍ଧର୍ବ, ଯକ୍ଷ, ଉରଗ ଓ ରାକ୍ଷସମାନେ ସୁଦ୍ଧା ତାହାକୁ ଜୟ କରି ପାରିବେ ନାହିଁ । ୧୧ । ଯେଉଁ ସ୍ଥାନରେ ବିଶ୍ୱସ୍ରଷ୍ଟା ଗୋବିନ୍ଦ ଓ ଅର୍ଜୁନ ସେନା ରକ୍ଷା କରିଥାଆନ୍ତି, ସେଠାରେ ପ୍ରଭୁ ମହାଦେବ ବ୍ୟତୀତ ଆଉ କିଏ ବଳ ପରାକ୍ରମ ପ୍ରକାଶ କରିବାକୁ ସମର୍ଥ ହେବ ?୧୨ । ହେ ତାତ ! ଆମ୍ଭେ ସତ୍ୟ କହୁଅଛୁ, ଏହା କଦାଚ ଅନ୍ୟଥା ହେବ ନାହିଁ । ଅଦ୍ୟ ସେମାନଙ୍କର ଜଣେ ପ୍ରଧାନ ମହାରଥକୁ ନିପାତିତ କରିବୁଁ । ୧୩ ।

ହେ ମହାରାଜନ୍ ! ଆମ୍ଭେ ଏପରି ଏକ ବ୍ୟୂହ ରଚନା କରିବୁଁ ଯେ, ତାହା ଦେବତାମାନଙ୍କର ସୁଦ୍ଧା ଭେଦ କରିବାକୁ ସାଧ୍ୟ ହେବ ନାହିଁ, କିନ୍ତୁ ଆପଣମାନେ କୌଣସି ଉପାୟ ଦ୍ୱାରା ଅର୍ଜୁନଙ୍କୁ ସେଠାରୁ ଅନ୍ୟ ସ୍ଥାନକୁ ଅପସାରିତ କରିବେ । ଯୁଦ୍ଧରେ ତାହାଙ୍କର ଅଜ୍ଞାତ ବା ଅସାଧ୍ୟ କିଛି ନାହିଁ, ସେ ଦିବ୍ୟ ଓ ମାନୁଷିକ ସମୁଦାୟ ଅସ୍ତ୍ରରେ ଜ୍ଞାନଲାଭ କରି ଅଛନ୍ତି । ୧୫ ।

ହେ ରାଜନ୍ ! ଦ୍ରୋଣ ଏହିରୂପେ କହନ୍ତେ, ପୁନର୍ବାର ସଂଶପ୍ତକ-ମାନେ ଦକ୍ଷିଣ ଦିଗକୁ ଅର୍ଜୁନଙ୍କୁ ଯୁଦ୍ଧାର୍ଥ ଆହ୍ୱାନ କଲେ । ୧୬ । ତତ୍ପରେ ସଂଶପ୍ତକ ଶତ୍ରୁମାନଙ୍କ ସହିତ ଅର୍ଜୁନଙ୍କର ଏପରି ଯୁଦ୍ଧ ହେଲା ଯେ, ତାଦୃଶ ଯୁଦ୍ଧ ଆଉ କଦାପି ଦୃଷ୍ଟ ବା ଶ୍ରୁତ ହୋଇନାହିଁ । ୧୭ । ଯେପରି ମଧ୍ୟାହ୍ନ କାଳରେ ସୂର୍ଯ୍ୟ ପ୍ରତାପଶାଳୀ ଓ ଦୁର୍ନିରୀକ୍ଷ୍ୟ ହୁଅନ୍ତି, ଦ୍ରୋଣଙ୍କ ରଚିତ ବ୍ୟୂହ ସେହିପରି ପ୍ରଚଣ୍ଡ ହେଲା । ୧୮ । ହେ ଭାରତ ! ଜ୍ୟେଷ୍ଠଭ୍ରାତା ଯୁଧିଷ୍ଠିରଙ୍କ ଆଦେଶକ୍ରମେ ଅଭିମନ୍ୟୁ ଯୁଦ୍ଧରେ ସେହି ଦୁର୍ଭେଦ୍ୟ ଚକ୍ରବ୍ୟୂହକୁ ବହୁପ୍ରକାରେ ଭେଦ କଲେ । ୧୯ । ସେହି ସୁଭଦ୍ରାନନ୍ଦନ ଅଭିମନ୍ୟୁ ଦୁଷ୍କର କର୍ମ କରି ସହସ୍ର ସହସ୍ର ବୀରଙ୍କୁ ସଂହାର କଲେ ଓ ପରିଶେଷରେ ବିପକ୍ଷ ଛଅଜଣ ବୀରଙ୍କ ସାହାଯ୍ୟରେ ଦୁଃଶାସନ-ପୁତ୍ରର ବଶବର୍ତ୍ତୀ ହୋଇ ଅଭିମନ୍ୟୁ ପ୍ରାଣତ୍ୟାଗ କଲେ । ହେ କ୍ଷିତିପାଳ ! ଅଭିମନ୍ୟୁ ନିହତ ହୁଅନ୍ତେ ପାଣ୍ଡବମାନେ ଶୋକାକୁଳ ହେଲେ ଓ ଆମ୍ଭେମାନେ ପରମାନନ୍ଦିତ ହୋଇ ସେହି ଦିବସର ଯୁଦ୍ଧରୁ ବିରତ ହେଲୁଁ । ୨୧ ।

ଧୃତରାଷ୍ଟ୍ର ବୋଇଲେ, ହେ ସଞ୍ଜୟ ! ପୁରୁଷସିଂହ ଅର୍ଜୁନଙ୍କର ପୁତ୍ର ଅପ୍ରାପ୍ତଯୌବନ ଅଭିମନ୍ୟୁକୁ ସମରରେ ନିହତ ହେବାର ଶ୍ରବଣ କରି ଆମ୍ଭର ମନ ଅନ୍ତରରୁ ବିଦୀର୍ଣ୍ଣ ହେଉଅଛି । ୨୨ । ଯେଉଁ ଧର୍ମାନୁସାରେ ରାଜ୍ୟଲୋଭୀ ବୀରମାନେ ବାଳକଉପରକୁ ଅସ୍ତ୍ରାଘାତ କରିଅଛନ୍ତି, ମନୁ ପ୍ରଭୃତି ଧର୍ମଶାସ୍ତ୍ରକର୍ତ୍ତାମାନେ ସେହି କ୍ଷାତ୍ର ଧର୍ମକୁ ନିଦାରୁଣ କରି ସୃଷ୍ଟି କରି ଅଛନ୍ତି । ହେ ଗବଲ୍ଗଣନନ୍ଦନ ! ଅଭିମନ୍ୟୁ ବାଳକ ଓ ଅତ୍ୟନ୍ତ ସୁଖୀ ଥିଲେ, ସେ ନିର୍ଭୀକପ୍ରାୟ ଯୁଦ୍ଧରେ ବିଚରଣ କରୁଥିଲେ ହେଁ ଶିକ୍ଷିତାସ୍ତ୍ର ବହୁଯୋଦ୍ଧା ତାହାଙ୍କୁ କପରି ନିହତ କରିଥିଲେ ଓ ଅମିତତେଜା ସେହି ବାଳକ ଅବା ରଥସୈନ୍ୟ ଭେଦ କରିବାକୁ ଇଚ୍ଛା କରି କପରି ରଣକ୍ରୀଡ଼ା କରିଥିଲେ, ସେହି ସମସ୍ତ ଆମ୍ଭ ନିକଟରେ କୀର୍ତ୍ତନ କର । ୨୫ ।

ସଞ୍ଜୟ ବୋଇଲେ—ହେ, ରାଜେନ୍ଦ୍ର ! ଆପଣ ଆମ୍ଭଙ୍କୁ ଅଭିମନ୍ୟୁଙ୍କ ନିପାତନ ବିଷୟରେ ଯାହା ପଚାରୁଅଛନ୍ତି, ତାହା ଆମ୍ଭେ ବିସ୍ତାର କରି କହୁଅଛୁଁ, ଶ୍ରବଣ କରନ୍ତୁ ଓ କୁମାର ଅଭିମନ୍ୟୁ ସେହି ସୈନ୍ୟବ୍ୟୂହ ଭେଦ କରିବା ଇଚ୍ଛାରେ ଯେପରି ରଣକ୍ରୀଡ଼ା କରି ଦୁର୍ନିବାର୍ଯ୍ୟ ଜୟଶୀଳ ବୀରମାନଙ୍କୁ ନିପୀଡ଼ିତ କରିଥିଲେ, ସେ ସମସ୍ତ ଆମ୍ଭେ ଆପଣଙ୍କ ନିକଟରେ କୀର୍ତ୍ତନ କରୁଅଛୁଁ, ଆପଣ ଅବହିତ ହୋଇ ଶ୍ରବଣ କରନ୍ତୁ । ୨୭ । ବହୁଳ ତୃଣ, ଗୁଳ୍ମ ଓ ଦ୍ରୁମସଙ୍କୁଳ ଅରଣ୍ୟ ଦାବାଗ୍ନିପରିବ୍ୟାପ୍ତ ହେଲେ ଯେପରି ବନବାସିମାନଙ୍କର ଭୟ ହୁଏ, ଆପଣଙ୍କପକ୍ଷୀୟ ଯୋଦ୍ଧାମାନଙ୍କର ସେହିପରି ଭୟ ହୋଇଥିଲା । ୨୮ ।

---

## ୩୪ ଅଧ୍ୟାୟ

ସଞ୍ଜୟ ବୋଇଲେ—କୃଷ୍ଣ ଓ ପଞ୍ଚପାଣ୍ଡବ ଯୁଦ୍ଧରେ ଅତ୍ୟନ୍ତ ଉଗ୍ରକର୍ମା ଓ ଦେବତାମାନଙ୍କର ମଧ୍ୟ ଦୁରାସଦ ଅଟନ୍ତି, ଏମାନଙ୍କର ପରାକ୍ରମ କର୍ମଦ୍ୱାରା କେବଳ ବ୍ୟକ୍ତ ହୁଏ । ୧ । ସତ୍ତ୍ୱ, କର୍ମ, ଅନ୍ୱୟ, ବୁଦ୍ଧି, କୀର୍ତ୍ତି, ଯଶଃ ଓ ଶ୍ରୀ, ଏହି ସମସ୍ତ ଗୁଣରେ କୃଷ୍ଣଙ୍କ ସଦୃଶ କେହି ପୁରୁଷ ହୋଇ-

ନାହାନ୍ତି ବା ହେବେ ନାହିଁ । ୨ । ସତ୍ୟଧର୍ମରତ ଦାନ୍ତ ରାଜା ଯୁଧିଷ୍ଠିର ବିପ୍ରପୂଜାଦି ସମୂହ ଗୁଣ ହେତୁ ସର୍ବଦା ସ୍ୱର୍ଗପ୍ରାପ୍ତିର ଯୋଗ୍ୟ ଅଟନ୍ତି । ୩ ।

ହେ ରାଜନ୍ ! ଯୁଗାନ୍ତକାଳୀନ ଅନନ୍ତ, ବୀର୍ଯ୍ୟବାନ୍ ଜାମଦଗ୍ନ୍ୟ ଓ ରଥସ୍ଥିତ ଭୀମସେନ—ଏହି ତିନିଜଣ ସମାନ ବୋଲି କଥିତ ହୋଇ ଅଛନ୍ତି । ୪ । ପ୍ରତିଜ୍ଞାପାଳନଦକ୍ଷ, ରଣସ୍ଥିତ ଗାଣ୍ଡୀବଧନ୍ୱା ପାର୍ଥଙ୍କର ସଦୃଶୀ ଉପମା ପୃଥିବୀ ମଧ୍ୟରେ ପାଉନାହୁଁ । ୫ । ଅତ୍ୟନ୍ତ ଗୁରୁଭକ୍ତି, ଶୌର୍ଯ୍ୟ, ଧୈର୍ଯ୍ୟ, ବିନୟ, ଦମ ଓ ସୌନ୍ଦର୍ଯ୍ୟ—ଏହି ଛଅଗୋଟି ଗୁଣ ନକୁଳଙ୍କଠାରେ ନିୟତ ବର୍ତ୍ତମାନ ଅଛନ୍ତି । ୬ । ବୀର ସହଦେବ ଶାସ୍ତ୍ରଜ୍ଞାନ, ଗାମ୍ଭୀର୍ଯ୍ୟ, ମାଧୁର୍ଯ୍ୟ, ସତ୍ତ୍ୱ, ରୂପ ଓ ପରାକ୍ରମରେ ଅଶ୍ୱିନୀକୁମାର ଦେବଦ୍ୱୟଙ୍କ ସଦୃଶ ଅଟନ୍ତି । ୭ । କୃଷ୍ଣ ଓ ପାଣ୍ଡବମାନଙ୍କଠାରେ ଯେଉଁ ସବୁ ଗୁଣ ଅଛି, ଏକାକୀ ଅଭିମନ୍ୟୁଙ୍କଠାରେ ସେହି ସମସ୍ତ ଗୁଣ ବର୍ତ୍ତମାନ ଥିଲା । ୮ । ଅଭିମନ୍ୟୁ ଧୈର୍ଯ୍ୟରେ ଯୁଧିଷ୍ଠିରଙ୍କର ସମାନ, ଚରିତ୍ରରେ କୃଷ୍ଣଙ୍କର, କର୍ମରେ ଭୀମକର୍ମା ଭୀମସେନଙ୍କର, ରୂପବିକ୍ରମ ଓ ଶାସ୍ତ୍ରଜ୍ଞାନରେ ଧନଞ୍ଜୟଙ୍କର ଓ ବିନୟରେ ନକୁଳ-ସହଦେବଙ୍କର ସମାନ ଥିଲେ । ୧୦ ।

ଧୃତରାଷ୍ଟ୍ର ବୋଇଲେ, ହେ ସୂତ ! ଅପରାଜେୟ ଅଭିମନ୍ୟୁ କି ପ୍ରକାରେ ଯୁଦ୍ଧରେ ନିହତ ହେଲେ, ତାହା ବିସ୍ତାରପୂର୍ବକ ଶ୍ରବଣ କରିବାକୁ ଆମ୍ଭର ଅଭିଳାଷ ହେଉଅଛି । ୧୧ ।

ସଞ୍ଜୟ ବୋଇଲେ—ହେ ମହାରାଜ ! ଆପଣ ଦୁଃସହ ଶୋକ ସମ୍ବରଣ କରି ସୁସ୍ଥିର ହୁଅନ୍ତୁ । ଆମ୍ଭେ ଆପଣଙ୍କ ମହତ୍ ବନ୍ଧୁଙ୍କର ବିନାଶବୃତ୍ତାନ୍ତ କୀର୍ତ୍ତନ କରୁଅଛୁଁ, ଶ୍ରବଣ କରନ୍ତୁ । ୧୨ । ହେ ମହାରାଜ ! ଆଚାର୍ଯ୍ୟ ଚକ୍ରବ୍ୟୂହ ରଚନା କଲେ । ତନ୍ମଧ୍ୟରେ ଇନ୍ଦ୍ରତୁଲ୍ୟ ରାଜାମାନେ ସନ୍ନିବେଶିତ ଓ ସୂର୍ଯ୍ୟତେଜା ରାଜକୁମାରମାନେ ସ୍ଥାନେ ସ୍ଥାନେ ବିନ୍ୟସ୍ତ ହେଲେ । ସେହିକାଳରେ ରାଜପୁତ୍ରମାନେ ସେହି ଚକ୍ରବ୍ୟୂହରେ ସମବେତ ହେଲେ । ୧୪ ।

ସୁବର୍ଣ୍ଣନିର୍ମିତଧ୍ୱଜଶୋଭିତ, ରକ୍ତାମ୍ବର-ପରିଧାୟୀ, ରକ୍ତ-ଭୂଷଣ-ଭୂଷିତ, ରକ୍ତପତାକା-ସମନ୍ୱିତ, ହେମମାଳାଧାରୀ, ଅଗୁରୁଚନ୍ଦନଚର୍ଚ୍ଚିତ-ଗାତ୍ର, ପୁଷ୍ପଦାମ-ଭୂଷିତ, ସୂକ୍ଷ୍ମାମ୍ବରଧାରୀ, ଯୋଦ୍ଧାମାନେ କୃତପ୍ରତିଜ୍ଞ, ଏକତ୍ର ସମବେତ ଓ ଯୁଯୁତ୍ସୁ ହୋଇ ସମସ୍ତେ ଅଭିମନ୍ୟୁଙ୍କ ପ୍ରତି ଧାବମାନ ହେଲେ । ସେମାନଙ୍କ ମଧ୍ୟରୁ ଦଶସହସ୍ର ଧନୁର୍ଦ୍ଧର ଆପଣଙ୍କ ପୌତ୍ର ପ୍ରିୟଦର୍ଶନ ଲକ୍ଷ୍ମଣଙ୍କୁ ଅଗ୍ରବର୍ତ୍ତୀ କରି ଗମନ କଲେ । ସେମାନେ ସମାନ ଦୁଃଖସହିଷ୍ଣୁ, ସମାନ ସାହସସମନ୍ୱିତ, ପରସ୍ପର ପ୍ରତି ସ୍ପର୍ଦ୍ଧମାନ ଓ ପରସ୍ପରର ହିତକାର୍ଯ୍ୟନିରତ ଥିଲେ ।

ହେ ରାଜେନ୍ଦ୍ର ! ଶ୍ରୀମାନ୍ ରାଜା ଦୁର୍ଯ୍ୟୋଧନ ଶ୍ୱେତଚ୍ଛତ୍ରସମନ୍ୱିତ ହୋଇ ସେହି ସୈନ୍ୟବ୍ୟୂହ ମଧ୍ୟରେ ମହାରଥ କର୍ଣ୍ଣ, କୃପ ଓ ଦୁଃଶାସନ ଦ୍ୱାରା ପରିବୃତ ହୋଇ ଦେବରାଜ ସଦୃଶ ଅବସ୍ଥିତ ହେଲେ । ତାହାଙ୍କର ଉଭୟ ପାର୍ଶ୍ୱରେ ଚାମର ବୀଜନ ପଡ଼ୁଥିଲା ଓ ସେ ଉଦିତ ସୂର୍ଯ୍ୟପରି ଦୀପ୍ତି ପାଉଥିଲେ । ସେହି ବ୍ୟୂହର ଅଗ୍ରଭାଗରେ ସେନାପତି ଦ୍ରୋଣାଚାର୍ଯ୍ୟ ଓ ଶ୍ରୀମାନ୍ ସିନ୍ଧୁରାଜ ଜୟଦ୍ରଥ ସୁମେରୁପର୍ବତସଦୃଶ ଅବସ୍ଥିତ ଥିଲେ ।

ହେ ମହାରାଜ ! ଦେବତୁଲ୍ୟ ଆପଣଙ୍କର ତିରିଶଜଣ ପୁତ୍ର ଅଶ୍ୱତ୍ଥାମାଙ୍କୁ ପୁରୋବର୍ତ୍ତୀ କରି ସିନ୍ଧୁରାଜଙ୍କର ପାର୍ଶ୍ୱରେ ଅବସ୍ଥିତ କଲେ । ଗାନ୍ଧାରରାଜ ମାୟାବୀ ଶକୁନି, ଶଲ୍ୟ ଓ ଭୂରିଶ୍ରବା—ଏହି ତିନି ମହାରଥ ସିନ୍ଧୁରାଜଙ୍କ ଅପର ପାର୍ଶ୍ୱରେ ବିରାଜମାନ କରିଥିଲେ । ତତ୍ପରେ ମୃତ୍ୟୁକୁ ନିବୃତ୍ତିର ଉପାୟ ମନେ କରି ଆପଣଙ୍କ ବିପକ୍ଷୀୟ ଯୋଦ୍ଧାମାନଙ୍କ ମଧ୍ୟରେ ତୁମୁଳ ଲୋମହର୍ଷଣ ଯୁଦ୍ଧ ହେଲା । ୨୫ ।

## ୩୫ ଅଧ୍ୟାୟ

ସଞ୍ଜୟ କହିଲେ — ଦ୍ରୋଣରକ୍ଷିତ ଅଧର୍ଷଣୀୟ ସେହି ବ୍ୟୂହବଦ୍ଧ ସୈନ୍ୟ ପ୍ରତି ଭୀମସେନ ପ୍ରମୁଖ ପାଣ୍ଡବମାନେ ସମ୍ମୁଖୀନ ହେଲେ । ୧ । ସାତ୍ୟକି, ଚେକିତାନ, ଧୃଷ୍ଟଦ୍ୟୁମ୍ନ, ବିକ୍ରମଶୀଳ କୁନ୍ତିଭୋଜ, ମହାରଥ ଦ୍ରୁପଦ, ଅର୍ଜ୍ଜୁନଙ୍କ ପୁତ୍ର, କ୍ଷାତ୍ରଧର୍ମା, ବୃହତ୍‌କ୍ଷତ୍ର, ବୀର୍ଯ୍ୟବାନ୍ ଚେଦିପତି,

ଧୃଷ୍ଟକେତୁ, ନକୁଳ, ସହଦେବ, ଘଟୋତ୍କଚ, ଯୁଧାମନ୍ୟୁ, ବିକ୍ରମଶୀଳ ଅପରାଜିତ ଶିଖଣ୍ଡୀ, ଦୁର୍ଦ୍ଧର୍ଷ ଉତ୍ତମୌଜା, ମହାରଥ ବିରାଟ, ଦ୍ରୌପଦୀଙ୍କ ପଞ୍ଚପୁତ୍ର, ଶିଶୁପାଳତନୟ, ସହସ୍ର ସହସ୍ର ଯୁଦ୍ଧ-ଦୁର୍ମଦ, ମହାବୀର୍ଯ୍ୟ, ଶିକ୍ଷିତାସ୍ତ୍ର, ଯୁଦ୍ଧୋତ୍ସୁକ କେକୟ ଓ ସୃଞ୍ଜୟମାନେ ଏବଂ ଅନ୍ୟାନ୍ୟ ଅନେକ ବୀର ନିଜ ନିଜ ଅନୁଚରମାନଙ୍କ ସହିତ ସହସା ଦ୍ରୋଣଙ୍କ ପ୍ରତି ଧାବମାନ ହେଲେ । ୬ ।

ବୀର୍ଯ୍ୟବାନ୍ ଦ୍ରୋଣ ମଧ୍ୟ ଅସମ୍ଭ୍ରାନ୍ତ ଚିତ୍ତରେ ମହତ୍ ଶରସମୂହ ଦ୍ୱାରା ସମୀପସ୍ଥ ସେହି ଯୋଦ୍ଧାମାନଙ୍କୁ ନିବାରଣ କଲେ । ୭ । ଯେପରି ପ୍ରବଳ ଜଳପ୍ରବାହ ଦୁର୍ଭେଦ୍ୟ ପର୍ବତକୁ ଅତିକ୍ରମ କରିବାକୁ ସମର୍ଥ ହୁଏ ନାହିଁ ଓ ଯେପରି ସାଗର ବେଳାଭୂମିକୁ ଅତିକ୍ରମ କରିବାକୁ ସମର୍ଥ ହୁଏ ନାହିଁ, ତଦ୍ରୂପ ପାଣ୍ଡବପକ୍ଷ ବୀରମାନେ ଦ୍ରୋଣଙ୍କୁ ଅତିକ୍ରମ କରି ପାରିଲେ ନାହିଁ । ୮ । ହେ ରାଜନ୍ ! ପାଣ୍ଡବମାନେ ଦ୍ରୋଣଙ୍କ ଧନୁର୍ମୁକ୍ତ ଶରସମୂହ ଦ୍ୱାରା ବ୍ୟଥିତ ହୋଇ ତାହାଙ୍କ ସମ୍ମୁଖରେ ଅବସ୍ଥାନ କରି ପାରିଲେ ନାହିଁ । ୯ ।

ସେ ସମୟରେ ଦ୍ରୋଣଙ୍କର ଏହି ଅଦ୍ଭୁତ ଭୁଜବଳ ଦେଖିଲୁଁ ଯେ, ପାଞ୍ଚାଳ ଓ ସୃଞ୍ଜୟମାନେ ଏକତ୍ରିତ ହୋଇ ସୁଦ୍ଧା ତାହାଙ୍କ ସମ୍ମୁଖରେ ଅବସ୍ଥାନ କରିପାରିଲେ ନାହିଁ । ୧୦ । ସମରୋଦ୍ୟତ ଅତି କ୍ରୁଦ୍ଧ ସେହି ଦ୍ରୋଣଙ୍କୁ ଦେଖି ଯୁଧିଷ୍ଠିର ତାହାଙ୍କର ନିବାରଣ ଉପାୟ ବିଷୟରେ ନାନାପ୍ରକାର ଚିନ୍ତା କଲେ । ଅନନ୍ତର ଦ୍ରୋଣଙ୍କୁ କେହି ନିବାରଣ କରି-ପାରିବେ ନାହିଁ, ଏହା ମନେ କରି କୃଷ୍ଣ ଓ ଅର୍ଜ୍ଜୁନଙ୍କର ଅନ୍ୟୂନ ପରାକ୍ରମ ଅଭିମନ୍ୟୁଙ୍କଠାରେ ଅବିସହ୍ୟ ଗୁରୁଭାର ଅର୍ପଣ କଲେ । ଯୁଧିଷ୍ଠିର ଶତ୍ରୁହନ୍ତା ବୀର ଅଭିମନ୍ୟୁଙ୍କୁ କହିଲେ ; ବତ୍ସ ! ଚକ୍ରବ୍ୟୂହ କିପରି ଭେଦ କରିବାକୁ ହୁଏ, ତାହା ଆମ୍ଭମାନଙ୍କୁ ଜଣା ନାହିଁ, ଅତଏବ ଅର୍ଜ୍ଜୁନ ଆଗମନ କରି ଯହିଁରେ ଆମ୍ଭମାନଙ୍କୁ ନିନ୍ଦା ନ କରନ୍ତି ତୁମ୍ଭେ ସେହିପରି ଉପାୟ କର । ୧୪ ।

ହେ ମହାବାହୋ ! ତୁମ୍ଭ ବ୍ୟତୀତ ଅର୍ଜୁନ, କୃଷ୍ଣ ଓ ପ୍ରଦ୍ୟୁମ୍ନ— ଏମାନଙ୍କ ଛଡ଼ା ଚକ୍ରବ୍ୟୂହ ଭେଦ କରିବାକୁ ସମର୍ଥ ଆଉ ପଞ୍ଚମ ବ୍ୟକ୍ତି ନାହାନ୍ତି । ୧୫ । ହେ ବତ୍ସ, ଅଭିମନ୍ୟୁ ! ତୁମ୍ଭେ ପିତୃକୁଳ ମାତୃକୁଳ ଓ ଏହି ସମୁଦାୟ ସୈନ୍ୟମାନଙ୍କର ମନୋରଥ ପୂର୍ଣ୍ଣ କରିବାର ଯୋଗ୍ୟ । ଶୀଘ୍ର ଅସ୍ତ୍ର ଗ୍ରହଣ କରି ଦ୍ରୋଣସୈନ୍ୟ ବିନାଶ କର । ତାହାହେଲେ ଧନଞ୍ଜୟ ସଂଶପ୍ତକ ଯୁଦ୍ଧରୁ ଫେରିଆସି ଆମ୍ଭମାନଙ୍କୁ ନିନ୍ଦାକରିପାରିବେ ନାହିଁ । ୧୬ ।

ଅଭିମନ୍ୟୁ କହିଲେ, ଆମ୍ଭେ ଯୁଦ୍ଧରେ ପିତୃମାନଙ୍କର ଜୟାକାଂକ୍ଷୀ ହୋଇ ଶୀଘ୍ର ଦ୍ରୋଣସୈନ୍ୟର ଦୃଢ଼ତର ଅତି ଉଗ୍ର ଚକ୍ରବ୍ୟୂହରେ ଅବଗାହନ କରିବୁଁ । ୧୮ । କିନ୍ତୁ ପିତା ଆମ୍ଭଙ୍କୁ ଉକ୍ତ ବ୍ୟୂହ ଭେଦ କରିବାର ଉପାୟ ସମ୍ବନ୍ଧରେ ଉପଦେଶ ଦେଇଅଛନ୍ତି, ନିର୍ଗମନର ଉପାୟ କହିନାହାନ୍ତି ; ଅତଏବ କୌଣସି ବିପଦ ଉପସ୍ଥିତ ହେଲେ ନିର୍ଗତ ହୋଇ ପାରିବୁ ନାହିଁ । ୧୯ ।

ଯୁଧିଷ୍ଠିର ବୋଇଲେ—ବତ୍ସ ଯୋଧଶ୍ରେଷ୍ଠ ! ତୁମ୍ଭେ ଏହି ସୈନ୍ୟ-ବ୍ୟୂହ ଭେଦ କରି ଆମ୍ଭମାନଙ୍କର ପ୍ରବେଶଦ୍ୱାର ପ୍ରସ୍ତୁତ କର ; ତୁମ୍ଭେ ଯେଉଁ ବାଟରେ ଯିବ, ଆମ୍ଭେମାନେ ମଧ୍ୟ ସେହି ବାଟ ଦେଇ ତୁମ୍ଭ ପଛରେ ଯିବୁଁ । ୨୦ । ବତ୍ସ ! ତୁମ୍ଭେ ଯୁଦ୍ଧରେ ଧନଞ୍ଜୟ ସମାନ ଅଟ, ଆମ୍ଭେମାନେ ଯୁଦ୍ଧରେ ପ୍ରବେଶ କରି ଚତୁର୍ଦ୍ଦିଗ ରକ୍ଷାପୂର୍ବକ ତୁମ୍ଭର ଅନୁଗାମୀ ହେବୁଁ । ୨୧ ।

ଭୀମ ବୋଇଲେ,—ଧୃଷ୍ଟଦ୍ୟୁମ୍ନ, ସାତ୍ୟକି, ପାଞ୍ଚାଳ, କେକୟ, ମତ୍ସ୍ୟ ଓ ପ୍ରଭଦ୍ରକମାନଙ୍କ ସହିତ ଆମ୍ଭେମାନେ ସମସ୍ତେ ତୁମ୍ଭର ପଶ୍ଚାତ୍ ଗମନ କରିବୁଁ । ୨୨ । ତୁମ୍ଭେ ଥରେ ବ୍ୟୂହ ଭେଦ କରି ଯେଉଁ ସ୍ଥାନକୁ ଯିବ, ଆମ୍ଭେମାନେ ଶ୍ରେଷ୍ଠ ଶ୍ରେଷ୍ଠ ବୀରମାନଙ୍କୁ ନିହତ କରି ସେହି ସେହି ସ୍ଥାନର ସୈନ୍ୟ ଧ୍ୱଂସ କରିବୁଁ । ୨୪ ।

ଅଭିମନ୍ୟୁ ବୋଇଲେ—ଯେପରି ପତଙ୍ଗ ଅନଳରେ ପ୍ରବେଶ କରେ ସେହିପରି ଆମ୍ଭେ ଅଦ୍ୟ ସଂକ୍ରୁଦ୍ଧ ହୋଇ ଦୁର୍ଗମ ଦ୍ରୋଣସୈନ୍ୟ ମଧ୍ୟରେ ପ୍ରବେଶ କରିବୁଁ । ୨୪ । ଅଦ୍ୟ ପିତୃମାତୃବଂଶର ହିତକର ଓ ପିତା ଓ

ମାତୁଳଙ୍କର ପ୍ରୀତିଜନକ କର୍ମ କରିବୁଁ । ୨୫ । ଆମ୍ଭେ ବାଳକ ଅଟୁଁ, କିନ୍ତୁ ଅଦ୍ୟ ସମସ୍ତ ପ୍ରାଣୀ ଯୁଦ୍ଧରେ ଅନେକ ଶତ୍ରୁସୈନ୍ୟଙ୍କୁ ଏହି ବାଳକ ହସ୍ତରେ ନିହତ ହେବାର ଦେଖିବେ । ୨୬ । ଆମ୍ଭସହିତ ଯୁଦ୍ଧରେ ଯଦି କେହି ଅଦ୍ୟ ଜୀବିତ ଥାଇ ମୁକ୍ତ ହୁଅନ୍ତି, ତେବେ ଆମ୍ଭେ ପାର୍ଥ ଓ ସୁଭଦ୍ରା-ଙ୍କର ସନ୍ତାନ ନୋହୁଁ । ୨୭ । ଯଦି ଆମ୍ଭେ ଏକ ରଥରେ ଆରୋହଣ କରି ସମଗ୍ର କ୍ଷତ୍ରିୟଙ୍କୁ ଯୁଦ୍ଧରେ ଅଷ୍ଟଧା ଭେଦ ନ କରୁଁ, ତେବେ ଆମ୍ଭେ ଅର୍ଜ୍ଜୁନଙ୍କର ପୁତ୍ର ନୋହୁଁ । ୨୮ ।

ଯୁଧିଷ୍ଠିର ବୋଇଲେ ହେ ସୁଭଦ୍ରାନନ୍ଦନ ! ସାଧ୍ୟ, ରୁଦ୍ର, ବାୟୁ, ବସୁ, ଅଗ୍ନି ଓ ଆଦିତ୍ୟସଦୃଶ ବିକ୍ରମସମ୍ପନ୍ନ ମହାଧନୁର୍ଦ୍ଧର ମହାବଳ, ପୁରୁଷବ୍ୟାଘ୍ରମାନଙ୍କ ଦ୍ୱାରା ସୁରକ୍ଷିତ ଦୁର୍ଗମ ଦ୍ରୋଣସୈନ୍ୟଙ୍କୁ ତୁମ୍ଭେ ଯେ ଭେଦ କରିବ ବୋଲି ଉତ୍ସାହ କରୁଅଛ, ଏହିହେତୁ ତୁମ୍ଭର ବଳ ବୃଦ୍ଧି ହେଉ । ୩୦ ।

ସଞ୍ଜୟ ବୋଇଲେ—ଯୁଧିଷ୍ଠିରଙ୍କର ସେହି କଥା ଶୁଣି ଅଭିମନ୍ୟୁ ସାରଥିକୁ କହିଲେ, ସୁମିତ୍ର ! ତୁମ୍ଭେ ଅବିଳମ୍ବେ ଦ୍ରୋଣସୈନ୍ୟ ଅଭିମୁଖରେ ଅଶ୍ୱଚାଳନା କର । ୩୨ ।

## ୩୬ ଅଧ୍ୟାୟ

ସଞ୍ଜୟ ବୋଇଲେ—ହେ ଭାରତ ! ଅଭିମନ୍ୟୁ ଧୀମାନ୍ ଧର୍ମରାଜଙ୍କର ବଚନ ଶ୍ରବଣ କରି ସାରଥିକୁ ଦ୍ରୋଣସୈନ୍ୟ ସମୀପକୁ ଯିବାକୁ ଆଦେଶ କରନ୍ତେ, ସାରଥି ଅଭିମନ୍ୟୁଙ୍କୁ କହିଲେ । ୨ । ହେ ଆୟୁଷ୍ମନ୍ ! ପାଣ୍ଡବମାନେ ଆପଣଙ୍କ ପ୍ରତି ଅତି ଗୁରୁଭାର ଅର୍ପଣ କରି-ଅଛନ୍ତି । କିନ୍ତୁ ଆପଣଙ୍କର ଏହା ସାଧ୍ୟାୟତ୍ତ କି ନା, ବୁଦ୍ଧିଦ୍ୱାରା ଅବଧାରଣ କରି ଯୁଦ୍ଧରେ ପ୍ରବୃତ୍ତ ହେବା ଉଚିତ ଅଟେ । ୩ । ଆଚାର୍ଯ୍ୟ ଦ୍ରୋଣ ଦିବ୍ୟାସ୍ତ୍ରରେ କୁଶଳ ଓ ଶ୍ରମସହିଷ୍ଣୁ ଅଟନ୍ତି ; ଆପଣ ଯୁଦ୍ଧବିଶାରଦ ହେଲେ ହେଁ, ନିରନ୍ତର ସୁଖସମ୍ଭୋଗରେ ପରିବର୍ଦ୍ଧିତ ହୋଇଅଛନ୍ତି । ୪ ।

ଅନନ୍ତର ଅଭିମନ୍ୟୁ ହାସ୍ୟ କରି ସାରଥିଙ୍କୁ କହିଲେ, ହେ ସାରଥେ ! ଆମ୍ଭେ ଅମରଗଣପରିବୃତ ଐରାବତସ୍ଥିତ ଇନ୍ଦ୍ରଙ୍କ ସହିତ, ଅଥବା ସର୍ବ-ଭୂତଗଣାର୍ଚ୍ଚିତ ରୁଦ୍ର ଈଶାନଙ୍କ ସହିତ ଯୁଦ୍ଧ କରିପାରୁଁ, ଏହି ଦ୍ରୋଣ ବା କ୍ଷତ୍ରିୟବର୍ଗ ଆମ୍ଭ ପକ୍ଷରେ ବିସ୍ମୟକର ନୁହନ୍ତି । ୭ । ହେ ସୂତଜ ! ଏହି ଶତ୍ରୁସୈନ୍ୟ ଆମ୍ଭର ଷୋଡ଼ଶ ଭାଗର ଏକଭାଗ ସୁଦ୍ଧା ହୋଇ ପାରିବେ ନାହିଁ । ବିଶ୍ୱବିଜୟୀ ମାତୁଳ ବିଷ୍ଣୁ ବା ପିତା ଅର୍ଜ୍ଜୁନଙ୍କ ସହିତ ଯୁଦ୍ଧରେ ମଧ୍ୟ ଆମ୍ଭର ଭୟ ହୁଏ ନାହିଁ । ଅନନ୍ତର ଅଭିମନ୍ୟୁ ସାରଥିର ବାକ୍ୟକୁ ଅଗ୍ରାହ୍ୟ କରି ତାହାଙ୍କୁ "ଦ୍ରୋଣ ସୈନ୍ୟ ପ୍ରତି ଶୀଘ୍ର ଗମନ କର" ଏହି ଆଜ୍ଞା ପ୍ରଦାନ କଲେ । ସାରଥି ଅନତିହୃଷ୍ଟ ଚିତ୍ତରେ ତ୍ରିବର୍ଷବୟସ୍କ ସ୍ୱର୍ଣ୍ଣବିଭୂଷିତ ଅଶ୍ୱମାନଙ୍କୁ ବେଗରେ ଚଳାଇଲେ ।

ହେ ରାଜନ୍ ! ମହାବେଗ ପରାକ୍ରମୀ ଅଶ୍ୱମାନେ ସୁମିତ୍ରସାରଥି ଦ୍ୱାରା ଚାଳିତ ହୋଇ ଦ୍ରୋଣଙ୍କ ନିକଟକୁ ଧାବମାନ ହେଲେ । ଦ୍ରୋଣ ପ୍ରଭୃତି କୌରବ ପକ୍ଷ ତାହାଙ୍କୁ ସେହିରୂପେ ଆସିବାର ଦେଖି ତାହାଙ୍କର ସମ୍ମୁଖୀନ ହେଲେ । ପାଣ୍ଡବମାନେ ତାହାଙ୍କର (ଅଭିମନ୍ୟୁଙ୍କର) ପଛେ ପଛେ ଗଲେ । ୧୧ । ଯେପରି ସିଂହଶିଶୁ ହସ୍ତିସମୂହକୁ ଆକ୍ରମଣ କରେ, ସେହି-ରୂପେ ସୁବର୍ଣ୍ଣବର୍ମା ଉଚ୍ଛ୍ରିତ ଶ୍ରେଷ୍ଠ କର୍ଣ୍ଣିକାରଧ୍ୱଜଶୋଭିତ ଅଭିମନ୍ୟୁ ଯୁଦ୍ଧ ଇଚ୍ଛା କରି ଦ୍ରୋଣ ପ୍ରଭୃତି ମହାରଥବର୍ଗଙ୍କୁ ଆକ୍ରମଣ କଲେ । ୧୨ । ବ୍ୟୂହରକ୍ଷଣରେ ନିଯୁକ୍ତ ଥିବା କୌରବମାନେ ଅଭିମନ୍ୟୁଙ୍କୁ ଦେଖି ପ୍ରହାର କଲେ । ଯେପରି ଗଙ୍ଗାପତନ ହେତୁ ସମୁଦ୍ରରେ ଆବର୍ତ୍ତ ହୁଏ, ସେହିପରି ତତ୍କାଳରେ ସୈନ୍ୟମାନଙ୍କ ମଧ୍ୟରେ ମହା ଆବର୍ତ୍ତ ହେଲା । ୧୩ ।

ମହାରାଜ ! ଦ୍ରୋଣ ସୈନ୍ୟ ମଧ୍ୟରେ ଅଭିମନ୍ୟୁଙ୍କର ପ୍ରବେଶ କାଳରେ ଉଭୟପକ୍ଷୀୟ ଶୂରମାନେ ଯୁଦ୍ଧରେ ପ୍ରବୃତ୍ତ ହୋଇ ପରସ୍ପର ପ୍ରହାର କଲେ, ସେଥିରୁ ଭୟାନକ ତୁମୁଳ ସଂଗ୍ରାମ ଆରମ୍ଭ ହେଲା । ୧୪ । ସେହି ଅତିଭୟଙ୍କର ସଂଗ୍ରାମ ଆରମ୍ଭ ହୁଅନ୍ତେ, ଅଭିମନ୍ୟୁ ଦ୍ରୋଣଙ୍କ ସମକ୍ଷରେ ବ୍ୟୂହଭେଦ କରି ପ୍ରବେଶ କଲେ । ୧୫ । ଗଜାରୋହୀ, ସାଦୀ, ରଥୀ ଓ ପଦାତିମାନେ ମହାବଳ ପରାକ୍ରାନ୍ତ ଅଭିମନ୍ୟୁଙ୍କୁ ବିପକ୍ଷ ମଧ୍ୟରେ ଶତ୍ରୁହନନପୂର୍ବକ ପ୍ରବିଷ୍ଟ ହେବାର ଦେଖି ଉଦ୍ୟତାସ୍ତ୍ରହସ୍ତରେ ତାହାଙ୍କୁ

ପରିବେଷ୍ଟନ କଲେ । ୧୭ । ସେମାନେ ନାନାବିଧ ବାଦ୍ୟଧ୍ୱନି, ତର୍ଜ୍ଜନ, ଗର୍ଜ୍ଜନ, ଉତ୍‌କ୍ରୋଶନ, ହୁଙ୍କାର ଓ ସିଂହନାଦସହକାରେ ରହ ରହ ବାକ୍ୟ-ଦ୍ୱାରା ଘୋରତର କୋଳାହଳ ଶବ୍ଦ କରି "ଗମନ କରନାହିଁ" "ସେହିଠାରେ ରହ" "ଆମ୍ଭ ସମ୍ମୁଖକୁ ଆସ" "ଆମ୍ଭେ ଏହିଠାରେ ଅଛୁଁ" ଏହିପରି ବାକ୍ୟ ପୁନଃପୁନଃ କହି, ହସ୍ତିନିନାଦ, ଭୂଷଣଧ୍ୱନି, ହାସ୍ୟରବ, ଅଶ୍ୱମାନଙ୍କର ଖୁରଶବ୍ଦ ଓ ରଥଚକ୍ର-ନିର୍ଘୋଷଦ୍ୱାରା ପୃଥିବୀକୁ ପ୍ରତିନାଦିତ କରି ଅଭିମନ୍ୟୁଙ୍କ ପ୍ରତି ଧାବମାନ ହେଲେ । ୧୯ ।

ରଣମର୍ମଜ୍ଞ ମହାବୀର ଅଭିମନ୍ୟୁ ସେମାନଙ୍କର ଆପତନ କାଳରେ ସତ୍ୱର ହୋଇ ଆଗନ୍ତୁ ମର୍ମଭେଦୀ ଶରସମୂହ ଦ୍ୱାରା ଦ୍ରୁତ-ହସ୍ତରେ ସେମାନଙ୍କର ଅନେକାନେକ ଯୋଦ୍ଧାଙ୍କୁ ଦୃଢ଼ରୂପେ ନିହତ କଲେ । ୨୦ । ଯେପରି ଶଲଭମାନେ ଅଗ୍ନିରେ ପ୍ରବେଶ କରନ୍ତି, ସେହିପରି ସେମାନେ ଯୁଦ୍ଧରେ ଅଭିମନ୍ୟୁଙ୍କର ବିବିଧଲକ୍ଷଣଲାଞ୍ଛିତ ଶାଣିତ ଶରସମୂହ ଦ୍ୱାରା ବିନଷ୍ଟ ଓ ବିବଶ ହୋଇ ଅଭିମନ୍ୟୁଙ୍କ ସମକ୍ଷରେ ପତିତ ହେଲେ । ୨୧ ।

ଯଜ୍ଞରେ ବେଦୀକୁ କୁଶସମୂହ ଦ୍ୱାରା ଆସ୍ତୀର୍ଣ୍ଣ କଲା ପ୍ରାୟ ଅଭିମନ୍ୟୁ ଅତିଶୀଘ୍ର ଶତ୍ରୁମାନଙ୍କର ଅଙ୍ଗପ୍ରତ୍ୟଙ୍ଗ ଦ୍ୱାରା ରଣଭୂମିକୁ ଆସ୍ତୀର୍ଣ୍ଣ କଲେ । ଆପଣଙ୍କ ପକ୍ଷୀୟ ସହସ୍ର ସହସ୍ର ଯୋଦ୍ଧାଙ୍କର ଶରାସନ, ଶର, ଅସି, ଚର୍ମ, ଅଙ୍କୁଶ, ଅଶ୍ୱରଶ୍ମି, ତୋମର, ପରଶୁ, ଗଦା, ଅୟୋଗୁଡ଼, ପ୍ରାସ, ଋଷ୍ଟି, ପଟ୍ଟିଶ, ଭିନ୍ଦିପାଳ, ପରିଘ, ଶକ୍ତି, କମ୍ପନ, ପ୍ରତୋଦ, ମହାଶଙ୍ଖ, କୁନ୍ତ, ମୁଦ୍‌ଗର, କ୍ଷେପଣୀୟ ପାଶ ଓ ଉପଳ—ଏହିସବୁ ଅସ୍ତ୍ରଯୁକ୍ତ ବାହୁ ସବୁକୁ ଓ ମଧ୍ୟ କେଶମୁଷ୍ଟିଧାରୀ ଚର୍ମପଟ୍ଟିକା ଓ ଅଙ୍ଗୁଳିତ୍ରାଣରେ ଆବଦ୍ଧ କେୟୂର ଓ ଅଙ୍ଗଦବିଭୂଷିତ ମନୋହର ଗନ୍ଧାନୁଲେପନଚର୍ଚ୍ଚିତ ସୁବୃତ୍ତ ବାହୁମାନଙ୍କୁ ଅଭିମନ୍ୟୁ ଛେଦନ କଲେ । ୨୭ । ହେ ମହାରାଜ ! ଯେପରି ଗରୁଡ଼ଙ୍କ କର୍ତ୍ତୃକ ଛିନ୍ନ ପଞ୍ଚମୁଖ ସର୍ପସମୂହ ଦ୍ୱାରା ଭୂମି ଶୋଭିତ ହୁଏ, ସେହିପରି ରୁଧିରଯୁକ୍ତ ପ୍ରକମ୍ପିତ ସେହି ସମସ୍ତ ଛିନ୍ନ ବାହୁଦ୍ୱାରା ରଣଭୂମି ଶୋଭା ପାଇଲା । ଉତ୍ତମ ନାସିକାଯୁକ୍ତ ବ୍ରଣଶୂନ୍ୟ ମୁଖ ଓ କେଶପାଶ-ସମନ୍ୱିତ, ସୁଚାରୁକୁଣ୍ଡଳବିଶିଷ୍ଟ, କ୍ରୋଧସନ୍ଦଷ୍ଟାଧର, ବହୁଶୋଣିତ

ବମନକାରୀ, ସୁଗନ୍ଧମାଲ୍ୟଧାରୀ ମୁକୁଟ ଓ ଉଷ୍ଣୀଷଶୋଭିତ ମଣିରତ୍ନ-ବିରାଜିତ, ମୃଣାଳଶୂନ୍ୟ ପଦ୍ମତୁଲ୍ୟ, ଚନ୍ଦ୍ରାର୍କ ପ୍ରଭ, ଯଥାକାଳରେ ହିତ ଓ ପ୍ରିୟବାଦୀ ଏବଂ ପବିତ୍ରଗନ୍ଧାନ୍ୱିତ ବହୁଳ ଶତ୍ରୁମସ୍ତକକୁ ଅଭିମନ୍ୟୁ ଯୁଦ୍ଧସ୍ଥଳରେ ବିସ୍ତୀର୍ଣ୍ଣ କରି ପକାଇଲେ । ୩୦ ।

ହେ ମହାରାଜ ! ଅର୍ଜ୍ଜୁନନନ୍ଦନ ଅଭିମନ୍ୟୁ ଶାଣିତ ଶରସମୂହଦ୍ୱାରା ଗନ୍ଧର୍ବ ନଗରାକାର କଳ୍ପିତ ବିବିଧ ରଥମାନଙ୍କୁ ଖଣ୍ଡ ଖଣ୍ଡ କରିପକାଇଲେ ଓ ରଥମାନଙ୍କର ଈଷା, ଯୁଗ, ତ୍ରିବେଣୁ, ଜଙ୍ଘା, ଚରଣ, ଚକ୍ରକୀଳକ, ଚକ୍ର, ଉପରସ୍ଥା, ମାଡ଼, ଉପକରଣ, ଉପସ୍ତରଣ ଓ ରଥୀ ଏମାନଙ୍କୁ ମଧ୍ୟ ଖଣ୍ଡ ଖଣ୍ଡ କରିକାଟିପକାଇଲେ ଏବଂ ସେହି ରଥ ସମୂହର ଦଣ୍ଡ ସକଳକୁ ବିପକ୍ଷଦ୍ୱାରା ଉନ୍ନତାନତ କରି ଭଗ୍ନ କଲେ । ୩୩ । ଶତ୍ରୁପକ୍ଷୀୟ ଗଜ, ଗଜାରୋହୀ ଓ ସେମାନଙ୍କର ପତାକା, ଅଙ୍କୁଶ, ଧ୍ୱଜ, ତୂଣ, ବର୍ମ, କକ୍ଷା କଣ୍ଠଭୂଷଣ, କମ୍ବଳ, ଘଣ୍ଟାଶୁଣ୍ଡ, ଦନ୍ତ ଓ ପଦର ଅଗ୍ରଭାଗ, ମାଲ୍ୟ ଓ ପଦାନୁଗମାନଙ୍କୁ ସୁଶାଣିତ ଶରସମୂହ ଦ୍ୱାରା ଛେଦନ କଲେ । ୩୬ ।

ବାନାୟୁଜ, ପାର୍ବତୀୟ, କାମ୍ବୋଜ, ଓ ବାହ୍ଲୀକଦେଶୀୟ, ସ୍ଥିରପୁଚ୍ଛ ସ୍ଥିରଚକ୍ଷୁଃ, ସ୍ଥିରକର୍ଣ୍ଣ, ବେଗବାନ୍, ଶାନ୍ତ, ଉତ୍ତମ, ବହୁଳ ଅଶ୍ୱମାନଙ୍କୁ ଓ ସେମାନଙ୍କ ଉପରେ ଆରୋହଣ କରିଥିବା ଶକ୍ତି, ଋଷ୍ଟି ଓ ପ୍ରାସଯୋଧୀ ଶିକ୍ଷିତ ଯୋଦ୍ଧାମାନଙ୍କୁ ନିପାତ କଲେ । କୌଣସି କୌଣସି ଅଶ୍ୱର ଜିହ୍ୱା ଓ ଚକ୍ଷୁକୁ ନିକ୍ଷିପ୍ତକଲେ ; କୌଣସି କୌଣସି ଅଶ୍ୱର ଅନ୍ତ ଓ ଯକୃତ ବିକୀର୍ଣ୍ଣ କଲେ । କେଉଁ କେଉଁ ଅଶ୍ୱର ଆରୋହୀକୁ ନିହତ, କେଉଁ କେଉଁ ଅଶ୍ୱର ଚାମର କୁଥା ଓ ଆସ୍ତରଣକୁ ବିଧ୍ୱସ୍ତ, କୌଣସି କୌଣସି ଅଶ୍ୱର ଘଣ୍ଟିକା ଶ୍ରେଣୀକୁ ବିଚ୍ଛିନ୍ନ ଓ କୌଣସି କୌଣସି ଅଶ୍ୱର ଚର୍ମକବଚକୁ କର୍ତ୍ତନ କରି ପକାଇଲେ । କେଉଁ କେଉଁ ଅଶ୍ୱ ତାହାଙ୍କ ଶରାଘାତ ଦ୍ୱାରା ବିଷ୍ଠା, ମୂତ୍ର ଓ ରୁଧିରରେ ସମାପ୍ଲୁତ ହେଲେ । ଏହି ପ୍ରକାରେ ସେହି ଅଶ୍ୱସମୂହ ମାଂସାଶୀ ପ୍ରାଣିମାନଙ୍କର ଆନନ୍ଦବର୍ଦ୍ଧକ ହୋଇ ରଣସ୍ଥଳରେ ନିପତିତ ହେଲେ । ୩୯ ।

ଅତନ୍ତ୍ରାମାପୁ ବିଷ୍ଣୁ ପୂର୍ବକାଳରେ ଯେପରି ଏକାକୀ ଦୁଷ୍କର କର୍ମ କରିଥିଲେ, ଆପଣଙ୍କର ମହତ୍ ସୈନ୍ୟମାନଙ୍କୁ ଅଭିମନ୍ୟୁ ସେହିପରି ଛିନଭିନ କରି ମର୍ଦ୍ଦନ କଲେ । ୪୦ । ଯେପରି ଅମିତତେଜା ମହାଦେବ ଘୋରତର ଅସୁର ସୈନ୍ୟମାନଙ୍କୁ ସଂହାର କରିଥିଲେ, ସେହିପରି ଅଭିମନ୍ୟୁ ଯୁଦ୍ଧରେ ଶତ୍ରୁଦୁଃସହ କର୍ମ କରି ଆପଣଙ୍କର ଅନେକ ପଦାତି ବିନାଶ କଲେ ।

ଯେପରି ପୂର୍ବକାଳରେ ସେନାପତି କାର୍ତ୍ତିକେୟ ଆସୁରୀ ସେନାକୁ ବିଧ୍ୱସ୍ତ କରିଥିଲେ, ସେହିପରି ସେମାନଙ୍କୁ ଏକମାତ୍ର ଅଭିମନ୍ୟୁଙ୍କ ନିଶିତ ଶରଦ୍ୱାରା ଅତିଶୟ ବିମର୍ଦ୍ଦିତ ହେବାର ଦେଖି ଆପଣଙ୍କ ପୁତ୍ରଗଣ ଓ ଯୋଦ୍ଧା-ବର୍ଗ ଶତ୍ରୁଜୟରେ ନିରୁତ୍ସାହ ଓ ଚକିତନେତ୍ର ହୋଇ ଦଶ ଦିଗକୁ ଅବଲୋକନ କଲେ । ସେମାନଙ୍କର ମୁଖ ଶୁଷ୍କ ହେଲା, ଦେହରୁ ଘର୍ମ ନିଃସୃତ ହେଲା ଓ ସେମାନଙ୍କର ଲୋମାଞ୍ଚ ଜାତ ହେଲା । ସେମାନେ ପଳାୟନରେ ଉତ୍ସାହୀ ଓ ଜୀବିତାଭିଳାଷୀ ହୋଇ ହତ ହୋଇଥିବା ପୁତ୍ର, ପିତା, ଭ୍ରାତା, ବନ୍ଧୁ ଓ ସମ୍ବନ୍ଧୀମାନଙ୍କୁ ପରିତ୍ୟାଗପୂର୍ବକ ଗୋତ୍ର ଓ ନାମ ଉଲ୍ଲେଖ ଦ୍ୱାରା ପରସ୍ପରକୁ ଆହ୍ୱାନ କରୁଁ କରୁଁ ଅଶ୍ୱ ଓ ହସ୍ତିମାନଙ୍କୁ ଶୀଘ୍ର ପରିଚାଳନା କରି ପ୍ରସ୍ଥାନ କଲେ । ୪୬ ।

## ୩୬ ଅଧ୍ୟାୟ

ସଞ୍ଜୟ ବୋଇଲେ—ସେହି ସୈନ୍ୟମାନଙ୍କୁ ଅମିତବିକ୍ରମ ସୁଭଦ୍ରାନନ୍ଦନଙ୍କ ଦ୍ୱାରା ପ୍ରଭଗ୍ନ ହେବାର ଦେଖି ଦୁର୍ଯ୍ୟୋଧନ ଅତ୍ୟନ୍ତ କ୍ରୁଦ୍ଧ ହୋଇ ସ୍ୱୟଂ ଅଭିମନ୍ୟୁଙ୍କ ପ୍ରତି ଧାବମାନ ହେଲେ । ୧ । ଅନନ୍ତର ରାଜା ଦୁର୍ଯ୍ୟୋଧନ ଯୁଦ୍ଧରେ ଅଭିମନ୍ୟୁଙ୍କ ସମ୍ମୁଖକୁ ଆସୁଥିବାର ଦେଖି ଦ୍ରୋଣାଚାର୍ଯ୍ୟ ସେହି ସମୁଦାୟ ନରାଧିପ ଯୋଦ୍ଧାମାନଙ୍କୁ କହିଲେ । ୨ । ବୀର୍ଯ୍ୟବାନ୍ ଅଭିମନ୍ୟୁ ଯେ ପର୍ଯ୍ୟନ୍ତ ଆପଣା ଲକ୍ଷ୍ୟ ଦୁର୍ଯ୍ୟୋଧନଙ୍କୁ ଆମ୍ଭମାନଙ୍କ ସାକ୍ଷାତରେ ହନନ କରିନାହାନ୍ତି, ତୁମ୍ଭେମାନେ ପୂର୍ବରୁ ଭୟ ପରିତ୍ୟାଗ କରି ଶୀଘ୍ର ଗମନ କର ଓ କୌରବ ରାଜାଙ୍କୁ ରକ୍ଷା କର ।

ତତ୍ପରେ କୃତଜ୍ଞ ସୁହୃତ୍ ବଳବାନ୍ ଓ ସମରଜୟୀ ରାଜାମାନେ ଉଦ୍ୟୁକ୍ତ ହୋଇ ଯୁଦ୍ଧ ଆପଣଙ୍କ ପୁତ୍ରଙ୍କୁ ପରିବେଷ୍ଟନ କଲେ ଓ ଦ୍ରୋଣ, ଅଶ୍ୱତ୍ଥାମା, କୃପ, କର୍ଣ୍ଣ, କୃତବର୍ମା, ଶକୁନି, ବୃହଦ୍‌ବଳ, ମଦ୍ରରାଜ, ଭୂରି, ଭୂରିଶ୍ରବା, ଶଲ୍ୟ, ପୌରବ ଓ ବୃଷସେନ—ଏମାନେ ଶରନିକ୍ଷେପପୂର୍ବକ ମହାନ୍ତଶର-ବର୍ଷଣ ଦ୍ୱାରା ସୌଭଦ୍ରଙ୍କୁ ସମାକୀର୍ଣ୍ଣ କଲେ । ୬ ।

ସେମାନେ ଅଭିମନ୍ୟୁଙ୍କୁ ମୋହିତ କରି ତାହାଙ୍କ ମୁଖକ୍ଷିପ୍ତ ଗ୍ରାସ ସଦୃଶ ଦୁର୍ଯ୍ୟୋଧନଙ୍କୁ ବିମୁକ୍ତ କଲେ । ତାହା ଅର୍ଜୁନ ପୁତ୍ର ସହ୍ୟ କଲେ ନାହିଁ । ୭ । ଅଭିମନ୍ୟୁ ମହାନ୍ତ ଶରସମୂହ ଦ୍ୱାରା ଅଶ୍ୱ ଓ ସାରଥି ସହିତ ସେହି ମହାରଥମାନଙ୍କୁ ପରାଙ୍ମୁଖ କରି ସିଂହନାଦ କଲେ । ୮ । ଦ୍ରୋଣ ପ୍ରଭୃତି ରଥମାନେ ଆମିଷଲୋଭୀ ସିଂହସଦୃଶ ଅଭିମନ୍ୟୁଙ୍କର ସିଂହନାଦ ଶ୍ରବଣ କରି ପୁନର୍ବାର ସଂକ୍ରୁଦ୍ଧ ହୋଇ ତାହା ସହନ କଲେ ନାହିଁ । ୯ । ସେମାନେ ରଥସମୂହ ବେଷ୍ଟନ ଦ୍ୱାରା ଅଭିମନ୍ୟୁଙ୍କୁ ଅବରୁଦ୍ଧ କରି ତାହାଙ୍କ ପ୍ରତି ନାନାବିଧ ଶରଜାଳ ବର୍ଷଣ କଲେ । ୧୦ । ଆପଣଙ୍କ ପୌତ୍ର ଅଭିମନ୍ୟୁ ତୀକ୍ଷ୍ଣ ଶରସମୂହଦ୍ୱାରା ସେମାନଙ୍କର ଶରଜାଳ ଅନ୍ତରୀକ୍ଷରେ ଛେଦନ କଲେ ଓ ସେମାନଙ୍କୁ ପ୍ରତିବିଦ୍ଧ କଲେ । ଏହା ଅଦ୍ଭୁତ ପ୍ରାୟ ହେଲା । ୧୧ । ଅନନ୍ତର ଦ୍ରୋଣ ପ୍ରଭୃତି ମହାରଥମାନେ ରୋଷପରବଶ ହୋଇ ଆଶୀବିଷୋପମ ଶରମାନଙ୍କ ଦ୍ୱାରା ଅପରାଙ୍ମୁଖ ସୌଭଦ୍ରଙ୍କୁ ହତ କରିବା ମାନସରେ ପରିବେଷ୍ଟନ କଲେ । ୧୨ । ହେ ଭରତର୍ଷଭ ! ବେଳାଭୂମି ଯେପରି ସମୁଦ୍ରକୁ ଅବରୋଧ କରେ, ଅଭିମନ୍ୟୁ ସେହିପରି ଏକାକୀ ବାଣ ସମୂହଦ୍ୱାରା ଆପଣଙ୍କର କ୍ଷୁବ୍ଧ ସାଗର ସଦୃଶ ସେହି ସୈନ୍ୟସାଗରକୁ ବାରଣ କଲେ । ୧୩ । ପରସ୍ପର ହନନକାରୀ ଯୁଧମାନ ଶୂର ଅଭିମନ୍ୟୁ ଓ ତାହାଙ୍କର ଶତ୍ରୁମଧ୍ୟରୁ କେହି ପରାଙ୍ମୁଖ ହେଲେ ନାହିଁ । ୧୪ ।

ସେହି ଘୋରତର ସଂଗ୍ରାମରେ ଦୁଃସହ ନଅଗୋଟି, ଦୁଃଶାସନ ବାରଗୋଟି, କୃପ ତିନିଗୋଟି, ଦ୍ରୋଣ ଆଶୀବିଷୋପମ ସତରଗୋଟି, ବିବିଂଶତି ସତୁରିଗୋଟି, କୃତବର୍ମା ସାତଗୋଟି, ବୃହଦ୍‌ବଳ ଆଠଗୋଟି, ଅଶ୍ୱତ୍ଥାମା ସାତଗୋଟି, ଭୂରିଶ୍ରବା ତିନିଗୋଟି, ମଦ୍ରପତି ଛଅଗୋଟି,

ଶକୁନି ଦୁଇଗୋଟି ଓ ଦୁର୍ଯ୍ୟୋଧନ ତିନିଗୋଟି ବାଣଦ୍ୱାରା ଅଭିମନ୍ୟୁଙ୍କୁ ବିଦ୍ଧ କଲେ । ୧୮ । ହେ ନୃପ, ସେହି ଧନୁର୍ଦ୍ଧାରୀ ପ୍ରତାପଶାଳୀ ଅର୍ଜ୍ଜୁନ-ନନ୍ଦନ ନୃତ୍ୟ କଲା ପ୍ରାୟ ତିନିତିନିଗୋଟି ଶରଦ୍ୱାରା ସେମାନଙ୍କୁ ବିଦ୍ଧ କଲେ । ୧୯ । ଅନନ୍ତର ଅଭିମନ୍ୟୁ ଆପଣଙ୍କ ଆତ୍ମଜବର୍ଗଙ୍କ ଦ୍ୱାରା ତ୍ରାସିତ ଓ କ୍ରୁଦ୍ଧ ହୋଇ ନିଜ ଶିକ୍ଷା ଓ ଅଭ୍ୟାସକୃତ ସୁମହତ୍ ବଳ ଦେଖାଇ ସତ୍ୱର ଆଗମନକାରୀ ରାଜା ଅଶ୍ମକପୁତ୍ରଙ୍କୁ ନିବାରଣ କଲେ । ସେହି ରାଜାଙ୍କର ଅଶ୍ୱମାନେ ଗରୁଡ଼ ଓ ବାୟୁତୁଲ୍ୟ ବେଗଶୀଳ, ଦାନ୍ତ ଓ ସାରଥିର ବଶୀଭୂତ ଥିଲେ । ୨୧ । "ରହ, ରହ" ବୋଲି କହି ଈଷଦ୍ଧାସ୍ୟ କରି ଦଶଗୋଟି ବାଣଦ୍ୱାରା ଅଭିମନ୍ୟୁ ତାହାଙ୍କୁ ବିଦ୍ଧ କଲେ ଓ ଅନ୍ୟ ଦଶଗୋଟି ବାଣଦ୍ୱାରା ତାହାଙ୍କର ସାରଥି ଓ ଅଶ୍ୱମାନଙ୍କୁ ଏବଂ ଧ୍ୱଜ, ତାଙ୍କର ଦୁଇବାହୁ, ଧନୁ, ଶିରକୁ ଛେଦନ କରି ଭୂମିରେ ନିପାତିତ କଲେ । ଅନନ୍ତର ବୀର ଅଶ୍ମକପତି ଅଭିମନ୍ୟୁଙ୍କ ଦ୍ୱାରା ହତ ହୁଅନ୍ତେ ସମସ୍ତ ସୈନ୍ୟ ପଳାୟନ କଲେ । ତହୁଁ କର୍ଣ୍ଣ, କୃପ, ଦ୍ରୋଣ, ଅଶ୍ୱତ୍ଥାମା, ଗାନ୍ଧାରରାଜ, ଶଲ, ଶଲ୍ୟ, ଭୂରିଶ୍ରବା, କ୍ରାଥ, ସୋମଦତ୍ତ, ବିବିଂଶତି, ବୃଷସେନ, ସୁଷେଣ, କୁଣ୍ଡଭେଦୀ, ପ୍ରତର୍ଦ୍ଦନ, ବୃନ୍ଦାରକ, ଲଳିତ୍ଥ, ପ୍ରବାହୁ, ଦୀର୍ଘଲୋଚନ ଓ ଦୁର୍ଯ୍ୟୋଧନ, ଏମାନେ ସଂକ୍ରୁଦ୍ଧ ହୋଇ ଅଭିମନ୍ୟୁଙ୍କ ପ୍ରତି ଶରବର୍ଷଣ କଲେ । ୨୬ । ସେହି ମହାଧନୁର୍ଦ୍ଧାରୀମାନଙ୍କର ବାଣଦ୍ୱାରା ଅଭିମନ୍ୟୁ ଅତିବିଦ୍ଧ ହୋଇ କର୍ଣ୍ଣଙ୍କ ପ୍ରତି ଶତ୍ରୁଦେହଭେଦୀ ଗୋଟିଏ ବାଣ ନିକ୍ଷେପ କଲେ । ୨୭ ।

ହେ ରାଜନ୍ ! ବଲ୍ମୀକ ମଧ୍ୟରେ ଯେପରି ସର୍ପ ପ୍ରବେଶ କରେ, ସେହିପରି କର୍ଣ୍ଣଙ୍କର ତନୁତ୍ରାଣ ଓ ଦେହ ଭେଦ କରି ସେହି ବାଣ ପୃଥିବୀରେ ପ୍ରବେଶ କଲା । ୨୮ । ଯେପରି ଭୂକମ୍ପ ହେଲେ ପର୍ବତ ବିଚଳିତ ହୁଏ, ସେହିପରି ଅଭିମନ୍ୟୁଙ୍କ ପ୍ରହାର ହେତୁ କର୍ଣ୍ଣ ବ୍ୟଥିତ ଓ ବିହ୍ୱଳ ହୋଇ କମ୍ପିତ ହେଲେ । ୨୯ । ଅନନ୍ତର ବଳବାନ୍ ଅଭିମନ୍ୟୁ ସଂକ୍ରୁଦ୍ଧ ହୋଇ ଅନ୍ୟ ତିନିଗୋଟି ନିଶିତ ବାଣଦ୍ୱାରା ଦୀର୍ଘଲୋଚନ, ସୁଷେଣ ଓ କୁଣ୍ଡଭେଦୀ, ଏହି ତିନିଜଣଙ୍କୁ ନିହତ କଲେ ।୩୦। ପରେ କର୍ଣ୍ଣ ପଞ୍ଚବିଂଶତି, ଅଶ୍ୱତ୍ଥାମା ବିଂଶତି ଓ କୃତବର୍ମା ସପ୍ତନାରାଚ ଦ୍ୱାରା ଅଭିମନ୍ୟୁଙ୍କୁ ପ୍ରହାର କଲେ । ୩୧ । ଇନ୍ଦ୍ରପୌତ୍ର ଶରାଚିତସର୍ବାଙ୍ଗ ଓ କ୍ରୁଦ୍ଧ ହୋଇ ପାଶହସ୍ତ ଅନ୍ତକ

ସଦୃଶ, ସୈନ୍ୟ ମଧ୍ୟରେ ବିଚରଣ କରିବାର ଦୃଷ୍ଟ ହେଲେ । ୩୨ । ମହାବାହୁ ଅଭିମନ୍ୟୁ ଶରବର୍ଷଣ ଦ୍ୱାରା ସମୀପସ୍ଥ ଶଲ୍ୟଙ୍କୁ ଆଚ୍ଛାଦନ କରି ଆପଣଙ୍କର ସୈନ୍ୟମାନଙ୍କୁ ଭୟ ପ୍ରଦର୍ଶନପୂର୍ବକ ସିଂହନାଦ କଲେ ।୩୩।

ହେ ରାଜନ୍ ! ଅସ୍ତ୍ରଜ୍ଞ ଅଭିମନ୍ୟୁଙ୍କର ମର୍ମଭେଦୀ ଶରଦ୍ୱାରା ଶଲ୍ୟ ଅଭିହତ ହୋଇ ରଥୋପରି ଅବସନ୍ନ ହୋଇ ମୋହପ୍ରାପ୍ତ ହେଲେ । ୩୪ । ଯଶସ୍ୱୀ ଅଭିମନ୍ୟୁଙ୍କର ଅସ୍ତ୍ରାଘାତରେ ଶଲ୍ୟଙ୍କୁ ତାଦୃଶ ବିଦ୍ଧ ହେବାର ଦେଖି ସୈନ୍ୟମାନେ ଦ୍ରୋଣାଚାର୍ଯ୍ୟଙ୍କର ସାକ୍ଷାତରେ ପଳାୟନ କଲେ । ୩୫ । ସେହି ମହାବାହୁ ଶଲ୍ୟଙ୍କୁ ଶରସମୂହ ଦ୍ୱାରା ଆବୃତ ହେବାର ଦେଖି ଆପଣଙ୍କ ପକ୍ଷୀୟ ବୀରମାନେ ସିଂହପୀଡିତ ମୃଗଯୂଥ ସଦୃଶ ପଳାୟନ କଲେ । ୩୬ । ଅନ୍ତରୀକ୍ଷସ୍ଥିତ ପିତୃ, ଦେବ, ଚାରଣ, ସିଦ୍ଧ, ଓ ଯକ୍ଷମାନଙ୍କ ଦ୍ୱାରା ଏବଂ ପୃଥିବୀସ୍ଥ ପ୍ରାଣିସମୂହ କର୍ତ୍ତୃକ ରଣଯଶରେ ପୂଜ୍ୟମାନ ହୋଇ ଅଭିମନ୍ୟୁ ଘୃତାହୁତ ଅଗ୍ନିସଦୃଶ ଦୀପ୍ତି ପାଇଲେ । ୩୭ ।

---

## ୩୮ ଅଧ୍ୟାୟ

ଧୃତରାଷ୍ଟ୍ର ବୋଇଲେ—ହେ ସଞ୍ଜୟ, ଯେତେବେଳେ ଅର୍ଜ୍ଜୁନପୁତ୍ର ମହାଧନୁର୍ଦ୍ଧରମାନଙ୍କୁ ଶରସମୂହ ଦ୍ୱାରା ପ୍ରମଥିତ କରୁଥିଲେ, ସେତେବେଳେ ଆମ୍ଭପକ୍ଷୀୟ କେଉଁ କେଉଁ ବୀରମାନେ ତାହାଙ୍କୁ ନିବାରଣ କଲେ ? ୧ ।

ସଞ୍ଜୟ ବୋଇଲେ—ହେ ରାଜନ୍ ! ଦ୍ରୋଣାଚାର୍ଯ୍ୟଙ୍କର ରକ୍ଷିତ ରଥସୈନ୍ୟମାନଙ୍କୁ କୁମାର ଅଭିମନ୍ୟୁ ଭେଦ କରିବାକୁ ଇଚ୍ଛା କରି ଯୁଦ୍ଧରେ ଯେପରି ମହତ୍ ରଣକ୍ରୀଡ଼ା କରିଥିଲେ, ତାହା ଶ୍ରବଣ କରନ୍ତୁ । ୨ । ମଦ୍ର-ପତିଙ୍କୁ ଅଭିମନ୍ୟୁଙ୍କର ଶରଦ୍ୱାରା ବ୍ୟଥିତ ହେବାର ଦେଖି ତାହାଙ୍କର କନିଷ୍ଠ ଭ୍ରାତା କ୍ରୁଦ୍ଧ ହୋଇ ବାଣବର୍ଷଣପୂର୍ବକ ସମାଗତ ହେଲେ । ୩ । ସେ ଦଶଗୋଟି ବାଣଦ୍ୱାରା ଅଭିମନ୍ୟୁଙ୍କୁ ଅଶ୍ୱ ଓ ସାରଥି ସହିତ ବିଦ୍ଧ କରି

"ରହ, ରହ" ବୋଲି ମହାଶବ୍ଦ କରି ସିଂହନାଦ କଲେ । ୪ । ଅଭିମନ୍ୟୁ ଲଘୁହସ୍ତରେ ତାହାଙ୍କର ମସ୍ତକ, ଗ୍ରୀବା, ପାଣି, ପାଦ, ଧନୁ, ଅଶ୍ୱ-ଚତୁଷ୍ଟୟ, ଛତ୍ର, ଧ୍ୱଜ, ସାରଥି, ତ୍ରିବେଣୁ, ଚକ୍ର, ଯୁଗ, ଈଷା, ତୂଣୀର, ଉପାକର୍ଷ, ପତାକା, ଦୁଇଜଣ ଚକ୍ରରକ୍ଷକ ଓ ସମସ୍ତ ଉପକରଣମାନଙ୍କୁ ସମାନରୂପରେ ଛେଦନ କଲେ ; କେହି ତାହାଙ୍କୁ ଦେଖି ପାରିଲେ ନାହିଁ । ଯେପରି ଅମିତବେଗ ବାୟୁଦ୍ୱାରା ମହାବୃକ୍ଷ ଭଗ୍ନ ହୁଏ, ସେହିପରି ସେ ଛିନ୍ନଭିନ୍ନ ହୋଇ ଭୂତଳରେ ପତିତହେଲେ । ତାହାଙ୍କର ଅନୁଚରମାନେ ବ୍ୟସ୍ତ ହୋଇ ଇତସ୍ତତଃ ପଳାୟନ କଲେ । ୮ ।

ହେ ଭାରତ ! ଅଭିମନ୍ୟୁଙ୍କର ସେହି କାର୍ଯ୍ୟ ଦେଖି ଅନ୍ତରୀକ୍ଷସ୍ଥ ଓ ପୃଥିବୀସ୍ଥ ସମସ୍ତପ୍ରାଣୀ ପ୍ରସନ୍ନ ହୋଇ "ସାଧୁ, ସାଧୁ" ବୋଲି ଉଚ୍ଚ ଶବ୍ଦ କଲେ । ୯ । ଶଲ୍ୟଙ୍କର କନିଷ୍ଠ ଭ୍ରାତା ନିପତିତ ହୁଅନ୍ତେ ତାହାଙ୍କର ବହୁଳ ସୈନ୍ୟ ସଂକ୍ରୁଦ୍ଧ ହୋଇ ନାନାବିଧ ଅସ୍ତ୍ର ହସ୍ତରେ ଧରି ଅଭିମନ୍ୟୁଙ୍କୁ ନିଜ ନିଜର ନାମ କୁଳ ଓ ବାସସ୍ଥାନ ଶୁଣାଇ ତାହାଙ୍କ ସମ୍ମୁଖକୁ ଧାବମାନ ହେଲେ । ସେମାନଙ୍କ ମଧ୍ୟରେ କୌଣସି କୌଣସି ବଳୋତ୍କଟ ବୀର ରଥରେ, ଅଶ୍ୱରେ ଓ ଗଜରେ ଓ କେହି କେହି ବୀର ପଦବ୍ରଜରେ ମହତ୍‌-ବାଣଶବ୍ଦ, ରଥନେମିନାଦ, ହୁଙ୍କାର, କ୍ଷ୍ୱେଡ଼ିତ, ସିଂହନାଦ, ଗର୍ଜ୍ଜନ ଶବ୍ଦ, ଧନୁଷ୍ଟଙ୍କାର ଓ ତଳଶବ୍ଦ ଧ୍ୱନି କରି ଓ କେହି କେହି ଅବା "ତୁମ୍ଭେ ଆମ୍ଭମାନଙ୍କ ନିକଟରୁ ଜୀବିତ ଥାଇ ମୁକ୍ତ ହୋଇପାରିବ ନାହିଁ"-- ଏହିପରି କହି ଅଭିମନ୍ୟୁଙ୍କୁ ଆକ୍ରମଣ କଲେ । ୧୩ ।

ସେହି ବୀରମାନଙ୍କୁ ପୂର୍ବୋକ୍ତ ପ୍ରକାରେ ବାକ୍ୟମାନ କହୁଥିବାର ଦେଖି ସୁଭଦ୍ରାନନ୍ଦନ ହାସ୍ୟପୂର୍ବକ ସେମାନଙ୍କ ମଧ୍ୟରୁ ଅଗ୍ରେ ଯେଉଁମାନେ ତାହାଙ୍କୁ ପ୍ରହାର କଲେ, ସେହିମାନଙ୍କୁ ବାଣମାନଙ୍କଦ୍ୱାରା ବିଦ୍ଧ କଲେ ।୧୪। ବିଚିତ୍ର ଓ ଲଘୁଭାବରେ ଅସ୍ତ୍ରନୈପୁଣ୍ୟ ଦେଖାଇ ଶୂର ଅଭିମନ୍ୟୁ ମୃଦୁଯୁଦ୍ଧ କଲେ । ୧୫ । ବାସୁଦେବ ଓ ଧନଞ୍ଜୟଙ୍କଠାରୁ ଯେଉଁ ଅସ୍ତ୍ରମାନ ପ୍ରାପ୍ତ ହୋଇଥିଲେ ସେ ସମସ୍ତ ଅସ୍ତ୍ରକୁ ସେମାନଙ୍କର ଅନୁରୂପ ଦେଖାଇଲେ । ୧୬ । ସେ ଗୁରୁଭାର ଓ ଭୟକୁ ବିଦୂରିତ କରି ପୁନଃ ପୁନଃ ବାଣ ସନ୍ଧାନ, ମୋଚନ କଲେ । ୧୭ । ତାହାଙ୍କର ଶରାସନ ଚତୁର୍ଦ୍ଦିଗରେ ମଣ୍ଡଳା-

କାରରେ ବସ୍ତୂର୍ଯ୍ୟମାଣ ହୋଇ ଶରତ୍‌କାଳୀନ ଅତିଦୀପ୍ତ ସୂର୍ଯ୍ୟମଣ୍ଡଳ-ସଦୃଶ ଦୃଷ୍ଟ ହେଲା ।୧୮। ଯେପରି ପ୍ରଳୟକାଳୀନ ମେଘରୁ ମହାବଜ୍ର ମୁକ୍ତ ହେବାବେଳେ ଗର୍ଜ୍ଜନ ଧ୍ୱନି ହୁଏ, ସେହିପରି ତାହାଙ୍କର ସୁଦାରୁଣ ଜ୍ୟା-ଶବ୍ଦ ଓ ତଳନନାଦ ଶ୍ରୁତ ହେଲା ।୧୯। ହ୍ରୀମାନ୍, ଅମର୍ଷୀ, ସମ୍ମାନକାଂକ୍ଷୀ-ପ୍ରିୟଦର୍ଶନ ବୀର ଅଭିମନ୍ୟୁ ବୀରମାନଙ୍କ ସମ୍ମାନାର୍ଥେ ବାଣଦ୍ୱାରା ଯୁଦ୍ଧ କଲେ । ୨୦ ।

ହେ ମହାରାଜ ! ବର୍ଷାବସାନ ସମୟରେ ଶରତ୍‌କାଳୀନ ଭଗବାନ ଦିବାକରଙ୍କ ସଦୃଶ ଅଭିମନ୍ୟୁ ପ୍ରଥମେ ମୃଦୁ ହୋଇ ପରେ ଦାରୁଣ ଯୁଦ୍ଧ କଲେ ।୨୧। ପ୍ରଭାକର କିରଣମୋଚନ କଲା ପ୍ରାୟ ଅଭିମନ୍ୟୁ କ୍ରୁଦ୍ଧ ହୋଇ ଶତ ଶତ ବହୁଳସ୍ୱର୍ଣ୍ଣପୁଙ୍ଖ ଶିଳାଶାଣିତ ବିଚିତ୍ର ଶରମାନଙ୍କୁ ମୋଚନ କଲେ । ୨୨ । ସେହି ମହାଯଶା ଅଭିମନ୍ୟୁ କ୍ଷୁରପ୍ର, ବତ୍ସଦନ୍ତ, ବିପାଠ, ନାରାଚ, ଅର୍ଦ୍ଧଚନ୍ଦ୍ର, ଭଲ୍ଲ ଓ ଅଞ୍ଜଳିକ ଅସ୍ତ୍ରଦ୍ୱାରା ଦ୍ରୋଣାଚାର୍ଯ୍ୟଙ୍କ ସମକ୍ଷରେ ରଥସୈନ୍ୟମାନଙ୍କୁ ସମାକୀର୍ଣ୍ଣ କଲେ । ତହୁଁ ସୈନ୍ୟମାନେ ଶରପୀଡ଼ିତ ହୋଇ ରଣରୁ ବିମୁଖ ହେଲେ । ୨୪ ।



# ୩୯ ଅଧ୍ୟାୟ

ଧୃତରାଷ୍ଟ୍ର କହିଲେ—ଆମ୍ଭ ପୁତ୍ରଙ୍କ ସୈନ୍ୟମାନଙ୍କୁ ଅଭିମନ୍ୟୁ ଯେ ନିବାରଣ କରିଥିଲେ, ଏହା ଶୁଣି ଆମ୍ଭର ଚିତ୍ତ ଲଜ୍ଜା ଓ ସନ୍ତୋଷ ଦ୍ୱାରା ଦ୍ୱିଧା ହେଉଅଛି । ୧ । ହେ ଗବଲ୍‌ଗଣ ସୁତ ! ଅସୁରମାନଙ୍କ ସହିତ ସେନାପତି କୁମାରଙ୍କର ରଣକ୍ରୀଡ଼ାସଦୃଶ କୁମାର ଅଭିମନ୍ୟୁଙ୍କର ସମସ୍ତ ରଣକ୍ରୀଡ଼ା ବିସ୍ତାରକ୍ରମେ ଆମ୍ଭ ନିକଟରେ କୀର୍ତ୍ତନ କର । ୨ ।

ସଞ୍ଜୟ କହିଲେ—ସେହି ଏକ କୁମାରଙ୍କ ସହିତ ବହୁ ଯୋଦ୍ଧାଙ୍କର ଯେଉଁ ତୁମୁଳ ଓ ଦାରୁଣ କ୍ରୀଡ଼ା ହୋଇଥିଲା, ତାହା ଆମ୍ଭେ ଦୁଃଖିତ ହୋଇ କହୁଅଛୁଁ ; ଆପଣ ଶୁଣିବା ହୁଅନ୍ତୁ । ୩ । କୃତୋତ୍ସାହ

ରଥସ୍ଥ ଅରିନ୍ଦମ ଅଭିମନ୍ୟୁ ଉତ୍ସାହସମ୍ପନ୍ନ ଆପଣଙ୍କର ସମସ୍ତ ରଥୀଙ୍କ ପ୍ରତି ବାଣ ବର୍ଷଣ କଲେ ।୪। ଦ୍ରୋଣ, କର୍ଣ୍ଣ, କୃପ, ଅଶ୍ୱତ୍ଥାମା, ଭୋଜରାଜ, କୃତବର୍ମ୍ମା, ବୃହଦ୍‌ବଳ, ଦୁର୍ଯ୍ୟୋଧନ, ସୋମଦତ୍ତପୁତ୍ର, ଭୂରିଶ୍ରବା, ମହାବଳ ଶକୁନି, ଅନ୍ୟାନ୍ୟ ବହୁସଂଖ୍ୟକ ରାଜା ଓ ରାଜକୁମାରଙ୍କୁ ଓ ସେମାନଙ୍କର ବିବିଧ ସୈନ୍ୟମାନଙ୍କୁ ଅଭିମନ୍ୟୁ ଅଲାତଚକ୍ରସଦୃଶ ବିଚରଣ-ପୂର୍ବକ ଶରସମୂହଦ୍ୱାରା ବିଦ୍ଧ କଲେ । ୬ । ହେ ଭାରତ ! ପ୍ରତାପବାନ୍ ତେଜସ୍ୱୀ ସୁଭଦ୍ରା-ନନ୍ଦନ ସର୍ବଦିଗରେ ପରମାସ୍ତ୍ର ଦ୍ୱାରା ଶତ୍ରୁମାନଙ୍କୁ ପ୍ରମଥିତ କରୁଥିବାର ଦେଖାଗଲେ । ୭ । ଆପଣଙ୍କ ସୈନ୍ୟମାନେ ସେହି ଅମିତ-ତେଜା ସୁଭଦ୍ରା-ନନ୍ଦନଙ୍କର ଚରିତ ଦେଖି ପୁନଃ ପୁନଃ କମ୍ପିତ ହେଲେ ।୮।

ହେ ଭାରତ ! ଅନନ୍ତର ପ୍ରତାପବାନ୍ ମହାପ୍ରାଜ୍ଞ ଦ୍ରୋଣାଚାର୍ଯ୍ୟ ଅଭିମନ୍ୟୁଙ୍କର ସଂଗ୍ରାମ-ନୈପୁଣ୍ୟ ଦେଖି ହର୍ଷୋତ୍ଫୁଲ୍ଲ ନୟନରେ ଆପଣଙ୍କ ପୁତ୍ରଙ୍କର ମର୍ମ ଭେଦ କଲା ପ୍ରାୟ ଏହି ବାକ୍ୟମାନ କୃପାଚାର୍ଯ୍ୟଙ୍କୁ ଶୀଘ୍ର କହିଲେ । ୧୦ । ଏହି ତରୁଣବୟସ୍କ ଅଭିମନ୍ୟୁ ସମସ୍ତ ସୁହୃଦ୍‌ବର୍ଗ, ରାଜା ଯୁଧିଷ୍ଠିର, ନକୁଳ, ସହଦେବ, ଭୀମସେନ, ଅନ୍ୟାନ୍ୟ ବନ୍ଧୁବର୍ଗ, ସମ୍ବନ୍ଧୀ ଓ ମଧ୍ୟସ୍ଥ ସୁହୃଦ୍‌ମାନଙ୍କୁ ଆନନ୍ଦିତ କରି ପାଣ୍ଡବମାନଙ୍କ ଆଗରେ ଗମନ କରୁଅଛନ୍ତି । ୧୨ । ଆମ୍ଭେ ବୋଧ କରୁଁ, ଯୁଦ୍ଧରେ ଏହାଙ୍କ ସମାନ ଅନ୍ୟ କେହି ଧନୁର୍ଦ୍ଧର ନାହିଁ । ଏ ଇଚ୍ଛା କଲେ ଏହି ସମସ୍ତ ସେନା ଧ୍ୱଂସ କରି-ପାରନ୍ତି, କି ନିମନ୍ତେ ଇଚ୍ଛା କରୁନାହାନ୍ତି, କହିପାରୁନାହୁଁ । ୧୩ ।

ଦ୍ରୋଣଙ୍କର ସେହି ପ୍ରୀତିସଂଯୁକ୍ତ ବାକ୍ୟମାନ ଆପଣଙ୍କ ପୁତ୍ର ଶୁଣି, ତାହାଙ୍କ ପ୍ରତି ଦୃଷ୍ଟିପାତପୂର୍ବକ ହାସ୍ୟ କରି ଅଭିମନ୍ୟୁଙ୍କ ପ୍ରତି ଅତ୍ୟନ୍ତ କ୍ରୁଦ୍ଧ ହେଲେ ଓ କର୍ଣ୍ଣ, ବାହ୍ଲୀକ, ଦୁଃଶାସନ, ମଦ୍ରରାଜ ଓ ତତ୍ରସ୍ଥ ଅନ୍ୟାନ୍ୟ ମହାରଥମାନଙ୍କୁ କହିଲେ, ସର୍ବ ରାଜାଙ୍କର ଗୁରୁ ବ୍ରହ୍ମଜ୍ଞ ଦ୍ରୋଣ ମୁଗ୍ଧ ହୋଇ ଏହି ଯୁଦ୍ଧରେ ଅର୍ଜ୍ଜୁନପୁତ୍ରକୁ ବଧ କରିବାକୁ ଇଚ୍ଛା କରୁନାହାନ୍ତି । ୧୬ । ଆମ୍ଭେ ତୁମ୍ଭମାନଙ୍କ ନିକଟରେ ସତ୍ୟ କହୁଅଛୁଁ । ଦ୍ରୋଣ ମାରିବାକୁ ଇଚ୍ଛା କଲେ ତାହାଙ୍କ ନିକଟରୁ ଯମ ସୁଦ୍ଧା ମୁକ୍ତ ହୋଇ ପାରିବେ ନାହିଁ ; ମନୁଷ୍ୟ କଥା ବା କ'ଣ ? ସେ ଅର୍ଜ୍ଜୁନପୁତ୍ରକୁ ଶିଷ୍ୟ ବୋଲି ରକ୍ଷା କରୁଅଛନ୍ତି ।

ଶିଷ୍ୟ, ପୁତ୍ର ଓ ସେମାନଙ୍କ ସନ୍ତାନ ଧର୍ମଶୀଳମାନଙ୍କର ପ୍ରିୟ ହୋଇଥାଆନ୍ତି । ୧୮ । ଏହି ଅଭିମନ୍ୟୁ ଦ୍ରୋଣଙ୍କଦ୍ୱାରା ରକ୍ଷିତ ହେବାରୁ ଆପଣାକୁ ବୀର୍ଯ୍ୟବାନ୍ ବୋଲି ମନେ କରୁଅଛି ; ଅତଏବ ତୁମ୍ଭେମାନେ ଏହି ଆତ୍ମଗର୍ବୀ ମୂଢ଼କୁ ଅତି ଶୀଘ୍ର ସଂହାର କର । ୧୯ । ହେ ରାଜନ୍ ! ରାଜାମାନେ ରାଜା ଦୁର୍ଯ୍ୟୋଧନଙ୍କ ଦ୍ୱାରା ଏହିରୂପେ ଆଦିଷ୍ଟ ହୁଅନ୍ତେ ଦ୍ରୋଣାଚାର୍ଯ୍ୟଙ୍କ ସମ୍ମୁଖରେ ସଂକ୍ରୁଦ୍ଧ ଓ ଜିଘାଂସୁ ହୋଇ ଅଭିମନ୍ୟୁଙ୍କ ପ୍ରତି ଧାବମାନ ହେଲେ । ୨୦ ।

କୁରୁଶାର୍ଦ୍ଦୂଳ ଦୁଃଶାସନ ଦୁର୍ଯ୍ୟୋଧନଙ୍କର ସେହି କଥାମାନ ଶୁଣି ତାହାଙ୍କୁ ଏହି ବଚନ ବୋଇଲେ । ୨୧ । ହେ ମହାରାଜ ! ଆମ୍ଭେ ଆପଣଙ୍କୁ କହୁଅଛୁଁ, ଆମ୍ଭେ ପାଞ୍ଚାଳ ଓ ପାଣ୍ଡବମାନଙ୍କ ସମକ୍ଷରେ ଏହାକୁ ବଧ କରିବୁ । ୨୨ । ଯେପରି ରାହୁ ସୂର୍ଯ୍ୟଙ୍କୁ ଗ୍ରାସ କରେ, ସେହିପରି ଆମ୍ଭେ ଅଦ୍ୟ ସୌଭଦ୍ରକୁ ଗ୍ରାସ କରିବୁ । ଏହି କଥା କହି ପୁନର୍ବାର ଉଚ୍ଚୈଃସ୍ୱରରେ କୁରୁରାଜଙ୍କୁ କହିଲେ । ୨୩ । ସୌଭଦ୍ର ଆମ୍ଭଦ୍ୱାରା ନିହତ ହୋଇଅଛି—ଏହିକଥା ଶୁଣି ଅଭିମାନୀ କୃଷ୍ଣ ଓ ଅର୍ଜ୍ଜୁନ ଅବଶ୍ୟ ପ୍ରାଣ ତ୍ୟାଗ କରିବେ, ଏଥିରେ ସନ୍ଦେହ ନାହିଁ । ୨୪ । ପାଣ୍ଡୁର ଅନ୍ୟ ସନ୍ତାନମାନେ ଏହି ଦୁଇଜଣଙ୍କ ମୃତ୍ୟୁ ସମ୍ବାଦ ପ୍ରାପ୍ତ ହୋଇ ଅକ୍ଷମତାପ୍ରଯୁକ୍ତ ନିଜ ନିଜ ସୁହୃଦ୍‌ବର୍ଗଙ୍କ ସହିତ ଏକଦିବସ ମଧ୍ୟରେ ପ୍ରାଣ ତ୍ୟାଗ କରିବେ । ୨୫ । ଅତଏବ ଆପଣଙ୍କର ଏହି ଶତ୍ରୁ ହତ ହେଲେ ଅନ୍ୟ ସମସ୍ତ ଶତ୍ରୁ ହତ ହେବେ । ହେ ରାଜନ୍ ! ଆପଣ ଆମ୍ଭର ମଙ୍ଗଳ ଚିନ୍ତା କରନ୍ତୁ । ଆମ୍ଭେ ଆପଣଙ୍କର ଏହି ରିପୁକୁ ବିନାଶ କରିବୁଁ । ୨୬ । ହେ ରାଜନ୍ ! ପୁତ୍ର ଦୁଃଶାସନ ଏହିପରି କହି କ୍ରୁଦ୍ଧ ହୋଇ ଶବ୍ଦସହକାରେ ଶରବିକୀରଣପୂର୍ବକ ସୌଭଦ୍ରଙ୍କ ପ୍ରତି ଧାବମାନ ହେଲେ । ୨୭ ।

ଦୁଃଶାସନଙ୍କୁ ଅତି କ୍ରୁଦ୍ଧ ହୋଇ ଆସୁଥିବାର ଦେଖି ଅରିନ୍ଦମ ଅଭିମନ୍ୟୁ ଛବିଶଗୋଟି ତୀକ୍ଷ୍ଣ ଶରଦ୍ୱାରା ତାହାଙ୍କୁ ବିଦ୍ଧ କଲେ । ୨୮ । ସଂକ୍ରୁଦ୍ଧ ଦୁଃଶାସନ ମତ୍ତକୁଞ୍ଜରସଦୃଶ ହୋଇ ରଣକ୍ଷେତ୍ରରେ ଅଭିମନ୍ୟୁଙ୍କ ସହିତ ଯୁଦ୍ଧ କଲେ ; ଅଭିମନ୍ୟୁ ମଧ୍ୟ ତାହାଙ୍କ ସହିତ ସଂଗ୍ରାମରେ ପ୍ରବୃତ୍ତ-ହେଲେ । ୨୯ । ରଥଶିକ୍ଷାବିଶାରଦ ସେହି ଦୁଇ ମହାରଥ ରଥଦ୍ୱାରା ବାମ

ଓ ଦକ୍ଷିଣ ଦିଗରେ ମଣ୍ଡଳାକାର ବିଚିତ୍ର ଗତି କରି ବିଚରଣପୂର୍ବକ ଯୁଦ୍ଧ କରିବାରେ ପ୍ରବୃତ୍ତ ହେଲେ । ୩୯ । ଅନନ୍ତର ଲବଣସାଗର ଉତ୍‌ଥିତ ସିଂହନାଦମିଶ୍ରିତ ଶବ୍ଦସଦୃଶ ପଣବ, ମୃଦଙ୍ଗ, ଦୁନ୍ଦୁଭି, କ୍ରକଚ, ମହାନକ, ଭେରୀ ଓ ଝର୍ଝର ବାଦ୍ୟମାନଙ୍କୁ ନରମାନେ ଅତିଶୟ ବାଦିତ କଲେ ।୪୦।

# ୪୦ ଅଧ୍ୟାୟ

ସଞ୍ଜୟ ବୋଇଲେ—ଶରବିକ୍ଷତଗାତ୍ର ଧୀମାନ୍ ଅଭିମନ୍ୟୁ ହାସ୍ୟ କରି ସନ୍ନିହିତ ଶତ୍ରୁ ଦୁଃଶାସନକୁ କହିଲେ । ୧ । ତୁମ୍ଭେ ଶୂର, ମାନୀ, କ୍ରୋଧପରିପୂର୍ଣ, ନିଷ୍ଠୁର ଓ ଧର୍ମତ୍ୟାଗୀ ଅଟ । ଭାଗ୍ୟ କ୍ରମରେ ତୁମ୍ଭଙ୍କୁ ଯୁଦ୍ଧରେ ଆଗମନ କରିବାର ଦେଖିଲୁଁ । ୨ ।

ରାଜା ଧୃତରାଷ୍ଟ୍ରଙ୍କ ସମକ୍ଷରେ ସଭାମଧ୍ୟରେ ତୁମ୍ଭେ ଧର୍ମରାଜ ଯୁଧିଷ୍ଠିରଙ୍କୁ କଟୂବାକ୍ୟ ଦ୍ୱାରା ପ୍ରକୋପିତ କରିଥିଲ ଓ ଶକୁନିର ଯେଉଁ ଦ୍ୟୂତକ୍ରୀଡ଼ା ଏକମାତ୍ର ବଳ, ସେହି କପଟ ଅକ୍ଷକ୍ରୀଡ଼ାକୁ ଆଶ୍ରୟ କରି ଜୟଲାଭପୂର୍ବକ ଉନ୍ମତ୍ତ ହୋଇ "ବାହାବାହା" ବୋଲି ଭୀମସେନଙ୍କୁ କୋପିତ କରିଥିଲ, ସେହି ମହାତ୍ମାଙ୍କ କୋପ ହେତୁରୁ ତୁମ୍ଭେ ଏହି ରଣରେ ଉପସ୍ଥିତ ହୋଇଅଛ । ରେ ଦୁର୍ମତେ ! ପରଧନାପହରଣ, ବିବାଦ, କ୍ରୋଧ, ଲୋଭ ଓ ଜ୍ଞାନବିଚ୍ଛିନ୍ନତା ହେତୁ ଏବଂ ଆମ୍ଭର ମହାତ୍ମା ଉଗ୍ରଧନ୍ୱା ପିତା ଓ ପିତୃବ୍ୟଙ୍କ ପ୍ରତି ଅନିଷ୍ଟଚିନ୍ତା କରିବା ହେତୁ ତୁମ୍ଭେ ଏହି ରଣସ୍ଥଳରେ ଉପସ୍ଥିତ ହୋଇଅଛ । ଜୀବନାନ୍ତକାରୀ କର୍ମର ଅନୁଷ୍ଠାନ ଦ୍ୱାରା ଓ ରାଜ୍ୟାପହରଣ ହେତୁ ତୁମ୍ଭେ ସେହି ମହାତ୍ମାମାନଙ୍କୁ କୋପିତ କରିଥିବାରୁ ଏହି ରଣସ୍ଥଳରେ ଉପସ୍ଥିତ ହୋଇଅଛ । ତୁମ୍ଭେ ସେହି ସବୁ ଅଧର୍ମର ଉଗ୍ରତର ଫଳ ଶୀଘ୍ର ପ୍ରାପ୍ତ ହେବ ।୭। ଅଦ୍ୟ ଆମ୍ଭେ ଶରନିକରଦ୍ୱାରା ସର୍ବସୈନ୍ୟ ସମକ୍ଷରେ ତୁମ୍ଭଙ୍କୁ ଶାସନ କରିବୁଁ । ଅଦ୍ୟ ଆମ୍ଭେ ଯୁଦ୍ଧରେ ଚିରକ୍ରୋଧାନ୍ୱିତା କୃଷ୍ଣା ଓ ପିତାଙ୍କର କ୍ରୋଧଶାନ୍ତିପୂର୍ବକ

ଅଭିଳାଷ ପୂର୍ଣ୍ଣ କରି ଅନୃଣୀ ହେବୁ । ଅଦ୍ୟ ଆମ୍ଭେ ଯୁଦ୍ଧରେ ଭୀମସେନଙ୍କ ଋଣରୁ ମୁକ୍ତ ହେବୁଁ । ୯ ।

ଯଦି ତୁମ୍ଭେ ସମର ପରିତ୍ୟାଗ କରି ଗମନ କର, ତେବେ ଆମ୍ଭ ନିକଟରୁ ଜୀବିତାବସ୍ଥାରେ ମୁକ୍ତ ହୋଇ ପାରିବନାହିଁ । ଏହା କହି ମହାବାହୁ ବୀର ଶତ୍ରୁହନ୍ତା ଅଭିମନ୍ୟୁ ଦୁଃଶାସନସଂହାରକ କାଳାଗ୍ନି-ସଦୃଶ ବାୟୁବେଗଶାଳୀ ଶରକୁ ସନ୍ଧାନ କରି ନିକ୍ଷେପ କଲେ । ଯେପରି ସର୍ପ ବଲ୍ମୀକ ଭେଦ କରି ଗମନ କରେ, ସେହିପରି ସେହି ବାଣ ତାହାଙ୍କର ବକ୍ଷସ୍ଥଳକୁ ପ୍ରାପ୍ତ ହୋଇ ଜତ୍ରୁଦେଶ ଭେଦକରି ପୁଙ୍ଖ ସହିତ ନିର୍ଗତ ହେଲା ।

ପରେ ପୁନର୍ବାର ଦୁଃଶାସନ ଉପରକୁ ଅଗ୍ନିସମସ୍ପର୍ଶ ପଞ୍ଚବିଂଶତି-ବାଣ ଆକର୍ଣ୍ଣ ସନ୍ଧାନ କରି ନିକ୍ଷେପ କଲେ । ହେ ମହାରାଜ ! ସେଥିରେ ଦୁଃଶାସନ ଗାଢ଼ବିଦ୍ଧ, ବ୍ୟଥିତ ଓ ମୂର୍ଚ୍ଛିତ ହୋଇ ରଥୋପସ୍ଥରେ ଉପବିଷ୍ଟ ହେଲେ । ଅଭିମନ୍ୟୁଙ୍କ ଶରଦ୍ୱାରା ତାହାଙ୍କୁ ପୀଡ଼ିତ ଓ ମୂର୍ଚ୍ଛିତ ହେବାର ଦେଖି ତାହାଙ୍କର ସାରଥି ତ୍ୱରମାଣ ହୋଇ ତାହାଙ୍କୁ ରଣ ମଧ୍ୟରୁ ଅପସାରିତ କଲେ ।

ଅନନ୍ତର ପାଣ୍ଡବମାନେ, ଦ୍ରୌପଦୀଙ୍କ ପୁତ୍ରଗଣ, ବିରାଟ, ପାଞ୍ଚାଳ ଓ କେକେୟମାନେ ତାହା ଦେଖି ସିଂହନାଦ କଲେ । ସେମାନଙ୍କର ସୈନ୍ୟମାନେ ଆହ୍ଲାଦିତ ହୋଇ ନାନାବିଧ ବାଦ୍ୟଯନ୍ତ୍ର ବାଦିତ କଲେ । ଯେଉଁ ଦ୍ରୌପଦୀପୁତ୍ରମାନଙ୍କର ଧ୍ୱଜାଗ୍ରରେ ଧର୍ମ, ବାୟୁ, ଇନ୍ଦ୍ର ଓ ଅଶ୍ୱିନୀ-କୁମାରଦ୍ୱୟଙ୍କର ପ୍ରତିମୂର୍ତ୍ତି ଅଙ୍କିତ ହୋଇଥିଲା, ସେହି ମହାରଥମାନେ ସେମାନଙ୍କର ପ୍ରଧାନ ଶତ୍ରୁ ଦୁଃଶାସନଙ୍କୁ ପରାଜିତ ହେବାର ଦେଖି ହାସ୍ୟ-ପୂର୍ବକ ଅଭିମନ୍ୟୁଙ୍କର ଯୁଦ୍ଧଚେଷ୍ଟା ଦେଖିବାରେ ପ୍ରବୃତ୍ତ ହେଲେ । ଯୁଧିଷ୍ଠିରପ୍ରମୁଖ, ସାତ୍ୟକି, ଚେକିତାନ, ଧୃଷ୍ଟଦ୍ୟୁମ୍ନ, ଶିଖଣ୍ଡୀ, କେକେୟଗଣ, ଧୃଷ୍ଟକେତୁ, ମତ୍ସ୍ୟ, ପାଞ୍ଚାଳ ଓ ସୃଞ୍ଜୟ ଗଣ ପ୍ରଭୃତି ପାଣ୍ଡବପକ୍ଷୀୟ ସମସ୍ତେ ହୃଷ୍ଟ ଓ ତ୍ୱରିତ ହୋଇ ଦ୍ରୋଣସୈନ୍ୟ ଭେଦ କରିବାକୁ ଧାବମାନ

ହେଲେ । ଅନନ୍ତର ସେମାନଙ୍କ ସହିତ ଆପଣଙ୍କ ପକ୍ଷୀୟ ଜୟାକାଂକ୍ଷୀ ଅନବର୍ତ୍ତୀ ଶୂରମାନଙ୍କର ମହାଯୁଦ୍ଧ ଆରମ୍ଭ ହେଲା ।

ହେ ମହାରାଜ ! ସେହି ଭୟଙ୍କର ସଂଗ୍ରାମ ଉପସ୍ଥିତ ହୁଅନ୍ତେ ଦୁର୍ଯୋଧନ କର୍ଣ୍ଣଙ୍କୁ କହିଲେ, ହେ ଅଙ୍ଗରାଜ ! ଦେଖ, ଆଦିତ୍ୟତୁଲ୍ୟ ପ୍ରତାପଶାଳୀ ମହାବୀର ଦୁଃଶାସନ ଯୁଦ୍ଧରେ ଶତ୍ରୁସୈନ୍ୟମାନଙ୍କୁ ସଂହାର କରି ପରିଶେଷରେ ଅଭିମନ୍ୟୁଙ୍କର ବଶୀଭୂତ ହୋଇଅଛନ୍ତି ଓ ବଳୋନ୍ମତ୍ତ ସିଂହ ସଦୃଶ ପାଣ୍ଡବମାନେ କ୍ରୋଧାବିଷ୍ଟ ଚିତ୍ତରେ ଅଭିମନ୍ୟୁଙ୍କୁ ରକ୍ଷା କରିବାକୁ ଧାବମାନ ହେଉଅଛନ୍ତି । ଅନନ୍ତର ଆପଣଙ୍କ ପୁତ୍ରଙ୍କର ହିତକାରୀ କର୍ଣ୍ଣ ସଂକ୍ରୁଦ୍ଧ ହୋଇ ତୀକ୍ଷ୍ଣ ଶରସମୂହ ଦୁରାସଦ ଅଭିମନ୍ୟୁଙ୍କ ପ୍ରତି ବର୍ଷଣ କଲେ ଓ ତୀକ୍ଷ୍ଣ ପ୍ରବଳ ବାଣମାନଙ୍କ ଦ୍ୱାରା ଅଭିମନ୍ୟୁଙ୍କର ଅନୁଚର-ବର୍ଗଙ୍କୁ ଅବଜ୍ଞାପୂର୍ବକ ବିଦ୍ଧ କଲେ । ହେ ରାଜନ୍ ! ମହାମନା ଅଭିମନ୍ୟୁ ଦ୍ରୋଣ ସମୀପକୁ ଯିବାକୁ ଇଚ୍ଛା କରି ସତ୍ୱର ହୋଇ ତିନିସପ୍ତତି ଶରଦ୍ୱାରା କର୍ଣ୍ଣଙ୍କୁ ବିଦ୍ଧ କଲେ । ସେହି କାଳରେ ଦ୍ରୋଣଙ୍କ ପ୍ରତି ଧାବମାନ ହେଉ-ଥିବା ସେହି ମହାରଥମର୍ଦ୍ଦନକାରୀ ପୁରନ୍ଦରପୌତ୍ରଙ୍କୁ କୌଣସି ରଥୀ ନିବାରଣ କରିପାରିଲେ ନାହିଁ ।

ଅନନ୍ତର ଅସ୍ତ୍ରଜ୍ଞପ୍ରବର ପ୍ରତାପବାନ୍ ସର୍ବଧନୁର୍ଦ୍ଧରାଗ୍ରଣୀ, ମାନୀ, ଜୟେଚ୍ଛୁ, ରାମଶିଷ୍ୟ କର୍ଣ୍ଣ, ଶତଶତ ଉତ୍ତମାସ୍ତ୍ର ପ୍ରବର୍ଷଣ କରି ଯୁଦ୍ଧରେ ଦୁର୍ଦ୍ଧର୍ଷ ଶତ୍ରୁ ଅଭିମନ୍ୟୁଙ୍କୁ ପୀଡ଼ିତ କଲେ । ଦେବସଂକାଶ ଅର୍ଜ୍ଜୁନ-ନନ୍ଦନ ରାଧାନନ୍ଦନଙ୍କର ଅସ୍ତ୍ରବର୍ଷଣରେ ଅତି ପୀଡ଼ିତ ହେଲେ ସୁଦ୍ଧା ବିଷଣ୍ଣ ହେଲେ ନାହିଁ ଓ ଶିଳାଶାଣିତ ଆନତପର୍ବ ଭଲ୍ଲ-ସମୂହ ଦ୍ୱାରା ଅନ୍ୟାନ୍ୟ ଶୂରମାନଙ୍କର ଶରାସନ ଛେଦନ କରି ହାସ୍ୟ କରୁଁ କରୁଁ ମଣ୍ଡଳାକାର ଧନୁର୍ମୁକ୍ତ ଆଶୀବିଷୋପମ ଶରଦ୍ୱାରା ଛତ୍ର, ଧ୍ୱଜ, ସାରଥି ଓ ଅଶ୍ୱମାନଙ୍କ ସହିତ କର୍ଣ୍ଣଙ୍କୁ ଶୀଘ୍ରହସ୍ତରେ ପୀଡ଼ନ କଲେ । କର୍ଣ୍ଣ ମଧ୍ୟ ସନ୍ନତପର୍ବ ବାଣସବୁ ତାହାଙ୍କ ଉପରକୁ ନିକ୍ଷେପ କଲେ । ୩୩ । ଅର୍ଜ୍ଜୁନ-ନନ୍ଦନ ଅସମ୍ଭ୍ରାନ୍ତ ଚିତ୍ତରେ ସେହି ସବୁ ବାଣ ଗ୍ରହଣ କଲେ । ଅନନ୍ତର ବୀର୍ଯ୍ୟବାନ୍ ବୀର ଅଭିମନ୍ୟୁ ମୁହୂର୍ତ୍ତ ମଧ୍ୟରେ ଗୋଟିଏ ବାଣ ଦ୍ୱାରା କର୍ଣ୍ଣଙ୍କର ଧ୍ୱଜ ଓ କାର୍ମୁକ ଛେଦନ କରି ଭୂମିରେ ପାତିତ କଲେ । ଅନନ୍ତର କର୍ଣ୍ଣଙ୍କୁ,

ବିପଦାପନ୍ନ ଦେଖି ତାହାଙ୍କ କନିଷ୍ଠ ଭ୍ରାତା ଦୃଢ଼ ଧନୁକୁ ଉଦ୍ୟତ କରି ଶୀଘ୍ର ଅଭିମନ୍ୟୁଙ୍କ ନିକଟକୁ ଆଗମନ କଲେ । ତତ୍ପରେ ପାଣ୍ଡବମାନେ ଓ ସେମାନଙ୍କର ଅନୁଚର ଲୋକମାନେ ହର୍ଷନାଦ ଓ ବାଦ୍ୟଧ୍ୱନି କଲେ ଓ ଅଭିମନ୍ୟୁଙ୍କର ପ୍ରଶଂସା କଲେ । ୩୭ ।

# ୪୧ ଅଧ୍ୟାୟ

ସଞ୍ଜୟ ବୋଇଲେ—ହେ ମହାରାଜ ! କର୍ଣ୍ଣଙ୍କର କନିଷ୍ଠ ଧନୁଷ୍ପାଣି ହୋଇ ଅତିଶୟ ଗର୍ଜ୍ଜନ ଓ ପୁନଃ ପୁନଃ ଜ୍ୟାକର୍ଷଣ କରୁଁ କରୁଁ ସେହି ଦୁଇ ମହାତ୍ମାଙ୍କ ମଧ୍ୟସ୍ଥଳରେ ଆପତିତ ହେଲେ । ୧ । ଓ ହାସ୍ୟ କରୁଁ କରୁଁ ଛତ୍ର, ଧ୍ୱଜ, ସାରଥି ଓ ଅଶ୍ୱ ସହିତ ଦୁରାସଦ ଅଭିମନ୍ୟୁଙ୍କୁ ଶୀଘ୍ର-ହସ୍ତରେ ଦଶଗୋଟି ବାଣଦ୍ୱାରା ବିଦ୍ଧ କଲେ । ୨ । ପିତୃପିତାମହସଦୃଶ ଅଲୌକିକ କର୍ମକାରୀ ଅଭିମନ୍ୟୁଙ୍କୁ ତାହାଙ୍କ ଶରରେ ବ୍ୟଥିତ ହେବାର ଦେଖି ଆପଣଙ୍କ ସୈନ୍ୟମାନେ ଆନନ୍ଦିତ ହେଲେ । ୩ । ପରନ୍ତୁ ଅଭିମନ୍ୟୁ ହାସ୍ୟ କରୁଁ କରୁଁ କାର୍ମୁକକର୍ଷଣପୂର୍ବକ ଏକଗୋଟି ଶରଦ୍ୱାରା ତାହାଙ୍କର ଶିର ଛେଦନ କରି ରଥରୁ ଭୂମିରେ ପାତିତ କଲେ । ୪ ।

ହେ ରାଜନ୍ ! ଯେପରି ପର୍ବତରୁ ବାତାନ୍ଦୋଳିତ କର୍ଣ୍ଣିକାର ପୁଷ୍ପ ପତିତ ହୁଏ, ସେହିପରି ନିଜ ଭ୍ରାତାଙ୍କୁ ନିହତ ହୋଇ ରଥରୁ ପତିତ ହେବାର ଦେଖି କର୍ଣ୍ଣ ଅତ୍ୟନ୍ତ ବ୍ୟଥାପ୍ରାପ୍ତ ହେଲେ । ୫ । କଙ୍କପକ୍ଷ-ଯୁକ୍ତ ଶରସମୂହ ଦ୍ୱାରା କର୍ଣ୍ଣଙ୍କୁ ସମରବିମୁଖ କରି ଅଭିମନ୍ୟୁ ଶୀଘ୍ର ଅନ୍ୟାନ୍ୟ ମହାଧନୁର୍ଦ୍ଧରମାନଙ୍କ ପ୍ରତି ଧାବମାନ ହେଲେ । ସେହି ଉଗ୍ର-ତେଜା ମହାଯଶା ଅଭିମନ୍ୟୁ କ୍ରୁଦ୍ଧ ହୋଇ ତୁରଙ୍ଗ, ମାତଙ୍ଗ ଓ ଶତାଙ୍ଗ-ସମ୍ପନ୍ନ ସୈନ୍ୟମାନଙ୍କୁ ଭେଦ କଲେ । ଅଭିମନ୍ୟୁଙ୍କର ବହୁତର ବାଣରେ କର୍ଣ୍ଣ ପୀଡ଼ିତ ହୋଇ ବେଗଗାମୀ ଅଶ୍ୱଦ୍ୱାରା ରଣରୁ ଅପସୃତ ହେଲେ । ତହୁଁ ତାହାଙ୍କର ସୈନ୍ୟମାନେ ଭଗ୍ନ ହୋଇ ଗଲେ । ୮ ।

ହେ ରାଜନ୍ ! ଅଭିମନ୍ୟୁଙ୍କ ଶରସମୂହ ଶଲଭପୁଞ୍ଜ ଓ ଜଳଧାରା ସଦୃଶ ଆକାଶକୁ ଆଚ୍ଛନ୍ନ କଲା, କିନ୍ତୁ ବୋଧଗମ୍ୟ ହେଲା ନାହିଁ । ୯ । ଆପଣଙ୍କ ପକ୍ଷୀୟ ଯୋଦ୍ଧାମାନେ ଶାଣିତ ଶରଦ୍ୱାରା ହନ୍ୟମାନ ହୁଅନ୍ତେ ରାଜା ଜୟଦ୍ରଥଙ୍କ ବ୍ୟତୀତ ଆଉ କେହି ରଣସ୍ଥଳରେ ଅବସ୍ଥାନ କରିପାରିଲେ ନାହିଁ । ୧୦ । ହେ ଭରତର୍ଷଭ ! ତତ୍ପରେ ପୁରୁଷସିଂହ ଅଭିମନ୍ୟୁ ଶଙ୍ଖ ବାଦ୍ୟ କରି ଶୀଘ୍ର ଭାରତୀସେନା ଉପରେ ପତିତ ହେଲେ । ତୃଣରାଶି ମଧ୍ୟରେ ଅଗ୍ନିନିକ୍ଷିପ୍ତ ହେଲା ପ୍ରାୟ ବେଗପୂର୍ବକ ଶାଣିତ ଶରସମୂହ ଦ୍ୱାରା ଅଭିମନ୍ୟୁ ଶତ୍ରୁମାନଙ୍କୁ ଦଗ୍ଧ କରି ସୈନ୍ୟମଧ୍ୟରେ ବିଚରଣ କଲେ ।୧୨। ସେ ସେନାମଧ୍ୟରେ ପ୍ରବେଶ କରି ନିଶିତ ଶରମାନଙ୍କଦ୍ୱାରା ତୁରଙ୍ଗ, ମାତଙ୍ଗ, ରଥାଙ୍ଗ ଓ ପଦାତିମାନଙ୍କୁ ବିମର୍ଦ୍ଦନପୂର୍ବକ ରଣଭୂମିକୁ ଶତଶତ କବନ୍ଧ ଦ୍ୱାରା ପୂର୍ଣ୍ଣ କଲେ । ଅଭିମନ୍ୟୁଙ୍କ ଧନୁର୍ମୁକ୍ତ ପ୍ରବଳ ବାଣପ୍ରହାର ଦ୍ୱାରା ଅନେକ ବୀର କ୍ଷତବିକ୍ଷତ ହୋଇ ଜୀବନରକ୍ଷାର୍ଥ ଆତ୍ମପକ୍ଷୀୟମାନଙ୍କୁ ଧ୍ୱଂସ କରୁଁ କରୁଁ ପଳାୟନ କଲେ । ୧୪ ।

ତାହାଙ୍କର ଭୟଙ୍କର ଶାଣିତ ଶରମାନ ତୁରଙ୍ଗ, ମାତଙ୍ଗ ଓ ରଥାଙ୍ଗସମୂହକୁ ସଂହାର କରି ଭୂମିଗତ ହେଲେ ।୧୫। ଆୟୁଧ, ଅଙ୍ଗୁଳିତ୍ର, ଗଦା, ଅଙ୍ଗଦ ଓ ହେମାଭରଣଭୂଷିତ ବାହୁମାନ ଛିନ୍ନ ଓ ପତିତ ହୋଇ ରଣଭୂମିରେ ଦୃଷ୍ଟ ହେଲେ । ୧୬ । ସହସ୍ର ସହସ୍ର ଶର, ଶରାସନ, ଖଡ୍ଗ, ସକୁଣ୍ଡଳ ମସ୍ତକ ଓ ମାଲ୍ୟଶୋଭିତ ମୃତଦେହ ରଣଭୂମିରେ ପତିତ ହେଲା । ୧୭ । ହେ ନରନାଥ ! କ୍ଷଣକାଳ ମଧ୍ୟରେ ଭଗ୍ନ, ନିହତ ଓ ବିସ୍ତୃତ ହସ୍ତୀ, ଅଶ୍ୱ, କ୍ଷତ୍ରିୟ ଦେହ, ରଥର ଈଷା, ଦଣ୍ଡ, ବନ୍ଧୁର, ଅନ୍ୟାନ୍ୟ ଉପକରଣ, ଚକ୍ର, ଯୁଗ, ଅକ୍ଷ ଓ ବୃହତ୍ ବୃହତ୍ ଧ୍ୱଜ, ଚର୍ମ, ଧନୁକ, ଶକ୍ତି, ବାଣ ଓ ଅସି, ଇତସ୍ତତଃ ପଡ଼ିତ ହେବାରୁ ରଣକ୍ଷେତ୍ର ଭୟଙ୍କର ଓ ଅଗମ୍ୟ ହୋଇଗଲା । ୨୦ । ହତାହତ କ୍ଷତ୍ରିୟମାନଙ୍କର ପରସ୍ପର କ୍ରନ୍ଦନରେ ଭୀରୁଜନଙ୍କର ଭୟବର୍ଦ୍ଧନ ମହାଶବ୍ଦ ପ୍ରାଦୁର୍ଭୂତ ହେଲା । ୨୧ । ହେ ଭରତଶ୍ରେଷ୍ଠ ! ସେହି ଶବ୍ଦଦ୍ୱାରା ସର୍ବଦିଗ ପ୍ରତିନାଦିତ ହେଲା ; ପରନ୍ତୁ ଅଭିମନ୍ୟୁ ଅଶ୍ୱ, ଗଜ, ରଥ ଓ ପଦାତିସଙ୍କୁଳ ସୈନ୍ୟମାନଙ୍କୁ ନିହତ କରି ବିଚରଣ କଲେ । ୨୨ ।

ଯେପରି ଅଗ୍ନି ଶୁଷ୍କ ତୃଣରାଶି ମଧ୍ୟରେ ପ୍ରଦୀପ୍ତ ହୁଅନ୍ତି, ସେହିପରି ଅର୍ଜ୍ଜୁନନନ୍ଦନ ଭାରତସୈନ୍ୟ ମଧ୍ୟରେ ଶତ୍ରୁମାନଙ୍କୁ ଦହନ କରିବାର ଦୃଷ୍ଟ ହେଲେ । ୨୩ । ହେ ଭାରତ ! ସେହି ସମୟରେ ଅଭିମନ୍ୟୁ ସୈନ୍ୟଧୂଳିରେ ସମାଚ୍ଛନ୍ନ ହୋଇ ଚତୁର୍ଦ୍ଦିଗରେ ଭ୍ରମଣ କରିବାରୁ ଆମ୍ଭେ-ମାନେ ତାହାଙ୍କୁ ଦେଖିପାରିଲୁ ନାହିଁ ।୨୪। କ୍ଷଣକାଳ ମଧ୍ୟରେ ପୁନର୍ବାର ଦେଖିଲୁଁ ଯେ, ସେ ମଧ୍ୟାହ୍ନକାଳୀନ ସୂର୍ଯ୍ୟସଦୃଶ ଶତ୍ରୁମାନଙ୍କୁ ସନ୍ତାପିତ କରି ଗଜ, ଅଶ୍ୱ, ଓ ନରମାନଙ୍କର ପରମାୟୁହରଣପୂର୍ବକ ଭ୍ରମଣ କରୁ-ଅଛନ୍ତି । ହେ ମହାରାଜ ! ଇନ୍ଦ୍ରପୌତ୍ର ଅଭିମନ୍ୟୁ ଯୁଦ୍ଧରେ ଇନ୍ଦ୍ରଙ୍କସଦୃଶ ହୋଇ ସୈନ୍ୟ ମଧ୍ୟରେ ଦୀପ୍ତିପ୍ରାପ୍ତ ହେଲେ । ୨୬ ।

## ୪୨ ଅଧ୍ୟାୟ

ଧୃତରାଷ୍ଟ୍ର କହିଲେ,—ହେ ସଞ୍ଜୟ ! ସେହି ବାଳକ ଅତ୍ୟନ୍ତ ସୁଖୀ, ନିଜ ବାହୁବଳରେ ଦର୍ପିତ, ଯୁଦ୍ଧରେ ଅତି ବିଶାରଦ, ବୀର ଓ ସତ୍କୁଳ-ଜାତ ଅଟେ । ସେ ପ୍ରାଣନିଃସ୍ପୃହ ହୋଇ ତ୍ରିବର୍ଷୀୟ ସଦଶ୍ୱଯୋଜିତ ରଥରେ ଆରୋହଣ କରି ଆମ୍ଭମାନଙ୍କ ସୈନ୍ୟସାଗରରେ ଗାହମାନ ହୁଅନ୍ତେ ଯୁଧିଷ୍ଠିରଙ୍କ ସୈନ୍ୟମଧ୍ୟରୁ କେଉଁ ବଳବାନ୍ ବୀର ତାହାଙ୍କର ଅନୁବର୍ତ୍ତୀ ହୋଇଥିଲେ ? ୨ ।

ସଞ୍ଜୟ ବୋଇଲେ, ମହାରାଜ ! ଯୁଧିଷ୍ଠିର, ଭୀମସେନ, ଶିଖଣ୍ଡୀ, ସାତ୍ୟକି, ନକୁଳ, ସହଦେବ, ଧୃଷ୍ଟଦ୍ୟୁମ୍ନ, ବିରାଟ, ଦ୍ରୁପଦ, କେକେୟ, ଧୃଷ୍ଟକେତୁ ଓ ମତ୍ସ୍ୟଗଣ—ଏମାନେ ଯୁଦ୍ଧରେ ଅନୁଗତ ହେଲେ । ଅଭିମନ୍ୟୁଙ୍କ ପିତୃବ୍ୟ ଓ ତାହାଙ୍କର ମାତୁଳପକ୍ଷୀୟ ବୀରମାନେ ଏବଂ ପୂର୍ବୋକ୍ତ ସମସ୍ତ ରାଜା ପ୍ରହାରକ୍ଷମ ସୈନିକମାନଙ୍କ ଦ୍ୱାରା ବ୍ୟୂହ ସଜ୍ଜିତ କରି ଅଭିମନ୍ୟୁଙ୍କୁ ରକ୍ଷା କରିବା ମାନସରେ ତାହାଙ୍କ କୃତ ପଥରେ ଅନୁଗମନ କଲେ । ଆପଣଙ୍କ ପକ୍ଷୀୟ ଯୋଦ୍ଧାମାନେ ସେମାନଙ୍କୁ ଆସୁଥିବାର ଦେଖି ବିମୁଖ ହେଲେ । ୫ । ଆପଣଙ୍କ ପୁତ୍ରଙ୍କ ସେହି ମହତ୍ ସୈନ୍ୟମାନଙ୍କୁ

ବିମୁଖ ହେବାର ଦେଖି ଆପଣଙ୍କ ତେଜସ୍ୱୀ ଜାମାତା ପାଣ୍ଡବମାନଙ୍କୁ ଅବରୋଧ କରିବାକୁ ଇଚ୍ଛୁକ ହୋଇ ପ୍ରତ୍ୟୁଦ୍‌ଗତ ହେଲେ । ୬ । ହେ ମହାରାଜ ! ସିନ୍ଧୁରାଜପୁତ୍ର ରାଜା ଜୟଦ୍ରଥ ସେହି ପୁତ୍ରଗୃଦ୍ଧୀ ସସୈନ୍ୟ ପୃଥା-ନନ୍ଦନମାନଙ୍କୁ ନିବାରଣ କଲେ । ୭ ।

ନିମ୍ନଭୂମିସ୍ଥ ଶତ୍ରୁମାନଙ୍କୁ ହସ୍ତୀ ଯେପରି ଅନାୟାସରେ ନିବାରଣ କରେ, ସେହିପରି ଉଗ୍ରଧନ୍ୱା ମହାଧନୁର୍ଦ୍ଧର ଜୟଦ୍ରଥ ଦିବ୍ୟାସ୍ତ୍ର ପ୍ରଦର୍ଶନ କରି ସେମାନଙ୍କୁ ନିବାରଣ କଲେ । ୮ ।

ଧୃତରାଷ୍ଟ୍ର ବୋଇଲେ, ହେ ସଞ୍ଜୟ ! ଆମ୍ଭେ ବୋଧ କରୁଁ, ସିନ୍ଧୁରାଜଙ୍କ ଉପରେ ଅତିଭାର ଅର୍ପିତ ହୋଇଥିଲା ; ଯେ ହେତୁ ସେ ଏକାକୀ ହୋଇ ଭ୍ରାତୃପୁତ୍ରରକ୍ଷାର୍ଥୀ କ୍ରୁଦ୍ଧ ପାଣ୍ଡବମାନଙ୍କୁ ନିବାରଣ କରିଥିଲେ ।୯। ଆମ୍ଭେ ସିନ୍ଧୁରାଜଙ୍କୁ ଅତି ଅଦ୍ଭୁତ-ବଳବୀର୍ଯ୍ୟଶାଳୀ ଓ ଶୌର୍ଯ୍ୟବାନ୍ ମନେ କରୁ-ଅଛୁଁ । ତୁମ୍ଭେ ସେହି ମହାତ୍ମାଙ୍କର ପ୍ରବଳ ବଳବୀର୍ଯ୍ୟ ଓ କର୍ମ ଆମ୍ଭ ନିକଟରେ କୀର୍ତ୍ତନ କର । ୧୦ । ସେ ଏପରି କି ଦାନ, ହୋମ ବା ତପସ୍ୟା କରିଥିଲେ ଯେ, ସେ ଏକାକୀ ହୋଇ କ୍ରୁଦ୍ଧ ପାଣ୍ଡବମାନଙ୍କୁ ନିବାରଣ କରିବାକୁ ସମର୍ଥ ହେଲେ ? ୧୧ ।

ସଞ୍ଜୟ ବୋଇଲେ—ଦ୍ରୌପଦୀହରଣ କାଳରେ ରାଜା ଜୟଦ୍ରଥ ଭୀମସେନଙ୍କ ଦ୍ୱାରା ପରାଜିତ ହେବାରୁ ସେହି ଅଭିମାନରେ ସେ ବର-ଲାଭାର୍ଥୀ ହୋଇ ଅତି ମହତ୍ ତପସ୍ୟା କରିଥିଲେ । ୧୨ । ସେ ବିଷୟ-ସୁଖରୁ ଇନ୍ଦ୍ରିୟମାନଙ୍କୁ ନିବୃତ୍ତ କରି କ୍ଷୁତ୍‌ପିପାସାରୌଦ୍ରସହିଷ୍ଣୁ ହେଲେ ଓ କୃଶ ଓ ଶିରାବିସ୍ତୃତକଳେବର ହୋଇ କଠୋର ତପସ୍ୟାଚରଣ ଦ୍ୱାରା ସନାତନ ବ୍ରହ୍ମ ମହାଦେବଙ୍କୁ ସ୍ତୁତିପୂର୍ବକ ଆରାଧନା କରିବାରେ ପ୍ରବୃତ୍ତ ହେଲେ । ଅନନ୍ତର ଭକ୍ତବତ୍ସଳ ଭଗବାନ୍ ମହାଦେବ ତାହାଙ୍କ ପ୍ରତି ଦୟା କଲେ । ୧୪ । ସିନ୍ଧୁରାଜପୁତ୍ର ଜୟଦ୍ରଥଙ୍କୁ ତାହାଙ୍କ ନିଦ୍ରାସମୟରେ ମହାଦେବ କହିଲେ, ହେ ଜୟଦ୍ରଥ ! ଆମ୍ଭେ ତୁମ୍ଭ ପ୍ରତି ପ୍ରୀତ ହୋଇଅଛୁଁ, ତୁମ୍ଭେ କି ବର ଲାଭ କରିବାକୁ ଇଚ୍ଛା କରୁଅଛ, କହ । ୧୫ । ମହାଦେବ ଏହିରୂପେ କହନ୍ତେ, ନିୟତବ୍ରତ ଜୟଦ୍ରଥ ପ୍ରଣତ ଓ ପ୍ରାଞ୍ଜଳି ହୋଇ

କହିଲେ, ହେ ଦେବ ! ଆମ୍ଭେ ସମରରେ ଏକାକୀ ହୋଇ ରଥରେ ଆରୋହଣ କରି ମହାବଳ ପରାକ୍ରାନ୍ତ ପାଣ୍ଡବମାନଙ୍କୁ ଜୟ କରିବାକୁ ଇଚ୍ଛା କରୁଁ ।୧୭। ଜୟଦ୍ରଥ ଏହିପରି ବର ପ୍ରାର୍ଥନା କରନ୍ତେ, ଦେବଦେବ ମହାଦେବ ଜୟଦ୍ରଥଙ୍କୁ କହିଲେ, ହେ ସୌମ୍ୟ, ଆମ୍ଭେ ତୁମ୍ଭଙ୍କୁ ଏହି ବର ପ୍ରଦାନ କରୁଁଅଛୁଁ ଯେ, ତୁମ୍ଭେ ପାର୍ଥ ଧନଞ୍ଜୟଙ୍କ ବ୍ୟତୀତ ଆଉ ଚାରିଜଣ ପାଣ୍ଡବଙ୍କୁ ଜୟ କରିପାରିବ । ରାଜା ଜୟଦ୍ରଥ ମହାଦେବଙ୍କର ବାକ୍ୟ ଶୁଣି ଏବମସ୍ତୁ ବୋଲି କହି ଜାଗରିତ ହେଲେ । ୧୯ ।

ଜୟଦ୍ରଥ ସେହି ବର ପ୍ରଭାବରୁ ଓ ଦିବ୍ୟାସ୍ତ୍ରବଳଦ୍ୱାରା ଏକାକୀ ସମସ୍ତ ପାଣ୍ଡବସେନାଙ୍କୁ ନିବାରଣ କଲେ । ୨୦ । ତାହାଙ୍କର ଜ୍ୟା-ତଳଶବ୍ଦଦ୍ୱାରା ଶତ୍ରୁପକ୍ଷୀୟ କ୍ଷତ୍ରିୟମାନଙ୍କର ଭୟ ଜାତ ଓ ଆପଣଙ୍କ ସୈନ୍ୟମାନଙ୍କର ଆନନ୍ଦ ଜାତ ହେଲା । ୨୧ । ହେ ରାଜନ୍ ! ଆପଣଙ୍କ ପକ୍ଷର ଯୋଦ୍ଧାମାନେ ସିନ୍ଧୁରାଜଙ୍କ ଉପରେ ସମସ୍ତ ଭାର ଅର୍ପିତ ହେବାର ଦେଖି ସିଂହନାଦପୂର୍ବକ ଯୁଧିଷ୍ଠିରଙ୍କ ସୈନ୍ୟମାନଙ୍କୁ ଆକ୍ରମଣ କଲେ ।୨୨।

## ୪୩ ଅଧ୍ୟାୟ

ସଞ୍ଜୟ ବୋଇଲେ—ହେ ରାଜେନ୍ଦ୍ର ! ଆପଣ ଯେ ସିନ୍ଧୁରାଜଙ୍କ ବିକ୍ରମକଥା ଆମ୍ଭଙ୍କୁ ପଚାରୁଅଛନ୍ତି, ସିନ୍ଧୁରାଜ ପାଣ୍ଡବମାନଙ୍କ ସହିତ ଯେ ପ୍ରକାରେ ଯୁଦ୍ଧ କରିଥିଲେ, ତତ୍ସମସ୍ତ ଆମ୍ଭେ କୀର୍ତ୍ତନ କରୁଅଛୁଁ, ଶୁଣିବା ହୁଅନ୍ତୁ । ୧ । ସାରଥିର ବଶବର୍ତ୍ତୀ ସାଧୁବାହୀ ସିନ୍ଧୁଦେଶୀୟ ବାୟୁସମ ବେଗଶୀଳ ଅଶ୍ୱମାନେ ଜୟଦ୍ରଥଙ୍କୁ ବହନ କରିଥିଲେ । ୨ । ଜୟଦ୍ରଥଙ୍କର ଗନ୍ଧର୍ବନଗରାକାର ବିଧିବତ୍ କଳ୍ପିତ ରଥ ଓ ତାହାର ରୌପ୍ୟ ନିର୍ମିତ ବରାହରୂପ ଧ୍ୱଜ, ଅତ୍ୟନ୍ତ ଶୋଭିତ ହେଲା । ୩ । ଯେପରି ଆକାଶରେ ତାରାପତି ଚନ୍ଦ୍ରମା ଶୋଭିତ ହୁଅନ୍ତି, ସେହିପରି ସେ ଶ୍ୱେତଛତ୍ର, ଶ୍ୱେତ-ପତାକା, ଶ୍ୱେତଚାମର, ବ୍ୟଜନାଦି ନାନାବିଧ ରାଜଚିହ୍ନଦ୍ୱାରା ସୁଶୋଭିତ ହେଲେ । ୪ । ମୁକ୍ତା, ବଜ୍ରମଣି ଓ ସ୍ୱର୍ଣ୍ଣଭୂଷିତ ହେବାରୁ ତାହାଙ୍କର ଲୌହମୟ ରଥ ଜ୍ୟୋତିର୍ଗଣାବୃତ ନଭୋମଣ୍ଡଳ ସଦୃଶ ଶୋଭା ପାଇଲା ।୫।

ବିପକ୍ଷ ବ୍ୟୂହର ଯେଉଁ ଅଂଶକୁ ଅଭିମନ୍ୟୁ ବିଦାରଣ କଲେ, ଜୟଦ୍ରଥ ମହାଶରାସନ ବିସ୍ତାରଣପୂର୍ବକ ବାଣ ବର୍ଷଣ କରି ସେହି ଅଂଶକୁ ପୂରଣ କଲେ ।୭। ଜୟଦ୍ରଥ ତିନିଗୋଟି ବାଣଦ୍ୱାରା ସାତ୍ୟକିଙ୍କୁ, ଆଠଗୋଟି ବାଣରେ ବୃକୋଦରଙ୍କୁ, ଷଷ୍ଟିବାଣରେ ଧୃଷ୍ଟଦ୍ୟୁମ୍ନଙ୍କୁ; ଦଶବାଣରେ ବିରାଟଙ୍କୁ, ପଞ୍ଚ ତୀକ୍ଷ୍ଣ ବାଣରେ ଦ୍ରୁପଦଙ୍କୁ, ସାତବାଣରେ ଶିଖଣ୍ଡୀଙ୍କୁ, ପଞ୍ଚବିଂଶତି ବାଣଦ୍ୱାରା କୈକେୟମାନଙ୍କୁ, ତିନିଗୋଟି ବାଣଦ୍ୱାରା ଦ୍ରୌପଦୀ-ପୁତ୍ରମାନଙ୍କୁ ଓ ସପ୍ତତି ବାଣଦ୍ୱାରା ଯୁଧିଷ୍ଠିରଙ୍କୁ ବିଦ୍ଧ କରି ମହତ୍ ବାଣ-ଜାଳଦ୍ୱାରା ଅବଶିଷ୍ଟ ଯୋଦ୍ଧାମାନଙ୍କୁ ବିଦ୍ଧ କଲେ । ତାହା ଅଦ୍ଭୁତ ପ୍ରାୟ ହେଲା । ୯ ।

ହେ ରାଜନ୍ ! ଅନନ୍ତର ପ୍ରତାପଶାଳୀ ରାଜା ଧର୍ମପୁତ୍ର ହାସ୍ୟ-ପୂର୍ବକ ପୀତ ଓ ଶାଣିତ ଭଲ୍ଲଦ୍ୱାରା "ତୁମ୍ଭର କାର୍ମୁକ ଛେଦନ କରୁଅଛୁଁ— ଏହା କହି ଜୟଦ୍ରଥଙ୍କ ଶରାସନ ଛେଦନ କଲେ । ୧୦ । ଚକ୍ଷୁର ନିମେଷ ମାତ୍ରକେ ଜୟଦ୍ରଥ ଅନ୍ୟ ଶରାସନ ଗ୍ରହଣ କରି ଦଶଗୋଟି ବାଣଦ୍ୱାରା ଯୁଧିଷ୍ଠିରଙ୍କୁ ଓ ତିନିଗୋଟି ବାଣଦ୍ୱାରା ଅନ୍ୟ ଯୋଦ୍ଧାମାନଙ୍କୁ ବିଦ୍ଧ କଲେ । ୧୧ । ମହାବୀର ବୃକୋଦର ଜୟଦ୍ରଥଙ୍କର ସମରଲାଘବ ଅବଗତ ହୋଇ ଶୀଘ୍ର ତିନିଗୋଟି ଭଲ୍ଲନିକ୍ଷେପପୂର୍ବକ ତାହାଙ୍କ ଧନୁ, ଧ୍ୱଜ ଓ ଛତ୍ର ଛେଦନ କରି ଭୂମିରେ ପାତିତ କଲେ । ୧୨ ।

ହେ ମାରିଷ ! ବଳବାନ୍ ସିନ୍ଧୁପତି ପୁନର୍ବାର ଅନ୍ୟ ଧନୁଗ୍ରହଣ-ପୂର୍ବକ ତହିଁରେ ଜ୍ୟାରୋପଣ କରି ଭୀମର ଧ୍ୱଜ, ଧନୁକ ଓ ଅଶ୍ୱମାନଙ୍କୁ ନିପାତିତ କଲେ । ୧୩ । ଯେପରି ସିଂହ ପର୍ବତ ଅଗ୍ରରେ ଆରୋହଣ କରେ, ସେହିପରି ଭୀମସେନ ଛିନ୍ନଧନ୍ୱା ହୋଇ ଅଶ୍ୱଶୂନ୍ୟ ରଥରୁ ସାତ୍ୟକିଙ୍କ ରଥରେ ଲମ୍ଫପ୍ରଦାନପୂର୍ବକ ଆରୋହଣ କଲେ । ୧୪ । ତତ୍ପରେ ଆପଣଙ୍କ ପକ୍ଷୀୟ ସୈନ୍ୟମାନେ ସିନ୍ଧୁରାଜଙ୍କର ସେହି ଅଦ୍ଭୁତ ଓ ଅବିଶ୍ୱସନୀୟ କର୍ମ ଦେଖି ହୃଷ୍ଟ ଚିତ୍ତରେ "ସାଧୁ ସାଧୁ" ବୋଲି ପ୍ରଶଂସା କଲେ । ୧୫ । ଶ୍ରେଷ୍ଠ ଯୋଦ୍ଧାମାନେ ହସ୍ତୀ ସହିତ ପୂର୍ବରୁ ଅଭିମନ୍ୟୁଙ୍କ ଦ୍ୱାରା ନିହତ ହେବାରୁ ପାଣ୍ଡବମାନଙ୍କ ପ୍ରବେଶ ପଥ ପରିଷ୍କୃତ ହୋଇଥିଲା, କିନ୍ତୁ ସିନ୍ଧୁରାଜ ତାହା ରୁଦ୍ଧ କଲେ । ୧୬ । ପାଣ୍ଡବ, ମତ୍ସ୍ୟ, ପାଞ୍ଚାଳ ଓ

କେକେୟଗଣ, ଏହି ସମସ୍ତ ବୀରମାନେ ଯତ୍ନବାନ୍ ହୋଇ ଜୟଦ୍ରଥ ସମୀପରେ ଉପସ୍ଥିତ ହେଲେ । କିନ୍ତୁ ତାହାଙ୍କର ପ୍ରଭାବ ସହନ କରିବାକୁ ସମର୍ଥ ହେଲେ ନାହିଁ । ୧୮ । ଯେଉଁ ଯେଉଁ ବିପକ୍ଷୀୟ ବୀର ଆପଣଙ୍କର ଦ୍ରୋଣରକ୍ଷିତ ସୈନ୍ୟ ଭେଦ କରିବାକୁ ଯତ୍ନ କଲେ, ସିନ୍ଧୁରାଜ ବର ପ୍ରଭାବରୁ ସେ ସମସ୍ତଙ୍କୁ ନିବାରଣ କଲେ । ୧୯ ।

# ୪୪ ଅଧ୍ୟାୟ

ସଞ୍ଜୟ ବୋଇଲେ—ଜୟାର୍ଥୀ ପାଣ୍ଡବମାନେ ସିନ୍ଧୁରାଜଙ୍କ ଦ୍ୱାରା ନିରୁଦ୍ଧ ହୁଅନ୍ତେ, ବିପକ୍ଷ ସେନାମାନଙ୍କ ସହିତ ଆପଣଙ୍କ ସୈନ୍ୟମାନଙ୍କର ଘୋରତର ସଂଗ୍ରାମ ହେଲା । ୧ । ମକର ସାଗରକୁ ଆଲୋଡନ କଲା ପ୍ରାୟ ଦୁରାସଦ ତେଜସ୍ୱୀ ସତ୍ୟସନ୍ଧ ଅଭିମନ୍ୟୁ ଆପଣଙ୍କ ସେନା ମଧ୍ୟରେ ପ୍ରବେଶ କରି ସୈନ୍ୟମାନଙ୍କୁ ବିକ୍ଷୋଭିତ କଲେ । ୨ । ଅରିନ୍ଦମ ଅଭିମନ୍ୟୁ ଶରବର୍ଷଣ ଦ୍ୱାରା ସୈନ୍ୟମାନଙ୍କୁ କ୍ଷୋଭିତ କରୁଥିବାର ଦେଖି ପ୍ରଧାନ ପ୍ରଧାନ ନୃପମାନେ ତାହାଙ୍କ ଅଭିମୁଖକୁ ଆଗମନ କଲେ । ୩ । ସେମାନଙ୍କ ସହିତ ଅଭିମନ୍ୟୁଙ୍କର ଘୋରତର ନିର୍ଘାତକ ଯୁଦ୍ଧ ହେଲା । ସେହି ଶତ୍ରୁମାନଙ୍କ ରଥଦ୍ୱାରା ବଳବାନ୍ ଅର୍ଜ୍ଜୁନ-ନନ୍ଦନ ସଂରୁଦ୍ଧ ହୋଇ ସରଳଗାମୀ ଶରସମୂହ ଦ୍ୱାରା ବୃଷସେନଙ୍କର ସାରଥିକୁ ବିନାଶ ପୂର୍ବକ ତାହାଙ୍କ ଧନୁକୁ ଛେଦନ କଲେ ଓ ଅଶ୍ୱମାନଙ୍କୁ ବିଦ୍ଧ କଲେ । ଅଶ୍ୱମାନେ ବାଣବିଦ୍ଧ ହୋଇ ବାୟୁବେଗରେ ଗମନପୂର୍ବକ ବୃଷସେନଙ୍କୁ ରଣରୁ ଅପସାରିତ କଲେ । ଅଭିମନ୍ୟୁଙ୍କ ସାରଥି ଏହି ଅନ୍ତର ପାଇ ତତ୍‌କ୍ଷଣାତ୍ ରଥ ଅପସାରିତ କଲେ । ସାରଥିର ତାଦୃଶ ନୈପୁଣ୍ୟ ଦେଖି ରଥିମାନେ ହର୍ଷସହକାରେ "ସାଧୁ ସାଧୁ" ବୋଲି ଚିତ୍କାର କଲେ । ୭ ।

ଅଭିମନ୍ୟୁଙ୍କ ରଥ ବଶାତିରାଜ ସମୀପରେ ଉପସ୍ଥିତ ହେଲା । ଅଭିମନ୍ୟୁଙ୍କୁ ନିକଟରେ ଦେଖି ବଶାତିରାଜ ଶୀଘ୍ର ତାହାଙ୍କୁ ଆକ୍ରମଣ କଲେ ଓ ସ୍ୱର୍ଣ୍ଣପୁଙ୍ଖ ଷାଠିଏଗୋଟି ଶରଦ୍ୱାରା ତାହାଙ୍କୁ ସମାକୀର୍ଣ୍ଣ କରି

କହିଲେ, "ଆମ୍ଭେ ଜୀବିତ ଥାଉଁ ଥାଉଁ ତୁମ୍ଭେ ଆମ୍ଭ ନିକଟରୁ କଦାଚ ଜୀବିତାବସ୍ଥାରେ ମୁକ୍ତ ହୋଇ ପାରିବ ନାହିଁ । ୯ । ପରନ୍ତୁ ଅଭିମନ୍ୟୁ ଲୌହମୟବର୍ମଧାରୀ ବଶାତିରାଜଙ୍କ ହୃଦୟରେ ଏକଗୋଟି ଦୂରଗାମୀ ଇଷୁ ବିଦ୍ଧ କଲେ । ସେଥିରେ ସେ ଗତାସୁ ହୋଇ ଭୂମିରେ ପତିତ ହେଲେ । ୧୦ । ହେ ରାଜନ୍ ! ବଶାତିରାଜଙ୍କୁ ନିହତ ହେବାର ଦେଖି କ୍ଷତ୍ରିୟଶ୍ରେଷ୍ଠମାନେ କ୍ରୁଦ୍ଧ ଓ ଜିଘାଂସୁ ହୋଇ ନାନାବିଧ ଧନୁ ବିସ୍ତାରଣ-ପୂର୍ବକ ଆପଣଙ୍କ ପୌତ୍ର ଅଭିମନ୍ୟୁଙ୍କୁ ପରିବେଷ୍ଟନ କଲେ । ସେହି ଶତ୍ରୁମାନଙ୍କ ସହିତ ଅଭିମନ୍ୟୁଙ୍କର ଘୋରତର ଯୁଦ୍ଧ ହେଲା । ୧୨ ।

ଅର୍ଜୁନ-ନନ୍ଦନ କ୍ରୁଦ୍ଧ ହୋଇ ସେମାନଙ୍କର ଧନୁର୍ବାଣ, ଶରୀର ଏବଂ ମାଲ୍ୟ ଓ କୁଣ୍ଡଳଯୁକ୍ତ ମସ୍ତକମାନଙ୍କୁ ଛେଦନ କଲେ । ୧୩ । ରଣ-ସ୍ଥଳରେ ଖଡ୍‌ଗ, ଅଙ୍ଗୁଳିତ୍ର, ପଟ୍ଟିଶ, ପରଶ୍ୱଧ ଓ ସ୍ୱର୍ଣ୍ଣାଭରଣଭୂଷିତ ହସ୍ତମାନ ଛିନ୍ନ ହୋଇ ଇତସ୍ତତଃ ପତିତ ହେବାର ଦୃଷ୍ଟ ହେଲା । ୧୪ । ମାଲ୍ୟ, ଆଭରଣ, ବସ୍ତ୍ର, ବୃହତ୍ ବୃହତ୍ ଧ୍ୱଜ, ବର୍ମ, ଚର୍ମ, ହାର, ମୁକୁଟ, ଛତ୍ର, ଚାମର, ଉପସ୍କର ଆସନ, ଈଷା; ଦଣ୍ଡକ, ବନ୍ଧୁର, ଅକ୍ଷ, ଚକ୍ର, ନାନାବିଧ ଯୁଗ, ଅନୁକର୍ଷ, ପତାକା, ସାରଥି, ଅଶ୍ୱ, ଭଗ୍ନ ରଥ, ଓ ହସ୍ତୀ ନିହତ ଓ ପତିତ ହୁଅନ୍ତେ ସମରଭୂମି ସମାକୀର୍ଣ୍ଣ ହେଲା । ୧୬ । ନାନାବିଧ ନାନାଦେଶାଧିପତି ଜୟଲୁବ୍ଧ ବୀର କ୍ଷତ୍ରିୟ ମାନଙ୍କର ମୃତଦେହ ଦ୍ୱାରା ରଣଭୂମି ଅତି ଭୀଷଣ ହୋଇଗଲା । ୧୮ । ଯେତେବେଳେ ଅଭିମନ୍ୟୁ କ୍ରୋଧାବିଷ୍ଟ ହୋଇ ରଣସ୍ଥଳର ଚତୁର୍ଦ୍ଦିଗରେ ଭ୍ରମଣ କଲେ, ତେତେ-ବେଳେ ତାହାଙ୍କର ରୂପ କାହାରିକୁ ଦେଖାଗଲା ନାହିଁ । କେବଳ ତାହାଙ୍କର ବର୍ମ, ଆଭରଣ, ଧନୁ ଓ ବାଣ ସ୍ୱର୍ଣ୍ଣନିର୍ମିତ ଥିବାରୁ ସେହି-ସମସ୍ତ କେବଳ ଦୃଷ୍ଟିଗୋଚର ହେଲା । ୨୦ । ସେ ଯେତେବେଳେ ଯୋଧ-ମଣ୍ଡଳୀ ମଧ୍ୟରେ ସୂର୍ଯ୍ୟ ସଦୃଶ ଅବସ୍ଥିତ ହୋଇ ଶର ସନ୍ଧାନ ଓ ନିକ୍ଷେପ କଲେ, ତେତେବେଳେ ତାହାଙ୍କ ପ୍ରତି କେହି ଦୃଷ୍ଟିପାତ କରିବାକୁ ସମର୍ଥ ହେଲେ ନାହିଁ । ୨୧ ।



# ୪୫ ଅଧ୍ୟାୟ

ସଞ୍ଜୟ ବୋଇଲେ—ଯେପରି କାଳ ଉପସ୍ଥିତ ହେଲେ ଅନ୍ତକ ସର୍ବପ୍ରାଣୀଙ୍କର ପ୍ରାଣ ହରଣ କରନ୍ତି, ସେହିପରି ଅଭିମନ୍ୟୁ ସମସ୍ତ ଶୂର-ମାନଙ୍କର ଆୟୁ ହରଣ କଲେ । ୧ । ସେହି ବଳବାନ୍ ଇନ୍ଦ୍ରତୁଲ୍ୟ ବିକ୍ରାନ୍ତ ଇନ୍ଦ୍ରପୌତ୍ର ଅଭିମନ୍ୟୁ ସୈନ୍ୟମାନଙ୍କୁ ଆଲୋଡ଼ନପୂର୍ବକ ଇନ୍ଦ୍ରସଦୃଶ ଅତୀବ ଶୋଭା ପାଇଲେ । ୨ ।

ହେ ରାଜେନ୍ଦ୍ର ! ଯେପରି ତେଜଃପ୍ରାପ୍ତ କ୍ଷୁଦ୍ଧ ବ୍ୟାଘ୍ର ମୃଗକୁ ଆକ୍ରମଣ କରେ, ସେହିପରି କ୍ଷତ୍ରିୟପ୍ରବର ଯମୋପମ ଅଭିମନ୍ୟୁ ସୈନ୍ୟ-ମଧ୍ୟରେ ପ୍ରବିଷ୍ଟ ହୋଇ ସତ୍ୟଶ୍ରବାଙ୍କୁ ଆକ୍ରମଣ କଲେ । ୩ । ସତ୍ୟଶ୍ରବା ଆକ୍ରାନ୍ତ ହୁଅନ୍ତେ ମହାରଥମାନେ ତ୍ୱରମାଣ ହୋଇ ବିବିଧ ଶସ୍ତ୍ର ଗ୍ରହଣ-ପୂର୍ବକ ଅଭିମନ୍ୟୁଙ୍କ ପ୍ରତି ଧାବମାନ ହେଲେ । ୪ । କ୍ଷତ୍ରିୟପୁଙ୍ଗବମାନେ "ଆମ୍ଭେ ଅଗ୍ରେ, "ଆମ୍ଭେ ଅଗ୍ରେ" ବୋଲି ସ୍ପର୍ଦ୍ଧାପୂର୍ବକ ଅର୍ଜ୍ଜୁନପୁତ୍ରଙ୍କ ବଧାର୍ଥ ସମାଗତ ହେଲେ । ୫ । ଯେପରି ସମୁଦ୍ର ମଧ୍ୟରେ ତିମି କ୍ଷୁଦ୍ର ମତ୍ସ୍ୟକୁ ପାଇ ଗ୍ରାସ କରେ, ସେହିପରି ଅର୍ଜ୍ଜୁନସୁତ ସେହି ଧାବମାନ କ୍ଷତ୍ରିୟମାନଙ୍କର ସୈନ୍ୟମାନଙ୍କୁ ସଂହାର କଲେ । ୬ । ଯେପରି ନଦୀମାନେ ସମୁଦ୍ରକୁ ଗମନ କରି ଆଉ ପ୍ରତ୍ୟାଗତ ହୁଅନ୍ତି ନାହିଁ, ସେହିପରି ଯେଉଁ ଅପଳାୟୀ ଯୋଦ୍ଧାମାନେ ତାହାଙ୍କ ନିକଟକୁ ଗମନ କଲେ, ସେମାନେ ଆଉ ପ୍ରତ୍ୟାଗତ ହେଲେ ନାହିଁ । ୭ । ସାଗର ମଧ୍ୟରେ ମହାଗ୍ରାହକର୍ତ୍ତୃକ ଗୃହୀତ ଓ ବାୟୁବେଗକମ୍ପିତ ନୌକାସଦୃଶ ସେହି ସମସ୍ତ ସେନା କମ୍ପିତ ହେଲେ । ୮ ।

ଅନନ୍ତର ମଦ୍ରଦେଶାଧିପତିଙ୍କର ରୁକ୍ମରଥ ନାମକ ଗୋଟିଏ ବଳବାନ୍ ପୁତ୍ର ଭୟଶୂନ୍ୟ ହୋଇ ସେହି ତ୍ରସ୍ତ ସେନାମାନଙ୍କୁ ଆଶ୍ୱାସ ପୂର୍ବକ କହିଲେ, ହେ ଶୂରମାନେ ! ଭୟର କାରଣ କଣ ? ଆମ୍ଭେ ଜୀବିତ ଥାଉଁ ଥାଉଁ ଅଭିମନ୍ୟୁ କଣ କରିପାରିବ ? ଆମ୍ଭେ ତାହାର ଜୀବନ ସଂହାର କରିବୁଁ, ଏଥିରେ ସନ୍ଦେହ ନାହିଁ । ୧୦ । ଏହିରୂପେ କହି ସେହି ବଳବାନ୍ ରୁକ୍ମରଥ ସୁସଜ୍ଜିତ ରଥରେ ଆରୋହଣ କରି ଅଭିମନ୍ୟୁଙ୍କୁ ଆକ୍ରମଣ

କଲେ । ୧୧ । ସେ ଅଭିମନ୍ୟୁଙ୍କର ବକ୍ଷଃସ୍ଥଳରେ ତିନିଗୋଟି, ଦକ୍ଷିଣ ବାହୁରେ ତିନିଗୋଟି ଓ ବାମ ବାହୁରେ ତିନିଗୋଟି ବାଣ ବିଦ୍ଧ କରି ସିଂହନାଦ କଲେ । ୧୨ । ଅର୍ଜ୍ଜୁନନନ୍ଦନ ତାହାଙ୍କର ଧନୁ ଓ ବାହୁଯୁଗଳକୁ ଏବଂ ସୁନ୍ଦର ଚକ୍ଷୁ ଓ ଭ୍ରୂଯୁକ୍ତ ମସ୍ତକକୁ ଛେଦନ କରି ଶୀଘ୍ର ଭୂମିରେ ନିପାତିତ କଲେ । ୧୩ ।

ହେ ରାଜନ୍ ! ଅଭିମନ୍ୟୁଙ୍କର ଜୀବନସଂହାରେଚ୍ଛୁ ଯଶସ୍ୱୀ ଶଲ୍ୟପୁତ୍ର ମାମା ରୁକ୍ମରଥ ଅଭିମନ୍ୟୁଙ୍କକର୍ତ୍ତୃକ ନିହତ ଓ ନିପାତିତ ହେବାର ଦେଖି ସଂଗ୍ରାମ-ଦୁର୍ମଦ ପ୍ରହାର-ନିପୁଣ ସୁବର୍ଣ୍ଣଧ୍ୱଜବିଶିଷ୍ଟ ତାହାଙ୍କର ବୟସ୍ୟ ମହାରଥମାନେ ଚତୁର୍ଦ୍ଦିଗରୁ ତାଳପ୍ରମାଣ ଧନୁ ଆସ୍ଫାଳନ କରି ଶରବର୍ଷଣଦ୍ୱାରା ଅର୍ଜ୍ଜୁନପୁତ୍ରଙ୍କୁ ଆଚ୍ଛାଦନ କଲେ । ୧୭ । ଶିକ୍ଷାବଳସମ୍ପନ୍ନ ଅତିକ୍ରୋଧୀ ଶୂର ତରୁଣବୟସ୍କ ରାଜପୁତ୍ରମାନେ ଶରଜାଳଦ୍ୱାରା ଯୁଦ୍ଧରେ ଏକାକୀ ସେହି ଶୂର ଓ ଅପରାଜିତ ଅଭିମନ୍ୟୁଙ୍କୁ ଆଚ୍ଛାଦିତ କଲେ । ଏହା ଦେଖି ଦୁର୍ଯ୍ୟୋଧନ ଅତି ହୃଷ୍ଟ ହେଲେ ଓ ମନେ କଲେ, ଏହିଥର ଅଭିମନ୍ୟୁ ଯମାଳୟକୁ ଗମନ କରିବେ । ସେହି ରାଜପୁତ୍ରମାନେ ନିମିଷକମଧ୍ୟରେ ପ୍ରତ୍ୟେକେ ନାନାବିଧ ସ୍ୱର୍ଣ୍ଣପୁଙ୍ଖବିଶିଷ୍ଟ ଶରଦ୍ୱାରା ଅର୍ଜ୍ଜୁନଙ୍କ ପୁତ୍ରଙ୍କୁ ଅଦୃଶ୍ୟ କଲେ ।୧୯।

ହେ ମାରିଷ ! ଅଭିମନ୍ୟୁଙ୍କୁ ଏବଂ ତାହାଙ୍କର ସାରଥି, ଅଶ୍ୱ ଓ ଧ୍ୱଜ ସହିତ ରଥକୁ କଣ୍ଟକବ୍ୟାପ୍ତ ଝିଙ୍କସଦୃଶ ଶରବ୍ୟାପ୍ତ ହେବାର ଦେଖିଲୁଁ । ୨୦ । ହେ ଭାରତ ! ତୋମରଦ୍ୱାରା ଗଜ ବିଦ୍ଧ ହେଲପ୍ରାୟ ଅଭିମନ୍ୟୁ ଗାଢ଼ ବିଦ୍ଧ ହେବାରୁ ସେ କ୍ରୁଦ୍ଧ ହୋଇ ଗନ୍ଧର୍ବଅସ୍ତ୍ର ଓ ଦୁର୍ଲକ୍ଷ୍ୟ ରଥଗତି-କୌଶଳକୁ ପ୍ରୟୋଗ କଲେ । ୨୧ । ପୂର୍ବକାଳରେ ଅର୍ଜ୍ଜୁନ ତପସ୍ୟା କରି ତୁମ୍ବୁରୁ ପ୍ରଭୃତି ଗନ୍ଧର୍ବମାନଙ୍କଠାରୁ ଯେଉଁ ଗନ୍ଧର୍ବାସ୍ତ୍ର ପ୍ରାପ୍ତ ହୋଇଥିଲେ, ଅଭିମନ୍ୟୁ ତଦ୍ଦ୍ୱାରା ଶତ୍ରୁମାନଙ୍କୁ ମୋହିତ କଲେ । ୨୨ । ହେ ରାଜନ୍ ! ଅଲାତଚକ୍ରସଦୃଶ ରଣସ୍ଥଳରେ ଭ୍ରମଣ କରି କ୍ଷିପ୍ରହସ୍ତରେ ସେହି ଅସ୍ତ୍ର ପ୍ରଦର୍ଶନପୂର୍ବକ ଏକ ଅଭିମନ୍ୟୁ ଶତସହସ୍ର ଅଭିମନ୍ୟୁ ରୂପରେ ଦୃଷ୍ଟ ହେଲେ । ୨୩ ।

ହେ ନୃପ ! ରଥଚର୍ଯ୍ୟା ଓ ଅସ୍ତ୍ରମାୟାଦ୍ୱାରା ଶତ ଶତ କ୍ଷତ୍ରିୟଙ୍କୁ ମୋହିତକରି ଶତ୍ରୁତାପନ ଅଭିମନ୍ୟୁ ସେମାନଙ୍କ ଶରୀରକୁ ଭେଦ କଲେ । ତାହାଙ୍କ ଶାଣିତ ଶରମାନଙ୍କଦ୍ୱାରା ପ୍ରାଣିମାନଙ୍କର ପ୍ରାଣ ପରଲୋକକୁ ପ୍ରେରିତ ଓ ଶରୀରମାନ ପୃଥିବୀରେ ପତିତ ହେଲା । ୨୫ । ସେ ଶାଣିତ ଭଲ୍ଲଦ୍ୱାରା ସେମାନଙ୍କର ଧନୁକ, ଅଶ୍ୱ, ସାରଥି, ଧ୍ୱଜ, କେୟୂରଭୂଷିତ ବାହୁ ଓ ମସ୍ତକ ଛେଦନ କଲେ । ୨୬ । ଫଳବାନ୍ ପଞ୍ଚମବର୍ଷୀୟ ଆମ୍ରଉଦ୍ୟାନ ଭଗ୍ନ ହେଲେ ଯେପରି ଦୃଷ୍ଟ ହୁଏ, ସେହି ଶତଶତ ରାଜପୁତ୍ର ଅଭିମନ୍ୟୁଙ୍କ ଦ୍ୱାରା ନିହତ ହୋଇ ସେହିପରି ପତିତ ହେବାର ଦୃଷ୍ଟ ହେଲେ ।୨୭। କ୍ରୁଦ୍ଧ ଭୁଜଙ୍ଗସନ୍ନିଭ ସୁକୁମାର ଓ ସୁଖସେବିତ ରାଜପୁତ୍ରମାନଙ୍କୁ ଏକମାତ୍ର ଅଭିମନ୍ୟୁ ନିହତ କରିବାର ଦେଖି ଦୁର୍ଯ୍ୟୋଧନ ଖିନ୍ନ ହେଲେ । ୨୮ । ରଥିମାନେ ଗଜ, ଅଶ୍ୱ ଓ ପଦାତିମାନଙ୍କୁ ମର୍ଦ୍ଦିତ କରି ପଳାୟନ କଲେ ; ତାହା ଦେଖି ଦୁର୍ଯ୍ୟୋଧନ ସଂକ୍ରୁଦ୍ଧ ହୋଇ ସୌଭଦ୍ରଙ୍କ ପ୍ରତି ଧାବମାନ ହେଲେ । ୨୯ । କିନ୍ତୁ ସେ ଉଭୟଙ୍କ ମଧ୍ୟରେ କ୍ଷଣମାତ୍ର ତୁମୁଳ ଯୁଦ୍ଧ ହୋଇଥିଲା । ପରିଶେଷରେ ଆପଣଙ୍କ ପୁତ୍ର ଅଭିମନ୍ୟୁଙ୍କ ଶରସମୂହଦ୍ୱାରା ପ୍ରପୀଡ଼ିତ ହୋଇ ବିମୁଖ ହେଲେ । ୩୦ ।

# ୪୬ ଅଧ୍ୟାୟ

ଧୃତରାଷ୍ଟ୍ର ବୋଇଲେ—ହେ ସଞ୍ଜୟ ! ଅନେକ ବୀରଙ୍କ ସହିତ ଏକ ଅଭିମନ୍ୟୁଙ୍କର ତୁମୁଳ ଓ ଘୋରତର ସଂଗ୍ରାମ ଓ ତାହାଙ୍କର ଅତ୍ୟଦ୍ଭୁତ ବିଶ୍ୱାସର ଅଯୋଗ୍ୟ ବିକ୍ରମ ଓ ଜୟ ବିଷୟ ତୁମ୍ଭେ କୀର୍ତ୍ତନ-କରୁଅଛ । କିନ୍ତୁ ଆମ୍ଭେ ଏହା ଅତ୍ୟଦ୍ଭୁତ ମନେ କରୁନାହୁଁ । କାରଣ, ତାହାଙ୍କ ପକ୍ଷରେ ଧର୍ମ ଆଶ୍ରୟ ହୋଇଅଛନ୍ତି । ୨ । ଶତ ଶତ ରାଜପୁତ୍ର ନିହତ ଓ ଦୁର୍ଯ୍ୟୋଧନ ଯୁଦ୍ଧରେ ବିମୁଖ ହୁଅନ୍ତେ, ଆମ୍ଭପକ୍ଷୀୟ ଯୋଦ୍ଧା-ମାନେ ଅଭିମନ୍ୟୁଙ୍କ ନିମନ୍ତେ କି ଉପାୟ କଲେ ? ୩ ।

ସଞ୍ଜୟ ବୋଇଲେ—ହେ ମହାରାଜ ! ସେମାନେ ଶୁଷ୍କବଦନ, ଚଞ୍ଚଳନେତ୍ର, ଘର୍ମାକ୍ତ, ଲୋମାଞ୍ଚିତ ଦେହ ଶତ୍ରୁଜୟରେ ନିରୁତ୍ସାହ ଓ

ପଳାୟନରେ ହତୋତ୍ସାହ ହୋଇ ନିହତ ହୋଇଥିବା ଭ୍ରାତା, ପିତା, ପୁତ୍ର, ସୁହୃଦ୍ ଓ ଅନ୍ୟାନ୍ୟ ସମ୍ବନ୍ଧୀ ଏବଂ ବାନ୍ଧବମାନଙ୍କୁ ପରିତ୍ୟାଗପୂର୍ବକ ସ୍ୱସ୍ୱ ଅଶ୍ୱ ଓ ହସ୍ତୀମାନଙ୍କୁ ଉତ୍ସାହିତ କରି ଗମନ କଲେ ।୫। ସେମାନଙ୍କୁ ସେହିରୂପେ ଭଗ୍ନ ହେବାର ଦେଖି ଦ୍ରୋଣ, ଅଶ୍ୱତ୍ଥାମା, ବୃହଦ୍‌ବଳ, କୃପ, ଦୁର୍ଯ୍ୟୋଧନ, କର୍ଣ୍ଣ, କୃତବର୍ମ୍ମା ଓ ଶକୁନି ଅତ୍ୟନ୍ତ କ୍ରୋଧାବିଷ୍ଟଚିତ୍ତରେ ଅପରାଜିତ ଅଭିମନ୍ୟୁଙ୍କ ପ୍ରତି ଧାବମାନ ହେଲେ । ହେ ରାଜନ୍ ! ସେମାନେ ସୁଦ୍ଧା ଆପଣଙ୍କ ପୌତ୍ର ଅଭିମନ୍ୟୁଙ୍କ ଶରପ୍ରହାରରେ ବିମୁଖ ହେଲେ । ୭ ।

ଅନନ୍ତର ସୁଖପାଳିତ ଅସ୍ତ୍ରବିଶାରଦ ମହାତେଜା କେବଳ ଏକମାତ୍ର ଲକ୍ଷ୍ମଣ ବାଲ୍ୟସ୍ୱଭାବ ଓ ଦର୍ପପ୍ରଯୁକ୍ତ ନିର୍ଭୟ ହୋଇ ଅଭିମନ୍ୟୁଙ୍କ ପ୍ରତି ଧାବମାନ ହେଲେ ।୮। ତାହାଙ୍କର ପିତା, ପୁତ୍ରବତ୍ସଳ ଦୁର୍ଯ୍ୟୋଧନ ତାହାଙ୍କ ପଛେ ପଛେ ପୁନର୍ବାର ଗମନ କଲେ ଓ ଅନ୍ୟାନ୍ୟ ମହାରଥମାନେ ମଧ୍ୟ ଦୁର୍ଯ୍ୟୋଧନଙ୍କର ଅନୁଗାମୀ ହେଲେ । ୯ । ବାରିଧର ଯେପରି ପର୍ବତୋପରି ବାରିଧାରା ବର୍ଷଣ କରେ, ସେମାନେ ସେହିପରି ଅର୍ଜ୍ଜୁନ-ନନ୍ଦନଙ୍କ ଉପରକୁ ବାଣ ବର୍ଷଣ କଲେ ।

ଯେପରି ଚତୁର୍ଦ୍ଦିଗରୁ ପ୍ରବଳ ବାୟୁ ପ୍ରବାହିତ ହୋଇ ମେଘମାନଙ୍କୁ ଉଡ଼ାଇ ନିଏ, ସେହିପରି ଅଭିମନ୍ୟୁ ସେମାନଙ୍କୁ ଏକାକୀ ବିଚଳିତ କଲେ । ୧୦ । ଯେପରି ଏକ ମତ୍ତହସ୍ତୀ ଅନ୍ୟ ମତ୍ତହସ୍ତୀକୁ ଆକ୍ରମଣ କରେ, ସେହିପରି ଅଭିମନ୍ୟୁ ଆପଣଙ୍କ ପୌତ୍ର ଦୁର୍ଦ୍ଧର୍ଷ ପ୍ରିୟଦର୍ଶନ ପିତୃ-ସମୀପସ୍ଥ ଶୂର ଧନୁର୍ଦ୍ଧର ଅତ୍ୟନ୍ତ ସୁଖସମ୍ବର୍ଦ୍ଧିତ କୁବେରପୁତ୍ରସଦୃଶ ଲକ୍ଷ୍ମଣଙ୍କୁ ଆକ୍ରମଣ କଲେ । ୧୨ । ଲକ୍ଷ୍ମଣ ମଧ୍ୟ ତାହାଙ୍କ ସମେତ ସମବେତ ହୋଇ ନିଶିତ ଶରଦ୍ୱାରା ବୀର ଶତ୍ରୁହନ୍ତା ଅଭିମନ୍ୟୁଙ୍କର ଦୁଇବାହୁ ଓ ବକ୍ଷଃସ୍ଥଳରେ ପ୍ରହାର କଲେ । ୧୩ । ହେ ମହାରାଜ ! ଆପଣଙ୍କ ପୌତ୍ର ମହାବାହୁ ଅଭିମନ୍ୟୁ ଦଣ୍ଡାହତ ଭୁଜଙ୍ଗସଦୃଶ କ୍ରୁଦ୍ଧ ହୋଇ ଆପଣଙ୍କ ପୌତ୍ର ଲକ୍ଷ୍ମଣଙ୍କୁ କହିଲେ । ୧୪ । ହେ ଲକ୍ଷ୍ମଣ ! ତୁମ୍ଭକୁ ପରଲୋକ ଗମନ କରିବାକୁ ହେବ , ଏହି ସମୟରେ ସୁନ୍ଦରରୂପେ ଇହଲୋକ ସନ୍ଦର୍ଶନ କର । ଆମ୍ଭେ ତୁମ୍ଭ ବନ୍ଧୁମାନଙ୍କ ସମକ୍ଷରେ ତୁମ୍ଭକୁ ଯମସଦନକୁ ପ୍ରେରଣ କରୁଅଛୁଁ । ୧୫ । ବୀର ଶତ୍ରୁହନ୍ତା ମହାବାହୁ

ଅଭିମନ୍ୟୁ ଏହି ପ୍ରକାରେ କହି ନିର୍ମୋକନିର୍ମୁକ୍ତ ଭୁଜଙ୍ଗସନ୍ନିଭ ଏକଗୋଟି ଭଲ୍ଲ ତାହାଙ୍କ ଉପରକୁ ନିକ୍ଷେପ କଲେ । ୧୬ । ସେହି ଭଲ୍ଲ ଅଭିମନ୍ୟୁଙ୍କ ଭୁଜନିଷ୍କ୍ରାନ୍ତ ହୋଇ ଲକ୍ଷ୍ମଣଙ୍କର ସୁନାସା, ସୁକେଶ ଓ ସୁନ୍ଦର ଭ୍ରୁଶୋଭିତ ସୁଦର୍ଶନୀୟ ସକୁଣ୍ଡଳ ମସ୍ତକକୁ ହରଣ କଲା । ୧୭ ।

ରାଜପୁତ୍ର ଲକ୍ଷ୍ମଣଙ୍କୁ ନିହତ ହେବାର ଦେଖି ଲୋକେ ଉଚ୍ଚୈଃସ୍ୱରରେ ହାହାକାର କଲେ । ଅନନ୍ତର କ୍ଷତ୍ରିୟଶ୍ରେଷ୍ଠ ଦୁର୍ଯ୍ୟୋଧନ ପ୍ରିୟ ପୁତ୍ରର ପତନ ଦେଖି ଅତ୍ୟନ୍ତ କ୍ରୁଦ୍ଧ ହୋଇ କ୍ଷତ୍ରିୟମାନଙ୍କୁ ଉଚ୍ଚୈଃସ୍ୱରରେ କହିଲେ, ତୁମ୍ଭେମାନେ ଏହି ଅଭିମନ୍ୟୁଙ୍କୁ ବଧ କର । ଅନନ୍ତର ଦ୍ରୋଣ, କୃପ, କର୍ଣ୍ଣ, ଅଶ୍ୱତ୍ଥାମା, ବୃହଦ୍‌ବଳ ଓ ହୃଦିକନନ୍ଦନ କୃତବର୍ମା, ଏହି ଛଅଜଣ ରଥୀ ଅଭିମନ୍ୟୁଙ୍କୁ ପରିବେଷ୍ଟନ କଲେ । ଅଭିମନ୍ୟୁ ତୀକ୍ଷ୍ଣ ତୀକ୍ଷ୍ଣ ବାଣଦ୍ୱାରା ସେମାନଙ୍କୁ ବିଦ୍ଧ ଓ ପରାଙ୍ମୁଖ କରି କ୍ରୋଧାବିଷ୍ଟ ଚିତ୍ତରେ ସିନ୍ଧୁରାଜଙ୍କର ମହାସୈନ୍ୟ ଆକ୍ରମଣ କରିବାକୁ ବେଗରେ ଗମନ କଲେ । ବର୍ମଧାରୀ କଳିଙ୍ଗ ଓ ନିଷାଦମାନେ ଓ ବୀର୍ଯ୍ୟବାନ୍ କ୍ରାଥରାଜପୁତ୍ର ଗଜସୈନ୍ୟ ଦ୍ୱାରା ତାହାଙ୍କର ପଥରୋଧ କଲେ । ହେ ନରନାଥ ! ସେ ସମୟରେ ସେମାନଙ୍କ ମଧ୍ୟରେ ଅତି ସୁଦାରୁଣ ଯୁଦ୍ଧ ହେଲା । ୨୨ । ଯେପରି ସଦାଗତି ବାୟୁ ଆକାଶରେ ମେଘମାନଙ୍କୁ ବିଧ୍ୱସ୍ତ କରେ, ସେହିପରି ଅର୍ଜ୍ଜୁନପୁତ୍ର ଗଜସୈନ୍ୟମାନଙ୍କୁ ଅବଲୀଳାକ୍ରମେ ଦଳନ କଲେ । ୨୩ ।

ଅନନ୍ତର କ୍ରାଥପୁତ୍ର ଶରସମୂହ ଦ୍ୱାରା ତାହାଙ୍କୁ ସମାକୀର୍ଣ୍ଣ କଲେ । ତାହା ଦେଖି ଦ୍ରୋଣ ପ୍ରଭୃତି ରଥୀମାନେ ପୁନର୍ବାର ତାହାଙ୍କ ପ୍ରତି ପରମାସ୍ତ୍ର-ସବୁ ନିକ୍ଷେପପୂର୍ବକ ତାହାଙ୍କ ସମୀପକୁ ଅଭିଗତ ହେଲେ । ଅଭିମନ୍ୟୁ ଭିଗ୍ରନିବୃତ ହୋଇ ବାଣମାନଙ୍କ ଦ୍ୱାରା ସେମାନଙ୍କୁ ନିବାରଣ କରି କ୍ରାଥ-ପୁତ୍ରଙ୍କ ବଧମାନସରେ ଅପ୍ରମେୟ ଶରସମୂହ ଦ୍ୱାରା ତାହାଙ୍କୁ ପୀଡ଼ିତ କଲେ । ତାହାଙ୍କର ଧନୁର୍ବାଣ ଓ କେୟୂର ସହିତ ବାହୁଦ୍ୱୟକୁ ଏବଂ ଧ୍ୱଜ, ଛତ୍ର, ସାରଥି, ଅଶ୍ୱଗଣ ଓ କିରୀଟଶୋଭିତ ମସ୍ତକକୁ ଏକାବେଳେକେ ଛେଦନ କରି ପକାଇଲେ । କୁଳରେ, ଶୀଳରେ, ଜ୍ଞାନରେ, ବଳରେ,

କୀର୍ତ୍ତିରେ ଓ ଅସ୍ତ୍ରବଳରେ ସୁସମ୍ପନ୍ନ ସେହି ନାଥପୁତ୍ର ନିପତିତ ହୁଅନ୍ତେ ବୀରମାନେ ସମସ୍ତେ ପ୍ରାୟ ବିମୁଖ ହେଲେ । ୨୭ ।



# ୪୨ ଅଧ୍ୟାୟ

ଧୃତରାଷ୍ଟ୍ର ବୋଇଲେ—ହେ ସଞ୍ଜୟ ! ତରୁଣବୟସ୍କ, ଯୁଦ୍ଧରେ ଅପରାଜିତ ଅଭିମନ୍ୟୁ ତ୍ରିବର୍ଷୀୟ, ବଳବାନ୍, କୁଳୀନ, ବିକ୍ରମଶାଳୀ ଅଶ୍ୱମାନଙ୍କ ଦ୍ୱାରା ଯୋଜିତ ରଥରେ ସମାରୂଢ଼ ହୋଇ କୁଳାନୁରୂପ କର୍ମ ସମ୍ପାଦନପୂର୍ବକ ଯେତେବେଳେ ସୈନ୍ୟମଧ୍ୟରେ ପ୍ରବିଷ୍ଟ ହେଲେ, ତେତେବେଳେ କେଉଁ ଶୂରମାନେ ତାହାଙ୍କୁ ନିବାରଣ କରିଥିଲେ ? ୨ ।

ସଞ୍ଜୟ ବୋଇଲେ—ପାଣ୍ଡୁନନ୍ଦନ ଅଭିମନ୍ୟୁ ବ୍ୟୂହମଧ୍ୟରେ ପ୍ରବେଶ କରି ନିଶିତ ଶରମାନଙ୍କ ଦ୍ୱାରା ଆପଣଙ୍କ ପକ୍ଷୀୟ ସମସ୍ତ ପାର୍ଥିବ-ମାନଙ୍କୁ ବିମୁଖ କଲେ । ୩ । ଅନନ୍ତର ଦ୍ରୋଣ, କୃପ, କର୍ଣ୍ଣ, ଅଶ୍ୱତ୍ଥାମା, ବୃହଦ୍‌ବଳ ଓ ହୃଦିକନନ୍ଦନ କୃତବର୍ମା—ଏହି ଛଅ ଜଣ ରଥୀ ତାହାଙ୍କୁ ପ୍ରତିରୋଧ କଲେ । ୪ । ହେ ମହାରାଜ ! ଆପଣଙ୍କ ସୈନ୍ୟମାନେ ସିନ୍ଧୁରାଜ ଜୟଦ୍ରଥଙ୍କଠାରେ ଗୁରୁତର ଭାର ସମର୍ପିତ ହୋଇଥିବାର ଦେଖି ଯୁଧିଷ୍ଠିରଙ୍କ ପ୍ରତି ଧାବମାନ ହେଲେ । ୫ । ଅନ୍ୟାନ୍ୟ ମହାବଳ ବୀର-ମାନେ ତାଳପ୍ରମାଣ ଶରାସନ ଆକର୍ଷଣପୂର୍ବକ ବୀର ଅଭିମନ୍ୟୁଙ୍କ ପ୍ରତି ଶରବୃଷ୍ଟି କଲେ । ୬ । ବୀର, ଶତ୍ରୁହନ୍ତା ଅଭିମନ୍ୟୁ ଯୁଦ୍ଧରେ ବାଣଦ୍ୱାରା ସେହି ସମସ୍ତ ମହାଧନୁର୍ଦ୍ଧର ସର୍ବବିଦ୍ୟାପାରଗ ବୀରମାନଙ୍କୁ ସ୍ତମ୍ଭିତ କଲେ । ୭ । ଦ୍ରୋଣଙ୍କୁ ପଚିଶଗୋଟି, ବୃହଦ୍‌ବଳଙ୍କୁ ବିଂଶଗୋଟି, କୃତବର୍ମାଙ୍କୁ ଅଶୀଗୋଟି, କୃପଙ୍କୁ ଷାଠିଏଗୋଟି ଓ ଅଶ୍ୱତ୍ଥାମାଙ୍କୁ ସୁବର୍ଣ୍ଣପୁଙ୍ଖ ମହାବେଗଗାମୀ ଦଶଗୋଟି ବାଣ ଆକର୍ଣ୍ଣ ଆକର୍ଷଣ କରି ବିଦ୍ଧ କଲେ । ୯ । ପରେ ଶତ୍ରୁମାନଙ୍କ ସମକ୍ଷରେ ଜଳପାୟିତ ଶାଣିତ କର୍ଣ୍ଣିନାମକ ଅସ୍ତ୍ର ଦ୍ୱାରା କର୍ଣ୍ଣଙ୍କର କର୍ଣ୍ଣକୁ ବିଦ୍ଧ କଲେ । ୧୦ ।

ତତ୍ପରେ ସେ କୃପାଚାର୍ଯ୍ୟଙ୍କର ଅଶ୍ୱମାନଙ୍କୁ, ପାର୍ଶ୍ୱରକ୍ଷକ ଓ ସାରଥିକୁ ନିପାତ କରି ଦଶଗୋଟି ଶରଦ୍ୱାରା ତାହାଙ୍କର ହୃଦୟକୁ ବିଦ୍ଧ କଲେ । ୧୧ । ଆପଣଙ୍କ ବୀରପୁତ୍ରମାନଙ୍କ ସମକ୍ଷରେ କୁରୁମାନଙ୍କର କୀର୍ତ୍ତିବର୍ଦ୍ଧନକାରୀ ବୃନ୍ଦାରକନାମକ ମହାବୀରଙ୍କୁ ବଳବାନ୍ ଅଭିମନ୍ୟୁ ବିନାଶ କଲେ । ୧୨ । ଅଭିମନ୍ୟୁ ଶତ୍ରୁମାନଙ୍କର ପ୍ରଧାନ ପ୍ରଧାନ ଯୋଦ୍ଧା-ମାନଙ୍କୁ ନିର୍ଭୟରେ ନିପାତ କରୁଥିବାର ଦେଖି ଅଶ୍ୱତ୍ଥାମା ତାହାଙ୍କ ପ୍ରତି ପଞ୍ଚବିଂଶତି କ୍ଷୁଦ୍ରକାସ୍ତ୍ର ନିକ୍ଷେପ କଲେ । ୧୩ । ହେ ଆର୍ଯ୍ୟ ! ଅଭିମନ୍ୟୁ ମଧ୍ୟ ଆପଣଙ୍କ ପୁତ୍ରମାନଙ୍କ ସମକ୍ଷରେ ତୀକ୍ଷ୍ଣ ତୀକ୍ଷ୍ଣ ବାଣମାନଙ୍କ ଦ୍ୱାରା ଅଶ୍ୱତ୍ଥାମାଙ୍କୁ ପ୍ରତିବିଦ୍ଧ କଲେ । ୧୪ । ମୈନାକପର୍ବତୋପମ ଅଭିମନ୍ୟୁଙ୍କୁ ଅତି ତୀକ୍ଷ୍ଣ, ବଜ୍ରଧାର, ଉଗ୍ରତର ଷଷ୍ଟିବାଣଦ୍ୱାରା ଅଶ୍ୱତ୍ଥାମା ବିଦ୍ଧ କରି ସୁଦ୍ଧା କମ୍ପିତ କରିପାରିଲେ ନାହିଁ । ୧୫ । ତହିଁ ବଳବାନ୍ ମହାତେଜା ଅଭିମନ୍ୟୁ ତିସପ୍ତତି ସ୍ୱର୍ଣ୍ଣପୁଙ୍ଖ ଶରଦ୍ୱାରା ଅପକାରୀ ଅଶ୍ୱତ୍ଥାମାଙ୍କୁ ପ୍ରତିବିଦ୍ଧ କଲେ । ୧୬ ।

ପୁତ୍ରବତ୍ସଳ ଦ୍ରୋଣ ଅଭିମନ୍ୟୁଙ୍କ ପ୍ରତି ଶତବାଣ ନିକ୍ଷେପ କଲେ ଓ ଅଶ୍ୱତ୍ଥାମା ମଧ୍ୟ ପିତାଙ୍କୁ ରକ୍ଷା କରିବା ନିମନ୍ତେ ଅଭିମନ୍ୟୁଙ୍କ ଉପରକୁ ଷଷ୍ଟିବାଣ ନିକ୍ଷେପ କଲେ ଓ କର୍ଣ୍ଣ ଦ୍ୱାବିଂଶତି, କୃତବର୍ମା ଚତୁର୍ଦ୍ଦଶ, ବୃହଦ୍‌ବଳ ପଞ୍ଚାଶତ୍ ଓ ଶାରଦ୍ୱତ କୃପ ଦଶ ଭଲ୍ଲ ପ୍ରହାର କଲେ । ୧୮ । ଚତୁର୍ଦ୍ଦିଗରୁ ସେମାନଙ୍କ ଶାଣିତ ଶରଦ୍ୱାରା ପ୍ରପୀଡ଼ିତ ହୋଇ ଅଭିମନ୍ୟୁ ସେ ପ୍ରତ୍ୟେକଙ୍କୁ ଦଶଦଶ ଗୋଟି ବାଣ ଦ୍ୱାରା ବିଦ୍ଧ କଲେ ।୧୯। କୋଶଳାଧିପତି ବୃହଦ୍‌ବଳ ତାହାଙ୍କ ବକ୍ଷଃସ୍ଥଳରେ କର୍ଣ୍ଣନାମକ ଅସ୍ତ୍ର ପ୍ରହାର କଲେ । ଅଭିମନ୍ୟୁ କୋଶଳାଧିପତିଙ୍କର ଅଶ୍ୱ, ଧ୍ୱଜ ଶରାସନ ଓ ସାରଥିକୁ ଭୂମିରେ ନିପାତ କଲେ । ୨୦ ।

ଅନନ୍ତର କୋଶଳରାଜ ବିରଥ ହୋଇ ଖଡ଼୍‌ଗ ଓ ଚର୍ମ ଧାରଣ ପୂର୍ବକ ଅଭିମନ୍ୟୁଙ୍କ ଦେହରୁ ସକୁଣ୍ଡଳ ମସ୍ତକ ଛେଦନ କରିବାକୁ ଅଭିଳାଷ କଲେ । ୨୧ । କୋଶଳରାଜପୁତ୍ର ବୃହଦ୍‌ବଳଙ୍କ ହୃଦୟରେ ଅଭିମନ୍ୟୁ ବାଣ ବିଦ୍ଧ କଲେ । ସେ ଭିନ୍ନହୃଦୟ ହୋଇ ଭୂମିରେ ପତିତ ହେଲେ ।୨୨। ଖଡ଼୍‌ଗ ଓ ଧନୁର୍ଦ୍ଧାରୀ ଅମଙ୍ଗଳ ବାକ୍ୟପ୍ରୟୋଗକାରୀ ଦଶସହସ୍ର ମହାତ୍ମା

ରାଜାମାନଙ୍କୁ ଅଭିମନ୍ୟୁ ଭଗ୍ନ କଲେ । ୨୩ । ଅଭିମନ୍ୟୁ ଏହିରୂପେ ବୃହଦ୍‌ବଳଙ୍କୁ ନିପାତିତ କରି ଶରବୃଷ୍ଟି ଦ୍ୱାରା ଆପଣଙ୍କ ଯୋଦ୍ଧାମାନଙ୍କୁ ପ୍ରମର୍ଦ୍ଦନପୂର୍ବକ ବିଚରଣ କଲେ । ୨୪ ।



# ୪୮ ଅଧ୍ୟାୟ

ସଞ୍ଜୟ ବୋଇଲେ—ହେ ଭାରତ ! କର୍ଣ୍ଣଙ୍କୁ ଅତିଶୟ ପ୍ରକୋପିତ କରିବା ଇଚ୍ଛାରେ ଅଭିମନ୍ୟୁ ପୁନର୍ବାର ତାହାଙ୍କର କର୍ଣ୍ଣକୁ କର୍ଣ୍ଣିବାଣଦ୍ୱାରା ବିଦ୍ଧ କରି ପଚାଶଗୋଟି ଶରଦ୍ୱାରା ତାହାଙ୍କୁ ବିଦ୍ଧ କଲେ ।୧। ହେ ଭାରତ ! କର୍ଣ୍ଣ ମଧ୍ୟ ତାହାଙ୍କୁ ସେହି ପରିମାଣ ଶରଦ୍ୱାରା ପ୍ରତିବିଦ୍ଧ କଲେ । କର୍ଣ୍ଣଙ୍କ ନିକ୍ଷିପ୍ତ ଶରମାନଙ୍କ ଦ୍ୱାରା ଅଭିମନ୍ୟୁ ସମାଚ୍ଛନ୍ନସର୍ବାଙ୍ଗ ହୋଇ ଶୋଭା ପାଇଲେ ଓ କ୍ରୁଦ୍ଧ ହୋଇ କର୍ଣ୍ଣଙ୍କ ଦେହକୁ ମଧ୍ୟ ରୁଧିରକ୍ତ କଲେ । ୨ । ଶୂର କର୍ଣ୍ଣ ମଧ୍ୟ ଶରାଚ୍ଛନ୍ନସର୍ବାଙ୍ଗ ଓ ଶୋଣିତାପ୍ଲୁତ ହୋଇ ଶୋଭା ପାଇଲେ । ୩ । ଅଭିମନ୍ୟୁ ଓ କର୍ଣ୍ଣ ଦୁଇମହାତ୍ମା ଶରାଚ୍ଛନ୍ନସର୍ବାଙ୍ଗ ଓ ରୁଧିରାପ୍ଲୁତ ହୋଇ ପୁଷ୍ପିତ କିଂଶୁକବୃକ୍ଷସଦୃଶ ଶୋଭମାନ ହେଲେ ।୪।

ଅନନ୍ତର ଅଭିମନ୍ୟୁ କର୍ଣ୍ଣଙ୍କର ଚିତ୍ରଯୋଧୀ ଶୂର ଛଅଜଣ ମନ୍ତ୍ରୀଙ୍କୁ ଅଶ୍ୱ, ସାରଥି, ଧ୍ୱଜ ଓ ରଥ ସହିତ ବିନାଶ କଲେ ଏବଂ ଅସମ୍ଭ୍ରାନ୍ତଚିତ୍ତରେ ଦଶ ଦଶ ଗୋଟି ଶରଦ୍ୱାରା ଅନ୍ୟାନ୍ୟ ମହାଧନୁର୍ଦ୍ଧରମାନଙ୍କୁ ପ୍ରତିବିଦ୍ଧ କଲେ । ଏହା ଅଦ୍ଭୁତପ୍ରାୟ ହେଲା । ୬ । ତତ୍ପରେ ଅଭିମନ୍ୟୁ ଛଅଗୋଟି ଅଜିହ୍ମଗ ଶରଦ୍ୱାରା ମଗଧ ରାଜପୁତ୍ରଙ୍କୁ ବିନାଶ କରି ଅଶ୍ୱ ଓ ସାରଥି ସହିତ ତରୁଣବୟସ୍କ ଅଶ୍ୱକେତୁଙ୍କୁ ନିପାତିତ କଲେ ।୭। ଅନନ୍ତର ଏକଗୋଟି କ୍ଷୁରପ୍ର ଦ୍ୱାରା କୁଞ୍ଜରଧ୍ୱଜ ମାର୍ତ୍ତିକାବତଦେଶୀୟ ଭୋଜଙ୍କୁ ଉନ୍ମଥିତ କରି ଶରବର୍ଷଣ ପୂର୍ବକ ସିଂହନାଦ କଲେ । ୮ ।

ଅନନ୍ତର ଦୁଃଶାସନ-ନନ୍ଦନ ଚାରିଗୋଟି ଶରଦ୍ୱାରା ଅଭିମନ୍ୟୁଙ୍କର ଚାରିଅଶ୍ୱକୁ ଓ ଏକଗୋଟି ଶରଦ୍ୱାରା ଅଭିମନ୍ୟୁଙ୍କୁ ବିଦ୍ଧ କଲେ । ୯ । ତହୁଁ ଅଭିମନ୍ୟୁ କ୍ରୋଧରେ ରକ୍ତଲୋଚନ ହୋଇ ସାତଗୋଟି ବାଣଦ୍ୱାରା

ଦୁଃଶାସନପୁତ୍ରଙ୍କୁ ବିଦ୍ଧ କରି ଉଚ୍ଚୈଃସ୍ୱରରେ କହିଲେ । ୧୦ । ତୁମ୍ଭର ପିତା କାପୁରୁଷ ସଦୃଶ ଯୁଦ୍ଧ ପରିତ୍ୟାଗ କରି ପଳାୟନ କରିଅଛନ୍ତି । ଭାଗ୍ୟ-କ୍ରମେ ତୁମ୍ଭେ ଯୁଦ୍ଧରେ ପ୍ରବିଷ୍ଟ, କିନ୍ତୁ ଅଦ୍ୟ ଆମ୍ଭ ନିକଟରୁ ମୁକ୍ତ ହୋଇ ପାରିବ ନାହିଁ । ୧୧ । ଏହି କଥା କହି କର୍ମକାରପରିମାର୍ଜିତ ଏକଗୋଟି ନାରାଚ ଦୁଃଶାସନ-ପୁତ୍ରଙ୍କ ପ୍ରତି ନିକ୍ଷେପ କଲେ । କିନ୍ତୁ ସେହି ନାରାଚକୁ ଅଶ୍ୱତ୍ଥାମା ତିନିଗୋଟି ଶରଦ୍ୱାରା ଛେଦନ କରି ପକାଇଲେ । ୧୨ । ପରେ ଅଭିମନ୍ୟୁ ଅଶ୍ୱତ୍ଥାମାଙ୍କର ଧ୍ୱଜ ଛେଦନ କରି ତିନିଗୋଟି ଶରଦ୍ୱାରା ଶଲ୍ୟଙ୍କୁ ପୀଡ଼ିତ କଲେ । ଶଲ୍ୟ ମଧ୍ୟ ଅସମ୍ଭ୍ରାନ୍ତଚିତ୍ତରେ ଗୃଧ୍ରପତ୍ରଯୁକ୍ତ ନଅଗୋଟି ଶରଦ୍ୱାରା ଅଭିମନ୍ୟୁଙ୍କ ହୃଦୟରେ ଆଘାତ କଲେ, ତାହା ଅଦ୍ଭୁତ ପ୍ରାୟ ହେଲା ।

ଅନନ୍ତର ଅଭିମନ୍ୟୁ ଶଲ୍ୟଙ୍କର ଧନୁ ଛେଦନ କରି ପାର୍ଷ୍ଣିରକ୍ଷକ ଓ ସାରଥିଙ୍କୁ ବିହନନପୂର୍ବକ ଲୌହମୟ ଛଅଗୋଟି ଶରଦ୍ୱାରା ଶଲ୍ୟଙ୍କୁ ବିଦ୍ଧ କଲେ । ଶଲ୍ୟ ଅନ୍ୟ ରଥରେ ଆରୋହଣ କଲେ । ତତ୍ପରେ ଶତ୍ରୁଞ୍ଜୟ, ଚନ୍ଦ୍ରକେତୁ, ମହାମେଘ, ସୁବର୍ଚ୍ଚା, ସୂର୍ଯ୍ୟ ଓ ସୂର୍ଯ୍ୟପ୍ରଭ—ଏହି ପାଞ୍ଚଜଣଙ୍କୁ ଅଭିମନ୍ୟୁ ବଧ କରି ଶକୁନିଙ୍କୁ ବିଦ୍ଧ କଲେ । ଶକୁନି ତାହାଙ୍କୁ ତିନିଗୋଟି ଶରଦ୍ୱାରା ବିଦ୍ଧ କରି ଦୁର୍ଯ୍ୟୋଧନଙ୍କୁ କହିଲେ । ୧୩ । ହେ ମହାରାଜ ! ଆମ୍ଭେମାନେ ସମସ୍ତେ ମିଳିତ ହୋଇ ଏହାକୁ ବଧ କରିବା । ନତୁବା ସେ ପୂର୍ବରୁ ଆମ୍ଭମାନଙ୍କୁ ଏକ ଏକ କରି ବିନାଶ କରିବ । ଅନନ୍ତର ସୂର୍ଯ୍ୟପୁତ୍ର କର୍ଣ୍ଣ ମଧ୍ୟ ଦ୍ରୋଣଙ୍କୁ କହିଲେ, ସେ ଆମ୍ଭମାନଙ୍କ ସମକ୍ଷରେ ସମସ୍ତଙ୍କୁ ବଧ କରୁଅଛି । ଅତଏବ ଆପଣ ଶୀଘ୍ର ଏହାର ବଧୋପାୟ କହନ୍ତୁ ।

ଅନନ୍ତର ମହାଧନୁର୍ଦ୍ଧର ଦ୍ରୋଣ ସେ ସମସ୍ତଙ୍କୁ କହିଲେ, ତୁମ୍ଭମାନଙ୍କ ମଧ୍ୟରେ କି କେହି ଏହି କୁମାରର କ୍ଷଣମାତ୍ର ଅବକାଶ ଦେଖି ପାରୁଅଛନ୍ତି ? ସେ ପିତାର ଅନୁରୂପ ସର୍ବ ଦିଗରେ ବିଚରଣ କରୁଅଛି । ଏହି ପାଣ୍ଡବେୟ ନରସିଂହର ଲଘୁହସ୍ତତା ଦେଖ । ଏହି କୁମାର ଏପରି ଶୀଘ୍ର ଶୀଘ୍ର ବାଣ ସନ୍ଧାନ କରୁଅଛି ଯେ, ଏହାର ରଥବର୍ତ୍ମରେ କେବଳ ଧନୁମଣ୍ଡଳ ଦୃଷ୍ଟ ହେଉଅଛି । ଏହି ବୀର ଶତ୍ରୁହନ୍ତା ସୁଭଦ୍ରାପୁତ୍ର ପୁନଃ ପୁନଃ ଶରଦ୍ୱାରା ଆମ୍ଭର ପ୍ରାଣ ବ୍ୟଥିତ ଓ ମୋହିତ କରୁଅଛି, କିନ୍ତୁ ଆମ୍ଭେ

ଏହାର କାର୍ଯ୍ୟ ଦେଖି ଆନନ୍ଦିତ ହେଉଅଛୁଁ । ଯୁଦ୍ଧରେ ଏହାର ଲଘୁ-ବିଚରଣ ସନ୍ଦର୍ଶନ କରି ଆମ୍ଭର ଆନନ୍ଦ ଜାତ ହେଉଅଛି । ୨୨ । ମହାରଥମାନେ ସଂରବ୍ଧ ହୋଇ ଏହାର ଅଣୁମାତ୍ର ରନ୍ଧ୍ର ଦେଖି ପାରୁନାହାନ୍ତି । ଯୁଦ୍ଧରେ ମହାସ୍ତ୍ରସବୁ ଯେ ରୂପେ ଲଘୁହସ୍ତରେ ଚତୁର୍ଦ୍ଦିଗରେ ନିକ୍ଷେପ କରୁଅଛି, ସେଥିରେ ଏହାଙ୍କୁ ଗାଣ୍ଡୀବଧନ୍ୱା ଅର୍ଜ୍ଜୁନ ଅପେକ୍ଷା କୌଣସି-ରୂପେ ନ୍ୟୂନ ବୋଲି ବୋଧ କରି ହେଉନାହିଁ ।

ଅନନ୍ତର କର୍ଣ୍ଣ ଅଭିମନ୍ୟୁଙ୍କ ଶରରେ ଆହତ ହୋଇ ପୁନର୍ବାର ଦ୍ରୋଣଙ୍କୁ କହିଲେ, ଆମ୍ଭେ ଅଭିମନ୍ୟୁର ଶରରେ ପୀଡ଼ିତ ହୋଇ ଆଉ ଅବସ୍ଥାନ କରିପାରୁ ନାହୁଁ, ମାତ୍ର ଯୁଦ୍ଧରେ ଅବସ୍ଥାନ କରିବା ଅବଶ୍ୟ କର୍ତ୍ତବ୍ୟ ବୋଲି ଅବସ୍ଥାନ କରୁଅଛୁଁ । ତେଜସ୍ୱୀ କୁମାରର ପରମ ଦାରୁଣ ଅଗ୍ନିସମ ଘୋରତର ଶରମାନ ଆମ୍ଭର ହୃଦୟକୁ ବ୍ୟଥିତ କରୁଅଛି ।

ଆଚାର୍ଯ୍ୟ ଅଳ୍ପ ହାସ୍ୟ କରି କର୍ଣ୍ଣଙ୍କୁ କହିଲେ, ଏହାର କବଚ ଅଭେଦ୍ୟ ଓ ଏହି ଯୋଦ୍ଧା ଆଶୁପରାକ୍ରମୀ ଅଟେ ଏବଂ ଆମ୍ଭେ ଏହାର ପିତାଙ୍କୁ କବଚ ଧାରଣ କରିବାର ଉପଦେଶ ଦେଇଥିଲୁଁ । ଏହି ଶତ୍ରୁପୁର-ବିଜୟୀ କୁମାର ତାହାଙ୍କଠାରୁ ସେହି କବଚଧାରଣର ସମୁଦାୟ କୌଶଳ ଶିକ୍ଷା କରିଅଛି । ହେ ରାଧାନନ୍ଦନ ! ତୁମ୍ଭେମାନେ ଯଦି ସମାହିତ ହୋଇ ବାଣସମୂହ ଦ୍ୱାରା ଏହାର ଧନୁ, ଜ୍ୟା, ପ୍ରଗ୍ରହ, ଅଶ୍ୱ, ପାର୍ଷ୍ଣି ଓ ସାରଥିକୁ ଛେଦନ କରିପାର, ତେବେ ତାହା କର । ପଶ୍ଚାତ୍ ଏହାକୁ ବିମୁଖ କରି ପ୍ରହାର କରିବ । ଏହାର ଧନୁର୍ବାଣ ଥାଉଁ ଥାଉଁ ଦେବାସୁରମାନେ ମଧ୍ୟ ଏହାକୁ ଜୟ କରି ପାରିବେ ନାହିଁ ।୩୦। ଯଦି ତୁମ୍ଭମାନଙ୍କର ଇଚ୍ଛା ହୁଏ, ତେବେ ଏହାକୁ ବିରଥ ଓ ଶରାସନଶୂନ୍ୟ କର ।

କର୍ଣ୍ଣ ଆଚାର୍ଯ୍ୟଙ୍କର ତାଦୃଶ ବାକ୍ୟ ଶୁଣି ତ୍ୱରାସହକାରେ ସେହି ଲଘୁହସ୍ତ କୁମାରର ଶରନିକ୍ଷେପ କାଳରେ ତାହାଙ୍କର ଶରାସନ ଛେଦନ କରି ପକାଇଲେ ଏବଂ ଭୋଜ ତାହାଙ୍କର ଅଶ୍ୱକୁ ଓ କୃପାଚାର୍ଯ୍ୟ ତାହାଙ୍କର ପାର୍ଷ୍ଣି ଓ ସାରଥିକୁ ବିନାଶ କଲେ ।୩୨। ଅବଶିଷ୍ଟ ମହାରଥମାନେ ଛିନ୍ନଧନ୍ୱା ସେହି ବାଳକ ଉପରକୁ ଶରବର୍ଷଣ କଲେ । ସେହି ଛଅଜଣ

ମହାରଥ ଭୂରିବାନ୍ ଓ ନିର୍ଭୟ ହୋଇ ଅନବରତ ଶରବର୍ଷଣ ଦ୍ୱାରା ରଥବିହୀନ ସେହି କୁମାରକୁ ଆଚ୍ଛନ୍ନ କଲେ । ସେହି ଶ୍ରୀମାନ୍ ବାଳକ ରଥବିହୀନ ଓ ଛିନ୍ନଶରାସନ ହୋଇ ସ୍ୱକୀୟ କ୍ଷତ୍ରିୟ ଧର୍ମାନୁସାରେ ଖଡ଼୍ଗ ଓ ଚର୍ମ ଧାରଣ ପୂର୍ବକ ଆକାଶ ମାର୍ଗରେ ଉପସ୍ଥିତ ହେଲେ । ପକ୍ଷୀରାଜ ଗରୁଡ଼ପ୍ରାୟ ବେଗଗାମୀ ହୋଇ ସର୍ବତୋଭଦ୍ରାଦି ଖଡ଼୍ଗଯୁଦ୍ଧଗତି କରି ଅତିଶୟ ବଳପ୍ରକାଶ ଓ ଲାଘବ ସହକାରେ ଆକାଶରେ ଲମ୍ଫପ୍ରଦାନ-ପୂର୍ବକ ବିଚରଣ କଲେ । ଏହି ଖଡ଼୍ଗଧାରୀ ଅଭିମନ୍ୟୁ ଆମ୍ଭ ଉପରେ ନିପତିତ ହେବ, ଏହିପରି ମନେ କରି ମହାଧନୁର୍ଦ୍ଧରମାନେ ଊର୍ଦ୍ଧ୍ୱକୁ ଦୃଷ୍ଟି-ପାତପୂର୍ବକ ତାହାଙ୍କର ରନ୍ଧ୍ରାନ୍ୱେଷୀ ହୋଇ ତାହାଙ୍କୁ ବାଣବିଦ୍ଧ କଲେ । ମହାତେଜା ଶତ୍ରୁଞ୍ଜୟୀ ଦ୍ରୋଣ ତ୍ୱରାନ୍ୱିତ ହୋଇ କ୍ଷୁରାସ୍ତ୍ର ଦ୍ୱାରା ତାହାଙ୍କର ହସ୍ତ-ଧୃତ ମଣିମୟ-ମୁଷ୍ଟି-ଶୋଭିତ ଖଡ଼୍ଗକୁ ଛେଦନ କଲେ ଓ କର୍ଣ୍ଣ କେତେକ ନିଶିତ ବାଣଦ୍ୱାରା ତାହାଙ୍କର ଉତ୍ତମ ଚର୍ମ ଛେଦନ କଲେ । ୩୮ ।

ଅଭିମନ୍ୟୁ ଖଡ଼୍ଗ, ଚର୍ମରହିତ ଓ ଶରପୂର୍ଣ୍ଣ-ସର୍ବାଙ୍ଗ ହୋଇ କ୍ରୋଧାବିଷ୍ଟ ଚିତ୍ତରେ ଲମ୍ଫପ୍ରଦାନପୂର୍ବକ ଅନ୍ତରୀକ୍ଷରୁ ଭୂତଳକୁ ଆସି ଚକ୍ରଗ୍ରହଣ କରି ଦ୍ରୋଣଙ୍କ ପ୍ରତି ଧାବମାନ ହେଲେ । ୩୯ । ଚକ୍ର ଓ ଧୂଳିଦ୍ୱାରା ତାହାଙ୍କର ଅଙ୍ଗ ଉଜ୍ଜ୍ୱଳ ହେଲା ଓ ସେ ଉନ୍ନତ ହସ୍ତରେ ଚକ୍ର ଧରନ୍ତେ ଅତୀବ ଶୋଭମାନ ହେଲେ । ସେ ଚକ୍ରହସ୍ତରେ ବାସୁଦେବଙ୍କ ଅନୁରୂପ କାର୍ଯ୍ୟ କରି କ୍ଷଣମାତ୍ର ଭୟଙ୍କର ରୂପରେ ଯୁଦ୍ଧରେ ଅବସ୍ଥାନ କଲେ । ୪୦ । ଅମିତବଳଧାରୀ, ଘୋରତରସିଂହନାଦକାରୀ, ରାଜଗଣ-ମଧ୍ୟସ୍ଥିତ ମହାବୀର ଅଭିମନ୍ୟୁଙ୍କ ଦେହରୁ ତତ୍କାଳରେ ଶୋଣିତ ବିନିର୍ଗତ ହୋଇ ବସ୍ତ୍ର ରକ୍ତବର୍ଣ୍ଣ ହେଲା ଓ ଭ୍ରୂକୁଟି ଦ୍ୱାରା ଲଲାଟ କୁଟିଳ ହୁଅନ୍ତେ ରଣରେ ସେ ଅପୂର୍ବ ଶୋଭା ପ୍ରାପ୍ତ ହୋଇଥିଲେ । ୪୧ ।



# ୪୯ ଅଧ୍ୟାୟ

ସଞ୍ଜୟ ବୋଇଲେ— ବିଷ୍ଣୁ ଭଗିନୀ ସୁଭଦ୍ରାଙ୍କର ଆନନ୍ଦକର ଅତିରଥ ଅଭିମନ୍ୟୁ ବିଷ୍ଣୁଙ୍କ ସଦୃଶ ଆୟୁଧ ଧାରଣ କରି ରଣକ୍ଷେତ୍ରରେ ଦ୍ୱିତୀୟ ଜନାର୍ଦ୍ଦନ ରୂପରେ ବିରାଜମାନ ହେଲେ । ୧ । ଦେବବୃନ୍ଦର ଦୁର୍ଦ୍ଦର୍ଶନୀୟ ଉଦ୍ୟତାସ୍ତ୍ର ପବନଚାଳିତ ଓ କେଶାନ୍ତଯୁକ୍ତ ଅଭିମନ୍ୟୁଙ୍କ ଶରୀରକୁ ରାଜାମାନେ ଦେଖି ଅତ୍ୟନ୍ତ ଉଦ୍‌ବିଗ୍ନ ଚିତ୍ତରେ ତାହାଙ୍କର ସେହି ଚକ୍ରକୁ ଖଣ୍ଡ ଖଣ୍ଡ କରି ଛେଦନ କଲେ । ତହୁଁ ମହାରଥ ଅଭିମନ୍ୟୁ ଗୋଟିଏ ମହାଗଦା ଗ୍ରହଣ କଲେ । ୩ । ଶତ୍ରୁମାନେ ତାହାଙ୍କୁ ଧନୁ, ରଥ, ଚକ୍ରବିହୀନ କଲେ ମଧ୍ୟ ସେ ଗଦାହସ୍ତରେ ଅଶ୍ୱତ୍ଥାମାଙ୍କ ପ୍ରତି ଧାବମାନ ହେଲେ । ୪ । ନରଶ୍ରେଷ୍ଠ ଅଶ୍ୱତ୍ଥାମା ତାହାଙ୍କର ସେହି ଜ୍ୱଳନ୍ତ ବଜ୍ର-ସଦୃଶ ଉଦ୍ୟତ ମହାଗଦାକୁ ଦେଖି ରଥରୁ ଲମ୍ଫପ୍ରଦାନପୂର୍ବକ ତିନିପାଦ ପଛକୁ ପଳାଇଲେ । ୫ । ଅଭିମନ୍ୟୁ ସେହି ଗଦାଦ୍ୱାରା ଅଶ୍ୱତ୍ଥାମାଙ୍କର ଅଶ୍ୱ, ପାର୍ଷ୍ଣିରକ୍ଷକ ଓ ସାରଥିକୁ ସଂହାର କରି ଶରଚିତ ସର୍ବାଙ୍ଗରେ ଝିଙ୍କ-ପକ୍ଷୀ ସଦୃଶ ଦୃଷ୍ଟହେଲେ । ୬ ।

ତତ୍ପରେ ସେ ସୁବଳଦାୟାଦ କାଳକେୟଙ୍କୁ ଓ ତାହାଙ୍କର ଅନୁଚର ଗାନ୍ଧାରଦେଶୀୟ ସପ୍ତସପ୍ତତି ଯୋଦ୍ଧାମାନଙ୍କୁ ବିନାଶ କଲେ । ଆହୁରି ମଧ୍ୟ ବ୍ରାହ୍ମ ଓ ବଶାତିଦେଶୀୟ ଦଶଜଣ ରଥୀ, କୈକେୟଦେଶୀୟ ସପ୍ତରଥୀ ଓ ଦଶଗୋଟି କୁଞ୍ଜରଙ୍କୁ ଧ୍ୱଂସ କଲେ । ୮ । ପରେ ସେହି ଗଦା ଦ୍ୱାରା ଦୁଃଶାସନପୁତ୍ରଙ୍କର ଅଶ୍ୱସହିତ ରଥକୁ ଚୂର୍ଣ୍ଣ କଲେ ।

ହେ ମହାରାଜ ! ତହୁଁ ଦୁଃଶାସନପୁତ୍ର କ୍ରୁଦ୍ଧ ହୋଇ ରହ ରହ ବୋଲି ଅଭିମନ୍ୟୁଙ୍କ ଉପରକୁ ଧାବମାନ ହେଲେ । ଯେପରି ପୂର୍ବକାଳରେ ମହାଦେବ ଓ ଅନ୍ଧକାସୁର ପରସ୍ପର ପ୍ରହାର କରିଥିଲେ, ସେହିପରି ସେହି ଦୁଇ ଭ୍ରାତା ଗଦା ଉଦ୍ୟତ କରି ପରସ୍ପର ବଧାକାଂକ୍ଷୀ ହୋଇ ପ୍ରହାର କଲେ । ଶତ୍ରୁତାପନ ସେହି ଦୁଇ ବୀର ରଣମଧ୍ୟରେ ଏହିରୂପେ ପ୍ରହାର କରୁଁ କରୁଁ ଗଦାହତ ହୋଇ ଇନ୍ଦ୍ରଧ୍ୱଜସଦୃଶ ଉଭୟେ ଭୂତଳରେ ପତିତ ହେଲେ । ଅନନ୍ତର କୁରୁମାନଙ୍କର କୀର୍ତ୍ତିବର୍ଦ୍ଧନ ଦୁଃଶାସନପୁତ୍ର ଉତ୍ଥିତ

ହୋଇ ଅଭିମନ୍ୟୁ ଉଠୁଥିବା ସମୟରେ ତାହାଙ୍କ ମସ୍ତକରେ ଗଦା ପ୍ରହାର କଲେ । ବୀର ଶତ୍ରୁହନ୍ତା ଅଭିମନ୍ୟୁ ବ୍ୟାୟାମଦ୍ୱାରା କ୍ଲାନ୍ତ ହୋଇଥିଲେ ; ତାହାଙ୍କ ମସ୍ତକରେ ଗଦାଘାତ ହେତୁ ସେ ଅଚେତନ ହୋଇ ଭୂମିରେ ପତିତ ହେଲେ ।

ହେ ରାଜନ୍ ! ହସ୍ତୀ ପଦ୍ମବନ ଭଞ୍ଜନ କଲାସଦୃଶ ବୀର ଅଭିମନ୍ୟୁ ସମସ୍ତ ସେନାକୁ କ୍ଷୋଭିତ କରି ବହୁବ୍ୟାଧକର୍ତ୍ତୃକ ଏକ ବନ୍ୟହସ୍ତୀ ନିହତ ହେଲା ପ୍ରାୟ ବହୁଜନ ଦ୍ୱାରା ନିହତ ହୋଇ ରଣସ୍ଥଳରେ ଶୋଭା ପାଇଲେ । ୧୫ । ଶିଶିରକାଳ ପରେ ଦାବକୁ ଦହନ କରି ଅଗ୍ନି ଯେପରି ଶାନ୍ତ ହୁଏ, ସେହିପରି ଶାନ୍ତ ହୋଇ ପତିତ ହୋଇଥିଲେ ଯେଉଁ ଶୂର ଅଭିମନ୍ୟୁ, ତାହାଙ୍କୁ ଆପଣଙ୍କ ଯୋଦ୍ଧାମାନେ ପରିବେଷ୍ଟନ କଲେ । ୧୬ । ପ୍ରବଳ ପବନ ଯେପରି ବୃକ୍ଷାଗ୍ରକୁ ଭଗ୍ନ କରି ନିବୃତ୍ତ ହୁଏ ଓ ସୂର୍ଯ୍ୟ ଯେପରି ଜଗତକୁ ସନ୍ତାପିତ କରି ଅସ୍ତମିତ ହୁଅନ୍ତି, ସେହିପରି ଯେଉଁ ଅଭିମନ୍ୟୁ କୁରୁସୈନ୍ୟ-ମାନଙ୍କୁ ସନ୍ତାପିତ ଓ ଭଗ୍ନ କରି ଭୂପତିତ ହୋଇଥିଲେ ଏବଂ ଯେ ଅସ୍ତଗତ ଓ ରାହୁଗ୍ରସ୍ତ ଚନ୍ଦ୍ରବତ୍ ଏବଂ ଶୁଷ୍କସାଗରସଦୃଶ ଦୃଷ୍ଟ ହେଉଥିଲେ, ସେହି ପୂର୍ଣ୍ଣଚନ୍ଦ୍ରାନନ କାକପକ୍ଷାବୃତଲୋଚନ ଅଭିମନ୍ୟୁଙ୍କୁ ଅବଲୋକନ କରି ଆପଣଙ୍କପକ୍ଷୀୟ ମହାରଥୀମାନେ ପରମହର୍ଷ ସହକାରେ ମୁହୁର୍ମୁହୁଃ ସିଂହନାଦ କରିବାରେ ପ୍ରବୃତ୍ତ ହେଲେ । ୧୯ ।

ହେ ମହାରାଜ ! ଆପଣଙ୍କ ପକ୍ଷୀୟ ଯୋଦ୍ଧୃବୃନ୍ଦଙ୍କର ପରମହର୍ଷ ଜାତ ହେଲା, ମାତ୍ର ପ୍ରତିପକ୍ଷ ବୀରମାନଙ୍କ ନେତ୍ରରୁ ଜଳଧାରା ବିଗଳିତ ହେଲା । ୨୦ । ଅନ୍ତରୀକ୍ଷସ୍ଥ ପ୍ରାଣିମାନେ ବୀର ଅଭିମନ୍ୟୁଙ୍କୁ ଆକାଶଚ୍ୟୁତ ଚନ୍ଦ୍ରତୁଲ୍ୟ ପତିତ ହୋଇଥିବାର ଦେଖି ଉଚ୍ଚୈଃସ୍ୱରରେ କହିଲେ, "ଦ୍ରୋଣ ପ୍ରମୁଖ ଛଅଜଣ ମହାରଥୀ ଯେ ଏକମାତ୍ର ବାଳକକୁ ନିହତ କରି ଭୂତଳ-ଶାୟୀ କଲେ – ଏହା ଆମ୍ଭମାନଙ୍କ ମତରେ ଧର୍ମକାର୍ଯ୍ୟ ହୋଇନାହିଁ" ।୨୨।

ହେ ମହାରାଜ ! ନକ୍ଷତ୍ରମାଳାସମ୍ପନ୍ନ ନଭୋମଣ୍ଡଳ ଯେପରି ପୂର୍ଣ୍ଣଚନ୍ଦ୍ର ଦ୍ୱାରା ଶୋଭା ପାଏ, ସେହି ମହାବୀର ଅଭିମନ୍ୟୁ ନିହତ ଓ ପତିତ ହେବାରୁ ମେଦିନୀ ସେହିପରି ବହୁଧା ଶୋଭମାନ ହେଲା । ୨୩ । ରୁକ୍ମ-

ପୁଙ୍ଖ ଶର, ବୀରମାନଙ୍କର ସକୁଣ୍ଡଳ ଦୀପ୍ୟମାନ ମସ୍ତକ, ବିଚିତ୍ର ପରିସ୍ତୋମ, ପତାକା, ଚାମର, ଚିତ୍ରକମ୍ବଳ, ଛିନ୍ନଭିନ୍ନ ଉତ୍ତମ ଉତ୍ତମ ବସ୍ତ୍ର, ରଥ, ନାଗ, ଅଶ୍ୱ ଓ ମନୁଷ୍ୟମାନଙ୍କର ସୁପ୍ରଭ ଅଳଙ୍କାର, ମୋକମୁକ୍ତ ଭୁଜଙ୍ଗମସଦୃଶ ଶାଣିତପୀତ ଖଡ୍‌ଗ, ଛିନ୍ନ ଧନୁ, ଶର, ଶକ୍ତି, ଋଷ୍ଟି, ପ୍ରାସ, କମ୍ପନ ଓ ଅନ୍ୟାନ୍ୟ ବିବିଧ ଆୟୁଧମାନଙ୍କ ଦ୍ୱାରା ରଣଭୂମି ପରିବ୍ୟାପ୍ତା ଓ ରୁଧିର-ଶିଣିଦ୍ୱାରା ପରିପ୍ଳୁତା ହୋଇ ଶୋଭମାନ ହେଲା । ୨୭ । ଅଭିମନ୍ୟୁଙ୍କ ଅସ୍ତ୍ରଦ୍ୱାରା ନିପାତିତ ଶୋଣିତସିକ୍ତ ଆରୋହୀ ସହ ନିର୍ଜୀବ ଓ ଶ୍ୱାସବିଶିଷ୍ଟ ଅଶ୍ୱସମୂହଦ୍ୱାରା, ଅଙ୍କୁଶଧାରୀ ମହାମାତ୍ର ଏବଂ ବର୍ମ୍ମ, ଆୟୁଧ ଓ ଧ୍ୱଜସହିତ ଶରୋନ୍ମଥିତ ବିଧ୍ୱସ୍ତ ପର୍ବତାକାର ହସ୍ତିସମୂହଦ୍ୱାରା, ଅଶ୍ୱସାରଥିଯୋଧବିହୀନ କ୍ଷୁଭିତ ହ୍ରଦସଦୃଶ ରଥସମୂହଦ୍ୱାରା ଏବଂ ବିବିଧାସ୍ତ୍ରଭୂଷିତ ନିହତ ପଦାତି-ସମୂହ ଦ୍ୱାରା ରଣଭୂମି ବିଷମା, ଘୋରରୂପା ଓ ଭୀରୁମାନଙ୍କର ଭୟୋ-ତ୍ପାଦିକା ହେଲା । ୩୧ । ଚନ୍ଦ୍ରସୂର୍ଯ୍ୟସଦୃଶ ଦ୍ୟୁତିମାନ ସେହିବୀର ଅଭିମନ୍ୟୁଙ୍କୁ ପତିତ ହେବାର ଦେଖି ଆପଣଙ୍କ ପକ୍ଷୀୟ ଯୋଦ୍ଧାମାନଙ୍କର ପରମହର୍ଷ ଓ ପାଣ୍ଡବପକ୍ଷୀୟଙ୍କର ଅତିବ କଷ୍ଟ ହେଲା । ୩୨ ।

ହେ ରାଜନ୍ ! ଅପ୍ରାପ୍ତଯୌବନ ଶିଶୁ ଅଭିମନ୍ୟୁ ହତ ହୁଅନ୍ତେ ଧର୍ମରାଜଙ୍କର ସମସ୍ତ ସେନା ତାହାଙ୍କ ସମକ୍ଷରେ ପଳାୟନ କଲେ । ଅଭିମନ୍ୟୁଙ୍କ ବିନାଶରେ ସୈନ୍ୟମାନଙ୍କୁ ଦୁଃଖିତ ଓ ପଳାଉଥିବାର ଦେଖି ଅଜାତଶତ୍ରୁ ଯୁଧିଷ୍ଠିର ସେମାନଙ୍କୁ କହିଲେ, "ଆମ୍ଭମାନଙ୍କର ସେହି ବୀର ଅଭିମନ୍ୟୁ ଯୁଦ୍ଧରେ ହତ ହୋଇଅଛନ୍ତି, ସୁତରାଂ ତାହାଙ୍କର ସ୍ୱର୍ଗଲାଭ ହୋଇଅଛି । ତୁମ୍ଭେମାନେ ସ୍ଥିର ହୁଅ, ଭୟ କରନାହିଁ ; ଆମ୍ଭେମାନେ ଶତ୍ରୁ ଜୟ କରିବା । ୩୫ । ଯୋଧପ୍ରଧାନ ମହାତେଜା ମହାବିକ୍ରମ ଧର୍ମରାଜ ଦୁଃଖିତ ସୈନ୍ୟମାନଙ୍କୁ ପୁନର୍ବାର ଏହିପରି କହି ଦୁଃଖ ଦୂର କଲେ ।୩୬। ହେ ବୀରମାନେ ! ଯୁଦ୍ଧରେ ସର୍ପସମ ଶତ୍ରୁରାଜପୁତ୍ରମାନଙ୍କୁ ଅଭିମନ୍ୟୁ ପ୍ରଥମେ ନିପାତିତ କରି ପରେ ସେମାନଙ୍କର ଅନୁଗମନ କରିଅଛି । ୩୭ । ଅଭିମନ୍ୟୁ କୃଷ୍ଣ ଓ ଅର୍ଜୁନଙ୍କ ସମାନ କାର୍ଯ୍ୟ କରି ଦଶସହସ୍ର ଯୋଦ୍ଧା ଓ ମହାରଥ କୋଶଳାଧିପତିଙ୍କୁ ବଧପୂର୍ବକ ନିଶ୍ଚୟ ଇନ୍ଦ୍ରଲୋକକୁ ଗମନ କରିଅଛନ୍ତି । ପୁଣ୍ୟକର୍ମା ଅଭିମନ୍ୟୁ ସେଥିରେ ସୁଦ୍ଧା ପରିତୃପ୍ତ ନ ହୋଇ

ସହସ୍ର ସହସ୍ର ରଥୀ, ସାଦୀ, ଗଜାରୋହୀ ଓ ପଦାତିମାନଙ୍କୁ ନିପାତିତ କରି ସଂଗ୍ରାମରୁ ପୁଣ୍ୟବାନ୍ ବ୍ୟକ୍ତିମାନଙ୍କ ନିର୍ଦ୍ଦିଷ୍ଟ ଶାଶ୍ୱତ ଲୋକକୁ ଗମନ କରିଅଛନ୍ତି, ଅତଏବ ତାହାଙ୍କ ନିମନ୍ତେ ଶୋକ କରିବା ଉଚିତ ନୁହେ । ୩୯ ।



# ୫୦ ଅଧ୍ୟାୟ

ସଞ୍ଜୟ ବୋଇଲେ—ହେ ମହାରାଜ ! ପାଣ୍ଡବମାନଙ୍କର ସେହି ପ୍ରଧାନ ବୀରଙ୍କୁ ନିପାତିତ କରି ଆମ୍ଭେମାନେ ଶରମାନଙ୍କଦ୍ୱାରା ରୁଧିରାକ୍ତ ଓ କ୍ଷତବିକ୍ଷତ-କଳେବର ହୋଇ ସାୟାହ୍ନକାଳରେ ଶିବିରକୁ ଗମନ କଲୁଁ । ଯାଉଁ ଯାଉଁ ଦେଖିଲୁ ଯେ, ବିପକ୍ଷମାନେ ଗ୍ଲାନିଯୁକ୍ତ ଓ ବିଚେତନ ପ୍ରାୟ ଧୀରେ ଧୀରେ ରଣସ୍ଥଳରୁ ଗମନ କରୁଅଛନ୍ତି । ୨ । ଦିବାକର ଅସ୍ତଗିରି ଶିଖରରେ ପଦ୍ମାକୃତ୍ତ ମୁକୁଟସଦୃଶ ବିରାଜିତ ହୁଅନ୍ତେ ଶିବାରବଭୀଷଣ, ଅଶିବ ଓ ଅଦ୍‌ଭୁତ ସନ୍ଧ୍ୟାକାଳ ଉପସ୍ଥିତ ହେଲା । ୩ । ଉତ୍ତମ ଅସି ଶକ୍ତି, ଋଷ୍ଟି, ବରୂଥ, ଚର୍ମ ଓ ଅଳଙ୍କାର—ଏହି ସମୁଦାୟର ପ୍ରଭାକୁ ହରଣ କରି ଆକାଶ ଓ ଭୂମଣ୍ଡଳକୁ ଏକାକାର କଲାପ୍ରାୟ ଦିବାକର ସ୍ୱୀୟ ପ୍ରିୟ କଳେବରକୁ ଅଗ୍ନିମଧ୍ୟରେ ପ୍ରବେଶ କରାଇଲେ ଅର୍ଥାତ୍ ସନ୍ଧ୍ୟା ହେବାରୁ ଦିବାକର ଅସ୍ତମିତ ହେଲେ ଓ ତାହାଙ୍କର ତେଜଃ ଅଗ୍ନିଦେହରେ ନିବିଷ୍ଟ ହୋଇ ଅଗ୍ନିତେଜକୁ ବୃଦ୍ଧି କଲା । ୪ ।

ବଜ୍ରପାତିତ ମହାମେଘାବୃତ ଗିରିଶୃଙ୍ଗସଦୃଶ ଅନେକ ଗଜ, ବୈଜୟନ୍ତୀ, ଅଙ୍କୁଶ ଓ ମହାମାତ୍ର ସହ ନିପାତିତ ହୁଅନ୍ତେ ପୃଥିବୀ ପରିକୀର୍ଣ୍ଣା ହୋଇ ଅଗମ୍ୟା ହୋଇଥିଲା । ହେ ନରାଧିପ ! ରଥ-ମାନଙ୍କର ଈଶ୍ୱର, ଅଶ୍ୱ ଓ ସାରଥିମାନେ ନିହତ ହୁଅନ୍ତେ ଓ ଉପକରଣ-ମାନ ଧ୍ୱଜ ଓ ପତାକାସମୂହ ବିଚ୍ଛିନ୍ନ ହୁଅନ୍ତେ ଏବଂ ପଦାତିମାନେ ଚୂର୍ଣ୍ଣିତ ହୁଅନ୍ତେ ସେହି ରଣଭୂମି ଶତ୍ରୁବିଧ୍ୱସ୍ତ ପୁରୀ ସଦୃଶ ଶୋଭା ପାଇଲା । ୬ । ଅନେକ ସାଦୀ ଓ ରଥାଶ୍ୱବୃନ୍ଦ ନିହତ ଓ ସେମାନଙ୍କର ଜିହ୍ୱା,

ଦଶନ, ଅନ୍ତ୍ର ଓ ଲୋଚନ ନିରସ୍ତ ଏବ ସେମାନଙ୍କର ଅଳଙ୍କାର ଓ ଆସ୍ତରଣମାନ ପ୍ରବଦ୍ଧ ହୋଇଥିଲା ଓ ସେମାନେ ପୃଥକ୍ ପୃଥକ୍ ରୂପେ ନିପତିତ ହୁଅନ୍ତେ ଧରାତଳ ବିକଟ ଓ ଭୟଙ୍କର ହୋଇଥିଲା । ମହାର୍ହ ଶଯ୍ୟାରେ ଶୟନଯୋଗ୍ୟ ରାଜାମାନେ ତତ୍କାଳରେ ନିହତ ହୋଇ ଅନାଥ-ସଦୃଶ ଧରାତଳରେ ଶୟନ କରିଥିଲେ । ସେମାନଙ୍କର ଅସ୍ତ୍ରଶସ୍ତ୍ର ଓ ବସନ ଭୂଷଣ ଛିନ୍ନଭିନ୍ନ ଏବଂ ହସ୍ତୀ, ରଥ, ଅଶ୍ୱ ଓ ଅନୁଗମାନେ ବିପନ୍ନ ହୋଇଥିଲେ । କୁକୁର, ଶୃଗାଳ, ବାୟସ, ବକ, ସୁପର୍ଣ୍ଣ, ବୃକ, ତରକ୍ଷୁ ଓ ରକ୍ତପାୟୀ ପକ୍ଷିମାନେ ଏବଂ ଭୟଙ୍କର ରାକ୍ଷସ ଓ ପିଶାଚମାନେ ଅତୀବ ହୃଷ୍ଟ ହୋଇ ମୃତ ପ୍ରାଣିମାନଙ୍କର ତ୍ୱକ୍‌ଭେଦପୂର୍ବକ ବସା, ଶୋଣିତ, ମଜ୍ଜା, ମାଂସ ଓ ଅନ୍ତ୍ରମାନଙ୍କୁ ପାନ ଭୋଜନ ଓ ଆକର୍ଷଣ କରୁଥିଲେ । ଅନେକ ରାକ୍ଷସ ହାସ୍ୟପୂର୍ବକ ଶବ ଆକର୍ଷଣ କରୁଥିଲେ ।

ସେହି ସମୟରେ ରଣାଙ୍ଗନର ମଧ୍ୟ ଦେଇ ଭୟାବହ ବୈତରଣୀ ନଦୀ ସଦୃଶ ଯୋଦ୍ଧାବୀରମାନଙ୍କ ଦ୍ୱାରା ପ୍ରବର୍ତ୍ତିତା ଶରୀରସଙ୍ଘାତ-ପ୍ରବାହିନୀ ଗୋଟିଏ ଅତି ଭୟଙ୍କର ନଦୀ ପ୍ରବାହିତ ହେଉଥିଲା । ରକ୍ତ ସେହି ନଦୀର ଜଳସ୍ୱରୂପ, ରଥସବୁ ଉଡୁପସଦୃଶ, କୁଞ୍ଜରମାନେ ପର୍ବତ-ସ୍ୱରୂପ, ମନୁଷ୍ୟମାନଙ୍କ ମସ୍ତକସବୁ ଉପଳଖଣ୍ଡସଦୃଶ, ମାଂସ କର୍ଦ୍ଦମ ସ୍ୱରୂପ ଓ ଛିନ୍ନଭିନ୍ନ ନାନା ଅସ୍ତ୍ରଶସ୍ତ୍ର ସେହି ନଦୀର ମାଲ୍ୟସଦୃଶ ହୋଇ-ଥିଲେ ଏବଂ ମୃତ ଓ ଅର୍ଦ୍ଧମୃତ ପ୍ରାଣିମାନେ ସେହି ନଦୀରେ ପ୍ରବାହିତ ହେଉଥିଲେ । ୧୨ । ସେହି ନଦୀରେ ପ୍ରାଣୀମାନଙ୍କର ଭୟପ୍ରଦ ଦୁର୍ଦ୍ଦର୍ଶମାୟୁ ଭୟଙ୍କରରୂପୀ ଭୈରବମାନେ, ପିଶାଚସମୂହ ଓ କୁକୁର, ଶୃଗାଳ ଓ ମାଂସାଶୀ ପକ୍ଷିମାନେ ଆନନ୍ଦିତ ହୋଇ ପାନ, ଭୋଜନ କରୁଥିଲେ ଓ ସ୍ଥାନେ ସ୍ଥାନେ କବନ୍ଧସମୂହ ସମୁତ୍ଥାନ ଓ ଉଲ୍ଲମ୍ଫନପୂର୍ବକ ନୃତ୍ୟ କରୁଥିଲେ ।

ହେ ମହାରାଜ ! ମନୁଷ୍ୟମାନେ ସେହି ସନ୍ଧ୍ୟା ସମୟରେ ତାଦୃଶ ଯମରାଷ୍ଟ୍ରବର୍ଦ୍ଧନ ଉଗ୍ରଦର୍ଶନ ରଣଭୂମିକୁ ଦେଖି ଧୀରେ ଧୀରେ ସେଠାରୁ ଗମନ କଲେ । ସେହି ସମୟରେ ଲୋକେ ଇନ୍ଦ୍ରତୁଲ୍ୟ ମହାରଥ ଅଭିମନ୍ୟୁଙ୍କୁ ନିପତିତ ହୋଇଥିବାର ଦେଖିଲେ । ତାହାଙ୍କର ମହାର୍ହ ଆଭରଣ

ଅପଗତ ଓ ବିଧ୍ୱସ୍ତ ହୋଇ ଯାଇଥିଲା । ରଣସ୍ଥଳରେ ତାହାଙ୍କୁ ବେଦୀସ୍ଥ ଆହୁତିଶୂନ୍ୟ ଅନୁଜ୍ଜ୍ୱଳ ଅଗ୍ନିସଦୃଶ ନିରୀକ୍ଷଣ କଲେ । ୧୫ ।

# ୫୧ ଅଧ୍ୟାୟ

ସଞ୍ଜୟ ବୋଇଲେ—ହେ ମହାରାଜ ! ସେହି ରଥଯୂଥପତି ମହାବୀର ସୁଭଦ୍ରା-ନନ୍ଦନ ନିହତ ହୁଅନ୍ତେ ସମସ୍ତ ଯୋଦ୍ଧା ଉଦ୍‌ଗତଚିତ୍ତ ଓ ଶୋକକାତର ହୋଇ ରଥ, ବର୍ମ ଓ ଧନୁର୍ବାଣ ପରିତ୍ୟାଗ-ପୂର୍ବକ ରାଜା ଯୁଧିଷ୍ଠିରଙ୍କୁ ପରିବେଷ୍ଟନ କରି ଉପବେଶନ କଲେ । ୨ । ଅନନ୍ତର ରାଜା ଯୁଧିଷ୍ଠିର ମହାବୀର ମହାରଥ ଭ୍ରାତୃଷ୍ପୁତ୍ର ଅଭିମନ୍ୟୁଙ୍କର ଶୋକରେ ଅତ୍ୟନ୍ତ ଦୁଃଖିତ ହୋଇ ବିଳାପ କଲେ । ୩ । ଯେପରି ଗୋଗଣ ମଧ୍ୟରେ କେଶରୀ ପ୍ରବେଶ କରେ, ସେହିପରି ଅଭିମନ୍ୟୁ ଆମ୍ଭର ପ୍ରିୟାନୁଷ୍ଠାନ ନିମିତ୍ତ ଦ୍ରୋଣବିରଚିତ ବ୍ୟୂହ ଭେଦ କରି ତହିଁ ମଧ୍ୟରେ ପ୍ରବେଶ କରିଥିଲା । ୪ । ଯାହାର ଅସ୍ତ୍ର ପ୍ରଭାବରୁ ଯୁଦ୍ଧଦୁର୍ମଦ ଶୂର ମହା-ଧନୁର୍ଦ୍ଧର ସୁଶିକ୍ଷିତାସ୍ତ୍ର ବିପକ୍ଷୀୟ ବୀରମାନେ ଯୁଦ୍ଧରେ ଭଗ୍ନ ହୋଇ ପଳାୟନ କରିଥିଲେ, ଯେଉଁ ବୀର ଆମ୍ଭମାନଙ୍କର ଅତ୍ୟନ୍ତ ଶତ୍ରୁ ଦୁଃଶାସନଙ୍କୁ ଯୁଦ୍ଧରେ ଶରଦ୍ୱାରା ବିଚେତନ ଓ ପରାଙ୍ମୁଖ କରିଥିଲା, ସେହି ବୀର ଦୁସ୍ତର ମହାର୍ଣ୍ଣବସଦୃଶ ଦ୍ରୋଣ ସୈନ୍ୟକୁ ଭେଦ କରି ପରିଶେଷରେ ଦୁଃଶାସନ-ପୁତ୍ରର ଗଦା ପ୍ରହାର ଦ୍ୱାରା ଯମ ପୁରକୁ ଗମନ କଲା । ୭ ।

ଅଭିମନ୍ୟୁ ନିହତ ହୋଇଥିବାରୁ ଆମ୍ଭେ ବର୍ତ୍ତମାନ ଅର୍ଜ୍ଜୁନ ଓ ସୁଭଦ୍ରାଙ୍କୁ କିପରି ଦେଖିବୁଁ ? ସୁଭଦ୍ରା ଆଉ ପ୍ରିୟ ପୁତ୍ରଙ୍କୁ ଦେଖି ପାରିବେ ନାହିଁ । ୮ । ସେହି କୃଷ୍ଣ ଓ ଧନଞ୍ଜୟଙ୍କ ନିକଟରେ ଆମ୍ଭେମାନେ କେଉଁପରି ଏହି ଅର୍ଥଶୂନ୍ୟ ଓ ଅସମୀଚୀନ ବାକ୍ୟ କହିବୁଁ ? ୯ । ଆମ୍ଭେ ଏକା ସ୍ୱାର୍ଥକାମ ଓ ଜୟାକାଂକ୍ଷୀ ହୋଇ ସୁଭଦ୍ରା, କୃଷ୍ଣ ଓ ଅର୍ଜ୍ଜୁନଙ୍କର ଏହି ଅପ୍ରିୟ କାର୍ଯ୍ୟ କଲୁଁ । ୧୦ । ଲୁବ୍ଧ ବ୍ୟକ୍ତି କଦାପି ଦୋଷ ଜାଣି ପାରେ ନାହିଁ । ମନୁଷ୍ୟ ମୋହ ହେତୁରୁ ଲୋଭରେ ପ୍ରବୃତ୍ତ ହୁଏ,

* ମଧୂଲିପ୍‌ସୁ ବ୍ୟକ୍ତି ସଦୃଶ ଆମ୍ଭେ ଈଦୃଶ ପତନକୁ ବୁଝି ପାରିଲୁ ନାହିଁ । ଯେଉଁ ବାଳକ ସୁଭୋଜ୍ୟ, ପାନ, ଶଯ୍ୟା ଓ ଭୂଷଣମାନଙ୍କରେ ପୁରସ୍କୃତ ହେବାର ଯୋଗ୍ୟ, ସେହି ବାଳକକୁ ଆମ୍ଭେମାନେ ମୃତ୍ୟୁରୂପ ଯୁଦ୍ଧରେ ଅଗ୍ରସର କଲୁଁ । ୧୨ । ସତ୍ତ୍ୱସ୍ୱଭାବସମ୍ପନ୍ନ ଅଶ୍ୱ ଯେପରି ବିଷମ ଗହନକୁ ପ୍ରେରିତ ହେଲେ ତାହାର ମଙ୍ଗଳ ହୁଏ ନାହିଁ, ତଦ୍ରୂପ ସମରାନଭିଜ୍ଞ ଷୋଡ଼ଶ-ବର୍ଷୀୟ ବାଳକ ଅଭିମନ୍ୟୁର ଏହି ବିଷମ ସଂକଟରେ କିପରି ମଙ୍ଗଳ ହୁଅନ୍ତା ? ହାୟ ! ଆମ୍ଭେମାନେ ମଧ୍ୟ ସେହି କୋପ-ପ୍ରଦୀପ୍ତ କୀରିଟୀର ଦୀନ ନୟନାଗ୍ନି ଦ୍ୱାରା ଦଗ୍‌ଧ ହୋଇ ଅଦ୍ୟ ଭୂତଳରେ ଅଭିମନ୍ୟୁର ଅନୁଯାୟୀ ହେବୁଁ । ୧୪ ।

ଯେ ଅଲୁବ୍ଧ, ବୁଦ୍ଧିମାନ୍, ଲଜ୍ଜାଶୀଳ, କ୍ଷମାବାନ୍. ରୂପବାନ୍, ବଳବାନ୍, ଦୃଢ଼ଶରୀର, ମାନୀ, ଧୀର, ଲୋକପ୍ରିୟ, ସତ୍ୟପରାୟଣ ଓ ତେଜସ୍ୱୀ ଏବଂ ଯାହାଙ୍କର କର୍ମ ବର୍ଦ୍ଧନଶୀଳ, ପଣ୍ଡିତମାନେ ଯାହାଙ୍କର କର୍ମକୁ ପ୍ରଶଂସା କରିଥାଅନ୍ତି, ଯେ ଯୁଦ୍ଧରେ ନିବାତକବଚ ଓ କାଳକେୟ-ମାନଙ୍କୁ ନିହତ କରିଥିଲେ, ଯେ ନେତ୍ରର ପଲକମାତ୍ରକେ ହିରଣ୍ୟପୁରବାସୀ ଇନ୍ଦ୍ରଶତ୍ରୁ ପୁଲୋମନନ୍ଦନମାନଙ୍କୁ ସଗଣରେ ନିଧନ କରିଥିଲେ ଏବଂ ଯେ ବିଭୁ, ଯେ ଅଭୟାର୍ଥୀ ଶତ୍ରୁମାନଙ୍କୁ ଅଭୟ ଦାନ କରନ୍ତି, ସେହି ଅର୍ଜୁନଙ୍କ ପୁତ୍ରଙ୍କୁ ଆମ୍ଭେମାନେ ଭୟ ହେତୁରୁ ଯୁଦ୍ଧରେ ଅଦ୍ୟ ରକ୍ଷା କରିପାରିଲୁ ନାହିଁ । ୧୮ । ପରନ୍ତୁ ଦୁର୍ଯ୍ୟୋଧନପକ୍ଷୀୟ ଯୋଦ୍ଧାମାନଙ୍କର ସୁମହତ୍ ଭୟ ଉପସ୍ଥିତ ହୋଇଅଛି । କାରଣ, ଧନଞ୍ଜୟ ପୁତ୍ର-ବିନାଶରେ ଅତିଶୟ କ୍ରୁଦ୍ଧ ହୋଇ କୌରବମାନଙ୍କୁ ନିଃଶେଷିତ କରିବେ । ୧୯ । କ୍ଷୁଦ୍ରାଶୟ, କ୍ଷୁଦ୍ରସହାୟ ଦୁର୍ଯ୍ୟୋଧନ ନିଜ ପକ୍ଷର କ୍ଷୟ ଦେଖି ଆତୁର ଓ ଶୋକାକୁଳ ହୋଇ ଅବଶ୍ୟ ପ୍ରାଣ ତ୍ୟାଗ କରିବ ।୨୦। ଏହି ଇନ୍ଦ୍ର-ପୌତ୍ର ଅପ୍ରତିମବୀର୍ଯ୍ୟ ଓ ଅନନ୍ୟପୌରୁଷ ଅଭିମନ୍ୟୁଙ୍କର ବିନାଶ ଅବଲୋକନ କରି ଆମ୍ଭର ଜୟ, ରାଜ୍ୟ, ଅମରତ୍ୱ ଲାଭ କିମ୍ବା ସୁରମାନଙ୍କର ସହବାସ—ଏ ସମସ୍ତ କିଛିମାତ୍ର ପ୍ରୀତିକର ହେଉନାହିଁ । ୨୧ ।



* ମଧୂଲିପ୍‌ସୁ—ମଧୁ ଆହରେଣଚ୍ଛୁ ଉଚ୍ଚସ୍ଥାନରୁ ପତନଭୟକୁ ବିସ୍ମରଣ କଲାପ୍ରାୟ ।

# ୫୬ ଅଧ୍ୟାୟ

ସଞ୍ଜୟ କହିଲେ—ଅନନ୍ତର ମହର୍ଷି କୃଷ୍ଣଦ୍ୱୈପାୟନ କୁନ୍ତୀପୁତ୍ର ଯୁଧିଷ୍ଠିରଙ୍କୁ ବିଳାପ କରୁଥିବାର ଜାଣି ପାରି ତାହାଙ୍କ ନିକଟକୁ ଆଗମନ କଲେ । ୧ । ଭ୍ରାତୃଷ୍ପୁତ୍ରବଧ ଜନିତ ଶୋକସନ୍ତପ୍ତ ରାଜା ଯୁଧିଷ୍ଠିର ତାହାଙ୍କୁ ଯଥାବିଧି ଅର୍ଚ୍ଚନା କରନ୍ତେ ସେ ଉପବିଷ୍ଟ ହେଲେ । ଅନନ୍ତର ରାଜା ତାହାଙ୍କୁ କହିଲେ—ହେ ବ୍ରହ୍ମନ୍ ! ଅଧାର୍ମିକ, ମହାରଥ, ମହାଧନୁର୍ଦ୍ଧର ବହୁବ୍ୟକ୍ତି ପରିବେଷ୍ଟନପୂର୍ବକ ଏକ ଅଭିମନ୍ୟୁର ସହିତ ଯୁଦ୍ଧ କରି ତାହାକୁ ନିହତ କରିଅଛନ୍ତି । ୩ । ବୀର ଶତ୍ରୁହନ୍ତା ଅଭିମନ୍ୟୁ ବାଳକ ଥିଲା ସତ୍ୟ, କିନ୍ତୁ ତାହାର ବୁଦ୍ଧି ବାଳକସଦୃଶ ନ ଥିଲା । ସେ ଅନୁପାୟ ହୋଇ ସୁଦ୍ଧା ବିଶେଷ ରୂପେ ଯୁଦ୍ଧ କରିଥିଲା । ୪ । ଆମ୍ଭେ ତାହାଙ୍କୁ କହିଥିଲୁଁ, ତୁମ୍ଭେ ବିପକ୍ଷ ବ୍ୟୂହ ମଧ୍ୟରେ ପ୍ରବେଶ କରିବାର ଦ୍ୱାର ପ୍ରସ୍ତୁତ କର, ଆମ୍ଭେମାନେ ସେହି ପଥରେ ପ୍ରବେଶ କରିବୁଁ । ୪ । ଅନନ୍ତର ଅଭିମନ୍ୟୁ ସେହି ବ୍ୟୂହ ମଧ୍ୟରେ ପ୍ରବିଷ୍ଟ ହୁଅନ୍ତେ ଆମ୍ଭେମାନେ ତାହାର ଅନୁଗମନ କରିଥିଲୁଁ । କିନ୍ତୁ ସିନ୍ଧୁରାଜ ଜୟଦ୍ରଥ ଆମ୍ଭମାନଙ୍କୁ ନିବାରଣ କଲେ । ୫ । ଯୁଦ୍ଧଜୀବୀ କ୍ଷତ୍ରିୟ-ମାନଙ୍କର ସମାନ ସମାନ ମଧ୍ୟରେ ଯୁଦ୍ଧ କରିବା ବାଞ୍ଛନୀୟ ଅଟେ ; କିନ୍ତୁ ଶତ୍ରୁମାନେ ଯେ ଈଦୃଶ ଅନ୍ୟାୟ ଯୁଦ୍ଧକରି ବାଳକ ଅଭିମନ୍ୟୁଙ୍କୁ ବିନାଶ-କଲେ, ସେଥିନିମନ୍ତେ ଆମ୍ଭେ ଅତ୍ୟନ୍ତ ସନ୍ତପ୍ତ ଓ ଶୋକାର୍ଦ୍ଦ ହୋଇଅଛୁଁ । ସେହି ବିଷୟ ପୁନଃ ପୁନଃ ଚିନ୍ତା କରୁଅଛୁଁ, କୌଣସି ପ୍ରକାରେ ଶାନ୍ତି ଲଭ କରିପାରୁନାହୁଁ । ୭ ।

ସଞ୍ଜୟ ବୋଇଲେ—ହେ ନୃପ ! ଭଗବାନ୍ ବ୍ୟାସ ଯୁଧିଷ୍ଠିରଙ୍କୁ ଶୋକବ୍ୟାକୁଳ ମାନସରେ ଦେଖି ଏହି ବାକ୍ୟ କହିଲେ; ହେ ଭରତର୍ଷଭ ଯୁଧିଷ୍ଠିର ! ତୁମ୍ଭେ ମହାପ୍ରାଜ୍ଞ ଓ ସର୍ବଶାସ୍ତ୍ରବିଶାରଦ ଅଟ । ତୁମ୍ଭ ସଦୃଶ ମହାତ୍ମାମାନେ ବିପଦରେ ମୁଗ୍ଧ ହୁଅନ୍ତି ନାହିଁ । ୯ । ସେହି ଶୌର୍ଯ୍ୟସମ୍ପନ୍ନ ପୁରୁଷପ୍ରଧାନ ବାଳକ ହୋଇ ମଧ୍ୟ ଯୁଦ୍ଧରେ ବହୁଳ ଶତ୍ରୁ ଧ୍ୱଂସପୂର୍ବକ ଅବାଳକ ସଦୃଶ କର୍ମ କରି ସ୍ୱର୍ଗକୁ ଗମନ କରିଅଛି ।୧୦। ହେ ଯୁଧିଷ୍ଠିର ! ମୃତ୍ୟୁକୁ କେହି ଅତିକ୍ରମ କରିପାରେ ନାହିଁ । ମୃତ୍ୟୁ ଦେବଦାନବ ଓ ଗନ୍ଧର୍ବମାନଙ୍କୁ ମଧ୍ୟ ସଂହାର କରେ । ୧୧ ।

ଯୁଧିଷ୍ଠିର ବୋଇଲେ—ଏହି ମହାବଳ ପରାକ୍ରାନ୍ତ ପୃଥିବୀପାଳମାନେ ନିହତ ହୋଇଅଛନ୍ତି ଓ ସୈନ୍ୟମାନଙ୍କ ମଧ୍ୟରେ ମୃତସଂଜ୍ଞା ପ୍ରାପ୍ତ ହୋଇ ଭୂତଳରେ ଶୟନ କରିଅଛନ୍ତି । ୧୨ । କେହି ଅଯୁତ ନାଗର ବଳଧାରୀ, କେହି ବା ବାୟୁସମ ବେଗ ଓ ବଳବିଶିଷ୍ଟ ; କିନ୍ତୁ ସେମାନେ ମଧ୍ୟ ତୁଲ୍ୟବଳ ବୀର୍ଯ୍ୟଶାଳୀ ମନୁଷ୍ୟମାନଙ୍କଦ୍ୱାରା ଯୁଦ୍ଧରେ ନିହତ ହୋଇଅଛନ୍ତି । ୧୩ । ଯୁଦ୍ଧରେ ସେମାନଙ୍କୁ ହତ କରିବାକୁ ସମର୍ଥ ବୀର କେହି ଥିଲେ ବୋଲି ଆମ୍ଭର ବୋଧ ନାହିଁ । କାରଣ ସେମାନେ ସମସ୍ତେ ବିକ୍ରମ, ତେଜ ଓ ବଳସମନ୍ୱିତ ଥିଲେ । ୧୪ । ସେମାନେ ସମସ୍ତେ "ଆମ୍ଭେ ଜୟ କରିବୁଁ, ଆମ୍ଭେ ଜୟ କରିବୁଁ" ଏହିରୂପେ ମନେ ମନେ ସର୍ବଦା ନିଶ୍ଚୟ କରୁଥିଲେ, ଅଥଚ ସେହି ସମସ୍ତ ପ୍ରାଜ୍ଞ ବୀରପୁରୁଷମାନେ ଗତାୟୁ ହୋଇ ଭୂମିରେ ଶୋଇଅଛନ୍ତି ।୧୫। * ମୃତ—ଏହି ଶବ୍ଦ ମଧ୍ୟ ସେମାନଙ୍କ ପ୍ରତି ଅର୍ଥବତ୍ ପ୍ରୟୋଗ ହେଉଅଛି । ସେହି ରାଜାମାନେ ପ୍ରାୟ ସମସ୍ତେ ଭୀଷଣପରାକ୍ରମ ହୋଇ ସୁଦ୍ଧା ମୃତ ହୋଇଅଛନ୍ତି । ୧୬ । ରାଜପୁତ୍ରମାନେ ଶୂର ଓ ବୀର ଥିଲେ । ସେମାନେ ମଧ୍ୟ କ୍ରୋଧାବିଷ୍ଟଚିତ୍ତରେ ଯୁଦ୍ଧ କରି ପରିଶେଷରେ ଶତ୍ରୁବଶମ୍ବଦ, ଅଭିମାନ ଶୂନ୍ୟ ଓ ନିଶ୍ଚେଷ୍ଟ ହୋଇ ମୃତ୍ୟୁଗ୍ରାସରେ ପତିତ ହେଲେ । ୧୭ । ଏହି ବିଷୟରେ ଆମ୍ଭର ଏହି ସଂଶୟ ହେଉଅଛି—"ମୃତ" ଏହି ସଂଜ୍ଞା କି ହେତୁ ପ୍ରୟୋଗ କରାଯାଏ, କିଏ କାହାର ମୃତ୍ୟୁ, ସେ ମୃତ୍ୟୁ କି ପ୍ରକାରେ ଓ କେଉଁଠାରୁ ଉତ୍ପନ୍ନ ହେଲା; ମୃତ୍ୟୁ ପ୍ରଜାମାନଙ୍କୁ କି ପ୍ରକାରେ ସଂହାର କରେ ଓ କି ପ୍ରକାରେ ବା ଇହଲୋକରୁ ନେଇଯାଏ ? ହେ ଅମରସଦୃଶ ପିତାମହ ! ଆପଣ ଏହା କୀର୍ତ୍ତନ କରି ଆମ୍ଭର ସଂଶୟ ଛେଦନ କରନ୍ତୁ ।

ସଞ୍ଜୟ ବୋଇଲେ—ଯୁଧିଷ୍ଠିର ଏହିପରି ପଚାରନ୍ତେ ଭଗବାନ୍ ମହର୍ଷି ତାଙ୍କୁ ଏହି ଆଶ୍ୱାସବାକ୍ୟ କହିଲେ, ହେ ନୃପ ! ପୂର୍ବକାଳରେ ନାରଦ ଋଷି ରାଜା ଅକମ୍ପନଙ୍କୁ ଯାହା କହିଥିଲେ, ପଣ୍ଡିତମାନେ ଏପରି ସ୍ଥଳରେ ସେହି ପୁରାତନ ଇତିହାସକୁ ଉଦାହରଣ ରୂପରେ କୀର୍ତ୍ତନ

* ଧାତ୍ୱର୍ଥ ଅନୁସାରେ ମୃତ୍ୟୁ ଶବ୍ଦର ଅର୍ଥ ପୁରୁଷର ତନୁତ୍ୟାଗ । ଏତଦ୍ଦ୍ୱାରା ସ୍ୱାତନ୍ତ୍ର୍ୟ ପ୍ରତୀତ ହେଉଥିବାରୁ ମୃତ୍ୟୁ ବିଷୟରେ ପୁରୁଷ ସ୍ୱତନ୍ତ୍ର କିପରି ?

କରିଥାଆନ୍ତି । ୨୦ । ହେ ରାଜେନ୍ଦ୍ର ! ଆମ୍ଭ ବିବେଚନାରେ ସେହି ରାଜା ଅକମ୍ପନ ମଧ୍ୟ ଇହଲୋକରେ ଅସହ୍ୟତମ ପୁତ୍ରଶୋକ ପ୍ରାପ୍ତ ହୋଇଥିଲେ । ୨୧ । ଆମ୍ଭେ ସେହି ଉପାଖ୍ୟାନ ପ୍ରତିପାଦିତ ମୃତ୍ୟୁର ଉତ୍ପତ୍ତି ବିବରଣ କୀର୍ତ୍ତନ କରିବୁଁ; ତାହା ଶ୍ରବଣ କଲେ ତୁମ୍ଭେ ସ୍ନେହ-ନିବନ୍ଧନ ଦୁଃଖରୁ ମୁକ୍ତ ହୋଇ ପାରିବ । ୨୨ । ହେ ତାତ ! ଆମ୍ଭେ ଏହି ପୁରାବୃତ୍ତ କୀର୍ତ୍ତନ କରୁଅଛୁଁ, ତୁମ୍ଭେ ଅବହିତ ହୋଇ ଶ୍ରବଣ କର । ଏହି ଆଖ୍ୟାନ ପୁଷ୍ଟି ଓ ଆୟୁବୃଦ୍ଧିକର, ଶୋକ ଓ ଶତ୍ରୁବିନାଶନ, ପବିତ୍ର ଏବଂ ମଙ୍ଗଳତମ ଅଟେ । ହେ ମହାରାଜ ! ଏହି ପ୍ରିୟ ପବିତ୍ର ରମ୍ୟ ଉପାଖ୍ୟାନ ପାଠ କଲେ ବେଦାଧ୍ୟୟନର ତୁଲ୍ୟ ଫଳପ୍ରାପ୍ତି ହୁଏ । ରାଜ୍ୟ ଓ ଆୟୁଷ୍ମାନ୍ ପୁତ୍ରପ୍ରାର୍ଥୀ ନୃପବରମାନଙ୍କର ଏହା ନିତ୍ୟ ପ୍ରାତଃକାଳରେ ଶ୍ରବଣୀୟ । ୨୫ ।

ପୂର୍ବେ ସତ୍ୟଯୁଗରେ ଅକମ୍ପନ ନାମରେ ରାଜା ଥିଲେ । ସେ ସଂଗ୍ରାମମଧ୍ୟରେ ଶତ୍ରୁମାନଙ୍କର ବଶବର୍ତ୍ତୀ ହେଲେ । ତାହାଙ୍କର ହରି ନାମରେ ଏକଗୋଟି ପୁତ୍ର ଥିଲେ । ହରି ବଳରେ ନାରାୟଣଙ୍କ ତୁଲ୍ୟ, ଶ୍ରୀମାନ୍, ଅସ୍ତ୍ରକୁଶଳ, ମେଧାବୀ ଓ ଯୁଦ୍ଧରେ ଇନ୍ଦ୍ରସମ ବଳବାନ୍ ଥିଲେ । ୨୭ । ସେ ବହୁ ପ୍ରକାରେ ଶତ୍ରୁପରିବୃତ ହୋଇ ରଣମଧ୍ୟରେ ବହୁ ଯୋଦ୍ଧା ଓ ଗଜମାନଙ୍କ ଉପରକୁ ସହସ୍ର ସହସ୍ର ଶର ନିକ୍ଷେପ କଲେ । ୨୮ । ଶତ୍ରୁତାପପ୍ରଦ ରାଜପୁତ୍ର ହରି ଯୁଦ୍ଧମଧ୍ୟରେ ଦୁଷ୍କର କର୍ମ କରି ପରିଶେଷରେ ଶତ୍ରୁମାନଙ୍କ ଦ୍ୱାରା ସେନାମଧ୍ୟରେ ନିହତ ହୋଇ ପତିତ ହେଲେ । ୨୯ । ରାଜା ଅକମ୍ପନ ଅଶୌଚାନ୍ତେ ତାହାଙ୍କର ଶ୍ରାଦ୍ଧାଦି କଲେ, ଅନନ୍ତର ଦିବାରାତ୍ରି ଶୋକଚିନ୍ତା କଲେ । କିନ୍ତୁ କୌଣସିରୂପେ ଆତ୍ମସୁଖ ଲାଭ କରି ପାରିଲେ ନାହିଁ । ୩୦ ।

ହେ ଯୁଧିଷ୍ଠିର ! ଅନନ୍ତର ଦେବର୍ଷି ନାରଦ ତାହାଙ୍କର ପୁତ୍ର-ବିନାଶଜନିତ ଶୋକ ଅବଗତ ହୋଇ ତାହାଙ୍କ ସମୀପକୁ ଆଗମନ କଲେ । ୩୧ । ମହାଭାଗ ରାଜା ଅକମ୍ପନ ଦେବର୍ଷିସତ୍ତମ ନାରଦଙ୍କୁ ଦେଖି ଯଥାବିଧି ପୂଜାପୂର୍ବକ କଥାରମ୍ଭ କଲେ । ୩୨ । ଯେପରି ଯୁଦ୍ଧ ହୋଇଥିଲା, ସେଥିରେ ଯେପରି ଶତ୍ରୁମାନଙ୍କର ଜୟ ଓ ଯେଉଁପରି ପୁତ୍ରର ବିନାଶ ହୋଇଥିଲା, ତତ୍ସମସ୍ତ ବିସ୍ତାରକ୍ରମେ କୀର୍ତ୍ତନ କରି କହିଲେ, ଆମ୍ଭର ପୁତ୍ର

ମହାବୀର୍ଯ୍ୟବାନ୍ ଇନ୍ଦ୍ର ଓ ବିଷ୍ଣୁସମ ତେଜସ୍ୱୀ ଓ ବଳୀ ଥିଲେ । ବହୁ ଶତ୍ରୁ ମିଳିତ ହୋଇ ପରାକ୍ରମ ଦ୍ୱାରା ତାହାଙ୍କୁ ସଂହାର କରିଅଛନ୍ତି । ୩୪ । ହେ ଭଗବନ୍ ! ମୃତ୍ୟୁ କିଏ ? ମୃତ୍ୟୁର ବଳବୀର୍ଯ୍ୟ ପୌରୁଷ ବା କି ପ୍ରକାର ? ହେ ସୁଧୀବର ! ଆମ୍ଭେ ଆପଣଙ୍କ ନିକଟରୁ ଏହା ବିଶେଷ-ରୂପେ ଶ୍ରବଣ କରିବାକୁ ଇଚ୍ଛା କରୁଁ । ୩୫ ।

ତାହାଙ୍କର ସେହି କଥା ଶ୍ରବଣ କରି ବରଦ ପ୍ରଭୁ ନାରଦ ପୁତ୍ର-ଶୋକ-ନାଶକ ଏହି ମହତ୍ ଆଖ୍ୟାନ କୀର୍ତ୍ତନ କଲେ । ୩୬ । ନାରଦ କହିଲେ, ହେ ବସୁଧାଧିପ ମହାବାହୋ ! ଆମ୍ଭେ ଗୋଟିଏ ଆଖ୍ୟାନ ସବିସ୍ତର ଶ୍ରବଣ କରିଅଛୁଁ, ତାହା ଆପଣ ଶ୍ରବଣ କରନ୍ତୁ । ୩୭ । ମହାତେଜା ପ୍ରଜାପତି ବ୍ରହ୍ମା ପ୍ରଥମ ସୃଷ୍ଟିକାଳରେ ପ୍ରଜାମାନଙ୍କୁ ସୃଷ୍ଟି କଲେ । ଅନନ୍ତର ଅନନ୍ତ ଜଗତକୁ କ୍ରମଶଃ ପ୍ରଜାପୂର୍ଣ୍ଣ ହେବାର ଦେଖି ପ୍ରଜାସଂହାର ନିମନ୍ତେ ଚିନ୍ତା କଲେ । ହେ ବସୁଧାଧିପ ! ସେ ଚିନ୍ତା କରି ସୁଦ୍ଧା ସଂହାରର କୌଣସି ଉପାୟ ନିଶ୍ଚୟ କରିପାରିଲେ ନାହିଁ । ଅନନ୍ତର ତାହାଙ୍କର ରୋଷ ବଶରୁ ଆକାଶରୁ ଅଗ୍ନି ଉତ୍ପନ୍ନ ହେଲା । ସେହି ଅଗ୍ନି ଜଗତ୍ ଦାହ କରିବାକୁ ଇଚ୍ଛୁକ ହୋଇ ସମୁଦାୟ ଦିଗରେ ଅନ୍ତର୍ଦ୍ଦେଶରେ ପରିବ୍ୟାପ୍ତ ହେଲା । ୪୦ ।

ଅନନ୍ତର ଭଗବାନ୍ ପ୍ରଭୁ ସ୍ୱର୍ଗଭୂମି ଓ ଆକାଶ ପ୍ରଭୃତି ସମସ୍ତ ଚରାଚର ଜଗତକୁ ଜ୍ୱାଳାମାଳାରେ ସମାକୁଳ କରି ଦହନ କରିବାରେ ପ୍ରବୃତ୍ତ ହେଲେ । ୪୧ । ସ୍ଥାବର ଜଙ୍ଗମ ଭୂତନିଚୟ ତାହାଙ୍କର ମହାକ୍ରୋଧାଗ୍ନିରେ ନିହତ ହୋଇ ନାଶିତ ହେଲେ । ୪୨ । ଅନନ୍ତର ଜଟାଜୂଟମଣ୍ଡିତ ଭୂପତି ଭଗବାନ୍ ଭବାନୀପତି ମହାଦେବ ହର ପରମେଷ୍ଠୀ ଦେବ ବ୍ରହ୍ମାଙ୍କର ଶରଣାପନ୍ନ ହେଲେ । ୪୩ । ମହାଦେବ ପ୍ରଜାହିତାର୍ଥେ ତାହାଙ୍କ ନିକଟରେ ଉପସ୍ଥିତ ହୁଅନ୍ତେ ଜ୍ୱଳନ୍ତ ଅଗ୍ନିସଦୃଶ ମହାମୁନି ପରମଦେବ ବ୍ରହ୍ମା ତାହାଙ୍କୁ ବୋଇଲେ— ହେ ପୁତ୍ର ! ହେ ସ୍ଥାଣୁ ! ତୁମ୍ଭେ ସ୍ୱେଚ୍ଛାରେ ଜନ୍ମଗ୍ରହଣ କରିଅଛ । ତୁମ୍ଭେ ବରପ୍ରାପ୍ତିର ଯୋଗ୍ୟପାତ୍ର ! ଅତଏବ ତୁମ୍ଭର ଯାହା ଇଚ୍ଛା ତାହା ବ୍ୟକ୍ତ କର, ଆମ୍ଭେ ତାହା ପୂରଣ କରିବୁଁ । ୪୫ ।

# ୫୩ ଅଧ୍ୟାୟ

ମହାଦେବ ବୋଇଲେ—ହେ ବିଭୋ ! ତୁମ୍ଭେ ପ୍ରଜାସୃଷ୍ଟି ନିମନ୍ତେ ଯତ୍ନ କରିଥିଲ ଓ ତୁମ୍ଭେ ନାନାବିଧ ପ୍ରାଣିମାନଙ୍କୁ ସୃଷ୍ଟି କରି ପରିବର୍ଦ୍ଧିତ କରିଅଛ । ଏକ୍ଷଣି ସେହିସବୁ ପ୍ରଜାଙ୍କୁ ତୁମ୍ଭର କ୍ରୋଧାନଳରେ ଦଗ୍ଧ ହେବାର ଦେଖି ସେମାନଙ୍କ ପ୍ରତି ଆମ୍ଭର ଦୟା ହେଉଅଛି । ଅତଏବ ହେ ଭଗବନ୍ ! ହେ ପ୍ରଭୋ ! ତୁମ୍ଭେ ପ୍ରସନ୍ନ ହୁଅ । ୨ ।

ବ୍ରହ୍ମା ବୋଇଲେ—ହେ ମହାଦେବ ! ଆମ୍ଭର ପ୍ରଜା ସଂହାର କରିବାର ଇଚ୍ଛା ନାହିଁ । ତୁମ୍ଭେ ଯାହା କହୁଅଛ ତାହା ହେବ ; ପରନ୍ତୁ ପୃଥିବୀର ହିତାର୍ଥେ ଆମ୍ଭର କ୍ରୋଧ ହୋଇଅଛି । ୩ । ଏହି ବସୁମତୀ ଦେବୀ ବର୍ଦ୍ଧିତ ପ୍ରଜାସମୂହର ଭାରଦ୍ୱାରା ପୀଡ଼ିତା, ସଂହାର ନିମନ୍ତେ ଆମ୍ଭଙ୍କୁ ଅନୁରୋଧ କରିଅଛନ୍ତି ; କିନ୍ତୁ ଆମ୍ଭେ ଏହି ଅନନ୍ତ ଜଗତର ସଂହାର ନିମିତ୍ତ କିଛି ଉପାୟ ସ୍ଥିର କରି ପାରିଲୁନାହିଁ । ସେହି ହେତୁରୁ ଆମ୍ଭର କ୍ରୋଧ ଉପସ୍ଥିତ ହେଲା । ୫ ।

ରୁଦ୍ର ବୋଇଲେ—ହେ ବ୍ରହ୍ମନ୍ ବସୁଧାଧିପ ! ତୁମ୍ଭେ ଆମ୍ଭ ପ୍ରତି ପ୍ରସନ୍ନ ହୁଅ, ରୋଷ ସଂହାର କର । ସ୍ଥାବର ଜଙ୍ଗମ ପ୍ରଜାମାନେ ବିନଷ୍ଟ ହେଉନ୍ତୁ । ୬ । ହେ ଭଗବନ୍ ! ତୁମ୍ଭ ପ୍ରସାଦରେ ଏହି ଜଗତ୍ ଭବିଷ୍ୟତ୍, ଅତୀତ ଓ ବର୍ତ୍ତମାନ - ଏହି ତିନି କାଳରେ ଅବସ୍ଥିତ ହେଉ । ୭ । ତୁମ୍ଭେ କ୍ରୋଧପ୍ରଦୀପ୍ତ ହୋଇ କ୍ରୋଧରୁ ଅଗ୍ନି ସୃଷ୍ଟି କରିଅଛ । ସେହି ଅଗ୍ନି ପର୍ବତ, ବୃକ୍ଷ, ସରିତ୍, ପଲ୍ୱଳ, ତୃଣ ଓ ସମସ୍ତ ଉପଳ ଦଗ୍ଧ କରୁଅଛି । ସ୍ଥାବର-ଜଙ୍ଗମାତ୍ମକ ସମୁଦାୟ ଜଗତ୍ ଭସ୍ମସାତ୍ ହେଉଅଛି । ହେ ଭଗବନ୍ ! ତୁମ୍ଭେ ଜଗତ୍ ପ୍ରତି ପ୍ରସନ୍ନ ହୁଅ, ତୁମ୍ଭର ରୋଷ ନ ରହୁ, ଏହି ଆମ୍ଭର ପ୍ରାର୍ଥନା । ୧୦ । ହେ ଦେବ ! ସମୁଦାୟ ଜଗତ୍ ପ୍ରାୟ ନଶ୍ୱର, ଅତଏବ ଏହା ନିଶ୍ଚୟ ନଷ୍ଟ ହେବ ; କିନ୍ତୁ ସମ୍ପ୍ରତି ତୁମ୍ଭ ହେତୁରୁ ଯାହା ଏହି ଜଗତ୍ ନଷ୍ଟ ହେଉଅଛି, ତାହା ନ ହେଉ, ଏହି ତେଜ ସମ୍ବରଣ କର । ୧୧ । ହେ ଦେବ ! ତୁମ୍ଭେ ପ୍ରଜାମାନଙ୍କ ହିତକାମନାର୍ଥେ ସମ୍ୟକ୍ ପ୍ରକାରରେ ଦୃଷ୍ଟି-

ପାତ କର ; ଯହିଁରେ ଏହି ସମସ୍ତ ପ୍ରାଣିମାନେ ରକ୍ଷା ପାଆନ୍ତି, ତାହା କର । ୧୨ । ଏହି ପ୍ରଜାମାନେ ଯେପରି ଉତ୍ପାଦନଶକ୍ତିରହିତ ହୋଇ ଅଭାବ-ପ୍ରାପ୍ତ ନ ହୁଅନ୍ତି, ତାହା କର । ହେ ଲୋକନାଥ ! ତୁମ୍ଭେ ଆମ୍ଭଙ୍କୁ ଏହି ଜଗତ୍ ସଂହାରରେ ନିଯୁକ୍ତ କରି ନିଜେ ଲୋକବିନାଶ କରୁଅଛ । ୧୩ । ତୁମ୍ଭେ ଆମ୍ଭ ପ୍ରତି ପ୍ରସନ୍ନ ହୋଇଅଛ, ଏଥିନିମନ୍ତେ ଆମ୍ଭେ ଏହି କଥା କହୁଅଛୁଁ ଯେ, ଏହି ସ୍ଥାବର ଜଙ୍ଗମ ଜଗତ୍ ବିନଷ୍ଟ ନ ହେଉ । ୧୪ ।

ନାରଦ ବୋଇଲେ—ବ୍ରହ୍ମା ପ୍ରଜାହିତଜନକ ଏହି ବଚନ ଶ୍ରବଣ କରି ପୁନର୍ବାର ଆତ୍ମତେଜଃ ସ୍ୱୀୟ ଅନ୍ତରାତ୍ମାରେ ଧାରଣ କଲେ । ୧୫ । ଅନନ୍ତର ଲୋକପୂଜିତ ପ୍ରଭୁ ଭଗବାନ୍ ବ୍ରହ୍ମା ଅଗ୍ନିକୁ ଉପସଂହାର କରି ଜଗତର ସୃଷ୍ଟି ଓ ସଂହାର କୀର୍ତ୍ତନ କଲେ । ୧୬ । ମହାତ୍ମା ବ୍ରହ୍ମା ଯେତେବେଳେ ରୋଷାଗ୍ନି ଉପସଂହାର କଲେ, ସେତେବେଳେ ତାହାଙ୍କର ସମସ୍ତ ଇନ୍ଦ୍ରିୟଦ୍ୱାରରୁ ଗୋଟିଏ ନାରୀ ପ୍ରାଦୁର୍ଭୂତ ହେଲା । ୧୭ । ହେ ରାଜେନ୍ଦ୍ର ! ସେହି ନାରୀଙ୍କ ଶରୀର କୃଷ୍ଣ, ରକ୍ତ ଓ ପିଙ୍ଗଳମିଶ୍ରିତବର୍ଣ୍ଣ, ତାହାଙ୍କର ଜିହ୍ୱା, ମୁଖ ଓ ଲୋଚନ ରକ୍ତବର୍ଣ୍ଣ ଓ ତାହାଙ୍କର କୁଣ୍ଡଳାଦି ସମସ୍ତ ଅଳଙ୍କାର କାଞ୍ଚନମୟ । ୧୮ । ସେ ନାରୀ ସେହିପ୍ରକାରେ ନିଃସୃତା ହୋଇ ବିଶ୍ୱେଶ୍ୱର ଶିବ ଓ ବ୍ରହ୍ମାଙ୍କୁ ଅବଲୋକନପୂର୍ବକ ହାସ୍ୟମୁଖରେ ଦକ୍ଷିଣ ଦିକ୍ ଆଶ୍ରୟ କଲେ । ୧୯ । ହେ ମହୀପାଳ ! ଅନନ୍ତର ଜଗତ୍ ସୃଷ୍ଟିସଂହାରକର୍ତ୍ତା ବ୍ରହ୍ମା ତାହାଙ୍କୁ ମୃତ୍ୟୁ ବୋଲି ଆହ୍ୱାନପୂର୍ବକ କହିଲେ,—ତୁମ୍ଭେ ପ୍ରଜାସଂହରଣ କର ! ତୁମ୍ଭେ ସଂହାରବୁଦ୍ଧିରେ ଆମ୍ଭ କ୍ରୋଧରୁ ଉତ୍ପନ୍ନ ହୋଇଅଛ ; ଅତଏବ ଆମ୍ଭର ଆଦେଶରେ ତୁମ୍ଭେ ସମସ୍ତ ସ୍ଥାବର ଜଙ୍ଗମ ସଂହାର କର । ଏହା ତୁମ୍ଭର ଶ୍ରେୟ ହେବ ।

କମଳଲୋଚନା ଅବଳା ମୃତ୍ୟୁ ବ୍ରହ୍ମାଙ୍କ କର୍ତ୍ତୃକ ଏହିରୂପ ଆଦିଷ୍ଟ ହୋଇ ଅତିଶୟ ଚିନ୍ତାପୂର୍ବକ ସ୍ୱ-ସ୍ୱରରେ ରୋଦନ କଲେ । ପିତାମହ ବ୍ରହ୍ମା ସର୍ବପ୍ରାଣୀଙ୍କର ହିତନିମନ୍ତେ ଦୁଇ ହସ୍ତଦ୍ୱାରା ତାହାଙ୍କର ନେତ୍ରଜଳ ଗ୍ରହଣ କଲେ ଓ ତାହାଙ୍କୁ ଅନୁନୟ କଲେ । ୨୦ ।

---

# ୫୪ ଅଧ୍ୟାୟ

ନାରଦ କହିଲେ—ସେହି ଅବଳା ଦୁଃଖ ଦୂର କରି ଅବନତା ଲତାସଦୃଶ କୃତାଞ୍ଜଳିପୁଟ ହୋଇ ପ୍ରଜାପତିଙ୍କୁ କହିଲେ, ହେ ବାଗ୍ମିପ୍ରବର! ତୁମ୍ଭେ କି ନିମିତ୍ତ ଈଦୃଶୀ ନାରୀ ସୃଷ୍ଟି କଲ ? ମୁଁ ଜାଣୁଁ ଜାଣୁଁ କପରି ଅହିତ ଓ କ୍ରୂର କର୍ମମାନ କରିବି ? ହେ ଭଗବନ୍! ଆମ୍ଭେ ଏହି ଅଧର୍ମ କାର୍ଯ୍ୟ କରିବାକୁ ଭୟ କରୁଅଛୁଁ । ହେ ପ୍ରଭୋ! ତୁମ୍ଭେ ପ୍ରସନ୍ନ ହୁଅ। ଯେଉଁମାନଙ୍କର ପ୍ରିୟ, ବୟସ୍ୟ, ପୁତ୍ର, ଭ୍ରାତା, ମାତାପିତା ଓ ପତି—ଏମାନେ ମୃତ ହେବେ, ସେମାନେ ସେହି ପ୍ରିୟ ବୟସ୍ୟାଦି ନିମିତ୍ତ ଆମ୍ଭର ଅନିଷ୍ଟ ଚିନ୍ତା କରିବେ; ଆମ୍ଭେ ସେମାନଙ୍କୁ ଭୟ କରୁଅଛୁଁ । ହେ ଭଗବନ୍! ସେମାନେ ଦୀନଭାବରେ ରୋଦନ କରି ଅଶ୍ରୁପାତ କରିବେ, ଆମ୍ଭେ ସେହି ଅଶ୍ରୁବିନ୍ଦୁକୁ ଭୟ କରି ତୁମ୍ଭର ଶରଣାପନ୍ନ ହେଉଅଛୁଁ । ହେ ସୁରୋତ୍ତମ! ଆମ୍ଭେ ଯମସଦୃଶକୁ ଯାଇ ପ୍ରଜାବିନାଶ କରିବୁ ନାହିଁ। ହେ ଲୋକ-ପିତାମହ! ଆମ୍ଭେ କୃତାଞ୍ଜଳି ହୋଇ ନତମସ୍ତକରେ ତୁମ୍ଭର ପ୍ରସନ୍ନତା ଭିକ୍ଷା କରୁଅଛୁଁ ଓ ପ୍ରାର୍ଥନା କରୁଅଛୁଁ ଯେ, ତୁମ୍ଭ ପ୍ରସାଦରୁ ଆମ୍ଭେ ତପସ୍ୟାର ଅନୁଷ୍ଠାନ କରିବୁଁ ।

ହେ ଭଗବନ୍ ପ୍ରଭୋ! ତୁମ୍ଭେ ଆମ୍ଭ ପ୍ରତି ପ୍ରସନ୍ନ ହୋଇ ଆମ୍ଭଙ୍କୁ ଏହି ବର ଦାନ କର। ୭। ତୁମ୍ଭେ ଅନୁମତି ଦେଲେ ଆମ୍ଭେ ଉତ୍ତମ ଧେନୁକାଶ୍ରମକୁ ଗମନ କରିବୁଁ । ସେଠାରେ ତୁମ୍ଭର ଆରାଧନାରେ ରତ ହୋଇ ତୀବ୍ର ତପସ୍ୟା କରିବୁଁ । ୮ । ହେ ଦେବେଶ! ଆମ୍ଭେ ବିଳାପ-କାରୀ ପ୍ରାଣିମାନଙ୍କର ପରମପ୍ରିୟ ପ୍ରାଣକୁ ହରଣ କରିପାରିବୁ ନାହିଁ। ଆମ୍ଭଙ୍କୁ ଅଧର୍ମରୁ ରକ୍ଷା କର। ୯। ବ୍ରହ୍ମା ବୋଇଲେ, ହେ ମୃତ୍ୟୁ! ଆମ୍ଭେ ପ୍ରଜାସଂହାର ନିମନ୍ତେ ସଂକଳ୍ପ କରି ତୁମ୍ଭଙ୍କୁ ସୃଷ୍ଟି କରିଅଛୁଁ । ଯାଅ, ତୁମ୍ଭେ ସମସ୍ତପ୍ରଜାଙ୍କୁ ସଂହାର କର, ଏ ବିଷୟରେ ତୁମ୍ଭର ବିଚାର କରିବାର କିଛି ନାହିଁ, ଏହା ଅବଶ୍ୟ ହେବ, ଏହା ଅନ୍ୟଥା ହେବାର ନୁହେଁ। ତୁମ୍ଭେ ଆମ୍ଭର ଏହି କଥା ପାଳନ କଲେ ଲୋକରେ ଅନିନ୍ଦିତା ହେବ। ୧୧।

ନାରଦ କହିଲେ—ବ୍ରହ୍ମା ମୃତ୍ୟୁକୁ ଏହି ପ୍ରକାରେ କହିବାରୁ ମୃତ୍ୟୁ ଭୀତା ଓ କୃତାଞ୍ଜଳି ହୋଇ ଭଗବାନ୍ ବ୍ରହ୍ମାଙ୍କ ସମ୍ମୁଖରେ ଅବସ୍ଥିତ ହୋଇ ରହିଲେ ଓ ପ୍ରଜାମାନଙ୍କର ହିତାର୍ଥିନୀ ହୋଇ ସଂହାର କାର୍ଯ୍ୟରେ ମନୋନିବେଶ କଲେ ନାହିଁ । ୧୨ । ପ୍ରଜାପତି ଦେବ ପିତାମହ ସେହି ସମୁଦାୟ ଲୋକଙ୍କ ପ୍ରତି ଦୃଷ୍ଟିପାତ କରି ଈଷତ୍ ହାସ୍ୟ କଲେ । ସେତେବେଳେ ସମସ୍ତ ଲୋକେ ତାହାଙ୍କର ପ୍ରସନ୍ନ ଦୃଷ୍ଟି ଦ୍ୱାରା ପୂର୍ବବତ୍ ପ୍ରକୃତିସ୍ଥ ହେଲେ । ୧୪ ।

ସେହି ଅପରାଜିତ ଧୀମାନ୍ ଭଗବାନ୍ ବ୍ରହ୍ମାଙ୍କର ରୋଷ ଶାନ୍ତ ହୁଅନ୍ତେ ମୃତ୍ୟୁନାମ୍ନୀ କନ୍ୟା ତାହାଙ୍କ ସମୀପରୁ ପ୍ରସ୍ଥାନ କଲେ । ୧୫ । ହେ ରାଜେନ୍ଦ୍ର ! ସେହି ଅବଳା ପ୍ରଜାସଂହାରରେ ଅସ୍ୱୀକୃତା ହୋଇ ସତ୍ୱର ଧେନୁକାଶ୍ରମକୁ ଗମନ କଲେ । ୧୭ । ତତ୍ପରେ ସେ ପ୍ରଜା-ହିତୈଷିଣୀ ହୋଇ ପ୍ରିୟ ଇନ୍ଦ୍ରିୟମାନଙ୍କୁ ବିଷୟରୁ ନିବୃତ୍ତ କରି ସେହି ଧେନୁକାଶ୍ରମରେ ଏକ ପାଦରେ ସ୍ଥିତିପୂର୍ବକ ଏକବିଂଶତିପଦ୍ମସଂଖ୍ୟକ ବତ୍ସର ଘୋରତର ତୀବ୍ର ତପସ୍ୟାର ଅନୁଷ୍ଠାନ କଲେ । ୧୮ । ଏହାପରେ ପୁନର୍ବାର ଏକପାଦରେ ସ୍ଥିତ ହୋଇ ନବୋବିଂଶତିପଦ୍ମସଂଖ୍ୟକ ବତ୍ସର ଘୋରତର ତୀବ୍ର ତପସ୍ୟା ଅନୁଷ୍ଠାନ କଲେ । ୧୯ ।

ତତ୍ପରେ ସେ ଅୟୁତପଦ୍ମପରିମିତ ବତ୍ସର ମୃଗମାନଙ୍କ ସହି ବିଚରଣ କଲେ । ପରେ ପାପରହିତ ହୋଇ ପୁନର୍ବାର ଶୀତଳଜଳପୂର୍ଣ୍ଣା ପବିତ୍ରା ନନ୍ଦା ତୀର୍ଥକୁ ଗମନ କରି ନିୟମଧାରଣପୂର୍ବକ ଜଳରେ ଅବସ୍ଥାନ ଦ୍ୱାରା ଅଷ୍ଟସହସ୍ର ବତ୍ସର ଅତିବାହିତ କଲେ । ୨୧ । ତତ୍ପରେ ପୁନର୍ବାର ନିୟମାବଲମ୍ବନପୂର୍ବକ ପ୍ରଥମରେ ପୁଣ୍ୟ କୌଶିକୀକୁ ଗମନ କରି ସେଠାରେ କେବଳ ବାୟୁଭକ୍ଷଣ ଓ ଜଳପାନ ଦ୍ୱାରା ନିୟମାଚରଣ କଲେ । ୨୨ । ସେହି ପବିତ୍ରା କନ୍ୟା ପଞ୍ଚଗଙ୍ଗ ଓ ବେତସ ତୀର୍ଥରେ ବହୁବିଧ ତପୋ-ବିଶେଷ ଦ୍ୱାରା ଶରୀରକୁ ଶୀର୍ଣ୍ଣ କଲେ । ୨୩ । ତତ୍ପରେ ଗଙ୍ଗା ଓ ପ୍ରଧାନ ତୀର୍ଥ ମହାମେରୁକୁ ଆଶ୍ରୟ କରି ପ୍ରାଣାୟାମପରାୟଣା ଓ ପ୍ରସ୍ତରସଦୃଶ ନିଶ୍ଚେଷ୍ଟ ହୋଇ ରହିଲେ। ୨୪। ଯେଉଁ ସ୍ଥାନରେ ପୂର୍ବେ ଦେବତାମାନେ ଯଜ୍ଞ କରି-ଥିଲେ, ସେହି ହିମାଳୟ ଶୃଙ୍ଗକୁ ପୁନର୍ବାର ସେହି ପରମଶୋଭନା କନ୍ୟା

ଗମନ କରି ନିଖର୍ବସଂଖ୍ୟକ ବର୍ଷ କେବଳ ଅଙ୍ଗୁଷ୍ଠ ଉପରେ ନିର୍ଭର କରି ଅବସ୍ଥାନ କଲେ । ୨୫ । ତତ୍ପରେ ପୁଷ୍କର, ଗୋକର୍ଣ୍ଣ, ନୈମିଷ ଓ ମଳୟ ତୀର୍ଥକୁ ଗମନପୂର୍ବକ ଅଭୀଷ୍ଟ ନିୟମାନୁଷ୍ଠାନ କରି ସ୍ୱୀୟ ଦେହକୁ କ୍ଷୟ କଲେ । ୨୬ । ହେ ଭାରତ ! ସେହି କନ୍ୟା ଏହି ପ୍ରକାରେ ଅନ୍ୟ ଦେବତାଙ୍କର ଆରାଧନା ନ କରି ନିରନ୍ତର ବ୍ରହ୍ମାଙ୍କ ପ୍ରତି ଦୃଢ଼ଭକ୍ତିପୂର୍ବକ କେବଳ ତାହାଙ୍କୁ ଆରାଧନା ଦ୍ୱାରା ସନ୍ତୁଷ୍ଟ କଲେ । ୨୭ ।

ହେ ରାଜନ୍ ! ଅନନ୍ତର ଲୋକପିତା ଅବ୍ୟୟାତ୍ମା ବ୍ରହ୍ମା ସମସ୍ତ ଲୋକ ଓ ସେହି କନ୍ୟା ପ୍ରତି ସନ୍ତୁଷ୍ଟ ହୋଇ ହୃଷ୍ଟଚିତ୍ତରେ ତାହାଙ୍କୁ କହିଲେ, ହେ ମୃତ୍ୟୁ ! ତୁମ୍ଭେ କି ହେତୁ ଅତ୍ୟନ୍ତ ତପସ୍ୟାଚରଣ କରୁଅଛ ? ତହୁଁ ମୃତ୍ୟୁ ଭଗବାନ୍ ପିତାମହଙ୍କୁ ପୁନର୍ବାର କହିଲେ, ହେ ପ୍ରଭୋ, ସର୍ବେଶ୍ୱର, ଦେବ ! ସ୍ୱସ୍ଥ ଓ ନୀରୁଜ୍ୟମାନ ପ୍ରଜାମାନଙ୍କର ବିନାଶ ଆମ୍ଭଙ୍କୁ ଯେପରି କରିବାକୁ ନ ହୁଏ, ଏହି ବର ଆମ୍ଭେ ଆପଣଙ୍କ ନିକଟରୁ ପ୍ରାର୍ଥନା କରୁଅଛୁ । ୩୦ । ଆମ୍ଭେ ଅଧର୍ମଭୟରେ ଭୀତା ହୋଇ ତପସ୍ୟା ଅବଲମ୍ବନ କରିଅଛୁଁ । ହେ ମହାଭାଗ ! ଆପଣ ଏହି ଭୀତା ପ୍ରତି ଅକ୍ଷୟ ଅଭୟ ଦାନ କରନ୍ତୁ । ୩୧ । ଆମ୍ଭେ ନିରପରାଧା ନାରୀ; ଆମ୍ଭେ ଆର୍ତ୍ତ ହୋଇ ପ୍ରାର୍ଥନା କରିଅଛୁଁ । ଆପଣ ଆମ୍ଭର ଆଶ୍ରୟ ହୁଅନ୍ତୁ ।

ଅନନ୍ତର ଭୂତ-ଭବ୍ୟ-ଭବିଷ୍ୟତ୍‌ବିତ୍ ପ୍ରଭୁ ପିତାମହ ସେହି ନାରୀକୁ କହିଲେ,—ହେ ମୃତ୍ୟୁ ! ତୁମ୍ଭେ ଏହି ପ୍ରଜା ସଂହାର କଲେ ତୁମ୍ଭର ଅଧର୍ମ ହେବ ନାହିଁ । ହେ ଭଦ୍ରେ ! ଆମ୍ଭର ବାକ୍ୟ କଦାଚ ମିଥ୍ୟା ହେବ ନାହିଁ ।୩୩। ଅତଏବ ହେ କଲ୍ୟାଣି ! ତୁମ୍ଭେ ଜରାୟୁଜ, ଅଣ୍ଡଜ, ସ୍ୱେଦଜ ଓ ଉଦ୍‌ଭିଜ୍ଜ—ଏହି ଚତୁର୍ବିଧ ପ୍ରଜା ସଂହାର କର । ଏହା କଲେ ସନାତନ ଧର୍ମ ତୁମ୍ଭଙ୍କୁ ପବିତ୍ର କରିବେ । ୩୪ । ଲୋକପାଳ ଯମ ଓ ବ୍ୟାଧିମାନେ ତୁମ୍ଭର ସହାୟ ହେବେ ଏବଂ ଆମ୍ଭେ ଓ ଦେବତାମାନେ ତୁମ୍ଭଙ୍କୁ ବରଦାନ କରିବୁଁ ଯେ, ତୁମ୍ଭେ ପାପରୁ ମୁକ୍ତା ଓ ରଜୋଗୁଣରୁ ରହିତା ହୋଇ ଖ୍ୟାତି-ପ୍ରାପ୍ତା ହେବ । ହେ ମହାରାଜ ! ମୃତ୍ୟୁରୂପା କନ୍ୟାଙ୍କୁ ବ୍ରହ୍ମା ଏହିରୂପେ କହନ୍ତେ ସେହି କନ୍ୟା ନତମସ୍ତକରେ କୃତାଞ୍ଜଳିପୁଟ ହୋଇ ବିଭୁ ବ୍ରହ୍ମାଙ୍କୁ ପ୍ରସନ୍ନ କରି ପୁନର୍ବାର କହିଲେ, ହେ ପ୍ରଭୋ ! ଯଦି ଏହି କର୍ମ ଆମ୍ଭ

ବ୍ୟତିରେକେ ହୋଇ ନ ପାରେ, ତେବେ ଆପଣଙ୍କ ଆଜ୍ଞା ଆମ୍ଭେ ଶିରୋଧାର୍ଯ୍ୟ କଲୁଁ, କିନ୍ତୁ ଆମ୍ଭେ ଯାହା ନିବେଦନ କରୁଅଛୁଁ, ତାହା ଶ୍ରବଣ କରନ୍ତୁ । ଲୋଭ, କ୍ରୋଧ, ଅସୂୟା, ଈର୍ଷା, ଦ୍ରୋହ, ମୋହ, ନିର୍ଲଜ୍ଜତା ଓ ପରସ୍ପରର ପରୁଷ ବାକ୍ୟ—ଏମାନେ ପୃଥକ୍ ପୃଥକ୍‌ରୂପେ ପ୍ରାଣିମାନଙ୍କର ଦେହ ବିନାଶ କରିବେ ।

ବ୍ରହ୍ମା କହିଲେ, ହେ ମୃତ୍ୟୁ ! ତାହା ହେବ, ତୁମ୍ଭର ମଙ୍ଗଳ ହେଉ, ତୁମ୍ଭେ ଜୀବମାନଙ୍କୁ ପରଲୋକକୁ ଘେନିଯାଅ, ତୁମ୍ଭର ଅଧର୍ମ ହେବ ନାହିଁ । ହେ ଶୁଭେ ! ଆମ୍ଭେ ତୁମ୍ଭର ଅନିଷ୍ଟ ଚିନ୍ତା କରିବୁ ନାହିଁ । ୩୯ । ଆମ୍ଭର କରତଳରେ ତୁମ୍ଭର ଯେଉଁସବୁ ଅଶ୍ରୁବିନ୍ଦୁ ପତିତ ହୋଇଅଛି, ସେ ସମସ୍ତ ପ୍ରାଣିଙ୍କର ଦେହଜ ବ୍ୟାଧି ହେବ, ଓ ସେହିମାନେ ଗତାୟୁ ପ୍ରାଣିମାନଙ୍କୁ ବିନାଶ କରିବେ । ସେଥିରେ ତୁମ୍ଭର ଅଧର୍ମ ହେବ ନାହିଁ, ଏକ୍ଷଣି ତୁମ୍ଭେ ଭୟ ପରିତ୍ୟାଗ କର ।୪୦। ହେ ଭଦ୍ରେ ! ତୁମ୍ଭର ଅଧର୍ମ ହେବ ନାହିଁ, ଏକ୍ଷଣି ତୁମ୍ଭେ ହିଁ ପ୍ରାଣିମାନଙ୍କର ଧର୍ମ-ସ୍ୱରୂପ ଓ ଧର୍ମର ନିୟନ୍ତ୍ରୀ ହେବ । ଅତଏବ ତୁମ୍ଭେ ଧର୍ମପରାୟଣା, ଧର୍ମ ପାଳନୀ ଓ ଧାରିଣୀ ହୋଇ ପ୍ରାଣିମାନଙ୍କୁ ନିୟମିତ କରିବ । ୪୧ । ତୁମ୍ଭେ କାମ ଓ ରୋଷ ପରିତ୍ୟାଗ କରି ଜୀବନ ସଂହାର କର ; ତାହାହେଲେ ସନାତନ ଧର୍ମ ତୁମ୍ଭଙ୍କୁ ଭଜନ କରିବ । ପ୍ରାଣିମାନେ ମିଥ୍ୟାଗ୍ରସ୍ତ ଅଟନ୍ତି, ଅଧର୍ମ ହିଁ ସେହି ମିଥ୍ୟାଗ୍ରସ୍ତମାନଙ୍କୁ ଧ୍ୱଂସ କରିବ । ପରନ୍ତୁ ତୁମ୍ଭେ ଆପଣାକୁ ପବିତ୍ର ଜ୍ଞାନ କରିବ । ଯେଣୁ ଅଧର୍ମ ପାପାତ୍ମାମାନଙ୍କର ମିଥ୍ୟାଚରଣ ହେତୁରୁ ସେମାନଙ୍କୁ ସଂହାରରେ ନିମଗ୍ନ କରିବ । ସେହି କାରଣରୁ ତୁମ୍ଭେ ଅଂସହାର ବୁଦ୍ଧି ପରିତ୍ୟାଗ କରି ଏହି ସମୟଠାରୁ ଜୀବମାନଙ୍କର ଜୀବନ ହରଣ କରିବ । ୪୩ ।

ନାରଦ କହିଲେ, ସେହି କନ୍ୟା ବ୍ରହ୍ମାଙ୍କଠାରୁ ମୃତ୍ୟୁ ନାମ ପ୍ରାପ୍ତ ହୋଇ ଖିନ୍ନା ହେଲେ ଓ ମଧ୍ୟ ଶାପ ଭୟରେ ଖିନ୍ନା ହୋଇ ବ୍ରହ୍ମାଙ୍କ ନିକଟରେ "ହେଉ" ବୋଲି ସ୍ୱୀକାର କଲେ । ସେହି ମୃତ୍ୟୁ କାମ, କ୍ରୋଧ ଓ ଆସକ୍ତିରହିତ ହୋଇ ଅନ୍ତକାଳରେ ପ୍ରାଣିମାନଙ୍କର ପ୍ରାଣ ହରଣ କରନ୍ତି । ୪୪ । ଅନ୍ତକାଳରେ ପ୍ରାଣିମାନଙ୍କର ଆପେ ଆପେ ବ୍ୟାଧି ଉତ୍ପନ୍ନ

ହୋଇଥାଏ । ସେହି ବ୍ୟାଧି ରୋଗନାମରେ କଥିତ ହୁଏ ଓ ତାହାଦ୍ୱାରା ଜୀବମାନେ ପୀଡ଼ିତ ହୁଅନ୍ତି । ସେହି ବ୍ୟାଧି କେବଳ ପ୍ରାଣିମାନଙ୍କର ଅନ୍ତ-କାଳରେ ମୃତ୍ୟୁର ହେତୁ ହୁଏ, ଅତଏବ ତୁମ୍ଭେ ବୃଥା ଶୋକ କରନାହିଁ । ୪୫ ।

ହେ ରାଜଶ୍ରେଷ୍ଠ ! ପ୍ରାଣିମାନଙ୍କର ମରଣାନ୍ତେ ଯେପରି ଇନ୍ଦ୍ରିୟ-ସମସ୍ତ ପରଲୋକକୁ ଗମନ କରି ନିଜ ନିଜ ବୃତ୍ତିବିଶିଷ୍ଟ ଥାଇ ତତ୍ପରେ ପୁନର୍ବାର ଜୀବ ସହ ସନ୍ନିବୃତ୍ତ ହୁଅନ୍ତି, ସେହିପରି ସମୁଦାୟ ଜୀବ ମଧ୍ୟ ମରଣାନ୍ତେ ପରଲୋକକୁ ଗମନ କରି ବୃତ୍ତିମନ୍ତ ଥାଇ ତତ୍ପରେ ପ୍ରତ୍ୟାବୃତ୍ତ ହୁଅନ୍ତି । ଇନ୍ଦ୍ରାଦି ଦେବତାମାନେ ମଧ୍ୟ ମନୁଷ୍ୟସଦୃଶ ପରଲୋକ ଗମନ କରିଥାଆନ୍ତି । ୪୬ । ଅପିଚ ମହାବଳବାନ୍ ଭୟାନକ ଶବ୍ଦସମନ୍ୱିତ ସର୍ବବ୍ୟାପୀ ଅନନ୍ତତେଜା ପ୍ରାଣବାୟୁ ଭୀଷଣ ଉଗ୍ରରୂପ ହୋଇ ପ୍ରାଣିମାନଙ୍କର ଦେହ ଭେଦ କରିଥାଏ । ତାହାର ଗତି ଓ ପ୍ରତ୍ୟାଗତି ନାହିଁ । ୪୭ । ହେ ରାଜେନ୍ଦ୍ର ! ଦେବତାମାନେ ମଧ୍ୟ ମର୍ତ୍ତ୍ୟନାମବିଶିଷ୍ଟ ଅଟନ୍ତି । ଅତଏବ ଆପଣ ପୁତ୍ର ନିମନ୍ତେ ଶୋକ କରିବେ ନାହିଁ । ଆପଣଙ୍କ ପୁତ୍ର ରମଣୀୟ ବୀରଲୋକକୁ ଗମନ କରି ସ୍ୱର୍ଗପ୍ରାପ୍ତିପୂର୍ବକ ନିତ୍ୟସୁଖ ଭୋଗ କରୁଅଛନ୍ତି । ୪୮ । ସେ ଦୁଃଖରୁ ମୁକ୍ତ ହୋଇ ପୁଣ୍ୟବାନ୍ ଲୋକମାନଙ୍କ ସହିତ ସଙ୍ଗତ ହୋଇଅଛନ୍ତି ! ବ୍ରହ୍ମା ସ୍ୱୟଂ ଏହି ମୃତ୍ୟୁକୁ ପ୍ରଜାମାନଙ୍କର ପ୍ରାଣହରଣ ରୂପରେ ସୃଷ୍ଟି କରିଅଛନ୍ତି । ପ୍ରଜାମାନଙ୍କର କାଳ ଉପସ୍ଥିତ ହେଲେ ଏହି ଦେବବିହିତ ମୃତ୍ୟୁ ସେମାନଙ୍କର ପ୍ରାଣ ହରଣ କରିଥାଏ । ୪୯ । ପ୍ରାଣିମାନେ ଆପେ ଆପଣାର ନାଶର ମୂଳ ଅଟନ୍ତି , ଦଣ୍ଡପାଣି ଯମ ସେମାନଙ୍କୁ ନାଶ କରନ୍ତି ନାହିଁ ; ଅତଏବ ଧୀରମାନେ ମୃତ୍ୟୁକୁ ବିଧାତାଙ୍କ ସୃଷ୍ଟି ବୋଲି ନିଶ୍ଚୟ ସତ୍ୟ ଜାଣି ମୃତ ବ୍ୟକ୍ତିମାନଙ୍କ ନିମନ୍ତେ ଶୋକ କରନ୍ତି ନାହିଁ । ହେ ମହାରାଜ ! ଆପଣ ଦେବବିହିତ ଏହିପରି ସୃଷ୍ଟି ଅବଗତ ହୋଇ ପୁତ୍ରନଷ୍ଟଜନିତ ଶୋକକୁ ଶୀଘ୍ର ତ୍ୟାଗ କରନ୍ତୁ । ୫୦ ।

ବ୍ୟାସ ବୋଇଲେ,—ନାରଦଙ୍କର ଏହିରୂପେ ଅର୍ଥଯୁକ୍ତ ବାକ୍ୟ ଶ୍ରବଣ କରି ରାଜା ଅକମ୍ପନ ସଖା ନାରଦଙ୍କୁ କହିଲେ । ୫୧ । ହେ ଭଗବନ୍ ! ଋଷିସତ୍ତମ ! ଆମ୍ଭେ ଅଦ୍ୟ ଆପଣଙ୍କ ନିକଟରୁ ଏହି ଇତିହାସ

ଶ୍ରବଣ କରି କୃତାର୍ଥ ଓ ବିଗତଶୋକ ଓ ପ୍ରୀତ ହେଲୁଁ । ଏହିକ୍ଷଣି ଆପଣଙ୍କୁ ଅଭିବାଦନ କରୁଅଛୁଁ ।୫୨। ଅପରିମିତ ଧୀମାନ୍ ଋଷିବରପ୍ରଧାନ ଦେବର୍ଷି ନାରଦ ସେହି ରାଜାଙ୍କ ଦ୍ୱାରା ଏହିରୂପେ ଅଭିହିତ ହୋଇ ଶୀଘ୍ର ନନ୍ଦନବନକୁ ଗମନ କଲେ ।୫୩। ଏହି ଇତିହାସକୁ ସର୍ବଦା ଶ୍ରବଣ କଲେ ବା ଶ୍ରବଣ କରାଇଲେ ପୁଣ୍ୟବାନ୍, ଯଶସ୍ୱୀ, ଆୟୁଷ୍ମାନ୍, ଧନ୍ୟ ଓ ସ୍ୱର୍ଗପ୍ରାପ୍ତ ହୁଅନ୍ତି ।୫୪।

ହେ ଯୁଧିଷ୍ଠିର ! ମହାବୀର୍ଯ୍ୟ, ମହାରଥ, ରାଜା ଅକମ୍ପନ ଏହି ଇତିହାସ ଶ୍ରବଣ କରି ଓ କ୍ଷତ୍ରିୟ ଶୂରମାନଙ୍କର ଧର୍ମ ଓ ତଦନୁସାରେ ସେମାନଙ୍କର ପରମଗତି ହୁଏ—ଏହା ଜାଣି ସ୍ୱର୍ଗପ୍ରାପ୍ତି ହୋଇଅଛନ୍ତି । ମହାଧନୁର୍ଦ୍ଧର ମହାରଥ ଅଭିମନ୍ୟୁ ସମସ୍ତ ଧନୁର୍ଦ୍ଧାରୀଙ୍କ ସମକ୍ଷରେ ଯୁଦ୍ଧରେ ଅଭିମୁଖୀନ ହୋଇ ଓ ଅସି, ଗଦା, ଶକ୍ତି ଓ ଧନୁର୍ବାଣଦ୍ୱାରା ବହୁଳ ଶତ୍ରୁ ଜୟ କରି ଯୁଦ୍ଧ କରୁ କରୁ ନିହତ ହୋଇଅଛନ୍ତି ।୫୭। ସେ (ଅଭିମନ୍ୟୁ) ସୋମଙ୍କ ପୁତ୍ର ଥିଲେ । ଯୁଦ୍ଧରେ ମୃତ୍ୟୁଦ୍ୱାରା ବିଗତପାପ ହୋଇ ପୁନର୍ବାର ସୋମଲୋକକୁ ଗତ ହୋଇଅଛନ୍ତି । ଅତଏବ ହେ ପାଣ୍ଡୁତନୟ ! ତୁମ୍ଭେ ଭ୍ରାତୃମାନଙ୍କ ସହିତ ଧୈର୍ଯ୍ୟାବଲମ୍ବନପୂର୍ବକ ଅପ୍ରମତ୍ତ ଓ କ୍ରୁଦ୍ଧ ହୋଇ ଶୀଘ୍ର ଯୁଦ୍ଧର ଉପକ୍ରମ କର ।୫୮।



## ୫୫ ଅଧ୍ୟାୟ

ସଞ୍ଜୟ ବୋଇଲେ—ଅନନ୍ତର ଧର୍ମରାଜ ଯୁଧିଷ୍ଠିର ମୃତ୍ୟୁର ଉତ୍ପତ୍ତି ଓ ଅନୁପମ କର୍ମ ଶ୍ରବଣ ପୂର୍ବକ ମୁନିଙ୍କୁ ପ୍ରସନ୍ନ କରି ପୁନର୍ବାର ତାହାଙ୍କୁ କହିଲେ ।୧।

ଯୁଧିଷ୍ଠିର ବୋଇଲେ—ହେ ବ୍ରହ୍ମନ୍ ! ପୁଣ୍ୟକର୍ମା ଇନ୍ଦ୍ରତୁଲ୍ୟ ବିକ୍ରମଶାଳୀ ଗୁରୁବତ୍ ପୂଜ୍ୟ ସତ୍ୟବାଦୀ ପାପରହିତ ପୁରାତନ ରାଜର୍ଷିମାନେ ଯେଉଁ ଯେଉଁ କର୍ମର ଅନୁଷ୍ଠାନ କରିଥିଲେ ତଦ୍ ବିଷୟକ ସତ୍ୟବାକ୍ୟ କୀର୍ତ୍ତନ ଦ୍ୱାରା ପୁନର୍ବାର ଆପଣ ଆମ୍ଭଙ୍କୁ ସମାଶ୍ୱାସିତ ଓ ଜୀବିତ କରନ୍ତୁ

ଏବଂ କେଉଁ କେଉଁ ପୁଣ୍ୟବାନ୍ ମହାତ୍ମା ରାଜର୍ଷିମାନେ କେତେ ପରିମାଣରେ ଦକ୍ଷିଣା ଦାନ କରିଥିଲେ ଆପଣ ସେ ସମସ୍ତ ମୋ ନିକଟରେ କୀର୍ତ୍ତନ କରନ୍ତୁ । ୪ ।

ବ୍ୟାସ ବୋଇଲେ—ଶ୍ୱିତ୍ୟ ରାଜାଙ୍କର ପୁତ୍ର ସୃଞ୍ଜୟ ନାମରେ ରାଜା ଥିଲେ; ପର୍ବତ ଓ ନାରଦ ଏହି ଦୁଇ ଋଷି ତାହାଙ୍କର ସଖା ଥିଲେ । ୫ । ଏକଦା ଏହି ଦୁଇ ଋଷି ତାହାଙ୍କ ସାକ୍ଷାତ୍ କରିବା ନିମନ୍ତେ ତାହାଙ୍କ ଗୃହରେ ପ୍ରବେଶ କଲେ ଓ ରାଜାଙ୍କ କର୍ତ୍ତୃକ ବିଧିମତେ ପୂଜିତ ହୋଇ ପ୍ରୀତମାନସରେ ସେଠାରେ ସୁଖରେ ଅବସ୍ଥାନ କଲେ । ୬ ।

କୌଣସି ସମୟରେ ରାଜା ସୃଞ୍ଜୟ ସେହି ଦୁଇ ଋଷିଙ୍କ ସହିତ ସୁଖାସୀନ ହୋଇ ଅଛନ୍ତି, ଏମନ୍ତ ସମୟରେ ତାହାଙ୍କର ମୃଦୁହାସିନୀ ବରବର୍ଣ୍ଣିନୀ କନ୍ୟା ସେହି ସ୍ଥାନକୁ ଆଗମନ କଲେ ଓ ପିତାଙ୍କୁ ଯଥାବିଧି ଅଭିବାଦନ କରି ପାର୍ଶ୍ୱରେ ଦଣ୍ଡାୟମାନ ହେଲେ । ତାହାଙ୍କର ପିତା ସୃଞ୍ଜୟ ମଧ୍ୟ ତାହାଙ୍କୁ ଅନୁରୂପ ଇଷ୍ଟ ଆଶୀର୍ବାଦ କରି ଅଭିନନ୍ଦିତ କଲେ । ଅନନ୍ତର ପର୍ବତ ଋଷି ସେହି କନ୍ୟାକୁ ନିରୀକ୍ଷଣ କରି ହାସ୍ୟ ବଦନରେ କହିଲେ—ଏହି ଚଞ୍ଚଳାପାଙ୍ଗୀ ସର୍ବଲକ୍ଷଣସମ୍ପନ୍ନା କାହାର ଦୁହିତା ଅଟେ ? ୯ । ଏହି ନାରୀ ସୂର୍ଯ୍ୟର ପ୍ରଭା କି ଅଗ୍ନିର ଶିଖା କିମ୍ବା ଚନ୍ଦ୍ରର କାନ୍ତି ଅଥବା ଶ୍ରୀ, ହ୍ରୀ, କୀର୍ତ୍ତି, ଧୃତି, ପୁଷ୍ଟି ବା ସିଦ୍ଧି, ଏମାନଙ୍କ ମଧ୍ୟରୁ କେହି ହେବେ ? ୧୦ । ରାଜା ସୃଞ୍ଜୟ ଦେବର୍ଷି ପର୍ବତଙ୍କର ଏହି ବାକ୍ୟ ଶ୍ରବଣ କରି ତାହାଙ୍କୁ କହିଲେ, ଭଗବନ୍ ! ଏ ଆମ୍ଭର କନ୍ୟା ଅଟନ୍ତି, ଏ ଆମ୍ଭଠାରେ ବର ପ୍ରାର୍ଥନା କରୁଅଛନ୍ତି । ୧୧ ।

ନାରଦ ବୋଇଲେ, ହେ ନୃପ ! ଆପଣ ଯଦି ସୁମହତ୍ ଶ୍ରେୟ ଅଭିଳାଷ କରନ୍ତି, ତେବେ ଏହି କନ୍ୟାଟିକୁ ଆମ୍ଭର ଭାର୍ଯ୍ୟା ହେବା ନିମନ୍ତେ ଆମ୍ଭଙ୍କୁ ଦାନ କରନ୍ତୁ । ୧୨ । ସୃଞ୍ଜୟ ହୃଷ୍ଟ ହୋଇ ନାରଦଙ୍କ ନିକଟରେ "ଦଦାମି" ବୋଲି ସ୍ୱୀକାର କଲେ । ତହୁଁ ପର୍ବତ ଅତି କ୍ରୁଦ୍ଧ ହୋଇ ନାରଦଙ୍କୁ କହିଲେ, ହେ ବିପ୍ର ! ଆମ୍ଭେ ଏହାଙ୍କୁ ବିବାହ କରିବା ନିମନ୍ତେ ପୂର୍ବରୁ ମନେ ମନେ ବରଣ କରିଅଛୁଁ ; ପରନ୍ତୁ ଆମ୍ଭେ ଯାହାଙ୍କୁ ବରଣ କରିଅଛୁଁ, ତୁମ୍ଭେ ତାହାଙ୍କୁ ବରଣ କଲ । ସେଥିପାଇଁ ଆମ୍ଭେ ତୁମ୍ଭଙ୍କୁ

ଅଭିଶାପ ଦେଉଅଛୁଁ ଯେ, ତୁମ୍ଭେ ଇଚ୍ଛାନୁସାରେ ସ୍ୱର୍ଗକୁ ଗମନ କରିପାରିବ ନାହିଁ । ୧୪ ।

ପର୍ବତ ଏହିପରି କହନ୍ତେ ନାରଦ ତାହାଙ୍କୁ ପ୍ରତ୍ୟୁତ୍ତର କଲେ ଯେ, ବରର "ଆମ୍ଭର ଏହି ଭାର୍ଯ୍ୟା" ଏହିପରି ଜ୍ଞାନ ଓ "ଆମ୍ଭର ଏହି ଭାର୍ଯ୍ୟା" ଏହିପରି ବାକ୍ୟ, କନ୍ୟା ଦାତାର ବୁଦ୍ଧିପୂର୍ବକ ଦାନ, ଲୌକିକାଚାର ପ୍ରଯୁକ୍ତ ଦାତା ଓ ଗ୍ରହୀତାର ସମ୍ଭାଷଣ ଦ୍ୱାରା ବରବଧୂଙ୍କର ମିଳନ, ଉଦକ-ପ୍ରୋକ୍ଷଣପୂର୍ବକ ଦାନ, ବରକର୍ତ୍ତୃକ ପାଣିଗ୍ରହଣ ଏବଂ ବୈବାହିକ ମନ୍ତ୍ର—ଏହି ସମସ୍ତପ୍ରକାର ବିବାହର ଲକ୍ଷଣ ଅଟେ । ଏହି ସମସ୍ତ ହେଲେ ସୁଦ୍ଧା ଯେ ପର୍ଯ୍ୟନ୍ତ ସପ୍ତପଦୀ ଗମନ ନ ହୁଏ, ସେ ପର୍ଯ୍ୟନ୍ତ ଭାର୍ଯ୍ୟାତ୍ୱ ସିଦ୍ଧି ହୁଏ ନାହିଁ । ଅତଏବ ଏହି କନ୍ୟାଠାରେ ତୁମ୍ଭର ଭାର୍ଯ୍ୟାତ୍ୱ ସମ୍ପାଦନ ହୋଇ-ନାହିଁ । ଏଥିରେ ଅକାରଣ ତୁମ୍ଭେ ଆମ୍ଭଙ୍କୁ ଯେଉଁ ଅଭିଶାପ ଦେଲ, ସେଥିପାଇଁ ଆମ୍ଭେ ମଧ୍ୟ ତୁମ୍ଭଙ୍କୁ ଅଭିଶାପ ଦେଉଅଛୁଁ ଯେ, ତୁମ୍ଭେ ମଧ୍ୟ ଆମ୍ଭ ବ୍ୟତିରେକେ ସ୍ୱର୍ଗ ଗମନ କରିପାରିବ ନାହିଁ । ୧୭ ।

ଏହିରୂପେ ସେହି ଦୁଇଋଷି ପରସ୍ପର ଅଭିଶାପ ପ୍ରଦାନ କରି ସେହି ସ୍ଥାନରେ ଅବସ୍ଥାନ କଲେ । ଅନନ୍ତର ସେହି ରାଜା ଶୁଚି ହୋଇ ପୁତ୍ର-କାମନାରେ ଯଥାଶକ୍ତି ଯତ୍ନପୂର୍ବକ ପାନ, ଭୋଜନ ଓ ବସ୍ତ୍ରଦାନଦ୍ୱାରା ବ୍ରାହ୍ମଣମାନଙ୍କୁ ଉତ୍କୃଷ୍ଟରୂପେ ପରିଚର୍ଯ୍ୟା କଲେ । ଅନନ୍ତର କୌଣସି ସମୟରେ ତପସ୍ୟା ଓ ସ୍ୱାଧ୍ୟାୟନିରତ ବେଦବେଦାଙ୍ଗପାରଗ ବ୍ରାହ୍ମଣମାନେ ରାଜାଙ୍କ ପ୍ରତି ପ୍ରସନ୍ନ ହୋଇ ତାହାଙ୍କ ପୁତ୍ର ନିମନ୍ତେ ନାରଦଙ୍କୁ କହିଲେ, ହେ ଦେବର୍ଷେ ! ଆପଣ ମହାରାଜାଙ୍କୁ ଗୋଟିଏ ଅଭିଳଷିତ ପୁତ୍ର ଦାନ କରନ୍ତୁ । ୨୦ ।

ବ୍ରାହ୍ମଣମାନେ ନାରଦଙ୍କୁ ଏହି ପ୍ରକାରେ କହନ୍ତେ ନାରଦ ସୃଞ୍ଜୟଙ୍କୁ କହିଲେ, ହେ ରାଜର୍ଷେ ! ବ୍ରାହ୍ମଣମାନେ ତୁମ୍ଭ ପ୍ରତି ପ୍ରସନ୍ନ ହୋଇ ପୁତ୍ର ଇଚ୍ଛା କରୁଅଛନ୍ତି । ତୁମ୍ଭେ ଯାଦୃଶ ପୁତ୍ର କାମନା କରୁଅଛ, ସେହିପରି ବର ପ୍ରାର୍ଥନା କର । ତହୁଁ ରାଜା ପ୍ରାଞ୍ଜଳି ହୋଇ ଗୁଣାନ୍ୱିତ ଯଶସ୍ୱୀ, ତେଜସ୍ୱୀ, କୀର୍ତ୍ତିମାନ୍, ଅରିନ୍ଦମ—ଏପରି ଗୋଟିଏ ପୁତ୍ର ପ୍ରାର୍ଥନା କଲେ । କାଳକ୍ରମରେ

ରାଜାଙ୍କର ଗୋଟିଏ ପୁତ୍ର ଜନ୍ମ ହେଲା । ସେହି ପୁତ୍ର ମୂତ୍ର, ପୁରୀଷ, ସ୍ୱେଦ ଓ କ୍ଲେଦ, ଯାହା ପରିତ୍ୟାଗ କଲା, ସେ ସବୁ ସୁବର୍ଣ୍ଣ ହେଲା । ତନ୍ନିମିତ୍ତ ସେହି ପୁତ୍ରର "ସୁବର୍ଣ୍ଣଷ୍ଠୀବୀ" ଏହି ନାମକରଣ ହେଲା । ସେହି ଲବ୍ଧପୁତ୍ରର ପ୍ରଭାବରେ ରାଜାଙ୍କ ଧନ ବୃଦ୍ଧିପ୍ରାପ୍ତ ହୋଇ ଅପରିମିତ ହୁଅନ୍ତେ ସମସ୍ତ ଈପ୍‌ସିତ ବିଷୟକୁ ସୁବର୍ଣ୍ଣରେ କରାଇଲେ । ଗୃହ, ପ୍ରାକାର, ଦୁର୍ଗ, ବ୍ରାହ୍ମଣ-ଗୃହ, ଶଯ୍ୟା, ଆସନ, ଯାନ, ସ୍ଥାଳୀ, ପୀଠର, ପାତ୍ର ଓ ଅନ୍ୟାନ୍ୟ ଯାହା କିଛି ରାଜଭବନର ଆଭ୍ୟନ୍ତରିକ ଓ ବାହ୍ୟ ଶିଳ୍ପ ଥିଲା, କାଳକ୍ରମରେ ସେ ସମସ୍ତ ସୁବର୍ଣ୍ଣମୟ ହେଲା ।

ଏକଦା ଦସ୍ୟୁମାନେ ରାଜପୁତ୍ରଙ୍କର ଏହି ବୃତ୍ତାନ୍ତ ଶ୍ରବଣ କରି ଓ ତାହାଙ୍କୁ ନିରୀକ୍ଷଣପୂର୍ବକ ଦଳବଦ୍ଧ ହୋଇ ରାଜାଙ୍କ ଅନିଷ୍ଟ ଚେଷ୍ଟାରେ ପ୍ରବୃତ୍ତ ହେଲେ । ତନ୍ମଧ୍ୟରୁ କେହି କେହି କହିଲେ ଆମ୍ଭେମାନେ, ସ୍ୱୟଂ ଯାଇ ରାଜାଙ୍କ ପୁତ୍ରକୁ ଗ୍ରହଣ କରିବା । କାରଣ ସେ ଯାବତୀୟ ସ୍ୱର୍ଣ୍ଣର ମୂଳ ଅଟନ୍ତି ; ଅତଏବ ତନ୍ନିମିତ୍ତ ଯତ୍ନ କରିବା ଉଚିତ । ଅନନ୍ତର ଦସ୍ୟୁମାନେ ଲୁବ୍ଧ ହୋଇ ରାଜଗୃହରେ ପ୍ରବେଶପୂର୍ବକ ବଳଦ୍ୱାରା 'ସୁବର୍ଣ୍ଣଷ୍ଠୀବୀ" ରାଜପୁତ୍ରଙ୍କୁ ହରଣ କଲେ । ଉପାୟାନଭିଜ୍ଞ ମୂଢ଼ ଦସ୍ୟୁମାନେ ରାଜପୁତ୍ରଙ୍କୁ ଗ୍ରହଣପୂର୍ବକ ଅରଣ୍ୟକୁ ଗମନ କରି ତାହାଙ୍କୁ ଖଣ୍ଡ ଖଣ୍ଡ କରି ବିନଷ୍ଟ କଲେ. କିନ୍ତୁ କିଛି ମାତ୍ର ଧନ ଦେଖି ପାରିଲେ ନାହିଁ ।

ଏହିରୂପେ ରାଜପୁତ୍ରର ପ୍ରାଣବିନାଶ ହେଲାରୁ ରାଜାଙ୍କ ବର-ଲବ୍ଧ ଧନସମସ୍ତ ମଧ୍ୟ ନଷ୍ଟ ହେଲା । ୩ । ଦୁଷ୍ଟାଗ୍ରହୀ ମୂର୍ଖ ଦସ୍ୟୁମାନେ ମଧ୍ୟ ପୃଥିବୀ ମଧ୍ୟରେ ସେହି ଅଦ୍ଭୁତ କୁମାରକୁ ନଷ୍ଟ କରି ଧନପ୍ରାପ୍ତ ନ ହୁଅନ୍ତେ, ପରସ୍ପର କ୍ରୋଧ ବଶରୁ ହତାହତ ହୋଇ ସେହି ଦୁଷ୍କର୍ମ ପ୍ରଭାବରୁ ଘୋର ନରକକୁ ଗମନ କଲେ । ମହାତପସ୍ୱୀ ରାଜା ବରଦତ୍ତ ପୁତ୍ରକୁ ନିହତ ହେବାର ଦେଖି ଅତ୍ୟନ୍ତ ଦୁଃଖାର୍ତ୍ତ ହୋଇ ବହୁପ୍ରକାର କରୁଣ ବାକ୍ୟରେ ବିଳାପ କଲେ । ଦେବର୍ଷି ନାରଦ ରାଜାଙ୍କୁ ପୁତ୍ର ଶୋକାର୍ତ୍ତ ଓ ବିଳପମାନ ଜାଣି ତାହାଙ୍କ ନିକଟକୁ ଆଗମନ କଲେ ଏବଂ ସେ ସେହି ଦୁଃଖାର୍ତ୍ତ ଚେତାଶୂନ୍ୟ ବିଳପମାନ ରାଜା ସୃଞ୍ଜୟଙ୍କୁ ଯାହା କହିଲେ, ହେ ଯୁଧିଷ୍ଠିର ! ତୁମ୍ଭେ ତାହା ଶୁଣ ।

ନାରଦ ବୋଇଲେ । ହେ ସୃଞ୍ଜୟ ! ଆମ୍ଭେମାନେ ବ୍ରହ୍ମବାଦୀ ମହର୍ଷି, ଆମ୍ଭେମାନେ ସର୍ବଦା ତୁମ୍ଭ ଗୃହରେ ଅବସ୍ଥାନ କରୁଅଛୁଁ ; କିନ୍ତୁ ତୁମ୍ଭଙ୍କୁ ମଧ୍ୟ ବିଷୟବାସନାରେ ଅପରିତୃପ୍ତ ହୋଇ କାଳଗ୍ରାସରେ ପତିତ ହେବାକୁ ହେବ । ହେ ସୃଞ୍ଜୟ ! ଆମ୍ଭେମାନେ ଅବିକ୍ଷିତଙ୍କ ପୁତ୍ର ମରୁତ୍ ରାଜାଙ୍କର ମଧ୍ୟ ମରଣ ଶ୍ରବଣ କରିଅଛୁଁ । ୫୭ । ସମ୍ବର୍ତ୍ତ ବୃହସ୍ପତିଙ୍କ ପ୍ରତି ସ୍ପର୍ଦ୍ଧା କରି ଯାହାଙ୍କ ଯାଜନ କର୍ମରେ ବରିତ ହୋଇଥିଲେ । ଭଗବାନ୍ ପ୍ରଭୁ ମହାଦେବ ଯେଉଁ ରାଜର୍ଷିଙ୍କୁ ବର ପ୍ରଦାନ କରିଥିଲେ, ଯାହାଙ୍କର ବିବିଧ ଯଜ୍ଞରେ ଯଜନାନ୍ତେ ବୃହସ୍ପତି ପ୍ରମୁଖ ଦେବର୍ଷିମାନେ, ଇନ୍ଦ୍ରାଦି ଅମରଗଣ ଓ ସମସ୍ତ ପ୍ରଜାପତି ହିମାଳୟର ସ୍ୱର୍ଣ୍ଣମୟ ପ୍ରତ୍ୟନ୍ତଗିରିରେ ଏକତ୍ର ଉପବେଶନ କରି-ଥିଲେ ; ଯାହାଙ୍କ ଯଜ୍ଞରେ ସମସ୍ତ ପରିଚ୍ଛଦ ସୁବର୍ଣ୍ଣନିର୍ମିତ ହୋଇଥିଲା ଏବଂ ଯାହାଙ୍କ ଯଜ୍ଞରେ ବ୍ରାହ୍ମଣକ୍ଷତ୍ରିୟାଦି ଦ୍ୱିଜମାନେ ଭୋଜନାର୍ଥୀ ହୋଇ ମନୋଭିଷ୍ଟ ପବିତ୍ର ଅନ୍ନ, ଦୁଗ୍ଧ, ଘୃତ, ମଧୁ ପ୍ରଭୃତି ଉତ୍ତମ ଉତ୍ତମ ସମୁଦାୟ ଭକ୍ଷ୍ୟ ଭୋଜ୍ୟ ପଦାର୍ଥମାନ ଅଭିଳଷାନୁସାରେ ଭୋଜନ କରିଥିଲେ ; ଯାହାଙ୍କର ସମସ୍ତ ଯଜ୍ଞରେ ବେଦପାରଗ ବ୍ରାହ୍ମଣମାନଙ୍କୁ ପରିଷ୍କୃତ ବସ୍ତ୍ର ଓ ଆଭରଣ ଅଭିଳାଷାନୁରୂପ ପ୍ରଦତ୍ତ ହୋଇଥିଲା ; ଯେଉଁ ରାଜର୍ଷିଙ୍କ ଗୃହରେ ମରୁଦ୍‌ଗଣ ପରିବେଷ୍ଟା ଓ ବିଶ୍ୱଦେବ ଗଣ ସଭାସଦ୍ ହୋଇଥିଲେ, ଯେଉଁ ବୀର୍ଯ୍ୟବାନ୍ ରାଜାଙ୍କର ଯଜ୍ଞୀୟ ହବିର୍ଭୋଜନରେ ପରିତୃପ୍ତ ହୋଇ ଦେବତାମାନେ ସୁବୃଷ୍ଟିଦ୍ୱାରା ରାଜ୍ୟର ଶସ୍ୟସମ୍ପତ୍ତି ବର୍ଦ୍ଧନ କରିଥିଲେ; ଯେଉଁ ରାଜା ବ୍ରହ୍ମଚର୍ଯ୍ୟ, ବେଦାଧ୍ୟୟନ ଓ ସମୁଦାୟ ଦାନଦ୍ୱାରା ଋଷି, ପିତୃ ଓ ଦେବଗଣଙ୍କର ଏବଂ ସୁଖଜୀବୀ ପୁରବାସୀଙ୍କର ପ୍ରୀତି ସମ୍ପାଦନ କରିଥିଲେ ଓ ଶଯ୍ୟା, ଆସନ, ଯାନ, ଦୁସ୍ତ୍ୟଜ୍ୟ ସ୍ୱର୍ଣ୍ଣରାଶି ଓ ଅସଂଖ୍ୟ ଧନ ବିପ୍ରମାନଙ୍କୁ ସ୍ୱେଚ୍ଛାପୂର୍ବକ ସର୍ବଦା ପ୍ରଦାନ କରି ପରିତୃପ୍ତ କରିଥିଲେ ଓ ଇନ୍ଦ୍ର ଯାହାଙ୍କର ପ୍ରଜାମାନଙ୍କୁ ନିରାମୟ (ରୋଗଶୂନ୍ୟ) କରି ଅନୁଗ୍ରହ ପ୍ରକାଶ କରୁଥିଲେ, ସେହି ଶ୍ରଦ୍ଧାବାନ୍ ରାଜର୍ଷି ମରୁତ୍ତ ସେହି ସମସ୍ତ ପୁଣ୍ୟ-କର୍ମଦ୍ୱାରା ଅକ୍ଷୟ ପୁଣ୍ୟଲୋକକୁ ଗମନ କରିଅଛନ୍ତି । ସେ ପୁତ୍ର, କଳତ୍ର, କ୍ଷତ୍ରିୟ, ଅମାତ୍ୟ ଓ ବନ୍ଧୁବର୍ଗଙ୍କ ସହିତ ଯୌବନାବସ୍ଥାରେ ସହସ୍ର ବର୍ଷ ରାଜ୍ୟ ଶାସନ କରିଥିଲେ ।

ବ୍ୟାସ କହିଲେ—ରାଜା ସୃଞ୍ଜୟଙ୍କୁ ନାରଦ ଏହିପରି କହି ପୁନର୍ବାର ତାହାଙ୍କୁ ଶ୍ୱୈତ୍ୟପୁତ୍ର ବୋଲି ସମ୍ବୋଧନପୂର୍ବକ କହିଲେ, ସେହି ଅବିକ୍ଷିତପୁତ୍ର ମରୁତ୍ତରାଜା (୧) ଦାନସମେତ ବିତ୍ତ, (୨) ଗର୍ବରହିତ ଜ୍ଞାନ, (୩) କ୍ଷମାନ୍ୱିତ ଶୌର୍ଯ୍ୟ, (୪) ଓ ସଙ୍ଗରହିତ ଭୋଗ—ଚତୁର୍ବିଧ ଭଦ୍ର ବିଷୟରେ ତୁମ୍ଭର ଓ ତୁମ୍ଭ ପୁତ୍ର ଅପେକ୍ଷା ଶ୍ରେଷ୍ଠ ଓ ପୁଣ୍ୟବାନ୍ ହୋଇ ମଧ୍ୟ ଯେତେବେଳେ କାଳଗ୍ରାସରେ ପତିତ ହୋଇ ଅଛନ୍ତି, ତେତେବେଳେ ହେ ସୃଞ୍ଜୟ ! ଅଯାଜ୍ଞିକ ଓ ଦାକ୍ଷିଣ୍ୟରେ ରହିତ ସ୍ୱୀୟ ପୁତ୍ର ନିମନ୍ତେ ତୁମ୍ଭେ ଅନୁତାପ କର ନାହିଁ । ୫୦ ।



## ୫୭ ଅଧ୍ୟାୟ

ନାରଦ ବୋଇଲେ—ହେ ସୃଞ୍ଜୟ ! ସୁହୋତ୍ର ନାମକ ରାଜାଙ୍କର ମଧ୍ୟ ମୃତ୍ୟୁ ହୋଇଥିବାର ଆମ୍ଭେ ଶୁଣିଅଛୁଁ । ସେ ପୃଥିବୀରେ ଏକମାତ୍ର ବୀର ଓ ଶତ୍ରୁମାନଙ୍କର ଅଧର୍ଷଣୀୟ ଥିଲେ ଏବଂ ଯାହାଙ୍କୁ ଦେଖିବାକୁ ସମସ୍ତେ ଇଚ୍ଛା କରୁଥିଲେ, ସେ ଧର୍ମାନୁସାରେ ରାଜ୍ୟପ୍ରାପ୍ତ ହୋଇ ଋତ୍ୱିକ୍, ପୁରୋହିତ ଓ ବ୍ରାହ୍ମଣମାନଙ୍କୁ ଆପଣାର ଶ୍ରେୟଃ ବିଷୟରେ ପ୍ରଶ୍ନ କରନ୍ତି ଓ ଆପଣାର ଶ୍ରେୟ ଦେଖି ସେମାନଙ୍କ ମତରେ ଅବସ୍ଥାନ କରନ୍ତି, ସେ ପ୍ରଜାପାଳନ, ଦାନ, ଧର୍ମ, ଯଜ୍ଞ, ଶତ୍ରୁଜୟ—ଏହି ସମସ୍ତ ବିଷୟ ଅବଗତ ହୋଇ ଧର୍ମାନୁସାରେ ଧନାଗମର ଚେଷ୍ଟା କରନ୍ତି, ସେ ଧର୍ମାନୁସାରେ ଦେବତାମାନଙ୍କର ଆରାଧନା, ଧନୁର୍ବିଦ୍ୟା ଦ୍ୱାରା ଶତ୍ରୁଜୟ ଓ ନିଜ ଗୁଣଦ୍ୱାରା ସର୍ବପ୍ରାଣୀର ମନୋରଞ୍ଜନ କରନ୍ତି ; ସେ ବସୁମତୀକୁ ମ୍ଳେଚ୍ଛ ଓ ଚୌର ବିବର୍ଜିତ କରି ଉପଭୋଗ କରିଥିଲେ । ପର୍ଜନ୍ୟ ଯାହାଙ୍କ ରାଜ୍ୟରେ ଚିରକାଳ ସ୍ୱର୍ଣ୍ଣ ବର୍ଷଣ କରୁଥିବାରୁ ନଦୀମାନ ସ୍ୱର୍ଣ୍ଣମୟୀ ହୋଇ ସାଧାରଣଙ୍କର ବ୍ୟବହାର୍ଯ୍ୟ ହେଉଥିଲା ଓ ଯେଉଁ ନଦୀମାନଙ୍କରେ ନାନାବିଧ ସ୍ୱର୍ଣ୍ଣମୟ ଗ୍ରାହ, କର୍କଟ ଓ ମତ୍ସ୍ୟ ପ୍ରବାହିତ ହେଉଥିଲେ, ଯାହାଙ୍କ ରାଜ୍ୟରେ ପର୍ଜନ୍ୟ ସୁବର୍ଣ୍ଣମୟ ଅପରିମିତ ବିବିଧ ପ୍ରକାର କାମ୍ୟ ବସ୍ତୁମାନ

ବର୍ଣ୍ଣନ କରୁଥିଲେ ଓ ଯେଉଁଠାରେ କ୍ରୋଶପରିମିତ ସୁବର୍ଣ୍ଣମୟ ବାପୀସମସ୍ତ ଥିଲା, ଯେ ସୁବର୍ଣ୍ଣମୟ ସହସ୍ର ସହସ୍ର ବାମନ ଓ କୁବ୍‌ଜରୂପ ନାନାପ୍ରକାର ମକର, କଚ୍ଛପ ଓ କୁମ୍ଭୀରମାନଙ୍କୁ ଦେଖି ଆଶ୍ଚର୍ଯ୍ୟାନ୍ୱିତ ହେଉଥିଲେ, ଯେ ରାଜର୍ଷି କୁରୁଜାଙ୍ଗଲରେ ବିବିଧ ଯଜ୍ଞର ଅନୁଷ୍ଠାନ କରି ବ୍ରାହ୍ମଣମାନଙ୍କୁ ସେହି ସମସ୍ତ ଅପରିମିତ ସୁବର୍ଣ୍ଣମୟ ବସ୍ତୁଜାତ ଦ୍ରବ୍ୟମାନ ଦାନ କରିଥିଲେ, ସେ ସହସ୍ର ଅଶ୍ୱମେଧ, ଶତ ରାଜସୂୟ, ପୁଣ୍ୟଜନକ ପ୍ରଭୂତ ଦକ୍ଷିଣାସମନ୍ୱିତ କ୍ଷତ୍ରିୟକର୍ତ୍ତବ୍ୟ ବିବିଧ ଯଜ୍ଞ ଓ ଅନ୍ୟାନ୍ୟ କାମ୍ୟ ନୈମିତ୍ତିକ ଯଜ୍ଞମାନ ନିର୍ବାହ କରି ଅଭିଳଷିତ ଗତି ଲାଭ କରିଥିଲେ ।

ବ୍ୟାସ ବୋଇଲେ—ନାରଦ, ସୃଞ୍ଜୟଙ୍କୁ ଏହିପରି କହି ପୁନର୍ବାର ଶ୍ୱିତ୍ୟପୁତ୍ର ବୋଲି ସମ୍ବୋଧନପୂର୍ବକ କହିଲେ, ସେହି ରାଜା ସୁହୋତ୍ର ଚତୁର୍ବିଧ ଭଦ୍ର ବିଷୟରେ ତୁମ୍ଭ ପୁତ୍ର ଓ ତୁମ୍ଭ ଅପେକ୍ଷା ଶ୍ରେଷ୍ଠ ଓ ପୁଣ୍ୟବାନ୍ ଥିଲେ । ହେ ସୃଞ୍ଜୟ, ଯେତେବେଳେ ଏତାଦୃଶ ରାଜା ମଧ୍ୟ କାଳଗ୍ରସ୍ତ ହୋଇଅଛନ୍ତି, ତେତେବେଳେ ଯଜ୍ଞ ଓ ନାନାବିଧ ସତ୍‌କର୍ମରହିତ ଶ୍ୱୈତ୍ୟ ପୁତ୍ର ନିମନ୍ତେ ତୁମ୍ଭେ ଅନୁତାପ କର ନାହିଁ । ୧୨ ।

## ୫୭ ଅଧ୍ୟାୟ

ନାରଦ ବୋଇଲେ—ହେ ସୃଞ୍ଜୟ ! ଯେଉଁ ବୀର୍ଯ୍ୟସମ୍ପନ୍ନ ରାଜା ପୌରବ ଦଶଲକ୍ଷ ଶ୍ୱେତବର୍ଣ୍ଣବିଶିଷ୍ଟ ଅଶ୍ୱ ଦାନ କରିଥିଲେ, ସେ ମଧ୍ୟ କାଳଗ୍ରାସରେ ପତିତ ହୋଇଅଛନ୍ତି—ଏହା ଆମ୍ଭେ ଶୁଣିଅଛୁଁ । ୧ । ସେହି ରାଜର୍ଷିଙ୍କର ଅଶ୍ୱମେଧ ଯଜ୍ଞକୁ ନାନାଦେଶରୁ ବେଦାଧ୍ୟୟନଶୀଳଙ୍କ ପଣ୍ଡିତମାନେ ଯେ କେତେ ପରିମାଣରେ ଆସିଥିଲେ, ତାହାର ସଂଖ୍ୟା ହୋଇନାହିଁ । ୨ । ସେହି ଯଜ୍ଞରେ ବେଦବିଦ୍ୟାବ୍ରତସ୍ନାତ, ବଦାନ୍ୟ ଓ ପ୍ରିୟଦର୍ଶନ ବ୍ରାହ୍ମଣମାନଙ୍କୁ ସେହି ରାଜର୍ଷି ଉତ୍ତମରୂପେ ଅନ୍ନ, ବସନ, ଗୃହ, ଆସନ ଓ ବାହନ ସମସ୍ତ ପ୍ରଦାନ କରି ସନ୍ତୁଷ୍ଟ କରିଥିଲେ ଏବଂ ନର୍ତ୍ତନର୍ତ୍ତକ ଓ ଗନ୍ଧର୍ବରୂପ ଗାୟକମାନେ ସର୍ବଦା ଉଦ୍‌ଯୋଗୀ ହୋଇ ସ୍ୱର୍ଣ୍ଣଚୂଡ଼ପକ୍ଷାକାର ଦୀପାଧାର ହସ୍ତରେ ଧେନି ନୃତ୍ୟଗୀତାଦି ଦ୍ୱାରା ସେହି ସମସ୍ତ

ସମାଗତ ବ୍ରାହ୍ମଣମାନଙ୍କୁ ହର୍ଷିତ କରିଥିଲେ । ୪ । ସେ ପ୍ରତି ଯଜ୍ଞରେ ଯଥାକାଳରେ ଯଥୋକ୍ତ ଦକ୍ଷିଣା ପ୍ରଦାନ କରିଥିଲେ ଓ ଋତ୍ୱିକ୍ ବ୍ୟତୀତ ଅନ୍ୟାନ୍ୟ ବ୍ରାହ୍ମଣମାନଙ୍କୁ ମଧ୍ୟ ଇଚ୍ଛାନୁସାରେ ଦଶ ସହସ୍ର ହସ୍ତୀ, ଦଶ ସହସ୍ର କାଞ୍ଚନବର୍ଣ୍ଣା ପ୍ରମଦା ଓ ଧ୍ୱଜ, ପତାକା ସହିତ ହେମମୟ ଦଶ ସହସ୍ର ରଥ ଦକ୍ଷିଣା ଦାନ କରିଥିଲେ ଏବଂ ଦଶଲକ୍ଷ କନ୍ୟାଙ୍କୁ ସ୍ୱର୍ଣ୍ଣାଭରଣ-ଭୂଷିତ ଓ ରଥ, ଅଶ୍ୱ, ହସ୍ତୀରେ ସମାରୂଢ଼ କରାଇ ପ୍ରତ୍ୟେକ କନ୍ୟାର ସହିତ ଗୃହ, କ୍ଷେତ୍ର ଓ ଏକଶତ କରି ଗୋ ଦକ୍ଷିଣାସ୍ୱରୂପ ଦାନ କରିଥିଲେ । ସ୍ୱର୍ଣ୍ଣମାଳାଭୂଷିତ ବିଶାଳଦେହ ଏକକୋଟି ଗୋ ଓ ସହସ୍ର ସହସ୍ର ଦାସ ଦକ୍ଷିଣା ପ୍ରଦାନ କରିଥିଲେ । ଏତଦ୍ଭିନ୍ନ ହେମଶୃଙ୍ଗ ଓ ରୌପ୍ୟଖୁର-ବିଶିଷ୍ଟ ଗୋ ଓ ଦୋହନାର୍ଥ କାଂସ୍ୟପାତ୍ର ଏବଂ ବହୁଳ ଦାସ, ଦାସୀ, ଗର୍ଦ୍ଦଭଉଷ୍ଟ୍ର, ଛାଗ ଓ ମେଷ ଦାନ କରିଥିଲେ । ସେହି ଅନୁଷ୍ଠିତ ଯଜ୍ଞରେ ବିବିଧ ରତ୍ନ ଓ ଅନ୍ନପର୍ବତମାନ ଦକ୍ଷିଣା ପ୍ରଦାନ କରିଥିଲେ । ପୁରାବୃତ୍ତବେତ୍ତା ଲୋକମାନେ ଏହି ଗାଥା ଗାନ କରିଥାଆନ୍ତି ଯେ, "ଅଙ୍ଗରାଜ ପୌରବଙ୍କର ସମସ୍ତ ଯଜ୍ଞ ଯଥୋକ୍ତ ଧର୍ମାନୁସାରେ ଅନୁଷ୍ଠିତ ଶୁଭସୂଚକ ଓ ଅଧିକ ଗୁଣଶାଳୀ ହୋଇ ସର୍ବକାମନାସମ୍ପାଦନ ହେଉଥିଲେ । ୧୧ ।

ବ୍ୟାସ ବୋଇଲେ—ନାରଦ ସୃଞ୍ଜୟଙ୍କୁ ଏହି ପ୍ରକାରେ କହି ପୁନର୍ବାର ଶ୍ୱୈତ୍ୟ ପୁତ୍ର ବୋଲି ସମ୍ବୋଧନ ପୂର୍ବକ କହିଲେ," ସେହି ରାଜର୍ଷି ପୌରବ ଚତୁର୍ବିଧ ଭଦ୍ର ବିଷୟରେ ତୁମ୍ଭ ପୁତ୍ର ଓ ତୁମ୍ଭ ଅପେକ୍ଷା ଶ୍ରେଷ୍ଠ ଓ ପୁଣ୍ୟଶୀଳ ଥିଲେ । ହେ ସୃଞ୍ଜୟ ! ଯେତେବେଳେ ସେ ମଧ୍ୟ କାଳଗ୍ରାସରେ ପତିତ ହୋଇଅଛନ୍ତି, ତେତେବେଳେ ଅଯାଜ୍ଞିକ ଓ ଦାକ୍ଷିଣ୍ୟରହିତ ତ୍ୱଦୀୟ ପୁତ୍ର ନିମନ୍ତେ ତୁମ୍ଭର ଅନୁତାପ କରିବା ଉଚିତ ନୁହେଁ । ୧୨ ।



# ୫୮ ଅଧ୍ୟାୟ

ନାରଦ ବୋଇଲେ—ହେ ସୃଞ୍ଜୟ ! ଆମ୍ଭେ ଶ୍ରବଣ କରିଅଛୁଁ ଯେ, ଉଶୀନରଙ୍କ ପୁତ୍ର ଶିବି ରାଜା ମଧ୍ୟ ମୃତ୍ୟୁ ମୁଖରେ ପତିତ ହୋଇଅଛନ୍ତି ।

ଯେ ଏହି ସାଗର, ପର୍ବତ, ଦ୍ୱୀପ ଓ କାନନ ସହିତ ସମୁଦାୟ ପୃଥିବୀକୁ ରଥ-ଘୋଡ଼ାରେ ପ୍ରତିନାଦିତ କରି ( ଦେହକୁ ଚର୍ମ ବେଷ୍ଟନ କଲା ପ୍ରାୟ ) ପରିବେଷ୍ଟନ କରିଥିଲେ ଓ ପ୍ରଧାନ ପ୍ରଧାନ ଶତ୍ରୁ ଜୟ କରି ସପତ୍ନଜିତ୍ ବୋଲି ପ୍ରସିଦ୍ଧ ହୋଇଥିଲେ ଏବଂ ପୂର୍ଣ୍ଣ ଦକ୍ଷିଣା ପ୍ରଦାନ ଦ୍ୱାରା ନାନାବିଧ ଯଜ୍ଞ ନିର୍ବାହ କରିଥିଲେ, ସେହି ବୀର୍ଯ୍ୟବାନ୍ ଶ୍ରୀମାନ୍ ରାଜା ଅପରିମିତ ଧନଲାଭ କରି ତତ୍‌ସମସ୍ତ ଦାନ କରିଥିଲେ ।୩। ସେ ଯୁଦ୍ଧ ବିଷୟରେ ସମସ୍ତ ରାଜାଙ୍କର ପୂଜିତ ଥିଲେ । ସେ ଏହି ପୃଥିବୀ ଜୟ କରି ବହୁ ଫଳାନ୍ୱିତ ଅନେକ ଅଶ୍ୱମେଧ ଯଜ୍ଞ ନିର୍ବିଘ୍ନରେ ସମ୍ପାଦନ କରି ସହସ୍ର କୋଟି ନିଷ୍କ ପ୍ରଦାନ କରିଥିଲେ ଓ ପୁଣ୍ୟଜନିକା ପୃଥିବୀକୁ ହସ୍ତୀ, ଅଶ୍ୱ, ନର, ଧାନ୍ୟ, ମୃଗ, ଗୋ ଓ ମେଷସମୂହ ସହିତ ବ୍ରାହ୍ମଣସାତ୍ କରିଥିଲେ । ମେଘରୁ ଜଳବର୍ଷା ହେଲେ ଯେତେ ଧାରା ପତିତ ହୁଏ, ଆକାଶରେ ଯାବତ୍ ସଂଖ୍ୟକ ନକ୍ଷତ୍ର ବିଦ୍ୟମାନ, ଗଙ୍ଗାରେ ଯାବତ୍ ପରିମିତ ସିକତା, ପର୍ବତରେ ଯାବତ୍ ସଂଖ୍ୟକ ମହା ଉପଳ ଖଣ୍ଡ ଓ ସମୁଦ୍ରରେ ଯାବତ୍ ସଂଖ୍ୟକ ରତ୍ନ ଓ ପ୍ରାଣୀ ଅଛନ୍ତି, ରାଜା ଶିବି ଯଜ୍ଞରେ ତାବତ୍ ସଂଖ୍ୟକ ଗୋ ପ୍ରଦାନ କରିଥିଲେ ।୭। ପ୍ରଜାପତି ଭିନ୍ନ ଅନ୍ୟ କେହି ତାହାଙ୍କ ଯଜ୍ଞ ସମାନ ଯଜ୍ଞ କରି ପାରନ୍ତି ନାହିଁ । କୌଣସି ରାଜା ତାହାଙ୍କ ଅନୁରୂପ ଯଜ୍ଞ ପୂର୍ବରେ କରି ନାହାନ୍ତି । ବର୍ତ୍ତମାନ କି ଭବିଷ୍ୟତରେ ମଧ୍ୟ କରି ପାରିବେ ନାହିଁ ।୮।

ସେ ସର୍ବକାମପ୍ରଦ ବିବିଧ ଯଜ୍ଞ ସମ୍ପାଦନ କରିଥିଲେ ।୯। ସେହି ଯଜ୍ଞମାନଙ୍କରେ ଯୂପ, ଆସନ, ଗୃହ, ପ୍ରାକାର ଓ ତୋରଣମାନ ସମସ୍ତ ସ୍ୱର୍ଣ୍ଣନିର୍ମିତ ହୋଇଥିଲା ଓ ଅନ୍ନପାନ ସମସ୍ତ ପବିତ୍ର ଓ ସୁସ୍ୱାଦୁ ହୋଇଥିଲା ଏବଂ ଦଧିଦୁଗ୍ଧର ବୃହତ୍ ବୃହତ୍ ହ୍ରଦସମନ୍ୱିତ ନଦୀ ଓ ଶୁଭ୍ର ଅନ୍ନର ପର୍ବତମାନ ପ୍ରସ୍ତୁତ ହୋଇଥିଲା । ଅଯୁତ ଅଯୁତ, ନିୟୁତ ନିୟୁତ ବ୍ରାହ୍ମଣମାନେ ଆଗମନ କରି ନାନାବିଧ ଭକ୍ଷ୍ୟସାମଗ୍ରୀ—ଭୋଜନ ଓ ପ୍ରିୟ କଥାଦ୍ୱାରା ସନ୍ତୁଷ୍ଟ ହୋଇଥିଲେ ।୧୧। ତାହାଙ୍କ ଯଜ୍ଞରେ ଏହିପରି କଥା ନିୟତ କଥିତ ହେଉଥିଲା—ହେ ମନୁଷ୍ୟମାନେ, ସ୍ନାନ କର, ପାନ କର, ଭୋଜନ କର, ତୁମ୍ଭମାନଙ୍କର ଯହିଁରେ ଅଭିରୁଚି ହୁଏ, ତାହା କର । ଭଗବାନ୍ ରୁଦ୍ରଦେବ ତାହାଙ୍କର ପୁଣ୍ୟକାର୍ଯ୍ୟରେ ସନ୍ତୁଷ୍ଟ ହୋଇ

ଏହି ବରଦାନ କରିଥିଲେ ଯେ, ଦାନ କଲେ ତୁମ୍ଭର ଧନ ଅକ୍ଷୟ ହେବ ଓ ଶ୍ରଦ୍ଧା, କୀର୍ତ୍ତି, ସନ୍ନିଯ୍ୟା ପ୍ରାଣିମାନଙ୍କ ପ୍ରତି ଯଥାବତ୍ ପ୍ରିୟତା ଓ ଉତ୍କୃଷ୍ଟ ସ୍ୱର୍ଗଲାଭ ହେବ । ଏହି ସମସ୍ତ ଅଭିଳଷିତ ବର ଲାଭ କରି ସେ ଯଥା ସମୟରେ ସ୍ୱର୍ଗକୁ ଗମନ କରିଥିଲେ ।

ବ୍ୟାସ ବୋଇଲେ—ନାରଦ ଏହିପରି କହି ପୁନର୍ବାର ଶ୍ୱୈତ୍ୟ-ନନ୍ଦନ ବୋଲି ସମ୍ବୋଧନପୂର୍ବକ କହିଲେ, ଶିବିରାଜା ତୁମ୍ଭର ପୁତ୍ର ଓ ତୁମ୍ଭର ଅପେକ୍ଷା ଚତୁର୍ବିଧ ଭଦ୍ର ବିଷୟରେ ଶ୍ରେଷ୍ଠତର ଓ ପୁଣ୍ୟବାନ୍ ଥିଲେ । ହେ ସୃଞ୍ଜୟ ! ସେ ମଧ୍ୟ ଯେତେବେଳେ ମୃତ୍ୟୁମୁଖରେ ପତିତ ହୋଇଅଛନ୍ତି, ତେତେବେଳେ ଯଜ୍ଞ ଓ ଦାକ୍ଷିଣ୍ୟରହିତ ତୁମ୍ଭ ପୁତ୍ର ନିମନ୍ତେ ତୁମ୍ଭର ଅନୁତାପ କରିବା ଉଚିତ ନୁହେଁ । ୧୫ ।

---

# ୫୯ ଅଧ୍ୟାୟ

ନାରଦ କହିଲେ—ହେ ସୃଞ୍ଜୟ ! ଯେଉଁ ଦଶରଥପୁତ୍ର ରାମଙ୍କୁ ପ୍ରଜାମାନେ ଔରସ ପୁତ୍ରସଦୃଶ ଅନୁମୋଦନ କରୁଥିଲେ, ସେ ମଧ୍ୟ ମୃତ ହୋଇଥିବାର ଆମ୍ଭେ ଶୁଣିଅଛୁଁ । ସେ ଅପରିମିତତେଜା ଥିଲେ ଓ ତାହାଙ୍କଠାରେ ଅଗଣ୍ୟ ଗୁଣମାନ ଥିଲା । ସେ ପିତାଙ୍କର ଆଜ୍ଞା ପାଳନାର୍ଥ ଅରଣ୍ୟରେ ବନିତା ସହିତ ଚତୁର୍ଦ୍ଦଶ ବର୍ଷ ବାସ କରିଥିଲେ ଓ ଜନସ୍ଥାନରେ ତପସ୍ୱିମାନଙ୍କ ରକ୍ଷଣାର୍ଥ ଚତୁର୍ଦ୍ଦଶ ସହସ୍ର ରାକ୍ଷସଙ୍କୁ ହତ କରିଥିଲେ, ସେ ସେହି ସ୍ଥାନରେ ବାସ କରୁଥିବା ସମୟରେ ରାବଣ ନାମକ ରାକ୍ଷସ ରାମଚନ୍ଦ୍ର ଓ ତାହାଙ୍କ ଅନୁଜ ଲକ୍ଷ୍ମଣଙ୍କୁ ମୋହିତ କରି ତାହାଙ୍କର ଭାର୍ଯ୍ୟା ବିଦେହରାଜନନ୍ଦିନୀ ସୀତାଙ୍କୁ ହରଣ କଲେ । ଯେପରି ପୂର୍ବକାଳରେ ମହାଦେବ ଅନ୍ଧକାସୁରକୁ ବଧ କରିଥିଲେ, ସେହିପରି ମହାବାହୁ ରାମଚନ୍ଦ୍ର ସୁରାସୁରର ଅବଧ୍ୟ ଶତ୍ରୁମାନଙ୍କର ଅପରାଜିତ, ଦେବବ୍ରାହ୍ମଣ-କଣ୍ଟକ ପୁଲସ୍ତ୍ୟନନ୍ଦନ ରାବଣକୁ ତାହାର ସେହି ଅପରାଧ ହେତୁ ସଗଣରେ ବିନାଶ କଲେ । ସେହି ରାମଚନ୍ଦ୍ର ପ୍ରଜାମାନଙ୍କ ପ୍ରତି ଅନୁଗ୍ରହକରି ଦେବର୍ଷି ଓ

ଦେବତାମାନଙ୍କରେ ପୂଜିତ ହୋଇଥିଲେ ଓ କୀର୍ତ୍ତିଦ୍ୱାରା ଜଗତ୍ ପରିବ୍ୟାପ୍ତ କରିଥିଲେ । ତାହାଙ୍କର ସର୍ବପ୍ରାଣୀ ପ୍ରତି ଅନୁକମ୍ପା ଥିଲା । ସେ ବିଧିପୂର୍ବକ ରାଜ୍ୟ ପ୍ରାପ୍ତ ହୋଇ ଧର୍ମାନୁସାରେ ପ୍ରଜାପାଳନପୂର୍ବକ ଶତ ଅଶ୍ୱମେଧ ଯଜ୍ଞ ଅନୁଷ୍ଠାନ କରି ହବିଦ୍ୱାରା ସୁରେଶଙ୍କର ଆନନ୍ଦ ଜନ୍ମାଇଥିଲେ ଏବଂ ବହୁଗୁଣ ଦକ୍ଷିଣା ଦାନଦ୍ୱାରା ଅନ୍ୟାନ୍ୟ ବିବିଧ ଯଜ୍ଞ ମଧ୍ୟ ସମ୍ପାଦନ କରିଥିଲେ । ୧୦ ।

ଦେହୀମାନଙ୍କର ଯେଉଁ ସମସ୍ତ ରୋଗ ହୋଇଥାଏ, ସେ ସମସ୍ତ ରୋଗ ଓ କ୍ଷୁତ୍ପିପାସାକୁ ରାମ ଜୟ କରିଥିଲେ ; ସେ ସତ୍ତ୍ୱଗୁଣସମ୍ପନ୍ନ ଓ ସ୍ୱତେଜରେ ଦୀପ୍ୟମାନ ହୋଇ ସମୁଦାୟ ପ୍ରାଣୀଙ୍କୁ ଅତିକ୍ରମ କରି ଶୋଭମାନ ହୋଇଥିଲେ । ତାହାଙ୍କର ରାଜ୍ୟଶାସନ କାଳରେ ପୃଥିବୀରେ ଋଷି, ଦେବତା ଓ ମନୁଷ୍ୟମାନଙ୍କର ଏକତ୍ର ସହବାସ ହେଉଥିଲା । ୧୨ । ରାମଙ୍କ ରାଜ୍ୟଶାସନ କାଳରେ ପ୍ରାଣିମାନଙ୍କର ବଳହାନି ଓ ପ୍ରାଣ, ଅପାନ ଓ ସମାନ ବାୟୁର ବିକୃତଭାବ ହେଉ ନ ଥିଲା । ୧୩ । ତେଜଃ ପଦାର୍ଥମାନ ଦୀପ୍ୟମାନ ଥିଲା ; ସେ ସମୟରେ ଅନର୍ଥ ହେଉ ନ ଥିଲା ।୧୪। ପ୍ରଜାମାନେ ଦୀର୍ଘାୟୁ ହେଉଥିଲେ, ଯୁବାବ୍ୟକ୍ତିର ସେ ସମୟରେ ମୃତ୍ୟୁ ହେଉ ନ ଥିଲା । ସ୍ୱର୍ଗବାସୀ ଦେବତା ଓ ପିତୃମାନେ ପ୍ରୀତ ହୋଇ ଚତୁର୍ବେଦବିଧାନକ୍ରମେ ବିବିଧ ହବ୍ୟ, କବ୍ୟ ଓ ତଦ୍ଭାଗ, ଆଗମ ପ୍ରଭୃତି ସୁପ୍ରତିଷ୍ଠାର୍ଥ ହବିର୍ଭାଗ ପ୍ରାପ୍ତ ହେଉଥିଲେ । ରାଜ୍ୟରେ ମଶକଦଂଶନ ହେଉ ନ ଥିଲା ଓ ହିଂସ୍ର-ସରୀସୃପ ନ ଥିଲେ । ୧୬ । ସେ ସମୟରେ ଅକାଳରେ ପ୍ରାଣିମାନଙ୍କର ଜଳମଜ୍ଜନରେ ଓ ଅଗ୍ନିଦାହରେ ମୃତ୍ୟୁ ନ ଥିଲା ଓ କେହି ଅଧର୍ମପ୍ରିୟ, ମୂର୍ଖ ବା ଲୁବ୍ଧ ନ ଥିଲେ । ୧୭ ।

ସବୁ ବର୍ଣ୍ଣ ଶିଷ୍ଟ ଓ ଯାଗାଦିକ୍ରିୟାକଳାପସମ୍ପନ୍ନ ଥିଲେ । ଜନ-ସ୍ଥାନରେ ରାକ୍ଷସମାନେ ଦୈବ ଓ ପୈତ୍ର କାର୍ଯ୍ୟରେ ବିଘ୍ନ କରନ୍ତେ ରାମ ସେହି ରାକ୍ଷସମାନଙ୍କୁ ନିହତ କରି ଦେବ ଓ ପିତୃମାନଙ୍କୁ ହବ୍ୟ ଓ କବ୍ୟ ଦେଇଥିଲେ । ତାହାଙ୍କ ରାଜ୍ୟକାଳରେ ପୁରୁଷମାନଙ୍କର ପରମାୟୁ ସହସ୍ର-ବର୍ଷ ଥିଲା ଓ ସେମାନଙ୍କର ସହସ୍ର ପୁତ୍ର ହେଉଥିଲେ ଏବଂ ତତ୍କାଳରେ କନିଷ୍ଠର ଶ୍ରାଦ୍ଧ ଜ୍ୟେଷ୍ଠକୁ କରିବାକୁ ହେଉ ନ ଥିଲା । ମହାବଳଶାଳୀ

ରାମ ଶ୍ୟାମବର୍ଣ୍ଣ ଯୁବା ଲୋହିତଲୋଚନ ମତ୍ତମାତଙ୍ଗସମବିକ୍ରମ, ଆଜାନୁଲମ୍ବିତବାହୁ ଓ ସିଂହସ୍କନ୍ଧ ଥିଲେ । ସେ ଏକା ଦଶ ସହସ୍ର ବର୍ଷକାଳ ସର୍ବପ୍ରାଣୀଙ୍କର ଚିତ୍ତରଞ୍ଜନ କରି ରାଜ୍ୟ କରିଥିଲେ । ତତ୍କାଳରେ ପ୍ରଜାମାନଙ୍କ ମୁଖରେ "ରାମ, ରାମ, ରାମ" ଏହିପରି କଥା ସର୍ବଦା ଉଚ୍ଚାରିତ ହେଉଥିଲା । ୨୨ । ରାମ ରାଜ୍ୟ ଶାସନ କରିବା କାଳରେ ଜଗତ୍ ସୁଖର ସ୍ଥାନ ହୋଇଥିଲା । ସ୍ୱୀୟ ଅଂଶରୁ ଉତ୍ପନ୍ନ ଆଠଗୋଟି ରାଜବଂଶ ପୃଥିବୀରେ ସ୍ଥାପନ କରି ଅବଶେଷରେ ଚତୁର୍ବିଧ ପ୍ରଜାଙ୍କୁ ସଙ୍ଗରେ ଘେନି ସ୍ୱର୍ଗକୁ ଗମନ କଲେ ।

ବ୍ୟାସ ବୋଇଲେ—ନାରଦ ଏହିପରି କହି ପୁନର୍ବାର ଶ୍ୱୈତ୍ୟ ପୁତ୍ର ବୋଲି ସମ୍ବୋଧନପୂର୍ବକ କହିଲେ, ହେ ସୃଞ୍ଜୟ ! ରାମ ତୁମ୍ଭ ପୁତ୍ର ଓ ତୁମ୍ଭ ଅପେକ୍ଷା ଚତୁର୍ବିଧ ଭଦ୍ର ବିଷୟରେ ଶ୍ରେଷ୍ଠତର ଓ ପୁଣ୍ୟବାନ୍ ଥିଲେ । ସେ ମଧ୍ୟ ଯେତେବେଳେ ମୃତ ହୋଇଅଛନ୍ତି, ତେତେବେଳେ ଯଜ୍ଞ ଓ ଦାକ୍ଷିଣ୍ୟରହିତ ସ୍ୱୀୟ ପୁତ୍ର ନିମନ୍ତେ ତୁମ୍ଭର ଶୋକ କରିବା ଉଚିତ ନୁହେ । ୨୫ ।

# ୬୦ ଅଧ୍ୟାୟ

ନାରଦ ବୋଇଲେ—ହେ ସୃଞ୍ଜୟ ! ଭଗୀରଥ ରାଜାଙ୍କର ମଧ୍ୟ ମୃତ୍ୟୁ ହୋଇଅଛି, ଏହା ଆମ୍ଭେ ଶୁଣିଅଛୁଁ । ସେ ଭାଗୀରଥୀ ଗଙ୍ଗାଙ୍କୁ ଝଭୁ ନିମନ୍ତେ କାଞ୍ଚନମୟ ଇଷ୍ଟକନିର୍ମିତ ସ୍ଥଣ୍ଡିଳ ଦ୍ୱାରା ପରିବ୍ୟାପ୍ତ କରିଥିଲେ ଏବଂ ରାଜା ଓ ରାଜପୁତ୍ରମାନଙ୍କୁ ଅତିକ୍ରମ କରି ସ୍ୱର୍ଣ୍ଣାଳଙ୍କାରଭୂଷିତ ଦଶଲକ୍ଷ କନ୍ୟା ବ୍ରାହ୍ମଣମାନଙ୍କୁ ଦାନ କରିଥିଲେ । ସେହି ସମୁଦାୟ କନ୍ୟା ରଥାରୂଢ଼ ହୋଇଥିଲେ ଓ ସେମାନଙ୍କ ରଥରେ ଚାରି ଚାରିଗୋଟି ଅଶ୍ୱ ଯୋଜିତ ହୋଇଥିଲେ । ପ୍ରତ୍ୟେକ ରଥ ପଛରେ ସହସ୍ର ହେମମାଲ୍ୟଭୂଷିତ ହସ୍ତୀ, ରଥ ପ୍ରତି ହସ୍ତୀ ସଙ୍ଗରେ ଏକ ସହସ୍ର ଅଶ୍ୱ, ପ୍ରତି ଅଶ୍ୱ ସଙ୍ଗରେ ଏକଶତ ଗୋ ଏବଂ ପ୍ରତି ଗୋ ସଙ୍ଗରେ ପାଞ୍ଚଗୋଟି ଲେଖାଏଁ ଛାଗ ଓ ମେଷ ଥିଲେ । ୪ ।

ସେ ଗଙ୍ଗାକୂଳରେ ପ୍ରବାହସମୀପସ୍ଥ ବିଭିନ୍ନ ସ୍ଥାନରେ ରତ୍ନ ଭୂୟିଷ୍ଠ ଦକ୍ଷିଣା ପ୍ରଦାନ କରୁଥିବାରୁ ସେହିସ୍ଥାନ ଦକ୍ଷିଣାଭାରରେ ନମ୍ର ହୋଇଗଲା । ତହୁଁ ଭାଗୀରଥୀ ଗଙ୍ଗା ଅତି ବ୍ୟଥିତା ଓ ନିମ୍ନଗା ହେଲା ପ୍ରାୟ ଜଳସମୂହଦ୍ୱାରା ପ୍ରବାହରୂପରେ ରାଜାଙ୍କ କ୍ରୋଡ଼ରେ ଆସି ଉପବେଶନ କଲେ । ୫ । ସେହି ସ୍ଥାନରେ ରାଜାଙ୍କ ଉରୁଦେଶରେ ଗଙ୍ଗା ଉପବେଶନ କରିଥିବାରୁ ତାହା ଉର୍ବଶୀତୀର୍ଥ ବୋଲି ଖ୍ୟାତ ହେଲା । ଗଙ୍ଗା ତାହାଙ୍କ କ୍ରୋଡ଼ରେ ଅଧିଷ୍ଠାନ କରିଥିବାରୁ ତାହାଙ୍କର ଦୁହିତୃତ୍ୱ ଓ ପୁତ୍ରତ୍ୱ ପ୍ରାପ୍ତ ହେଲା । ୬ । ସୂର୍ଯ୍ୟସମ ତେଜଃସମ୍ପନ୍ନ ଗନ୍ଧର୍ବମାନେ ପ୍ରୀତ ହୋଇ ମଧୁର-ଭାଷୀ ପିତୃଦେବ ଓ ମନୁଷ୍ୟମାନଙ୍କୁ ଏହି ଗାଥା ଶୁଣାଇଥିଲେ ଯେ "ସମୁଦ୍ରଗାମିନୀ ଗଙ୍ଗାଦେବୀ ବହୁଦକ୍ଷିଣାପ୍ରଦାୟୀ ଯଜମାନ ଇକ୍ଷ୍ୱାକୁ ନନ୍ଦନ ଭଗୀରଥଙ୍କୁ ପିତା ବୋଲି ବରଣ କଲେ ।" ୮ । ଇନ୍ଦ୍ରବରୁଣାଦି ଦେବତା-ମାନେ ସେହି ଭଗୀରଥଙ୍କର ସୁଶୋଭିତ ବିଘ୍ନରହିତ ନିରାମୟ ଯଜ୍ଞକୁ ସମ୍ୟକ୍‌ପ୍ରକାରରେ ଗ୍ରହଣ କରିଥିଲେ । ୯ ।

ଯେଉଁ ଯେଉଁ ବ୍ରାହ୍ମଣମାନେ ଯେ ଯେ ସ୍ଥାନରେ ଯେଉଁ ଯେଉଁ ପ୍ରିୟ ବସ୍ତୁ ଅଭିଳାଷ କରିଥିଲେ, ଭଗୀରଥ ପ୍ରୀତ ହୋଇ ଯୋଗପ୍ରଭାବରୁ ସେମାନଙ୍କୁ ସେହି ସେହି ସ୍ଥାନରେ ସେ ସମସ୍ତ ପ୍ରଦାନ କରିଥିଲେ । ୧୦ । ଯେଉଁ ବ୍ରାହ୍ମଣର ଯେଉଁ ଧନ ପ୍ରିୟ, ତାହା ଭଗୀରଥଙ୍କର ଅଦେୟ ନ ଥିଲା । ସେ ବ୍ରାହ୍ମଣମାନଙ୍କ ପ୍ରସାଦରୁ ବ୍ରାହ୍ମଲୋକକୁ ଗମନ କରିଥିଲେ ।୧୧। ସୂର୍ଯ୍ୟ ଓ ଚନ୍ଦ୍ର କିରଣଦ୍ୱାରା ସମସ୍ତ ଦିଗକୁ ପରିବ୍ୟାପ୍ତ କରି ଯେଉଁ ପଥଦ୍ୱାରା ଗମନାଗମନ କରନ୍ତି, ପୃଥିବୀସ୍ଥ ଅନ୍ୟାନ୍ୟ ରାଜାମାନେ ସେହି ପଥଦ୍ୱାରା ଗମନ କରିବାକୁ ଇଚ୍ଛା କରି ସର୍ବବିଦ୍ୟାବିତ୍ ତେଜସ୍ୱୀ ଭଗୀରଥ ରାଜାଙ୍କର ଆଶ୍ରୟ ଗ୍ରହଣ କରିଥିଲେ । ୧୨ ।

ବ୍ୟାସ ବୋଇଲେ—ନାରଦ ଏହିପରି କହି ପୁନର୍ବାର ଶ୍ୱୈତ୍ୟପୁତ୍ର ବୋଲି ସମ୍ବୋଧନପୂର୍ବକ କହିଲେ, ରାଜା ଭଗୀରଥ ତୁମ୍ଭର ପୁତ୍ର ଓ ତୁମ୍ଭ ଅପେକ୍ଷା ଚତୁର୍ବିଧ ଭଦ୍ର ବିଷୟରେ ଶ୍ରେଷ୍ଠତର ଓ ପୁଣ୍ୟବାନ୍ ଥିଲେ । ସେ ଯେତେବେଳେ କାଳଗ୍ରାସରେ ପତିତ ହୋଇଅଛନ୍ତି, ତେତେବେଳେ

ଯଜ୍ଞ ଓ ଦାକ୍ଷିଣ୍ୟରହିତ ସ୍ୱୀୟ ପୁତ୍ର ନିମନ୍ତେ ତୁମ୍ଭର ଶୋକ କରିବା ଉଚିତ ନୁହେ । ୧୪ ।



# ୬୧ ଅଧ୍ୟାୟ

ନାରଦ ବୋଇଲେ—ହେ ସୃଞ୍ଜୟ ! ଇଲବିଲ୍ ତନୟ ଦିଲୀପ ରାଜାଙ୍କର ମୃତ୍ୟୁ ହୋଇଥିବାର ଆମ୍ଭେ ମଧ୍ୟ ଶୁଣିଅଛୁଁ । ତାହାଙ୍କର ଶତ ଶତ ଯଜ୍ଞକୁ ଅୟୁତ ଅୟୁତ ଓ ପ୍ରଯୁତ ପ୍ରଯୁତ ତତ୍ତ୍ୱଜ୍ଞାନସମ୍ପନ୍ନ ପୁତ୍ରପୌତ୍ର-ବିଶିଷ୍ଟ ଅଗ୍ନିହୋତ୍ରୀ ବ୍ରାହ୍ମଣମାନେ ଆଗମନ କରିଥିଲେ । ସେ ବିବିଧ ଯଜ୍ଞ ଅନୁଷ୍ଠାନ କରି ବସୁଧାକୁ ବସୁସମ୍ପନ୍ନ କରି ବ୍ରାହ୍ମଣମାନଙ୍କୁ ଦାନ-କରିଥିଲେ । ୨ । ତାହାଙ୍କର ଯଜ୍ଞପଥମାନ ହିରଣ୍ମୟ ହୋଇଥିଲା । ଇନ୍ଦ୍ରାଦି ଦେବଗଣ ରାଜା ଦିଲୀପଙ୍କୁ ପୁଣ୍ୟୋପୃତ୍ତିର ସ୍ଥଳ ମନେ କରି ଆଗମନ କରିଥିଲେ । ତାହାଙ୍କର ଯଜ୍ଞରେ ପର୍ବତୋପମ ସହସ୍ର ମାତଙ୍ଗ ଉପସ୍ଥିତ ଥିଲେ ଓ ଯଜ୍ଞର ଦ୍ରବ୍ୟସମସ୍ତ ହିରଣ୍ମୟ ହୋଇଥିଲା । ୪ । ନାନାବିଧ ରସର କୁଲ୍ୟାମାନ ଓ ପର୍ବତସଦୃଶ ଭକ୍ଷ୍ୟଦ୍ରବ୍ୟସମସ୍ତ ପ୍ରସ୍ତୁତ ହୋଇଥିଲା ।

ହେ ମହାରାଜ ! ଯଜ୍ଞୀୟପଶୁବନ୍ଧନ ନିମନ୍ତେ ସହସ୍ର ବ୍ୟାମ-ପରିମିତ ହିରଣ୍ମୟ ଯୂପ ନିର୍ମିତ ହୋଇଥିଲା । ୫ । ସେହି ହିରଣ୍ମୟ ଯୂପର ମସ୍ତକରେ ବଳୟାକାର ଚଷାଳ ଓ ପ୍ରଚଷାଳ ସଂଲଗ୍ନ ହୋଇଥିଲା । ସେହି ଯଜ୍ଞରେ ଷଟ୍‌ସହସ୍ର ଅପ୍‌ସରା ସମସ୍ତ ପ୍ରକାର ନୃତ୍ୟ କରିଥିଲେ ଓ ବିଶ୍ୱାବସୁ ପ୍ରୀତ ହୋଇ ସ୍ୱୟଂ ବୀଣାବାଦନ କରିଥିଲେ ଏବଂ ସମସ୍ତ ପ୍ରାଣୀ ସତ୍ୟଶୀଳ ସେହି ରାଜା ଦିଲୀପଙ୍କୁ ସତ୍କାର କରିଥିଲେ । ୭ । ତାହାଙ୍କ ଯଜ୍ଞରେ ରାଗ୍ ଖାଣ୍ଡବ ଅର୍ଥାତ୍ ଗୁଡ଼ୋଦନ ଓ ଅନ୍ୟାନ୍ୟ ଭକ୍ଷ୍ୟଦ୍ରବ୍ୟମାନ ଭୋଜନ କରି ଅନେକ ଲୋକ ମତ୍ତ ହୋଇ ପଥମଧ୍ୟରେ ଶୟନ କରୁଥିଲେ । ସେ ଜଳ ଉପରେ ଯୁଦ୍ଧ କରିବାବେଳେ ତାହାଙ୍କର ରଥଚକ୍ର ଜଳରେ ମଗ୍ନ ହେଉ ନ ଥିଲା । ତାହାଙ୍କଠାରେ ଏହି ଯେଉଁ ଆଶ୍ଚର୍ଯ୍ୟ ଗୁଣ ଥିଲା, ତାହା ଅନ୍ୟ ରାଜାମାନଙ୍କଠାରେ ନ ଥିଲା । ଯେଉଁ ମହାତ୍ମାମାନେ ଦୃଢ଼ଧନ୍ୱା

ସତ୍ୟବାଦୀ ରାଜା ଦିଲୀପଙ୍କୁ ଦେଖିଅଛନ୍ତି, ସେମାନେ ସ୍ୱର୍ଗଜୟୀ ହୋଇଅଛନ୍ତି । ସେହି ରାଜାଙ୍କ ଭବନରେ ବେଦାଧ୍ୟୟନ ଧ୍ୱନି, ଧନୁଷ୍ଟଙ୍କାର ଧ୍ୱନି ଓ "ପାନକର, ପାନକର" "ଭୋଜନ କର" ଇତ୍ୟାଦି ଧ୍ୱନି କଦାଚ ବିରତ ହେଉ ନ ଥିଲା ।

ବ୍ୟାସ ବୋଇଲେ -- ନାରଦ ଏହିପରି କହି ପୁନର୍ବାର ଶ୍ୱୈତ୍ୟପୁତ୍ର ବୋଲି ସମ୍ବୋଧନପୂର୍ବକ କହିଲେ, ରାଜା ଦିଲୀପ ତୁମ୍ଭର ଓ ତୁମ୍ଭ ପୁତ୍ର ଅପେକ୍ଷା ଚତୁର୍ବିଧ ଭଦ୍ର ବିଷୟରେ ଶ୍ରେଷ୍ଠତର ଓ ପୁଣ୍ୟବାନ୍ ଥିଲେ । ହେ ସୃଞ୍ଜୟ ! ସେ ଯେତେବେଳେ କାଳଗ୍ରାସରେ ପତିତ ହୋଇଅଛନ୍ତି, ତେତେବେଳେ ଯଜ୍ଞ ଓ ଦାକ୍ଷିଣ୍ୟରହିତ ସ୍ୱୀୟ ପୁତ୍ର ନିମନ୍ତେ ତୁମ୍ଭର ଶୋକ କରିବା ଉଚିତ ନୁହେଁ । ୧୨ ।

# ୬୨ ଅଧ୍ୟାୟ

ନାରଦ ବୋଇଲେ—ହେ ସୃଞ୍ଜୟ ! ଯୁବନାଶ୍ୱପୁତ୍ର ରାଜା ମାନ୍ଧାତା ମଧ୍ୟ ମୃତ ହୋଇଥିବାର ଆମ୍ଭେ ଶୁଣିଅଛୁଁ । ଦେବ, ଅସୁର ଓ ମନୁଷ୍ୟଲୋକ ମଧ୍ୟରେ ରାଜା ମାନ୍ଧାତା ତ୍ରୈଲୋକ୍ୟବିଜୟୀ ଥିଲେ । ଅଶ୍ୱିନୀକୁମାର ଦେବଦ୍ୱୟ ମାନ୍ଧାତାଙ୍କୁ ତାହାଙ୍କ ପିତାଙ୍କ ଉଦରରୁ ନିଷ୍କାସିତ କରିଥିଲେ । କୌଣସି ସମୟରେ ରାଜା ଯୁବନାଶ୍ୱ ମୃଗୟାର୍ଥ ବିଚରଣ କରୁଁ କରୁଁ ତୃଷାର୍ତ୍ତ ହୋଇଥିଲେ । ତାହାଙ୍କର ବାହନ ମଧ୍ୟ କ୍ଳାନ୍ତ ହେଲା । ସେ ସେହି ପ୍ରଦେଶରେ ଯଜ୍ଞଧୂମ ଲକ୍ଷ୍ୟ କରି ଯଜ୍ଞସ୍ଥଳକୁ ଗମନପୂର୍ବକ ଯଜ୍ଞୀୟ ପୃଷଦାଜ୍ୟ ଭୋଜନ କଲେ । ସେଥିରେ ତାହାଙ୍କ ଜଠରରେ ପୁତ୍ରଜନ୍ମ ହେଲା । ଭିଷକ୍‌ପ୍ରବର ଅଶ୍ୱିନୀକୁମାରଦ୍ୱୟ ତାହା ଅବଲୋକନ କରି ତାହାଙ୍କ ଜଠରରୁ ପୁତ୍ରସନ୍ତାନ ନିଃସାରିତ କରି ତାହାଙ୍କ କୋଡ଼ରେ ଅର୍ପଣ କଲେ ।

ଦେବତାମାନେ ସେହି ଦେବକାନ୍ତି ସନ୍ତାନକୁ ତାହାର ପିତାର ଉତ୍ସଙ୍ଗରେ ଶୟନ କରିଥିବାର ଦେଖି ପରସ୍ପର କୁହାକୋହି ହେଲେ,

"ଏହି ସନ୍ତାନ କାହାଠାରୁ ପାନ କରିବ ?" ଇନ୍ଦ୍ର ଅଗ୍ରେ କହିଲେ, ଏହି ବାଳକ ଆମ୍ଭଠାରୁ ପାନ କରୁ । ଅନନ୍ତର ଇନ୍ଦ୍ରଙ୍କର ଅଙ୍ଗୁଳିମାନଙ୍କରୁ ଅମୃତମୟ ଦୁଗ୍ଧ ପ୍ରାଦୁର୍ଭୂତ ହେଲା । ଇନ୍ଦ୍ର କରୁଣାଯୁକ୍ତ ହୋଇ "ମାଂ ଧାସ୍ୟତି" ଅର୍ଥାତ୍ ଆମ୍ଭଙ୍କୁ ଉପଲକ୍ଷ୍ୟ କରି ପାନ କରିବ" ବୋଲି କହିଥିବାରୁ ସେହି ବାଳକର ମାନ୍ଧାତା ନାମ ହେଲା ।

ତଦନନ୍ତର ମହାତ୍ମା ଯୁବନାଶ୍ୱପୁତ୍ରଙ୍କ ନିମନ୍ତେ ଇନ୍ଦ୍ରଙ୍କ ହସ୍ତରୁ ଘୃତ ଓ ଦୁଗ୍ଧଧାରା ନିଃସୃତ ହୋଇ ସେହି ତନୟର ମୁଖରେ ନିପତିତ ହେଲା । ସେହି ବାଳକ ଇନ୍ଦ୍ରଙ୍କ ପାଣି ଅବଲମ୍ବନପୂର୍ବକ ଘୃତ, ଦୁଗ୍ଧ ପାନ କରି ପରିବର୍ଦ୍ଧିତ ହେଲେ । ୮ ।

ସେହି ବୀର୍ଯ୍ୟବାନ୍ ବାଳକ ଦ୍ୱାଦଶ ଦିନରେ ଦ୍ୱାଦଶବତ୍ସର-ବୟସ୍କତୁଲ୍ୟ ହେଲେ । ସେ ଧର୍ମାତ୍ମା, ଧୈର୍ଯ୍ୟଶୀଳ, ଧୀର, ସତ୍ୟପ୍ରତିଜ୍ଞ ଓ ଜିତେନ୍ଦ୍ରିୟ ଥିଲେ । ସେ ଧର୍ମାତ୍ମା ମାନ୍ଧାତା ଏକ ଦିନରେ ଏହି କୃତ୍ସ୍ନ ପୃଥିବୀକୁ ଜୟ କରିଥିଲେ । ଜନମେଜୟ, ସୁଧନ୍ୱା, ଗୟ, ପୁରୁ, ବୃହଦ୍ରଥ, ଅସିତ, ନୃଗ ଏବଂ ଅନୁଜମାନଙ୍କୁ ପରାଜିତ କରିଥିଲେ । ସୂର୍ଯ୍ୟ ଯେଉଁ ସ୍ଥାନରେ ଉଦିତ ଓ ଯେଉଁ ସ୍ଥାନରେ ଅସ୍ତଗତ ହୁଅନ୍ତି, ସେହି ସମୁଦାୟ ପ୍ରଦେଶ ମାନ୍ଧାତାଙ୍କର ଅଧିକୃତ ହୋଇଥିବାର କଥିତ ହୋଇଅଛି । ସେ ଶତ ଅଶ୍ୱମେଧ ଓ ଶତ ରାଜସୂୟ ଯଜ୍ଞ ସମ୍ପନ୍ନ କରି ଶତଯୋଜନ ପରିମିତ ଆୟତ ପଦ୍ମରାଗଖନିସମ୍ପନ୍ନ, ସୁବର୍ଣ୍ଣାକରଯୁକ୍ତ ଯୋଜନ-ପରିମିତ ବିସ୍ତୃତ ରକ୍ତବର୍ଣ୍ଣ ଭୂପ୍ରଦେଶମାନଙ୍କୁ ଓ ମତ୍ସ୍ୟଦେଶୀୟ ଭୂଖଣ୍ଡ-ମାନଙ୍କୁ ବ୍ରାହ୍ମଣମାନଙ୍କୁ ପ୍ରଦାନ କରିଥିଲେ । ୧୩ । ସେହି ଯଜ୍ଞରେ ବହୁପ୍ରକାର ସୁସ୍ୱାଦୁ ଭକ୍ଷ୍ୟ, ଭୋଜ୍ୟ ଓ ଅନ୍ନର ପର୍ବତସବୁ ପ୍ରସ୍ତୁତ ହୋଇ ବ୍ରାହ୍ମଣ ଭୋଜନ ହୋଇଥିଲା । ବ୍ରାହ୍ମଣମାନଙ୍କ ଭୋଜନକାଳରେ ଆହୁରି ଅତିରିକ୍ତ ଭୋଜନ ଦ୍ରବ୍ୟ ଦେଉଅଛୁ—ଏହିପରି ବାକ୍ୟ ପରିବେଷ୍ଟାମାନେ ସର୍ବଦା କହୁଥିଲେ । ୧୪ ।

ଅନନ୍ତର ପର୍ବତମାନଙ୍କ ଦ୍ୱାରା ଓ ଅନ୍ନପାନ ସମୂହରେ ଯଜ୍ଞ-ଭୂଦେଶ ଶୋଭିତ ହୋଇଥିଲା । ଘୃତରୂପ ପଙ୍କ, ଦଧିରୂପ ଫେନ ଓ

ଗୃଢ଼ରୂପ ସଲଳଶାଳମୀ ମଧୂକ୍ଷୀରବାହ୍ନମୀ ଶୁଭନଦୀସମସ୍ତ ଘୃତରୂପ ହ୍ରଦସମନ୍ୱିତା ହୋଇ ଅନ୍ୟପର୍ବତମାନଙ୍କୁ ଅବରୋଧ କରିଥିଲା । ଦେବଗଣ, ଅସୁରଗଣ, ନରଗଣ, ଯକ୍ଷଗଣ, ଗନ୍ଧର୍ବଗଣ, ଉରଗଗଣ, ପକ୍ଷୀଗଣ ଓ ବେଦାଙ୍ଗପାରଗ ବ୍ରାହ୍ମଣଗଣ, ସମସ୍ତେ ଏହି ଯଜ୍ଞକୁ ଆଗମନ କରିଥିଲେ । ଯେଉଁ ସମସ୍ତ ବ୍ରାହ୍ମଣ ଓ ଋଷି ଆଗମନ କରିଥିଲେ ସେମାନଙ୍କ ମଧ୍ୟରେ ଅବିଦ୍ୱାନ୍ କେହି ନ ଥିଲେ । ୧୭ । ରାଜା ମାନ୍ଧାତା ଏହି ସସାଗରା ବସୁନ୍ଧରାକୁ ପରିପୂର୍ଣ୍ଣା କରି ବ୍ରାହ୍ମଣମାନଙ୍କୁ ଦାନ କରି ପରଲୋକକୁ ଗମନ କରିଅଛନ୍ତି । ୧୮ । ସେ ସର୍ବଦିଗକୁ ଯଶରେ ପରିପୂର୍ଣ୍ଣ କରି ପୁଣ୍ୟବାନ୍ ଲୋକମାନଙ୍କର ଗମ୍ୟ ଲୋକକୁ ଗମନ କଲେ ।

ବ୍ୟାସ ବୋଇଲେ – ନାରଦ ଏହିପରି କହି ପୁନର୍ବାର ଶ୍ୱୈତ୍ୟପୁତ୍ର ବୋଲି ସମ୍ବୋଧନପୂର୍ବକ କହିଲେ, ରାଜା ମାନ୍ଧାତା ତୁମ୍ଭର ପୁତ୍ର ଓ ତୁମ୍ଭ ଅପେକ୍ଷା ଚତୁର୍ବିଧ ଭଦ୍ର ବିଷୟରେ ଶ୍ରେଷ୍ଠତର ପୁଣ୍ୟବାନ୍ ଥିଲେ । ହେ ସୃଞ୍ଜୟ ! ସେ ମଧ୍ୟ ଯେତେବେଳେ ମୃତ ହୋଇଅଛନ୍ତି, ତେତେବେଳେ ଯଜ୍ଞ ଓ ଦାକ୍ଷିଣ୍ୟରହିତ ସ୍ୱକୀୟ ପୁତ୍ର ନିମନ୍ତେ ତୁମ୍ଭର ଶୋକ କରିବା ଉଚିତ ନୁହେଁ । ୨୦ ।



## ୬୩ ଅଧ୍ୟାୟ

ନାରଦ ବୋଇଲେ—ହେ ସୃଞ୍ଜୟ ! ନହୁଷ ରାଜାଙ୍କ ପୁତ୍ର ଯଯାତି ରାଜା ମଧ୍ୟ ମୃତ ହୋଇ ଥିବାର ଆମ୍ଭେ ଶୁଣିଅଛୁଁ । ସେ ଶତ ରାଜସୂୟ, ଶତ ଅଶ୍ୱମେଧ, ଶତ ବାଜପେୟ, ସହସ୍ର ପୁଣ୍ଡରୀ, ସହସ୍ର ଅତିରାତ୍ର, କାମନା-ପୂର୍ବକ ଚାତୁର୍ମାସ୍ୟା, ଅଗ୍ନିଷ୍ଟୋମ ଓ ଅନ୍ୟାନ୍ୟ ବିବିଧ ଯଜ୍ଞ ପ୍ରଭୃତି ଦକ୍ଷିଣା-ସହକାରେ ସମ୍ପାଦନ କରିଥିଲେ । ୨ । ବ୍ରାହ୍ମଣଦ୍ୱେଷୀ ମ୍ଳେଚ୍ଛମାନଙ୍କର ଯେ ସମସ୍ତ ଧନ ପୃଥିବୀ ମଧ୍ୟରେ ଥିଲା, ତତ୍ସମୁଦାୟ ସେମାନଙ୍କ ନିକଟରୁ ଆହରଣ କରି ବ୍ରାହ୍ମଣମାନଙ୍କୁ ଦାନ କରିଥିଲେ । ୩ । ସମୁଦ୍ରମାନେ, ନଦୀବୃନ୍ଦ ଓ ପୁଣ୍ୟତମା ସରସ୍ୱତୀନଦୀ - ଏମାନେ ପୁଣ୍ୟବାନ୍ ନହୁଷପୁତ୍ର

ଯଯାତି ରାଜାଙ୍କ ଯଜ୍ଞ ନିମନ୍ତେ ଜଳକୁ ଘୃତାକାରରେ ପରିଣତ କରି ପ୍ରଦାନ କରିଥିଲେ ।୬। ଦେବାସୁର ସଂଗ୍ରାମ ହେଲେ ସେ ଦେବତାମାନଙ୍କୁ ସହାୟ ହେଉଥିଲେ ଓ ପୃଥିବୀକୁ ଚତୁର୍ଦ୍ଧା ବିଭକ୍ତ କରି ଋତ୍ୱିକ୍‌ଚତୁଷ୍ଟୟଙ୍କୁ ଦାନ କରିଥିଲେ ।୬। ନାନାପ୍ରକାର ଯଜ୍ଞାନୁଷ୍ଠାନ କରି ଏହି ମହାତ୍ମା ଶୁକ୍ରାଚାର୍ଯ୍ୟଙ୍କ କନ୍ୟା ଦେବଯାନୀଙ୍କଠାରେ ଓ ଶର୍ମିଷ୍ଠାଙ୍କଠାରେ ଧର୍ମତଃ ଉତ୍କୃଷ୍ଟ ସନ୍ତାନ ଉତ୍ପାଦନ କରିଥିଲେ ।

ଅମରୋପମ ସର୍ବବେଦଜ୍ଞ ରାଜା ଯଯାତି ଦ୍ୱିତୀୟ ଇନ୍ଦ୍ରସଦୃଶ ନିଜ ଇଚ୍ଛାନୁସାରେ ସମସ୍ତ ଦେବାରଣ୍ୟରେ ବିହାର କରୁଥିଲେ । ଯେତେବେଳେ ସୁଖଭୋଗ୍ୟ ନାନାବିଧ କାମ୍ୟବସ୍ତୁର ଉପଭୋଗ କରି ସୁଦ୍ଧା କାମନାର ସମାପ୍ତି କରିପାରିଲେ ନାହିଁ, ତେତେବେଳେ ଏହି ଗାଥା ଗାନ କରି ଭାର୍ଯ୍ୟା-ସହିତ ବନରେ ପ୍ରବେଶ କଲେ । ୮ । ଏହି ଭୂମଣ୍ଡଳ ମଧ୍ୟରେ ଯାବତୀୟ ବ୍ରୀହି, ଯବ, ହିରଣ୍ୟ, ପଶୁ ଓ ସ୍ତ୍ରୀ ଅଛନ୍ତି, ତତ୍ସମୁଦାୟ ଯଦି ଜଣକର ଉପଭୋଗ୍ୟ ହୁଏ, ଯଥାପି ତାହାର କାମନାର ପରିତୃପ୍ତି ହୁଏ ନାହିଁ— ଏହାଜାଣି ମନୁଷ୍ୟର ଶାନ୍ତିଭାବ ଆଶ୍ରୟ କରିବା ବିଧେୟ । ୯ । ମହାରାଜ ଯଯାତି ଏହି ବିବେଚନା କରି ବିଷୟବାସନା ପରିତ୍ୟାଗପୂର୍ବକ ଧୈର୍ଯ୍ୟାବ-ଲମ୍ବନ କରି ପୁରୁନାମକ ପୁତ୍ରକୁ ରାଜ୍ୟାଭିଷିକ୍ତ କରି ବନ ପ୍ରୟାଣ କଲେ । ୧୦ ।

ବ୍ୟାସ ବୋଇଲେ—ନାରଦ ଏହିପରି କହି ପୁନର୍ବାର ଶ୍ୱୈତ୍ୟ-ପୁତ୍ର ବୋଲି ସମ୍ବୋଧନପୂର୍ବକ କହିଲେ ରାଜା ଯଯାତି ତୁମ୍ଭ ପୁତ୍ର ଓ ତୁମ୍ଭ ଅପେକ୍ଷା ଚତୁର୍ବିଧ ଭଦ୍ର ବିଷୟରେ ଶ୍ରେଷ୍ଠତର ଓ ପୁଣ୍ୟବାନ୍ ଥିଲେ । ହେ ସୃଞ୍ଜୟ ! ସେ ଯେତେବେଳେ ମୃତ ହୋଇ ଅଛନ୍ତି, ତେତେବେଳେ ଯଜ୍ଞ ଓ ଦାକ୍ଷିଣ୍ୟରହିତ ସ୍ୱକୀୟ ପୁତ୍ର ନିମନ୍ତେ ତୁମ୍ଭର ଶୋକ କରିବା ଉଚିତ ନୁହେଁ । ୧୧ ।



# ୭୪ ଅଧ୍ୟାୟ

ନାରଦ ବୋଇଲେ—ହେ ସୃଞ୍ଜୟ ! ନାଭାଗନନ୍ଦନ ଅମ୍ବରୀଷ ରାଜାଙ୍କର ମଧ୍ୟ ମୃତ୍ୟୁ ହୋଇଥିବାର ଆମ୍ଭେ ଶୁଣିଅଛୁଁ । ସେ ଏକ ରଥରେ ଦଶଲକ୍ଷ ରାଜାଙ୍କୁ ପରାଜିତ କରିଥିଲେ । ୧ । ଶସ୍ତ୍ର-ଯୁଦ୍ଧ-ବିଶାରଦ ଅନ୍ୟାନ୍ୟ ଶତ୍ରୁରାଜାମାନେ ଜୟୈଷୀ ହୋଇ ଚତୁର୍ଦ୍ଦିଗରୁ ଅଶିବ କଠୋର ବାକ୍ୟ ପ୍ରୟୋଗ କରି ତାହାଙ୍କୁ ଆକ୍ରମଣ କରନ୍ତେ ସେ ଅବଲୀଳା କ୍ରମେ ବଳ ପ୍ରଭାବରୁ ଓ ଅସ୍ତ୍ରବଳଦ୍ୱାରା ସେମାନଙ୍କର ଛତ୍ର, ଆୟୁଧ, ଧ୍ୱଜ, ରଥ ଓ ପ୍ରାଶାସ୍ତ୍ର ଛେଦନ କରି ସେମାନଙ୍କୁ ବଶୀଭୂତ କଲେ । ୩ ।

ପରିଶେଷରେ ସେମାନେ ବର୍ମହୀନ ଓ ଦୁର୍ବଳ ହୋଇ ଜୀବନ ପ୍ରତ୍ୟାଶାରେ 'ଆମ୍ଭେମାନେ ତୁମ୍ଭର ଅଛୁଁ', ଏହି ବାକ୍ୟଦ୍ୱାରା ବିନତିପୂର୍ବକ ତାହାଙ୍କର ଶରଣାପନ୍ନ ହେଲେ । ୪ । ହେ ବିଶୁଦ୍ଧଚିତ୍ତ ! ସେ ଏହିରୂପେ ସେମାନଙ୍କୁ ବଶୀଭୂତ କରି ବସୁନ୍ଧରାଜୟପୂର୍ବକ ଶାସ୍ତ୍ରାନୁସାରେ ଶତଯଜ୍ଞ ସମ୍ପାଦନ କଲେ । ୫ । ସେହି ଯଜ୍ଞମାନଙ୍କରେ ବିପ୍ରେନ୍ଦ୍ର ଓ ଅନ୍ୟାନ୍ୟ ଲୋକମାନେ ପରମାର୍ଚ୍ଚିତ ଓ ପରିତୃପ୍ତ ହୋଇ ନାନାବିଧ ସୁସ୍ୱାଦୁରସ-ସମ୍ପନ୍ନ ଅନ୍ନ ଭୋଜନ କରିଥିଲେ । ୬ । ସୁସ୍ୱାଦୁ ମୋଦକ, ପୂରିକା, ଅପୂପ, ଶଷ୍କୁଳୀ (ପିଷ୍ଟକବିଶେଷ) କରମ୍ଭ ( ଦଧିମିଶ୍ରିତ ଶକ୍ତୁ ), ସୁକୃତ ଅନ୍ନ, ସୂପ, ମୈରେୟକ, ପୂପ, ରାଗଖାଣ୍ଡବପାନକ ( ମିଷ୍ଟାନ୍ନ ମୋଦକ ବିଶେଷ) ଅନ୍ୟାନ୍ୟ ସୁଗନ୍ଧ, ସୁକୋମଳ ଓ ସୁଯୁକ୍ତ ମିଷ୍ଟାନ୍ନ, ଘୃତ, ମଧୁ, କ୍ଷୀର, ଜଳ, ରସସମ୍ପନ୍ନ ଦଧି, ବିବିଧ ସୁସ୍ୱାଦୁ ଫଳ ଓ ମୂଳ—ଏହିସବୁ ନାନାବିଧ ଭକ୍ଷ୍ୟ, ଭୋଜ୍ୟ, ପାନୀୟ, ପାନଭୋଜନ ଦ୍ୱାରା ବ୍ରାହ୍ମଣମାନେ ଅତୀବ ପରିତୃପ୍ତ ହୋଇଥିଲେ । ୯ । ସହସ୍ର ସହସ୍ର ବ୍ୟକ୍ତି ନିଜ ନିଜ ଅଭିଳାଷାନୁସାରେ ଆତ୍ମସୁଖାର୍ଥ (ମଦ୍ୟପାନ ପାପକାର୍ଯ୍ୟ ଅଟେ, ଏହା ଜାଣି ସୁଦ୍ଧା) ନାନାବିଧ ମଦ୍ୟପାନପୂର୍ବକ ମତ୍ତ ଓ ହୃଷ୍ଟ ହୋଇ ନାଭାଗନନ୍ଦନଙ୍କର ସ୍ତୁତିସଂଯୁକ୍ତ ଗାଥାଗାନ, ଗଦ୍ୟ ଓ ନୃତ୍ୟପୂର୍ବକ ଆମୋଦପ୍ରମୋଦ କରିଥିଲେ । ୧୧ ।

ସେହି ଯଜ୍ଞମାନଙ୍କରେ ରାଜା ଅମ୍ବରୀଷ ଦଶପ୍ରସୂତ ଯାଜକଙ୍କୁ ଶତଶହସ୍ର ଭୂପତିଙ୍କର ରାଜ୍ୟ ଓ ଅନ୍ୟାନ୍ୟ ବ୍ରାହ୍ମଣମାନଙ୍କୁ ଦକ୍ଷିଣାସ୍ୱରୂପ ହିରଣ୍ୟକବଚଯୁକ୍ତ ଶ୍ୱେତଛତ୍ରପରିଶୋଭିତ ହିରଣ୍ୟସ୍ୟନ୍ଦନ ସମାରୂଢ଼, ଅନୁଯାତ୍ରପରିଚ୍ଛଦସମ୍ପନ୍ନ, କୋଷଦଣ୍ଡସମବେତ, ଅସଂଖ୍ୟଭୂପତି ଓ ରାଜଛତ୍ରମାନ ପ୍ରଦାନ କରିଥିଲେ । ମହର୍ଷିମାନେ ପ୍ରୀତ ହୋଇ ଅନୁମୋଦନ ପୂର୍ବକ ଏହିପରି କହିଥିଲେ, ରାଜା ଅମ୍ବରୀଷ ଅପରିମିତ ଦକ୍ଷିଣା ସହକାରେ ଯେପରି ଯଜ୍ଞକାର୍ଯ୍ୟ ସମ୍ପାଦନ କଲେ, ଏହିପ୍ରକାରେ କଦାଚ କେହି ପୂର୍ବେ କରିନାହାନ୍ତି । ପରେ ମଧ୍ୟ କରିପାରିବେ ନାହିଁ । ୧୬ ।

ବ୍ୟାସ ବୋଇଲେ—ନାରଦ ଏହିପରି କହି ପୁନର୍ବାର ଶ୍ୱୈତ୍ୟପୁତ୍ର ବୋଲି ସମ୍ବୋଧନ ପୂର୍ବକ କହିଲେ, ରାଜା ନଭାଗନନ୍ଦନ ଅମ୍ବରୀଷ ତୁମ୍ଭର ପୁତ୍ର ଓ ତୁମ୍ଭ ଅପେକ୍ଷା ଚତୁର୍ବିଧ ଭଦ୍ର ବିଷୟରେ ଶ୍ରେଷ୍ଠ ଓ ପୁଣ୍ୟବାନ୍ ଥିଲେ । ହେ ସୃଞ୍ଜୟ ! ଏପରି ରାଜା ମଧ୍ୟ ଯେତେବେଳେ ମୃତ ହୋଇ ଅଛନ୍ତି, ତେତେବେଳେ ଯଜ୍ଞ ଓ ଦାକ୍ଷିଣ୍ୟରହିତ ସ୍ୱକୀୟ ପୁତ୍ର ନିମନ୍ତେ ତୁମ୍ଭର ଶୋକ କରିବା ଉଚିତ ନୁହେଁ । ୧୭ ।

## ୬୫ ଅଧ୍ୟାୟ

ନାରଦ ବୋଇଲେ—ହେ ସୃଞ୍ଜୟ ! ରାଜା ଶଶବିନ୍ଦୁ ମଧ୍ୟ ମୃତ ହୋଇଥିବାର ଆମ୍ଭେ ଶୁଣିଅଛୁଁ । ସେହି ସତ୍ୟପରାକ୍ରମ ଶ୍ରୀମାନ୍ ରାଜା ବିବିଧ ଯଜ୍ଞ ନିର୍ବାହ କରିଥିଲେ । ୧ । ସେହି ମହାତ୍ମାଙ୍କର ଲକ୍ଷ ଭାର୍ଯ୍ୟା ଥିଲେ ଓ ପ୍ରତ୍ୟେକ ଭାର୍ଯ୍ୟାଠାରୁ ଏକ ସହସ୍ର କରି ପୁତ୍ର ଉତ୍ପନ୍ନ ହୋଇଥିଲେ । ୨ । ସେହି କୁମାରମାନେ ସମସ୍ତେ ପରାକ୍ରମଶୀଳ, ବେଦ-ପାରଗ, ହିରଣ୍ୟକବଚଧାରୀ, ମହାଧନୁର୍ଦ୍ଧର ରାଜା ଓ ନିୟୁତଯାଜୀ ଥିଲେ । ସେମାନେ ମୁଖ୍ୟ ମୁଖ୍ୟ ଯଜ୍ଞର ଅନୁଷ୍ଠାନ କରିଥିଲେ ଓ ସମସ୍ତେ ଅଶ୍ୱମେଧ ଯଜ୍ଞ ନିର୍ବାହ କରିଥିଲେ । ସେମାନଙ୍କର ପିତା ରାଜପ୍ରଧାନ ଶଶବିନ୍ଦୁ ଅଶ୍ୱମେଧ ଯଜ୍ଞରେ ସେହି ସମସ୍ତ ପୁତ୍ରଙ୍କୁ ବ୍ରାହ୍ମଣସାତ୍ କରିଥିଲେ ।

ଏକ ଏକ ରାଜପୁତ୍ର ପଛରେ ଏକଶତ ସ୍ୱର୍ଣ୍ଣଭୂଷିତା ରଥାରୂଢ଼ା କନ୍ୟା ଥିଲେ ଓ ଏକ ଏକ କନ୍ୟାପଛରେ ଏକଶତ ସଂଖ୍ୟକ ହସ୍ତୀ, ଗୋଟିଏ ଗୋଟିଏ ହସ୍ତୀ ପଛରେ ଶତସଂଖ୍ୟକ ରଥ ଓ ଗୋଟିଏ ଗୋଟିଏ ରଥ ପଛରେ ଶତସଂଖ୍ୟକ ବଳବାନ୍ ହେମମାଲ୍ୟଧାରୀ ଅଶ୍ୱ । ଗୋଟିଏ ଗୋଟିଏ ଅଶ୍ୱ ପଛରେ ସହସ୍ର ସଂଖ୍ୟକ ଗୋ ଓ ଗୋଟିଏ ଗୋଟିଏ ଗୋରୁ ପଛରେ ଛାଗ ଓ ମେଷସମୂହ ଥିଲେ । ମହାଭାଗ ଶଶବିନ୍ଦୁ ନୃପତି ଅଶ୍ୱମେଧ ମହାଯଜ୍ଞରେ ଏତାଦୃଶ ଅପରିସୀମ ଧନ ବ୍ରାହ୍ମଣମାନଙ୍କୁ ଦାନ କରିଥିଲେ । ୮ ।

ସେହି ଅଶ୍ୱମେଧ ମହାଯଜ୍ଞରେ ଯାବତ୍‌ପରିମିତ କାଷ୍ଠନିର୍ମିତ ଯୂପ ଥିଲା, ତାବତ୍ ପରିମିତ ସୁବର୍ଣ୍ଣନିର୍ମିତ ଯୂପ ମଧ୍ୟ ଥିଲା । ୯ । ସେହି ଯଜ୍ଞରେ ବ୍ରାହ୍ମଣଭୋଜନ ନିମନ୍ତେ ସର୍ବସ୍ୱ ଅନ୍ନପାନସମୂହ ପ୍ରସ୍ତୁତ ହୋଇଥିଲା । ଏତେକ କ୍ରୋଶପରିମିତ ଉଚ୍ଚ ପର୍ବତସମାନ ବହୁସଂଖ୍ୟକ ଅନ୍ନରାଶି ପ୍ରସ୍ତୁତ ହୋଇଥିଲା । ବ୍ରାହ୍ମଣଭୋଜନ ସମ୍ପନ୍ନ ହୁଅନ୍ତେ ତ୍ରୟୋଦଶଟି ଅନ୍ନପର୍ବତ ଉଦ୍‌ବୃତ୍ତ ହୋଇଥିଲା । ତାହାଙ୍କ ଅଧିକାର ସମୟରେ ଜନପଦସମୂହ ହୃଷ୍ଟପୁଷ୍ଟ ଲୋକମାନଙ୍କରେ ସମାକୀର୍ଣ୍ଣ, ବିଘ୍ନରହିତ ଓ ଅନାମୟ ହୋଇଥିଲା । ସେ ଏହି ପୃଥିବୀକୁ ଦୀର୍ଘକାଳ ଭୋଗ କରି ସ୍ୱର୍ଗ ଗମନ କଲେ । ୧୧ ।

ବ୍ୟାସ ବୋଇଲେ—ନାରଦ ସୃଞ୍ଜୟଙ୍କୁ ଏହିପରି କହି ପୁନର୍ବାର ଶ୍ୱୈତ୍ୟପୁତ୍ର ବୋଲି ସମ୍ବୋଧନପୂର୍ବକ କହିଲେ, ରାଜା ଶଶବିନ୍ଦୁ ତୁମ୍ଭ ପୁତ୍ର ଓ ତୁମ୍ଭ ଅପେକ୍ଷା ଚତୁର୍ବିଧ ଭଦ୍ର ବିଷୟରେ ଶ୍ରେଷ୍ଠତର ଓ ପୁଣ୍ୟବାନ୍ ଥିଲେ । ସେ ଯେତେବେଳେ ମୃତ ହୋଇଅଛନ୍ତି, ତେତେବେଳେ ଯଜ୍ଞ ଓ ଓ ଦାକ୍ଷିଣ୍ୟରହିତ ସ୍ୱକୀୟ ପୁତ୍ର ନିମନ୍ତେ ଶୋକ କରିବା ତୁମର ଉଚିତ ନୁହେଁ । ୧୨ ।



# ୬୭ ଅଧ୍ୟାୟ

ନାରଦ ବୋଇଲେ—ହେ ସୃଞ୍ଜୟ ! ଅମୂର୍ତ୍ତିୟଙ୍କର ପୁତ୍ର ଗୟରାଜାଙ୍କର ମଧ୍ୟ ମୃତ୍ୟୁ ହୋଇଅଛି, ଆମ୍ଭେ ଶ୍ରବଣ କରିଅଛୁଁ । ସେ ଏକଶତ ବର୍ଷ ପର୍ଯ୍ୟନ୍ତ ଯଜ୍ଞାବଶିଷ୍ଟଅନ୍ନଭୋଜୀ ହୋଇଥିଲେ । ୧ । ଅଗ୍ନି ତାହାଙ୍କୁ ବର ପ୍ରଦାନ କରିବାକୁ ଇଚ୍ଛା ପ୍ରକାଶ କରନ୍ତେ, ସେ ଏହି ବର ପ୍ରାର୍ଥନା କଲେ, ଆମ୍ଭେ ତପସ୍ୟା, ବ୍ରହ୍ମଚର୍ଯ୍ୟ, ବ୍ରତ, ନିୟମ ଓ ଗୁରୁଙ୍କର ପ୍ରସନ୍ନତା ଦ୍ୱାରା ବେଦ ଜାଣିବାକୁ ଇଚ୍ଛା କରୁଁ । ଅନ୍ୟକୁ ହିଂସା ନ କରି ସ୍ୱଧର୍ମଦ୍ୱାରା ଅକ୍ଷୟ ଧନ ଇଚ୍ଛା କରୁଁ । ଆମ୍ଭର ସର୍ବଦା ବ୍ରାହ୍ମଣମାନଙ୍କୁ ଦାନ କରିବାର ଶ୍ରଦ୍ଧା ଜନ୍ମୁ, ସବର୍ଣ୍ଣା ଭାର୍ଯ୍ୟାଠାରେ ପୁତ୍ର ଜନ୍ମୁ, ଅନ୍ନଦାନ କରିବାକୁ ଶ୍ରଦ୍ଧା ହେଉ ଓ ଧର୍ମ ବିଷୟରେ ମନ ରତ ହେଉ । ହେ ପାବକ ! ଆମ୍ଭର ଆଉ ଗୋଟିଏ ବର ପ୍ରାର୍ଥନୀୟ ଏହି ଯେ, ଆମ୍ଭର ଧର୍ମକାର୍ଯ୍ୟ ସମାପନ କରିବାରେ କୌଣସି ବିଘ୍ନ ନ ହେଉ । ୫ ।

ଅଗ୍ନି ତାହାଙ୍କୁ "ତାହା ହେବ" ବୋଲି କହି ଅନ୍ତର୍ହିତ ହେଲେ । ଗୟରାଜା ସେହି ସମସ୍ତ ବର ପ୍ରାପ୍ତ ହୋଇ ଧର୍ମାନୁସାରେ ଶତ୍ରୁଜୟ କରିଥିଲେ ।୭। ସେ ଶତବର୍ଷକାଳ ଦର୍ଶପୌର୍ଣ୍ଣମାସ ଯାଗ, ନବଶସ୍ୟ-ଗମନନିମିତ୍ତ ଯାଗ, ଚତୁର୍ମାସ୍ୟାଯାଗ ଓ ଅନ୍ୟାନ୍ୟ ବିବିଧ ଯଜ୍ଞମାନ, ଦକ୍ଷିଣାପ୍ରଦାନ ସହାକାରେ ଶ୍ରଦ୍ଧାସହିତ ସମ୍ପାଦନ କରିଥିଲେ । ସେ ଏକ-ଶତ ବତ୍ସର ପର୍ଯ୍ୟନ୍ତ ପ୍ରତ୍ୟହ ପ୍ରାତଃକାଳରେ ଏକ ଲକ୍ଷ ଛଅ ଅୟୁତ ଗୋ, ଦଶସହସ୍ର ଅଶ୍ୱ ଓ ଲକ୍ଷ ନିଷ୍କ ପ୍ରଦାନ କରୁଥିଲେ । ଯେଉଁ ଯେଉଁ ନକ୍ଷତ୍ରରେ ଯେଉଁ ଯେଉଁ ଦ୍ରବ୍ୟ ଦକ୍ଷିଣା ଦେବାର ବିହିତ, ସେହି ସବୁ ଦ୍ରବ୍ୟ ପ୍ରତି ନକ୍ଷତ୍ରରେ ଦକ୍ଷିଣା ପ୍ରଦାନ କରି ସୋମ ଓ ଅଙ୍ଗିରାଙ୍କ ସଦୃଶ ନାନାବିଧ ଯଜ୍ଞ ନିର୍ବାହ କରିଥିଲେ । ଅଶ୍ୱମେଧ ମହାଯଜ୍ଞରେ ରତ୍ନ-ଶର୍କରାଯୁକ୍ତା ସ୍ୱର୍ଣ୍ଣନିର୍ମିତା ପୃଥିବୀ ବ୍ରାହ୍ମଣମାନଙ୍କୁ ଦାନ କରିଥିଲେ ।୧୧।

ତାହାଙ୍କ ଯଜ୍ଞରେ ସମୁଦାୟ ଯୂପ ରତ୍ନଖଚିତ, କାଞ୍ଚନମୟ ଓ ସମୃଦ୍ଧିସମ୍ପନ୍ନ ହୋଇ ପ୍ରାଣିମାନଙ୍କର ମନୋହର ହୋଇଥିଲା । ୧୨ । ସେ ସମସ୍ତ ପ୍ରାଣୀଙ୍କୁ ସନ୍ତୁଷ୍ଟ କରି ସେହି ସମସ୍ତ ସର୍ବକାମସମୃଦ୍ଧ ଯୂପ

ବ୍ରାହ୍ମଣମାନଙ୍କୁ ସମ୍ପ୍ରଦାନ କରି ହର୍ଷିତ କରିଥିଲେ । ୧୩ । ସମୁଦ୍ର, ବନ, ଦ୍ୱୀପ, ନଦୀ, ନଦ, ସରୋବର, ନଗର, ରାଷ୍ଟ୍ର, ସ୍ୱର୍ଗ ଓ ଅନ୍ତରୀକ୍ଷରେ ଯେଉଁ ବିବିଧ ପ୍ରାଣୀମାନେ ବସତି କରୁଥିଲେ ସେମାନେ ଗୟ ରାଜାଙ୍କର ଯଜ୍ଞ ସମ୍ପଦରେ ପରିତୃପ୍ତ ହୋଇ କହିଥିଲେ, "ଗୟରାଜାଙ୍କର ଯଜ୍ଞସଦୃଶ ଅନ୍ୟ କୌଣସି ଯଜ୍ଞ ହୋଇନାହିଁ । ୧୫ ।

ସେହି ଯଜ୍ଞରେ ଯେଉଁ ବେଦୀ ପଶ୍ଚିମ ଦିଗରେ ହୋଇଥିଲା, ତାହା ଦୀର୍ଘରେ ଷଟ୍‌ତ୍ରିଂଶତ୍ ଯୋଜନ ଓ ପ୍ରସ୍ଥରେ ତ୍ରିଂଶତ୍ ଯୋଜନ ପରିମିତ ଓ ପୂର୍ବ ଦିଗରେ ଯେଉଁ ବେଦୀ ହୋଇଥିଲା, ତାହା ଚତୁର୍ବିଂଶତି ଯୋଜନ ପରିମିତ । ଏହି ଦୁଇଗୋଟି ବେଦୀ ସ୍ୱର୍ଣ୍ଣମୟୀ ଏବଂ ମୁକ୍ତା ଓ ହୀରକମଣି-ଦ୍ୱାରା ଖଚିତ ହୋଇଥିଲା । ସେହି ଯଜ୍ଞରେ ସେ ବ୍ରାହ୍ମଣମାନଙ୍କୁ ବସ୍ତ୍ର, ଆଭରଣ ଓ ତଦ୍‌ଭିନ୍ନ ଯଥାବିହିତ ଭୂରି ଦକ୍ଷିଣା ପ୍ରଦାନ କରିଥିଲେ । ଭକ୍ଷ୍ୟ ଓ ପାନୀୟ ସାମଗ୍ରୀର ପର୍ବତ ଓ ନଦୀ ଏତାଦୃଶ ଅଧିକ ହୋଇଗଲା ଯେ, ପଞ୍ଚବିଂଶତି ଅନ୍ନ ପର୍ବତ ଓ ଖେଚରାନ୍ନବାହିନୀ ବହୁଳ ରସନଦୀ, ଭୋଜନବିଶିଷ୍ଟ ଉଦ୍‌ବୃତ୍ତ ହୋଇଥିଲା ଏବଂ ପୃଥକ୍ ପୃଥକ୍ ପ୍ରକାର ରାଶି ରାଶି ବସ୍ତ୍ର, ଆଭରଣ ଓ ଗନ୍ଧ ଦ୍ରବ୍ୟ ମଧ୍ୟ ଅବଶିଷ୍ଟ ଥିଲା ।୧୯। ସେହି କର୍ମ ପ୍ରଭାବରୁ ରାଜା ଗୟ ଭୁବନବିଖ୍ୟାତ ହୋଇଥିଲେ । ତାହାଙ୍କ କୀର୍ତ୍ତି ସ୍ୱରୂପ ଅକ୍ଷୟବଟ ଓ ପ୍ରସିଦ୍ଧ ବ୍ରାହ୍ମ ସରୋବର ତ୍ରିଲୋକବିଶ୍ରୁତ ହୋଇ ରହିଅଛି । ୨୦ ।

ବ୍ୟାସ ବୋଇଲେ, ନାରଦ ଏହିପରି କହି ପୁନର୍ବାର ଶ୍ୱୈତ୍ୟପୁତ୍ର-ବୋଲି ସମ୍ବୋଧନପୂର୍ବକ କହିଲେ, ରାଜା ଗୟ ତୁମ୍ଭର ପୁତ୍ର ଓ ତୁମ୍ଭ ଅପେକ୍ଷା ଚତୁର୍ବିଧ ଭଦ୍ର ବିଷୟରେ ଶ୍ରେଷ୍ଠତର ଓ ପୁଣ୍ୟବାନ୍ ଥିଲେ, ହେ ସୃଞ୍ଜୟ ! ସେ ଯେତେବେଳେ ମୃତ ହୋଇ ଅଛନ୍ତି, ତେତେବେଳେ ଯଜ୍ଞ ଓ ଦାକ୍ଷିଣ୍ୟରହିତ ସ୍ୱୀୟ ପୁତ୍ର ନିମନ୍ତେ ତୁମ୍ଭର ଶୋକ କରିବା କର୍ତ୍ତବ୍ୟ ନୁହେଁ । ୨୧ ।



# ୬୭ ଅଧ୍ୟାୟ

ନାରଦ ବୋଇଲେ—ହେ ସୃଞ୍ଜୟ ! ସାଂକୃତି ରନ୍ତିଦେବ ରାଜାଙ୍କର ମଧ୍ୟ ମୃତ୍ୟୁ ହୋଇଥିବାର ଆମ୍ଭେ ଶୁଣିଅଛୁଁ । ସେହି ମହାତ୍ମାଙ୍କର ପାଚକ ବ୍ରାହ୍ମଣ ଦୁଇଲକ୍ଷ ଥିଲେ । ୧ । ତାହାଙ୍କ ଭବନରେ ଅତିଥି ଅଭ୍ୟାଗତ ଓ ବ୍ରାହ୍ମଣମାନଙ୍କୁ ଦିବାରାତ୍ର ଭକ୍ଷ୍ୟ, ପାନୀୟ, ପକ୍ୱ ଓ ଅପକ୍ୱ ସାମଗ୍ରୀ ପରିବେଷଣ ଓ ଅପରିସୀମ ଧନ ପ୍ରଦତ୍ତ ହେଉଥିଲା । ୨ । ସେ ଚତୁର୍ବେଦ ଅଧ୍ୟୟନ କରି ନ୍ୟାୟପୂର୍ବକ ଧନ ଉପାର୍ଜନ ଦ୍ୱାରା ବ୍ରାହ୍ମଣମାନଙ୍କୁ ପ୍ରଦାନ କରୁଥିଲେ ଓ ଧର୍ମାନୁସାରେ ଶତ୍ରୁମାନଙ୍କୁ ବଶୀଭୂତ କରିଥିଲେ । ୩ । ସେହି ଶଂସିତ ବ୍ରତ ଓ ବିଧିବତ୍ ଯଜ୍ଞଯାଜୀ ରାଜାଙ୍କଠାରେ ବହୁଳ ପଶୁ ସ୍ୱର୍ଗ ଇଚ୍ଛା କରି ନିଜେ ନିଜେ ଉପସ୍ଥିତ ହେଉଥିଲେ । ୪ । ତାହାଙ୍କର ଅଗ୍ନିହୋତ୍ର ସଦୃଶ ମହାନସରୁ ଚର୍ମରାଶି ନିଃସୃତ ରସଧାରା ପ୍ରଧାବିତ ହୋଇ ଏକ ନଦୀ ଉତ୍ପନ୍ନ ହୋଇଥିଲା । ସେହି ନଦୀ ଚର୍ମଣ୍ୱତୀ ନାମରେ ବିଖ୍ୟାତ ହୋଇଅଛି । ୫ ।

ହେ ଭୂପାଳ ! ଏକଶତଅଷ୍ଟପଳପରିମିତ ସୁବର୍ଣ୍ଣକୁ ଏକ 'ନିଷ୍କ' କୁହାଯାଏ । ଏପରି ବହୁସଂଖ୍ୟକ ନିଷ୍କ ସେ ବ୍ରାହ୍ମଣମାନଙ୍କୁ ସ୍ୱେଚ୍ଛାମତାନୁସାରେ ପ୍ରଦାନ କରିଥିଲେ । "ତୁମ୍ଭଙ୍କୁ ନିଷ୍କ ଦେଉଅଛୁଁ" "ତୁମ୍ଭଙ୍କୁ ନିଷ୍କ ଦେଉଅଛୁଁ" ଏହି କଥା କହି ଲକ୍ଷ ଲକ୍ଷ ନିଷ୍କ ଦାନ କରୁଥିଲେ । କୋଟି ନିଷ୍କ ପ୍ରଦାନ କରି "ଅଦ୍ୟ ଅଳ୍ପ ନିଷ୍କଦାନ ହେଲା" ବୋଲି କହି ପୁନର୍ବାର ବ୍ରାହ୍ମଣମାନଙ୍କୁ ଆଶ୍ୱାସ ପ୍ରଦାନ କରି ନିଷ୍କ ଦାନ କରୁଥିଲେ । ହେ ମହାରାଜ ! ସେ ଏକଦିନରେ ଯେତେ ପରିମାଣ ନିଷ୍କ ପ୍ରଦାନ କରିଥିଲେ, ଅନ୍ୟ କେହି ଆଜୀବନ ସୁଦ୍ଧା ତାହା ପ୍ରଦାନ କରିପାରିବେନାହିଁ । ୮ । "ଦାନ ନିମନ୍ତେ ବ୍ରାହ୍ମଣହସ୍ତ ନ ପାଇଲେ ଆମ୍ଭର ଚିରନ୍ତନ ମହତ୍ଦୁଃଖ ହେବ, ଏଥିରେ ସନ୍ଦେହ ନାହିଁ"—ରାଜା ରନ୍ତିଦେବ ଏହିପରି କହି କହି ଧନଦାନ କରୁଥିଲେ । ୯ । ସେ ପ୍ରତ୍ୟେକ ବ୍ରାହ୍ମଣଙ୍କୁ ଏକଶତ ଲେଖାଏଁ ଗାଭୀ ଓ ତାହା ସହିତ ସହସ୍ର ସଂଖ୍ୟକ ସୁବର୍ଣ୍ଣ ବୃଷ ଓ ଅଷ୍ଟଶତ ସୁବର୍ଣ୍ଣ ନିଷ୍କ ଏକଶତ ବର୍ଷ ଅର୍ଦ୍ଧମାସ ପର୍ଯ୍ୟନ୍ତ ପ୍ରତିଦିନ ଦାନ

କରିଥିଲେ ଏବଂ ଋଷିମାନଙ୍କୁ ଅଗ୍ନିହୋତ୍ର ଓ ଯଜ୍ଞର ଉପଯୋଗୀ ଉପକରଣସମସ୍ତ ପ୍ରଦାନ କରୁଥିଲେ । ତଦ୍‌ଭିନ୍ନ କରକ, କୁମ୍ଭ, ସ୍ଥାଳୀ, ପିଠର, ଶଯ୍ୟା, ଆସନ, ଯାନ, ପ୍ରାସାଦ, ଗୃହ, ନାନାବିଧ ବୃକ୍ଷ, ପର୍ବତ ଓ ଉପବନ ପ୍ରଦାନ କରିଥିଲେ । ଏହି ସମସ୍ତ ଉପକରଣ ଧୀମାନ୍ ରନ୍ତିଦେବଙ୍କର ସୁବର୍ଣ୍ଣମୟ ଥିଲା । ୧୩ ।

ପୁରବାସୀ ଲୋକମାନେ ରନ୍ତିଦେବଙ୍କର ଅଲୌକିକ ସମୃଦ୍ଧି ସନ୍ଦର୍ଶନ କରି ବିସ୍ମିତ ହୋଇ ଏହି ଗାଥା ଗାନ କରିଥିଲେ, "ଆମ୍ଭେମାନେ କୁବେର ସଦନରେ ମଧ୍ୟ ଏତାଦୃଶ ସମ୍ପନ୍ନ ଐଶ୍ୱର୍ଯ୍ୟ କଦାଚ ପୂର୍ବେ ଦେଖିନାହୁଁ, ମନୁଷ୍ୟ ଗୃହର କଥା ତ ଛାଡ଼ । ରନ୍ତିଦେବଙ୍କର ପୁରୀ ନିଶ୍ଚୟ ଅମରାବତୀସ୍ୱରୂପ ଅଟେ । ସାଂକୃତ ରନ୍ତିଦେବଙ୍କ ଭବନରେ କୌଣସି ରାତିରେ ଯଦି ଅତିଥି ବାସ କରନ୍ତି, ତେବେ ଏକବିଂଶତି ସହସ୍ର ଗୋ ହତ ହୁଅନ୍ତି । ମଣିକୁଣ୍ଡଳଭୂଷିତ ସୂଦମାନେ ଉଚ୍ଚୈଃ ସ୍ୱରରେ କହନ୍ତି "ପୂର୍ବ ଦିଇ ଦିନରେ ଯେପରି ମାଂସ ହୁଏ, ଅଦ୍ୟ ସେପରି ହୋଇନାହିଁ, ଅତଏବ ତୁମ୍ଭେମାନେ ଅଧିକ କରି ସୂପ ଭକ୍ଷଣ କର ।" ରାଜା ରନ୍ତିଦେବଙ୍କର ଯେଉଁ ସବୁ ସୁବର୍ଣ୍ଣ ଥିଲା, ତତ୍ସମସ୍ତ ସେ ବ୍ରାହ୍ମଣମାନଙ୍କୁ ଦାନ କରିଥିଲେ ।

ତାହାଙ୍କର ପ୍ରଦତ୍ତ ହବ୍ୟ, କବ୍ୟ ଦେବଗଣ ଓ ପିତୃଗଣ ଯଥାକାଳରେ ପ୍ରତ୍ୟକ୍ଷଭାବରେ ଗ୍ରହଣ କରୁଥିଲେ । ବ୍ରାହ୍ମଣଶ୍ରେଷ୍ଠମାନେ ମଧ୍ୟ ସ୍ୱ ସ୍ୱ ଅଭିଳଷିତ ଦ୍ରବ୍ୟାଦି ସନ୍ତୁଷ୍ଟଚିତ୍ତରେ ଗ୍ରହଣ କରୁଥିଲେ । ବ୍ୟାସ ବୋଇଲେ, ନାରଦ ଏହିପରି କହି ପୁନର୍ବାର ଶ୍ୱୈତ୍ୟପୁତ୍ର ବୋଲି ସମ୍ବୋଧନପୂର୍ବକ କହିଲେ, ରାଜା ରନ୍ତିଦେବ ତୁମ୍ଭ ପୁତ୍ର ଓ ତୁମ୍ଭ ଅପେକ୍ଷା ଚତୁର୍ବିଧ ଭଦ୍ର ବିଷୟରେ ଶ୍ରେଷ୍ଠତର ଓ ପୁଣ୍ୟବାନ୍ ଥିଲେ । ହେ ସୃଞ୍ଜୟ ! ସେ ଯେତେବେଳେ ମୃତ ହୋଇଅଛନ୍ତି, ତେତେବେଳେ ଯଜ୍ଞ ଓ ଦାକ୍ଷିଣ୍ୟରହିତ ସ୍ୱୀୟ ପୁତ୍ର ନିମନ୍ତେ ତୁମ୍ଭର ଶୋକ କରିବା କର୍ତ୍ତବ୍ୟ ନୁହେଁ । ୨୧ ।



# ୬୮ ଅଧ୍ୟାୟ

ନାରଦ ବୋଇଲେ—ହେ ସୃଞ୍ଜୟ ! ଦୁଷ୍ମନ୍ତ ରାଜାଙ୍କର ପୁତ୍ର ଭରତ ରାଜାଙ୍କର ମଧ୍ୟ ମୃତ୍ୟୁ ହୋଇଥିବାର ଆମ୍ଭେ ଶୁଣିଅଛୁଁ । ସେ ଶୈଶବାବସ୍ଥାରେ ଅରଣ୍ୟ ମଧ୍ୟରେ ଅନ୍ୟ ଲୋକ ଅପେକ୍ଷା ଅତି ଦୁଷ୍କର କର୍ମ କରିଥିଲେ । ୧ । ସେ ଏପରି ବଳବାନ୍ ଥିଲେ ଯେ, ନଖଦନ୍ତରୂପ ଆୟୁଧବିଶିଷ୍ଟ, ତୁଷାରବତ୍ ଶୁଭ୍ରବର୍ଣ୍ଣ ସିଂହମାନଙ୍କୁ ବଳଦ୍ୱାରା ନିର୍ବୀର୍ଯ୍ୟ କରି ଆକର୍ଷଣ ଓ ବନ୍ଧନ କରୁଥିଲେ । ୨ । ଜତୁରାଶିସଂଯୁକ୍ତ ମନଃଶିଳାମୟ ଶିଳାଖଣ୍ଡ (ଅର୍ଥାତ୍ ରକ୍ତ ପୀତବର୍ଣ୍ଣବିଶିଷ୍ଟ) ଅତି ବଳବାନ୍ ବ୍ୟାଘ୍ରମାନଙ୍କୁ ଅନାୟାସରେ ବଶୀଭୂତ କରୁଥିଲେ । ୩ । ଅତି ବଳବାନ୍ ଶ୍ୱାପଦାଦି, ହିଂସ୍ର ପଶୁ ଓ ସେହିପରି ଆକାରବିଶିଷ୍ଟ ହସ୍ତିମାନଙ୍କର ଦଂଷ୍ଟ୍ରା ଗ୍ରହଣ କରି ତଦୁପରି ଆରୋହଣପୂର୍ବକ ସେମାନଙ୍କୁ ଶୁଷ୍କମୁଖ କରି ବଶୀଭୂତ କରୁଥିଲେ । ୪ । ଉଗ୍ରବଳଶାଳୀ ବନ୍ୟ ମହିଷମାନଙ୍କୁ ଧୃତ କରି ଆକର୍ଷଣ କରୁଥିଲେ ; ଶତ ଶତ ବଳଦର୍ପିତ ସିଂହମାନଙ୍କୁ ଧରି ବଳପୂର୍ବକ ଦମନ କରୁଥିଲେ ଓ ବଳବାନ୍ ସୃମର ଓ ଗଣ୍ଡା ପ୍ରଭୃତି ନାନା ଜନ୍ତୁଙ୍କ ଗଳବନ୍ଧନ ଦ୍ୱାରା ସେମାନଙ୍କୁ ଦମନପୂର୍ବକ କୃଚ୍ଛ୍ରଗତ (ସଙ୍କଟାପନ୍ନ) ପ୍ରାଣ କରି ପରିତ୍ୟାଗ କରୁଥିଲେ । ୬ ।

ତାହାଙ୍କର ସେହି କାର୍ଯ୍ୟ ଅବଲୋକନ କରି ବନବାସୀ ବିପ୍ରର୍ଷିମାନେ ତାହାଙ୍କର ନାମ ସର୍ବଦମନ ଦେଇଥିଲେ ଓ ତାହାଙ୍କର ମାତା ଶକୁନ୍ତଳା ତାହାଙ୍କୁ ପ୍ରାଣିହିଂସା କର ନାହିଁ ବୋଲି ନିଷେଧ କରିଥିଲେ ।୭। ସେହି ବୀର୍ଯ୍ୟବାନ୍ ଭରତ ଯମୁନା ତୀରରେ ଶତ ଅଶ୍ୱମେଧ, ସରସ୍ୱତୀ କୂଳରେ ତ୍ରିଂଶତ୍ ଅଶ୍ୱମେଧ ଓ ଗଙ୍ଗା ତୀରରେ ଚତୁଃଶତ ଅଶ୍ୱମେଧ ସମ୍ପାଦନ କରିଥିଲେ । ୮ । ସେ ସହସ୍ର ଅଶ୍ୱମେଧ ଓ ଏକଶତ ରାଜସୂୟ ଯଜ୍ଞ ସମ୍ପାଦନ କରି ପୁନର୍ବାର ପ୍ରଚୁର ଦକ୍ଷିଣା ସହିତ ମହାଯଜ୍ଞମାନ ନିର୍ବାହ କରିଥିଲେ । ୯ ।ଅଗ୍ନିଷ୍ଟୋମ, ଅତିରାତ୍ର, ଉକ୍‌ଥ୍ୟ, ବିଶ୍ୱଜିତ୍ ଓ ସହସ୍ର ସହସ୍ର ବାଜପେୟ ଯାଗମାନଙ୍କୁ ସୁସମ୍ପନ୍ନ କରିଥିଲେ । ୧୦ । ମହାଯଶା ଭରତ ସେହି ଯଜ୍ଞ ଉପଲକ୍ଷରେ ଦ୍ୱିଜମାନଙ୍କୁ ଧନ ପ୍ରଦାନ ଦ୍ୱାରା

ପରିତୃପ୍ତ କରି ଶୁଦ୍ଧ ଜମ୍ବୁନଦଜାତ କନକନିର୍ମିତ ଏକସହସ୍ର ପଦ୍ମ ପରିମିତ ସୁବର୍ଣ୍ଣ କଣ୍ୱ ଋଷିଙ୍କୁ ଦାନ କରିଥିଲେ । ତାହାଙ୍କର ସୁବର୍ଣ୍ଣମୟ ଯଜ୍ଞ-ଯୂପ ଦୈର୍ଘ୍ୟରେ ଶତବ୍ୟାମ * ପରିମିତ ହୋଇଥିଲା । ଇନ୍ଦ୍ରାଦି ଦେବତାମାନେ ଆଗମନ କରି ଦ୍ୱିଜମାନଙ୍କ ସହିତ ସମବେତ ହୋଇ ତାହାଙ୍କୁ ସମ୍ମାର୍ଜ୍ଜିତ କରିଥିଲେ । ସେ ଶତ ଶତ, ଅଯୁତ ଅଯୁତ, କୋଟି କୋଟି ଅଳଂକୃତ ଅଶ୍ୱ, ହସ୍ତୀ, ଉଷ୍ଟ୍ର, ଛାଗ, ମେଷ, ହିରଣ୍ୟ, ରଥ, ଦାସୀ, ଦାସ, ଧାନ୍ୟ, ଦୁଗ୍ଧବତୀ ସବତ୍ସା ଗୋ, ଗ୍ରାମ, ଗୃହ, କ୍ଷେତ୍ର, ବିବିଧ ପରିଚ୍ଛଦ ଓ ଅନ୍ୟାନ୍ୟ ସମ୍ପତ୍ତିମାନ ବ୍ରାହ୍ମଣମାନଙ୍କୁ ପ୍ରଦାନ କରିଥିଲେ ।୧୬। ମହାରାଜ ଭରତ ଅତିମହାତ୍ମା, ସାର୍ବଭୌମ, ଶତ୍ରୁବିଜୟୀ ଓ ଅଜେୟ ଥିଲେ ।

ବ୍ୟାସ ବୋଇଲେ, ନାରଦ ଏହିପରି କହି ପୁନର୍ବାର ଶ୍ୱୈତ୍ୟପୁତ୍ର ବୋଲି ସମ୍ବୋଧନ କରି କହିଲେ, ମହାରାଜ ଭରତ ତୁମ୍ଭ ପୁତ୍ର ଓ ତୁମ୍ଭ ଅପେକ୍ଷା ଚତୁର୍ବିଧ ଭଦ୍ର ବିଷୟରେ ଶ୍ରେଷ୍ଠତର ଓ ପୁଣ୍ୟବାନ୍ ଥିଲେ । ହେ ସୃଞ୍ଜୟ ! ସେ ଯେତେବେଳେ ମୃତ ହୋଇଅଛନ୍ତି, ତେତେବେଳେ ସ୍ୱୀୟ ପୁତ୍ର ନିମନ୍ତେ ତୁମ୍ଭର ଶୋକ କରିବାର ନୁହେଁ । ୧୭ ।

## ୬୯ ଅଧ୍ୟାୟ

ନାରଦ ବୋଇଲେ—ହେ ସୃଞ୍ଜୟ ! ବେଣ ରାଜାଙ୍କର ପୁତ୍ର ପୃଥୁଙ୍କର ମଧ୍ୟ ମୃତ୍ୟୁ ହୋଇଥିବାର ଆମ୍ଭେ ଶୁଣିଅଛୁଁ । ତାହାଙ୍କୁ ମହର୍ଷି-ମାନେ ରାଜସୂୟଯଜ୍ଞ କାଳରେ ସାମ୍ରାଜ୍ୟରେ ଅଭିଷିକ୍ତ କରିଥିଲେ । ୧ ।

ସେହି ମହାତ୍ମା ଯତ୍ନପୂର୍ବକ ସମସ୍ତଙ୍କୁ ପରାଭୂତ କରି ପ୍ରଥିତ ହୋଇ ଥିଲେ । ଏହି ନିମନ୍ତେ ତାହାଙ୍କୁ ଲୋକେ "ପୃଥୁ" କହୁଥିଲେ । ସେ ସମସ୍ତଙ୍କୁ କ୍ଷତରୁ ଅର୍ଥାତ୍ ଅନିଷ୍ଟରୁ ତ୍ରାଣ କରୁଥିବାରୁ କ୍ଷତ୍ରିୟ ବୋଲି

* ବ୍ୟାମ—ହସ୍ତଚତୁଷ୍ଟୟ ବିସ୍ତାର

ସ୍ୱଖ୍ୟାତ ହୋଇଥିଲେ । ୨ । ବେଣ-ନନ୍ଦନ ପୃଥୁଙ୍କୁ ଦେଖି ପ୍ରଜାମାନେ କହିଥିଲେ, ଆମ୍ଭେମାନେ ଆପଣଙ୍କ ଅନୁରକ୍ତ ହେଲୁଁ । ପ୍ରଜାମାନଙ୍କର ଏହିପରି ଅନୁରାଗ ହେତୁ ତାହାଙ୍କର 'ରାଜା' ଏହି ନାମ ହୋଇଥିଲା । ୩ । ସେହି ରାଜାଙ୍କର ଅଧିକାର ମଧ୍ୟରେ ଶସ୍ୟ ନିମନ୍ତେ ଭୂମିକର୍ଷଣ କରିବାର ପ୍ରୟୋଜନ ହେଉ ନ ଥିଲା । ପୃଥିବୀ ଅଭିଳାଷାନୁରୂପ ଶସ୍ୟାଦି ପ୍ରଦାନ କରୁଥିଲେ ; ଗୋ ସମସ୍ତ କୁମ୍ଭପରିପୂର୍ଣ୍ଣ ଦୁଗ୍ଧ ଦାନ କରୁଥିଲେ ; ପୁଷ୍ପର ପ୍ରତି ଦଳରେ ମଧୁ ହେଉଥିଲା । ଦର୍ଭ ସମସ୍ତ ସୁବର୍ଣ୍ଣମୟ, ସୁଖସ୍ପର୍ଶ ଓ ସୁଖାବହ ହେଉଥିଲେ । ସେହି କୁଶଦ୍ୱାରା ପ୍ରଜାମାନଙ୍କର ପରିଧେୟ ବସ୍ତ୍ର ହେଉଥିଲା ଓ ତହିଁରେ ପ୍ରଜାମାନେ ଶୟନ କରୁଥିଲେ । ଫଳସମସ୍ତ ଅମୃତକଳ୍ପ, ସୁସ୍ୱାଦୁ ଓ କୋମଳ ହେଉଥିଲା ଓ ତାହାକୁ ପ୍ରଜାମାନେ ଆହରଣ କରୁଥିଲେ । କେହି ନିରାହାରରେ ରହୁ ନ ଥିଲେ । ମନୁଷ୍ୟମାନେ ଅରୋଗୀ ଓ ଅକୁତୋଭୟ ଓ ସର୍ବାର୍ଥସିଦ୍ଧି ଲାଭ କରୁଥିଲେ ଏବଂ ବୃକ୍ଷମୂଳରେ ବା ଗିରିଗୁହାରେ ସ୍ୱେଚ୍ଛାନୁସାରେ ବାସ କରୁଥିଲେ । ରାଷ୍ଟ୍ର ବା ନଗରର ବିଭାଗ ନ ଥିଲା । ପ୍ରଜାମାନେ ସ୍ୱେଚ୍ଛାନୁସାରେ ଯଥା-ସୁଖରେ ଓ ପ୍ରମୁଦିତ ଚିତ୍ତରେ ଜୀବନଯାପନ କରୁଥିଲେ । ୮ । ରାଜା ପୃଥୁ ସମୁଦ୍ର ଯାତ୍ରା କଲେ ସମୁଦ୍ର ଜଳ ସ୍ତମ୍ଭିତ ହେଉଥିଲା ଓ ପର୍ବତପଥରେ ଗମନ କଲେ ପର୍ବତମାନେ ପଥ ପ୍ରଦାନ କରୁଥିଲେ । ତାହାଙ୍କ ଗମନ-କାଳରେ ତୋରଣାଦି ଦ୍ୱାରା ରଥ-ଧ୍ୱଜର ବାଧା ଘଟୁ ନ ଥିଲା । ୯ ।

ହେ ସୃଞ୍ଜୟ ! ଏକଦା ରାଜା ପୃଥୁ ସୁଖାସୀନ ହୋଇଅଛନ୍ତି, ଏପରି ସମୟରେ ବନସ୍ପତିସମସ୍ତ, ଶୈଳସମୂହ, ଦେବଗଣ, ଅସୁରଗଣ, ମହୋରଗଗଣ, ସପ୍ତର୍ଷିଗଣ, ରାକ୍ଷସଗଣ, ଗନ୍ଧର୍ବଗଣ, ଅପ୍ସରାଗଣ ଓ ପିତୃଗଣ ତାହାଙ୍କ ସମୀପରେ ଆସି କହିଲେ, ହେ ମହାରାଜ ! ତୁମ୍ଭେ ସମ୍ରାଟ୍, କ୍ଷତ୍ରିୟ, ଆମ୍ଭମାନଙ୍କର ରାଜା, ରକ୍ଷିତା ଓ ପିତାସ୍ୱରୂପ ଅଟ । ଅତଏବ ତୁମ୍ଭେ ଆମ୍ଭମାନଙ୍କର ପ୍ରଭୁ ହୋଇ ଆମ୍ଭମାନଙ୍କୁ ଏପରି ଅଭିଳଷିତ ବର ପ୍ରଦାନ କର ଯେ, ଆମ୍ଭେମାନେ ତଦ୍ଦ୍ୱାରା ଯଥାସୁଖରେ ତୃପ୍ତିଲାଭ କରିପାରିବୁଁ । ୧୨ ।

ବେଣ-ନନ୍ଦନ "ତାହା ହେବ" ବୋଲି ଚନ୍ତାପୂର୍ବକ ଅତୁଳନୀୟ ଖ୍ରୀକ୍ଷଣ ଶରସମସ୍ତ ଓ ଅଜଗବଧନୁ ଗ୍ରହଣପୂର୍ବକ ପୃଥିବୀଙ୍କୁ କହିଲେ, ହେ ବସୁଧେ ! ତୁମ୍ଭେ ଶୀଘ୍ର ଆସ, ତୁମ୍ଭର ମଙ୍ଗଳ ହେଉ, ଶୀଘ୍ର ଏମାନଙ୍କର ବାଞ୍ଛିତ ଦୁଗ୍ଧ କ୍ଷରଣ କର । ତତ୍ପରେ ଆମ୍ଭେ ଯାହାର ଯାହା ଅଭିଳଷିତ ଅନ୍ନ, ତାହା ପ୍ରଦାନ କରିବୁଁ । ୧୪ ।

ବସୁଧା ବୋଇଲେ. ହେ ବୀର ! ତୁମ୍ଭେ ଆମ୍ଭଙ୍କୁ ଦୁହିତା ବୋଲି କଳ୍ପନା କର । ପ୍ରଭୁ ପୃଥୁ ତାହା ହେଉ ବୋଲି ସ୍ୱୀକାର କରି ସମସ୍ତ ପ୍ରକାର ବିଧାନ କରିଦେଲେ । ୧୫ । ତଦନନ୍ତର ସେହି ପ୍ରାଣୀମାନେ ପୃଥିବୀଙ୍କୁ ଦୋହନ କରିବାରେ ପ୍ରବୃତ୍ତ ହେଲେ । ପ୍ରଥମରେ ବନସ୍ପତିଗଣ ଦୋହନ କରିବା ନିମନ୍ତେ ଉତ୍ଥିତ ହୁଅନ୍ତେ, ବତ୍ସଳା ବସୁନ୍ଧରା ବତ୍ସ, ଦୋହନକର୍ତ୍ତା ଓ ଦୋହନପାତ୍ରର ଇଚ୍ଛା ପ୍ରକାଶ କରି ଅବସ୍ଥାନ କଲେ । ତେତେବେଳେ ପୁଷ୍ପିତ ଶାଳବୃକ୍ଷ ବତ୍ସ, ବଟବୃକ୍ଷ ଦୋଗ୍ଧା, ଛିନ୍ନ ପ୍ରରୋହଣ ଦୁଗ୍ଧ ଓ ଉଦୁମ୍ବର ଶୁଭ ଦୋହନ-ପାତ୍ର ହେଲା । ପର୍ବତ-ମାନଙ୍କର ଦୋହନ ସମୟରେ ଉଦୟ ପର୍ବତ ବତ୍ସ, ଗିରି ସୁମେରୁ ଦୋଗ୍ଧା, ରତ୍ନ ଓ ଔଷଧି ସମସ୍ତ ଦୁଗ୍ଧ ଓ ପ୍ରସ୍ତର ଦୋହନ-ପାତ୍ର ହେଲା । ତତ୍ପରେ ଦେବଗଣ ଦୋଗ୍ଧା ଓ ତେଜସ୍କର ପ୍ରିୟ ବସ୍ତୁସମସ୍ତ ଦୁଗ୍ଧ ହେଲା । ୧୯ । ଅସୁରମାନେ ଆମପାତ୍ରରେ ମାୟା ଅର୍ଥାତ୍ ମଦ୍ୟ ଦୋହନ କଲେ । ତେତେବେଳେ ଦ୍ୱିମୂର୍ଦ୍ଧା ଅସୁର ଦୋଗ୍ଧା ଓ ବିରୋଚନ ବତ୍ସ ହେଲେ । ୨୦ । ମନୁଷ୍ୟମାନେ କୃଷି ଓ ଶସ୍ୟ ଦୋହନ କଲେ । ତେତେ-ବେଳେ ପୃଥୁ ଦୋଗ୍ଧା ଓ ସ୍ୱାୟମ୍ଭୁବ ମନୁ ବତ୍ସ ହେଲେ । ୨୧ । ନାଗବର୍ଗ ଅଲାବୁ ପାତ୍ରରେ ବିଷ ଦୋହନ କଲେ । ସେମାନଙ୍କର ଧୃତରାଷ୍ଟ୍ର ନାଗ ଦୋଗ୍ଧା ଓ ତକ୍ଷକ ବତ୍ସ ହେଲେ । ୨୨ । ଅକ୍ଲିଷ୍ଟକର୍ମା ସପ୍ତର୍ଷିମାନେ ବେଦ ଦୋହନ କଲେ । ବୃହସ୍ପତି ସେମାନଙ୍କର ଦୋଗ୍ଧା ଛନ୍ଦ ଦୋହନପାତ୍ର ଓ ସୋମରାଜ ବତ୍ସ ହେଲେ । ୨୩ । ରାକ୍ଷସମାନେ ଆମ-ପାତ୍ରରେ ଅନ୍ତର୍ଦ୍ଧାନ ଦୋହନ କଲେ । ସେମାନଙ୍କର ଦୋଗ୍ଧା, ବୈଶ୍ରବଣ ଓ ବୃଷଧ୍ୱଜ ବତ୍ସ ହେଲେ । ୨୪ । ଗନ୍ଧର୍ବ ଓ ଅପ୍ସରାମାନେ ପଦ୍ମପାତ୍ରରେ ପବିତ୍ର ଗନ୍ଧ ଦୋହନ କଲେ । ସେମାନଙ୍କର ଦୋଗ୍ଧା ପ୍ରଭୁ ବିଶ୍ୱରୁଚି ଓ

ବତ୍ସ ଶଙ୍ଖରଥ ହୋଇଲେ । ୨୫ । ପିତୃଗଣ ରଜତ ପାତ୍ରରେ ସ୍ୱଧା ଦୋହନ କଲେ । ସେମାନଙ୍କର ବତ୍ସ ବୈବସ୍ୱତ ଓ ଦୋଗ୍‌ଧା ଅନ୍ତକାଖ୍ୟ ଯମ ହୋଇଲେ । ୨୬ । ମହାରାଜ ! ସେହି ସମସ୍ତ ପ୍ରାଣୀ ଯେଉଁ ପାତ୍ର ଓ ବତ୍ସ ଦ୍ୱାରା ପୃଥିବୀରୁ ଯେ ଯେ ସ୍ୱୀୟ ଅଭୀଷ୍ଟ ଦୋହନ କଲେ, ସେମାନେ ତଦ୍ଦ୍ୱାରା ଅଦ୍ୟାବଧି ଜୀବନ ଯାପନ କରୁଅଛନ୍ତି । ୨୭ ।

ପ୍ରବଳପ୍ରତାପଶାଳୀ ରାଜା ବେଣ-ପୁତ୍ର ପୃଥୁ ବିବିଧ ଯଜ୍ଞ ନିର୍ବାହ କରି ଓ ପ୍ରାଣିମାନଙ୍କର ନିଜ ନିଜ ମନୋଭିଳଷିତ ପରିପୂରଣ କରି ସେମାନଙ୍କୁ ପରିତୃପ୍ତ କରିଥିଲେ ଓ ଯେ କୌଣସି ବସ୍ତୁ ପାର୍ଥିବ ଥିଲା, ତତ୍ସମସ୍ତ ହିରଣ୍ମୟ କରି ଅଶ୍ୱମେଧ ମହାଯଜ୍ଞରେ ବ୍ରାହ୍ମଣମାନଙ୍କୁ ପ୍ରଦାନ କରିଥିଲେ । ୨୯ । ସେ ଷଟ୍‌ଷଷ୍ଟିସହସ୍ର ନାଗ ସୁବର୍ଣ୍ଣ-ଭୂଷିତ କରି ବ୍ରାହ୍ମଣ-ମାନଙ୍କୁ ଦାନ କରିଥିଲେ ଓ ସମୁଦାୟ ପୃଥିବୀକୁ ମଧ୍ୟ ମଣିରତ୍ନବିଭୂଷିତା ଓ ସୁବର୍ଣ୍ଣମୟୀ କରି ବିପ୍ରମାନଙ୍କୁ ପ୍ରଦାନ କରିଥିଲେ । ୩୧ ।

ବ୍ୟାସ ବୋଇଲେ,—ନାରଦ ଏହିପରି କହି ପୁନର୍ବାର ଶ୍ୱିତ୍ୟପୁତ୍ର ବୋଲି ସମ୍ବୋଧନପୂର୍ବକ କହିଲେ, ରାଜା ପୃଥୁ ତୁମ୍ଭ ପୁତ୍ର ଓ ତୁମ୍ଭ ଅପେକ୍ଷା ଚତୁର୍ବିଧ ଭଦ୍ର ବିଷୟରେ ଶ୍ରେଷ୍ଠତର ଓ ପୁଣ୍ୟବାନ୍ ଥିଲେ । ହେ ସୃଞ୍ଜୟ ! ଯେତେବେଳେ ସେ ମଧ୍ୟ ମୃତ ହୋଇ ଅଛନ୍ତି, ତେତେବେଳେ ଯଜ୍ଞ ଓ ଦାକ୍ଷିଣ୍ୟରହିତ ସ୍ୱୀୟ ପୁତ୍ର ନିମନ୍ତେ ତୁମ୍ଭର ଶୋକ କରିବା ଉଚିତ ନୁହେ । ୩୩ ।

## ୭୦ ଅଧ୍ୟାୟ

ନାରଦ ବୋଇଲେ—ହେ ସୃଞ୍ଜୟ ! ବୀର ଲୋକଙ୍କର ନମସ୍କୃତ ଜମଦଗ୍ନି-ନନ୍ଦନ ମହାତପା ଅତିଯଶସ୍ୱୀ ଶୂର ରାମ ଅପରିତୃପ୍ତ ହୋଇ ମୃତ୍ୟୁଗ୍ରସ୍ତ ହେବେ । ୧ । ସେ ଏହି ପୃଥିବୀକୁ ସୁଖମୟ କରିଥିଲେ ଓ ମଧ୍ୟ ଉତ୍କୃଷ୍ଟ ଶ୍ରୀ ଲାଭ କରି ସତ୍ୟଯୁଗବିହିତ ଧର୍ମକୁ ପ୍ରବର୍ତ୍ତିତ କରିଥିଲେ ।

ତାହାଙ୍କ ଚରଣର କୌଣସି ପ୍ରକାର ପରିବର୍ତ୍ତନ ହୋଇ ନ ଥିଲା । ୨ । ଅନୁପ କ୍ଷତ୍ରିୟମାନଙ୍କ ସହିତ କାର୍ତ୍ତବୀର୍ଯ୍ୟ ଜାମଦଗ୍ନ୍ୟ ରାମଙ୍କର ପିତାଙ୍କୁ ପରାଜିତ ଓ ବତ୍ସକୁ ଅପହରଣ କରନ୍ତେ, ରାମ ତାହାକୁ ନ କହି ଶରୀର କର୍ତ୍ତିକ ଅପରାଜେୟ ସେହି କାର୍ତ୍ତବୀର୍ଯ୍ୟଙ୍କୁ ଯୁଦ୍ଧରେ ବଧ କଲେ । ୩ । ସହସ୍ର ସହସ୍ର କ୍ଷତ୍ରିୟ ମୃତ୍ୟୁ ସମୀପରେ ସମାଗତ ହେଲା ପ୍ରାୟ ଯୁଦ୍ଧରେ ଉପସ୍ଥିତ ହୋଇଥିଲେ ।

ସେମାନଙ୍କ ମଧ୍ୟରୁ ଚତୁଃଷଷ୍ଟି ଅୟୁତ କ୍ଷତ୍ରିୟଙ୍କୁ ଜାମଦଗ୍ନ୍ୟ ରାମ ଗୋଟିଏ ଗୋଟିଏ କରି ଶରାସନ ଦ୍ୱାରା ଜୟ କଲେ । ୪ । ଏତଦ୍-ବ୍ୟତିରେକେ ସେ ଚତୁର୍ଦ୍ଦଶ ସହସ୍ର ବ୍ରହ୍ମଦ୍ୱେଷୀ କ୍ଷତ୍ରିୟ ଓ ତଦ୍ଦେଶାଧିପତି ଦାନ୍ତ କ୍ରୂର ନୃପତି ବିନାଶ କରିଥିଲେ । ୫ । ସେ ମୁଷଳ ଦ୍ୱାରା ଏକ-ସହସ୍ର, ଖଡ୍ଗ ଦ୍ୱାରା ଏକ ସହସ୍ର, ଉଦ୍‌ବନ୍ଧନ ଦ୍ୱାରା ଏକ ସହସ୍ର ଓ ଜଳ ମଧ୍ୟରେ ଏକ ସହସ୍ର କ୍ଷତ୍ରିୟଙ୍କୁ ନିମଜ୍ଜନ କରି ସଂହାର କରିଥିଲେ ୬ । ଏକ ସହସ୍ର କ୍ଷତ୍ରିୟଙ୍କର ଦନ୍ତ ଭଗ୍ନ କରି କର୍ଣ୍ଣ ଓ ନାସିକା ଛେଦନ କଲେ । ତତ୍ପରେ ଶତସହସ୍ର କ୍ଷତ୍ରିୟଙ୍କୁ କଟୁ ଧୂପ ପ୍ରଦାନ କରି ଶିଷ୍ଟ କ୍ଷତ୍ରିୟଙ୍କୁ ବନ୍ଧନପୂର୍ବକ ସେମାନଙ୍କର ମସ୍ତକ ଭେଦ କରି ସଂହାର କରିଥିଲେ । ପିତାଙ୍କ ବଧଜନିତ କ୍ରୋଧାକୁଳ ଧୀମାନ୍ ଜମଦଗ୍ନି-ନନ୍ଦନଙ୍କ ହସ୍ତରେ ଗୁଣାବତୀର ଉତ୍ତରସ୍ଥ ଓ ଖାଣ୍ଡବବନର ଦକ୍ଷିଣସ୍ଥ ଏବଂ ଗିରିମଧ୍ୟସ୍ଥ ହୈହୟଦେଶୀୟ ଲକ୍ଷ ଲକ୍ଷ ବୀର ରଥ, ଅଶ୍ୱ ଓ ଗଜ ସହିତ ନିହତ ହୋଇ ସମରଶାୟୀ ହୋଇଥିଲେ । ୯ । ସେ ଦଶସହସ୍ର କ୍ଷତ୍ରିୟଙ୍କର କଥିତ ଅସଂଖ୍ୟ ବାକ୍ୟମାନ ସହନ କରି ସେମାନଙ୍କୁ ପରଶୁ ଦ୍ୱାରା ସଂହାର କରିଥିଲେ । ୧୦ । ବିପ୍ରମାନେ କଶ୍ମୀରାଦିଦେଶୀୟ କ୍ଷତ୍ରିୟମାନଙ୍କ ଦ୍ୱାରା ପୀଡ଼ିତ ହୋଇ "ହେ ଭୃଗୁନନ୍ଦନ ! ହେ ରାମ ! ତୁମ୍ଭେ ଶୀଘ୍ର ଆସ", ଏହିପରି କହି କ୍ରନ୍ଦନ କରନ୍ତେ ପ୍ରବଳ ପ୍ରତାପ ରାମ, କାଶ୍ମୀର, ଦରଦ, କୁନ୍ତୀ, କ୍ଷୁଦ୍ରକ, ମାଳବ, ଅଙ୍ଗ, ବଙ୍ଗ, କଳିଙ୍ଗ, ବିଦେହ, ତାମ୍ରଲିପ୍ତକ, ରକ୍ଷୋବାହ, ବୀତହୋତ୍ର, ତ୍ରିଗର୍ତ୍ତ, ମାର୍ତ୍ତିକାବତ ଓ ଶିବି—ଏହି ସମସ୍ତ ଦେଶାଗତ ଓ ଅନ୍ୟାନ୍ୟ ଦେଶରୁ ଶତସହସ୍ରକୋଟି କ୍ଷତ୍ରିୟଙ୍କୁ ବାଣଦ୍ୱାରା ବିନାଶ କରିଥିଲେ ।

ଭୃଗୁନନ୍ଦନ ରାମ ଇନ୍ଦ୍ରଗୋପକବର୍ଣ୍ଣ ଓ ବନ୍ଧୁଜୀବପୁଷ୍ପବର୍ଣ୍ଣବିଶିଷ୍ଟ କ୍ଷତ୍ରିୟରୁଧିରପ୍ରବାହ ଦ୍ୱାରା ପଞ୍ଚ ସରୋବର ପରିପୂର୍ଣ୍ଣ ଓ ଅଷ୍ଟାଦଶ ଦ୍ୱୀପ ବଶୀଭୂତ କରି ପ୍ରଚୁର ଦକ୍ଷିଣା ସମ୍ବଳିତ ପୁଣ୍ୟଜନକ ଏକଶତ ଗୋଟି ଯଜ୍ଞ ନିଷ୍ପାଦନ କରିଥିଲେ । ସେହି ଯଜ୍ଞରେ ମହର୍ଷି କଶ୍ୟପ, ବିଧିପୂର୍ବକ ନିର୍ମିତ ଶତଶତ ସର୍ବବିଧ ରତ୍ନରେ ପରିପୂର୍ଣ୍ଣ ଶତଶତ ପତାକା ଓ ମାଲ୍ୟ ଦ୍ୱାରା ବିଭୂଷିତ, ସୁବର୍ଣ୍ଣମୟ, ଉଚ୍ଚ ଅଷ୍ଟନଳ ପରିମିତ ବେଦୀ, ଗ୍ରାମ୍ୟ ଓ ଅରଣ୍ୟ ପଶୁମାନଙ୍କ ଦ୍ୱାରା ପରିପୂର୍ଣ୍ଣ ଏହି ପୃଥିବୀ ଓ ହେମଭୂଷିତ ଲକ୍ଷ ଗଜ, ଜାମଦଗ୍ନ୍ୟ ରାମଙ୍କ ନିକଟରୁ ପ୍ରତିଗ୍ରହ କରିଥିଲେ । ୧୮ । ମହାତ୍ମା ରାମ ପୃଥିବୀକୁ ଦସ୍ୟୁହୀନା ଏବଂ ଶିଷ୍ଟ ଓ ଇଷ୍ଟ ଲୋକରେ ସମାକୀର୍ଣ୍ଣା କରି ଅଶ୍ୱମେଧ ମହାଯଜ୍ଞରେ କଶ୍ୟପଙ୍କୁ ପ୍ରଦାନ କରିଥିଲେ । ୧୯ । ମହାବୀର ପ୍ରଭୁ ରାମ ପୃଥିବୀକୁ ଏକବିଂଶତି ବାର ନିଃକ୍ଷତ୍ରିୟ କରି ଏକଶତ ଯଜ୍ଞ ନିଷ୍ପାଦନପୂର୍ବକ ବ୍ରାହ୍ମଣମାନଙ୍କୁ ସେହି ପୃଥିବୀ ପ୍ରଦାନ କରିଥିଲେ । ୨୦ । ମରୀଚି-ପୁତ୍ର କଶ୍ୟପ ବ୍ରାହ୍ମଣ ଏହି ସପ୍ତଦ୍ୱୀପା ପୃଥିବୀ ରାମଙ୍କ ନିକଟରୁ ଗ୍ରହଣ କରି ତାହାଙ୍କୁ କହିଲେ, ତୁମ୍ଭେ ଆମ୍ଭ ଆଜ୍ଞାନୁସାରେ ପୃଥିବୀରୁ ନିର୍ଗତ ହୁଅ । ୨୧ । ସେହି ଯୋଦ୍ଧୃଶ୍ରେଷ୍ଠ ରାମ ବ୍ରାହ୍ମଣ ଶାସନ ରକ୍ଷା କରି କଶ୍ୟପଙ୍କ ଆଜ୍ଞାନୁସାରେ ଶରପାତ ଦ୍ୱାରା ସରିତ୍ପତି ସାଗରକୁ ପ୍ରୋତ୍ସାହିତ କରି ସେହି ପଥଦ୍ୱାରା ଗମନପୂର୍ବକ ଗିରିଶ୍ରେଷ୍ଠ ମହେନ୍ଦ୍ର ପର୍ବତରେ ବସତି କଲେ । ଜାମଦଗ୍ନ୍ୟ ରାମ ଏହିରୂପେ ଭୃଗୁକୁଳର କୀର୍ତ୍ତିବର୍ଦ୍ଧନ, ଅତିଯଶସ୍ୱୀ, ମହାତେଜସ୍ୱୀ, ଶତଶତ ଗୁଣସମନ୍ୱିତ ହୋଇ ସୁଦ୍ଧା ଲୋକାନ୍ତର ଗମନ କରିବେ । ଚତୁର୍ବିଧ ଭଦ୍ର ବିଷୟରେ ତୁମ୍ଭ ପୁତ୍ର ଓ ତୁମ୍ଭ ଅପେକ୍ଷା ପୁଣ୍ୟବାନ୍ ଓ ଶ୍ରେଷ୍ଠତର ସେହି ରାମ ମଧ୍ୟ ଯେତେବେଳେ ମୃତ୍ୟୁବଶତାପନ୍ନ ହେବେ, ସେତେବେଳେ ଯଜ୍ଞ ଓ ଦାକ୍ଷିଣ୍ୟରହିତ ତୁମ୍ଭ ପୁତ୍ର ନିମନ୍ତେ ଶୋକ କରିବା ଉଚିତ ନୁହେଁ ।

ହେ ସୃଞ୍ଜୟ ! ଏହି ଶ୍ରେଷ୍ଠତର ମନୁଷ୍ୟମାନେ ତୁମ୍ଭ ଅପେକ୍ଷା ଚତୁର୍ବିଧ ଭଦ୍ର ବିଷୟରେ ଶ୍ରେଷ୍ଠତର ଓ ଅନ୍ୟାନ୍ୟ ଭଦ୍ର ବିଷୟରେ ମଧ୍ୟ ଶତ ଗୁଣରେ ଅଧିକ ; ଅଥଚ ସମସ୍ତେ ନିଶ୍ଚୟ ମୃତ ହେବେ । ୨୫ ।



# ୭୧ ଅଧ୍ୟାୟ

ବ୍ୟାସ ବୋଇଲେ—ହେ ଯୁଧିଷ୍ଠିର ! ରାଜା ସୃଞ୍ଜୟ ଦେବର୍ଷି ନାରଦଙ୍କଠାରୁ ପୁଣ୍ୟଜନକ ଓ ଆୟୁବୃଦ୍ଧିକର ଏହି ଷୋଡ଼ଶରାଜାଙ୍କ ଉପାଖ୍ୟାନ ଶ୍ରବଣ କରି କିଛି କହିଲେ ନାହିଁ, ମୌନୀ ହୋଇ ରହିଲେ ।୧। ସୃଞ୍ଜୟଙ୍କୁ ଦେବସ୍ଥ ହୋଇ ସମାସୀନ ହେବାର ଦେଖି ଭଗବାନ୍ ନାରଦ ଋଷି କହିଲେ, ହେ ମହାତେଜସ୍ୱୀ ! ଆମ୍ଭେ ଯେଉଁ ଆଖ୍ୟାନମାନ କୀର୍ତ୍ତନ କଲୁଁ, ତାହା ତୁମ୍ଭେ ଶ୍ରବଣ କରି ଗ୍ରହଣ କରିଅଛ ତ ? ଅଥବା ଶୂଦ୍ରାପତି ବ୍ରାହ୍ମଣଙ୍କୁ ଆମନ୍ତ୍ରଣ କରି ଶ୍ରାଦ୍ଧ କଲେ ତାହା ଯେପରି ନିଷ୍ଫଳ ହୁଏ, ସେହିପରି ଏହା ନିଷ୍ଫଳ ହେଲା ? ସୃଞ୍ଜୟ ନାରଦଙ୍କ ଦ୍ୱାରା ଏହିପରି କଥିତ ହୋଇ ତାହାଙ୍କୁ କୃତାଞ୍ଜଳିପୂର୍ବକ ପ୍ରତ୍ୟୁତ୍ତର କଲେ ।୩। ହେ ମହାବାହୋ ! ଯାଜ୍ଞିକଦକ୍ଷିଣାପ୍ରଦ ପୁରାତନ ରାଜର୍ଷିମାନଙ୍କର ଏହି ଉତ୍କୃଷ୍ଟ ଧନ୍ୟ ଆଖ୍ୟାନ ଶୁଣି ସୂର୍ଯ୍ୟକିରଣ ଦ୍ୱାରା ତମୋନାଶ ହେଲାସଦୃଶ ଆମ୍ଭର ଏହି ଶୋକ ବିସ୍ମୟ ଦ୍ୱାରା ବିନଷ୍ଟ ହୋଇଅଛି । ବର୍ତ୍ତମାନ ଆମ୍ଭଙ୍କୁ କାର୍ଯ୍ୟର ଅନୁଷ୍ଠାନ କରିବାକୁ ହେବ, ବ୍ୟକ୍ତ କରିବା ହୁଅନ୍ତୁ ।୫। ନାରଦ ବୋଇଲେ— ତୁମ୍ଭେ ଭାଗ୍ୟହେତୁରୁ ଶୋକଶୂନ୍ୟ ହୋଇଅଛ । ଏକ୍ଷଣି ଯେ ବର ଅଭିଳାଷ କରିବ, ତାହା ପ୍ରାପ୍ତ ହୋଇପାରିବ ; ସେଥିରେ ସଂଶୟ କର ନାହିଁ, ଆମ୍ଭେମାନେ ମିଥ୍ୟାବାଦୀ ନୋହୁଁ ।୬।

ସୃଞ୍ଜୟ ବୋଇଲେ— ହେ ଭଗବନ୍ ! ଆପଣ ଆମ୍ଭ ପ୍ରତି ପ୍ରସନ୍ନ ହୋଇଅଛନ୍ତି, ଏହି ହେତୁରୁ ଆମ୍ଭେ ପ୍ରୀତି ଲାଭ କରିଅଛୁଁ ; ଯାହା ପ୍ରତି ଭଗବାନ୍ ପ୍ରସନ୍ନ ହୋଇଅଛନ୍ତି, ଇହ ଜଗତରେ ତାହାର କିଛିମାତ୍ର ଦୁର୍ଲଭ ନାହିଁ ।୭।

ନାରଦ ବୋଇଲେ, ତୁମ୍ଭ ପୁତ୍ରଙ୍କୁ ଦସ୍ୟୁମାନେ ବୃଥା ନିହତ କରିଅଛନ୍ତି । ସେ ଯୋଗୁଁ ସେ ଅପ୍ରୋକ୍ଷିତ ପଶୁସଦୃଶ କଷ୍ଟଜନକ ନରକକୁ ଗମନ କରିଅଛି । ଅତଏବ ଆମ୍ଭେ ସେହି ନରକରୁ ଉଦ୍ଧୃତ କରି ତୁମ୍ଭ ପୁତ୍ରଙ୍କୁ ପୁନର୍ବାର ତୁମ୍ଭଙ୍କୁ ପ୍ରଦାନ କରୁଅଛୁଁ ।୮।

ବ୍ୟାସ ବୋଇଲେ—ତଦନନ୍ତର ଦେବର୍ଷି ନାରଦ ପ୍ରସନ୍ନ ହୋଇ ସୃଞ୍ଜୟଙ୍କର କୁବେର-ତନୟସଦୃଶ ପୁତ୍ରକୁ ତାହାଙ୍କୁ ପ୍ରଦାନ କରନ୍ତେ ଅଦ୍ଭୁତପ୍ରଭାସମନ୍ୱିତ ତାହାଙ୍କର ପୁତ୍ର ତାହାଙ୍କ ନିକଟରେ ପ୍ରାଦୁର୍ଭୂତ ହେଲା । ୯ । ରଜା ସୃଞ୍ଜୟ ପୁତ୍ର ଲାଭ କରି ପ୍ରୀତିମାନ୍ ହେଲେ । ତତ୍ପରେ ପ୍ରଚୁର ଦକ୍ଷିଣାସହକାରେ ପୁଣ୍ୟଜନକ ନାନା ଯଜ୍ଞ ନିଷ୍ପାଦନ କଲେ । ୧୦। ସୃଞ୍ଜୟଙ୍କ ପୁତ୍ର ଭୀତ, ଅକୃତକାର୍ଯ୍ୟ, ନିଃସନ୍ତାନ ଓ ଯଜ୍ଞାନୁଷ୍ଠାନରହିତ ଥିଲେ ଏବଂ ସେ ମଧ୍ୟ ଯୁଦ୍ଧରେ ହତ ହୋଇ ନ ଥିଲେ, ଏହି ନିମନ୍ତେ ସେ ପୁନର୍ବାର ଜୀବିତ ହେଲେ । ୧୧ । କିନ୍ତୁ ଅଭିମନ୍ୟୁ ଶୂର, ବୀର ଓ କୃତାସ୍ତ୍ର ଥିଲେ, ସେ ବୀରତାପ୍ରକାଶପୂର୍ବକ ସହସ୍ର ସହସ୍ର ଶତ୍ରୁଙ୍କୁ ସନ୍ତାପିତ କରି ସୈନ୍ୟାଭିମୁଖରେ ଯୁଦ୍ଧ କରୁଁ କରୁଁ ନିହତ ହୋଇଅଛନ୍ତି ; ଅତଏବ ବ୍ରହ୍ମଚର୍ଯ୍ୟ, ପ୍ରଜ୍ଞା, ବେଦାଧ୍ୟୟନ ଓ ଯଜ୍ଞସମୂହ ଦ୍ୱାରା ଲୋକେ ଯେଉଁ ସମସ୍ତ ଅକ୍ଷୟ ସ୍ୱର୍ଗକୁ ଗମନ କରନ୍ତି, ଅଭିମନ୍ୟୁ ସେହି ଲୋକକୁ ଗମନ କରି-ଅଛନ୍ତି । ୧୩ । ବିଦ୍ୱାନ୍ ବ୍ୟକ୍ତିମାନେ ନିତ୍ୟ ନିତ୍ୟ ପୁଣ୍ୟକର୍ମ ଦ୍ୱାରା ସ୍ୱର୍ଗ-ପ୍ରାର୍ଥନା କରିଥା'ନ୍ତି, କିନ୍ତୁ ସ୍ୱର୍ଗବାସୀ ବ୍ୟକ୍ତିମାନେ ସ୍ୱର୍ଗରୁ ଇହ ଲୋକକୁ ଆସିବାକୁ କାମନା କରନ୍ତି ନାହିଁ ; ଅତଏବ ସମରନିହତ ସ୍ୱର୍ଗପ୍ରାପ୍ତ ଅର୍ଜ୍ଜୁନ-ପୁତ୍ରଙ୍କୁ ଏହି ମର୍ତ୍ତ୍ୟଲୋକକୁ ଅଳ୍ପ ଓ ଅପକୃଷ୍ଟ ଉପଭୋଗ ନିମନ୍ତେ ଅଣାଯାଇ ନ ପାରେ ।

ଯୋଗୀମାନେ ସମାଧିବଳରେ ପବିତ୍ରଦର୍ଶନ ହୋଇ ଯେଉଁ ଗତି ଲାଭ କରନ୍ତି, ଉତ୍କୃଷ୍ଟ ଯୋଗଶୀଳମାନେ ଯେଉଁ ଗତି ପ୍ରାପ୍ତ ହୁଅନ୍ତି ଓ ତପୋଧନମାନେ ସମୁଜ୍ଜ୍ୱଳ ତପସ୍ୟା ଦ୍ୱାରା ଯେଉଁ ଗତି ଲାଭ କରନ୍ତି, ତୁମ୍ଭର ପୁତ୍ର ସେହି ଅକ୍ଷୟା ଗତି ଲାଭ କରିଅଛନ୍ତି । ୧୬ । ମହାବୀର ଅଭିମନ୍ୟୁ କ୍ଷତ୍ରିୟୋଚିତ ଦେହ ଲାଭ କରି ଅନ୍ତକାଳରେ ତାହା ପରିତ୍ୟାଗ-ପୂର୍ବକ ପୁନର୍ବାର ଚନ୍ଦ୍ରସମ୍ବନ୍ଧୀୟ ସ୍ୱାଭାବିକ ଦେହ ପ୍ରାପ୍ତ ହୋଇ ଅମୃତରୂପ ଆତ୍ମରଶ୍ମି ଦ୍ୱାରା ଚନ୍ଦ୍ରସଦୃଶ ବିରାଜମାନ କରୁଅଛନ୍ତି ; ଅତଏବ ତାହାଙ୍କ ସକାଶେ ଶୋକ କରିବା ଉଚିତ ହେଉନାହିଁ । ୧୭ । ହେ ଅନଘ ! ତୁମ୍ଭେ ଏହିପରି ଅବଗତ ହୋଇ ଧୈର୍ଯ୍ୟାବଲମ୍ବନପୂର୍ବକ ସ୍ଥିରଚିତ୍ତ ହୋଇ ପୁନର୍ବାର ଶତ୍ରୁଜୟ କରିବାକୁ ପ୍ରବୃତ୍ତ ହୁଅ । ପ୍ରାଜ୍ଞମାନଙ୍କର ଜୀବିତ ବ୍ୟକ୍ତି

ନିମନ୍ତେ ଶୋକ ବିଧେୟ । ସ୍ୱର୍ଗଗତ ବ୍ୟକ୍ତିମାନଙ୍କ ନିମନ୍ତେ ଶୋକ କରିବା ଅନୁଚିତ ଅଟେ । ୧୮ । ହେ ମହାରାଜ ! ଚିନ୍ତା କଲେ ଶୋକ ଆହୁରି ବୃଦ୍ଧିପ୍ରାପ୍ତ ହୁଏ । ଏ ନିମନ୍ତେ ଜ୍ଞାନୀ ବ୍ୟକ୍ତିର ହର୍ଷ, ଅଭିମାନ ଓ ସୁଖ ଚିନ୍ତା କରି ଶୋକପରିତ୍ୟାଗପୂର୍ବକ ଶ୍ରେୟ ନିମିତ୍ତ ଯତ୍ନ କରିବା ଉଚିତ । ପଣ୍ଡିତ-ମାନେ ଏହା ଅବଗତ ହୋଇ ଶୋକ କରନ୍ତି ନାହିଁ, ଶୋକକୁ ଭାବିଲେ ଶୋକ, ନଭାବିଲେ ଶୋକ ନୁହେଁ । ୨୦ । ତୁମ୍ଭେ ଏହିପରି ଅବଗତ ହୋଇ ସଂଯତ ହୁଅ । ଉତ୍ଥାନ କର, ଶୋକ କରନାହିଁ । ମୃତ୍ୟୁର ଉତ୍ପତ୍ତି, ଅନୁପପତ୍ତି, ତପସ୍ୟା, ସର୍ବପ୍ରାଣୀଙ୍କଠାରେ ସମଭାବରେ ସଂହାର, ସମ୍ପତ୍ତିର ଚଞ୍ଚଳତା ଓ ସୃଞ୍ଜୟଙ୍କ ମୃତପୁତ୍ର ଯେଉଁ କାରଣରୁ ପୁନର୍ବାର ଜୀବିତ ହୋଇଥିଲେ, ଏହି ସମୁଦାୟ ଶ୍ରବଣ କରିଅଛ । ୨୨ । ଅତଏବ ହେ ମହାରାଜ ! ତୁମ୍ଭେ ଏହି ସମସ୍ତ ଅବଗତ ହୋଇ ଶୋକ କରନାହିଁ । ଆମ୍ଭେ ଆମ୍ଭ କାର୍ଯ୍ୟସାଧନ କରିବାପାଇଁ ଅଛୁଁ । ଏହା କହି ଭଗବାନ୍ ବ୍ୟାସ ଅନ୍ତର୍ହିତ ହେଲେ । ୨୩ ।

ନିର୍ମଳ ନଭୋମଣ୍ଡଳସଦୃଶ ଶ୍ୟାମକଳେବର ଧୀମାନ୍‌ପ୍ରବର ବାଗୀଶ୍ୱର ଭଗବାନ୍ ବେଦବ୍ୟାସ ଯୁଧିଷ୍ଠିରଙ୍କୁ ଆଶ୍ୱାସିତ କରି ଗମନ କରନ୍ତେ ଯୁଧିଷ୍ଠିର ମହେନ୍ଦ୍ରତୁଲ୍ୟ ତେଜସ୍ୱୀ ନ୍ୟାୟାର୍ଜ୍ଜିତବିତ୍ତ ପୂର୍ବତନ ପାର୍ଥିବେନ୍ଦ୍ରମାନଙ୍କର ତାଦୃଶ ଯଜ୍ଞସମ୍ପତ୍ତି ଶ୍ରବଣ କରି ମନେ ମନେ ସେମାନଙ୍କୁ ପୂଜାପୂର୍ବକ ଶୋକରହିତ ହେଲେ ଏବଂ ପୁନର୍ବାର ମନରେ ଏହିପରି ଚିନ୍ତା କଲେ ଯେ, ଧନଞ୍ଜୟଙ୍କୁ ଆମ୍ଭେ କିପରି ଦେଖିବୁଁ ? ୨୬ ।



## ୭୨ ଅଧ୍ୟାୟ

ସଞ୍ଜୟ ବୋଇଲେ—ହେ ଭରତର୍ଷଭ ! ସେହି ଭୟଙ୍କର ପ୍ରାଣି-କ୍ଷୟ ଦିବସର ଅବସାନ ହୁଅନ୍ତେ ଓ ସୂର୍ଯ୍ୟ ଅସ୍ତ ହୁଅନ୍ତେ ସନ୍ଧ୍ୟାକାଳ ଉପସ୍ଥିତ ହେଲା ଓ ସୈନ୍ୟମାନେ ରଣସ୍ଥଳରୁ ପ୍ରତ୍ୟାଗମନ କଲେ । ସେହି ସାୟାହ୍ନସମୟରେ ଶ୍ରୀମାନ୍ କପିଧ୍ୱଜ ଧନଞ୍ଜୟ ଦିବ୍ୟାସ୍ତ୍ର ଦ୍ୱାରା ସଂଶପ୍ତକମାନଙ୍କୁ ନିହତ କରି ଜୟଶୀଳ ରଥରେ ସମାରୂଢ଼ ହୋଇ ସ୍ୱଶିବିରକୁ ଗମନ

କଲେ । ଯାଉଁ ଯାଉଁ ଅଶ୍ରୁପୂର୍ଣ୍ଣ କଣ୍ଠସ୍ୱରରେ ଗୋବିନ୍ଦଙ୍କୁ କହିଲେ, ହେ କେଶବ ! ଆମ୍ଭର ଚିତ୍ତ ବ୍ୟାକୁଳ ହେଉଅଛି, ବାକ୍ୟ ସ୍ଫୂର୍ତ୍ତି ହେଉନାହିଁ, ଅନିଷ୍ଟସୂଚକ ଅଙ୍ଗସ୍ପନ୍ଦନ ହେଉଅଛି ଓ ଶରୀର ମଧ୍ୟ ଅବସନ୍ନ ହେଉଅଛି । ଆମ୍ଭର ହୃଦୟରେ କ୍ଳେଶଜନକ ଅନିଷ୍ଟଶଙ୍କା ହେଉଅଛି, ତାହା ଅପସୃତ ହେଉନାହିଁ । ପୃଥିବୀ, ଆକାଶ ଓ ଚତୁର୍ଦ୍ଦିଗରେ ଭୟଙ୍କର ଉତ୍ପାତମାନ ଆମ୍ଭଙ୍କୁ ଗ୍ଲାପିତ କରୁଅଛି । ଆମ୍ଭେ ବହୁପ୍ରକାର ଅନିଷ୍ଟସୂଚକ ଉତ୍ପାତ ଦେଖୁଅଛୁଁ, ଆମ୍ଭର ପୂଜନୀୟ ମହାରାଜ ଯୁଧିଷ୍ଠିର ଓ ତାହାଙ୍କର ଅମାତ୍ୟ-ମାନେ ମଙ୍ଗଳରେ ଅଛନ୍ତି ତ ? ୬ ।

ବାସୁଦେବ ବୋଇଲେ—ହେ ପାର୍ଥ ! ଅବଶ୍ୟ ତୁମ୍ଭର ଭ୍ରାତା ଓ ସେମାନଙ୍କର ଅମାତ୍ୟମାନେ କୁଶଳରେ ଅଛନ୍ତି, ସନ୍ଦେହ ନାହିଁ ; କିନ୍ତୁ ଅନ୍ୟବିଧ୍ୟ ଅଲ୍ପକଅନ୍ତର ଅନିଷ୍ଟ ହେବ, ସେଥିନିମନ୍ତେ ତୁମ୍ଭେ ଶୋକ କରନାହିଁ । ୭ ।

ସଞ୍ଜୟ ବୋଇଲେ—ହେ ମହାରାଜ ! ତହୁଁରେ ସେହି ଦୁଇବୀର ସନ୍ଧ୍ୟୋପାସନା କରି ରଥୋପରି ତଦ୍ଦିବସର ବୀରବିମର୍ଦ୍ଦନବିଷୟକ ରଣ-ବୃତ୍ତାନ୍ତ କଥୋପକଥନ କରୁଁ କରୁଁ ଗମନ କଲେ । ୮ । କୃଷ୍ଣ ଓ ଅର୍ଜ୍ଜୁନ ଯୁଦ୍ଧରେ ଅତି ଦୁଷ୍କର କର୍ମମାନ ସମ୍ପାଦନ କରି ଆପଣାର ଶିବିରରେ ଉପସ୍ଥିତ ହେଲେ ଓ ଦେଖିଲେ ଯେ, ଶିବିର ଆନନ୍ଦଶୂନ୍ୟ ଓ ଶୋଭାବିହୀନ ହୋଇଅଛି । ୯ । ଅନନ୍ତର ପରବୀରହନ୍ତା ବୀଭତ୍ସୁ ଶିବିରକୁ ଶ୍ରୀହୀନ ଅବଲୋକନ କରି ଅସ୍ୱସ୍ଥ ଚିତ୍ତରେ କୃଷ୍ଣଙ୍କୁ କହିଲେ । ୧୦ । ହେ ଜନାର୍ଦ୍ଦନ ! ଅଦ୍ୟ ମଙ୍ଗଳସୂଚକ ତୂର୍ଯ୍ୟମାନ ନାଦ କରୁନାହାନ୍ତି ଓ ତୂର୍ଯ୍ୟ-ଧ୍ୱନି ଓ ଦୁନ୍ଦୁଭି ନିର୍ଘୋଷମିଶ୍ରିତ ଶଙ୍ଖଧ୍ୱନି ଓ କରତାଳଧ୍ୱନିମିଶ୍ରିତ ବୀଣାବାଦ୍ୟ ମଧ୍ୟ ହେଉନାହିଁ ଏବଂ ସମସ୍ତ ସୈନ୍ୟଙ୍କ ମଧ୍ୟରେ ବନ୍ଦୀଗଣ ମଙ୍ଗଳସୂଚକ ଗୀତ ଗାଉନାହାନ୍ତି ବା ରମଣୀୟ ସ୍ତୁତିପାଠ କରୁନାହାନ୍ତି । ଯୋଦ୍ଧାମାନେ ଆମ୍ଭଙ୍କୁ ଦେଖି ଅଧୋମୁଖରେ ପଳାୟନ କରୁଅଛନ୍ତି । ୧୩ । ସେମାନେ ପୂର୍ବେ ଯେପରି କାର୍ଯ୍ୟ କରୁଥିଲେ, ଅଦ୍ୟ ସେପରି କରୁନାହାନ୍ତି ଓ ଆମ୍ଭଙ୍କୁ ସମ୍ଭାଷଣ ମଧ୍ୟ କରୁନାହାନ୍ତି । ହେ ମାଧବ ! ଆମ୍ଭର ଭ୍ରାତାମାନଙ୍କର ସମସ୍ତ ମଙ୍ଗଳ ତ ? ୧୪ । ହେ ମାନଦ ଅଚ୍ୟୁତ ! ସ୍ୱଜନମାନଙ୍କୁ ବ୍ୟାକୁଳ ହେବାର ଅବଲୋକନ କରି ଆମ୍ଭର ଚିତ୍ତଶୁଦ୍ଧି ହେଉନାହିଁ । ପାଞ୍ଚାଳ ରାଜା

ବିରାଟ ଅଥବା ଆମ୍ଭମାନଙ୍କର ଅପରାପର ଯୋଦ୍ଧୃଗଣଙ୍କର କୌଣସି ଅମଙ୍ଗଳ ହୋଇନାହିଁ ତ ? ପୂର୍ବେ ଦିବସମାନଙ୍କରେ ଆମ୍ଭେ ସମରରୁ ପ୍ରତ୍ୟାଗମନ କରନ୍ତେ ଅଭିମନ୍ୟୁ ଭ୍ରାତୃମାନଙ୍କ ସହିତ ପ୍ରହୃଷ୍ଟ ହୋଇ ହାସ୍ୟ ମୁଖରେ ଯେଉଁପରି ଆମ୍ଭ ନିକଟକୁ ଆସୁଥିଲେ, ଅଦ୍ୟ କି ନିମିତ୍ତ ସେହିପରି ଆସୁନାହାନ୍ତି ? ୧୬ ।

ସଞ୍ଜୟ ବୋଇଲେ, ଏହିରୂପେ କଥୋପକଥନ କରୁଁ କରୁଁ କୃଷ୍ଣାର୍ଜ୍ଜୁନ ଦୁହେଁ ସ୍ୱଶିବିରରେ ପ୍ରବିଷ୍ଟ ହୋଇ ପାଣ୍ଡବମାନଙ୍କୁ ଅତ୍ୟନ୍ତ ଅସୁସ୍ଥ ଓ ନଷ୍ଟଚିତ୍ତ ହୋଇଥିବାର ଅବଲୋକନ କଲେ । ୧୭ । କପିଧ୍ୱଜ ଅର୍ଜ୍ଜୁନ ଭ୍ରାତା, ପୁତ୍ର ଓ ଭ୍ରାତୃପୁତ୍ରମାନଙ୍କୁ ଅତ୍ୟନ୍ତ ବିମନା ଦେଖି ଓ ଅଭିମନ୍ୟୁକୁ ଅବଲୋକନ ନ କରି ଏହିପରି କହିଲେ ।୧୮। ତୁମ୍ଭ ସମସ୍ତଙ୍କ ମୁଖର ବର୍ଣ୍ଣ ଅପ୍ରସନ୍ନ ହୋଇଅଛି, ଆମ୍ଭେ ଅଭିମନ୍ୟୁକୁ ଦେଖୁନାହୁଁ, ତୁମ୍ଭେମାନେ ପୂର୍ବପରି ଆମ୍ଭଙ୍କୁ ଅଭିନନ୍ଦନ କରୁନାହଁ । ଦ୍ରୋଣ ଚକ୍ରବ୍ୟୂହ ନିର୍ମାଣ କରିଥିଲେ ବୋଲି ଆମ୍ଭେ ଶୁଣିଥିଲୁଁ । ସେହି ବ୍ୟୂହକୁ ଭେଦ କରିବାପାଇଁ ସେହି ବାଳକ ସୌଭଦ୍ର ବ୍ୟତୀତ ତୁମ୍ଭମାନଙ୍କ ମଧ୍ୟରେ ଅପର କେହି ସମର୍ଥ ନୁହନ୍ତି । ୨୦ । ବ୍ୟୂହ ପ୍ରବେଶର ଉପାୟ ସେ ଆମ୍ଭଠାରୁ ଶିକ୍ଷା କରିଥିଲେ ; କିନ୍ତୁ ବ୍ୟୂହରୁ ନିର୍ଗତ ହେବାର ଉପାୟ ଆମ୍ଭେ ତାହାଙ୍କୁ ଉପଦେଶ ଦେଇନାହୁଁ । ତୁମ୍ଭେମାନେ ତ ସେହି ବାଳକ ଅଭିମନ୍ୟୁକୁ ଶତ୍ରୁର ଚକ୍ରବ୍ୟୂହ ମଧ୍ୟରେ ପ୍ରବେଶ କରାଇ ନାହଁ ? ୨୧ । ସେହି ମହାଧନୁର୍ଦ୍ଧର ପରବୀରହନ୍ତା ଅଭିମନ୍ୟୁ ଶତ୍ରୁବ୍ୟୂହ ମଧ୍ୟରେ ପ୍ରବେଶ କରି ବହୁଳ ଶତ୍ରୁସୈନ୍ୟମାନଙ୍କ ସହିତ ଯୁଦ୍ଧରେ ନିହତ ହୋଇ ନାହାନ୍ତି ତ ? ୨୨ । ପର୍ବତଜାତ ସିଂହ ସଦୃଶ ଲୋହିତାକ୍ଷ ମହାବାହୁ ଉପେନ୍ଦ୍ରସମ ଅଭିମନ୍ୟୁ ଯୁଦ୍ଧରେ କି ପ୍ରକାର ହତ ହେଲା, କହ । ୨୩ । ଆମ୍ଭର ନିତ୍ୟପ୍ରିୟ ମହାଧନୁର୍ଦ୍ଧର ବାସବପୌତ୍ର କି ପ୍ରକାର ଯୁଦ୍ଧରେ ହତ ହୋଇଅଛି, କହ । ୨୪ । ଦ୍ରୌପଦୀ, କେଶବ ଓ କୁନ୍ତୀଙ୍କର ନିତ୍ୟପ୍ରିୟ ସୁଭଦ୍ରାଙ୍କ ପ୍ରିୟପୁତ୍ର ସେହି ଅଭିମନ୍ୟୁକୁ କିଏ କାଳପ୍ରେରିତ ହୋଇ ନିହତ କରିଅଛି, କହ । ୨୫ । ବିକ୍ରମରେ, ଶାସ୍ତ୍ରଜ୍ଞାନରେ ଓ ମାହାତ୍ମ୍ୟରେ ବୃଷ୍ଣିସିଂହ ମହାତ୍ମା କେଶବଙ୍କ ତୁଲ୍ୟ ସେହି ଅଭିମନ୍ୟୁ କି ପ୍ରକାରେ ସଂଗ୍ରାମରେ ହତ ହୋଇଅଛି, କହ । ୨୬ । ସୁଭଦ୍ରାଙ୍କ ପ୍ରିୟ ଓ ଆମ୍ଭର ସତତଲାଳିତ,

ଶୌର୍ଯ୍ୟଶାଳୀ ପୁତ୍ରକୁ ଯଦି ନ ଦେଖୁଁ, ତେବେ ଆମ୍ଭେ ଯମସଦନକୁ ଯିବୁ । ୨୨ । ଯାହାର କେଶାଗ୍ରଭାଗ କୋମଳ ଓ କୁଞ୍ଚିତ, ଚକ୍ଷୁ ମୃଗଶାବକ-ଚକ୍ଷୁସଦୃଶ ରମଣୀୟ, ଯାହାର ଗମନ ମତ୍ତହସ୍ତିସଦୃଶ, ଆକୃତି ଶାଳପୋତ ସଦୃଶ ଉଦ୍‌ଗତ, ଯାହାର ସମ୍ଭାଷଣ ହାସ୍ୟମିଶ୍ରିତ ଓ ଯେ ବାଲ୍ୟାବସ୍ଥାରେ ସୁଦ୍ଧା ଅବାଳକସଦୃଶ ଆଚରଣ କରେ ଏବଂ ଯେ ଗୁରୁବାକ୍ୟପାଳନରତ ଓ ଅପ୍ରିୟବାକ୍ୟ ପ୍ରୟୋଗ କରେ ନାହିଁ, ଯୁଦ୍ଧରେ ଅପରାଙ୍ମୁଖ ଅଥଚ ଯୁଦ୍ଧକୁ ଅଭିନନ୍ଦନ କରେ, ଯେ ଯୁଦ୍ଧରେ ବିପକ୍ଷକୁ ଅଗ୍ରେ ପ୍ରହାର କରେ ନାହିଁ ଓ ନିର୍ଭୀକ ହୋଇ ଯୁଦ୍ଧ କରେ ; ଯେ ଶାନ୍ତ, ମାତ୍ସର୍ଯ୍ୟହୀନ, ମହୋତ୍ସାହସମ୍ପନ୍ନ, ମହାବାହୁ, ଦୀର୍ଘରାଜୀବଲୋଚନ, ଭକ୍ତାନୁକମ୍ପୀ, ଜିତେନ୍ଦ୍ରିୟ, କୃତଜ୍ଞ, ଜ୍ଞାନସମ୍ପନ୍ନ, ଶିକ୍ଷିତାସ୍ତ୍ର, ଶତ୍ରୁଶୋକବର୍ଦ୍ଧନ, ପିତା ଓ ପିତୃବ୍ୟଙ୍କ ଜୟୈଷୀ ଓ ଯେ ସ୍ୱଜନମାନଙ୍କ ପ୍ରିୟ ଓ ହିତ କାର୍ଯ୍ୟରେ ନିରତ, ଆମ୍ଭର ପୁତ୍ର ସେହି ଅଭିମନ୍ୟୁଙ୍କୁ ଯଦି ନ ଦେଖୁଁ, ତେବେ ଆମ୍ଭେ ଯମାଳୟକୁ ଗମନ କରିବୁଁ । ଯେ ରଥୀମାନଙ୍କ ମଧ୍ୟରେ ମହାରଥୀ ବୋଲି ପରିଗଣିତ, ଯେ ପ୍ରଦ୍ୟୁମ୍ନଙ୍କର, କେଶବଙ୍କର ଓ ଆମ୍ଭର ପ୍ରିୟଶିଷ୍ୟ ଓ ସଂଗ୍ରାମରେ ଆମ୍ଭଠାରୁ ଅର୍ଦ୍ଧେଗୁଣ ଅଧିକ, ସେହି ତରୁଣ ପୁତ୍ରକୁ ଯଦି ନ ଦେଖୁଁ, ତେବେ ଯମାଳୟକୁ ଗମନ କରିବୁଁ । ତାହାର ସେହି ସୁନ୍ଦର ନାସିକା, ଲଲାଟ, ଚକ୍ଷୁ, ଭ୍ରୂ ଓ ଓଷ୍ଠଶୋଭିତ ବଦନ ନ ଦେଖିଲେ ଆମ୍ଭ ଅନ୍ତଃକରଣରେ ଶାନ୍ତି ହେବନାହିଁ ? ସେହି ବୀରପ୍ରବର ଦେବଦୁର୍ଲ୍ଲଭ ଅତୁଳନୀୟରୂପ ଅଦ୍ୟ ଅବଲୋକନ ନ କଲେ ଆମ୍ଭ ଅନ୍ତଃକରଣର ଶାନ୍ତି କେଉଁଠାରେ ? ଅଭିବାଦନ ନିପୁଣ, ପିତୃବାକ୍ୟ ନିରତ ସେହି ପୁତ୍ରକୁ ଅଦ୍ୟ ଅବଲୋକନ ନକଲେ ଆମ୍ଭ ହୃଦୟର ଶାନ୍ତି କେଉଁଠାରେ ? ସେହି ବୀରାଗ୍ରଗଣ୍ୟ, ସନାଥପ୍ରବର, ସୁକୁମାର, ସର୍ବଦା ମହାର୍ହ ଶଯ୍ୟାରେ ଶୟନଯୋଗ୍ୟ ଥିଲେ ହେଁ ଅନାଥତୁଲ୍ୟ ଭୂତଳରେ ଶୟନ କରିଅଛି, ଏଥିରେ ସନ୍ଦେହ ନାହିଁ । ମହାର୍ହ ଶଯ୍ୟାରେ ଶୟନ କଲାବେଳେ ଯାହାକୁ ପରମସ୍ତ୍ରୀମାନେ ସେବା କରୁଥିଲେ ସେ ବର୍ତ୍ତମାନ ବିଦ୍ଧ-ଶରୀରରେ ରଣଶାୟୀ ହୋଇଥିବାରୁ ଅଶିବ ଶିବାଗଣ ତାହାର ଉପସେବନ କରୁଅଛନ୍ତି । ପୂର୍ବେ ଶୟନକାଳରେ ସୂତ, ମାଗଧ ଓ ବନ୍ଦୀ-ଗଣ ସ୍ତୁତିପାଠ ଦ୍ୱାରା ଯାହାକୁ ଜାଗରିତ କରୁଥିଲେ, ବର୍ତ୍ତମାନ ଶ୍ୱାପଦଗଣ

ବନ୍ଦିତ ସ୍ୱନରେ ତାହାକୁ ଜାଗରିତ କରୁଅଛନ୍ତି । ଯାହାର ମନୋହର ମୁଖମଣ୍ଡଳ ଛତ୍ରଛାୟା ଦ୍ୱାରା ଆବୃତ ହେବାର ଉପଯୁକ୍ତ, ବର୍ତ୍ତମାନ ସେହି ବଦନ ରଣଧୂଳିରେ ସମାଚ୍ଛନ୍ନ ହୋଇଥିବ, ସନ୍ଦେହ ନାହିଁ । ହା ପୁତ୍ର ! ଯେ ତୁମ୍ଭଙ୍କୁ ସର୍ବଦା ଅବଲୋକନ କରି ସୁଦ୍ଧା ଅପରିତୃପ୍ତ ହେଉଥିଲି, ସେହି ଭାଗ୍ୟହୀନ ନିକଟରୁ ତୁମ୍ଭେ କାଳକର୍ତ୍ତୃକ ବଳପୂର୍ବକ ଯମାଳୟକୁ ନୀତ ହେଲ ! ବର୍ତ୍ତମାନ ସୁକୃତିମାନଙ୍କର ଆଶ୍ରୟ ସେହି ଯମପୁରୀର ସଭା ତୁମ୍ଭ ସ୍ୱକୀୟ ପ୍ରଭାଦ୍ୱାରା ରମ୍ୟ ଓ ଉଦ୍ଭାସିତ କରିବାରୁ ତାହା ଅତ୍ୟନ୍ତ ଶୋଭମାନା ହୋଇଅଛି । ବୈବସ୍ୱତ, ବରୁଣ, ବାସବ ଓ କୁବେର ତୁମ୍ଭଙ୍କୁ ଉପସ୍ଥିତ ପ୍ରିୟ ଅତିଥି କରି ପ୍ରାପ୍ତ ହୋଇ ଅର୍ଚ୍ଚନା କରୁଅଛନ୍ତି ।

ମହାରାଜ ! ନୌକା ଭଗ୍ନ ହେଲେ ବଣିକ ଯେପରି ବ୍ୟାକୁଳ ହୋଇ ବିଳାପ କରେ, ସେହିପରି ଅର୍ଜ୍ଜୁନ ମହାଦୁଃଖାର୍ତ୍ତ ହୋଇ ବହୁଧା ବିଳାପ କରି ଯୁଧିଷ୍ଠିରଙ୍କୁ ପଚାରିଲେ, ହେ କୁରୁନନ୍ଦନ ! ଅଭିମନ୍ୟୁ କି ନରବୀରମାନଙ୍କ ସହିତ ଯୁଦ୍ଧ କରି ଶତ୍ରୁବିମର୍ଦ୍ଦନପୂର୍ବକ ସଂଗ୍ରାମରୁ ସ୍ୱର୍ଗାଭିମୁଖରେ ଗମନ କରିଅଛନ୍ତି ? ନିଶ୍ଚୟ ବୋଧ ହେଉଅଛି, ସେହି ନରଶ୍ରେଷ୍ଠ ସହିତ ବହୁ ଯୋଦ୍ଧା ସମବେତ ହୋଇ ଯୁଦ୍ଧ କରୁଥିବା ସମୟରେ ସେ ସହାୟହୀନ ହୋଇ ସାହାଯ୍ୟ ପ୍ରାର୍ଥନା କରି ଆମ୍ଭଙ୍କୁ ଚିନ୍ତା କରିଥିଲି, ସନ୍ଦେହ ନାହିଁ । ଆମ୍ଭେ ବୋଧ କରୁଅଛୁଁ ଯେ, ଦ୍ରୋଣ, କର୍ଣ୍ଣ, କୃପ ପ୍ରଭୃତି ନିଷ୍ଠୁର ବ୍ୟକ୍ତିମାନେ ସୁଧୌତାଗ୍ର ତୀକ୍ଷ୍ଣ ତୀକ୍ଷ୍ଣ ନାନାବିଧ ବାଣମାନଙ୍କ ଦ୍ୱାରା ଆମ୍ଭର ପୁତ୍ରକୁ ପୀଡ଼ନ କରିବାବେଳେ ସେ ଅଚେତନ ପ୍ରାୟ ହୋଇ "ଆମ୍ଭ ପିତା ଏ ସ୍ଥଳରେ ଥିଲେ, ଆମ୍ଭଙ୍କୁ ପରିତ୍ରାଣ କରନ୍ତେ", ଏହା କହି ପୁନଃ ପୁନଃ ବିଳାପ କରି ସେହି ନୃଶଂସମାନଙ୍କ କର୍ତ୍ତୃକ ଭୂତଳରେ ପାତିତ ହୋଇଅଛି । ଅଥବା ଯେ ଆମ୍ଭର ଔରସ, କୃଷ୍ଣଙ୍କର ଭାଗିନେୟ ଓ ସୁଭଦ୍ରାଙ୍କ ଗର୍ଭଜାତ, ସେ କଦାଚ ଶରଣ ଭିକ୍ଷା କରି ଏପରି କହିବାର ଯୋଗ୍ୟ ନୁହେଁ । ଆମ୍ଭର ହୃଦୟ ନିଶ୍ଚୟ ପାଷାଣତୁଲ୍ୟ ଅତି କଠିନ । ଯେହେତୁ ସେହି ଦୀର୍ଘବାହୁ ଲୋହିତଲୋଚନ ପୁତ୍ରକୁ ନ ଦେଖି ଏ ପର୍ଯ୍ୟନ୍ତ ତାହା ବିଦୀର୍ଣ୍ଣ ହେଉନାହିଁ । ସେହି ସମସ୍ତ ମହାଧନୁର୍ଦ୍ଧର ମର୍ମଭେଦୀ ନିଶଂସସ୍ୱଭାବ ବ୍ୟକ୍ତିମାନେ କି ପ୍ରକାରେ କୃଷ୍ଣଙ୍କ ଭାଗିନେୟ ଓ

ଆମ୍ଭର ବାଳକପୁତ୍ର ପ୍ରତି ଶରସମୂହ ନିକ୍ଷେପ କଲେ ? ଆମ୍ଭେ ପ୍ରତ୍ୟହ ଶତ୍ରୁ ଦହନ କରି ପ୍ରତ୍ୟାଗମନ କଲା ପରେ ସେହି ଅଧୀନାତ୍ମା ଆମ୍ଭ ନିକଟକୁ ଆଗମନ କରି ଆମ୍ଭଙ୍କୁ ଅଭିନନ୍ଦିତ କରେ । ସେ କିପାଇଁ ଆଜ ଆମ୍ଭଙ୍କୁ ଦର୍ଶନ କରିବାଲାଗି ଆସୁନାହିଁ ? ସେ ନିଷ୍ଟୟ ରୁଧିରବେଷ୍ଟିତ ଓ ଭୂତଳପତିତ ହୋଇ ନିଜର ଅଙ୍ଗଶୋଭାଦ୍ୱାରା ଧରଣୀତଳ-ପାତିତ ଆଦିତ୍ୟସଦୃଶ ମେଦିନୀକୁ ଶୋଭିତ କରି ଶୟନ କରିଅଛି । ଆମ୍ଭେ ସୁଭଦ୍ରାଙ୍କ ନିମିତ୍ତ ଶୋକ କରୁଅଛୁଁ । ସେ ଯୁଦ୍ଧରେ ଅପରାଙ୍ମୁଖ ପୁତ୍ରର ନିଧନବାର୍ତ୍ତା ଶ୍ରବଣ କରି ଶୋକାର୍ତ୍ତା ହୋଇ ଜୀବନତ୍ୟାଗ କରିବେ—ଏଥିରେ ସନ୍ଦେହ ନାହିଁ । ସୁଭଦ୍ରା ଓ ଦ୍ରୌପଦୀ ଅଭିମନ୍ୟୁଙ୍କୁ ନ ଦେଖିଲେ ଆମ୍ଭଙ୍କୁ କଅଣ କହିବେ ? ଆମ୍ଭେ ଅବା ସେହି ଦୁଃଖାର୍ତ୍ତା ଦୁହିଙ୍କୁ କ'ଣ କହିବୁଁ ? ଶୋକକର୍ଷିତା ବଧୂକୁ ରୋଦନ କରିବାର ଦେଖି ଯଦି ଆମ୍ଭର ହୃଦୟ ସହସ୍ରଧା ବିଦୀର୍ଣ୍ଣ ନ ହୁଏ, ତେବେ ତାହା ବଜ୍ରସାର ସଦୃଶ କଠିନ—ଏଥିରେ ସନ୍ଦେହ ନାହିଁ । ଦର୍ପିତ ଧାର୍ତ୍ତରାଷ୍ଟ୍ରମାନଙ୍କର ସିଂହନାଦ ଆମ୍ଭେ ଶ୍ରବଣ କରିଥିଲୁ । । ୫୯ । ଯୁଯୁତ୍ସୁ ଯେ ସେହି ବୀରମାନଙ୍କୁ ତିରସ୍କାର କରିଥିଲେ, ତାହା କୃଷ୍ଣ ଶ୍ରବଣ କରିଅଛନ୍ତି । ଯୁଯୁତ୍ସୁ ଉଚ୍ଚୈଃସ୍ୱରରେ ଏହି ପ୍ରକାରେ ସେମାନଙ୍କୁ ତିରସ୍କାର କରିଥିଲେ ଯେ, "ଆହେ ଅଧାର୍ମିକ ମହାରଥଗଣ ! ତୁମ୍ଭେମାନେ ଅର୍ଜ୍ଜୁନଙ୍କୁ ପରାଜିତ କରି ନ ପାରି ଗୋଟିଏ ବାଳକକୁ ହତ୍ୟା କରି ବୃଥା ସିଂହନାଦ କରୁଅଛ । ଅଳ୍ପ ସମୟ ମଧ୍ୟରେ ପାଣ୍ଡବମାନଙ୍କର ବଳ ଦେଖିବ । ତୁମ୍ଭେମାନେ ଯେତେବେଳେ ଯୁଦ୍ଧରେ କୃଷ୍ଣ ଓ ଅର୍ଜ୍ଜୁନଙ୍କର ଅପ୍ରିୟ କାର୍ଯ୍ୟ କରିଅଛ । ତେତେବେଳେ ତୁମ୍ଭମାନଙ୍କର ଶୋକସମୟ ଉପସ୍ଥିତ ହୋଇଅଛି, ତେବେ କିପାଇଁ ତୁମ୍ଭେମାନେ ପ୍ରୀତ ହୋଇ ସିଂହନାଦ କରୁଅଛ ? ତୁମ୍ଭମାନଙ୍କର ଏହି ପାପକାର୍ଯ୍ୟର ଫଳ ଶୀଘ୍ର ଉପସ୍ଥିତ ହେବ । ତୁମ୍ଭମାନଙ୍କର ଏହି ତୀବ୍ର ଅଧର୍ମର ଫଳ ତୁମ୍ଭମାନଙ୍କୁ ଶୀଘ୍ର ଭୋଗ କରିବାକୁ ହେବ । ମହାମତି ବୈଶ୍ୟାପୁତ୍ର ଯୁଯୁତ୍ସୁ କ୍ରୋଧ ଓ ଦୁଃଖ-ସମନ୍ୱିତ ହୋଇ ଏହିପରି କହି ଅସ୍ତ୍ର-ଶସ୍ତ୍ର-ପରିତ୍ୟାଗ-ପୂର୍ବକ ସେଠାରୁ ପ୍ରସ୍ଥାନ କଲେ । ହେ କୃଷ୍ଣ ! ତୁମ୍ଭେ ସେହି ରଣ-ସ୍ଥଳରେ ଆମ୍ଭଙ୍କୁ କି ନିମିତ୍ତ ଏହା ଜ୍ଞାତ କଲ ନାହିଁ ? ଆମ୍ଭେ ଏହା ଜାଣିଥିଲେ ସେହି ନିଷ୍ଠୁର କ୍ରୂରାତ୍ମା ମହାରଥୀମାନଙ୍କୁ ଶରାନଳରେ ଦଗ୍ଧ କରିଥାନ୍ତୁ ।

ସଞ୍ଜୟ ବୋଇଲେ, ହେ ମହାରାଜ ! କୃଷ୍ଣ ଅର୍ଜ୍ଜୁନଙ୍କୁ ପୁତ୍ର-ଶୋକାର୍ତ୍ତ ଅଶ୍ରୁପୂର୍ଣ୍ଣ-ଲୋଚନ, ଅତିକାତର, ନିତାନ୍ତ ଦୁଃଖ-ସମନ୍ୱିତ ଓ ଦୁଃଖିତ ହେବାର ଦେଖି ତାହାଙ୍କ ହସ୍ତ ଧରି କହିଲେ, "ହେ ପାର୍ଥ ! ତୁମ୍ଭେ ଏହିପରି କରନାହିଁ । ୬୬ । ଏହାହିଁ ଶୌର୍ଯ୍ୟ-ସମ୍ପନ୍ନ ଅନିବର୍ତ୍ତୀ ଶୂର-ମାନଙ୍କର ପନ୍ଥା ଅଟେ । ଯୁଦ୍ଧ କରିବା କ୍ଷତ୍ରିୟମାନଙ୍କର ଜୀବିକା ଥିବା ହେତୁ ସେମାନଙ୍କର ପକ୍ଷରେ ଏହା ବିଶେଷରୂପେ ପନ୍ଥା ଅଟେ । ହେ ସଦ୍‌ଗତି-ସମ୍ପନ୍ନପ୍ରବର ! ଧର୍ମଶାସ୍ତ୍ରଜ୍ଞ ଋଷିମାନେ ଯୁଦ୍ଧମାନ ଅନିବର୍ତ୍ତୀ ଶୂରମାନଙ୍କର ଏହାକୁ ସେମାନଙ୍କର ଗତି ବୋଲି ବିହିତ କରିଅଛନ୍ତି ।୬୮।

ଯୁଦ୍ଧରେ ଅନିବର୍ତ୍ତୀ ବୀର-ପୁରୁଷମାନଙ୍କର ଯୁଦ୍ଧମରଣ ହିଁ ଶ୍ରେୟସ୍କର । ଅତଏବ ଅଭିମନ୍ୟୁ ପୁଣ୍ୟାତ୍ମାମାନଙ୍କ ପ୍ରାପ୍ୟ ଲୋକକୁ ଗମନ କରିଅଛନ୍ତି, ସନ୍ଦେହ ନାହିଁ । ୬୯ । ହେ ଭରତର୍ଷଭ ମାନପ୍ରଦ ! ସମସ୍ତ ବୀରଙ୍କର ଏହାହିଁ ଅଭିଳାଷ ଯେ, "ଆମ୍ଭେମାନେ ସମ୍ମୁଖ-ଯୁଦ୍ଧରେ ପ୍ରାଣତ୍ୟାଗ କରୁଁ । ୭୦ । ସେହି ବୀର ଅଭିମନ୍ୟୁ ମହାବଳଶାଳୀ ବୀର୍ଯ୍ୟବାନ୍ ରାଜପୁତ୍ରମାନଙ୍କୁ ସମରରେ ସଂହାର କରି ରଣାଭିମୁଖୀନ ହୋଇ ବୀରକାଂକ୍ଷିତ ମୃତ୍ୟୁ ପ୍ରାପ୍ତ ହୋଇଅଛି । ଅତଏବ ତୁମ୍ଭେ ଶୋକ କରନାହିଁ । ୭୧ । ହେ ମାନଦ ଭରତସତ୍ତମ ! ତୁମ୍ଭେ ଶୋକାବିଷ୍ଟ ହେବାରୁ ତୁମ୍ଭର ଏହି ଭ୍ରାତୃଗଣ, ସୁହୃଦ୍‌ଗଣ ଏବଂ ରାଜସମୂହ, ସମସ୍ତେ କାତର ହୋଇ-ଅଛନ୍ତି । ତୁମ୍ଭେ ଏମାନଙ୍କୁ ସାନ୍ତ୍ୱନାବାକ୍ୟରେ ଆଶ୍ୱାସିତ କର । ସମସ୍ତ ଜ୍ଞାତବ୍ୟ ବିଷୟ ତୁମ୍ଭଙ୍କୁ ବିଦିତ ଅଛି । ଅତଏବ ତୁମ୍ଭ ସଦୃଶ ବ୍ୟକ୍ତି ଶୋକର ଯୋଗ୍ୟ ନୁହେଁ । ୭୪ ।

ଅଦ୍ଭୁତକର୍ମା କୃଷ୍ଣ ଅର୍ଜ୍ଜୁନଙ୍କୁ ଏହିପରି ଆଶ୍ୱାସିତ କଲାରୁ ପାର୍ଥ ସମସ୍ତ ଭ୍ରାତାମାନଙ୍କୁ ଗଦ୍‌ଗଦ୍ ବାକ୍ୟରେ କହିଲେ । ୭୫ । ସେହି ଦୀର୍ଘବାହୁ, ବିଶାଳସ୍କନ୍ଧ, ଦୀର୍ଘ-ପୁଣ୍ଡରୀକ-ଲୋଚନ ଅଭିମନ୍ୟୁ ଯୁଦ୍ଧରେ କି ପ୍ରକାର ନିହତ ହେଲେ, ତାହା ଆମ୍ଭେ ଶ୍ରବଣ କରିବାକୁ ଇଚ୍ଛା କରୁଁ । ଯେଉଁମାନେ ଆମ୍ଭ ପୁତ୍ରର ବୈରୀ ହୋଇଥିଲେ, ସେମାନଙ୍କୁ ସଂଗ୍ରାମରେ ରଥ, ହସ୍ତୀ, ଅଶ୍ୱ ଓ ଅନୁଚର ସହିତ ଆମ୍ଭେ ନିହତ କରିବୁଁ । ଆପଣମାନେ ତାହା ଦେଖିବେ । ୭୭ । ଅସ୍ତ୍ର-ଯୁଦ୍ଧରେ ପାରଦର୍ଶୀ ତୁମ୍ଭେ

ସମସ୍ତେ ଅସ୍ତ୍ରହସ୍ତ ହୋଇ ଉପସ୍ଥିତ ଥିଲେ ଅଭିମନ୍ୟୁ ବଜ୍ର-ପାଣି ଇନ୍ଦ୍ରଙ୍କ ସହିତ ଯୁଦ୍ଧରେ ସମାଗତ ହେଲେ ସୁଦ୍ଧା ତୁମ୍ଭମାନଙ୍କ ସମକ୍ଷରେ କି ସେ ନିଧନପ୍ରାପ୍ତ ହୋଇପାରେ ? ଯଦି ପାଣ୍ଡବ ଓ ପାଞ୍ଚାଳମାନେ ଆମ୍ଭ ପୁତ୍ରକୁ ରକ୍ଷା କରିବାକୁ ଅସମର୍ଥ ବୋଲି ଜାଣିଥାନ୍ତୁ, ତେବେ ଆମ୍ଭେ ନିଜେ ତାହାକୁ ରକ୍ଷା କରିଥାନ୍ତୁ । ୭୯ । ତୁମ୍ଭେମାନେ ରଣସ୍ଥ ହୋଇ ଶରବର୍ଷଣ କରୁଥିବାବେଳେ ଶତ୍ରୁମାନେ ତୁମ୍ଭମାନଙ୍କୁ ପରାସ୍ତ କରି କପରି ଅଭିମନ୍ୟୁଙ୍କୁ ବଧ କଲେ ? ୮୦ ।

ଅହୋ ! ଯେତେବେଳେ ତୁମ୍ଭମାନଙ୍କ ସାକ୍ଷାତରେ ଅଭିମନ୍ୟୁ ଯୁଦ୍ଧରେ ନିପାତିତ ହୋଇଅଛି, ତେତେବେଳେ ନିଶ୍ଚିତ୍ତରୂପେ ବୋଧ ହେଉଅଛି ଯେ, ତୁମ୍ଭମାନଙ୍କର କିଛିମାତ୍ର ପୌରୁଷ ବା ପରାକ୍ରମ ନାହିଁ ।୮୧। ପରନ୍ତୁ ଆମ୍ଭେ ଆପଣାକୁ ନିନ୍ଦା କରୁଅଛୁଁ । କାରଣ, ତୁମ୍ଭେମାନେ ଭୀରୁ, ଅକୃତନିଶ୍ଚୟ ଓ ଅତିଦୁର୍ବଳ ଅଟ । ଏପରି ଅବସ୍ଥାରେ ଆମ୍ଭେ ତୁମ୍ଭ-ମାନଙ୍କ ପ୍ରତି ଏହି ଭାର ଅର୍ପଣ କରି ପ୍ରସ୍ଥାନ କରିଥିଲୁଁ । ତୁମ୍ଭେମାନେ ଯେତେବେଳେ ଆମ୍ଭ ପୁତ୍ରକୁ ରକ୍ଷା କରି ପାରିଲ ନାହିଁ, ତେତେବେଳେ ତୁମ୍ଭମାନଙ୍କର ବର୍ମ, ଶସ୍ତ୍ର ଓ ଆୟୁଧସମସ୍ତ କେବଳ ଭୂଷଣ ନିମିତ୍ତ ଓ ତୁମ୍ଭମାନଙ୍କର ବାକ୍ୟ କେବଳ ସଭା ମଧ୍ୟରେ ବକ୍ତୃତା କରିବା ନିମିତ୍ତ ହୋଇଅଛି । ୮୩ । ପ୍ରବଳ ଗାଣ୍ଡୀବ ଓ ଅସିଧାରୀ ଖାଉହସ୍ତ, ଯେତେବେଳେ ଦଣ୍ଡାୟମାନ ହୋଇ ଏହିପରି ବାକ୍ୟ କହିଲେ, ସେତେ-ବେଳେ ତାହାଙ୍କୁ କେହି ନିରୀକ୍ଷଣ କରିବାକୁ ସମର୍ଥ ହେଲେ ନାହିଁ । ୮୪ । ସେ ପୁତ୍ରଶୋକରେ ଅଭିସନ୍ତପ୍ତ ଅଶ୍ରୁପୂର୍ଣ୍ଣ ମୁଖ ଓ ଅନ୍ତକସଦୃଶ କ୍ରୁଦ୍ଧ ହୋଇ ମୁହୁର୍ମୁହୁଃ ନିଃଶ୍ୱାସ ପରିତ୍ୟାଗ କଲେ । ୮୫ । ସେ ସମୟରେ ବାସୁଦେବ ବା ଜ୍ୟେଷ୍ଠପାଣ୍ଡବ ବ୍ୟତୀତ ଅନ୍ୟ କୌଣସି ସୁହୃଦ୍ ତାହାଙ୍କୁ କୌଣସି କଥା ପଚାରି ପାରିଲେ ନାହିଁ କିମ୍ବା ତାହାଙ୍କ ସହିତ ସମ୍ଭାଷଣ ସୁଦ୍ଧା କରି ପାରିଲେ ନାହିଁ । ୮୬ ।

ବାସୁଦେବ ଓ ଜ୍ୟେଷ୍ଠ ପାଣ୍ଡବ—ଏ ଦୁହେଁ ତାହାଙ୍କ ମନୋଗତ ଭାବ ଜାଣନ୍ତି ଓ ସେ ମଧ୍ୟ ଏହି ଦୁଇଜଣଙ୍କୁ ଅତ୍ୟନ୍ତ ଭକ୍ତି କରନ୍ତି ଓ ସେମାନଙ୍କର ପ୍ରିୟାଚରଣ କରନ୍ତି । ସୁତରାଂ ସେ ଦୁହେଁ ଅର୍ଜୁନଙ୍କର

ସର୍ବପ୍ରକାର ଅବସ୍ଥାରେ ସବୁ କଥା କହି ପାରନ୍ତି । ପୁତ୍ରଶୋକରେ ନିରନ୍ତରଶୟ ପୀଡ଼ିତଚିତ୍ତ କ୍ରୋଧାବିଷ୍ଟ ଓ କମଳଲୋଚନ ଅର୍ଜୁନଙ୍କୁ ଉପୂରେ ରାଜା ଯୁଧିଷ୍ଠିର ଉପସ୍ଥିତ ବିବରଣ କହିବାକୁ ଆରମ୍ଭ କଲେ । ୮୮ ।



## ୭୩ ଅଧ୍ୟାୟ

ଯୁଧିଷ୍ଠିର ବୋଇଲେ, ହେ ମହାବାହୋ ! ତୁମ୍ଭେ ସଂଶପ୍ତକବଧ ନିମନ୍ତେ ପ୍ରସ୍ଥାନ କରନ୍ତେ ଆଚାର୍ଯ୍ୟ ଆମ୍ଭଙ୍କୁ ଗ୍ରହଣ କରିବା ନିମନ୍ତେ ଅତ୍ୟନ୍ତ ଯତ୍ନ କଲେ । ୧ । ସେ ସୈନ୍ୟଦ୍ୱାରା ଗୋଟିଏ ବ୍ୟୂହ ରଚନା କରି ଅବସ୍ଥିତ ହେଲନ୍ତି; ଆମ୍ଭେମାନେ ମଧ୍ୟ ରଥସୈନ୍ୟଦ୍ୱାରା ପ୍ରତିବ୍ୟୂହ ରଚନା କରି ତାହାଙ୍କୁ ନିବାରଣ କରିବାରେ ପ୍ରବୃତ୍ତ ହେଲୁଁ । ୨ । ଆମ୍ଭର ରଥୀମାନେ ଆମ୍ଭଙ୍କୁ ରକ୍ଷା କରିବାକୁ ପ୍ରବୃତ୍ତ ହେଲେ ଏବଂ ଆଚାର୍ଯ୍ୟଙ୍କୁ ନିବାରଣ କରିବାକୁ ଆରମ୍ଭ କଲେ ; କିନ୍ତୁ ସେ ସୁଶାଣିତ ଶରସମୂହ ଦ୍ୱାରା ଆମ୍ଭଙ୍କୁ ଅତିପୀଡ଼ନ କଲେ । ୩ । ସେ ଆମ୍ଭମାନଙ୍କୁ ଲଘୁହସ୍ତରେ ଏ ପ୍ରକାର ଶରଦ୍ୱାରା ପୀଡ଼ିତ କଲେ ଯେ, ଆମ୍ଭେମାନେ ପୀଡ଼୍ୟମାନ ହୋଇ ତାହାଙ୍କର ସୈନ୍ୟବ୍ୟୂହ ନିରୀକ୍ଷଣ କରିବାକୁ ସୁଦ୍ଧା ସମର୍ଥ ହେଲୁ ନାହିଁ, ଭେଦ କିପରି ବା କରିବୁଁ ? ୪ ।

ସେତେବେଳେ ଆମ୍ଭେମାନେ ଅନୁପମ ବଳଶାଳୀ ସୁଭଦ୍ରା-ନନ୍ଦନଙ୍କୁ କହିଲୁଁ, ହେ ବତ୍ସ ! ତୁମ୍ଭେ ସୈନ୍ୟବ୍ୟୂହ ଭେଦ କର । ସେହି ବୀର୍ଯ୍ୟବାନ୍ ଆମ୍ଭମାନଙ୍କର ଆଦେଶାନୁସାରେ ସଦଶ୍ୱ-ସଦୃଶ ଏକାକୀ ସେହି ଅସହ୍ୟ ଭାର ବହନ କରିବାକୁ ଉଦ୍ୟତ ହେଲେ । ୬ । ବୀର୍ଯ୍ୟସମନ୍ୱିତ ସେହି ବାଳକ ତୁମ୍ଭ ଅସ୍ତ୍ରୋପଦେଶବଳରେ ଗରୁଡ଼ଙ୍କର ସାଗର-ପ୍ରବେଶ-ତୁଲ୍ୟ ବିପକ୍ଷ-ସୈନ୍ୟ ମଧ୍ୟରେ ପ୍ରବେଶ କଲା । ୭ । ସେହି ମହାବୀର ଯେପରି ସୈନ୍ୟମାନଙ୍କ ମଧ୍ୟରେ ପ୍ରବେଶ କଲା, ଆମ୍ଭେମାନେ ତାହାର ଅନୁଗାମୀ ହୋଇ ସେହିରୂପେ ପ୍ରବେଶ କରିବାକୁ ଇଚ୍ଛା କଲୁଁ । ୮ । କିନ୍ତୁ ସିନ୍ଧୁରାଜ-ପୁତ୍ର କ୍ଷୁଦ୍ରାଶୟ ଜୟଦ୍ରଥ ଭଗବାନ୍ ରୁଦ୍ରଦେବଙ୍କ ପ୍ରଦତ୍ତ ବର-

ପ୍ରଭାବରେ ଆମ୍ଭ ସମସ୍ତଙ୍କୁ ନିବାରଣ କଲେ । ଆମ୍ଭେମାନେ କୌଣସି ପ୍ରକାରେ ପ୍ରବେଶ କରି ପାରିଲୁ ନାହିଁ ।

ହେ ବତ୍ସ ! ଅନନ୍ତର ଦ୍ରୋଣ, କର୍ଣ୍ଣ, କୃପ, ଅଶ୍ୱତ୍ଥାମା, କୋଶଳ-ରାଜ ବୃହଦ୍‌ବଳ ଓ କୃତବର୍ମା— ଏହି ଛଅଜଣ ରଥୀ ଅଭିମନ୍ୟୁଙ୍କୁ ଆକ୍ରମଣ କଲେ । ୧୦ । ସେହି ମହାରଥମାନେ ସମସ୍ତେ ସେହି ବାଳକକୁ ପରିବେଷ୍ଟନ କରି ଶରସମୂହ ଦ୍ୱାରା ପୀଡ଼ିତ କଲେ । ସେ ଯଥାଶକ୍ତି ପରମଯତ୍ନ ସହିତ ଯୁଦ୍ଧ କଲା । ପରିଶେଷରେ ସେହି ମହାରଥମାନେ ସମସ୍ତେ ତାହାକୁ ରଥବିହୀନ କଲେ । ୧୧ । ଅଭିମନ୍ୟୁ ବିରଥ ହୋଇ ପରମ ସଂଶୟ ପ୍ରାପ୍ତ ହେଲାରୁ ଦୁଃଶାସନ ପୁତ୍ର ଅବଲମ୍ବେ ସେହି ବାଳକର ପ୍ରାଣବିନାଶ କଲା । ୧୨ । ସେହି ପରମଧର୍ମାତ୍ମା ଅଭିମନ୍ୟୁ ସହସ୍ର ସହସ୍ର ମନୁଷ୍ୟ, ଅଶ୍ୱ, ରଥ ଓ ହସ୍ତୀ ସଂହାର କରି ଅଷ୍ଟସହସ୍ର ରଥ, ନଅଶତ ହସ୍ତୀ ଦୁଇ ସହସ୍ର ରାଜପୁତ୍ର ଓ ଅନ୍ୟାନ୍ୟ ଅଲକ୍ଷିତ ବହୁ ବୀର ଏବଂ ରାଜା ବୃହଦ୍‌ବଳଙ୍କୁ ଯୁଦ୍ଧରେ ସ୍ୱର୍ଗକୁ ପ୍ରେରଣ କରି ନିଜେ ନିଧନପ୍ରାପ୍ତ ହେଲା । ସେହି ପୁରୁଷ-ବ୍ୟାଘ୍ର ଯେ ଏହି ପ୍ରକାରେ ସ୍ୱର୍ଗ-ଲୋକକୁ ଗମନ କରିଅଛି, ଏହା ଆମ୍ଭ-ମାନଙ୍କ ପକ୍ଷରେ ଅତିଶୟ ଶୋକବର୍ଦ୍ଧକ ହୋଇଅଛି ।

ତଦନନ୍ତର ଅର୍ଜୁନ ଧର୍ମରାଜଙ୍କର ବାକ୍ୟ ଶ୍ରବଣ କରି 'ହା ପୁତ୍ର' ବୋଲି ଦୀର୍ଘନିଃଶ୍ୱାସ-ପରିତ୍ୟାଗ-ପୂର୍ବକ ବ୍ୟଥିତ ହୋଇ ଭୂତଳରେ ପତିତ ହେଲେ । ତତ୍ସ୍ଥ ସମସ୍ତ ବ୍ୟକ୍ତି କାତର ଓ ବିଷଣ୍ଣବଦନ ହୋଇ ଧନଞ୍ଜୟଙ୍କୁ ଗ୍ରହଣ-ପୂର୍ବକ ଅନିମେଷନେତ୍ରରେ ପରସ୍ପର ନିରୀକ୍ଷଣ କଲେ । ତତ୍ପରେ ଇନ୍ଦ୍ରତନୟ ଧନଞ୍ଜୟ କିୟତ୍‌କ୍ଷଣ ପରେ ସଂଜ୍ଞାପ୍ରାପ୍ତ ହେଲେ ଓ କ୍ରୋଧ-ମୂର୍ଚ୍ଛିତ ଓ ଜ୍ୱରକମ୍ପିତତୁଲ୍ୟ ହୋଇ ମୁହୁର୍ମୁହୁ ନିଃଶ୍ୱାସ ପରିତ୍ୟାଗ କରି ହସ୍ତରେ ହସ୍ତକୁ ନିଷ୍ପେଷଣ-ପୂର୍ବକ ଅଶ୍ରୁପୂର୍ଣ୍ଣନୟନରେ ଉନ୍ମତ୍ତସଦୃଶ ଦୃଷ୍ଟି ନିକ୍ଷେପ କରି ଏହି କଥା କହିଲେ, "ଆମ୍ଭେ ତୁମ୍ଭମାନଙ୍କ ନିକଟରେ ଏହି ସତ୍ୟ ପ୍ରତିଜ୍ଞା କରୁଅଛୁ ଯେ, କାଲି ଆମ୍ଭେ ଜୟଦ୍ରଥକୁ ବିନାଶ କରିବୁଁ । କିନ୍ତୁ ଯଦି ସେ ଭୀତ ହୋଇ ଧୃତରାଷ୍ଟ୍ରପୁତ୍ରମାନଙ୍କୁ ପରିତ୍ୟାଗ କରି ନ ଯାଏ, ଅଥବା ଦେବକୀସୁତ କୃଷ୍ଣଙ୍କର ବା ହେ ମହାରାଜ !

ଆପଣଙ୍କର ଶରଣାପନ୍ନ ନ ହୁଏ, ତେବେ ନିଶ୍ଚୟ କାଲି ସେ ଆମ୍ଭ ଶରଦ୍ୱାରା ବିନଷ୍ଟ ହେବ । ୨୧ ।

ସେହି ପାପାତ୍ମା ଆମ୍ଭର ସୌହୃଦ୍ୟ ବିସ୍ମୃତ ହୋଇ ଦୁର୍ଯ୍ୟୋଧନର ପ୍ରିୟ କାର୍ଯ୍ୟ କରୁଅଛି ଏବଂ ସେହି ପାପାତ୍ମା ମଧ୍ୟ ଅଭିମନ୍ୟୁ-ବଧର ହେତୁ ହୋଇଅଛି । ଅତଏବ କାଲି ତାହାକୁ ସଂହାର କରିବୁଁ । ତାହାର ରକ୍ଷାର୍ଥ ଯେ କେହି ବୀର ଆମ୍ଭ ସହିତ ଯୁଦ୍ଧ କରିବେ, ସେ ଦ୍ରୋଣ କିମ୍ବା କୃପ ହେଲେ ମଧ୍ୟ ତାହାଙ୍କୁ ଆମ୍ଭେ ଶରଦ୍ୱାରା ନିଶ୍ଚୟ ସମାଚ୍ଛନ୍ନ କରିବୁଁ । ହେ ପୁରୁଷଶ୍ରେଷ୍ଠଗଣ ! ଯଦି ସଂଗ୍ରାମରେ ଆମ୍ଭେ ଏହିରୂପେ କାର୍ଯ୍ୟ ନ କରୁଁ, ତାହାହେଲେ ମାତୃହତ୍ୟାକାରୀ, ପିତୃଘାତୀ, ଗୁରୁଦାର-ରତ, ଖଳ, ସାଧୁମାନଙ୍କ ପ୍ରତି ଅସୂୟାକାରୀ, ନିନ୍ଦୁକ, ଗଚ୍ଛିତ ଧନର ଅପହାରକ, ବିଶ୍ୱାସଘାତୀ, ଅନ୍ୟୋପଭୋକ୍ତା ସ୍ତ୍ରୀ-ସ୍ୱୀକାର, ବ୍ରହ୍ମଘ୍ନ, ଗୋଘାତୀ, ଯେ ପାୟସ, ନବାନ୍ନ, ଶାକ, କୃଶର ସଂଯାବ ପୂପ ଓ ମାଂସ—ଏହି ସମସ୍ତ ଦ୍ରବ୍ୟ ଦେବବ୍ରାହ୍ମଣଙ୍କୁ ନ ଦେଇ ଭୋଜନ କରନ୍ତି, ସେହି ସମସ୍ତ ପାପାତ୍ମା ଯେଉଁସବୁ ଲୋକକୁ ଗମନ କରନ୍ତି, ଆମ୍ଭେ ସେହି ସମସ୍ତ ଲୋକକୁ ଗମନ କରିବୁଁ । ଆମ୍ଭେ ଯଦି ଜୟଦ୍ରଥର ପ୍ରାଣ ବିନାଶ ନ କରୁଁ, ତାହାହେଲେ ବେଦାଧ୍ୟାୟୀ ଓ ଅତ୍ୟନ୍ତ ପ୍ରଶଂସିତ ଉତ୍ତମ ବ୍ରାହ୍ମଣ, ବୃଦ୍ଧ, ସାଧୁ ଓ ଗୁରୁମାନଙ୍କ ଅବମାନନାକାରୀ ଲୋକେ ଯେଉଁ ଲୋକକୁ ଗମନ କରନ୍ତି, ଆମ୍ଭେ ସେହି ଲୋକକୁ ଗମନ କରିବୁଁ ଏବଂ ପଦଦ୍ୱାରା ବ୍ରାହ୍ମଣ, ଗୋ ଓ ଅଗ୍ନି-ସ୍ପର୍ଶକାରୀ ଓ ଜଳରେ ଶ୍ଳେଷ୍ମା, ପୁରୀଷ ଓ ମୂତ୍ର-ପରିତ୍ୟାଗକାରୀ ବ୍ୟକ୍ତିମାନଙ୍କର ଯେ ଗତି, ଆମ୍ଭେ ସେହି ଗତିକୁ ପ୍ରାପ୍ତ ହେବୁଁ । ୩୧ ।

ଆମ୍ଭେ ଯଦି ଜୟଦ୍ରଥକୁ ସଂହାର ନ କରୁଁ, ତାହାହେଲେ ଯେଉଁମାନେ ଉଲଗ୍ନ ହୋଇ ସ୍ନାନ କରନ୍ତି, ଯେଉଁମାନଙ୍କର ଗୃହରେ ଅତିଥିର ଆଗମନ ବୃଥା ହୁଏ, ଯେଉଁମାନେ ଉତ୍କୋଚ ଗ୍ରହଣ କରନ୍ତି, ଯେଉଁମାନେ ମିଥ୍ୟା ବାକ୍ୟ କହନ୍ତି, ଯେଉଁମାନେ ବଞ୍ଚନା କରନ୍ତି, ଯେଉଁମାନେ ଆତ୍ମାପହାରୀ, ଯେଉଁମାନେ ମିଥ୍ୟା ବିଷୟକୁ ଆକାଂକ୍ଷା କରନ୍ତି ଏବଂ ଯେଉଁ କ୍ଷୁଦ୍ର ବ୍ୟକ୍ତିମାନେ ଭୃତ୍ୟ, ପତ୍ନୀ ଓ ଆଶ୍ରିତ ବ୍ୟକ୍ତିମାନଙ୍କୁ ନ ଦେଇ ସେମାନଙ୍କ

ସାକ୍ଷାତରେ ମିଷ୍ଟାନ୍ନ ଭୋଜନ କରନ୍ତି ସେହି ସମସ୍ତ ଲୋକଙ୍କର ଯେ ଗତି ହୁଏ, ଆମ୍ଭେ ସେହି ଗତି ଲାଭ କରିବୁଁ । ୩୪ ।

ଆମ୍ଭେ ଯଦି ଜୟଦ୍ରଥକୁ ବିନାଶ ନ କରୁଁ, ତାହାହେଲେ ଯେ ଦୁରାତ୍ମା ଆଜ୍ଞାବହ, ସାଧୁଚରିତ୍ର, ଆଶ୍ରିତ ବ୍ୟକ୍ତିଙ୍କୁ ପ୍ରତିପାଳନ ନ କରେ, ଯେ ଉପକାରୀ ବ୍ୟକ୍ତିର ନିନ୍ଦା କରେ ଏବଂ ଯେ ପ୍ରତିବେଶୀ ଯୋଗ୍ୟ ପାତ୍ରକୁ ଶ୍ରାଦ୍ଧସାମଗ୍ରୀ ପ୍ରଦାନ ନ କରେ କିମ୍ବା ଅଯୋଗ୍ୟ ପାତ୍ରକୁ ବା ଶୂଦ୍ରାପତିକୁ ପ୍ରଦାନ କରେ, ଏହି ସମସ୍ତ ବ୍ୟକ୍ତି ଏବଂ ମଦ୍ୟପ, ଭିନ୍ନମର୍ଯ୍ୟାଦ, କୃତଘ୍ନ ଓ ଭ୍ରାତୃନିନ୍ଦକ ବ୍ୟକ୍ତିମାନେ ଯେ ଗତି ପ୍ରାପ୍ତ ହୁଅନ୍ତି, ଆମ୍ଭର ଶୀଘ୍ର ସେହି ଗତି ହେବ । ୩୭ । ଆମ୍ଭେ ଯଦି ଜୟଦ୍ରଥର ପ୍ରାଣସଂହାର ନ କରୁଁ, ତାହାହେଲେ ଯେଉଁମାନେ ବାମ ହସ୍ତରେ ଭୋଜନ କରନ୍ତି, ପଳାଶପତ୍ରରେ ଉପବେଶନ କରନ୍ତି, ତିନ୍ଦୁକକାଷ୍ଠରେ ଦନ୍ତଧାବନ କରନ୍ତି ଓ ଶୀତଭୀତ ବ୍ରାହ୍ମଣ ଓ ରଣଭୀତ କ୍ଷତ୍ରିୟ—ଏମାନଙ୍କର କଷ୍ଟଜନକ ଯେ ଗତି ହୁଏ, ଆମ୍ଭେ ସେହି ଗତି ପ୍ରାପ୍ତ ହେବୁଁ । ୩୯ ।

ଯଦି ଆମ୍ଭେ କାଲି ଜୟଦ୍ରଥକୁ ବିନାଶ ନ କରୁଁ, ତାହାହେଲେ ଯେଉଁମାନେ ସରୋବର ଓ ବେଦଧ୍ୱନିବର୍ଜିତ ଗ୍ରାମରେ ଛ'ମାସ ବାସ କରନ୍ତି ଓ ଶାସ୍ତ୍ରନିନ୍ଦା, ଦିବସରେ ମୈଥୁନ, ଗୃହରେ ଅଗ୍ନି-ପ୍ରଦାନ, ବିଷ-ଦାନ, ଅତିଥିବୈମୁଖ୍ୟ, ରଜସ୍ୱଳାସ୍ତ୍ରୀ-ସେବନ, କନ୍ୟାବିକ୍ରୟ, ବହୁଯାଜ୍ୟ କ୍ରିୟା ଓ ବ୍ରାହ୍ମଣଙ୍କ ନିକଟରେ ପ୍ରତିଶ୍ରୁତ ହୋଇ ଲୋଭପ୍ରଯୁକ୍ତ ଦାନ ନ କରନ୍ତି, ଏହି ସମସ୍ତ ବ୍ୟକ୍ତି ଯେଉଁ ଗତି ପ୍ରାପ୍ତ ହୁଅନ୍ତି, ଆମ୍ଭର ସେହି ଗତି ପ୍ରାପ୍ତ ହେବ । ୪୩ । ଅନ୍ୟାନ୍ୟ ଯେ ସମସ୍ତ ଧର୍ମହୀନ ବ୍ୟକ୍ତିଙ୍କର ଉଲ୍ଲେଖ ନ କଲୁଁ, ସେମାନଙ୍କର ଯେ ଗତି ହୁଏ, ଆମ୍ଭେ ଜୟଦ୍ରଥକୁ ବଧ କରି ନ ପାରିଲେ ଆମ୍ଭର ସେହି ଗତି ହେବ । ୪୫ ।

ଏତଦ୍ଭିନ୍ନ ଅପର ପ୍ରତିଜ୍ଞା ଯାହା ଆମ୍ଭେ କରୁଅଛୁଁ, ତାହା ଶ୍ରବଣ କର । ଏହି ରାତ୍ରି ପ୍ରଭାତ ହେଲାରୁ କାଲି ସୂର୍ଯ୍ୟାସ୍ତ ମଧ୍ୟରେ ସେହି ପାପାତ୍ମା ଜୟଦ୍ରଥକୁ ଯଦି ବଧ ନ କରୁଁ, ତାହାହେଲେ ଏହି ସ୍ଥଳରେ ଆମ୍ଭେ ପ୍ରଜ୍ୱଳିତ ଅଗ୍ନିମଧ୍ୟରେ ପ୍ରବେଶ କରି ପ୍ରାଣତ୍ୟାଗ କରିବୁଁ । ୪୭ । ସୁର,

ଅସୁର, ମନୁଷ୍ୟ, ପକ୍ଷୀ, ଉରଗ, ପିତୃ, ନିଶାଚର, ବ୍ରହ୍ମର୍ଷି ଓ ଦେବର୍ଷି-ମାନେ ଓ ସେମାନଙ୍କଠାରୁ ଶ୍ରେଷ୍ଠ ଅନ୍ୟ କେହି ମଧ୍ୟ ଆମ୍ଭର ସେହି ଶତ୍ରୁକୁ ଆମ୍ଭ ନିକଟରୁ କାଲି ରକ୍ଷା କରିବାକୁ ସମର୍ଥ ହେବେ ନାହିଁ । ୪୮ । ସେ ଯଦି ରସାତଳ, ଅନ୍ତରୀକ୍ଷ, ଦେବପୁର ବା ଦୈତ୍ୟପୁରରେ ପ୍ରବେଶ କରେ, ତାହାହେଲେ ମଧ୍ୟ ଆମ୍ଭେ କାଲି ସେହି ସେହି ସ୍ଥାନକୁ ଗମନ କରି ଶତ ଶତ ଶରଦ୍ୱାରା ଅଭିମନ୍ୟୁ-ଶତ୍ରୁର ମସ୍ତକ ଛେଦନ କରିବୁଁ । ୪୯ । ଏହା କହି ଅର୍ଜୁନ ବାମ, ଦକ୍ଷିଣ ଉଭୟ ହସ୍ତଦ୍ୱାରା ଗାଣ୍ଡୀବଧନୁରେ ଟଙ୍କାର ପ୍ରଦାନ କଲେ । ସେହି ଟଙ୍କାରଧ୍ୱନି ଅର୍ଜୁନଙ୍କ ବାକ୍ୟଶବ୍ଦକୁ ଅତିକ୍ରମ କରି ଗଗନ ସ୍ପର୍ଶ କଲା । ୫୦ ।

ଅର୍ଜୁନ ଏହିପରି ପ୍ରତିଜ୍ଞା କରନ୍ତେ, କୃଷ୍ଣ ପାଞ୍ଚଜନ୍ୟ ଶଙ୍ଖ ବାଦନ କଲେ ଓ ଅର୍ଜୁନ ମଧ୍ୟ କ୍ରୁଦ୍ଧ ହୋଇ ଦେବଦତ୍ତ ଶଙ୍ଖ ଧ୍ୱନି କଲେ ।୫୧। କୃଷ୍ଣଙ୍କ ମୁଖବାୟୁପରିପୂରିତ ଶଙ୍ଖଧ୍ୱନିରେ ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ଓ ଦିକ୍-ସମୂହ ଯୁଗାନ୍ତକାଳ ସଦୃଶ ପ୍ରକମ୍ପିତ ହେଲା । ୫୨ । ମହାତ୍ମା ଅର୍ଜୁନ ଏହି ପ୍ରକାରେ ପ୍ରତିଜ୍ଞା କରନ୍ତେ ଚତୁର୍ଦ୍ଦିଗରୁ ପାଣ୍ଡବପକ୍ଷୀୟଙ୍କର ସିଂହନାଦ ଓ ବାଦ୍ୟଘୋଷ ପ୍ରାଦୁର୍ଭୂତ ହେଲା । ୫୩ ।

# ୭୪ ଅଧ୍ୟାୟ

ସଞ୍ଜୟ ବୋଇଲେ—ହେ ମହାରାଜ ! ସିନ୍ଧୁରାଜପୁତ୍ର ଜୟଦ୍ରଥ ପୁତ୍ରବତ୍ସଳ ପାଣ୍ଡବମାନଙ୍କର ସେହି ମହାଶବ୍ଦ ଶ୍ରବଣ କରି ଓ ଚରମୁଖରୁ ଅର୍ଜୁନଙ୍କର ପ୍ରତିଜ୍ଞାବିବରଣ ଜ୍ଞାତ ହୋଇ ସ୍ୱ-ଶିବିରରୁ ଉତ୍ଥିତ ହେଲେ । ୧ । ସେ ଶୋକମୂର୍ଚ୍ଛିତଚିତ୍ତ, ଅତ୍ୟନ୍ତ ଦୁଃଖାର୍ତ୍ତ, ଅଗାଧ ବିପୁଳ ଶୋକ-ସାଗରରେ ନିମଜ୍ଜିତ ହେଲା ପ୍ରାୟ ମନେ ମନେ ଅନେକ ଚିନ୍ତା କରି ରାଜାମାନଙ୍କ ସଭାକୁ ଗମନ କଲେ । ସେ ଅଭିମନ୍ୟୁଙ୍କ ପିତାଙ୍କ ଭୟରେ ଭୀତ ହୋଇ ଲଜ୍ଜିତଚିତ୍ତରେ ସେହି ରାଜାମାନଙ୍କ ନିକଟରେ ଶୋକପ୍ରକାଶ-ପୂର୍ବକ କହିଲେ; ଯେ ଦୁର୍ବୁଦ୍ଧି ପାଣ୍ଡୁଙ୍କ କ୍ଷେତ୍ରର କାମୀ ଇନ୍ଦ୍ରଙ୍କ

ଔରସରୁ ଜନ୍ମିଅଛୁ, ସେ ଆମ୍ଭଙ୍କୁ ଯମାଳୟକୁ ପ୍ରେରଣ କରିବାକୁ ଇଚ୍ଛା କରୁଅଛୁ । ଅତଏବ ହେ କ୍ଷତ୍ରିୟଶ୍ରେଷ୍ଠଗଣ ! ଆପଣମାନଙ୍କର କୁଶଳ ହେଉ । ଆମ୍ଭେ ପ୍ରାଣ-ରକ୍ଷାର୍ଥ ସ୍ୱ-ଗୃହକୁ ଗମନ କରୁଁ । ଅଥବା ହେ ବୀରଗଣ ! ଆପଣମାନେ ତାହା ବିପକ୍ଷରେ ଅସ୍ତ୍ର ଧାରଣ କରି ଆମ୍ଭଙ୍କୁ ରକ୍ଷା କରନ୍ତୁ ଓ ଆମ୍ଭଙ୍କୁ ଅଭୟଦାନ କରନ୍ତୁ । ୭ ।

ଦ୍ରୋଣ, ଦୁର୍ଯୋଧନ, କୃପ, କର୍ଣ୍ଣ, ମଦ୍ରରାଜ, ବାହ୍ଲୀକ, ଦୁଃଶାସନ ପ୍ରଭୃତି ବୀରମାନେ ଯମହସ୍ତରୁ ମନୁଷ୍ୟଙ୍କୁ ପରିତ୍ରାଣ କରିପାରନ୍ତି, କିନ୍ତୁ ଏକ ଅର୍ଜୁନ ହସ୍ତରୁ ଆମ୍ଭଙ୍କୁ କି ରକ୍ଷା କରିବାକୁ ପାରିବ ନାହିଁ ? ୮ । ପାଣ୍ଡବମାନଙ୍କର ହର୍ଷଶବ୍ଦ ଶ୍ରବଣ କରି ଆମ୍ଭର ଅତିଶୟ ଭୟ ହୋଇ ଅଛି । ତାହା ନ ହେଲେ ପାଣ୍ଡବମାନେ ଏହି ଶୋକ ସମୟରେ ହର୍ଷ-ସହକାରେ କିପାଇଁ ଚିତ୍କାର-ଧ୍ୱନି କରିବେ ? ୧୦ । ଦେବ, ଗନ୍ଧର୍ବ, ଅସୁର, ଉରଗ ଓ ରାକ୍ଷସଗଣ ମଧ୍ୟ ଅର୍ଜୁନର ପ୍ରତିଜ୍ଞା ଅନ୍ୟଥା କରିବାକୁ ଉତ୍ସାହୀ ହେବାକୁ ପାରନ୍ତି ନାହିଁ । ଆପଣମାନେ ନରାଧିପ ହୋଇ କି ପ୍ରକାରେ ପାରିବେ ? ଅତଏବ ଆପଣମାନଙ୍କର ମଙ୍ଗଳ ହେଉ, ଆପଣ-ମାନେ ଆମ୍ଭଙ୍କୁ ଅନୁଜ୍ଞା ଦିଅନ୍ତୁ ଯେ, ଆମ୍ଭେ ଏପରି ଅଦୃଶ୍ୟ ହୋଇ ଗମନ କରିବୁଁ, ଯେପରିକି ପାଣ୍ଡବମାନେ ଆମ୍ଭଙ୍କୁ ଦେଖି ପାରିବେ ନାହିଁ । ୧୨ ।

ରାଜା ଦୁର୍ଯୋଧନ ଆପଣା କାର୍ଯ୍ୟର ଗୁରୁତାପ୍ରଯୁକ୍ତ ସେହି ଭୟବ୍ୟାକୁଳିତ-ଚେତା ଜୟଦ୍ରଥକୁ ତାଦୃଶ ବିଳାପ କରିବାର ଅବଲୋକନ କରି କହିଲେ । ୧୩ । ହେ ନରଶ୍ରେଷ୍ଠ ! ତୁମ୍ଭେ ଭୟ କର ନାହିଁ । ତୁମ୍ଭେ ଏହି ସମସ୍ତ କ୍ଷତ୍ରିୟ ବୀରମାନଙ୍କ ମଧ୍ୟରେ ଅବସ୍ଥାନ କଲେ ତୁମ୍ଭଙ୍କୁ ରଣରେ କିଏ ଆହ୍ୱାନ କରି ପାରିବ ? ୧୪ । ଆମ୍ଭେ, କର୍ଣ୍ଣ, ଦୁର୍ମଦ ଚିତ୍ରସେନ, ବିବିଂଶତି, ଭୂରିଶ୍ରବା, ଶଲ, ଶଲ୍ୟ, ବୃଷସେନ, ପୁରୁମିତ୍ର, ଜୟ, ଭୋଜ, କାମ୍ବୋଜରାଜ ସୁଦକ୍ଷିଣ, ସତ୍ୟବ୍ରତ, ମହାବାହୁ ବିକର୍ଣ୍ଣ, ଦୁର୍ମୁଖ, ଦୁଃଶାସନ, ସୁବାହୁ, ଉଦ୍ୟତାସ୍ତ୍ର, କଳିଙ୍ଗରାଜ, ଅବନ୍ତିରାଜ, ବିନ୍ଦ ଓ ଅନୁବିନ୍ଦ, ଦ୍ରୋଣ, ଅଶ୍ୱତ୍ଥାମା, ସୁବଳ-ପୁତ୍ର ଏବଂ ଅନ୍ୟାନ୍ୟଦେଶାଧିପତି ବହୁଳ ନୃପତି, ଆମ୍ଭେମାନେ ସମସ୍ତେ ନିଜ ନିଜ ସୈନ୍ୟରେ ସମବେତ ହୋଇ ତୁମ୍ଭଙ୍କୁ

ରକ୍ଷା କରିବୁଁ । ଅତଏବ ତୁମ୍ଭର ମାନସିକ ଜ୍ୱର ଦୂର ହେଉ ; ତୁମ୍ଭେ ଚିନ୍ତା କର ନାହିଁ । ୧୮ । ହେ ଅମିତତେଜସ୍ୱୀ ! ତୁମ୍ଭେ ନିଜେ ଶୂର ଓ ରଥିଶ୍ରେଷ୍ଠ, ଅତଏବ କିପାଇଁ ପାଣ୍ଡବଗଣଙ୍କୁ ଭୟ କରୁଅଛ ? ୧୯ । ବିଶେଷତଃ ଆମ୍ଭର ଏହି ଏକାଦଶ ଅକ୍ଷୌହିଣୀ ସେନା ତୁମ୍ଭଙ୍କୁ ରକ୍ଷା-କରିବା ନିମିତ୍ତ ଯତ୍ନ-ସହକାରେ ଯୁଦ୍ଧ କରିବେ । ଅତଏବ ହେ ସିନ୍ଧୁରାଜ ! ତୁମ୍ଭର ଭୟ ଦୂର ହେଉ, ତୁମ୍ଭେ ଭୀତ ହୁଅ ନାହିଁ । ୨୦ ।

ସଞ୍ଜୟ ବୋଇଲେ—ହେ ମହାରାଜ ! ସିନ୍ଧୁ-ନୃପତି ଆପଣଙ୍କ ପୁତ୍ର ଦୁର୍ଯ୍ୟୋଧନ-କର୍ତ୍ତୃକ ଏହିରୂପେ ଆଶ୍ୱାସିତ ହୋଇ ଦୁର୍ଯ୍ୟୋଧନଙ୍କ ସହିତ ସେହି ରାତିରେ ଦ୍ରୋଣାଚାର୍ଯ୍ୟଙ୍କ ସମୀପକୁ ଗମନ କଲେ । ୨୧ । ଅନନ୍ତର ସିନ୍ଧୁନାଥ ଜୟଦ୍ରଥ ଦ୍ରୋଣଙ୍କର ଚରଣ-ବନ୍ଦନପୂର୍ବକ ସମୀପରେ ଉପବେଶନ କରି ବିନୀତଭାବରେ ଏହି କଥା ପଚାରିଲେ । ୨୨ । ହେ ଭଗବନ୍ ! ଦୂରସ୍ଥ ଲକ୍ଷ୍ୟରେ ଶରନିପାତନ, ଲଘୁତାରେ ଓ ଦୃଢ଼ବେଧରେ ଅର୍ଜ୍ଜୁନଙ୍କର ଓ ଆମ୍ଭର କି ବିଶେଷ ଅଛି, ତାହା ଆପଣ ବ୍ୟକ୍ତ କରନ୍ତୁ । ୨୩ । ହେ ଆଚାର୍ଯ୍ୟ ! ଆମ୍ଭର ଏବଂ ଅର୍ଜ୍ଜୁନର ଯୁଦ୍ଧ-ବିଷୟରେ ବିଶେଷ ବିଦ୍ୟା କ'ଣ ଅଛି ? ତାହା ଆମ୍ଭେ ଆପଣଙ୍କଠାରୁ ଅବଗତ ହେବାପାଇଁ ଅଭିଳାଷ କରୁଁ, ତାହା ଆପଣ ଯଥାର୍ଥ କୀର୍ତ୍ତନ କରନ୍ତୁ । ୨୪ ।

ଦ୍ରୋଣ କହିଲେ—ହେ ବତ୍ସ ! ଗୁରୂପଦେଶ ତୁମ୍ଭମାନଙ୍କର ଉଭୟଙ୍କ ପ୍ରତି ସମାନ ହୋଇଅଛି । କିନ୍ତୁ ଯୋଗସାଧନ ଓ ବନବାସ ଆଦିରେ ଦୁଃଖ-ସହନ ହେତୁ ତୁମ୍ଭ ଅପେକ୍ଷା ଅର୍ଜ୍ଜୁନ ଅଧିକ କ୍ଷମତାପନ୍ନ ହୋଇଅଛି । ୨୫ । ପରନ୍ତୁ ତୁମ୍ଭେ ଯୁଦ୍ଧରେ ପାର୍ଥଠାରୁ କୌଣସି ପ୍ରକାର ଭୟ କର ନାହିଁ । କାହିଁକି ନା, ଆମ୍ଭେ ତୁମ୍ଭଙ୍କୁ ରକ୍ଷା କରିବୁଁ, ତହିଁରେ ସଂଶୟ ନାହିଁ । ୨୬ । ଯେ ଆମ୍ଭର ବାହୁବଳରେ ରକ୍ଷିତ ହୁଏ, ତାହାର ପ୍ରତି ଅମରଗଣ ମଧ୍ୟ ସାମର୍ଥ୍ୟ ପ୍ରକାଶ କରି ପାରନ୍ତି ନାହିଁ । ଆମ୍ଭେ ଏପରି ଗୋଟିଏ ବ୍ୟୂହ ନିର୍ମାଣ କରିବୁଁ ଯେ, ପାର୍ଥ ତାହାକୁ କଦାଚ ଉତ୍ତୀର୍ଣ୍ଣ ହେବାକୁ ପାରିବେ ନାହିଁ । ୨୭ । ଅତଏବ ତୁମ୍ଭେ ଯୁଦ୍ଧରେ ପ୍ରବୃତ୍ତ ହୁଅ, ଭୀତ ହୁଅ ନାହିଁ । ପିତୃ-ପିତାମହମାନେ ଯେଉଁ ପଥରେ ଗମନ କରିଅଛନ୍ତି,

ସେହି ପଥରେ ଅନୁଗାମୀ ହୁଅ ; ନିଜର ଧର୍ମ ପ୍ରତିପାଳନ କର । ୨୮ । ତୁମ୍ଭେ ବିଧିପୂର୍ବକ ବେଦାଧ୍ୟୟନ କରି ଅଗ୍ନିରେ ଆହୁତି ପ୍ରଦାନ କରିଅଛ । ବହୁ ଯଜ୍ଞ ମଧ୍ୟ ନିଷ୍ପାଦନ କରିଅଛ । ତୁମ୍ଭର ମୃତ୍ୟୁକୁ କି ଭୟ ? ୨୯ । ତୁମ୍ଭେ ଅତି ଦୁର୍ଲ୍ଲଭ ସୌଭାଗ୍ୟକ୍ରମେ ଏହି ମନୁଷ୍ୟଦେହ ପ୍ରାପ୍ତ ହୋଇଅଛ ଅତଏବ ତଦ୍ଦ୍ୱାରା ବାହୁବଳାର୍ଜ୍ଜିତ ଦ୍ରବ୍ୟ ଅନୁତ୍ତମ ଲୋକକୁ ଗମନ କରି ପାରିବ । ୩୦ ।

ଏହି କୌରବ, ପାଣ୍ଡବ, ବୃଷ୍ଣିଗଣ, ଆମ୍ଭେ ଓ ଆମ୍ଭର ପୁତ୍ର ଏବଂ ଅପରାପର ମାନବଗଣ ସମସ୍ତେ ଅସ୍ଥାୟୀ ଜାଣିବ । ୩୧ । ପର୍ଯ୍ୟାୟକ୍ରମେ ଆମ୍ଭେମାନେ ସମସ୍ତେ ବଳବାନ୍ କାଳକର୍ତ୍ତୃକ ସଂହୃତ ହୋଇ ନିଜ ନିଜ କର୍ମାନୁସାରେ ପରଲୋକକୁ ଗମନ କରିବୁଁ । ୩୨ । ଦେଖ, ତପସ୍ୱିମାନେ ତପସ୍ୟା କରି ଯେଉଁ ସମସ୍ତ ଲୋକକୁ ଗମନ କରନ୍ତି, କ୍ଷତ୍ରିୟଧର୍ମାଶ୍ରିତ ଶୂର କ୍ଷତ୍ରିୟମାନେ ମଧ୍ୟ ସେହି ସମସ୍ତ ଲୋକକୁ ଗମନ କରିଥାଆନ୍ତି । ୩୩ ।

ହେ ରାଜନ୍ ! ଭରଦ୍ୱାଜପୁତ୍ରଙ୍କଠାରୁ ଏହି ରୂପ ଆଶ୍ୱାସବାକ୍ୟ ଶ୍ରବଣ କରି ସିନ୍ଧୁରାଜ ଜୟଦ୍ରଥଙ୍କର ପାର୍ଥଙ୍କଠାରୁ ଭୟ ଅପଗତ ହେଲା । ସେ ଯୁଦ୍ଧରେ ମନୋନିବେଶ କଲେ । ୩୪ । ହେ ନରନାଥ ! ତଦନନ୍ତର ଆପଣଙ୍କ ପକ୍ଷୀୟ ସୈନ୍ୟମାନଙ୍କର ହର୍ଷଧ୍ୱନି ଓ ସିଂହନାଦମିଶ୍ରିତ ବାଦ୍ୟଧ୍ୱନି ତୁମୁଳରୂପେ ପ୍ରାଦୁର୍ଭୂତ ହେଲା । ୩୫ ।

---

## ୭୫ ଅଧ୍ୟାୟ

ସଞ୍ଜୟ ବୋଇଲେ—ହେ ମହୀପାଳ ! ପାର୍ଥ ସିନ୍ଧୁରାଜ ବଧନିମିତ୍ତ ପ୍ରତିଜ୍ଞା କଲାରୁ ମହାବାହୁ ବସୁଦେବ-ନନ୍ଦନ ତାହାଙ୍କୁ କହିଲେ, ହେ ପାର୍ଥ, ତୁମ୍ଭେ ଭ୍ରାତାମାନଙ୍କର ଅଭିପ୍ରାୟ ଅବଗତ ନ ହୋଇ ବାକ୍ୟଦ୍ୱାରା ପ୍ରତିଜ୍ଞା କରିଅଛ ଯେ, "ଆମ୍ଭେ କାଲି ସିନ୍ଧୁରାଜଙ୍କୁ ବଧ କରିବୁଁ" । ଏହା ତୁମ୍ଭେ ସାହସର କାର୍ଯ୍ୟ କରିଅଛ । ୨ । ତୁମ୍ଭେ ଆମ୍ଭ ସହିତ ମନ୍ତ୍ରଣା ନ କରି ଯେ ଏହି ଅତିଭାର ବହନ କରିବାକୁ ଉଦ୍ୟତ ହୋଇଅଛ ; ତହିଁରେ

ଆମ୍ଭେମାନେ ଯେପରି ସମସ୍ତ ଲୋକଙ୍କ ନିକଟରେ ଅବହାସାସ୍ପଦ ନ ହେଉଁ, ତାହାର ଉପାୟ ଚିନ୍ତା କରୁଅଛୁଁ । ୩ ।

ଆମ୍ଭେ ଧୃତରାଷ୍ଟ୍ରପକ୍ଷୀୟ ଶିବିରକୁ ଚର ପ୍ରେରଣ କରିଥିଲୁଁ । ସେମାନେ ଆମ୍ଭ ନିକଟକୁ ସତ୍ୱର ଆଗମନ କରି ଏହି ସମ୍ବାଦ ନିବେଦନ କରୁଅଛନ୍ତି ଯେ, ତୁମ୍ଭେ ଯେତେବେଳେ ସିନ୍ଧୁରାଜକୁ ବଧ କରିବାପାଇଁ ପ୍ରତିଜ୍ଞା କଲ, ତେତେବେଳେ ଏଠାରେ ଅତିମହାନ୍ ସିଂହନାଦ ଓ ବାଦ୍ୟ-ଧ୍ୱନି ହୋଇଥିଲା । ତାହା ଜୟଦ୍ରଥସହିତ ଧୃତରାଷ୍ଟ୍ର-ପୁତ୍ରମାନେ ଶ୍ରବଣ କରିଅଛନ୍ତି । ୫ । ସେହି ଶବ୍ଦ ଶ୍ରବଣ କରି ଜୟଦ୍ରଥର ସହିତ ଧୃତରାଷ୍ଟ୍ର-ପୁତ୍ରମାନେ ଅକାରଣରେ ଏହି ସିଂହନାଦ ହେଉନାହିଁ ମନେ କରି ତ୍ରାସ-ସମନ୍ୱିତ ହୋଇ ଯୁଦ୍ଧନିମିତ୍ତ ସମୁଦ୍ୟତ ଅଛନ୍ତି । ୬ । ହେ ମହାଭୁଜ, ତେତେବେଳେ ସେମାନଙ୍କର ଅତିଭୟଙ୍କର ରଥନିର୍ଘୋଷ ଏବଂ ହସ୍ତୀ, ଅଶ୍ୱ ଓ ପଦାତିର ଶବ୍ଦ ମଧ୍ୟ ଅତି ତୁମୁଳ ହୋଇଥିଲା । ୭ ।

ସେମାନେ ଏହା ମନେ କରି ଯୁଦ୍ଧ-ସଜ୍ଜିତ ହୋଇ ଅବସ୍ଥାନ କରୁଅଛନ୍ତି ଯେ, ଧନଞ୍ଜୟ ଅଭିମନ୍ୟୁର ବଧ ଶ୍ରବଣ କରି ଆର୍ତ୍ତ ଓ କ୍ରୋଧାବିଷ୍ଟ ହୋଇ ଅଦ୍ୟ ରାତ୍ରିକାଳରେ ଯୁଦ୍ଧ ନିମିତ୍ତ ନିର୍ଗତ ହେବେ । ୮ । ହେ ରାଜୀବଲୋଚନ ! ସେମାନେ ଏହିରୂପେ ଯୁଦ୍ଧନିମିତ୍ତ ସଯତ୍ନ ଥିବା ସମୟରେ ତୁମ୍ଭର ଜୟଦ୍ରଥ-ବଧର ଦୃଢ଼ପ୍ରତିଜ୍ଞା ଶ୍ରବଣ କଲେ ଏବଂ ତୁମ୍ଭଙ୍କୁ ସତ୍ୟନିଷ୍ଠ ଜାଣି ସୁଯୋଧନର ଅମାତ୍ୟମାନେ ଓ ଜୟଦ୍ରଥ, ସମସ୍ତେ କ୍ଷୁଦ୍ର-ମୃଗସଦୃଶ ତ୍ରାସାନ୍ୱିତ ଓ ବିମନାୟମାନ ହେଲେ । ୧୦ ।

ଅନନ୍ତର ସିନ୍ଧୁସୌବୀରର ଅଧିପତି ଜୟଦ୍ରଥ ଅତି ଦୁଃଖିତ ଓ କାତରଭାବରେ ଅମାତ୍ୟମାନଙ୍କ ସହିତ ଉତ୍ଥିତ ହୋଇ ଆପଣା ଶିବିରକୁ ଗମନ କଲେ । ୧୧ । ଅନନ୍ତର ସେ ସମସ୍ତ ଶ୍ରେୟୋଜନକ କାର୍ଯ୍ୟ ମନ୍ତ୍ରଣା କରି ସେହି ସମସ୍ତ ରାଜସଭାରେ ଉପସ୍ଥିତ ହୋଇ ସୁଯୋଧନଙ୍କ ନିକଟରେ ଏହି କଥା କହିଲେ । ୧୨ । ସେହି ଧନଞ୍ଜୟ ଆମ୍ଭଙ୍କୁ ତାହାର ପୁତ୍ରହନ୍ତା ବୋଲି କଳି ଯୁଦ୍ଧରେ ଆକ୍ରମଣ କରିବ, ସେନାଗଣଙ୍କ ମଧ୍ୟରେ ପ୍ରତିଜ୍ଞା କରିଅଛି, ଆମ୍ଭଙ୍କୁ ବଧ କରିବ । ୧୩ । ସେହି ସତ୍ୟବ୍ରତ

ସବ୍ୟସାଚୀର ପ୍ରତିଜ୍ଞାକୁ ଦେବଗଣ ବା ଗନ୍ଧର୍ବଗଣ ଅଥବା ଉରଗଗଣ କିମ୍ବା ରାକ୍ଷସଗଣ, କେହି ଅନ୍ୟଥା କରିବାକୁ ଉତ୍ସାହୀ ହେବେ ନାହିଁ ।୧୪। ଅତଏବ ଆପଣମାନେ ଆମ୍ଭଙ୍କୁ ସଂଗ୍ରାମରେ ରକ୍ଷା କରିବେ । ଆପଣମାନେ ଏପରି ଉପାୟ କରିବେ, ଯଦ୍ଦ୍ୱାରା ସେ ଆପଣମାନଙ୍କ ମସ୍ତକରେ ପଦାର୍ପଣ କରି ମୋହର ଲକ୍ଷ୍ୟ ଗ୍ରହଣ କରିବାକୁ ସମର୍ଥ ହେବେ ନାହିଁ । ୧୫ । ଯଦି ଆପଣମାନେ ସମସ୍ତେ ଆମ୍ଭଙ୍କୁ ରକ୍ଷା କରିବାକୁ ସମର୍ଥ ନ ହୁଅନ୍ତି, ତାହାହେଲେ ହେ କୁରୁନନ୍ଦନମହୀପାଳ ! ଆମ୍ଭଙ୍କୁ ଅନୁଜ୍ଞା କରନ୍ତୁ, ଆମ୍ଭେ ଗୃହକୁ ଗମନ କରିବୁଁ । ୧୬ ।

ଜୟଦ୍ରଥ ସୁଯୋଧନଙ୍କୁ ଏହିରୂପେ କହନ୍ତେ, ସୁଯୋଧନ ତାହାର ପ୍ରତିଜ୍ଞା ଶ୍ରବଣ କରି ଅବନତମସ୍ତକରେ ବିମନା ହୋଇ ଚିନ୍ତା କଲେ ।୧୭। ସିନ୍ଧୁରାଜ ଦୁର୍ଯ୍ୟୋଧନଙ୍କୁ ଦୁଃଖିତଚିତ୍ତ ଦେଖି ଆତ୍ମହିତକର ମୃଦୁ ଓ ସାପେକ୍ଷ ଏହି ବାକ୍ୟ କହିଲେ । ୧୮ । ଆମ୍ଭେ ଆପଣଙ୍କ ପକ୍ଷରେ ଏପରି ବୀର୍ଯ୍ୟବାନ୍ ବୀର କାହାରିକୁ ଦେଖୁନାହୁଁ, ଯେ କି ଯୁଦ୍ଧରେ ଅସ୍ତ୍ରଦ୍ୱାରା ଅର୍ଜ୍ଜୁନଙ୍କ ଅସ୍ତ୍ରକୁ ପ୍ରତିଅସ୍ତ୍ର କରିପାରିବେ । ୧୯ । କୃଷ୍ଣସହାୟ ଅର୍ଜ୍ଜୁନ ଗାଣ୍ଡୀବ ପ୍ରକର୍ଷଣ କଲେ ସାକ୍ଷାତ୍ ଶତକ୍ରତୁ ମଧ୍ୟ ବିପକ୍ଷ ହୋଇ ତାହାଙ୍କ ସମ୍ମୁଖରେ ଅବସ୍ଥାନ କରିପାରିବେ ନାହିଁ । ୨୦ । ଆମ୍ଭେ ଶୁଣିଅଛୁଁ ଯେ, ହିମାଳୟଗିରିରେ ପୂର୍ବେ ଅର୍ଜ୍ଜୁନ ଭୂତଳସ୍ଥ ହୋଇ ସୁଦ୍ଧା ମହାତେଜା ପ୍ରଭୁ ମହେଶ୍ୱରଙ୍କ ସହିତ ଯୁଦ୍ଧ କରିଥିଲେ । ୨୧ । ଏବଂ ଦେବରାଜଙ୍କ ଆଦେଶାନୁସାରେ ଏକରଥାରୂଢ଼ ହୋଇ ହିରଣ୍ୟପୁରବାସୀ ସହସ୍ର ସହସ୍ର ଦାନବଗଣଙ୍କୁ ନିହତ କରିଥିଲେ । ୨୨ । ଆମ୍ଭେମାନେ ବିବେଚନା କରୁଅଛୁଁ, ଅର୍ଜ୍ଜୁନ ଧୀମାନ୍ ବାସୁଦେବଙ୍କ ସହିତ ସମବେତ ହୋଇ ଅମରଲୋକ ସହିତ ତ୍ରିଭୁବନ ମଧ୍ୟ ସଂହାର କରିପାରନ୍ତି । ୨୩ । ଅତଏବ ଆପଣ ଅନୁମତି କରନ୍ତୁ, ଆମ୍ଭେ ଗୃହକୁ ଗମନ କରୁଁ ଅଥବା ଯଦି ଆପଣଙ୍କର ମତ ହୁଏ, ତେବେ ମହାତ୍ମା ଦ୍ରୋଣ ସ୍ୱୀୟ ବୀରପୁତ୍ର ସହିତ ସମବେତ ହୋଇ ଆମ୍ଭଙ୍କୁ ରକ୍ଷା କରନ୍ତୁ । ୨୪ । ହେ ଅର୍ଜ୍ଜୁନ ! ଅନନ୍ତର ସ୍ୱୟଂ ରାଜା ଦୁର୍ଯ୍ୟୋଧନ ଜୟଦ୍ରଥକୁ ରକ୍ଷାକରିବା ନିମିତ୍ତ ବେଦନପୂର୍ବକ

ଆଚାର୍ଯ୍ୟ ଦ୍ରୋଣଙ୍କୁ ଅନୁରୋଧ କଲେ । ତହୁଁ ଆଚାର୍ଯ୍ୟ ଦ୍ରୋଣ ରଥସଜ୍ଜା ଓ ଅନ୍ୟାନ୍ୟ ଉପାୟ ସ୍ଥିର କରିଅଛନ୍ତି । ୨୫ ।

କର୍ଣ୍ଣ, ଭୂରିଶ୍ରବା, ଅଶ୍ୱତ୍ଥାମା, ବୃଷସେନ, ଦୁର୍ଜ୍ଜୟ କୃପାଚାର୍ଯ୍ୟ ଓ ମଦ୍ରାଧିପତି, ଏମାନେ ଜୟଦ୍ରଥର ଅଗ୍ରବର୍ତ୍ତୀ ହେବେ । ୨୬ । ଦ୍ରୋଣ ଏକ ଅଦ୍ଭୁତ ବ୍ୟୂହ ନିର୍ମାଣ କରିବେ । ତାହାର ସମ୍ମୁଖର ଅର୍ଦ୍ଧଭାଗ ଶକଟାକାର ଏବଂ ପଶ୍ଚାତ୍ ଅର୍ଦ୍ଧଭାଗ ପଦ୍ମାକୃତି । ସେହି ପଦ୍ମର କର୍ଣ୍ଣିକାର ମଧ୍ୟରେ ଜୟଦ୍ରଥ ଅବସ୍ଥିତ ହେବେ । ସେହି କର୍ଣ୍ଣିକାର ମଧ୍ୟରେ ଅନ୍ୟ ଗୋଟିଏ ସୂଚୀବ୍ୟୂହ ସଜ୍ଜିତ କରିବେ । ସେହି ସୂଚୀପାର୍ଶ୍ୱରେ ଯୁଦ୍ଧଦୁର୍ମଦ ସିନ୍ଧୁରାଜ ସେହି ସମସ୍ତ ବୀରକର୍ତ୍ତୃକ ରକ୍ଷିତ ହୋଇ ଅବସ୍ଥାନ କରିବେ । ୨୭ । ଧନୁର୍ବିଦ୍ୟାରେ, ଅସ୍ତ୍ରବିକ୍ଷେପରେ, ବୀର୍ଯ୍ୟରେ, ବଳରେ ଓ ଔରସ ପ୍ରଭାବରେ ସେହି ଛଅଜଣ ରଥୀ ନିଶ୍ଚୟ ଅସହ୍ୟତମ ଅଟନ୍ତି । ସେମାନଙ୍କୁ ଅନୁଚର-ବର୍ଗ ସହିତ ପରାଜିତ ନ କରି ତୁମ୍ଭେ ଜୟଦ୍ରଥ ନିକଟକୁ ଗମନ କରି ପାରିବ ନାହିଁ । ୨୯ ।

ହେ ନରସିଂହ ! ଏହି ଛଅଜଣ ରଥୀଙ୍କର ପ୍ରତ୍ୟେକଙ୍କ ବଳବୀର୍ଯ୍ୟ ଚିନ୍ତା କରି ଦେଖ । ତହିଁରେ ପୁଣି ସେହି ଛଅଜଣ ଏକସମୟରେ ମିଳିତ ହେଲେ ବୋଧ ହୁଏ, ସେମାନଙ୍କୁ କୌଣସି ପ୍ରକାରେ ବଳପୂର୍ବକ ପରାଜିତ କରିବା ତୁମ୍ଭର ସୁସାଧ୍ୟ ହେବନାହିଁ । ୩୦ । ହେ ପାର୍ଥ ! ପୁନର୍ବାର ଏ ବିଷୟରେ ଆମ୍ଭେମାନେ ମନ୍ତ୍ରୀ, ଅମାତ୍ୟ ଓ ସୁହୃଦ୍‌ମାନଙ୍କ ସହିତ ଆମ୍ଭମାନଙ୍କ କାର୍ଯ୍ୟସିଦ୍ଧି ନିମିତ୍ତ ମନ୍ତ୍ରଣା କରିବା । ୩୧ ।

---

## ୭୭ ଅଧ୍ୟାୟ

ଅର୍ଜ୍ଜୁନ ବୋଇଲେ—ହେ କୃଷ୍ଣ ! ତୁମ୍ଭେ ଧାର୍ତ୍ତରାଷ୍ଟ୍ରମାନଙ୍କର ଉଲ୍ଲିଖିତ ଛଅଜଣ ରଥୀଙ୍କୁ ଅଧିକ ବଳଶାଳୀ ମନେ କରୁଅଛ । କିନ୍ତୁ ଆମ୍ଭେ ବୋଧ କରୁଁ, ସେମାନଙ୍କର ବଳ ଆମ୍ଭର ଅର୍ଦ୍ଧେକର ତୁଲ୍ୟ ହେବ ନାହିଁ । ୧ । ହେ ମଧୁସୂଦନ ! ଆମ୍ଭେ ଯେତେବେଳେ ଜୟଦ୍ରଥର ବଧେଷୀ

ହେବୁଁ, ସେତେବେଳେ ତୁମ୍ଭେ ସେହି ସମସ୍ତ ରଥୀଙ୍କର ଅସ୍ତ୍ର-ଶସ୍ତ୍ର ଆମ୍ଭ ଅସ୍ତ୍ରଦ୍ୱାରା ଛିନ୍ନ-ଭିନ୍ନ ହେବାର ଅବଲୋକନ କରିବ । ୬ । ଆମ୍ଭେ କାଲି ସିନ୍ଧୁରାଜର ମସ୍ତକ ଦ୍ରୋଣଙ୍କ ସାକ୍ଷାତରେ ଭୂତଳରେ ନିପାତିତ କରିବୁଁ । ତାହା ଅବଲୋକନ କରି ଦ୍ରୋଣ ଅନୁଗମାନଙ୍କ ସହ ବିଳାପ କରିବେ । ୭ । ବିଶ୍ୱଦେବଗଣ, ସାଧ୍ୟଗଣ, ବସୁଗଣ, ଅଶ୍ୱିନୀକୁମାରଦ୍ୱୟ, ମରୁଦ୍‌ଗଣ, ଦେବରାଜ, ରୁଦ୍ରଗଣ, ଅନ୍ୟାନ୍ୟ ଅମରଗଣ, ଅସୁରଗଣ, ପିତୃଗଣ, ଗନ୍ଧର୍ବଗଣ, ସୁପର୍ଣ୍ଣଗଣ, ସାଗର, ପର୍ବତ, ସ୍ୱର୍ଗ, ଆକାଶ, ପୃଥିବୀ, ଦିକ୍ ଓ ବିଦିକ୍‌ପତିଗଣ ଏବଂ ଗ୍ରାମ୍ୟ ଓ ଆରଣ୍ୟ ସମସ୍ତ ଚରାଚର ପ୍ରାଣୀ ଯଦି ସିନ୍ଧୁରାଜଙ୍କୁ ରକ୍ଷା କରନ୍ତି, ତଥାପି ଆମ୍ଭେ ଏହି ଆୟୁଧ ସ୍ପର୍ଶ କରି ଶପଥ କରୁଅଛୁଁ ଯେ, ତୁମ୍ଭେ ସିନ୍ଧୁରାଜଙ୍କୁ କାଲି ଆମ୍ଭ ବାଣରେ ନିହତ ହେବାର ନିରୀକ୍ଷଣ କରିବ । ୭ ।

ଯେଉଁ ମହାଧନୁର୍ଦ୍ଧର ଆଚାର୍ଯ୍ୟ ଦ୍ରୋଣ ସେହି ପାପାତ୍ମା ଦୁର୍ମତିଙ୍କୁ ରକ୍ଷା କରିବାକୁ ପ୍ରବୃତ୍ତ ହେବେ, ସେହି ଆଚାର୍ଯ୍ୟଙ୍କୁ ଆମ୍ଭେ ଅଗ୍ରେ ଆକ୍ରମଣ କରିବୁଁ । ୮ । ହେ କୃଷ୍ଣ ! ଯେଉଁ ଯୁଦ୍ଧରୂପ ଦ୍ୟୂତକ୍ରୀଡ଼ାରେ ଜୟଦ୍ରଥବଧ ପଣ ହୋଇଅଛି ଏବଂ ଯହିଁରେ ଦ୍ରୋଣାଚାର୍ଯ୍ୟ ନିଶ୍ଚୟ ଜୟୀ ହେବେ ବୋଲି ଦୁର୍ଯ୍ୟୋଧନ ମନେ କରିଅଛି ଆମ୍ଭେ ସେହି ଯୁଦ୍ଧରେ ଦ୍ରୋଣାଚାର୍ଯ୍ୟଙ୍କ ସୈନ୍ୟାଗ୍ରଭାଗ ଭେଦ କରି ସିନ୍ଧୁରାଜ ଜୟଦ୍ରଥର ନିକଟବର୍ତ୍ତୀ ହେବୁଁ । ୯ ।

ଯେପରି ବଜ୍ରଦ୍ୱାରା ଗିରିଶୃଙ୍ଗ ବିଦୀର୍ଯ୍ୟମାଣ ଦୃଷ୍ଟ ହୁଏ, ସେହିରୂପେ କାଲି ଆତ୍ମକର୍ତ୍ତୃକ ଯୁଦ୍ଧରେ ତୀକ୍ଷ୍ଣତେଜ ନାରାଚସମୂହଦ୍ୱାରା ସେମାନଙ୍କୁ ବିଦୀର୍ଯ୍ୟମାଣ ହେବାର ତୁମ୍ଭେ ଅବଲୋକନ କରିବ । ୧୦ । କାଲି ତୁମ୍ଭେ ଦେଖିବ ଯେ, ଆମ୍ଭର ଶାଣିତ ଶରନିକର ଦ୍ୱାରା ନର, ନାଗ ଓ ଅଶ୍ୱଦେହ ସମସ୍ତ ଛିନ୍ନଭିନ୍ନ ହୋଇ ପତିତ ହୋଇଅଛି ଓ ହେଉଅଛି । ଏବଂ ସେହି ସମସ୍ତ ଶରୀରରୁ ଶୋଣିତସ୍ରାବ ହେଉଅଛି । ୧୧ । କାଲି ଆମ୍ଭର ଗାଣ୍ଡୀବନିକ୍ଷିପ୍ତ ବାଣସମସ୍ତ ମନ ଓ ବାୟୁତୁଲ୍ୟ ବେଗଶାଳୀ ହୋଇ ସହସ୍ର ସହସ୍ର ନର, ନାଗ ଓ ଅଶ୍ୱମାନଙ୍କୁ ଦେହହୀନ ଓ ପ୍ରାଣଶୂନ୍ୟ କରିବ । ଆମ୍ଭେ ଯମ, ବରୁଣ, କୁବେର, ରୁଦ୍ର ଓ ଇନ୍ଦ୍ରଙ୍କ ନିକଟରୁ

ଯେଉଁସବୁ ଭୀଷଣ ଅସ୍ତ୍ର ଲାଭ କରିଅଛୁଁ, ସେହିସବୁ ଦିବ୍ୟାସ୍ତ୍ରକୁ ଏହି ଯୁଦ୍ଧରେ ମନୁଷ୍ୟମାନେ ନୟନଗୋଚର କରିବେ । ୧୩ ।

ଯେଉଁମାନେ ଜୟଦ୍ରଥକୁ ଯୁଦ୍ଧରେ ରକ୍ଷା କରିବେ, ସେମାନଙ୍କର ସମସ୍ତ ଅସ୍ତ୍ର ଆମ୍ଭକର୍ତ୍ତୃକ ବ୍ରହ୍ମାସ୍ତ୍ର ଦ୍ୱାରା ନିହତ ହେବାର ତୁମ୍ଭେ ଅବଲୋକନ କରିବ । ୧୪ । ହେ କେଶବ ! କାଲି ଆମ୍ଭର ଶରବେଗଚ୍ଛିନ୍ନ ନରପତି-ମାନଙ୍କ ମସ୍ତକସମୂହରେ ବସୁନ୍ଧରା ସମାକୀର୍ଣ୍ଣା ହେବାର ଦେଖିବ । ୧୫ । ଆମ୍ଭେ କାଲି ମାଂସାଶୀ ଜୀବମାନଙ୍କର ତୃପ୍ତି ସାଧନ କରିବୁଁ ; ସୁହୃଦ୍‌ଗଣଙ୍କୁ ଆନନ୍ଦିତ କରିବୁଁ ଓ ଜୟଦ୍ରଥକୁ ନିପାତିତ କରିବୁଁ । ୧୬ । ସେହି ଅଶେଷାପରାଧୀ, ଅନାତ୍ମୀୟ ପାପଦେଶସମ୍ଭୂତ ସିନ୍ଧୁରାଜ ଆମ୍ଭ ଅସ୍ତ୍ରରେ ନିହତ ହୋଇ ସ୍ୱଜନମାନଙ୍କୁ ସନ୍ତାପିତ କରିବ । ୧୭ । ସମସ୍ତଙ୍କର କ୍ଷୀରାନ୍ନ-ଭୋକ୍ତା ପାପାତ୍ମର ଜୟଦ୍ରଥକୁ ଅନୁଗମାନଙ୍କ ସହ ବାଣ-କର୍ତ୍ତିତ ହେବାର ତୁମ୍ଭେ ଅବଲୋକନ କରିବ । ୧୮ ।

ହେ କୃଷ୍ଣ ! କାଲି ପ୍ରଭାତରେ ଆମ୍ଭେ ଏପରି କାର୍ଯ୍ୟ କରିବୁଁ, ଯଦ୍ଦ୍ୱାରା ଦୁର୍ଯ୍ୟୋଧନ ମନେ କରିବ ଯେ, ଏହି ଭୂମଣ୍ଡଳରେ ଆମ୍ଭ ତୁଲ୍ୟ ଧନୁର୍ଦ୍ଧର ଅନ୍ୟ କେହି ନାହିଁ । ୧୯ । ହେ ନରର୍ଷଭ ! ଯେଉଁ ଯୁଦ୍ଧରେ ଗାଣ୍ଡୀବ ଦିବ୍ୟଧନୁ, ଆମ୍ଭେ ଯୋଦ୍ଧା ଏବଂ ତୁମ୍ଭେ ସାରଥୀ, ତହିଁରେ ଆମ୍ଭର ଅଜେୟ କ'ଣ ଅଛି ? ୨୦ । ହେ ଭଗବନ୍ ! ହେ ହୃଷୀକେଶ ! ତୁମ୍ଭ ପ୍ରସାଦରୁ ଯୁଦ୍ଧରେ ଆମ୍ଭର କିଛିମାତ୍ର ଅପ୍ରାପ୍ତ ନାହିଁ, ତୁମ୍ଭେ ଆମ୍ଭର ପରାକ୍ରମ ନିତାନ୍ତ ଅସହ୍ୟ ଅବଗତ ହୋଇ ସୁଦ୍ଧା ଆମ୍ଭଙ୍କୁ କି ହେତୁ ନିନ୍ଦା କରୁଅଛ ? ୨୧ ।

ହେ ଜନାର୍ଦ୍ଦନ ! ଚନ୍ଦ୍ରଠାରେ କଳଙ୍କ ଯେପରି ସ୍ଥିର ଅଟେ ଏବଂ ସମୁଦ୍ରରେ ଯେପରି ନିଶ୍ଚୟ ଜଳ ଥାଏ, ଆମ୍ଭର ଏହି ପ୍ରତିଜ୍ଞାକୁ ମଧ୍ୟ ସେହିପରି ନିଶ୍ଚୟ ସତ୍ୟ ଜାଣିବ । ୨୨ । ତୁମ୍ଭେ ଆମ୍ଭ ଅସ୍ତ୍ରସମୂହର ଅବମାନନା କର ନାହିଁ । ତୁମ୍ଭେ ଧନଞ୍ଜୟର ଅବମାନନା କର ନାହିଁ । ଆମ୍ଭେ ସମରକୁ ଗମନ କରି କାହାରିକର୍ତ୍ତୃକ ପରାଜିତ ହୋଇନାହୁଁ, ସତତ ଜୟୀ ହୋଇଅଛୁଁ । ଏହା ସତ୍ୟ, ପ୍ରସିଦ୍ଧ, ତୁମ୍ଭେ ସେହି ସତ୍ୟଦ୍ୱାରା

ଜୟଦ୍ରଥକୁ ସଂଗ୍ରାମରେ ଆତ୍ମକର୍ତ୍ତୃକ ନିହତ ହେବାର ନିଶ୍ଚୟ ଜାଣ । ୨୪ । ଯେପରି ବ୍ରାହ୍ମଣଠାରେ ସତ୍ୟ ନିଶ୍ଚୟ, ସାଧୁ ବ୍ୟକ୍ତିଠାରେ ନମ୍ରତା ନିଶ୍ଚୟ ଅଟେ ଏବଂ ଅତିଦକ୍ଷ ବ୍ୟକ୍ତିଠାରେ ଲକ୍ଷ୍ମୀ ନିଶ୍ଚୟ ବିଦ୍ୟମାନ ଥାଆନ୍ତି, ସେହିରୂପ ନାରାୟଣଙ୍କଠାରେ ଜୟ ନିଶ୍ଚୟ ବର୍ତ୍ତମାନ ଅଛି । ୨୫ ।

ସଞ୍ଜୟ ବୋଇଲେ—ହେ ମହାରାଜ ! ବାସବନନ୍ଦନ ଅର୍ଜ୍ଜୁନ ସାକ୍ଷାତ୍ ପରମାତ୍ମସ୍ୱରୂପ ପ୍ରଭୁ ହୃଷୀକେଶ କେଶବଙ୍କୁ ଏହିରୂପେ କହି ପୁନର୍ବାର ଯତ୍ନପୂର୍ବକ ଶବ୍ଦସହକାରେ କହିଲେ, ହେ କୃଷ୍ଣ ! ରଜନୀ ପ୍ରଭାତ ହେଲାବେଳକୁ ଆମ୍ଭ ରଥ ଯେପରି ସଜ୍ଜିତ ହୋଇଥାଏ । ତୁମ୍ଭେ କାଲି ସେହିପ୍ରକାର ସୁସଜ୍ଜିତ କରିବ, କାରଣ କାଲି ମହତ୍ କାର୍ଯ୍ୟ ଉପସ୍ଥିତ ହେବ ।

---

# ୭୭ ଅଧ୍ୟାୟ

ସଞ୍ଜୟ ବୋଇଲେ—ହେ ମହାରାଜ ! ବାସୁଦେବ ଧନଞ୍ଜୟ ଦୁହେଁ ସେହି ରାତ୍ରିରେ ଶୋକ, ଦୁଃଖରେ ଆର୍ତ୍ତ ହୋଇ ସର୍ପଦ୍ୱୟସଦୃଶ ନିଃଶ୍ୱାସ ପରିତ୍ୟାଗ କଲେ । କୌଣସି ପ୍ରକାରେ ନିଦ୍ରାସୁଖ ଅନୁଭବ କରିପାରିଲେ ନାହିଁ । ଦେବରାଜ ପ୍ରଭୃତି ଦେବଗଣ ନରନାରାୟଣଙ୍କୁ କ୍ରୋଧାବିଷ୍ଟ ହେବାର ଦେଖି ବ୍ୟଥିତ ହୋଇ ଚିନ୍ତା କଲେ ଯେ, କି ଦୁର୍ଦ୍ଦଶା ହେବ, ବୁଝି ପାରୁନାହୁଁ । ତେତେବେଳେ କଷ୍ଟଜନକ ନିଦାରୁଣ ରୁକ୍ଷ ବାୟୁ ପ୍ରବାହିତ ହେଲା । ସୂର୍ଯ୍ୟମଣ୍ଡଳରେ କବନ୍ଧର ସହିତ ପରିଧି ଦୃଷ୍ଟହେଲା । ନିର୍ଘାତ ଓ ବିଦ୍ୟୁତର ସହିତ ଶୁଷ୍କ ଅଶନିସମସ୍ତ ପତିତ ହେଲା । ଶୈଳ, ବନ ଓ ଉପବନ ସହିତ ପୃଥିବୀ କମ୍ପିତ ହେଲେ ଏବଂ ମକରାଳୟ ସାଗର କ୍ଷୁବ୍ଧ ହେଲା । ନଦୀସମୂହ ବିପରୀତ ସ୍ରୋତରେ ପ୍ରବାହିତ ହେଲା । ୫ । ମାଂସାଶୀ ପ୍ରାଣିମାନଙ୍କର ହର୍ଷ ଜାତ ହେଲା ; ଯମ ରାଷ୍ଟ୍ରବୃଦ୍ଧି ନିମିତ୍ତ ରଥ, ହସ୍ତୀ, ଅଶ୍ୱ, ଓ ମନୁଷ୍ୟମାନଙ୍କର ବିପର୍ଯ୍ୟୟଗତ ହେବାକୁ ଆରମ୍ଭ ହେଲା । ୬ । ଏବଂ ବାହନ ସମସ୍ତ ପୁରୀଷ, ମୂତ୍ର ପରିତ୍ୟାଗ ଓ ରୋଦନ କରିବାକୁ ଆରମ୍ଭ

କଲେ । ହେ ଭରତଶ୍ରେଷ୍ଠ ମହୀପାଳ ! ଲୋମହର୍ଷଣକର ନିଦାରୁଣ ସୈନ୍ୟସମସ୍ତ ଉତ୍ପାତ ଅବଲୋକନ କରି ଏବଂ ମହାବୀର ସବ୍ୟସାଚୀଙ୍କର ଦାରୁଣ ପ୍ରତିଜ୍ଞା ଶ୍ରବଣ କରି ଆପଣଙ୍କପକ୍ଷୀୟ ସୈନ୍ୟମାନେ ଅତି ଉଦ୍‌ବିଗ୍ନ ହେଲେ । ୮ ।

ଅପର ପକ୍ଷରେ ବାସବନନ୍ଦନ ମହାବାହୁ ଅର୍ଜ୍ଜୁନ ବାସୁଦେବଙ୍କୁ କହିଲେ—ହେ ପ୍ରଭୋ ମାଧବ ! ତୁମ୍ଭର ଭଗିନୀ ସୁଭଦ୍ରା ଓ ତାହାଙ୍କର ପୁତ୍ରବଧୂ ଅଭିମନ୍ୟୁ ଶୋକରେ କାତର ହୋଇଥିବେ, ତୁମ୍ଭେ ସେମାନଙ୍କୁ ଆଶ୍ୱାସିତ କର । ଉପଯୁକ୍ତ ସାନ୍ତ୍ୱନା ଓ ପ୍ରକୃତ ବାକ୍ୟଦ୍ୱାରା ପୁତ୍ରବଧୂ ଓ ତାହାଙ୍କର ବୟସ୍ୟା ଓ ପରିଚାରିକାମାନଙ୍କର ଶୋକ ନିବାରଣ କର ।୧୦।

ତଦନନ୍ତର ବାସୁଦେବ ଅତି ବିମନା ହୋଇ ଅର୍ଜ୍ଜୁନଙ୍କ ଶିବିରକୁ ଗମନ କରି ଦୁଃଖାର୍ତ୍ତା ଭଗିନୀ ସୁଭଦ୍ରାଙ୍କୁ ଆଶ୍ୱାସ ବାକ୍ୟରେ ସାନ୍ତ୍ୱନା କରିବାକୁ ଆରମ୍ଭ କଲେ । ୧୧ ।

ବାସୁଦେବ କହିଲେ, ହେ ବାର୍ଷ୍ଣେୟି ! ତୁମ୍ଭେ କୁମାର ନିମିତ୍ତ ଶୋକ କର ନାହିଁ, ବଧୂକୁ ମଧ୍ୟ ଆଶ୍ୱାସିତ କର । ହେ ଭୀରୁ ! କାଳ ହିଁ ସମୁଦାୟ ପ୍ରାଣିମାନଙ୍କର ବିଶେଷତଃ କ୍ଷତ୍ରିୟକୁଳଜାତ ବୀରମାନଙ୍କର ଏହି ଗତି ସ୍ଥିର କରିଅଛନ୍ତି । ପିତାସଦୃଶ ପରାକ୍ରମଶୀଳ ତୁମ୍ଭ ମହାରଥ ପୁତ୍ରର ଭାଗ୍ୟକ୍ରମେ ଏତାଦୃଶ ଉପଯୁକ୍ତ ମୃତ୍ୟୁ ସଂଘଟିତ ହୋଇଅଛି, ଅତଏବ ଶୋକ କରନାହିଁ । ତୁମ୍ଭ ପୁତ୍ର କ୍ଷତ୍ରିୟବିଧାନକ୍ରମେ ବହୁଶତ୍ରୁଙ୍କୁ ପରାଜିତ କରି ଶମନଭୁବନକୁ ପ୍ରେରଣପୂର୍ବକ ବୀରବାଞ୍ଛିତ ଗତି ଲାଭ କରିଅଛି । ପୁଣ୍ୟକୃତ୍ ବ୍ୟକ୍ତିମାନଙ୍କର ପ୍ରାପ୍ୟ ସର୍ବକାମପ୍ରଦ ଅକ୍ଷୟ ଲୋକକୁ ପ୍ରାପ୍ତ ହୋଇଅଛି । ୧୫ । ସାଧୁମାନେ ତପସ୍ୟା, ବ୍ରହ୍ମଚର୍ଯ୍ୟ, ଅଧ୍ୟୟନ ଓ ପ୍ରଜ୍ଞାଦ୍ୱାରା ଯେଉଁ ଗତିକୁ ପ୍ରାପ୍ତ ହେବାର ଇଚ୍ଛା କରନ୍ତି, ତୁମ୍ଭର ପୁତ୍ର ସେହି ଗତି ଲାଭ କରିଅଛନ୍ତି । ୧୬ ।

ହେ ଭଦ୍ରେ ! ତୁମ୍ଭେ ବୀର-ଜନନୀ, ବୀରପତ୍ନୀ, ବୀରକନ୍ୟା ଓ ବୀରବାନ୍ଧବା । ଅତଏବ ସେହି ପରମଗତିପ୍ରାପ୍ତ ପୁତ୍ର ନିମିତ୍ତ ଶୋକାର୍ତ୍ତା ହୁଅ

ନାହିଁ । ୧୭ । ହେ ବର୍ଣ୍ଣେଶ୍ୱରେ ! ଏହି ରଜନୀ ପ୍ରଭାତ ହେଲେ ସେହି କ୍ଷୁଦ୍ରାଶୟ, ଶିଶୁଘାତକ, ପାପାତ୍ମା ସିନ୍ଧୁପତି ସୁହୃଦ୍ ଓ ବାନ୍ଧବଗଣ ସହିତ ସ୍ୱକୃତ ଅପରାଧର ଫଳ ପ୍ରାପ୍ତ ହେବ । ସେ ଯଦି ଅମରାବତୀରେ ପ୍ରବିଷ୍ଟ ହୁଏ, ତେବେ ସେ ପାର୍ଥଠାରୁ ପରିତ୍ରାଣ ପାଇପାରିବ ନାହିଁ । ୧୯ । କାଲି ଅବଶ୍ୟ ତୁମ୍ଭର କର୍ଣ୍ଣଗୋଚର ହେବ ଯେ, ରଣସ୍ଥଳରୁ ସିନ୍ଧୁରାଜର ମସ୍ତକ ସମନ୍ତପଞ୍ଚକର ବହିଃପ୍ରଦେଶରେ ନିକ୍ଷିପ୍ତ ହୋଇଅଛି । ଅତଏବ ଶୋକ ପରିତ୍ୟାଗ କର, ରୋଦନ କରନାହିଁ । ୨୦ । ଆମ୍ଭେମାନେ ଓ ଅପରାପର ଶସ୍ତ୍ରଜୀବୀ କ୍ଷତ୍ରିୟମାନେ ଯେଉଁ ଗତିକୁ ପ୍ରାପ୍ତ ହେବାଲାଗି ଅଭିଳାଷ କରିଥାଆନ୍ତି, ତୁମ୍ଭର ଶୌର୍ଯ୍ୟସମ୍ପନ୍ନ ପୁତ୍ର ଅଭିମନ୍ୟୁ କ୍ଷତ୍ରିୟଧର୍ମ ଅବଲମ୍ବନ କରି ସେହି ପରମଗତି ପ୍ରାପ୍ତ ହୋଇଅଛି । ୨୧ । ବିଶାଳବକ୍ଷ, ମହାବାହୁ, ସଂଗ୍ରାମରେ ଅପରାଙ୍ମୁଖ, ରଥୀମାନଙ୍କର ନିହନ୍ତା ତୁମ୍ଭର ପୁତ୍ର ସ୍ୱର୍ଗବାସୀ ହୋଇଅଛି । ସେଥିପାଇଁ ତୁମ୍ଭେ ଚିନ୍ତା ପରିତ୍ୟାଗ କର । ୨୨ । ବୀର୍ଯ୍ୟବାନ୍ ମହାରଥ ଅଭିମନ୍ୟୁ ପିତୃମାତୃକୁଳର ଅନୁଗାମୀ ହୋଇ ସହସ୍ର ସହସ୍ର ଶତ୍ରୁ ବିନାଶ କରି ହତ ହୋଇଅଛି ।

ହେ କ୍ଷତ୍ରିୟକୁଳଶୋଭନେ ! ହେ ରାଜ୍ଞି ! ତୁମ୍ଭେ ଶୋକ ପରିତ୍ୟାଗ କର, ବଧୂକୁ ସାନ୍ତ୍ୱନା ପ୍ରଦାନ କର । କାଲି ଅତିମହତ୍ ପ୍ରିୟସଂବାଦ ଶ୍ରବଣ କରିବ । ଅତଏବ ଶୋକର ବିଷୟ କ'ଣ ଅଛି ? ୨୪ । ପାର୍ଥ ଯାହା ପ୍ରତିଜ୍ଞା କରିଅଛି, ତାହା ଅବଶ୍ୟ ସିଦ୍ଧ ହେବ, କଦାଚ ଅନ୍ୟଥା ହେବ ନାହିଁ, କାରଣ, ତୁମ୍ଭର ପତି ଯେଉଁ କାର୍ଯ୍ୟ କରିବାକୁ ଇଚ୍ଛା କରନ୍ତି, ତାହା କଦାପି ନିଷ୍ଫଳ ହୁଏ ନାହିଁ । ୨୫ । ରଜନୀ ପ୍ରଭାତ ହେଲେ ମନୁଷ୍ୟ, ପନ୍ନଗ, ପିଶାଚ, ନିଶାଚର, ପତଙ୍ଗ, ସୁର ଓ ଅସୁର ଯଦି ସମରରେ ସିନ୍ଧୁରାଜକୁ ରକ୍ଷା କରନ୍ତି, ତଥାପି ସେ ଜୀବିତ ରହିବ ନାହିଁ । ପୁଣି ତାହାର ସେହି ସମସ୍ତ ରକ୍ଷକମାନେ ଶମନଭବନକୁ ଗମନ କରିବେ । ୨୬ ।

---

# ୭୮ ଅଧ୍ୟାୟ

ସଞ୍ଜୟ ବୋଇଲେ—ମହାତ୍ମା କେଶବଙ୍କ ଏହିରୂପ ବଚନ ଶ୍ରବଣ କରି ପୁତ୍ରଶୋକାର୍ତ୍ତା ସୁଭଦ୍ରା ଅତୀବ ଦୁଃଖିତା ହୋଇ ବିଳାପ କରିବାକୁ ଆରମ୍ଭ କଲେ । ୧ ।

ହା ପୁତ୍ର ! ହା ବତ୍ସ ! ଆମ୍ଭର କି ମନ୍ଦ ଭାଗ୍ୟ ! ତୁ ପିତୃତୁଲ୍ୟ ପରାକ୍ରମଶୀଳ ହୋଇ କି ପ୍ରକାରେ ସଂଗ୍ରାମରେ ନିଧନପ୍ରାପ୍ତ ହେଲୁ ! ୨ । ବତ୍ସ ! ତୋହର ଇନ୍ଦୀବରସଦୃଶ ଶ୍ୟାମବର୍ଣ୍ଣ, ସୁଦନ୍ତଶୋଭିତ, ସୁରୁ ଲୋଚନସମନ୍ୱିତ ସେହି ମୁଖମଣ୍ଡଳକୁ ବର୍ତ୍ତମାନ ରଣରେଣୁସମାଚ୍ଛନ୍ନ ହେବାର କି ପ୍ରକାରେ ଅବଲୋକନ କରିବୁଁ ? ୩ । ହେ ବତ୍ସ ! ତୋହର ମୁଖ, ଗ୍ରୀବା, ବାହୁ, ସ୍କନ୍ଧ କି ମନୋହର ! ତୋହର ବକ୍ଷଃସ୍ଥଳ କି ପ୍ରକାର ବିଶାଳ ! ତୋହର ଉଦର କି ପ୍ରକାର ଅବନତ ଥିଲା ! ହେ ସମର ଅପରାଙ୍ମୁଖ ମହାବୀର, ଏହିକ୍ଷଣି ପ୍ରାଣିମାନେ ତୋତେ ସମରାଙ୍ଗଣରେ ନିପତିତ ହେବାର ନିରୀକ୍ଷଣ କରୁଅଛନ୍ତି ।

ହା ପୁତ୍ର ! ତୋହର ଚକ୍ଷୁ ଦୁଇଟି କି ସୁନ୍ଦର ଥିଲା ! ତୋହର ସମସ୍ତ ଅଙ୍ଗପ୍ରତ୍ୟଙ୍ଗ ମନୋଜ୍ଞ ଥିଲା ; ବର୍ତ୍ତମାନ ତୋହର ସେହି ସୁନ୍ଦର କଳେବର ଅସ୍ତ୍ର-ଶସ୍ତ୍ରରେ କ୍ଷତ-ବିକ୍ଷତ ହୋଇଅଛି । ପ୍ରାଣିଗଣ ତୋତେ ରଣକ୍ଷେତ୍ରରେ ସମୁଦିତ ଚନ୍ଦ୍ରସଦୃଶ ଅବଲୋକନ କରୁଅଛନ୍ତି । ଯେ ପୂର୍ବେ ସୁନ୍ଦର ଆସ୍ତରଣାଚ୍ଛନ୍ନ ଶଯ୍ୟାରେ ସୁଖରେ ଶୟନ କରୁଥିଲା, ସେ ଅଦ୍ୟ ଶସ୍ତ୍ରକ୍ଷତ ଶରୀରରେ ଭୂତଳରେ କି ପ୍ରକାର ଶୟନ କରିଅଛି ! ୬ । ଯେ ମହାଭୁଜ ବୀର ପୂର୍ବେ ବରାଙ୍ଗନା ସଙ୍ଗରେ ଶୟନ କରୁଥିଲା, ସେ ରଣାଙ୍ଗନରେ ପତିତ ହୋଇ ଶିବାଗଣଙ୍କ ନିକଟରେ କି ପ୍ରକାର ଶୟନ କରୁଅଛି ! ୭ । ପୂର୍ବେ ଯାହାକୁ ସୂତ, ମାଗଧ, ବନ୍ଦୀଗଣ ହୃଷ୍ଟ ହୋଇ ସ୍ତୁତି କରୁଥିଲେ, ଅଦ୍ୟ ଘୋରଶଣ କ୍ରବ୍ୟାଦଗଣ ନିନାଦ କରି ତାହାର ଉପାସନା କରୁଅଛନ୍ତି । ୮ ।

ହେ ବିଭୋ ! ପାଣ୍ଡବଗଣ, ବୃଷ୍ଣିବୀରଗଣ ଓ ପାଞ୍ଚାଳ ବୀରଗଣ ତାହାର ସହାୟ ଥାଉଁ ଥାଉଁ କିଏ ତାହାକୁ ଅନାଥ ସଦୃଶ ସଂହାର

କଲ୍ ? ୯ । ହେ ପୁତ୍ର ! ହେ ଅନଘ ! ଆମ୍ଭେ ତୋତେ ଅବଲୋକନ କରି ତୃପ୍ତିର ଶେଷ ଲାଭ କରି ପାରିନାହୁଁ । ମୋହର ଭାଗ୍ୟ ମନ୍ଦ ଅଟେ ; ଅଦ୍ୟ ନିଶ୍ଚୟ ମୁଁ ଶମନଭବନକୁ ଗମନ କରିବି । ୧୦ । ହେ ବତ୍ସ ! ତୋହର ବିଶାଳ ନୟନଶୋଭିତ ସୁକେଶାଗ୍ରଭାଗସଂଯୁକ୍ତ, ଶ୍ରୁତିବାକ୍ୟ କଥନଶୀଳ, ସୁପରିଷ୍କୃତ, ସୁଗନ୍ଧି, ସେହି ମୁଖକୁ ଆମ୍ଭେ ପୁନର୍ବାର କେବେ ନୟନରେ ନିରୀକ୍ଷଣ କରିବୁ ? ୧୧ । ସୈନ୍ୟଙ୍କ ବଳକୁ ଧିକ୍, ପାର୍ଥକୁ ଧିକ୍, ଧନୁଷ୍ମାନ୍ ବୃଷ୍ଣିବୀର, ପାଞ୍ଚାଳ, କେକେୟ, ଚେଦି, ମତ୍ସ୍ୟ ଓ ସୃଞ୍ଜୟ—ଏମାନଙ୍କ ବଳକୁ ମଧ୍ୟ ଧିକ୍ । ଯେହେତୁ ସେମାନେ ସମସ୍ତେ ତୋହର ଯୁଦ୍ଧକାଳରେ ତୋତେ ଦେଖିପାରିଲେ ନାହିଁ । ୧୩ । ଅଦ୍ୟ ଆମ୍ଭେ ଅଭିମନ୍ୟୁକୁ ନ ଦେଖି ଶୋକରେ ବ୍ୟାକୁଳିତ ହୋଇ ପୃଥିବୀକୁ ହତଶ୍ରୀ ଓ ଶୂନ୍ୟ ଅବଲୋକନ କରୁଅଛୁଁ । ତୁ କୃଷ୍ଣଙ୍କ ଭାଗିନେୟ, ଗାଣ୍ଡୀବଧନ୍ୱାର ପୁତ୍ର ଓ ନିଜେ ଅତିରଥ ବୀର ଥିଲୁ । ଏପରି ଅବସ୍ଥାରେ ତୋତେ କି ପ୍ରକାରେ ସଂଗ୍ରାମରେ ନିପତିତ ହେବାର ନିରୀକ୍ଷଣ କରିବୁଁ ! ୧୫ ।

ହେ ବତ୍ସ ! ମୁଁ ଯହିଁ ମନ୍ଦଭାଗ୍ୟା, ଯେହେତୁ ମୁଁ ତୋତେ ଅବଲୋକନ କରି ପରିତୃପ୍ତା ହୋଇପାରି ନାହିଁ, ତୁ ମଧ୍ୟ ତୃଷିତ ହୋଇଅଛୁ । ଅତଏବ ଆସ, ଆସ ପୁତ୍ର, ଶୀଘ୍ର ମୋହର କୋଡ଼କୁ ଆସି ଦୁଗ୍ଧପୂର୍ଣ୍ଣ ସ୍ତନ ପାନ କର । ୧୬ । ହା ବୀର ! ତୁ ମୋହ ନିକଟରେ ସ୍ୱପ୍ନଦୃଷ୍ଟିଧନ-ସଦୃଶ ଦୃଷ୍ଟ ଓ ନଷ୍ଟ ହେଲୁ । ହା ! ମାନବପ୍ରକୃତି ଜଳବୁଦ୍‌ବୁଦସଦୃଶ ଚଞ୍ଚଳ ଓ ଅନିତ୍ୟ । ୧୭ । ହା ପୁତ୍ର ! ତୋହର ଏହି ତରୁଣ ଭାର୍ଯ୍ୟା ତୋହର ଶୋକରେ କାତର ହୋଇଅଛି । ଏହାକୁ ବତ୍ସହୀନ ଧେନୁସଦୃଶ କି ପ୍ରକାରେ ରକ୍ଷା କରିବି ? ୧୮ ।

ହା ପୁତ୍ରକ ! ମୁଁ ଫଳକାଳରେ ପୁତ୍ରଦର୍ଶନ ନିମିତ୍ତ ସମୁତ୍ସୁକା ଥିଲି ତୁ ମୋତେ ପରିତ୍ୟାଗ କରି ଅକାଳରେ ପ୍ରସ୍ଥାନ କଲୁ । ୧୯ । ଯେତେବେଳେ ଶ୍ରୀକୃଷ୍ଣ ସହାୟ ଥାଉଁ ଥାଉଁ ତୁ ଅନାଥସଦୃଶ ସଂଗ୍ରାମରେ ହତ ହେଲୁ, ତେତେବେଳେ କୃତାନ୍ତର ଗତି ଯେ ପ୍ରାଜ୍ଞମାନଙ୍କର ମଧ୍ୟ ଅତି ଦୁର୍ଜ୍ଞେୟ, ତହିଁରେ ଆଉ ସନ୍ଦେହ ନାହିଁ । ୨୦ । ହେ ପୁତ୍ରକ ! ଯାଗଶୀଳ,

ଦାନଶୀଳ, କୃତାତ୍ମା, ବ୍ରହ୍ମନିଷ୍ଠ, ବ୍ରହ୍ମଚର୍ଯ୍ୟାଭ୍ୟସ୍ତ, ପୁଣ୍ୟତୀର୍ଥାବଗାହୀ, କୃତଜ୍ଞ, ବଦାନ୍ୟ ଏବଂ ଗୁରୁଶୁଶ୍ରୂଷାରତ ଓ ସହସ୍ରଦକ୍ଷିଣାପ୍ରଦବ୍ୟକ୍ତିମାନଙ୍କର ଯେ ଗତି ଲାଭ ହୋଇଥାଏ, ତୁ ସେହି ଗତିକୁ ଲାଭ କର । ୨୨ ।

ଯୋଦ୍ଧା ଓ ଶୂରଗଣ, ଯୁଦ୍ଧରେ ନିବୃତ୍ତ ହୋଇ ଶତ୍ରୁସଂହାର କରି ସଂଗ୍ରାମରେ ନିହତ ହେଲେ ଯେ ଗତି ପ୍ରାପ୍ତ ହୁଅନ୍ତି, ତୁ ସେହି ଗତିକୁ ପ୍ରାପ୍ତ ହୁଅ । ୨୩ । ସହସ୍ରଗୋଦାତା, ଯଜ୍ଞନିମିତ୍ତ ଧନଦାତା ଏବଂ ଗ୍ରହୀତାର ଇଚ୍ଛାନୁରୂପ ଉପକରଣପୂର୍ଣ୍ଣ ଗୃହକୁ ଯେ ଦାନ କରେ ତାହାର ଯେ ଶୁଭଗତି ହୋଇଥାଏ, ତୁ ସେହି ଗତିକୁ ପ୍ରାପ୍ତ ହୁଅ । ୨୪ । ହେ ପୁତ୍ରକ ! ଯେଉଁ-ମାନେ ବ୍ରାହ୍ମଣ ଓ ଶରଣାଗତ ବ୍ୟକ୍ତିମାନଙ୍କ ନିମିତ୍ତ ନିଧି ଅର୍ପଣ କରନ୍ତି ଓ ଯେଉଁମାନେ ଦଣ୍ଡାର୍ହ ବ୍ୟକ୍ତିମାନଙ୍କୁ ସମୁଚିତ ଦଣ୍ଡ ପ୍ରଦାନ କରନ୍ତି, ସେମାନଙ୍କର ଯେ ଗତି ହୋଇଥାଏ, ତୁ ସେହି ଗତିକୁ ପ୍ରାପ୍ତ ହୁଅ । ୨୫ ।

ହେ ପୁତ୍ରକ ! ଶଂସିତବ୍ରତ ମୁନିମାନେ ବ୍ରହ୍ମଚର୍ଯ୍ୟଦ୍ୱାରା ଯେ ଗତି ପ୍ରାପ୍ତ ହୁଅନ୍ତି ଏବଂ ଏକପତ୍ନୀକ ବ୍ୟକ୍ତିମାନେ ଯେ ଗତି ଲାଭ କରନ୍ତି, ତୁ ସେହି ଗତିକୁ ପ୍ରାପ୍ତ ହୁଅ । ୨୬ । ହେ ପୁତ୍ର ! ରାଜାମାନଙ୍କର ସଚ୍ଚରିତ୍ରଦ୍ୱାରା ଯେ ଶାଶ୍ୱତ ଗତି ଲାଭ ହୋଇଥାଏ, ସ୍ୱ ସ୍ୱ ଆଶ୍ରମବିହିତ ଧର୍ମନିଷ୍ଠ କୃତପୁଣ୍ୟ ବ୍ୟକ୍ତିମାନଙ୍କର ଯେ ଗତି ଲାଭ ହୋଇଥାଏ, ଯେଉଁମାନେ ଦୀନ ବ୍ୟକ୍ତିଙ୍କ ପ୍ରତି ଅନୁକମ୍ପା କରିଥାନ୍ତି, ଯେଉଁମାନେ ସତତ ପୁତ୍ର, କଳତ୍ର, ଭୃତ୍ୟମାନଙ୍କୁ ବିଭାଗ କରି ଦେଇ ଅନ୍ନବସ୍ତ୍ରାଦି ଉପଭୋଗ କରନ୍ତି ଏବଂ ଯେଉଁମାନେ ପିଶୁନତାରୁ ନିବୃତ୍ତ ଥାନ୍ତି, ସେହି ସମସ୍ତ ବ୍ୟକ୍ତିମାନଙ୍କର ଯେ ଗତି ହୁଏ, ତୋହର ସେହି ଗତି ହେଉ । ୨୮ ।

ହେ ପୁତ୍ରକ ! ଗୁରୁଶୁଶ୍ରୂଷାରତ ବ୍ରତନିଷ୍ଠ ଧର୍ମଶୀଳ ବ୍ୟକ୍ତିମାନଙ୍କର ଏବଂ ଯେଉଁମାନଙ୍କ ଗୃହରୁ ଅତିଥି ବିମୁଖ ହୋଇ ନ ଯାନ୍ତି, ସେମାନଙ୍କର ଯେ ଗତି ହୋଇଥାଏ, ତୁମ୍ଭେ ସେହି ଗତିକୁ ଲାଭ କର । ୨୯ । ହେ ପୁତ୍ରକ ! ବ୍ୟସନ ବା ଅତିକଷ୍ଟଜନକ କୌଣସି ବିପତ୍ତି ଉପସ୍ଥିତ ହେଲେ ଶୋକାଗ୍ନିରେ ଦଗ୍ଧ ହୋଇ ସୁଦ୍ଧା ଯେଉଁମାନେ ଧୈର୍ଯ୍ୟାବଲମ୍ବନପୂର୍ବକ ଆପଣାକୁ ଧାରଣ କରି ରଖି ପାରନ୍ତି, ସେମାନଙ୍କର ଯେ ଗତି ଲାଭ ହୁଏ,

ତୁ ସେହି ଗତିକୁ ପ୍ରାପ୍ତ ହୁଅ । ୩୦ । ଯେଉଁମାନେ ସର୍ବଦା ପିତାମାତାଙ୍କ ଶୁଶ୍ରୂଷା କରିଥାନ୍ତି ଏବଂ ଯେଉଁମାନେ ନିଜର ସ୍ତ୍ରୀଠାରେ ରତ ଥାନ୍ତି, ସେମାନଙ୍କର ଯେ ଗତି ହୋଇଥାଏ, ତୋହର ସେହି ଗତି ହେଉ । ୩୧ । ହେ ପୁତ୍ରକ ! ଯେ ମନସ୍ୱୀ ପୁରୁଷମାନେ ଋତୁକାଳରେ ନିଜର ପତ୍ନୀଠାକୁ ଗମନ କରନ୍ତି ଏବଂ ପରସ୍ତ୍ରୀଠାରୁ ନିବୃତ୍ତ ରହନ୍ତି, ସେମାନଙ୍କର ଯେ ଗତି ହୋଇଥାଏ, ତୁ ସେହି ଗତିକୁ ପ୍ରାପ୍ତ ହୁଅ । ୩୨ ।

ହେ ପୁତ୍ରକ ! ଯେଉଁମାନେ ମାତ୍ସର୍ଯ୍ୟହୀନ ହୋଇ ସର୍ବପ୍ରାଣୀଙ୍କୁ ପ୍ରିୟଭାବରେ ଅବଲୋକନ କରନ୍ତି, ଯେଉଁମାନେ ପରର ଧର୍ମପୀଡକ ନ ହୁଅନ୍ତି ଏବଂ ଯେଉଁମାନେ କ୍ଷମାଶୀଳ ହୁଅନ୍ତି, ସେମାନେ ଯେ ଗତି ପ୍ରାପ୍ତ ହୋଇଥାନ୍ତି, ତୁ ସେହି ଗତିକୁ ପ୍ରାପ୍ତ ହୁଅ । ୩୩ । ହେ ପୁତ୍ରକ ! ଯେଉଁମାନେ ମଧୁ ଓ ମାଂସ ଭକ୍ଷଣ କରନ୍ତି ନାହିଁ, ଯେଉଁମାନେ ମଦ, ଦମ୍ଭ ଓ ମିଥ୍ୟା ବ୍ୟବହାରପରିତ୍ୟାଗୀ ଏବଂ ଯେଉଁମାନେ ପରର ଉପତାପପ୍ରଦାନରୁ ବିରତ, ସେମାନଙ୍କର ଯେଉଁ ଗତି ହୋଇଥାଏ, ତୁ ସେହି ଗତିକୁ ପ୍ରାପ୍ତ ହୁଅ । ୩୪ । ହେ ପୁତ୍ରକ ! ଲଜ୍ଜାଶୀଳ, ସର୍ବଶାସ୍ତ୍ରଜ୍ଞ, ଜ୍ଞାନତୃପ୍ତ ଜିତେନ୍ଦ୍ରିୟ ସାଧୁବ୍ୟକ୍ତିମାନେ ଯେ ଗତି ପ୍ରାପ୍ତ ହୋଇଥାନ୍ତି, ତୋହର ସେହି ଗତି ଲାଭ ହେଉ । ୩୫ ।

ହେ ନୃପାଳ ! ବିରାଟ ରାଜାଙ୍କ କନ୍ୟା ଉତ୍ତରା ସହିତ ସୁଭଦ୍ରା ଶୋକକର୍ଷିତା ହୋଇ ଏପରି ବିଳାପ କରୁଅଛନ୍ତି, ଏମନ୍ତ ସମୟରେ ପାଞ୍ଚାଳୀ ସେମାନଙ୍କ ନିକଟରେ ସମାଗତ ହେଲେ । ୩୬ । ସେମାନେ ତିନିଜଣ ଅତି କାତର ହୋଇ ଅତିଶୟ ରୋଦନ ଓ ବିଳାପ କରି ଉନ୍ମତ୍ତସଦୃଶ ସଂଜ୍ଞାହୀନ ହୋଇ ଧରାତଳରେ ପତିତ ହେଲେ । ୩୭ ।

ପୁଣ୍ଡରୀକାକ୍ଷ କୃଷ୍ଣ ଉଦକାଦି ଉପକରଣସାମଗ୍ରୀ ସହିତ ଉପସ୍ଥିତ ଥିଲେ । ସେ ଅତିଶୟ ଦୁଃଖିତ ହୋଇ ସେହି ଦୁଃଖିତା ନାରୀମାନଙ୍କୁ ସଲିଳସେଚନ ଓ ତତ୍କାଳୋଚିତ ହିତକର ବାକ୍ୟରେ ଆଶ୍ୱାସ ପ୍ରଦାନ କରି ମର୍ମବ୍ୟଥିତା ଅଚେତନପ୍ରାୟ ରୋଦନପରାୟଣା କମ୍ପମାନା ଭଗିନୀ ସୁଭଦ୍ରାକୁ ଏହି କଥା କହିଲେ—ହେ ସୁଭଦ୍ରେ ! ତୁମ୍ଭେ ପୁତ୍ରନିମିତ୍ତ ଶୋକ

କର ନାହିଁ ; ହେ ପାଞ୍ଚାଳୀ ! ଶୋକ ତ୍ୟାଗକର ଓ ଉତ୍ତରାକୁ ଆଶ୍ୱାସିତ କର ; କ୍ଷତ୍ରିୟପ୍ରବର ଅଭିମନ୍ୟୁ ପ୍ରସିଦ୍ଧ ଗତିକୁ ଲାଭ କରିଅଛି । ୪୦ । ହେ ବରାନନେ ! ଆମ୍ଭମାନଙ୍କ କୁଳରେ ଯେ ସମସ୍ତ ମନସ୍ୱୀ ପୁରୁଷ ଅଛନ୍ତି, ସେମାନେ ସମସ୍ତେ ଅଭିମନ୍ୟୁଙ୍କ ଗତି ପ୍ରାପ୍ତ ହୁଅନ୍ତୁ । ୪୧ । ତୁମ୍ଭର ପୁତ୍ର ବଳବାନ୍ ଅଭିମନ୍ୟୁ ଏକାକୀ ଯାଦୃଶ କର୍ମ କରିଅଛି, ଆମ୍ଭେମାନେ ଓ ଆମ୍ଭମାନଙ୍କର ସୁହୃଦ୍‌ଗଣ ସମସ୍ତେ ଯୁଦ୍ଧବ୍ୟାପାରରେ ତାଦୃଶ କର୍ମ କରିବୁଁ । ୪୨ ।

ଅନନ୍ତର ମହାବାହୁ କୃଷ୍ଣ ଭଗିନୀ ସୁଭଦ୍ରା, ଦ୍ରୌପଦୀ ଓ ଉତ୍ତରାକୁ ଏହିରୂପ ବାକ୍ୟରେ ଆଶ୍ୱାସ ପ୍ରଦାନ କରି ପାର୍ଥଙ୍କ ନିକଟକୁ ଆଗମନ କଲେ । ୪୩ । ହେ ରାଜନ୍ ! ତଦନନ୍ତର କୃଷ୍ଣ ଅର୍ଜୁନଙ୍କୁ ଓ ବନ୍ଧୁଗଣଙ୍କୁ ଓ ଅନ୍ୟାନ୍ୟ ରାଜାମାନଙ୍କୁ ସମ୍ଭାଷଣ କରି ଅନ୍ତଃପୁରରେ ପ୍ରବେଶ କଲେ ଓ ସେମାନେ ମଧ୍ୟ ସମସ୍ତେ ନିଜ ନିଜ ଶିବିରକୁ ଗମନ କଲେ । ୪୪ ।

---

## ୭୯ ଅଧ୍ୟାୟ

ସଞ୍ଜୟ କହିଲେ—ତଦନନ୍ତର ବିଭୁ ପୁଣ୍ଡରୀକାକ୍ଷ କୃଷ୍ଣ ଅର୍ଜୁନଙ୍କର ଅନୁପମ ଭବନରେ ପ୍ରବେଶ କରି ଆଗମନପୂର୍ବକ ସୁଲକ୍ଷଣସମ୍ପନ୍ନ ସ୍ଥଣ୍ଡିଳରେ ବୈଦୂର୍ଯ୍ୟସନ୍ନିଭ କୁଶଦ୍ୱାରା ଶୁଭଶଯ୍ୟା ବିସ୍ତୃତ କଲେ ; ପରେ ଉତ୍ତମ ଉତ୍ତମ ଆୟୁଧକୁ ସେହି ଶଯ୍ୟାର ସର୍ବଦିଗରେ ରଖି ସୁମଙ୍ଗଳଜନକ ଗନ୍ଧ, ମାଲ୍ୟ ଓ ଲାଜାଦ୍ୱାରା ତାହାକୁ ଅଳଙ୍କୃତ କଲେ । ତତ୍ପରେ ପାର୍ଥ ଆଗମନ କଲନ୍ତେ ପରିଚାରକମାନେ ବିନୀତ ହୋଇ ନିଶାବିହିତ ନୈଶବଳି ସେମାନଙ୍କ ସାକ୍ଷାତରେ ପ୍ରସ୍ତୁତ କଲେ ।

ଅନନ୍ତର ପାର୍ଥ ପ୍ରୀତଚିତ୍ତରେ କୃଷ୍ଣଙ୍କୁ ଗନ୍ଧମାଲ୍ୟ ଦ୍ୱାରା ଅଳଙ୍କୃତ କରି ନିଶାବିହିତ ସେହି ଉପହାର ତାହାଙ୍କୁ ନିବେଦନ କଲେ । ଗୋବିନ୍ଦ ହାସ୍ୟବଦନରେ ଅର୍ଜୁନଙ୍କୁ କହିଲେ । ୪ । ହେ ପାର୍ଥ ! ତୁମ୍ଭେ ସୁଖରେ ଶୟନ କର । ଆମ୍ଭେ ତୁମ୍ଭର କଲ୍ୟାଣାର୍ଥେ ଗମନ କରୁଁ, ଏହା କହି

ଶ୍ରୀମାନ୍ ବସୁଦେବ-ନନ୍ଦନ ଅର୍ଜ୍ଜୁନଙ୍କର ଶିବିରଦ୍ୱାରରେ ଅସ୍ତ୍ରଧାରୀ ରକ୍ଷକ ମନୁଷ୍ୟମାନଙ୍କୁ ନିଯୁକ୍ତ କରି ଦାରୁକସାରଥି ସହିତ ସ୍ୱୀୟ ଶିବିରରେ ପ୍ରବେଶ କଲେ । ଅନନ୍ତର ସେ ଉପସ୍ଥିତ ମହତ୍‌କାର୍ଯ୍ୟ-ଚିନ୍ତାପୂର୍ବକ ଶୁଭ୍ରଶଯ୍ୟାରେ ଶୟନ କଲେ ।

ବିଶ୍ୱମଧ୍ୟରେ ଅଧିପତିର ଅଧିପତି ଅର୍ଜ୍ଜୁନର ପ୍ରିୟକାରୀ ପୃଥୁଯଶା ଯୁକ୍ତାତ୍ମା ପୁଣ୍ଡରୀକାକ୍ଷ ଭଗବାନ ବିଷ୍ଣୁ ଯୋଗାବଲମ୍ବନପୂର୍ବକ ଅର୍ଜ୍ଜୁନଙ୍କର ମଙ୍ଗଳାର୍ଥୀ ହୋଇ ତାହାଙ୍କର ତେଜୋଦ୍ୟୁତିବୃଦ୍ଧି ଓ ଶୋକ-ଦୁଃଖ-ବିନାଶ-ନିମିତ୍ତ ସମୁଦାୟ ବିଧିର ଅନୁଷ୍ଠାନ କଲେ । ୯ । ହେ ନରନାଥ ! ସେହି ରାତିରେ ପାଣ୍ଡବମାନଙ୍କର ଶିବିରରେ କାହାର ନିଦ୍ରା ହେଲା ନାହିଁ । ସମସ୍ତେ ଜାଗରିତ ଥିଲେ । ପରମ୍ପରହନ୍ତା ମହାବାହୁ ବାସବନନ୍ଦନ ଗାଣ୍ଡୀବଧନ୍ୱା ମହାତ୍ମା ଅର୍ଜ୍ଜୁନ ପୁତ୍ରଶୋକାଭିଭୂତ ହୋଇ ଯେ ସହସା ସିନ୍ଧୁରାଜର ବଧ ପ୍ରତିଜ୍ଞା କରିଅଛନ୍ତି, ତାହା ସେ କିପରି ସଫଳ କରିବେ, ସେହି ବିଷୟ ସେମାନେ ଚିନ୍ତା କରିବାରେ ପ୍ରବୃତ୍ତ ହେଲେ । ୧୨ । ପରସ୍ପର କଥୋପକଥନ ଆରମ୍ଭ କଲେ । ମହାତ୍ମା ପାର୍ଥ ଏହି ଦୁରୂହ କର୍ମ କରିବାକୁ ନିଶ୍ଚୟ କରିଅଛନ୍ତି । ସେହି ରାଜା ଜୟଦ୍ରଥ ମହାବୀର୍ଯ୍ୟବାନ୍ ଅଥଚ ଅର୍ଜ୍ଜୁନ ପୁତ୍ରଶୋକରେ ସନ୍ତପ୍ତ ହୋଇ ମହତ୍ପ୍ରତିଜ୍ଞା କରିଅଛନ୍ତି ; ଆମ୍ଭେମାନେ ପ୍ରାର୍ଥନା କରୁଁ ଯେ ସେ ସେହି ପ୍ରତିଜ୍ଞାରୁ ଉତ୍ତୀର୍ଣ୍ଣ ହେଉନ୍ତୁ ।

ଦୁର୍ଯ୍ୟୋଧନର ଭ୍ରାତୃମାନେ ମହାବଳ, ପରାକ୍ରାନ୍ତ ଏବଂ ସେମାନଙ୍କର ସୈନ୍ୟମାନେ ବହୁଳ । ୧୪ । ସେହି ସମସ୍ତଙ୍କୁ ଦୁର୍ଯ୍ୟୋଧନ ଜୟଦ୍ରଥର ରକ୍ଷାନିମିତ୍ତ ନିୟୋଜିତ କରିଅଛି । ଯାହାହେଉ, ଧନଞ୍ଜୟ ସଂଗ୍ରାମରେ ସିନ୍ଧୁପତିକୁ ସଂହାର କରି ପ୍ରତ୍ୟାଗମନ କରନ୍ତୁ । ୧୫ । ରିପୁସମୂହ ପରାଜିତ କରି ଆପଣା ପ୍ରତିଜ୍ଞା ଉତ୍ତୀର୍ଣ୍ଣ ହୁଅନ୍ତୁ । ସେ ସିନ୍ଧୁରାଜର ବଧ ସାଧନ କରି ନ ପାରିଲେ ନିଶ୍ଚୟ ଅଗ୍ନିରେ ପ୍ରବେଶ କରିବେ । ୧୬ ।

ସେ କଦାଚ ଆପଣାର ବାକ୍ୟକୁ ମିଥ୍ୟା କରିବେ ନାହିଁ । ଅର୍ଜ୍ଜୁନ ମୃତ ହେଲେ ରାଜା ଧର୍ମପୁତ୍ର ଯୁଧିଷ୍ଠିର ମଧ୍ୟ ଜୀବିତ ରହିବେ ନାହିଁ, ଯେହେତୁ ସମସ୍ତ ବିଜୟ ଅର୍ଜ୍ଜୁନଙ୍କ ଉପରେ ନିର୍ଭର କରିଅଛି । ଆମ୍ଭେମାନେ

ଯଦି ଦାନ, ହୋମ ବା ଅନ୍ୟ କୌଣସି ପୁଣ୍ୟକର୍ମ କରିଥାଉଁ, ତେବେ ତାହାର ସମୁଦାୟ ଫଳରେ ସବ୍ୟସାଚୀ ଶତ୍ରୁଜୟୀ ହୁଅନ୍ତୁ । ହେ ପ୍ରଭୋ ! ଏହି ପ୍ରକାରେ ଧନଞ୍ଜୟଙ୍କର ଜୟକଥା କଥୋପକଥନ କରୁଁ କରୁଁ ସେମାନଙ୍କର ମହତ୍‌କଷ୍ଟକର ରଜନୀ ଅତୀତ ହେଲା ।

ସେହି ରାତି ମଧ୍ୟରେ ଜନାର୍ଦ୍ଦନ କୃଷ୍ଣ ଜାଗରିତ ହୋଇ ପାର୍ଥଙ୍କର ପ୍ରତିଜ୍ଞା ସ୍ମରଣ କରି ସାରଥି ଦାରୁକଙ୍କ ନିକଟରେ କହିବାକୁ ଆରମ୍ଭ କଲେ—ହେ ଦାରୁକ ! ଅର୍ଜ୍ଜୁନ ପୁତ୍ରଶୋକାର୍ତ୍ତ ହୋଇ "ଆମ୍ଭେ କାଲି, ଜୟଦ୍ରଥକୁ ବଧ କରିବୁଁ" ଏହି କଥା ପ୍ରତିଜ୍ଞା କରିଅଛନ୍ତି । ୨୨ । ଦୁର୍ଯ୍ୟୋଧନଙ୍କର ସମସ୍ତ ଅକ୍ଷୌହିଣୀ ସେନା ଯୁଦ୍ଧରେ ଜୟଦ୍ରଥକୁ ରକ୍ଷା କରିବେ । ଯେପରି କି ଅର୍ଜ୍ଜୁନ ତାହାକୁ ନିହତ କରି ନ ପାରିବେ । ୨୩ । ଏବଂ ସର୍ବାସ୍ତ୍ରବିଧାନଜ୍ଞ ଦ୍ରୋଣ ମଧ୍ୟ ନିଜର ପୁତ୍ର ସହିତ ଜୟଦ୍ରଥକୁ ରକ୍ଷା କରିବେ । ଯୁଦ୍ଧରେ ଦ୍ରୋଣ ଯାହାଙ୍କୁ ରକ୍ଷା କରନ୍ତି, ଦୈତ୍ୟଦାନବମର୍ଦ୍ଦନକାରୀ ପ୍ରଧାନ ବୀର ସହସ୍ରାକ୍ଷ ଇନ୍ଦ୍ର ମଧ୍ୟ ତାହାକୁ ନିହନ୍ତ କରିବାକୁ ଉତ୍ସାହୀ ହେବେ ନାହିଁ, ଅତଏବ ଅର୍ଜ୍ଜୁନ ସୂର୍ଯ୍ୟାସ୍ତକାଳମଧ୍ୟରେ ଯେପରି ଜୟଦ୍ରଥକୁ ବଧ କରିପାରନ୍ତି, ତାହା ଆମ୍ଭେ କାଲି କରିବୁଁ । ଆମ୍ଭର କୁନ୍ତୀପୁତ୍ର ଅର୍ଜ୍ଜୁନ ଅପେକ୍ଷା ସ୍ତ୍ରୀ, ମିତ୍ର, ଜ୍ଞାତି, ବାନ୍ଧବ ବା ଅନ୍ୟ କେହି ପ୍ରିୟତମ ନାହିଁ ।

ହେ ଦାରୁକ ! ଆମ୍ଭେ ଏହି ଜଗତକୁ ମୁହୂର୍ତ୍ତେ ସୁଦ୍ଧା ଅର୍ଜ୍ଜୁନଶୂନ୍ୟ ଅବଲୋକନ କରିପାରିବୁଁ ନାହିଁ । ଫଳତଃ ଅବଶ୍ୟ କାଲି ଧନଞ୍ଜୟ ସଂଗ୍ରାମରେ ଜୟ ଲାଭ କରିବେ । ଆମ୍ଭେ କାଲି ଅର୍ଜ୍ଜୁନନିମିତ୍ତ ଅଶ୍ୱହସ୍ତିସହିତ ସମସ୍ତ କୁରୁସୈନ୍ୟ ଏବଂ କର୍ଣ୍ଣ ଓ ଦୁର୍ଯ୍ୟୋଧନକୁ ପରାଜିତ କରି ସଂହାର କରିବୁଁ । ହେ ଦାରୁକ ! କାଲି ଆମ୍ଭେ ଧନଞ୍ଜୟନିମିତ୍ତ ସମରରେ ପରାକ୍ରମ ପ୍ରକାଶ କରିବୁଁ । ଆମ୍ଭର ବଳବୀର୍ଯ୍ୟପରାକ୍ରମକୁ ତ୍ରିଭୁବନସ୍ଥ ଲୋକମାନେ ନିରୀକ୍ଷଣ କରିବେ । କାଲି ସହସ୍ର ସହସ୍ର ରାଜା ଏବଂ ଶତ ଶତ ରାଜପୁତ୍ର, ଅଶ୍ୱ, ହସ୍ତୀ ଓ ରଥର ସହିତ ସମରରୁ ପଳାୟନ କରିବେ । ତୁମ୍ଭେ ଦେଖିବ ଯେ, କାଲି ଆମ୍ଭେ ପାଣ୍ଡବମାନଙ୍କ ନିମିତ୍ତ ସମରରେ ସଂକ୍ରୁଦ୍ଧ ହୋଇ ନୃପବାହିନୀମାନଙ୍କୁ ଚକ୍ରଦ୍ୱାରା ପ୍ରମଥିତ ଓ ନିପାତିତ କରିବୁଁ ।

ସବ୍ୟସାଚୀ ଯେ, ଆମ୍ଭର ସୁହୃଦ୍, ତାହା କାଲି ଦେବ, ଗନ୍ଧର୍ବ, ପିଶାଚ ଉରଗ ଓ ରାକ୍ଷସ ପ୍ରଭୃତି ସମୁଦାୟ ଲୋକଙ୍କୁ ବିଦିତ ହେବ । ଯେ ଅର୍ଜ୍ଜୁନଙ୍କର ଦ୍ୱେଷ କରେ ସେ ଆମ୍ଭର ଦ୍ୱେଷ କରେ, ଯେ ଅର୍ଜ୍ଜୁନଙ୍କ ଅନୁଗତ ସେ ଆମ୍ଭର ଅନୁଗତ, ଏପରିକି ଅର୍ଜ୍ଜୁନ ଆମ୍ଭର ଅର୍ଦ୍ଧଶରୀର ଏହା ଜାଣିବ । ଅତଏବ ହେ ସୂତ ! ତୁମ୍ଭେ ଏହି ରାତି ପ୍ରଭାତ ହେଲେ ଆମ୍ଭର ଉତ୍ତମ ରଥକୁ ଯତ୍ନପୂର୍ବକ ଯଥାଶାସ୍ତ୍ର ସଜ୍ଜିତ କରି ରଖିବ । କୌମୋଦକୀ ଗଦା, ଦିବ୍ୟ ଶକ୍ତି, ଚକ୍ର ଧନୁ, ଶର ଓ ଅନ୍ୟାନ୍ୟ ସମସ୍ତ ଉପକରଣ ସେହି ରଥରେ ଆରୋପିତ କରିବ ଏବଂ ସମରରେ ଶୋଭମାନ ଆମ୍ଭ ବୀର ଗରୁଡ଼ଧ୍ୱଜର ସ୍ଥାନ ଓ ଛତ୍ର ରଥମାଡ଼ରେ ସୁସଜ୍ଜିତ କରିବ ।

ହେ ଦାରୁକ ! ଅନନ୍ତର ବଳାହକ, ମେଘପୁଷ୍ପ, ଶୈବ୍ୟ ଓ ସୁଗ୍ରୀବ —ଏହି ଚାରିଗୋଟି ଅଶ୍ୱକୁ ବିଶ୍ୱକର୍ମାକୃତ ସୂର୍ଯ୍ୟସମ ସମୁଜ୍ଜ୍ୱଳ ଦିବ୍ୟ ସୁବର୍ଣ୍ଣ ଜାଲରେ ବିଭୂଷିତ କରି ରଥରେ ନିଯୋଜନପୂର୍ବକ ଯତ୍ନବାନ୍ ଓ କବଚୀ ହୋଇ ଅବସ୍ଥାନ କରିବ । ଯେତେବେଳେ ଆମ୍ଭର ଋଷଭସ୍ୱର-ପୂରିତ ଅତିଭୀଷଣ ପାଞ୍ଚଜନ୍ୟନିର୍ଘୋଷ ଶ୍ରବଣ କରିବ, ତତ୍କ୍ଷଣାତ୍ ସେହି ରଥ ଘେନି ଆମ୍ଭ ନିକଟକୁ ଆଗମନ କରିବ । ହେ ଦାରୁକ ! ଆମ୍ଭେ ଏକ ଦିବସ ମଧ୍ୟରେ ଆମ୍ଭର ପିତୃସ୍ୱସ୍ରୀୟ ଭ୍ରାତାର କ୍ରୋଧ ଓ ସମସ୍ତ ଦୁଃଖ ଅପନୀତ କରିବୁଁ । ଧନଞ୍ଜୟ ଯଦ୍ଧିଁରେ ସମୁଦାୟ ଧାର୍ତ୍ତରାଷ୍ଟ୍ରମାନଙ୍କର ସାକ୍ଷାତରେ ଜୟଦ୍ରଥକୁ ନିହତ କରି ପାରନ୍ତି, ଆମ୍ଭେ ସର୍ବୋପାୟରେ ତାହାର ଯତ୍ନ କରିବୁଁ । ହେ ସାରଥେ ! ଧନଞ୍ଜୟ ଯେଉଁମାନଙ୍କ ବଧରେ ଯତ୍ନ କରିବେ, ସେହି ସମସ୍ତ ବ୍ୟକ୍ତିଙ୍କୁ ସେ ନିଶ୍ଚୟ ଜୟ କରିବେ । ଏହା ଆମ୍ଭେ ବିଶେଷରୂପେ ଅବଗତ ଅଛୁଁ । ୪୨ ।

ଦାରୁକ କହିଲେ, ହେ ପୁରୁଷେନ୍ଦ୍ର ! ଆପଣ ଯାହାଙ୍କ ସାରଥ୍ୟ-କାର୍ଯ୍ୟରେ ନିଯୁକ୍ତ ହୋଇ ଅଛନ୍ତି, ତାହାଙ୍କର ପରାଜୟ କି ହେତୁ ହେବ ? ତାହାଙ୍କର ନିଶ୍ଚୟ ଜୟ ହେବ । ଆପଣ ଯେପରି ଆଜ୍ଞା କଲେ, କାଲି ପ୍ରତ୍ୟୂଷରେ ବିଜୟର ଜୟନିମିତ୍ତ ଆମ୍ଭେ ସେହିପରି କରିବୁଁ । ୪୪ ।

# ୮୦ ଅଧ୍ୟାୟ

ସଞ୍ଜୟ ବୋଇଲେ—ଅଚିନ୍ତ୍ୟବିକ୍ରମ କୁନ୍ତୀପୁତ୍ର ଧନଞ୍ଜୟ ଦ୍ରୋଣାଚାର୍ଯ୍ୟପ୍ରଭୃତିକର୍ତ୍ତୃକ ଜୟଦ୍ରଥଙ୍କ ରକ୍ଷାର ମନ୍ତ୍ରଣା ସ୍ମରଣ କରି ଆପଣାର ପ୍ରତିଜ୍ଞା କି ପ୍ରକାରେ ରକ୍ଷିବ, ଏହା ଭାବି ଭାବି ମୋହିତ ହୋଇ ନିଦ୍ରାବିଷ୍ଟ ହେଲେ । ମହାତେଜସ୍ୱୀ କୃଷ୍ଣ ଶୋକାକୁଳ ଅର୍ଜ୍ଜୁନଙ୍କର ନିଦ୍ରାବସ୍ଥାରେ ସ୍ୱପ୍ନରେ ତାହାଙ୍କ ନିକଟରେ ଉପସ୍ଥିତ ହେଲେ । ୨ । ଧର୍ମାତ୍ମା ଧନଞ୍ଜୟ ଯେ ଅବସ୍ଥାରେ ଥାନ୍ତୁ, କୃଷ୍ଣ ତାହାଙ୍କ ନିକଟରେ ଉପନୀତ ହେଲେ । ତାହାଙ୍କୁ ଦେଖିବାମାତ୍ରେ ଭକ୍ତି ଓ ପ୍ରେମପ୍ରଯୁକ୍ତ ଅଭ୍ୟୁତ୍ଥାନ କରିବାକୁ କଦାଚ ଅନ୍ୟଥା କରନ୍ତି ନାହିଁ । ୩ । ଏହିକ୍ଷଣି ସେ ସ୍ୱପ୍ନରେ ମଧ୍ୟ ତାହାଙ୍କୁ ଦେଖି ବସିବାକୁ ଆସନ ଦେଲେ ; କିନ୍ତୁ ସେହି ସମୟରେ ନିଜେ ବସିବାକୁ ଇଚ୍ଛା କଲେ ନାହିଁ ।

ତଦନନ୍ତର ମହାତେଜସ୍ୱୀ କୃଷ୍ଣ ପାର୍ଥଙ୍କର ଅଧ୍ୟବସାୟ ଜାଣିପାରି ଆସନରେ ଉପବିଷ୍ଟ ହୋଇ ତାହାଙ୍କୁ ଏହି କଥା କହିଲେ—ହେ ପାର୍ଥ ! ତୁମ୍ଭେ ବିଷଣ୍ଣ ହୁଅ ନାହିଁ, ଯେହେତୁ କାଳ ଦୁର୍ଜ୍ଜୟ, କାଳହିଁ ସମୁଦାୟ ପ୍ରାଣୀଙ୍କୁ ଅବଶ୍ୟମ୍ଭାବୀ ବିଧିବିଷୟରେ ନିୟମିତ କରେ ।

ହେ ବାଗ୍ମିବର ! ତୁମ୍ଭର କି ନିମିତ୍ତ ବିଷାଦ ହୋଇଅଛି, ତାହା ଆମ୍ଭଙ୍କୁ କୁହ । ବିଦ୍ୱାନ୍ ବ୍ୟକ୍ତିମାନେ କୌଣସି ବିଷୟରେ କଦାଚ ଶୋକ କରନ୍ତି ନାହିଁ । ଶୋକ ହିଁ କାର୍ଯ୍ୟବିନାଶର ମୂଳ । ୭ । ସମ୍ପ୍ରତି ଯେ କାର୍ଯ୍ୟ କର୍ତ୍ତବ୍ୟ, ତାହାର ଅନୁଷ୍ଠାନ କର ; ଯେହେତୁ ଚେଷ୍ଟାହୀନ ବ୍ୟକ୍ତିର ଯେ ଶୋକ, ସେହି ତାହାର ଶତ୍ରୁ ହୋଇଥାଏ । ୮ । ଶୋକାନ୍ୱିତ ହେଲେ ଶତ୍ରୁର ଆନନ୍ଦ ଓ ସ୍ୱଜନ ବାନ୍ଧବମାନଙ୍କର ଦୁଃଖ ଜନ୍ମେ ଏବଂ ନିଜେ ମଧ୍ୟ କ୍ଷୟପ୍ରାପ୍ତ ହୁଏ । ଅତଏବ ତୁମ୍ଭେ ଶୋକାକୁଳ ହୁଅ ନାହିଁ । ୯ ।

ଅପରାଜିତ ବିଦ୍ୱାନ୍ ଅର୍ଜ୍ଜୁନଙ୍କୁ କୃଷ୍ଣ ଏହିରୂପେ କହନ୍ତେ ସେ ତତ୍କାଳେ ଏହି ଅର୍ଥଯୁକ୍ତ କଥା କହିଲେ—ହେ କେଶବ ! ଆମ୍ଭେ 'ଆମ୍ଭ ପୁତ୍ରହନ୍ତା ଜୟଦ୍ରଥକୁ କାଲି ବଧ କରିବୁଁ'—ଏହି ଯେଉଁ ମହତ୍

ପ୍ରତିଜ୍ଞା କରିଅଛୁଁ, ସେହି ପ୍ରତିଜ୍ଞାର ବ୍ୟାଘାତ ନିମିତ୍ତ ଧୃତରାଷ୍ଟ୍ରପକ୍ଷୀୟ ମହାରଥମାନେ ଜୟଦ୍ରଥକୁ ପଛରେ ରକ୍ଷା କରିବେ । ହେ କୃଷ୍ଣ ! ସେମାନଙ୍କର ଦୁର୍ଜ୍ଜୟ ଏକାଦଶାକ୍ଷୌହିଣୀ ସେନା ମଧ୍ୟରୁ ଏକ ଅକ୍ଷୌହିଣୀ ବିନଷ୍ଟ ହୋଇଅଛି । ଅବଶିଷ୍ଟ ଦଶ ଅକ୍ଷୌହିଣୀ ସେନା ଦ୍ୱାରା ପରିବୃତ ହୋଇ ସମୁଦାୟ ମହାରଥୀ ସେହି ଦୁରାତ୍ମାକୁ ପରିବେଷ୍ଟନ କରି ରକ୍ଷା କଲେ ଆମ୍ଭେ କିପ୍ରକାର ତାହାକୁ ଦୃଷ୍ଟିଗୋଚର କରିବୁଁ । ଅତଏବ ହେ କେଶବ ! ଆମ୍ଭର ପ୍ରତିଜ୍ଞା ରକ୍ଷା ହେବ ନାହିଁ । ପ୍ରତିଜ୍ଞା ରକ୍ଷା ନ ହେଲେ ମୋ ସଦୃଶ ବ୍ୟକ୍ତି କିପରି ଜୀବିତ ରହିପାରିବ ? ୧୫ । ହେ ବୀର ! ଦୁଃସାଧ କର୍ମରେ ମୋହର ଆକାଂକ୍ଷା ହୋଇଅଛି । ବିଶେଷତଃ ବର୍ତ୍ତମାନ ସୂର୍ଯ୍ୟଦେବ ଶୀଘ୍ର ଶୀଘ୍ର ଅସ୍ତଗମନ କରୁଥାନ୍ତି । ଏହି ନିମିତ୍ତ ଆମ୍ଭେ ଏହିପରି କହୁଅଛୁଁ । ୧୬ ।

ମହାତେଜା ପଦ୍ମନୟନ ଗରୁଡ଼ଧ୍ୱଜ ଅର୍ଜ୍ଜୁନଙ୍କ ଶୋକବାକ୍ୟ ଶ୍ରବଣ କରି ପୂର୍ବମୁଖରେ ଅବସ୍ଥିତ ହୋଇ ଆଚମନପୂର୍ବକ ଅର୍ଜ୍ଜୁନଙ୍କ ହିତନିମିତ୍ତ ସିନ୍ଧୁରାଜର ବଧବାକ୍ୟରେ ଏହି କଥା କହିଲେ । ୧୮ । ହେ ପାର୍ଥ ! ମହେଶ୍ୱରଦେବ ଯେଉଁ ଅସ୍ତ୍ର ଦ୍ୱାରା ସମରରେ ସମୁଦାୟ ଦୈତ୍ୟଗଣଙ୍କୁ ସଂହାର କରିଥିଲେ, ସେହି ପାଶୁପତନାମକ ସନାତନ ପରମାସ୍ତ୍ର ଯଦି ତୁମ୍ଭଙ୍କୁ ବର୍ତ୍ତମାନ ବିଦିତ ଥାଏ, ତେବେ ତୁମ୍ଭେ କାଲି ଜୟଦ୍ରଥକୁ ନିହତ କରି ପାରିବ ; କିନ୍ତୁ ଯଦି ତୁମ୍ଭଙ୍କୁ ତାହା ଅବିଦିତ ଥାଏ, ତେବେ ତୁମ୍ଭେ ମନେ ମନେ ବୃଷଭଧ୍ୱଜ ମହାଦେବଙ୍କୁ ଚିନ୍ତା କର । ୨୦ । ହେ ଧନଞ୍ଜୟ ! ତୁମ୍ଭେ ଭକ୍ତିପୂର୍ବକ ସେହି ପରମେଶ୍ୱରଙ୍କୁ ଧ୍ୟାନ କରି ଜପ କରୁଥାଅ । ତାହାହେଲେ ତାହାଙ୍କ ପ୍ରସାଦରୁ ତୁମ୍ଭେ ସେହି ମହତ୍ ଅସ୍ତ୍ର ପ୍ରାପ୍ତ ହେବ । ୨୧ ।

ଧନଞ୍ଜୟ କୃଷ୍ଣଙ୍କର ବଚନ ଶ୍ରବଣ କରି ଭୂମିରେ ସମାସୀନ ହୋଇ ଆଚମନପୂର୍ବକ ଏକାଗ୍ରଚିତ୍ତରେ ମହାଦେବଙ୍କୁ ଧ୍ୟାନ କଲେ । ୨୨ । ତଦନନ୍ତର ଶୁଭ ବ୍ରାହ୍ମମୁହୂର୍ତ୍ତରେ ଅର୍ଜ୍ଜୁନ ସମାହିତ ହୋଇ ଗଗନମଣ୍ଡଳରେ ଆପଣାକୁ କୃଷ୍ଣଙ୍କ ସହିତ ଦର୍ଶନ କଲେ । ୨୩ । ସେଠାରେ ଜ୍ୟୋତିଃ-

ପ୍ରଦୀପ୍ତ ଓ ସିଦ୍ଧି-ଚାରଣ ଗଣସେବିତ ହିମବାନ୍ ପର୍ବତର ପୁଣ୍ୟ ପ୍ରତ୍ୟନ୍ତଗିରି ଓ ମଣିମାନ୍ ପର୍ବତ ଦେଖିଲେ । ୨୪ ।

ସେ କେଶବକର୍ତ୍ତୃକ ଦକ୍ଷିଣହସ୍ତରେ ଗୃହୀତ ହୋଇ ତାହାଙ୍କ ସହିତ ବାୟୁବେଗ ଗତିରେ ଆକାଶରେ ଗମନ କଲେ । ୨୫ । ସେହି ଧର୍ମାତ୍ମା ଉତ୍ତର ଦିଗରେ ଅଦ୍ଭୁତଦର୍ଶନ ବହୁବିଧ ଭାବ ଦେଖି ଦେଖି ଗମନ କରିବାବେଳେ ଶ୍ୱେତପର୍ବତ ଅବଲୋକନ କଲେ । ୨୬ । ଅନନ୍ତର କୁବେରଙ୍କର ବିହାରସ୍ଥାନ ବହୁଜଳସମ୍ପନ୍ନା, ସର୍ବଦା ପୁଷ୍ପଫଳସଂଯୁକ୍ତ-ବୃକ୍ଷସମନ୍ୱିତା, ସ୍ଫଟିକସଦୃଶୀ, ସିଂହ-ବ୍ୟାଘ୍ର-ସମାକୀର୍ଣ୍ଣା, ନାନାମୃଗ-ସମାକୁଳା ସ୍ଥାନେ ସ୍ଥାନେ ପୁଣ୍ୟାଶ୍ରମଶୋଭିତା, ମନୋହର ବିହଙ୍ଗକୁଳସେବିତା, ପଦ୍ମଭୂଷିତା, ରମଣୀୟା, ନଳିନୀ ଗଙ୍ଗା ଦେଖିଲେ । ତତ୍ପରେ ସ୍ୱର୍ଣ୍ଣ-ରୌପ୍ୟମୟ ଶୃଙ୍ଗସମୂହ ଦ୍ୱାରା ଶୋଭମାନ ପୁଷ୍ପିତ ମନ୍ଦାରବୃକ୍ଷରେ ଉପଶୋଭିତ ମନ୍ଦରଗିରିର ପ୍ରଦେଶମାନ ତାହାଙ୍କ ନୟନଗୋଚର ହେଲା । ୩୦ ।

ତତ୍ପରେ ସ୍ନିଗ୍ଧ ଅଞ୍ଜନରାଶିସମ କୃଷ୍ଣବର୍ଣ୍ଣ ପର୍ବତ, ବ୍ରହ୍ମତୁଙ୍ଗ ଅନ୍ୟାନ୍ୟ ନଦୀ ଏବଂ ଜନପଦସମସ୍ତ ଦେଖିଲେ । ୩୧ । ଏବଂ ସୁଶୃଙ୍ଗ-ସଂଯୁକ୍ତ ଶତଶୃଙ୍ଗବିଶିଷ୍ଟ ପର୍ବତ, ଶର୍ଯ୍ୟାତି ବନ, ପୁଣ୍ୟ ଅଶ୍ୱଶିରଃସ୍ଥାନ, ଆଥର୍ବଣର ସ୍ଥାନ ଏବଂ ଅପ୍ସରା ଓ କିନ୍ନରଗଣ ଦ୍ୱାରା ଉପଶୋଭିତ ଶୈଳଶ୍ରେଷ୍ଠ ବୃଷଦଂଶ ଓ ମହାମନ୍ଦର ଦୃଷ୍ଟିଗୋଚର କଲେ । ୩୩ । କୃଷ୍ଣଙ୍କ ସହିତ ଅର୍ଜୁନ ସେହି ପର୍ବତକୁ ଗମନ କଲେ । ସେଠାରୁ ଗମନ କଲାବେଳେ ଶୁଭ୍ରପ୍ରସ୍ରବଣସଂଯୁକ୍ତା, ହେମଧାତୁବିଭୂଷିତା, ଚନ୍ଦ୍ରରଶ୍ମିସଦୃଶ ସମୁଜ୍ଜ୍ୱଳାଙ୍ଗୀ, ପୁରରୂପ ମାଳ୍ୟରେ ବିଭୂଷିତା ପୃଥିବୀ ଏବଂ ବହୁଳ ରତ୍ନାଦିର ଆକର ଅଦ୍ଭୁତାକାର ସମୁଦ୍ରାକର ସମୁଦ୍ରସକଳ ଦର୍ଶନ କଲେ । ୩୫ । ତଦନନ୍ତର ନିକ୍ଷିପ୍ତ ବାଣବେଗତୁଲ୍ୟ ବେଗରେ କୃଷ୍ଣଙ୍କ ସହିତ ପାର୍ଥ ବିସ୍ମିତ ହୋଇ ସ୍ୱର୍ଗ, ପୃଥିବୀ ଓ ଆକାଶରେ ଗମନ କଲେ । ୩୬ । ସେଠାରେ ଗ୍ରହ, ନକ୍ଷତ୍ର, ସୋମ, ସୂର୍ଯ୍ୟ ଓ ଅଗ୍ନିତୁଲ୍ୟ ଦୀପ୍ତିମାନ୍ ଗୋଟିଏ ପର୍ବତ ସେମାନଙ୍କର ଦୃଷ୍ଟିଗୋଚର ହେଲା । ୩୭ ।

ସେହି ପର୍ବତକୁ ଗମନ କରି ସେମାନେ ଦେଖିଲେ ଯେ, ଶୈଳର ଅଗ୍ରଭାଗରେ ତପୋନିରତ ମହାତ୍ମା ବୃଷଧ୍ୱଜ ଉପବିଷ୍ଟ ଅଛନ୍ତି । ୩୮ । ଶୂଳଧାରୀ ଜଟିଳ ଶୁଭ୍ରବର୍ଣ୍ଣ ସେହି ଭଗବାନ୍ ମହେଶ୍ୱର ସ୍ୱୀୟ ତେଜରେ ସହସ୍ର ସହସ୍ର ସୂର୍ଯ୍ୟସମାନ ପ୍ରକାଶିତ ଅଛନ୍ତି । ତାହାଙ୍କର ପରିଧାନ ବଲ୍କଳ ଓ ଅଜିନ ଅଟେ ଏବଂ ତାହାଙ୍କ ଅଙ୍ଗ ସହସ୍ର ସହସ୍ର ଚକ୍ଷୁଦ୍ୱାରା ବିଚିତ୍ରରୂପ ଧାରଣ କରିଅଛି । ସେହି ମହାତେଜସ୍ୱୀ ପାର୍ବତୀଙ୍କ ସହିତ ବିରାଜମାନ ହୋଇଅଛନ୍ତି । ବଳ୍ଗିତ ଆସ୍ଫୋଟିତ ଓ ଉତ୍କୃଷ୍ଟ ଏବଂ ଗୀତ-ବାଦ୍ୟ-ଧ୍ୱନିସହିତ ହାସ୍ୟ-ଲାସ୍ୟ-ସମନ୍ୱିତ ଓ ଭାସ୍ୱର ଭୂତସମୂହ ଦ୍ୱାରା ପରିବେଷ୍ଟିତ ହୋଇଅଛନ୍ତି । ପବିତ୍ର ଗନ୍ଧସମୂହରେ ସେ ଶୋଭମାନ ହୋଇଅଛନ୍ତି ଏବଂ ବ୍ରହ୍ମବାଦୀ ମୁନିମାନେ ଦିବ୍ୟ ସ୍ତୁତିଦ୍ୱାରା ସେହି ଧନୁର୍ଦ୍ଧର ଅଚ୍ୟୁତ ଦେବଦେବ ସର୍ବଭୂତରେ ରକ୍ଷୟିତା ମହେଶ୍ୱରଙ୍କର ସ୍ତବ କରୁଅଛନ୍ତି । ୪୨ । ପାର୍ଥଙ୍କ ସହିତ ଧର୍ମାତ୍ମା ବସୁଦେବପୁତ୍ର ତାହାଙ୍କୁ ଦର୍ଶନ କରି ସନାତନ ବ୍ରହ୍ମନାମ ଉଚ୍ଚାରଣପୂର୍ବକ ଭୂତଳରେ ମସ୍ତକ ଅବନତ କରି ପ୍ରଣାମ କଲେ । ୪୩ ।

ସେହି ଲୋକାଦି, ବିଶ୍ୱକର୍ମା, ଜନ୍ମରହିତ, ଈଶାନ, ଅବ୍ୟୟ, ମନର ପରମ ଉତ୍ପତ୍ତିସ୍ଥାନ, ଆକାଶସ୍ୱରୂପ, ବାୟୁସ୍ୱରୂପ, ଜ୍ୟୋତିର୍ନିଧି, ବାରିଧାରାର ସ୍ରଷ୍ଟା, ପୃଥିବୀର ପରମ ପ୍ରକୃତି, ଦେବଦାନବଯକ୍ଷମାନବ-ମାନଙ୍କର ସାଧନ, ଯୋଗର ପରମଧାମ, ବ୍ରହ୍ମଜ୍ଞମାନଙ୍କର ନିଧିରୂପରେ ଦୃଷ୍ଟ, ଚରାଚରର ସ୍ରଷ୍ଟା ଓ ସଂହର୍ତ୍ତା, କାଳସ୍ୱରୂପ କୋପବିଶିଷ୍ଟ, ମହାତ୍ମା, ଶକ୍ର ଓ ସୂର୍ଯ୍ୟର ଗୁଣପ୍ରକାଶକ, ଦେବେଶ୍ୱର ବୃଷଧ୍ୱଜଙ୍କୁ ବାକ୍ୟ, ମନ ଓ ବୁଦ୍ଧି ଦ୍ୱାରା ସ୍ତୁତିପୂର୍ବକ ବନ୍ଦନ କଲେ । ୪୭ । ବିଦ୍ୱାନ୍ ବ୍ୟକ୍ତିମାନେ ସୂକ୍ଷ୍ମ ଅଧ୍ୟାତ୍ମପଦୈଷୀ ହୋଇ ଯାହାଙ୍କୁ ଧ୍ୟାନ କରନ୍ତି, କୃଷ୍ଣାର୍ଜ୍ଜୁନ ଦୁହେଁ ସେହି ଅଜ, କାରଣାତ୍ମା ମହାଦେବଙ୍କର ଶରଣାପନ୍ନ ହେଲେ । ୪୮ । ଅର୍ଜ୍ଜୁନ ମଧ୍ୟ ତାହାଙ୍କୁ ସର୍ବଭୂତର ଆଦି ଏବଂ ଭୂତଭବିଷ୍ୟତ୍‌ବର୍ତ୍ତମାନ-କାଳର ଉତ୍ପାଦକ ଜାଣି ଭୂୟୋଭୂୟୋଽଭିବନ୍ଦନ କଲେ । ୪୯ ।

ତଦନନ୍ତର ସେହି ମହାଦେବ ନର-ନାରାୟଣ ଉଭୟଙ୍କୁ ସମାଗତ ହେବାର ଅବଲୋକନ କରି ସୁପ୍ରସନ୍ନ ମନରେ ହାସ୍ୟପୂର୍ବକ କହିଲେ ।

୫୦ । ହେ ନରଶ୍ରେଷ୍ଠଦ୍ୱୟ ! ତୁମ୍ଭମାନଙ୍କର ଶୁଭାଗମନ ହୋଇଅଛି । ତୁମ୍ଭମାନଙ୍କର ଶ୍ରାନ୍ତି ଦୂର ହେଉ । ତୁମ୍ଭେମାନେ ଗାତ୍ରୋତ୍ଥାନ କର । ହେ ବୀରଦ୍ୱୟ ! ତୁମ୍ଭମାନଙ୍କର ମନରେ କି ଅଭିଳାଷ, ତାହା ଶୀଘ୍ର ବ୍ୟକ୍ତ କର । ୫୧ । ତୁମ୍ଭେମାନେ ଯେ କାର୍ଯ୍ୟ ନିମିତ୍ତ ଆଗମନ କରିଅଛ, ତାହା ଆମ୍ଭେ ସିଦ୍ଧ କରିବୁଁ । ତୁମ୍ଭମାନଙ୍କର ଆତ୍ମଶ୍ରେୟସ୍କର ଯାହା ପ୍ରାର୍ଥନା କରିବ, ତାହା ଆମ୍ଭେ ପ୍ରଦାନ କରିବୁଁ । ୫୨ । ତଦନନ୍ତର ଆନନ୍ଦିତ ମହାମତି ବାସୁଦେବ ଓ ଅର୍ଜ୍ଜୁନ ତାହାଙ୍କର ବାକ୍ୟ ଶ୍ରବଣ କରି ଦଣ୍ଡାୟମାନ ହୋଇ କୃତାଞ୍ଜଳିପୂର୍ବକ ଦିବ୍ୟସ୍ତୁତିବଚନରେ ଏହିରୂପେ ସ୍ତୁତିବଚନ ଆରମ୍ଭ କଲେ । ୫୪ ।

ହେ ପ୍ରଭୋ ! ତୁମ୍ଭେ ଭବ, ସର୍ବ, ରୁଦ୍ର, ବରଦ, ପଶୁପତି, ନିତ୍ୟ, ଉଗ୍ର ଏବଂ କପର୍ଦ୍ଦୀ ; ତୁମ୍ଭଙ୍କୁ ନମସ୍କାର । ୫୫ । ତୁମ୍ଭେ ମହାଦେବ, ଭୀମ, ତ୍ର୍ୟମ୍ବକ, ଶାନ୍ତ, ଈଶାନ, ଭବଘ୍ନ ଏବଂ ଅନ୍ଧକାସୁର ସଂହାରକ ; ତୁମ୍ଭଙ୍କୁ ନମସ୍କାର । ୫୬ । ତୁମ୍ଭେ କୁମାରପିତା, ନୀଳଗ୍ରୀବ, ବେଧା, ପିନାକୀ, ହବିଷ୍ୟ, ସତ୍ୟ ଏବଂ ସର୍ବଦା ବିଭୁ ; ତୁମ୍ଭଙ୍କୁ ନମସ୍କାର । ୫୭ । ତୁମ୍ଭେ ବିଶେଷ ଲୋହିତାଙ୍ଗ, ଧୂମ୍ରରୂପ, ବ୍ୟାଧରୂପ, ଅପରାଜିତ, ନୀଳଚୂଡ଼, ଶୂଳୀ, ଏବଂ ଦିବ୍ୟଚକ୍ଷୁ, ତୁମ୍ଭଙ୍କୁ ନମସ୍କାର । ୫୮ । ତୁମ୍ଭେ ହର୍ତ୍ତା, ଗୋପ୍ତା, ତ୍ରିନେତ୍ର, ବ୍ୟାଧିରୂପ, ବସୁରେତା, ଅଚିନ୍ତ୍ୟ, ଅମ୍ବିକାପତି ଏବଂ ସର୍ବଦେବସ୍ତୁତ, ତୁମ୍ଭଙ୍କୁ ନମସ୍କାର । ୫୯ । ତୁମ୍ଭେ ବୃଷଧ୍ୱଜ, ପିଙ୍ଗ, ଜଟୀ, ବ୍ରହ୍ମଚାରୀ, ସଲିଳରେ ତପସ୍ୟାକାରୀ, ବ୍ରହ୍ମଣ୍ୟ ଏବଂ ଅଜିତ ; ତୁମ୍ଭଙ୍କୁ ନମସ୍କାର । ୬୦ । ତୁମ୍ଭେ ବିଶ୍ୱାତ୍ମା, ବିଶ୍ୱସ୍ରଷ୍ଟା, ବିଶ୍ୱବ୍ୟାପୀ, ତୁମ୍ଭେ ସେବ୍ୟ ଓ ଭୂତମାନଙ୍କର ସଦା ପ୍ରଭୁ ; ତୁମ୍ଭଙ୍କୁ ନମସ୍କାର । ୬୧ ।

ହେ ଶିବ ! ତୁମ୍ଭେ ବେଦମୁଖ, ଶର୍ବ, ଶଙ୍କର, ବାଚସ୍ପତି ଏବଂ ପ୍ରଜାପତି ; ତୁମ୍ଭଙ୍କୁ ନମସ୍କାର । ୬୧ । ତୁମ୍ଭେ ବିଶ୍ୱପତି, ମହତ୍ତମାନଙ୍କର ପତି ଓ ସହସ୍ର ଶିର । ତୁମ୍ଭ କ୍ରୋଧରେ ସହସ୍ର ସହସ୍ର ଜୀବଙ୍କର ସଂହାର ହୁଏ ଏବଂ ତୁମ୍ଭେ ସହସ୍ରନେତ୍ର ଓ ସହସ୍ରପାଦ ; ତୁମ୍ଭଙ୍କୁ ନମସ୍କାର । ହେ ଭବ ! ତୁମ୍ଭେ ଅସଂଖ୍ୟକର୍ମା, ହିରଣ୍ୟବର୍ଣ୍ଣ, ହିରଣ୍ୟକବଚ ଓ ନିତ୍ୟ ଭକ୍ତାନୁକମ୍ପୀ, ତୁମ୍ଭେ ଆମ୍ଭ ଉଭୟଙ୍କର ପ୍ରାର୍ଥନା ସିଦ୍ଧ କର ।୬୪। ସଞ୍ଜୟ

କହିଲେ, ବାସୁଦେବ ଓ ଅର୍ଜ୍ଜୁନ ସେହି ସମୟରେ ଅସ୍ତ୍ରଲାଭନିମିତ୍ତ ଭବ ମହାଦେବଙ୍କୁ ଏହିରୂପେ ସ୍ତବ କରି ପ୍ରସନ୍ନ କଲେ । ୭୫ ।

---

# ୮୧ ଅଧ୍ୟାୟ

ସଞ୍ଜୟ କହିଲେ—ଅନନ୍ତର ଅର୍ଜ୍ଜୁନ ପ୍ରୀତମନା ହୋଇ ପ୍ରଫୁଲ୍ଲ ନୟନରେ ସେହି ତେଜର ସମସ୍ତ ନିଧିସ୍ୱରୂପ ବୃଷଧ୍ୱଜ ମହାଦେବଙ୍କୁ ଦର୍ଶନ କଲେ । ୧ । ଏବଂ ସେହି ଅବଶ୍ୟାନୁଷ୍ଠେୟ ନିଶାବହିତ ଆତ୍ମକୃତ ଯେ ଉପହାର କୃଷ୍ଣଙ୍କୁ ନିବେଦନ କରିଥିଲେ, ତାହା ଶିବଙ୍କ ନିକଟରେ ଦେଖିଲେ । ୨ ।

ତଦନନ୍ତର ପାଣ୍ଡୁନନ୍ଦନ ଅର୍ଜ୍ଜୁନ ଶଙ୍କର ଓ କୃଷ୍ଣଙ୍କୁ ମନେ ମନେ ପୂଜା କରି ଶଙ୍କରଙ୍କୁ କହିଲେ, ଆମ୍ଭେ ଦିବ୍ୟ ଅସ୍ତ୍ର ଲାଭ କରିବାକୁ ଇଚ୍ଛା କରୁଁ । ୩ । ପ୍ରଭୁ ମହାଦେବ ଅର୍ଜ୍ଜୁନଙ୍କର ବରପ୍ରାର୍ଥନା କଥା ଶୁଣି ହାସ୍ୟ-ପୂର୍ବକ କୃଷ୍ଣାର୍ଜ୍ଜୁନଙ୍କୁ କହିଲେ—ହେ ନରଶ୍ରେଷ୍ଠଦ୍ୱୟ ! ତୁମ୍ଭମାନଙ୍କର ଆଗମନ ଶୁଭ ହୋଇଅଛି । ତୁମ୍ଭମାନଙ୍କର ମନୋଭିଳାଷ ଜ୍ଞାତ ହେଲୁଁ, ତୁମ୍ଭେମାନେ ଯେ ଅଭିଳାଷରେ ଆଗମନ କରିଅଛ, ତାହା ଆମ୍ଭେ ପ୍ରଦାନ କରୁଅଛୁଁ । ୪ । ହେ ଶତ୍ରୁସୂଦନଦ୍ୱୟ ! ଏହି ସ୍ଥାନର ଅତି ସନ୍ନିକଟରେ ଗୋଟିଏ ଅମୃତମୟ ଦିବ୍ୟ ସରୋବର ଅଛି । ସେହି ସରୋବରରେ ଦିବ୍ୟ ଧନୁ ଓ ଶର ପୂର୍ବରୁ ନିହିତ ଅଛି । ୬ । ସେହି ଦିବ୍ୟାସ୍ତ୍ର ଦ୍ୱାରା ଆମ୍ଭେ ସୁରଶତ୍ରୁ ଓ ଅସୁରଗଣଙ୍କୁ ସଂଗ୍ରାମରେ ସଂହାର କରିଅଛୁଁ । ତୁମ୍ଭେମାନେ ସେହି ଉତ୍ତମ ଶର ଓ ଶରାସନକୁ ସେହି ସରୋବରରୁ ଆନୟନ କର । ୭ ।

କୃଷ୍ଣାର୍ଜ୍ଜୁନ ଦୁଇ ବୀର "ଯଥା ଆଜ୍ଞା" ବୋଲି କହି ଭଗବାନ୍ ଦେବଦେବଙ୍କର ପାରିଷଦମାନଙ୍କ ସହିତ ଦିବ୍ୟାଶ୍ଚର୍ଯ୍ୟ ବସ୍ତୁସମାବୃତ ସେହି ଦିବ୍ୟ ସରୋବରକୁ ଅସ୍ତ୍ରନିମିତ୍ତ ପ୍ରସ୍ଥାନ କଲେ । ୮ । ବୃଷଧ୍ୱଜ ଦେବଦେବ ସର୍ବାର୍ଥସାଧନ ଯେଉଁ ପୁଣ୍ୟ ସରୋବରକୁ ନିର୍ଦ୍ଦିଷ୍ଟ କରିଦେଲେ, ନରନାରାୟଣ ଦୁଇ ଋଷି ଅସମ୍ଭ୍ରାନ୍ତଚିତ୍ତରେ ସେଠାକୁ ଗମନ କଲେ । ସେମାନେ ସୂର୍ଯ୍ୟ-

ମଣ୍ଡଳସନ୍ନିଭ ସେହି ସରୋବରରେ ଉପଗତ ହୋଇ ଦେଖିଲେ ଯେ, ଜଳମଧ୍ୟରେ ଭୟଙ୍କର ଦୁଇଗୋଟି ଭୁଜଙ୍ଗ ଅଛନ୍ତି । ୧୦ । ଏହି ଦୁଇଗୋଟି ନାଗର ସହସ୍ରେ ଲେଖାଏଁ ମସ୍ତକ । ସେମାନେ ଅଗ୍ନିସମ ତେଜଃସମ୍ପନ୍ନ ଓ ଶ୍ରେଷ୍ଠ ଏବଂ ବିଶାଳ ଜ୍ୱାଳା ବମନ କରୁଅଛନ୍ତି । ୧୧ ।

ତଦନନ୍ତର ବେଦଜ୍ଞ କୃଷ୍ଣାର୍ଜ୍ଜୁନ ଦୁହେଁ ଆଚମନ କରି କୃତାଞ୍ଜଳିପୁଟରେ ସେମାନଙ୍କ ନିକଟରେ ଦଣ୍ଡାୟମାନ ହୋଇ ଓ ସର୍ବାତ୍ମଭାବରେ ଅପ୍ରମେୟ ବୃଷଧ୍ୱଜ, ଭବଦେବଙ୍କର ଶରଣାପନ୍ନ ହୋଇ ପ୍ରଣତିପୂର୍ବକ ଶତରୁଦ୍ରୀୟ ଶ୍ରୁତି (ସ୍ତୁତି) ପାଠ କଲେ । ୧୩ । ତତ୍ପରେ ସେହି ଦୁଇ ମହାସର୍ପ ରୁଦ୍ରମାହାତ୍ମ୍ୟହେତୁରୁ ନିଜ ନିଜ ରୂପ ପରିତ୍ୟାଗ କରି ଶତ୍ରୁନିବାରଣ ଧନୁର୍ବାଣରୂପକୁ ଧାରଣ କଲେ । ୧୪ । ମହାତ୍ମା ବାସୁଦେବ ଓ ଧନଞ୍ଜୟ ତାହା ଦେଖି ପ୍ରୀତ ହୋଇ ସେହି ପ୍ରଭାସମ୍ପନ୍ନ ଧନୁର୍ବାଣକୁ ଗ୍ରହଣ କରି ଆନୟନ କଲେ ଓ ମହାତ୍ମା ମହାଦେବଙ୍କୁ ତାହା ପ୍ରଦାନ କଲେ । ୧୫ । ସେହି ସମୟରେ ପିଙ୍ଗଳଲୋଚନ, ନୀଳଲୋହିତବର୍ଣ୍ଣ ତପସ୍ୟାର ଆଧାରସ୍ୱରୂପ ଜଣେ ବ୍ରହ୍ମଚାରୀ ବଳବାନ୍ ପୁରୁଷ ବୃଷଧ୍ୱଜଙ୍କର ପାର୍ଶ୍ୱରୁ ନିର୍ଗତ ହୋଇ ସେହି ଶ୍ରେଷ୍ଠ ଧନୁର୍ବାଣକୁ ଗ୍ରହଣ କଲେ ।

ଅନନ୍ତର ସେ ବାମପାଦ ଅଗ୍ରେ କରି ଆକୁଞ୍ଚିତ ଓ ଦକ୍ଷିଣପାଦ ପଶ୍ଚାତ୍ ପ୍ରସାରଣ କରି ଈଷତ୍ ସଙ୍କୁଚିତ କରି ସମାହିତ ହୋଇ ଦଣ୍ଡାୟମାନ ହୋଇ ଶରାସନକୁ ଯଥାବିଧି ଆକର୍ଷଣ କଲେ । ୧୭ । ସେହି ସମୟରେ ଅଚିନ୍ତ୍ୟବିକ୍ରମ ଅର୍ଜ୍ଜୁନ କି ପ୍ରକାରେ ମୌର୍ବୀ ଆକର୍ଷଣ କରିବାକୁ ହୁଏ, କିରୂପ ମୁଷ୍ଟିଦ୍ୱାରା ଶରାସନ ଧରିବାକୁ ହୁଏ ଓ କିପରି ପାଦସଂସ୍ଥାପନ କରି ଦଣ୍ଡାୟମାନ ହେବାକୁ ହୁଏ, ସେସମସ୍ତ ଦେଖିଲେ ଓ ଶିବୋକ୍ତ ମନ୍ତ୍ର ଗ୍ରହଣ କରି ତାହାକୁ ଗ୍ରହଣ କଲେ । ୧୮ ।

ସେହି ଅତିବଳବାନ୍ ଶିର ପ୍ରଭୁ ବ୍ରହ୍ମଚାରୀ ସେହି ବାଣକୁ ସେହି ସରୋବରରେ ମୋଚନ କଲେ । ଅନନ୍ତର ସେହି ଶରାସନକୁ ମଧ୍ୟ ପୁନର୍ବାର ସେହି ସରୋବରରେ ନିକ୍ଷେପ କଲେ । ୧୯ । ତଦନନ୍ତର ସ୍ମରଣଶକ୍ତିମାନ୍ ଅର୍ଜ୍ଜୁନ ମହାଦେବଙ୍କୁ ପ୍ରସନ୍ନ ହେବାର ଜାଣି "ଅରଣ୍ୟରେ ଶଙ୍କର ଯେ

ଆମ୍ଭଙ୍କୁ ଦର୍ଶନ ଓ ବର ଦେଇଥିଲେ, ତାହା ଆମ୍ଭର ସୁସିଦ୍ଧ ହେଉ” ବୋଲି ମନେ ମନେ ଚିନ୍ତା କଲେ । ମହାଦେବ ତାହାଙ୍କର ମନୋଭିଷ୍ଟ ଅବଗତ ହୋଇ ଭୀଷଣ ପାଶୁପତ ଅସ୍ତ୍ର ଓ ପ୍ରତିଜ୍ଞାରୁ ଉତ୍ତୀର୍ଣ୍ଣ ହେବାର ବର ପ୍ରଦାନ କଲେ । ଦୁର୍ଦ୍ଧର୍ଷ ଅର୍ଜ୍ଜୁନ ଈଶ୍ୱର ମହାଦେବଙ୍କଠାରୁ ପୁନର୍ବାର ପାଶୁପତାସ୍ତ୍ର ପ୍ରାପ୍ତ ହୋଇ ଲୋମାଞ୍ଚିତ ହେଲେ ।

ଅନନ୍ତର ସେ ଆପଣାକୁ କୃତକାର୍ଯ୍ୟ ହେଲି ବୋଲି ମନେ କଲେ । ମହା ଅସୁରବିନାଶୀ ଇନ୍ଦ୍ର ଓ ବିଷ୍ଣୁ ଯେପରି ମହେଶ୍ୱରଙ୍କ ଅନୁମତି ଗ୍ରହଣ କରି ଜମ୍ଭାସୁରର ବଧାଭିଳାଷରେ ଗମନ କରିଥିଲେ, ସେହିପରି କୃଷ୍ଣାର୍ଜ୍ଜୁନ ଦୁଇ ବୀର ସନ୍ତୁଷ୍ଟଚିତ୍ତରେ ମହେଶ୍ୱରଙ୍କୁ ବନ୍ଦନା କରି ତତ୍‌କ୍ଷଣାତ୍ ତାହାଙ୍କର ଅନୁଜ୍ଞା ଗ୍ରହଣପୂର୍ବକ ପରମ ପ୍ରମୁଦିତ ହୋଇ ଶିବିରକୁ ଗମନ କଲେ । ୨୫ ।

---

## ୮୨ ଅଧ୍ୟାୟ

ସଞ୍ଜୟ ବୋଇଲେ—ହେ ନୃପାଳ ! କୃଷ୍ଣ ଓ ଦାରୁକଙ୍କର ସେହିରୂପେ କଥାବାର୍ତ୍ତା ହେଉ ହେଉ ରଜନୀ ପ୍ରଭାତ ହେଲା । ରାଜା ଯୁଧିଷ୍ଠିର ନିଦ୍ରାରୁ ପ୍ରବୋଧିତ ହେଲେ । ୧ । ଠିକେ ବେଳେ ପାଣି-ସ୍ୱନକ ଯେଉଁମାନେ କି କରତାଳଧ୍ୱନି ତାଳମିଶ୍ରିତ ଗୀତ ଗାନ କରନ୍ତି ; ମାଗଧ, ଯେଉଁମାନେ କି ବଂଶକୀର୍ତ୍ତନ କରନ୍ତି ; ମାଧୁପର୍କିକ, ଯେଉଁମାନେ କି ମଧୁପର୍କ ସମୟରେ ସ୍ତୁତି ଗାନ କରନ୍ତି ; ବୈତାଳିକ, ଯେଉଁମାନେ ରାଜ୍ୟମାନଙ୍କୁ ଜାଗରଣ କରାଇବାଲାଗି ପ୍ରାତଃକାଳରେ ସ୍ତୁତିପାଠ କରନ୍ତି ଓ ସୂତ, ଯେଉଁମାନେ କି ପୁରାଣବକ୍ତା—ଏମାନେ ସମସ୍ତେ ପୁରୁଷଶ୍ରେଷ୍ଠ ମହାରାଜ ଯୁଧିଷ୍ଠିରଙ୍କୁ ସ୍ତବ କଲେ । ୨ । ଗାୟକ ଓ ନର୍ତ୍ତକମାନେ ରାଗରାଗିଣୀମିଶ୍ରିତ ମଧୁରସ୍ୱରରେ କୁରୁବଂଶର ସ୍ତୁତିସୂଚକ ଗୀତ ଓ ନୃତ୍ୟ ଆରମ୍ଭ କଲେ ।୩। ବାଦ୍ୟଦକ୍ଷ ସୁଶିକ୍ଷିତ ବାଦ୍ୟକାରମାନେ ସୁପ୍ରହୃଷ୍ଟ ହୋଇ ମୃଦଙ୍ଗ, ଝର୍ଝର, ଭେରୀ, ପଣବ, ଆନକ, ଗୋମୁଖ, ଆଡ଼ମ୍ବର, ଶଙ୍ଖ, ମହାସ୍ୱନ ଦୁନ୍ଦୁଭି, ଓ

ଅନ୍ୟାନ୍ୟ ବାଦ୍ୟଯନ୍ତ୍ରମାନଙ୍କୁ ବାଦିତ କଲେ । ୫ । ସେହି ମେଘଗର୍ଜ୍ଜନସଦୃଶ ନିର୍ଘୋଷ ଗଗନ ସ୍ପର୍ଶ କଲା । ତଦ୍ଦ୍ୱାରା ମହାରାଜ ଯୁଧିଷ୍ଠିର ନିଦ୍ରାରୁ ପ୍ରବୁଦ୍ଧ ହେଲେ ।

ସେ ମହାର୍ହ ଶଯ୍ୟାରେ ନିଦ୍ରିତ ଥିଲେ, ଜାଗରିତ ହୋଇ ଗାତ୍ରୋତ୍ଥାନପୂର୍ବକ ଆବଶ୍ୟକ କାର୍ଯ୍ୟନିମିତ୍ତ ସ୍ନାନାଗାରକୁ ଗମନ କଲେ । । ୭ । ତଦନନ୍ତର ଶୁକ୍ଳବସ୍ତ୍ରପରିଧାୟୀ ଓ ପବିତ୍ର ବେଶ ଧରି ଏକଶତ ଆଠ ଜଣ ସ୍ନାପକ ଯୁବା ପୁରୁଷ ଜଳପୂର୍ଣ୍ଣ କାଞ୍ଚନମୟ ବହୁ କୁମ୍ଭ ନେଇ ରାଜା ଯୁଧିଷ୍ଠିରଙ୍କୁ ସ୍ନାନ କରାଇବାପାଇଁ ସମୁପସ୍ଥିତ ହେଲେ । ୮ । ପରେ ମହାରାଜ ଯୁଧିଷ୍ଠିର ଲଘୁବସ୍ତ୍ର ପରିଧାନ କରି ନୃପାସନରେ ଉପବିଷ୍ଟ ହୋଇ ଚନ୍ଦନସଂଯୁକ୍ତ ଅଭିମନ୍ତ୍ରିତ ଜଳରେ ସ୍ନାନ କଲେ । ୯ । ସୁଶିକ୍ଷିତ ବଳବାନ୍ ଭୃତ୍ୟମାନେ କଷାୟଦ୍ରବ୍ୟଦ୍ୱାରା ତାହାଙ୍କର ଶରୀର-ମଳାପନୟନପୂର୍ବକ ଅଧିବାସିତ ସୁଗନ୍ଧଜଳରେ ଗାତ୍ରମାର୍ଜନା କରିଦେଲେ । ୧୦ ।

ଅନନ୍ତର ସେହି ମହାଭୁଜ ମହାରାଜଙ୍କ ମସ୍ତକରେ ଜଳଶୋଷଣାର୍ଥ ରାଜହଂସସନ୍ନିଭ ଶୁଭ୍ର ଉଷ୍ଣୀଷ ଶିଥିଳରୂପେ ଅର୍ପଣ କଲେ ଏବଂ ମନୋହର ଚନ୍ଦନରେ ଅଙ୍ଗ ଉପଲେପନ ଏବଂ ସୁଖସେବ୍ୟ ବସନ ଓ ମାଲ୍ୟ ପରିଧାନ କରି ପ୍ରାଙ୍‌ମୁଖ ଓ ପ୍ରାଞ୍ଜଳି ହୋଇ ଉପବେଶନ କଲେ ଓ ସାଧୁମାନଙ୍କର ଆଚରିତ ଆହ୍ନିକକୃତ୍ୟ ଅନୁଷ୍ଠାନ କରି ଜପ୍ୟ ମନ୍ତ୍ର ଜପ କଲେ । ତତ୍ପରେ ବିନୀତ ଭାବରେ ପ୍ରଦୀପ୍ତ ଅଗ୍ନିହୋତ୍ରଗୃହରେ ପ୍ରବେଶ କରି ସେଠାରେ ମନ୍ତ୍ରପୂତ ଆହୁତି ଓ ସୁପବିତ୍ର ସମିଧ ପ୍ରଦାନଦ୍ୱାରା ହୁତାଶନଙ୍କର ଅର୍ଚ୍ଚନା କରି ସେହି ଗୃହରୁ ନିଷ୍କ୍ରାନ୍ତ ହେଲେ । ୧୪ ।

ପୁରୁଷପ୍ରଧାନ ମହାରାଜ ଯୁଧିଷ୍ଠିର ତଦନନ୍ତର ଦ୍ୱିତୀୟ କକ୍ଷକୁ ଗମନ କରି ଦେଖିଲେ ଯେ, ସେଠାରେ ସହସ୍ର ଅନୁଚର ବେଷ୍ଟିତ ବେଦଜ୍ଞ, ବୃଦ୍ଧ, ଦମଗୁଣସମ୍ପନ୍ନ, ବେଦବ୍ରତ, ସ୍ନାତ ଓ ଅବଭୃଥ ସ୍ନାତ ଶ୍ରେଷ୍ଠ ବ୍ରାହ୍ମଣମାନେ ଏବଂ ତଦ୍ଭିନ୍ନ ଅଷ୍ଟାଧିକସହସ୍ର ସୂର୍ଯ୍ୟୋପାସକ ବ୍ରାହ୍ମଣ ରହିଅଛନ୍ତି । ୧୬ । ମହାଭୁଜ ମହାରାଜ ଧର୍ମରାଜ ସେହି ସମସ୍ତ ବ୍ରାହ୍ମଣଙ୍କୁ ଅକ୍ଷତ, ପୁଷ୍ପ, ମଧୁଦ୍ରବ୍ୟ ଓ ସୁମଙ୍ଗଳ ଅଭୀଷ୍ଟ ଫଳଦ୍ୱାରା ସ୍ୱସ୍ତିବାଚନ କରାଇ

ପ୍ରତ୍ୟେକ ବ୍ରାହ୍ମଣଙ୍କୁ ସୁବର୍ଣ୍ଣ, ନିଷ୍କ, ଅଳଙ୍କାରଭୂଷିତ ଏକ ଏକଶତ ଅଶ୍ୱ, ବସ୍ତ୍ର ଏବଂ କେତେଗୁଡ଼ିଏ ହେମଶୃଙ୍ଗ ଓ ରୌପ୍ୟଖୁରଯୁକ୍ତା ସବତ୍ସା କପିଳା ଦୋଗ୍ଧ୍ରୀ ଗବୀଙ୍କୁ ଅଭିଳଷିତ ଦକ୍ଷିଣା ସହିତ ପ୍ରଦାନ କରି ପ୍ରଦକ୍ଷିଣ କଲେ । ୧୯ ।

ଅନନ୍ତର ସ୍ୱସ୍ତିକ, ବର୍ଦ୍ଧମାନ, ନନ୍ଦ୍ୟାବର୍ତ୍ତ, କାଞ୍ଚନ, ମାଲ୍ୟ, ଜଳପୂର୍ଣ୍ଣ କୁମ୍ଭ, ପ୍ରଜ୍ୱଳିତ ଅଗ୍ନି, ପରିପୂର୍ଣ୍ଣ ଅକ୍ଷତପାତ୍ର, ରୁଚକ, ଗୋରୋଚନା, ସିନ୍ଦୂର, ଅଳଂକୃତା ଶୁଭଲକ୍ଷଣସମ୍ପନ୍ନା କନ୍ୟାଗଣ, ଦଧି, ଘୃତ, ମଧୁ , ଉଦକ ଓ ମଙ୍ଗଳସୂଚକ ପକ୍ଷିସମୂହ—ଏହି ସମସ୍ତ ମାଙ୍ଗଲ୍ୟଦ୍ରବ୍ୟ ଓ ତଦ୍ଭିନ୍ନ ଅନ୍ୟାନ୍ୟ ପୂଜିତ ବସ୍ତୁମାନ ଦର୍ଶନ ଓ ସ୍ପର୍ଶନ କରି ବହିଃକକ୍ଷାକୁ ଆଗମନ କଲେ । ୨୨ । ସେହି ମହାବାହୁ ସେଠାକୁ ଆସି ଉପସ୍ଥିତ ହେବାମାତ୍ର ପରିଚାରକମାନେ ବିଶ୍ୱକର୍ମାନିର୍ମିତ ମୁକ୍ତାବୈଦୂର୍ଯ୍ୟମଣି-ମଣ୍ଡିତ ଉତ୍କୃଷ୍ଟ ଆସ୍ତରଣାସ୍ତୀର୍ଣ୍ଣ ଉତ୍ତରଚ୍ଛଦ-ସମନ୍ୱିତ ସମୃଦ୍ଧିବିଶିଷ୍ଟ ସର୍ବତୋଭଦ୍ର ଦିବ୍ୟ ସିଂହାସନ ପ୍ରଦତ୍ତ କଲେ । ୨୪ ।

ମହାତ୍ମା ଧର୍ମରାଜ, ସିଂହାସନରେ ସମୁପବିଷ୍ଟ ହୁଅନ୍ତେ ଭୃତ୍ୟମାନେ ମହାମୂଲ୍ୟ ଶୁଭ୍ର ଭୂଷଣସମସ୍ତ ତାହାଙ୍କର ଯଥାଯୋଗ୍ୟ ଅଙ୍ଗରେ ପରିଧାନ କରାଇଦେଲେ । ୨୫ । ହେ ମହାରାଜ ! କୁନ୍ତୀପୁତ୍ର ମହାତ୍ମା ଯୁଧିଷ୍ଠିର ମୁକ୍ତାଭରଣାଦିଦ୍ୱାରା ବେଶଭୂଷାରେ ଅଳଙ୍କୃତ ହେଲାରୁ ତାହାଙ୍କର ରୂପସୌଷ୍ଠବ ଶତ୍ରୁମାନଙ୍କର ଶୋକବର୍ଦ୍ଧକ ହେଲା । ୨୬ । ଭୃତ୍ୟମାନେ ତାହାଙ୍କ ଉପରେ ହେମଦଣ୍ଡଶୋଭିତ ଚନ୍ଦ୍ରରଶ୍ମିପ୍ରଭ ପାଣ୍ଡୁରବର୍ଣ୍ଣ ଚାମର ବ୍ୟଜନ କରିବାକୁ ଆରମ୍ଭ କଲେ । ଯୋଧିଷ୍ଠିର ଶୁଭ୍ର ଚାମରାନ୍ଦୋଳନହେତୁରୁ ସେ ବିଦ୍ୟୁତ୍‌ମେଘସଦୃଶ ଶୋଭମାନ ହେଲେ । ୨୭ । ସୂତମାନେ ତାହାଙ୍କର ସ୍ତବ କଲେ । ବନ୍ଦୀମାନେ ତାହାଙ୍କର ବନ୍ଦନା କଲେ ଏବଂ ଗନ୍ଧର୍ବସଦୃଶ ଗାୟକମାନେ ତାହାଙ୍କ ସ୍ତୁତିସୂଚକ ଗୀତ ଗାୟନ କଲେ । ୨୮ ।

ଅନନ୍ତର ମୁହୂର୍ତ୍ତକ ପରେ ଦନ୍ତୀମାନଙ୍କର ମହାଶବ୍ଦ, ରଥମାନଙ୍କର ନେମିନିର୍ଘୋଷ, ଅଶ୍ୱମାନଙ୍କର ଖୁରଧ୍ୱନି ପ୍ରଭୃତି ମହାଶବ୍ଦ ସମୁତ୍ଥିତ

ହେଲା । ୨୯ । ଗଜଘଣ୍ଟାର ରବ, ଶଙ୍ଖଧ୍ୱନି ଓ ମାନବମାନଙ୍କର ପଦ-ଶବ୍ଦରେ ମେଦିନୀ କମ୍ପିତ ହେଲା ।୩୦। ଅନନ୍ତର କୁଣ୍ଡଳଧାରୀ, ସନଦ୍ଧକବଚ ବଦ୍ଧନିସ୍ତ୍ରିଂଶ ଗୋଟିଏ ଯୁବା ଦୌବାରିକ ସର୍ବସାଧାରଣଙ୍କ ଅଗମ୍ୟ ସେହି ରାଜସଭାକୁ ଆଗମନ କରି ଜାନୁଦ୍ୱୟରେ ଭୂତଳ ସ୍ପର୍ଶ କରି ଅବସ୍ଥିତ ହେଲେ ଓ ବନ୍ଦନୀୟ ପୃଥିବୀପତି ମହାତ୍ମା ଧର୍ମପୁତ୍ରଙ୍କୁ ଅବନତ ମସ୍ତକରେ ବନ୍ଦନା କରି ପ୍ରଣତିପୂର୍ବକ ନିବେଦନ କଲେ ଯେ, ହେ ମହାରାଜ ! ହୃଷୀକେଶ ସମାଗତ ହୋଇଅଛନ୍ତି । ପୁରୁଷଶ୍ରେଷ୍ଠ ମହାରାଜ ଯୁଧିଷ୍ଠିର ଆଜ୍ଞା କଲେ ଯେ, ମାଧବଙ୍କୁ ସ୍ୱାଗତସମ୍ଭାଷଣ ସହିତ ପରମୋତ୍କୃଷ୍ଟ ଅର୍ଘ୍ୟ ଓ ଆସନ ପ୍ରଦାନ କର । ତଦନନ୍ତର ମହାରାଜ ଯୁଧିଷ୍ଠିର ବୃଷ୍ଣିନନ୍ଦନ କୃଷ୍ଣଙ୍କୁ ସମୀପକୁ ଆନୟନପୂର୍ବକ ଶ୍ରେଷ୍ଠ ଆସନରେ ଉପବେଶନ କରାଇଲେ । ଅନନ୍ତର କୃଷ୍ଣ ଯୁଧିଷ୍ଠିରଙ୍କୁ ସତ୍କାର କଲେ ଓ ଯୁଧିଷ୍ଠିର ମଧ୍ୟ ତାହାଙ୍କୁ ଅର୍ଚ୍ଚନା କରି ଜିଜ୍ଞାସା କଲେ । ୩୪ ।

---

## ୮୩ ଅଧ୍ୟାୟ

କୁନ୍ତୀପୁତ୍ର ରାଜା ଯୁଧିଷ୍ଠିର ପରମପ୍ରୀତ ହୋଇ ଦେବକୀନନ୍ଦନ ଜନାର୍ଦ୍ଦନଙ୍କୁ ପ୍ରତିନନ୍ଦିତ କରି କହିଲେ । ୧ । ହେ ମଧୁସୂଦନ ! ସୁଖରେ ତୁମ୍ଭର ରଜନୀଯାପନ ହୋଇଅଛି ତ ? ତୁମ୍ଭର ସମସ୍ତ ବିଷୟକ ଜ୍ଞାନ ପ୍ରସନ୍ନ ଅଛି ତ ? ୨ । ଅନନ୍ତର ବସୁଦେବନନ୍ଦନ କୃଷ୍ଣ ମଧ୍ୟ ଯୁଧିଷ୍ଠିରଙ୍କୁ ତଦ୍ରୂପ ଯୁକ୍ତ କଥା ପଚାରିଲେ ।

ସେ ଦୁହେଁ କଥୋପକଥନ କରୁଅଛନ୍ତି, ଏମନ୍ତ ସମୟରେ ସାରଥି ଆଗମନ କରି ନିବେଦନ କଲା ଯେ, ହେ ମହାରାଜ ! ସମସ୍ତ ବୀର ଆଗମନ କରିଅଛନ୍ତି । ୩ । ଅନନ୍ତର ସାରଥି ମହାରାଜ ଯୁଧିଷ୍ଠିରଙ୍କ ଆଜ୍ଞାନୁସାରେ ସେମାନଙ୍କୁ ପ୍ରବେଶ କରାଇଲେ । ବିରାଟ, ଭୀମସେନ, ଧୃଷ୍ଟଦ୍ୟୁମ୍ନ, ସାତ୍ୟକ, ଚେଦିପତି, ଧୃଷ୍ଟକେତୁ, ଦ୍ରୁପଦ, ଶିଖଣ୍ଡୀ, ନକୁଳ, ସହଦେବ, ଚେକିତାନ, କେକୟାଧିପ, କୁନ୍ତୀକୁଳସମ୍ଭୂତ ଯୁଯୁତ୍ସୁ, ପାଞ୍ଚାଲ୍ୟ, ଉତ୍ତମୌଜା ଓ

ଯୁଧାମନ୍ୟୁ, ସୁବାହୁ, ଦ୍ରୌପଦୀପୁତ୍ରସମସ୍ତ ଏବଂ ଅପରାପର ବହୁ କ୍ଷତ୍ରିୟ ରାଜାଜ୍ଞାନୁସାରେ ସାରଥିକର୍ତ୍ତୃକ ପ୍ରବେଶିତ ହେଲେ ଓ ସେଠାରେ ଉପସ୍ଥିତ ହୋଇ ପୃଥକ୍ ପୃଥକ୍ ଶୁଭ୍ରାସନରେ ଉପବେଶନ କଲେ । ୭ । ମହାବଳଶାଳୀ ମହାତେଜସ୍ୱୀ ମହାତ୍ମା କୃଷ୍ଣ ଓ ସାତ୍ୟକି ଏ ଦୁଇ ବୀର ଏକାସନରେ ଉପବେଶନ କଲେ । ୮ ।

ତତ୍ପରେ ରାଜା ଯୁଧିଷ୍ଠିର ସେହିସମସ୍ତ କ୍ଷତ୍ରିୟଙ୍କ ସମକ୍ଷରେ କମଳଲୋଚନ ମଧୁସୂଦନଙ୍କୁ ମଧୁରବାକ୍ୟରେ ସମ୍ଭାଷଣ କରି କହିଲେ, ହେ ମଧୁସୂଦନ ! ଯେପରି ଦେବଗଣ ଏକମାତ୍ର ଦେବରାଜ ସହସ୍ରଲୋଚନଙ୍କୁ ଆଶ୍ରୟ କରିଥିଲେ । ଆମ୍ଭେମାନେ ମଧ୍ୟ ସେହିପରି ଏକମାତ୍ର ତୁମ୍ଭଙ୍କୁ ଆଶ୍ରୟ କରି ଯୁଦ୍ଧରେ ଜୟ ଓ ଶାଶ୍ୱତ ସୁଖ ଆକାଂକ୍ଷା କରୁଅଛୁଁ । ୧୦ । ତୁମ୍ଭେ ଆମ୍ଭମାନଙ୍କର ରାଜ୍ୟବିନାଶ, ଶତ୍ରୁବିଦ୍ରୋହପୂର୍ବକ ସମସ୍ତ ବିବିଧ କ୍ଳେଶ ଅବଗତ ଅଛ । ୧୧ । ହେ ସର୍ବେଶ ! ହେ ମଧୁସୂଦନ ! ହେ ଭକ୍ତବତ୍ସଳ ! ଆମ୍ଭ ସମସ୍ତଙ୍କର ସୁଖ ତୁମ୍ଭର ଏକାନ୍ତ ଆୟତ୍ତ ଅଟେ ; ତୁମ୍ଭେ ମଧ୍ୟ ଆମ୍ଭମାନଙ୍କର ସର୍ବବିଷୟରେ ଉପାୟସ୍ୱରୂପ । ୧୨ । ହେ ବାର୍ଷ୍ଣେୟ ! ଯହିଁରେ ତୁମ୍ଭ ପ୍ରତି ଆମ୍ଭର ମନ ରହେ, ତାହା କର । ଏବଂ ଯହିଁରେ ଅର୍ଜ୍ଜୁନର ଚିକୀର୍ଷିତ ପ୍ରତିଜ୍ଞାକାର୍ଯ୍ୟ ସତ୍ୟ ହୁଏ, ତାହା କର । ୧୩ । ହେ ମାଧବ ! ଆମ୍ଭେମାନେ ଏହି ଦୁଃଖ ଓ କ୍ରୋଧରୂପ ମହାର୍ଣ୍ଣବରୁ ଉତ୍ତୀର୍ଣ୍ଣ ହେବାପାଇଁ କାମନା କରୁଅଛୁଁ । ତୁମ୍ଭେ ପ୍ଲବସ୍ୱରୂପ ହୋଇ ଆମ୍ଭମାନଙ୍କୁ ସେହି ଅର୍ଣ୍ଣବରୁ ପାରି କର । ୧୪ ।

ହେ କୃଷ୍ଣ ! ଯୁଦ୍ଧସ୍ଥଳରେ ସାରଥି ଯତ୍ନବାନ୍ ହୋଇ ଯେପରି କାର୍ଯ୍ୟ କରିପାରେ, ଶତ୍ରୁବଧୋଦ୍ୟତ ରଥୀ କଦାଚ ସେପରି କରିପାରେ ନାହିଁ । ୧୫ । ହେ ମହାବାହୋ ! ଜନାର୍ଦ୍ଦନ ! ତୁମ୍ଭେ ଯେପରି ବୃଷ୍ଣିବଂଶୀୟମାନଙ୍କୁ ସମସ୍ତ ଆପଦରୁ ରକ୍ଷା କରିଥାଅ, ସେହିପରି ଆମ୍ଭମାନଙ୍କୁ ଏହି ଆପଦରୁ ପରିତ୍ରାଣ କରିବାପାଇଁ ମନୋଯୋଗୀ ହୁଅ । ୧୬ । ହେ ଶଙ୍ଖଚକ୍ରଗଦାଧର ! ଆମ୍ଭେମାନେ ସମ୍ପ୍ରତି ନୌକାହୀନ ଏହି ଅଗାଧ କୁରୁସାଗରରେ ମଗ୍ନ ହୋଇଅଛୁଁ । ତୁମ୍ଭେ ନୌକାସଦୃଶ ହୋଇ ଏଥିରୁ ଆମ୍ଭମାନଙ୍କୁ

ଉତ୍ତୀର୍ଣ୍ଣ କର । ୧୭ । ହେ ଦେବଦେବେଶ ! ହେ ସନାତନ ! ହେ ବିଶ୍ୱସଂହାର ! ହେ ବିଷ୍ଣୋ ! ହେ ଜିଷ୍ଣୋ ! ହେ ହରେ ! ହେ କୃଷ୍ଣ ! ହେ ବୈକୁଣ୍ଠ ! ହେ ପୁରୁଷୋତ୍ତମ ! ତୁମ୍ଭଙ୍କୁ ନମସ୍କାର । ୧୮ । ଦେବର୍ଷି ନାରଦ ତୁମ୍ଭଙ୍କୁ ପୁରାତନ ଋଷିସତ୍ତମ ଶାର୍ଙ୍ଗୀ ଓ ବରଦ, ଦେବ ନାରାୟଣ ବୋଲି ବ୍ୟକ୍ତ କରିଅଛନ୍ତି, ହେ ମାଧବ ! ସେହି ନାରଦବାକ୍ୟକୁ ତୁମ୍ଭେ ସତ୍ୟ କର । ୧୯ ।

ବାଗ୍ମିଶ୍ରେଷ୍ଠ ପୁଣ୍ଡରୀକାକ୍ଷ କୃଷ୍ଣ ଧର୍ମରାଜଙ୍କକର୍ତ୍ତୃକ ରାଜସଭାରେ ଏହିରୂପେ ଅଭିହିତ ହୁଅନ୍ତେ ମେଘଗମ୍ଭୀରସ୍ୱରରେ ଯୁଧିଷ୍ଠିରଙ୍କୁ କହିଲେ । ୨୦ । ପୃଥାପୁତ୍ର ଧନଞ୍ଜୟଙ୍କସଦୃଶ ଧନୁର୍ଦ୍ଧର କେହି ଅମରଲୋକ ପ୍ରଭୃତି କୌଣସି ଲୋକରେ ନାହିଁ । ୨୧ । ସେ ବୀର୍ଯ୍ୟବାନ୍, ଅସ୍ତ୍ରକୁଶଳ, ମହାବଳ ପରାକ୍ରାନ୍ତ, ସର୍ବକାଳରେ ଯୁଦ୍ଧପ୍ରବୀଣ, ମନୁଷ୍ୟ ମଧ୍ୟରେ ପରମତେଜସ୍ୱୀ, କ୍ରୋଧୀ, ଯୁବା, ବୃଷସ୍କନ୍ଧ, ଦୀର୍ଘବାହୁ, ମହାବଳବାନ୍, ମହାସିଂହସଦୃଶ-ଗତିମାନ୍ ଏବଂ ଶ୍ରୀମାନ୍ ଅଟନ୍ତି । ସେ ଅବଶ୍ୟ ଆପଣଙ୍କର ଶତ୍ରୁମାନଙ୍କୁ ସଂହାର କରିବେ । ୨୩ । ସେ ଯହିଁରେ ଧୃତରାଷ୍ଟ୍ରପୁତ୍ରମାନଙ୍କର ସମସ୍ତ ସୈନ୍ୟଙ୍କୁ କାଷ୍ଠକୁ ଦଗ୍ଧକାରୀ ଅଗ୍ନିସଦୃଶ ଦଗ୍ଧ କରିପାରିବେ, ତାହା ଅମ୍ଭେ କରିବୁଁ । ୨୪ । ଅଦ୍ୟ ଅର୍ଜ୍ଜୁନ ସେହି କ୍ଷୁଦ୍ରାଶୟ, ପାପକର୍ମା, ଅଭିମନ୍ୟୁ-ଘାତୀ ଜୟଦ୍ରଥକୁ ବାଣଦ୍ୱାରା ଅଦୃଶ୍ୟ ପଥରେ ନିକ୍ଷେପ କରିବେ । ୨୫ । ଗୃଧ୍ର, ଶ୍ୟେନ, ବୃକ, ଶୃଗାଳ ଓ ଅନ୍ୟାନ୍ୟ ମାଂସାଶୀ ପ୍ରାଣୀମାନେ ଅଦ୍ୟ ତାହାର ମାଂସ ଭକ୍ଷଣ କରିବେ । ୨୬ । ହେ ମହାରାଜ ! ଯଦି ସୁରପତି ସହ ସମସ୍ତ ସୁରବୃନ୍ଦ ତାହାକୁ ରକ୍ଷା କରନ୍ତି, ତଥାପି ସେ ଅଦ୍ୟ ଯୁଦ୍ଧରେ ନିହତ ହୋଇ ଯମରାଜାଙ୍କ ରାଜଧାନୀକୁ ଗମନ କରିବ । ୨୭ । ହେ ରାଜନ୍ ! ଜିଷ୍ଣୁ ଅଦ୍ୟ ସିନ୍ଧୁପତିକୁ ସଂହାର କରି ତୁମ୍ଭ ନିକଟକୁ ଆଗମନ କରିବେ, ତୁମ୍ଭେ ସମୃଦ୍ଧିପୁରସ୍କୃତ ହୋଇ ଶୋକ ଓ ଚିନ୍ତା ପରିତ୍ୟାଗ କର । ୨୮ ।

---

# ୮୪ ଅଧ୍ୟାୟ

ସଞ୍ଜୟ କହିଲେ,—ହେ ନରାଧିପ ! ସେମାନେ ପରସ୍ପର ଏହିରୂପେ କଥୋପକଥନ କରୁଅଛନ୍ତି, ଏପରି ସମୟରେ ଧନଞ୍ଜୟ ସ୍ୱହୃଦ୍‌ଗଣଙ୍କ ସହିତ ଶ୍ରେଷ୍ଠରାଜା ଯୁଧିଷ୍ଠିରଙ୍କୁ ସାକ୍ଷାତ୍ କରିବାନିମିତ୍ତ ସେଠାରେ ଉପଗତ ହେଲେ । ୧ । ସେ ସେହି ସୁସଜ୍ଜିତ କକ୍ଷରେ ପ୍ରବିଷ୍ଟ ହୋଇ ଭରତକୁଳ-ଶ୍ରେଷ୍ଠ ରାଜାଙ୍କୁ ଅଭିବାଦନ କରି ସମ୍ମୁଖରେ ଦଣ୍ଡାୟମାନ ହେଲେ । ରାଜା ଗାତ୍ରୋତ୍‌ଥାନ କରି ସସ୍ନେହରେ ଆଲିଙ୍ଗନ କଲେ । ୨ । ସେ ମହାତ୍ମାଙ୍କର ମସ୍ତକ ଘ୍ରାଣ କରି ବାହୁଦ୍ୱାରା ଆଲିଙ୍ଗନପୂର୍ବକ ପରମ ଶୁଭାଶୀର୍ବାଦ କରି ହାସ୍ୟ ବଦନରେ କହିଲେ, ହେ ଅର୍ଜ୍ଜୁନ ! ତୁମ୍ଭର କାନ୍ତି ଯେ ପ୍ରକାର ଦେଖୁଅଛୁ ଏବଂ ଜନାର୍ଦ୍ଦନଙ୍କୁ ଯେ ପ୍ରକାର ପ୍ରସନ୍ନ ଦେଖୁଅଛୁଁ ଏଥିରୁ ସ୍ପଷ୍ଟ ବୋଧ ହୁଏ, ସଂଗ୍ରାମରେ ତୁମ୍ଭର ନିଶ୍ଚୟ ମହାନ୍ ଜୟ ହେବ । ୪ ।

ତଦନନ୍ତର ଜିଷ୍ଣୁ କହିଲେ, ହେ ମହାରାଜ ! ଆପଣଙ୍କର ଶୁଭ ହେଉ । ଆମ୍ଭେ କେଶବଙ୍କ ପ୍ରସାଦରୁ ମହତ୍ ଉତ୍କୃଷ୍ଟ ଗୋଟିଏ ସ୍ୱପ୍ନ ଦେଖି-ଅଛୁଁ । ୫ । ଏହାକହି ସେ ସୁହୃଦ୍‌ମାନଙ୍କ ଆଶ୍ୱାସନନିମିତ୍ତ ଯେ ପ୍ରକାର ସ୍ୱପ୍ନ ଦେଖିଥିଲେ ଓ ସେଥିରେ ତ୍ର୍ୟମ୍ବକଙ୍କ ସହିତ ଯେରୂପ ସାକ୍ଷାତ୍ କରିଥିଲେ, ତାହା ସମସ୍ତ କହିଲେ । ୬ । ପରେ ତତ୍ରସ୍ଥ ସମସ୍ତେ ଅତି ବିସ୍ମିତ ହୋଇ ସାଧୁ ସାଧୁ ବୋଲି ମସ୍ତକଦ୍ୱାରା ଅବନୀସ୍ପର୍ଶପୂର୍ବକ ମହା-ଦେବଙ୍କୁ ପ୍ରଣାମ କଲେ । ୭ ।

ଅନନ୍ତର ସମସ୍ତ ସୁହୃଦ୍‌ଗଣ ଧର୍ମନନ୍ଦନ ରାଜା ଯୁଧିଷ୍ଠିରଙ୍କ ଅନୁଜ୍ଞା କ୍ରମେ ସତ୍ୱର ଓ ଅତି ସଂରୁଦ୍ଧ ହୋଇ ହର୍ଷସହକାରେ ଯୁଦ୍ଧନିମିତ୍ତ ନିର୍ଗତ ହେଲେ । ୮ । ଯୁଯୁଧାନ କୃଷ୍ଣ ଓ ଅର୍ଜ୍ଜୁନ ରାଜାଙ୍କୁ ଅଭିବାଦନ କରି ପ୍ରହୃଷ୍ଟ ହୋଇ ଯୁଧିଷ୍ଠିରଙ୍କ ଭବନରୁ ନିର୍ଗତ ହେଲେ । ୯ । ଦୁର୍ଦ୍ଧର୍ଷଣୀୟ ଯୁଯୁଧାନ ଓ ଜନାର୍ଦ୍ଦନ ଦୁଇ ବୀର ଗୋଟିଏ ରଥରେ ଆରୋହଣ କରି ଅର୍ଜ୍ଜୁନଙ୍କ ଶିବିରକୁ ଗମନ କଲେ । ହୃଷୀକେଶ ସେହି ସ୍ଥାନରେ ଉପଗତ ହୋଇ ରଥିବର ଅର୍ଜ୍ଜୁନଙ୍କ ବାନରବରଧ୍ୱଜଶୋଭିତ ରଥକୁ ସାରଥିସଦୃଶ ସୁସଜ୍ଜିତ କରିବାକୁ ଆରମ୍ଭ କଲେ । ମେଘଗର୍ଜ୍ଜନନିର୍ଘୋଷ ତପ୍ତକାଞ୍ଚନସୁପ୍ରଭ

ସେହି ଉତ୍କୃଷ୍ଟ ରଥକୁ ସଜ୍ଜିତ କରିବାରୁ ତାହା ଶିଶୁସୂର୍ଯ୍ୟସଦୃଶ ଦୀପ୍ତି ପ୍ରାପ୍ତ ହେଲା । ତତ୍ପରେ ପୁରୁଷଶାର୍ଦ୍ଦୂଳ କୃଷ୍ଣ ଆପଣାକୁ ସଜ୍ଜିତ କରି ରଥ ସଜ୍ଜିତ ହେବାର ସମ୍ବାଦ କୃତାହ୍ନିକ ଅର୍ଜ୍ଜୁନଙ୍କୁ ଜ୍ଞାପନ କଲେ ।

କିରୀଟାଳଙ୍କୃତ, ସ୍ୱର୍ଣ୍ଣବର୍ମପରିଧାୟୀ, ଧନୁର୍ବାଣଧାରୀ, ନରପ୍ରବର ଶ୍ରୀମାନ୍ ଅର୍ଜ୍ଜୁନ ସେହି ରଥକୁ ପ୍ରଦକ୍ଷିଣ କଲେ । ଅନନ୍ତର ବିଦ୍ୟାବୃଦ୍ଧ, ବୟୋବୃଦ୍ଧ, କ୍ରିୟାବାନ୍ ଓ ଜିତେନ୍ଦ୍ରିୟ ବ୍ୟକ୍ତିମାନେ ମହାରଥ ତେଜସ୍ୱୀ ଅର୍ଜ୍ଜୁନଙ୍କ ପ୍ରତି ଜୟାଶୀର୍ବାଦ ପ୍ରୟୋଗ କଲେ । ସେ ଜୟଜନକ ସାଂଗ୍ରାମିକ ମନ୍ତ୍ରରେ ଅଭିମନ୍ତ୍ରିତ ସେହି ରଥରେ ଭାସ୍କର ଯେରୂପ ଉଦୟଗିରିରେ ଆରୋହଣ କରନ୍ତି, ସେହିରୂପ ଆରୋହଣ କଲେ । କାଞ୍ଚନ ବର୍ମାବୃତ ଦୀପ୍ତିମାନ୍ ସେହି ରଥିପ୍ରଧାନ, କାଞ୍ଚନମୟ ପରିଷ୍କୃତ ରଥରେ ଆରୋହଣ କରି ଯେରୂପ ଦିବାକର ମେରୁପର୍ବତରେ ପ୍ରତିଭାତ ହୁଅନ୍ତି, ସେହିରୂପେ ପ୍ରତିଭାତ ହେଲେ । ଯୁଯୁଧାନ ଓ ଜନାର୍ଦ୍ଦନ ଅର୍ଜ୍ଜୁନଙ୍କ ରଥରେ ଆରୋହଣ କଲେ । ୧୭ । ଶର୍ଯ୍ୟାତିରାଜାଙ୍କ ଯଜ୍ଞରେ ସମାଗତ ଇନ୍ଦ୍ରଙ୍କ ସମୀପରେ ଅଶ୍ୱିନୀକୁମାରଦ୍ୱୟ ଯେରୂପ ଶୋଭା ପାଇଥିଲେ, ଯୁଯୁଧାନ ଓ କୃଷ୍ଣ ସେହିରୂପ ଅର୍ଜ୍ଜୁନଙ୍କ ସମୀପରେ ଶୋଭା ପାଇଲେ ।

ବୃତ୍ରାସୁରବଧ ନିମିତ୍ତ ଗମନକାଳରେ ମାତଳି ଯେରୂପ ଇନ୍ଦ୍ରଙ୍କ ଅଶ୍ୱରଶ୍ମି ଧାରଣ କରିଥିଲେ, ସେହିରୂପ ରଥିଶ୍ରେଷ୍ଠ ଗୋବିନ୍ଦ ଅର୍ଜ୍ଜୁନଙ୍କ ରଥରେ ଅଶ୍ୱରଶ୍ମି ଧାରଣ କଲେ । ଯେରୂପ ତିମିରନିୟନ୍ତା ନିଶାକର ବୁଧ ଓ ଶୁକ୍ରଗ୍ରହ ସମୀପରେ ଶୋଭମାନ ହୁଅନ୍ତି, ସାତ୍ୟକି ଓ କୃଷ୍ଣଙ୍କ ସହିତ ଅର୍ଜ୍ଜୁନ ରଥସ୍ଥ ହୋଇ ସେହିରୂପେ ଶୋଭା ପାଇଲେ ଏବଂ ଯେ ପ୍ରକାର ବରୁଣ ଓ ସୂର୍ଯ୍ୟଙ୍କ ସହିତ ଦେବରାଜ ତାରକାମୟ ଯୁଦ୍ଧକୁ ଗମନ କରିଥିଲେ, ସେହିରୂପ ଶତ୍ରୁଗଣ-ଘାତୀ ସିନ୍ଧୁପତିର ବଧାଭିଳାଷରେ ଯାତ୍ରା କଲେ । ତତ୍କାଳରେ ବାଦ୍ୟକାରମାନେ ନାନାବିଧ ବାଦ୍ୟଧ୍ୱନି ଦ୍ୱାରା ଏବଂ ସୂତ ଓ ମାଗଧମାନେ ଶୁଭସୂଚକ ମଙ୍ଗଳକର ସ୍ତୁତିପାଠ ଦ୍ୱାରା ଅର୍ଜ୍ଜୁନଙ୍କର ସ୍ତବ ଆରମ୍ଭ କଲେ । ସୂତ ଓ ମାଗଧମାନଙ୍କର ଜୟାଶୀର୍ବାଦ ଓ ପୁଣ୍ୟାହବାଚର ଧ୍ୱନି ବାଦିତ୍ର ନିର୍ଘୋଷର ସହିତ ମିଶ୍ରିତ ହୋଇ ସେମାନଙ୍କର ସନ୍ତୋଷକର ହେଲା । ବାୟୁ ପୁଣ୍ୟଗନ୍ଧ ବହନପୂର୍ବକ

ଅର୍ଜ୍ଜୁନଙ୍କ ଅନୁଗାମୀ ଓ ମଙ୍ଗଳସୂଚକ ହୋଇ ତାହାଙ୍କର ହର୍ଷୋତ୍ପାଦନ କଲା ଓ ଶତ୍ରୁମାନଙ୍କୁ ଶୋଷଣ କରିବାକୁ ପ୍ରବାହିତ ହେଲା । ହେ ରାଜନ୍ ! ସେହି ସମୟରେ ପାଣ୍ଡବମାନଙ୍କର ବିଜୟ ନିମିତ୍ତ ନାନାବିଧ ଶୁଭସୂଚକ ନିମିତ୍ତମାନ ପ୍ରାଦୁର୍ଭୂତ ହେଲା ଏବଂ ଆପଣଙ୍କ ପକ୍ଷରେ ତାହାର ବିପରୀତ ଅଶୁଭ ନିମିତ୍ତମାନ ପ୍ରକାଶ ପାଇଲା । ୨୫ ।

ଧନଞ୍ଜୟ ବିଜୟସୂଚକ ଅନୁକୂଳନିମିତ୍ତସକଳ ଅବଲୋକନ କରି ଦକ୍ଷିଣପାର୍ଶ୍ୱସ୍ଥିତ ମହାଧନୁର୍ଦ୍ଧର ସାତ୍ୟକୀଙ୍କୁ କହିଲେ, ହେ ଶିନିବଂଶାଗ୍ରଗଣ୍ୟ ଯୁଯୁଧାନ ! ଅଦ୍ୟ ଯେରୂପ ନିମିତ୍ତସକଳ ଦର୍ଶନ କରୁଅଛୁଁ, ତଦ୍ଦ୍ୱାରା ବୋଧହେଉଅଛି ଯେ, ଅଦ୍ୟ ଯୁଦ୍ଧରେ ନିଶ୍ଚୟ ଆମ୍ଭର ଜୟ ହେବ । ୨୭ । ସିନ୍ଧୁପତି ଯମଲୋକଗମନେଚ୍ଛୁ ହୋଇ ଯେ ସ୍ଥାନରେ ରହି ଆମ୍ଭର ବଳବୀର୍ଯ୍ୟ ପ୍ରତୀକ୍ଷା କରୁଅଛି, ଆମ୍ଭେ ସେହି ସ୍ଥାନକୁ ଗମନ କରୁଅଛୁଁ ।୨୮। ଯେରୂପ ସିନ୍ଧୁପତିଙ୍କୁ ବଧକରିବା ଆମ୍ଭର ମହତ୍‌କାର୍ଯ୍ୟ, ସେହିରୂପ ଧର୍ମରାଜାଙ୍କୁ ରକ୍ଷାକରିବା ମଧ୍ୟ ଆମ୍ଭର ମହତ୍‌କାର୍ଯ୍ୟ । ୨୯ । ଅତଏବ ହେ ମହାବାହୁ ! ତୁମ୍ଭେ ଅଦ୍ୟ ରାଜା ଧର୍ମରାଜଙ୍କୁ ରକ୍ଷା କରିବ । ୩୦ । ତୁମ୍ଭେ ସମରରେ ବାସୁଦେବଙ୍କ ସମାନ ଯୁଦ୍ଧରେ ତୁମ୍ଭଙ୍କୁ ପରାଜିତ କରିପାରିବ, ଏପରି କାହାରିକୁ ଆମ୍ଭେ ଦେଖିନାହୁଁ । ସ୍ୱୟଂ ଦେବରାଜ ଇନ୍ଦ୍ର ମଧ୍ୟ ତୁମ୍ଭଙ୍କୁ ପରାସ୍ତ କରିବାକୁ ପାରନ୍ତି ନାହିଁ । ୩୧ ।

ହେ ନରର୍ଷଭ ! ଆମ୍ଭେ ତୁମ୍ଭଠାରେ କିମ୍ବା ମହାରଥ ପ୍ରଦ୍ୟୁମ୍ନଙ୍କଠାରେ ଏହି ଭାର ଅର୍ପଣ କରି ବିଶ୍ୱସ୍ତଚିତ୍ତ ଓ ନିଶ୍ଚିନ୍ତ ହୋଇ ସିନ୍ଧୁପତିର ବଧ ସାଧନନିମିତ୍ତ ଗମନ କରିପାରୁଁ । ୩୨ । ହେ ସାତ୍ୱତ ! ତୁମ୍ଭେ ଆମ୍ଭନିମିତ୍ତ କୌଣସି ପ୍ରକାର ଚିନ୍ତା କର ନାହିଁ । କେବଳ ରାଜାଙ୍କୁ ସର୍ବପ୍ରଯତ୍ନରେ ଓ ସର୍ବତୋଭାବରେ ରକ୍ଷା କର । ୩୩ । ଯେ ସ୍ଥାନରେ ଆମ୍ଭେ ବାସୁଦେବଙ୍କ ସହିତ ମିଳିତ ହୋଇ ଅବସ୍ଥାନ କରିବୁଁ, ସେ ସ୍ଥାନରେ କେବେହେଁ ବିପଦ ହେବ ନାହିଁ । ୩୪ । ପରବୀରହନ୍ତା ସାତ୍ୟକି ଏହିରୂପେ ଅର୍ଜ୍ଜୁନଙ୍କକର୍ତ୍ତୃକ ଆଦିଷ୍ଟ ହୋଇ 'ହେଉ' ବୋଲି ସ୍ୱୀକାରପୂର୍ବକ ରାଜା ଯୁଧିଷ୍ଠିରଙ୍କ ସମୀପକୁ ଗମନ କଲେ । ୩୫ ।

---

# ୮୫ ଅଧ୍ୟାୟ

ଧୃତରାଷ୍ଟ୍ର ବୋଇଲେ—ହେ ସଞ୍ଜୟ ! ଅଭିମନ୍ୟୁ ନିହତ ହୁଅନ୍ତେ ଶୋକଦୁଃଖସମନ୍ୱିତ ପାଣ୍ଡବମାନେ ରଣ ପ୍ରଭାତ ହେଲାରୁ କି କାର୍ଯ୍ୟ କଲେ ଓ ମତ୍ପକ୍ଷୀୟ କେଉଁ ବ୍ୟକ୍ତି ଯୁଦ୍ଧରେ ପ୍ରବୃତ୍ତ ହେଲେ ? ୧ । ଆମ୍ଭର କୁରୁଯୋଦ୍ଧାମାନେ ସବ୍ୟସାଚୀଙ୍କର ବଳବିକ୍ରମ ଅବଗତ ଥାଇ ମଧ୍ୟ କପରି ତାଦୃଶ ଅନ୍ୟାୟ କାର୍ଯ୍ୟର ଅନୁଷ୍ଠାନପୂର୍ବକ ନିର୍ଭୟରେ ଅବସ୍ଥାନ କଲେ ? ୨ । ପୁତ୍ରଶୋକରେ ଅଭିସନ୍ତପ୍ତ ଅନ୍ତକାଗ୍ନି କ୍ରୁଦ୍ଧଯମସଦୃଶ ସମାଗତ ସେହି ପୁରୁଷବ୍ୟାଘ୍ରକୁ ସେମାନେ କପରି ଯୁଦ୍ଧସ୍ଥଳରେ ଦେଖିବାକୁ ସମର୍ଥ ହେଲେ ? ୩ । ପୁତ୍ରଶୋକାର୍ତ୍ତ କପିରାଜଧ୍ୱଜ ଧନଞ୍ଜୟଙ୍କୁ ମହତ୍ତ୍ୱଶରାସନ ପ୍ରକମ୍ପିତ କରିବାର ଦେଖି ସେମାନେ କି କାର୍ଯ୍ୟ କଲେ, ତାହା ତୁମ୍ଭେ ଆମ୍ଭ ନିକଟରେ କୀର୍ତ୍ତନ କର । ୪ ।

ହେ ସଞ୍ଜୟ ! ଯୁଦ୍ଧରେ ଦୁର୍ଯ୍ୟୋଧନଙ୍କ ପକ୍ଷରେ କି ଘଟନା ହୋଇଅଛି ? ଅଦ୍ୟ କୌଣସି ହର୍ଷଧ୍ୱନି ଆମ୍ଭର ଶ୍ରୁତିଗୋଚର ହେଉନାହିଁ, ଅଥଚ ବିଳାପଧ୍ୱନି ଶ୍ରୁତ ହେଉଅଛି । ୫ । ଜୟଦ୍ରଥଙ୍କ ଶିବିରରେ ପୂର୍ବେ ଶ୍ରୁତିସୁଖକର, ମନୋହର ଯେଉଁସବୁ ଶବ୍ଦ ହେଉଥିଲା, ସେହିସବୁ ଶବ୍ଦ ବର୍ତ୍ତମାନ ଶ୍ରବଣ କରୁନାହୁଁ । ୬ । ଆମ୍ଭର ପୁତ୍ରମାନଙ୍କ ଶିବିରରେ ମଧ୍ୟ ସ୍ତୁତିପାଠକ ସୂତ, ମାଗଧ, ବନ୍ଦୀ ଓ ନର୍ତ୍ତକମାନଙ୍କର କୌଣସି ଶବ୍ଦ ଅଦ୍ୟ ଶ୍ରବଣ କରୁନାହୁଁ । ୭ । ଯେଉଁମାନଙ୍କର ଶବ୍ଦ ଆମ୍ଭର କର୍ଣ୍ଣକୁହରରେ ପୁନଃ ପୁନଃ ପ୍ରବିଷ୍ଟ ହେଉଥିଲା, ବର୍ତ୍ତମାନ ସେମାନେ ଦୀନଭାବାପନ୍ନ ହେବାରୁ ସେମାନଙ୍କର କୌଣସି ଶବ୍ଦ ଆମ୍ଭର ଶ୍ରୁତିଗୋଚର ହେଉନାହିଁ । ୮ ।

ବତ୍ସ ସଞ୍ଜୟ ! ପୂର୍ବେ ଆମ୍ଭେ ସମାସୀନ ହୋଇ ସତ୍ୟଧୃତି ସୋମଦତ୍ତଙ୍କ ଶିବିରରୁ ମନୋହର ଶବ୍ଦ ଶ୍ରବଣ କରୁଥିଲୁଁ, କିନ୍ତୁ ଏକ୍ଷଣି ତାହା ଶ୍ରବଣ କରିପାରୁ ନାହୁଁ । ୯ । ଆମ୍ଭେ ନିତାନ୍ତ ପୁଣ୍ୟହୀନ, ଯେହେତୁ ଅଦ୍ୟ ଆମ୍ଭର ପୁତ୍ରମାନଙ୍କର ସେହି ଶିବିର ହତୋତ୍ସାହ ଓ ଆର୍ତ୍ତସ୍ୱରରେ ନିନାଦିତ ହେଉଥିବାର ଆମ୍ଭକୁ ଲକ୍ଷ୍ୟ କରିବାକୁ ହେଲା । ୧୦ । ବିବିଂଶତି,

ଦୁର୍ମୁଖ, ଚିତ୍ରସେନ, ବିକର୍ଣ୍ଣ ଓ ଅନ୍ୟାନ୍ୟ ପୁତ୍ରମାନଙ୍କର ଶିବିରରୁ ମଧ୍ୟ ପୂର୍ବବତ୍ କୌଣସି ଧ୍ୱନି ଶ୍ରୁତ ହେଉନାହିଁ । ୧୯ ।

ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟମାନେ ଶିଷ୍ୟ ହୋଇ ଯାହାଙ୍କୁ ଉପାସନା କରିଥାନ୍ତି, ଯେଉଁ ମହାଧନୁର୍ଦ୍ଧର ଆମ୍ଭର ପୁତ୍ରମାନଙ୍କର ପରମ ଆଶ୍ରୟ, ଯେ ବିତଣ୍ଡା ସମ୍ଭାଷଣ, ପରସ୍ପର କଥୋପକଥନ ଏବଂ ଅଭିଳଷିତ ନୃତ୍ୟ, ଗୀତ ଓ ବିବିଧ ବାଦ୍ୟଦ୍ୱାରା ଦିବାନିଶି ଆମୋଦ-ପ୍ରମୋଦ କରିଥାଆନ୍ତି; ଓ ବହୁସଂଖ୍ୟକ କୁରୁପାଣ୍ଡବ ଓ ସାତ୍ୱତଗଣ ଯାହାଙ୍କୁ ଉପାସନା କରିଥାଆନ୍ତି; ସେହି ଦ୍ରୋଣପୁତ୍ର ଅଶ୍ୱତ୍ଥାମାଙ୍କ ଗୃହରେ ପୂର୍ବେ ଯେ ଶବ୍ଦ ହେଉଥିଲା, ଏକ୍ଷଣି ତାହା ହେଉନାହିଁ । ଯେଉଁସମସ୍ତ ଗାୟକ ଓ ନର୍ତ୍ତକମାନେ ମହାଧନୁର୍ଦ୍ଧର ଅଶ୍ୱତ୍ଥାମାଙ୍କର ଅତ୍ୟନ୍ତ ଉପାସନା କରିଥାଆନ୍ତି, ସେମାନଙ୍କର କୌଣସି ଶବ୍ଦ ସମ୍ୟକ୍ ଶ୍ରୁତ ହେଉନାହିଁ । ୧୪ । ବିନ୍ଦ ଓ ଅନୁବିନ୍ଦଙ୍କ ଶିବିରରୁ ସାୟଂକାଳରେ ଯେଉଁ ମହାଧ୍ୱନି ଶ୍ରୁତିଗୋଚର ହେଉଥିଲା, ତାହା ସମ୍ପ୍ରତି ଶ୍ରବଣ କରୁନାହୁଁ ଓ କେକୟ ରାଜାମାନଙ୍କ ଶିବିରରୁ ମଧ୍ୟ କୌଣସି ଶବ୍ଦ ଶ୍ରୁତ ହେଉନାହିଁ । ନର୍ତ୍ତକମାନେ ନିତ୍ୟ ନିତ୍ୟ ପ୍ରମୋଦିତ ହୋଇ ଯେପରି ତାଳଗାନର ସହିତ ନୃତ୍ୟ କରୁଥିଲେ, ସେମାନଙ୍କର ସେହି ମହତ୍ ତାଳ-ଗୀତଧ୍ୱନି ସମ୍ପ୍ରତି ଶ୍ରୁତ ହେଉନାହିଁ । ବହୁ ଯଜ୍ଞର ଅନୁଷ୍ଠାୟକ ଯେଉଁସମସ୍ତ ଯାଜକ ସୋମଦତ୍ତ-ପୁତ୍ର ଶ୍ରୁତନିଧିଙ୍କର ଉପାସନା କରୁଥିଲେ, ସେମାନଙ୍କର ବେଦଧ୍ୱନି ମଧ୍ୟ ସମ୍ପ୍ରତି ଶ୍ରୁତ ହେଉନାହିଁ । ବେଦ ଧ୍ୱନି, ଟଙ୍କାରଧ୍ୱନି ଏବଂ ତୋମର, ଅସି ଓ ରଥ ଧ୍ୱନି ଦ୍ରୋଣଙ୍କ ଶିବିରରୁ ଅନବରତ ହେଉଥିଲା, ତାହା ମଧ୍ୟ ଅଦ୍ୟ ଶ୍ରୁତ ହେଉନାହିଁ ଏବଂ ନାନାସ୍ଥାନରୁ ସମୁତ୍ଥିତ ଗୀତବାଦ୍ୟର ମହାଧ୍ୱନି ମଧ୍ୟ ଶ୍ରୁତ ହେଉନାହିଁ ।

ହେ ସୂତ ! ଯେଉଁ ସମୟରେ ଜନାର୍ଦ୍ଦନ ସର୍ବପ୍ରାଣୀଙ୍କ ପ୍ରତି ଅନୁକମ୍ପା ନିମନ୍ତେ ସନ୍ଧି ସ୍ଥାପନ କରିବାକୁ ଉପପ୍ଲବ୍ୟନଗରରୁ ଆଗମନ କରିଥିଲେ, ଆମ୍ଭେ ସେହି ସମୟରେ ମଦମତ୍ତ ଦୁର୍ଯୋଧନକୁ କହିଥିଲୁ । ୨୨ । ହେ ପୁତ୍ର ! ତୁମ୍ଭେ କୃଷ୍ଣଙ୍କୁ ଉପାୟରୂପେ ଅବଲମ୍ବନ କରି ପାଣ୍ଡବମାନଙ୍କ ସହିତ ସନ୍ଧି କର ; ଆମ୍ଭେ ବିବେଚନା କରୁ, ସନ୍ଧି କରିବାର ଏହି

ସମ୍ମତ ସମସ୍ତ ! ଦୁର୍ଯ୍ୟୋଧନ ! ତୁମ୍ଭେ ଆମ୍ଭ ବାକ୍ୟ ଲଙ୍ଘନ କର ନାହିଁ । ୨୩ । କେଶବ ହିତ କାମନାରେ ଶାନ୍ତି ପ୍ରାର୍ଥନା କରୁଅଛନ୍ତି, ଅତଏବ ଯଦି ତାହାଙ୍କୁ ପ୍ରତ୍ୟାଖ୍ୟାନ କର, ତେବେ ତୁମ୍ଭର ଜୟ ହେବ ନାହିଁ । ୨୪ । ସେତେବେଳେ ସର୍ବଧର୍ମାଶ୍ରେଷ୍ଠ ଦାଶାର୍ହ କୁଳପ୍ରବର କେଶବ ଅନେକ ଅନୁନୟବାକ୍ୟ କହିଥିଲେ । କିନ୍ତୁ ଦୁର୍ଯ୍ୟୋଧନ ଦୁର୍ନୀତିପ୍ରଯୁକ୍ତ ତାହାଙ୍କର ଅନୁବର୍ତ୍ତୀ ହେଲାନାହିଁ । ପ୍ରତ୍ୟୁତ ତାହାଙ୍କର ପ୍ରତ୍ୟାଖ୍ୟାନ କଲା । ୨୫ ।

ତତ୍ପରେ ସେହି ଦୁର୍ବୁଦ୍ଧି ଆମ୍ଭର ବାକ୍ୟ ନ ଶୁଣି କାଳଗ୍ରସ୍ତ ହୋଇ ଦୁଃଶାସନ ଓ କର୍ଣ୍ଣର ମତାନୁବର୍ତ୍ତୀ ହେଲା । ୨୬ । ସଞ୍ଜୟ ! ଦ୍ୟୂତ-କ୍ରୀଡ଼ାରେ ଆମ୍ଭର ଇଚ୍ଛା ନ ଥିଲା । ବିଦୁର ମଧ୍ୟସ୍ଥ ହୋଇ ପ୍ରଶଂସା କରିନାହାନ୍ତି ; ସିନ୍ଧୁପତି, ଭୀଷ୍ମ, ଶଲ୍ୟ, ଭୂରିଶ୍ରବା, ପୁରୁମିତ୍ର ଜୟ, ଅଶ୍ୱତ୍ଥାମା, କୃପ ଓ ଦ୍ରୋଣ—ଏମାନଙ୍କର କାହାରି ସେଥିରେ ଇଚ୍ଛା ନ ଥିଲା । ୨୮ । ଆମ୍ଭର ପୁତ୍ର ଯଦି ଏମାନଙ୍କର କାହାର ମତାନୁବର୍ତ୍ତୀ ହୋଇଥାଆନ୍ତା, ତେବେ ଜ୍ଞାତି ଓ ମିତ୍ରମାନଙ୍କ ସହିତ ଅନାମୟ ହୋଇ ପରମସୁଖରେ ଚିରଜୀବନ ଯାପନ କରି ପାରିଥା'ନ୍ତା । ୨୯ । ଆମ୍ଭେ ଦୁର୍ଯ୍ୟୋଧନଙ୍କୁ କହିଥିଲୁ—ଆମ୍ଭମାନଙ୍କ ଜ୍ଞାତି ମଧ୍ୟରେ ପାଣ୍ଡବମାନେ ମନୋରଞ୍ଜକ, ମଧୁଭାଷୀ, ପ୍ରିୟମ୍ବଦ, କୁଳୋଚିତ, ସଚ୍ଚରିତ୍ର, ଲୋକସମ୍ମତ ଓ ପ୍ରାଜ୍ଞ । ସେମାନେ ଅବଶ୍ୟ ସୁଖ ଲାଭ କରିବେ, ସନ୍ଦେହ ନାହିଁ, ଯେହେତୁ ଧର୍ମନିଷ୍ଠ ମନୁଷ୍ୟ ଇହକାଳ ଓ ପରକାଳ, ସର୍ବତ୍ର ସୁଖ, କଲ୍ୟାଣ ଓ ପ୍ରସନ୍ନତା ଲାଭ କରିଥାଏ । ୩୧ । ସାଧନସମର୍ଥ ପାଣ୍ଡବମାନେ ପୃଥିବୀ ଭୋଗ କରିବାର ଉପଯୁକ୍ତ ପାତ୍ର । ବିଶେଷତଃ ଏହି ସମୁଦ୍ର ପର୍ଯ୍ୟନ୍ତ ପୃଥିବୀରାଜ୍ୟ ସେମାନଙ୍କର ପିତୃପିତାମହାଦି କ୍ରମେ ସମାଗତ । ୩୨ ।

ସେହି ରାଜପୁତ୍ରମାନେ ଧର୍ମପଥ ଅବଲମ୍ବନ କରି ଅବସ୍ଥାନ କରିବେ । ଆମ୍ଭର ସ୍ୱଜନ ଜ୍ଞାତିଗଣ ଏପରି ଅଛନ୍ତି ଯେ, ପାଣ୍ଡବମାନେ ସେମାନଙ୍କର କଥା ଶୁଣନ୍ତି । ଶଲ୍ୟ, ସୋମଦତ୍ତ, ମହାତ୍ମା ଭୀଷ୍ମ, ଦ୍ରୋଣ, ବିକର୍ଣ୍ଣ, ବାହ୍ଲୀକ, କୃପ ଓ ଅନ୍ୟାନ୍ୟ ବୃଦ୍ଧ ଭରତବଂଶୀୟ ମହାତ୍ମାମାନେ ତୁମ୍ଭର ନିମନ୍ତେ ପାଣ୍ଡବମାନଙ୍କୁ କହିଲେ ପାଣ୍ଡବମାନେ ସେମାନଙ୍କର କଥା ଅବହେଳା କରି ପାରିବେ ନାହିଁ । ୩୪ । ତୁମ୍ଭେ କି ଏପରି କାହାକୁ ମନେ

କରିପାର କି, ତୁମ୍ଭର ପ୍ରତିକୂଳରେ କେହି ପାଣ୍ଡବମାନଙ୍କୁ କୌଣସି କଥା କହିପାରେ ? କୃଷ୍ଣ କଦାଚ ଧର୍ମପରିତ୍ୟାଗ କରିବେ ନାହିଁ । ପାଣ୍ଡବମାନେ ସମସ୍ତେ କୃଷ୍ଣଙ୍କର ଅନୁଗତ ; କୃଷ୍ଣ ଧର୍ମବାକ୍ୟ ଅବଶ୍ୟ କହିବେ ଓ ସେ ଯାହା କହିବେ, ସେଥିରେ ଅନ୍ୟଥାଚରଣ ପାଣ୍ଡବମାନେ କରିବେ ନାହିଁ ଏବଂ ଆମ୍ଭେ ମଧ୍ୟ ଧର୍ମସଂଯୁକ୍ତ କଥା ସେହି ଧର୍ମାତ୍ମା ବୀର ପାଣ୍ଡବମାନଙ୍କୁ କହିଲେ, ସେମାନେ କଦାଚ ସେଥିର ଅନ୍ୟଥା କରି ପାରିବେ ନାହିଁ ।୩୭। ହେ ସୂତ ! ଆମ୍ଭେ ବିଳାପସହକାରେ ବାରମ୍ବାର ଦୁର୍ଯ୍ୟୋଧନକୁ ଏହିପରି କହିଥିଲୁଁ—କିନ୍ତୁ ସେ ମୂଢ଼ କାଳପ୍ରେରିତ ହୋଇ ତାହା ଶ୍ରବଣ କଲା ନାହିଁ, ବିବେଚନା ହେଉଅଛି । ୩୮ ।

ସଞ୍ଜୟ ! ବୃକୋଦର, ଅର୍ଜ୍ଜୁନ, ବୃଷ୍ଣିବୀର, ସାତ୍ୟକି, ପାଞ୍ଚାଳ୍ୟ, ଉତ୍ତମୌଜା, ଦୁର୍ଜ୍ଜୟ, ଯୁଧାମନ୍ୟୁ, ଦୁର୍ଦ୍ଧର୍ଷ, ଧୃଷ୍ଟମନ୍ୟୁ ଓ ଅପରାଜିତ ଶିଖଣ୍ଡୀ, ଅଶ୍ମକ ଓ କେକେୟଦେଶୀୟ ବୀରମାନେ, ସୋମକନନ୍ଦନ କ୍ଷତ୍ରଧର୍ମା, ଚେଦିରାଜ, ଚେକିତାନ, କାଶୀରାଜପୁତ୍ର ବିଭୁ, ଦ୍ରୌପଦୀର ପଞ୍ଚପୁତ୍ର, ବିରାଟ, ମହାରଥ ଦ୍ରୁପଦ ଏବଂ ପୁରୁଷବ୍ୟାଘ୍ର ନକୁଳ, ସହଦେବ—ଏହି ସମସ୍ତ ବ୍ୟକ୍ତି ଯେଉଁ ସ୍ଥଳରେ ଯୋଦ୍ଧା ଓ ମଧୁସୂଦନ ଯେଉଁ ସ୍ଥଳରେ ମନ୍ତ୍ରୀ, ସେହି ସ୍ଥଳରେ କେଉଁ ବ୍ୟକ୍ତି ବା ଇହଲୋକରେ ଜୀବିତ ରହିବାର ଇଚ୍ଛା କରି ସେମାନଙ୍କ ସହିତ ଯୁଦ୍ଧ କରିପାରେ ? ୪୨ ।

ଏହି ସମସ୍ତ ଅରିନ୍ଦମ ପୁରୁଷମାନେ ଦିବ୍ୟାସ୍ତ୍ର-ବିକିରଣ କରିବାକୁ ଆରମ୍ଭ କଲେ କେଉଁମାନେ ତାହା ସହ୍ୟ କରି ପାରିବେ ! ଦୁର୍ଯ୍ୟୋଧନ, କର୍ଣ୍ଣ, ସୁବଳପୁତ୍ର ଶକୁନି ଓ ଦୁଃଶାସନ ଏହି ଚତୁର୍ଥ ବ୍ୟକ୍ତିବ୍ୟତୀତ ଅନ୍ୟ କାହାରିକି ଆମ୍ଭେ ଏପରି ଦେଖିନାହୁଁ ଯେ ତାହା ସହ୍ୟ କରିପାରେ । ଜନାର୍ଦ୍ଦନ ଶ୍ରୀକୃଷ୍ଣ ଯେଉଁମାନଙ୍କର ରଥ ରଶ୍ମିଧାରୀ ଓ ବଦ୍ଧକବଚ ମହାରଥ ଅର୍ଜ୍ଜୁନ ଯେଉଁମାନଙ୍କର ଯୋଦ୍ଧା, ସେମାନଙ୍କର ପରାଜୟପ୍ରସଙ୍ଗ କେଉଁଠାରେ ? ତୁମ୍ଭେ ଆମ୍ଭ ନିକଟରେ କହିଅଛ, ପୁରୁଷବ୍ୟାଘ୍ର ଭୀଷ୍ମ ଓ ଦ୍ରୋଣ ନିହତ ହୋଇଅଛନ୍ତି । ଅତଏବ ଦୁର୍ଯ୍ୟୋଧନ ଆମ୍ଭର ସେହି ସମସ୍ତ ବିଳାପବାକ୍ୟ କି ଶ୍ରବଣ କରୁନାହିଁ ? ବୋଧହୁଏ, ଆମ୍ଭର ପୁତ୍ରମାନେ ଦୀର୍ଘଦର୍ଶୀ ବିଦୁରଙ୍କର ବାକ୍ୟ ସଫଳ ହେବାର ଦେଖି ଶୋକ କରୁଅଛନ୍ତି

ଏବଂ ଆମ୍ଭର ସୈନ୍ୟମାନଙ୍କୁ ସାତ୍ୟକି ଓ ଅର୍ଜ୍ଜୁନକର୍ତ୍ତୃକ ଅଭିଭୂତ ଓ ରଥ-ମାର୍ଗସମସ୍ତ ଶୂନ୍ୟ ହେବାର ଦେଖି ମଧ୍ୟ ଶୋକ କରୁଅଛନ୍ତି । ଯେପରି ହିମଋତୁର ଅବସାନରେ ବାୟୁ ସହିତରେ ଅଗ୍ନି ଶୁଷ୍କ ତୃଣ ଓ କାଷ୍ଠ ଦଗ୍ଧ କରେ, ସେହି ପ୍ରକାର ଧନଞ୍ଜୟ ଆମ୍ଭର ସେନା ଦାହ କରୁଅଛନ୍ତି, ସନ୍ଦେହ ନାହିଁ ।

ସଞ୍ଜୟ ! ତୁମ୍ଭେ ଏହି ସମରବୃତ୍ତାନ୍ତ କହିବାରେ ନିପୁଣ ଅଟ, ଅତଏବ ଯେପରି ଘଟିଥିଲା, ତତ୍ସମସ୍ତ ଆମ୍ଭ ନିକଟରେ କୀର୍ତ୍ତନ କର ।୪୯। ତୁମ୍ଭେମାନେ ସାୟାହ୍ନ କାଳରେ ଉପାୟ ଅବଲମ୍ବନପୂର୍ବକ ଅଭିମନ୍ୟୁଙ୍କୁ ନିହତ କରି ପାର୍ଥଙ୍କ ନିକଟରେ ଅପରାଧୀ ହୁଅନ୍ତେ, ତୁମ୍ଭମାନଙ୍କର ମନ କି ପ୍ରକାର ହୋଇଥିଲା ? ୫୦ । ବତ୍ସ ! ଆମ୍ଭର ପୁତ୍ରମାନେ ଗାଣ୍ଡୀବଧନ୍ୱା ଅର୍ଜ୍ଜୁନଙ୍କର ମହତ୍ ଅପକାର କରି ଯୁଦ୍ଧରେ ତାହାଙ୍କର ପରାକ୍ରମର କାର୍ଯ୍ୟ-ମାନ କଦାଚ ସହ୍ୟ କରି ପାରି ନାହାନ୍ତି । ୫୧ ।

ଦୁର୍ଯ୍ୟୋଧନ, କର୍ଣ୍ଣ, ଦୁଃଶାସନ ଓ ଶକୁନି—ଏମାନେ ତେତେବେଳେ କି କାର୍ଯ୍ୟ ନିର୍ଦ୍ଦେଶ କରିଥିଲେ ଓ ମନ୍ଦମତି ଦୁର୍ଯ୍ୟୋଧନର ଅତ୍ୟନ୍ତଅମାତିପ୍ରଯୁକ୍ତ ଆମ୍ଭର ସମୁଦାୟ ପୁତ୍ରମାନେ ବା ମିଳିତ ହୋଇ ସଂଗ୍ରାମରେ କି କାର୍ଯ୍ୟ କରିଥିଲେ ? ମୂଢ଼ ଦୁର୍ଯ୍ୟୋଧନର ଚିତ୍ତ ବିଷୟ-ରାଗରେ ଉପହତ ହୋଇଅଛି । ସେହି ଦୁର୍ବୁଦ୍ଧି ଲୋଭର ଅନୁଗତ ହୋଇ ରାଜ୍ୟାଭିଳାଷୀ ହେବାରୁ ତାହାର ଆତ୍ମା ବିକୃତ ହୋଇ ଯାଇଅଛି । ହେ ସଞ୍ଜୟ ! ତାହାର ଦୁର୍ନୀତି ହେଉ ବା ସୁନୀତି ହେଉ, ଯୁଦ୍ଧରେ ଯାହା ଯାହା ହୋଇଥିଲା, ତତ୍ସମୁଦାୟ ଆମ୍ଭ ନିକଟରେ ତୁମ୍ଭେ ବର୍ଣ୍ଣନା କର । ୫୪ ।

---

## ୮୬ ଅଧ୍ୟାୟ

ସଞ୍ଜୟ ବୋଇଲେ—ହେ ରାଜନ ! ଯୁଦ୍ଧବିଷୟକ ସମସ୍ତ ବ୍ୟାପାର ଆମ୍ଭର ପ୍ରତ୍ୟକ୍ଷ ହୋଇଅଛି ; ସେ ସମସ୍ତ ଆମ୍ଭେ ଆପଣଙ୍କ ନିକଟରେ ବ୍ୟକ୍ତ କରୁଅଛୁଁ, ଆପଣ ସ୍ଥିର ହୋଇ ଶ୍ରବଣ କରନ୍ତୁ । ୧ ।

ହେ ଭରତକୁଳବରେଣ୍ୟ ! ଏହି ମହାନ୍ ଦୁର୍ନୀତିର କାର୍ଯ୍ୟ ଆପଣଙ୍କ ହେତୁ ସଂଘଟିତ ହୋଇଅଛି । ଜଳ ନିର୍ଗତ ହେଲାପରେ ଯେପରି ସେତୁବନ୍ଧନ ନିଷ୍ଫଳ ହୁଏ, ସେହିପରି ବର୍ତ୍ତମାନ ଆପଣଙ୍କର ଏହି ବିଳାପ ନିଷ୍ଫଳ ହେଉଅଛି ; ଅତଏବ ଆପଣ ଶୋକ କରିବେ ନାହିଁ । ୨ । ହେ ଭରତ ଶ୍ରେଷ୍ଠ ! କୃତାନ୍ତର ଏହି ଅଦ୍ଭୁତ ବିଧି କେହି ଅତିକ୍ରମ କରିପାରେ ନାହିଁ । ଏହି ପ୍ରାଣିହତ୍ୟାକାଣ୍ଡ ଯେ ସଂଘଟିତ ହେବ, ତାହା ପୂର୍ବରୁ ବିଦିତ ହୋଇଅଛି । ଅତଏବ ଆପଣ ଶୋକାକୁଳ ହୁଅନ୍ତୁ ନାହିଁ । ୩ । ଯଦି ଆପଣ ପୂର୍ବେ ଯୁଧିଷ୍ଠିର ଓ ଆପଣଙ୍କ ପୁତ୍ରମାନଙ୍କୁ ଦ୍ୟୂତକ୍ରୀଡ଼ାରୁ ନିବାରଣ କରିଥାଆନ୍ତେ, ତାହାହେଲେ ଏହି ଜନକ୍ଷୟ-ବ୍ୟାପାର ସଂଘଟିତ ହୁଅନ୍ତା ନାହିଁ । ୪ ।

ଯୁଦ୍ଧକାଳ ଉପସ୍ଥିତ ହେଲେ ମଧ୍ୟ ଯଦି ଏହି ସମସ୍ତ ସଂରବ୍ଧ ପୁତ୍ରମାନଙ୍କୁ ଆପଣ ନିବର୍ତ୍ତିତ କରିଥାଆନ୍ତେ, ତେବେ ଆପଣଙ୍କର ଏହି ବ୍ୟସନ ଉପସ୍ଥିତ ହୋଇ ନ ଥାନ୍ତା । ୫ । ଅଥବା ପୂର୍ବେ ଯଦି ଆପଣ "ଦୁର୍ଯ୍ୟୋଧନଙ୍କୁ ବନ୍ଧନ କର" ବୋଲି କୁରୁମାନଙ୍କୁ ଆଜ୍ଞା ଦେଇଥାଆନ୍ତେ, ତାହାହେଲେ ଆପଣଙ୍କର ଏ ବ୍ୟସନ ଉପସ୍ଥିତ ହୋଇ ନ ଥାନ୍ତା । ଆପଣ ଏହିରୂପ ନ କରିବାରୁ ପାଣ୍ଡବ, ପାଞ୍ଚାଳ, ବୃଷ୍ଣି ଓ ଅପରାପର ରାଜାମାନେ ଆପଣଙ୍କ ବୁଦ୍ଧିର ବ୍ୟତିକ୍ରମ ହୋଇଅଛି ବୋଲି ଉପଲବ୍ଧି କଲେ ।୭।

ଆପଣ ଯଦି ଧର୍ମପଥରେ ଅବସ୍ଥାନ କରିଥାନ୍ତେ, ପୁତ୍ରଙ୍କୁ ସତ୍ପଥବର୍ତ୍ତୀ କରି ପିତାର ଉପଯୁକ୍ତ କର୍ମ କରିଥାଆନ୍ତେ, ତାହାହେଲେ ଆପଣଙ୍କର ଏହି ବିପଦ ସଂଘଟିତ ହୋଇ ନ ଥାନ୍ତା । ୮ । ଆପଣ ପୃଥିବୀମଧ୍ୟରେ ପ୍ରାଜ୍ଞତମ ହୋଇ ସନାତନ ଧର୍ମକୁ ପରିତ୍ୟାଗପୂର୍ବକ ଦୁର୍ଯ୍ୟୋଧନ, କର୍ଣ୍ଣ ଓ ଶକୁନିର ମତାନୁବର୍ତ୍ତୀ ହେଲେ । ୯ । ଆପଣଙ୍କ ଅନ୍ତଃକରଣରେ ଅର୍ଥଲୋଭ ନିଷ୍ଟସ୍ୟୂ ଅଛି, ଅଥଚ ଆପଣ ଏହିକ୍ଷଣି ଏହିରୂପ ବିଳାପ କରୁଅଛନ୍ତି, ଅତଏବ ଆପଣଙ୍କର ବିଳାପ-ବାକ୍ୟ ବିଷ-ମିଶ୍ରିତ ମଧୁସଦୃଶ ବୋଲି ଆମ୍ଭେ ବିବେଚନା କରୁଅଛୁ । ୧୦ ।

କୃଷ୍ଣ ପୂର୍ବେ ଯେପରି ଆପଣଙ୍କୁ ମାନ୍ୟ କରନ୍ତି, ରାଜା ଯୁଧିଷ୍ଠିରଙ୍କୁ, ଭୀଷ୍ମ ଓ ଦ୍ରୋଣଙ୍କୁ ସେରୂପ ମାନ୍ୟ କରନ୍ତି ନାହିଁ । ୧୧ । ଯେତେବେଳେ

ସେ ଆପଣଙ୍କୁ ରାଜଧର୍ମରୁ ପରିଚ୍ୟୁତ ହେବାର ଜାଣିଲେ, ସେହି ଅବଧି ଆଉ ଆପଣଙ୍କୁ ତାଦୃଶ ସମ୍ମାନ କରନ୍ତି ନାହିଁ । ୧୨ । ଯେତେବେଳେ ଆପଣଙ୍କ ପୁତ୍ରମାନେ ପାଣ୍ଡବମାନଙ୍କୁ ଦୁର୍ବାକ୍ୟ କହି ନିର୍ବାସିତ କଲେ, ତେତେବେଳେ ଯେ ଆପଣ ପୁତ୍ରମାନଙ୍କ ନିମିତ୍ତ ରାଜ୍ୟକାମୁକ ହୋଇ ସେମାନଙ୍କ ଉପେକ୍ଷା କରିଥିଲେ, ତାହାର ଫଳ ଆପଣ ବର୍ତ୍ତମାନ ଅନୁଭବ କରୁଅଛନ୍ତି । ୧୩ ।

ହେ ଅନଘ ! ଆପଣଙ୍କର ଏହି ପୈତୃକ ରାଜ୍ୟ ତ ଅନେକାଂଶରେ ବିନଷ୍ଟ ହୋଇଥିଲା, ପରେ ପାଣ୍ଡବମାନେ କୃତ୍ସ୍ନ ପୃଥିବୀ ଜୟ କରି ଶାସନାଧୀନ କଲେ । ଆପଣ ଏହି ସମୁଦାୟ ପୃଥିବୀରାଜ୍ୟର ଉପଭୋଗ କରୁଅଛନ୍ତି । ୧୪ । ପାଣ୍ଡୁ ଏହି ଯାବତୀୟ ରାଜ୍ୟ ଜୟ କରି କୁରୁବଂଶର ଯଶୋବିସ୍ତାର କରିଥିଲେ । ଧର୍ମାତ୍ମା ପାଣ୍ଡବମାନେ ତଦପେକ୍ଷା ଅଧିକ ବିଶାଳ ରାଜ୍ୟ ଓ ଯଶ ଉପାର୍ଜ୍ଜନ କରିଅଛନ୍ତି । ୧୫ । ସେମାନଙ୍କର ତାଦୃଶ ମହତ୍‌କାର୍ଯ୍ୟ ଆପଣଙ୍କ ନିମିତ୍ତ ବିଫଳ ହେଲା । କାରଣ, ଆପଣ ସେମାନଙ୍କର ଜ୍ୟେଷ୍ଠତାତ ହୋଇ ରାଜ୍ୟଲୋଭରେ ଆମିଷଗୃଦ୍ଧି-ପକ୍ଷିସଦୃଶ ସେମାନଙ୍କୁ ଏକାବେଳକେ ରାଜ୍ୟ-ଭ୍ରଷ୍ଟ କରିଅଛନ୍ତି । ୧୬ । ପୁଣି ବର୍ତ୍ତମାନ ଯୁଦ୍ଧସମୟରେ ଆପଣ ନିଜର ଦୋଷ ସ୍ୱୀକାର ନ କରି ପୁତ୍ରମାନଙ୍କ ପ୍ରତି ବହୁଧା ଦୋଷ ଆରୋପ କରୁଅଛନ୍ତି । ଏହା ସମୁଚିତ ନୁହେଁ । ୧୭ ।

ଦେଖନ୍ତୁ, କ୍ଷତ୍ରିୟଶ୍ରେଷ୍ଠ ରାଜାମାନେ ଯୁଦ୍ଧରେ ପ୍ରବୃତ୍ତ ହୋଇ ପାଣ୍ଡବମାନଙ୍କର ସୈନ୍ୟ ଆଲୋଡ଼ିତ କରି ସ୍ୱୀୟ ସ୍ୱୀୟ ଜୀବନ ରକ୍ଷା କରିବାକୁ ସମର୍ଥ ହେଉ ନାହାନ୍ତି । ୧୮ । ଯେଉଁ ସମସ୍ତ ସୈନ୍ୟଙ୍କୁ କୃଷ୍ଣାର୍ଜ୍ଜୁନ ଏବଂ ଯେଉଁ ସକଳ ସୈନ୍ୟଙ୍କୁ ସାତ୍ୟକି ଓ ଭୀମସେନ ରକ୍ଷା କରନ୍ତି, କୌରବଗଣ ବ୍ୟତୀତ ସେହି ସମସ୍ତ ସୈନ୍ୟ ସହିତ କେଉଁ ବ୍ୟକ୍ତି ଯୁଦ୍ଧ କରିବାକୁ ପାରେ ? ୧୯ । ଯେଉଁମାନଙ୍କର ଯୋଦ୍ଧା ଧନଞ୍ଜୟ, ଯେଉଁମାନଙ୍କର ମନ୍ତ୍ରୀ ଜନାର୍ଦ୍ଦନ ଏବଂ ଯେଉଁମାନଙ୍କର ରକ୍ଷକ ସାତ୍ୟକି ଓ ବୃକୋଦର ; କୌରବଗଣ ବା ସେମାନଙ୍କର ପଦାନୁଗ ବୀରମାନଙ୍କ

ବ୍ୟକ୍ତି କେଉଁ ସତ୍ୟଧର୍ମା, ଧନୁର୍ଦ୍ଧର ସେମାନଙ୍କ ସହିତ ଯୁଦ୍ଧ କରିବାକୁ ଉତ୍ସାହ କରିପାରେ ? ୨୧ ।

କୌରବପକ୍ଷୀୟ କ୍ଷତ୍ରିୟ-ଧର୍ମ-ପରାୟଣ, ଅନ୍ତରଙ୍ଗ, ଶୂର, ବୀର ରାଜାମାନେ ମଧ୍ୟ ଯେତେଦୂର ସାଧ୍ୟ ଯୁଦ୍ଧ କରିଅଛନ୍ତି । ୨୨ । ସେ ଯାହା ହେଉ, ପୁରୁଷବ୍ୟାଘ୍ର ପାଣ୍ଡବପକ୍ଷୀୟ ବ୍ୟକ୍ତିମାନେ କୁରୁମାନଙ୍କ ସହିତ ଯେରୂପ ପରମ ସଙ୍କଟ ଯୁଦ୍ଧ କରିଅଛନ୍ତି, ତାହା ବିସ୍ତାର କରି କହୁଅଛି, ଶ୍ରବଣ କରନ୍ତୁ । ୨୩ ।

---

## ୮୭ ଅଧ୍ୟାୟ

ସଞ୍ଜୟ କହିଲେ—ସେହି ରାତ୍ରି ପ୍ରଭାତ ହେଲାରୁ ଶସ୍ତ୍ରଧାରିଶ୍ରେଷ୍ଠ ଦ୍ରୋଣ ସ୍ୱୀୟ ସୈନ୍ୟମାନଙ୍କୁ ବ୍ୟୂହିତ କରିବାକୁ ଆରମ୍ଭ କଲେ । ୧ । ସଂକ୍ରୁଦ୍ଧ, ଅମର୍ଷୀ ଓ ପରସ୍ପରବିଦ୍ୱେଷୀ ଶୂରମାନଙ୍କର ଗର୍ଜ୍ଜନ ସହିତ ବିବିଧ ବାକ୍ୟସବୁ ଶ୍ରବଣଗୋଚର ହେଲା । ୨ ।

ଅନେକ ବ୍ୟକ୍ତି କରଦ୍ୱାରା ଜ୍ୟା-ପରିମାର୍ଜ୍ଜନ କରି ଧନୁ ବିସ୍ଫାରଣ-ପୂର୍ବକ ନିଃଶ୍ୱାସ ପରିତ୍ୟାଗ ସହକାରେ "ସେହି ଧନଞ୍ଜୟ ବର୍ତ୍ତମାନ କାହିଁ" ବୋଲି ଚିତ୍କାରଶବ୍ଦ କଲେ । ୩ । ଅନେକ ବ୍ୟକ୍ତି ଉତ୍ତମ ମୁଷ୍ଟିଯୁକ୍ତ, ଲୁତଧାର, ଆକାଶସଙ୍କାଶ, ସୁଶାଣିତ ଅସିକୁ କୋଷମୁକ୍ତ ଓ ଉଦ୍ୟତ କରି ସଞ୍ଚାଳନ କଲେ । ୪ । ସହସ୍ର ସହସ୍ର ଶୂର ସମରୋତ୍ସୁକ ହୋଇ ଶିକ୍ଷା-ନୈପୁଣ୍ୟ-ପ୍ରଦର୍ଶନ-ସହକାରେ ଅସିମାର୍ଗରେ ଓ ଧନୁର୍ମାର୍ଗରେ ବିଚରଣ କରିବାର ଦେଖାଗଲେ । ଅନେକ ଲୋକ ଘଣ୍ଟାସଂଯୁକ୍ତ, ଚନ୍ଦନଚର୍ଚ୍ଚିତ, ସ୍ୱର୍ଣ୍ଣ ହୀରକଭୂଷିତ ଗଦାକୁ ଉତ୍କ୍ଷିପ୍ତ କରି, "କେଉଁଠାରେ ସେ ପାଣ୍ଡବ ?" ବୋଲି ପଚାରିଲେ । ୬ ।

ଅନେକ ବାହୁଶାଳୀ ବୀର ଯୁଦ୍ଧମଦରେ ଉନ୍ମତ୍ତ ହୋଇ ଉଚ୍ଛ୍ରିତ ଇନ୍ଦ୍ରଧ୍ୱଜସମ ପରିଘଦ୍ୱାରା ଆକାଶମାର୍ଗକୁ ଆଚ୍ଛାଦନ କଲେ । ୭ । ବିଚିତ୍ର ମାଲ୍ୟାଳଙ୍କୃତ ଓ ବିବିଧଆୟୁଧଧାରୀ ଅପରାପର ଶୂରମାନେ ସ୍ୱସ୍ୱ ସ୍ଥାନରେ

ବ୍ୟବସ୍ଥିତ ହୋଇ ସଂଗ୍ରାମ ଇଚ୍ଛାରେ 'କେଉଁଠାରେ ସେହି ଅର୍ଜୁନ ?' 'କେଉଁଠାରେ ସେହି ଗୋବିନ୍ଦ ?' 'କେଉଁଠାରେ ସେହି ବଳବୀର୍ଯ୍ୟାଭିମାନୀ ବୃକୋଦର ?' 'କେଉଁଠାରେ ସେମାନଙ୍କର ସୁହୃଦ୍‌ଗଣ ?' ଏହିରୂପେ ବୋଲି ସେମାନଙ୍କୁ ସଂଗ୍ରାମରେ ଆହ୍ୱାନ କରିବାକୁ ଆରମ୍ଭ କଲେ । ୯ । ଦ୍ରୋଣ ଶଙ୍ଖଧ୍ୱନିପୂର୍ବକ ରଥଘୋଟକଙ୍କୁ ତ୍ୱରାନ୍ୱିତ କରି ସେହି ସମସ୍ତ ବୀରମାନଙ୍କୁ ନିଜ ନିଜ ସ୍ଥାନରେ ବ୍ୟବସ୍ଥାପିତ କରି ପ୍ରବଳ ବେଗରେ ବିଚରଣ କରିବାକୁ ଆରମ୍ଭ କଲେ । ୧୦ ।

ହେ ମହାରାଜ ! ଯୁଦ୍ଧୋତ୍ସାହୀ ସେହି ସମସ୍ତ ସୈନ୍ୟ ବ୍ୟୂହରଚନା-କ୍ରମେ ନିଜ ନିଜ ସ୍ଥାନରେ ବ୍ୟବସ୍ଥିତ ହେଲାରୁ ଭରଦ୍ୱାଜ-ନନ୍ଦନ ଦ୍ରୋଣ, ଜୟଦ୍ରଥଙ୍କୁ କହିଲେ । ୧୧ । ହେ ସିନ୍ଧୁରାଜ ! ତୁମ୍ଭେ, ସୋମଦତ୍ତ-ନନ୍ଦନ, ମହାରଥ କର୍ଣ୍ଣ, ଅଶ୍ୱତ୍ଥାମା, ଶଲ୍ୟ, ବୃଷସେନ ଓ କୃପ—ତୁମ୍ଭେମାନେ ଲକ୍ଷ ଅଶ୍ୱାରୋହୀ, ଛଅ ଅଯୁତ ରଥୀ, ଚତୁର୍ଦ୍ଦଶ ସହସ୍ର ମତ୍ତଗଜାରୋହୀ ଏବଂ ଏକବିଂଶତିସହସ୍ର ବର୍ମଧାରୀ ପଦାତି ନେଇ ଆମ୍ଭ ସମୀପରୁ ଛଅ କ୍ରୋଶ ଅନ୍ତରରେ ଅବସ୍ଥାନ କର । ୧୪ । ତୁମ୍ଭେ ଏହିରୂପ ସେହି ସ୍ଥାନରେ ଅବସ୍ଥାନ କଲେ, ପାଣ୍ଡବମାନେ ଏମନ୍ତ କି ବାସବ ସହିତ ସମସ୍ତଦେବଗଣ ମଧ୍ୟ ତୁମ୍ଭଙ୍କୁ ପ୍ରାପ୍ତ ହୋଇ ପାରିବେ ନାହିଁ । ଅତଏବ ହେ ସୈନ୍ଧବ ? ତୁମ୍ଭେ ଆଶ୍ୱସିତ ହୁଅ । ୧୫ ।

ସିନ୍ଧୁରାଜ ଜୟଦ୍ରଥଙ୍କୁ ଦ୍ରୋଣାଚାର୍ଯ୍ୟ ଏହିରୂପେ କହିଲାରୁ ଜୟଦ୍ରଥ ଆଶ୍ୱସ୍ତ ହୋଇ ଦ୍ରୋଣଙ୍କର କଥିତ ସେହି ସମସ୍ତ ମହାରଥୀମାନଙ୍କ ଦ୍ୱାରା ପରିବୃତ ହୋଇ ପ୍ରାସଧାରୀ ଯତ୍ନଶୀଳ, ବର୍ମୀ ଆଶ୍ରିତସାଦିଗଣ ଓ ଗାନ୍ଧାରଦେଶୀୟ ବୀରମାନଙ୍କ ସମଭିବ୍ୟାହାରରେ ଦ୍ରୋଣନିର୍ଦ୍ଦିଷ୍ଟ ସ୍ଥାନକୁ ଗମନ କଲେ । ୧୮ ।

ଆପଣଙ୍କର ପୁତ୍ର ଦୁର୍ମ୍ମର୍ଷଣ ଯୁଦ୍ଧକୁଶଳ ଆରୋହୀ ସହିତ ଭୀଷଣାକାର ଭୀଷଣ କାର୍ଯ୍ୟକ୍ଷମ ସାର୍ଦ୍ଧ ଏକସହସ୍ର ମତ୍ତହସ୍ତୀଙ୍କ ଦ୍ୱାରା ସମବେତ ହୋଇ ସର୍ବସୈନ୍ୟଙ୍କ ଅଗ୍ରଭାଗରେ ଯୁଦ୍ଧୋଦ୍ୟତ ହୋଇ ଅବସ୍ଥାନ କଲେ । ୨୦ । ତତ୍ପରେ ଆପଣଙ୍କର ଦୁଇ ପୁତ୍ର ଦୁଃଶାସନ ଓ ବିକର୍ଣ୍ଣ ସିନ୍ଧୁରାଜଙ୍କ

ପ୍ରୟୋଜନସିଦ୍ଧିନିମିତ୍ତ ଅଗ୍ରସ୍ଥିତ ସୈନ୍ୟ ମଧ୍ୟରେ ଅବସ୍ଥାନ କଲେ । ୨୧ । ଭରଦ୍ୱାଜ-ନନ୍ଦନ ଦ୍ରୋଣ ସ୍ୱୟଂ ଯଥାସ୍ଥାନରେ ବ୍ୟବସ୍ଥିତ ରଥୀ, ସାଦୀ, ଗଜ ଓ ପଦାତିସମୂହଦ୍ୱାରା ଓ ନାନାନୃପତିମାନଙ୍କଦ୍ୱାରା ଚକ୍ର-ଶକଟବ୍ୟୂହ ନିର୍ମାଣ କଲେ । ଦୈର୍ଘ୍ୟରେ ଏହି ବ୍ୟୂହଟି ଚତୁର୍ଦ୍ଦଶ କ୍ରୋଶ ଅଟେ ଏବଂ ସେହି ବ୍ୟୂହ ପଶ୍ଚାତ୍ର ଅର୍ଦ୍ଧଭାଗରେ ଯେଉଁ ଚକ୍ରବ୍ୟୂହ କଲେ, ତାହାର ବିସ୍ତାର ଦଶକ୍ରୋଶ । ୨୩ । ସେହି ବ୍ୟୂହର ପଶ୍ଚାତ୍‌ଭାଗରେ ଥିବା ଦୁର୍ଭେଦ୍ୟ ପଦ୍ମାକାର ଚକ୍ରବ୍ୟୂହର ମଧ୍ୟସ୍ଥଳରେ ସୂଚୀସଦୃଶ ଗୂଢ଼ ଗୋଟିଏ ବ୍ୟୂହ ପ୍ରସ୍ତୁତ କଲେ । ୨୪ ।

ଏହିରୂପେ ସେ ମହାବ୍ୟୂହ ସୁସଜ୍ଜିତ କରି ତାହାର ଅଗ୍ରଭାଗରେ ଅବସ୍ଥାନ କଲେ । ମହାଧନୁର୍ଦ୍ଧର କୃତବର୍ମା ସେହି ପଦ୍ମଗର୍ଭସ୍ଥ ସୂଚୀମୁଖରେ ଅବସ୍ଥିତ ହେଲେ । ୨୫ । ତାହାଙ୍କ ପରେ କାମ୍ବୋଜ ଓ ଜଳସନ୍ଧ ଏବଂ ତାହାଙ୍କ ପରେ ଅମାତ୍ୟଗଣଙ୍କ ସହିତ ଦୁର୍ଯୋଧନ ଅବସ୍ଥାନ କଲେ । ଏହି ଶକଟବ୍ୟୂହର ମୁଖରକ୍ଷକ ଯୋଦ୍ଧାମାନଙ୍କର ପଶ୍ଚାତ୍‌ଭାଗରେ ପୂର୍ବୋକ୍ତ ସୂଚୀତୁଲ୍ୟ ବ୍ୟୂହର ପାର୍ଶ୍ୱପ୍ରଦେଶରେ ମହତ୍‌ସୈନ୍ୟଦଳରେ ସମାବୃତ ହୋଇ ରାଜା ଜୟଦ୍ରଥ ଅବସ୍ଥିତ ହେଲେ । ୨୮ । ଦ୍ରୋଣାଚାର୍ଯ୍ୟ ସେହି ଶକଟର ମୁଖରେ ଅବସ୍ଥାନ କଲେ । ଉକ୍ତ କୃତବର୍ମା ତାହାଙ୍କ ପଶ୍ଚାତ୍‌ରେ ଅବସ୍ଥିତ ହୋଇ ତାହାଙ୍କୁ ରକ୍ଷା କରିବାକୁ ପ୍ରବୃତ୍ତ ହେଲେ । ୨୯ । ଶ୍ୱେତବର୍ମ୍ମିତ ଓ ଶ୍ୱେତ-ଉଷ୍ଣୀଷ-ଧାରୀ ଓ ବିଶାଳବକ୍ଷ ମହାଭୁଜ ଦ୍ରୋଣ ଧନୁର୍ବିସ୍ତାରଣ କରି କ୍ରୁଦ୍ଧ ଅନ୍ତକସଦୃଶ ସେଠାରେ ଅବସ୍ଥିତ ହେଲେ ।୩୦।

କୌରବମାନେ ଦ୍ରୋଣଙ୍କର ରକ୍ତବର୍ଣ୍ଣ ଅଶ୍ୱଯୋଜିତ, ପତାକା-ସଂଯୁକ୍ତ, ବେଦୀ ଓ କୃଷ୍ଣାଜିନ ଧ୍ୱଜସମନ୍ୱିତ ରଥକୁ ଅବଲୋକନ କରି ସାତିଶୟ ହର୍ଷାନ୍ୱିତ ହେଲେ । ୩୧ । ସିଦ୍ଧ ଓ ଚାରଣଗଣ ଦ୍ରୋଣ-ରଚିତ ବ୍ୟୂହକୁ ଅବଲୋକନ କରି ମହାବିସ୍ମୟାନ୍ୱିତ ହେଲେ । ୩୨ । ପ୍ରାଣିମାନେ ସେହି ବ୍ୟୂହକୁ ଅବଲୋକନ କରି ବିବେଚନା କଲେ ଯେ, ସେହି ଅଦ୍ଭୁତ ସୈନ୍ୟବ୍ୟୂହ ନାନାଜନପଦସମାକୁଳା, ଶୈଳ-ସାଗର ଓ ଅରଣ୍ୟ-ସଂଯୁକ୍ତା, ସମସ୍ତ ପୃଥିବୀକୁ ଗ୍ରାସ କରିବାକୁ ସମର୍ଥ ଅଟେ । ୩୩ । ରାଜା ଦୁର୍ଯୋଧନ ବହୁ ରଥ, ମନୁଷ୍ୟ, ଅଶ୍ୱ, ହସ୍ତୀ ଓ ପଦାତିବିଶିଷ୍ଟ, ପ୍ରତିପକ୍ଷର ଭୟଜନକ,

ଅଦ୍ଭୁତାକାର, ଶତ୍ରୁ-ହୃଦୟ-ଭେଦକ, ସଜ୍ଜିତ ସେହି ମହତ୍ ଶକଟ-ବ୍ୟୂହକୁ ଅବଲୋକନ କରି ଆନନ୍ଦିତ ହେଲେ । ୩୪ ।

---

# ୮ ଅଧ୍ୟାୟ

ସଞ୍ଜୟ ବୋଇଲେ—ହେ ମହାରାଜ ! ଏହିରୂପ ବ୍ୟୂହ ପ୍ରସ୍ତୁତ ହେବାରୁ ବ୍ୟୂହସ୍ଥିତ ବୀରମାନେ ଟଙ୍କାରଶବ୍ଦରେ ତର୍ଜ୍ଜନ-ଗର୍ଜ୍ଜନ କଲେ । ଭେରୀ ଓ ମୃଦଙ୍ଗର ବାଦ୍ୟଧ୍ୱନି ହେଲା । ୧ । ସେନାମାନଙ୍କର ଗମ୍ଭୀର ଗର୍ଜ୍ଜନ, ବାଦ୍ୟର ନିଃସ୍ୱନ ଓ ଶଙ୍ଖର ଭୀଷଣ ନିଃସ୍ୱନ ଦ୍ୱାରା ସମରକ୍ଷେତ୍ର ପରିପୂର୍ଣ୍ଣ ହେଲା । ୨ । ଭରତବଂଶୀୟ ବୀରମାନେ ଯୁଯୁତ୍ସୁ ହୋଇ ଧୀରେ ଧୀରେ ପ୍ରହାରୋଦ୍ୟତ ହେଲେ । ସେହି ଭୀଷଣ ସମୟରେ ସବ୍ୟସାଚୀ ସେଠାରେ ଦୃଷ୍ଟିଗୋଚର ହେଲେ । ୩ ।

ହେ ଭାରତ ! ସବ୍ୟସାଚୀଙ୍କ ଆଗରେ ସହସ୍ର ଆମିଷାଶୀ ପକ୍ଷୀ ଓ ବାୟସମାନେ କ୍ରୀଡ଼ା କରି କରି ଗମନାଗମନ କରୁଥିଲେ । ୪ । ସେହି ଅତି ଭୟଙ୍କର ସମୟରେ ସହସ୍ର ସହସ୍ର ଜ୍ୱଳନ୍ତଉଲ୍କା ନିର୍ଘାତର ସହିତ ପତିତ ହେଲା ଓ ପୃଥିବୀ ପ୍ରକମ୍ପିତା ହେଲେ । ଅର୍ଜ୍ଜୁନଙ୍କ ସମାଗମସମୟରେ ସେହି ସଂଗ୍ରାମ ସମୁପସ୍ଥିତ ହେଲାରୁ ନିର୍ଘାତସହିତ ବାୟୁ ଗୃହରିଆଡ଼ୁ ପ୍ରବଳ-ବେଗରେ ବହମାନ ହୋଇ କଙ୍କର ବର୍ଷଣ କରିବାକୁ ଆରମ୍ଭ କଲା । ୭ । ନକୁଳପୁତ୍ର ଶତାନୀକ ଓ ପୃଷତପୁତ୍ର ଧୃଷ୍ଟଦ୍ୟୁମ୍ନ- ଯୁଦ୍ଧପ୍ରାଜ୍ଞ ଏହି ଦୁଇ ବୀର ସେହି ସମୟରେ ପାଣ୍ଡବମାନଙ୍କର ସୈନ୍ୟବ୍ୟୂହ ରଚନା କଲେ । ୮ ।

ହେ ମହାରାଜ ! ଆପଣଙ୍କ ପୁତ୍ର ଦୁର୍ମର୍ଷଣ, ଏକସହସ୍ର ରଥୀ, ଏକଶତ ଗଜାରୋହୀ, ତିନିସହସ୍ର ଅଶ୍ୱାରୋହୀ ଓ ଦଶ ସହସ୍ର ପଦାତି ନେଇ ସାର୍ଦ୍ଧସହସ୍ର ଧାନୁଷ୍କ ଯୋଦ୍ଧାମାନଙ୍କ ମଧ୍ୟରେ ସମସ୍ତସୈନ୍ୟର ଅଗ୍ରରେ ଅବସ୍ଥାନ କଲେ । ୧୦ ।

ହେ ରଥିଗଣ ! ଯେପରି ବେଳାଭୂମି ସମୁଦ୍ରର ବେଗକୁ ନିବାରଣ କରେ, ସେହିରୂପେ ଆମ୍ଭେ ଯୁଦ୍ଧଦୁର୍ମଦ, ଶତ୍ରୁତାପନ, ଗାଣ୍ଡୀବଧନ୍ୱା ଅର୍ଜ୍ଜୁନଙ୍କୁ

ଅଦ୍ୟ ନିବାରଣ କରିବୁଁ । ୧୧ । ଯେପରି ପର୍ବତଶୃଙ୍ଗ ସହିତ ପର୍ବତଶୃଙ୍ଗ ସଂଲଗ୍ନ ହୁଏ, ସେହିପରି ଲୋକମାନେ ଅଦ୍ୟ ସଂକ୍ରୁଦ୍ଧ ଧନଞ୍ଜୟଙ୍କୁ ଯୁଦ୍ଧରେ ଆମ୍ଭ ସହିତ ସଂଲଗ୍ନ ହେବାର ଦର୍ଶନ କରିବେ । ୧୨ । ହେ ରଥିମାନେ ! ତୁମ୍ଭେମାନେ ସଂଗ୍ରାମର ଆକାଂକ୍ଷୀମାନ ହୋଇ ଅବସ୍ଥାନ କର, ଆମ୍ଭେ ସେହିସମସ୍ତ ସଂହତ ବୀରମାନଙ୍କ ସହିତ ଯୁଦ୍ଧ କରି ଯଶ ଓ ମାନ ବୃଦ୍ଧି କରୁଁ । ହେ ଭୂପାଳ ! ମହାଧନୁର୍ଦ୍ଧରମାନଙ୍କ ଦ୍ୱାରା ସମାବୃତ ହୋଇ, ମହାଧନୁର୍ଦ୍ଧର, ମହାତେଜସ୍ୱୀ ମହାତ୍ମା ଦୁର୍ମର୍ଷଣ ଏହିରୂପ କହି ଅବସ୍ଥାନ କଲେ । ୧୩ ।

ତଦନନ୍ତର ପାଶହସ୍ତ ବରୁଣ, କ୍ରୁଦ୍ଧ ଅନ୍ତକ ବା ବଜ୍ରଧାରୀ ଇନ୍ଦ୍ରଙ୍କ ସଦୃଶ, କାଳପ୍ରେରିତ ଦଣ୍ଡହସ୍ତ କୃତାନ୍ତତୁଲ୍ୟ, ଅସହ୍ୟ ଶୂଳପାଣି ରୁଦ୍ରଙ୍କ ପରି, ଅକ୍ଷୋଭ୍ୟ ନିବାତକବଚମାନଙ୍କର ଯମସ୍ୱରୂପ, ସତ୍ୟନିଷ୍ଠ, ଜୟଶୀଳ, ଜୟନାମକ ନର, ଜୟଦ୍ରଥ-ବଧରୂପ ମହାବ୍ରତରୁ ଉତ୍ତୀର୍ଣ୍ଣ ହେବା ମାନସରେ ଯେପରି ଯୁଗାନ୍ତକାଳର ଶିଖାବାନ୍ ଅଗ୍ନିସ୍ୱରୂପରେ ପୁନର୍ବାର ବିଶ୍ୱଦାହ କରିବେ ବୋଲି କ୍ରୋଧ, ଅମର୍ଷ, ବଳ ଓ ବୀର୍ଯ୍ୟରେ ଉଦ୍ଧୃତ ହୋଇ ଓ ନାରାୟଣଙ୍କ ଅନୁଗାମୀ ହୋଇ ଶୁଭ୍ରମାଲ୍ୟ, ଅମ୍ବର ଓ ସମୁଜ୍ଜ୍ୱଳ ବର୍ମ୍ମ ପରିଧାନ କରି ଏବଂ ଖରତର ଖଡ୍‌ଗ, ସୁବର୍ଣ୍ଣକିରୀଟ, ସୁଶୋଭନ ଅଙ୍ଗଦ, ଓ ସୁରୁଚିର କୁଣ୍ଡଳ ଧାରଣପୂର୍ବକ ଶ୍ରେଷ୍ଠରଥରେ ଅବସ୍ଥାନ କରି ଗାଣ୍ଡୀବ ଶରାସନ ପ୍ରକମ୍ପନପୂର୍ବକ ରଣସ୍ଥଳରେ ଉଦିତସୂର୍ଯ୍ୟସଦୃଶ ପ୍ରତିଭାତ ହେଲେ । ୧୯ । ପ୍ରତାପବାନ୍ ଧନଞ୍ଜୟ ସୁସଜ୍ଜିତ ରଥକୁ ବିପକ୍ଷର ଅଗ୍ରୀମ ବୃହତ୍ ସୈନ୍ୟଦଳଠାରୁ ଶରପାତ ସ୍ଥଳରେ ରଖି ଶଙ୍ଖଧ୍ୱନି କଲେ । ୨୦ ।

ଅନନ୍ତର କୃଷ୍ଣ ମଧ୍ୟ ଅସମ୍ଭ୍ରାନ୍ତଚିତ୍ତରେ ବଳପୂର୍ବକ ତାହାଙ୍କ ସହିତ ପାଞ୍ଚଜନ୍ୟ ଶଙ୍ଖଶ୍ରେଷ୍ଠକୁ ବାଦିତ କଲେ । ୨୧ । ହେ ନରପାଳ ! ସେମାନଙ୍କର ଭୟଙ୍କର ଶଙ୍ଖନିନାଦରେ ସେନାମାନେ ରୋମାଞ୍ଚଗାତ୍ର, କମ୍ପିତକଳେବର ଓ ବିଚେତନପ୍ରାୟ ହେଲେ । ୨୨ । ଯେପରି ଅଶନି-ନିଃସ୍ୱନ ଶ୍ରବଣ କରି ସମସ୍ତପ୍ରାଣୀ ତ୍ରାସାନ୍ୱିତ ହୁଅନ୍ତି, ସେହିରୂପ ସେହି ଶଙ୍ଖଧ୍ୱନି ଶ୍ରବଣ କରି ଆପଣଙ୍କର ସୈନିକପୁରୁଷମାନେ ସନ୍ତ୍ରସ୍ତ ହେଲେ ।୨୩। ବାହନମାନେ ମଳମୂତ୍ର ପରିତ୍ୟାଗ କରି ପକାଇଲେ, ଏହିରୂପ ସମୁଦାୟ ସୈନ୍ୟ ଉଦ୍‌ବିଗ୍ନ ହେଲେ ।୨୪। ହେ ରାଜନ୍ ! ମନୁଷ୍ୟମାନେ ସେହି ଶଙ୍ଖ-

ଶବ୍ଦରେ ବିଷଣ୍ଣ ହେଲେ । କେହି କେହି ସଂଜ୍ଞାହୀନ ଓ କେହି କେହି ବା ବିସ୍ମୟାନ୍ୱିତ ହେଲେ । ୨୫ ।

ତଦନନ୍ତର ଅର୍ଜ୍ଜୁନଙ୍କର ରଥସ୍ଥିତ କପିବର, ଧ୍ୱଜସ୍ଥିତ ଭୂତମାନଙ୍କ ସହିତ ଆପଣଙ୍କ ସୈନ୍ୟମାନଙ୍କୁ ଭୟପ୍ରଦର୍ଶନପୂର୍ବକ ମୁଖବ୍ୟାଦାନ କରି ମହା ଶବ୍ଦ କଲା । ୨୬ । ତତ୍ପରେ ଆପଣଙ୍କ ସୈନ୍ୟମାନଙ୍କର ହର୍ଷଜନକ ଶଙ୍ଖ, ଭେରୀ, ମୃଦଙ୍ଗ ଓ ଆନକବାଦ୍ୟ ହେଲା । ୨୭ । ନାନାପ୍ରକାର ବାଦ୍ୟ ଯନ୍ତ୍ରର ଶବ୍ଦ, ମହାରଥ ବୀରମାନଙ୍କର କ୍ଷ୍ୱେଡ଼ିତ, ଆସ୍ଫୋଟିତ, ଉତ୍କୃଷ୍ଟ ଓ ସିଂହନାଦରେ ସମାକୁଳ ଓ ଭୀରୁମାନଙ୍କର ଭୟବର୍ଦ୍ଧନ ହୋଇ ଅତି ତୁମୁଳ ହେଲା । ଇନ୍ଦ୍ରନନ୍ଦନ ଅତୀବ ହର୍ଷାନ୍ୱିତ ହୋଇ କୃଷ୍ଣଙ୍କୁ ବକ୍ଷ୍ୟମାଣ କଥା କହିଲେ । ୨୯ ।

---

# ୮୯ ଅଧ୍ୟାୟ

ଅର୍ଜ୍ଜୁନ କହିଲେ,—ହେ ହୃଷୀକେଶ ! ଯେ ସ୍ଥାନରେ ଦୁର୍ମର୍ଷଣ ଅବସ୍ଥାନ କରୁଅଛି, ସେହି ସ୍ଥାନକୁ ଅଶ୍ୱ ଚାଳନା କରନ୍ତୁ । ଆମ୍ଭେ ସେହି ଗଜସୈନ୍ୟଙ୍କୁ ଭେଦ କରି ଶତ୍ରୁସୈନ୍ୟରେ ପ୍ରବେଶ କରିବୁଁ । ୧ ।

ସଞ୍ଜୟ କହିଲେ,—ସବ୍ୟସାଚୀ ମହାବାହୁ କେଶବଙ୍କୁ ଏହିରୂପେ କହିବାରୁ ଯେ ସ୍ଥାନରେ ଦୁର୍ମର୍ଷଣ ଅବସ୍ଥାନ କରୁଥିଲେ, କେଶବ ସେହି ସ୍ଥାନକୁ ଅଶ୍ୱ ଚାଳନା କଲେ । ୨ । ଅନନ୍ତର ଅର୍ଜ୍ଜୁନଙ୍କ ସହିତ କୌରବ-ମାନଙ୍କର ରଥ, ହସ୍ତୀ, ଓ ନରସଂହାରକ ଅତିଦାରୁଣ ତୁମୁଳ ଯୁଦ୍ଧ ଆରମ୍ଭ ହେଲା । ୩ । ମେଘ ଯେପରି ପର୍ବତସମୂହ ଉପରେ ଜଳ ବର୍ଷଣ କରେ, ସେହିରୂପେ ପାର୍ଥ ଶର ବର୍ଷଣ କଲେ । ୪ । ସେହି ସମସ୍ତ ରଥୀ ମଧ୍ୟ ତ୍ୱରିତ ହୋଇ ଲଘୁହସ୍ତରେ କୃଷ୍ଣାର୍ଜ୍ଜୁନଙ୍କ ଉପରେ ଶରଜାଲ ବିସ୍ତାର କଲେ । ୫ ।

ତଦନନ୍ତର ମହାବାହୁ ଅର୍ଜ୍ଜୁନ ବିପକ୍ଷମାନଙ୍କ କର୍ତ୍ତୃକ ବାର୍ଯ୍ୟମାଣ ହୋଇ ପୁଣି କ୍ରୋଧାବିଷ୍ଟ ଚିତ୍ତରେ ଶରନିକର ଦ୍ୱାରା ରଥୀମାନଙ୍କର ମସ୍ତକ-

ସବୁରୁ ଦେହତ୍ର ସଂହରଣ କଲେ । ୬ । କୌଣସି କୌଣସି ମସ୍ତକରେ ଚକ୍ଷୁ ଉଦ୍‌ଭ୍ରାନ୍ତ ଓ ଓଷ୍ଠପୁଟ ସନ୍ଦଷ୍ଟ ହୋଇ ରହିଅଛି । କୁଣ୍ଡଳ ଓ ଶିରସ୍ତ୍ରାଣ-ସଂଯୁକ୍ତ ସୁଶୋଭିତ ସେହି ସମସ୍ତ ମସ୍ତକ ଦ୍ୱାରା ବସୁଧା ପରିକୀର୍ଣ୍ଣା ହେଲା ।୭। ଯୋଦ୍ଧାମାନଙ୍କର ବଦନସମୂହ ଇତସ୍ତତଃ ବିକୀର୍ଣ୍ଣ ହୋଇ ବିଧ୍ୱସ୍ତ ପଦ୍ମବନ-ତୁଲ୍ୟ ପ୍ରକାଶ ପାଇଲା । ୮ । କାଞ୍ଚନନିର୍ମିତ ବର୍ମସମୂହ ରକ୍ତସିକ୍ତ ଓ ପରସ୍ପରସଂସକ୍ତ ହୋଇ ସବିଦ୍ୟୁତ୍‌ମେଘସଦୃଶ ଦୃଷ୍ଟ ହେଲା । ୯ । ଯଥା-କାଳରେ ପରିପକ୍ୱ ତାଳଫଳର ପତନଶବ୍ଦ ଯେରୂପ ହୁଏ ସେହିରୂପ ବସୁଧା ତଳରେ ମସ୍ତକପତନର ଶବ୍ଦ ହେଲା । ୧୦ ।

ତଦନନ୍ତର ରଣସ୍ଥଳରେ କବନ୍ଧ ସମୂହ ଉତ୍‌ଥିତ ହେଲେ । କୌଣସି କୌଣସି କବନ୍ଧ ଭୁଜଦ୍ୱାରା ଖଡ୍‌ଗ ନିଷ୍କର୍ଷଣପୂର୍ବକ ଉଦ୍ୟତ କରି ଅବସ୍ଥିତ ହେଲେ । ୧୧ । ବୀରପୁରୁଷମାନେ ସମରରେ ଅର୍ଜ୍ଜୁନଙ୍କ ପ୍ରତି ଅସହିଷ୍ଣୁ ହୋଇ ଅର୍ଜ୍ଜୁନଙ୍କୁ ପରାଜିତ କରିବାକୁ ନିବିଷ୍ଟଚେତା ଥିଲେ । ସେମାନଙ୍କର ଆପଣା ଆପଣା ମସ୍ତକସମୂହ ଯେ କର୍ତ୍ତିତ ହୋଇ ପତିତ ହେଉଅଛି, ତାହା ସେମାନେ ଜାଣି ପାରିଲେ ନାହିଁ । ୧୨ । ଅଶ୍ୱମାନଙ୍କର ମସ୍ତକ, ଗଜଯୂଥର ଶୁଣ୍ଡ ଓ ବୀରମାନଙ୍କର ବାହୁ ଓ ମସ୍ତକସମୂହରେ ମେଦିନୀ ପରିକୀର୍ଣ୍ଣା ହେଲା ।

ହେ ପ୍ରଭୋ ! ଆପଣଙ୍କ ସୈନ୍ୟମାନଙ୍କ ମଧ୍ୟରେ ଯୋଦ୍ଧାଗଣ "ଏହି ଅର୍ଜ୍ଜୁନ, କିରୂପେ ଏଠାରେ ଅର୍ଜ୍ଜୁନ ? ଏହି ଅର୍ଜ୍ଜୁନ"—ଏହି ରୂପ ବ୍ୟକ୍ତ କଲେ । ସେମାନଙ୍କ ପକ୍ଷରେ ରଣସ୍ଥଳ ଅର୍ଜ୍ଜୁନମୟ ହେଲା । ୧୪ । ସେମାନଙ୍କ ମଧ୍ୟରେ ଅନେକ ବ୍ୟକ୍ତି କାଳକର୍ତ୍ତୃକ ମୋହିତ ହୋଇ ସମସ୍ତ ଜଗତ୍‌କୁ ଅର୍ଜ୍ଜୁନମୟ ମନେ କରି ନିଜେ ନିଜେ ପରସ୍ପର ହତାହତ ହେଲେ । ୧୫ । ରକ୍ତାକ୍ତ କଳେବର ସଂଜ୍ଞାହୀନ ବୀରମାନେ ରଣଶଯ୍ୟାରେ ଶୟନ ଓ ଦାରୁଣବେଦନାରେ ନିତାନ୍ତ କାତର ହୋଇ ସ୍ୱ ସ୍ୱ ବାନ୍ଧବଗଣଙ୍କ ନାମ କୀର୍ତ୍ତନ କରି ଆର୍ତ୍ତନାଦ କରିବାକୁ ଆରମ୍ଭ କଲେ । ୧୬ । ଲୌହବଦ୍ଧ ଲଗୁଡ଼ତୁଲ୍ୟ ଓ ମହାସର୍ପସଦୃଶ ଯୋଦ୍ଧୃଗଣଙ୍କର ବାହୁସକଳ ଓ ଭିନ୍ଦିପାଳ, ପ୍ରାସ, ଶକ୍ତି, ଋଷ୍ଟି, ପରଶ୍ୱଧ, ନିସ୍ତ୍ରିଂଶ, ଶରାସନ, ତୋମର, ବାଣ, ବର୍ମ୍ମ, ଅଙ୍ଗଦ, ଅନ୍ୟାନ୍ୟ ଆଭରଣ ଓ ଗଦାସହିତ ଅର୍ଜ୍ଜୁନଙ୍କର ମହାସ୍ତ୍ରଦ୍ୱାରା ଛିନ୍ନ

ଓ ସଂରକ୍ତ ହୋଇ ବେଗରେ ଗମନ କଲା ଓ ପତିତ ହୋଇ ଉପସ୍ଥିତ ହେଲା ଏବଂ ବିବିଧରୂପରେ ଭୂମିରେ ଲୁଣ୍ଠନ ଓ ଭ୍ରମଣ କଲା । ୧୯ । ଯେଉଁମାନେ ପାର୍ଥଙ୍କ ପ୍ରତି କ୍ରୋଧାବିଷ୍ଟ ହୋଇ ଧାବିତ ହେଲେ, ଅର୍ଜ୍ଜୁନଙ୍କ ବାଣ ଅନ୍ତକସ୍ୱରୂପ ହୋଇ ସେମାନଙ୍କ ଶରୀରରେ ପ୍ରବେଶ କରି ସେମାନଙ୍କୁ ବିନାଶ କଲା । ୨୦ ।

ଅର୍ଜ୍ଜୁନ ରଥବର୍ତ୍ମରେ ନୃତ୍ୟ କରି କରି ଶରାସନ ଆକର୍ଷଣ କଲେ । ସେହି ସମୟରେ କେହି ତାହାଙ୍କର ଅଣୁମାତ୍ର ଅବକାଶ ଦେଖିବାକୁ ପାଇଲେ ନାହିଁ । ୨୧ । ସେ ଯତ୍ନବାନ୍ ହୋଇ ଏପରି ଶୀଘ୍ର ଶୀଘ୍ର ଶର ନିକ୍ଷେପ କଲେ ଯେ, ଲୋକମାନେ ତାହାଙ୍କର ଲଘୁହସ୍ତ ଅବଲୋକନ କରି ବିସ୍ମୟାପନ୍ନ ହେଲେ । ୨୨ । ସେ ମାହୁନ୍ତର ସହିତ ହସ୍ତିକୁ, ସାଦୀର ସହିତ ଅଶ୍ୱକୁ ଓ ସାରଥି ସହିତ ରଥୀମାନଙ୍କୁ ଶରସମୂହରେ ଭେଦ କଲେ । ୨୩। ଆବର୍ତ୍ତମାନ, ଅତିବେଗରେ ଭ୍ରମଣକାରୀ, ଯୁଧ୍ୟମାନ କିମ୍ବା ସମ୍ମୁଖରେ ଅବସ୍ଥିତ ଯୋଦ୍ଧାମାନଙ୍କ ମଧ୍ୟରୁ ଏପରି କେହି ଅବଶିଷ୍ଟ ରହିଲେ ନାହିଁ, ଯାହାକୁ କି ସେ ନିହତ ନ କଲେ । ୨୪ ।

ଯେପରି ଗଗନରେ ସୂର୍ଯ୍ୟ ସମୁଦିତ ହୋଇ ମହତ୍ ଅନ୍ଧକାରକୁ ବିନଷ୍ଟ କରନ୍ତି, ସେହିପ୍ରକାର ସେ କଙ୍କପତ୍ରିଶରସମୂହ ଦ୍ୱାରା ଗଜସୈନ୍ୟ-ମାନଙ୍କର ସଂହାର କଲେ ।୨୫। ଯେପରି ପ୍ରଳୟକାଳରେ ପର୍ବତସମୂହ ଦ୍ୱାରା ବସୁନ୍ଧରା ପରିକୀର୍ଣ୍ଣା ହୁଏ, ସେହିପ୍ରକାର ଆପଣଙ୍କ ସୈନ୍ୟମଧ୍ୟରେ ପତିତ ହସ୍ତୀମାନଙ୍କ ଦ୍ୱାରା ରଣସ୍ଥଳ ପରିକୀର୍ଣ୍ଣ ଦୃଷ୍ଟ ହେଲା । ୨୬ । ଯେପରି ମଧ୍ୟାହ୍ନ ସମୟରେ ପ୍ରାଣିମାନେ ସୂର୍ଯ୍ୟଙ୍କୁ ନିରୀକ୍ଷଣ କରି ପାରନ୍ତି ନାହିଁ, ସେହିପରି ଶତ୍ରୁମାନେ କ୍ରୁଦ୍ଧ ଧନଞ୍ଜୟଙ୍କୁ ନିରୀକ୍ଷଣ କରି ପାରିଲେ ନାହିଁ ।୨୭।

ହେ ପରନ୍ତପ ! ପରିଶେଷରେ ଆପଣଙ୍କ ପୁତ୍ରଙ୍କର ସୈନ୍ୟମାନେ ପୂର୍ବୋକ୍ତପ୍ରକାରେ ଧନଞ୍ଜୟଙ୍କ କର୍ତ୍ତୃକ ଅତିଶୟ ଶରପୀଡ଼ିତ ଓ ଭୀତ ହେବାରୁ ଛିନ୍ନଭିନ୍ନ ହୋଇ ପଳାୟନ କଲେ । ୨୮ । ଯେପରି ପ୍ରବଳ ପବନ ଦ୍ୱାରା ମେଘସମୂହ ବିଦୀର୍ଣ୍ଣ ହୋଇଯାଏ, ସେହିପରି ସେହି ସୈନ୍ୟ-ମାନେ ଅର୍ଜ୍ଜୁନଙ୍କ କର୍ତ୍ତୃକ ବିମର୍ଦ୍ଦିତ ହେଲେ ଓ ସେମାନେ ତାହାଙ୍କ ପ୍ରତି

ଦୃଷ୍ଟିପାତ କରିବାକୁ ସମର୍ଥ ହେଲେ ନାହିଁ । ୨୯ । ସାଦୀ ଓ ରଥୀ ବୀରଗଣ ଅର୍ଜ୍ଜୁନଙ୍କ ଦ୍ୱାରା ବ୍ୟଥିତ ହୋଇ କେହି କେହି ପ୍ରତୋଦାଘାତ, କେହି କେହି ଧନୁଷ୍କୋଟିର ଆଘାତ, କେହି କେହି ହୁଂକାର, କେହି କେହି କଶାଘାତ, କେହି କେହି ପାର୍ଷ୍ଣିର ଆଘାତ, କେହି କେହି ବା କଠୋର ବାକ୍ୟ ପ୍ରୟୋଗଦ୍ୱାରା ନିଜ ନିଜ ବାହନକୁ ସଞ୍ଚାଳନା କରି ଶୀଘ୍ର ଶୀଘ୍ର ପଳାୟନ କଲେ ।୩୧। ଗଜାରୋହୀମାନେ ପଦାଙ୍ଗୁଷ୍ଠ ଓ ଅଙ୍କୁଶପ୍ରହାର ଦ୍ୱାରା ମାତଙ୍ଗମାନଙ୍କୁ ସଞ୍ଚାଳିତ କରି ବେଗରେ ଧାବମାନ ହେଲେ ଓ ଅପର କେତେକ ଅର୍ଜ୍ଜୁନଙ୍କ ଶରରେ ବିମୋହିତ ହୋଇ ତାହାଙ୍କ ଅଭିମୁଖରେ ଗମନ କଲେ । ୩୨ । ଏହିପ୍ରକାରେ ଆପଣଙ୍କପକ୍ଷୀୟ ବୀରମାନେ ହତୋତ୍ସାହ ଓ ବିଭ୍ରାନ୍ତ ହେଲେ । ୩୩ ।

---

# ୯୦ ଅଧ୍ୟାୟ

ଧୃତରାଷ୍ଟ୍ର ବୋଇଲେ—ହେ ସଞ୍ଜୟ ! ସୈନ୍ୟମାନେ କିରୀଟୀଙ୍କ କର୍ତ୍ତୃକ ବଧ୍ୟମାନ ଓ ଭଗ୍ନ ହେଲାରୁ କେଉଁ କେଉଁ ବୀରମାନେ ତାହାଙ୍କ ସମ୍ମୁଖକୁ ଗମନ କରିଥିଲେ ; ଅଥବା ସମସ୍ତେ ବ୍ୟର୍ଥସଙ୍କଳ୍ପ ହୋଇ ଶକଟବ୍ୟୂହରେ ପ୍ରବେଶପୂର୍ବକ ଅକୁତୋଭୟ ଦ୍ରୋଣରୂପ ପ୍ରାଚୀରକୁ ଆଶ୍ରୟ କରି ଅବସ୍ଥାନ କଲେ ? ୨ ।

ସଞ୍ଜୟ କହିଲେ—ହେ ଅନଘ ! ପାକଶାସନିଙ୍କ କର୍ତ୍ତୃକ ଆପଣଙ୍କ ସୈନ୍ୟମାନେ ଭଗ୍ନ ହତବୀର ହତୋତ୍ସାହ ଓ ପଳାୟନରେ କୃତନିଶ୍ଚୟ ହୋଇ ପୁନଃ ପୁନଃ ଶରସମୂହଦ୍ୱାରା ବଧ୍ୟମାନ ହେଲାରୁ ସେମାନଙ୍କ ମଧ୍ୟରୁ କେହି ସଂଗ୍ରାମରେ ଅର୍ଜ୍ଜୁନଙ୍କୁ ନିରୀକ୍ଷଣ କରି ପାରିଲେ ନାହିଁ । ୪ । ହେ ରାଜନ୍ ! ଆପଣଙ୍କ ପୁତ୍ର ଦୁଃଶାସନ ସୈନ୍ୟମାନଙ୍କର ଈଦୃଶ ଅବସ୍ଥା ଅବଲୋକନ କରି ଅତ୍ୟନ୍ତ କ୍ରୋଧାବିଷ୍ଟ ହୋଇ ଯୁଦ୍ଧନିମିତ୍ତ ଅର୍ଜ୍ଜୁନଙ୍କ ସମ୍ମୁଖକୁ ଗମନ କଲେ । ୫ ।

ହେ ମହାରାଜ ! ଶତ୍ରୁପରାକ୍ରମ ଶୂର ଦୁଃଶାସନ କାଞ୍ଚନନିର୍ମିତ ବିଚିତ୍ର କବଚରେ ସମାବୃତ ଓ ସୁବର୍ଣ୍ଣ ଶିରସ୍ତ୍ରାଣଧାରୀ ହୋଇ ମହତ୍ ଗଜସୈନ୍ୟ ଦ୍ୱାରା ପୃଥିବୀକୁ ଗ୍ରାସ କଲାପ୍ରାୟ ସବ୍ୟସାଚୀଙ୍କୁ ସମାବୃତ କଲେ ।୭। ଗଜମାନଙ୍କର ଘଣ୍ଟାରବ, ଶଙ୍ଖଧ୍ୱନି, ଧନୁଷ୍ଟଙ୍କାର ଶବ୍ଦ ଓ ଗଜମାନଙ୍କର ବୃଂହଣଦ୍ୱାରା ପୃଥିବୀ, ଅନ୍ତରୀକ୍ଷ ଓ ଦଶ ଦିଗ୍ ସମାଚ୍ଛନ୍ନ ହେଲା, ସେହି ମୁହୂର୍ତ୍ତ ନିଦାରୁଣ ଓ ଭୟଙ୍କର ହେଲା । ୯ । ଅଙ୍କୁଶଗୃହୀତ ବ୍ୟାଲମ୍ବମାନଶୁଣ୍ଡ ଓ ସନ୍ନଦ୍ଧ ସେହି ସମସ୍ତ ହସ୍ତିଙ୍କୁ ପକ୍ଷବିଶିଷ୍ଟ ପର୍ବତସମୂହସଦୃଶ ଆଗମନ କରିବାର ଦେଖି ନରସିଂହ ଧନଞ୍ଜୟ ସିଂହନାଦ ସହକାରେ ଶରସମୂହଦ୍ୱାରା ସେହି ଶତ୍ରୁପକ୍ଷୀୟ ଗଜସୈନ୍ୟମାନଙ୍କୁ ସର୍ବତୋଭାବରେ ନିହତ କଲେ । ୧୧ । ପବନୋଦ୍ଧୂତ ମହୋର୍ମିବିଶିଷ୍ଟ ମହାସାଗରରେ ଯେପରି ମକର ପ୍ରବେଶ କରେ, କିରୀଟୀ ସେହିପ୍ରକାର ସେହି ଗଜସୈନ୍ୟ ମଧ୍ୟରେ ପ୍ରବେଶ କଲେ । ୧୨ ।

ସେହି ସମୟରେ ପରପୁରଞ୍ଜୟ ଧନଞ୍ଜୟ ପ୍ରଳୟକାଳର ମଧ୍ୟାହ୍ନକାଳୀନ ଆଦିତ୍ୟସଦୃଶ ସର୍ବଦିଗରେ ପରିଦୃଷ୍ଟ ହେଲେ । ୧୩ । ଅଶ୍ୱଗଣର ଖୁରଶବ୍ଦ, ରଥନେମିନିର୍ଘୋଷ, ସିଂହନାଦ, ଟଙ୍କାରଧ୍ୱନି, ଗାଣ୍ଡୀବନିନାଦ, ନାନାପ୍ରକାର ବାଦ୍ୟରବ, ଆଉ ପାଞ୍ଚଜନ୍ୟ ଓ ଦେବଦତ୍ତ ଶଙ୍ଖର ନିଃସ୍ୱନ ଶ୍ରବଣ କରି ଓ ଅର୍ଜୁନଙ୍କର ଆଶୀବିଷସମ ସ୍ପର୍ଶସମୂହଦ୍ୱାରା ନିର୍ଭିନ୍ନ ହୋଇ ନାଗସମସ୍ତ ହତଚେତନ ଓ ମନ୍ଦଗତି ହେଲେ । ୧୭ । ଗାଣ୍ଡୀବପ୍ରେରିତ ତୀକ୍ଷ୍ଣ ତୀକ୍ଷ୍ଣ ଅନେକଶତସହସ୍ର ଶରଦ୍ୱାରା ସର୍ବାଙ୍ଗରେ କ୍ଷତବିକ୍ଷତ ଓ ବଧ୍ୟମାନ ହୋଇ ସେହି ଗଜସମୂହ ମହାଶବ୍ଦ କରି ଛିନ୍ନପକ୍ଷ ପର୍ବତସଦୃଶ ଭୂତଳରେ ନିରନ୍ତର ପତିତ ହେଲେ । ୧୮ । ଅନେକ ହସ୍ତୀ ଦନ୍ତମୂଳରେ, କୁମ୍ଭଦେଶରେ ଓ କଟିରେ ଶରବିଦ୍ଧ ହୋଇ କ୍ରୌଞ୍ଚପକ୍ଷୀତୁଲ୍ୟ ମୁହୁଃମୁହୁଃ ନିନାଦ କଲେ । ୧୯ । ଗଜସ୍କନ୍ଧସ୍ଥିତ ପୁରୁଷମାନଙ୍କର ମସ୍ତକସମୂହ ସନ୍ନତପର୍ବ ଭଲ୍ଲଦ୍ୱାରା କିରୀଟୀଙ୍କ କର୍ତ୍ତୃକ ଛିନ୍ନ ହେଲା । ୨୦ ।

ଯେତେବେଳେ ସେମାନଙ୍କର କୁଣ୍ଡଳଭୂଷିତ କମଳତୁଲ୍ୟ ମସ୍ତକସମସ୍ତ ଭୂତଳରେ ପତିତ ହେଲା, ତେତେବେଳେ ବୋଧ ହେଲା ଯେପରି କି, କୁନ୍ତୀନନ୍ଦନ ଦେବାର୍ଚ୍ଚନନିମିତ୍ତ ପଦ୍ମସମୂହ ଆହରଣ କରୁଅଛନ୍ତି ।୨୧।

ହସ୍ତୀମାନେ ରଣସ୍ଥଳରେ ଭ୍ରମଣ କରିବାକୁ ଆରମ୍ଭ କଲାରୁ ସେମାନଙ୍କ ଉପରେ ଥିବା ଯନ୍ତ୍ରବଦ୍ଧ ମନୁଷ୍ୟମାନେ ବ୍ରଣାକ୍ତ, ରୁଧିରାକ୍ତ ଓ ଖଣ୍ଡିତକବଚ ହୋଇ ଗଜମାନଙ୍କ ଅଙ୍ଗରେ ଲମ୍ବମାନ ହେଲେ । ୨୨ । ବେଗନିକ୍ଷିପ୍ତ ଗୋଟିଏ ଗୋଟିଏ ବାଣରେ ଦୁଇ ତିନ ବା ବହୁଜନ ନିର୍ଭିନ୍ନ ହୋଇ ଧରଣୀତଳରେ ପତିତ ହେଲେ । ୨୩ । ଆରୋହୀ ସହିତ ଅନେକ ହସ୍ତୀ ନାରାଚଦ୍ୱାରା ଅତିବଦ୍ଧ ହୋଇ ମୁଖଦ୍ୱାରା ରୁଧିର ବମନ କରୁଁ କରୁଁ ବନାକୀର୍ଣ୍ଣ ପର୍ବତସଦୃଶ ଭୂତଳରେ ନିପତିତ ହେଲେ । ୨୪ ।

ଅର୍ଜୁନ ସନ୍ନତପର୍ବ ଭଲ୍ଲନାରାଚଦ୍ୱାରା ରଥମାନଙ୍କର ମୌର୍ବୀ, ଧନୁ, ଧ୍ୱଜ, ଯୁଗ ଓ ଈଷା—ଏ ସମସ୍ତଙ୍କୁ ଛେଦନ କଲେ । ୨୫ । ତାହାଙ୍କୁ ବାଣଧାରଣ, ବାଣସନ୍ଧାନ, ବାଣମୋଚନ ବା ଧନୁରାକର୍ଷଣ କରିବାର କେହି ଦେଖିଲେ ନାହିଁ ; କେବଳ ସେ ମଣ୍ଡଳାକାର ଶରାସନରେ ସଂଯୁକ୍ତ ହେବାର ସତତ ଦୃଷ୍ଟ ହେଲେ । ୨୬ । ଅନେକ ହସ୍ତୀ ନାରାଚଦ୍ୱାରା ଅତିଶୟ ବିଦ୍ଧ ହୋଇ ମୁହୂର୍ତ୍ତକ ମଧ୍ୟରେ ରକ୍ତ ବମନ କରି କରି ବସୁଧାତଳରେ ପତିତ ହେଲେ । ୨୭ ।

ହେ ମହାରାଜ ! ସେହି ପରମସଙ୍କୁଳ ଯୁଦ୍ଧରେ ଚତୁର୍ଦ୍ଦିଗରେ ଅଗଣ୍ୟ କବନ୍ଧ ଉତ୍ଥିତ ହୋଇ ଦୃଷ୍ଟିଗୋଚର ହେଲେ । ୨୮ । ହେମାଭରଣଭୂଷିତ ଓ ଧନୁ, ଅଙ୍ଗୁଳିତ୍ରାଣ, ଅଙ୍ଗଦ ଓ ଖଡ଼୍‌ଗଦ୍ୱାରା ଅଳଙ୍କୃତ ଭୁଜସମୂହ ଛିନ୍ନ ହୋଇ ଦୃଷ୍ଟିଗୋଚର ହେଲା । ୨୯ । ବହୁପ୍ରକାରରେ ଭଗ୍ନ, ପତିତ ଓ ଇତସ୍ତତଃ ବିସ୍ତୃତ ରଥର ଉପସ୍କର, ଅଧିଷ୍ଠାନ, ଈଷାଦଣ୍ଡକ, ବନ୍ଧୁର, ଚକ୍ର, ଅକ୍ଷ ଓ ଯୁଗସମସ୍ତ ଚର୍ମଧାରୀ ଓ ଧନୁର୍ଧାରୀ ମନୁଷ୍ୟସମସ୍ତ, ଆବରଣବସ୍ତ୍ର, ମାଲ୍ୟ ଓ ମହାଧ୍ୱଜସମୂହ ଏବଂ ମୃତ ହସ୍ତୀ, ଅଶ୍ୱ ଓ କ୍ଷତ୍ରିୟମାନଙ୍କ ଦ୍ୱାରା ରଣସ୍ଥଳ ଦେଖିବାକୁ ଦାରୁଣ ଓ ଭୟାନକ ହେଲା । ୩୨ ।

ହେ ମହାରାଜ ! ଦୁଃଶାସନର ସୈନ୍ୟସମୂହ ଅର୍ଜୁନଙ୍କ ବାଣରେ ଏ ପ୍ରକାରେ ନିହତ ହୁଅନ୍ତେ ଅବଶିଷ୍ଟ ସୈନ୍ୟ ସେନାପତି ସହିତ ବଧ୍ୟମାନ ଓ ବ୍ୟଥିତ ହୋଇ ପଳାୟନ କଲେ । ୩୩ । ତତ୍ପରେ ସୈନ୍ୟସହ

ପ୍ରପୀଡ଼ିତ ଦୁଃଶାସନ ମଧ୍ୟ ଞସ୍ତ ହୋଇ ଦ୍ରୋଣଙ୍କୁ ଞାଣକର୍ତ୍ତା ମନେ କରି ଶକଟବ୍ୟୂହକୁ ପ୍ରସ୍ଥାନ କଲେ । ୩୪ ।

# ୯୧ ଅଧ୍ୟାୟ

ସଞ୍ଜୟ କହିଲେ—ହେ ମହାରାଜ ! ମହାରଥ ସବ୍ୟସାଚୀ ଦୁଃଶାସନର ସୈନ୍ୟ ନିହତ କରି ସିନ୍ଧୁରାଜଙ୍କ ସମୀପକୁ ଗମନ ନିମିତ୍ତ ଦ୍ରୋଣସୈନ୍ୟଙ୍କ ପ୍ରତି ଧାବମାନ ହେଲେ । ୧ । ସେ ବ୍ୟୂହପ୍ରମୁଖରେ ଅବସ୍ଥିତ ଦ୍ରୋଣଙ୍କୁ କୃଷ୍ଣଙ୍କ ମତାନୁସାରେ କୃତାଞ୍ଜଳିପୂର୍ବରେ ଏହି କଥା କହିଲେ । ୨ ।

ହେ ବ୍ରହ୍ମନ୍ ! ଆପଣ ଆମ୍ଭର ମଙ୍ଗଳଚିନ୍ତା ଓ ସ୍ୱସ୍ତିବାଦ କରନ୍ତୁ । ଆମ୍ଭେ ଆପଣଙ୍କ ପ୍ରସାଦରେ ଦୁର୍ଭେଦ୍ୟ ସୈନ୍ୟବ୍ୟୂହରେ ପ୍ରବେଶ କରିବାକୁ ଅଭିଳାଷ କରୁଅଛୁ । ୩ । ଆମ୍ଭେ ସତ୍ୟ କହୁଅଛୁ, ଆପଣ ଆମ୍ଭର ପିତୃତୁଲ୍ୟ ଏବଂ ଧର୍ମରାଜ ଓ କୃଷ୍ଣଙ୍କ ସଦୃଶ । ୪ । ହେ ଦ୍ୱିଜସତ୍ତମ ! ହେ ଭରତ ! ହେ ବିଶୁଦ୍ଧଭାବ ! ଅଶ୍ୱତ୍ଥାମା ଯେପରି ଆପଣଙ୍କର ରକ୍ଷଣୀୟ, ସେହିରୂପ ଆମ୍ଭେ ମଧ୍ୟ ଆପଣଙ୍କର ରକ୍ଷଣୀୟ । ୫ । ହେ ନରପ୍ରବର ପ୍ରଭୋ ! ଆମ୍ଭେ ଆପଣଙ୍କ ପ୍ରସାଦରୁ ସମରରେ ସିନ୍ଧୁରାଜକୁ ନିହତ କରିବାକୁ ପ୍ରତିଜ୍ଞା କରିଅଛୁ । ଆପଣ ଆମ୍ଭର ପ୍ରତିଜ୍ଞା ରକ୍ଷା କରନ୍ତୁ । ୬ ।

ସଞ୍ଜୟ କହିଲେ—ଆଚାର୍ଯ୍ୟ ଦ୍ରୋଣଙ୍କୁ ଅର୍ଜୁନ ଏହିରୂପେ କହନ୍ତେ, ଆଚାର୍ଯ୍ୟ ତାହାଙ୍କୁ ହାସ୍ୟପୂର୍ବକ ପ୍ରତ୍ୟୁତ୍ତର ଦେଲେ । ହେ ବୀଭତ୍ସୁ ! ତୁମ୍ଭେ ଆମ୍ଭଙ୍କୁ ପରାଜିତ ନ କରି ଜୟଦ୍ରଥକୁ ପରାଜିତ କରି ପାରିବ ନାହିଁ । ୭ । ଏହି କଥା କହି ହସି ହସି ତୀକ୍ଷ୍ଣ ଶରବୃନ୍ଦଦ୍ୱାରା ଅର୍ଜୁନଙ୍କୁ ରଥ, ଅଶ୍ୱ, ଧ୍ୱଜ ଓ ସାରଥି ସହିତ ସମାଚ୍ଛନ୍ନ କଲେ । ୮ ।

ତଦନନ୍ତର ଅର୍ଜୁନ ମଧ୍ୟ ଶାୟକସମୂହ ଦ୍ୱାରା ଦ୍ରୋଣଙ୍କ ନିକ୍ଷିପ୍ତ ଶରବୃନ୍ଦକୁ ନିବାରଣ କରି ଭୀଷଣରୂପ ମହତ୍ତର ବାଣବୃନ୍ଦଦ୍ୱାରା ଦ୍ରୋଣଙ୍କୁ

ଆକ୍ରମଣ କଲେ । ୯ । ହେ ନରନାଥ ! ଅର୍ଜ୍ଜୁନ ତତ୍ପରେ ସମରରେ ଦ୍ରୋଣାଚାର୍ଯ୍ୟଙ୍କୁ ସମ୍ମାନିତ କରି କ୍ଷତ୍ରିୟ ଧର୍ମାବଲମ୍ବନପୂର୍ବକ ନଅଗୋଟି ଶରରେ ବିଦ୍ଧ କଲେ । ୧୧ । ତେତେବେଳେ ମହାତ୍ମା ଅର୍ଜ୍ଜୁନ ଦ୍ରୋଣଙ୍କ ଶରାସନକୁ ଶରସମୂହରେ ଛେଦନ କରିବାର ମାନସ କଲେ । ସେ ତାହା ମନେ କରୁଁ କରୁଁ ବୀର୍ଯ୍ୟବାନ୍ ଦ୍ରୋଣ ଅସମ୍ଭ୍ରାନ୍ତଚିତ୍ତରେ ଶରସମୂହଦ୍ୱାରା ତାହାଙ୍କର ଧନୁର୍ଗୁଣ ଶୀଘ୍ର ଛେଦନ କରି ପକାଇଲେ ଓ ତଦନନ୍ତର ତାହାଙ୍କ ଅଶ୍ୱ, ଧ୍ୱଜ ଓ ସାରଥିକୁ ଶରଜାଲରେ ବିଦ୍ଧ କରି ହାସ୍ୟମୁଖରେ ପୁନର୍ବାର ତାହାଙ୍କୁ ଶରାକୀର୍ଣ୍ଣ କଲେ ।

ଏହି ଅବସରରେ ଅର୍ଜ୍ଜୁନ ମହତ୍ ଗାଣ୍ଡୀବରେ ଗୁଣଯୋଜନା କରି ସର୍ବାସ୍ତ୍ରବେତ୍ତାମାନଙ୍କ ମଧ୍ୟରେ ଶ୍ରେଷ୍ଠ ଦ୍ରୋଣାଚାର୍ଯ୍ୟଙ୍କ ନିକଟରେ ଆପଣାର ଯୁଦ୍ଧନୈପୁଣ ପ୍ରଦର୍ଶନ କରାଇବା ଆଶାରେ ଏକସମୟରେ ଛଅଶତ ବାଣ ଗ୍ରହଣ କରି ସେ ସମସ୍ତଙ୍କୁ ଲଘୁହସ୍ତରେ ଗୋଟିଏ ବାଣ ପରି ମୋଚନ କଲେ । ୧୫ । ପୁନର୍ବାର ସପ୍ତଶତ, ତତ୍ପରେ ସହସ୍ର, ଏହାପରେ ଅଯୁତ ଅଯୁତ ଅନିବର୍ତ୍ତୀ ବାଣସମୂହକୁ ନିକ୍ଷେପ କଲେ । ସେହି ସମସ୍ତ ବାଣ ଦ୍ରୋଣଙ୍କର ସୈନ୍ୟସମୂହକୁ ନିହତ କଲା । ୧୬ । ବିଚିତ୍ରଯୋଦ୍ଧା, ବଳବାନ୍ ଓ କୃଷ୍ଣ ଅର୍ଜ୍ଜୁନଙ୍କ ଦ୍ୱାରା ସମ୍ୟକରୂପେ ନିକ୍ଷିପ୍ତ ସେହି ସମସ୍ତ ବାଣରେ ମନୁଷ୍ୟ ଅଶ୍ୱ ଓ ହସ୍ତିନିଚୟ ବିଦ୍ଧ ହୋଇ ପ୍ରାଣତ୍ୟାଗପୂର୍ବକ ପତିତ ହେଲେ । ୧୭ ।

ରଥିସମୂହ ସହସା ଶରପୀଡ଼ିତ, ଛିନ୍ନାସ୍ତ୍ର, ହତଜୀବିତ ଓ ସାରଥୀ, ଅଶ୍ୱ ଆଉ ଧ୍ୱଜବିହୀନ ହୋଇ ପ୍ରଧାନ ପ୍ରଧାନ ରଥଉପରୁ ପତିତ ହେଲେ । ୧୮ । ହସ୍ତିସମୂହ ବଜ୍ରଚୂର୍ଣ୍ଣିତ ପର୍ବତସଦୃଶ, ବାୟୁନିକ୍ଷିପ୍ତ ଉଗ୍ର ମେଘବତ୍ ଓ ଅଗ୍ନିଦଗ୍ଧ ଗୃହତୁଲ୍ୟ ପତିତ ହେଲେ । ୧୯ । ସହସ୍ର ସହସ୍ର ଅଶ୍ୱ, ଅର୍ଜ୍ଜୁନଙ୍କ ବାଣସମୂହରେ ନିହତ ହୋଇ ହିମାଳୟପ୍ରସ୍ଥରେ ବାରିବେଗ-ନିହତ ହଂସତୁଲ୍ୟ ପତିତ ହେଲେ । ୨୦ । ଯେପରି ଯୁଗାନ୍ତକାଳୀନ ସୂର୍ଯ୍ୟ କିରଣସମୂହଦ୍ୱାରା ଅଦ୍ଭୁତ ଜଳରାଶିକୁ କ୍ଷୟ କରନ୍ତି, ଅର୍ଜ୍ଜୁନ ଶରଜାଲ-ବିସ୍ତାରପୂର୍ବକ ସେହିପରି ଅସଂଖ୍ୟ ରଥ, ଅଶ୍ୱ, ହସ୍ତୀ ଓ ପଦାତିମାନଙ୍କୁ ନିହତ କଲେ । ୨୧ ।

ଏହିପରି ଅର୍ଜ୍ଜୁନଙ୍କର ଆଦିତ୍ୟରଶ୍ମି-ଜାଲତୁଲ୍ୟ ଶରସମୂହ ବୀର-ମାନଙ୍କୁ ସନ୍ତାପିତ କରିବାରୁ ଦ୍ରୋଣରୂପ ଅମ୍ବୁଦ ଶରବୃଷ୍ଟିବେଗଦ୍ୱାରା ମେଘ ଅର୍କରଶ୍ମିକୁ ସମାଚ୍ଛନ୍ନ କଲାପ୍ରାୟ ଅର୍ଜ୍ଜୁନଙ୍କର ଶରସମୂହକୁ ସମାଚ୍ଛନ୍ନ କଲେ । ୨୨ । ଅନନ୍ତର ଦ୍ରୋଣ ଶତ୍ରୁ-ପ୍ରାଣ-ଭୋକ୍ତା ଗୋଟିଏ ନାରାଚ ଅତି ବେଗରେ ନିକ୍ଷେପ କରି ଧନଞ୍ଜୟଙ୍କର ବକ୍ଷସ୍ଥଳରେ ଆଘାତ କଲେ । । ୨୩ । କ୍ଷିତି କମ୍ପିତା ହେଲେ ଅଚଳ ଯେପରି କମ୍ପିତ ହୁଏ, ସେହି ପ୍ରକାରେ ବୀଭତ୍ସୁ ସେହି ନାରାଚଘାତରେ ବିହ୍ୱଳିତାଙ୍ଗ ହୋଇ ଧୈର୍ଯ୍ୟା-ବଲମ୍ବନପୂର୍ବକ ଶରସମୂହଦ୍ୱାରା ଦ୍ରୋଣଙ୍କୁ ବିଦ୍ଧ କଲେ । ୨୪ । ଦ୍ରୋଣ ମଧ୍ୟ ପୁନର୍ବାର ପାଞ୍ଚଗୋଟି ବାଣରେ କୃଷ୍ଣଙ୍କୁ ବିଦ୍ଧ କରି ଅର୍ଜ୍ଜୁନଙ୍କ ପ୍ରତି ତିହସ୍ତରି ଓ ତାହାଙ୍କର ଧ୍ୱଜପ୍ରତି ତିନିଗୋଟି ଶର ନିକ୍ଷେପ କଲେ । ୨୫ । ପରାକ୍ରମୀ ଦ୍ରୋଣ ଶିଷ୍ୟ ଅର୍ଜ୍ଜୁନଙ୍କ ନିକଟରେ ଆପଣାର ଯୁଦ୍ଧନୈପୁଣ୍ୟ ପ୍ରଦର୍ଶନ କରାଇବା ମାନସରେ ନିମେଷ ମଧ୍ୟରେ ଶରବୃଷ୍ଟିଦ୍ୱାରା ତାହାଙ୍କୁ ସମାଚ୍ଛନ୍ନ କରି ଅଦୃଶ୍ୟ କଲେ । ୨୬ ।

ସେହି ସମୟରେ କେବଳ ଦ୍ରୋଣଙ୍କର ବାଣ ପତିତ ଓ ପରସ୍ପର ସଂଶ୍ଳିଷ୍ଟ ଏବଂ ତାହାଙ୍କର ଶରାସନ ଅଦ୍ଭୁତରୂପ ଦ୍ୱାରା ମଣ୍ଡଳାକାର ଦେଖିଲୁଁ । ୨୭ । ହେ ରାଜନ୍ ! ସେହି ସମୟରେ ଦ୍ରୋଣନିକ୍ଷିପ୍ତ କଙ୍କପକ୍ଷ ପରିଚ୍ଛଦ-ଯୁକ୍ତ ବହୁ ବାଣ କୃଷ୍ଣ ଓ ଧନଞ୍ଜୟ—ଏ ଦୁହିଁଙ୍କ ଉପରେ ପତିତ ହେଲା । ୨୮ ।

ମହାବୁଦ୍ଧିମାନ ବସୁଦେବପୁତ୍ର ସେହି ସମୟରେ ଦ୍ରୋଣାର୍ଜ୍ଜୁନଙ୍କର ତାଦୃଶ ଯୁଦ୍ଧ ଦର୍ଶନ କରି ପ୍ରକୃତ ଚିନ୍ତା କଲେ । ୨୯ । ଅନନ୍ତର ବାସୁଦେବ ଧନଞ୍ଜୟଙ୍କୁ ଏହିକଥା କହିଲେ, ପାର୍ଥ ! ପାର୍ଥ ! ଆମ୍ଭମାନଙ୍କର ବୃଥା କାଳାତ୍ୟୟ ନ ହେଉ । ୩୦ । ଆମ୍ଭେମାନେ ଦ୍ରୋଣଙ୍କୁ ପରିତ୍ୟାଗ କରି ଆମ୍ଭମାନଙ୍କର ଯେଉଁ ମହତ୍ କାର୍ଯ୍ୟ ଉଦ୍ଦେଶ୍ୟ ଅଛି, ତନ୍ନିମିତ୍ତ ଗମନ କରିବା । ଏହା ଶ୍ରବଣ କରି ପାର୍ଥ କୃଷ୍ଣଙ୍କୁ କହିଲେ, ତୁମ୍ଭର ଯେପରି ଅଭିଳାଷ, ସେହିପରି କର । ୩୧ ।

ତଦନନ୍ତର ମହାଭୁଜ ବୀଭତ୍ସୁ ଦ୍ରୋଣଙ୍କୁ ପ୍ରଦକ୍ଷିଣ କରି ତାହାଙ୍କ ନିକଟରୁ ପ୍ରସ୍ଥାନ କଲେ । ସେ ଶରସମୂହ ନିକ୍ଷେପ କରୁଁ କରୁଁ, ଅନ୍ୟ-

ପଥରେ ଗମନ କଲେ । ୩୨ । ଏହା ଦେଖି ଦ୍ରୋଣ ହାସ୍ୟପୂର୍ବକ କହିଲେ, ହେ ଅର୍ଜ୍ଜୁନ ! ବର୍ତ୍ତମାନ ତୁମ୍ଭେ କେଉଁଠାକୁ ଯାଉଅଛ ? ତୁମ୍ଭେ ପର ସଂଗ୍ରାମରେ ଶତ୍ରୁକୁ ପରାଜିତ ନ କରି ନିବୃତ୍ତ ହୁଅନାହିଁ ? ୩୩ ।

ଅର୍ଜ୍ଜୁନ କହିଲେ,—ଆପଣ ଆମ୍ଭର ଗୁରୁ, ଶତ୍ରୁ ନୁହନ୍ତି ; ଆମ୍ଭେ ଆପଣଙ୍କର ପୁତ୍ରତୁଲ୍ୟ ଶିଷ୍ୟ, ଆପଣଙ୍କୁ ଯୁଦ୍ଧରେ ପରାଜିତ କରିପାରିବ, ଏପରି କୌଣସି ପୁରୁଷ ଏହି ଜଗତରେ ନାହିଁ । ୩୪ । ସଞ୍ଜୟ କହିଲେ,— ହେ ମହାରାଜ ! ଜୟଦ୍ରଥ ବଧୋତ୍ସୁକ ମହାବାହୁ ବୀଭତ୍ସୁ ଏହିକଥା କହୁଁ କହୁଁ ତ୍ୱରାନ୍ୱିତ ହୋଇ ତାହାଙ୍କର ସୈନ୍ୟମଧ୍ୟରେ ଧାବମାନ ହେଲେ । ୩୫ । ଅର୍ଜ୍ଜୁନଙ୍କର ପୃଷ୍ଠରକ୍ଷକ ପାଞ୍ଚାଳଦେଶୀୟ ମହାତ୍ମା ଯୁଧାମନ୍ୟୁ ଓ ଉତ୍ତମୌଜା ଆପଣଙ୍କ ସୈନ୍ୟମଧ୍ୟରେ ଅର୍ଜ୍ଜୁନ ପ୍ରବେଶ କରିବା ସମୟରେ ତାହାଙ୍କର ଅନୁଗାମୀ ହେଲେ । ୩୬ ।

ଅନନ୍ତର ଜୟ, ସତ୍ୱତ, କୃତବର୍ମ୍ମା, କାମ୍ବୋଜରାଜ ଓ ଶ୍ରୁତାୟୁଧ ଧନଞ୍ଜୟଙ୍କୁ ଶରାକୀର୍ଣ୍ଣ କରିବାକୁ ଆରମ୍ଭ କଲେ । ୩୭ । ଏମାନଙ୍କର ଅନୁଗାମୀ ଦଶସହସ୍ର ରଥୀ ଓ ଅଭୀଷାହ, ଶୂରସେନ, ଶିବି, ବଶାତି, ମାବେଲ୍ଲକ, ଲଳିତ୍ଥ, କେକେୟ ଓ ମଦ୍ରକଦେଶୀୟ ବୀରଗଣ ଓ ଗୋପାଳୀ ନାରାୟଣୀ ସେନା ଏବଂ କାମ୍ବୋଜଦେଶୀୟ ଯେ ସମସ୍ତ ଶୂରପୂଜିତ ସୈନ୍ୟ କର୍ଣ୍ଣକର୍ତ୍ତୃକ ପୂର୍ବେ ପରାଜିତ ହୋଇଥିଲେ, ସେମାନେ ସମସ୍ତେ ଦ୍ରୋଣଙ୍କୁ ପୁରୋବର୍ତ୍ତୀ କରି ଓ ଆତ୍ମତ୍ୟାଗରେ କୃତନିଶ୍ଚୟ ହୋଇ ପୁତ୍ରଶୋକାର୍ତ୍ତ କ୍ରୁଦ୍ଧ, ଅନ୍ତକାଶ ମୃତ୍ୟୁସଦୃଶ ତୁମୁଳଯୁଦ୍ଧରେ ପ୍ରାଣ ବିସର୍ଜନ କରିବାକୁ ଉଦ୍ୟତ, ବଦ୍ଧବର୍ମା, ବିଚିତ୍ରଯୋଧୀ, ଯୂଥପତି ମାତଙ୍ଗତୁଲ୍ୟ ସୈନ୍ୟବିମର୍ଦ୍ଦନ-କାରୀ, ମହାଧନୁର୍ଦ୍ଧର, ପରାକ୍ରମଶାଳୀ, ନରବ୍ୟାଘ୍ର ଅର୍ଜ୍ଜୁନଙ୍କୁ ନିବାରଣ କରିବାରେ ପ୍ରବୃତ୍ତ ହେଲେ । ୪୨ ।

ତଦନନ୍ତର ଅର୍ଜ୍ଜୁନଙ୍କ ସହିତ ସେମାନଙ୍କର ତୁମୁଳ ଲୋମହର୍ଷଣ ଯୁଦ୍ଧ ଆରମ୍ଭ ହେଲା, ଅର୍ଜ୍ଜୁନ ଓ ସେହି ସମସ୍ତ ଯୋଦ୍ଧାମାନେ ପରସ୍ପର ଯୁଦ୍ଧାର୍ଥୀ ହୋଇ ପ୍ରହାର କରିବାରେ ପ୍ରବୃତ୍ତ ହେଲେ । ୪୩ । ନାନାପ୍ରକାର ପ୍ରତିକାର ଯେପରି ଗୋଟିଏ ଉତ୍ପନ୍ନ ବ୍ୟାଧିକୁ ନିବାରଣ କରେ, ସେହିପରି

ଜୟଦ୍ରଥବଧନିମିତ୍ତ ଗମନକାରୀ ପୁରୁଷସିଂହ ଅର୍ଜ୍ଜୁନଙ୍କୁ ସେମାନେ ସମସ୍ତେ ମିଳିତ ହୋଇ ନିବାରଣ କରିବାରେ ପ୍ରବୃତ୍ତ ହେଲେ । ୪୪ ।

---

# ୯୨ ଅଧ୍ୟାୟ

ସଞ୍ଜୟ କହିଲେ,—ସେହି ସମସ୍ତ ଯୋଦ୍ଧାମାନେ ରଥିଶ୍ରେଷ୍ଠ, ମହାବଳପରାକ୍ରମ ଅର୍ଜ୍ଜୁନଙ୍କୁ ଅବରୋଧ କଲେ ଓ ଦ୍ରୋଣ ମଧ୍ୟ ସେହି ସମୟରେ ତାହାଙ୍କର ପଶ୍ଚାତ୍ ପଶ୍ଚାତ୍ ଆଗମନ କଲେ । ୧ । ଭାସ୍କର ଯେପରି ସ୍ୱୀୟ କିରଣ ବିସ୍ତାର କରନ୍ତି ଓ ବ୍ୟାଧିଗଣ ଯେପରି ଦେହକୁ ସନ୍ତାପିତ କରନ୍ତି, ସେହିପରି ଅର୍ଜ୍ଜୁନ ତୀକ୍ଷ୍ଣ ବାଣସମୂହ ବିକୀର୍ଣ୍ଣ କରି ସେହି ସମସ୍ତ ସୈନ୍ୟମାନଙ୍କୁ ସନ୍ତାପିତ କଲେ । ୨ । ଅଶ୍ୱମାନେ ବିଦ୍ଧ ହେଲେ, ରଥସମୂହ ଛିନ୍ନ ହେଲା, ଆରୋହୀ ସହିତ ହସ୍ତିମାନେ ନିପାତିତ ହେଲେ, ଛତ୍ରସମସ୍ତ ଛିନ୍ନଭିନ୍ନ ଓ ରଥସବୁ ଚକ୍ରବିହୀନ ହେଲା । ସୈନ୍ୟମାନେ ପୀଡ଼ିତ ହୋଇ ଚତୁର୍ଦ୍ଦିଗକୁ ଭଗ୍ନ ହୋଇଗଲେ । ଏପରି ତୁମୁଳ ଯୁଦ୍ଧ ହେଲା ଯେ କିଛି ହିଁ ଗୋଚର ହେଲାନାହିଁ । ୪ ।

ହେ ରାଜନ୍ ! ପୂର୍ବୋକ୍ତ ସେହି ସମସ୍ତ ଯୋଦ୍ଧୃରାଜବୃନ୍ଦ ଅର୍ଜ୍ଜୁନଙ୍କ ସହିତ ପରସ୍ପର ଯୁଦ୍ଧରେ ସଂଯତ ହୋଇଥିଲେ । ଅର୍ଜ୍ଜୁନ ମଧ୍ୟ ସେମାନଙ୍କ ସୈନ୍ୟମାନଙ୍କୁ ପୁନଃପୁନଃ ପ୍ରକମ୍ପିତ କରିଥିଲେ । ୫ । ସତ୍ୟସଙ୍ଗର ଶ୍ୱେତବାହନ ଅର୍ଜ୍ଜୁନ ଆପଣାର ପ୍ରତିଜ୍ଞାକୁ ସତ୍ୟ କରିବା ମାନସରେ ରକ୍ତବର୍ଣ୍ଣଅଶ୍ୱଯୋଜିତରଥାରୋହୀ ରଥିଶ୍ରେଷ୍ଠ ଦ୍ରୋଣଙ୍କୁ ଆକ୍ରମଣ କଲେ । ୬ । ଆଚାର୍ଯ୍ୟ ଦ୍ରୋଣ ମହାଧନୁର୍ଦ୍ଧର ଶିଷ୍ୟ ଅର୍ଜ୍ଜୁନଙ୍କ ପ୍ରତି ମର୍ମଭେଦୀ ପଞ୍ଚବିଂଶତି ବାଣ ନିକ୍ଷେପ କଲେ । ୭ । ସର୍ବଶସ୍ତ୍ରଧାରୀଶ୍ରେଷ୍ଠ ବୀଭତ୍ସୁ ସେହି ସମସ୍ତ ବାଣର ବେଗବିଘାତକ ବାଣମାନଙ୍କୁ ନିକ୍ଷେପ କରୁଁ କରୁଁ ତାହାଙ୍କ ପ୍ରତି ଧାବମାନ ହେଲେ । ୮ । ସେ ଭଲ୍ଲମାନଙ୍କୁ ଶୀଘ୍ର ଶୀଘ୍ର ନିକ୍ଷେପ କରୁଥିଲେ । ଏହି ସମୟରେ ଅମେୟାତ୍ମା ଦ୍ରୋଣ ବ୍ରହ୍ମାସ୍ତ୍ର ଆବର୍ତ୍ତିତ କରି ନତପର୍ବ ଭଲ୍ଲସମୂହଦ୍ୱାରା ତାହାଙ୍କୁ ପ୍ରତିବିଦ୍ଧ କଲେ । ୯ । ସେହିସମୟରେ ଯୁଦ୍ଧରେ ଦ୍ରୋଣଙ୍କର ଅଦ୍ଭୁତ ଶିକ୍ଷା ଅବଲୋକନ କଲୁଁ । ଯୁବା ଅର୍ଜ୍ଜୁନ

ଯତ୍ନ କରି ସୁଦ୍ଧା ଦ୍ରୋଣଙ୍କୁ ପ୍ରତିବନ୍ଧ କରି ପାରିଲେ ନାହିଁ । ୧୦ । ମହାମେଘ ସହସ୍ର ସହସ୍ର ବାରିଧାରା ବର୍ଷଣ କଲାସଦୃଶ ଦ୍ରୋଣରୂପ ମେଘ ଅର୍ଜୁନରୂପ ପର୍ବତଉପରେ ଶରବର୍ଷଣ କରିବାକୁ ଆରମ୍ଭ କଲେ । ୧୧ ।

ହେ ମାରିଷ ! ତେଜସ୍ୱୀ ଅର୍ଜୁନ ମଧ୍ୟ ବ୍ରହ୍ମାସ୍ତ୍ର ଦ୍ୱାରା ବାଣସମୂହ ନିକ୍ଷେପ କରି ତାହାଙ୍କର ନିକ୍ଷିପ୍ତ ବାଣମାନଙ୍କୁ ବିନାଶପୂର୍ବକ ସେହି ବାଣ-ବର୍ଷଣକୁ ପ୍ରତିଗ୍ରହ କଲେ । ୧୨ । ପରନ୍ତୁ ଦ୍ରୋଣ ପଞ୍ଚବିଂଶତି ବାଣରେ ଅର୍ଜୁନଙ୍କୁ ଏବଂ ସପ୍ତତି ବାଣରେ ବାସୁଦେବଙ୍କ ବାହୁ ଓ ବକ୍ଷଃସ୍ଥଳକୁ ଆଘାତ କଲେ । ୧୩ । ଧୀମାନ୍ ପାର୍ଥ ମଧ୍ୟ ହସି ହସି ଶାଣିତବାଣନିକ୍ଷେପ-କାରୀ ବହୁବାଣଯୁକ୍ତ ଆଚାର୍ଯ୍ୟ ଦ୍ରୋଣଙ୍କୁ ଯୁଦ୍ଧରେ ନିବାରଣ କଲେ । ୧୪ । ଅନନ୍ତର ମହାରଥ ବାସୁଦେବ ଓ ଅର୍ଜୁନ ଦ୍ରୋଣକର୍ତ୍ତୃକ ହନ୍ୟମାନ ହୋଇ ଯୁଗାନ୍ତକାଳୀନ ଉତ୍ଥିତ ଅଗ୍ନିସଦୃଶ ଦୁର୍ଦ୍ଧର୍ଷ ଦ୍ରୋଣଙ୍କୁ ପରିତ୍ୟାଗ କରି ଗମନ କଲେ । ୧୫ । କିରୀଟମାଳୀ କୁନ୍ତୀନନ୍ଦନ ଦ୍ରୋଣାଚାର୍ଯ୍ୟଙ୍କ ଚାପ-ନିଃସୃତ ଶାଣିତ ବାଣସମୂହର ପଥକୁ ବର୍ଜ୍ଜନ କରି ଭୋଜସୈନ୍ୟମାନଙ୍କୁ ମର୍ଦ୍ଦନ କଲେ । ୧୬ ।

ସେ ମୈନାକପର୍ବତତୁଲ୍ୟ ଦ୍ରୋଣଙ୍କୁ ପରିତ୍ୟାଗ କରି କୃତବର୍ମା ଓ କାମ୍ବୋଜରାଜ ସୁଦକ୍ଷିଣ—ଏ ଦୁହିଁଙ୍କର ମଧ୍ୟସ୍ଥଳରେ ଆପତିତ ହେଲେ । ୧୭ । ତଦନନ୍ତର ନରବ୍ୟାଘ୍ର ଭୋଜରାଜ କୃତବର୍ମା ଦୁର୍ଦ୍ଧର୍ଷ କୁରୁସତ୍ତମ ଅର୍ଜୁନଙ୍କୁ ଅବ୍ୟଗ୍ରଚିତ୍ତରେ କଙ୍କପକ୍ଷୀ ଦଶଗୋଟି ବାଣଦ୍ୱାରା ଶୀଘ୍ର ବିଦ୍ଧ କଲେ । ୧୮ । ଅର୍ଜୁନ କୃତବର୍ମାଙ୍କୁ ପ୍ରଥମେ ଗୋଟିଏ ଶାଣିତ ବାଣରେ ବିଦ୍ଧ କରି ପୁନର୍ବାର ଅନ୍ୟ ତିନିଗୋଟି ବାଣରେ ତାହାଙ୍କୁ ମୋହିତପ୍ରାୟ କଲେ । ୧୯ । କୃତବର୍ମା ମଧ୍ୟ ହାସ୍ୟ ବଦନରେ ଅର୍ଜୁନ ଓ ବସୁଦେବ-ନନ୍ଦନ ମାଧବଙ୍କ ପ୍ରତି ପଚିଶ ଗୋଟି ଲେଖାଏଁ ବାଣ ଅର୍ପଣ କଲେ ।୨୦।

ଅନନ୍ତର ଅର୍ଜୁନ ତାହାଙ୍କର ଶରାସନ ଛେଦନ କରି କ୍ରୁଦ୍ଧ ହୋଇ ଆଶୀବିଷସନ୍ନିଭ ଅଗ୍ନିଶିଖାକାର ସାତଗୋଟି ବାଣଦ୍ୱାରା ତାହାଙ୍କୁ ବିଦ୍ଧ କଲେ । ୨୧ । ତଦନନ୍ତର ମହାରଥ କୃତବର୍ମା ଶୀଘ୍ର ଅନ୍ୟ ଗୋଟିଏ ଶରାସନ ଗ୍ରହଣପୂର୍ବକ ପାଞ୍ଚଗୋଟି ବାଣଦ୍ୱାରା ଅର୍ଜୁନଙ୍କ ବକ୍ଷଃସ୍ଥଳରେ

ଆଘାତ କଲେ । ୨୨ । ପୁନଶ୍ଚ ଆଉ ପାଞ୍ଚଗୋଟି ବାଣଦ୍ୱାରା ତାହାଙ୍କୁ ବିଦ୍ଧ କଲେ । ପାର୍ଥ ମଧ୍ୟ ନଅଗୋଟି ବାଣଦ୍ୱାରା ତାହାଙ୍କର ସ୍ତନଦ୍ୱୟ ମଧ୍ୟରେ ଆଘାତ କଲେ । ୨୩ । ବୃଷ୍ଣିନନ୍ଦନ କୃଷ୍ଣ କୁନ୍ତୀପୁତ୍ର ଅର୍ଜୁନଙ୍କୁ କୃତବର୍ମାଙ୍କ ସହିତ ଯୁଦ୍ଧରେ ଆସକ୍ତ ଅବଲୋକନ କରି ଚିନ୍ତା କଲେ ଯେ, ଆମ୍ଭମାନଙ୍କର ଅନର୍ଥକ କାଳାତିପାତ ନ ହେଉ । ୨୪ ।

ଅନନ୍ତର କୃଷ୍ଣ ପାର୍ଥଙ୍କୁ କହିଲେ ଯେ, କୃତବର୍ମାଙ୍କ ସହିତ ତୁମ୍ଭର ସମ୍ବନ୍ଧ ଅଛି ବୋଲି ତାହାଙ୍କୁ ଦୟା କର ନାହିଁ । ତାହାଙ୍କୁ ପ୍ରମଥିତ କରି ବିନଷ୍ଟ କର । ୨୫ । ଅନନ୍ତର ଅର୍ଜୁନ ଶରସମୂହଦ୍ୱାରା କୃତବର୍ମାଙ୍କୁ ମୋହିତ କରି ବେଗଗାମୀ ଅଶ୍ୱଦ୍ୱାରା କାମ୍ବୋଜସୈନ୍ୟ ମଧ୍ୟରେ ପ୍ରବେଶ କଲେ । ୨୬ ।

ହୃଦିକନନ୍ଦନ କୃତବର୍ମା ଅର୍ଜୁନଙ୍କୁ କାମ୍ବୋଜସୈନ୍ୟାଭିମୁଖରେ ଗମନ କରିବାର ଦେଖି ଅମର୍ଷଯୁକ୍ତ ହୋଇ ସଶରଶରାସନକୁ ପ୍ରକମ୍ପିତ କଲେ ଓ ଅର୍ଜୁନଙ୍କ ଅନୁଗାମୀ ଚକ୍ରରକ୍ଷକ ପାଞ୍ଚାଳଦେଶୀୟ ଦୁଇବୀରଙ୍କ ସହିତ ଯୁଦ୍ଧରେ ସମାଗତ ହେଲେ । କୃତବର୍ମା ସେ ଦୁଇବୀରଙ୍କୁ ଆଗମନ କରିବାର ଦେଖି ଅଦୂରସ୍ଥାୟୀ * ଶରମାନଙ୍କଦ୍ୱାରା ନିବାରଣ କଲେ ।୨୮।

ତଦନନ୍ତର ତିନଗୋଟି ଶାଣିତ ଶରଦ୍ୱାରା ଯୁଧାମନ୍ୟୁଙ୍କୁ ଓ ଚାରିଗୋଟି ଶରଦ୍ୱାରା ଉତ୍ତମୌଜାଙ୍କୁ ବିଦ୍ଧ କଲେ । ୨୯ । ସେମାନେ କୃତବର୍ମାଙ୍କୁ ଦଶ ଦଶ ଗୋଟି ବାଣରେ ବିଦ୍ଧ କରି ପୁନର୍ବାର ତିନ ତିନ ଗୋଟି ଶର ନିକ୍ଷେପ କରି ତାହାଙ୍କର ଧ୍ୱଜ ଓ ଚାପ ଛେଦନ କଲେ । କୃତବର୍ମା କ୍ରୋଧମୂର୍ଚ୍ଛିତ ହୋଇ ଅନ୍ୟ ଗୋଟିଏ ଧନୁ ଗ୍ରହଣପୂର୍ବକ ସେ ଦୁଇଜଣଙ୍କୁ ଶରାସନବିହୀନ କରି ଶରବର୍ଷଣଦ୍ୱାରା ସମାଚ୍ଛନ୍ନ କଲେ । ସେ ଦୁହେଁ ମଧ୍ୟ ଅନ୍ୟ ଧନୁରେ ଗୁଣ ଦେଇ ଭୋଜରାଜ କୃତବର୍ମାଙ୍କୁ ଭେଦ କଲେ । ୩୨ ।

---

* ଅଦୂରସ୍ଥାୟୀ ବାଣ—ରଥ-ଶର

ଏହି ସମୟରେ ବୀଭତ୍ସୁ ଶତ୍ରୁସୈନ୍ୟ ମଧ୍ୟରେ ପ୍ରବେଶ କଲେ, ତାହାଙ୍କର ଅନୁଗାମୀ ସେହି ଦୁଇ ନରର୍ଷଭ ଆପଣଙ୍କ ପୁତ୍ରମାନଙ୍କ ସୈନ୍ୟ-ମଧ୍ୟରେ ପ୍ରବେଶ କରିବାକୁ ଯତ୍ନ କଲେହେଁ କୃତବର୍ମାଙ୍କ କର୍ତ୍ତୃକ ନିବାରିତ ହୋଇ ଦ୍ୱାରପ୍ରାପ୍ତ ହେଲେ ନାହିଁ । ଉପରୁକ୍ତ ଶତ୍ରୁସୂଦନ ଶ୍ୱେତବାହନ ଅର୍ଜ୍ଜୁନ ବିପକ୍ଷସୈନ୍ୟମାନଙ୍କୁ ପୀଡ଼ିତ କରି ଗମନ କରୁଁ କରୁଁ କୃତବର୍ମାଙ୍କୁ ଯୁଦ୍ଧରେ ପ୍ରାପ୍ତ ହୋଇ ମଧ୍ୟ ତାହାଙ୍କୁ ନିହତ କଲେ ନାହିଁ ।

ଶୂରରାଜ ଶ୍ରୁତାୟୁଧ ତାହାଙ୍କୁ ଉକ୍ତପ୍ରକାରେ ଶତ୍ରୁମର୍ଦ୍ଦନ କରି ଆସିବାର ଦେଖି ଅତିଶୟ କ୍ରୁଦ୍ଧ ହୋଇ ସ୍ୱକୀୟ ମହତ୍ ଶରାସନ ପ୍ରକମ୍ପିତ କରୁ କରୁ, ତାହାଙ୍କ ପ୍ରତି ଧାବମାନ ହେଲେ । ସେ ପାର୍ଥଙ୍କୁ ତିନିଗୋଟି ବାଣରେ ଓ କୃଷ୍ଣଙ୍କୁ ସପ୍ତତି ଶରରେ ବିଦ୍ଧ କରି ଗୋଟିଏ ସୁତୀକ୍ଷ୍ଣ କ୍ଷୁରପ୍ର ଦ୍ୱାରା ପାର୍ଥଙ୍କର ଧ୍ୱଜକୁ ଆହତ କଲେ । ମହାହସ୍ତୀ ଅଙ୍କୁଶଦ୍ୱାରା ଆହତ ହେଲାପ୍ରାୟ ପାର୍ଥ ଅତି କ୍ରୁଦ୍ଧ ହୋଇ ନତପର୍ବ ନବେଗୋଟି ଶରଦ୍ୱାରା ଶ୍ରୁତାୟୁଧଙ୍କୁ ଆଘାତ କଲେ । ଶ୍ରୁତାୟୁଧ ମଧ୍ୟ ତାହାଙ୍କର ବିକ୍ରମକୁ ସହି ନ ପାରି ସପ୍ତସପ୍ତତିଗୋଟି ନାରାଚ ତାହାଙ୍କ ପ୍ରତି ନିକ୍ଷେପ କଲେ । ଅନନ୍ତର ଅର୍ଜ୍ଜୁନ କ୍ରୋଧସହକାରେ ତାହାଙ୍କର ଧନୁ ଓ ତୂଣୀର ଛେଦନ କରି ନତପର୍ବ ସାତଗୋଟି ଶର ତାହାଙ୍କର ବକ୍ଷଃସ୍ଥଳକୁ ନିକ୍ଷେପ କଲେ ।

ହେ ଭାରତ ! ଅନନ୍ତର ଅରିନ୍ଦମ ମହାବଳବାନ୍ ମହାରଥ ଅର୍ଜ୍ଜୁନ ହାସ୍ୟପୂର୍ବକ ଅନେକସହସ୍ରଶରଦ୍ୱାରା ଶ୍ରୁତାୟୁଧଙ୍କୁ ପୀଡ଼ିତ କରି ଶୀଘ୍ର ତାହାଙ୍କର ଅଶ୍ୱମାନଙ୍କୁ ଓ ସାରଥିକୁ ସଂହାର କଲେ । ୪୨ । ପୁନର୍ବାର ସପ୍ତତିନାରାଚଦ୍ୱାରା ତାହାଙ୍କୁ ବିଦ୍ଧ କଲେ । ବୀର୍ଯ୍ୟବାନ୍ ରାଜା ଶ୍ରୁତାୟୁଧ ହତାଶ୍ୱରଥପରିତ୍ୟାଗପୂର୍ବକ ଗଦା ଉଦ୍ୟତ କରି ଧାବମାନ ହେଲେ ।

ହେ ମହାରାଜ ! ରାଜା ଶ୍ରୁତାୟୁଧ ବରୁଣଙ୍କ ପୁତ୍ର ଅଟନ୍ତି ଓ ପର୍ଣ୍ଣାଶାନାମ୍ନୀ ଶୀତଳତୋୟା ମହାନଦୀ ତାହାଙ୍କର ମାତା ଅଟନ୍ତି । ଏକ ସମୟରେ ପର୍ଣ୍ଣାଶା ବରୁଣଙ୍କୁ କହିଲେ । ୪୫ । ହେ ସ୍ୱାମିନ୍ ! "ଆମ୍ଭର ଏହି ପୁତ୍ର ବିଶ୍ୱମଧ୍ୟରେ ଶତ୍ରୁମାନଙ୍କର ଅବଧ୍ୟ ହେବ, ଏହି ଆମ୍ଭର

ପ୍ରାର୍ଥନା” ବରୁଣ ପ୍ରୀତ ହୋଇ କହିଲେ, ହେ ନୃପପ୍ରବର ! ଯଦ୍ଦ୍ୱାରା ତୁମ୍ଭର ଏହି ପୁତ୍ର ଅବଧ୍ୟ ହେବ, ସେହି ବର ଆମ୍ଭେ ଦେଉଅଛୁଁ । ଆମ୍ଭେ ଏହାକୁ ଦିବ୍ୟାସ୍ତ୍ର ବର ପ୍ରଦାନ କରୁଅଛୁ । ମନୁଷ୍ୟ କୌଣସି ପ୍ରକାରରେ ଅମର ହୁଏ ନାହିଁ । ଜନ୍ମଗ୍ରହଣ କଲେ ସମସ୍ତେ ଅବଶ୍ୟ ମରିବେ । ପରନ୍ତୁ ତୁମ୍ଭର ଏହି ପୁତ୍ର ଆମ୍ଭର ପ୍ରଦତ୍ତ ଅସ୍ତ୍ର ପ୍ରଭାବରେ ସର୍ବଦା ସଂଗ୍ରାମରେ ଦୁର୍ଦ୍ଧର୍ଷ ହେବ । ଅତଏବ ତୁମ୍ଭେ ଏହା ନିମିତ୍ତ ଚିନ୍ତା କରନାହିଁ । ବରୁଣ ଏହି କଥା କହି ମନ୍ତ୍ରପୁରସ୍କୃତ ଗୋଟିଏ ଗଦା ସେହି ପୁତ୍ରକୁ ପ୍ରଦାନ କଲେ । ୪୯ ।

ଶ୍ରୁତାଯୁଧ ତାହା ପ୍ରାପ୍ତ ହୋଇ ସମସ୍ତଲୋକରେ ଦୁର୍ଦ୍ଧର୍ଷ ହେଲେ । ଭଗବାନ୍ ଜଳେଶ୍ୱର ପୁନର୍ବାର ସେହି ପୁତ୍ରକୁ କହିଲେ । ୫୦ । ହେ ବତ୍ସ ! ଯେ ଯୁଦ୍ଧ ନ କରିବ, ତା ପ୍ରତି ଏହି ଗଦା ନିକ୍ଷେପ କରିବ ନାହିଁ । ଯଦି ନିକ୍ଷେପ କରିବ, ତାହାହେଲେ ଏହା ତୁମ୍ଭଉପରେ ଆସି ପତିତ ହେବ । ଯେ ଯୁଦ୍ଧରେ ବିପକ୍ଷ ହୋଇ ଅସ୍ତ୍ର ପ୍ରୟୋଗ କରିବ, ଏହି ଗଦା ତାହାକୁ ନିଶ୍ଚୟ ହତ କରିବ ।

ହେ ମହାରାଜ ! ଶ୍ରୁତାଯୁଧ ସେହି ଗଦା ପ୍ରୟୋଗ କରିବାର ଉଚିତ ସମୟରେ ପିତାଙ୍କ ବାକ୍ୟାନୁସାରେ କାର୍ଯ୍ୟ ନ କରି ସେହି ବୀର-ଘାତକୀ ଗଦାକୁ କୃଷ୍ଣଙ୍କ ଉପରେ ନିକ୍ଷେପ କଲେ । ୫୨ । ବୀର୍ଯ୍ୟବାନ୍ କୃଷ୍ଣ ପୀନସ୍କନ୍ଧରେ ସେହି ଗଦାକୁ ପ୍ରତିଗ୍ରହ କଲେ । ବିନ୍ଧ୍ୟଗିରିକୁ ବାୟୁ ଯେପରି ବିଚଳିତ କରିପାରେ ନାହିଁ, ସେହିପରି ସେ ଗଦା କୃଷ୍ଣଙ୍କୁ ବିଚଳିତ କରି ପାରିଲେ ନାହିଁ । ୫୩ । ଦୁରଧିଷ୍ଠିତା ଯଜ୍ଞୋତ୍ଥିତା କୃତ୍ୟାସଦୃଶ ସେହି ଗଦା ଯୋଦ୍ଧାବିଶିଷ୍ଟ ଦଣ୍ଡାୟମାନ ସେହି ବୀର ଶ୍ରୁତାଯୁଧଙ୍କୁ ସଂହାର କରି ଧରଣୀତଳରେ ପତିତ ହେଲା । ଗଦାକୁ ଏହିପ୍ରକାରେ ପ୍ରତିନିବୃତ୍ତ ଓ ସ୍ୱକୀୟ ଅସ୍ତ୍ରଦ୍ୱାରା ଅରିନ୍ଦମ ଶ୍ରୁତାଯୁଧକୁ ହତ ହେବାର ଦେଖି ସୈନ୍ୟମାନେ ତୁମୁଳ ହାହାକାର ଶବ୍ଦ କଲେ । ୫୬ । ହେ ନରାଧିପ ! ଶ୍ରୁତାଯୁଧ ଅଯୋଧ୍ୟମାନ କେଶବଙ୍କ ଉପରକୁ ସେହି ଗଦା ନିକ୍ଷେପ କରିବାରୁ ତଦ୍ଦ୍ୱାରା ନିଜେ ନିହତ ହେଲେ । ୫୭ ।

ବରୁଣ ଯେପରି କହିଥିଲେ, ସେହିପରି ସେ ସଂଗ୍ରାମରେ ନିଧନ ପ୍ରାପ୍ତ ହେଲେ । ସମସ୍ତ ଧନୁର୍ଦ୍ଧରଙ୍କର ଦୃଷ୍ଟିଗୋଚରରେ ବିଗତାସୁ ହୋଇ ଭୂତଳରେ ପତିତ ହେଲେ । ପର୍ଣ୍ଣାଶାର ପ୍ରିୟପୁତ୍ର ଶ୍ରୁତାୟୁଧ ପବନଭଗ୍ନ ବହୁଶାଖାବିଶିଷ୍ଟ ବନସ୍ପତିସଦୃଶ ଭୂତଳରେ ପତିତ ହୋଇ ଶୋଭା ପାଇଲେ । ଅନନ୍ତର ସମସ୍ତ ସେନାପତି ଅରିନ୍ଦମ ଶ୍ରୁତାୟୁଧଙ୍କୁ ନିହତ ହେବାର ନିରୀକ୍ଷଣ କରି ପଳାୟନ କଲେ । ୭୦ ।

ତତ୍ପରେ କାମ୍ବୋଜରାଜନନ୍ଦନ, ଶୂର ସୁଦକ୍ଷିଣ ବେଗବାନ୍‌ଅଶ୍ୱ-ଯୋଜିତ ରଥରେ ଆରୋହଣ କରି ଅରିସୂଦନ ଅର୍ଜ୍ଜୁନଙ୍କ ସମ୍ମୁଖରେ ଉପସ୍ଥିତ ହେଲେ । ୭୧ । ହେ ଭାରତ ! ଅର୍ଜ୍ଜୁନ ସାତଗୋଟି ଶର ତାହାଙ୍କ ପ୍ରତି ନିକ୍ଷେପ କଲେ । ସେହି ଶରମାନ ସେହି ଶୂରଙ୍କୁ ଭେଦ କରି ଧରଣୀ-ତଳରେ ପ୍ରବିଷ୍ଟ ହେଲା । ୭୨ । ଗାଣ୍ଡୀବନିକ୍ଷିପ୍ତ ସେହି ତୀକ୍ଷ୍ଣ ଶରସମୂହ ଦ୍ୱାରା ଅତିଶୟ ବିଦ୍ଧ ହୋଇ ସେ କଙ୍କପତ୍ରଯୁକ୍ତ ଦଶଗୋଟି ବାଣଦ୍ୱାରା ଅର୍ଜ୍ଜୁନଙ୍କୁ ବିଦ୍ଧ କଲେ । ୭୩ । ତଦନନ୍ତର ପୁନର୍ବାର ତିନିଗୋଟି ବାଣରେ କୃଷ୍ଣଙ୍କୁ ଓ ପାଞ୍ଚଗୋଟି ବାଣରେ ପାର୍ଥଙ୍କୁ ବିଦ୍ଧ କଲେ । ପାର୍ଥ ତାହାଙ୍କର ଶରାସନ ଛେଦନ କରି ରଥକେତୁ ଛେଦନ କଲେ । ୭୪ । ଅତି ତୀକ୍ଷ୍ଣ ଦୁଇଗୋଟି ଭଲ୍ଲଦ୍ୱାରା ଅର୍ଜ୍ଜୁନ ତାହାଙ୍କୁ ବିଦ୍ଧ କଲେ ! ସୁଦକ୍ଷିଣ ମଧ୍ୟ ତିନିଗୋଟି ବାଣରେ ପାର୍ଥଙ୍କୁ ବିଦ୍ଧ କରି ସିଂହନାଦ କଲେ । ୭୫ ।

ତଦନନ୍ତର କ୍ରୋଧାବିଷ୍ଟ ହୋଇ ଘଣ୍ଟାଳଙ୍କୃତ ସର୍ବପାରଶବୀ ଘୋରତର ଗୋଟିଏ ଶକ୍ତିକୁ ଅର୍ଜ୍ଜୁନଙ୍କ ଉପରକୁ ନିକ୍ଷେପ କଲେ । ୭୬ । ବିସ୍ଫୁଲିଙ୍ଗଯୁକ୍ତ ମହୋଲ୍‌କାସଦୃଶ ପ୍ରଜ୍ୱଳିତ ସେହି ଶକ୍ତି ମହାରଥ ଅର୍ଜ୍ଜୁନଙ୍କ ଶରୀର ଭେଦ କରି ମହୀତଳରେ ପତିତ ହେଲା । ୭୭ । ସେହି ଶକ୍ତିଦ୍ୱାରା ଗାଢ଼ଭାବରେ ଅଭିହତ ହୋଇ ସେ ମୂର୍ଚ୍ଛାପ୍ରାପ୍ତ ହେଲେ ।

ଅଚିନ୍ତ୍ୟବିକ୍ରମ ମହାତେଜା ପାର୍ଥ କିୟତ୍କାଳପରେ ଆଶ୍ୱସ୍ତ ହୋଇ ସୃକ୍‌କଣିଲେହନପୂର୍ବକ କଙ୍କପତ୍ରଯୁକ୍ତ ଚତୁର୍ଦ୍ଦଶଗୋଟି ନାରାଚଦ୍ୱାରା ଅଶ୍ୱ, ଧ୍ୱଜ, ଧନୁ ଓ ସାରଥି ସହିତ କାମ୍ବୋଜରାଜ ସୁଦକ୍ଷିଣଙ୍କୁ ବିଦ୍ଧ କରି ଅନ୍ୟ ବହୁଶର ଦ୍ୱାରା ତାହାଙ୍କର ରଥକୁ ଖଣ୍ଡ ଖଣ୍ଡ କରି ପକାଇଲେ । ପୃଥୁଧାର

ଗୋଟିଏ ବାଣଦ୍ୱାରା ତାହାଙ୍କ ହୃଦୟ ଭେଦ କରିବାରୁ ତାହାଙ୍କର ସଂକଳ୍ପ ଓ ବିକ୍ରମ ବିଫଳ ହେଲା । ତାହାଙ୍କର ବର୍ମ ବିଭିନ୍ନ, ଅଙ୍ଗ ସ୍ରସ୍ତ ଓ ମୁକୁଟ ଓ ଅଙ୍ଗଦ ଭ୍ରଷ୍ଟ ହେଲା । ୭୧ । ସେହି ବୀର ଅଭିମୁଖ ହୋଇ ଯନ୍ତ୍ରମୁକ୍ତ ଇନ୍ଦ୍ରଧ୍ୱଜସଦୃଶ ନିପତିତ ହେଲେ । ଯେପରି ଗିରିଶିଖରଜାତ ଉତ୍ତମଶାଖା-ସମ୍ପନ୍ନ ସୁପ୍ରତିଷ୍ଠିତ ଶୋଭମାନ କର୍ଣ୍ଣିକାରବୃକ୍ଷ ହିମର୍ତ୍ତୁର ଶେଷରେ ବାତଭଗ୍ନ ହୋଇ ପତିତ ହୁଏ, ସେହିପରି ସେ ପତିତ ହେଲେ ।

କାମ୍ବୋଜଦେଶୀୟ ଆସ୍ତରଣରେ ଶୟନଯୋଗ୍ୟ ଓ ମହାର୍ହଭୂଷଣ-ଯୁକ୍ତ ସୁଦକ୍ଷିଣ ନିହତ ହୋଇ ସାନୁମାନ୍ ପର୍ବତସଦୃଶ ଭୂତଳରେ ଶୟନ କଲେ । ମସ୍ତକରେ ଅନଳତୁଲ୍ୟ କାଞ୍ଚନମୟମାଲ୍ୟଧାରୀ, ତାମ୍ରଲୋଚନ ଓ ସୁଦର୍ଶନୀୟ ସେହି କାମ୍ବୋଜପୁତ୍ର ମହାବାହୁ ସୁଦକ୍ଷିଣ ପାର୍ଥଙ୍କ ଶରରେ ନିପାତିତ ହୋଇ ପ୍ରାଣଶୂନ୍ୟ ହୋଇ ସୁଦ୍ଧା ଭୂତଳରେ ଶୋଭା ପାଇଲେ । ତଦୁପରେ ଆପଣଙ୍କ ପୁତ୍ରଙ୍କ ସମସ୍ତ ସୈନ୍ୟ ଶ୍ରୁତାୟୁଧ ଓ କାମ୍ବୋଜରାଜପୁତ୍ର ସୁଦକ୍ଷିଣଙ୍କୁ ନିରୀକ୍ଷଣ କରି ପଳାୟନ କଲେ । ୭୬ ।

---

## ୯୩ ଅଧ୍ୟାୟ

ସଞ୍ଜୟ କହିଲେ—ହେ ରାଜନ ! ବୀର ସୁଦକ୍ଷିଣ ଓ ଶ୍ରୁତାୟୁଧ ନିହତ ହୁଅନ୍ତେ ଆପଣଙ୍କ ସୈନ୍ୟମାନେ କୁପିତ ହୋଇ ମହାବେଗରେ ଅର୍ଜୁନଙ୍କ ଅଭିମୁଖକୁ ଗମନ କଲେ । ୧ । ଅଭିଷାହ, ଶୂରସେନ, ଶିବି ଓ ବଶାତିଦେଶୀୟ ସୈନ୍ୟମାନେ ଧନଞ୍ଜୟଙ୍କ ଉପରେ ଶରବର୍ଷଣ କଲେ ।୨। ପାଣ୍ଡୁପୁତ୍ର ସେମାନଙ୍କ ମଧ୍ୟରୁ ପ୍ରଧାନ ପ୍ରଧାନ ଛଅସହସ୍ର ଯୋଦ୍ଧାଙ୍କୁ ଶରସମୂହଦ୍ୱାରା ପ୍ରମଥିତ କଲେ । ତହୁଁ ସେମାନେ ବ୍ୟାଘ୍ରଭୟରେ କ୍ଷୁଦ୍ରମୃଗଗଣସଦୃଶ ଭୀତ ହୋଇ ପଳାୟନ କଲେ । ୩ । ମାତ୍ର ସେମାନେ ପ୍ରତ୍ୟାବୃତ୍ତ ହୋଇ ଜିଗୀଷା ସହକାରେ ଶତ୍ରୁହନନକାରୀ ଅର୍ଜୁନଙ୍କୁ ସର୍ବତୋ-ଭାବରେ ପରିବେଷ୍ଟନ କଲେ । ସେହି ଆକ୍ରମଣକାରୀମାନଙ୍କର ମସ୍ତକ ଓ ବାହୁସମୂହକୁ ଗାଣ୍ଡୀବନିକ୍ଷିପ୍ତ ଶରନିକରଦ୍ୱାରା ଶୀଘ୍ର ଶୀଘ୍ର ଛେଦନ କଲେ । ୪ ।

ସେମାନଙ୍କର ପାତିତ ମସ୍ତକସମୂହଦ୍ୱାରା ଭୂମି ସମ୍ପୂର୍ଣ୍ଣରୂପେ ଆଚ୍ଛାଦିତ ହେଲା । ଗୃଧ୍ର, କାକ ଓ ଅନ୍ୟାନ୍ୟ ମାଂସାଶୀ ପକ୍ଷିମାନେ ତତ୍ରତ୍ୟ ଆକାଶମଣ୍ଡଳକୁ ମେଘଗୁମ୍ଫସଦୃଶ ଆଚ୍ଛନ୍ନ କଲେ । ୬ । ସେହି ସମୟରେ ସୈନ୍ୟ ନିହତ ହୁଅନ୍ତେ ଶ୍ରୁତାୟୁ ଓ ଅଚ୍ୟୁତାୟୁ ଧନଞ୍ଜୟଙ୍କ ସହିତ ଯୁଦ୍ଧାରମ୍ଭ କଲେ । ୭ । ହେ ରାଜନ୍ ! ବଳବାନ୍, ସ୍ପର୍ଦ୍ଧାଶୀଳ, ବାହୁଶାଳୀ, କୁଳଜ ଓ ଧନୁର୍ଦ୍ଧର ସେହି ଦୁଇ ବୀର ମହଦ୍‌ଯଶ ଉପାର୍ଜନମାନସରେ ଧନଞ୍ଜୟଙ୍କ ବଧାଭିଳାଷୀ ହୋଇ ଆପଣଙ୍କ ପୁତ୍ରନିମିତ୍ତ ତ୍ୱରାନ୍ୱିତ ହୋଇ ଦକ୍ଷିଣ ଓ ବାମଦିଗରୁ ଧନଞ୍ଜୟଙ୍କ ଉପରେ ଶରବର୍ଷଣ କଲେ । ୯ । ମେଘ ଯେପରି ଜଳବୃଷ୍ଟିଦ୍ୱାରା ତଡ଼ାଗ ପରିପୂର୍ଣ୍ଣ କରେ, ସେହିପ୍ରକାର ସେ ଦୁହେଁ କ୍ରୋଧାବିଷ୍ଟ ହୋଇ ନତପର୍ବ ସହସ୍ର ସହସ୍ର ଶରଦ୍ୱାରା ଅର୍ଜ୍ଜୁନଙ୍କୁ ସମାଚ୍ଛନ୍ନ କଲେ । ୧୦ ।

ଅନନ୍ତର ରଥିପ୍ରଧାନ ଶ୍ରୁତାୟୁ ଅତିଶୟ କ୍ରୁଦ୍ଧ ହୋଇ ଧନଞ୍ଜୟଙ୍କ ଉପରକୁ ଶାଣିତ ଓ ପାଣିତ ଗୋଟିଏ ତୋମର ନିକ୍ଷେପ କଲେ । ୧୧ । ଶତ୍ରୁକର୍ଷଣ ଧନଞ୍ଜୟ ସେହି ବଳବାନ୍ ଶତ୍ରୁର ତୋମରାଘାତରେ ଅତିଶୟ ବିଦ୍ଧ ହୋଇ ଅତୀବ ମୋହପ୍ରାପ୍ତ ହେଲେ ଓ କେଶବଙ୍କୁ ମଧ୍ୟ ମୋହିତ କଲେ । ୧୨ । ଏହିସମୟରେ ମହାରଥ ଅଚ୍ୟୁତାୟୁ ଗୋଟିଏ ଅତ୍ୟନ୍ତ ତୀକ୍ଷ୍ଣ ଶୂଳଦ୍ୱାରା ଧନଞ୍ଜୟଙ୍କୁ ଆହତ କଲେ । ୧୩ । ସେହି ସମୟରେ ଅଚ୍ୟୁତାୟୁ ଶୂଳଘାତ କରି ମହାତ୍ମା ଅର୍ଜ୍ଜୁନଙ୍କର କ୍ଷତସ୍ଥଳରେ କ୍ଷାରପ୍ରଦାନ କଲାପରି କଲେ । ତହୁଁ ଅର୍ଜ୍ଜୁନ ଅତିଶୟ ବ୍ୟଥିତ ହୋଇ ଧ୍ୱଜଯଷ୍ଟି ଅବଲମ୍ବନ କଲେ । ୧୪ । ଅନନ୍ତର ଧନଞ୍ଜୟଙ୍କୁ ହତ ବୋଲି ମନେ କରି ଆପଣଙ୍କ ପକ୍ଷର ସମୁଦାୟ ସୈନ୍ୟ ସିଂହନାଦ କଲେ । ୧୫ । ସେତେବେଳେ କୃଷ୍ଣ ପାର୍ଥଙ୍କୁ ହତଚେତନ ଅବଲୋକନ କରି ଅତ୍ୟନ୍ତ ଦୁଃଖିତ ହୋଇ ସୁହୃଦ୍ୟ ବଚନରେ ତାହାଙ୍କୁ ଆଶ୍ୱସ୍ତ କଲେ । ୧୬ ।

ଲବ୍ଧଲକ୍ଷ୍ୟ ରଥିଶ୍ରେଷ୍ଠ ସେହି ଦୁଇ ବୀର ଏହି ଅବସରରେ ଚକ୍ର, କୁବର, ରଥ, ଅଶ୍ୱ, ଧ୍ୱଜ ଓ ପତାକାର ସହିତ ଧନଞ୍ଜୟ ଓ କୃଷ୍ଣଙ୍କର ଉପରେ ଚତୁର୍ଦ୍ଦିଗରୁ ଶରବର୍ଷଣ କରି ଅଦୃଶ୍ୟ କରି ପକାଇଲେ, ଏହା ଅଦ୍ଭୁତପ୍ରାୟ ହେଲା । ୧୮ । ହେ ଭାରତ ! ବୀଭତ୍ସୁ ଶନୈଃ ଶନୈଃ

ଆଶ୍ୱସ୍ତ ହୋଇ ପ୍ରାଣୀ ଯମଲୋକକୁ ଗମନ କରି ପୁନର୍ବାର ପ୍ରତ୍ୟାଗତ ହୋଇପ୍ରାୟ ଜୀବନ ପ୍ରାପ୍ତ ହେଲେ । ୧୯ । ମହାରଥ ପାର୍ଥ କେଶବଙ୍କ ସହିତ ସ୍ୱକୀୟ ରଥକୁ ଶରଜାଲଦ୍ୱାରା ସମାବୃତ ହେବାର ଦେଖି ଓ ସେହି ଦୁଇ ଶତ୍ରୁଙ୍କୁ ପ୍ରଦୀପ୍ତ ଅନଳସମାନ ସମ୍ମୁଖରେ ଅବସ୍ଥିତ ହେବାର ଅବଲୋକନ କରି ରୌଦ୍ର ଅସ୍ତ୍ର ପ୍ରାଦୁର୍ଭୂତ କଲେ । ସେହି ରୌଦ୍ର ଅସ୍ତ୍ରରୁ ସହସ୍ର ସହସ୍ର ନତପର୍ବ ବାଣମାନ ନିକ୍ଷିପ୍ତ ହୋଇ ସେହି ଦୁଇ ମହା-ଧନୁର୍ଦ୍ଧରଙ୍କୁ ଓ ସେମାନଙ୍କର ନିକ୍ଷିପ୍ତ ବାଣସମୂହକୁ ଅଭିହତ କଲା ।

ସେହି ସମସ୍ତ ଅଭିହତ ବାଣମାନ ପାର୍ଥବାଣନିକରଦ୍ୱାରା ନିବାରିତ ହୋଇ ଆକାଶରେ ବିଚରଣ କଲା । ୨୨ । ପାଣ୍ଡୁନନ୍ଦନ ସୋମଙ୍କର ସେହି ସମସ୍ତ ବାଣଙ୍କୁ ବାଣବେଗରେ ଶୀଘ୍ର ନିହତ କରି ମହାରଥମାନଙ୍କ ସହିତ ଯୁଦ୍ଧ କରୁଁ କରୁଁ ଇତସ୍ତତଃ ବିଚରଣ କଲେ । ୨୩ । ସେ ଦୁଇଜଣ ଅର୍ଜ୍ଜୁନଙ୍କର ବାଣସମୂହଦ୍ୱାରା ମସ୍ତକ ଓ ବାହୁବିହୀନ ହୋଇ ପବନଭଗ୍ନ ବୃକ୍ଷଦ୍ୱୟସଦୃଶ ଧରଣୀଗତ ହେଲେ । ୨୪ । ଶ୍ରୁତାୟୁ ଓ ଅଚ୍ୟୁତାୟୁ—ଏ ଦୁଇଜଣଙ୍କର ନିଧନ ସମୁଦ୍ରଶୋଷଣତୁଲ୍ୟ ଲୋକ-ବିସ୍ମୟକର ହେଲା । ୨୫ ।

ଅନନ୍ତର ପାର୍ଥ ସେ ଦୁହିଁଙ୍କର ପଦାନୁଗ ପଞ୍ଚାଶତ୍ ସଂଖ୍ୟକ ରଥୀଙ୍କୁ ନିହତ କରି ପ୍ରଧାନ ପ୍ରଧାନ ଯୋଦ୍ଧାମାନଙ୍କୁ ସଂହାରପୂର୍ବକ ଭାରତୀ ସେନା ମଧ୍ୟରେ ପ୍ରବେଶ କଲେ । ୨୭ । ଶ୍ରୁତାୟୁ ଓ ଅଚ୍ୟୁତାୟୁ ଏ ଦୁହିଁଙ୍କର ନିଧନ ନିରୀକ୍ଷଣ କରି ସେମାନଙ୍କର ପୁତ୍ରଦ୍ୱୟ ନରଶ୍ରେଷ୍ଠ ନିୟୁତାୟୁ ଓ ଦୀର୍ଘାୟୁ ପିତୃନିଧନରେ ଅତିଶୟ ଦୁଃଖିତ ଓ ସଂକ୍ରୁଦ୍ଧ ହୋଇ ବିବିଧ ବାଣମାନ ବିକୀର୍ଣ୍ଣ କରୁ କରୁ କୁନ୍ତୀନନ୍ଦନଙ୍କ ନିକଟକୁ ଆଗମନ କଲେ । ୨୮ । ଅର୍ଜ୍ଜୁନ ମହାକ୍ରୁଦ୍ଧ ହୋଇ ମୁହୂର୍ତ୍ତକ ମଧ୍ୟରେ ସେ ଦୁଇଜଣଙ୍କୁ ନତପର୍ବ ବାଣସମୂହଦ୍ୱାରା ଶମନସଦନକୁ ପ୍ରେରଣ କଲେ । ୨୯ । ହସ୍ତୀ ଯେପରି ପଦ୍ମସରୋବରକୁ ଆଲୋଡ଼ିତ କରେ, ସେହିପରି ପାର୍ଥ କୌରବ ସୈନ୍ୟମାନଙ୍କୁ ଛିନ୍ନଭିନ୍ନ କରିବାରେ ପ୍ରବୃତ୍ତ ହେଲେ । କ୍ଷତ୍ରିୟପୁଙ୍ଗବମାନେ ମଧ୍ୟ ତାହାଙ୍କୁ ନିବାରଣ କରିବାକୁ ସମର୍ଥ ହେଲେ ନାହିଁ । ୩୦ ।

ତଦନନ୍ତର ଅଙ୍ଗଦେଶୀୟ ପାଶ୍ଚାତ୍ୟ ଓ ଦାକ୍ଷିଣାତ୍ୟ ସହସ୍ର ସହସ୍ର ଗଜାରୋହୀ ଦୁର୍ଯ୍ୟୋଧନଙ୍କର ଆଦେଶରେ କଳିଙ୍ଗଦେଶୀୟ ଯୋଦ୍ଧାମାନଙ୍କୁ ଅଗ୍ରବର୍ତ୍ତୀ କରି କ୍ରୋଧସହକାରେ ପର୍ବତୋପମ ଗଜସମୂହଦ୍ୱାରା ଅର୍ଜ୍ଜୁନଙ୍କୁ ଆକ୍ରମଣ କଲେ । ୩୨ । ଆକ୍ରମଣକାରୀ ସେହି ସୈନ୍ୟମାନଙ୍କର ମସ୍ତକ ଓ ଭୂଷଣଭୂଷିତ ବାହୁସମୂହକୁ ଉଗ୍ରମୂର୍ତ୍ତି ଅର୍ଜ୍ଜୁନ ଗାଣ୍ଡୀବନିକ୍ଷିପ୍ତ ଶରନିକରଦ୍ୱାରା ଛେଦନ କଲେ । ୩୩ ।

ସେହିସବୁ କର୍ତ୍ତିତ ମସ୍ତକ ଓ ଅଙ୍ଗଦଯୁକ୍ତ ବାହୁଦ୍ୱାରା ପୃଥିବୀ ବିସ୍ତୀର୍ଣ୍ଣା ହୋଇ ଭୁଜଗାବୃତା ଓ କନକଖଚିତପାଷାଣମୟୀସ୍ୱରୂପ ଶୋଭା ପାଇଲା । ୩୪ । ଯେପରି ବୃକ୍ଷରୁ ପକ୍ଷିମାନେ ଉଡ଼ି ଆସି ଭୂତଳରେ ପତିତ ହୁଅନ୍ତି, ସେହିପରି ଅର୍ଜ୍ଜୁନଙ୍କ ବାଣସମୂହଦ୍ୱାରା ବୀରମାନଙ୍କ ମସ୍ତକସବୁ ଉନ୍ମଥିତ ଓ ବାହୁସମସ୍ତ ଛିନ୍ନ ହୋଇ ଭୂତଳରେ ପତିତ ହେଲା । ୩୫ । ସହସ୍ର ସହସ୍ର ଶରବିଦ୍ଧହସ୍ତୀଶରୀରରୁ ଶୋଣିତ ସ୍ରାବ ହେବାରୁ ସେମାନେ ଗୈରିକଜଳପ୍ରସ୍ରବଣଯୁକ୍ତ ପର୍ବତସଦୃଶ ଦୃଷ୍ଟ ହେଲେ । ୩୬ । ଗଜପୃଷ୍ଠସ୍ଥିତ ବହୁସଂଖ୍ୟକ ମ୍ଳେଚ୍ଛ ବୀଭତ୍ସୁଙ୍କ ଶରନିକରରେ ନିହତ ଓ ଅର୍ଦ୍ଦିତ ଓ ବିକୃତରୂପ ହୋଇ ଶୟନ କଲେ । ୩୭ ।

ହେ ରାଜନ୍ ! ନାନାବିଧବେଶଧାରୀ ବିବିଧଶସ୍ତ୍ରସମୂହସଂବୃତ ଯୋଦ୍ଧାମାନେ ଅର୍ଜ୍ଜୁନଙ୍କ ବିଚିତ୍ର ଶରସମୂହରେ ନିହତ ହୋଇ ରୁଧିରକ୍ତ-କଳେବରରେ ପ୍ରତିଭାତ ହେଲେ । ୩୮ । ସହସ୍ର ସହସ୍ର ହସ୍ତୀ ଆରୋହୀ ଓ ଅନୁଗାମିମାନଙ୍କ ସହିତ ପାର୍ଥଶରସମୂହଦ୍ୱାରା ପ୍ରପୀଡ଼ିତ ଓ ଛିନ୍ନଗାତ୍ର ହୋଇ ରୁଧିର ବମନ କଲେ । ଅପର ହସ୍ତୀମାନେ ଚିତ୍କାର ଶବ୍ଦ ଆଉ ଅନେକ ହସ୍ତୀ ଚତୁର୍ଦ୍ଦିଗରେ ଭ୍ରମଣ କରିବାକୁ ଆରମ୍ଭ କଲେ । ଅପର କେତେକ ହସ୍ତୀ ନିପତିତ ହେଲେ । ଅନେକ ହସ୍ତୀ ତ୍ରାସାନ୍ୱିତ ହେଲେ, ଅପର କେତେକ ହସ୍ତୀ ସେହି ପୂର୍ବୋକ୍ତ ଗଜମାନଙ୍କୁ ବିମର୍ଦ୍ଦିତ କଲେ । ୪୦ । ତୀକ୍ଷ୍ଣ ବିଷଧରସଦୃଶ କେତେକ ହସ୍ତୀ ଅନ୍ତରୀସ୍ତ୍ରବିଶିଷ୍ଟ ଆରୋହୀ ସହ ସେହିସମସ୍ତ ପୀଡ଼ିତ ହସ୍ତୀମାନଙ୍କୁ ମର୍ଦ୍ଦିତ କଲେ ।

ଅନନ୍ତର ଘୋରଲୋଚନ ଅତିଶୟ ଭୟାନକ କାଳତୁଲ୍ୟ ପ୍ରହାର-ପଟୁ ଅସୁରମାୟାଭିଜ୍ଞ, ଯବନ, ପାରଦ, ଶକ, ବାହ୍ଲୀକ, ମତ୍ତମାତଙ୍ଗବିକ୍ରମ

କାକବର୍ଣ୍ଣ ଦୁରାତ୍ମାର କଳହପ୍ରିୟ ଦ୍ରାବିଡ଼ଦେଶୋଦ୍ଭବ ଓ ଗୋ-ଯୋନିସମ୍ଭୂତ ମ୍ଳେଚ୍ଛଗଣ ଓ ଦାର୍ବାଭିସାର, ଦରଦ ଓ ପୁଣ୍ଡ୍ର ଦେଶୀୟ ଯୁଦ୍ଧବିଶାରଦ ସହସ୍ର ସହସ୍ର, ଲକ୍ଷ ଲକ୍ଷ ମ୍ଳେଚ୍ଛଗଣ, ଯେଉଁମାନଙ୍କର ସଂଖ୍ୟା ହୋଇପାରିବ ନାହିଁ; ସେମାନେ ସମସ୍ତେ ଅର୍ଜ୍ଜୁନଙ୍କୁ ଆକ୍ରମଣ କରି ଶାଣିତ ଶରମାନ ବିକୀର୍ଣ୍ଣ କଲେ । ୪୫ ।

ଧନଞ୍ଜୟ ମଧ୍ୟ ଶଲଭସମୂହ ବିସ୍ତାର କଲାସଦୃଶ ସେମାନଙ୍କ ଉପରେ ଶରବୃଷ୍ଟି କଲେ । ୪୬ । ସେ ଶରସମୂହଦ୍ୱାରା ମେଘଚ୍ଛାୟାସଦୃଶ ଛାୟା କରି ମୁଣ୍ଡିତମସ୍ତକ ଅର୍ଦ୍ଧମୁଣ୍ଡିତମସ୍ତକ ଜଟାଧାରୀ ଓ କୁଟିଳମୁଖ ଏକତ୍ରିତ ହୋଇଥିବା ସମସ୍ତ ଅପବିତ୍ର ମ୍ଳେଚ୍ଛମାନଙ୍କୁ ସଂହାର କଲେ । ଅବଶିଷ୍ଟ କେତେକ ଗିରିଗହ୍ୱରବାସୀ, ପର୍ବତଚର ମ୍ଳେଚ୍ଛମାନେ ଧନଞ୍ଜୟଙ୍କର ଶତ ଶତ ଶରଦ୍ୱାରା ବିଦ୍ଧ ହୋଇ ଭୟପ୍ରଯୁକ୍ତ ଯୁଦ୍ଧରୁ ପଳାୟନ କଲେ । ୪୮ ।

କାକ, କଙ୍କ ଓ ବୃକଗଣ ହୃଷ୍ଟ ହୋଇ ଶାଣିତଶରନିପାତିତ ଗଜାରୋହୀ ଓ ଅଶ୍ୱାରୋହୀ ମ୍ଳେଚ୍ଛମାନଙ୍କର ରୁଧିର ପାନ କଲେ । ଏହି-ପ୍ରକାରେ ଧନଞ୍ଜୟ ଗଜ, ଗଜାରୋହୀ, ଅଶ୍ୱ, ଅଶ୍ୱାରୋହୀ ଓ ରଥୀମାନଙ୍କର ଦେହରି ରୁଧିରଦ୍ୱାରା ପତ୍ତି, ଅଶ୍ୱ, ରଥ ଓ ହସ୍ତୀସମୂହର ସେତୁବିଶିଷ୍ଟ ଯୁଗାନ୍ତକାଳୀନ କାଳସ୍ୱରୂପା ଭୟଙ୍କରୀ—ଶୋଣିତପ୍ରଧାନା ଗୋଟିଏ ନଦୀ ସୃଷ୍ଟି କଲେ । ଶରସମୂହ ସେହି ନଦୀର ପ୍ଳବସ୍ୱରୂପ, ଶୋଣିତସମୂହ ତରଙ୍ଗ-ସ୍ୱରୂପ, ଛିନ୍ନ ଅଙ୍ଗୁଳିସବୁ କ୍ଷୁଦ୍ରମତ୍ସ୍ୟସ୍ୱରୂପ, କେଶସମୂହ ଶୈବାଳ ଓ ଶାଦ୍ୱଳସ୍ୱରୂପ, ଗଜସମୂହ ଦ୍ୱୀପସ୍ୱରୂପ ହୋଇଥିଲେ । ଯେ ପ୍ରକାର ଇନ୍ଦ୍ରଙ୍କର ଭୂରି ବାରିବର୍ଷଣଦ୍ୱାରା କୌଣସି ସ୍ଥାନ ନିମ୍ନ ରହେ ନାହିଁ, ସମାନ ହୋଇଯାଏ, ସେହିପ୍ରକାର ରଣସ୍ଥଳ ଶୋଣିତପରିପ୍ଳୁତ ହୋଇ ସମାନ ହୋଇଗଲା ।

କ୍ଷତ୍ରିୟଶ୍ରେଷ୍ଠ ଅର୍ଜ୍ଜୁନ ଛଅସହସ୍ର ଅଶ୍ୱାରୋହୀ ଓ ଏକସହସ୍ର ପ୍ରଧାନ କ୍ଷତ୍ରିୟବୀରଙ୍କୁ ଯମଲୋକକୁ ପ୍ରେରଣ କଲେ । ବିଧିପୂର୍ବକ ସଜ୍ଜିତ ସହସ୍ର ସହସ୍ର ହସ୍ତୀ ଅର୍ଜ୍ଜୁନଙ୍କ ଶରସମୂହଦ୍ୱାରା ବିଦ୍ଧ ହୋଇ ବଜ୍ରହତ ଶୈଳସଦୃଶ ଧରାଶାୟୀ ହେଲେ । ମତ୍ତମାତଙ୍ଗ ଯେପରି ନଳବନକୁ ମର୍ଦ୍ଦନ କରି ବିଚରଣ

କରେ, ଅର୍ଜୁନ ସେହିପ୍ରକାରେ ଅଶ୍ୱ, ହସ୍ତୀ ଓ ରଥସମୂହଙ୍କୁ ବିମର୍ଦ୍ଦିତ କରି ସମରରେ ବିଚରଣ କଲେ । ଯେପରି ଅଗ୍ନି ବାୟୁସମୀରିତ ହୋଇ ବହୁ ବୃକ୍ଷ, ଲତା, ଗୁଳ୍ମ, ଶୁଷ୍କ ଇନ୍ଧନ, ତୃଣ ଓ ଉଲପସମ୍ପନ୍ନ ଅରଣ୍ୟକୁ ଦଗ୍ଧ କରେ, ସେହିପରି କ୍ରୁଦ୍ଧ ଅର୍ଜୁନରୂପ ଅଗ୍ନି କୃଷ୍ଣରୂପ ସମୀରଣଦ୍ୱାରା ସମୀରିତ ହୋଇ ଶରସମୂହଶିଖାଦ୍ୱାରା ଆପଣଙ୍କ ସୈନ୍ୟାରଣ୍ୟକୁ ଦଗ୍ଧ କଲେ । ସେ କ୍ରୋଧାବିଷ୍ଟ ହୋଇ ବଜ୍ରକଳ୍ପ ଶରସମୂହଦ୍ୱାରା ରଥମାଡ଼ସବୁ ଶୂନ୍ୟ କଲେ ଓ ମନୁଷ୍ୟଦେହରେ ପୃଥିବୀକୁ ବିସ୍ତୀର୍ଣ୍ଣା ଓ ଶୋଣିତମୟୀ କରି ଗାଣ୍ଡୀବଧନୁକୁ ହସ୍ତରେ ଧାରଣପୂର୍ବକ ନୃତ୍ୟ କଲପ୍ରାୟ ସେହି ସୈନ୍ୟ-ସମ୍ବାଧରେ ଭାରତୀସେନା ମଧ୍ୟରେ ପ୍ରବେଶ କଲେ ।

ଅମ୍ବଷ୍ଠ ଶ୍ରୁତାୟୁ ଯତ୍ନବାନ୍ ହୋଇ ଗମନକାରୀ ଅର୍ଜୁନଙ୍କୁ ଶର-ନିକର ଦ୍ୱାରା ସାଧ୍ୟାନୁସାରେ ନିବାରଣ କଲେ । ୭° । ତେତେବେଳେ ମହାବଳପରାକ୍ରାନ୍ତ ଅର୍ଜୁନ ବିଳମ୍ବ ନ କରି କଙ୍କପତ୍ରଭୂଷିତ ତୀକ୍ଷ୍ଣ ଶରନିକର ଦ୍ୱାରା ଅମ୍ବଷ୍ଠଙ୍କ ଅଶ୍ୱମାନଙ୍କୁ ବିନଷ୍ଟ କଲେ ଓ ଅନ୍ୟ ଶରପୁଞ୍ଜ ଦ୍ୱାରା ଅମ୍ବଷ୍ଠଙ୍କ ଶରାସନ ଛେଦନ କରି ବିକ୍ରମ ପ୍ରକାଶ କଲେ । ତହୁଁ ବୀର ଅମ୍ବଷ୍ଠ କ୍ରୋଧାକୁଳଲୋଚନରେ ଗଦାଗ୍ରହଣପୂର୍ବକ ମହାବଳ ପାର୍ଥ ଓ କେଶବଙ୍କ ସମୀପକୁ ଗମନ କରି ହାସ୍ୟବଦନରେ ରଥବେଷ୍ଟନପୂର୍ବକ ଗଦାଦ୍ୱାରା କେଶବଙ୍କୁ ତାଡ଼ିତ କଲେ । ପରବୀରହନ୍ତା ଅର୍ଜୁନ କେଶବଙ୍କୁ ଗଦାଦ୍ୱାରା ତାଡ଼ିତ ହେବାର ଅବଲୋକନ କରି ଅମ୍ବଷ୍ଠଙ୍କ ପ୍ରତି ଅତିଶୟ କ୍ରୁଦ୍ଧ ହୋଇ ହେମପୁଙ୍ଖଶରଦ୍ୱାରା ରଥପ୍ରବର ଅମ୍ବଷ୍ଠଙ୍କୁ ଗଦାର ସହିତ ମେଘାଚ୍ଛାଦିତ ଉଦିତସୂର୍ଯ୍ୟସଦୃଶ ସମାଚ୍ଛନ୍ନ କଲେ ଓ ଅପର ଅନେକ ଶର ଦ୍ୱାରା ସେହି ମହାତ୍ମାଙ୍କର ଗଦାକୁ ଚୂର୍ଣ୍ଣିତ କଲେ ; ଏହା ଅଦ୍ଭୁତ-ପ୍ରାୟ ହେଲ ।

ସେହି ଗଦା ପତିତ ହେବାର ଅବଲୋକନ କରି ଅମ୍ବଷ୍ଠ ଅନ୍ୟ ଗୋଟିଏ ମହାଗଦା ଗ୍ରହଣପୂର୍ବକ ଅର୍ଜୁନ ଓ ବାସୁଦେବ ଦୁଇଜଣଙ୍କୁ ପୁନଃ ପୁନଃ ତାଡ଼ିତ କଲେ । ସେହି ସମୟରେ ଅର୍ଜୁନ ଦୁଇଗୋଟି କ୍ଷୁରପ୍ର-ଦ୍ୱାରା ତାହାଙ୍କର ଗଦାସମନ୍ୱିତ ଇନ୍ଦ୍ରଧ୍ୱଜାକାର ହସ୍ତଦ୍ୱୟକୁ ଓ ଅପର ଗୋଟିଏ ବାଣରେ ତାହାଙ୍କର ମସ୍ତକକୁ ଛେଦନ କଲେ ।

ହେ ମହୀପାଳ ! ସେହି ଅମ୍ବଷ୍ଠ ନିହତ ହୋଇ ଯନ୍ତ୍ରନିର୍ମୁକ୍ତବନ୍ଧନ ଇନ୍ଦ୍ରଧ୍ୱଜତୁଲ୍ୟ ପୃଥିବୀକୁ ଅନୁନାଦିତ କରି ପତିତ ହେଲେ । ତେତେବେଳେ ପାର୍ଥ ଶତ ଶତ ହସ୍ତୀ ଓ ଅଶ୍ୱମାନଙ୍କ ଦ୍ୱାରା ସମାବୃତ ହୋଇ ରଥସୈନ୍ୟ ଆଲୋଡ଼ିତ କଲେ, ତାହାଙ୍କୁ ଆମ୍ଭେ ମେଘାବୃତସୂର୍ଯ୍ୟସଦୃଶ ଦୃଷ୍ଟିଗୋଚର କଲୁଁ । ୬୦ ।

---

# ୯୪ ଅଧ୍ୟାୟ

ସଞ୍ଜୟ କହିଲେ—ହେ ଭରତ ! କୁନ୍ତୀପୁତ୍ର ସିନ୍ଧୁରାଜଙ୍କୁ ନିହତ କରିବା ମାନସରେ ଦୁସ୍ତର ଦ୍ରୋଣସୈନ୍ୟ ଓ ଭୋଜସୈନ୍ୟକୁ ଭେଦ କରି ପ୍ରବିଷ୍ଟ ହୁଅନ୍ତେ ଓ କାମ୍ବୋଜରାଜପୁତ୍ର ସୁଦକ୍ଷିଣ ଓ ବିକ୍ରମଶାଳୀ ଶ୍ରୁତାୟୁଧ ତାହାଙ୍କ କର୍ତ୍ତୃକ ନିହତ ଓ ସେନ୍ୟସମସ୍ତ ବିଧ୍ୱସ୍ତ ଓ ପଳାୟନପର ହେବାରୁ ଆପଣଙ୍କ ପୁତ୍ର ଦୁର୍ଯ୍ୟୋଧନ ତ୍ୱରାସହକାରେ ଏକ ରଥରେ ଆରୋହଣ ପୂର୍ବକ ଦ୍ରୋଣଙ୍କ ସମୀପକୁ ଗମନ କରି କହିଲେ—'ହେ ବ୍ରହ୍ମନ୍ !' ସେହି ପୁରୁଷବ୍ୟାଘ୍ର ଅର୍ଜ୍ଜୁନ ଏହି ମହାସୈନ୍ୟକୁ ପ୍ରମଥିତ କରି ଗମନ କରିଅଛନ୍ତି । ଏହି ଦାରୁଣ ଜନକ୍ଷୟସମୟରେ ଅର୍ଜ୍ଜୁନର ବିଘାତ ନିମିତ୍ତ ଏତଦ୍ରୂପରେ ଯାହା କର୍ତ୍ତବ୍ୟ ତାହା ଆପଣ ବୁଦ୍ଧିଦ୍ୱାରା ବିଚାର କରନ୍ତୁ । ୫ ।

ସେହି ପୁରୁଷବ୍ୟାଘ୍ର ଯେପରି ଜୟଦ୍ରଥଙ୍କୁ ବଧ କରି ନ ପାରେ, ଆପଣ ତହିଁର ଉପାୟ ବିଧାନ କରନ୍ତୁ । ଆପଣଙ୍କର ମଙ୍ଗଳ ହେଉ, ଆପଣ ଆମ୍ଭମାନଙ୍କର ପରମଗତି ଅଟନ୍ତି । ୬ । ଯେପରି ବର୍ଦ୍ଧିଷ୍ଣୁ ବହ୍ନି ତୃଣ-କାଷ୍ଠାଦିକୁ ଦଗ୍ଧ କରେ, ସେହିପରି ଧନଞ୍ଜୟରୂପ ଅଗ୍ନି କ୍ରୋଧରୂପ ପବନଦ୍ୱାରା ସମୀରିତ ହୋଇ ଆମ୍ଭର ସେନା ଦଗ୍ଧ କରୁଅଛି । ୭ । ହେ ପରନ୍ତପ ! କୁନ୍ତୀପୁତ୍ର ସମସ୍ତ ସୈନ୍ୟଙ୍କୁ ଭେଦ କରି ପ୍ରବେଶ କଲେ ଜୟଦ୍ରଥଙ୍କ ରକ୍ଷକମାନେ ସଂଶୟାପନ୍ନ ହେବେ । ୮ ।

ହେ ବ୍ରହ୍ମଜ୍ଞସତ୍ତମ ! ନରେନ୍ଦ୍ରମାନଙ୍କର ଏହା ନିଶ୍ଚିତ ବୋଧ ଥିଲା ଯେ, ଧନଞ୍ଜୟ ଜୀବିତ ଥାଉଁ ଥାଉଁ ଦ୍ରୋଣଙ୍କୁ କଦାପି ଅତିକ୍ରମ

କରିପାରିବେ ନାହିଁ । ୯ । ଆପଣଙ୍କ ସାକ୍ଷାତରେ ପାର୍ଥ ଅତିକ୍ରାନ୍ତ ହୋଇ ଯେତେବେଳେ ସୈନ୍ୟ ମଧ୍ୟରେ ପ୍ରବେଶ କରିଅଛି, ତେତେବେଳେ ଆମ୍ଭେମାନେ ଲକ୍ଷ୍ୟ କରୁଅଛୁଁ ଯେ, ଆମ୍ଭର ସମୁଦାୟ ସୈନ୍ୟ ଆତୁର ହୋଇଅଛନ୍ତି । ଆମ୍ଭର ଏହି ସମସ୍ତ ବଳ ନ ଥିଲାପରି ବୋଧ ହେଉଛି । ୧୦ । ହେ ମହାଭାଗ ! ଆପଣ ପାଣ୍ଡବମାନଙ୍କ ହିତୈଷୀ ବୋଲି ଜାଣୁଁ ; ତଥାପି ଉପସ୍ଥିତ ମହତ୍ କାର୍ଯ୍ୟ ଚିନ୍ତା କରି ଆମ୍ଭେ ମୋହିତ ହେଉଅଛୁଁ । ୧୧ । ହେ ବ୍ରହ୍ମନ୍ ! ଆମ୍ଭେ ଆପଣଙ୍କୁ ଯଥାଶକ୍ତି ଉତ୍ତମରୂପେ ବୃତ୍ତି ପ୍ରଦାନ କରିଥାଉଁ ଏବଂ ଆପଣଙ୍କ ପ୍ରତି ଯଥାଶକ୍ତି ପ୍ରୀତି କରିଥାଉଁ । କିନ୍ତୁ ଆପଣ ତାହା ବିବେଚନା କରନ୍ତି ନାହିଁ । ୧୨ ।

ହେ ଅପରିମିତବିକ୍ରମ ! ଆମ୍ଭେମାନେ ଆପଣଙ୍କର ସର୍ବଦା ଭକ୍ତ ଥିଲେ ହେଁ ଆପଣ ଆମ୍ଭମାନଙ୍କ ପ୍ରତି ପ୍ରୀତି କରନ୍ତି ନାହିଁ । ପରନ୍ତୁ ଆମ୍ଭମାନଙ୍କର ଅପକାରରେ ସତତ ରତ ପାଣ୍ଡବମାନଙ୍କ ପ୍ରତି ଆପଣ ପ୍ରୀତି କରିଥାନ୍ତି । ୧୩ । ଆପଣ ଆମ୍ଭମାନଙ୍କଠାରୁ ଉପଜୀବିକା ଲାଭ କରନ୍ତି । ଅଥଚ ଆପଣ ଆମ୍ଭମାନଙ୍କର ଅପ୍ରିୟକାର୍ଯ୍ୟରେ ରତ ଅଛନ୍ତି । ସୁତରାଂ ଆପଣ ଯେ ମଧୁଲିପ୍ତ କ୍ଷୁରସଦୃଶ, ତାହା ଆମ୍ଭେ ଜାଣି ନ ଥିଲୁଁ । ଆପଣ ପାଣ୍ଡବମାନଙ୍କର ଅନିଷ୍ଟ କରିବେ ବୋଲି ଯଦି ଆମ୍ଭକୁ ଆଶ୍ୱାସ ପ୍ରଦାନ କରି ନ ଥାନ୍ତେ, ତାହାହେଲେ ସିନ୍ଧୁପତିଙ୍କୁ ଆପଣା ଗୃହଗମନରୁ ବାରଣ କରି ନ ଥାନ୍ତି । ୧୫ । ଆପଣ ସିନ୍ଧୁପତିଙ୍କୁ ରକ୍ଷା କରିବେ, ଏହି ଆଶୟରେ ମୋହବଶରୁ ଓ ଆମ୍ଭର ବୁଦ୍ଧିହୀନତାପ୍ରଯୁକ୍ତ ସିନ୍ଧୁରାଜଙ୍କୁ ଆଶ୍ୱାସପ୍ରଦାନପୂର୍ବକ ମୃତ୍ୟୁମୁଖରେ ପ୍ରଦାନ କରିଅଛୁ । ୧୬ ।

ମନୁଷ୍ୟ କୃତାନ୍ତର କରାଳ ଦନ୍ତମଧ୍ୟରେ ପ୍ରବିଷ୍ଟ ହୋଇ ମଧ୍ୟ ମୁକ୍ତ ହୋଇପାରେ ; କିନ୍ତୁ ଜୟଦ୍ରଥ ସମରରେ ଅର୍ଜ୍ଜୁନର ବଶତାପନ୍ନ ହେଲେ କଦାଚ ମୁକ୍ତ ହୋଇ ପାରିବେ ନାହିଁ । ୧୭ । ଅତଏବ ହେ ଆଚାର୍ଯ୍ୟ ! ବର୍ତ୍ତମାନ ସିନ୍ଧୁପତି ଯେପରି ପରିତ୍ରାଣ ପାଇ ପାରନ୍ତି, ଆପଣ ତହିଁର ଉପାୟ କରନ୍ତୁ । ୧୮ ।

ଦ୍ରୋଣ କହିଲେ—ହେ ନରପାଳ ! ଆମ୍ଭେ ଆପଣଙ୍କ ବାକ୍ୟରେ ଦୋଷାରୋପ କରୁନାହୁଁ, ଆପଣ ଆମ୍ଭର ଅଶ୍ୱତ୍ଥାମାର ସମାନ ଅଟନ୍ତି ।

ଆମ୍ଭେ ଆପଣଙ୍କୁ ଏହି ଯଥାର୍ଥ କଥା କହୁଅଛୁଁ, ଏହା ଶ୍ରବଣ କରନ୍ତୁ ।୧୯। କୃଷ୍ଣ ସାରଥିପ୍ରଧାନ ଅଟନ୍ତି ଏବଂ ତାହାଙ୍କର ଅଶ୍ୱମାନେ ଅତ୍ୟନ୍ତ ଦ୍ରୁତଗାମୀ । ସୁତରାଂ ଅର୍ଜ୍ଜୁନ ଅଳ୍ପମାତ୍ର ପଥ ପାଇଲେ, ଶୀଘ୍ର ଗମନ କରିବାକୁ ସମର୍ଥ ହୁଅନ୍ତି । ଆପଣ କ'ଣ ଦେଖୁନାହାନ୍ତି ଯେ, ଅର୍ଜ୍ଜୁନଙ୍କ ଗମନକାଳରେ ତାହାଙ୍କ ନିକ୍ଷିପ୍ତ ଶରସମୂହ ତାହାଙ୍କର ଦ୍ରୁତଗାମୀ ରଥର ପଶ୍ଚାତ୍ ଏକକ୍ରୋଶ ଅନ୍ତରରେ ପତିତ ହେଉଅଛି । ୨୧ ।

ହେ ମହାରାଜ ! ଆମ୍ଭେ ସଂପ୍ରତି ଅତିଶୟ ବୃଦ୍ଧ ହୋଇଅଛୁଁ, ଏଣୁ ଶୀଘ୍ର ଗମନ କରିବାକୁ ଅସମର୍ଥ । ପୁନଶ୍ଚ ପାଣ୍ଡବମାନଙ୍କର ସୈନ୍ୟ-ମାନେ ଆମ୍ଭମାନଙ୍କ ସେନାମୁଖରେ ଉପସ୍ଥିତ ହୋଇଅଛନ୍ତି, ଆମ୍ଭେ ଏ ସ୍ଥାନରେ ନ ରହିଲେ ଏହି ବ୍ୟୂହକୁ ସେମାନେ ଭଗ୍ନ କରି ପାରନ୍ତି । ୨୨ । ପୁଣି ଆମ୍ଭେ କ୍ଷତ୍ରିୟଗଣ ମଧ୍ୟରେ ପ୍ରତିଜ୍ଞା କରୁଅଛୁଁ ଯେ, ସମୁଦାୟ ଧନୁର୍ଦ୍ଧରଙ୍କ ସାକ୍ଷାତରେ ଯୁଧିଷ୍ଠିରଙ୍କୁ ଗ୍ରହଣ କରିବୁଁ । ଯୁଧିଷ୍ଠିର ମଧ୍ୟ ବର୍ତ୍ତମାନ ଧନଞ୍ଜୟବିହୀନ ହୋଇ ଆମ୍ଭ ସମ୍ମୁଖରେ ଅବସ୍ଥିତି କରୁଅଛନ୍ତି । ଅତଏବ ହେ ମହାଭୁଜ ! ଆମ୍ଭେ ବ୍ୟୂହମୁଖ ପରିତ୍ୟାଗ କରି ଯୁଦ୍ଧ କରିବା ନିମିତ୍ତ ଧନଞ୍ଜୟଙ୍କ ନିକଟକୁ ଗମନ କରି ପାରିବୁଁ ନାହିଁ । ୨୪ ।

ଆପଣ ଓ ଅର୍ଜ୍ଜୁନ ଏକ ବଂଶରୁ ଜାତ ଏବଂ ଆପଣ ଏହି ପୃଥିବୀର ଅଧିପତି ଓ ସହାୟବାନ୍, ଅର୍ଜ୍ଜୁନ ସହାୟହୀନ ଶତ୍ରୁ । ଅତଏବ ଆପଣ ଭୟ ପରିତ୍ୟାଗ କରି ଅର୍ଜ୍ଜୁନଙ୍କ ସହିତ ଯୁଦ୍ଧ କରନ୍ତୁ । ୨୫ । ଆପଣ ରାଜା, ଶୂର, ବୀର, କୃତୀ ଓ କାର୍ଯ୍ୟଦକ୍ଷ । ଆପଣ ନିଜେ ପାଣ୍ଡବ-ମାନଙ୍କ ସହିତ ଶତ୍ରୁତା ସୃଷ୍ଟିକରିଅଛନ୍ତି । ବର୍ତ୍ତମାନ ଧନଞ୍ଜୟ ଯେଉଁଠାକୁ ଗମନ କରି ଅଛନ୍ତି, ସେହି ସ୍ଥାନକୁ ସ୍ୱୟଂ ଗମନ କରି ତାହାଙ୍କ ସହିତ ସଂଗ୍ରାମରେ ପ୍ରବୃତ୍ତ ହୁଅନ୍ତୁ । ୨୬ ।

ଦୁର୍ଯ୍ୟୋଧନ କହିଲେ—ହେ ଆଚାର୍ଯ୍ୟ ! ଆପଣ ସର୍ବଶସ୍ତ୍ରଧାରୀଙ୍କ ମଧ୍ୟରେ ଅଗ୍ରଗଣ୍ୟ, ଧନଞ୍ଜୟ ଆପଣଙ୍କୁ ଯେତେବେଳେ ଅତିକ୍ରମ କରିଅଛି, ସେତେବେଳେ ଆମ୍ଭେ ଅବା ତାହାଙ୍କୁ କିପରି ନିବାରଣ କରି ପାରିବୁଁ ? ବଜ୍ରହସ୍ତ ଇନ୍ଦ୍ରଙ୍କୁ ମଧ୍ୟ ସମରରେ ପରାଜିତ କରିହେବ, ମାତ୍ର ପରପୁରଞ୍ଜୟ

ଅର୍ଜୁନଙ୍କୁ ପରାଜିତ କରି ହେବ ନାହିଁ । ୨୮ । ଯେଉଁ ଦୁର୍ଦ୍ଧର୍ଷ ଶସ୍ତ୍ରକୋବିଦ ପାଣ୍ଡୁନନ୍ଦନ ଜ୍ୱଳନ୍ତ ପାବକସଦୃଶ ହୋଇ ଅସ୍ତ୍ରପ୍ରତାପଦ୍ୱାରା ଭୋଜରାଜ, ହାର୍ଦ୍ଦିକ୍ୟ ଓ ଦେବସଦୃଶ ଆପଣଙ୍କୁ ଜୟ କରିଅଛି ଓ ଶ୍ରୁତାୟୁ ରାଜା ସୁଦକ୍ଷିଣ ଶ୍ରୁତାୟୁଧ, ଶ୍ରୁତାୟୁ, ଅଚ୍ୟୁତାୟୁ ଓ ଅୟୁତ ଅୟୁତ ମ୍ଲେଚ୍ଛଙ୍କର ସଂହାର କରିଅଛି, ତାହା ସହିତ ଆମ୍ଭେ କି ପ୍ରକାରେ ଯୁଦ୍ଧ କରିବୁଁ ।୩୧ । ଆମ୍ଭେ ଆପଣଙ୍କ ଅଧୀନ, ଆପଣ ଯଦି ଆମ୍ଭଙ୍କୁ ତାହାଙ୍କ ସହିତ ଯୁଦ୍ଧ କରିବାକୁ ସମର୍ଥ ବିବେଚନା କରନ୍ତି, ତାହାହେଲେ ଯେପରି ଅନୁଗତ ପ୍ରେଷ୍ୟଜନକୁ ରକ୍ଷା କରିବାକୁ ହୁଏ, ସେହିପରି ଆପଣ ଆମ୍ଭଙ୍କୁ ରକ୍ଷା କରନ୍ତୁ । ୩୨ ।

ଦ୍ରୋଣ କହିଲେ—ହେ କୌରବ୍ୟ ! ଧନଞ୍ଜୟ ଯୁଦ୍ଧରେ ଦୁରା-କ୍ରମଣୀୟ ବୋଲି ଯାହା ଆପଣ କହିଲେ, ତାହା ସତ୍ୟ ଅଟେ । କିନ୍ତୁ ଆପଣ ଯେ ଉପାୟରେ ଅର୍ଜୁନଙ୍କୁ ସମରରେ ସହନ କରି ପାରିବେ, ତାହା ଆମ୍ଭେ ବିଧାନ କରୁଅଛୁଁ । ୩୩ । ଅଦ୍ୟ ବାସୁଦେବଙ୍କ ସାକ୍ଷାତରେ ଅର୍ଜୁନ ଆପଣଙ୍କ ସହିତ ସମରରେ ଅସମର୍ଥ ହେବାର ଅବଲୋକନ କରି ଯୋଦ୍ଧାମାନେ ଆଶ୍ଚର୍ଯ୍ୟ ଜ୍ଞାନ କରନ୍ତୁ । ୩୪ ।

ହେ ମହାରାଜ ! ଏହି କାଞ୍ଚନମୟ କବଚ ଆମ୍ଭେ ଆପଣଙ୍କ ଅଙ୍ଗରେ ଏପରି ବନ୍ଧନ କରିଦେବୁଁ ଯେ, କୌଣସି ଅସ୍ତ୍ର-ପ୍ରହାର ଆପଣଙ୍କ ଦେହରେ ଲଗ୍ନ ହେବେ ନାହିଁ । ଯଦି ସୁର, ଅସୁର, ଯକ୍ଷ, ଉରଗ, ରାକ୍ଷସ ଓ ମନୁଷ୍ୟ ସହିତ ତ୍ରିଲୋକ ଏକତ୍ରିତ ହୋଇ ଆପଣଙ୍କ ସହିତ ଯୁଦ୍ଧ କରନ୍ତି, ତଥାପି ଆପଣଙ୍କର ଭୟ ହେବ ନାହିଁ । ୩୬ । କୃଷ୍ଣ, ଅର୍ଜୁନ ବା ଅପର କୌଣସି ଶରଧାରୀ, କେହି ସମରରେ ଆପଣଙ୍କ ଏହି କବଚରେ ଶରାର୍ପଣ କରିବାକୁ ସମର୍ଥ ହେବେ ନାହିଁ । ଅତଏବ ଆପଣ ଏହି କବଚକୁ ଧାରଣ କରି ଉଗ୍ରମନ୍ୟୁ ହୋଇ ସ୍ୱୟଂ ସେହି କ୍ରୁଦ୍ଧ ଅର୍ଜୁନଙ୍କ ସମୀପକୁ ଗମନ କରନ୍ତୁ; ସେ କଦାଚ ଆପଣଙ୍କ ବାହୁବଳ ସହନ କରି ପାରିବେ ନାହିଁ ।୩୭ ।

ସଞ୍ଜୟ ବୋଇଲେ—ବ୍ରହ୍ମଜ୍ଞତମ ଦ୍ରୋଣ ଏହା କହି ଆପଣଙ୍କ ପୁତ୍ରଙ୍କର ସେହି ମହାରଣରେ ବିଜୟନିମିତ୍ତ ବିଦ୍ୟାଦ୍ୱାରା ଲୋକଙ୍କର ବିସ୍ମୟ

ଜନ୍ମାଇବା ଆଶୟରେ ଭୟସନ୍ତ୍ରସ୍ତ ହୋଇ ଜଳସ୍ପର୍ଶପୂର୍ବକ ଯଥାବିଧି ମନ୍ତ୍ର ଜପ କରି ଅଦ୍ଭୁତତମ ଗୋଟିଏ ଭାସ୍ୱର ବର୍ମ ବନ୍ଧନ କରିଦେଲେ । ୪୦ । ଅନନ୍ତର ଦୁର୍ଯ୍ୟୋଧନଙ୍କୁ କହିଲେ, ହେ ଭାରତ ! ବ୍ରହ୍ମା ଆପଣଙ୍କର ସ୍ୱସ୍ତିବିଧାନ କରନ୍ତୁ । ଶ୍ରେଷ୍ଠ ସରୀସୃପମାନେ ଆପଣଙ୍କର ସ୍ୱସ୍ତିବିଧାନ କରନ୍ତୁ । ୪୧ । ଯଯାତି, ନହୁଷ, ଧୁନ୍ଧୁମାର, ଭଗୀରଥ ଓ ଅନ୍ୟାନ୍ୟ ରାଜର୍ଷିମାନେ ମାନେ ଆପଣଙ୍କର ସ୍ୱସ୍ତିବିଧାନ କରନ୍ତୁ । ୪୨ । ଏକପଦ, ବହୁପଦ ଓ ପଦହୀନ ଜୀବଗଣ ଏହି ମହାରଣରେ ଆପଣଙ୍କର ସର୍ବଦା ସ୍ୱସ୍ତିବିଧାନ କରନ୍ତୁ । ୪୩ ।

ହେ ବିଶୁଦ୍ଧାତ୍ମନ୍ ! ସ୍ୱାହା, ସ୍ୱଧା, ଶଚୀ, ଲକ୍ଷ୍ମୀ ଓ ଅରୁନ୍ଧତୀ— ଏମାନେ ଆପଣଙ୍କର ସ୍ୱସ୍ତିବିଧାନ କରନ୍ତୁ । ୪୪ । ଅସିତ, ଦେବଳ, ବିଶ୍ୱାମିତ୍ର, ଅଙ୍ଗିରା, ବଶିଷ୍ଠ ଓ କଶ୍ୟପ— ଏମାନେ ଆପଣଙ୍କର ସ୍ୱସ୍ତିବିଧାନ କରନ୍ତୁ । ୪୫ । ଧାତା, ବିଧାତା, ଲୋକପାଳ, ଦିକ୍, ଦିକ୍‌ପାଳ ଓ ଷଡ଼ାନନ କାର୍ତ୍ତିକେୟ—ଏମାନେ ଅଦ୍ୟ ଆପଣଙ୍କୁ ସ୍ୱସ୍ତିପ୍ରଦାନ କରନ୍ତୁ । ୪୬ । ଭଗବାନ୍ ଭାସ୍କର, ଦିଗ୍‌ଗଜଚତୁଷ୍ଟୟ, କ୍ଷିତି, ଗଗନ ଓ ଗ୍ରହସମୂହ ଆପଣଙ୍କର ସର୍ବତୋଭାବରେ ସ୍ୱସ୍ତିବିଧାନ କରନ୍ତୁ । ୪୭ । ଯେ ଧରଣୀର ଅଧୋଦେଶରେ ଅବସ୍ଥାନ କରି ଧରଣୀକୁ ସର୍ବଦା ଧାରଣ କରନ୍ତି, ସେହି ନାଗଶ୍ରେଷ୍ଠ ଅନନ୍ତ ଆପଣଙ୍କୁ ସ୍ୱସ୍ତିପ୍ରଦାନ କରନ୍ତୁ । ୪୮ ।

ହେ ଗାନ୍ଧାରୀନନ୍ଦନ ! ପୂର୍ବକାଳରେ ବୃତ୍ରନାମକ ଦୈତ୍ୟ ଯୁଦ୍ଧରେ ବିକ୍ରମପ୍ରକାଶପୂର୍ବକ ଇନ୍ଦ୍ର ସହିତ ସହସ୍ର ସହସ୍ର ଦେବଗଣଙ୍କୁ ପରାଜିତ କରିବାରୁ ସେମାନେ କ୍ଷତବିକ୍ଷତଦେହ ଏବଂ ତେଜ ଓ ବଳହୀନ ହୋଇ ମହାସୁର ବୃତ୍ରଭୟରେ ବ୍ରହ୍ମାଙ୍କର ଶରଣାପନ୍ନ ହେଲେ । ୫୦ । ସେମାନେ ବ୍ରହ୍ମାଙ୍କୁ କହିଲେ, ହେ ଦେବସତ୍ତମ ! ବୃତ୍ରାସୁର ଆମ୍ଭସମସ୍ତଙ୍କୁ ପୀଡ଼ିତ କରିଅଛି, ଆପଣ ଆମ୍ଭମାନଙ୍କର ଆଶ୍ରୟ ହୁଅନ୍ତୁ ; ଆମ୍ଭଙ୍କୁ ମହାଭୟରୁ ରକ୍ଷା କରନ୍ତୁ । ୫୧ ।

ସେହି ସମୟରେ ସମୁପସ୍ଥିତ ବିଷ୍ଣୁ ଓ ଇନ୍ଦ୍ରାଦି ସୁରସତ୍ତମମାନଙ୍କୁ ବିଷଣ୍ଣ ଅବଲୋକନ କରି ବ୍ରହ୍ମା ଏହି ସତ୍ୟ ବାକ୍ୟ କହିଲେ । ୫୨ ।

ମହେନ୍ଦ୍ର ସହିତ ଦେବଗଣଙ୍କୁ ଓ ଦ୍ୱିଜାତିମାନଙ୍କୁ ଆମ୍ଭର ନିରନ୍ତର ରକ୍ଷା କରିବା କର୍ତ୍ତବ୍ୟ । ତ୍ୱଷ୍ଟା ଋଷିଙ୍କର ସୁଦୁର୍ଦ୍ଧର ତେଜରୁ ବୃତ୍ରାସୁର ଜନ୍ମଗ୍ରହଣ କରିଅଛି । ୫୩ । ହେ ଦେବଗଣ ! ତ୍ୱଷ୍ଟା ପୂର୍ବକାଳରେ ଶତଅୟୁତ ବର୍ଷ ତପସ୍ୟା କରି ମହେଶ୍ୱରଙ୍କ ନିକଟରୁ ବରପ୍ରାପ୍ତ ହୋଇ ବୃତ୍ରାସୁରକୁ ସୃଷ୍ଟି କରିଅଛନ୍ତି ।୫୪। ସେହି ବଳବାନ୍ ବୃତ୍ରାସୁର ମହାଦେବଙ୍କ ପ୍ରସାଦରୁ ଦେବଶତ୍ରୁ ହୋଇ ତୁମ୍ଭମାନଙ୍କୁ ନିହତ କରୁଅଛି । ତୁମ୍ଭେମାନେ ଶଙ୍କରଙ୍କ ନିକଟକୁ ଗମନ ନ କଲେ ସେହି ଭଗବାନଙ୍କ ଦର୍ଶନ ପାଇବ ନାହିଁ ।୫୫। ତାହାଙ୍କ ଦର୍ଶନ ପାଇ ସେହି ବୃତ୍ରାସୁରକୁ ଜୟ କରିପାରିବ । ଅତଏବ ବିଳମ୍ବ ନ କରି ମନ୍ଦରପର୍ବତକୁ ଗମନ କର ।

ହେ ମହାରାଜ ! ଦେବଗଣ ବ୍ରହ୍ମାଙ୍କ ସହିତ ତପସ୍ୟାର ଉତ୍ପତ୍ତିସ୍ଥାନ ଦକ୍ଷଯଜ୍ଞବିନାଶକ, ପିନାକପାଣି, ସର୍ବଭୂତେଶ, ଭଗଦେବଙ୍କର ନେତ୍ରନିପାତକ, ମହେଶ୍ୱର ଯେଉଁ ସ୍ଥଳରେ ଅବସ୍ଥାନ କରୁଥିଲେ, ସେହି ମନ୍ଦର ପର୍ବତକୁ ଗମନ କରି କୋଟିସୂର୍ଯ୍ୟସମପ୍ରଭ ତେଜୋରାଶି ମହେଶ୍ୱରଙ୍କୁ ଦର୍ଶନ କଲେ ।

ମହେଶ୍ୱର କହିଲେ—ହେ ଦେବଗଣ ! ତୁମ୍ଭମାନଙ୍କର ସ୍ୱାଗତ । ଆମ୍ଭେ ତୁମ୍ଭମାନଙ୍କର କି କାର୍ଯ୍ୟ କରିବୁଁ, ତାହା ବୋଲ ? ୫୮ । ଆମ୍ଭର ଦର୍ଶନଦ୍ୱାରା ତୁମ୍ଭର ଅଭୀଷ୍ଟଲାଭ ହେଉ । ମହେଶ୍ୱର ସେମାନଙ୍କୁ ଏହିପରି କହିବାରୁ ସେମାନେ ମହେଶ୍ୱରଙ୍କୁ କହିଲେ । ୫୯ । ହେ ଭଗବନ୍ ! ବୃତ୍ରାସୁର ଆମ୍ଭମାନଙ୍କର ତେଜ ହରଣ କରିଅଛି । ଆପଣ ଆମ୍ଭମାନଙ୍କର ଆଶ୍ରୟ ହୁଅନ୍ତୁ । ହେ ମହେଶ୍ୱର ! ଆମ୍ଭମାନଙ୍କର ଶରୀର ଅବଲୋକନ କରନ୍ତୁ, ପ୍ରହାରରେ ଜର୍ଜରୀକୃତ ହୋଇଅଛୁ । ଆମ୍ଭେମାନେ ଆପଣଙ୍କର ଶରଣାପନ୍ନ ହେଲୁଁ । ଆପଣ ଆମ୍ଭମାନଙ୍କର ଗତି ହୁଅନ୍ତୁ । ୬୦ ।

ଶର୍ବ କହିଲେ, ହେ ଦେବଗଣ ! ତ୍ୱଷ୍ଟାଙ୍କ ତେଜରେ ଉତ୍ପନ୍ନ ଅତିଶୟ ମହାବଳବାନ୍ ଭୟାନକ କୃତ୍ୟାସ୍ୱରୂପ ଏହି ବୃତ୍ରାସୁର କୃତାତ୍ମ ବ୍ୟକ୍ତିମାନଙ୍କର ମଧ୍ୟ ଦୁର୍ନିବାର୍ଯ୍ୟ, ଏହା ଆମ୍ଭଙ୍କୁ ବିଦିତ ଅଛି । ୬୧ । ଯାହା ହେଉ, ସମୁଦାୟ ଦେବଗଣଙ୍କ ପ୍ରତି ସାହାଯ୍ୟ କରିବା ଅବଶ୍ୟ

ଆମ୍ଭର କର୍ତ୍ତବ୍ୟ । ହେ ଇନ୍ଦ୍ର ! ଆମ୍ଭର ଏହି ଶରୀରଜାତ ଭାସ୍ୱର କବଚ ଗ୍ରହଣ କର । ୬୨ । ଅସୁରଶ୍ରେଷ୍ଠ ବୃତ୍ରାସୁର ବଧନିମିତ୍ତ ମନେ ମନେ ଏହି ମନ୍ତ୍ର ପାଠ କରି ଏହାକୁ ଶରୀରରେ ବନ୍ଧନ କର । ୬୩ ।

ଦ୍ରୋଣ କହିଲେ—ହେ ନୃପସତ୍ତମ ! ବରଦଦେବ ମହାଦେବ ଏହା କହି ସେହି ବର୍ମ୍ମ ଓ ତାହାର ମନ୍ତ୍ର ଇନ୍ଦ୍ରଙ୍କୁ ପ୍ରଦାନ କଲେ । ଇନ୍ଦ୍ର ସେହି ବର୍ମ୍ମ ପରିଧାନପୂର୍ବକ ବୃତ୍ରସୈନ୍ୟ ନିକଟକୁ ଯୁଦ୍ଧାର୍ଥ ଗମନ କଲେ । ୬୪ । ବୃତ୍ରାସୁର ମଧ୍ୟ ସସୈନ୍ୟରେ ତାହାଙ୍କ ସହିତ ମହାଯୁଦ୍ଧରେ ପ୍ରବୃତ୍ତ ହେଲେ । କିନ୍ତୁ ନାନାବିଧ ଶସ୍ତ୍ରସମୂହ ନିପାତିତ କରି ମଧ୍ୟ ବର୍ମବନ୍ଧର ସନ୍ଧି ଭେଦ କରିପାରିଲେ ନାହିଁ । ୬୫ । ତଦନନ୍ତର ସ୍ୱୟଂ ସୁରପତି ସମରରେ ବୃତ୍ରାସୁରକୁ ବଧ କଲେ । ଅନନ୍ତର ମନ୍ତ୍ରସହିତ ବର୍ମ୍ମକୁ ଇନ୍ଦ୍ର ଅଙ୍ଗିରଙ୍କୁ ପ୍ରଦାନ କଲେ । ୬୬ । ଅଙ୍ଗିରା ଆପଣାର ପୁତ୍ର ବୃହସ୍ପତିଙ୍କୁ ପ୍ରଦାନ କଲେ । ବୃହସ୍ପତି ଧୀମାନ୍ ଅଗ୍ନିବେଶ୍ୟଙ୍କୁ ତାହା ପ୍ରଦାନ କଲେ । ୬୭ । ଅଗ୍ନିବେଶ୍ୟ ଏହା ଆମ୍ଭଙ୍କୁ ପ୍ରଦାନ କଲେ । ଅଦ୍ୟ ଆମ୍ଭେ ତୁମ୍ଭର ଦେହରକ୍ଷାନିମିତ୍ତ ମନ୍ତ୍ରପୂର୍ବକ ସେହି ବର୍ମ୍ମକୁ ତୁମ୍ଭଙ୍କୁ ପରିଧାପନ କରି ଦେଲୁଁ । ୬୮ ।

ସଞ୍ଜୟ କହିଲେ—ଆଚାର୍ଯ୍ୟପୁଙ୍ଗବ ଦ୍ରୋଣ ଆପଣଙ୍କର ମହାତେଜସ୍ୱୀ ପୁତ୍ରଙ୍କୁ ଏହିପରି କହି ପୁନର୍ବାର ଧୀରେ ଧୀରେ ଏହି କଥା ବୋଲିଲେ । ୬୯ । ହେ ପୃଥ୍ୱୀନାଥ ! ପୂର୍ବକାଳରେ ବ୍ରହ୍ମା ଯେପରି ସଂଗ୍ରାମ ସମୟରେ ବିଷ୍ଣୁଙ୍କ ଶରୀରରେ ଓ ତାରକାମୟ ସଂଗ୍ରାମରେ ଇନ୍ଦ୍ରଙ୍କ ଶରୀରରେ କବଚ ବନ୍ଧନ କରିଥିଲେ, ସେହିପରି ଆମ୍ଭେ ବ୍ରହ୍ମୋପଦେଶଦ୍ୱାରା ଏହି କବଚକୁ ଆପଣଙ୍କ ଶରୀରରେ ବନ୍ଧନ କଲୁଁ । ୭୧ । ଦ୍ୱିଜ ଦ୍ରୋଣ ଏହିପରି ଦୁର୍ଯ୍ୟୋଧନଙ୍କ ଶରୀରରେ ଯଥାବିଧି ମନ୍ତ୍ରପାଠପୂର୍ବକ କବଚ ବନ୍ଧନ କରି ମହାଯୁଦ୍ଧ ନିମିତ୍ତ ତାହାଙ୍କୁ ପ୍ରେରଣ କଲେ । ୭୨ ।

ମହାବାହୁ ଦୁର୍ଯ୍ୟୋଧନ ମହାତ୍ମା ଆଚାର୍ଯ୍ୟଙ୍କ କର୍ତ୍ତୃକ ବଦ୍ଧକବଚ ହୋଇ ପ୍ରହାରଦକ୍ଷ ତ୍ରିଗର୍ତ୍ତଦେଶୀୟ ଏକସହସ୍ର ରଥୀ, ବୀର୍ଯ୍ୟଶାଳୀ ଏକସହସ୍ର ମତ୍ତହସ୍ତୀ, ଏକ ନିୟୁତ ଅଶ୍ୱାରୋହୀ ଓ ଅନ୍ୟାନ୍ୟ ମହାରଥସମୂହ

ସହିତ ବିବିଧବାଦ୍ୟବାଦନପୂର୍ବକ ବିରୋଚନପୁତ୍ର ବଳୀସଦୃଶ ଅର୍ଜ୍ଜୁନଙ୍କ ରଥ ନିକଟକୁ ଗମନ କଲେ । ୭୫ । ଅଗାଧ ସମୁଦ୍ରତୁଲ୍ୟ କୁରୁରାଜାଙ୍କୁ ଅବସ୍ଥିତ ହେବାର ଦେଖି ଆପଣଙ୍କ ସୈନ୍ୟମାନେ ମହାନାଦ କଲେ । ୭୬ ।

---

# ୯୫ ଅଧ୍ୟାୟ

ସଞ୍ଜୟ କହିଲେ—ହେ ମହାରାଜ ! ଅର୍ଜ୍ଜୁନ ଓ କୃଷ୍ଣ ଏ ଦୁହେଁ ଶତ୍ରୁବ୍ୟୂହମଧ୍ୟରେ ପ୍ରବେଶ କଲେ ଓ ଦୁର୍ଯ୍ୟୋଧନ ସେମାନଙ୍କ ପଶ୍ଚାତ୍ ଧାବମାନ ହେଲେ । ଏଣେ ସୋମକମାନଙ୍କ ସହିତ ପାଣ୍ଡବଗଣ ଏକତ୍ରିତ ହୋଇ ମହାଗର୍ଜ୍ଜନଶବ୍ଦସହକାରେ ଦ୍ରୋଣାଚାର୍ଯ୍ୟଙ୍କୁ ଆକ୍ରମଣ କଲେ । ତହୁଁ ସେହି ଶକଟବ୍ୟୂହର ଅଗ୍ରଭାଗରେ କୁରୁପାଣ୍ଡବମାନଙ୍କର ଲୋମହର୍ଷଣ ତୁମୁଳ ଓ ତୀବ୍ର ଯୁଦ୍ଧ ହେଲା । ୩ ।

ହେ ମହାରାଜ ! ସେହି ମଧ୍ୟାହ୍ନକାଳରେ ଯେ ପ୍ରକାର ଭୟଙ୍କର ଯୁଦ୍ଧ ହେଲା, ପୂର୍ବେ ଆମ୍ଭେମାନେ ତାଦୃଶ ଯୁଦ୍ଧ କେବେହେଁ ଦର୍ଶନ ବା ଶ୍ରବଣ କରିନାହୁଁ । ୪ । ପ୍ରହାରପଟୁ ଧୃଷ୍ଟଦ୍ୟୁମ୍ନପ୍ରଭୃତି ପାଣ୍ଡବମାନେ ସୈନ୍ୟବ୍ୟୂହ ସଜ୍ଜିତ କରି ଦ୍ରୋଣଙ୍କ ସୈନ୍ୟଉପରେ ଶରବର୍ଷଣ କଲେ । ୫ । ଆମ୍ଭେମାନେ ମଧ୍ୟ ସର୍ବଶସ୍ତ୍ରଧାରୀମାନଙ୍କ ମଧ୍ୟରେ ଶ୍ରେଷ୍ଠ ଦ୍ରୋଣଙ୍କୁ ଅଗ୍ରରେ ରଖି ଧୃଷ୍ଟଦ୍ୟୁମ୍ନପ୍ରମୁଖ ପାଣ୍ଡବମାନଙ୍କ ଉପରେ ଶରବର୍ଷଣ କଲୁଁ । ୬ ।

ହିମଋତୁର ଅବସାନରେ ଦୁଇଖଣ୍ଡ ମହାମେଘ ପବନୋଦ୍ଧୂତ ହୋଇ ଯେ ପ୍ରକାର ପ୍ରକାଶ ପାଏ, ରଥଭୂଷିତ ମନୋହର ଉଭୟ ସେନାର ଅଗ୍ରଭାଗ ସେହିପ୍ରକାର ପ୍ରକାଶ ପାଇଲା । ୭ । ବର୍ଷାକାଳରେ ଯେ ପ୍ରକାର ତରଙ୍ଗମାଳାସମାକୁଳ ଗଙ୍ଗା ଓ ଯମୁନା ପରସ୍ପର ମିଳିତ ହୋଇ ମହାବେଗ ପ୍ରକାଶ କରନ୍ତି, ସେହିପ୍ରକାର ଉଭୟ ସେନା ପରସ୍ପର ମିଳିତ ହୋଇ ମହାବେଗ ପ୍ରକାଶ କଲେ । ୮ । ନାନାବିଧ ଶସ୍ତ୍ରସମୂହରୂପ ପୂର୍ବବାୟୁବିଶିଷ୍ଟ ଗଦାରୂପସୌଦାମିନୀଦ୍ୱାରା ଅତିଶୟ ଭୟାନକ ଓ ଦ୍ରୋଣରୂପ ପବନରେ

ସମୁଦ୍ଧୃତ ହସ୍ତୀ, ଅଶ୍ୱ ଓ ରଥସମାବୃତ ମହାଭୀଷଣାକାର ମହାସଂଗ୍ରାମରୂପ ମେଘ ଅଗ୍ନିରୂପ ଉଦ୍ଧତ ପାଣ୍ଡବସେନାଙ୍କ ଉପରେ ସହସ୍ର ସହସ୍ର ଶରଧାରା-ରୂପ ଜଳଧାରା ବର୍ଷଣ କଲେ । ୧୦ ।

ଯେପରି ଗ୍ରୀଷ୍ମକାଳର ଶେଷରେ ଘୋରତର ପ୍ରବଳ ବାତ୍ୟା ସମୁଦ୍ରକୁ କ୍ଷୋଭିତ କରେ, ସେହିପରି ଦ୍ୱିଜସତ୍ତମ ଦ୍ରୋଣ ପାଣ୍ଡବ ସୈନ୍ୟ-ମାନଙ୍କୁ କ୍ଷୋଭିତ କଲେ । ୧୧ । ଯେପରି ପ୍ରବଳ ଜଳରାଶିସ୍ରୋତ ବୃହତ୍ ସେତୁକୁ ଭେଦ କରେ, ସେହିପରି ପାଣ୍ଡବମାନେ ପରମ ଯତ୍ନ କରି ଦ୍ରୋଣଙ୍କ ବ୍ୟୂହ ଭେଦପୂର୍ବକ ଦ୍ରୋଣଙ୍କୁ ଆକ୍ରମଣ କଲେ । ୧୨ । ଯେପରି ପର୍ବତ ଜଳରାଶିର ସ୍ରୋତକୁ ଅବରୋଧ କରେ, ସେହିପରି ଦ୍ରୋଣ କ୍ରୁଦ୍ଧ ପାଣ୍ଡବ, ପାଞ୍ଚାଳ ଓ କେକେୟମାନଙ୍କୁ ନିବାରଣ କଲେ । ୧୩ । ଅନ୍ୟାନ୍ୟ ମହାବଳପରାକ୍ରାନ୍ତ ଶୂର ରାଜାମାନେ ଦ୍ରୋଣଙ୍କ ଅନୁଗାମୀ ହୋଇ ଚତୁର୍ଦ୍ଦିଗରୁ ପରିବେଷ୍ଟନପୂର୍ବକ ପାଞ୍ଚାଳମାନଙ୍କୁ ନିବାରଣ କଲେ । ୧୪ ।

ଅନନ୍ତର ପାଣ୍ଡବମାନଙ୍କ ସହିତ ନରବ୍ୟାଘ୍ର ଧୃଷ୍ଟଦ୍ୟୁମ୍ନ ଶତ୍ରୁସୈନ୍ୟ ଭେଦ କରିବା ମାନସରେ ବାରମ୍ବାର ଦ୍ରୋଣଙ୍କୁ ଶରାଘାତ କଲେ । ୧୫ । ମହାବୀର ଦ୍ରୋଣାଚାର୍ଯ୍ୟ ଧୃଷ୍ଟଦ୍ୟୁମ୍ନଙ୍କ ଉପରେ ଯେପରି ଶରବୃଷ୍ଟି କଲେ, ଧୃଷ୍ଟଦ୍ୟୁମ୍ନ ମଧ୍ୟ ତାହାଙ୍କ ଉପରେ ସେହିପରି ଶରବର୍ଷଣ କଲେ । ୧୬ । ଖଡ୍ଗରୂପ ଅଗ୍ରବର୍ତ୍ତୀ ପବନରେ ସମନ୍ୱିତ, ଶକ୍ତି, ପ୍ରାସ ଓ ଋଷ୍ଟିସମ୍ପନ୍ନ ଜ୍ୟା-ସ୍ୱରୂପବିଦ୍ୟୁତ୍‌ସମ୍ପନ୍ନ, ଧନୁଷ୍ଟଂକାରରୂପ ଗର୍ଜ୍ଜନଶୀଳ, ଧୃଷ୍ଟଦ୍ୟୁମ୍ନରୂପ ମେଘ ସର୍ବଦିଗରେ ଶରଧାରରୂପ ଶିଳାବର୍ଷଣପୂର୍ବକ ରଥିପ୍ରଧାନମାନଙ୍କୁ ଓ ସାଦିଗଣଙ୍କୁ ନିହତ କରି ଶତ୍ରୁମାନଙ୍କୁ ପ୍ଲାବିତ କଲେ । ୧୮ । ଶର ସମୂହ ଦ୍ୱାରା ପାଣ୍ଡବମାନଙ୍କର ରଥମାନଙ୍କୁ ଯେଉଁଠାରେ ଦ୍ରୋଣ ବଦ୍ଧ କରନ୍ତି, ଧୃଷ୍ଟଦ୍ୟୁମ୍ନ ସେହିସ୍ଥାନରୁ ଦ୍ରୋଣଙ୍କୁ ଶରସମୂହଦ୍ୱାରା ନିବାରିତ କରନ୍ତି ।୧୯।

ହେ ଭାରତ ! ଦ୍ରୋଣ ତାଦୃଶ ଯତ୍ନ କଲେ ହେଁ ତାହାଙ୍କର ସୈନ୍ୟମାନେ ଧୃଷ୍ଟଦ୍ୟୁମ୍ନଙ୍କୁ ପ୍ରାପ୍ତ ହୋଇ ତିନିଭାଗରେ ବିଭକ୍ତ ହୋଇଗଲେ । ୨୧ । ପାଣ୍ଡବଗଣକର୍ତ୍ତୃକ ବଧ୍ୟମାନ ହୋଇ ଦ୍ରୋଣଙ୍କ କେତେକ ସୈନ୍ୟ ଜଳସନ୍ଧଙ୍କ ଶରଣାପନ୍ନ ହେଲେ ; ଆଉ କେତେକ ସୈନ୍ୟ ଦ୍ରୋଣଙ୍କ

ସମୀପକୁ ଗମନ କଲେ । ୨୧ । ରଥିପ୍ରବର ଦ୍ରୋଣ ତାହାଙ୍କର ସୈନ୍ୟମାନଙ୍କୁ ସମବେତ କରିବାମାତ୍ରକେ ମହାରଥ ଧୃଷ୍ଟଦ୍ୟୁମ୍ନ ସେମାନଙ୍କୁ ଶରାଘାତ ଦ୍ୱାରା ଛିନ୍ନଭିନ୍ନ କରୁଥିଲେ । ୨୨ । ଯେପରି ଅରଣ୍ୟରେ ପଶୁପାଳରହିତ ପଶୁମାନେ ଶ୍ୱାପଦକର୍ତ୍ତୃକ ନିହତ ହୁଅନ୍ତି, ସେହିପରି ଆପଣଙ୍କ ପକ୍ଷୀୟ ସୈନ୍ୟମାନେ ପାଣ୍ଡବ ଓ ସୃଞ୍ଜୟଗଣଙ୍କକର୍ତ୍ତୃକ ବିଧାଭୂତ ହୋଇ ନିହତ ହେଲେ । ୨୩ । ଲୋକେ ଏହା ମନେ କଲେ ଯେ, ଏହି ତୁମୁଳ ସଂଗ୍ରାମରେ ଯୋଦ୍ଧାମାନଙ୍କୁ କାଳ ଧୃଷ୍ଟଦ୍ୟୁମ୍ନଙ୍କ ଦ୍ୱାରା ମୋହିତ କରାଇ ଗ୍ରାସ କରୁଅଛି । ୨୪ । ଯେପରି କୁ-ନୃପର ରାଜ୍ୟ ତସ୍କର, ବ୍ୟାଧି ଓ ଦୁର୍ଭିକ୍ଷଦ୍ୱାରା ବିପନ୍ନ ହୁଏ, ସେହିପରି ଆପଣଙ୍କର ସୈନ୍ୟମାନେ ପାଣ୍ଡବଗଣଙ୍କକର୍ତ୍ତୃକ ବିପଦାପନ୍ନ ହେଲେ । ୨୫ ।

ସୈନ୍ୟମାନଙ୍କର ଅସ୍ତ୍ର-ଶସ୍ତ୍ର ଓ କବଚରେ ସୂର୍ଯ୍ୟରଶ୍ମି ପତିତ ହେବାରୁ ଓ ରଣସ୍ଥଳରୁ ଧୂଳିପଟଳ ସମୁତ୍‌ଥିତ ହେବାରୁ ଦୃଷ୍ଟିର ବ୍ୟାଘାତ ହେଲା । ୨୬ ।ପାଣ୍ଡବମାନେ ଦ୍ରୋଣଙ୍କ ସୈନ୍ୟମାନଙ୍କୁ ଆହତ କରି ବିଧା ବିଭକ୍ତ କରନ୍ତେ ଦ୍ରୋଣ ସଂକ୍ରୁଦ୍ଧ ହୋଇ ପାଞ୍ଚାଳମାନଙ୍କୁ ଛିନ୍ନଭିନ୍ନ କରି-ପକାଇଲେ । ୨୭ । ଶରସମୂହଦ୍ୱାରା ସୈନ୍ୟର ମର୍ଦ୍ଦନ ଓ ହନନ କରିବା ସମୟରେ ତାହାଙ୍କର ମୂର୍ତ୍ତି ଦୀପ୍ୟମାନ କାଳାଗ୍ନିସଦୃଶ ହେଲା । ୨୮ । ମହାରଥ ଦ୍ରୋଣ ଗୋଟିଏ ଗୋଟିଏ ବାଣରେ ରଥୀ, ହସ୍ତୀ, ସାଦୀ ଓ ପଦାତିମାନଙ୍କୁ ସଂହାର କଲେ । ୨୯ ।

ହେ ଭାରତ ! ପାଣ୍ଡବମାନଙ୍କ ସୈନ୍ୟମଧ୍ୟରେ ଏପରି କୌଣସି ବୀର ନ ଥିଲେ, ଯେ କି ଦ୍ରୋଣଙ୍କର ଧନୁର୍ନିକ୍ଷିପ୍ତ ବାଣସମୂହ ଧାରଣ କରିବାକୁ ସମର୍ଥ ହେବେ । ୩୦ । ସୂର୍ଯ୍ୟତାପରେ ଅତିଶୟ ତାପିତ ପାଣ୍ଡବ ସୈନ୍ୟମାନେ ଦ୍ରୋଣଙ୍କର ଶରତାପରେ ପୁନରପି ଅତ୍ୟନ୍ତ ତାପିତ ହୋଇ ଇତସ୍ତତଃ ଭ୍ରମଣ କଲେ । ୩୧ । ଆପଣଙ୍କ ସୈନ୍ୟମାନେ ମଧ୍ୟ ଧୃଷ୍ଟଦ୍ୟୁମ୍ନଙ୍କ ଶରତାପରେ ପୀଡ଼ିତ ହୋଇ ଅଗ୍ନିଦଗ୍ଧ ପ୍ରଦୀପ୍ତ ଶୁଷ୍କ ବନସଦୃଶ ହେଲେ । ୩୨ । ଦ୍ରୋଣ ଓ ଧୃଷ୍ଟଦ୍ୟୁମ୍ନ—ଏ ଉଭୟଙ୍କର ଶରଦ୍ୱାରା ଉଭୟ ସୈନ୍ୟ ବଧ୍ୟମାନ ହେଲେହେଁ ସର୍ବତୋମୁଖ ହୋଇ ପ୍ରାଣପଣରେ ଯଥାଶକ୍ତି

ସଂଗ୍ରାମ କଲେ । ୩୩ । ରଣ ପରିତ୍ୟାଗ କରି ଭୟରେ ପଳାୟନ କରିବ, ଏପରି କେହି ଉଭୟ ପକ୍ଷରେ ନ ଥିଲେ । ୩୪ ।

ବିବିଂଶତି, ଚିତ୍ରସେନ ଓ ମହାରଥ ବିକର୍ଣ୍ଣ, ଏହି ତିନି ସହୋଦର କୁନ୍ତୀପୁତ୍ର ଭୀମସେନଙ୍କୁ ଆକ୍ରମଣ କଲେ । ୩୫ । ସତ୍କୁଳଜାତ ମହାରଥ ବାହ୍ଲୀକରାଜ ସ୍ୱକୀୟ ସେନା ଓ ଅମାତ୍ୟମାନଙ୍କ ସହିତ ଦ୍ରୌପଦୀପୁତ୍ରମାନଙ୍କ ଉପରେ ଶରବର୍ଷଣ କଲେ । ୩୬ । ଅନ୍ୟୂନ ଦଶଶତ ଯୋଦ୍ଧାଙ୍କ ସହିତ ଗୋବାସନଦେଶୀୟ ଶୈବ୍ୟ କାଶୀରାଜ ଅଭିଭୂଙ୍କ ମହାବଳ ପରାକ୍ରାନ୍ତ ପୁତ୍ରଙ୍କୁ ଅବରୋଧ କଲେ । ମଦ୍ରଦେଶର ଅଧିପତି ଶଲ୍ୟ ଜ୍ୱଳନ୍ତ ଅଗ୍ନି ସଦୃଶ ଅଜାତଶତ୍ରୁ ଯୁଧିଷ୍ଠିରଙ୍କୁ ଆକ୍ରମଣ କଲେ । ୩୯ । ସୌର୍ଯ୍ୟସମ୍ପନ୍ନ ଦୁଃଶାସନ କ୍ରୋଧାବିଷ୍ଟ ଓ ଅସହିଷ୍ଣୁ ହୋଇ ଆପଣା ସୈନ୍ୟମାନଙ୍କର ସଂସ୍ଥାପନାପୂର୍ବକ ରଥିବର ସାତ୍ୟକିଙ୍କ ସହିତ ସମରରେ ସମବେତ ହେଲେ । ୪୦ । ବୃହଶତ ମହାଧନୁର୍ଦ୍ଧର ସୈନ୍ୟ ସଙ୍ଗରେ ଘେନି କବଚଧୃତ ଓ ସନ୍ନଦ୍ଧ ହୋଇ ଦୁଃଶାସନ ଚେକିତାନଙ୍କୁ ନିବାରଣ କଲେ । ୪୧ । ସ୍ୱୀୟ ସୈନ୍ୟ-ସହିତ ଶକୁନି ଗୃପ, ଶକ୍ତି ଓ ଅସିଧାରୀ ଗାନ୍ଧାରଦେଶୀୟ ସପ୍ତଶତ ଯୋଦ୍ଧା ଘେନି ମାଦ୍ରୀପୁତ୍ରଦ୍ୱୟଙ୍କୁ ନିବାରଣ କଲେ । ୪୨ ।

ଅବନ୍ତିରାଜ ମହାଧନୁର୍ଦ୍ଧର ବିନ୍ଦ ଓ ଅନୁବିନ୍ଦ ମିତ୍ରଙ୍କ ବିଜୟ କାମନାରେ ପ୍ରାଣତ୍ୟାଗରେ କୃତନିଶ୍ଚୟ ଓ ଉଦ୍ୟତାୟୁଧ ହୋଇ ମତ୍ସ୍ୟ-ଦେଶାଧିପତି ବିରାଟଙ୍କୁ ଆକ୍ରମଣ କଲେ । ୪୩ । ବାହ୍ଲୀକଦେଶୀୟ ରାଜା ମହାବଳ ପରାକ୍ରାନ୍ତ ଯଜ୍ଞସେନପୁତ୍ର ଅପରାଜିତ ଶିଖଣ୍ଡୀଙ୍କୁ ଯତ୍ନ ସହକାରେ ନିବାରଣ କଲେ । ୪୪ । ଅବନ୍ତୀଦେଶର ରାଜା ସୌବୀର ସୈନ୍ୟମାନଙ୍କ ସହିତ କ୍ରୂରକର୍ମା ପ୍ରଭଦ୍ରମାନଙ୍କ ସହ କ୍ରୋଧମୂର୍ତ୍ତି ଧୃଷ୍ଟଦ୍ୟୁମ୍ନଙ୍କୁ ନିବାରଣ କଲେ । ୪୫ । କ୍ରୂରକର୍ମା ଶୌର୍ଯ୍ୟସମ୍ପନ୍ନ ରାକ୍ଷସ ଘଟୋତ୍କଚକୁ କ୍ରୋଧାବିଷ୍ଟ ହୋଇ ସମରକୁ ଆଗମନ କରିବାର ଅବଲୋକନ କରି ରାକ୍ଷସ ଅଳାୟୁଧ ଶୀଘ୍ର ତାହାକୁ ଆକ୍ରମଣ କଲା । ୪୬ । ମହାରଥ କୁନ୍ତିଭୋଜ ମହାସୈନ୍ୟ ସମଭିବ୍ୟାହାରରେ ରାକ୍ଷସଶ୍ରେଷ୍ଠ କ୍ରୋଧାବିଷ୍ଟ ଅଳମ୍ବୁଷକୁ ନିବାରଣ କଲେ । ୪୭ ।

ହେ ଭରତକୁଳେନ୍ଦ୍ର ! ସିନ୍ଧୁରାଜ ଜୟଦ୍ରଥ ସମସ୍ତ ସୈନ୍ୟର ପଶ୍ଚାଦ୍‌ଭାଗରେ ଅବସ୍ଥାନ କରିଥିଲେ । କୃପ ପ୍ରଭୃତି ମହାରଥିମାନେ ତାହାଙ୍କୁ ରକ୍ଷା କରିବା ନିମିତ୍ତ ନିଯୁକ୍ତ ହୋଇଥିଲେ । ୪୮ । ଦୁଇଜଣ ମହାରଥୀ ତାହାଙ୍କର ଚକ୍ରରକ୍ଷକ ଥିଲେ । ସେମାନଙ୍କ ମଧ୍ୟରେ ଅଶ୍ୱତ୍ଥାମା ଦକ୍ଷିଣପାର୍ଶ୍ୱରେ ଓ କର୍ଣ୍ଣ ବାମପାର୍ଶ୍ୱରେ ଅବସ୍ଥାନ କରିଥିଲେ । ୪୯ । ସୋମଦତ୍ତନନ୍ଦନଙ୍କୁ ଅଗ୍ରବର୍ତ୍ତୀ କରି କୃପ, ବୃଷସେନ, ଶଲ ଓ ଦୁର୍ଜୟଶଲ୍ୟ, ଏମାନେ ତାହାଙ୍କର ପୃଷ୍ଠରକ୍ଷକ ହୋଇଥିଲେ । ୫୦ । ନୀତିଜ୍ଞ ମହାଧନୁର୍ଦ୍ଧର ଯୁଦ୍ଧବିଶାରଦ ସମସ୍ତେ ସିନ୍ଧୁରାଜଙ୍କର ରକ୍ଷାର୍ଥେ ଏହିପରି ବିଧାନ କରି ଯୁଦ୍ଧ କରିବାରେ ପ୍ରବୃତ୍ତ ହେଲେ । ୫୧ ।

---

# ୯୭ ଅଧ୍ୟାୟ

ସଞ୍ଜୟ କହିଲେ—କୁରୁପାଣ୍ଡବଙ୍କର ଯେପରି ଆଶ୍ଚର୍ଯ୍ୟ ଯୁଦ୍ଧ ହୋଇଥିଲା, ତାହା ଆମ୍ଭେ କୀର୍ତ୍ତନ କରୁଅଛୁଁ, ଶ୍ରବଣ କରନ୍ତୁ । ୧ । ଦ୍ରୋଣସୈନ୍ୟକୁ ଭେଦ କରିବା ମାନସରେ ବ୍ୟୂହମୁଖରେ ଅବସ୍ଥିତ ଦ୍ରୋଣଙ୍କୁ ପାଣ୍ଡବମାନେ ଆକ୍ରମଣ କରି ଘୋରତର ସଂଗ୍ରାମ କଲେ । ୨ । ଦ୍ରୋଣ ମଧ୍ୟ ମହାଯଶ ଅଭିଳାଷରେ ସେହି ବ୍ୟୂହର ରକ୍ଷାନିମିତ୍ତ ସ୍ୱକୀୟ ସୈନ୍ୟମାନଙ୍କ ସହିତ ପାଣ୍ଡବମାନଙ୍କ ସହ ଯୁଦ୍ଧ କଲେ । ୩ । ଅବନ୍ତିରାଜ ବିନ୍ଦ ଓ ଅନୁବିନ୍ଦ ଆପଣଙ୍କ ପୁତ୍ରଙ୍କର ହିତୈଷୀ ହୋଇ ଅତିଶୟ କ୍ରୋଧ ସହକାରେ ଦଶଗୋଟି ବାଣଦ୍ୱାରା ବିରାଟଙ୍କୁ ଆହତ କଲେ । ୪ । ବିରାଟ ମଧ୍ୟ ସେହି ଅନୁଗଗଣସମବେତ ସମରରେ ଅବସ୍ଥିତ ପରାକ୍ରମଶାଳୀ ବିନ୍ଦ ଓ ଅନୁବିନ୍ଦ, ଏ ଦୁହିଁଙ୍କ ଉପରେ ପରାକ୍ରମପ୍ରକାଶପୂର୍ବକ ଶର ନିକ୍ଷେପ କଲେ । ୫ ।

ଯେପରି ଅରଣ୍ୟ ମଧ୍ୟରେ ମଦସ୍ରାବୀ ଦୁଇ ପ୍ରଧାନହସ୍ତୀ ସହିତ ଗୋଟିଏ ସିଂହର ଯୁଦ୍ଧ ହୁଏ, ସେହିପରି ସେମାନଙ୍କ ମଧ୍ୟରେ ଜଳପ୍ରବାହ ସଦୃଶ ଶୋଣିତପ୍ରବାହକାରୀ ଦାରୁଣ ଯୁଦ୍ଧ ହେଲା । ୬ । ମହାବଳବାନ୍ ଶିଖଣ୍ଡୀ ବେଗଶୀଳ ବାହ୍ଲୀକଙ୍କୁ ମର୍ମ ଓ ଅସ୍ଥିଭେଦନଶୀଳ ତୀକ୍ଷ୍ଣ ବାଣ-

ସମୂହଦ୍ୱାରା ଆହତ କଲେ । ୭ । ବାହ୍ଲୀକ ଅତ୍ୟନ୍ତ କ୍ରୁଦ୍ଧହୋଇ ଶିଳାଶାଣିତ ହେମପୁଙ୍ଖଯୁକ୍ତ ନତପର୍ବ ନଅଗୋଟି ବାଣଦ୍ୱାରା ଶିଖଣ୍ଡୀଙ୍କୁ ଆହତ କଲେ । ୮ । ଏମାନଙ୍କର ଶର ଓ ଶକ୍ତିଦ୍ୱାରା ଏପରି ଘୋରତର ଯୁଦ୍ଧ ହେଲା ଯେ, ତାହା ଭୀରୁମାନଙ୍କର ତ୍ରାସ ଓ ଶୂରମାନଙ୍କର ହର୍ଷ ଜାତ କରିଥିଲା । ୯ । ସେହି ଦୁହିଁଙ୍କର ନିକ୍ଷିପ୍ତ ଶରରେ ଅନ୍ତରୀକ୍ଷ ଓ ଦିକ୍‌ସମସ୍ତ ସମାଚ୍ଛନ୍ନ ହେଲା, କିଛିହିଁ ଦୃଷ୍ଟିଗୋଚର ହେଲାନାହିଁ । ୧୦ । ଯେପରି ଗୋଟିଏ ହସ୍ତୀ ଅନ୍ୟ ଗୋଟିଏ ସମକକ୍ଷହସ୍ତୀ ସହିତ ଯୁଦ୍ଧ କରେ, ସେହିପରି ଗୋବାସନ-ଶୈବ୍ୟ ସ୍ୱସୈନ୍ୟମାନଙ୍କ ସମଭିବ୍ୟାହାରରେ ମହାରଥ କାଶୀରାଜପୁତ୍ରଙ୍କ ସହିତ ଯୁଦ୍ଧ କଲେ । ୧୧ । ଯେପରି ପଞ୍ଚଇନ୍ଦ୍ରିୟର ସହିତ ମନର ଯୁଦ୍ଧ ହେଲେ ଶୋଭା ହୁଏ, ଦ୍ରୌପଦୀଙ୍କର ମହାରଥ ପଞ୍ଚପୁତ୍ରଙ୍କ ସହିତ ସଂକ୍ରୁଦ୍ଧ ବାହ୍ଲୀକରାଜଙ୍କର ଯୁଦ୍ଧ ହେବାରୁ ସେହିପ୍ରକାର ଶୋଭା ହୋଇଥିଲା । ୧୨ । ଯେପରି ଇନ୍ଦ୍ରିୟର ପାଞ୍ଚଗୋଟି ବିଷୟ ଶରୀରକୁ ସର୍ବଦା ପୀଡ଼ିତ କରେ, ସେହି ପ୍ରକାର ଦ୍ରୌପଦୀଙ୍କର ପଞ୍ଚପୁତ୍ର ଚତୁର୍ଦ୍ଦିଗରୁ ଶରସମୂହଦ୍ୱାରା ବାହ୍ଲୀକରାଜଙ୍କୁ ପୀଡ଼ିତ କଲେ । ୧୩ ।

ହେ ନରେନ୍ଦ୍ର ! ଆପଣଙ୍କପୁତ୍ର ଦୁଃଶାସନ ବୃଷ୍ଣିକୁଳସମ୍ଭୂତ ସାତ୍ୟକିଙ୍କୁ ନତପର୍ବ ନଅଗୋଟି ତୀକ୍ଷ୍ଣ ଶରଦ୍ୱାରା ସମାହତ କଲେ ।୧୪। ମହାଧନୁର୍ଦ୍ଧର ସତ୍ୟବିକ୍ରମ ସାତ୍ୟକି ସେହି ଶରମାନଙ୍କଦ୍ୱାରା ଶୀଘ୍ର ଅତ୍ୟନ୍ତ ବିଦ୍ଧ ହୋଇ ଅତ୍ୟନ୍ତ ମୂର୍ଚ୍ଛାନ୍ୱିତ ହେଲେ । ୧୫ । ତତ୍ପରେ ଆଶ୍ୱସ୍ତ ହୋଇ ଆପଣଙ୍କର ମହାରଥ ପୁତ୍ର ଦୁଃଶାସନକୁ କଙ୍କପତ୍ରଯୁକ୍ତ ଦଶଗୋଟି ବାଣଦ୍ୱାରା ଶୀଘ୍ର ବିଦ୍ଧ କଲେ । ୧୬ । ଦୁଇଜଣ ପରସ୍ପରଙ୍କ ଶରରେ କ୍ଷତବିକ୍ଷତାଙ୍ଗ ହୋଇ ପୁଷ୍ପିତପଲାଶବୃକ୍ଷସଦୃଶ ସମରସ୍ଥଳରେ ଶୋଭା ପାଇଲେ । ୧୭ । କ୍ରୋଧାକୁଳ ଅଳମ୍ବୁଷ କୁନ୍ତୀଭୋଜଙ୍କ ଶରସମୂହଦ୍ୱାରା ପ୍ରପୀଡ଼ିତ ହୋଇ ପୁଷ୍ପିତ କିଂଶୁକବୃକ୍ଷସଦୃଶ ଶୋଭା ଧାରଣ କଲେ । ୧୮ । ଆପଣଙ୍କ ସୈନ୍ୟାଗ୍ରରେ ଅବସ୍ଥିତ ସେହି ରାକ୍ଷସ ବହୁବାଣରେ କୁନ୍ତିଭୋଜଙ୍କୁ ବିଦ୍ଧ କରି ଭୀଷଣ ନିନାଦ କଲେ । ୧୯ ।

ପୂର୍ବକାଳରେ ଯେପରି ଇନ୍ଦ୍ରଙ୍କ ସହିତ ଜମ୍ଭାସୁରର ଯୁଦ୍ଧ ହୋଇଥିଲା, ଆପଣଙ୍କ ସୈନ୍ୟମାନେ ସେହି ଦୁଇବୀରଙ୍କୁ ତାଦୃଶ ଯୁଦ୍ଧ କରିବାର

ଅବଲୋକନ କଲେ । ୨୦ । ମାଦ୍ରୀପୁତ୍ର ନକୁଳ ଓ ସହଦେବ ଅତିଶୟ ସଂରବ୍ଧ ହୋଇ ଏହି ବୈରାଗ୍ନିର ସୃଷ୍ଟିକାରୀ ବେଗଶୀଳ ଶକୁନିଙ୍କୁ ଶରପୀଡ଼ିତ କଲେ । ୨୧ । ହେ ନରପାଳ ! ଏହି ଭୂମୁଳ ଅତି ମହାନ୍ ଜନକ୍ଷୟର ମୂଳକୁ ଆପଣ ଉତ୍ପାଦନ କରିଅଛନ୍ତି ; କର୍ଣ୍ଣ ତାହାଙ୍କୁ ବର୍ଦ୍ଧିତ କରିଅଛନ୍ତି । ୨୨ । ଆପଣଙ୍କ ପୁତ୍ରମାନେ ସେହି କ୍ରୋଧାନଳକୁ ପରିରକ୍ଷିତ କରିବାରୁ ତାହା ଏହି ସମସ୍ତ ପୃଥିବୀକୁ ଦଗ୍ଧ କରିବାକୁ ଉଦ୍ୟତ ହୋଇଅଛି । ୨୩ ।

ପରିଶେଷରେ ଶକୁନି ନକୁଳ ଓ ସହଦେବଙ୍କ କର୍ତ୍ତୃକ ଶରପୀଡ଼ିତ ହୋଇ ସମରରେ ପରାଙ୍ମୁଖ ହେଲେ । ସେ ପରାଙ୍ମୁଖ ହୋଇ ପରାକ୍ରମ-ପ୍ରକାଶରେ ଅସମର୍ଥ ଓ କିଂକର୍ତ୍ତବ୍ୟବିମୂଢ଼ ହେଲେ । ୨୪ । ମହାରଥ ନକୁଳ ଓ ସହଦେବ ତାହାଙ୍କୁ ପରାଙ୍ମୁଖ ହେବାର ଦେଖି ଯେପରି ଦୁଇଖଣ୍ଡ ମେଘରୁ ମହାଗିରି ଉପରେ ବାରିବର୍ଷଣ ହୁଏ, ସେହିପରି ପୁନର୍ବାର ସେମାନଙ୍କ ଉପରେ ଶରବର୍ଷଣ କଲେ । ୨୫ । ସେ ନତପର୍ବ ବାଣମାନଙ୍କ-ଦ୍ୱାରା ହନ୍ୟମାନ ହୋଇ ଦ୍ରୁତଗାମୀ ଅଶ୍ୱରେ ଦ୍ରୋଣସୈନ୍ୟ ଆଡ଼କୁ ପ୍ରସ୍ଥାନ କଲେ । ୨୬ ।

ଶୌର୍ଯ୍ୟସମ୍ପନ୍ନ ଘଟୋତ୍କଚ ମଧ୍ୟମ ବେଗ ଅବଲମ୍ବନପୂର୍ବକ ବେଗଶୀଳ ରାକ୍ଷସ ଅଳାୟୁଧ ସହିତ ଯୁଦ୍ଧ କଲେ । ୨୭ । ଯେପରି ପୂର୍ବ-କାଳରେ ରାମ-ରାବଣ-ଯୁଦ୍ଧ ହୋଇଥିଲା, ସେହିପରି ସେ ଦୁହିଁଙ୍କର ଆଶ୍ଚର୍ଯ୍ୟ ପ୍ରକାର ଯୁଦ୍ଧ ହେଲା । ୨୮ । ତଦନନ୍ତର ରାଜା ଯୁଧିଷ୍ଠିର ମଦ୍ରରାଜଙ୍କୁ ପଞ୍ଚାଶତ୍ ବାଣରେ ବିଦ୍ଧ କରି ପୁନର୍ବାର ସପ୍ତବାଣରେ ବିଦ୍ଧ କଲେ । ୨୯ । ଯେପରି ପୂର୍ବକାଳରେ ଶମ୍ବରାସୁର ଓ ଅମରରାଜ ଇନ୍ଦ୍ରଙ୍କର ଯୁଦ୍ଧ ହୋଇ-ଥିଲା, ସେହିପରି ଏହି ଦୁଇ ରାଜାଙ୍କ ମଧ୍ୟରେ ଅଦ୍ଭୁତ ସଂଗ୍ରାମ ହେଲା ।୩୦। ବିବିଂଶତି, ଚିତ୍ରସେନ ଓ ବିକର୍ଣ୍ଣ, ଆପଣଙ୍କର ଏହି ତିନି ପୁତ୍ର ମହତୀ ସେନାଦ୍ୱାରା ପରିବୃତ ହୋଇ ଭୀମସେନଙ୍କ ସହିତ ଯୁଦ୍ଧ ଆରମ୍ଭ କଲେ ।୩୧।

# ୯୭ ଅଧ୍ୟାୟ

ସଞ୍ଜୟ କହିଲେ—ମହାରାଜ ! ସେହିପରି ଲୋମହର୍ଷଣ ସଂଗ୍ରାମରେ କୁରୁସୈନ୍ୟମାନେ ତ୍ରିଧା ବିଭକ୍ତ ହୁଅନ୍ତେ ପାଣ୍ଡବମାନେ ସେମାନଙ୍କୁ ଆକ୍ରମଣ କଲେ । ୧ । ଭୀମସେନ ମହାବାହୁ ଜଳସନ୍ଧଙ୍କ ପ୍ରତି, ସସୈନ୍ୟ ଯୁଧିଷ୍ଠିର କୃତବର୍ମାଙ୍କ ପ୍ରତି ଓ ଧୃଷ୍ଟଦ୍ୟୁମ୍ନ ଦ୍ରୋଣଙ୍କ ପ୍ରତି ପ୍ରଖର ଅଂଶୁମାଳୀ କିରଣ ବିସ୍ତାର କଲାପ୍ରାୟ ଶରବର୍ଷଣ କରୁ କରୁ ଆପତିତ ହେଲେ । ୩ । କୁରୁ-ପାଣ୍ଡବପକ୍ଷୀୟ ଧନୁର୍ଦ୍ଧରଗଣ ପରସ୍ପର ସଂକ୍ରୁଦ୍ଧ ଓ ତ୍ୱରାନ୍ୱିତ ହୋଇ ସଂଗ୍ରାମରେ ପ୍ରବୃତ୍ତ ହେଲେ । ୪ ।

ପ୍ରାଣିବିନାଶକ ଭୟଜନକ ସେହି ସଂଗ୍ରାମରେ ନିର୍ଭୀକ ଯୁଧ୍ୟମାନ ସୈନ୍ୟମାନଙ୍କର ଦ୍ୱନ୍ଦ୍ୱଯୁଦ୍ଧ ସମୟରେ ବଳଶାଳୀ ଦ୍ରୋଣ ଓ ପାଞ୍ଚାଳପୁତ୍ର ଧୃଷ୍ଟଦ୍ୟୁମ୍ନ ପରସ୍ପର ଯେଉଁ ଶରସମୂହ ନିକ୍ଷେପ କଲେ, ତାହା ଅଦ୍ଭୁତପ୍ରାୟ ହେଲା । ୬ । ଦୁହେଁ ବିଧ୍ୱସ୍ତ ପଦ୍ମବନସଦୃଶ ଚତୁର୍ଦ୍ଦିଗରେ ବହୁ ମନୁଷ୍ୟ-ମସ୍ତକକୁ ବିଧ୍ୱସ୍ତ କଲେ । ୭ । ସୈନିକ ବୀରମାନଙ୍କର ବସ୍ତ୍ର, ଆଭରଣ, ଶସ୍ତ୍ର, ଧ୍ୱଜ, ବର୍ମ ଓ ଆୟୁଧମାନ ରଣସ୍ଥଳରେ ବିକୀର୍ଣ୍ଣ ହେଲା । ୮ । ସ୍ୱର୍ଣ୍ଣ-ବିଚିତ୍ରିତ ଦେହସବୁ ରୁଧିରସିକ୍ତ ଓ ପରସ୍ପରସଂସକ୍ତ ହୋଇ ବିଦ୍ୟୁତ୍‌ଯୁକ୍ତ ମେଘସଦୃଶ ଦୃଷ୍ଟ ହେଲା । ୯ । ଅନେକ ମହାରଥୀ ତାଳପ୍ରମାଣ ଶରାସନ ଆକର୍ଷଣ କରି ଶରସମୂହଦ୍ୱାରା ହସ୍ତୀ, ଅଶ୍ୱ ଓ ମନୁଷ୍ୟମାନଙ୍କୁ ନିପାତିତ କଲେ । ୧୦ । ମହାସତ୍ତ୍ୱ ଶୂରମାନଙ୍କର ଅସି, ଚର୍ମ, ଧନୁ, ମୁଣ୍ଡ ଓ କବଚ-ସମୂହଦ୍ୱାରା ରଣଭୂମି ପରିକୀର୍ଣ୍ଣ ହେଲା । ୧୧ ।

ହେ ମହାରାଜ ! ସେହି ମହାସଂକୁଳସଂଗ୍ରାମରେ ସମୁତ୍ଥିତ କବନ୍ଧ-ମାନଙ୍କୁ ଅବଲୋକନ କଲୁଁ । ୧୨ । ଗୃଧ୍ର, କଙ୍କ, ବକ, ଶ୍ୟେନ, ବାୟସ ଓ ଶୃଗାଳସମୂହ ବହୁପରିମାଣରେ ଦୃଷ୍ଟ ହେଲେ । ୧୩ । ସେମାନେ ମାଂସଭକ୍ଷଣ, ଶୋଣିତପାନ ଓ ମୃତଦେହରୁ କେଶ ଓ ମଜ୍ଜାସବୁ ବହୁ-ପ୍ରକାରେ ଆକର୍ଷଣ କଲେ । ୧୪ । ନର, ଅଶ୍ୱ ଓ ଗଜସମୂହର ଅଙ୍ଗ-ପ୍ରତ୍ୟଙ୍ଗ ଓ ମସ୍ତକସବୁକୁ ଆକର୍ଷଣ କରି ଇତସ୍ତତଃ ବିକୀର୍ଣ୍ଣ କଲେ । ୧୫ ।

ଶରଯୋଧୀ, ଅସ୍ତ୍ରକୁଶଳୀ, ସୈନିକମାନେ ରଣଦୀକ୍ଷାରେ ଦୀକ୍ଷିତ ଓ ଜୟପ୍ରାର୍ଥୀ ହୋଇ ସେ ସମୟରେ ଅତିଶୟ ସଂଗ୍ରାମ କଲେ । ୧୬ । ଯୁଦ୍ଧ-ରଙ୍ଗାସକ୍ତ ଓ କ୍ରୋଧାବିଷ୍ଟ ହୋଇ କୌଣସି କୌଣସି ସୈନିକପୁରୁଷ ଅସି-ଚର୍ମ୍ମରେ ବିଚରଣ କଲେ । ୧୭ । କେହି କେହି ଋଷ୍ଟି, ଶକ୍ତି, ପ୍ରାସ, ଶୂଳ, ତୋମର, ପଟ୍ଟିଶ, ଗଦା ଓ ପରିଘଦ୍ୱାରା, କେହି କେହି ଅବା ନିରସ୍ତ୍ର ହୋଇ ଆପଣାର ଭୁଜଦ୍ୱାରା ପରସ୍ପରକୁ ନିହତ କଲେ । ୧୮ । ରଥୀ ରଥୀସହିତ, ଅଶ୍ୱାରୋହୀ ଅଶ୍ୱାରୋହୀସହିତ, ମାତଙ୍ଗ ମାତଙ୍ଗସହିତ, ପଦାତି ପଦାତି-ସହିତ ଯୁଦ୍ଧ କରିବାରେ ପ୍ରବୃତ୍ତ ହେଲେ । ୧୯ । ଅନେକ ହସ୍ତୀ ରଣ-ରଙ୍ଗରେ ମଦମତ୍ତ ଓ ଉନ୍ମତ୍ତସଦୃଶ ହୋଇ ପରସ୍ପର ଉତ୍କ୍ରୋଶପୂର୍ବକ ପରସ୍ପରକୁ ହନନ କଲେ । ୨୦ ।

ହେ ନରପାଳ ! ସେମାନଙ୍କର ସେହିପ୍ରକାର ସଂଗ୍ରାମ ସମୟରେ ଧୃଷ୍ଟଦ୍ୟୁମ୍ନ ସ୍ୱକୀୟ ଅଶ୍ୱମାନଙ୍କୁ ଦ୍ରୋଣଙ୍କ ଅଶ୍ୱମାନଙ୍କ ସହିତ ସମ୍ମିଳିତ କଲେ । ୨୧ । ଉଭୟଙ୍କର ବାୟୁବେଗଶାଳୀ ପାରାବତସବର୍ଣ୍ଣ ଓ ରକ୍ତବର୍ଣ୍ଣ ଅଶ୍ୱମାନେ ମିଳିତ ହୋଇ ମନୋହର ଶୋଭା ଧାରଣ କଲେ । ୨୨ । ଧୃଷ୍ଟଦ୍ୟୁମ୍ନଙ୍କର ପାରାବତସବର୍ଣ୍ଣ ଓ ଦ୍ରୋଣଙ୍କର ରକ୍ତବର୍ଣ୍ଣ ଅଶ୍ୱମାନେ ସଂଲଗ୍ନ ହୋଇ ସବିଦ୍ୟୁତ୍ ମେଘସଦୃଶ ଶୋଭା ପାଇଲେ । ୨୩ ।

ହେ ଭାରତ ! ବୀର୍ଯ୍ୟବାନ୍ ଧୃଷ୍ଟଦ୍ୟୁମ୍ନ ଦ୍ରୋଣଙ୍କୁ ସମୀପସ୍ଥ ଦେଖି ଧନୁପରିତ୍ୟାଗପୂର୍ବକ ଅସିଚର୍ମ ଗ୍ରହଣ କଲେ । ୨୪ । ପରବୀରହନ୍ତା ପୃଷତନନ୍ଦନ ଦୁଷ୍କର କର୍ମ କରିବା ମାନସରେ ରଥର ଈଶା ଅତିକ୍ରମ କରି ଦ୍ରୋଣଙ୍କର ରଥକୁ ଗମନ କଲେ । ୨୫ । ସେ ଲଘୁସଞ୍ଚାରରେ ଯୁଗ ମଧ୍ୟରେ ଯୁଗବନ୍ଧନ ସ୍ଥାନରେ ଓ ଅଶ୍ୱମାନଙ୍କର ପଶ୍ଚାଦ୍ଭାଗରେ ଅବସ୍ଥିତ କରନ୍ତେ ସୈନ୍ୟମାନେ ତାହାଙ୍କର ସେହି ଅଦ୍ଭୁତ କର୍ମ ଅବଲୋକନ କରି ପ୍ରଶଂସା କଲେ । ୨୬ । ଯେତେବେଳେ ଖଡ୍ଗହସ୍ତ ହୋଇ ଶୋଣବର୍ଣ୍ଣ ଅଶ୍ୱପୃଷ୍ଠରେ ଅବସ୍ଥାନ କଲେ, ସେତେବେଳେ ଦ୍ରୋଣ ତାହାଙ୍କର ରନ୍ଧ୍ର ଅବଲୋକନ କରିବାକୁ ସମର୍ଥ ହେଲେ ନାହିଁ । ଏହା ଅଦ୍ଭୁତସଦୃଶ ହେଲା । ୨୭ । ଯେପରି ଶ୍ୟେନପକ୍ଷୀ ଆମିଷାଭିଳାଷୀ ହୋଇ ବନମଧ୍ୟରେ ପତିତ

ହୁଏ, ସେହିପରି ଧୃଷ୍ଟଦ୍ୟୁମ୍ନ ଦ୍ରୋଣଙ୍କ ଜଙ୍ଘାରୁ ହୋଇ ଦ୍ରୋଣଙ୍କ ରଥରେ ଆପତିତ ହେଲେ । ୨୮ ।

ଜତ୍ପୂତ୍‌ କ୍ଷଣପରେ ବୀରାଗ୍ରଗଣ୍ୟ ଦ୍ରୋଣ ଶତଶରଦ୍ୱାରା ତାହାଙ୍କର ଶତଚନ୍ଦ୍ରଶୋଭିତ ଚର୍ମକୁ, ଦଶଶରଦ୍ୱାରା ତାହାଙ୍କର ଖଡ୍‌ଗକୁ ଓ ଚତୁଃଷଷ୍ଟି ଶରରେ ତାହାଙ୍କର ଅଶ୍ୱମାନଙ୍କୁ ହନନ କରି ଦୁଇଗୋଟି ଭଲ୍ଲରେ ତାହାଙ୍କର ଧ୍ୱଜ, ଛତ୍ର, ପାର୍ଷ୍ଣିରକ୍ଷକ ସାରଥିକୁ ନିହତ କଲେ ।୩୦।

ତଦନନ୍ତର ତ୍ୱରାନ୍ୱିତ ହୋଇ ଜୀବିତାନ୍ତକ ଅନ୍ୟ ଗୋଟିଏ ଶର ଆକର୍ଣ୍ଣ ସନ୍ଧାନ କରି ବଜ୍ରଧର ଇନ୍ଦ୍ରଙ୍କର ବଜ୍ରନିକ୍ଷେପସଦୃଶ ତାହାଙ୍କ ଉପରକୁ ନିକ୍ଷେପ କଲେ । ୩୧ । ଆଗ୍ଚର୍ଯ୍ୟ ଦ୍ରୋଣଙ୍କର କରାଳ ଗ୍ରାସରେ ପତିତ ଧୃଷ୍ଟଦ୍ୟୁମ୍ନଙ୍କୁ ମୁକ୍ତ କରିବା ଅଭିପ୍ରାୟରେ ସାତ୍ୟକି ଚତୁର୍ଦ୍ଦଶ ବାଣଦ୍ୱାରା ସେହି ଶରକୁ ଛେଦନ କରି ପକାଇଲେ । ୩୨ । ସିଂହଗ୍ରସ୍ତ ମୃଗସଦୃଶ ଦ୍ରୋଣସିଂହର ଆସ୍ୟଗ୍ରସ୍ତ ଧୃଷ୍ଟଦ୍ୟୁମ୍ନଙ୍କୁ ସାତ୍ୟକି ବିମୋଚନ କଲେ । ୩୩ । ସାତ୍ୟକିଙ୍କୁ ଧୃଷ୍ଟଦ୍ୟୁମ୍ନଙ୍କ ରକ୍ଷାକାରୀ ଅବଲୋକନ କରି ସେହି ମହାହବରେ ତ୍ୱରାନ୍ୱିତ ହୋଇ ଦ୍ରୋଣ ଷଡ୍‌ବିଂଶତି ଶରଦ୍ୱାରା ସାତ୍ୟକିଙ୍କୁ ବିଦ୍ଧ କଲେ । ୩୪ ।

ଅନନ୍ତର ଶିନିପୌତ୍ର ସାତ୍ୟକି ମଧ୍ୟ ଦ୍ରୋଣଙ୍କୁ ସୃଞ୍ଜୟମାନଙ୍କୁ ଗ୍ରାସ କରିବାର ଦେଖି ଷଡ୍‌ବିଂଶତି ବାଣଦ୍ୱାରା ତାହାଙ୍କ ସ୍ତନାନ୍ତରେ ବିଦ୍ଧ କଲେ । ୩୫ । ଦ୍ରୋଣ ସାତ୍ୟକିଙ୍କ ସହିତ ସମବେତ ହେବାରୁ ଜୟାଭିଳାଷୀ ପାଞ୍ଚାଳଦେଶୀୟ ମହାରଥିମାନେ ଧୃଷ୍ଟଦ୍ୟୁମ୍ନଙ୍କୁ ସେହି ସ୍ଥାନରୁ ଅପସାରିତ କଲେ । ୩୬ ।

---

# ୯୮ ଅଧ୍ୟାୟ

ଧୃତରାଷ୍ଟ୍ର କହିଲେ—ହେ ସଞ୍ଜୟ ! ବୃଷ୍ଣିବୀର ସାତ୍ୟକି ଦ୍ରୋଣଙ୍କର ବାଣ କର୍ତ୍ତନ କରି ଧୃଷ୍ଟଦ୍ୟୁମ୍ନଙ୍କୁ ଦ୍ରୋଣଙ୍କଠାରୁ ମୁକ୍ତ କରନ୍ତେ ମହାଧନୁର୍ଦ୍ଧର

ସର୍ବଶସ୍ତ୍ରଧାରୀମାନଙ୍କ ମଧ୍ୟରେ ପ୍ରଧାନ ଦ୍ରୋଣ ସଂକ୍ରୁଦ୍ଧ ହୋଇ ସେହି ସମୟରେ ନରବ୍ୟାଘ୍ର ଶିନିପୌତ୍ରଙ୍କ ପ୍ରତି କଅଣ କଲେ ? ୨ ।

ସଞ୍ଜୟ କହିଲେ—ନରବୀର ଦ୍ରୋଣ ମଧ୍ୟ କ୍ରୁଦ୍ଧ ଓ ଅମର୍ଷଯୁକ୍ତ ହୋଇ ତାମ୍ରଲୋଚନ ହେଲେ ଓ କ୍ରୋଧରୂପ ବିଷ ଶରାସନରୂପ ବ୍ୟାଦିତ୍ତାନନ ତୀକ୍ଷ୍ଣଧାର ଇଷୁରୂପ ଦନ୍ତ ଓ ଶାଣିତ ନାରାଚରୂପ ଦଂଷ୍ଟ୍ରାସମନ୍ୱିତ ହୋଇ ମହାବେଗବିଶିଷ୍ଟ ପ୍ରମୁଦିତ ଶୋଣବର୍ଣ୍ଣ ଅଶ୍ୱଯୁକ୍ତ ରଥରେ ଗର୍ଜ୍ଜନଶୀଳ ମହାସର୍ପତୁଲ୍ୟ ଦ୍ରୁତ ଗମନରେ ରୁକ୍ମପୁଙ୍ଖଯୁକ୍ତ ଶରସମୂହ ନିକ୍ଷେପ କରୁ କରୁ ଯୁଯୁଧାନଙ୍କୁ ଆକ୍ରମଣ କଲେ । ୪ । ତାହାଙ୍କର ଗମନକାଳରେ ତାହାଙ୍କର ଅଶ୍ୱମାନେ ଆକାଶରେ ଉଡ୍ଡୀୟମାନ ହୋଇ ପର୍ବତପ୍ରଦେଶକୁ ଅତିକ୍ରମ କଲାପ୍ରାୟ ଧାବମାନ ହେଲେ । ୫ ।

ପରପୁରଞ୍ଜୟ ଶୌର୍ଯ୍ୟସମ୍ପନ୍ନ ଯୁଦ୍ଧଦୁର୍ମଦ ସାତ୍ୟକି ମହାଶର-ବର୍ଷଣକାରୀ ରଥଘୋଷରୂପ ଗର୍ଜ୍ଜନଶୀଳ ଶରାକର୍ଷଣରୂପ ବିକ୍ଷେପଶାଳୀ ବିଦ୍ୟୁତ୍‌ସଦୃଶ ବହୁ ନାରାଚବିଶିଷ୍ଟ ଶକ୍ତି ଓ ଖଡ୍ଗରୂପ ବ୍ରଜଧାରୀ କ୍ରୋଧ-ବେଗରେ ସମୁତ୍ଥିତ, ଅନିବାର୍ଯ୍ୟ ଅଶ୍ୱପବନରେ ସମୀରିତ ଦ୍ରୋଣରୂପ ମେଘକୁ ଆପତିତ ହେବାର ଅବଲୋକନ କରି ହାସ୍ୟବଦନରେ ସାରଥିଙ୍କୁ କହିଲେ । ୮ । ହେ ସାରଥେ ! ଦୁର୍ଯ୍ୟୋଧନଙ୍କର ଆଶ୍ରୟ ଓ ରାଜା ଯୁଧିଷ୍ଠିରଙ୍କର ଦୁଃଖ, ଏ ଭୟର କାରଣ, ରାଜପୁତ୍ରମାନଙ୍କର ଆଚାର୍ଯ୍ୟ, ସ୍ୱକର୍ମଭ୍ରଷ୍ଟ, କ୍ରୂରସ୍ୱଭାବ, ସର୍ବଦା ଶୂରାଭିମାନୀ ସେହି ବ୍ରାହ୍ମଣନିକଟକୁ ବେଗରେ ରଥଚାଳନା କରି ପ୍ରହୃଷ୍ଟ ହୋଇ ଶୀଘ୍ର ଗମନ କର । ୧୦ ।

ତଦନନ୍ତର ସାତ୍ୟକିଙ୍କ ରଜତବର୍ଣ୍ଣ ଉତ୍ତମ ଅଶ୍ୱମାନେ ବାତ-ବେଗରେ ଦ୍ରୋଣଙ୍କ ସମ୍ମୁଖକୁ ଶୀଘ୍ର ଗମନ କଲେ । ୧୧ । ଅନନ୍ତର ଶତ୍ରୁତାପନ ପୁରୁଷପ୍ରବର ଦ୍ରୋଣ ଓ ଶିନିବଂଶାବତଂସ ସାତ୍ୟକି ଏହି ଦୁଇ ବୀର ସହସ୍ର ସହସ୍ର ଶରଦ୍ୱାରା ପରସ୍ପରକୁ ତାଡ଼ନା କରି ଯୁଦ୍ଧ କଲେ । ଯେପରି ଗ୍ରୀଷ୍ମଶେଷରେ ଦୁଇଖଣ୍ଡି ମେଘ ଜଳଧାରାଦ୍ୱାରା ଆକାଶ ଓ ଦିଙ୍ମଣ୍ଡଳକୁ ସମାଚ୍ଛନ୍ନ କରେ, ସେହିପରି ସେମାନେ ଶରଜାଳଦ୍ୱାରା ଆକାଶମଣ୍ଡଳକୁ ସମାବୃତ ଓ ଦଶଦିଗ୍ ପରିପୂର୍ଣ୍ଣ କଲେ । ସେହି ସମୟରେ

ପ୍ରଭାକର ପ୍ରକାଶିତ ହେଲେ ନାହିଁ । ସମୀରଣ ପ୍ରବାହିତ ହେଲା ନାହିଁ । ୧୪ । ଚତୁର୍ଦ୍ଦିଗ ଇଷୁଜାଲରେ ସମାବୃତ ହୋଇ ଘୋର ଅନ୍ଧକାରମୟ ହେଲା ଓ ତାହା ଅନ୍ୟାନ୍ୟ ଶୂରମାନଙ୍କର ଅଧର୍ଷଣୀୟ ହେଲା । ୧୫ ।

ଶୀଘ୍ରାସ୍ତ୍ରବିତ୍ ନରସିଂହ ଦ୍ରୋଣ ଓ ସାତ୍ୟକି, ଏ ଦୁହିଙ୍କର ଶର-ବୃଷ୍ଟିର ଅବକାଶକୁ କେହି ଅବଲୋକନ କରି ପାରିଲେ ନାହିଁ । କେବଳ ଇନ୍ଦ୍ରନିକ୍ଷିପ୍ତ ବଜ୍ରଧ୍ୱନିସଦୃଶ ଶରଧାରପତନର ଅଭିଘାତ ଶବ୍ଦ କର୍ଣ୍ଣ-କୁହରରେ ପ୍ରବିଷ୍ଟ ହେଲା । ପରସ୍ପରନିକ୍ଷିପ୍ତ ନାରାଚସମୂହଦ୍ୱାରା ପରସ୍ପର ବିଦ୍ଧ ହୋଇ ସର୍ପଦଂଶିତ ସର୍ପତୁଲ୍ୟ ଧୃତି ପ୍ରାପ୍ତ ହେଲେ । ଯୁଦ୍ଧଶୌଣ୍ଡ ସେହି ବୀର ଦୁହିଁଙ୍କର ଅନବରତ ଜ୍ୟା-ତଳ-ନିର୍ଘୋଷ ବଜ୍ରଦ୍ୱାରା ହନ୍ୟମାନ ଶୈଳ ଶୃଙ୍ଗର ଶବ୍ଦ ସଦୃଶ ଶ୍ରୁତ ହେଲା । ଉଭୟଙ୍କର ରଥ ଅଶ୍ୱ ଓ ସାରଥୀ ରୁକ୍ମପୁଙ୍ଖ ଶରସମୂହ ଦ୍ୱାରା ସମାଚ୍ଛନ୍ନ ହୋଇ ବିଚିତ୍ର ରୂପରେ ପ୍ରକାଶିତ ହେଲେ । ନିର୍ମୋକନିର୍ମୁକ୍ତ ସର୍ପସଦୃଶ ସରଳଗାମୀ ନିର୍ମଳ ନାରାଚସମୂହର ସୁଦାରୁଣ ସନ୍ନିପାତ ହେଲା । ଉଭୟଙ୍କ ଜୟାଶା ଥିଲା; ଉଭୟଙ୍କର ଛତ୍ର ଓ ଧ୍ୱଜ ପତିତ ଓ ଉଭୟଙ୍କ ଅଙ୍ଗ ରୁଧିରକ୍ତ ହେଲା । ଉଭୟଙ୍କ ଗାତ୍ରରୁ ରୁଧିରସ୍ରାବ ହେବାରୁ ଉଭୟେ ଗଳିତମଦ ବାରଣସଦୃଶ ହୋଇ ଜୀବିତାନ୍ତକ ଶରନିକରରେ ପରସ୍ପର ବିଦ୍ଧ ହେଲେ ।

ହେ ମହାରାଜ ! ସେହି ସମୟରେ ବୀରମାନଙ୍କର ଗର୍ଜନ କମ୍ବୁ ଉତ୍କୃଷ୍ଟ ଧ୍ୱନି ଓ ଶଙ୍ଖ-ଦୁନ୍ଦୁଭି-ଶବ୍ଦ ନିବୃତ୍ତ ହେଲା । କେହି ବାକ୍ୟ ପ୍ରୟୋଗ କଲେ ନାହିଁ । ସୈନ୍ୟମାନେ ମୌନାବଲମ୍ବନ କଲେ । ଯୋଧସମୂହ ଯୁଦ୍ଧରୁ ନିବୃତ୍ତ ହେଲେ । ୨୪ । ଲୋକମାନେ କୌତୁହଳାକ୍ରାନ୍ତ ହୋଇ ସେମାନଙ୍କର ଦ୍ୱିରଥ ଯୁଦ୍ଧ ଦର୍ଶନ କଲେ । ରଥୀ ଗଜାରୋହୀ, ଅଶ୍ୱାରୋହୀ ଓ ପଦାତି-ମାନେ ସେହି ପ୍ରଧାନ ମହାରଥୀ ଦୁଇଜଣଙ୍କୁ ପରିବେଷ୍ଟନ କରି ନିଶ୍ଚଳ-ନେତ୍ରରେ ସେମାନଙ୍କର ଯୁଦ୍ଧ ଅବଲୋକନ କଲେ । ଗଜ ସୈନ୍ୟ, ଅଶ୍ୱ-ସୈନ୍ୟ ଓ ରଥ ସୈନ୍ୟ ବ୍ୟୂହସଜ୍ଜା କରି ଅବସ୍ଥିତିପୂର୍ବକ ଦର୍ଶନ କଲେ ।

ମଣିକାଞ୍ଚନଭୂଷିତ ଓ ମୁକ୍ତାବଦ୍ଧ ମଣିଖଚିତ ଧ୍ୱଜ, ବିଚିତ୍ର ଆଭରଣ ହିରଣ୍ମୟ କବଚ, ବୈଜୟନ୍ତୀପତାକା, ପରସ୍ତୋମ ଗାତ୍ର କମ୍ବଳ, ସୁଶାଣିତ

ବିମଳ ଶସ୍ତ୍ରସମୂହ, ଅଶ୍ୱମାନଙ୍କର ଚାମର, ଗଜସମୂହର ଶିରସ୍ଥିତ ସ୍ୱର୍ଣ୍ଣମୟ ଓ ରଜତମୟ କୁମ୍ଭସମୂହ ଓ ଦନ୍ତବେଷ୍ଟନାବଦ୍ଧ ଭୂଷଣ, ଏହି ସମସ୍ତ ଦ୍ୱାରା ସେହି ଦର୍ଶକ ସୈନ୍ୟମାନଙ୍କୁ ହେମନ୍ତରୁ ଅବସାନରେ ବକପଂକ୍ତିଯୁକ୍ତ, ଖଦ୍ୟୋତସମନ୍ୱିତ, ଇନ୍ଦ୍ରଧନୁ ଓ ବିଦ୍ୟୁତ୍‌ସଂଯୁକ୍ତ ମେଘମାଳାସଦୃଶ ଦୃଷ୍ଟି ଗୋଚର କଲୁଁ । ମହାତ୍ମା ଦ୍ରୋଣ ଓ ଯୁଯୁଧାନ, ଏହି ଉଭୟଙ୍କର ସେହି ଯୁଦ୍ଧ ଉଭୟପକ୍ଷୀୟ ସୈନ୍ୟମାନେ ଅବସ୍ଥିତ ହୋଇ ଦର୍ଶନ କଲେ ।

ଆକାଶରେ ବିମାନାଗ୍ରରେ ଅବସ୍ଥିତ ବ୍ରହ୍ମା ଓ ସୋମପ୍ରମୁଖ ଦେବଗଣ, ସିଦ୍ଧ, ଚାରଣ, ବିଦ୍ୟାଧର ଓ ମହୋରଗଗଣ ସେହି ପୁରୁଷସିଂହ ଦ୍ୱୟଙ୍କର ଶସ୍ତ୍ରବିଘାତ, ନାନାବିଧ ବିଚିତ୍ର ଗତି, ପ୍ରତ୍ୟାଗତି ଓ ଆକ୍ଷେପ-ବିଷୟକ ଯୁଦ୍ଧନୈପୁଣ୍ୟ ଦର୍ଶନ କରି ବିସ୍ମୟାପନ୍ନ ହେଲେ । ମହାବଳ ପରାକ୍ରାନ୍ତ ସେହି ରଥିଦ୍ୱୟ ଅସ୍ତ୍ରବିଷୟରେ ହସ୍ତଲାଘବ ଦେଖାଇ ପରସ୍ପରକୁ ବିଦ୍ଧ କଲେ । ଅନନ୍ତର ଦାଶାର୍ହକୁଳୋଦ୍ଭବ ସାତ୍ୟକି ସୁଦୃଢ଼ ଶରସମୂହ-ଦ୍ୱାରା ମହାତେଜସ୍ୱୀ ଦ୍ରୋଣଙ୍କର ଶରଜାଲକୁ ଓ ଶରାସନକୁ ଛେଦନ କଲେ ।

ତତ୍ପରେ ଦ୍ରୋଣ ନିମେଷ ମାତ୍ରକେ ଅନ୍ୟ ଗୋଟିଏ ଧନୁରେ ଜ୍ୟା-ଯୁକ୍ତ କଲେ । ସାତ୍ୟକି ତତ୍କ୍ଷଣାତ୍ ତାହାକୁ ମଧ୍ୟ ଛେଦନ କଲେ । ଅନନ୍ତର ଦ୍ରୋଣ ପୁନର୍ବାର ତ୍ୱରାନ୍ୱିତ ହୋଇ ଅନ୍ୟ ଧନୁ ଗ୍ରହଣପୂର୍ବକ ଜ୍ୟା-ଯୁକ୍ତ କଲେ । ସାତ୍ୟକି ତାହାକୁ ମଧ୍ୟ ତତ୍କ୍ଷଣାତ୍ କର୍ତ୍ତନ କଲେ । ଦ୍ରୋଣ ଶରାସନ ଗ୍ରହଣ କରି ଜ୍ୟା-ଯୁକ୍ତ କରିବାମାତ୍ରକେ ସାତ୍ୟକି ତାହାକୁ ଛେଦନ କରନ୍ତି । ଏହିପରି ସାତ୍ୟକି ତାହାଙ୍କର ଜ୍ୟା-ଯୁକ୍ତ ଧନୁକୁ ଶତବାର କର୍ତ୍ତନ କଲେ । ୩୯ ।

ହେ ରାଜେନ୍ଦ୍ର ! ସେ ଦୁହେଁ କେଉଁ ସମୟରେ ଅସ୍ତ୍ର ଗ୍ରହଣ ଓ ଛେଦନ କରୁଥିଲେ, ତାହା କିଞ୍ଚିନ୍ମାତ୍ର ଦୃଷ୍ଟ ହେଉ ନ ଥିଲା । ତଦନନ୍ତର ଦ୍ରୋଣ ସଂଗ୍ରାମରେ ସାତ୍ୟକିଙ୍କର ଅଲୌକିକ କର୍ମ ଅବଲୋକନ କରି ମନେ ମନେ ଚିନ୍ତା କଲେ ଯେ, ସାତ୍ୱତକୁଳ-ଭୂଷଣ ସାତ୍ୟକିଙ୍କର ଯେପରି ଅସ୍ତ୍ରବଳ ଦେଖୁଅଛୁ, ଏହିପରି ଅସ୍ତ୍ରବଳ ପରଶୁରାମଙ୍କର, କାର୍ତ୍ତବୀର୍ଯ୍ୟ

ଅର୍ଜ୍ଜୁନଙ୍କର ଓ ପୁରୁଷବ୍ୟାଘ୍ର ଭୀଷ୍ମଙ୍କର ଥିଲା ଓ ପାଣ୍ଡୁତନୟ ଧନଞ୍ଜୟଙ୍କର ସେହିପରି ଅସ୍ତ୍ରବଳ ବିଦ୍ୟମାନ ଅଛି । ଏହା ଭାବି ମନେ ମନେ ସାତ୍ୟକଙ୍କ ବିକ୍ରମକୁ ପ୍ରଶଂସା କଲେ । ୪୨ । ଅସ୍ତ୍ରଜ୍ଞପ୍ରବର ଦ୍ୱିଜସତ୍ତମ ଦ୍ରୋଣ ସୁରପତି ବାସବଙ୍କ ସଦୃଶ ସାତ୍ୟକଙ୍କ ହସ୍ତଲାଘବ ଅବଲୋକନ କରି ଯେପରି ସନ୍ତୁଷ୍ଟ ହେଲେ, ଇନ୍ଦ୍ରାଦି ଦେବଗଣ ମଧ୍ୟ ସେହିପରି ସନ୍ତୁଷ୍ଟ ହେଲେ । ୪୩ । ଦେବ, ଗନ୍ଧର୍ବ, ସିଦ୍ଧ ଓ ଚାରଣଗଣ ଶୀଘ୍ରଗାମୀ ଯୁଯୁଧାନଙ୍କର ଯେ ଏ ପ୍ରକାର ଲଘୁହସ୍ତତା ଅଛି, ତାହା ପୂର୍ବରେ ଜାଣି ନ ଥିଲେ । ପରନ୍ତୁ ଦ୍ରୋଣଙ୍କର ତାଦୃଶ କର୍ମ ସେମାନେ ଅବଗତ ଥିଲେ ।

ହେ ଭାରତ ! ତଦନନ୍ତର କ୍ଷତ୍ରିୟମର୍ଦ୍ଦନ ଅସ୍ତ୍ରଜ୍ଞ-ଶ୍ରେଷ୍ଠ ଦ୍ରୋଣ ଅନ୍ୟ ଶରାସନ ଗ୍ରହଣ କରି ଅସ୍ତ୍ରଯୁଦ୍ଧ କଲେ । ସାତ୍ୟକ ତାହାଙ୍କର ଅସ୍ତ୍ର-ସମୂହକୁ ଅସ୍ତ୍ରମାୟାଦ୍ୱାରା ପ୍ରତିହତ କରି ସୁଶାଣିତ ବାଣସମୂହରେ ତାହାଙ୍କୁ ଦହନ କଲେ । ତାହା ଅଦ୍ଭୁତପ୍ରାୟ ହେଲା । ସାତ୍ୟକଙ୍କର ଅନ୍ୟର ଅସ-ଦୃଶ ଯୋଗଯୁକ୍ତ ଅଲୌକିକ କର୍ମକୁ ଅବଲୋକନ କରି ଆପଣଙ୍କ ପକ୍ଷର ଅସ୍ତ୍ରଯୋଗଜ୍ଞ ଯୋଦ୍ଧାମାନେ ତାହାଙ୍କର ପ୍ରଂଶସା କଲେ । ଦ୍ରୋଣ ଯେପରି ଅସ୍ତ୍ର କ୍ଷେପଣ କରୁଥିଲେ, ସାତ୍ୟକ ମଧ୍ୟ ସେହିପରି ଅସ୍ତ୍ର ନିକ୍ଷେପ କରୁଥିଲେ । ୪୮ ।

ଶତ୍ରୁତାପନ ଆଚାର୍ଯ୍ୟ ଅବଶ୍ଲୀଳାକ୍ରମେ ତାହାଙ୍କ ସହିତ ଯୁଦ୍ଧ କଲେ । ହେ ମହାରାଜ ! ତଦନନ୍ତର ଧନୁର୍ବେଦପାରଦର୍ଶୀ କ୍ରୋଧପରାୟଣ ଦ୍ରୋଣ ଯୁଯୁଧାନଙ୍କର ବଧନିମିତ୍ତ ଦିବ୍ୟ ଆଗ୍ନେୟ ଅସ୍ତ୍ର ଆବିର୍ଭୂତ କଲେ । ମହାଧନୁର୍ଦ୍ଧର ସାତ୍ୟକ ଶତ୍ରୁଘାତୀ ମହାଭୟାନକ ଆଗ୍ନେୟାସ୍ତ୍ରକୁ ଅବଲୋକନ କରି ଦିବ୍ୟ ବାରୁଣାସ୍ତ୍ର ପ୍ରାଦୁର୍ଭୂତ କଲେ । ସେହି ଦିବ୍ୟାସ୍ତ୍ରଧାରୀ ଦୁଇଜଣଙ୍କୁ ଅବଲୋକନ କରି ମହା ହାହାକାର ଶବ୍ଦ ହେଲା । ୫୧ । ସେହି ସମୟରେ ଆକାଶରେ ଆକାଶଗାମୀ ପ୍ରାଣିମାନେ ବିଚରଣ କଲେ ନାହିଁ । ଉଭୟେ ବାରୁଣ ଓ ଆଗ୍ନେୟାସ୍ତ୍ର ଶରାସନରେ ସମାହିତ କଲେ ସତ୍ୟ, କିନ୍ତୁ ଉଭୟ ଅସ୍ତ୍ର ପ୍ରୟୋଗାଭିମୁଖ ହେଲନାହିଁ, ସେହି ସମୟରେ ଭାସ୍କର ପଶ୍ଚିମ ଦିଗକୁ ଯିବା ନିମନ୍ତେ କିଞ୍ଚିତ୍ ଲମ୍ବମାନ ହେଲେ ।

ତଦନନ୍ତର ରାଜା ଯୁଧିଷ୍ଠିର, ଭୀମସେନ, ନକୁଳ, ସହଦେବ ଓ ଧୃଷ୍ଟଦ୍ୟୁମ୍ନପ୍ରମୁଖ ବୀରମାନଙ୍କ ସହିତ ବିରାଟ, କେକୟ, ମତ୍ସ୍ୟଦେଶୀୟ, ବୀରଗଣ ଓ ଶାଲ୍ୱସୈନ୍ୟମାନେ ସାତ୍ୟକିଙ୍କୁ ରକ୍ଷା କରିବା ନିମିତ୍ତ ତ୍ୱରାନ୍ୱିତ ହୋଇ ଦ୍ରୋଣଙ୍କ ସମୀପରେ ସମାଗତ ହେଲେ ଓ ସହସ୍ର ସହସ୍ର ରାଜପୁତ୍ର ଦୁଃଶାସନକୁ ଅଗ୍ରବର୍ତ୍ତୀ କରି ଶତ୍ରୁବେଷ୍ଟିତ ଦ୍ରୋଣଙ୍କୁ ରକ୍ଷା କରିବା ଅଭିଳାଷରେ ଆଗମନ କଲେ । ହେ ଭୂପାଳ ! ତତ୍ପରେ ସେମାନଙ୍କ ସହିତ ଆପଣଙ୍କ ପକ୍ଷୀୟ ଧନୁର୍ଦ୍ଧାରୀ ଯୋଦ୍ଧାମାନଙ୍କର ଘୋରତର ଯୁଦ୍ଧ ହେଲା । ସେହି ସମୟରେ ଜଗତ୍ ଧୂଳିଦ୍ୱାରା ସମାବୃତ ଓ ଶରଜାଲରେ ସମାଚ୍ଛନ୍ନ ହେଲା । ସୈନ୍ୟମାନେ ଧୂଳିବିଧ୍ୱସ୍ତ ହେଲେ । ସମସ୍ତେ ଆବଗ୍ନ ଓ ମର୍ଯ୍ୟାଦାଶୂନ୍ୟ ହେଲେ । କିଛି ହିଁ ଦୃଷ୍ଟିଗୋଚର ହେଲା ନାହିଁ ।୫୭ ।

---

# ୯୯ ଅଧ୍ୟାୟ

ସଞ୍ଜୟ କହିଲେ,—ହେ ମହୀପାଳ ! ଆଦିତ୍ୟ ଅସ୍ତାଚଳ ଶିଖର ପ୍ରତି ବିବର୍ତ୍ତିମାନ, ଧୂଳିସମାଚ୍ଛନ୍ନ ଓ ମନ୍ଦୀଭୂତ ହେଲେ । ୧ । ଯୁଧ୍ୟମାନ ସୈନ୍ୟମାନେ କେତେବେଳେ ରଣସ୍ଥଳରେ ଅବସ୍ଥିତ, କେତେବେଳେ ପୁନରାଗତ, କେତେବେଳେ ଭଗ୍ନ ହୋଇ ପଳାୟମାନ, କେତେବେଳେ ଅବା ଜୟଯୁକ୍ତ ହେଉ ହେଉ ସେହି ଦିବସ କ୍ରମେ କ୍ରମେ ଗତ ହେଲା । ୨ । ସୈନ୍ୟମାନେ ଜୟାଭିଳାଷୀ ହୋଇ ଯୁଦ୍ଧରେ ଆସକ୍ତ ହୁଅନ୍ତେ ଅର୍ଜ୍ଜୁନ ଓ ବାସୁଦେବ ସିନ୍ଧୁପତି ଜୟଦ୍ରଥଙ୍କ ସମୀପକୁ ଗମନ କଲେ । କୃଷ୍ଣ ଯେଉଁ ଯେଉଁ ସ୍ଥାନକୁ ରଥ ଚାଳିତ କଲେ, ଅର୍ଜ୍ଜୁନ ସେହି ସ୍ଥାନରେ ଶାଣିତ ଶରସମୂହଦ୍ୱାରା ରଥଗମନର ଉପଯୁକ୍ତ ସଞ୍ଚାରପଥ କରିଦେଲେ । ୪ । ମହାତ୍ମା ଅର୍ଜ୍ଜୁନଙ୍କ ରଥ ଯେଉଁ ସ୍ଥାନକୁ ଗମନ କଲା, ସେହି ସ୍ଥାନରେ ଆପଣଙ୍କର ସୈନ୍ୟମାନେ ବିବର୍ଣ୍ଣ ହେଲେ ।୫। ଦାଶାର୍ହନନ୍ଦନ ବୀର୍ଯ୍ୟବାନ୍ କୃଷ୍ଣ ଉତ୍ତମ, ମଧ୍ୟମ ଓ ମନ୍ଦଭାବରେ ମଣ୍ଡଳାକାର ଗତି ପ୍ରଦର୍ଶନ କରାଇ ରଥଚାଳନାରେ ଶିକ୍ଷାନୈପୁଣ୍ୟ ପ୍ରକାଶ କଲେ । ୬ ।

ସେହି ସମରରେ ପକ୍ଷିଗଣ ଯେପରି ପ୍ରାଣିମାନଙ୍କର ରୁଧିର ପାନ କରୁଥିଲେ, ଅର୍ଜୁନନିକ୍ଷିପ୍ତ ନାମାଙ୍କିତ ପୀତ କାଳାଗ୍ନିସଦୃଶ ସ୍ନାୟୁନଦ୍ଧ ସୁପଙ୍ଖବିଶିଷ୍ଟ ସ୍ଥୂଳ, ଦୀର୍ଘଗାମୀ, ଉଗ୍ରରୂପ, ବେଣୁମୟ ଓ ଲୌହମୟ ବାଣସମସ୍ତ ବହୁବିଧ ଶତ୍ରୁଙ୍କ ସଂହାର କରି ଶୋଣିତ ପାନ କଲେ । ୮ । ଅର୍ଜୁନ ରଥରେ ଆରୋହଣ କରି ଅଗ୍ରେ ଏକ ଦୂରରୁ ଯେଉଁ ସବୁ ଶର ନିକ୍ଷେପ କରନ୍ତି, ତାହାଙ୍କ ରଥ ଏକକ୍ରୋଶ ପଥ ଅତିକ୍ରାନ୍ତ ହୋଇଗଲା ପରେ ସେହି ସମସ୍ତ ବାଣ ଶତ୍ରୁମାନଙ୍କୁ ସଂହାର କରେ ।

କୃଷ୍ଣ ଏତାଦୃଶ ଦ୍ରୁତବେଗରେ ଗରୁଡ଼ ଓ ବାୟୁତୁଲ୍ୟ ବେଗଶୀଳ ସାଧୁବାହକ ବାଜିମାନଙ୍କ ଦ୍ୱାରା ଅଖିଳ ଜଗତକୁ ବିସ୍ମିତ କଲେ । ୧୦ । ହେ ମହାରାଜ ! ମନତୁଲ୍ୟ ଶୀଘ୍ରଗାମୀ ଅର୍ଜୁନଙ୍କର ରଥ ଯେପରି ବେଗରେ ଗମନ କରିବାକୁ ଆରମ୍ଭ କଲା, ସେହିପ୍ରକାର ବେଗରେ ସୂର୍ଯ୍ୟଙ୍କ ରଥ, ଇନ୍ଦ୍ରଙ୍କ ରଥ, ରୁଦ୍ରଙ୍କ ରଥ, କୁବେରଙ୍କ ରଥ ବା ଅନ୍ୟ କାହାରି ରଥ ପୂର୍ବେ କେବେହେଁ ଗମନ କରିନାହିଁ । ୧୨ ।

ହେ ଭୂପାଳ ! ପରବୀରହନ୍ତା କେଶବ ସମରରେ ସେନାମଧ୍ୟରେ ପ୍ରବେଶ କରି ଅଶ୍ୱମାନଙ୍କୁ ଚାଳନା କଲେ । ଅନନ୍ତର ତାହାଙ୍କର ଶ୍ରେଷ୍ଠ ଅଶ୍ୱସବୁ ବହୁ ଯୁଦ୍ଧଶୌଣ୍ଡ ଯୋଦ୍ଧାମାନଙ୍କର ଅନେକାନେକ ଅସ୍ତ୍ରଶସ୍ତ୍ର ଦ୍ୱାରା କ୍ଷତବିକ୍ଷତ, ଶ୍ରାନ୍ତ ଓ କ୍ଷୁତ୍ପିପାସାରେ କାତର ହୋଇ ଓ ପର୍ବତାକାର ସହସ୍ର ସହସ୍ର ଅଶ୍ୱ, ହସ୍ତୀ, ରଥ ଓ ମନୁଷ୍ୟମାନଙ୍କର ମୃତଦେହ ଉପରେ ଅତିକ୍ରାନ୍ତ ହେଉଥିଲେ । ଏଣୁ ସୈନ୍ୟମାନଙ୍କ ମଧ୍ୟରେ ଓ ରଥସମୂହର ମଧ୍ୟସ୍ଥଳରେ ସେହି ଅଶ୍ୱମାନେ ଅତିଶୟ କଷ୍ଟରେ ରଥ ବହନ କଲେ ଓ ପୁନଃ ପୁନଃ ବିଚିତ୍ର ମଣ୍ଡଳାକାରରେ ବିଚରଣ କରିବାକୁ ଆରମ୍ଭ କଲେ । ୧୨ ।

ହେ ମହାରାଜ ! ଏହି ସମୟରେ ଅବନ୍ତୀରାଜ ବୀର୍ଯ୍ୟସମ୍ପନ୍ନ ବିନ୍ଦ ଓ ଅନୁବିନ୍ଦ, ଏ ଦୁଇଭ୍ରାତା ସୈନ୍ୟସମାବୃତ ହୋଇ କ୍ଳାନ୍ତବାହନ ଅର୍ଜୁନଙ୍କୁ ଆକ୍ରମଣ କଲେ । ୧୭ । ସେ ଦୁହେଁ ହର୍ଷସହକାରେ ଚତୁଃଷଷ୍ଟିଶରଦ୍ୱାରା ଅର୍ଜୁନଙ୍କୁ, ସପ୍ତତି ଶରଦ୍ୱାରା ଜନାର୍ଦ୍ଦନଙ୍କୁ ଓ ଶତ ଶରଦ୍ୱାରା ଅର୍ଜୁନଙ୍କର

ଅଶ୍ୱମାନଙ୍କୁ ବଧ କଲେ । ୧୮ । ରଣମର୍ମଜ୍ଞ ଅର୍ଜୁନ ସକ୍ରୁଦ୍ଧ ହୋଇ ମର୍ମଭେଦୀ ନଅଗୋଟି ନତପର୍ବ ବାଣଦ୍ୱାରା ସେ ଦୁହିଁଙ୍କୁ ବଧ କଲେ । ୧୯ ।

ଅନନ୍ତର ସେ ଦୁହେଁ ସରବ୍ଧ ହୋଇ କୃଷ୍ଣଙ୍କ ସହିତ ଅର୍ଜୁନଙ୍କୁ ଶରସମୂହଦ୍ୱାରା ସମାଚ୍ଛନ୍ନ କରି ସିଂହନାଦ କଲେ । ୨୦ । ଶ୍ୱେତବାହନ ଦୁଇଗୋଟି ଭଲ୍ଲଦ୍ୱାରା ଅବିଳମ୍ବେ ସେ ଦୁହିଁଙ୍କର ବିଚିତ୍ର ଶରାସନଦ୍ୱୟକୁ ଓ କନକୋଜ୍ଜ୍ୱଳ ଧ୍ୱଜଯୁଗଳକୁ ଛେଦନ କଲେ । ୨୧ । ହେ ରାଜନ୍ ! ସେ ଦୁହେଁ ଅତିଶୟ କ୍ରୋଧାବିଷ୍ଟ ହୋଇ ଅନ୍ୟ ଶରାସନ ଗ୍ରହଣପୂର୍ବକ ଶରନିକର ଦ୍ୱାରା ଅର୍ଜୁନଙ୍କୁ ପୀଡ଼ିତ କଲେ । ୨୨ । ପାଣ୍ଡୁନନ୍ଦନ ମଧ୍ୟ ଅତିଶୟ କ୍ରୁଦ୍ଧ ହୋଇ ଦୁଇଗୋଟି ଶରଦ୍ୱାରା ସେମାନଙ୍କର ଶରାସନଦ୍ୱୟକୁ ପୁନର୍ବାର ଛେଦନ କଲେ । ୨୩ । ଶିଳାଶାଣିତ ରୁକ୍ମପୁଙ୍ଖ ଅନ୍ୟ ଶରସମୂହଦ୍ୱାରା ସେମାନଙ୍କର ଅଶ୍ୱମାନଙ୍କୁ ସାରଥିଦ୍ୱୟକୁ ଓ ପଦାନୁଗ ପୃଷ୍ଠରକ୍ଷକଦ୍ୱୟଙ୍କୁ ନିହତ କଲେ । ୨୪ । ତତ୍ପରେ ଗୋଟିଏ କ୍ଷୁରପ୍ର ଅସ୍ତ୍ରଦ୍ୱାରା ଜ୍ୟେଷ୍ଠଭ୍ରାତା ବିନ୍ଦଙ୍କର ମସ୍ତକ ଛେଦନ କଲେ । ବିନ୍ଦ ନିହତ ହୋଇ ବାତଭଗ୍ନ ବୃକ୍ଷ-ସଦୃଶ ପୃଥିବୀତଳେ ପତିତ ହେଲେ । ୨୫ ।

ରଥିଶ୍ରେଷ୍ଠ, ମହାରଥ, ବଳବାନ୍, ପ୍ରତାପାନ୍ୱିତ ଅନୁବିନ୍ଦ ବିନ୍ଦଙ୍କୁ ନିହତ ହେବାର ନିରୀକ୍ଷଣ କରି ଭ୍ରାତୃବଧରେ ଦୁଃଖିତ ହୋଇ ଅଶ୍ୱହୀନରଥ ପରିତ୍ୟାଗପୂର୍ବକ ଗଦା ଗ୍ରହଣ କରି ନୃତ୍ୟ କରି କରି ଧାବମାନ ହେଲେ । ୨୬ । ଅନନ୍ତର ସେହି ଗଦା ମଧୁସୂଦନଙ୍କର ଲଲାଟରେ ଆଘାତ କରି ମୈନାକପର୍ବତତୁଲ୍ୟ ତାହାଙ୍କୁ କମ୍ପିତ କରି ପାରିଲେ ନାହିଁ । ୨୮ । ଅର୍ଜୁନ ଛଅଗୋଟି ଶରରେ ତାହାଙ୍କର ଗ୍ରୀବା, ଦୁଇପାଦ, ଦୁଇହସ୍ତ ଓ ମସ୍ତକ ଛେଦନ କଲେ । ଅନୁବିନ୍ଦ ଛିନ୍ନ ହୋଇ ପର୍ବତସଦୃଶ ନିପତିତ ହେଲେ । ୨୯ ।

ଅନନ୍ତର ସେହି ଦୁଇ ଭ୍ରାତାଙ୍କୁ ନିହତ ହେବାର ନିରୀକ୍ଷଣ କରି ସେମାନଙ୍କର ପଦାନୁଗ ସୈନ୍ୟମାନେ କ୍ରୋଧସହକାରେ ଶତଶତ ଶର ନିକ୍ଷେପ କରୁଁ କରୁଁ ଅର୍ଜୁନଙ୍କ ନିକଟକୁ ଧାବମାନ ହେଲେ । ୩୦ । ହେ ଭରତର୍ଷଭ ! ଅର୍ଜୁନ ତୀକ୍ଷ୍ଣ ତୀକ୍ଷ୍ଣ ଶରସମୂହଦ୍ୱାରା ସେମାନଙ୍କୁ ସଂହାର

କରି ହିମରଶ୍ମିର ଅବସାନରେ ଦାହକାରୀ ଦାବାନଳସଦୃଶ ପ୍ରକାଶ ପାଇଲେ । ୩୧ ।

ଅନନ୍ତର ଯେପରି ଦିବାକର ମେଘପଟଳ ଭେଦ କରି ଉଦିତ ହୁଅନ୍ତି, ସେହିପରି ଅର୍ଜୁନ ବିନ୍ଦାନୁବିନ୍ଦଙ୍କ ସୈନ୍ୟମାନଙ୍କୁ ଅତ୍ୟନ୍ତ କଷ୍ଟରେ ଅତିକ୍ରମ କରି ଦୀପ୍ତି ପାଇଲେ । ୩୨ । ହେ ଭରତକୁଳନନ୍ଦନ ! ତାହା ଅବଲୋକନ କରି କୁରୁଗଣ ତ୍ରସ୍ତ, ପ୍ରହୃଷ୍ଟ ହୋଇ ପୁନର୍ବାର ଅର୍ଜୁନଙ୍କର ଚତୁର୍ଦ୍ଦିଗକୁ ପରିବେଷ୍ଟନ କଲେ । ୩୩ । ସେମାନେ ଅର୍ଜୁନଙ୍କୁ ଶ୍ରାନ୍ତ ଓ ସିନ୍ଧୁପତିଙ୍କୁ ଦୂରସ୍ଥିତ ମନେ କରି ମହାସିଂହନାଦ ଦ୍ୱାରା ସମସ୍ତ ଦିଗକୁ ସମାଚ୍ଛନ୍ନ କଲେ । ୩୪ ।

ହେ ପୁରୁଷପ୍ରବର ! ଅର୍ଜୁନ ସେମାନଙ୍କୁ ଅତିସଂରବ୍ଧ ହେବା ଅବଲୋକନ କରି ଈଷଦ୍‌ହାସ୍ୟପୂର୍ବକ କୃଷ୍ଣଙ୍କୁ ଧୀରେ ଧୀରେ କହିଲେ । ୩୫ । ହେ କୃଷ୍ଣ ! ବର୍ତ୍ତମାନ ଅଶ୍ୱମାନେ ଶରପୀଡ଼ିତ ଓ କ୍ଲାନ୍ତ ହୋଇଅଛନ୍ତି ଏବଂ ସିନ୍ଧୁପତି ମଧ୍ୟ ଦୂରରେ ଅବସ୍ଥାନ କରିଅଛି । ଏହାପରେ କି କର୍ତ୍ତବ୍ୟ ? ତୁମ୍ଭଙ୍କୁ ଯେପରି ଭଲ ବୋଧ ହୁଏ, ସେହିପରି ବିବେଚନା କରି କହ । ଯେହେତୁ ତୁମ୍ଭ ପ୍ରଜ୍ଞାର ବ୍ୟତିକ୍ରମ କଦାଚ ହୁଏ ନାହିଁ । ତୁମ୍ଭେ ଯେତେବେଳେ ପାଣ୍ଡବମାନଙ୍କର ନେତା ହୋଇଅଛ, ସେତେବେଳେ ସେମାନେ ନିଶ୍ଚୟ ଶତ୍ରୁଜୟୀ ହେବେ । ୩୭ । ବର୍ତ୍ତମାନ ଆମ୍ଭେ ଯାହା କର୍ତ୍ତବ୍ୟ ବିବେଚନା କରୁଅଛୁ, ତାହା ଶ୍ରବଣ କର । ହେ ମାଧବ ! ଅଶ୍ୱମାନଙ୍କୁ ବନ୍ଧନମୁକ୍ତ କରି ସେମାନଙ୍କର ଶଲ୍ୟାପନୟନ କର । ୩୮ । ଅର୍ଜୁନ ମାଧବଙ୍କୁ ଏହିପ୍ରକାରେ କହନ୍ତେ, ମାଧବ ପ୍ରତ୍ୟୁତ୍ତର କଲେ, ହେ ପାର୍ଥ ! ତୁମ୍ଭେ ଯାହା କହିଲ, ତାହା ଆମ୍ଭର ମଧ୍ୟ ସମ୍ମତ । ୩୯ ।

ଅର୍ଜୁନ କହିଲେ— ହେ କେଶବ ! ତୁମ୍ଭେ ଏହିସ୍ଥାନରେ ସେକାର୍ଯ୍ୟ ସମ୍ପାଦନ କର ! ଆମ୍ଭେ ସମୁଦାୟ ସୈନ୍ୟଙ୍କୁ ନିବାରଣ କରିବୁଁ । ୪୦ ।

ସଞ୍ଜୟ କହିଲେ— ଧନଞ୍ଜୟ ଅସମ୍ଭ୍ରାନ୍ତଚିତ୍ତରେ ରଥରୁ ଅବତୀର୍ଣ୍ଣ ହୋଇ ଗାଣ୍ଡୀବଗ୍ରହଣପୂର୍ବକ ଅଚଳ ଗିରିସଦୃଶ ଅବସ୍ଥାନ କଲେ । ୪୧ । ଧନଞ୍ଜୟ ଧରଣୀସ୍ଥ ହେବାରୁ ବିପକ୍ଷ କ୍ଷତ୍ରିୟମାନେ ସେହି ଛିଦ୍ର ପ୍ରାପ୍ତ ହୋଇ

ଜୟାଭିଳାଷରେ ସିଂହନାଦ କରି ତାହାଙ୍କ ପ୍ରତି ଧାବମାନ ହେଲେ । ୪୨ । ସେମାନେ କ୍ରୁଦ୍ଧ ହୋଇ ମହାରଥସମୂହଦ୍ୱାରା ପାର୍ଥଙ୍କୁ ପରିବେଷ୍ଟନ କରି ଶରାସନବିକର୍ଷଣ, ବିଚିତ୍ର ଅସ୍ତ୍ରପ୍ରଦର୍ଶନ ଓ ବାଣବିମୋଚନଦ୍ୱାରା ମେଘ ଯେପରି ଦିବାକରଙ୍କୁ ଆଚ୍ଛନ୍ନ କରେ, ତଦ୍ରୂପ ପାର୍ଥଙ୍କୁ ସମାଚ୍ଛନ୍ନ କଲେ । ୪୪ । ଯେପରି ବହୁ ମତ୍ତହସ୍ତୀ ଗୋଟିଏ ସିଂହକୁ ଆକ୍ରମଣ କରିବାକୁ ଧାବମାନ ହୁଅନ୍ତି, ସେହିପରି ସେହିସମସ୍ତ ମହାରଥ କ୍ଷତ୍ରିୟମାନେ କ୍ଷତ୍ରିୟ-ଶ୍ରେଷ୍ଠ ନରଶ୍ରେଷ୍ଠ ଅର୍ଜୁନଙ୍କ ନିକଟକୁ ବେଗରେ ଧାବମାନ ହେଲେ ।୪୫।

ସେହି ସ୍ଥାନରେ ଆମ୍ଭେ ଅର୍ଜୁନଙ୍କର ଭୁଜଦ୍ୱୟର ମହାବଳ ଅବଲୋକନ କଲୁଁ । ସେ ଏକାକୀ ଚତୁର୍ଦ୍ଦିଗର ବହୁଳ କ୍ରୁଦ୍ଧସେନାମାନଙ୍କୁ ନିବାରଣ କଲେ । ୪୬ । ବିଭୁ ପାର୍ଥ ଅସ୍ତ୍ରଦ୍ୱାରା ବିପକ୍ଷମାନଙ୍କର ଅସ୍ତ୍ର-ସମୂହକୁ ନିବାରିତ କରି ହସ୍ତଲାଘବସହକାରେ ବହୁଳ ଶରଦ୍ୱାରା ସେ ସମସ୍ତଙ୍କୁ ସମାଚ୍ଛନ୍ନ କଲେ । ୪୭ ।

ହେ ନରନାଥ ! ସେହି ସ୍ଥାନରେ ଅନ୍ତରୀକ୍ଷରେ ପ୍ରଗାଢ଼ ବାଣ-ସମୂହର ପରସ୍ପରସଂଘର୍ଷଣଦ୍ୱାରା ମହାଶିଖାନ୍ୱିତ ଅଗ୍ନି ଉତ୍ପାଦିତ ହେଲା । ୪୮ । କ୍ଷତବିକ୍ଷତ, ଶୋଣିତସିକ୍ତ ଅଶ୍ୱ ଓ ହସ୍ତିମାନେ, ନିନାଦସହକାରେ ଯୁଦ୍ଧରେ ଜୟାଭିଳାଷୀ, କ୍ରୋଧାବିଷ୍ଟ, ସଂରବ୍ଧ, ନିଃଶ୍ୱାସପ୍ରଶ୍ୱାସଯୁକ୍ତ ରୁଧିରସିକ୍ତ-କଳେବର, ଶତ୍ରୁକର୍ଷଣ, ଶତ୍ରୁପକ୍ଷ, ମହାଧନୁର୍ଦ୍ଧର, ଅନେକ ବୀର ଏକତ୍ରିତ ହୋଇ ଚତୁର୍ଦ୍ଦିଗରୁ ଆପତିତ ହେବାରୁ ଉତ୍ତାପ ଉପସ୍ଥିତ ହେଲା । ୫୦ । ସେହି ସମୟରେ ଏକତ୍ରିତ ସେହି ରଥଗଣ ସାଗରରୂପରେ ଶୋଭା ପାଇଲେ । ଶରସମୂହ ସେ ଦୁର୍ଗମ୍ୟ ରଥସାଗରର ବେଗ, ଧ୍ୱଜ ତାହାର ଆବର୍ତ୍ତ, ଗଜ ତାହାର ନକ୍ର, ପଦାତି ତାହାର ମତ୍ସ୍ୟ, ଶଙ୍ଖ-ଦୁନ୍ଦୁଭି-ଧ୍ୱନି ତାହାର ନିଃସ୍ୱନ ଗର୍ଜ୍ଜନ, ରଥ ତାହାର ଊର୍ମି, ନରମାନଙ୍କର ଉଷ୍ଣୀଷ ତାହାର କଚ୍ଛପ, ପତାକା ତାହାର ଫେନ ଓ ମାତଙ୍ଗଶରୀର ତାହାର ପ୍ରସ୍ତରଖଣ୍ଡ ହୋଇଥିଲା । ପାର୍ଥ ତହିଁରେ ବେଳାଭୂମିସଦୃଶ ହୋଇ ସେହି ଅସୀମ ଅକ୍ଷୋଭ୍ୟ, ଅପାର ରଥସାଗରକୁ ଶରନିକରଦ୍ୱାରା ନିବାରଣ କଲେ ।୫୩।

ଧୃତରାଷ୍ଟ୍ର କହିଲେ—ହେ ସଞ୍ଜୟ ! ଯେଉଁ ସମୟରେ ଧନଞ୍ଜୟ ଭୂମିରେ ପଦାର୍ପଣ କରିଥିଲେ ଓ କେଶବ ଅଶ୍ୱରଜ୍ଜୁ ଧାରଣ କରିଥିଲେ,

ସେହି ସମୟରେ ରାଜାମାନେ କି ନିମିତ୍ତ ଅର୍ଜ୍ଜୁନଙ୍କୁ ବିନଷ୍ଟ କଲେ ନାହିଁ ? ୫୪ ।

ସଞ୍ଜୟ କହିଲେ—ହେ ମହାରାଜ ! ଯେପରି ଏକମାତ୍ର ଲୋଭ ଗୁଣସମୂହକୁ ସଂହାର କରେ, ସେହିପରି ଏକମାତ୍ର ଅର୍ଜ୍ଜୁନ ଭୂମିସ୍ଥ ହୋଇ ରଥସ୍ଥ ସମୁଦାୟ ରାଜାଙ୍କୁ ତତ୍କ୍ଷଣାତ୍ ନିବାରଣ କଲେ । ୫୬ । ଅନନ୍ତର ମହାବାହୁ ଜନାର୍ଦ୍ଦନ ଅସମ୍ଭ୍ରାନ୍ତଚିତ୍ତରେ ପୁରୁଷସତ୍ତମ ପ୍ରିୟ ଅର୍ଜ୍ଜୁନଙ୍କୁ କହିଲେ । ୫୭ । ହେ ଅର୍ଜ୍ଜୁନ ! ଅଶ୍ୱମାନଙ୍କର ଜଳପାନ କରିବାର ଇଚ୍ଛା ହୋଇଅଛି ; କିନ୍ତୁ ଏହି ରଣସ୍ଥଳରେ ସେମାନଙ୍କର ପାନଯୋଗ୍ୟ ଜଳାଶୟ ନାହିଁ । ଅବଗାହନର ତାଦୃଶ ଆବଶ୍ୟକତା ନାହିଁ । ୫୮ ।

ଅର୍ଜ୍ଜୁନ ଅସମ୍ଭ୍ରାନ୍ତଚିତ୍ତରେ କହିଲେ, ଜଳାଶୟ ଏହିଠାବରେ ଅଛି । ଏହା କହି କ୍ଷଣକମଧ୍ୟରେ ଅସ୍ତ୍ରଦ୍ୱାରା ମେଦିନୀଖନନପୂର୍ବକ ଅଶ୍ୱମାନଙ୍କର ଜଳପାନନିମିତ୍ତ ସୁବିସ୍ତୀର୍ଣ୍ଣ ଅଗାଧଜଳସମ୍ପନ୍ନ ଗୋଟିଏ ଶୁଭ ସରୋବର ଉତ୍ପାଦନ କଲେ । ସେହି ସରୋବରରେ ହଂସ, କାରଣ୍ଡବ ଓ ଚକ୍ରବାକପକ୍ଷିମାନେ ଇତସ୍ତତଃ ବିଚରଣ କରୁଅଛନ୍ତି । ତାହାର ଜଳ ନିର୍ମଳ, ତହିଁରେ ଉତ୍ତମ ପ୍ରଫୁଲ୍ଲ ପଦ୍ମବନ ଶୋଭମାନ ହେଉଅଛି ଏବଂ କୂର୍ମ ଓ ମତ୍ସ୍ୟରାଜଦ୍ୱାରା ତାହା ସମାକୀର୍ଣ୍ଣ ହୋଇଅଛି । ଋଷିଗଣ ତାହା କୂଳରେ ଅବସ୍ଥାନ କରୁଅଛନ୍ତି । ଭଗବାନ୍ ନାରଦମୁନି ସେହି ସରୋବରକୁ ଦର୍ଶନ କରିବାରୁ ସୁଶୋଭିତ ହୋଇଅଛି । ୬୧ । ଯେପରି ବିଶ୍ୱକର୍ମା ଅଦ୍ଭୁତ କର୍ମ କରିଥାନ୍ତି, ସେହିପରି ଅର୍ଜ୍ଜୁନ ଶରରୂପ କାଷ୍ଠ, ଶରରୂପ ସ୍ତମ୍ଭ ଓ ଶରର ଆଚ୍ଛାଦନଦ୍ୱାରା ଗୋଟିଏ ଶରଗୃହ ନିର୍ମାଣ କଲେ । ୬୨ । ଅର୍ଜ୍ଜୁନ ସେହି ମହାରଣସ୍ଥଳରେ ଶରଗୃହ ପ୍ରସ୍ତୁତ କରନ୍ତେ କୃଷ୍ଣ ହାସ୍ୟପୂର୍ବକ ତାହାଙ୍କୁ ସାଧୁ ସାଧୁ ବୋଲି ପ୍ରଶଂସା କଲେ । ୬୩ ।

---

# ୧୦୦ ଅଧ୍ୟାୟ

ସଞ୍ଜୟ କହିଲେ—ହେ ମହୀପାଳ ! ମହାତ୍ମା କୁନ୍ତୀପୁତ୍ର ସେହି ସ୍ଥାନରେ ସଲିଳ ସମୁତ୍ପନ୍ନ, ଶତ୍ରୁସୈନ୍ୟନିବାରଣ ଓ ଶରଗୃହ ପ୍ରସ୍ତୁତ କରନ୍ତେ ମହାତେଜା ବାସୁଦେବ ରଥରୁ ଅବତୀର୍ଣ୍ଣ ହୋଇ କଙ୍କପୁଙ୍ଖଯୁକ୍ତ ବାଣସମୂହଦ୍ୱାରା ବ୍ୟଥିତ ଅଶ୍ୱମାନଙ୍କୁ ରଥରୁ ମୋଚନ କଲେ । ୨ । ସେହି ଅଦୃଷ୍ଟପୂର୍ବ ଅଲୌକିକ କାର୍ଯ୍ୟ ଅବଲୋକନ କରି ସିଦ୍ଧ, ଚାରଣଗଣ ଓ ସମସ୍ତ ସୈନ୍ୟ ସଦା ସାଧୁବାଦ କଲେ । ୩ । ଅର୍ଜ୍ଜୁନ ଭୂମିରେ ଅବସ୍ଥିତ ହୋଇ ଯୁଦ୍ଧ କରୁଥିଲେ ହେଁ, ପ୍ରଧାନ ଯୋଦ୍ଧାମାନେ ଯେ ତାହାଙ୍କୁ ପରାଜିତ କରିପାରିଲେ ନାହିଁ । ତାହା ଅଦ୍ଭୁତସଦୃଶ ହୋଇଥିଲା ।

ରଥସମୂହ ଓ ଅନେକ ଗଜ, ବାଜି, ତାହାଙ୍କୁ ଆକ୍ରମଣ କଲେ ମଧ୍ୟ ସେହି ସମୟରେ ସେ ଯେ ଅସମ୍ଭ୍ରାନ୍ତଚିତ୍ତରେ ଅବସ୍ଥିତ କଲେ, ତାହା ତାହାଙ୍କର ଅମାନୁଷିକ ଭାବ ବୋଲିବାକୁ ହେବ । ୫ । ବହୁ କ୍ଷତ୍ରିୟ ଏକତ୍ରିତ ହୋଇ ପରବୀରହନ୍ତା ଧର୍ମ୍ମାତ୍ମା ବାସବନନ୍ଦନଙ୍କ ଉପରେ ଶର-ନିକ୍ଷେପ କଲେ ହେଁ ସେ ତହିଁରେ ବ୍ୟଥିତ ହେଲେ ନାହିଁ । ୬ । ସାଗର-କର୍ତ୍ତୃକ ନଦୀଗ୍ରାସସଦୃଶ ସେହି ବୀର୍ଯ୍ୟବାନ୍ ପୁରୁଷ ସେମାନଙ୍କର ନିକ୍ଷିପ୍ତ ଓ ସମାଗତ ଗଦା, ପ୍ରାସ ଓ ଶରମାନଙ୍କୁ ଗ୍ରାସ କଲେ । ୭ । ସେ ବାହୁଦ୍ୱୟର ବଳରେ ଓ ମହାସ୍ତ୍ରବେଗଦ୍ୱାରା ସମୁଦାୟ କ୍ଷତ୍ରିୟ ବୀରଙ୍କର ନିକ୍ଷିପ୍ତ ଉତ୍ତମ ଉତ୍ତମ ଶରସମୂହକୁ ନିବାରଣ କଲେ । ୮ ।

ମହାତ୍ମା କୌରବମାନେ କୃଷ୍ଣାର୍ଜ୍ଜୁନଙ୍କର ସେହି ପରମାଦ୍ଭୁତ ବିକ୍ରମକୁ ଅବଲୋକନ କରି ପ୍ରଶଂସା କରି କହିଲେ—"କୃଷ୍ଣାର୍ଜ୍ଜୁନ ଯେ ରଣମଧ୍ୟରେ ଅଶ୍ୱମାନଙ୍କର ବନ୍ଧନ ମୋଚନ କରିଦେଲେ, ଏ ପ୍ରକାର ଅଦ୍ଭୁତ ବ୍ୟାପାର ଆଉ କେବେ ହେବ ନାହିଁ କି ହୋଇ ନାହିଁ" । ୧୦ । ଏହି ଦୁଇ ନରୋତ୍ତମ ରଣମଧ୍ୟରେ ନିର୍ଭୟ ହୋଇ ଉଗ୍ରତେଜ ଧାରଣପୂର୍ବକ ଆମ୍ଭମାନଙ୍କର ଅନ୍ତଃକରଣରେ ବିପୁଳ ଭୟର ସଞ୍ଚାର କଲେ । ୧୧ ।

ହେ ଭାରତ ! ପଦ୍ମଲୋଚନ କୃଷ୍ଣ ହାସ୍ୟପୂର୍ବକ ଅବ୍ୟାକୁଳଚିତ୍ତରେ ଆପଣଙ୍କର ସୈନ୍ୟଗଣ ସାକ୍ଷାତ୍ତରେ ରଣସ୍ଥଳରେ ଅର୍ଜ୍ଜୁନକୃତ ଶରଗୃହକୁ

ସ୍ତ୍ରୀଗଣମଧ୍ୟକୁ ନିର୍ଭୟରେ ଗମନ କଲପ୍ରାୟ ଅଶ୍ୱମାନଙ୍କୁ ନେଇ ଗମନ କଲେ । ୧୩ । ଅଶ୍ୱବିଷୟକକାର୍ଯ୍ୟଦକ୍ଷ କୃଷ୍ଣ ଅଶ୍ୱମାନଙ୍କର ଶ୍ରାନ୍ତ, ଗ୍ଲାନି ଫେନୋଦ୍‌ଗମ, ବେପଥୁ ଓ ଶରଜନିତ ବ୍ରଣ, ଏ ସମସ୍ତ ଅପନୋଦନ କରିଦେଲେ । ୧୪ । ଦୁଇ ହସ୍ତରେ ଅଶ୍ୱମାନଙ୍କର ଶଲ୍ୟୋଦ୍ଧାର କରି ଗାତ୍ରମାର୍ଜ୍ଜନ କରିଦେଲେ । ଅନନ୍ତର ଯଥାନ୍ୟାୟରେ ଅଶ୍ୱମାନଙ୍କୁ ପଦଗୃରଣ କରାଇ ଜଳପାନ ଓ ଭକ୍ଷ୍ୟ ଭୋଜନ କରାଇଲେ । ୧୫ । ଅଶ୍ୱମାନେ ସ୍ନାନ, ପାନ ଓ ଭକ୍ଷଣ କରି ବିଗତକ୍ଲମ ହୁଅନ୍ତେ କୃଷ୍ଣ ପ୍ରହୃଷ୍ଟ ହୋଇ ପୁନର୍ବାର ସେମାନଙ୍କୁ ରଥୋତ୍ତମରେ ଯୋଜନା କଲେ । ୧୬ ।

ଅନନ୍ତର ସର୍ବଶସ୍ତ୍ରଧାରି-ଶ୍ରେଷ୍ଠ ମହାତେଜା ଅର୍ଜ୍ଜୁନ ଓ କୃଷ୍ଣ ସେହି ରଥବରରେ ଆରୋହଣ କରି ଦ୍ରୁତବେଗରେ ଗମନ କଲେ । ୧୭ । ରଥିପ୍ରବର ଅର୍ଜ୍ଜୁନଙ୍କର ରଥରେ କୃତସ୍ନାନାଦି ଅଶ୍ୱମାନେ ପୁନର୍ବାର ଯୋଜିତ ହୋଇଅଛନ୍ତି, ଏହା ଦେଖି କୁରୁସୈନ୍ୟ ମଧ୍ୟରେ ପ୍ରଧାନ ପ୍ରଧାନ ଯୋଦ୍ଧାଗଣ ବିମନାୟମାନ ହେଲେ । ୧୮ । ସେମାନେ ପ୍ରତ୍ୟେକେ ଭଗ୍ନଦନ୍ତ ଭୁଜଙ୍ଗସଦୃଶ ଦୀର୍ଘ ନିଶ୍ୱାସ ପରିତ୍ୟାଗ କରି କହିଲେ ଯେ ଅର୍ଜ୍ଜୁନ ଓ କୃଷ୍ଣ ଗମନ କରୁଅଛନ୍ତି ; ଆମ୍ଭମାନଙ୍କୁ ଧିକ୍ । ୧୯ ।

ହେ ମହାରାଜ ! ଆପଣଙ୍କର ସୈନ୍ୟମାନେ କୃଷ୍ଣାର୍ଜ୍ଜୁନଙ୍କ ଅଦ୍ଭୁତ ଓ ଲୋମହର୍ଷଣ କାର୍ଯ୍ୟ ଅବଲୋକନ କରି ପରସ୍ପର କୁହାକୁହି ହେଲେ ଯେ, ତୁମ୍ଭେମାନେ କାହିଁକି ସତ୍ୱର ହେଉନାହିଁ ? ଆମ୍ଭମାନଙ୍କର ଏହି ସେନା ସମସ୍ତ କି ନାହାନ୍ତି ? ୨୦ । ସିଂହନାଦକାରୀ ସଯତ୍ନ କ୍ଷତ୍ରିୟମାନଙ୍କ ସାକ୍ଷାତ୍‌ରେ ସେ ଦୁଇଜଣ ବଦ୍ଧବର୍ମ୍ମା ଓ ଅନବରୁଦ୍ଧ ହୋଇ ବାଲ୍ୟକ୍ରୀଡ଼ା-ସଦୃଶ ଅବଲୀଳାକ୍ରମେ ଆମ୍ଭମାନଙ୍କ ସୈନ୍ୟଗଣଙ୍କୁ ଅବଜ୍ଞା କରି ସମସ୍ତ କ୍ଷତ୍ରିୟଗଣ ମଧ୍ୟରେ ଆତ୍ମବୀର୍ଯ୍ୟ ପ୍ରଦର୍ଶନପୂର୍ବକ ଗମନ କରୁଅଛନ୍ତି । ୨୨ । ଅନ୍ୟାନ୍ୟ ସେନାମାନେ କହିଲେ, କୃଷ୍ଣାର୍ଜ୍ଜୁନଙ୍କ ବଧନିମିତ୍ତ ତ୍ୱରାବାନ୍ ହୁଅ । କାରଣ, ସେମାନେ ସମସ୍ତ ଧନୁର୍ଦ୍ଧାରିଗଣଙ୍କ ସାକ୍ଷାତ୍‌ରେ ଆମ୍ଭମାନଙ୍କ ସୈନିକ ବୀରଗଣଙ୍କୁ ଅବଜ୍ଞା କରି ଜୟଦ୍ରଥଙ୍କ ସମୀପକୁ ଗମନ କରୁଅଛନ୍ତି । ୨୪ ।

କେହି କେହି ସଂଗ୍ରାମରେ କୃଷ୍ଣାର୍ଜୁନଙ୍କର ଅଦୃଷ୍ଟପୂର୍ବ ଏହି ମହତ୍ ଅଦ୍ଭୁତ କାର୍ଯ୍ୟ ଦର୍ଶନ କରି ପରସ୍ପର କୁହାକୁହି ହେଲେ ଯେ, ଦୁର୍ଯ୍ୟୋଧନଙ୍କ ଦୋଷରୁ ଯେ ସମୁଦାୟ ସେନା, କ୍ଷତ୍ରିୟଗଣ ଓ ରାଜା ଧୃତରାଷ୍ଟ୍ର ବିନଷ୍ଟ ହେଲେ ଏବଂ ସମସ୍ତ ପୃଥିବୀ ଯେ କ୍ଷୟପ୍ରାପ୍ତ ହେଲା ତାହା ରାଜା ବୁଝି ପାରୁନାହାନ୍ତି । ଏହିପରି କହି ସେହି ସମସ୍ତ କ୍ଷତ୍ରିୟ କ୍ରୁଦ୍ଧ ହେଲେ । ୨୭ । ସେମାନଙ୍କ ମଧ୍ୟରୁ ଅନେକେ ଏହା ମଧ୍ୟ କହିଲେ ଯେ, ସିନ୍ଧୁରାଜ ଯମାଳୟକୁ ଗମନ କଲେ ଯାହା କର୍ତ୍ତବ୍ୟ, ତାହା ବୃଥାଦର୍ଶୀ ଉପାୟାନଭିଜ୍ଞ ଦୁର୍ଯ୍ୟୋଧନ ବର୍ତ୍ତମାନ ଅନୁଷ୍ଠାନ କରନ୍ତୁ । ୨୮ ।

ତଦନନ୍ତର ଦିବାକର ପଶ୍ଚିମାଭିମୁଖକୁ ଗମନ କରିବାକୁ ଆରମ୍ଭ କରନ୍ତେ, ପାଣ୍ଡୁନନ୍ଦନ ଅର୍ଜୁନ କ୍ଷୁଧାତୃଷାଶୂନ୍ୟ, ପ୍ରହୃଷ୍ଟ ଅଶ୍ୱମାନଙ୍କଦ୍ୱାରା ସିନ୍ଧୁରାଜଙ୍କ ଉଦ୍ଦେଶ୍ୟରେ ଦ୍ରୁତ ବେଗରେ ଗମନ କଲେ । ୨୯ । କ୍ରୁଦ୍ଧ ଅନ୍ତକସଦୃଶ ସର୍ବଶସ୍ତ୍ରଧାରି-ଶ୍ରେଷ୍ଠ ମହାବାହୁ ଅର୍ଜୁନ ଗମନ କରନ୍ତେ ଯୋଧାଗଣ ତାହାଙ୍କୁ ନିବାରଣ କରିବାକୁ ସମର୍ଥ ହେଲେ ନାହିଁ । ୩୦ ।

ଶତ୍ରୁତାପନ ପାଣ୍ଡୁନନ୍ଦନ ଜୟଦ୍ରଥଙ୍କ ଅଭିମୁଖକୁ ଗମନାର୍ଥେ ମୃଗକୁଳନିହନ୍ତା ମୃଗରାଜସଦୃଶ କୌରବ ସୈନ୍ୟମାନଙ୍କୁ ବିଦ୍ରାବିତ ଓ ଆଲୋଡ଼ିତ କଲେ । ୩୧ । ବସୁଦେବପୁତ୍ର ସେନ୍ୟସାଗରମଧ୍ୟରେ ଅବଗାହନ-ପୂର୍ବକ ସତ୍ୱର ଅଶ୍ୱଚାଳନ ଓ ବକବର୍ଣ୍ଣ ପାଞ୍ଚଜନ୍ୟ ଶଙ୍ଖ ଧ୍ୱନି କଲେ ।୩୨। ପବନସଦୃଶ ବେଗବାନ୍ ଅଶ୍ୱମାନେ ଏପରି ଦ୍ରୁତବେଗରେ ଗମନ କଲେ ଯେ, ଅର୍ଜୁନ ଅଗ୍ରକୁ ବାଣ ନିକ୍ଷେପ କଲେ ତାହା ପଶ୍ଚାଦ୍ଭାଗକୁ ପତିତ ହେଉଥିଲା । ୩୩ ।

ଅନନ୍ତର ସମୁଦାୟ ନରପତି ଓ ଅନ୍ୟାନ୍ୟ କ୍ଷତ୍ରିୟଗଣ ଜୟଦ୍ରଥଙ୍କ ବଧାଭିଳାଷୀ ଧନଞ୍ଜୟଙ୍କୁ ପୁନର୍ବାର ଆକ୍ରମଣ କଲେ । ୩୪ ।

ଏହିପରି ସୈନ୍ୟମାନେ ଅର୍ଜୁନାଭିମୁଖକୁ ଗମନ କରନ୍ତେ ମହାରାଜ ଦୁର୍ଯ୍ୟୋଧନ ସତ୍ୱର ତାହାଙ୍କ ପଶ୍ଚାତ୍ ପଶ୍ଚାତ୍ ଧାବମାନ ହେଲେ । ୩୫ । ତାହାଙ୍କର ମେଘଗର୍ଜନସଦୃଶ ଶବ୍ଦାୟମାନ, ବାତବେଗୋଦ୍ଧୂତ ପତାକା-

ସମନ୍ୱିତ, ବାନରଧ୍ୱଜଚିହ୍ନିତଧ୍ୱଜସଂଯୁକ୍ତ ଭୟାନକ ରଥ ନିରୀକ୍ଷଣ କରି ଅନେକେ ବିଷଣ୍ଣ ହେଲେ । ତାହାଙ୍କର ଗମନକାଳରେ ଦିବାକର ସର୍ବପ୍ରକାରରେ ଧୂଳିସମାଚ୍ଛନ୍ନ ହେଲେ । ଯୋଦ୍ଧାମାନେ ତାହାଙ୍କର ଶରସମୂହଦ୍ୱାରା କୃଷ୍ଣାର୍ଜୁନଙ୍କ ପ୍ରତି ଦୃଷ୍ଟିପାତ କରିବାକୁ ମଧ୍ୟ ସମର୍ଥ ହେଲେ ନାହିଁ । ୩୭ ।

# ୧୦୧ ଅଧ୍ୟାୟ

ସଞ୍ଜୟ କହିଲେ—ହେ ନୃପ ! ବାସୁଦେବ ଓ ଧନଞ୍ଜୟଙ୍କୁ ଅତିକ୍ରାନ୍ତ ହେବାର ଅବଲୋକନ କରି ଆପଣଙ୍କ ପକ୍ଷୀୟ ଯୋଦ୍ଧାମାନଙ୍କର ମଜ୍ଜା ଧ୍ୱସ୍ତ ହେଲପ୍ରାୟ ହେଲା । ୧ । ପରନ୍ତୁ ସେମାନେ ସମଧିକ ମହାତ୍ମା ଓ ଲଜ୍ଜାଶୀଳ ଥିଲେ । ସୁତରାଂ ପ୍ରକୃତିପ୍ରେରିତ ଓ ସଂରବ୍ଧ ହୋଇ ସ୍ଥିରଚିତ୍ତରେ ଧନଞ୍ଜୟଙ୍କ ନିକଟକୁ ଗମନ କଲେ । ୨ । ଯେଉଁମାନେ ସେହି ଯୁଦ୍ଧରେ କ୍ରୋଧ ଓ ଅମର୍ଷରେ ପୂର୍ଣ୍ଣ ହୋଇ ଅର୍ଜୁନଙ୍କ ସମୀପକୁ ଗମନ କରିଅଛନ୍ତି, ସେମାନେ ନଦୀ ସାଗରକୁ ଗମନ କଲାସଦୃଶ ଅଦ୍ୟାପି ନିବୃତ୍ତ ହୋଇ-ନାହାନ୍ତି । ଏହା ଦେଖି ଅନେକ ଅସାଧୁ କ୍ଷତ୍ରିୟ ବେଦବିମୁଖ ନାସ୍ତିକତୁଲ୍ୟ ନରକଗମନର ଭୟ ପରିତ୍ୟାଗପୂର୍ବକ ସମର ଛାଡ଼ି ପଳାୟନ କଲେ ।୪।

ଯେପରି ଚନ୍ଦ୍ର ଓ ସୂର୍ଯ୍ୟ ରାହୁମୁଖରୁ ବିମୁକ୍ତ ହୋଇ ଲୋକମାନଙ୍କର ଦୃଷ୍ଟିଗୋଚର ହୁଅନ୍ତି, ସେହିପ୍ରକାର ସେହି ପୁରୁଷଶ୍ରେଷ୍ଠ କୃଷ୍ଣାର୍ଜୁନ ଦୁହେଁ ରଥସୈନ୍ୟମାନଙ୍କୁ ଅତିକ୍ରମ କରି ବିମୁକ୍ତ ହେବାର ଦେଖାଗଲେ । ୫ । ଯେପରି ଦୁଇଗୋଟି ମତ୍ସ୍ୟ ବୃହତ୍ ଜାଲକୁ ନିବାରଣ କରି ମୁକ୍ତ ହୁଅନ୍ତି, ସେହିପରି ସେ ଦୁହେଁ ସେନାଜାଲ ବିଦାରଣ କରି ମୁକ୍ତ ହେଲେ । ୬ । ଯେପରି ପ୍ରଳୟକାଳରେ ଦୁଇଗୋଟି ସୂର୍ଯ୍ୟ ଉଦୟ ହୁଅନ୍ତି, ସେହିପ୍ରକାର ସେହି ଦୁଇ ମହାତ୍ମା ଅତିଶୟ ଦୁର୍ଭେଦ୍ୟ ଦ୍ରୋଣସୈନ୍ୟରୁ ଓ ଶସ୍ତ୍ରସଂବାଧରୁ ମୁକ୍ତ ହେଲେ । ସେହି ଦୁଇ ମହାତ୍ମା ରଥସଙ୍କଟ ଓ ଶସ୍ତ୍ରସଂବାଧରୁ ଶତ୍ରୁ-ମାନଙ୍କୁ ବାଧାପ୍ରଦାନ କରୁ କରୁ ଉତ୍ତୀର୍ଣ୍ଣ ହେଲେ । ୮ । ସେମାନେ

ଅଗ୍ନିସମସ୍ପର୍ଶ ମକରମୁଖରୁ ଉତ୍ତୀର୍ଣ୍ଣ ମତ୍ସ୍ୟଦ୍ୱୟସଦୃଶ ଶସ୍ତ୍ରସଂବାଧରୁ ଉତ୍ତୀର୍ଣ୍ଣ ହେଲେ ଏବଂ ମକରକର୍ତ୍ତୃକ ସମୁଦ୍ରାଲୋଡ଼ନସଦୃଶ ସେନାଲୋଡ଼ନ କଲେ ।୯।

ଯେତେବେଳେ ସେମାନେ ଦ୍ରୋଣସୈନ୍ୟ ମଧ୍ୟରେ ଆପତିତ ହେଲେ, ସେତେବେଳେ ଆପଣଙ୍କ ପୁତ୍ରମାନେ ଓ ଅପରାପର ଯୋଦ୍ଧାମାନେ ମନେ କରିଥିଲେ ଯେ, ଏ ଦୁଇଜଣ ଦ୍ରୋଣଙ୍କ ହସ୍ତରୁ ଉତ୍ତୀର୍ଣ୍ଣ ହୋଇ ପାରିବେ ନାହିଁ । ୧୦ । କିନ୍ତୁ ବର୍ତ୍ତମାନ ସେମାନେ ମହାତେଜସ୍ୱୀ ସେହି ଦୁଇ ମହାତ୍ମାଙ୍କୁ ଦ୍ରୋଣସୈନ୍ୟ ମଧ୍ୟରୁ ଉତ୍ତୀର୍ଣ୍ଣ ହେବାର ଅବଲୋକନ କରି ସିନ୍ଧୁରାଜଙ୍କ ଜୀବନ ପ୍ରତି ହତାଶ କଲେ । ୧୧ । ହେ ମହୀପାଳ ! ଆପଣଙ୍କ ପୁତ୍ରମାନଙ୍କର ମଧ୍ୟ ଏହିପରି ବଳବତୀ ଆଶା ଥିଲା ଯେ, ଦ୍ରୋଣାଚାର୍ଯ୍ୟ ଓ କୃତବର୍ମାଙ୍କ ନିକଟରୁ କୃଷ୍ଣାର୍ଜ୍ଜୁନ ଉତ୍ତୀର୍ଣ୍ଣ ହୋଇ ପାରିବେ ନାହିଁ । ୧୨ । କିନ୍ତୁ ଶତ୍ରୁତାପନ ସେହି ଦୁଇଜଣ ସେହି ଆଶାକୁ ବିଫଳ କରି ଦ୍ରୋଣ ଓ କୃତବର୍ମାଙ୍କର ଦୁସ୍ତର ସୈନ୍ୟ ମଧ୍ୟରୁ ସମୁତ୍ତୀର୍ଣ୍ଣ ହେଲେ । ୧୩ । ସେତେବେଳେ ସେମାନେ ସେ ଦୁହିଁଙ୍କୁ ଜ୍ୱଳନ୍ତ ଅଗ୍ନିସଦୃଶ ସୈନ୍ୟାତିକ୍ରମ କରିବାର ଅବଲୋକନ କରି ସିନ୍ଧୁରାଜଙ୍କର ଜୀବନ ସମ୍ବନ୍ଧରେ ନିରାଶ ହେଲେ ।୧୪।

ହେ ମହାରାଜ ! ଶତ୍ରୁଭୟବର୍ଦ୍ଧନ କୃଷ୍ଣାର୍ଜ୍ଜୁନ ଅଭ୍ରାନ୍ତ ହୋଇ ଗମନ କରୁ କରୁ ଜୟଦ୍ରଥଙ୍କ ବଧବିଧାୟିନୀ ମନ୍ତ୍ରଣା ପରସ୍ପର କୁହାକୁହି ହେଲେ ଯେ, ସେହି ସିନ୍ଧୁପତି ଦୁର୍ଯ୍ୟୋଧନପକ୍ଷୀୟ ଛଅଜଣ ମହାରଥୀଙ୍କ ମଧ୍ୟରେ ରକ୍ଷିତ ହୋଇଅଛି, କିନ୍ତୁ ସେ ଆମ୍ଭମାନଙ୍କର ଦୃଷ୍ଟିଗୋଚର ହେଲେହେଁ କେବେହେଁ ମୁକ୍ତ ହୋଇ ପାରିବ ନାହିଁ । ୧୬ । ଯଦି ଦେବଗଣଙ୍କ ସହିତ ଦେବରାଜ ମଧ୍ୟ ତାହାଙ୍କୁ ରକ୍ଷା କରନ୍ତି, ତଥାପି ଆମ୍ଭେମାନେ ତାହାକୁ ସଂହାର କରିବୁଁ । ୧୭ । ମହାବାହୁ କୃଷ୍ଣାର୍ଜ୍ଜୁନ ଗମନ କଲାବେଳେ ଦୂରରୁ ସିନ୍ଧୁରାଜଙ୍କୁ ଅବଲୋକନ କରୁ କରୁ ଏହିପରି କଥୋପକଥନ କରୁଥିଲେ, ଆପଣଙ୍କ ପୁତ୍ରମାନେ ତାହା ଶ୍ରବଣ କଲେ । ୧୮ ।

ଯେପରି ତୃଷିତ ଗଜଦ୍ୱୟ ମରୁଭୂମି ଅତିକ୍ରମ କରି ଜଳପାନପୂର୍ବକ ଆଶ୍ୱସ୍ତ ହୋଇ ଗମନ କରନ୍ତି, କୃଷ୍ଣାର୍ଜ୍ଜୁନ ଦୁହେଁ ସେହିପରି ହୃଷ୍ଟ ହେଲେ । ୧୯ । ଯେପରି ଦୁଇଗୋଟି ବଣିକ୍ ବ୍ୟାଘ୍ର-ସିଂହ-ଗଜାକୀର୍ଣ୍ଣ ପର୍ବତମାନଙ୍କ

ଅତିକ୍ରମ କରି ପରିତୃଷ୍ଟ ହୁଅନ୍ତି, ସେହିପରି ଜରାମରଣହୀନ କୃଷ୍ଣାର୍ଜ୍ଜୁନ ଦୁହେଁ ପରିତୃଷ୍ଟ ହେଲେ । ୨୦ । ଆପଣଙ୍କ ପକ୍ଷୀୟ ସୈନ୍ୟମାନେ ସେହି ଦୁର୍ଦ୍ଧର୍ଷ ପର୍ବତ ଅତିକ୍ରମକାରୀ ବଣିକ୍‌ଦ୍ୱୟଙ୍କ ମୁଖସଦୃଶ କୃଷ୍ଣାର୍ଜ୍ଜୁନ ଦୁହିଁଙ୍କର ମୁଖ ପ୍ରସନ୍ନ ଥିବାର ଦେଖି ଓ ସେହି ଦୁଇଜଣଙ୍କୁ ସୈନ୍ୟମାନଙ୍କ ମଧ୍ୟରୁ ମୁକ୍ତ ହେବାର ଅବଲୋକନ କରି ଅତିଶୟ ଚିତ୍କାର କଲେ । ୨୧ । ଯେପରି ମନୁଷ୍ୟ ସମୁଦ୍ରରୁ ଉତ୍ତୀର୍ଣ୍ଣ ହୁଏ, ସେହିପ୍ରକାର ସେହି ଶତ୍ରୁଦମନ ପୁରୁଷ-ସିଂହଦ୍ୱୟ ପ୍ରଜ୍ୱଳିତ ଅନଳତୁଲ୍ୟ ସର୍ପସଦୃଶ ଦ୍ରୋଣାଚାର୍ଯ୍ୟ ଓ ଅପରାପର କ୍ଷତ୍ରିୟଗଣଙ୍କୁ ଓ ସାଗରସଦୃଶ ଦ୍ରୋଣସୈନ୍ୟ ମଧ୍ୟରୁ ଦୀପ୍ତିମାନ୍ ଭାସ୍କରସଦୃଶ ପ୍ରମୁକ୍ତ ଓ ହର୍ଷଯୁକ୍ତ ଥିବାର ଦୃଷ୍ଟିଗୋଚର ହେଲେ । ୨୩ ।

ସେ ଦୁହେଁ ରଣରେ ଦ୍ରୋଣ ଓ କୃତବର୍ମାଙ୍କଠାରୁ କ୍ଷତବିକ୍ଷତ ହୋଇ ଓ ମହାଶସ୍ତ୍ରରାଶିର ଆଘାତରୁ ମୁକ୍ତ ଲାଭ କରି ଇନ୍ଦ୍ର ଓ ଅଗ୍ନିଙ୍କ ସଦୃଶ ପ୍ରଦୀପ୍ତ ହେବାର ଦୃଷ୍ଟ ହେଲେ । ୨୪ । ସେ ଦୁଇଜଣ ଦ୍ରୋଣଙ୍କର ଶୋଣିତଶରସମୂହଦ୍ୱାରା ପରିବ୍ୟାପ୍ତ ଓ ରୁଧିରାକ୍ତ ହୋଇ କର୍ଣ୍ଣିକାରପୁଷ୍ପ-ଶୋଭିତ ଦୁଇଗୋଟି ପର୍ବତସଦୃଶ ଶୋଭା ପାଇଲେ । ୨୫ । ସେହି ଦୁଇଜଣ ଦ୍ରୋଣଗ୍ରାହଯୁକ୍ତ ହ୍ରଦରୁ ମୁକ୍ତ ହେଲେ । କ୍ଷତ୍ରିୟପ୍ରଧାନମାନେ ସେହି ହ୍ରଦର ଜଳସ୍ୱରୂପ, ଶକ୍ତିସମୂହ ସେହି ହ୍ରଦର ସର୍ପତୁଲ୍ୟ ଓ ଲୌହ-ବାଣସମସ୍ତ ତାହାର ମକରସ୍ୱରୂପ ହେଲେ । ୨୬ । ଯେପରି ଚନ୍ଦ୍ର ଓ ସୂର୍ଯ୍ୟ ତମିସ୍ରରୁ ମୁକ୍ତ ହୁଅନ୍ତି, ସେହିପରି ସେ ଦୁହେଁ ଗଦା ଓ ଖଡ୍‌ଗରୂପ ବିଦ୍ୟୁତ୍-ସମ୍ପନ୍ନ ଧନୁଷ୍ଟଙ୍କାର ଓ ତଳଧ୍ୱନିବିଶିଷ୍ଟ ଦ୍ରୋଣଙ୍କର ଅସ୍ତ୍ରରୂପ ମେଘରୁ ମୁକ୍ତ ହେଲେ । ୨୭ । ପ୍ରାଣିମାନେ ଦ୍ରୋଣଙ୍କର ଅସାଧାରଣ ଅସ୍ତ୍ରବଳରେ ବିସ୍ମୟାପନ୍ନ ହୋଇଥିଲେ ; ସୁତରାଂ ଲୋକବିଶ୍ରୁତକୀର୍ତ୍ତି, ମହାଧନୁର୍ଦ୍ଧର କୃଷ୍ଣାର୍ଜ୍ଜୁନ ଦୁହିଁଙ୍କୁ ତାହାଙ୍କଠାରୁ ଉତ୍ତୀର୍ଣ୍ଣ ହେବାର ଅବଲୋକନ କରି ମହା କୁମ୍ଭୀର-ମକରାଦି-ସମାକୁଳ ବର୍ଷାକାଳର ପରିପୂର୍ଣ୍ଣ ଛଅଗୋଟି ନଦୀକୁ ବାହୁଦ୍ୱାରା ସନ୍ତରଣପୂର୍ବକ ଉତ୍ତୀର୍ଣ୍ଣ ହେଲପ୍ରାୟ ସେମାନେ ମନେ କଲେ । ୨୯ । ଯେପରି ବ୍ୟାଘ୍ର ଜଳାଶୟ ନିକଟରେ ମୃଗ ଅନ୍ୱେଷଣ କରି ଅବସ୍ଥିତ କରେ, ସେହିପରି ସେହି ବୀରଦ୍ୱୟ ସମୀପସ୍ଥ ଜୟଦ୍ରଥଙ୍କର ବିନାଶକାମନାରେ ତାହାଙ୍କୁ ଅବଲୋକନ କରି ଅବସ୍ଥିତ ହେଲେ । ୩୦ । ସେତେବେଳେ ସେମାନଙ୍କର ମୁଖବର୍ଣ୍ଣ ନିରୀକ୍ଷଣ କରି ଆପଣଙ୍କ ପକ୍ଷୀୟ

ଯୋଦ୍ଧାମାନେ ଜୟଦ୍ରଥଙ୍କୁ ନିହତ ବୋଲି ମନେ କଲେ । ୩୧ । ଲୋହିତ-ଲୋଚନ ମହାବାହୁ କୃଷ୍ଣାର୍ଜୁନ ସନ୍ନିକଟ ସିନ୍ଧୁରାଜଙ୍କୁ ସନ୍ଦର୍ଶନ କରି ହର୍ଷସହକାରେ ମୁହୁର୍ମୁହୁଃ ସିଂହନାଦ କଲେ । ୩୨ । ଅଶ୍ୱରଶ୍ମିହସ୍ତ କୃଷ୍ଣ ଓ ଧନୁର୍ଦ୍ଧାରୀ ଅର୍ଜୁନ, ଏ ଦୁହିଁଙ୍କର ପ୍ରଭା ସେ ସମୟରେ ସୂର୍ଯ୍ୟ ଓ ଅଗ୍ନିସଦୃଶ ହୋଇଥିଲା । ୩୩ । ଯେପରି ଆମିଷ ଅବଲୋକନ କରି ଦୁଇଗୋଟି ଶ୍ୟେନପକ୍ଷୀ ହର୍ଷାନ୍ୱିତ ହୁଅନ୍ତି ଓ ଦ୍ରୁତବେଗରେ ତାହା ନିକଟକୁ ଗମନ କରନ୍ତି, ସେହିପରି ସେ ଦୁହେଁ ଦ୍ରୋଣସେନାରୁ ମୁକ୍ତ ହୋଇ ସିନ୍ଧୁରାଜଙ୍କୁ ଅବଲୋକନ କରି ହର୍ଷାବିଷ୍ଟ ହେଲେ ଓ କ୍ରୁଦ୍ଧ ହୋଇ ସହସା ତାହାଙ୍କ ନିକଟକୁ ଦ୍ରୁତବେଗରେ ଗମନ କଲେ । ୩୪ ।

ହେ ପ୍ରଭୋ ! ଅଶ୍ୱମାନଙ୍କର ସଂସ୍କାରକାର୍ଯ୍ୟରେ ଅଭିଜ୍ଞ, ଦ୍ରୋଣଙ୍କ କର୍ତ୍ତୃକ ବଦ୍ଧକବଚ ପରାକ୍ରମଶାଳୀ ଆପଣଙ୍କ ପୁତ୍ର ରାଜା ଦୁର୍ଯ୍ୟୋଧନ କୃଷ୍ଣାର୍ଜୁନଙ୍କୁ ସୈନ୍ୟାତିକ୍ରମ କରି ଦ୍ରୁତବେଗରେ ଆଗମନ କରିବାର ଦେଖି ସିନ୍ଧୁରାଜଙ୍କ ରକ୍ଷାନିମିତ୍ତ ଏକାକୀ ରଥାରୋହଣରେ ଗମନ କଲେ । ସେ ମହାଧନୁର୍ଦ୍ଧର କୃଷ୍ଣାର୍ଜୁନଙ୍କୁ ଅତିକ୍ରମ କରି ସେମାନଙ୍କ ସମ୍ମୁଖରେ ଉପସ୍ଥିତ ହେଲେ । ସେ କୃଷ୍ଣାର୍ଜୁନଙ୍କୁ ଅତିକ୍ରମ କରି ସମ୍ମୁଖାଗତ ହୁଅନ୍ତେ ସୈନ୍ୟମାନଙ୍କ ମଧ୍ୟରେ ହର୍ଷସୂଚକ ବିବିଧ ବାଦ୍ୟଧ୍ୱନି ଓ ଶଙ୍ଖଧ୍ୱନି-ମିଶ୍ରିତ ସିଂହନାଦ ହେଲା । ୪୦ । ଅନଳୋପମ ଯେଉଁ ବୀରମାନେ ସିନ୍ଧୁରାଜଙ୍କର ରକ୍ଷକ ଥିଲେ, ସେମାନେ ସମରରେ ଆପଣଙ୍କ ପୁତ୍ରଙ୍କୁ ନିରୀକ୍ଷଣ କରି ଆନନ୍ଦିତ ହେଲେ । ୪୧ । ହେ ମହୀପାଳ ! ଅନୁଗମାନଙ୍କ ସହିତ ଦୁର୍ଯ୍ୟୋଧନଙ୍କୁ ସମ୍ମୁଖାଗତ ହେବାର ଦେଖି କୃଷ୍ଣ ଅର୍ଜୁନଙ୍କୁ ତତ୍କାଳୋଚିତ ଏହି କଥା କହିଲେ । ୪୨ ।

---

## ୧୦୨ ଅଧ୍ୟାୟ

ବାସୁଦେବ କହିଲେ—ହେ ଧନଞ୍ଜୟ ! ଦେଖ, ଏହି ସୁଯୋଧନ ଆମ୍ଭମାନଙ୍କୁ ଅତିକ୍ରମ କରି ସମ୍ମୁଖରେ ଉପସ୍ଥିତ ହୋଇଅଛି । ଅଦ୍ୟ ସେ ମୃତ୍ୟୁଗ୍ରସ୍ତ ହୋଇଅଛି ବୋଲି ଆମ୍ଭେ ମନେ କରୁଅଛୁଁ । କିନ୍ତୁ ତାହା

ସଦୃଶ ରଥୀ ଅନ୍ୟ କେହି ନାହିଁ । ୧ । ଏହି ଦୁରାତ୍ମା ଦୂରପାତୀ, ମହା-ଧନୁର୍ଦ୍ଧର, ଅସ୍ତ୍ରବିଦ୍ୟାକୁଶଳ, ଯୁଦ୍ଧଦୁର୍ମଦ, ଦୃଢ଼ାସ୍ତ୍ର, ବିଚିତ୍ରଯୋଦ୍ଧା ଓ ମହାବଳବାନ୍ ଅଟେ । ୨ । ଏହି ମହାରଥ ଅତ୍ୟନ୍ତ ସୁଖସମ୍ବର୍ଦ୍ଧିତ, ମାନୀ, ସତତ କୃଷ୍ଣ ଓ ପାଣ୍ଡବଦ୍ୱେଷୀ । ୩ । ଆମ୍ଭ ବିବେଚନାରେ ଏହା ସହିତ ତୁମ୍ଭର ଯୁଦ୍ଧ କରିବାର ଏହି ସମୟ ଉପସ୍ଥିତ ହୋଇଅଛି । ବର୍ତ୍ତମାନ ଏହି ଯୁଦ୍ଧରୂପ ଦ୍ୟୂତକ୍ରୀଡ଼ାରେ ଜୟ-ପରାଜୟ ତୁମ୍ଭ ଦୁଇଜଣଙ୍କର ଆୟତ୍ତ । ୪ । ଏହି ମହାରଥ ପାଣ୍ଡବମାନଙ୍କର କଷ୍ଟଭୋଗର ମୂଳ, ତୁମ୍ଭେ ଚିରସଞ୍ଚିତ କ୍ରୋଧରୂପ ବିଷ ତାହା ପ୍ରତି ପରିତ୍ୟାଗ କର । ୫ । ଯେତେବେଳେ ସେ ତୁମ୍ଭର ଶରନିକ୍ଷେପ-ସ୍ଥଳକୁ ଆଗମନ କରିଅଛି, ତେତେବେଳେ ତୁମ୍ଭେ ନିଜର ସଫଳତା ବିବେଚନା କର । କୌଣସି ରାଜା ରାଜ୍ୟାର୍ଥୀ ହୋଇ ତୁମ୍ଭ ସହିତ କି ସମରରେ ସଙ୍ଗତ ହୋଇପାରେ ? ୬ ।

ହେ ଧନଞ୍ଜୟ ! ସୌଭାଗ୍ୟରୁ ଏହି ପାପାତ୍ମା ତୁମ୍ଭର ବାଣ-ଗୋଚରରେ ବର୍ତ୍ତମାନ ଉପସ୍ଥିତ ହୋଇଅଛି । ଅତଏବ ଯହିଁରେ ସେ ଜୀବନ ପରିତ୍ୟାଗ କରିବ, ତହିଁର ଉପାୟ ବିଧାନ କର । ୭ । ଏହି ଦୁରାତ୍ମା ଐଶ୍ୱର୍ଯ୍ୟମଦରେ ମୋହିତ ହୋଇ ଯେପରି ଦୁଃଖାନୁଭବ କରି ନାହିଁ, ସେହିପ୍ରକାର ସଂଗ୍ରାମରେ ସେ ତୁମ୍ଭର ବଳବୀର୍ଯ୍ୟ ମଧ୍ୟ ଅବଗତ ହୋଇନାହିଁ । ୮ । ହେ ପାର୍ଥ ! ମନୁଷ୍ୟ ସୁର ଓ ଅସୁରଗଣଙ୍କ ସହିତ ତ୍ରିଭୁବନ ଏକତ୍ରିତ ହେଲେହେଁ ତୁମ୍ଭଙ୍କୁ ସମରରେ ପରାଜିତ କରିବାକୁ ଉତ୍ସାହି ହେବେ ନାହିଁ । ଏପରି ସ୍ଥଳରେ ଏକା ସୁଯୋଧନ ତୁମ୍ଭର କ'ଣ କରିପାରିବ ? ୯ । ଯେତେବେଳେ ସୌଭାଗ୍ୟବଶରୁ ଦୁର୍ଯ୍ୟୋଧନ ତୁମ୍ଭର ରଥସମୀପକୁ ଆଗମନ କରିଅଛି, ତେତେବେଳେ ପୁରନ୍ଦର ଯେପରି ବୃତ୍ରାସୁରକୁ ବିନଷ୍ଟ କରିଥିଲେ, ତୁମ୍ଭେ ସେହିପରି ଏହାକୁ ସଂହାର କର । ୧୦ ।

ହେ ବିଶୁଦ୍ଧାତ୍ମନ୍ ! ଏହି ପରାକ୍ରମଶାଳୀ ଦୁର୍ଯ୍ୟୋଧନ ତୁମ୍ଭର ଅନର୍ଥନିମିତ୍ତ ଚିରକାଳ ଯତ୍ନ କରିଅଛି । ୧୧ । ଏହି ପାପାତ୍ମା ଧର୍ମରାଜାଙ୍କୁ ଛଳକ୍ରମେ ପାଶକ୍ରୀଡ଼ାରେ ବଞ୍ଚିତ କରିଅଛି ଓ ତୁମ୍ଭମାନଙ୍କର କୌଣସି ଅପରାଧ ନ ଥିଲେ ମଧ୍ୟ ତୁମ୍ଭମାନଙ୍କ ପ୍ରତି ସେ ବହୁ ନିଷ୍ଠୁରତାଚରଣ

କରିଅଛି । ୧୨ । ଅତଏବ ହେ ପାର୍ଥ ! ଏହି ମାତୃଶପ୍ୟ କ୍ଷୁଦ୍ରବୁଦ୍ଧି ସର୍ବଦା ନିଷ୍ଠୁର ଓ ପରଶ୍ରୀକାତରଙ୍କୁ ତୁମ୍ଭେ ସମରରେ ବିଶେଷରୂପେ ମନୋଯୋଗୀ ହୋଇ କୌଣସି ବିଷୟ ବିଚାର ନ କରି ସଂହାର କର । ୧୩ । ଏହି ଦୁରାତ୍ମାର ଛଳଦ୍ୱାରା ତୁମ୍ଭମାନଙ୍କର ରାଜ୍ୟ-ହରଣ, ବନବାସ ଓ ଦ୍ରୌପଦୀଙ୍କର ସମସ୍ତ କ୍ଲେଶ ଏହି ସମସ୍ତ ମନେ କରି ତୁମ୍ଭେ ପରାକ୍ରମ ପ୍ରକାଶ କର । ୧୪ । ଏହି ପାପାତ୍ମା ସୌଭାଗ୍ୟକ୍ରମେ ତୁମ୍ଭ ବାଣଗୋଚରକୁ ଆଗମନ କରିଅଛି । ସୌଭାଗ୍ୟକ୍ରମରେ ତୁମ୍ଭର କାର୍ଯ୍ୟସିଦ୍ଧି ନିମିତ୍ତ ତୁମ୍ଭର ସମ୍ମୁଖକୁ ଆଗତ ହୋଇଅଛି । ୧୫ । ସୌଭାଗ୍ୟବଶରୁ ତୁମ୍ଭ ସହିତ ଯୁଦ୍ଧ କର୍ତ୍ତବ୍ୟ ବୋଲି ସେ ନିଶ୍ଚୟ କରିଅଛି । ଆମ୍ଭେମାନେ ଯାହା ଅଭିଳାଷ କରିନାହୁଁ, ସୌଭାଗ୍ୟ କ୍ରମରେ ସେହି କାମନା ସଫଳ ହୋଇଅଛି । ୧୬ । ଏଣୁ ହେ ପାର୍ଥ ! ଯେପରି ପୂର୍ବକାଳରେ ଦେବାସୁରସଂଗ୍ରାମରେ ଇନ୍ଦ୍ର ଜମ୍ଭାସୁରକୁ ବିନଷ୍ଟ କରିଥିଲେ, ସେହିପରି ତୁମ୍ଭେ ଏହି କୁଳାଧମ ଦୁର୍ଯ୍ୟୋଧନକୁ ବିନଷ୍ଟ କର । ୧୭ । ଏହି ଦୁରାତ୍ମା ବିନଷ୍ଟ ହେଲେ ଏହାର ସୈନ୍ୟସମୂହ ଅନାଥ ହେବେ । ସୁତରାଂ ସେମାନଙ୍କୁ ଅନାୟାସରେ ନିହତ କରିବ । ଏହି ପାପାତ୍ମା ଦୁରାତ୍ମାମାନଙ୍କର ମୂଳ ଅଟେ । ଏହାକୁ ଛେଦନ କର । ଏହି ବୈରର ଅବଭୃଥ * ହେଉ । ୧୮ ।

ସଞ୍ଜୟ କହିଲେ—କୃଷ୍ଣ ଏହି ପ୍ରକାରେ କହନ୍ତେ ଅର୍ଜ୍ଜୁନ ତାହା ସ୍ୱୀକାର କରି କହିଲେ ଯେ, ଏହି କାର୍ଯ୍ୟ ଆମ୍ଭର ଅବଶ୍ୟ କରଣୀୟ । ଅତଏବ ତୁମ୍ଭେ ଅନ୍ୟ ସମସ୍ତ ବିଷୟ ଅନାଦର କରି ଯେଉଁ ସ୍ଥାନରେ ଦୁର୍ଯ୍ୟୋଧନ ଅଛି, ସେହି ସ୍ଥାନକୁ ଗମନ କର । ୧୯ ।

ଯେ ଆମ୍ଭମାନଙ୍କର ରାଜ୍ୟ ବହୁକାଳ ନିଷ୍କଣ୍ଟକରୂପେ ଭୋଗ କରିଅଛି, ଯୁଦ୍ଧରେ ବିକ୍ରମ ପ୍ରକାଶ କରି ଆମ୍ଭେ କି ତାହାର ମସ୍ତକ ଛେଦନ କରିପାରିବୁଁ ? ୨୦ । ହେ ମାଧବ ! ଯେଉଁ ଲୋକ କ୍ଲେଶର ଅଯୋଗ୍ୟା ଦ୍ରୌପଦୀଙ୍କର କେଶ ଆକର୍ଷଣ କରି କ୍ଲେଶ ପ୍ରଦାନ କରିଥିଲା, ଆମ୍ଭେ କି ତାହାର ପରିଶୋଧ କରିପାରିବୁଁ ? ୨୧ ।

* ଅବଭୃଥ—କର୍ମଶେଷରେ ସ୍ନାନ ।

ସେ ଦୁହେଁ ଏହିପରି କଥୋପକଥନ କରୁ କରୁ, ହର୍ଷାନ୍ୱିତ ହୋଇ ରାଜା ଦୁର୍ଯ୍ୟୋଧନଙ୍କୁ ପ୍ରାପ୍ତ ହେବା ନିମିତ୍ତ ରଣସ୍ଥଳରେ ଶ୍ୱେତବର୍ଣ୍ଣ ଅଶ୍ୱମାନଙ୍କୁ ଚାଳନା କଲେ । ୨୨ । ହେ ଭରତର୍ଷଭ ମାରିଷ ! ଆପଣଙ୍କର ପୁତ୍ର କୃଷ୍ଣାର୍ଜ୍ଜୁନଙ୍କ ନିକଟସ୍ଥ ହୋଇ ମହାଭୟର ସମ୍ଭାବନା ଥିଲେହେଁ ଭୟ କଲେ ନାହିଁ । ୨୩ । ହେ ମହାରାଜ ! ସେ ନିର୍ଭୟରେ କୃଷ୍ଣାର୍ଜ୍ଜୁନଙ୍କ ପ୍ରତି ଯୁଦ୍ଧରେ ପ୍ରତ୍ୟୁଦ୍‌ଗତ ହେଲେ । ତାହା ଦେଖି କ୍ଷତ୍ରିୟମାନେ ତାହାଙ୍କର ସେହି କର୍ମକୁ ଯଥେଷ୍ଟ ପ୍ରଶଂସା କଲେ । ୨୪ ।

ଅନନ୍ତର ରାଜା ଦୁର୍ଯ୍ୟୋଧନଙ୍କୁ ଯୁଦ୍ଧାସକ୍ତ ଅବଲୋକନ କରି ଆପଣଙ୍କ ପକ୍ଷୀୟ ସମସ୍ତସୈନ୍ୟ ମଧ୍ୟରେ ମହାଶବ୍ଦ ସମୁପସ୍ଥିତ ହେଲା । ୨୫ । ସେହି ସମୁପସ୍ଥିତ ଭୀଷଣ ଜନରବସମୟରେ ଆପଣଙ୍କ ପୁତ୍ର ବିପକ୍ଷ ଅର୍ଜ୍ଜୁନଙ୍କୁ କଦର୍ଥିତ * କରି ତାହାଙ୍କୁ ନିବାରଣ କରିବାରେ ପ୍ରବୃତ୍ତ ହେଲେ । ୨୬ । ଅର୍ଜ୍ଜୁନ ଆପଣଙ୍କ ପୁତ୍ରକର୍ତ୍ତୃକ ପ୍ରତିରୁଦ୍ଧ ହୋଇ ପୁନର୍ବାର କ୍ରୋଧାବିଷ୍ଟ ହେଲେ । ଶତ୍ରୁତାପନ ଦୁର୍ଯ୍ୟୋଧନ ମଧ୍ୟ ତାହାଙ୍କ ପ୍ରତି କ୍ରୁଦ୍ଧ ହେଲେ । ୨୭ । ସେହି ଦୁହିଁଙ୍କର ପରସ୍ପର କ୍ରୁଦ୍ଧ ଓ ଭୀଷଣଆକାର ଅବଲୋକନ କରି ଚତୁର୍ଦ୍ଦିଗରୁ ରାଜାମାନେ ସେ ଦୁହିଁଙ୍କୁ ନିରୀକ୍ଷଣ କଲେ । ୨୮ ।

ହେ ମାରିଷ ! ଅନନ୍ତର ଆପଣଙ୍କ ପୁତ୍ର, ଅର୍ଜ୍ଜୁନ ଓ କୃଷ୍ଣ ଏ ଦୁହିଁଙ୍କୁ କ୍ରୁଦ୍ଧ ହେବାର ନିରୀକ୍ଷଣ କରି ହାସ୍ୟପୂର୍ବକ ସେମାନଙ୍କୁ ଯୁଦ୍ଧାର୍ଥ ଆହ୍ୱାନ କଲେ । ୨୯ । ତତ୍ପରେ କୃଷ୍ଣାର୍ଜ୍ଜୁନ ମଧ୍ୟ ହର୍ଷାନ୍ୱିତ ହୋଇ ମହା ସିଂହନାଦ ଓ ଶଙ୍ଖଧ୍ୱନି କଲେ । ୩୦ । ସେ ଦୁହିଁଙ୍କୁ ହର୍ଷାନ୍ୱିତ ହେବାର ସନ୍ଦର୍ଶନ କରି ସମୁଦାୟ କୌରବଗଣ ଆପଣଙ୍କ ପୁତ୍ରଙ୍କର ଜୀବନରେ ନିରାଶ ହେଲେ । ୩୧ । ଅନେକ ଲୋକ ଆପଣଙ୍କ ପୁତ୍ରଙ୍କୁ ଅଗ୍ନିମୁଖ ମଧ୍ୟରେ ଆହୂତ ମନେକରି ଶୋକାକୁଳ ହେଲେ । ୩୨ । ଆପଣଙ୍କ ପକ୍ଷୀୟ ଅନ୍ୟାନ୍ୟ ଯୋଦ୍ଧାମାନେ କୃଷ୍ଣାର୍ଜ୍ଜୁନଙ୍କୁ ହର୍ଷାବିଷ୍ଟ ଅବଲୋକନ କରି ଭୟୋଦ୍ୱିଗ୍ନ ହୋଇ "ରାଜା ହତ ହେଲେ, ରାଜା ହତ ହେଲେ" ବୋଲି

---

* କଦର୍ଥିତ—ଅଳ୍ପପ୍ରାୟଭଙ୍ଗ ।

ଶବ୍ଦ କଲେ । ଜୟାପେକ୍ଷୀ ରାଜା ଦୁର୍ଯ୍ୟୋଧନ ଏହି ଶବ୍ଦ ଶ୍ରବଣ କରି ସେମାନଙ୍କୁ କହିଲେ, ତୁମ୍ଭେମାନେ ସ୍ଥିର ହୁଅ ନାହିଁ । ଆମ୍ଭେ କୃଷ୍ଣାର୍ଜ୍ଜୁନଙ୍କୁ ଯମାଳୟକୁ ପ୍ରେରଣ କରିବୁଁ । ଏହି କଥା ସୈନିକମାନଙ୍କୁ କହି କୋଧ-ବଶତଃ ଅର୍ଜ୍ଜୁନଙ୍କୁ ସମ୍ଭାଷଣପୂର୍ବକ କହିଲେ । ୩୫ ।

ହେ ଅର୍ଜ୍ଜୁନ ! ତୁମ୍ଭେ ଦିବ୍ୟ ଓ ମାନୁଷ ଯେଉଁସମସ୍ତ ଅସ୍ତ୍ର ଶିକ୍ଷା କରିଅଛ, ତୁମ୍ଭେ ପାଣ୍ଡୁଠାରୁ ଜନ୍ମଗ୍ରହଣ କରିଥିଲେ, ସେ ସବୁ ଆମ୍ଭ ନିକଟରେ ପ୍ରକାଶ କର । ୩୬ । ତୁମ୍ଭର ଓ କେଶବଙ୍କର ଯେତେ ବୀର୍ଯ୍ୟ ଅଛି, ତାହା ଆମ୍ଭ ପ୍ରତି ଶୀଘ୍ର ପ୍ରୟୋଗ କର । ଆମ୍ଭେ ତୁମ୍ଭର କେତେ ପୌରୁଷ ଅଛି, ତାହା ଦର୍ଶନ କରିବୁ । ୩୭ । ତୁମ୍ଭେ ସ୍ୱାମିସତ୍କାରଯୁକ୍ତ ଯେଉଁସମସ୍ତ କାର୍ଯ୍ୟ କରିଅଛ ବୋଲି ଲୋକେ କହିଥାନ୍ତି, ସେସମସ୍ତ ଆମ୍ଭ ସାକ୍ଷାତରେ ତୁମ୍ଭେ କରିନାହଁ । ଅତଏବ ସେ ସମସ୍ତକୁ ଆମ୍ଭ ନିକଟରେ ପ୍ରକାଶ କର । ୩୮ ।

---

# ୧୦୩ ଅଧ୍ୟାୟ

ସଞ୍ଜୟ କହିଲେ—ରାଜା ଦୁର୍ଯ୍ୟୋଧନ ଏହି କଥା କହି ଅତି-ନିବିଡ଼ରେ ମର୍ମଭେଦୀ ତିନଗୋଟି ବାଣଦ୍ୱାରା ଅର୍ଜ୍ଜୁନଙ୍କୁ, ଚାରିଗୋଟି ବାଣରେ ତାହାଙ୍କର ଚାରି ଅଶ୍ୱଙ୍କୁ ଓ ଦଶଗୋଟି ବାଣରେ କୃଷ୍ଣଙ୍କ ହୃଦୟକୁ ଆଘାତ କଲେ । ତତ୍ପରେ ଗୋଟିଏ ଭଲ୍ଲାସ୍ତ୍ରଦ୍ୱାରା କୃଷ୍ଣଙ୍କ କରସ୍ଥ ପ୍ରତୋଦକୁ ଛେଦନ କରି ଭୂତଳରେ ପାତିତ କଲେ । ୨ । ଅର୍ଜ୍ଜୁନ ଅବ୍ୟଗ୍ରଚିତ୍ତରେ ସତ୍ୱର ହୋଇ ଶିଳାଶାଣିତ ଚିତ୍ରପୁଙ୍ଖ ଚତୁର୍ଦ୍ଦଶ ଗୋଟି ଶର ଦୁର୍ଯ୍ୟୋଧନଙ୍କ ପ୍ରତି ନିକ୍ଷେପ କଲେ । କିନ୍ତୁ ସେହି ବାଣମାନ ଦୁର୍ଯ୍ୟୋଧନଙ୍କ ବର୍ମରେ ଲାଗି ଭ୍ରଷ୍ଟ ହେଲା । ୩ । ଏହି ଚତୁର୍ଦ୍ଦଶଗୋଟି ବାଣ ବିଫଳ ହେବାର ଅବଲୋକନ କରି ଅର୍ଜ୍ଜୁନ ପୁନର୍ବାର ଚତୁର୍ଦ୍ଦଶଗୋଟି ବାଣ ତାହାଙ୍କ ପ୍ରତି ନିକ୍ଷେପ କଲେ । ସେସମସ୍ତ ମଧ୍ୟ ତାହାଙ୍କ ବର୍ମ୍ମରେ ଲାଗି ଭ୍ରଷ୍ଟ ହେଲା ।୪।

ସେହି ଅସ୍ତ୍ରମନ୍ତ୍ରିତ ବାଣ ବ୍ୟର୍ଥ ହେବାର ଦେଖି ପରଵୀରହନ୍ତା କୃଷ୍ଣ ଅର୍ଜୁନଙ୍କୁ କହିଲେ । ୫ । ହେ ପାର୍ଥ ! ଆମ୍ଭେ ଯାହା ପୂର୍ବେ କେବେହେଁ ଅବଲୋକନ କରିନାହୁଁ, ତାହା ଅଦ୍ୟ ଅବଲୋକନ କରୁଅଛୁଁ । ତୁମ୍ଭେ ଯେଉଁସମସ୍ତ ବାଣ ଦୁର୍ଯ୍ୟୋଧନଙ୍କ ପ୍ରତି ନିକ୍ଷେପ କଲ, ସେ ସମସ୍ତ ବିଫଳ ହୋଇଅଛି । ଏହା ଶିଳାଗମନତୁଲ୍ୟ ଅଦୃଷ୍ଟପୂର୍ବ ଦେଖା ଯାଉଅଛି । ହେ ଭରତର୍ଷଭ ! ପୂର୍ବବତ୍ କି ତୁମ୍ଭ ଗାଣ୍ଡୀବର ବଳ ନାହିଁ ? ତୁମ୍ଭର ମୁଷ୍ଟି ବା ଭୁଜଦ୍ୱୟର ବଳ କି ବିନଷ୍ଟ ହୋଇଅଛି ? ଅଥବା ତୁମ୍ଭର ଶତ୍ରୁ ଦୁର୍ଯ୍ୟୋଧନର ସମ୍ପ୍ରତି ଚରମସମୟ ଉପସ୍ଥିତ ହୋଇନାହିଁ କି ? ଏହା ଆମ୍ଭେ ପଚାରୁଅଛୁଁ, ତାହା ଆମ୍ଭ ନିକଟରେ କୀର୍ତ୍ତନ କର ।୮। ଦୁର୍ଯ୍ୟୋଧନଙ୍କ ପ୍ରତି ନିପତିତ ତୁମ୍ଭର ଶରସମୂହ ବ୍ୟର୍ଥ ଦର୍ଶନ କରି ଆମ୍ଭେ ମହାବିସ୍ମୟାବିଷ୍ଟ ହୋଇଅଛୁଁ । ୯ । ହେ ପାର୍ଥ ! ଅଦ୍ୟ ଏହା କି ବିଡ଼ମ୍ବନା ? ତୁମ୍ଭର ଅଶନିସଦୃଶ ଯେଉଁ ସମସ୍ତ ଶର ଶତ୍ରୁଶରୀର ବିଦାରଣ କରିଥାଏ, ତାହା ଆଜି ନିରର୍ଥକ ହେଲା । ୧୦ ।

ଅର୍ଜୁନ କହିଲେ—ହେ କୃଷ୍ଣ ! ଆମ୍ଭଙ୍କୁ ବୋଧ ହେଉଅଛି ଯେ, ଦ୍ରୋଣ ତାହାଙ୍କୁ କବଚ ପିନ୍ଧାଇ ଦେଇଅଛନ୍ତି । ଏହି କବଚ ଅସ୍ତ୍ରସମୂହର ଅଭେଦ୍ୟ । ତ୍ରିଲୋକ ଏକତ୍ରିତ ହେଲେହେଁ ଏହା ନିକଟରେ ଅନ୍ତର୍ହିତ ହୁଏ । ଏହା କେବଳ ଦ୍ରୋଣଙ୍କୁ ଗୋଚର ଅଛି । ଆଉ ଆମ୍ଭେ ଏହା ସେହି ଦ୍ୱିଜସତ୍ତମଙ୍କ ନିକଟରୁ ଅବଗତ ହୋଇଅଛୁଁ । ୧୨ । ଏହି କବଚ ବାଣଦ୍ୱାରା କୌଣସିପ୍ରକାରେ ଛିନ୍ନ ହୋଇପାରିବ ନାହିଁ । ସ୍ୱୟଂ ଇନ୍ଦ୍ର ମଧ୍ୟ ବଜ୍ରଦ୍ୱାରା ଏହାକୁ ଭେଦ କରି ପାରିବେ ନାହିଁ ।୧୩। ହେ କୃଷ୍ଣ । ତୁମ୍ଭେ ଏହା ଅବଗତ ଥାଇ ମଧ୍ୟ କି ହେତୁ ଆମ୍ଭଙ୍କୁ ମୋହିତ କରୁଅଛ ? ତ୍ରିଭୁବନ ମଧ୍ୟରେ ତୁମ୍ଭଙ୍କୁ ଭୂତ, ଭବିଷ୍ୟତ୍, ବର୍ତ୍ତମାନ—ସମସ୍ତ ବିଦିତ ଅଛି । ହେ ମଧୁସୂଦନ ! ଆମ୍ଭେ ଯେପରି ଜାଣୁ, ସେପରି ଅପର ବ୍ୟକ୍ତି ଜାଣେ ନାହିଁ । ୧୫ । ହେ ମାଧବ ! ଦ୍ରୋଣ ଏହି ଦୁର୍ଯ୍ୟୋଧନଙ୍କୁ କବଚବନ୍ଧନ କରିଦେବାରୁ ଦୁରାତ୍ମା ଦୁର୍ଯ୍ୟୋଧନ କବଚଧାରୀ ହୋଇ ନିର୍ଭୟରେ ରଣସ୍ଥଳରେ ଅବସ୍ଥାନ କରୁଅଛି । କିନ୍ତୁ ଏହି କବଚବିଷୟରେ ଯେଉଁ କାର୍ଯ୍ୟର ବିଧାନ କରିବାକୁ ହୁଏ, ତାହା ସେ କିଞ୍ଚିନ୍ମାତ୍ର ଜାଣେ ନାହିଁ । କେବଳ ସ୍ତ୍ରୀଲୋକସଦୃଶ ଏହା ଧାରଣ କରିଅଛି । ୧୬ ।

ହେ ଜନାର୍ଦ୍ଦନ ! ତୁମ୍ଭେ ଆମ୍ଭର ଧନୁର ଓ ବାହୁଦ୍ୱୟର ବୀର୍ଯ୍ୟ ଅବଲୋକନ କର, ଏହି କୁରୁରାଜ କବଚଦ୍ୱାରା ରକ୍ଷିତ ହେଲେହେଁ ଆମ୍ଭେ ଏହାଙ୍କୁ ପରାଜିତ କରିବୁଁ । ୧୮ । ଦେବେଶ୍ୱର ମହେଶ୍ୱର ଏହି ଭାସ୍ୱର କବଚ ଅଙ୍ଗିରାଙ୍କୁ ପ୍ରଦାନ କରିଥିଲେ । ତାହାଙ୍କ ନିକଟରୁ ଏହା ବୃହସ୍ପତି ପ୍ରାପ୍ତ ହୋଇଲେ । ତତ୍ପରେ ବୃହସ୍ପତିଙ୍କ ନିକଟରୁ ଏହାକୁ ପୁରନ୍ଦର ଲାଭ କଲେ । ୧୯ । ଅନନ୍ତର ଇନ୍ଦ୍ର ଏହି ବର୍ମ୍ମକୁ ତାହାର ଉପକରଣ ସହିତ ଆମ୍ଭଙ୍କୁ ପ୍ରଦାନ କଲେ । ସେହି ବର୍ମ୍ମ ଦେବନିର୍ମିତ ହେଉ ବା ବ୍ରହ୍ମନିର୍ମିତ ହେଉ, ଅଦ୍ୟ ଦୁର୍ବୁଦ୍ଧି ଦୁର୍ଯ୍ୟୋଧନଙ୍କୁ ବାଣଦ୍ୱାରା ନିହତ କରିବୁଁ । ଏହି କବଚ ତାହାକୁ ରକ୍ଷା କରି ପାରିବ ନାହିଁ ।

ସଞ୍ଜୟ କହିଲେ —ଅର୍ଜ୍ଜୁନ ଏହି କଥା କହି କେତେଗୁଡ଼ିଏ ବାଣକୁ ଅଭିମନ୍ତ୍ରିତ କରି ଶରାସନରେ ଯୋଜନାପୂର୍ବକ ଆକର୍ଷଣ କଲେ । ୨୧ । ସେହି ସମସ୍ତ ବାଣକୁ ଅର୍ଜ୍ଜୁନ ଆକର୍ଷଣ କରିବା ସମୟରେ ବାଣସବୁ ଧନୁ-ମଧ୍ୟଗତ ଥାଉ ଥାଉ ଅଶ୍ୱତ୍ଥାମା ସର୍ବାସ୍ତ୍ରଘାତୀ ଅସ୍ତ୍ରଦ୍ୱାରା ସେହି ସମସ୍ତକୁ ଛେଦନ କରିପକାଇଲେ । ବ୍ରାହ୍ମଣକର୍ତ୍ତୃକ ସେହି ସମସ୍ତ ଶର ଦୂରରୁ ଛିନ୍ନ ହେବାର ଅବଲୋକନ କରି ଅର୍ଜ୍ଜୁନ କୃଷ୍ଣଙ୍କୁ କହିଲେ, ହେ ଜନାର୍ଦ୍ଦନ ! ଏହି ଅସ୍ତ୍ର ଆମ୍ଭେ ଦ୍ୱିତୀୟବାର ପ୍ରୟୋଗ କରିପାରିବୁ ନାହିଁ । ପ୍ରୟୋଗ କଲେ ଏହା ଆମ୍ଭଙ୍କୁ ଓ ଆମ୍ଭର ସୈନ୍ୟମାନଙ୍କୁ ସଂହାର କରିପାରେ ।

ହେ ମହାରାଜ ! ତଦନନ୍ତର ଦୁର୍ଯ୍ୟୋଧନ ନିତପର୍ବ ଆଶୀବିଷତୁଲ୍ୟ ନବସଂଖ୍ୟକ ବାଣଦ୍ୱାରା କୃଷ୍ଣାର୍ଜ୍ଜୁନଙ୍କୁ ବିଦ୍ଧ କରି ପୁନର୍ବାର ଶରବର୍ଷଣରେ ସେ ଦୁହିଁଙ୍କୁ ସମାଚ୍ଛନ୍ନ କଲେ । ୨୬ । ଆପଣଙ୍କପକ୍ଷୀୟ ସୈନ୍ୟମାନେ ଦୁର୍ଯ୍ୟୋଧନଙ୍କୁ ମହାଶରବର୍ଷଣ କରିବାର ସନ୍ଦର୍ଶନ କରି ଆହ୍ଲାଦିତ ହୋଇ ବାଦ୍ୟଧ୍ୱନିପୂର୍ବକ ସିଂହନାଦ କଲେ । ୨୭ । ତଦନନ୍ତର ଅର୍ଜ୍ଜୁନ କ୍ରୋଧାବିଷ୍ଟ ହୋଇ ସୃକ୍କଣୀଲେହନପୂର୍ବକ ଦେଖିଲେ ଯେ, ଦୁର୍ଯ୍ୟୋଧନର ଅଙ୍ଗରେ ଏପରି ସ୍ଥାନ ନାହିଁ, ଯାହାକି ବର୍ମ୍ମଦ୍ୱାରା ରକ୍ଷିତ ହୋଇନାହିଁ । ୨୮ ।

ତତ୍ପରେ ଅନ୍ତକସଦୃଶ ସୁଶାଣିତ ସୁମୁକ୍ତ କେତେକ ବାଣଦ୍ୱାରା ତାହାଙ୍କର ଅଶ୍ୱପୃଷ୍ଠରକ୍ଷକ ସାରଥୀ, ବିଚିତ୍ର-ଶରାସନ ଓ ଶରମୁଷ୍ଟି ବିନଷ୍ଟ

କଲେ । ପରେ ତାହାଙ୍କ ରଥକୁ ଖଣ୍ଡ ଖଣ୍ଡ କରିବାର ଉପକ୍ରମ କଲେ । ତତ୍ପରେ ତାହାଙ୍କୁ ରଥବିଚ୍ୟୁତ କରି ତୀକ୍ଷ୍ଣ ଦୁଇଗୋଟି ବାଣ ତାହାଙ୍କର ଦୁଇହସ୍ତତଳକୁ ନିକ୍ଷେପ କଲେ । ୩୧ । କୁନ୍ତୀନନ୍ଦନ ଧନଞ୍ଜୟ ସଯତ୍ନ ହୋଇ ମର୍ମଭେଦୀ ବାଣଦ୍ୱାରା ଦୁର୍ଯ୍ୟୋଧନଙ୍କୁ ବିଦ୍ଧ କଲେ । ଦୁର୍ଯ୍ୟୋଧନ ବେଦନାଭିଭୂତ ହୋଇ ପଳାୟନ କଲେ । ୩୨ ।

ମହାଧନୁର୍ଦ୍ଧର ଦୁର୍ଯ୍ୟୋଧନଙ୍କୁ ଧନଞ୍ଜୟଙ୍କ ଶରଦ୍ୱାରା ପୀଡ଼ିତ ଓ କ୍ଲିଷ୍ଟ ଆପଦ୍‌ଗ୍ରସ୍ତ ଅବଲୋକନ କରି ଆପଣଙ୍କ ପକ୍ଷୀୟ ଯୋଦ୍ଧାମାନେ ତାହାଙ୍କୁ ରକ୍ଷା କରିବା ନିମିତ୍ତ ଯୋଦ୍ଧାବିଷ୍ଟ ବହୁସହସ୍ର ସଜ୍ଜିତ ରଥୀ, କୁଞ୍ଜରାରୋହୀ, ଅଶ୍ୱାରୋହୀ ଓ ପଦାତିସମୂହଦ୍ୱାରା ଧନଞ୍ଜୟଙ୍କୁ ପରିବେଷ୍ଟନ କରି ଅସ୍ତ୍ରସମୂହ ବର୍ଷଣ କରିବାରେ ପ୍ରବୃତ୍ତ ହେଲେ । ୩୪ । ସେହି ମହତ୍ ଅସ୍ତ୍ରବର୍ଷଣ ଓ ସୈନ୍ୟସମୂହଦ୍ୱାରା ଆବୃତ୍ତ ହୋଇ କୃଷ୍ଣ, ଅର୍ଜ୍ଜୁନ କିମ୍ବା ତାହାଙ୍କର ରଥ, କିଛି ହିଁ ଦୃଷ୍ଟ ହେଲା ନାହିଁ । ୩୫ ।

ତତ୍ପରେ ଅର୍ଜ୍ଜୁନ ଅସ୍ତ୍ରବର୍ଷଣ କରି ସେହି ସମସ୍ତ ସୈନ୍ୟଙ୍କୁ ନିହତ କରିବାରେ ପ୍ରବୃତ୍ତ ହେଲେ । ସେହି ରଣଭୂମିରେ ଶତ ଶତ ରଥୀ ଓ ଗଜାରୋହୀ ହତାଙ୍ଗ ହୋଇ ନିପତିତ ହେଲେ । ସେମାନଙ୍କ ମଧ୍ୟରେ କେହି କେହି ନିହତ ହୋଇଅଛନ୍ତି, କେହି କେହି ଅବା ନିହତ ହେଉ-ଅଛନ୍ତି, ଏପରି ଅବସ୍ଥାରେ ମଧ୍ୟ ସେମାନେ ଅର୍ଜ୍ଜୁନଙ୍କ ରଥ ପ୍ରତି ଆଘାତ କରୁଥିଲେ । ଏଥିରେ ଅର୍ଜ୍ଜୁନଙ୍କ ରଥ ଚତୁର୍ଦ୍ଦିଗରେ ଏକକ୍ରୋଶବ୍ୟାପୀ ସ୍ଥାନରେ ଅବରୁଦ୍ଧ ହୋଇ ଅବସ୍ଥାନ କଲା । ୩୬ ।

ତଦନନ୍ତର ବୃଷ୍ଣିକୁଳବୀର କୃଷ୍ଣ ସତ୍ୱର ହୋଇ ଅର୍ଜ୍ଜୁନଙ୍କୁ କହିଲେ, ହେ ଅର୍ଜ୍ଜୁନ ! ତୁମ୍ଭେ ଶରାସନ ବିସ୍ତାରଣ କର, ଆମ୍ଭେ ଶଙ୍ଖଧ୍ୱନି କରୁଁ । ୩୮ । ପରେ ଅର୍ଜ୍ଜୁନ ବଳପୂର୍ବକ ଗାଣ୍ଡୀବ ବିସ୍ତାରଣ ଦ୍ୱାରା ମହାବାଣବର୍ଷଣ କରି ତଳଶବ୍ଦଦ୍ୱାରା ଶତ୍ରୁସଂହାର କରିବାରେ ପ୍ରବୃତ୍ତ ହେଲେ । ୩୯ । ବଳବାନ୍ ବାସୁଦେବ ମଧ୍ୟ ଅତିବଳପୂର୍ବକ ପାଞ୍ଚଜନ୍ୟ ଶଙ୍ଖ ବାଦ୍ୟକଲେ । ସେ ସମୟରେ କେଶବଙ୍କର ଚକ୍ଷୁଲୋମ ଧୂଳିରେ ବିଧ୍ୱସ୍ତ ଓ ମୁଖ ଅତିଶୟ ଘର୍ମାକ୍ତ ହୋଇଥିଲା । ୪୦ । ତାହାଙ୍କର ଶଙ୍ଖଧ୍ୱନି ଓ ଅର୍ଜ୍ଜୁନଙ୍କ ଗାଣ୍ଡୀବଧ୍ୱନି

ଶ୍ରବଣ କରି ଦୁର୍ବଳ, ସବଳ ସମସ୍ତ ଜନ ଭୂତଳରେ ପତିତ ହେଲେ । ୪୧ । ଅନନ୍ତର ଯେପରି ମେଘ ବାୟୁଶୃଙ୍ଖଳିତ ହୋଇ ପ୍ରକାଶିତ ହୁଏ, ସେହିପରି ଅର୍ଜୁନଙ୍କ ରଥ ସେହି ସମସ୍ତ ସୈନ୍ୟସମ୍ବାଧରୁ ବିମୁକ୍ତ ହୋଇ ପ୍ରକାଶିତ ହେଲା । ଏହା ଅବଲୋକନ କରି ଜୟଦ୍ରଥଙ୍କ ରକ୍ଷକମାନେ ଆପଣା ଆପଣା ଅନୁଗ ଯୋଦ୍ଧାମାନଙ୍କ ସହିତ କ୍ରୋଧାବିଷ୍ଟ ହେଲେ । ୪୨ । ଜୟଦ୍ରଥଙ୍କ ରକ୍ଷକ ସେହି ସମସ୍ତ ମହାରଥୀ ସହସା ଅର୍ଜୁନଙ୍କୁ ଅବଲୋକନ ପୂର୍ବକ ବସୁନ୍ଧରାକୁ କମ୍ପିତା କରି ମହାଶବ୍ଦ କଲେ । ୪୩ । ସେହି ମହାତ୍ମାମାନେ ବାଣନିକ୍ଷେପର ଉଗ୍ର ଶବ୍ଦକୁ ଶଙ୍ଖଧ୍ୱନିରେ ମିଶ୍ରିତ କରି ମହା-ସିଂହନାଦ ପ୍ରାଦୁର୍ଭୂତ କଲେ । ୪୪ । କୃଷ୍ଣାର୍ଜୁନ ମଧ୍ୟ ସେହିସମସ୍ତ ଯୋଦ୍ଧାଙ୍କର ସମୁତ୍ଥିତ ଭୟଙ୍କର ନିନାଦ ଶ୍ରବଣ କରି ଶଙ୍ଖ ଧ୍ୱନି କଲେ । ୪୫ ।

ହେ ମହାରାଜ ! ସେହି ସମୟରେ ସମସ୍ତ ନିଦାରୁଣ ଶବ୍ଦ, ମହାଶବ୍ଦ ଦ୍ୱାରା ଶୈଳ, ସମୁଦ୍ର, ଦ୍ୱୀପ ଓ ପାତାଳ ସହିତ ବସୁନ୍ଧରା ପରିପୂର୍ଣ୍ଣା ହେଲା । କୁରୁ ଓ ପାଣ୍ଡବସୈନ୍ୟ ମଧ୍ୟରେ ସେହି ଶବ୍ଦ ଦଶଦିଗରେ ପରିବ୍ୟାପ୍ତ ହୋଇ ପ୍ରତିଧ୍ୱନିତ ହେଲା । ୪୭ । ଆପଣଙ୍କ ପକ୍ଷୀୟ ମହାରଥୀଗଣ କୃଷ୍ଣାର୍ଜୁନଙ୍କୁ ଅବଲୋକନ କରି ଅତିଶୟ ଭୟାବିଷ୍ଟ ଓ ଉଦ୍‌ବିଗ୍ନ ହେଲେ । ଅନନ୍ତର ସେମାନେ ମହାଭାଗ କୃଷ୍ଣାର୍ଜୁନଙ୍କୁ ବଦ୍ଧବର୍ମ୍ମା ଓ ସନ୍ନଦ୍ଧ ଅବ-ଲୋକନ କରି ସେ ଦୁହିଁଙ୍କ ପ୍ରତି ଧାବମାନ ହେଲେ । ଏହା ଅଦ୍ଭୁତସଦୃଶ ହେଲା । ୪୯ ।

---

## ୧୦୪ ଅଧ୍ୟାୟ

ସଞ୍ଜୟ କହିଲେ— ଆପଣଙ୍କ ପକ୍ଷୀୟ ଯୋଦ୍ଧାମାନେ କୃଷ୍ଣାର୍ଜୁନଙ୍କୁ ସନ୍ଦର୍ଶନ କରି ଜିଘାଂସୁ ହୋଇ ପ୍ରଥମେ ଉଦ୍‌ବିଗ୍ନ ହେଲେ । ଅର୍ଜୁନ ମଧ୍ୟ ସେହିପରି ସେମାନଙ୍କଠାରେ ଜିଘାଂସାପରବଶ ହୋଇ ସତ୍ୱର ହେଲେ । ଭୂରିଶ୍ରବା, ଶଲ, କର୍ଣ୍ଣ, ବୃଷସେନ, ଜୟଦ୍ରଥ, କୃପ, ମଦ୍ରରାଜ ଓ ଅଶ୍ୱତ୍ଥାମା ଏହି ଆଠଜଣ ରଥିପ୍ରବର ସୁବର୍ଣ୍ଣଚିହ୍ନିତ, ବ୍ୟାଘ୍ରଚର୍ମସଜ୍ଜିତ, ଧ୍ୱଜବିଶିଷ୍ଟ

ଉତ୍ତମ ଉତ୍ତମ ରଥମାନଙ୍କଦ୍ୱାରା ଓ କ୍ରୁଦ୍ଧ ଭୁଜଙ୍ଗସଦୃଶ ବସ୍ତ୍ରନାଦକାରୀ, ସ୍ୱର୍ଣ୍ଣପୁଷ୍ପସଦୃଶ ଶରାସନଦ୍ୱାରା ପ୍ରଜ୍ୱଳିତ ଅନଳସଦୃଶ ସମସ୍ତ ଦିଗକୁ ପ୍ରଦୀପ୍ତ କରି ହେମଚନ୍ଦ୍ରାଳଙ୍କୃତ, ବ୍ୟାଘ୍ରଚର୍ମକଳ୍ପିତ, ବେଗଶୀଳ ଅଶ୍ୱମାନଙ୍କ ଦ୍ୱାରା ଆକାଶକୁ ପାନକଲସଦୃଶ ଚତୁର୍ଦ୍ଦିଗରେ ଶୋଭମାନ ହେଲେ । ୫ । ବଜ୍ରବର୍ମା ଅତ୍ୟନ୍ତକ୍ରୁଦ୍ଧ ସେହି ମହାରଥମାନେ ମହାମେଘଗର୍ଜ୍ଜନସଦୃଶ ଶବ୍ଦକାରୀ ରଥମାନଙ୍କରେ ଆରୋହଣ କରି ନିଶିତ-ଶରନିକର-ନିକ୍ଷେପ ପୂର୍ବକ ଅର୍ଜ୍ଜୁନଙ୍କର ସମସ୍ତ ଦିଗକୁ ସମାଚ୍ଛନ୍ନ କଲେ । ୬ । କୁଳୁତଦେଶ-ସମ୍ଭୂତ, ଦ୍ରୁତଗାମୀ, ବଳବ ଅଶ୍ୱମାନେ ସେହି ମହାରଥମାନଙ୍କୁ ବହନ-ପୂର୍ବକ ଦଶଦିଗକୁ ସମୁଜ୍ଜ୍ୱଳ କରି ଶୋଭମାନ ହେଲେ । ୭ । କୌରବ-ପକ୍ଷୀୟ ପ୍ରଧାନ ପ୍ରଧାନ ଯୋଦ୍ଧାମାନେ ପର୍ବତ, ନଦୀ ଓ ସିନ୍ଧୁଦେଶୀୟ ଓ ଅନ୍ୟାନ୍ୟଦେଶୀୟ ମହାବେଗଶୀଳ ଉତ୍ତମ ଉତ୍ତମ ତୁରଙ୍ଗମାନଙ୍କରେ ଆରୋହଣ କରି ଆପଣଙ୍କ ପୁତ୍ରକୁ ରକ୍ଷା କରିବା ମାନସରେ ଚତୁର୍ଦ୍ଦିଗରୁ ଧନଞ୍ଜୟଙ୍କ ରଥକୁ ପରିବେଷ୍ଟନ କଲେ । ୯ ।

ସେହି ପୁରୁଷସତ୍ତମମାନେ ସ୍ୱସ୍ୱ ବୃହତ୍ ଶଙ୍ଖମାନଙ୍କୁ ଧ୍ୱନି କରି ସସାଗର ପୃଥିବୀ ଓ ଅନ୍ତରୀକ୍ଷକୁ ପରିପୂରିତ କଲେ । କୃଷ୍ଣାର୍ଜ୍ଜୁନ ମଧ୍ୟ ସ୍ୱସ୍ୱ ଶଙ୍ଖ ଧ୍ୱନି କଲେ । ଅର୍ଜ୍ଜୁନ ଓ କୃଷ୍ଣ ସମୁଦାୟ ପ୍ରାଣିଙ୍କ ମଧ୍ୟରେ ଶ୍ରେଷ୍ଠ ଓ ସେମାନଙ୍କ ଶଙ୍ଖ ମଧ୍ୟ ସମୁଦାୟ ଶଙ୍ଖ ମଧ୍ୟରେ ଶ୍ରେଷ୍ଠ ଅଟେ । ୧୧ । ଅର୍ଜ୍ଜୁନଙ୍କ ଦେବଦତ୍ତ ଶଙ୍ଖ ଧ୍ୱନିରେ ପୃଥିବୀ, ଅନ୍ତରୀକ୍ଷ ଓ ଦିକ୍‌ସମସ୍ତ ସମାବୃତ ହେଲା ଓ କୃଷ୍ଣଙ୍କ ପାଞ୍ଚଜନ୍ୟ-ଶଙ୍ଖ ଧ୍ୱନି ସମୁଦାୟ ଶବ୍ଦକୁ ଅତିକ୍ରମ କରି ସ୍ୱର୍ଗ ଓ ମର୍ତ୍ତ୍ୟ ପରିପୂର୍ଣ୍ଣ କଲା । ଶୂରମାନଙ୍କର ହର୍ଷବର୍ଦ୍ଧନ ଓ ଭୀରୁ-ମାନଙ୍କର ତ୍ରାସଜନକ ସେହି ଦାରୁଣ ଶଙ୍ଖନିନାଦ ସମୟରେ ବହୁସଂଖ୍ୟକ ଭେରୀ, ଝର ଝର, ଆନକ ଓ ମୃଦଙ୍ଗ ବାଦିତ ହେଲା ।

ଦୁର୍ଯ୍ୟୋଧନହିତୈଷୀ, ଆପଣଙ୍କ ସୈନ୍ୟରକ୍ଷାକାରୀ, ନାନାଦେଶୀୟ ବିଖ୍ୟାତ ମହାଧନୁର୍ଦ୍ଧର, ମହାରଥୀ ବୀର, ମହୀପାଳମାନଙ୍କର ସେହି ଶଙ୍ଖଧ୍ୱନି ଅସହ୍ୟ ହେଲା । ୧୭ । ସେମାନେ କ୍ରୁଦ୍ଧ ହୋଇ କୃଷ୍ଣାର୍ଜ୍ଜୁନଙ୍କ କାର୍ଯ୍ୟର ପ୍ରତିକାର କରିବେ ବୋଲି ମନେ କରି ଉଚ୍ଚୈଃଶବ୍ଦରେ ଶଙ୍ଖଧ୍ୱନି କଲେ । ୧୮ । ହେ ପ୍ରଭୋ ! ଆପଣଙ୍କ ସୈନ୍ୟ ମଧ୍ୟରେ ନର, ନାଗ ଓ

ଅଶ୍ୱମାନେ ସେହି ଶଙ୍ଖଧ୍ୱନିଦ୍ୱାରା ଉଦ୍‌ବେଗଯୁକ୍ତ ଓ ଅସ୍ୱସ୍ଥପ୍ରାପ୍ତ ହେଲେ ।୧୯। ଯେପରି ନିର୍ଘାତଶବ୍ଦଦ୍ୱାରା ଆକାଶ ନିନାଦିତ ହୁଏ, ସେହିପରି ଆପଣଙ୍କ ସୈନ୍ୟମାନେ ଶଙ୍ଖସମୂହର ତୁମୁଳ ଧ୍ୱନିରେ ପରିବ୍ୟାପ୍ତ ହୋଇ ଅତିଶୟ ଉଦ୍‌ବିଗ୍ନ ହେଲେ । ୨୦ । ସେହି ଅତି ମହାନ୍ ଶବ୍ଦ ପ୍ରଳୟକାଳର ବଜ୍ରତୁଲ୍ୟ ଶବ୍ଦତୁଲ୍ୟ ସମସ୍ତ ଦିଗକୁ ପ୍ରତିଧ୍ୱନିତ କରି ସମସ୍ତ ସୈନ୍ୟଙ୍କୁ ତ୍ରାସିତ କଲା । ୨୧ ।

ହେ ମହାରାଜ ! ତତ୍ପରେ ଦୁର୍ଯୋଧନ ଓ ପୂର୍ବୋକ୍ତ ଆଠଜଣ ମହାରଥ ମହାରଥୀ ଜୟଦ୍ରଥଙ୍କ ରକ୍ଷାର୍ଥ ଅର୍ଜୁନଙ୍କୁ ନିବାରଣ କରିବାକୁ ଆରମ୍ଭ କଲେ । ୨୨ । ଅଶ୍ୱତ୍ଥାମା ତିସ୍ତରି ଶରଦ୍ୱାରା କୃଷ୍ଣଙ୍କୁ, ତିନିଗୋଟି ଭଲ୍ଲରେ ଅର୍ଜୁନଙ୍କୁ ଓ ପାଞ୍ଚଗୋଟି ଭଲ୍ଲରେ ଅର୍ଜୁନଙ୍କ ଧ୍ୱଜ ଓ ଅଶ୍ୱଚତୁଷ୍ଟୟଙ୍କୁ ପ୍ରହାର କଲେ । ୨୩ । ଜନାର୍ଦ୍ଦନ ପ୍ରତିବିଦ୍ଧ ହୁଅନ୍ତେ ଅର୍ଜୁନ ଅତିଶୟ କ୍ରୁଦ୍ଧ ହୋଇ ଛଅଶତ ବାଣ ଅଶ୍ୱତ୍ଥାମାଙ୍କ ଉପରକୁ ନିକ୍ଷେପ କରି କର୍ଣ୍ଣଙ୍କୁ ଦଶଗୋଟି ଶରରେ ଓ ବୃଷସେନଙ୍କୁ ତିନିଗୋଟି ବାଣରେ ବିଦ୍ଧ କଲେ । ଶଲ୍ୟଙ୍କର ମୁଷ୍ଟିସ୍ଥାନରୁ ସଶର ଶରାସନ ଛେଦନ କଲେ ।୨୪। ଶଲ୍ୟ ଅନ୍ୟ ଗୋଟିଏ ଶରାସନ ଗ୍ରହଣ କରି ଅର୍ଜୁନଙ୍କୁ ବିଦ୍ଧ କଲେ ଓ ଭୂରିଶ୍ରବା ଶିଳାଶାଣିତ ହେମପୁଙ୍ଖ ତିନିଗୋଟି ବାଣ, କର୍ଣ୍ଣ ବତିଶଗୋଟି ବାଣ, ବୃଷସେନ ପାଞ୍ଚଗୋଟି ବାଣ, ଜୟଦ୍ରଥ ତିସ୍ତରି ବାଣ, କୃପ ଦଶଗୋଟି ବାଣ ଓ ମଦ୍ରରାଜ ମଧ୍ୟ ଦଶଗୋଟି ବାଣ ଅର୍ଜୁନଙ୍କ ଉପରକୁ ନିକ୍ଷେପ କଲେ । ତତ୍ପରେ ଅଶ୍ୱତ୍ଥାମା ଷାଠିଏଗୋଟି ଶର ଅର୍ଜୁନଙ୍କ ପ୍ରତି ନିକ୍ଷେପ କରି କୃଷ୍ଣଙ୍କୁ ସପ୍ତତିବାଣଦ୍ୱାରା ପ୍ରହାରପୂର୍ବକ ପୁନର୍ବାର ପାଞ୍ଚଗୋଟି ବାଣରେ ଅର୍ଜୁନଙ୍କୁ ବିଦ୍ଧ କଲେ ।

କୃଷ୍ଣ ଯାହାଙ୍କର ସାରଥୀ, ଶ୍ୱେତାଶ୍ୱ ଯାହାଙ୍କର ବାହନ, ସେହି ନରସିଂହ ଅର୍ଜୁନ ହାସ୍ୟ କରି ସ୍ୱୀୟ ହସ୍ତଲାଘବ ପ୍ରଦର୍ଶନପୂର୍ବକ ସେ ସମସ୍ତଙ୍କୁ ପ୍ରତିବିଦ୍ଧ କଲେ । କର୍ଣ୍ଣଙ୍କୁ ଦ୍ୱାଦଶ ଓ ବୃଷସେନଙ୍କୁ ତିନିଗୋଟି ବାଣରେ ବିଦ୍ଧ କରି ଶଲ୍ୟଙ୍କ ଶରର ଶରାସନକୁ ମୁଷ୍ଟିସ୍ଥଳରୁ ଛେଦନ କଲେ । ପରେ ଭୂରିଶ୍ରବାଙ୍କୁ ତିନିଗୋଟି ବାଣରେ, ପୁନର୍ବାର ଶଲ୍ୟଙ୍କୁ ଦଶଗୋଟି ବାଣରେ, ଅଶ୍ୱତ୍ଥାମାଙ୍କୁ ଅଗ୍ନିଶିଖାତୁଲ୍ୟ ଶାଣିତ ଆଠଗୋଟି

ବାଣରେ, ବୃଷସେନଙ୍କୁ ପଞ୍ଚବିଂଶତି ବାଣରେ, ସିନ୍ଧୁରାଜଙ୍କୁ ଏକଶତ ବାଣରେ ଓ ପୁନର୍ବାର ଅଶ୍ୱତ୍ଥାମାଙ୍କୁ ସପ୍ତତି ବାଣରେ ପ୍ରହାର କଲେ । ଭୂରିଶ୍ରବା ସନ୍ନଦ୍ଧ ହୋଇ କୃଷ୍ଣଙ୍କ ଅଶ୍ୱରଶ୍ମିକୁ ଛେଦନ କରି ଅର୍ଜୁନଙ୍କୁ ନିସପ୍ତତି ବାଣରେ ଆହତ କଲେ । ତଦନନ୍ତର ଶ୍ୱେତବାହନ ଅର୍ଜୁନ ସଂକ୍ରୁଦ୍ଧ ହୋଇ ମହାବାୟୁ ମେଘସମସ୍ତଙ୍କୁ ନିବାରିତ କଲପ୍ରାୟ ଶତ ଶତ ତୀକ୍ଷ୍ଣ ଶରଦ୍ୱାରା ସମସ୍ତଙ୍କୁ ନିବାରିତ କଲେ । ୩୫ ।

---

## ୧୦୫ ଅଧ୍ୟାୟ

ଧୃତରାଷ୍ଟ୍ର କହିଲେ—ହେ ସଞ୍ଜୟ ! ପାଣ୍ଡବପକ୍ଷୀୟ ଓ ଅସ୍ମତ୍ପକ୍ଷୀୟ ବିବିଧାକାର, ଅସାମାନ୍ୟଶୋଭାସମ୍ପନ୍ନ ଧ୍ୱଜସମୂହର ବର୍ଣ୍ଣନା ଆମ୍ଭ ନିକଟରେ କୀର୍ତ୍ତନ କର । ୧ ।

ସଞ୍ଜୟ କହିଲେ—ହେ ରାଜେନ୍ଦ୍ର ! ସେହି ମହାତ୍ମାମାନଙ୍କର ନାନାପ୍ରକାର ଧ୍ୱଜ ଥିଲା । ସେହି ସମସ୍ତ ଧ୍ୱଜର ନାମ, ରୂପ ଓ ବର୍ଣ୍ଣ କ୍ରମରେ ବର୍ଣ୍ଣନା କରୁଅଛି ; ଆପଣ ଶ୍ରବଣ କରନ୍ତୁ । ୨ । ସେହି ସମସ୍ତ ପ୍ରଧାନ ରଥିମାନଙ୍କ ରଥରେ ନାନାବିଧ ଧ୍ୱଜସବୁ ପ୍ରଜ୍ୱଳିତ ପାବକତୁଲ୍ୟ ଦୃଷ୍ଟ ହେଲା । ଚତୁର୍ଦ୍ଦିଗରେ ବିବିଧବର୍ଣ୍ଣର ପତାକାଦ୍ୱାରା ସଂବୃତ, ନାନାବର୍ଣ୍ଣ ବହୁବିଧ ପରମଶୋଭମାନ, କାଞ୍ଚନମାଳା ଓ କାଞ୍ଚନଶିରୋଭୂଷଣରେ ଅଳଂକୃତ କାଞ୍ଚନମୟ ସମୁଚ୍ଛ୍ରିତ ଧ୍ୱଜସମୂହ କାଞ୍ଚନମୟ ମହାଗିରିଶିଖରତୁଲ୍ୟ ଶୋଭା ପାଇଲା । ସେହି ସମସ୍ତ ପତାକା ପବନରେ ସମୀରିତ ହୋଇ ରଙ୍ଗଭୂମିରେ ନୃତ୍ୟମାନ ନର୍ତ୍ତକୀଗଣସଦୃଶ ସନ୍ଦୃଷ୍ଟ ହେଲା । ରଥିମାନଙ୍କର ଇନ୍ଦ୍ରଧନୁସଦୃଶ ଦୀପ୍ୟମାନ ସେହି ପତାକାସମୂହ ପୁନଃ ପୁନଃ ପ୍ରକମ୍ପିତ ହୋଇ ଉତ୍ତମ ଉତ୍ତମ ରଥସମୂହକୁ ସୁଶୋଭିତ କଲା ।

ହେ ମହାରାଜ ! ଆମ୍ଭେ ଦେଖିଲୁଁ ଯେ, ଧନଞ୍ଜୟଙ୍କ ରଥରେ ଉଗ୍ରମୁଖ ସିଂହଲାଙ୍ଗୁଳବିଶିଷ୍ଟ ଭୀଷଣରୂପ ବାନରଧ୍ୱଜ ଥିଲା । ସେହି ବାନରଧ୍ୱଜ ପତାକାଦ୍ୱାରା ସମଳଂକୃତ ହୋଇ ସୈନ୍ୟମାନଙ୍କୁ ଭୀଷିତ କରୁଥିଲା ।

ଅଶ୍ୱତ୍ଥାମାଙ୍କ ରଥରେ ବାଳସୂର୍ଯ୍ୟପ୍ରଭମ ସିଂହଲାଙ୍ଗୁଳାକାର କାଞ୍ଚନମୟ ଇନ୍ଦ୍ରଧ୍ୱଜତୁଲ୍ୟପ୍ରଭାଶାଳୀ, ସମୁଚ୍ଛ୍ରିତ, ପବନକମ୍ପିତ ଧ୍ୱଜାଗ୍ରଭାଗ କୌରବ-ମାନଙ୍କ ଆନନ୍ଦ ଉତ୍ପାଦନ କରୁଥିଲା । ଅଧିରଥପୁତ୍ର କର୍ଣ୍ଣଙ୍କ ରଥରେ କାଞ୍ଚନମୟ ହସ୍ତିକକ୍ଷାଚିହ୍ନିତ ପତାକା ଓ ମାଲ୍ୟଶୋଭିତ ସମୁଚ୍ଛ୍ରିତ ଧ୍ୱଜ ଆକାଶକୁ ପରିପୂର୍ଣ୍ଣ କରି ବାୟୁଦ୍ୱାରା କମ୍ପିତ ହୋଇ ନୃତ୍ୟ କଲାପ୍ରାୟ ଦୃଷ୍ଟି-ହେଉଥିଲା ।

ପାଣ୍ଡବମାନଙ୍କର ଆଚାର୍ଯ୍ୟ ଯଶସ୍ୱୀ ବ୍ରାହ୍ମଣ ଗୌତମତନୟ କୃପଙ୍କର ରଥରେ ସମଳଂକୃତ ଗୋ-ବୃଷ-ଚିହ୍ନିତ ଧ୍ୱଜ ଶୋଭା ପାଉଥିଲା । ଯେପରି ତ୍ରିପୁରାରି ମହାଦେବଙ୍କ ରଥ ଗୋ-ବୃଷଦ୍ୱାରା ଶୋଭମାନ ହୋଇଥାଏ, ସେହିପରି କୃପାଚାର୍ଯ୍ୟଙ୍କ ମହାରଥ ଗୋବୃଷଚିହ୍ନିତ ଧ୍ୱଜଦ୍ୱାରା ଶୋଭା ପାଉଥିଲା । ବୃଷସେନଙ୍କ ରଥରେ ନାନାବିଧରତ୍ନଶୋଭିତ କାଞ୍ଚନମୟ ମୟୂରଧ୍ୱଜ ଥିଲା । ୧୬ । ସେହି ମୟୂର ସେନାଗ୍ରଭାଗକୁ ଶୋଭିତ କରି କଥା କହିବାକୁ ଉଦ୍ୟତ ହେଲାପ୍ରାୟ ଶୋଭା ପାଉଥିଲା । ଯେପରି ବିରାଜିତ ମୟୂରଦ୍ୱାରା କାର୍ତ୍ତିକେୟ ପ୍ରତିଭାତ ହୁଅନ୍ତି, ସେହିପରି ବୃଷସେନ ସେହି ମୟୂରଧ୍ୱଜଦ୍ୱାରା ସୁଶୋଭିତ ହୋଇଥିଲେ । ମଦ୍ରରାଜ ଶଲ୍ୟଙ୍କ ରଥଧ୍ୱଜର ଅଗ୍ରଭାଗରେ ଅଗ୍ନିଶିଖାକାର ଅନୁପମ ଶୋଭାନ୍ୱିତ ଲାଙ୍ଗଳରେଖାର ଚିହ୍ନ ଦୃଷ୍ଟି ହେଉଥିଲା । ଯେପରି କ୍ଷେତ୍ରମଧ୍ୟରେ ଲାଙ୍ଗଳକର୍ଷିତ ସ୍ଥଳ ସର୍ବବିଧ ବୀଜାଙ୍କୁରଦ୍ୱାରା ଶୋଭମାନ ହୁଏ, ସେହିପରି ସେହି ସୁଚିହ୍ନିତ ଶ୍ରୀସମ୍ପନ୍ନ ଲାଙ୍ଗଳରେଖା ଶୋଭାପ୍ରାପ୍ତ ହେଲା ।

ସିନ୍ଧୁରାଜ ଜୟଦ୍ରଥଙ୍କ ରଥଧ୍ୱଜର ଅଗ୍ରଭାଗରେ ରଜତମୟ, ଲୋହିତସୂର୍ଯ୍ୟପ୍ରଭ, ସ୍ୱର୍ଣ୍ଣଜାଲଦ୍ୱାରାସମଳଙ୍କୃତ ବରାହଚିହ୍ନ ବିରାଜମାନ ହେଉଥିଲା । ରାଜା ଜୟଦ୍ରଥ ସେହି ରଜତମୟ ଧ୍ୱଜଦ୍ୱାରା ପୂର୍ବକାଳର ଦେବାସୁରଯୁଦ୍ଧରେ ଶୋଭମାନ ସୂର୍ଯ୍ୟସଦୃଶ ଶୋଭା ପାଇଲେ । ଯଜ୍ଞଶୀଳ, ଧୀମାନ୍ ସୋମଦତ୍ତନନ୍ଦନଙ୍କର ସୂର୍ଯ୍ୟପ୍ରଭ ରଥଧ୍ୱଜ ଯୂପଚିହ୍ନିତ ଥିଲା । ସେହି ଯୂପଧ୍ୱଜରେ କଳ୍ପିତ ଚନ୍ଦ୍ର ଦୃଷ୍ଟି ହେଉଥିଲା । ଯେପରି ରାଜସୂୟ ମହାଯଜ୍ଞରେ ସମୁଚ୍ଛ୍ରିତ ଯୂପ ବିରାଜିତ ହୁଏ, ସେହିପରି ତାହାଙ୍କର କାଞ୍ଚନମୟ ଯୂପଧ୍ୱଜ ବିରାଜମାନ ହୋଇଥିବାର ଅବଲୋକନ କଲୁଁ ।

ରାଜା ଶଲ୍ୟଙ୍କର ରଜତମୟ ମହାହସ୍ତିଚହ୍ନିତ ରଥଧ୍ୱଜ କାଞ୍ଚନଚହ୍ନାଙ୍ଗ, ମୟୂରଦ୍ୱାରା ଉପଶୋଭିତ ହୋଇଥିଲା । ସ୍ୱର୍ଣ୍ଣଖଚିତ ମୟୂରାଙ୍ଗରେ ଉପଶୋଭିତ ସେହି ହସ୍ତିଚହ୍ନିତ ଧ୍ୱଜ ଆପଣଙ୍କର ସୈନ୍ୟସମୂହକୁ ସୁଶୋଭିତ କରି ଦୀପ୍ତିପ୍ରାପ୍ତ ହେଉଥିଲା । ୨୫ । ଯେପରି ଶ୍ୱେତ ମହାନାଗ ଦେବରାଜଙ୍କର ସୈନ୍ୟଙ୍କୁ ଶୋଭିତ କରେ, ସେହିପରି ଆପଣଙ୍କ ପୁତ୍ର କୌରବରାଜ ଦୁର୍ଯ୍ୟୋଧନଙ୍କର ରଥଶ୍ରେଷ୍ଠର ଧ୍ୱଜରେ କାଞ୍ଚନସମ୍ଭୃତ ଶତଶତ କ୍ଷୁଦ୍ରଘଣ୍ଟିକାଧ୍ୱନିତ ଚହିତ ରତ୍ନମୟ ନାଗ ସୈନ୍ୟମାନଙ୍କୁ ସୁଶୋଭିତ କରୁଥିଲା ।

କୁରୁପ୍ରଧାନ ଆପଣଙ୍କ ପୁତ୍ର ସେହି ଶ୍ୱେତନାଗଚହ୍ନିତ ମହାଧ୍ୱଜଦ୍ୱାରା ଅତିଶୟ ଶୋଭମାନ ହୋଇଥିଲେ । ହେ ମହାରାଜ ! ସେହି ସଂଗ୍ରାମରେ ଆପଣଙ୍କ ସୈନ୍ୟମଧ୍ୟରେ ଅଶ୍ୱତ୍ଥାମାପ୍ରଭୃତି ନଅଜଣ ଯୋଦ୍ଧାଙ୍କର କିଂହଲାଙ୍ଗୁଳାଦି ଚହ୍ନିତ ନବବିଧ ମହାଧ୍ୱଜ ସମ୍ମିଳିତ ହୋଇ ଯୁଗାନ୍ତକାଳୀନ ଆଦିତ୍ୟସଦୃଶ ଆପଣଙ୍କ ସୈନ୍ୟମାନଙ୍କୁ ସମୁଜ୍ଜ୍ୱଳ କରୁଥିଲା । କିନ୍ତୁ ଅର୍ଜୁନଙ୍କର ରଥଧ୍ୱଜରେ ଏକମାତ୍ର ଯେଉଁ ମହାକପି ଥିଲା, ତଦ୍ଦ୍ୱାରା ଅର୍ଜୁନ ବହ୍ନିପ୍ରଦୀପ୍ତ ହିମବାନ୍ ପର୍ବତସଦୃଶ ଶୋଭା ପାଉଥିଲେ ।

ଅନନ୍ତର ଶତ୍ରୁତାପନ ସେହି ମହାରଥମାନେ ଅର୍ଜୁନଙ୍କ ନିମିତ୍ତ ବିଚିତ୍ର ଶୁଭ୍ର ମହାଶରାସନମାନ ଶୀଘ୍ର ଗ୍ରହଣ କଲେ । ଦିବ୍ୟକର୍ମା ପାର୍ଥ ମଧ୍ୟ ଶତ୍ରୁବିନାଶନ ଗାଣ୍ଡୀବ ଗ୍ରହଣ କଲେ । ହେ ମହାରାଜ ! ଏହି ସମସ୍ତ କାର୍ଯ୍ୟ ଆପଣଙ୍କ ଦୁର୍ମନ୍ତ୍ରଣା ହେତୁ ସଂଘଟିତ ହୋଇଅଛି ଓ କେବଳ ଆପଣଙ୍କ ଦୋଷରୁ ରାଜଗଣ ନାନା ଦିଗ୍‌ଦେଶରୁ ଆଗମନ କରି ଅଶ୍ୱ, ହସ୍ତୀ ଓ ରଥସହିତ ବିନଷ୍ଟ ହେଲେ । ଦୁର୍ଯ୍ୟୋଧନପ୍ରଭୃତି ସେହି ସମସ୍ତ ଯୋଦ୍ଧାମାନେ ଓ ଦିବ୍ୟକର୍ମା ଅର୍ଜୁନ, ଏମାନେ ପରସ୍ପର ତର୍ଜ୍ଜନଗର୍ଜ୍ଜନ କରି ଯୁଦ୍ଧ ଆରମ୍ଭ କଲେ ।

କୃଷ୍ଣ ଯାହାଙ୍କର ସାରଥୀ, ସେହି ଶତ୍ରୁତାପନ କୁନ୍ତୀପୁତ୍ର ଅର୍ଜୁନ ସମରରେ ଏହି ପରମ ଅଦ୍ଭୁତ କାର୍ଯ୍ୟ କଲେ ଯେ ଏକାକୀ ହୋଇ ବହୁମହାରଥୀଙ୍କ ସହିତ ନିର୍ଭୀକ ହୋଇ ଯୁଦ୍ଧ କଲେ । ସେହି ମହାବାହୁ

ସେହି ସମସ୍ତ ନରେନ୍ଦ୍ରଙ୍କୁ ଓ ଜୟଦ୍ରଥଙ୍କୁ ନିହତ କରିବା ଅଭିଳାଷରେ ଗାଣ୍ଡୀବ ବିକ୍ଷେପ କରି ନିଶସ୍ତ୍ରଳରେ ସୁଶୋଭିତ ହେଲେ । ସେ ସହସ୍ର ସହସ୍ର ଶର ନିକ୍ଷେପ କରି ସେହି ସମସ୍ତ ଯୋଦ୍ଧାଙ୍କୁ ଅଦୃଶ୍ୟ କଲେ । ଅନନ୍ତର ସେମାନେ ମଧ୍ୟ ଚତୁର୍ଦ୍ଦିଗରୁ ଶରସମୂହ ନିକ୍ଷେପ କରି ଅର୍ଜ୍ଜୁନଙ୍କୁ ଅଦୃଶ୍ୟ କଲେ । ସେମାନେ ଶରନିକର ଦ୍ୱାରା ଅର୍ଜ୍ଜୁନଙ୍କୁ ସମାବୃତ କରନ୍ତେ ସୈନ୍ୟମାନଙ୍କ ମଧ୍ୟରେ ସମ୍ମୁଖୀକୃତ ଶବ୍ଦ ଆରମ୍ଭ ହେଲା । ୩୮ ।

---

# ୧୦୬ ଅଧ୍ୟାୟ

ଧୃତରାଷ୍ଟ୍ର କହିଲେ,—ହେ ସଞ୍ଜୟ ! ଧନଞ୍ଜୟ ଜୟଦ୍ରଥଙ୍କ ସମୀପରେ ଉପସ୍ଥିତ ହୁଅନ୍ତେ ଦ୍ରୋଣକର୍ତ୍ତୃକ ସଂରୁଦ୍ଧ ପାଞ୍ଚାଳମାନେ କୁରୁମାନଙ୍କ ସହିତ କିପରି ଯୁଦ୍ଧ କଲେ ? ୧ ।

ସଞ୍ଜୟ କହିଲେ,—ହେ ମହାରାଜ ! ଅପରାହ୍ଣ ସମୟରେ ପାଞ୍ଚାଳମାନଙ୍କ ସହିତ କୁରୁମାନଙ୍କର ଯେଉଁ ଲୋମହର୍ଷଣ ତୁମୁଳ ଯୁଦ୍ଧ ହୋଇଥିଲା, ସେହି ଦ୍ୟୂତକ୍ରୀଡ଼ାରୂପ ଯୁଦ୍ଧରେ ଦ୍ରୋଣ ପଣସଦୃଶ ହୋଇଥିଲା ପରି ବୋଧ ହେଲା । ୨ । ପାଞ୍ଚାଳମାନେ ଦ୍ରୋଣଙ୍କୁ ବଧ କରିବା ମାନସରେ ହୃଷ୍ଟଚିତ୍ତ ହୋଇ ଗର୍ଜ୍ଜନପୂର୍ବକ ଶରବର୍ଷଣ କଲେ ଓ କୌରବମାନେ ମଧ୍ୟ ଦ୍ରୋଣଙ୍କର ରକ୍ଷା ମାନସରେ ଶରନିକ୍ଷେପ କରିବାରେ ପ୍ରବୃତ୍ତ ହେଲେ । ସେମାନଙ୍କ ମଧ୍ୟରେ ଦେବାସୁରଗଣଙ୍କ ଯୁଦ୍ଧ ତୁଲ୍ୟ ଅତିତୁମୁଳ ଘୋରତର ଅଦ୍ଭୁତ ସମର ହେଲା । ୪ । ପାଣ୍ଡବମାନଙ୍କ ସହିତ ପାଞ୍ଚାଳମାନେ ଦ୍ରୋଣଙ୍କର ରଥସମୀପସ୍ଥ ହୋଇ ତାହାଙ୍କର ସୈନ୍ୟ ଭେଦ କରିବା ମାନସରେ ମହାସ୍ତ୍ରସମୂହ ପ୍ରୟୋଗ କଲେ । ୫ । ରଥୀମାନେ ରଥାରୂଢ଼ ହୋଇ ମଧ୍ୟମ ବେଗ ଅବଲମ୍ବନ ପୂର୍ବକ ଦ୍ରୋଣଙ୍କ ରଥ ପର୍ଯ୍ୟନ୍ତ ସୈନ୍ୟମାନଙ୍କୁ ପ୍ରକମ୍ପିତ କରି ଅସ୍ତ୍ରବର୍ଷଣ କଲେ । ୬ । କେକେୟମାନଙ୍କର ମହାରଥ ବୃହତ୍କ୍ଷତ୍ର ଦ୍ରୋଣଙ୍କ ପ୍ରତି ଇନ୍ଦ୍ର-ଅଶନି-ସଦୃଶ ଶାଣିତ ବାଣମାନଙ୍କୁ ବୁଣିଦେଲେ । ୭ । ମହାଯଶା କ୍ଷେମଧୂର୍ତ୍ତି ସତ୍ୱର ହୋଇ ଶତଶତ, ସହସ୍ର ସହସ୍ର ବାଣମାନଙ୍କୁ ବିମୋଚନ କରି ବୃହତ୍କ୍ଷତ୍ରଙ୍କୁ ଆକ୍ରମଣ କଲେ । ୮ । ମହେନ୍ଦ୍ର ଯେପରି ଶମ୍ବରାସୁରଙ୍କୁ

ଆକ୍ରମଣ କରିଥିଲେ, ସେହିପରି ଚେଦିଶ୍ରେଷ୍ଠ ଅତ୍ୟନ୍ତବଳବାନ ଧୃଷ୍ଟକେତୁ ଉତ୍ସାହିତ ଦ୍ରୋଣଙ୍କ ପ୍ରତି ଧାବମାନ ହେଲେ । ୯ । ତାହାଙ୍କୁ ବ୍ୟାଦିତାନନ ଅନ୍ତକସଦୃଶ ଆସିବାର ଦେଖି ମହାଧନୁର୍ଦ୍ଧର ବୀରଧନ୍ୱା ସତ୍ୱର ହୋଇ ତାହାଙ୍କ ପ୍ରତି ଧାବମାନ ହେଲେ ।

ତଦନନ୍ତର ବୀର୍ଯ୍ୟବାନ୍ ଦ୍ରୋଣାଚାର୍ଯ୍ୟ ଜୟାଭିଳାଷରେ ଅବସ୍ଥିତ ମହାରାଜ ଯୁଧିଷ୍ଠିରଙ୍କୁ ଓ ସୈନ୍ୟମାନଙ୍କୁ ନିବାରଣ କଲେ । ୧୧ । ଆପଣଙ୍କ ପୁତ୍ର ମହାବୀର ପରାକ୍ରାନ୍ତ ବିକର୍ଣ୍ଣ ଯୁଦ୍ଧବିଶାରଦ ମହାବଳପରାକ୍ରମଶୀଳ ନକୁଳଙ୍କୁ ସମାଗତ ହେବାର ଦେଖି ତାହାଙ୍କପ୍ରତି ଧାବମାନ ହେଲେ । ଶତ୍ରୁତାପନ ଦୁର୍ମୁଖ ସହଦେବଙ୍କୁ ସମାଗତ ହେବାର ଦେଖି ତାହାଙ୍କ ପ୍ରତି ସହସ୍ର ସହସ୍ର ଶର ନିକ୍ଷେପ କଲେ । ୧୩ । ବ୍ୟାଘ୍ରଦତ୍ତ ନରଶ୍ରେଷ୍ଠ ସାତ୍ୟକଙ୍କୁ ମୁହୁର୍ମୁହୁଃ ପ୍ରକମ୍ପିତ କରି ସୁଶାଣିତ ତୀକ୍ଷ୍ଣ ଶରସମୂହଦ୍ୱାରା ତାହାଙ୍କୁ ନିବାରଣ କରିବାରେ ପ୍ରବୃତ୍ତ ହେଲେ । ୧୪ । ରଥିପ୍ରଧାନ ସୋମଦତ୍ତନନ୍ଦନ ଶଲ ସଂରବ୍ଧ ହୋଇ ପ୍ରବଳ ବାଣନିକ୍ଷେପକାରୀ ନର-ବ୍ୟାଘ୍ର ଦ୍ରୌପଦୀପୁତ୍ରମାନଙ୍କୁ ନିବାରଣ କଲେ । ୧୫ । ମହାରଥୀ ଋଷ୍ୟଶୃଙ୍ଗ-ନନ୍ଦନ ଅଳମ୍ବୁଷ ଭୀଷଣରୂପ କ୍ରୁଦ୍ଧ ଭୀମସେନଙ୍କୁ ସମାଗତ ହେବାର ଦେଖି ନିବାରଣ କଲେ । ୧୬ । ଯେପରି ପୂର୍ବକାଳରେ ରାମରାବଣଙ୍କର ଯୁଦ୍ଧ ହୋଇଥିଲା ସେହିପରି ସେହି ନର-ରାକ୍ଷସ ଦୁହିଁଙ୍କ ମଧ୍ୟରେ ଯୁଦ୍ଧ ହେଲା । ୧୭ ।

ହେ ଭରତଶ୍ରେଷ୍ଠ ! ତଦନନ୍ତର ଯୁଧିଷ୍ଠିର ନତପର୍ବ ନବେଗୋଟି ବାଣଦ୍ୱାରା ଦ୍ରୋଣଙ୍କର ସର୍ବ ମର୍ମସ୍ଥଳରେ ବିଦ୍ଧ କଲେ । ୧୮ । ଆଚାର୍ଯ୍ୟ ଦ୍ରୋଣ ମଧ୍ୟ ଯଶସ୍ୱୀ ଯୁଧିଷ୍ଠିରଙ୍କ କର୍ତ୍ତୃକ ଶରବିଦ୍ଧ ହୋଇ ପଞ୍ଚବିଂଶତି ବାଣଦ୍ୱାରା ଯୁଧିଷ୍ଠିରଙ୍କ ସ୍ତନଦ୍ୱୟର ମଧ୍ୟସ୍ଥଳରେ ଆଘାତ କଲେ । ୧୯ । ପୁନର୍ବାର ସର୍ବଯୋଦ୍ଧାଙ୍କ ସାକ୍ଷାତରେ ଯୁଧିଷ୍ଠିରଙ୍କ ଅଶ୍ୱ, ସାରଥୀ, ଧ୍ୱଜ ପ୍ରତି ଓ ସ୍ୱୟଂ ଯୁଧିଷ୍ଠିରଙ୍କ ପ୍ରତି ମଧ୍ୟ ବିଂଶତି ବାଣ ନିକ୍ଷେପ କଲେ । ୨୦ । ଧର୍ମାତ୍ମା ଯୁଧିଷ୍ଠିର ହସ୍ତଲାଘବ ପ୍ରଦର୍ଶନ କରି ଦ୍ରୋଣଙ୍କ ନିକ୍ଷିପ୍ତ ସେହି ବାଣସମୂହଙ୍କୁ ନିବାରଣ କଲେ । ୨୧ ।

ଅନନ୍ତର ଧନୁର୍ଦ୍ଧାରୀମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ ଦ୍ରୋଣାଚାର୍ଯ୍ୟ ଅତ୍ୟନ୍ତ କ୍ରୁଦ୍ଧ ହୋଇ ମହାତ୍ମା ଯୁଧିଷ୍ଠିରଙ୍କ ଶରାସନକୁ ଛେଦନ କଲେ । ୨୨ । ତାହାଙ୍କ ଧନୁ ଛିନ୍ନ ହେବାରୁ ତ୍ୱରାଯୁକ୍ତ ହୋଇ ମହାରଥ ଦ୍ରୋଣ ସହସ୍ର ସହସ୍ର ଶରଦ୍ୱାରା ତାହାଙ୍କୁ ସମାଚ୍ଛନ୍ନ କଲେ । ୨୩ । ପ୍ରାଣିମାନେ ଯୁଧିଷ୍ଠିରଙ୍କୁ ଦ୍ରୋଣଙ୍କ ଶରସମୂହରେ ଅଦୃଶ୍ୟ ହେବାର ଅବଲୋକନ କରି ମନେ କଲେ ଯେ, ଯୁଧିଷ୍ଠିର ନଷ୍ଟପ୍ରାୟ ହତ ହୋଇଅଛନ୍ତି । ୨୪ ।

ହେ ରାଜେନ୍ଦ୍ର ! କେହି କେହି ମନେ କଲେ ଯେ, ଯୁଧିଷ୍ଠିର ରଣରେ ପରାଙ୍ମୁଖ ହେଲେ । କେହି ଅବା ମନେ କଲେ ଯେ, ଯଶସ୍ୱୀ ବ୍ରାହ୍ମଣଙ୍କ ଦ୍ୱାରା ରାଜା ଅପହୃତ ହୋଇଅଛନ୍ତି । ୨୫ । ବୀର୍ଯ୍ୟବାନ୍ ଧର୍ମରାଜ ଯୁଧିଷ୍ଠିର ଅତ୍ୟନ୍ତ କୃଚ୍ଛ୍ରପ୍ରାପ୍ତ ହୋଇ ଦ୍ରୋଣକର୍ତ୍ତୃକ ଛିନ୍ନ ଶରାସନକୁ ପରିତ୍ୟାଗପୂର୍ବକ ଅନ୍ୟ ଗୋଟିଏ ଉତ୍ତମ ଭାରସାଧନ ଶରାସନ ଗ୍ରହଣ କରି ଦ୍ରୋଣବିମୁକ୍ତ ସେହି ସହସ୍ର ସହସ୍ର ବାଣକୁ ଛେଦନ କଲେ, ଏହା ଅଦ୍ଭୁତ ସଦୃଶ ହେଲା । ରାଜା ଯୁଧିଷ୍ଠିର ସେହି ବାଣସମୂହକୁ ଛେଦନ କରି କ୍ରୋଧ-ଲୋହିତ-ଲୋଚନରେ ଗିରିବିଦାରିଣୀ ଗୋଟିଏ ଶକ୍ତି ଗ୍ରହଣ କଲେ । ସ୍ୱର୍ଣ୍ଣଦଣ୍ଡଯୁକ୍ତ ମହାଭୟାନକ ଅଷ୍ଟଘଣ୍ଟାସମନ୍ୱିତ ସେହି ଶକ୍ତିକୁ ବଳପୂର୍ବକ ନିକ୍ଷେପ କରି ପ୍ରହୃଷ୍ଟଚିତ୍ତରେ ବଳବାନ୍ ନିନାଦ କଲେ । ସେହି ଶବ୍ଦରେ ସମସ୍ତ ପ୍ରାଣୀ ତ୍ରାସିତ ହେଲାପ୍ରାୟ ଦୃଷ୍ଟ ହେଲେ । ୩୦ । ଧର୍ମରାଜନିକ୍ଷିପ୍ତ ଶକ୍ତିକୁ ସନ୍ଦର୍ଶନ କରି ପ୍ରାଣିମାନେ ଦ୍ରୋଣଙ୍କ ସ୍ୱସ୍ତିବାଦ କଲେ । ୩୧ । ରାଜା ଯୁଧିଷ୍ଠିରଙ୍କ ଭୁଜନିକ୍ଷିପ୍ତ ନିର୍ମୋକନିର୍ମୁକ୍ତ ଉରଗତୁଲ୍ୟ ସେହି ଶକ୍ତି ଦିକ୍‌ବିଦିକ୍ ଓ ଗଗନମଣ୍ଡଳକୁ ପ୍ରଜ୍ୱଳିତ କରି ତେଜସ୍ୱୀ ସର୍ପସଦୃଶ ଦ୍ରୋଣଙ୍କ ସମୀପକୁ ଆଗମନ କଲା ।

ହେ ନରପାଳ ! ଅସ୍ତ୍ରଜ୍ଞପ୍ରଧାନ ଦ୍ରୋଣ ସେହି ଶକ୍ତିକୁ ସହସା ସମାଗତ ହେବାର ଦେଖି ବ୍ରାହ୍ମ ଅସ୍ତ୍ର ପ୍ରାଦୁର୍ଭୂତ କଲେ । ସେହି ପ୍ରାଦୁର୍ଭୂତ ବ୍ରାହ୍ମ ଅସ୍ତ୍ର ସେହି ଘୋରଦର୍ଶନା ଶକ୍ତିକୁ ଭସ୍ମସାତ୍ କରି ଯଶସ୍ୱୀ ଯୁଧିଷ୍ଠିରଙ୍କ ରଥପ୍ରତି ଆଗମନ କଲା । ମହାପ୍ରାଜ୍ଞ ଯୁଧିଷ୍ଠିର ଦ୍ରୋଣନିକ୍ଷିପ୍ତ ବ୍ରାହ୍ମ ଅସ୍ତ୍ରକୁ ସମୁଦ୍ୟତ ହେବାର ଦେଖି ତାହାକୁ ବ୍ରହ୍ମାସ୍ତ୍ରଦ୍ୱାରା ବିନଷ୍ଟ କଲେ । ତଦ୍‌ପରେ ନତପର୍ବ ପାଞ୍ଚଗୋଟି ବାଣଦ୍ୱାରା ଦ୍ରୋଣଙ୍କୁ ବିଦ୍ଧ କରି ଅତିତୀକ୍ଷ୍ଣ ଗୋଟିଏ

କ୍ଷୁରପ୍ରଦ୍ୱାରା ଦ୍ରୋଣଙ୍କର ମହତ୍ ଶରାସନକୁ ଚ୍ଛେଦନ କଲେ । କ୍ଷତ୍ରିୟମର୍ଦ୍ଦନ ଦ୍ରୋଣ ଛିନ୍ନ ଶରାସନକୁ ପରିତ୍ୟାଗ କରି ସହସା ଧର୍ମ୍ମପୁତ୍ରଙ୍କ ପ୍ରତି ଗୋଟିଏ ଗଦା ନିକ୍ଷେପ କଲେ । ଦ୍ରୋଣଙ୍କର ସେହି ଗଦାକୁ ଆପତିତା ହେବାର ଦେଖି ଶତ୍ରୁତାପନ ଯୁଧିଷ୍ଠିର ମଧ୍ୟ ଗୋଟିଏ ଗଦା ଗ୍ରହଣ କରି ନିକ୍ଷେପ କଲେ । ଉଭୟଙ୍କର ସହସାନିକ୍ଷିପ୍ତ ଗଦାଦ୍ୱୟ ପରସ୍ପର ସଂଲଗ୍ନ ହୋଇ ସଂଘର୍ଷଣପ୍ରଯୁକ୍ତ ଅଗ୍ନି ଉତ୍ପନ୍ନ କରି ଭୂତଳରେ ନିପତିତ ହେଲା ।

ତଦନନ୍ତର ଦ୍ରୋଣ ଅତିଶୟ କ୍ରୁଦ୍ଧ ହୋଇ ଚାରିଗୋଟି ତୀକ୍ଷ୍ଣ ଶରଦ୍ୱାରା ଧର୍ମରାଜଙ୍କ ଚାରିଅଶ୍ୱକୁ ନିହତ କରି ଏକଗୋଟି ବାଣରେ ଇନ୍ଦ୍ରାୟୁଧସମ ଶରାସନକୁ ଛେଦନ କଲେ । ୪୧ । ଅନନ୍ତର ଗୋଟିଏ ବାଣରେ ରଥଧ୍ୱଜକୁ କର୍ତ୍ତନ କରି ତିନିଗୋଟି ବାଣ ଯୁଧିଷ୍ଠିରଙ୍କ ଉପରକୁ ନିକ୍ଷେପ କଲେ । ରାଜା ଯୁଧିଷ୍ଠିର ନିରସ୍ତ୍ର ହୋଇ ହତାଶ୍ୱ ରଥରୁ ଲମ୍ଫ-ପ୍ରଦାନପୂର୍ବକ ଊର୍ଦ୍ଧ୍ୱଭୁଜ ହୋଇ ଦଣ୍ଡାୟମାନ ହେଲେ । ହେ ପ୍ରଭୋ ! ଦ୍ରୋଣ ତାହାଙ୍କୁ ନିରସ୍ତ୍ର ଓ ରଥହୀନ ଦେଖି ଲଘୁହସ୍ତରେ ତୀକ୍ଷ୍ଣ ତୀକ୍ଷ୍ଣ ଶରନିକର ନିକ୍ଷେପ ପୂର୍ବକ ଶତ୍ରୁପର୍ଯ୍ୟାୟ ତାହାଙ୍କର ସମସ୍ତ ସୈନ୍ୟଙ୍କୁ ବିମୋହିତ କଲେ ।

ଅନନ୍ତର ଯେପରି ମହାବଳପରାକ୍ରାନ୍ତ ସିଂହ ମୃଗ ପ୍ରତି ଧାବମାନ ହୁଏ, ସେହିପରି ଦ୍ରୋଣ ସ୍ୱୟଂ ପ୍ରତିଜ୍ଞାରକ୍ଷା ନିମିତ୍ତ ଯୁଧିଷ୍ଠିରଙ୍କ ନିକଟକୁ ଧାବମାନ ହେବାର ଦେଖି ପାଣ୍ଡବମାନଙ୍କ ମଧ୍ୟରେ ସହସା ହାହାକାର ଶବ୍ଦ ସମୁତ୍ଥିତ ହେଲା । ଦ୍ରୋଣ ରାଜାଙ୍କୁ ହରଣ କଲେ ବୋଲି ତୁମୁଳ ଶବ୍ଦ ପାଣ୍ଡବ ସୈନ୍ୟ ମଧ୍ୟରେ ସର୍ବତ୍ର ଜାତ ହେଲା । ତଦନନ୍ତର କୁନ୍ତୀନନ୍ଦନ ରାଜା ଯୁଧିଷ୍ଠିର ସତ୍ୱର ହୋଇ ସହଦେବଙ୍କ ରଥରେ ଆରୋହଣପୂର୍ବକ ବେଗରେ ଅଶ୍ୱଚାଳନା କରି ପଳାୟନ କଲେ । ୪୭ ।

---

# ୧୦୭ ଅଧ୍ୟାୟ

ସଞ୍ଜୟ କହିଲେ—ହେ ମହାରାଜ ! ମହାବୀର କ୍ଷେମଧୂର୍ତ୍ତି ସମର-କ୍ଷେତ୍ରକୁ ସମାଗତ, କେକେୟଦେଶୀୟ, ଦୃଢ଼ବିକ୍ରମ ବୃହତ୍‌କ୍ଷତ୍ରଙ୍କ ବକ୍ଷଃସ୍ଥଳକୁ ଶରସମୂହ ଦ୍ୱାରା ବିଦ୍ଧ କଲେ । ୧ ।

ବୃହତ୍‌କ୍ଷତ୍ର ତ୍ୱରିତ ହୋଇ ଦ୍ରୋଣସୈନ୍ୟମାନଙ୍କୁ ଭେଦ କରିବା ମାନସରେ କ୍ଷେମଧୂର୍ତ୍ତିଙ୍କୁ ନବତି ସଂଖ୍ୟକ ନତପର୍ବ ବାଣଦ୍ୱାରା ସମାହତ କଲେ । ୨ । କ୍ଷେମଧୂର୍ତ୍ତି ସଂକ୍ରୁଦ୍ଧ ହୋଇ ଶାଣିତ ପୀତ ଗୋଟିଏ ଭଲ୍ଲଦ୍ୱାରା କେକେୟ ରାଜାଙ୍କର ଶରାସନକୁ ଛେଦନ କଲେ । ୩ । ସର୍ବଧନ୍ୱିପ୍ରଧାନ ବୃହତ୍‌କ୍ଷତ୍ରଙ୍କୁ ନତପର୍ବ ଗୋଟିଏ ବାଣରେ ବିଦ୍ଧ କଲେ । ୪ । ଅନନ୍ତର ବୃହତ୍‌କ୍ଷତ୍ର ହସିଲପ୍ରାୟ ହୋଇ ଅନ୍ୟ ଗୋଟିଏ ଶରାସନ ଗ୍ରହଣପୂର୍ବକ ମହାରଥ କ୍ଷେମଧୂର୍ତ୍ତିଙ୍କୁ ଅଶ୍ୱ, ସାରଥୀ ଓ ରଥବିହୀନ କଲେ । ୫ ।

ତତ୍ପରେ ଶାଣିତ ପୀତ ଗୋଟିଏ ଭଲ୍ଲଦ୍ୱାରା ତାହାଙ୍କ ଦେହରୁ ଜ୍ୱଳିତକୁଣ୍ଡଳମଣ୍ଡିତ ମସ୍ତକକୁ ଛେଦନ କରି ପକାଇଲେ । ତାହାଙ୍କର କୁଞ୍ଚିତକେଶ ଓ କିରୀଟଶୋଭିତ ଛିନ୍ନମସ୍ତକ ସହସା ଭୂତଳରେ ପତିତ ହୋଇ ଆକାଶରୁ ପତିତ ଜ୍ୟୋତିଃପଦାର୍ଥସଦୃଶ ଦୀପ୍ତିପ୍ରାପ୍ତ ହେଲା । ୭ । ମହାବଳ ପରାକ୍ରାନ୍ତ ବୃହତ୍‌କ୍ଷତ୍ର କ୍ଷେମଧୂର୍ତ୍ତିଙ୍କ ପ୍ରାଣ ସଂହାର କରି ହୃଷ୍ଟଚିତ୍ତରେ ପାଣ୍ଡବମାନଙ୍କ ହିତାର୍ଥ ସହସା କୌରବ ସୈନ୍ୟାଭିମୁଖରେ ଧାବମାନ ହେଲେ । ୮ ।

ହେ ଭାରତ ! ମହାଧନୁର୍ଦ୍ଧର, ମହାବଳ, ପରାକ୍ରାନ୍ତ, ବୀରଧନ୍ୱା ଦ୍ରୋଣଙ୍କ ନିମିତ୍ତ ସମାଗତ ଧୃଷ୍ଟକେତୁଙ୍କୁ ନିବାରଣ କଲେ । ୯ । ସେ ଦୁହେଁ ପରସ୍ପର ବଳପ୍ରକାଶପୂର୍ବକ ପରସ୍ପରକୁ ଶରଦଂଷ୍ଟ୍ରାଦ୍ୱାରା ଆଘାତ କଲେ । ୧୦ । ଯେପରି ମହାରଣ୍ୟ ମଧ୍ୟରେ ଯୂଥପତି ସ୍ରାବିତମଦ ମାତଙ୍ଗଦ୍ୱୟ ପରସ୍ପର ଯୁଦ୍ଧ କରନ୍ତି, ସେହିପରି ସେହି ନରସିଂହଦ୍ୱୟ ପରସ୍ପର ଯୁଦ୍ଧ କଲେ । ୧୧ । ସେମାନେ ଉଭୟେ ବଧାଭିଳାଷୀ ହୋଇ ଗିରିଗହ୍ୱରସ୍ଥ ଶାର୍ଦ୍ଦୂଳଦ୍ୱୟସଦୃଶ ବିକ୍ରମ ପ୍ରକାଶ କଲେ । ୧୨ ।

ହେ ନରନାଥ ! ଅତି ଅଦ୍ଭୁତଦର୍ଶନେ ସେହି ତୁମୁଳ ଯୁଦ୍ଧ ସିଦ୍ଧଚାରଣଗଣଙ୍କର ଦର୍ଶନୀୟ ହେଲା । ୧୩ । ମହାବୀର ବୀରଧନ୍ୱା କ୍ରୁଦ୍ଧ ହୋଇ ହସି ହସି ଗୋଟିଏ ଭଲ୍ଲଦ୍ୱାରା ଧୃଷ୍ଟକେତୁଙ୍କର ଶରାସନକୁ ଦୁଇଖଣ୍ଡ କରି ଛେଦନ କଲେ । ୧୪ । ମହାରଥ ଚେଦିରାଜ ଧୃଷ୍ଟକେତୁ ଛିନ୍ନ ଶରାସନ ପରିତ୍ୟାଗ କରି ସ୍ୱର୍ଣ୍ଣଦଣ୍ଡାନ୍ୱିତ ଲୌହମୟ ଗୋଟିଏ ବିପୁଳ ଶକ୍ତି ଗ୍ରହଣ କଲେ । ୧୫ । ସେହି ମହାବୀର୍ଯ୍ୟବିଶିଷ୍ଟ ଶକ୍ତିକୁ ଭୁଜଦ୍ୱାରା ସମୁଦ୍ୟତ କରି ଯତ୍ନପୂର୍ବକ ତାହା ବୀରଧନ୍ୱାଙ୍କ ରଥପ୍ରତି ନିକ୍ଷେପ କଲେ । ୧୬ । ବୀରଧନ୍ୱା ସେହି ବୀରଘାତିନୀ ଶକ୍ତିଦ୍ୱାରା ହୃଦୟ-ଦେଶରେ ଅତୀବ ଅଭିହତ ହୋଇ ନିର୍ଭିନ୍ନହୃଦୟରେ ରଥରୁ ମହୀତଳେ ନିପତିତ ହେଲେ । ୧୭ । ତ୍ରିଗର୍ତ୍ତମାନଙ୍କର ମହାରଥ ଶୂର ବୀରଧନ୍ୱା ନିପତିତ ହୁଅନ୍ତେ ପାଣ୍ଡବମାନେ ଚତୁର୍ଦ୍ଦିଗରୁ ଆପଣଙ୍କ ସୈନ୍ୟ ଭଗ୍ନ କଲେ । ୧୮ ।

ହେ ଭାରତ ! ଆପଣଙ୍କ ପୁତ୍ର ଦୁର୍ମୁଖ ସହଦେବଙ୍କ ପ୍ରତି ଷାଠିଏ ଗୋଟି ବାଣ ନିକ୍ଷେପ କରି ମହାଶବ୍ଦରେ ତର୍ଜ୍ଜନଗର୍ଜ୍ଜନ କଲେ । ୧୯ । ମହାବଳ ପରାକ୍ରାନ୍ତ ମାଦ୍ରୀପୁତ୍ର ସହଦେବ କ୍ରୁଦ୍ଧ ହୋଇ ଯୁଦ୍ଧରେ ପ୍ରବୃତ୍ତ ଭ୍ରାତା ଦୁର୍ମୁଖଙ୍କୁ ଦଶଗୋଟି ବାଣରେ ବିଦ୍ଧ କଲେ । ୨୦ । ମହାବଳବାନ୍ ସହଦେବଙ୍କୁ ବେଗଶୀଳ ଅବଲୋକନ କରି ଦୁର୍ମୁଖ ନବଗୋଟି ବାଣରେ ତାହାଙ୍କୁ ତାଡ଼ିତ କଲେ । ୨୧ । ସହଦେବ ଗୋଟିଏ ଭଲ୍ଲରେ ଦୁର୍ମୁଖଙ୍କର ଧ୍ୱଜ ଛେଦନ କରି ଚାରିଗୋଟି ଶାଣିତ ଶରରେ ତାହାଙ୍କର ଚାରି ଅଶ୍ୱଙ୍କୁ ନିହତ କଲେ । ୨୨ ।

ତତ୍ପରେ ଶାଣିତ ପୀତ ଆଉ ଗୋଟିଏ ଭଲ୍ଲଦ୍ୱାରା ତାହାଙ୍କର ସାରଥିର ଉଜ୍ଜ୍ୱଳକୁଣ୍ଡଳଶୋଭିତ ମସ୍ତକକୁ ଛେଦନ କରି ଗୋଟିଏ ତୀକ୍ଷ୍ଣ କ୍ଷୁରପ୍ରଦ୍ୱାରା ଦୁର୍ମୁଖଙ୍କ ମହତ୍‌ଶରାସନକୁ କର୍ତ୍ତନ କରି ପାଞ୍ଚଗୋଟି ଶରରେ ତାହାଙ୍କୁ ବିଦ୍ଧ କଲେ । ୨୪ । ଅନନ୍ତର ଦୁର୍ମୁଖ ବିମନା ହୋଇ ହତାଶ୍ୱ ରଥକୁ ପରିତ୍ୟାଗପୂର୍ବକ ନିରମିତ୍ରଙ୍କ ରଥରେ ଆରୋହଣ କଲେ । ୨୫ । ପରେ ପରବୀରହନ୍ତା ସହଦେବ କ୍ରୋଧାବିଷ୍ଟ ହୋଇ ସୈନ୍ୟମଧ୍ୟରେ ନିରମିତ୍ରଙ୍କୁ ଗୋଟିଏ ଭଲ୍ଲଦ୍ୱାରା ଆହତ କଲେ । ୨୬ ।

ହେ ଜନେଶ୍ୱର ! ତ୍ରିଗର୍ତ୍ତରାଜାଙ୍କ ପୁତ୍ର ନରସିଂହ ଆପଣଙ୍କ ସୈନ୍ୟମାନଙ୍କୁ ବ୍ୟଥିତ କରି ରଥମାଡ଼ରୁ ପତିତ ହେଲେ । ୨୭ । ପରନ୍ତୁ ଯେପରି ଦଶରଥପୁତ୍ର ରାମ ମହାବଳ ପରାକ୍ରାନ୍ତ ଖରରାକ୍ଷସଙ୍କୁ ନିହତ କରି ଖ୍ୟାତି ପାଇଥିଲେ, ସେହିପରି ମହାବାହୁ ସହଦେବ ନରସିଂହଙ୍କୁ ନିହତ କରି ପ୍ରକାଶ ପାଇଲେ । ୨୮ । ତ୍ରିଗର୍ତ୍ତରାଜପୁତ୍ର ମହାବଳ ପରାକ୍ରାନ୍ତ ନରସିଂହଙ୍କୁ ନିହତ ହେବାର ନିରୀକ୍ଷଣ କରି ତ୍ରିଗର୍ତ୍ତସୈନ୍ୟମଧ୍ୟରେ ମହାନ୍ ହାହାକାର ଶବ୍ଦ ହେଲା । ୨୯ ।

ହେ ରାଜନ୍ ! ନକୁଳ ଆପଣଙ୍କ ପୁତ୍ର ବିଶାଳଲୋଚନ ବିକର୍ଣ୍ଣଙ୍କୁ ମୁହୂର୍ତ୍ତକ ମଧ୍ୟରେ ଯୁଦ୍ଧରେ ପରାଜିତ କଲେ ; ତାହା ଅଦ୍ଭୁତସଦୃଶ ହେଲା । ୩୦ । ବ୍ୟାଘ୍ରଦତ୍ତ ସୈନ୍ୟ ମଧ୍ୟରେ ନତପର୍ବ ଶରସମୂହଦ୍ୱାରା ସାତ୍ୟକିଙ୍କୁ ଅଶ୍ୱ, ସାରଥୀ ଓ ଧ୍ୱଜସହିତ ଅଦୃଶ୍ୟ କଲେ । ୩୧ । ଶିନିନନ୍ଦନ ଶୂର ସାତ୍ୟକି ଲଘୁହସ୍ତରେ ସେହି ଶରସମୂହଙ୍କୁ ନିବାରଣ କରି ଶରନିକରଦ୍ୱାରା ଅଶ୍ୱ, ସାରଥୀ ଓ ଧ୍ୱଜସହିତ ବ୍ୟାଘ୍ରଦତ୍ତଙ୍କୁ ନିପାତିତ କଲେ ।

ମଗଧ ରାଜପୁତ୍ର କୁମାର ବ୍ୟାଘ୍ରଦତ୍ତ ନିହତ ହୁଅନ୍ତେ ମଗଧଦେଶୀୟ ବୀରଗଣ ସଯତ୍ନ ହୋଇ ସାତ୍ୟକିଙ୍କୁ ଆକ୍ରମଣ କଲେ । ୩୩ । ସେହି ଶୂରମାନେ ସହସ୍ର ସହସ୍ର ଶର, ତୋମର, ଭିନ୍ଦିପାଳ, ପ୍ରାସ, ମୁଦ୍ଗର ଓ ମୂଷଳ ନିକ୍ଷେପ କରି ଯୁଦ୍ଧ ବିଶାରଦ ସାତ୍ୟକିଙ୍କ ସହିତ ଯୁଦ୍ଧ ଆରମ୍ଭ କଲେ । ଯୁଦ୍ଧଦୁର୍ମ୍ମଦ ପୁରୁଷେନ୍ଦ୍ର ବଳବାନ୍ ସାତ୍ୟକି ସେ ସମସ୍ତଙ୍କୁ ହାସ୍ୟମୁଖରେ ଅବଲୀଳାକ୍ରମେ ପରାଜିତ କଲେ । ସାତ୍ୟକିଙ୍କ ଶରରେ ପ୍ରପୀଡ଼ିତ ହୋଇ ଆପଣଙ୍କ ସୈନ୍ୟମାନେ ହତାବଶିଷ୍ଟ ମାଗଧସୈନ୍ୟମାନଙ୍କୁ ଚତୁର୍ଦ୍ଦିଗକୁ ପଳାୟମାନ କରିବା ଦେଖି ଭଗ୍ନ ହେଲେ ।

ମଧୁରବଂଶତିଳକ ମହାଯଶା ଯୁଯୁଧାନ ଆପଣଙ୍କ ସୈନ୍ୟମାନଙ୍କୁ ବିନଷ୍ଟ ଓ ପରାଙ୍ମୁଖ କରି ଶ୍ରେଷ୍ଠ ଶରାସନ ପ୍ରକମ୍ପନପୂର୍ବକ ଶୋଭମାନ ହେଲେ । ଦୀର୍ଘବାହୁ ମହାତ୍ମା ସାତ୍ୟକିଙ୍କ କର୍ତ୍ତୃକ ତ୍ରାସିତ ଓ ଭଗ୍ନ ହୋଇ ସେହି ସୈନ୍ୟସମୂହ ଆଉ ଯୁଦ୍ଧାର୍ଥ ଅଭିମୁଖ ହେଲେ ନାହିଁ । ତଦନନ୍ତର

ସ୍ୱୟଂ ଦ୍ରୋଣ ଅତି କ୍ରୋଧରେ ଚକ୍ଷୁର୍ଦ୍ୱୟକୁ ଉଦ୍‌ବର୍ତ୍ତିତ କରି ସତ୍ୟକାମ ସାତ୍ୟକଙ୍କ ନିକଟକୁ ସହସା ଗମନ କଲେ । ୩୯ ।

# ୧୦୮ ଅଧ୍ୟାୟ

ସଞ୍ଜୟ କହିଲେ—ହେ ଭାରତ ! ମହାଯଶା ସୋମଦତ୍ତଙ୍କ ପୁତ୍ର ମହାଧନୁର୍ଦ୍ଧର ଦ୍ରୌପଦୀପୁତ୍ରମାନଙ୍କ ପ୍ରତ୍ୟେକଙ୍କୁ ପାଞ୍ଚ ପାଞ୍ଚ ଗୋଟି ବାଣ ଦ୍ୱାରା ବିଦ୍ଧ କରି ପୁନର୍ବାର ସାତଗୋଟି ଲେଖାଏଁ ବାଣଦ୍ୱାରା ସେମାନଙ୍କୁ ବିଦ୍ଧ କଲେ । ୧ । ସେମାନେ ଭୀଷଣକର୍ମା ସୌମଦତ୍ତିଙ୍କ କର୍ତ୍ତୃକ ସହସା ଅତିଶୟ ବ୍ୟଥିତ ଓ ମୋହିତ ହୋଇ ସେହି ସମୟରେ ରଣକୃତ୍ୟ କିଛିମାତ୍ର ଜାଣିପାରିଲେ ନାହିଁ । ୨ । ପରେ ନକୁଳଙ୍କ ପୁତ୍ର ଶତାନୀକ ନରଶ୍ରେଷ୍ଠ ସୌମଦତ୍ତିଙ୍କୁ ଦୁଇଗୋଟି ଶରରେ ବିଦ୍ଧ କରି ହର୍ଷରେ ନିନାଦ କଲେ । ୩ । ସୁତସୋମ ପ୍ରଭୃତି ସମସ୍ତେ ସଯତ୍ନ ହୋଇ ତିନିତିନିଗୋଟି ଶରଦ୍ୱାରା କ୍ରୁଦ୍ଧ ସୌମଦତ୍ତିଙ୍କୁ ସତ୍ୱର ବିଦ୍ଧ କଲେ ।୪।

ହେ ମହାରାଜ ! ମହାଯଶା ସୌମଦତ୍ତି ସେହି ପାଞ୍ଚଜଣଙ୍କର ପ୍ରତ୍ୟେକର ହୃଦୟକୁ ଗୋଟିଏ ଗୋଟିଏ ବାଣଦ୍ୱାରା ଆହତ କଲେ । ୫ । ତଦନନ୍ତର ସେହି ପାଞ୍ଚ ଭ୍ରାତା ମହାବଳ ସୌମଦତ୍ତିଙ୍କ କର୍ତ୍ତୃକ ଶରବିଦ୍ଧ ହୋଇ ତାହାଙ୍କୁ ରଥଦ୍ୱାରା ପରିବେଷ୍ଟନପୂର୍ବକ ଶରସମୂହରେ ଅତିଶୟ ବିଦ୍ଧ କଲେ । ୬ । ଅର୍ଜୁନପୁତ୍ର କ୍ରୁଦ୍ଧ ହୋଇ ଶାଣିତ ଶରରେ ତାହାଙ୍କର ଚାରି ଅଶ୍ୱଙ୍କୁ ଯମାଳୟକୁ ପ୍ରେରଣ କଲେ । ୭ । ଭୀମସେନପୁତ୍ର ତାହାଙ୍କର ଶରାସନ ଛେଦନ କରି ପ୍ରବଳ ସିଂହନାଦପୂର୍ବକ ତାହାଙ୍କୁ ଶରନିକରରେ ବିଦ୍ଧ କଲେ । ୮ ।

ଯୁଧିଷ୍ଠିରଙ୍କ ପୁତ୍ର ତାହାଙ୍କ ରଥ, ଧ୍ୱଜ ଛେଦନ କରି ଭୂତଳରେ ନିପାତିତ କଲେ । ନକୁଳପୁତ୍ର ତାହାଙ୍କ ସାରଥିକୁ ରଥନୀଡ଼ରୁ ନିପାତିତ କଲେ । ୯ । ସହଦେବପୁତ୍ର ସ୍ୱୀୟ ଭ୍ରାତୃଗଣଙ୍କ କର୍ତ୍ତୃକ ତାହାଙ୍କୁ ବିମୁଖୀକୃତ ହେବାର ଅବଗତ ହୋଇ ଗୋଟିଏ ଖୁରପ୍ରଦ୍ୱାରା ତାହାଙ୍କର ମସ୍ତକକୁ

ଛେଦନ କଲେ । ୧୦ । ସୁବର୍ଣ୍ଣବିଭୂଷିତ ବାଳସୂର୍ଯ୍ୟସମ ପ୍ରଭାସମ୍ପନ୍ନ ସୌମଦତ୍ତିଙ୍କ ମସ୍ତକ ରଣସ୍ଥଳକୁ ସମୁଜ୍ଜ୍ୱଳ କରି ପତିତ ହେଲା । ୧୧ । ମହାତ୍ମା ସୌମଦତ୍ତିଙ୍କ ମସ୍ତକ ନିପତିତ ହେବାର ନିରୀକ୍ଷଣ କରି ଆପଣଙ୍କ ସୈନ୍ୟମାନେ ତ୍ରସ୍ତ ହୋଇ ନାନାଦିଗକୁ ଧାବମାନ ହେଲେ । ୧୨ ।

ଯେପରି ରାବଣପୁତ୍ର ଇନ୍ଦ୍ରଜିତ ଲକ୍ଷ୍ମଣଙ୍କ ସହିତ ଯୁଦ୍ଧ କରିଥିଲା, ସେହିପରି ଅଳମ୍ବୁଷ କ୍ରୁଦ୍ଧ ହୋଇ ମହାବଳ ପରାକ୍ରାନ୍ତ ଭୀମସେନଙ୍କ ସହିତ ଯୁଦ୍ଧରେ ପ୍ରବୃତ୍ତ ହେଲା । ଏହି ନରରାକ୍ଷସ ଉଭୟଙ୍କୁ ଯୁଦ୍ଧ କରିବାର ଦେଖି ସମସ୍ତପ୍ରାଣୀଙ୍କର ବିସ୍ମୟ ଓ ହର୍ଷ ଜାତ ହେଲା । ୧୪ । ଭୀମସେନ ଋଷ୍ୟଶୃଙ୍ଗ-ପୁତ୍ର ରାକ୍ଷସଶ୍ରେଷ୍ଠ କ୍ରୁଦ୍ଧ ଅଳମ୍ବୁଷକୁ ହସି ହସି ସୁଶାଣିତ ନବଗୋଟି ଶରରେ ବିଦ୍ଧ କଲେ । ୧୫ । ସେହି ରାକ୍ଷସ ସଂଗ୍ରାମରେ ବାଣବିଦ୍ଧ ହୋଇ ଭୟଙ୍କର ଶବ୍ଦପୂର୍ବକ ଭୀମ ଓ ତାହାଙ୍କର ପଦାନୁଗ ସୈନ୍ୟମାନଙ୍କ ପ୍ରତି ଧାବମାନ ହୋଇ ନତପର୍ବ ପାଞ୍ଚଗୋଟି ଶରଦ୍ୱାରା ଭୀମଙ୍କୁ ବିଦ୍ଧ କରି ତାହାଙ୍କର ତିନିଶତ ଅନୁଗାମୀଙ୍କୁ ବଳପୂର୍ବକ ସମାହତ କଲା । ୧୬ । ପୁନର୍ବାର ତାହାଙ୍କର ଚାରିଶତ ଅନୁଗ ସୈନ୍ୟଙ୍କୁ ସମାହତ କରି ଭୀମଙ୍କୁ ଗୋଟିଏ ଶରରେ ବିଦ୍ଧ କଲା । ଭୀମସେନ ମହାକାୟ ଅଳମ୍ବୁଷକର୍ତ୍ତୃକ ଅତିଶୟ ବିଦ୍ଧ ଓ ମୂର୍ଚ୍ଛିତ ହୋଇ ରଥମଧ୍ୟରେ ଉପବିଷ୍ଟ ହେଲେ ।

ଅନନ୍ତର ପବନନନ୍ଦନ ସଂଜ୍ଞା ଲାଭ କରି କ୍ରୋଧମୂର୍ଚ୍ଛିତ ହୋଇ ଭାରସାଧନ ଭୀଷଣ ଶରାସନକୁ ଆକର୍ଷଣପୂର୍ବକ ତୀକ୍ଷ୍ଣ ଶରସମୂହଦ୍ୱାରା ଅଳମ୍ବୁଷକୁ ପୀଡ଼ିତ କଲେ । ୨୦ । ନୀଳାଞ୍ଜନପର୍ବତସଦୃଶ ଅଳମ୍ବୁଷ ଭୀମ-ସେନଙ୍କ ଧନୁର୍ମୁକ୍ତ ବାଣସମୂହରେ ବିଦ୍ଧ ହୋଇ ପୁଷ୍ପିତକିଂଶୁକବୃକ୍ଷତୁଲ୍ୟ ଶୋଭମାନ ହେଲେ ଓ ମହାତ୍ମା ଭୀମଙ୍କ କର୍ତ୍ତୃକ ସ୍ୱୀୟ ଭ୍ରାତା ବକର ବଧ ସ୍ମରଣ କରି ଭୟଙ୍କର ରୂପଧାରଣପୂର୍ବକ ଭୀମସେନଙ୍କୁ କହିଲେ—ଆରେ ଦୁର୍ବୁଦ୍ଧି ଭୀମ ! ଆମ୍ଭ ଭ୍ରାତା ରାକ୍ଷସପ୍ରବର ବଳବାନ୍ ବକକୁ ତୁ ଯେ ବଧ କରିଅଛୁ, ତାହା ଆମ୍ଭ ସାକ୍ଷାତରେ ହୋଇନାହିଁ । ବର୍ତ୍ତମାନ ରହ , ଅଦ୍ୟ ସଂଗ୍ରାମରେ ଆମ୍ଭର ପରାକ୍ରମ ଦେଖ । ଏହା କହି ତତ୍କ୍ଷଣାତ୍ ଅନ୍ତର୍ହିତ ହେଲା ଓ ଆକାଶରୁ ଭୀମସେନଙ୍କ ଉପରେ ମହାଶର ବର୍ଷଣ କଲା । ୨୫ ।

ପରନ୍ତୁ ରାକ୍ଷସ ଅନ୍ତର୍ହିତ ହୁଅନ୍ତେ ଭୀମ ମଧ୍ୟ ନତପର୍ବ ଶରନିକରରେ ଆକାଶ ପରିପୂର୍ଣ୍ଣ କଲେ । ୨୭ ।

ଅନନ୍ତର ରାକ୍ଷସ ଆକାଶରେ ବଧ୍ୟମାନ ହୋଇ ନିମେଷମଧ୍ୟରେ ରଥାରୋହଣପୂର୍ବକ ଭୂତଳକୁ ଆଗମନ କଲା । ତତ୍କ୍ଷଣାତ୍ କ୍ଷୁଦ୍ରମୂର୍ତ୍ତି ଧାରଣ କରି ଆକାଶମଣ୍ଡଳକୁ ସହସା ଗମନ କଲା । ୨୭ । ପରେ ନାନାବିଧ ସୂକ୍ଷ୍ମ, ବୃହତ୍ ଓ ସ୍ଥୂଳ, ଏପରି ବହୁବିଧ ରୂପ ଧାରଣ ଓ ମେଘଗର୍ଜ୍ଜନସଦୃଶ ଶବ୍ଦ କରି ନାନାବିଧ କଠୋର ବାକ୍ୟ ଚତୁର୍ଦ୍ଦିଗରୁ କହିବାକୁ ଆରମ୍ଭ କଲା । ସେହି ସମୟରେ ଆକାଶରୁ ସହସ୍ର ସହସ୍ର ଶରଧାରାବର୍ଷଣ ହେଲା । ୨୯ । ଶକ୍ତି, କୁଣପ, ପ୍ରାସ, ଶୂଳ, ପାର୍ଷ୍ଣି, ତୋମର, ଶତଘ୍ନୀ, ପରିଘ, ଭିନ୍ଦପାଳ, ପରଶ୍ୱଧ, ପ୍ରସ୍ତର, ଖଡ୍ଗ, ଗୁଡ଼, ଋଷ୍ଟି ଓ ବଜ୍ର — ଏହି ସମସ୍ତ ଅତିଶୟ ଭୟାନକ ଶସ୍ତ୍ରବୃଷ୍ଟି ରାକ୍ଷସକର୍ତ୍ତୃକ ନିକ୍ଷିପ୍ତ ହୋଇ ରଣମଧ୍ୟରେ ଭୀମସେନଙ୍କର ସୈନ୍ୟମାନଙ୍କୁ ନିହତ କଲା । ପାଣ୍ଡବସୈନ୍ୟମାନଙ୍କର ବହୁସଂଖ୍ୟକ ହସ୍ତୀ, ଅଶ୍ୱ, ପତ୍ତି ଓ ରଥୀ ସେହି ରାକ୍ଷସର ଅସ୍ତ୍ରରେ ଛିନ୍ନ ହୋଇ ପତିତ ହେଲେ । ୩୩ ।

ହେ ମହାରାଜ ! ଏହିପରି ମହାବୀର ଅଲମ୍ବୁଷ ପାଣ୍ଡବସୈନ୍ୟମାନଙ୍କୁ ସଂହାର କରି ସମରାଙ୍ଗଣରେ ରାକ୍ଷସଗଣସମାକୁଳ ଶୋଣିତନଦୀ ପ୍ରବାହିତ କଲା । ରଥସବୁ ସେହି ନଦୀର ଆବର୍ତ୍ତ, ହସ୍ତିସକଳ ଗ୍ରାହ, ଛତ୍ରସମୂହ ହଂସ ଓ ବାହୁସମସ୍ତ ଭୁଜଙ୍ଗତୁଲ୍ୟ ଶୋଭାପ୍ରାପ୍ତ ହେଲା । ଚେଦି, ପାଞ୍ଚାଳ ଓ ସୃଞ୍ଜୟଗଣ ସେହି ନଦୀର ଭୀଷଣ ପ୍ରବାହରେ ଭାସମାନ ହେଲେ । ୩୫ । ପାଣ୍ଡବମାନେ ସେହି ରାକ୍ଷସକୁ ଏହିପରି ବିକ୍ରମପ୍ରକାଶପୂର୍ବକ ନିର୍ଭୟରେ ବିଚରଣ କରିବାର ଦେଖି ଅତିଶୟ ଉଦ୍‌ବିଗ୍ନ ହେଲେ । ୩୬ । ଆପଣଙ୍କପକ୍ଷୀୟ ସୈନ୍ୟମାନଙ୍କର ମହାହର୍ଷ ଉତ୍ପନ୍ନ ହେଲା, କରତଳ ଶବ୍ଦ ଓ ମହାଲୋମହର୍ଷଣକାରୀ ଉଗ୍ର ବାଦ୍ୟଧ୍ୱନି ଉତ୍ଥିତ ହେଲା । ୩୭ । ଭୀମସେନ ଆପଣଙ୍କ ସୈନ୍ୟମାନଙ୍କର କରତଳଶବ୍ଦ ଓ ଘୋରତର ବାଦ୍ୟଧ୍ୱନି ଶ୍ରବଣ କରି ଅସହିଷ୍ଣୁ ନାଗସଦୃଶ ତାହାକୁ ସହନ କରି ପାରିଲେ ନାହିଁ । ୩୮ ।

ବାୟୁପୁତ୍ର ଭୀମସେନ କ୍ରୋଧରେ ଅତିଶୟ ତାମ୍ରବର୍ଣ୍ଣ ଲୋଚନ ଓ ପ୍ରଜ୍ୱଳିତ ଅନଳସଦୃଶ ହୋଇ ସାକ୍ଷାତ୍ ତ୍ୱଷ୍ଟୃଦେବଙ୍କ ତୁଲ୍ୟ ତ୍ୱଷ୍ଟାସ୍ତ୍ର

ପ୍ରାଦୁର୍ଭୂତ କଲେ । ୩୯ । ତଦ୍ଦ୍ୱାରା ଚତୁର୍ଦ୍ଦିଗରୁ ସହସ୍ର ସହସ୍ର ଶର ପ୍ରାଦୁର୍ଭୂତ ହେଲା । ସେହି ଶରବର୍ଷଣଦ୍ୱାରା ଆପଣଙ୍କ ସୈନ୍ୟମାନେ ପ୍ରପୀଡ଼ିତ ହୋଇ ଦ୍ରୁତବେଗରେ ପଳାୟମାନ ହେଲେ ଓ ଭୀମସେନଙ୍କ ପ୍ରେରିତ ସେହି ଅସ୍ତ୍ର ରାକ୍ଷସର ମହାମାୟା ବିନାଶ କରି ତାହାକୁ ପୀଡ଼ିତ କଲା । ୪୧ । ଅନନ୍ତର ସେ ନାନାପ୍ରକାରରେ ବଧ୍ୟମାନ ହୋଇ ସମରରେ ଭୀମଙ୍କୁ ପରିତ୍ୟାଗପୂର୍ବକ ଦ୍ରୋଣସୈନ୍ୟମଧ୍ୟକୁ ଗମନ କଲା । ୪୨ ।

ଏହିପ୍ରକାରେ ସେହି ରାକ୍ଷସ ଅଳମ୍ବୁଷ ମହାତ୍ମା ଭୀମସେନଙ୍କ କର୍ତ୍ତୃକ ପରାଜିତ ହୁଅନ୍ତେ ପାଣ୍ଡବମାନେ ସମସ୍ତଦିଗରୁ ସିଂହନାଦ କଲେ । ୪୩ । ଇନ୍ଦ୍ର ପ୍ରହ୍ଲାଦଙ୍କୁ ପରାଜିତ କରିବାରୁ ଯେପରି ସୁରଗଣ ଇନ୍ଦ୍ରଙ୍କ ପ୍ରଶଂସା କରିଥିଲେ, ସେହିପରି ସେମାନେ ପ୍ରହୃଷ୍ଟ ହୋଇ ବାୟୁନନ୍ଦନ ଭୀମସେନଙ୍କୁ ପ୍ରଶଂସା କଲେ । ୪୪ ।

---

# ୧୦୯ ଅଧ୍ୟାୟ

ସଞ୍ଜୟ କହିଲେ—ହେ ମହାରାଜ ! ଅଳମ୍ବୁଷକୁ ରଣସ୍ଥଳରେ ନିର୍ଭୟରେ ବିଚରଣ କରିବାର ଦେଖି ହିଡ଼ିମ୍ବାପୁତ୍ର ଘଟୋତ୍କଚ ଶୀଘ୍ର ତାହା ନିକଟକୁ ଗମନ କରି ତାହାକୁ ଶାଣିତ ଶରସମୂହ ଦ୍ୱାରା ବିଦ୍ଧ କଲା । ୧ । ଯେପରି ଇନ୍ଦ୍ର ଓ ଶମ୍ବରାସୁର ମଧ୍ୟରେ ଯୁଦ୍ଧ ହୋଇଥିଲା, ସେହିପରି ଏହି ଦୁଇ ରାକ୍ଷସଶ୍ରେଷ୍ଠ ବିବିଧ ମାୟା ସୃଜନପୂର୍ବକ ପରସ୍ପର ଭୟାନକ ଯୁଦ୍ଧ କଲେ । ୨ । ସେହି ଦୁଇ ରାକ୍ଷସପ୍ରଧାନଙ୍କ ଯୁଦ୍ଧ ପୂର୍ବକାଳର ରାମ-ରାବଣ ଯୁଦ୍ଧସଦୃଶ ହୋଇଥିଲା । ଅଳମ୍ବୁଷ ଅତିଶୟ କ୍ରୋଧାବିଷ୍ଟ ହୋଇ ଘଟୋତ୍କଚକୁ ତାଡ଼ିତ କଲା । ଘଟୋତ୍କଚ ମଧ୍ୟ ଅଳମ୍ବୁଷ ହୃଦୟରେ ବିଂଶତି ନାରାଚ ବିଦ୍ଧ କରି ବାରମ୍ବାର ସିଂହନାଦ କଲା ।

ଅନନ୍ତରେ ଅଳମ୍ବୁଷ ଯୁଦ୍ଧଦୁର୍ମଦ ଘଟୋତ୍କଚକୁ ପୁନଃ ପୁନଃ ଶର-ବିଦ୍ଧ କରି ହର୍ଷାନ୍ୱିତ ହୋଇ ଚତୁର୍ଦ୍ଦିଗରେ ଆକାଶ ପରିପୂର୍ଣ୍ଣ କରି ଶବ୍ଦ କଲା । ମହାବଳ ପରାକ୍ରାନ୍ତ ଏହି ଦୁଇ ରାକ୍ଷସପ୍ରଧାନ ଅତିଶୟ କ୍ରୋଧାବିଷ୍ଟ

ହୋଇ ପରସ୍ପର ମାୟାଦ୍ୱାରା ସମାନ ଯୁଦ୍ଧ କଲେ । ଉଭୟେ ମାୟାଯୁଦ୍ଧରେ କୁଶଳ ଓ ବଳଦର୍ପିତ । ସୁତରାଂ ଉଭୟେ ନାନାପ୍ରକାର ମାୟାସୃଷ୍ଟି-ପୂର୍ବକ ପରସ୍ପରକୁ ମୋହିତ କରି ମାୟାଯୁଦ୍ଧ କଲେ । ଘଟୋତ୍କଚ ଯେଉଁସବୁ ମାୟା ପ୍ରକାଶ କରେ, ଅଳମ୍ବୁଷ ସେ ସମସ୍ତକୁ ମାୟାଦ୍ୱାରା ବିନଷ୍ଟ କରେ । ମାୟାଯୁଦ୍ଧବିଶାରଦ ରାକ୍ଷସେନ୍ଦ୍ର ଅଳମ୍ବୁଷକୁ କ୍ରୋଧସହକାରେ ସେହି ପ୍ରକାର ଯୁଦ୍ଧ କରିବାର ଦେଖି ରଥିପ୍ରବର ପାଣ୍ଡବମାନେ ଅତିଶୟ କୋପାବିଷ୍ଟ ହୋଇ ସର୍ବଦିଗରୁ ତାହା ନିକଟକୁ ଧାବମାନ ହେଲେ । ଭୀମସେନ ପ୍ରଭୃତି ସମସ୍ତେ ସନ୍ନଦ୍ଧ ହୋଇ ରଥସମୂହଦ୍ୱାରା ତାହାକୁ ପରିବେଷ୍ଟନ କରି ଉଲ୍କା ଦ୍ୱାରା ହସ୍ତୀକୁ ତାଡ଼ିତ କଲାପରି ଚତୁର୍ଦ୍ଦିଗରୁ ତାହା ଉପରେ ବାଣବର୍ଷଣ କରି ତାହାକୁ ତାଡ଼ିତ କଲେ ।

ଯେପରି ଦହ୍ୟମାନ ବନମଧ୍ୟରୁ ହସ୍ତୀ ମୁକ୍ତ ହୁଏ, ସେହିପରି ଅଳମ୍ବୁଷ ସେମାନଙ୍କ ଅସ୍ତ୍ରସମୂହର ବେଗକୁ ସ୍ୱକୀୟ ମାୟା ଦ୍ୱାରା ବିନଷ୍ଟ କରି ସେହି ରଥବେଷ୍ଟନୀରୁ ବିମୁକ୍ତ ହେଲା । ଅନନ୍ତର ସେ ଇନ୍ଦ୍ରଙ୍କ ବଜ୍ରଧ୍ୱନିତୁଲ୍ୟ ଶବ୍ଦ କରି ଭୟଙ୍କର ଶରାସନ ବିସ୍ଫାରଣପୂର୍ବକ ଭୀମସେନଙ୍କୁ ପଞ୍ଚବିଂଶତି ବାଣରେ, ଘଟୋତ୍କଚକୁ ପଞ୍ଚବାଣରେ, ଯୁଧିଷ୍ଠିରଙ୍କୁ ତିନିଗୋଟି ବାଣରେ, ସହଦେବଙ୍କୁ ସପ୍ତବାଣରେ, ନକୁଳଙ୍କୁ ତ୍ରିସପ୍ତତି ବାଣରେ ଓ ଦ୍ରୌପଦୀଙ୍କର ପଞ୍ଚପୁତ୍ରଙ୍କୁ ପ୍ରତ୍ୟେକଙ୍କୁ ପାଞ୍ଚଗୋଟି ଲେଖାଏଁ ବାଣରେ ବିଦ୍ଧ କରି ସିଂହନାଦ କଲା । ୧୫ ।

ଅନନ୍ତର ଭୀମସେନ ନବଗୋଟି ବାଣରେ, ସହଦେବ ସାତଗୋଟି ବାଣରେ, ଯୁଧିଷ୍ଠିର ଏକଶତ ବାଣରେ, ନକୁଳ ଚତୁଃଷଷ୍ଟି ବାଣରେ ଓ ଦ୍ରୌପଦୀଙ୍କ ପାଞ୍ଚପୁତ୍ର ପ୍ରତ୍ୟେକେ ତିନିତିନିଗୋଟି ବାଣରେ ତାହାକୁ ବିଦ୍ଧ କଲେ । ମହାବଳ ଘଟୋତ୍କଚ ତାହାକୁ ପଞ୍ଚାଶତ ବାଣରେ ବିଦ୍ଧ କରି ସିଂହନାଦ କଲା ।

ହେ ମହାରାଜ ! ତାହାର ସେହି ମହାଶବ୍ଦରେ ଅରଣ୍ୟ, ପର୍ବତ, ବୃକ୍ଷ ଓ ଜଳାଶୟ ସହିତ ଏହି ବସୁନ୍ଧରା ପ୍ରକମ୍ପିତ ହେଲା । ମହାଧନୁର୍ଦ୍ଧର ଅଳମ୍ବୁଷ ସେହିସମସ୍ତ ମହାରଥୀଙ୍କ କର୍ତ୍ତୃକ ଅତିଶୟ ବିଦ୍ଧ ହୋଇ ପୁନର୍ବାର

ସେମାନଙ୍କୁ ପାଞ୍ଚପାଞ୍ଚଗୋଟି ଶରଦ୍ୱାରା ବିଦ୍ଧ କଲେ । ପରନ୍ତୁ ରାକ୍ଷସ ଘଟୋତ୍କଚ ତାହା ପ୍ରତି ଅତିକ୍ରୁଦ୍ଧ ହୋଇ ସେହି କ୍ରୁଦ୍ଧ ରାକ୍ଷସକୁ ସପ୍ତବାଣଦ୍ୱାରା ପୁନର୍ବାର ବିଦ୍ଧ କଲା ପରେ ରାକ୍ଷସେନ୍ଦ୍ର ମହାବଳବାନ୍ ଅଳମ୍ବୁଷ ବଳବାନ୍ ଘଟୋତ୍କଚକର୍ତ୍ତୃକ ଅତିଶୟ ବିଦ୍ଧ ହୋଇ ସ୍ୱର୍ଣ୍ଣପୁଙ୍ଖ ଶିଳାଶାଣିତ ତୀକ୍ଷ୍ଣ ଶରସମୂହକୁ ନିକ୍ଷେପ କଲା । ଯେପରି ମହାବଳବାନ୍ ସର୍ପମାନେ ରୋଷିତ ହୋଇ କଠିନ ପର୍ବତରେ ପ୍ରବେଶ କରନ୍ତି, ସେପରି ସେହି ନତପର୍ବ ବାଣସମସ୍ତ ଘଟୋତ୍କଚ ଅଙ୍ଗରେ ସମ୍ପୂର୍ଣ୍ଣରୂପେ ପ୍ରବିଷ୍ଟ ହେଲା ।

ତଦନନ୍ତର ପାଣ୍ଡବମାନେ ଉଦ୍‌ବିଗ୍ନ ହୋଇ ଚତୁର୍ଦ୍ଦିଗରୁ ନିଶିତ ଶରସମୂହ ନିକ୍ଷେପ କଲେ ଓ ଘଟୋତ୍କଚ ମଧ୍ୟ ଚତୁର୍ଦ୍ଦିଗରୁ ତାହାଉପରକୁ ଶାଣିତ ଶରସମୂହ ବିମୋଚନ କଲା । ତେତେବେଳେ ଜୟଯୁକ୍ତ ପାଣ୍ଡବମାନେ ଅଳମ୍ବୁଷକୁ ଶରପ୍ରହାର କରନ୍ତେ ସେ ଆସନ୍ନମୃତ୍ୟୁସଦୃଶ ହୋଇ କର୍ତ୍ତବ୍ୟ ଅବଧାରଣ କରି ପାରିଲା ନାହିଁ । ତତ୍ପରେ ମହାବଳ ପରାକ୍ରାନ୍ତ ସମରଶୌଣ୍ଡ ଭୀମସେନ-ନନ୍ଦନ କ୍ରୁଦ୍ଧ ଘଟୋତ୍କଚ ତାହାକୁ ତାଦୃଶ ଅବସ୍ଥାରେ ଅବଲୋକନ କରି, ତାହାକୁ ବଧ କରିବା ମାନସରେ ସ୍ୱୀୟ ରଥରୁ ଲମ୍ଫପ୍ରଦାନପୂର୍ବକ ତ୍ରିକୂଟପର୍ବତର ଦଗ୍‌ଧଶୃଙ୍ଗତୁଲ୍ୟ ଅଞ୍ଜନରାଶିସବର୍ଣ୍ଣ ଅଳମ୍ବୁଷର ରଥ ପ୍ରତି ମହାବେଗସହକାରେ ଧାବମାନ ହୋଇ ତାହାକୁ ଆକ୍ରମଣ କଲା ।

ତଦନନ୍ତର ଗରୁଡ଼ ସର୍ପକୁ ଗ୍ରହଣ କଲାପ୍ରାୟ ତାହାକୁ ଗ୍ରହଣପୂର୍ବକ ରଥରୁ ନିଃସୃତ କରି ଊର୍ଦ୍ଧ୍ୱକୁ କ୍ଷେପଣ କଲା ଓ ବାହୁଦ୍ୱୟଦ୍ୱାରା ପୁନଃପୁନଃ ଭ୍ରମଣ କରାଇ ପ୍ରସ୍ତରନିକ୍ଷିପ୍ତ ପୂର୍ଣ୍ଣକୁମ୍ଭସଦୃଶ ଭୂତଳରେ ନିକ୍ଷେପ କରି ଚୂର୍ଣ୍ଣ କଲା । ସଂକ୍ରୁଦ୍ଧ ଘଟୋତ୍କଚର ବଳବିକ୍ରମ ଓ ଲାଘବ ଅବଲୋକନ କରି ସୈନ୍ୟମାନେ ଭୀତ ହେଲେ । ମହାବୀର ଘଟୋତ୍କଚ କର୍ତ୍ତୃକ ନିହତ ଶାଳଂକଟଙ୍କଟାପୁତ୍ର ଅଳମ୍ବୁଷର ସର୍ବାଙ୍ଗ ବିସ୍ଫାରିତ ଓ ଅସ୍ଥିସମସ୍ତ ଚୂର୍ଣ୍ଣ ହୋଇଗଲା । ସେହି ସମୟରେ ତାହାର ମୂର୍ତ୍ତି ଦେଖିବାକୁ ଅତି ଭୟାନକ ହେଲା ।

ସେହି ନିଶାଚର ହତ ହୁଅନ୍ତେ ପାଣ୍ଡବମାନେ ସିଂହନାଦ ଓ ବସ୍ତ୍ରକମ୍ପନ କଲେ । ଆପଣଙ୍କ ପକ୍ଷୀୟ ସୈନ୍ୟମାନେ ଭୀଷଣରୂପ

ମହାବଳବାନ୍ ରାକ୍ଷସେନ୍ଦ୍ର ଅଳମ୍ବୁଷଙ୍କୁ ବିଶୀର୍ଣ୍ଣ ପର୍ବତତୁଲ୍ୟ ଅବଲୋକନ କରି ହାହାକାର କଲେ । ଅନ୍ୟାନ୍ୟ ଲୋକ କୌତୁହଳାନ୍ୱିତ ହୋଇ ସେହି ରାକ୍ଷସଙ୍କୁ ଯଦୃଚ୍ଛାକ୍ରମେ ଭୂତଳରେ ପତିତ ମଙ୍ଗଳଗ୍ରହତୁଲ୍ୟ ଅବଲୋକନ କଲେ । ୩୪ । ଯେପରି ଇନ୍ଦ୍ର ବଳାସୁରଙ୍କୁ ବିନଷ୍ଟ କରି ନିନାଦ କରିଥିଲେ, ସେହିପରି ମହାବଳବାନ୍ ରାକ୍ଷସରାଜ ଘଟୋତ୍କଚ ଅଳମ୍ବୁଷଙ୍କୁ ନିହତ କରି ବଳବତ୍ ସିଂହନାଦ କଲେ । ୩୫ ।

ଘଟୋତ୍କଚର ପିତା, ପିତୃବ୍ୟ ଓ ଅନ୍ୟାନ୍ୟ ବାନ୍ଧବଗଣ ଘଟୋତ୍କଚଙ୍କୁ ଦୁଷ୍କର କର୍ମ କରିବାର ଦେଖି ସମାଦର ସହିତ ପ୍ରଶଂସା କଲେ । ଘଟୋତ୍କଚ ମଧ୍ୟ ସେହି ସମୟରେ ପକ୍ୱ-ଅଳମ୍ବୁଷ-ଫଳ-ଦଳନତୁଲ୍ୟ ପ୍ରବଳ ଶତ୍ରୁ ଅଳମ୍ବୁଷଙ୍କୁ ଦଳନ କରି ଅତିଶୟ ଆନନ୍ଦିତ ହେଲେ । ୩୬ । ତଦନନ୍ତର ପାଣ୍ଡବପକ୍ଷରେ ଶଙ୍ଖଧ୍ୱନି ଓ ବାଣଧ୍ୱନିମିଶ୍ରିତ ଅତିଶୟ ମହାନ୍ ଶବ୍ଦ ସମୁତ୍ଥିତ ହେଲା । ତାହା ଶୁଣି କୌରବମାନେ ପ୍ରତିନାଦ କଲେ । ତହୁଁ ଅତିଶୟ ତୁମୁଳ ମହାଶବ୍ଦ ଭୁବନ ସ୍ପର୍ଶ କଲା । ୩୭ ।

---

## ୧୧୦ ଅଧ୍ୟାୟ

ଧୃତରାଷ୍ଟ୍ର କହିଲେ—ହେ ସଞ୍ଜୟ ! ସାତ୍ୟକି ଯୁଦ୍ଧରେ ଦ୍ରୋଣଙ୍କୁ କିପରି ନିବାରଣ କଲେ, ତାହା ଶ୍ରବଣ କରିବାକୁ ଆମ୍ଭର ପରମ କୌତୁହଳ ହୋଇଅଛି । ତାହା ତୁମ୍ଭେ ଆନନ୍ଦପୂର୍ବକ କୀର୍ତ୍ତନ କର । ୧ । ସଞ୍ଜୟ କହିଲେ—ହେ ମହାରାଜ ! ସାତ୍ୟକି ପ୍ରଭୃତି ପାଣ୍ଡବଗଣଙ୍କ ସହିତ ଦ୍ରୋଣଙ୍କର ଯେଉଁ ତୁମୁଳ ଲୋମହର୍ଷଣ ସଂଗ୍ରାମ ହୋଇଥିଲା, ତାହା କୀର୍ତ୍ତନ କରୁଅଛୁଁ, ଏକମନା ହୋଇ ଶ୍ରବଣ କରନ୍ତୁ । ୨ । ସତ୍ୟବିକ୍ରମ ଦ୍ରୋଣ ସାତ୍ୟକିଙ୍କୁ ସୈନ୍ୟସଂହାରରେ ପ୍ରବୃତ୍ତ ହେବାର ଅବଲୋକନ କରି ସ୍ୱୟଂ ତାହାଙ୍କ ପ୍ରତି ଧାବମାନ ହେଲେ । ୩ ।

ସାତ୍ୟକି ମହାରଥୀ ଭରଦ୍ୱାଜପୁତ୍ରଙ୍କୁ ସହସା ଆଗମନ କରିବାର ନିରୀକ୍ଷଣ କରି ପଞ୍ଚବିଂଶତି କ୍ଷୁଦ୍ରକ ବାଣ ତାହାଙ୍କ ପ୍ରତି ନିକ୍ଷେପ କଲେ ।

କ୍ଷମଶୀଳ ଦ୍ରୋଣ ମଧ୍ୟ ସମାହିତ ଓ ସତ୍ୱର ହୋଇ ସ୍ୱର୍ଣ୍ଣପୁଙ୍ଖ ଶିଳାଶାଣିତ ତୀକ୍ଷ୍ଣଗୋଟି ବାଣରେ ଯୁଯୁଧାନଙ୍କୁ ବିଦ୍ଧ କଲେ । ଶତ୍ରୁମାଂସଭକ୍ଷକ ସେହି ବାଣସମୂହ ସାତ୍ୟକିଙ୍କ ସୁଦୃଢ଼ ବର୍ମକୁ ଭେଦ କରି ନିଃଶ୍ୱସନ୍ତ ସର୍ପସଦୃଶ ଧରଣୀ ତଳରେ ପ୍ରବେଶ କଲା । ୬ । ଦୀର୍ଘବାହୁ ଯୁଯୁଧାନ ଏଥିରେ ଅଙ୍କୁଶବିଦ୍ଧ ହସ୍ତିସଦୃଶ କ୍ରୁଦ୍ଧ ହୋଇ ଅଗ୍ନିତୁଲ୍ୟ ପଞ୍ଚାଶତ୍ ନାରାଚ ଦ୍ୱାରା ଦ୍ରୋଣଙ୍କୁ ବିଦ୍ଧ କଲେ । ୭ । ମହାବଳବାନ୍ ମହାଧନୁର୍ଦ୍ଧର ଭରଦ୍ୱାଜଙ୍କ ପୁତ୍ର ଯୁଦ୍ଧରେ ଯତ୍ନବାନ୍ ଯୁଯୁଧାନଙ୍କ ବାଣସମୂହଦ୍ୱାରା ବିଦ୍ଧ ହେବାରୁ କ୍ରୁଦ୍ଧ ହୋଇ ତ୍ୱରାସହ ବହୁବାଣରେ ତାହାଙ୍କୁ ବିଦ୍ଧ କଲେ । ପୁନର୍ବାର ଗୋଟିଏ ନତପର୍ବ ବାଣରେ ତାହାଙ୍କୁ ପୀଡ଼ିତ କଲେ । ୯ ।

ହେ ନରପାଳ ! ସାତ୍ୟକି ଦ୍ରୋଣଙ୍କ ବାଣରେ ବଧ୍ୟମାନ ହୋଇ ସେ ସମୟରେ କି କର୍ତ୍ତବ୍ୟ ତାହା ସ୍ଥିର କରି ପାରିଲେ ନାହିଁ । ୧୦ । ପ୍ରତ୍ୟୁତ ଦ୍ରୋଣଙ୍କ ଶାଣିତ ଶରସମୂହ ବିମୋଚନ କରିବାର ନିରୀକ୍ଷଣ କରି ବିଷଣ୍ଣବଦନ ହେଲେ । ୧୧ । ଆପଣଙ୍କ ପୁତ୍ରମାନେ ଓ ସୈନ୍ୟଗଣ ସାତ୍ୟକିଙ୍କୁ ତାଦୃଶ ଅବସ୍ଥାରେ ଅବଲୋକନ କରି ହୃଷ୍ଟଚିତ୍ତରେ ମୁହୁର୍ମୁହୁଃ ସିଂହନାଦ କଲେ । ୧୨ ।

ରାଜା ଯୁଧିଷ୍ଠିର ସେହି ଘୋର ନିନାଦ ଶୁଣି ସାତ୍ୟକିଙ୍କୁ ଦ୍ରୋଣଙ୍କ କର୍ତ୍ତୃକ ପୀଡ୍ୟମାନ ହେବାର ଶ୍ରବଣ କରି ସମସ୍ତ ସୈନ୍ୟଙ୍କୁ କହିଲେ ।୧୩ । ଯେପରି ରାହୁ ସୂର୍ଯ୍ୟଙ୍କୁ ଗ୍ରାସ କରେ, ସେହିପରି ବୀର ଦ୍ରୋଣ ସେହି ବୃଷ୍ଣିପ୍ରବର ବୀର ସାତ୍ୟକିଙ୍କୁ ଗ୍ରାସ କରୁଅଛନ୍ତି । ୧୪ । ଅତଏବ ଯେଉଁ ସ୍ଥାନରେ ସାତ୍ୟକି ଯୁଦ୍ଧ କରୁଅଛନ୍ତି, ସେହି ସ୍ଥାନକୁ ତୁମ୍ଭେମାନେ ଗମନ କର ଓ ଧାବମାନ ହୁଅ । ତତ୍ପରେ ସେ ପାଞ୍ଚାଳ୍ୟ ଧୃଷ୍ଟଦ୍ୟୁମ୍ନଙ୍କୁ ମଧ୍ୟ ଏହି ବାକ୍ୟ କହିଲେ । ୧୫ ।

ହେ ପୃଷତନନ୍ଦନ ! ତୁମ୍ଭେ କପରି ନିଶ୍ଚିନ୍ତ ହୋଇ ବସିଅଛ ? ତୁମ୍ଭେ ଦେଖୁନାହଁ ଯେ, ଦ୍ରୋଣଙ୍କଠାରୁ ଆମ୍ଭମାନଙ୍କର ଘୋରତର ଭୟ ଉପସ୍ଥିତ ହୋଇଅଛି । ଅତଏବ ଶୀଘ୍ର ଦ୍ରୋଣଙ୍କ ନିକଟକୁ ଗମନ କର । ୧୬ । ଯେପରି ବାଳକଟିଏ ପକ୍ଷୀକୁ ତନ୍ତୁବଦ୍ଧକରି କ୍ରୀଡ଼ା କରେ

ସେହିପରି ମହାଧନୁର୍ଦ୍ଧର ଦ୍ରୋଣ ସମରରେ ଯୁଯୁଧାନଙ୍କୁ ଘେନି କ୍ରୀଡ଼ା କରୁଅଛନ୍ତି । ୧୭ । ଭୀମସେନ ପ୍ରଭୃତି ମହାରଥିମାନେ ତୁମ୍ଭସହିତ ଯତ୍ନବାନ ହୋଇ ସେହି ସ୍ଥାନକୁ ଗମନ କରନ୍ତୁ । ୧୮ । ତୁମ୍ଭେସମସ୍ତେ ମିଳିତ ହୋଇ ଯମର କରାଳଦଂଷ୍ଟ୍ରାନ୍ତର୍ଗତ ସାତ୍ୟକିଙ୍କୁ ଅଦ୍ୟ ପରିତ୍ରାଣ କର । ସୈନ୍ୟ ସହିତ ଆମ୍ଭେ ମଧ୍ୟ ତୁମ୍ଭର ପଶ୍ଚାତରେ ଗମନ କରୁଅଛୁଁ ।

ରାଜା ଯୁଧିଷ୍ଠିର ଏହିପରି କହି ସମସ୍ତ ସୈନ୍ୟସହିତ ସାତ୍ୟକିଙ୍କ ରକ୍ଷାର୍ଥ ଦ୍ରୋଣଙ୍କ ନିକଟକୁ ଗମନ କଲେ । ୨୦ । ସମସ୍ତ ପାଣ୍ଡବ ଓ ସୃଞ୍ଜୟଗଣ କେବଳ ଦ୍ରୋଣଙ୍କ ବଧକାମନାରେ ଗମନ କରିବା ସମୟରେ ମହାଶବ୍ଦ ହେଲା । ୨୧ । ଅନନ୍ତର ସେହି ନରଶ୍ରେଷ୍ଠ ସମସ୍ତେ ମିଳିତ ହୋଇ ମହାରଥୀ ଦ୍ରୋଣଙ୍କ ଉପରେ କଙ୍କ ଓ ମୟୂରପକ୍ଷଯୁକ୍ତ ତୀକ୍ଷ୍ଣ ବାଣସମୂହ ବର୍ଷଣ କଲେ । ୨୨ । ଯେପରି ଅତିଥିଗଣ ସମାଗତ ହେଲେ ଗୃହସ୍ଥବ୍ୟକ୍ତି ଆସନ, ଜଳ, ଇତ୍ୟାଦି ପ୍ରଦାନ କରି ସେମାନଙ୍କୁ ଅଭ୍ୟର୍ଥନା କରନ୍ତି, ସେହିପରି ସ୍ୱୟଂ ଦ୍ରୋଣ ହସି ହସି ସେମାନଙ୍କୁ ଅସ୍ତ୍ରବର୍ଷଣ ପ୍ରଦାନ କରି ଅଭ୍ୟର୍ଥନା କଲେ । ୨୩ । ଯେପରି ଅତିଥିଗଣ ଅତିଥିଶାଳା ପ୍ରାପ୍ତ ହୋଇ ଆସନାଦି ପ୍ରାପ୍ତିଦ୍ୱାରା ସମ୍ମାନିତ ହୁଅନ୍ତି, ସେହିପରି ସେମାନେ ମହାଧନ୍ୱୀ ଦ୍ରୋଣଙ୍କର ନିକ୍ଷିପ୍ତ ଶରସମୂହରେ ସମ୍ମାନିତ ହେଲେ । ସେମାନେ ସମସ୍ତେ ମଧ୍ୟାହ୍ନକାଳୀନ ସହସ୍ରାଂଶୁସଦୃଶ ଦ୍ରୋଣଙ୍କୁ ନିରୀକ୍ଷଣ କରିବାକୁ ସକ୍ଷମ ହେଲେ ନାହିଁ ।୨୫। ଯେପରି ଦିନକର ପ୍ରଖର ଜ୍ୱାଳାଦ୍ୱାରା ସମସ୍ତଙ୍କୁ ସନ୍ତାପିତ କରନ୍ତି, ସେହିପରି ଶସ୍ତ୍ରଧାରିପ୍ରଧାନ ଦ୍ରୋଣ ଶରନିକରଦ୍ୱାରା ସେହି ସକଳ ମହାଧନୁର୍ଦ୍ଧରଙ୍କୁ ତାପିତ କଲେ । ୨୬ ।

ପାଣ୍ଡବ ଓ ସୃଞ୍ଜୟଗଣ ତାହାଙ୍କର ଶରଜାଳଦ୍ୱାରା ବଧ୍ୟମାନ ହୋଇ ପଙ୍କନିମଗ୍ନ ମାତଙ୍ଗସଦୃଶ କାହାରିକୁ ପରିତ୍ରାତା ପ୍ରାପ୍ତ ହେଲେ ନାହିଁ । ସେହି ସମୟରେ ଦ୍ରୋଣନିକ୍ଷିପ୍ତ ନିଃସରଣଶୀଳ ପ୍ରବଳ ବାଣସବୁ ଚତୁର୍ଦ୍ଦିଗରେ ତାପପ୍ରଦ ଦିନକରଙ୍କ କିରଣସଦୃଶ ଦୃଷ୍ଟ ହେଲା । ୨୮ । ଧୃଷ୍ଟଦ୍ୟୁମ୍ନଙ୍କ କର୍ତ୍ତୃକ ସମ୍ମାନିତ ବିଖ୍ୟାତ ମହାରଥୀ ପାଞ୍ଚାଳଦେଶୀୟ ପଞ୍ଚବିଂଶତି ଯୋଦ୍ଧା ଦ୍ରୋଣଙ୍କ ଅସ୍ତ୍ରଦ୍ୱାରା ନିହତ ହେଲେ । ୨୯ । ତେତେବେଳେ ଲୋକେ ଶୌର୍ଯ୍ୟସମ୍ପନ୍ନ ଦ୍ରୋଣଙ୍କୁ ପାଣ୍ଡବସୈନ୍ୟ ଓ

ପାଞ୍ଚାଳମାନଙ୍କର ପ୍ରଧାନ ପ୍ରଧାନ ଯୋଦ୍ଧାମାନଙ୍କୁ ନିହତ କରିବାର ନିଶ୍ଚୟଷଣ କଲେ । ୩୦ ।

ମହାବାହୁ ଦ୍ରୋଣ କେକେୟଦେଶୀୟ ଏକଶତ ଯୋଦ୍ଧାଙ୍କୁ ନିହତ ଓ ଅନ୍ୟାନ୍ୟ ସମସ୍ତଙ୍କୁ ଇତସ୍ତତଃ ବିଦ୍ରାବିତ କରି ବ୍ୟାଦିତାନନ ଯମସଦୃଶ ସମରରେ ଅବସ୍ଥିତ ହେଲେ ।

ଅନନ୍ତର ସେ ଶତ ଶତ, ସହସ୍ର ସହସ୍ର ପାଞ୍ଚାଳ, ସୃଞ୍ଜୟ, ମତ୍ସ୍ୟ, କୈକେୟ ଓ ପାଣ୍ଡବମାନଙ୍କୁ ପରାଜିତ କଲେ । ୩୨ । ସେମାନେ ଦ୍ରୋଣଙ୍କ ଶରସମୂହରେ ବଧ୍ୟମାନ ହୋଇ ଧୂମକେତୁଦ୍ୱାରା ଦଗ୍ଧ ବନ୍ୟପଶୁସଦୃଶ ଶବ୍ଦ କରି ପଳାୟମାନ ହେଲେ ।୩୩। ତନସ୍ଥ ଦେବ, ଗନ୍ଧର୍ବ ଓ ପିତୃଗଣ କହିଲେ—"ଏହି ପାଣ୍ଡବପକ୍ଷ ଓ ପାଞ୍ଚାଳଗଣ ସୈନ୍ୟସହ ପଳାୟନ କରୁଅଛନ୍ତି" । ୪ । ଦ୍ରୋଣ ସେହି ପ୍ରକାରେ ସେମାନଙ୍କୁ ନିହତ କରିବାରେ ପ୍ରବୃତ୍ତ ହେଲେ । କେହି ତାହାଙ୍କ ସମୀପକୁ ଗମନ କରିପାରିଲେ ନାହିଁ ବା ତାହାଙ୍କୁ ଶରବେଧ କରିବାକୁ ସମର୍ଥ ହେଲେ ନାହିଁ । ୩୫ ।

ହେ ମହାରାଜ ! ବୀରକ୍ଷୟଜନକ ସେହି ତୁମୁଳ ମହାସଂଗ୍ରାମ ସମୟରେ ଯୁଧିଷ୍ଠିର ସହସା ପାଞ୍ଚଜନ୍ୟ ଶଙ୍ଖଧ୍ୱନି ଶ୍ରବଣ କଲେ । ୩୬ । ସିନ୍ଧୁରାଜଙ୍କ ରକ୍ଷକ ବୀରଗଣସମୀପରେ କୃଷ୍ଣ ତତ୍କାଳରେ ପାଞ୍ଚଜନ୍ୟ ଶଙ୍ଖପ୍ରବରକୁ ଅତିଶୟ ବାୟୁପୂରିତ କରି ବାଦ୍ୟ କରୁଥିଲେ । ୩୭ । ବିପକ୍ଷ କୌରବମାନେ ଅର୍ଜୁନଙ୍କ ରଥସମୀପରେ ସିଂହନାଦ କରିବାରୁ ତଦ୍‌ଦ୍ୱାରା ଗାଣ୍ଡୀବଧ୍ୱନି ଅଶ୍ରୁତ ହୁଅନ୍ତେ ରାଜା ଯୁଧିଷ୍ଠିର ଶଙ୍ଖଧ୍ୱନି ଓ ବିପକ୍ଷ ସିଂହନାଦ ଶ୍ରବଣ କରି ବିଷଣ୍ଣମନରେ ଚିନ୍ତା କଲେ, "ଯେତେବେଳେ ପାଞ୍ଚଜନ୍ୟ ଶଙ୍ଖର ଶବ୍ଦ ଶ୍ରୁତ ହେଉଅଛି ଓ କୌରବମାନେ ହୃଷ୍ଟ ହୋଇ ମୁହୁର୍ମୁହୁଃ ନିନାଦ କରୁଅଛନ୍ତି, ସେତେବେଳେ ନିଶ୍ଚୟ ଅର୍ଜୁନଙ୍କ ଶତ୍ରୁପକ୍ଷରେ ବିଘ୍ନ ହୋଇଥିବ ।" ଏହିପରି ଚିନ୍ତା କରି ଅଜାତଶତ୍ରୁ କୁନ୍ତୀପୁତ୍ର ଯୁଧିଷ୍ଠିର ବ୍ୟାକୁଳଚିତ୍ତ ଓ ପୁନଃ ପୁନଃ ମୋହିତ ହୋଇ ଉତ୍ତରକାଳ କର୍ତ୍ତବ୍ୟକାର୍ଯ୍ୟ ବିବେଚନା କରି ଶିନିକୁଳପ୍ରବର ସାତ୍ୟକିଙ୍କୁ ବାଷ୍ପଗଦ୍‌ଗଦବଚନରେ କହିଲେ, ହେ ଶିନିପ୍ରବର ! ଯୁଦ୍ଧରେ ସୁହୃତ୍-

କର୍ତ୍ତବ୍ୟ । ଏହିସ୍ଥଳରେ ପୂର୍ବକାଳରେ ସାଧୁମାନେ ସନାତନ ଧର୍ମ ଯାହା କହିଅଛନ୍ତି, ତାହାର ସମସ୍ତ ବର୍ତ୍ତମାନ ଉପସ୍ଥିତ ହୋଇଅଛି । ୪୨ । ଆମ୍ଭେ ଚିନ୍ତା କରି ଦେଖିଲୁଁ, ସମସ୍ତ ଯୋଦ୍ଧାଙ୍କ ମଧ୍ୟରେ ତୁମ୍ଭ ଅପେକ୍ଷା ସୁହୃତ୍ତମ କାହାରିକୁ ଦେଖୁନାହୁଁ । ୪୩ । ଯେ ସର୍ବଦା ପ୍ରୀତଚିତ୍ତ ଓ ସର୍ବଦା ଅନୁଗତ, ଆମ୍ଭ ବିବେଚନାରେ ଯୁଦ୍ଧକାର୍ଯ୍ୟରେ ତାହାଙ୍କୁ ନିଯୋଗ କରିବା କର୍ତ୍ତବ୍ୟ । ୪୪ ।

ହେ ବୃଷ୍ଣିକୁଳରତ୍ନ ! ଯେପରି କୃଷ୍ଣ ସର୍ବଦା ପାଣ୍ଡବମାନଙ୍କର ଆଶ୍ରୟ, ସେହିପରି କୃଷ୍ଣତୁଲ୍ୟ ପରାକ୍ରମଶୀଳ ତୁମ୍ଭେ ମଧ୍ୟ ପାଣ୍ଡବମାନଙ୍କର ଆଶ୍ରୟ । ୪୫ । ଅତଏବ ତୁମ୍ଭ ପ୍ରତି ଏହି ଭାର ଅର୍ପଣ କରୁଅଛୁଁ । ତୁମ୍ଭେ ଏହି ଭାର ଶୀଘ୍ର ବହନ କରିବାକୁ ସମର୍ଥ । ତୁମ୍ଭେ ଆମ୍ଭର ଅଭିପ୍ରାୟ କଦାଚ ବ୍ୟର୍ଥ କରିବ ନାହିଁ । ୪୬ । ହେ ନରଶ୍ରେଷ୍ଠ ! ଅର୍ଜୁନ ତୁମ୍ଭର ଭ୍ରାତା, ବୟସ୍ୟ ଓ ଗୁରୁ । ଅତଏବ ତୁମ୍ଭେ ଏହି କୃଚ୍ଛ୍ରଜନକ ସମରରେ ତାହାଙ୍କ ସାହାଯ୍ୟ କରିବାକୁ ଗମନ କର । ୪୭ । ହେ ବୀର ! ତୁମ୍ଭେ ସତ୍ୟବ୍ରତ । ଶୂର ମିତ୍ରଙ୍କର ଅଭୟଦାତା ସତ୍ୟବାଦୀ ଓ କାର୍ଯ୍ୟଦ୍ୱାରା ଲୋକ-ବିଖ୍ୟାତ । ୪୮ ।

ହେ ଶିନି-ନନ୍ଦନ ! ଯେ ମିତ୍ର ନିମିତ୍ତ ଯୁଦ୍ଧରେ ଦେହତ୍ୟାଗ କରନ୍ତି ଓ ଯେ ବ୍ରାହ୍ମଣମାନଙ୍କୁ ପୃଥିବୀ ଦାନ କରନ୍ତି, ଏମାନେ ଉଭୟେ ସମାନ ପୁଣ୍ୟଭାଗୀ । ୪୯ । ଆମ୍ଭେମାନେ ଶ୍ରବଣ କରିଅଛୁଁ ଯେ, ବହୁସଂଖ୍ୟକ ରାଜା ଏହି କୃତ୍ସ୍ନ ପୃଥିବୀକୁ ବ୍ରାହ୍ମଣମାନଙ୍କୁ ବିଧିପୂର୍ବକ ଦାନ କରି ସ୍ୱର୍ଗ ଗମନ କରିଅଛନ୍ତି । ୫୦ । ହେ ଧର୍ମାତ୍ମନ୍ ! ତୁମ୍ଭ ନିକଟରେ ଆମ୍ଭେ କୃତାଞ୍ଜଳି ହୋଇ ଯାଚ୍ଞା କରୁଅଛୁଁ, ତୁମ୍ଭେ ଆମ୍ଭର ପ୍ରାର୍ଥନା ପୂର୍ଣ୍ଣ କଲେ ତୁମ୍ଭର ପୃଥିବୀଦାନତୁଲ୍ୟ ବା ତଦପେକ୍ଷା ଅଧିକ ଫଳ ହେବ । ୫୧ । ହେ ସାତ୍ୟକେ ! ଏକମାତ୍ର କୃଷ୍ଣ ମିତ୍ରର ଅଭୟପ୍ରଦ ହୋଇ ସଂଗ୍ରାମରେ ପ୍ରାଣତ୍ୟାଗ କରିପାରନ୍ତି । ଆଉ ଦ୍ୱିତୀୟରେ ତୁମ୍ଭେ କେବଳ ପାର । ୫୨ ।

ଯେ ଯୁଦ୍ଧଦ୍ୱାରା ଯଶ ପ୍ରାର୍ଥନା କରନ୍ତି, ତାଦୃଶ ବିକ୍ରମଶୀଳ ଶୂର ବ୍ୟକ୍ତିଙ୍କର ସହାୟ ତାଦୃଶ ଶୂର ସିନା ହୋଇପାରେ, ସାମାନ୍ୟ ବ୍ୟକ୍ତି

ହୋଇପାରେ ନାହିଁ । ୫୩ । ଏତାଦୃଶ ସଂଗ୍ରାମରେ ବର୍ତ୍ତମାନ ଅର୍ଜୁନଙ୍କ ରକ୍ଷକ ତୁମ୍ଭ ବ୍ୟତୀତ ଅନ୍ୟ କେହି ହୋଇ ପାରିବ ନାହିଁ । ୫୪ । ଅର୍ଜୁନ ତୁମ୍ଭର ଶତ ଶତ କର୍ମର ପ୍ରଶଂସା କରି ଆମ୍ଭର ହର୍ଷୋତ୍ପାଦନପୂର୍ବକ ପୁନଃ ପୁନଃ କହିଅଛନ୍ତି ଯେ, "ସାତ୍ୟକି ଅସ୍ତ୍ରଚାଳନାରେ ଲଘୁହସ୍ତ, ଚିତ୍ରଯୋଧୀ, ଅସାଧାରଣ ପରାକ୍ରମଶାଳୀ, ପ୍ରାଜ୍ଞ, ସର୍ବାସ୍ତ୍ରବେତ୍ତା, ଶୂର ଓ ଯୁଦ୍ଧରେ କଦାଚ ମୁଗ୍ଧ ହୁଅନ୍ତି ନାହିଁ । ୫୬ । ସେ ମହାସ୍କନ୍ଧ, ବିଶାଳବକ୍ଷ, ମହାବାହୁ, ମହାଧନୁର୍ଦ୍ଧର, ମହାବଳବାନ୍, ମହାବୀର୍ଯ୍ୟବାନ୍, ମହାରଥୀ ଓ ମହାତ୍ମା ଅଟନ୍ତି ଓ ସେ ଆମ୍ଭର ସଖା, ଶିଷ୍ୟ ଓ ପ୍ରିୟ । ଆମ୍ଭ ପ୍ରତି ତାହାଙ୍କର ପ୍ରୀତି ଅଛି । ସେ ସଂଗ୍ରାମରେ ଆମ୍ଭର ସହାୟ ହୋଇ କୌରବମାନଙ୍କୁ ପ୍ରମଥିତ କରିବେ ।

ହେ ରାଜେନ୍ଦ୍ର ! ଯଦି କେଶବ, ରାମ, ଅନିରୁଦ୍ଧ, ମହାରଥୀ ପ୍ରଦ୍ୟୁମ୍ନ, ଗଦ, ସାରଣ କିମ୍ବା ସମସ୍ତ ବୃଷ୍ଣିଙ୍କ ସହିତ ଶାମ୍ବ ସମରରେ ଆମ୍ଭମାନଙ୍କର ସାହାଯ୍ୟ ନିମିତ୍ତ ସନ୍ନଦ୍ଧ ହୁଅନ୍ତି, ତଥାପି ଆମ୍ଭେ ସତ୍ୟବିକ୍ରମ ନରସିଂହ ସାତ୍ୟକିଙ୍କୁ ସାହାଯ୍ୟ ନିମିତ୍ତ ନିଯୁକ୍ତ କରିବୁଁ, ତାହାଙ୍କର ତୁଲ୍ୟ ଆମ୍ଭର କେହି ନାହିଁ । ୬୧ । ଏହି କଥା ଧନଞ୍ଜୟ ଆମ୍ଭଙ୍କୁ ଦ୍ୱୈତବନମଧ୍ୟରେ ତୁମ୍ଭର ପରୋକ୍ଷରେ ମାନ୍ୟ ଋଷିମାନଙ୍କ ସଭାମଧ୍ୟରେ ତୁମ୍ଭର ପ୍ରକୃତ ଗୁଣାନୁବାଦପୂର୍ବକ କହିଥିଲେ । ଅତଏବ ତୁମ୍ଭେ ଧନଞ୍ଜୟ ଓ ଭୀମସେନ ଆମ୍ଭର ସେହି ସଂକଳ୍ପକୁ ବୃଥା କର ନାହିଁ । ୬୩ । ତୁମ୍ଭର ଯେ ଅର୍ଜୁନଙ୍କ ପ୍ରତି ଭକ୍ତି ଅଛି, ତାହା ଆମ୍ଭେମାନେ ଦ୍ୱାରକା ସମୀପରେ ତୀର୍ଥସେବନ କରିବା ସମୟରେ ପ୍ରତ୍ୟକ୍ଷ କରିଅଛୁଁ । ୬୪ । ଆମ୍ଭେମାନେ ଯେତେବେଳେ ଉପପ୍ଲବ୍ୟ ନଗରରେ ଥିଲୁଁ, ସେ ସମୟରେ ମଧ୍ୟ ଆମ୍ଭମାନଙ୍କ ପ୍ରତି ତୁମ୍ଭର ଭକ୍ତି ଓ ସୌହାର୍ଦ୍ଦ୍ୟ ଲକ୍ଷିତ ହୋଇଥିଲା । ତାହା ଅନ୍ୟ କାହାର ପ୍ରତି ଲକ୍ଷିତ ହୋଇନାହିଁ ।

ହେ ମଧୁକୁଳାବତଂସ ! ମହାବାହୁ ! ତୁମ୍ଭର ଯାଦୃଶ ସଦ୍‌ବଂଶରେ ଜନ୍ମ, ଆମ୍ଭମାନଙ୍କ ପ୍ରତି ଯେପରି ଭକ୍ତି, ସଖ୍ୟଭାବ ଓ ସୌହାର୍ଦ୍ଦ୍ୟ ଓ ତୁମ୍ଭେ ଅର୍ଜୁନଙ୍କୁ ଆଚାର୍ଯ୍ୟ ବୋଲି ଯେପରି ମାନ୍ୟ କର ଓ ତୁମ୍ଭର ଯେପରି ସତ୍ୟ-ନିଷ୍ଠା, ସେହିପରି କର୍ମ କରିବାକୁ ଉଚିତ ଅଟେ । କୃପା କରି ମଧ୍ୟ ତୁମ୍ଭେ

କାର୍ଯ୍ୟରେ ପ୍ରବୃତ୍ତ ହୋଇପାର । ୭୭ । ଦ୍ରୋଣ ଦୁର୍ଯ୍ୟୋଧନଙ୍କୁ କବଚ ପିନ୍ଧାଇ ଦେବାରୁ ସେ ସହସା ଅର୍ଜ୍ଜୁନଙ୍କ ସମୀପକୁ ଗମନ କରିଅଛନ୍ତି । ଜୟଦ୍ରଥରକ୍ଷକ କୌରବପକ୍ଷୀୟ ମହାରଥମାନେ ମଧ୍ୟ ପୂର୍ବରୁ ସେଠାରେ ସମବେତ ହୋଇ ଅବସ୍ଥାନ କରୁଅଛନ୍ତି । ୭୮ । ସମ୍ପ୍ରତି ଧନଞ୍ଜୟଙ୍କ ନିକଟରେ ଅତିଶୟ ମହାନ୍ ଶବ୍ଦ ଶ୍ରୁତ ହୋଇଅଛି । ଅତଏବ ତୁମ୍ଭେ ଶୀଘ୍ର ସେଠାକୁ ଗମନ କର । ୭୯ । ଯଦି ଦ୍ରୋଣ ତୁମ୍ଭଙ୍କୁ ନିବାରଣ କରିବା-ମାନସରେ ଯୁଦ୍ଧ କରନ୍ତି, ତାହାହେଲେ ଭୀମସେନ ଓ ସୈନ୍ୟମାନଙ୍କ ସହିତ ଆମ୍ଭେମାନେ ସଯତ୍ନ ହୋଇ ତାହାଙ୍କୁ ନିବାରଣ କରିବୁଁ । ୮୦ ।

ହେ ଶିନିନନ୍ଦନ ! ଦେଖ, ସୈନ୍ୟମାନେ ଇତସ୍ତତଃ ପଳାୟନପର ହୋଇ ରଣସ୍ଥଳରେ ଅତି ମହାନ୍ ଶବ୍ଦ କରୁଅଛନ୍ତି । ୮୧ । ଯେପରି ମହାବାୟୁବେଗରେ ପର୍ବକାଳୀନ ସମୁଦ୍ର କ୍ଷୋଭିତ ହୁଏ, ସେହିପରି ଅର୍ଜ୍ଜୁନ ଧୃତରାଷ୍ଟ୍ର ସୈନ୍ୟମାନଙ୍କୁ କ୍ଷୋଭିତ କରୁଅଛନ୍ତି । ୮୨ । ରଥୀ, ପଦାତି ଓ ଅଶ୍ୱାରୋହିସଙ୍କୁଳ ସୈନ୍ୟମାନେ ଧାବମାନ ହେବାରୁ ଧୂଳି ସମୁତ୍ଥିତ ହୋଇ-ଅଛି । ୮୩ । ପରବୀରହନ୍ତା ଫାଲ୍‌ଗୁନ, ତୋମର ଓ ପ୍ରାସଯୋଧୀ, ଅତ୍ୟନ୍ତ ବର୍ଦ୍ଧିତ ସିନ୍ଧୁସୌବୀର ଶୂରମାନଙ୍କ ଦ୍ୱାରା ସମାଚ୍ଛନ୍ନ ହୋଇଅଛନ୍ତି । ୮୪ । ସେମାନେ ଜୟଦ୍ରଥ ନିମିତ୍ତ ପ୍ରାଣ ପରିତ୍ୟାଗ କରିବାକୁ ଉଦ୍ୟତ ହୋଇ-ଅଛନ୍ତି ; ସେମାନଙ୍କୁ ପରାଜିତ ନ କରି ଅର୍ଜ୍ଜୁନ ଜୟଦ୍ରଥକୁ ବଧ କରି ପାରିବେ ନାହିଁ । ୮୫ । ଦେଖ, ଶର, ଶକ୍ତି, ଧ୍ୱଜ, ଅଶ୍ୱ ଓ ନାଗସମାକୁଳ ସେହି ଧୃତରାଷ୍ଟ୍ରସୈନ୍ୟମାନେ ଅତିଶୟ ଦୁର୍ଗମ ଅଟନ୍ତି ।୮୬। ଶ୍ରବଣ କର, ଦୁନ୍ଦୁଭିଧ୍ୱନି, ଶଙ୍ଖଶବ୍ଦ, ବୀରମାନଙ୍କ ସିଂହନାଦ, ରଥନେମୀର ରବ, ସହସ୍ର ସହସ୍ର ହସ୍ତୀ, ବାଜି ଓ ପଦାତିମାନଙ୍କର ଭୈରବ ଶବ୍ଦଦ୍ୱାରା ପୃଥିବୀ ପ୍ରକମ୍ପିତା ହେଉଅଛି ।୮୭। ଦ୍ରୋଣ ସୈନ୍ୟମାନଙ୍କର ଅଗ୍ର ଓ ପଶ୍ଚାଦ୍‌ଭାଗରେ ଏତେ ଅଧିକ ବହୁଳ ସୈନ୍ୟ ଅବସ୍ଥାନ କରୁଅଛନ୍ତି ଯେ, ସେମାନେ ଦେବରାଜ ଇନ୍ଦ୍ରଙ୍କୁ ମଧ୍ୟ ପୀଡ଼ିତ କରିପାରନ୍ତି । ୮୮ ।

ସେହି ଅପରିମିତ ସୈନ୍ୟମଧ୍ୟରେ ମଗ୍ନ ହୋଇ ଅର୍ଜ୍ଜୁନ ଯେବେ ପ୍ରାଣତ୍ୟାଗ କରନ୍ତି, ତାହାହେଲେ ମାଦୃଶ ବ୍ୟକ୍ତି କପରି ଜୀବିତ ରହି-ପାରିବ ? ହାୟ ! ଆମ୍ଭର ଜୀବନଧାରଣ ସର୍ବତୋଭାବରେ ଅତିଶୟ

କଷ୍ଟସାଧ୍ୟ ହୋଇଅଛି । ଶ୍ୟାମରୂପଯୁବା, ସୁଦର୍ଶନୀୟ, ଲଘୁହସ୍ତ, ଶସ୍ତ୍ରଯୋଧୀ, ମହାବାହୁ, ଗୁଡ଼ାକେଶ, ସୂର୍ଯ୍ୟୋଦୟକାଳରେ କୁରୁସୈନ୍ୟମଧ୍ୟରେ ପ୍ରବିଷ୍ଟ ହୋଇଅଛନ୍ତି । ବର୍ତ୍ତମାନ ଅପରାହ୍ଣ ହେଲା । ସେ ଜୀବିତ ଅଛନ୍ତି କି ନା ? ତାହା ଆମ୍ଭେ ଜାଣି ପାରୁନାହୁଁ । ଶୂରମାନଙ୍କର ମଧ୍ୟ ଅସହ୍ୟ କୁରୁପକ୍ଷୀୟ ସାଗରସଦୃଶ ମହାସୈନ୍ୟମଧ୍ୟରେ ମହାବାହୁ ବୀଭତ୍ସୁ ଏକାକୀ ପ୍ରବିଷ୍ଟ ହୋଇଅଛନ୍ତି । ୮୪ ।

ଦ୍ରୋଣ ମଧ୍ୟ ଅସ୍ତ୍ରଶସ୍ତ୍ର ବେଗସହକାରେ ଆମ୍ଭର ସୈନ୍ୟମାନଙ୍କୁ ପୀଡ଼ିତ କରୁଅଛନ୍ତି, ତାହା ତୁମ୍ଭେ ସ୍ୱଚକ୍ଷୁରେ ଅବଲୋକନ କରୁଅଛ । ଅତଏବ ଅଦ୍ୟ ଯୁଦ୍ଧରେ ଆମ୍ଭର ବୁଦ୍ଧି ହେଉ ନାହିଁ । ହେ ମଧୁକୁଳରତ୍ନ ! ଅର୍ଜୁନଙ୍କୁ କୁରୁପକ୍ଷୀୟ ସାଗରସଦୃଶ ମହତ୍ ସୈନ୍ୟମଧ୍ୟରୁ ଉଦ୍ଧାର କରିବା ଆଉ ଦ୍ରୋଣଙ୍କୁ ସଂଗ୍ରାମରେ ନିବାରଣ କରିବା, ଏହି ଉଭୟ କାର୍ଯ୍ୟ ଏକସମୟରେ ଉପସ୍ଥିତ ହୋଇଅଛି । ପରନ୍ତୁ ତୁମ୍ଭେ ବିଚକ୍ଷଣ ଅଟ । ଏଣୁ ଉଭୟ କାର୍ଯ୍ୟ ମଧ୍ୟରୁ କେଉଁ କାର୍ଯ୍ୟ ମହାନ୍ ଓ କେଉଁ କାର୍ଯ୍ୟ ଲଘୁ, ତାହା ତୁମ୍ଭେ ନିଶ୍ଚୟ କରିପାର । ଆମ୍ଭର ମତ ଏହି ଯେ, ସମରରେ ଅର୍ଜୁନଙ୍କୁ ରକ୍ଷା କରିବା ତୁମ୍ଭର କର୍ତ୍ତବ୍ୟ । ଆମ୍ଭେ ଦାଶାର୍ହ କୃଷ୍ଣଙ୍କନିମିତ୍ତ ଚିନ୍ତା କରୁନାହୁଁ । ଆମ୍ଭେ ସତ୍ୟ ବୋଲୁଅଛୁଁ ଯେ, ତ୍ରିଲୋକ ଏକତ୍ରିତ ହେଲେ ମଧ୍ୟ ସେହି ଜଗତ୍‌ପ୍ରଭୁ କୃଷ୍ଣ ସେମାନଙ୍କୁ ରକ୍ଷା ବା ପରାଜିତ କରି ପାରନ୍ତି । ଏଥିରେ ସଂଶୟ ନାହିଁ । ୮୯ ।

ଏହି ସୁଦୁର୍ବଳ ଧାର୍ତ୍ତରାଷ୍ଟ୍ର ସୈନ୍ୟମାନଙ୍କର କଥା ତାହାଙ୍କୁ ଅବା କେତେ ମାନ ? କିନ୍ତୁ ହେ ବୃଷ୍ଣିନନ୍ଦନ ! କାଳେ ଧନଞ୍ଜୟ ସଂଗ୍ରାମରେ ବହୁଯୋଧାଙ୍କକର୍ତ୍ତୃକ ପୀଡ଼ିତ ହୋଇ ପ୍ରାଣତ୍ୟାଗ କରନ୍ତି, ତନ୍ନିମିତ୍ତ ଆମ୍ଭେ ମୋହିତ ହେଉଅଛୁଁ । ଅତଏବ ଆମ୍ଭେମାନେ ତୁମ୍ଭଙ୍କୁ ପ୍ରେରଣ କରୁଅଛୁଁ । ଏତାଦୃଶ ସମରରେ ତାଦୃଶ ସଙ୍କଟାପନ୍ନ ବ୍ୟକ୍ତିଙ୍କ ସାହାଯ୍ୟାର୍ଥ ତୁମ୍ଭସଦୃଶ ବ୍ୟକ୍ତିମାନେ ଯେପରି ଗମନ କରନ୍ତି, ସେହିପରି ତୁମ୍ଭେ ତାହାଙ୍କ ସାହାଯ୍ୟାର୍ଥ ତାହାଙ୍କ ପଦବୀକୁ ଗମନ କର । ବୃଷ୍ଣିବଂଶୀୟ ବୀରମାନଙ୍କ ମଧ୍ୟରେ ମହାବାହୁ ପ୍ରଦ୍ୟୁମ୍ନ ଓ ତୁମ୍ଭେ, ଏହି ଦୁଇଜଣ ସଂଗ୍ରାମରେ ଅତିରଥ ବୋଲି ବିଖ୍ୟାତ । ତୁମ୍ଭେ ଅସ୍ତ୍ରରେ ନାରାୟଣତୁଲ୍ୟ, ବଳରେ ବଳଦେବଙ୍କ ସମାନ

ଓ ସୀରପଣରେ ଅର୍ଜ୍ଜୁନଙ୍କ ସଦୃଶ । ବିଶ୍ୱମଧ୍ୟରେ ସୁପ୍ରସିଦ୍ଧ ଭୀଷ୍ମ ଓ ଦ୍ରୋଣ ଅପେକ୍ଷା ମଧ୍ୟ ତୁମ୍ଭେ ସର୍ବଯୁଦ୍ଧବିଶାରଦ । ସାଧୁମାନେ ଯୁଦ୍ଧରେ "ସାତ୍ୟକିଙ୍କର ଅସାଧ୍ୟ କିଛିହିଁ ନାହିଁ" ବୋଲି କୀର୍ତ୍ତନ କରନ୍ତି । ଅତଏବ ହେ ମହାବଳ ! ଆମ୍ଭେ ବର୍ତ୍ତମାନ ଯାହା ତୁମ୍ଭଙ୍କୁ କହୁଅଛୁଁ, ତାହା ପାଳନ କର । ଲୋକେ ତୁମ୍ଭ ପ୍ରତି ଯେପରି ସମ୍ଭାବନା କରିଥାନ୍ତି ଓ ଆମ୍ଭେ ପୁଣି ଅର୍ଜ୍ଜୁନ ତୁମ୍ଭଠାରେ ଯେପରି ପ୍ରତ୍ୟାଶା କରିଥାଉଁ, ଉପସ୍ଥିତ ସଂଗ୍ରାମରେ ତାହା ଅନ୍ୟଥା କରିବା ତୁମ୍ଭର ଉପଯୁକ୍ତ ହେଉନାହିଁ । ତୁମ୍ଭେ ପ୍ରିୟସୁହୃତର ପ୍ରାଣ ପରିତ୍ୟାଗରେ ସମୁଦ୍ୟତ ଓ ନିର୍ଭୀକ ହୋଇ ସମରରେ ବିଚରଣ କର । ୯୭ ।

ହେ ଶିନିପ୍ରବର ! ଯାଦବଗଣ ଯୁଦ୍ଧରେ ଜୀବନ ପ୍ରତି ସ୍ନେହ କରନ୍ତି ନାହିଁ । ରଣରେ ପ୍ରବେଶ କରି ଯୁଦ୍ଧ ନ କରିବା, ସମ୍ମୁଖରେ ଅନବସ୍ଥାନ ଓ ପଳାୟନ ଭୀରୁମାନଙ୍କ ସମ୍ମତ—ଏହି ତିନିଗୋଟିକୁ ସେମାନେ ସେବନ କରନ୍ତି ନାହିଁ । ହେ ବତ୍ସ ! ଧୀମାନ୍ ଧର୍ମାତ୍ମା ଧନଞ୍ଜୟ ତୁମ୍ଭର ଗୁରୁ ଓ କୃଷ୍ଣ ତାହାଙ୍କର ଗୁରୁ ଅଟନ୍ତି । ଏହି ଦୁଇଗୋଟି କାରଣ ଅବଗତ ହୋଇ ଆମ୍ଭେ ତୁମ୍ଭଙ୍କୁ ଏହା ବୋଲୁଅଛୁଁ । ୧୦୦ । ଆମ୍ଭେ ମଧ୍ୟ ତୁମ୍ଭ ଗୁରୁର ଗୁରୁ, ତୁମ୍ଭେ ଆମ୍ଭର କଥା ଅବମାନନା କର ନାହିଁ । ଆମ୍ଭେ ଯେଉଁ ଅଭିପ୍ରାୟ କରିଅଛୁଁ, ଏହା କୃଷ୍ଣ ଓ ଅର୍ଜ୍ଜୁନ—ଏହି ଦୁହିଁଙ୍କର ଅଭିପ୍ରେତ ଅଟେ । ଏହା ଆମ୍ଭେ ସତ୍ୟ କହୁଅଛୁଁ । ହେ ସତ୍ୟପରାକ୍ରମ ! ଆମ୍ଭର ଏହି ଆଦେଶାନୁସାରେ ଧନଞ୍ଜୟଙ୍କ ନିକଟକୁ ଗମନ କର । ଦୁର୍ମତି ଦୁର୍ଯ୍ୟୋଧନର ସୈନ୍ୟମଧ୍ୟରେ ପ୍ରବେଶ କର । ଅନନ୍ତର ମହାରଥୀମାନଙ୍କ ସମ୍ମତ ଯଥାନ୍ୟାୟରେ ଯୁଦ୍ଧରେ ସମବେତ ହୋଇ ଯଥାସାଧ୍ୟ ରଣକାର୍ଯ୍ୟ ପ୍ରଦର୍ଶନ କର । ୧୦୩ ।

---

## ୧୧୧ ଅଧ୍ୟାୟ

ହେ ଭରତକୁଳଶ୍ରେଷ୍ଠ ! ଶିନିପ୍ରବର ସାତ୍ୟକି ଧର୍ମରାଜଙ୍କ ପ୍ରୀତିଯୁକ୍ତ, ଧର୍ମମିଶ୍ରିତ, ମଧୁରାକ୍ଷରସଂଯୁକ୍ତ, ସମୟୋଚିତ, ଯୁକ୍ତିଯୁକ୍ତ, ବିଚିତ୍ର ବାକ୍ୟକୁ ଶ୍ରବଣ କରି ଯୁଧିଷ୍ଠିରଙ୍କୁ ପ୍ରତ୍ୟୁତ୍ତର କଲେ । ୨ । ହେ ଦୃଢ଼ନିଷ୍ଠ ! ଆପଣ

ଧନଞ୍ଜୟଙ୍କ ନିମିତ୍ତ ଯେଉଁ ପରଶ୍ପର ନ୍ୟାୟଯୁକ୍ତ ବଚନବାକ୍ୟ କହିଲେ, ତାହା ଆମ୍ଭେ ସମସ୍ତ ଶ୍ରବଣ କଲୁଁ । ୩ ।

ହେ ରାଜେନ୍ଦ୍ର ! ଏପରି ସମୟରେ ପାର୍ଥଙ୍କୁ ଆପଣ ଯେପରି ଆଦେଶ କରିପାରନ୍ତି, ସେହିପରି ସମ୍ପ୍ରତି ମାଦୃଶ ଜନକୁ ଅବଲୋକନ କରି ଆଦେଶ କରିବା ଆପଣଙ୍କ ଉପଯୁକ୍ତ ହୋଇଅଛି । ୪ । ଧନଞ୍ଜୟଙ୍କ ନିମିତ୍ତ ଆମ୍ଭେ ପ୍ରାଣ ଦେବୁଁ । ପୁଣି ଆମ୍ଭେ ଏହି ମହାସଂଗ୍ରାମରେ ଆପଣଙ୍କ କର୍ତ୍ତୃକ ଆଦିଷ୍ଟ ହୋଇ କି ନ କରିପାରୁଁ ? ୫ । ଦେବ, ଅସୁର ଓ ମନୁଷ୍ୟ ସହିତ ତ୍ରିଭୁବନ ଏକତ୍ରିତ ହେଲେହେଁ ଆମ୍ଭେ ତାହା ପ୍ରତିପକ୍ଷରେ ଯୁଦ୍ଧ କରିପାରୁଁ । ଆପଣଙ୍କ ଆଦେଶରେ ଦୁର୍ବଳ କୁରୁସୈନ୍ୟମାନଙ୍କ ସହିତ ଆମ୍ଭେ ଯେ ଯୁଦ୍ଧ କରିବୁଁ, ତହିଁରେ ବଚନ କ'ଣ ଅଛି ?

ହେ ମହାରାଜ ! ଆମ୍ଭେ ଆପଣଙ୍କ ନିକଟରେ ସତ୍ୟ କହୁଅଛୁଁ ଯେ, ସର୍ବଥା ଦୁର୍ଯୋଧନଙ୍କ ସୈନ୍ୟସହିତ ଯୁଦ୍ଧ କରି ବିଜୟ ଲାଭ କରିବୁଁ । ୭ । ଧନଞ୍ଜୟଙ୍କୁ କୁଶଳୀ ଓ ଜୟଦ୍ରଥକୁ ନିହତ ନିରୀକ୍ଷଣ କରି ନିଜେ କୁଶଳୀ ହୋଇ ପୁନର୍ବାର ଆପଣଙ୍କ ନିକଟକୁ ଆଗମନ କରିବୁଁ । ୮ । କିନ୍ତୁ ହେ ମହାରାଜ ! ଧୀମାନ୍ ବାସୁଦେବଙ୍କ ନିକଟରେ ତାହାଙ୍କୁ ଶୁଣାଇ ଧନଞ୍ଜୟ ଯାହା ଆମ୍ଭଙ୍କୁ କହିଥିଲେ, ସେ ସମୁଦାୟ ଆପଣଙ୍କ ନିକଟରେ ବିଜ୍ଞାପନ କରିବା ଅବଶ୍ୟ ଆମ୍ଭର କର୍ତ୍ତବ୍ୟ । ୯ ।

ସମୁଦାୟ ସୈନ୍ୟମଧ୍ୟରେ ଧୀମାନ୍ ବାସୁଦେବଙ୍କ ସାକ୍ଷାତରେ ମହାବୀର ଅର୍ଜୁନ ଆମ୍ଭଙ୍କୁ ପୁନଃ ପୁନଃ ପ୍ରଯତ୍ନସହକାରେ ଏହିପରି ଆଜ୍ଞା କରିଥିଲେ । ୧୦ । ହେ ଶିନିନନ୍ଦନ ! ଅଦ୍ୟ ଆମ୍ଭେ ଯେପର୍ଯ୍ୟନ୍ତ ଜୟଦ୍ରଥକୁ ନିହତ କରି ପ୍ରତ୍ୟାଗମନ ନ କରୁଁ, ତୁମ୍ଭେ ପ୍ରମାଦହୀନ ଓ ଯୁଦ୍ଧରେ ଦୃଢ଼ମତି ହୋଇ ରାଜାଙ୍କୁ ରକ୍ଷା କରିବ । ୧୧ । ହେ ମହାବାହୁ ! ମହାରଥୀ ପ୍ରଦ୍ୟୁମ୍ନଙ୍କ ନିକଟରେ କିମ୍ବା ତୁମ୍ଭ ନିକଟରେ ରାଜାଙ୍କୁ ସମର୍ପଣ-ପୂର୍ବକ ନିଶ୍ଚିନ୍ତ ହୋଇ ଜୟଦ୍ରଥର ବଧନିମିତ୍ତ ଗମନ କରିପାରୁଁ । ୧୨ । ଯୋଧପ୍ରବରମାନଙ୍କର ପ୍ରଧାନତ ଦ୍ରୋଣ ସମରରେ ଯେପ୍ରକାର ବେଗଶୀଳ ତାହା ତୁମ୍ଭେ ଜ୍ଞାତ ଅଛ । ସେ ଯେଉଁ ପ୍ରତିଜ୍ଞା କରିଅଛନ୍ତି ତାହା ତୁମ୍ଭେ

ସର୍ବଦା ଶୁଣିଅଛ । ୧୩ । ସେ ଧର୍ମରାଜଙ୍କୁ ଗ୍ରହଣ କରିବାକୁ ସମୁତ୍ସୁକ ହୋଇଅଛନ୍ତି ଓ ସେ ତାହା କରିବାକୁ ଅସମର୍ଥ ନୁହନ୍ତି । ଅତଏବ ନରୋତ୍ତମ ଯୁଧିଷ୍ଠିରଙ୍କୁ ତୁମ୍ଭଠାରେ ଅର୍ପଣ କରି ଅଦ୍ୟ ଆମ୍ଭେ ସିନ୍ଧୁରାଜର ବଧନିମିତ୍ତ ଗମନ କରିବୁଁ । ୧୫ । ଦ୍ରୋଣ ଯଦି ବଳପୂର୍ବକ ରଣରେ ଧର୍ମରାଜଙ୍କୁ ଗ୍ରହଣ ନ କରନ୍ତି, ତାହାହେଲେ ଆମ୍ଭେ ନିଶ୍ଚୟ ଜୟଦ୍ରଥକୁ ବଧକରି ଆଗମନ କରିବୁଁ । ୧୬ । ଯଦି ଦ୍ରୋଣ ଧର୍ମରାଜଙ୍କୁ ଗ୍ରହଣ କରନ୍ତି ତେବେ ସିନ୍ଧୁରାଜର ବଧ ହେବ ନାହିଁ । ଆମ୍ଭ ମନରେ ମଧ୍ୟ ସନ୍ତୋଷ ହେବ ନାହିଁ । ପୁନର୍ବାର ଆମ୍ଭମାନଙ୍କୁ ଅବଶ୍ୟ ବନଗମନ କରିବାକୁ ହେବ । ଦ୍ରୋଣକର୍ତ୍ତୃକ ରାଜା ନିଗୃହୀତ ହେଲେ ଯୁଦ୍ଧରେ ଆମ୍ଭମାନଙ୍କ ଜୟ ହେଲେ ମଧ୍ୟ ତାହା ନିଶ୍ଚୟ ବ୍ୟର୍ଥ ହେବ ।

ଅତଏବ ହେ ମହାବାହୋ ! ଅଦ୍ୟ ତୁମ୍ଭେ ଆମ୍ଭର ସନ୍ତୋଷନିମିତ୍ତ ଯୁଦ୍ଧରେ ଜୟ ଓ ଯଶ ନିମିତ୍ତ ସଂଗ୍ରାମରେ ରାଜାଙ୍କୁ ରକ୍ଷାକରିବ । ୨୦ । ହେ ପ୍ରଭୋ ! ସବ୍ୟସାଚୀ ଆପଣଙ୍କପ୍ରତି ଦ୍ରୋଣଙ୍କଠାରୁ ସର୍ବଦା ଭୟର ଆଶଙ୍କା କରି, ଏହିପରି କହି ଆପଣଙ୍କୁ ଆମ୍ଭ ନିକଟରେ ନ୍ୟାସସ୍ୱରୂପ ଅର୍ପଣ କରିଅଛନ୍ତି । ୨୧ । ସେ ଯାହା ନିଶ୍ଚୟ କରିଅଛନ୍ତି ତାହାର ଫଳ ଆପଣ ପ୍ରତ୍ୟକ୍ଷ କରୁଅଛନ୍ତି ; ଅର୍ଥାତ୍ ଦ୍ରୋଣ ସର୍ବଦା ଆପଣଙ୍କୁ ଗ୍ରହଣ କରିବାର ଚେଷ୍ଟା କରୁଅଛନ୍ତି । ଧନଞ୍ଜୟ ରୁକ୍ମିଣୀପୁତ୍ର ପ୍ରଦ୍ୟୁମ୍ନ ବା ଆମ୍ଭ ବ୍ୟତିରେକେ ଅନ୍ୟ କାହାରିକୁ ଧୀମାନ୍ ଦ୍ରୋଣଙ୍କ ପ୍ରତିଯୋଦ୍ଧା ମନେ କରନ୍ତି ନାହିଁ । ଏପରିସ୍ଥଳେ ଉପସ୍ଥିତ ସମ୍ଭାବନାରୁ ପରାଙ୍ମୁଖ ହେବାକୁ ବା ଆଚାର୍ଯ୍ୟ ଅର୍ଜୁନଙ୍କ ବାକ୍ୟ ଅନ୍ୟଥା କରିବାକୁ ଆମ୍ଭର ଉତ୍ସାହ ହେଉନାହିଁ । ଆପଣଙ୍କୁ ପରିତ୍ୟାଗ କରି ଆପଣଙ୍କ ଆଦେଶ ପାଳନ କରିବାନିମିତ୍ତ ଅବା କିପରି ଉତ୍ସାହିତ ହେବୁଁ ? ଯେପରି ବାଳକ ପକ୍ଷୀ ଲୋଭକରି ଲଦ୍ଧାର କ୍ରୀଡ଼ା କରେ, ସେହିପରି ଅଭେଦ୍ୟକବଚଯୁକ୍ତ ଆଚାର୍ଯ୍ୟ ଦ୍ରୋଣ ଅସ୍ତ୍ର-ଯୁଦ୍ଧରେ ଲଘୁହସ୍ତତାପ୍ରଯୁକ୍ତ ଆପଣଙ୍କୁ ନେଇ ସଂଗ୍ରାମରେ କ୍ରୀଡ଼ା କରୁଅଛନ୍ତି ।

ଯଦି କୃଷ୍ଣଙ୍କ ପୁତ୍ର ପ୍ରଦ୍ୟୁମ୍ନ ଶରାସନହସ୍ତରେ ଏହିସ୍ଥାନରେ ଅବସ୍ଥାନ କରନ୍ତି, ତାହାହେଲେ ତାହାଙ୍କ ନିକଟରେ ଆପଣଙ୍କୁ ଆମ୍ଭେ ଅର୍ପଣ କରନ୍ତୁ ।

କିନ୍ତୁ ଏପରି ବ୍ୟକ୍ତି କେହି ନାହାଁନ୍ତି ଯେ, ଆମ୍ଭେ ଗମନ କଲେ ଯେପର୍ଯ୍ୟନ୍ତ ଅର୍ଜୁନଙ୍କ ନିକଟରୁ ଆଗମନ ନ କରନ୍ତି ସେପର୍ଯ୍ୟନ୍ତ ସେ ଆପଣଙ୍କ ରକ୍ଷାର୍ଥ ଦ୍ରୋଣଙ୍କସହିତ ପ୍ରତିଯୁଦ୍ଧ କରିପାରିବ । ହେ ମହାରାଜ ! ସୁତରାଂ ଆପଣ ସଂଗ୍ରାମରେ ଅର୍ଜୁନଙ୍କନିମିତ୍ତ ଭୟ କରିବେ ନାହିଁ । ସେ ମହାବାହୁ କୌଣସି ଭାରବହନ କରି କଦାପି ଅବସନ୍ନ ହୁଅନ୍ତି ନାହିଁ । ସିନ୍ଧୁ, ସୌବୀର, ପୌରବ, ଉଦୀଚ୍ୟ, ଦାକ୍ଷିଣାତ୍ୟ, ଅନ୍ୟାନ୍ୟ ଦେଶୀୟ ମହାରଥୀ ଓ କର୍ଣ୍ଣ ପ୍ରଭୃତି ବିଖ୍ୟାତ ବୀରମାନେ କୁରୁପକ୍ଷରେ ଅବସ୍ଥିତ ଅଛନ୍ତି । ସେମାନେ କ୍ରୁଦ୍ଧ ଓ ଅର୍ଜୁନଙ୍କର ଷୋଡ଼ଶ ଅଂଶର ଏକାଂଶ ମଧ୍ୟ ହୋଇପାରିବେ ନାହିଁ । ସୁର, ଅସୁର, ନର, ରାକ୍ଷସ, କିନ୍ନର, ମହୋରଗଗଣ, ସ୍ଥାବର, ଜଙ୍ଗମ-ପ୍ରଭୃତିସହ ସମୁଦାୟ ପୃଥିବୀ ଉଦ୍ୟୁକ୍ତ ହେଲେହେଁ ପାର୍ଥଙ୍କସହିତ ସମରରେ ସମର୍ଥ ହୋଇପାରିବେ ନାହିଁ । ୩୧ ।

ଆପଣ ଏହି ବିଷୟ ବିବେଚନା କରି ଧନଞ୍ଜୟଙ୍କ ପ୍ରତି ଭୟର ଆଶଙ୍କା ପରିତ୍ୟାଗ କରନ୍ତୁ । ଯେଉଁ ସ୍ଥାନରେ ବୀର୍ଯ୍ୟସମ୍ପନ୍ନ,ସତ୍ୟପରାକ୍ରମ, ମହାଧନୁର୍ଦ୍ଧର ଦୁଇକୃଷ୍ଣ ଏକତ୍ର ହୋଇଅଛନ୍ତି, ସେ ସ୍ଥଳରେ କୌଣସିପ୍ରକାର ଆପଦର ସମ୍ଭାବନା ନାହିଁ । ଆପଣଙ୍କ ଭ୍ରାତା ଅର୍ଜୁନଙ୍କର ଯେପରି କୃତଜ୍ଞତା, ଦୟା, ଯୁଦ୍ଧରେ ଅମାନୁଷିକତା, କୃତାସ୍ତ୍ରତାଯୋଗ ଓ ଅମର୍ଷ ସେସମସ୍ତ ଆପଣ ଚିନ୍ତାକରି ଦେଖନ୍ତୁ । ଆମ୍ଭେ ଧନଞ୍ଜୟଙ୍କ ସମୀପକୁ ଗମନ କଲେ ଅସ୍ତ୍ରକୁଶଳ ଦ୍ରୋଣ ଯେପରି ପ୍ରକାଶ କରିବେ, ତାହା ମଧ୍ୟ ଚିନ୍ତାକରି ଦେଖନ୍ତୁ । ସେ ସ୍ୱକୀୟ ପ୍ରତିଜ୍ଞା ରକ୍ଷାକରିବାନିମିତ୍ତ ଆପଣଙ୍କୁ ଗ୍ରହଣ କରିବାକୁ ନିତାନ୍ତ ଅଭିଳାଷୀ । ଅତଏବ ଆପଣ ନିଜର ରକ୍ଷାର ଉପାୟ କରନ୍ତୁ ।

ଆମ୍ଭେ ଗମନ କଲାପରେ ଆପଣଙ୍କର ଏରୂପ ରକ୍ଷକ କିଏ ହେବ ଯେ, ତାହାପ୍ରତି ବିଶ୍ୱାସକରି ଆମ୍ଭେ ଅର୍ଜୁନଙ୍କ ସମୀପକୁ ଗମନ କରିବୁଁ ? ଆମ୍ଭେ ଆପଣଙ୍କୁ ସତ୍ୟକଥା କହୁଅଛୁଁ ଯେ, ଏହି ମହାସମରରେ ଆପଣଙ୍କୁ କାହାରି ନିକଟରେ ଅର୍ପଣ ନ କରି ଆମ୍ଭେ କେଉଁଠାକୁ ଗମନ କରି ପାରିବୁଁ ନାହିଁ । ହେ ବୁଦ୍ଧିମତ୍‌ଶ୍ରେଷ୍ଠ ! ଆପଣ ଏହି ବିଷୟ ବୁଦ୍ଧିଦ୍ୱାରା ବିସ୍ତରପୂର୍ବକ ଯାହା ଶ୍ରେୟ, ତାହାଦେଖି ମୋତେ ଆଜ୍ଞା ଦିଅ । ୩୯ ।

ଯୁଧିଷ୍ଠିର କହିଲେ—ହେ ମଧୁକୁଳସମ୍ଭୂତ ! ମହାବାହୋ ! ତୁମ୍ଭେ ଯାହା କହିଲ ତାହା ଯଥାର୍ଥ, କିନ୍ତୁ ଅର୍ଜ୍ଜୁନଙ୍କ ବିଷୟରେ ଆମ୍ଭର ଚିତ୍ତ ଶୁଦ୍ଧ ହେଉନାହିଁ । ୪୦ । ଅତଏବ ଆମ୍ଭେ ଆତ୍ମରକ୍ଷାପାଇଁ ପରମ ଯତ୍ନ କରିବୁଁ । ତୁମ୍ଭେ ଆମ୍ଭ ଅନୁଜ୍ଞା ଅନୁସାରେ ଧନଞ୍ଜୟଙ୍କ ନିକଟକୁ ଗମନ କର । ୪୧ । ଆମ୍ଭଙ୍କୁ ରକ୍ଷାକରିବା ଓ ଅର୍ଜ୍ଜୁନଙ୍କ ନିକଟକୁ ଗମନକରିବା ଏହି ଦୁଇ କାର୍ଯ୍ୟମଧ୍ୟରେ ଆମ୍ଭେ ବୁଦ୍ଧିଦ୍ୱାରା ସ୍ଥିର କଲୁଁ ଯେ, ତୁମ୍ଭର ଅର୍ଜ୍ଜୁନ ସମୀପକୁ ଗମନକରିବା ହିଁ ଆମ୍ଭର ଅଭିପ୍ରେତ । ୪୩ । ଅତଏବ ଧନଞ୍ଜୟ ଯେଉଁସ୍ଥାନରେ ଅଛନ୍ତି ସେହିସ୍ଥାନକୁ ଗମନକରିବାନିମିତ୍ତ ତୁମ୍ଭେ ସଯତ୍ନ ହୁଅ ।

ମହାବଳ ଭୀମସେନ ସହୋଦରମାନଙ୍କ ସହିତ ଧୃଷ୍ଟଦ୍ୟୁମ୍ନ, ଦ୍ରୌପଦୀପୁତ୍ରଗଣ ଓ ଅନ୍ୟାନ୍ୟ ପାର୍ଥିବଗଣ ଆମ୍ଭଙ୍କୁ ରକ୍ଷା କରିବେ, ସନ୍ଦେହ ନାହିଁ । ୪୦ । କେକୟରାଜ, ପଞ୍ଚଭ୍ରାତା, ରାକ୍ଷସ ଘଟୋତ୍କଚ, ବିରାଟ, ଦ୍ରୁପଦ, ମହାରଥୀ ଶିଖଣ୍ଡୀ, ବଳବାନ୍ ଧୃଷ୍ଟକେତୁ, କୁନ୍ତିଭୋଜ, ନକୁଳ, ସହଦେବ, ପାଞ୍ଚାଳ ଓ ସୃଞ୍ଜୟଗଣ—ଏମାନେ ସମସ୍ତେ ମିଳିତ ହୋଇ ଆମ୍ଭଙ୍କୁ ରକ୍ଷା କରିବେ, ଏଥିରେ ସନ୍ଦେହ ନାହିଁ । ସୈନ୍ୟସହ ଦ୍ରୋଣ ବା କୃତବର୍ମ୍ମା ଯେ ସହସା ଆମ୍ଭ ନିକଟରେ ପ୍ରାପ୍ତ ହେବେ ବା ଆମ୍ଭର ପ୍ରଧର୍ଷଣ କରିପାରିବେ, ଏହା ହେବ ନାହିଁ ।

ଯେପରି ବେଳାଭୂମି ସମୁଦ୍ରକୁ ରୁଦ୍ଧ କରେ ସେହିପରି ଧୃଷ୍ଟଦ୍ୟୁମ୍ନ ବିକ୍ରମପ୍ରକାଶପୂର୍ବକ କ୍ରୁଦ୍ଧ ଦ୍ରୋଣଙ୍କୁ ସମରରେ ଅବରୁଦ୍ଧ କରିବେ । ସଂଗ୍ରାମରେ ଯେଉଁସ୍ଥାନରେ ପରବୀରହନ୍ତା ଧୃଷ୍ଟଦ୍ୟୁମ୍ନ ଅବସ୍ଥାନ କରିବେ ସେସ୍ଥାନରେ ବଳବାନ୍ ଦ୍ରୋଣସୈନ୍ୟ କୌଣସି ପ୍ରକାର ଆକ୍ରମଣ କରି-ପାରିବେ ନାହିଁ । ଏହି ଧୃଷ୍ଟଦ୍ୟୁମ୍ନ ଦ୍ରୋଣଙ୍କ ସଂହାରନିମିତ୍ତ ହୁତାଶନରୁ ଖଡ୍ଗ, ଚର୍ମ ଓ ଧନୁର୍ବାଣସହିତ ଅଳଂକୃତ ଓ କବଚୀ ହୋଇ ସମୁତ୍ପନ୍ନ ହୋଇଅଛନ୍ତି । ଅତଏବ ତୁମ୍ଭେ ଆମ୍ଭ ନିମିତ୍ତ ଶଙ୍କା କର ନାହିଁ । ଅସନ୍ଦିଗ୍ଧଚିତ୍ତରେ ଗମନ କର । ଧୃଷ୍ଟଦ୍ୟୁମ୍ନ ରଣରେ କ୍ରୁଦ୍ଧ ଦ୍ରୋଣଙ୍କୁ ନିବାରଣ କରିବେ । ୫୧ ।

# ୧୧୨ ଅଧ୍ୟାୟ

ସଞ୍ଜୟ କହିଲେ—ହେ ମହୀପାଳ ! ପୁରୁଷଶ୍ରେଷ୍ଠ ରଣଦୁର୍ମଦ ଶିନିପ୍ରବର ସାତ୍ୟକି ଧର୍ମରାଜଙ୍କର ସେହି ବାକ୍ୟ ଶ୍ରବଣ କରି ତାହାଙ୍କୁ ପରିତ୍ୟାଗ ପୂର୍ବକ ଗମନ କଲେ । ଅର୍ଜ୍ଜୁନଙ୍କ ନିକଟରେ ଅପରାଧୀ ହେବାର ଆଶଙ୍କାକରି ମଧ୍ଯ "ଆମ୍ଭେ ଅର୍ଜ୍ଜୁନଙ୍କ ନିକଟକୁ ଗମନ କଲେ ଲୋକେ ଆମ୍ଭଙ୍କୁ ଭୀରୁବୋଲି କହି ଅପବାଦ ଦେବେ" ଏହିପରି ବହୁଧା ଚିନ୍ତାକରି ଧର୍ମରାଜଙ୍କୁ ଏହି କଥା କହିଲେ । ୩ । ହେ ନରନାଥ ! ଆପଣ ଯଦି ଆପଣାକୁ ରକ୍ଷା କରିବେ ଏପରି ନିଶ୍ଚୟ କରିଥାନ୍ତୁ, ତାହାହେଲେ ଆପଣଙ୍କର ସ୍ୱସ୍ତି ହେଉ । ଆମ୍ଭେ ଆପଣଙ୍କ ଆଜ୍ଞାନୁସାରେ ଧନଞ୍ଜୟଙ୍କ ନିକଟକୁ ଗମନ କରୁଁ । ୪ ।

ଆମ୍ଭେ ଆପଣଙ୍କ ନିକଟରେ ସତ୍ୟ କହୁଅଛୁ ଯେ, ତ୍ରିଭୁବନ-ମଧ୍ୟରେ ଅର୍ଜ୍ଜୁନଙ୍କ ଅପେକ୍ଷା ଆମ୍ଭର ପ୍ରିୟତମ ଅପର କେହି ନାହିଁ । ପୁଣି ଆମ୍ଭେ ଆପଣଙ୍କ ଆଦେଶ କ୍ରମରେ ତାହାଙ୍କ ପଦବୀକୁ ଗମନ କରିବୁଁ ଏଥିରେ ଆଉ କଥା କ'ଣ ଅଛି ? ଆପଣଙ୍କ ନିମନ୍ତେ ଆମ୍ଭର କୌଣସି କର୍ମ କୌଣସି ପ୍ରକାରର ଅକର୍ତ୍ତବ୍ୟ ନାହିଁ । ୭ । ଗୁରୁଙ୍କର ବାକ୍ୟ ଆମ୍ଭର ଯେପରି ମାନନୀୟ ଆପଣଙ୍କ ବାକ୍ୟ ତଦପେକ୍ଷା ମାନ୍ୟତର ଅଟେ । ଆପଣଙ୍କ ଦୁଇ ଭ୍ରାତା କୃଷ୍ଣାର୍ଜ୍ଜୁନ ଯେପରି ଆପଣଙ୍କର ପ୍ରିୟକାର୍ଯ୍ୟରେ ରତ, ଆପଣ ଆମ୍ଭଙ୍କୁ ମଧ୍ୟ ସେହିପରି ସେମାନଙ୍କ ପ୍ରିୟକାର୍ଯ୍ୟରେ ରତ ଜାଣିବେ । ୮ । ଆମ୍ଭେ ଆପଣଙ୍କର ଆଜ୍ଞାକୁ ଶିରୋଧାର୍ଯ୍ୟ କରି ଏହି ଦୁର୍ଭେଦ୍ୟ ସୈନ୍ୟମାନଙ୍କୁ ଭେଦପୂର୍ବକ ଅର୍ଜ୍ଜୁନଙ୍କ ନିମିତ୍ତ ଗମନ କରିବୁଁ । ହେ ମହାରାଜ ! ରାଜା ଜୟଦ୍ରଥ ଯେଉଁ ସ୍ଥାନରେ ଅବସ୍ଥାନ କରୁଅଛନ୍ତି କ୍ରୁଦ୍ଧ ମତ୍ସ୍ୟ ଅଗାଧ ଜଳଧିଜଳ ଭେଦକରି ଗମନକଲାପ୍ରାୟ ଆମ୍ଭେ ଦ୍ରୋଣ ସୈନ୍ୟମାନଙ୍କୁ ଭେଦକରି ତନ୍ମଧ୍ୟରେ ପ୍ରବେଶପୂର୍ବକ ସେହି ସ୍ଥାନକୁ ଗମନ କରିବୁଁ । ୧୦ । ଧନଞ୍ଜୟଙ୍କ ଭୟରେ ଭୀତ ରାଜା ଜୟଦ୍ରଥ, ସୈନ୍ୟମାନଙ୍କୁ ଅବଲମ୍ବନପୂର୍ବକ ଅଶ୍ୱତ୍ଥାମା କର୍ଣ୍ଣ ଓ କୃପପ୍ରଭୃତି ମହାରଥୀ-ମାନଙ୍କକର୍ତ୍ତୃକ ରକ୍ଷିତ ହୋଇ ଯେଉଁ ସ୍ଥାନରେ ଅବସ୍ଥାନ କରୁଅଛି, ଆମ୍ଭେ

ଅନୁମାନ କରୁଁ ଯେ, ସେହିସ୍ଥାନ ଏଠାରୁ ତିନିଯୋଜନ ହେବ । ସେହି ସ୍ଥାନରେ ଜୟଦ୍ରଥ ବଧନିମିତ୍ତ ସମୁଦ୍ୟତ ହୋଇ ପାର୍ଥ ଅବସ୍ଥାନ କରୁ-ଅଛନ୍ତି । ୧୨ ।

ଆମ୍ଭେ ଅତି ଦୃଢ଼ ଅଧ୍ୟବସାୟସମ୍ପନ୍ନ ଓ ଦୃଢ଼ ଅନ୍ତଃକରଣରେ କହୁଅଛୁଁ ଯେ, ଧନଞ୍ଜୟ ଯୋଜନଷଟ୍ ଦୂରବର୍ତ୍ତୀ ହେଲେହେଁ ଆମ୍ଭେ ତାହାଙ୍କ ନିକଟକୁ ଗମନକରି ସିନ୍ଧୁରାଜ ବଧପର୍ଯ୍ୟନ୍ତ ଅପେକ୍ଷା କରିବୁଁ । ୧୩ । କେଉଁ ମାନବ ଗୁରୁଙ୍କ ଆଜ୍ଞା ପ୍ରାପ୍ତ ନ ହୋଇ ଯୁଦ୍ଧ କରେ ଓ ଆମ୍ଭସଦୃଶ କେଉଁ ମାନବ ଅବା ଆପଣଙ୍କ ଆଜ୍ଞା ପ୍ରାପ୍ତହୋଇ ଯୁଦ୍ଧ ନ କରିବ ? ୧୪ । ଆମ୍ଭଙ୍କୁ ଯେଉଁଠାକୁ ଯିବାକୁ ହେବ ସେହିସ୍ଥାନକୁ ଆମ୍ଭେ ବିଶେଷରୂପେ ଅବଗତ ଅଛୁଁ । ଆଜି ଆମ୍ଭେ ହଳ, ଶକ୍ତି, ଗଦା, ପ୍ରାସ, ଖଡ୍ଗ, ଚର୍ମ, ଋଷ୍ଟି, ତୋମର, ଶର ଇତ୍ୟାଦି ଅସ୍ତ୍ରମଧ୍ୟରେ ସମ୍ପନ୍ନ ତ ସୈନ୍ୟସାଗର ବିକ୍ଷୋଭିତ କରିବୁଁ ।

ହେ ମହାରାଜ ! ଏହି ଯେଉଁ ସହସ୍ର ଗଜସୈନ୍ୟ ଦେଖୁଅଛନ୍ତି, ଅଞ୍ଜନନାମକ ବନହସ୍ତୀବଂଶରେ ଏମାନେ ଜାତ । ଏମାନେ ପ୍ରହାରପଟୁ ଓ ଯୁଦ୍ଧଶୌଣ୍ଡ ; ବହୁ ମ୍ଳେଚ୍ଛଗଣ ଏମାନଙ୍କ ଉପରେ ଆରୁଢ଼ ହୋଇ ଅଛନ୍ତି । ଏହି ସମସ୍ତ ବୀର୍ଯ୍ୟଶାଳୀ ମେଘପ୍ରକାଶ ହସ୍ତିମାନେ ଜଳବର୍ଷଣକାରୀ ମେଘ-ସଦୃଶ ମଦସ୍ରାବ କରୁଅଛନ୍ତି । ଏମାନେ ହସ୍ତି ଯୋଦ୍ଧାମାନଙ୍କଦ୍ୱାରା ଚାଳିତ ହେଲେ କଦାପି ନିବୃତ୍ତ ହୁଅନ୍ତି ନାହିଁ । ୧୮ । ସୁତରାଂ ଏମାନଙ୍କୁ ବଧ ନ କଲେ ଏମାନେ କେବେ ପରାଜିତ ହେବେ ନାହିଁ । ଚତୁର୍ଦ୍ଦିଗରେ ଯେଉଁସବୁ ରଥୀମାନଙ୍କୁ ଦେଖୁଅଛନ୍ତି, ସେମାନେ ସମସ୍ତେ ରୁକ୍ମରଥ ନାମରେ ରାଜପୁତ୍ର ଅଟନ୍ତି । ଏମାନେ ମହାରଥୀ, ଧନୁର୍ବେଦପାରଦର୍ଶୀ, ରଥ, ଅଶ୍ୱ, ହସ୍ତୀ, ବାହୁ ଓ ମୁଷ୍ଟିଯୁଦ୍ଧରେ ନିପୁଣ ଓ ଗଦାଯୁଦ୍ଧରେ ଖଡ୍ଗପ୍ରହାରରେ ଓ ଅସିଚର୍ମ୍ମସଂପାତରେ ବିଶେଷରୂପେ ଅଭିଜ୍ଞ । ଏହି ସମସ୍ତ କୃତବିଦ୍ୟ ବୀରମାନେ ସମରରେ ପରସ୍ପର ସ୍ପର୍ଦ୍ଧା ଓ ମନୁଷ୍ୟମାନଙ୍କପ୍ରତି ସର୍ବଦା ଜିଗୀଷା କରିଥାନ୍ତି । କର୍ଣ୍ଣ ଏମାନଙ୍କୁ ନିୟୋଜିତ କରିଅଛନ୍ତି । ଏମାନେ ପୁଣି ଦୁଃଶାସନଙ୍କ ଅନୁଗତ । ୨୩ । କୃଷ୍ଣ ଏମାନଙ୍କୁ ମହାରଥୀ ବୋଲି ପ୍ରଶଂସା କରିଥାନ୍ତି । ଏମାନେ ସମସ୍ତେ କର୍ଣ୍ଣଙ୍କ ବଶାନୁଗ ହୋଇ ତାହାଙ୍କର

ପ୍ରିୟକାର୍ଯ୍ୟକୁ ଅଭିଳାଷ କରିଥାନ୍ତି । ୨୪ । ତାହାଙ୍କ ବାକ୍ୟାନୁସାରେ ସେମାନେ ଶ୍ୱେତବାହନ ଅର୍ଜ୍ଜୁନଙ୍କଠାରୁ ନିବୃତ୍ତ ହୋଇଅଛନ୍ତି । ସେମାନଙ୍କର ବର୍ମ ଓ କାର୍ମୁକ ଦୃଢ଼ । ସେମାନେ ଯୁଦ୍ଧରେ କ୍ଷତବିଶ୍ରାନ୍ତ ହୁଅନ୍ତି ନାହିଁ । ୨୫ । ସେମାନେ ଦୁର୍ଯ୍ୟୋଧନଙ୍କ ଆଦେଶାନୁସାରେ ନିଷ୍ଟପୂ ଆମ୍ଭନିମିତ୍ତ ଯୁଦ୍ଧରେ ଅବସ୍ଥିତି କରୁଅଛନ୍ତି କିନ୍ତୁ ଆମ୍ଭେ ଆପଣଙ୍କ ପ୍ରିୟକାର୍ଯ୍ୟ ନିମିତ୍ତ ସେମାନଙ୍କୁ ପ୍ରମଥିତ କରି ଅର୍ଜ୍ଜୁନଙ୍କ ପଦବୀକୁ ଗମନ କରିବୁଁ ।

ହେ ମହାରାଜ ! ତଦ୍ଭିନ୍ନ ଏହି ଯେଉଁ ବର୍ମସମାବୃତ ସପ୍ତଶତ ହସ୍ତୀଙ୍କୁ ଅବଲୋକନ କରୁଅଛନ୍ତି, ଯହିଁରେ କିରାତମାନେ ସମାରୂଢ଼ ହୋଇଅଛନ୍ତି, ପୂର୍ବେ କିରାତରାଜ ଅର୍ଜ୍ଜୁନଙ୍କକର୍ତ୍ତୃକ ପରାଜିତ ହୋଇ ଆତ୍ମଜୀବନରକ୍ଷାର୍ଥ ସେମାନଙ୍କୁ ଅଳଂକୃତକରି ଭୃତ୍ୟସ୍ୱରୂପ ଅର୍ଜ୍ଜୁନଙ୍କୁ ପ୍ରଦାନ କରିଥିଲେ । ସେମାନେ ପୂର୍ବେ ଆପଣଙ୍କ ଆଜ୍ଞାକାରୀ କିଙ୍କର ଥିଲେ । ୨୯ । ଦେଖନ୍ତୁ କାଳର କି ବିପର୍ଯ୍ୟୟ ! ବର୍ତ୍ତମାନ ସେମାନେ ଆପଣଙ୍କ ପ୍ରତିପକ୍ଷରେ ଯୁଦ୍ଧକରିବାକୁ ଇଚ୍ଛା କରୁଅଛନ୍ତି । ସେମାନଙ୍କ ମଧ୍ୟରେ ପ୍ରଧାନ ପ୍ରଧାନ କିରାତମାନେ ଅସ୍ତ୍ରଶିକ୍ଷାରେ ଅଭିଜ୍ଞ ଓ ଯୁଦ୍ଧଦୁର୍ମଦ । ସେମାନେସମସ୍ତେ ମ୍ଳେଚ୍ଛ, ସେମାନେ ପୂର୍ବେ ସବ୍ୟସାଚୀଙ୍କକର୍ତ୍ତୃକ ସମରରେ ପରାଜିତ ହୋଇଥିଲେ । ବର୍ତ୍ତମାନ ଦୁରାତ୍ମା ଦୁର୍ଯ୍ୟୋଧନର ବଶବର୍ତ୍ତୀ ହୋଇ ଆମ୍ଭନିମିତ୍ତ ଯୁଦ୍ଧରେ ଯତ୍ନବାନ୍ ହୋଇଅଛନ୍ତି । ସେହିସମସ୍ତ ଯୁଦ୍ଧଦୁର୍ମଦ କିରାତମାନଙ୍କୁ ଶରସମୂହଦ୍ୱାରା ନିହତ କରି ଆମ୍ଭେ ଜୟଦ୍ରଥ ବଧୈଷୀ ଅର୍ଜ୍ଜୁନଙ୍କର ଅନୁବର୍ତ୍ତୀ ହେବୁଁ । ଏହି ଯେ ଗଳିତମଦ ମହାମାତଙ୍ଗସମସ୍ତ ସୁବର୍ଣ୍ଣପ୍ରଭ ବର୍ମଦ୍ୱାରା ବିଭୂଷିତ ଅବଲୋକନ କରୁଅଛନ୍ତି, ସେହିସମସ୍ତ ନାଗ ଅଞ୍ଜନକୁଳୋଦ୍ଭବ କର୍କଶସ୍ୱଭାବ, ଶିକ୍ଷିତ ଓ ଲବ୍ଧଲକ୍ଷ୍ୟ । ସେମାନେ ଯୁଦ୍ଧରେ ଐରାବତତୁଲ୍ୟ କାର୍ଯ୍ୟ କରିଥାନ୍ତି । କୃଷ୍ଣଲୋହିତ ବର୍ମଦ୍ୱାରାସମୃତ, ଉଗ୍ରସ୍ୱଭାବ, ନିର୍ଦ୍ଦୟ, ଯୋଧପ୍ରବର ଦସ୍ୟୁଗଣ ସେମାନଙ୍କ ଉପରେ ସମାରୂଢ଼ ହୋଇ ଉତ୍ତର ପର୍ବତରୁ ସମାଗତ ହୋଇଅଛନ୍ତି । ସେମାନଙ୍କ ମଧ୍ୟରୁ ଅନେକ ଗୋ-ଯୋନିସମ୍ଭୂତ, ମାନବଯୋନିସମ୍ଭୂତ, ମାନୁଷଯୋନିସମ୍ଭୂତ ଓ ଅନ୍ୟ ଯୋନିସମ୍ଭୂତ ଅଛନ୍ତି । ହିମାଳୟ ପ୍ରଦେଶର ଦୁର୍ଗମସ୍ଥାନବାସୀ ପାପାତ୍ମା ମ୍ଳେଚ୍ଛମାନଙ୍କ ସହିତ ସମବେତ ଥିବାରୁ ସୈନ୍ୟମାନେ ଧୂମ୍ରବର୍ଣ୍ଣ ବୋଧ ହେଉଅଛନ୍ତି । ଦୁର୍ଯ୍ୟୋଧନ ସେହିସମସ୍ତ ଗଜମଣ୍ଡଳ ଓ ରଥିପ୍ରବର କୃପ,

ସୋମଦତ୍ତ ପୁତ୍ର, ଦ୍ରୋଣପୁତ୍ର, ସିନ୍ଧୁରାଜ ଜୟଦ୍ରଥ ଓ କର୍ଣ୍ଣଙ୍କୁ ପ୍ରାପ୍ତହୋଇ ପାଣ୍ଡବମାନଙ୍କୁ ଅବମାନନା କରୁଅଛୁ । କାଳପ୍ରାପ୍ତ ହୋଇ ନିଜକୁ କୃତାର୍ଥ ବୋଲି ମନେ କରୁଅଛୁ । କିନ୍ତୁ ସେମାନେ ସମସ୍ତେ ଅଦ୍ୟ ଆମ୍ଭର ନାରାଚ ମୁଖରେ ସମାଗତ ହେଲେ ମନତୁଲ୍ୟ ବେଗଗାମୀ ହେଲେହେଁ ବିମୁକ୍ତହୋଇ ପାରିବେ ନାହିଁ । ପରଶ୍ରୀପରାୟଣ ଦୁର୍ଯ୍ୟୋଧନ ସତତ ସେମାନଙ୍କୁ ସମ୍ମାନ କରିଥାଏ । କିନ୍ତୁ ଅଦ୍ୟ ସେମାନେ ମଦୀୟ ଶରସମୂହରେ ନିପତିତ ହୋଇ ପ୍ରାଣତ୍ୟାଗ କରିବେ ।

ହେ ମହାରାଜ ! ଏହି ଯେ କାଞ୍ଚନଧ୍ୱଜଶୋଭିତ ରଥମାନେ ଦୃଷ୍ଟିଗୋଚର ହେଉଅଛନ୍ତି, ସେମାନଙ୍କ ବିଷୟ ଆପଣ ଶୁଣିଥିବେ । ସେମାନେ କାମ୍ବୋଜଦେଶୀୟ ଦୁର୍ବାରଣନାମରେ ଶର, କୃତବିଦ୍ୟ ଓ ଧନୁର୍ବେଦରେ ପାରଦର୍ଶୀ ଅଟନ୍ତି । ୪୩ । ପରସ୍ପର ଅତିଶୟ ହିତୈଷୀ ହୋଇ ସମବେତ ହୋଇଅଛନ୍ତି । ଦୁର୍ଯ୍ୟୋଧନଙ୍କର ଏହି ବହୁ ଅକ୍ଷୌହିଣୀ ସେନା କୁରୁବୀରଗଣଙ୍କ କର୍ତ୍ତୃକ ରକ୍ଷିତ । ସେମାନେ ସନ୍ନଦ୍ଧ ଓ ସଯତ୍ନ ହୋଇ ଆମ୍ଭନିମିତ୍ତ ସାବଧାନପୂର୍ବକ ସମୁଦ୍ୟତ ଅଛନ୍ତି, ପରନ୍ତୁ ଯେପରି ହୁତାଶନ ତୃଣରାଶିକୁ ଦହନ କରେ ତଦ୍ରୂପ ଆମ୍ଭେ ସେମାନଙ୍କୁ ପ୍ରମଥିତ କରିବୁଁ । ଅତଏବ ହେ ମହାରାଜ ! ରଥସଜ୍ଜାକାରୀଗଣ ଆମ୍ଭ ରଥରେ ତୂଣୀର ଓ ଉପକରଣମାନ ଉଚିତମତେ ନିହିତ କରନ୍ତୁ । ଏହି ସଂଗ୍ରାମରେ ନାନାବିଧ ଆୟୁଧ ଗ୍ରହଣ କରିବା ବିଧେୟ । ୪୬ । ଆଚାର୍ଯ୍ୟ ରଥସଜ୍ଜା ବିଷୟରେ ଯେପରି ଉପଦେଶ ପ୍ରଦାନ କରିଅଛନ୍ତି ତଦପେକ୍ଷା ପଞ୍ଚଗୁଣ ଅଧିକ ରଥ ସଜ୍ଜିତ କରିବା ଆବଶ୍ୟକ । ଆମ୍ଭଙ୍କୁ ନାନା ଶସ୍ତ୍ରସମବେତ ବିବିଧାସ୍ତ୍ର ଯୋଦ୍ଧା, କ୍ରୁଦ୍ଧ ଆଶୀବିଷତୁଲ୍ୟ କାମ୍ବୋଜମାନଙ୍କ ସହିତ ସମରରେ ସମବେତ ହେବାକୁ ହେବ । ରାଜା ଦୁର୍ଯ୍ୟୋଧନଙ୍କର ନିରନ୍ତରପାଳିତ, ହିତୈଷୀ, ପ୍ରହାରପଟୁ, ବିଷକଳ୍ପ କିରାତମାନଙ୍କ ସହିତ ସମରରେ ସମାଗତ ହେବାକୁ ହେବ । ଇନ୍ଦ୍ରତୁଲ୍ୟ ପରାକ୍ରମଶୀଳ, ପ୍ରଦୀପ୍ତ ଅନଳତୁଲ୍ୟ ଅଗ୍ନିକଳ୍ପ ଦୁର୍ଦ୍ଧର୍ଷଣୀୟ ଶକଦେଶୀୟ ଓ ଅନ୍ୟାନ୍ୟ କାଳକଳ୍ପ ଦୁରାସଦ ଭୟଙ୍କର ନାନାବିଧ ଯୁଦ୍ଧଦୁର୍ମଦ ଯୋଦ୍ଧାମାନଙ୍କ ସହିତ ସମରରେ ସମବେତ ହେବାକୁ ହେବ । ଅତଏବ ସାରଥୀ ଆମ୍ଭର ଶୁଭଲକ୍ଷଣ, ଶ୍ରେଷ୍ଠ ଅଶ୍ୱମାନଙ୍କୁ ରଥରୁ

ବିମୁକ୍ତ କରି ଜଳପାନ ଓ ଭୂମିରେ ବାରମ୍ବାର ଲୁଣ୍ଠିତ କରାଇ, ତାହାଁରେ ଶ୍ରାନ୍ତି ଦୂର ହେଲେ ପୁନର୍ବାର ସେମାନଙ୍କୁ ରଥରେ ଯୋଜିତ କର । 

ସଞ୍ଜୟ କହିଲେ—ତଦନନ୍ତର ରାଜା ତାହାଙ୍କ ରଥରେ ତୂଣୀର ଓ ସମସ୍ତ ଉପକରଣ ଓ ନାନାବିଧ ଶସ୍ତ୍ରସମୂହ ସଂସ୍ଥାପିତ କରାଇ ଦେଲେ । ଭୃତ୍ୟମାନେ ତାହାଙ୍କର ଚାରି ଅଶ୍ୱଙ୍କୁ ରଥରୁ ବିମୁକ୍ତ କରି ସେମାନଙ୍କୁ ସରସ ମଦ୍ୟପାନ କରାଇଲେ । ସେମାନଙ୍କ ଦେହରୁ ଶଲ୍ୟାପନୟନ କରି ଯଥାନିୟମରେ ଶ୍ରାନ୍ତି ନିବାରଣନିମିତ୍ତ ସେମାନଙ୍କୁ ବାରମ୍ବାର ଲୁଣ୍ଠିତ କରାଇ ସ୍ନାନ, ପାନ, ଭୋଜନ କରାଇଲେ ଓ ସେମାନଙ୍କୁ ଅଳଂକୃତ କଲେ । ଅନନ୍ତର ସେହିସମସ୍ତ ରଜତବର୍ଣ୍ଣ, ସୁଶିକ୍ଷିତ ଶୀଘ୍ରଗାମୀ ଅଶ୍ୱ ହୃଷ୍ଟ ଓ ବ୍ୟଗ୍ରଚିତ୍ତ ହେଲାରୁ ସେମାନଙ୍କୁ ହେମଭାଣ୍ଡରେ ଭୂଷିତ କରି ବହୁଶସ୍ତ୍ର ଓ ପରିଚ୍ଛଦସମ୍ପନ୍ନ, ସମ୍ମୁଚ୍ଛ୍ରିତ ହେମଦଣ୍ଡାନ୍ୱିତ ନୃଶୋଭିତ, ମଣିବଦ୍ରୁମଚିତ୍ରିତ, ହେମନିର୍ମିତ କ୍ଷୁଦ୍ର କ୍ଷୁଦ୍ର ଧ୍ୱଜ ଓ ହେମକେଶର, ମାଲ୍ୟଭୂଷିତ, ମହାସିଂହଧ୍ୱଜରେଖାଯୁକ୍ତ, ପାଣ୍ଡୁରମେଘସମବର୍ଣ୍ଣ ପତାକାସମୂହରେ ସମଳଂକୃତ ରଥରେ ଯଥାବିଧି ଯୋଜନା କଲେ । ୫୯ । ତଦନନ୍ତର ସାତ୍ୟକଙ୍କର ପ୍ରିୟସଖା ଦାରୁକର କନିଷ୍ଠଭ୍ରାତା ସାରଥୀ, ଇନ୍ଦ୍ରଙ୍କସାରଥୀ ମାତଳିଙ୍କତୁଲ୍ୟ ରଥ ପ୍ରସ୍ତୁତ ହୋଇଅଛି ବୋଲି ସାତ୍ୟକଙ୍କ ନିକଟରେ ନିବେଦନ କଲା । ୬୦ । 

ଅନନ୍ତର ଶ୍ରୀମାନ୍‌ଗଣଙ୍କ ମଧ୍ୟରେ ଅଗ୍ରଗଣ୍ୟ ମାନ୍ୟପ୍ରବର ସାତ୍ୟକ ସ୍ନାନକରି ଶୁଚି ହେଲେ ଓ ଦୂର୍ବାକ୍ଷତାଦି ଧାରଣପୂର୍ବକ ସହସ୍ର ସ୍ନାତକ ବ୍ରାହ୍ମଣମାନଙ୍କୁ ସ୍ୱର୍ଣ୍ଣନିଷ୍କ ପ୍ରଦାନ କଲେ । ତତ୍ପରେ ସେ କୀରାତଦେଶୀୟ ମଧୁ ପାନକରି ମଦବିହ୍ୱଳ ଓ ଲୋହିତ ଲୋଚନରେ ଦ୍ୱିଗୁଣ ତେଜସ୍ୱୀ ଓ ଅନଳସଦୃଶ ହୋଇ ପ୍ରୀତିପ୍ରାପ୍ତ ହେଲେ । ମହାହର୍ଷାନ୍ୱିତ ହୋଇ ମଙ୍ଗଳକର ଦର୍ପଣବିଶେଷକୁ ସ୍ପର୍ଶ କଲେ । ବିପ୍ରମାନେ ତାହାଙ୍କର ସ୍ୱସ୍ତିବାଚନ କଲେ । କନ୍ୟାଗଣ ଲାଜା, ଗନ୍ଧ ଓ ମାଲ୍ୟ ଦ୍ୱାରା ତାହାଙ୍କୁ ଆନନ୍ଦିତ କଲେ । ସେ କବଚୀ ଓ ସମଳଂକୃତ ହୋଇ ଯୁଧିଷ୍ଠିରଙ୍କ ଚରଣଦ୍ୱୟରେ ପ୍ରଣତ ହେଲେ । ଯୁଧିଷ୍ଠିର ତାହାଙ୍କ ମସ୍ତକ ଆଘ୍ରାଣ କଲାରୁ ସେ ମହାରଥରେ ଆରୋହଣ କଲେ । ୬୧ । 

ତଦନନ୍ତର ପବନସଦୃଶ ବେଗଶୀଳ ଅଜେୟ ସିନ୍ଧୁଦେଶୀୟ ହୃଷ୍ଟପୁଷ୍ଟ ସେହି ଅଶ୍ୱମାନେ ଯଥାଭିଳଷିତ ଶବ୍ଦ କରି ସେହି ଜୟଶୀଳ ରଥକୁ ବହନ କଲେ । ୬୭ । ଭୀମସେନ ମଧ୍ୟ ଧର୍ମରାଜଙ୍କକର୍ତ୍ତୃକ ସମାଦୃତ ହୋଇ ତାହାଙ୍କୁ ଅଭିବାଦନପୂର୍ବକ ସାତ୍ୟକିଙ୍କ ସହିତ ଗମନ କଲେ । ୬୮ । ଦ୍ରୋଣ ପ୍ରଭୃତି ଆପଣଙ୍କ ସମୁଦାୟ ସୈନ୍ୟମାନେ ଅରିନ୍ଦମ ସାତ୍ୟକି ଓ ଭୀମସେନଙ୍କୁ ଆପଣଙ୍କ ସୈନ୍ୟମଧ୍ୟରେ ପ୍ରବେଶ କରିବାକୁ ଇଚ୍ଛୁକ ଦେଖି ସତର୍କ ହୋଇ ଅବସ୍ଥାନ କଲେ । ୬୯ । ପରନ୍ତୁ ମହାବୀର ସାତ୍ୟକି ଭୀମସେନଙ୍କୁ କବଚୀ ହୋଇ ଅନୁସରଣ କରିବାର ଅବଲୋକନ କରି ତାହାଙ୍କୁ ଅଭିନନ୍ଦନପୂର୍ବକ ହର୍ଷଜନକ ଏହିକଥା କହିଲେ । ୭୦ । ହେ ଭୀମସେନ ! ବର୍ତ୍ତମାନ ରାଜାଙ୍କୁ ରକ୍ଷାକରିବା ତୁମ୍ଭର ସର୍ବାପେକ୍ଷା ପ୍ରଧାନ କାର୍ଯ୍ୟ । ଅତଏବ ତୁମ୍ଭେ ରାଜାଙ୍କୁ ରକ୍ଷାକର । ଆମ୍ଭେ ଏହିସମସ୍ତ କାଳପକ୍ୱସୈନ୍ୟମାନଙ୍କୁ ଭେଦକରି ପ୍ରବେଶ କରିବୁଁ । ୭୧ । ରାଜାଙ୍କୁ ରକ୍ଷାକରିବା ଭବିଷ୍ୟତ ଓ ବର୍ତ୍ତମାନ ଏହି ଉଭୟ କାଳରେ ଶ୍ରେୟସ୍କର । ଅତଏବ ଯଦି ତୁମ୍ଭେ ଆମ୍ଭର ପ୍ରିୟକାର୍ଯ୍ୟ କରିବାକୁ ଇଚ୍ଛା କର, ତେବେ ନିବୃତ୍ତ ହୁଅ । ଆମ୍ଭର ବଳବୀର୍ଯ୍ୟ ତୁମ୍ଭେ ବିଶେଷରୂପେ ଅବଗତ ଅଛ । ଆମ୍ଭେ ମଧ୍ୟ ତୁମ୍ଭର ବଳବିକ୍ରମ ବିଶେଷରୂପେ ଅବଗତ ଅଛୁଁ । ଭୀମସେନ ଉକ୍ତ ବାକ୍ୟରେ ସମ୍ମତ ହୋଇ ସାତ୍ୟକିଙ୍କୁ ଏହିପରି କହିଲେ । ହେ ପୁରୁଷସତ୍ତମ ! ତୁମ୍ଭେ କାର୍ଯ୍ୟସିଦ୍ଧି ନିମିତ୍ତ ଗମନ କର ; ଆମ୍ଭେ ରାଜାଙ୍କୁ ରକ୍ଷାକରିବୁଁ ।

ମଧୁକୁଳଶ୍ରେଷ୍ଠ ସାତ୍ୟକି ଭୀମଙ୍କକର୍ତ୍ତୃକ ଏହିରୂପେ ଅଭିହିତ ହୋଇ ପୁନର୍ବାର ଭୀମସେନଙ୍କୁ କହିଲେ । ହେ ପାର୍ଥ ! ତୁମ୍ଭେ ଶୀଘ୍ର ଗମନ କର । ଯେହେତୁ ତୁମ୍ଭେ ଆମ୍ଭର ପ୍ରୀତିଭାଜନ, ଅନୁରକ୍ତ ଓ ବଶବର୍ତ୍ତୀ ହେଲ, ଏହା ଗୋଟିଏ ଶୁଭ ନିମିତ୍ତ ଅଟେ । ଅନ୍ୟାନ୍ୟ ନିମିତ୍ତମାନ ମଧ୍ୟ ଆମ୍ଭ ନିକଟରେ ଯେପ୍ରକାର ପ୍ରକାଶିତ ହେଉଅଛି ତହିଁରୁ ଅଦ୍ୟ ଆମ୍ଭର ନିଶ୍ଚୟ ବିଜୟ ଲାଭ ହେବ । ପାପାତ୍ମା ସିନ୍ଧୁପତି ମହାତ୍ମା ପାଣ୍ଡୁନନ୍ଦନ କର୍ତ୍ତୃକ ନିହତ ହେଲେ ଆମ୍ଭେ ଆସି ଧର୍ମାତ୍ମା ରାଜାଙ୍କୁ ଆଲିଙ୍ଗନ କରିବୁଁ, ଏଥିରେ ସନ୍ଦେହ ନାହିଁ । ୭୨ । ମହାମନା ସାତ୍ୟକି ଭୀମସେନଙ୍କୁ ଏହିପରି କହି ତାହାଙ୍କୁ ପରିତ୍ୟାଗ କରି ବ୍ୟାଘ୍ର ମୃଗକୁ ଅବଲୋକନ କଲପ୍ରାୟ ଆପଣଙ୍କ ସୈନ୍ୟମାନଙ୍କୁ ଅବଲୋକନ କଲେ । ୭୩ । ଆପଣଙ୍କ ସେନ୍ୟମାନେ ତାହାଙ୍କୁ

ପ୍ରବେଶେଙ୍କୁ ଦେଖି ଧନଦାର ମୋହିତ ଓ କମ୍ପିତ ହେଲେ । ୭୯ ।
ତଦନନ୍ତର ଧର୍ମରାଜଙ୍କ ଆଦେଶାନୁସାରେ ଅର୍ଜ୍ଜୁନଦର୍ଶନେଚ୍ଛୁ ସାତ୍ୟକି ଆପଣଙ୍କ ସୈନ୍ୟମାନଙ୍କୁ ସହସା ଗମନ କଲେ । ୮୦ ।

---

# ୧୧୩ ଅଧ୍ୟାୟ

ସଞ୍ଜୟ କହିଲେ—ହେ ମହାରାଜ ! ଯୁଯୁଧାନ ଯୁଦ୍ଧମାନସରେ ଆପଣଙ୍କ ସୈନ୍ୟ ମଧ୍ୟକୁ ଗମନ କଲାରୁ ମହାରାଜ ଧର୍ମରାଜ ସ୍ୱକୀୟ ସୈନ୍ୟ-ବୃନ୍ଦରେ ସମାବୃତ ହୋଇ ଦ୍ରୋଣଙ୍କ ରଥ ସମୀପକୁ ଗମନ କରିବା ମାନସରେ ଯୁଯୁଧାନଙ୍କ ପଶ୍ଚାତ୍ ଗମନ କଲେ । ଅନନ୍ତର ସଂଗ୍ରାମଦୁର୍ମଦ ପାଞ୍ଚାଳ ରାଜପୁତ୍ର ଓ ରାଜା ବସୁଦାନ ପାଣ୍ଡବ ସୈନ୍ୟ ମଧ୍ୟରେ ଉଚ୍ଚୈଃ-ସ୍ୱରରେ କହିଲେ – ତୁମ୍ଭେମାନେ ଆଗମନ କର, ପ୍ରହାର କର, ଧାବମାନ ହୁଅ ! ତାହାହେଲେ ଯୁଦ୍ଧ-ଦୁର୍ମଦ ସାତ୍ୟକ ସୁଖରେ ଗମନ କରିପାରିବେ, ଯେହେତୁ ବହୁ ମହାରଥୀ ତାହାଙ୍କର ପରାଜୟରେ ଯତ୍ନ କରିବେ । ୪ । ପାଣ୍ଡବପକ୍ଷୀୟ ମହାରଥିମାନେ ଏହିପରି କହୁ କହୁ କୌରବ-ସୈନ୍ୟା-ଭିମୁଖକୁ ବେଗରେ ଧାବମାନ ହେଲେ । ଆମ୍ଭେମାନେ ମଧ୍ୟ ସେମାନଙ୍କ ପ୍ରତି ଜିଗୀଷାପରବଶ ହୋଇ ସେମାନଙ୍କ ଅଭିମୁଖକୁ ଧାବମାନ ହେଲୁଁ । ଏହି ସମୟରେ ସାତ୍ୟକଙ୍କ ରଥସମୀପରେ ମହାନ୍ ଶବ୍ଦ ହେଲା । ଆପଣଙ୍କ ପୁତ୍ରଙ୍କର ମହତୀ ସେନା ପ୍ରକୃଷ୍ଟରୂପେ କମ୍ପିତା ହୋଇ ସାତ୍ୟକଙ୍କ କର୍ତ୍ତୃକ ଶତଧା ବିଦୀର୍ଣ୍ଣ ହେଲା । ସେହି ସମସ୍ତ ସୈନ୍ୟ ବିଦାର୍ଯ୍ୟମାଣ ହୁଅନ୍ତେ ଶିନିପୌତ୍ର ମହାରଥୀ ସାତ୍ୟକ ଅଗ୍ନିକଳ୍ପ ଶରସମୂହ ଦ୍ୱାରା ବିପକ୍ଷ ସୈନ୍ୟମାନଙ୍କ ଅଗ୍ରଭାଗରେ ଅବସ୍ଥିତ ମହାଧନୁର୍ଦ୍ଧର ସାତ ଜଣ ବୀରଙ୍କୁ ସଂହାର କରି ଅନ୍ୟାନ୍ୟ ନାନା ଦେଶାଧିପତି ବୀରମାନଙ୍କୁ ଯମାଳୟକୁ ପ୍ରେରଣ କଲେ । ସେ ଗୋଟିଏ ଶରରେ ଶତ ମନୁଷ୍ୟଙ୍କୁ ଓ ଶତ ଶରରେ ଗୋଟିଏ ମନୁଷ୍ୟକୁ ବଧ କଲେ । ୯ । ଗଜାରୋହୀ ଗଜ, ଅଶ୍ୱାରୋହୀ ଅଶ୍ୱ ଓ ଅଶ୍ୱସାରଥୀ ସହିତ ରଥିମାନଙ୍କୁ ମହାଦେବ ପଶୁସମୂହକୁ ଦହନ କଲାପ୍ରାୟ ନିଧନ କଲେ । ୧୦ । ଆପଣଙ୍କ ସୈନିକମାନଙ୍କ ମଧ୍ୟରୁ କୌଣସି ଜଣ ଶରସମ୍ପାତଦକ୍ଷ ଅଦ୍ଭୁତକର୍ମା ସାତ୍ୟକଙ୍କ ସମକ୍ଷକୁ ଗମନ

କରି ପାରିଲେ ନାହିଁ । ୧୧ । ସୈନିକ ବୀରଗଣ ସେହି ଦୀର୍ଘ-ବାହୁଙ୍କ କର୍ତ୍ତୃକ ମର୍ଦ୍ଦ୍ୟମାନ, ଭୀତ ଓ ଶରପୀଡ଼ିତ ହୋଇ ତାହାଙ୍କର ଅତିଶୟ ପୌରୁଷ ଅବଲୋକନ କରି ସଂଗ୍ରାମ ପରିତ୍ୟାଗ କଲେ । ୧୨ । ସେମାନେ ତାହାଙ୍କ ତେଜରେ ମୋହିତ ହୋଇ ଏକ ସାତ୍ୟକିଙ୍କୁ ବହୁ ସାତ୍ୟକି-ସଦୃଶ ଦେଖିଲେ ।

ହେ ନରୋତ୍ତମ ! ଭଗ୍ନଚକ୍ରସଂଯୁକ୍ତ ଓ ଭଗ୍ନ-ନୀଡ଼-ବିଶିଷ୍ଟ ରଥ, ଭଗ୍ନ-ଚକ୍ର, ଛିନ୍ନ-ଧ୍ୱଜ, ନିପାତିତ-ଛତ୍ର, ପତାକା ଓ ମନୁଷ୍ୟମାନଙ୍କର କାଞ୍ଚନମୟ ଶିରସ୍ତ୍ରାଣ, ଚନ୍ଦନଚର୍ଚ୍ଚିତ ଅଙ୍ଗଦାଳଙ୍କୃତ ସର୍ପଫଣାସଦୃଶ ଭୁଜ ଓ କରିକରତୁଲ୍ୟ ଊରୁସମୂହଦ୍ୱାରା ପୃଥିବୀ ସମାଚ୍ଛନ୍ନ ହେଲା । ବୃଷଭତୁଲ୍ୟଲୋଚନଯୁକ୍ତ ଶଶଧରସଦୃଶମନୋହର କୁଣ୍ଡଳାଳଙ୍କୃତ ନିପତିତ ବଦନସମୂହଦ୍ୱାରା ପୃଥିବୀ ବିସ୍ତୀର୍ଣ୍ଣା ହୋଇ ଶୋଭାପାଇଲା । ଯେପରି ବିକୀର୍ଣ୍ଣ ପର୍ବତସମୂହଦ୍ୱାରା ପୃଥିବୀ ପ୍ରକାଶପ୍ରାପ୍ତ ହୁଏ, ସେହିପରି ପର୍ବତୋପମଶୟାନ, ବହୁଧାଚ୍ଛିନ୍ନ ଗଜସମୂହଦ୍ୱାରା ରଣସ୍ଥଳ ବିରାଜମାନ ହେଲା । ମୁକ୍ତାଜାଳ-ବିଭୂଷିତ ଓ ଉରଶ୍ଛଦବିଶିଷ୍ଟ ତୁରଗମାନେ ଦୀର୍ଘବାହୁ ସାତ୍ୟକିଙ୍କ କର୍ତ୍ତୃକ ପ୍ରମୃଷ୍ଟ ଓ ମୃତ ଓ ମହୀତଳଗତ ହୋଇ ଶୋଭାପ୍ରାପ୍ତ ହେଲେ । ୧୯ ।

ହେ ନରନାଥ ! ସାତ୍ୟକି ଏପରି ଆପଣଙ୍କର ନାନାବିଧ ସୈନ୍ୟମାନଙ୍କୁ ନିହତ ଓ ଅତ୍ୟନ୍ତ ପରାଙ୍ମୁଖ କରି ଆପଣଙ୍କ ସୈନ୍ୟମଧ୍ୟରେ ପ୍ରବେଶପୂର୍ବକ ଯେଉଁ ପଥରେ ଧନଞ୍ଜୟ ପ୍ରବେଶ କରିଥିଲେ ସେହି ପଥରେ ଗମନ କରିବାକୁ ଅଭିଳାଷ କଲେ । ପରନ୍ତୁ ଦ୍ରୋଣ ତାହାଙ୍କୁ ନିବାରଣ କଲେ । ୨୧ । କ୍ରୁଦ୍ଧ ଯୁଯୁଧାନ ଭରଦ୍ୱାଜପୁତ୍ରଙ୍କ ସହିତ ସମବେତ ହୋଇ ସମୁଦ୍ର ଯେପରି ବେଳାଭୂମିକୁ ଅତିକ୍ରମ କରିପାରଇ ନାହିଁ ସେହିପରି ତାହାଙ୍କୁ ଅତିକ୍ରମ କରିପାରିଲେ ନାହିଁ । ଦ୍ରୋଣ ମହାରଥ ଯୁଯୁଧାନଙ୍କୁ ଅବରୋଧ କରି ମର୍ମଭେଦୀ ପାଞ୍ଚଗୋଟି ସୁଶାଣିତ ବାଣଦ୍ୱାରା ତାହାଙ୍କୁ ବିଦ୍ଧ କଲେ । ୨୩ । ସାତ୍ୟକି ମଧ୍ୟ କଙ୍କବର୍ହିପକ୍ଷଯୁକ୍ତ ଶିଳାଧୌତ ସ୍ୱର୍ଣ୍ଣପୁଙ୍ଖ ସାତଗୋଟି ବାଣରେ ଦ୍ରୋଣଙ୍କୁ ବିଦ୍ଧ କଲେ । ୨୪ ।

ଅନନ୍ତର ଦ୍ରୋଣ ଛଅଗୋଟି ଶରରେ ତାହାଙ୍କର ଅଶ୍ୱଚତୁଷ୍ଟୟକୁ, ସାରଥିକୁ ଓ ତାହାଙ୍କୁ ବିଦ୍ଧ କଲେ । ମହାରଥୀ ଯୁଯୁଧାନ ତାହା ସହନ

କରି ନ ପାରି ସିଂହନାଦପୂର୍ବକ ପ୍ରଥମରେ ଦଶଗୋଟି, ପରେ ଛଅଗୋଟି ଓ ତତ୍ପରେ ଆଠଗୋଟି ଶରଦ୍ୱାରା ଦ୍ରୋଣଙ୍କୁ ବିଦ୍ଧ କରି, ପୁନର୍ବାର ଦଶଗୋଟି ଶରରେ ତାହାଙ୍କୁ ବିଦ୍ଧ କଲେ ଓ ଏକଗୋଟି ଶରରେ ଦ୍ରୋଣଙ୍କ ସାରଥିଙ୍କୁ, ଚାରିଗୋଟି ଶରରେ ତାହାଙ୍କର ଚାରି ଅଶ୍ୱକୁ ଓ ଗୋଟିଏ ଶରରେ ତାହାଙ୍କର ଧ୍ୱଜକୁ ବିଦ୍ଧ କଲେ । ତଦନନ୍ତର ଦ୍ରୋଣ ସତ୍ୱରହସ୍ତରେ ଶଲଭସମୂହସଦୃଶ ଶରସମୂହଦ୍ୱାରା ସାତ୍ୟକଙ୍କୁ ଅଶ୍ୱ, ସାରଥୀ, ରଥ ଓ ଧ୍ୱଜସହିତ ସମାଚ୍ଛନ୍ନ କଲେ । ସେହିପରି ଯୁଯୁଧାନ ମଧ୍ୟ ନିଃଶଙ୍କ ହୋଇ ବହୁ ବାଣଦ୍ୱାରା ଦ୍ରୋଣଙ୍କୁ ସମାଚ୍ଛନ୍ନ କଲେ ।

ତତ୍ପରେ ଦ୍ରୋଣ ସାତ୍ୟକଙ୍କୁ କହିଲେ—ହେ ଯୁଯୁଧାନ ! ତୁମ୍ଭର ଆଚାର୍ଯ୍ୟ ଅର୍ଜୁନ କାପୁରୁଷତୁଲ୍ୟ ରଣ ପରିତ୍ୟାଗ କରି ଗମନ କରିଅଛନ୍ତି । ଆମ୍ଭେ ଯୁଦ୍ଧ କରୁଥିଲେ ହେଁ ସେ ଆମ୍ଭଙ୍କୁ ପରିତ୍ୟାଗପୂର୍ବକ ପ୍ରଦକ୍ଷିଣ କରି ଗମନ କରିଅଛନ୍ତି । କିନ୍ତୁ ତୁମ୍ଭେ ଯଦି ତୁମ୍ଭ ଆଚାର୍ଯ୍ୟସଦୃଶ ଆମ୍ଭଙ୍କୁ ରଣରେ ପରିତ୍ୟାଗ କରି ଗମନ ନ କର ତାହାହେଲେ ଆମ୍ଭେ ଯୁଦ୍ଧ କରୁଥିଲେ ଆମ୍ଭ ନିକଟରୁ ତୁମ୍ଭେ ଜୀବନ ନେଇ ମୁକ୍ତହୋଇ ପାରିବ ନାହିଁ ।

ସାତ୍ୟକି କହିଲେ—ହେ ବ୍ରହ୍ମନ୍ ! ଆପଣଙ୍କର ସ୍ୱସ୍ତି ହେଉ, ଆମ୍ଭେ ଧର୍ମରାଜଙ୍କ ଆଜ୍ଞାନୁସାରେ ଧନଞ୍ଜୟଙ୍କ ପଦବୀକୁ ଗମନ କରିବୁଁ । ଯେପରି କାଳବିଳମ୍ବ ନ ହୁଏ ଆମ୍ଭେ ସେହିପରି ଆମ୍ଭ ଗୁରୁ ଯେଉଁ ପଥରେ ଗମନ କରିଅଛନ୍ତି ସେହି ପଥରେ ଗମନ କରିବୁଁ । କାରଣ ଶିଷ୍ୟମାନେ ଆଚାର୍ଯ୍ୟାନୁଗତ ପଥକୁ ସର୍ବଦା ସେବନ କରିଥାନ୍ତି ।

ସଞ୍ଜୟ କହିଲେ—ହେ ଭୂପାଳ ! ସାତ୍ୟକି ଏହିକଥା କହି ସହସା ଆଚାର୍ଯ୍ୟ ଦ୍ରୋଣଙ୍କୁ ପରିତ୍ୟାଗ କରି ଗମନ କଲେ ଓ ସାରଥିକୁ ଏହିକଥା କହିଲେ ଯେ, ଦ୍ରୋଣ ଆମ୍ଭଙ୍କୁ ଅବରୋଧ କରିବାନିମିତ୍ତ ସର୍ବଦା ଯତ୍ନ କରିବେ । ୩୫ । ତୁମ୍ଭେ ଯତ୍ନପୂର୍ବକ ରଣସ୍ଥଳରେ ଗମନ କର ଓ ଆମ୍ଭର କଥା ଶ୍ରବଣ କର । ତୁମ୍ଭେ ଦେଖୁଅଛ ଯେ, ମହାପ୍ରଭାନ୍ୱିତ ଅବନ୍ତୀଦେଶୀୟ ସୈନ୍ୟ, ତାହାପରେ ଦାକ୍ଷିଣାତ୍ୟ ମହତ୍‌ସୈନ୍ୟ ଓ ତାହାନିକଟରେ କର୍ଣ୍ଣଙ୍କର ମହତ୍‌ସୈନ୍ୟ ସମ୍ମୁଖ ହୋଇ ଅବସ୍ଥାନ କରିଅଛନ୍ତି । ଏହି ସକଳ ସୈନ୍ୟ-

ମାନେ ପରସ୍ପର ଭଗ୍ନ ହୋଇଅଛନ୍ତି । ପରନ୍ତୁ ସେମାନେ ପରସ୍ପରକୁ ଆଶ୍ରୟ କରି ରଣସ୍ଥଳକୁ ପରିତ୍ୟାଗ କରିବେ ନାହିଁ । ତୁମ୍ଭେ ସେମାନଙ୍କ ମଧ୍ୟଦେଇ ହର୍ଷସହକାରେ ମଧ୍ୟମ ବେଗପୂର୍ବକ ଅଶ୍ୱଚାଳନା କର । ଯେଉଁସ୍ଥାନରେ ନାନାଶସ୍ତ୍ରୋଦ୍ୟତ ବାହ୍ଲୀକସୈନ୍ୟ ସୂତପୁତ୍ର ପୁରୋବର୍ତ୍ତୀ ବହୁଳ ଦାକ୍ଷିଣାତ୍ୟ, ହସ୍ତୀ, ଅଶ୍ୱ ଓ ରଥସମୂହର ସମ୍ବାଧ ଓ ନାନାଦେଶୀୟ ପଦାତିସୈନ୍ୟ ଅବସ୍ଥାନ କରିଅଛନ୍ତି, ତୁମ୍ଭେ ସେହିସ୍ଥାନକୁ ଆମ୍ଭଙ୍କୁ ନିଅ । ଏହିକଥା କହି ଅସନ୍ତ୍ରାନ୍ତଚିତ୍ତରେ ବ୍ରାହ୍ମଣ ଦ୍ରୋଣଙ୍କୁ ପରିତ୍ୟାଗ କରି ତାହାଙ୍କ ବାମଦିଗରେ କର୍ଣ୍ଣଙ୍କ ମହତ୍‌ସୈନ୍ୟ ମଧ୍ୟକୁ ଯାତ୍ରା କଲେ ।

ହେ ମହାରାଜ ! ମହାବାହୁ ଯୁଯୁଧାନ ନିବୃତ୍ତ ନ ହୋଇ ଗମନ କରିବାରୁ ଦ୍ରୋଣ ସଂକ୍ରୁଦ୍ଧ ହୋଇ ବହୁବାଣ ବିକୀର୍ଣ୍ଣ କରି ତାହାଙ୍କ ପଶ୍ଚାତ୍ ଧାବମାନ ହେଲେ । ସାତ୍ୟକି ଶାଣିତଶରନିକରରେ କର୍ଣ୍ଣଙ୍କର ଅତି ମହତ୍ ସୈନ୍ୟମାନଙ୍କୁ ଅଭିହତ କରି କୁରୁସୈନ୍ୟମାନଙ୍କୁ ପୀଡ଼ିତ କରି ତନ୍ମଧ୍ୟରେ ପ୍ରବେଶ କଲେ । ସାତ୍ୟକି ଏହିପରି ସୈନ୍ୟମଧ୍ୟରେ ପ୍ରବିଷ୍ଟ ହୁଅନ୍ତେ, ସୈନ୍ୟମାନେ ସେହିହେତୁ ପଳାୟମାନ ହେଲେ । ତହୁଁ କୃତବର୍ମା କ୍ରୋଧାବିଷ୍ଟ ହୋଇ ତାହାଙ୍କୁ ନିବାରଣ କରିବାରେ ପ୍ରବୃତ୍ତ ହେଲେ । ବୀର୍ଯ୍ୟବାନ୍ ସାତ୍ୟକି କୃତବର୍ମାଙ୍କୁ ଅବଲୋକନ କରି ଛଅଗୋଟି ବାଣରେ ତାହାଙ୍କୁ ଆହତ କଲେ । ପୁଣି ଚାରିଗୋଟି ବାଣରେ ତାହାଙ୍କର ଚାରିଅଶ୍ୱକୁ ହନନ କଲେ । ତତ୍ପରେ ପୁନର୍ବାର ନତପର୍ବ ଷୋଡ଼ଶବାଣଦ୍ୱାରା ତାହାଙ୍କ ହୃଦୟ ବିଦ୍ଧ କଲେ । କୃତବର୍ମା ସାତ୍ୟକିଙ୍କର ତୀକ୍ଷ୍ଣତେଜା ବହୁ ବାଣଦ୍ୱାରା ବ୍ୟଥିତ ହୋଇ ମଧ୍ୟ କ୍ଷାନ୍ତ ହେଲେ ନାହିଁ । ସେ ଭୁଜଗସନ୍ନିଭ ବାୟୁବେଗଗାମୀ ବସ୍ତଦନ୍ତନାମକ ଗୋଟିଏ ବାଣକୁ ଆକର୍ଣ୍ଣ ଆକର୍ଷଣ କରି ସାତ୍ୟକିଙ୍କର ଦେହାଭରଣ ଓ ଦେହକୁ ଭେଦ କଲେ ।

ସେହି ବାଣ ରୁଧିରସିକ୍ତ ହୋଇ ପତ୍ରପୁଙ୍ଖସହିତ ପୃଥିବୀରେ ପ୍ରବିଷ୍ଟ ହେଲା । ପରମାସ୍ତ୍ରବେତ୍ତା ତତ୍ପରେ ଅତିଶୟ କ୍ରୁଦ୍ଧ ହୋଇ ବହୁବାଣଦ୍ୱାରା ସତ୍ୟବିକ୍ରମ ସାତ୍ୟକିଙ୍କର ଶର ଓ ଗୁଣସହିତ ଶରାସନକୁ ଛେଦନ କରି ଦଶଗୋଟି ତୀକ୍ଷ୍ଣ ବାଣଦ୍ୱାରା ତାହାଙ୍କର ହୃଦୟ ବିଦ୍ଧ କଲେ । ତଦନନ୍ତର

ମହାଶକ୍ତିମାନ୍ ବୀର ସାତ୍ୟକି ନିଜର ଶରାସନକୁ ବିଶୀର୍ଣ୍ଣ ହେବାର ଦେଖି ଗୋଟିଏ ଶକ୍ତି ଦ୍ୱାରା କୃତବର୍ମାଙ୍କର ଦକ୍ଷିଣ ବାହୁକୁ ବ୍ୟଥିତ କଲେ ।

ଅନନ୍ତର ଅନ୍ୟ ଗୋଟିଏ ସୁଦୃଢ଼ ଶରାସନ ଗ୍ରହଣପୂର୍ବକ ଶତଶତ ସହସ୍ରସହସ୍ର ବାଣ ଶୀଘ୍ର ଶୀଘ୍ର କୃତବର୍ମାଙ୍କ ଚତୁର୍ଦ୍ଦିଗକୁ ନିକ୍ଷେପ କରି ରଥସହିତ ତାହାଙ୍କୁ ସମାଚ୍ଛନ୍ନ କଲେ । ୫୫ । ହେ ମହାରାଜ ! କୃତବର୍ମାଙ୍କୁ ଶରାଚ୍ଛାଦିତ କରି ଗୋଟିଏ ଭଲ୍ଲଦ୍ୱାରା ତାହାଙ୍କର ସାରଥିର ମସ୍ତକକୁ ଛେଦନ କରିପକାଇଲେ । ୫୬ । ସାରଥି ହତ ହୋଇ କୃତବର୍ମାଙ୍କ ମହାରଥରୁ ପତିତ ହେଲା, ଅଶ୍ୱମାନେ ସାରଥିବିହୀନ ହୋଇ ଦ୍ରୁତବେଗରେ ଧାବମାନ ହେଲେ । ୫୭ । ଅନନ୍ତର ଭୋଜନନ୍ଦନ କୃତବର୍ମା ସମ୍ଭ୍ରାନ୍ତଚିତ୍ତ ହୋଇ ସ୍ୱୟଂ ଅଶ୍ୱରଶ୍ମି ଗ୍ରହଣପୂର୍ବକ ସଶର ଶରାସନହସ୍ତରେ ଅବସ୍ଥାନ କଲେ । ସୈନ୍ୟମାନେ ତାହାଙ୍କର ସେହି କାର୍ଯ୍ୟ ଅବଲୋକନ କରି ଯଥେଷ୍ଟ ପ୍ରଶଂସା କଲେ । ୫୮ । ସେ ମୁହୂର୍ତ୍ତିମାତ୍ର ଆଶ୍ୱସ୍ତ ହୋଇ ନିର୍ଭୀକଚିତ୍ତରେ ଅଶ୍ୱଚାଳନାପୂର୍ବକ ଶତ୍ରୁମାନଙ୍କର ତ୍ରାସୋତ୍ପାଦନ କଲେ । ପରନ୍ତୁ ସାତ୍ୟକି ସେଠାରୁ ପ୍ରସ୍ଥାନ କଲେ ଓ କୃତବର୍ମା ଭୀମସେନଙ୍କ ପ୍ରତି ଧାବମାନ ହେଲେ ।

ହେ ରାଜେନ୍ଦ୍ର ! ସାତ୍ୟକି ଭୋଜ-ବଳମଧ୍ୟରୁ ବିନିର୍ଗତ ହୋଇ ତ୍ୱରାସହ ମହତ୍ କାମ୍ବୋଜ ସୈନ୍ୟମଧ୍ୟକୁ ଗମନ କଲେ । ସେସ୍ଥାନରେ ବହୁଶୂର ମହାରଥୀମାନେ ତାହାଙ୍କୁ ଅବରୋଧ କରିବାରୁ ସେସ୍ଥାନରୁ ଗମନ କରିପାରିଲେ ନାହିଁ । ସେହି ସମୟରେ ଦ୍ରୋଣ ସାତ୍ୟକିଙ୍କର ଅନୁସନ୍ଧାନ ନ ପାଇ କୃତବର୍ମାଙ୍କପ୍ରତି ସ୍ୱୀୟ ସୈନ୍ୟରକ୍ଷଣର ଭାର ଅର୍ପଣ କରି ଯୁଦ୍ଧାଭିଳାଷରେ ତାହାଙ୍କପ୍ରତି ଧାବମାନ ହେଲେ । ଦ୍ରୋଣଙ୍କୁ ସାତ୍ୟକିଙ୍କ ପଶ୍ଚାତ୍ ଧାବମାନ ହେବାର ଦେଖି ପାଣ୍ଡବସୈନ୍ୟ ମଧ୍ୟରେ ପାଞ୍ଚାଳଦେଶୀୟ ବହୁବୀରଗଣ ଭୀମସେନଙ୍କୁ ଅଗ୍ରବର୍ତ୍ତୀ କରି ଅତିଶୟ କ୍ରୋଧାବିଷ୍ଟ ହୋଇ ତାହାଙ୍କୁ ନିବାରଣ କରିବାରେ ପ୍ରବୃତ୍ତ ହେଲେ । ପରନ୍ତୁ ରଥିଶ୍ରେଷ୍ଠ କୃତବର୍ମାଙ୍କୁ ପ୍ରାପ୍ତ ହୋଇ ହତୋତ୍ସାହ ହେଲେ । ବୀର କୃତବର୍ମା ବିକ୍ରମ ପ୍ରକାଶପୂର୍ବକ ସେମାନଙ୍କୁ ନିବାରଣ କଲେ । ୬୫ ।

ସେମାନଙ୍କର ବାହନସବୁ କ୍ଳାନ୍ତ ହୋଇଥିଲେ । ସେମାନେ ମଧ୍ୟ ଶର-ସମୂହରେ ପୀଡ଼ିତ ହୋଇ ଈଷତ୍ ହତଚେତନ ହେଲେ । ସୁତରାଂ ଯତ୍ନବାନ ହୋଇମଧ୍ୟ କୃତବର୍ମାଙ୍କ କର୍ତ୍ତୃକ ନିବାରିତ ହେଲେ । ପରନ୍ତୁ ସେହି ବୀରମାନେ ଭୋଜନନ୍ଦନ କୃତବର୍ମାଙ୍କକର୍ତ୍ତୃକ ନିବାରିତ ହୋଇମଧ୍ୟ ମହତ୍ ଯଶପ୍ରାର୍ଥୀ ହୋଇ ଭୋଜସୈନ୍ୟଙ୍କୁ ଆକ୍ରମଣ କରିବା ଅଭିଳାଷରେ ଆର୍ଯ୍ୟଧର୍ମରେ ନିଷ୍ଠାବଶତଃ ରଣବିମୁଖ ହେଲେ ନାହିଁ । ୬୭ ।

---

# ୧୧୪ ଅଧ୍ୟାୟ

ଧୃତରାଷ୍ଟ୍ର କହିଲେ—ହେ ସଞ୍ଜୟ ! ଆମ୍ଭମାନଙ୍କ ସୈନ୍ୟସମସ୍ତ ବହୁଗୁଣବିଶିଷ୍ଟ ଓ ପ୍ରସିଦ୍ଧ ଅଟନ୍ତି । ସେମାନଙ୍କର ଯଥାବିଧି ବ୍ୟୂହ-ସଜ୍ଜା ମଧ୍ୟ ହୋଇଥାଏ । ସେମାନେ ସଂଖ୍ୟାରେ ଅଳ୍ପ ନୁହନ୍ତି । ୧ । ଆମ୍ଭେମାନେ ସର୍ବଦା ସେମାନଙ୍କୁ ସମ୍ମାନ କରିଥାଉଁ । ସେମାନେ ମଧ୍ୟ ଆମ୍ଭମାନଙ୍କ ଅଭିଳାଷ କରିଥାନ୍ତି । ସେମାନେ ପ୍ରୌଢ଼, ଅଦ୍ଭୁତାକାର ସମ୍ମୁଖଯୋଦ୍ଧା ଓ ମହାବଳପରାକ୍ରମଶୀଳ । ୨ । ସେମାନେ ଅତିବୃଦ୍ଧ ନୁହନ୍ତି, ବାଳକ ନୁହନ୍ତି, କୃଶ ନୁହନ୍ତି ଓ ଅତି ସ୍ଥୂଳ ନୁହନ୍ତି । ସେମାନଙ୍କ ମଧ୍ୟରେ ସମସ୍ତଙ୍କର ଦେହ ପ୍ରାୟ ବୃତ୍ତ, ଆୟତ ଓ ଲଘୁ । ସେମାନେସମସ୍ତେ ସାରବାନ୍, ଅନାମୟ ଗୃହୀତବର୍ମା ଓ ବହୁଶସ୍ତ୍ରପରିଚ୍ଛଦସମ୍ପନ୍ନ । ସେମାନେ ବହୁଶସ୍ତ୍ର-ବିଦ୍ୟାରେ ପାରଦର୍ଶୀ । ୪ ।

ଆରୋହଣରେ, ଅବରୋହଣରେ, ପ୍ରସରଣରେ, ଦୂରଲଙ୍ଘନରେ, ସମ୍ୟକ୍ ପ୍ରହରଣରେ, ପ୍ରବେଶରେ ଓ ନିର୍ଗମରେ ସୁଦକ୍ଷ ଅଟନ୍ତି । ହସ୍ତୀ ଅଶ୍ୱ ଓ ରଥ ଯୁଦ୍ଧରେ ପରୀକ୍ଷିତ । ସେମାନଙ୍କୁ ଯଥାନ୍ୟାୟରେ ପରୀକ୍ଷା କରି ଉପଯୁକ୍ତ ବେତନରେ ନିଯୁକ୍ତ କରାହୋଇଅଛି । ୬ । ସତ୍‌କୁଳଜାତ କିମ୍ବା କୌଣସି ଉପକାର କରିଅଛନ୍ତି ବୋଲି କିମ୍ବା ସେମାନଙ୍କ ସହିତ କୌଣସି ସମ୍ବନ୍ଧ ଅଛି ବୋଲି ସେମାନଙ୍କୁ ନିଯୁକ୍ତ କରାହୋଇ ନାହିଁ । ସେମାନେ ଆହୂତ ନ ହୋଇ ବା ନୂତନଭାବରେ ନିଯୁକ୍ତ ହୋଇନାହାନ୍ତି । ୭ । ବିଶେଷତଃ ସେମାନେ ସତ୍‌କୁଳଜାତ ଆର୍ଯ୍ୟଜନସମୁପେତ ସନ୍ତୋଷଯୁକ୍ତ

ପ୍ରକୃଷ୍ଟ, ଅନୁରକ୍ତ ଯଶସ୍ୱୀ ଓ ମନସ୍ୱୀ । ସେମାନଙ୍କର ସମ୍ମାନ କରାଯାଏ ଆଉ ମଧ୍ୟ ସେମାନଙ୍କୁ ଉପଗୃହ ପ୍ରଦାନ କରାଯାଏ । ୮ । ସେମାନେ ସଚୀବ ଓ ଲୋକପାଳସଦୃଶ ପ୍ରଧାନ କର୍ମାଧ୍ୟକ୍ଷଙ୍କ କର୍ତ୍ତୃକ ପରିପାଳିତ ହୋଇଥାନ୍ତି । ୯ । ଆମ୍ଭମାନଙ୍କର ପ୍ରିୟ ହିତୈଷୀ ଓ ଅନୁଗତ ରାଜାମାନେ ସ୍ୱେଚ୍ଛାନୁସାରେ ଅନୁଗଣ ଓ ସୈନ୍ୟସହିତ ସେମାନଙ୍କୁ ରଣରେ ରକ୍ଷା କରନ୍ତି । ୧୦ । ଚତୁର୍ଦ୍ଦିଗରୁ ସମାଗତ ନଦୀସମୂହ ଦ୍ୱାରା ପରିପୂର୍ଣ୍ଣ ସାଗରସଦୃଶ ସେହିସମସ୍ତ ସୈନ୍ୟମାନେ ପକ୍ଷରହିତ ପକ୍ଷୀସଦୃଶ ରଥ, ଅଶ୍ୱ ଓ ମଦସ୍ରାବୀ କୁଞ୍ଜରଗଣରେ ସମାବୃତ ଥାନ୍ତି ।

ହେ ସଞ୍ଜୟ ! ଆମ୍ଭମାନଙ୍କର ସୈନ୍ୟମାନେ ଏତାଦୃଶ ହୋଇ ମଧ୍ୟ ଯେ ରଣରେ ହତ ହୋଇଅଛନ୍ତି ତାହାର କାରଣ ଭାଗ୍ୟ ବ୍ୟତୀତ ଆଉ କ'ଣ ହୋଇପାରେ ? ଯୋଧଗଣରୂପ ଅକ୍ଷୟଜଳମୟ, ବାହନରୂପ ଊର୍ମ୍ମିତରଙ୍ଗବିଶିଷ୍ଟ, ନୌକାଦଣ୍ଡରୂପ ଅସି, ଗଦା ଓ ଶକ୍ତିସଂକୁଳ, ଶର ଓ ପ୍ରାସରୂପ ମତ୍ସ୍ୟସମାକୁଳ, ଧ୍ୱଜରୂପ ଭୂଷଣସମ୍ବାଧଯୁକ୍ତ, ରତ୍ନରୂପପଦ୍ମସୁଶୋଭିତ, ବାୟୁବେଗରୂପ ଧାବମାନ ବାହନମାନଙ୍କଦ୍ୱାରା ଆନ୍ଦୋଳିତ, ଦ୍ରୋଣରୂପ ଗମ୍ଭୀର ପାତାଳସମନ୍ୱିତ, କୃତବର୍ମାରୂପ ମହାହ୍ରଦସଂଯୁକ୍ତ, ଜଳସନ୍ଧରୂପ ମକରାଦିସମ୍ପନ୍ନ ଓ କର୍ଣ୍ଣରୂପ ଚନ୍ଦ୍ରୋଦୟରେ ସମୁଦ୍ଧତ, ଭୟଙ୍କର ଆମ୍ଭମାନଙ୍କର ଯେଉଁ ସୈନ୍ୟସାଗର ତାହାକୁ ବେଗପୂର୍ବକ ଭେଦକରି ଭରତପ୍ରବର ସବ୍ୟସାଚୀ ଓ ସାତ୍ୱତଶ୍ରେଷ୍ଠ ମହାରଥୀ ସାତ୍ୟକି ଏକାକୀ ରଥାରୋହଣପୂର୍ବକ ଯେତେବେଳେ ପ୍ରବିଷ୍ଟ ହୋଇଅଛନ୍ତି, ସେତେବେଳେ ଆମ୍ଭ ସୈନ୍ୟମଧ୍ୟରେ କେହି ଅବଶିଷ୍ଟ ରହିବେ ନାହିଁ, ଏହା ଆମ୍ଭେ ଦେଖୁଅଛୁଁ । ୧୭ ।

କାଳପ୍ରେରିତ କୁରୁମାନେ ଅର୍ଜ୍ଜୁନ ଓ ସାତ୍ୟକିଙ୍କୁ ବେଗସହକାରେ ସୈନ୍ୟାତିକ୍ରମ କରିବାର ଦେଖି ଓ ସିନ୍ଧୁରାଜଙ୍କୁ ଗାଣ୍ଡୀବଧନ୍ୱାର ବାଣଗୋଚରରେ ଅବସ୍ଥିତ ହେବାର ଅବଲୋକନ କରି ସେ ସମୟରେ କି କାର୍ଯ୍ୟ କରିଥିଲେ ? ସେହି ନିଦାରୁଣ ଅନ୍ତର୍ଭୀଷଣ ସମୟରେ ସେମାନେ କିପରି ଅବସ୍ଥାପ୍ରାପ୍ତ ହେଲେ ?

ହେ ବତ୍ସ ! ଆମ୍ଭେ ବିବେଚନ କରୁଁ ସେମାନେ କାଳଗ୍ରସ୍ତ ହୋଇ ଅଛନ୍ତି । ବର୍ତ୍ତମାନ ସମରରେ ସେମାନଙ୍କର ତାଦୃଶ ବିକ୍ରମର କାର୍ଯ୍ୟ ଦୃଷ୍ଟ ହେଉନାହିଁ । ୨୦ । କୃଷ୍ଣାର୍ଜୁନ ଅକ୍ଷତ ଶରୀରରେ ରଣମଧ୍ୟରେ ପ୍ରବିଷ୍ଟ ହୋଇଅଛନ୍ତି । ସେ ଦୁଇଜଣଙ୍କୁ ନିବାରଣ କରିବାଭଳି ବୀର କୁରୁସେନା ମଧ୍ୟରେ ନାହିଁ । ୨୧ ।

ହେ ସଞ୍ଜୟ ! ଆମ୍ଭମାନଙ୍କର ସୈନିକ ମହାରଥୀମାନଙ୍କୁ ପରୀକ୍ଷା କରି ଯଥାଯୋଗ୍ୟ ବେତନରେ ଓ ଅନେକଙ୍କୁ ପ୍ରିୟ ବାକ୍ୟଦ୍ୱାରା ମଧ୍ୟ ନିଯୁକ୍ତ କରାହୋଇଅଛି । ୨୨ । ସେମାନଙ୍କ ମଧ୍ୟରୁ କେହି ଅସମ୍ମାନପୂର୍ବକ ନିଯୁକ୍ତ ହୋଇନାହାନ୍ତି । ସେମାନେ କର୍ମାନୁରୂପ ଅନ୍ନ ଓ ବେତନ ଲାଭ କରିଥାନ୍ତି । ୨୩ । ଆମ୍ଭମାନଙ୍କ ସୈନ୍ୟ ମଧ୍ୟରେ କୌଣସି ଯୋଦ୍ଧା ଅଳ୍ପ ବେତନଭୋଗୀ ନୁହନ୍ତି । ୨୪ । ଜ୍ଞାତି ବାନ୍ଧବସହିତ ଆମ୍ଭ ପୁତ୍ରମାନେ ଦାନମାନ ଓ ଅଶନଦ୍ୱାରା ସେହିସମସ୍ତ ସୈନ୍ୟମାନଙ୍କୁ ଯଥାଶକ୍ତି ସମ୍ମାନ କରିଥାନ୍ତି । ୨୫ । ପରନ୍ତୁ ଏତାଦୃଶ ସୈନିକଗଣ ଯେତେବେଳେ ସବ୍ୟସାଚୀ ଓ ସାତ୍ୟକିଙ୍କ କର୍ତ୍ତୃକ ବିମର୍ଦ୍ଦିତ ଓ ପରାଜିତ ହୋଇଅଛନ୍ତି, ତେତେବେଳେ ତାହାର କାରଣ ଭାଗ୍ୟ ବ୍ୟତୀତ ଆଉ କ ହୋଇପାରେ ? ୨୬ । ସଂଗ୍ରାମରେ ଯେଉଁମାନେ ରକ୍ଷିତ ହୁଅନ୍ତି ଓ ଯେଉଁମାନେ ରକ୍ଷାକରିଥାନ୍ତି ଏହି ଉଭୟ ପ୍ରକାର ଯୋଦ୍ଧାମାନଙ୍କର ଗତି ଏକ ପ୍ରକାର ଦେଖିଅଛୁଁ । ୨୭ । ଆମ୍ଭର ଅତ୍ୟନ୍ତ ମୂଢ଼ ପୁତ୍ର ଦୁର୍ଯ୍ୟୋଧନ ସଂଗ୍ରାମରେ ଅର୍ଜୁନଙ୍କୁ ସିନ୍ଧୁରାଜଙ୍କର ଅଗ୍ରରେ ଅବସ୍ଥିତ ଅବଲୋକନ କରି ଓ ସାତ୍ୟକିଙ୍କୁ ମଧ୍ୟ ନିର୍ଭୟରେ ସମରରେ ପ୍ରବିଷ୍ଟ ହେବାର ନିରୀକ୍ଷଣ କରି ତତ୍‌କାଳୋଚିତ କେଉଁ କାର୍ଯ୍ୟ କର୍ତ୍ତବ୍ୟ ବୋଲି ଅବଧାରଣା କଲେ ! ୨୯ । ଆମ୍ଭର ଅନ୍ୟାନ୍ୟ ଯୋଦ୍ଧାମାନେ ଅବା ରଥୀସତ୍ତମ ଅର୍ଜୁନ ଓ ସାତ୍ୟକି ଏ ଦୁହିଙ୍କୁ ସେନା ମଧ୍ୟରେ ସର୍ବଶସ୍ତ୍ର ଅତିକ୍ରମ କରି ନିବିଷ୍ଟ ହେବାର ଦେଖି କପରି ଧୈର୍ଯ୍ୟାବଲମ୍ବନ କଲେ ! ୩୦ ।

ଆମ୍ଭେ ବୋଧକରୁଁ କୃଷ୍ଣ ଓ ସାତ୍ୟକି ଏହି ଦୁହିଙ୍କୁ ଅର୍ଜୁନଙ୍କର ସାହାଯ୍ୟାର୍ଥେ ଅବସ୍ଥିତ ହେବାର ଅବଲୋକନ କରି ଆମ୍ଭର ପୁତ୍ରମାନେ ଶୋକାକୁଳ ହୋଇଥିବେ । ୩୧ । ଅର୍ଜୁନ ଓ ସାତ୍ୟକି ଏ ଦୁହିଁଙ୍କୁ ସେନା-

ଅତିକ୍ରମ କରିବାର ଅବଲୋକନ କରି ଓ କୁରୁସୈନ୍ୟମାନଙ୍କୁ ପଳାୟମାନ ଦେଖି ଆମ୍ଭର ପୁତ୍ରମାନେ ଶୋକାର୍ତ୍ତ ହୋଇଥିବେ । ୩୨ । ରଥମାନଙ୍କ ଶତ୍ରୁଜୟରେ ନିରୁତ୍ସାହ ଓ ପଳାୟନରେ କୃତୋତ୍ସାହ ଓ ପଳାୟିତ ହେବାର ଦେଖି ଆମ୍ଭର ପୁତ୍ରମାନେ ଶୋକାର୍ତ୍ତ ହୋଇଥିବେ । ୩୩ । ଅର୍ଜ୍ଜୁନ ଓ ସାତ୍ୟକି ଏ ଦୁହିଁଙ୍କୁ ରଥମାଡ଼ସବୁ ମନୁଷ୍ୟଶୂନ୍ୟ କରିବାର ଦେଖି ଓ ଯୋଦ୍ଧାମାନଙ୍କୁ ନିହତ କରିବାର ନିରୀକ୍ଷଣ କରି ଆମ୍ଭର ପୁତ୍ରମାନେ ଶୋକାର୍ତ୍ତ ହୋଇଥିବେ । ସହସ୍ର ସହସ୍ର ବୀରମାନଙ୍କୁ ତୁରଙ୍ଗ, ମାତଙ୍ଗ ଓ ରଥାଙ୍ଗବିହୀନ ଓ ବ୍ୟଗ୍ର ହୋଇ ଧାବମାନ ହେବାର ଅବଲୋକନ କରି ଆମ୍ଭର ପୁତ୍ରମାନେ ଶୋକାର୍ତ୍ତ ହୋଇଥିବେ । ୩୪ । ମନୁଷ୍ୟ ଓ ଅଶ୍ୱମାନଙ୍କୁ ଅର୍ଜ୍ଜୁନ ଓ ସାତ୍ୟକିଙ୍କ କର୍ତ୍ତୃକ ରଥବିହୀନ ହେବାର ଦେଖି ଆମ୍ଭର ପୁତ୍ରମାନେ ଶୋକାର୍ତ୍ତ ହୋଇ-ଥିବେ । ୩୬ । ମହା ମହା ହସ୍ତିମାନେ ଅର୍ଜ୍ଜୁନଙ୍କ ଶରସମୂହରେ ଆହତ ହୋଇ ପଳାୟନ କରୁଅଛନ୍ତି ଓ ପତିତ ହୋଇଅଛନ୍ତି ଓ ହେଉଅଛନ୍ତି, ଏହା ଦେଖି ଆମ୍ଭର ପୁତ୍ରମାନେ ଶୋକାର୍ତ୍ତ ହେଉଥିବେ । ୩୭ । ଅଶ୍ୱମାନଙ୍କୁ ଅର୍ଜ୍ଜୁନ ଓ ସାତ୍ୟକିଙ୍କ କର୍ତ୍ତୃକ ନିହତ ଓ ଇତସ୍ତତଃ ଧାବମାନ ହେବାର ଦେଖି ଆମ୍ଭର ପୁତ୍ରମାନେ ଶୋକାର୍ତ୍ତ ହୋଇଥିବେ । ୩୮ । ପଦାତିସମୂହକୁ ସମର ପରିତ୍ୟାଗ କରି ଚତୁର୍ଦ୍ଦିଗକୁ ଧାବମାନ ହେବାର ଦେଖି ଆମ୍ଭର ପୁତ୍ରମାନେ ବିଜୟଲାଭରେ ନିରାଶ ହୋଇ ଶୋକାର୍ତ୍ତ ହୋଇଥିବେ । ୩୯ । ଅପରାଜିତ ଅର୍ଜ୍ଜୁନ ଓ ସାତ୍ୟକି ଏହି ଦୁହିଙ୍କୁ କ୍ଷଣକ ମଧ୍ୟରେ ଦ୍ରୋଣସୈନ୍ୟ-ମଧ୍ୟରୁ ଅତିକ୍ରାନ୍ତ ହେବାର ଅବଲୋକନ କରି ଆମ୍ଭର ପୁତ୍ରମାନେ ଶୋକାର୍ତ୍ତ ହୋଇଥିବେ । ୪୦ । ହେ ବତ୍ସ ! କୃଷ୍ଣାର୍ଜ୍ଜୁନ ଓ ସାତ୍ୟକି ଏମାନେ ଅକ୍ଷତ-ଶରୀରରେ ମଦୀୟ ସୈନ୍ୟମଧ୍ୟରେ ପ୍ରବିଷ୍ଟ ହୋଇଅଛନ୍ତି, ଏହା ଶ୍ରବଣ କରି ଆମ୍ଭେ ମଧ୍ୟ ଅତିଶୟ ମୋହିତ ହୋଇଅଛୁଁ । ୪୧ ।

ହେ ସଞ୍ଜୟ ! ଶିନିପ୍ରବର ସାତ୍ୟକି ସେନାମଧ୍ୟରେ ପ୍ରବିଷ୍ଟ ହୋଇ ଭୋଜସୈନ୍ୟମାନଙ୍କୁ ଅତିକ୍ରମ କରି ଗମନ କରନ୍ତେ, କୌରବମାନେ କିପରି ଭାବରେ ଅବସ୍ଥାନ କଲେ ? ୪୨ । ପାଣ୍ଡବମାନେ ଦ୍ରୋଣଙ୍କ କର୍ତ୍ତୃକ ନିଗୃହୀତ ହେଲାରୁ କିପ୍ରକାର ଯୁଦ୍ଧ ହେଲା ତାହା ଆମ୍ଭ ନିକଟରେ କୀର୍ତ୍ତନ କର ।୪୩। ଦ୍ରୋଣ ବଳବାନ୍, ଶୂର, ଅସ୍ତ୍ରବିଦ୍ୟାରେ କୁଶଳ, ଦୃଢ଼ବିକ୍ରମ ଓ ମହା-ଧନୁର୍ଦ୍ଧର । ତାହାଙ୍କଠାରେ ପାଞ୍ଚାଳମାନଙ୍କର ଶତ୍ରୁତା ଆବଦ୍ଧ ହୋଇଅଛି ।

ସେମାନେ ମଧ୍ୟ ଧର୍ମରାଜଙ୍କର ଜୟାକାଂକ୍ଷୀ ଅଟନ୍ତି । ମହାବଳ ଦ୍ରୋଣଙ୍କର ମଧ୍ୟ ସେମାନଙ୍କ ପ୍ରତି ଶତ୍ରୁତା ବଦ୍ଧମୂଳ ହୋଇଅଛି । ଅତଏବ ପାଞ୍ଚାଳ-ମାନେ ଦ୍ରୋଣଙ୍କ ସହିତ କି ପ୍ରକାର ପ୍ରତିଯୁଦ୍ଧ କଲେ ? ୪୫ । ହେ ସଞ୍ଜୟ ! ତୁମ୍ଭେ ବାକ୍ୟବିଶାରଦ ଅଟ । ଅତଏବ ଏହିସମସ୍ତ ବିବରଣ ଓ ଅର୍ଜୁନ ସିନ୍ଧୁରାଜଙ୍କ ବଧନିମିତ୍ତ ଯେପରି କାର୍ଯ୍ୟ କରିଥିଲେ ସେସମସ୍ତ ଆମ୍ଭ ନିକଟରେ କୀର୍ତ୍ତନ କର । ୪୬ ।

ସଞ୍ଜୟ କହିଲେ—ହେ ଭରତପ୍ରବର ! ଆପଣଙ୍କ ନିଜକୃତ ଅପରାଧ ହେତୁ ଏତାଦୃଶ ବ୍ୟସନ ଉପସ୍ଥିତ ହୋଇଅଛି । ଏଥିରେ ପ୍ରାକୃତ-ଜନତୁଲ୍ୟ ଆପଣଙ୍କର ଶୋକକରିବା ଉଚିତ ନୁହେ । ୪୭ । ପୂର୍ବେ ବିଦୁର-ପ୍ରଭୃତି ପ୍ରାଜ୍ଞ ସୁହୃଦ୍ ବ୍ୟକ୍ତିମାନେ ଆପଣଙ୍କୁ କହିଥିଲେ—ହେ ରାଜନ୍ ! "ଆପଣ ପାଣ୍ଡବମାନଙ୍କୁ ପରିତ୍ୟାଗ କରିବେ ନାହିଁ ।" କିନ୍ତୁ ତାହା ଆପଣ ଶ୍ରବଣ କଲେ ନାହିଁ । ୪୮ । ଯେଉଁ ବ୍ୟକ୍ତି ହିତୈଷୀ ସୁହୃଦ୍‌ମାନଙ୍କର ବାକ୍ୟକୁ ଶ୍ରବଣ ନ କରନ୍ତି, ସେ ଆପଣଙ୍କ ପରି ମହାବ୍ୟସନପ୍ରାପ୍ତ ହୋଇ ଶୋକାର୍ତ୍ତ ହୁଅନ୍ତି । ୪୯ । ମହାଯଶସ୍ୱୀ ଦାଶାର୍ହ କୃଷ୍ଣ ପୂର୍ବେ ସନ୍ଧିନିମିତ୍ତ ଆପଣଙ୍କ ନିକଟରେ ପ୍ରାର୍ଥନା କରିଥିଲେ । କିନ୍ତୁ ସେ ତହିଁରେ କୃତକାର୍ଯ୍ୟ ହୋଇ ପାରିଲେ ନାହିଁ । ୫୦ । ସେ ଆପଣଙ୍କ ନିର୍ଗୁଣତା, ପୁତ୍ରମାନଙ୍କପ୍ରତି ପକ୍ଷପାତ ଓ ପାଣ୍ଡବମାନଙ୍କ ପ୍ରତି ଦ୍ୱୈଧଭାବ, ମାତ୍ସର୍ଯ୍ୟ, କୁଟିଳତା, ଆର୍ତ୍ତ-ପ୍ରଳାପ ଅବଗତ ହୋଇ କୌରବମାନଙ୍କ ବିପକ୍ଷରେ ସମରାନଳ ପ୍ରଜ୍ୱଳିତ କଲେ । ୫୩ ।

ହେ ମହାରାଜ ! ଆପଣଙ୍କର ଅପରାଧରୁ କେବଳ ଏହି ବିପୁଳ ଲୋକକ୍ଷୟ ଉପସ୍ଥିତ ହୋଇଅଛି । ଆପଣ ଏହି ଦୋଷକୁ ଦୁର୍ଯ୍ୟୋଧନଙ୍କ-ଠାରେ ଆରୋପ କରିବେ ନାହିଁ । ୫୪ । ଆପଣ ପ୍ରଥମରେ ଅବା ମଧ୍ୟରେ କିଛିମାତ୍ର ସୁବିବେଚନା କଲେ ନାହିଁ, ବର୍ତ୍ତମାନ କରୁଅଛନ୍ତି, ଏଣୁ ଆପଣ ହିଁ ଏହି ଚରିତର ମୂଳ । ୫୫ । ଅତଏବ ବର୍ତ୍ତମାନ ସ୍ଥିରଚିତ୍ତରେ ଲୋକଙ୍କ ନିତ୍ୟ ସ୍ୱଭାବ ଅବଗତ ହୋଇ ଏହି ଦେବାସୁର ଯୁଦ୍ଧସଦୃଶ ଭୟାନକ ଯୁଦ୍ଧବୃତ୍ତାନ୍ତ ଯେପରି ଘଟିଥିଲା ତାହା ଶ୍ରବଣ କରନ୍ତୁ । ୫୬ ।

ହେ ମହାରାଜ ! ସତ୍ୟବିକ୍ରମ ସାତ୍ୟକି ଆପଣଙ୍କ ସୈନ୍ୟମଧ୍ୟରେ ପ୍ରବେଶ କରନ୍ତେ ଭୀମସେନ ପ୍ରଭୃତି ପାଣ୍ଡବମାନେ ଆପଣଙ୍କ ସୈନ୍ୟ ଉପରେ ଆପତିତ ହେଲେ । ୫୭ । ସେତେବେଳେ ଏକମାତ୍ର ମହାରଥ କୃତବର୍ମ୍ମା ଅନୁଚରଗଣ ସମବେତ କ୍ରୁଦ୍ଧ ଓ ସହସା ଆଗମନକାରୀ ପାଣ୍ଡବ-ମାନଙ୍କୁ ଅବଲୋକନ କରି ସେମାନଙ୍କୁ ଅବରୋଧ କଲେ । ୫୮ । ଯେପରି ବେଳାଭୂମି ଉଚ୍ଛ୍ୱଳିତ ସମୁଦ୍ରକୁ ଅବରୋଧ କରେ, ସେହିପରି ସେ ପାଣ୍ଡବ ସୈନ୍ୟମାନଙ୍କୁ ନିବାରଣ କଲେ । ୫୯ । କୃତବର୍ମ୍ମାଙ୍କର ଏହିପରି ଆଶ୍ଚର୍ଯ୍ୟ ପରାକ୍ରମ ଆମ୍ଭେ ଅବଲୋକନ କଲୁଁ ଯେ ପାଣ୍ଡବପକ୍ଷୀୟ ସମସ୍ତେ ତାହାଙ୍କୁ ଅତିକ୍ରମ କରି ପାରିଲେ ନାହିଁ । ୬୦ । ତଦନନ୍ତର ମହାବାହୁ ଭୀମସେନ କୃତବର୍ମ୍ମାଙ୍କୁ ତିନଗୋଟି ବାଣରେ ବିଦ୍ଧ କରି ପାଣ୍ଡବପକ୍ଷୀୟମାନଙ୍କୁ ହର୍ଷୋତ୍କୃଷ୍ଟ କଲେ । ୬୧ । ତତ୍ପରେ ସହଦେବ ବିଂଶତି ବାଣରେ, ଧର୍ମରାଜ ପଞ୍ଚ-ବାଣରେ, ନକୁଳ ଏକଶତ ବାଣରେ, ଦ୍ରୌପଦୀଙ୍କ ପଞ୍ଚପୁତ୍ରମାନେ ତ୍ରିସପ୍ତତି ବାଣରେ, ଘଟୋତ୍କଚ ସପ୍ତବାଣରେ ଓ ଧୃଷ୍ଟଦ୍ୟୁମ୍ନ ତିନଗୋଟି ବାଣରେ କୃତବର୍ମାଙ୍କୁ ବିଦ୍ଧ କଲେ । ୬୩ । ବିରାଟ ଓ ଦ୍ରୁପଦରାଜା ମଧ୍ୟ ତିନ ତିନି ଗୋଟି ବାଣରେ କୃତବର୍ମ୍ମାଙ୍କୁ ବିଦ୍ଧ କଲେ । ଶିଖଣ୍ଡୀ କୃତବର୍ମାଙ୍କୁ ପଞ୍ଚବାଣରେ ବିଦ୍ଧ କରି ପୁନର୍ବାର ହସି ହସି ବିଂଶତି ବାଣରେ ତାହାଙ୍କୁ ବିଦ୍ଧ କଲେ । ତଦନନ୍ତର କୃତବର୍ମା ସେହି ସମସ୍ତ ବୀରମାନଙ୍କର ପ୍ରତ୍ୟେକଙ୍କୁ ପାଞ୍ଚ ପାଞ୍ଚ ଗୋଟି ଶରଦ୍ୱାରା ବିଦ୍ଧ କରି ସପ୍ତଶରରେ ଭୀମସେନଙ୍କୁ ବିଦ୍ଧକଲେ ଓ ତାହାଙ୍କର ଶରାସନ ଓ ଧ୍ୱଜକୁ ଛେଦନ କରି ରଥରୁ ଧରାତଳରେ ପାତିତ କଲେ । ତତ୍ପରେ ସତ୍ୱର ହୋଇ ଛିନ୍ନଧନ୍ୱା ଭୀମସେନଙ୍କ ବକ୍ଷସ୍ଥଳକୁ ସପ୍ତତିଶାଣିତ ଶରଦ୍ୱାରା ଆଘାତ କଲେ ।୬୭। ଯେପରି ଭୂମିକମ୍ପ ହେଲେ ପର୍ବତ କମ୍ପିତ ହୁଏ ସେହିପରି ବଳବାନ୍ ଭୀମସେନ ହୃଦିକପୁତ୍ରଙ୍କର ପ୍ରବଳ ଶରଘାତରେ ଗାଢ଼ବିଦ୍ଧ ହୋଇ ରଥମଧ୍ୟରେ କମ୍ପିତ ହେଲେ । ୬୮ । ଯୁଧିଷ୍ଠିରପୁରୋବର୍ତ୍ତୀ ଯୋଦ୍ଧାମାନେ ଭୀମସେନଙ୍କୁ ତଦବସ୍ଥ ଦେଖି ଭୟଙ୍କର ବାଣମାନ କୃତବର୍ମାଙ୍କ ଉପରକୁ ନିକ୍ଷେପ କରି ତାହାଙ୍କୁ ପୀଡ଼ିତ କଲେ ।

ସେମାନେ ଭୀମସେନଙ୍କ ରକ୍ଷାର୍ଥ ହର୍ଷସହକାରେ କୃତବର୍ମାଙ୍କୁ ରଥ-ସମୂହଦ୍ୱାରା ପରିବେଷ୍ଟନ କରି ବାଣବିଦ୍ଧ କଲେ । ୭୦ । ପରନ୍ତୁ ମହା-ବଳବାନ୍ ଭୀମସେନ ଅଳ୍ପସମୟରେ ସଂଜ୍ଞାଲାଭ କରି ହେମଦଣ୍ଡଯୁକ୍ତ

ଲୌହମୟ ଗୋଟିଏ ଶକ୍ତି ଗ୍ରହଣପୂର୍ବକ ଦ୍ରୁତବେଗରେ କୃତବର୍ମ୍ମାଙ୍କ ରଥଉପରକୁ ନିକ୍ଷେପ କଲେ । ଭୀମଙ୍କ ଭୁଜନିକ୍ଷିପ୍ତ ସେହି ଶକ୍ତି ମୋକନିର୍ମୁକ୍ତ ସର୍ପସଦୃଶ କୃତବର୍ମ୍ମାଙ୍କ ସମ୍ମୁଖକୁ ପ୍ରଜ୍ୱଳିତ ହୋଇ ଗମନ-କଲା ; କିନ୍ତୁ ହୃଦିକନନ୍ଦନ ଯୁଗାନ୍ତାଗ୍ନିସମ ପ୍ରଭାସମ୍ପନ୍ନ ସେହି ଶକ୍ତିକୁ ସହସା ସମ୍ମୁଖକୁ ଆସିବାର ଦେଖି ଦୁଇଗୋଟି ଶରରେ ତାହାକୁ ଦୁଇଖଣ୍ଡ କରି ଛେଦନ କଲେ । ଯେପରି ମହୋଲ୍କା ନଭୋମଣ୍ଡଳରୁ ପରିଚ୍ୟୁତ ହୋଇ ଦଶ ଦିଗକୁ ପ୍ରକାଶ କରି ପତିତ ହୁଏ ସେହିପରି କନକଭୂଷଣାଳଙ୍କୃତ ସେହିଶକ୍ତି ଛିନ୍ନ ହୋଇ ଧରାତଳରେ ପତିତ ହେଲା । ଶକ୍ତିକୁ ବିଫଳ ହେବାର ନିରୀକ୍ଷଣ କରି ଭୀଷଣ ବଳସମ୍ପନ୍ନ ଭୀମସେନ କ୍ରୁଦ୍ଧ ହୋଇ ମହାଶବ୍ଦଶୀଳ ବେଗବାନ୍ ଅନ୍ୟ ଗୋଟିଏ ଶରାସନ ଗ୍ରହଣପୂର୍ବକ କୃତବର୍ମ୍ମାଙ୍କୁ ଶର-ନିକରରେ ସମାକୀର୍ଣ୍ଣ କରି ପଞ୍ଚବାଣରେ ତାହାଙ୍କର ସ୍ତନାନ୍ତରକୁ ଆଘାତ କଲେ ।

ହେ ମହାରାଜ ! ଏହି ସମସ୍ତ ହତ୍ୟାକାଣ୍ଡ ଆପଣଙ୍କ ଦୁର୍ମନ୍ତ୍ରଣା-ଯୋଗୁଁ ହୋଇଅଛି । ଭୋଜବଂଶନନ୍ଦନ କୃତବର୍ମ୍ମା ଭୀମସେନଙ୍କ କର୍ତ୍ତୃକ ସର୍ବାଙ୍ଗରେ କ୍ଷତବିକ୍ଷତ ହୋଇ ରଣାଙ୍ଗଣରେ ପୁଷ୍ପିତ ରକ୍ତାଶୋକ ବୃକ୍ଷ-ସଦୃଶ ଦୀପ୍ତିପ୍ରାପ୍ତ ହେଲେ । ୭୮ । ତଦନନ୍ତର ସେ କ୍ରୋଧାବିଷ୍ଟ ହୋଇ ତିନିଗୋଟି ବାଣରେ ଭୀମଙ୍କୁ ବିଦ୍ଧ କରି ହସି ହସି ପାଣ୍ଡବପକ୍ଷୀୟ ସମସ୍ତଙ୍କୁ ଦୃଢ଼ବିଦ୍ଧ କଲେ ।୭୯। ମହାଧନୁର୍ଦ୍ଧର କୃତବର୍ମ୍ମା ତିନିତିନି ଗୋଟି ବାଣରେ ଯତ୍ନବାନ ସେହି ମହାରଥୀମାନଙ୍କୁ ବିଦ୍ଧ କଲେ ଓ ସେମାନେ ମଧ୍ୟ ପ୍ରତ୍ୟେକ ସାତସାତଗୋଟି ଶରରେ କୃତବର୍ମ୍ମାଙ୍କୁ ବିଦ୍ଧ କଲେ । ୮୦ । ତତ୍ପରେ ମହାରଥୀ କୃତବର୍ମ୍ମା କ୍ରୁଦ୍ଧଚିତ୍ତ ହୋଇ ହାସ୍ୟମୁଖରେ ଗୋଟିଏ କ୍ଷୁରପ୍ରଦ୍ୱାରା ଶିଖଣ୍ଡୀଙ୍କ ଧନୁକୁ ଛେଦନ କଲେ । ୮୧ ।

ଶିଖଣ୍ଡୀଙ୍କ ଧନୁ ଛିନ୍ନ ହୁଅନ୍ତେ ସେ ସତ୍ୱର କ୍ରୋଧାବିଷ୍ଟ ହୋଇ ଶତଚନ୍ଦ୍ରଯୁକ୍ତ ସ୍ୱର୍ଣ୍ଣବିଭୂଷିତ ସମୁଜ୍ଜ୍ୱଳ ଗୋଟିଏ ଚର୍ମ୍ମ ଓ ଖଡ୍ଗ ଗ୍ରହଣପୂର୍ବକ ସେହି ଖଡ୍ଗକୁ ଘୂର୍ଣ୍ଣାୟମାନ କରି କୃତବର୍ମ୍ମାଙ୍କ ରଥପ୍ରତି ନିକ୍ଷେପ କଲେ ।୮୩। ସେହି ବୃହତ୍ ଖଡ୍ଗ କୃତବର୍ମ୍ମାଙ୍କର ସଶର ଶରାସନ ଛେଦନ କରି ଗଗନମଣ୍ଡଳଚ୍ୟୁତ ଜ୍ୟୋତିଃ ପଦାର୍ଥସଦୃଶ ଧରଣୀ ତଳରେ ପତିତ ହେଲା ।

ସେହି ସମୟରେ ମହାରଥୀ ଶିଖଣ୍ଡୀ ସତ୍ୱର ହୋଇ କୃତବର୍ମ୍ମାଙ୍କୁ ଗାଢ଼ଭାବରେ ବାଣବିଦ୍ଧ କଲେ ।୮୬। ଅନନ୍ତର ପରବୀରହନ୍ତା କୃତବର୍ମ୍ମା ସେହି ଛିନ୍ନ ମହାଶରାସନକୁ ପରିତ୍ୟାଗ କରି ଅନ୍ୟଗୋଟିଏ ଧନୁ ଗ୍ରହଣ-ପୂର୍ବକ ପାଣ୍ଡବମାନଙ୍କର ପ୍ରତ୍ୟେକକୁ ତିନ ତିନ ଗୋଟି ବାଣଦ୍ୱାରା ବିଦ୍ଧ କରି ଶିଖଣ୍ଡୀଙ୍କୁ ତିନଗୋଟି ବାଣରେ ପରେ ପାଞ୍ଚଗୋଟି ବାଣରେ ବିଦ୍ଧ କଲେ । ୮୭ । ମହାଯଶସ୍ୱୀ ଶିଖଣ୍ଡୀ ଅନ୍ୟ ଗୋଟିଏ ଧନୁ ଗ୍ରହଣକରି କୂର୍ମନଖସଦୃଶ ଫଳଯୁକ୍ତ ଶରସମୂହଦ୍ୱାରା କୃତବର୍ମ୍ମାଙ୍କୁ ନିବାରଣ କଲେ । ୮୮। ଅନନ୍ତର ହୃଦିକପୁତ୍ର କୃତବର୍ମ୍ମା ଅତିଶୟ କ୍ରୁଦ୍ଧ ହୋଇ ବଳ ପ୍ରଦର୍ଶନ-ପୂର୍ବକ ଶାର୍ଦ୍ଦୂଳ ହସ୍ତୀପ୍ରତି ଧାବମାନ ହେଲାପ୍ରାୟ ମହାତ୍ମା ଭୀଷ୍ମଙ୍କର ମୃତ୍ୟୁର ହେତୁଭୂତ ମହାରଥୀ ଶିଖଣ୍ଡୀଙ୍କପ୍ରତି ବେଗରେ ଧାବମାନ ହେଲେ । ୯୦ ।

ତତ୍ପରେ ଦିଗ୍‌ଗଜସଦୃଶ ଜ୍ୱଳିତ ଅନଳତୁଲ୍ୟ ଅରିନ୍ଦମ ସେହି ମହାରଥୀଦ୍ୱୟ ପରସ୍ପରକୁ ଶରସମୂହଦ୍ୱାରା ହନନ କରି ସମବେତ ହେଲେ । ୯୧ । ସେ ଦୁହେଁ ପ୍ରବଳ ଶରାସନ ପ୍ରକମ୍ପିତ ଓ ଶତ ଶତ ଶର ସନ୍ଧାନ କରି ଭାସ୍କର କିରଣ ବିସ୍ତାର କଲାପ୍ରାୟ ଶରସମୂହ ବିକିରଣ କଲେ । ୯୨ । ସେହି ଦୁଇବୀର ତୀକ୍ଷ୍ଣ ଶରସମୂହଦ୍ୱାରା ପରସ୍ପରକୁ ପ୍ରପୀଡ଼ିତ କରି ଯୁଗାନ୍ତ-କାଳୀନ ଭାସ୍କରସଦୃଶ ପ୍ରକାଶପ୍ରାପ୍ତ ହେଲେ । ୯୩ । କୃତବର୍ମ୍ମା ମହାରଥୀ ଶିଖଣ୍ଡୀଙ୍କୁ ପ୍ରଥମରେ ତିସପ୍ତତି ବାଣଦ୍ୱାରା ବିଦ୍ଧ କରି ପୁନର୍ବାର ସପ୍ତଶରରେ ବିଦ୍ଧ କଲେ । ୯୪ । ଶିଖଣ୍ଡୀ ତହିଁରେ ଗାଢ଼ବିଦ୍ଧ, ବ୍ୟଥିତ ଓ ମୂର୍ଚ୍ଛାପନ୍ନ ହୋଇ ସଶର ଶରାସନ ପରିତ୍ୟାଗ କରି ରଥମାଡ଼ରେ ଉପବିଷ୍ଟ ହେଲେ । ୯୫ । ସେହି ପୁରୁଷଶ୍ରେଷ୍ଠଙ୍କୁ ରଣରେ ବିକୀର୍ଣ୍ଣ ହେବାର ଦେଖି ଆପଣଙ୍କ-ପକ୍ଷୀୟ ସୈନ୍ୟମାନେ କୃତବର୍ମ୍ମାଙ୍କୁ ଯଥେଷ୍ଟ ପ୍ରଶଂସା କଲେ ଓ ପତାକା-ସମୂହ କମ୍ପିତ କଲେ । ୯୬ । ଶିଖଣ୍ଡୀଙ୍କ ସାରଥୀ ତାହାଙ୍କୁ ଶରପୀଡ଼ିତ ଦେଖି ତ୍ୱରାପୂର୍ବକ ରଣରୁ ଅପସାରିତ କଲେ । ୯୭ ।

ହେ ମହାରାଜ ! ପାଣ୍ଡବମାନେ ଶିଖଣ୍ଡୀଙ୍କୁ ରଥମାଡ଼ରେ ଅବସନ୍ନ ହେବାର ଅବଲୋକନ କରି ଅବିଳମ୍ବେ କୃତବର୍ମ୍ମାଙ୍କୁ ରଥସମୂହଦ୍ୱାରା ସମାବୃତ କଲେ ।୯୮। ସେହିସ୍ଥାନରେ ମହାରଥୀ କୃତବର୍ମ୍ମା ଏହି ଅଦ୍ଭୁତ

କାର୍ଯ୍ୟ କଲେ ଯେ, ସେ ଏକାକୀ ହୋଇ ସମରରେ ପାଣ୍ଡବମାନଙ୍କ ଅନୁଗ-ଗଣସହିତ ନିବାରଣ କଲେ । ୯୯ । ମହାରଥୀ କୃତବର୍ମ୍ମା ପାଣ୍ଡବମାନଙ୍କୁ ପରାଜିତ କରି ମହାବଳବୀର୍ଯ୍ୟଶାଳୀ ଚେଦୀ, ପାଞ୍ଚାଳ, ସୃଞ୍ଜୟ ଓ କେକେୟ-ମାନଙ୍କୁ ପରାଜୟ କଲେ । ୧୦୦ । ପାଣ୍ଡବମାନେ ସମରରେ କୃତବର୍ମ୍ମାଙ୍କ କର୍ତ୍ତୃକ ହନ୍ୟମାନ ହୋଇ ଧୈର୍ଯ୍ୟାବଲମ୍ବନ କରି ନପାରି ଇତସ୍ତତଃ ଧାବମାନ ହେଲେ । କୃତବର୍ମ୍ମା ଭୀମସେନ ପୁରୋବର୍ତ୍ତୀ ପାଣ୍ଡବମାନଙ୍କୁ ପରାଜିତ କରି ବିଧୂମ ପାବକସଦୃଶ ସମରରେ ଅବସ୍ଥିତ ହେଲେ । ୧୦୨। ସେହି ମହାରଥମାନେ କୃତବର୍ମ୍ମାଙ୍କ ଶରବୃଷ୍ଟିଦ୍ୱାରା ଆହତ ହୋଇ ଧାବମାନ ଓ ରଣବିମୁଖ ହେଲେ । ୧୦୩ ।

---

## ୧୧୫ ଅଧ୍ୟାୟ

ସଞ୍ଜୟ କହିଲେ—ହେ ଭୂପାଳ ! ଆପଣ ଆମ୍ଭଙ୍କୁ ଯାହା ପଚାରିଲେ ତାହା ଏକମନା ହୋଇ ଶ୍ରବଣ କରନ୍ତୁ । ସେହି ପାଣ୍ଡବସୈନ୍ୟମାନେ କୃତବର୍ମ୍ମାଙ୍କ ଶରପ୍ରହାରରେ ବିଦ୍ରାବିତ ଓ ଲଜ୍ଜାରେ ଏକାନ୍ତ ଅବନତ ହୁଅନ୍ତେ ଆପଣଙ୍କପକ୍ଷୀୟ ବୀରମାନେ ଅତିଶୟ ହର୍ଷ ପ୍ରକାଶ କଲେ । ସେହି ସମୟରେ ଅଗାଧ ସୈନ୍ୟସମୁଦ୍ର ମଧ୍ୟରେ ଆଶ୍ରୟଲାଭାର୍ଥୀ ପାଣ୍ଡବମାନଙ୍କର ଯେ ଦ୍ୱୀପସ୍ୱରୂପ ହୋଇଥିଲେ, ସେହି ମହାବୀର ସାତ୍ୟକି କୌରବପକ୍ଷୀୟ ଯୋଦ୍ଧାମାନଙ୍କର ଭୟଙ୍କର ନିନାଦ ଶ୍ରବଣ କରି କୃତବର୍ମ୍ମାଙ୍କପ୍ରତି ସତ୍ୱର ଧାବମାନ ହେଲେ । ୩ । ଅମର୍ଷସମନ୍ୱିତ ସାତ୍ୟକି ସାରଥିଙ୍କୁ କହିଲେ, ହେ ସୂତ ! ହାର୍ଦ୍ଦିକ୍ୟଙ୍କ ଅଭିମୁଖକୁ ଆମ୍ଭର ରଥୋତ୍ତମକୁ ଚାଳନା କର । ୪ । ଦେଖ, ସେ କ୍ରୁଦ୍ଧ ହୋଇ ପାଣ୍ଡବ ସୈନ୍ୟମାନଙ୍କୁ ପ୍ରପୀଡ଼ିତ କରୁଅଛନ୍ତି । ଅତଏବ ତାହାଙ୍କୁ ପ୍ରଥମ ଜୟକରି ପୁନର୍ବାର ଧନଞ୍ଜୟଙ୍କ ନିକଟକୁ ଗମନ କରିବୁଁ । ୫ ।

ହେ ମହାମତି କୁରୁନନ୍ଦନ ! ସାତ୍ୟକିଙ୍କ କର୍ତ୍ତୃକ ଏହିପରି ଉକ୍ତ ହୁଅନ୍ତେ, ସାରଥି ନିମେଷ ମାତ୍ରକେ ରଥଚାଳନାକରି କୃତବର୍ମ୍ମାଙ୍କ ନିକଟରେ ଉପସ୍ଥିତ ହେଲେ । ୬ । କୃତବର୍ମ୍ମା ମଧ୍ୟ ଅତି କ୍ରୁଦ୍ଧ ହୋଇ ସୁଶାଣିତ ଶର-ସମୂହଦ୍ୱାରା ସାତ୍ୟକିଙ୍କୁ ସମାଚ୍ଛନ୍ନ କଲେ । ତହୁଁ ସାତ୍ୟକି କ୍ରୋଧାବିଷ୍ଟ

ହୋଇ ସମରରେ ସୁଶାଣିତ ଗୋଟିଏ ଭଲ୍ଲ ଓ ଅପର ଚାରିଗୋଟି ଶର କୃତବର୍ମାଙ୍କ ଉପରକୁ ନିକ୍ଷେପ କଲେ । ସେହି ଚାରିଗୋଟି ଶରଦ୍ୱାରା କୃତବର୍ମାଙ୍କର ଚାରିଗୋଟି ଅଶ୍ୱ ନିହତ ଓ ଭଲ୍ଲଦ୍ୱାରା ତାହାଙ୍କର ଶର ଛିନ୍ନ ହେଲା । ଅନନ୍ତର ସାତ୍ୟକ ସୁଶାଣିତ ଶରସମୂହଦ୍ୱାରା ତାହାଙ୍କ ପୃଷ୍ଠରକ୍ଷକ ଓ ସାରଥିଙ୍କୁ ବଧ କଲେ । ୯ । ତତ୍ପରେ ତାହାଙ୍କୁ ରଥବିହୀନ କରି ସନ୍ନତପର୍ବ ଶରସମୂହଦ୍ୱାରା ତାହାଙ୍କର ସୈନ୍ୟମାନଙ୍କୁ ପୀଡ଼ିତ କଲେ । ୧୦ । ସୈନ୍ୟମାନେ ସାତ୍ୟକଙ୍କର ଶରନିକରରେ ପୀଡ଼ିତ ହୋଇ ଭଗ୍ନ ହୋଇଗଲେ । ସାତ୍ୟକ ମଧ୍ୟ ତ୍ୱରାନ୍ୱିତ ହୋଇ ସେଠାରୁ ପ୍ରସ୍ଥାନ କଲେ । ୧୧ ।

ହେ ମହାରାଜ ! ବୀର୍ଯ୍ୟବାନ୍ ସାତ୍ୟକ ତତ୍ପରେ ଆପଣଙ୍କ ସୈନ୍ୟ-ମଧ୍ୟରେ ଯାହା କଲେ ତାହା ଶ୍ରବଣ କରନ୍ତୁ । ସେ ଦ୍ରୋଣଙ୍କ ସୈନ୍ୟସାଗରକୁ ଉତ୍ତୀର୍ଣ୍ଣ ହୋଇ କୃତବର୍ମାଙ୍କୁ ଯୁଦ୍ଧରେ ପରାଜୟପୂର୍ବକ ହୃଷ୍ଟଚିତ୍ତରେ ସାରଥିକୁ କହିଲେ ଯେ, ତୁମ୍ଭେ ନିର୍ଭୀକଚିତ୍ତରେ ଶନୈଃ ଶନୈଃ ଗମନ କର । ୧୩। ଆପଣଙ୍କର ରଥ, ଅଶ୍ୱ, ହସ୍ତୀ ଓ ପଦାତିସଙ୍କୁଳ ସେହି ସୈନ୍ୟଙ୍କୁ ଅବଲୋକନ କରି ପୁନର୍ବାର ସାରଥିକୁ କହିଲେ, "ଦ୍ରୋଣସୈନ୍ୟର ବାମ-ଭାଗରେ ଏହି ଯେଉଁ ମେଘତୁଲ୍ୟ ବୃହତ୍‌ହସ୍ତୀସୈନ୍ୟ ଓ ତାହାର ଅଗ୍ର-ଭାଗରେ ରୁକ୍ମରଥ ଅବସ୍ଥିତ କରିଅଛି", ସେମାନେ ସମସ୍ତେ ଯୁଦ୍ଧରେ ଦୁର୍ନିବାର୍ଯ୍ୟ ଓ ଦୁର୍ଯ୍ୟୋଧନଙ୍କ ଆଦେଶାନୁସାରେ ଆମ୍ଭ ନିମିତ୍ତ ପ୍ରାଣତ୍ୟାଗ କରିବାକୁ କୁଣ୍ଠିତ ହେବେ ନାହିଁ । ୧୬ । ପୁଣି ତ୍ରିଗର୍ତ୍ତଦେଶୀୟ, ସୁବର୍ଣ୍ଣ-ଭୂଷିତଧ୍ୱଜସମ୍ପନ୍ନ ଯେଉଁ ରାଜପୁତ୍ରମାନେ ଅବସ୍ଥିତ କରିଅଛନ୍ତି ସେମାନେ ସମସ୍ତେ ମହାଧନୁର୍ଦ୍ଧର, ମହାରଥୀ, ବିକ୍ରମଶୀଳ ଓ ଯୋଦ୍ଧା ଅଟନ୍ତି । ୧୭ । ଏହି ବୀରମାନେ ଆମ୍ଭସହିତ ଯୁଦ୍ଧ କରିବା ନିମିତ୍ତ ଆମ୍ଭପ୍ରତି ଅଭିମୁଖୀନ ହୋଇ ରହିଅଛନ୍ତି । ତୁମ୍ଭେ ସେହି ସ୍ଥାନକୁ ଆମ୍ଭଙ୍କୁ ଶୀଘ୍ର ନିଅ । ଶୀଘ୍ର ଅଶ୍ୱଚାଳନା କର, ଆମ୍ଭେ ସେହି ତ୍ରିଗର୍ତ୍ତଙ୍କ ସହିତ ଦ୍ରୋଣଙ୍କ ସାକ୍ଷାତରେ ଯୁଦ୍ଧ କରିବୁଁ ।

ହେ ମହାରାଜ ! ତଦନନ୍ତର ସାରଥୀ ସାତ୍ୟକଙ୍କ ଅନୁମତି କ୍ରମେ ଶନୈଃ ଶନୈଃ ଗମନ କଲେ । ୧୯ । ବାୟୁତୁଲ୍ୟବେଗଶୀଳ ପ୍ରୁ ତଗନ୍ଧା

କୁନ୍ଦଇନ୍ଦୁ ବା ରଜତବର୍ଣ୍ଣ ଉତ୍ତମ ଅଶ୍ୱଚତୁଷ୍ଟୟ ସାରଥିର ବଶବର୍ତ୍ତୀ ହୋଇ ସାତ୍ୟକଙ୍କୁ ବହନ କଲେ । ତହୁଁ ଲଘୁହସ୍ତଯୋଧୀ ଶୂରମାନେ ଶଙ୍ଖବର୍ଣ୍ଣ ଅଶ୍ୱଦ୍ୱାରା ସାତ୍ୟକଙ୍କୁ ଆଗମନ କରିବାର ଦେଖି ବିବିଧ ଶରସମୂହ ବିକରଣ କରି ଗଜସୈନ୍ୟଦ୍ୱାରା ତାହାଙ୍କୁ ପରିବେଷ୍ଟନ କଲେ । ୨୨ । ଯେପରି ଗ୍ରୀଷ୍ମକାଳର ଅବସାନରେ ମହାମେଘ ପର୍ବତଉପରେ ବାରି ବର୍ଷଣ କରେ ସେହିପରି ସାତ୍ୟକ ମଧ ସେହି ଗଜସୈନ୍ୟମାନଙ୍କ ଉପରେ ଶାଣିତ ବାଣ ବର୍ଷଣ କରି ଯୁଦ୍ଧ କଲେ । ୨୩ । ହସ୍ତିମାନେ ଶିନିବୀରନିକ୍ଷିପ୍ତ ବଜ୍ର ଓ ଅଶନିସମସ୍ପର୍ଶ ଶରସମୂହଦ୍ୱାରା ବଧ୍ୟମାନ ହୋଇ ଦିକ୍‌ବିଦିଗ୍‌କୁ ପଳାୟନ କଲେ । ୨୪ । ସେହି ସମସ୍ତ ଧାବମାନ ଗଜମାନଙ୍କ ମଧ୍ୟରେ କାହାର ଅଙ୍ଗ ରୁଧିରକ୍ତ, କାହାର ଦନ୍ତ ବିଶୀର୍ଣ୍ଣ, କାହାର କୁମ୍ଭ ନିର୍ଭିନ୍ନ, କାହାର ଅବକର୍ଣ୍ଣ, କାହାର ଅବମୁଖ ଓ ଶୁଣ୍ଡ ବିଦୀର୍ଣ୍ଣ, କାହାର ନିୟନ୍ତା ଓ ପତାକାଭ୍ରଷ୍ଟ, କାହାର କାହାର ବର୍ମ ଓ ଘଣ୍ଟା ଛିନ୍ନ, କାହାର ମହାଧ୍ୱଜ କର୍ତ୍ତିତ, କାହାର ଆସ୍ତରଣ ପରିଭ୍ରଷ୍ଟ ଏବଂ କାହାର ଅବା ଆରୋହୀ ନଷ୍ଟ ହେଲେ । ୨୬ ।

ହସ୍ତିମାନେ ସାତ୍ୟକନିକ୍ଷିପ୍ତ ନାରାଚ, ବତ୍ସଦନ୍ତ, ଭଲ୍ଲ ଓ ଅଞ୍ଜଳିକ କ୍ଷୁରପ୍ର ଓ ଅର୍ଦ୍ଧଚନ୍ଦ୍ର ବାଣଦ୍ୱାରା ବିଦୀର୍ଣ୍ଣ ହୋଇ ବହୁବିଧ ମେଘଗର୍ଜନସଦୃଶ ନିନାଦିତ କରି କରି ରୁଧିରଧାରା ଓ ମୂତ୍ର ପୁରୀଷ ପରିତ୍ୟାଗପୂର୍ବକ ଧାବମାନ ହେଲେ । ୨୯ । ଅନେକ ହସ୍ତୀ ଭ୍ରମଣ କଲେ ଓ କେତେକେ ସ୍ଖଳିତ ମ୍ଳାନ ଓ ପତିତ ହେଲେ । ଏହିପରି ସାତ୍ୟକଙ୍କ ଅଗ୍ନି ଓ ସୂର୍ଯ୍ୟ-ସଦୃଶତେଜସ୍ୱୀ ଶରନିକରଦ୍ୱାରା ସନ୍ତପ୍ତ ହୋଇ ଗଜସୈନ୍ୟମାନେ ଚତୁର୍ଦ୍ଦିଗକୁ ପଳାୟନ କଲେ ।

ହେ ମହାରାଜ ! ଏହିପରି ସେହି ଗଜସୈନ୍ୟମାନେ ନିହତ ହୁଅନ୍ତେ ମହାବଳ ପବିତ୍ରବେଶଧାରୀ ଶୌର୍ଯ୍ୟସମ୍ପନ୍ନ ସୁବର୍ଣ୍ଣବର୍ଣ୍ଣରଥାରୋହୀ, ଜଳସନ୍ଧ ସାତ୍ୟକଙ୍କ ରଜତବର୍ଣ୍ଣ ଅଶ୍ୱସଂଯୁକ୍ତ ରଥପ୍ରତି ଆପଣାର ହସ୍ତିକୁ ଚାଳନା କଲେ । ଅଙ୍ଗଦ-କୁଣ୍ଡଳ-କିରୀଟ ଓ ଶଙ୍ଖଧାରୀ ରକ୍ତଚନ୍ଦନଲିପ୍ତାଙ୍ଗ ଜଳସନ୍ଧ ମସ୍ତକରେ ସୁବର୍ଣ୍ଣମୟ ସମୁଜ୍ଜ୍ୱଳ ମାଳୀ ହୃଦୟରେ ନିଷ୍କ ଓ ଦ୍ରଢଧ୍ୱ-

କଣ୍ଠସୂତ୍ର ଧାରଣ କରିଥିଲେ । ସେ ଗଜମସ୍ତକରେ ସୁବର୍ଣ୍ଣମୟ ଶରାସନକୁ ପ୍ରକମ୍ପିତ କରି ସବିଦ୍ୟୁତ୍ ମେଘସଦୃଶ ଶୋଭମାନ ହେଲେ ।

ସାତ୍ୟକି ମଗଧରାଜ ଜଳସନ୍ଧଙ୍କର ହସ୍ତୀଶ୍ରେଷ୍ଠକୁ ସହସା ଆଗମନ କରିବାର ଅବଲୋକନ କରି ବେଳାଭୂମି ସମୁଦ୍ଧତ ସାଗରକୁ ନିବାରଣ କଲପ୍ରାୟ ସେହି ହସ୍ତିକୁ ନିବାରଣ କଲେ । ମହାବାହୁ ମହାବଳବାନ୍ ଜଳସନ୍ଧ ଆପଣାର ହସ୍ତିକୁ ସାତ୍ୟକିଙ୍କର ଶରନିକରରେ ନିବାରିତ ହେବାର ନିରୀକ୍ଷଣ କରି କ୍ରୋଧାବିଷ୍ଟ ହୋଇ ଭାରସାଧନ ଶରସମୂହଦ୍ୱାରା ଶିନି-ପୌତ୍ରଙ୍କର ବକ୍ଷସ୍ଥଳ ବିଦ୍ଧ କଲେ । ତତ୍ପରେ ଶାଣିତ ପୀତ ଗୋଟିଏ ଭଲ୍ଲଦ୍ୱାରା ସାତ୍ୟକିଙ୍କର ବାଣ ନିକ୍ଷେପ ସମୟରେ ତାହାଙ୍କ ଶରାସନ ଛେଦନ କଲେ । ସାତ୍ୟକି ଛିନ୍ନଧନ୍ୱା ହୋଇଥିଲେ ହେଁ ମାଗଧବୀର ଜଳସନ୍ଧ ହସି ହସି ପାଞ୍ଚଗୋଟି ଶାଣିତ ବାଣରେ ତାହାଙ୍କୁ ବିଦ୍ଧ କଲେ । ବୀର୍ଯ୍ୟବାନ୍ ସାତ୍ୟକି ଜଳସନ୍ଧଙ୍କକର୍ତ୍ତୃକ ବହୁଳ ବାଣରେ ବିଦ୍ଧ ହୋଇ ମଧ୍ୟ ବିଚଳିତ ହେଲେ-ନାହିଁ । ତାହା ଅଦ୍ଭୁତ ସଦୃଶ ହେଲା । ସେ ଅତିଶୟ ଭ୍ରାନ୍ତ ନ ହୋଇ ଓ ଜଳସନ୍ଧଙ୍କ ନିକ୍ଷିପ୍ତ ବାଣମାନଙ୍କୁ ଗଣ୍ୟ ନ କରି ଅନ୍ୟ ଗୋଟିଏ ଧନୁ-ଗ୍ରହଣପୂର୍ବକ ରହ ରହ ବୋଲି ହାସ୍ୟମୁଖରେ ଜଳସନ୍ଧଙ୍କ ବିଶାଳ ବକ୍ଷ ସ୍ଥଳକୁ ଷାଠିଏଗୋଟି ବାଣରେ ଅତିଶୟ ବିଦ୍ଧ କଲେ । ଶାଣିତ ଓ ପୀତ ଗୋଟିଏ କ୍ଷୁରପ୍ରଦ୍ୱାରା ତାହାଙ୍କର ମହାଧନୁର ମୁଷ୍ଟିପ୍ରଦେଶ ଛେଦନ କରି ତିନିଗୋଟି ଶରରେ ତାହାଙ୍କୁ ବିଦ୍ଧ କଲେ । ତଦନନ୍ତର ଜଳସନ୍ଧ ସେହି ଛିନ୍ନ ସଶର ଶରାସନକୁ ପରିତ୍ୟାଗ କରି ସାତ୍ୟକିଙ୍କ ପ୍ରତି ଶୀଘ୍ର ଗୋଟିଏ ତୋମର ନିକ୍ଷେପ କଲେ । ମାଗଧବୀର ଜଳସନ୍ଧଙ୍କଦ୍ୱାରା ନିକ୍ଷିପ୍ତ ଗର୍ଜନକାରୀ ଭୟଙ୍କର ମହାଭୁଜଙ୍ଗସଦୃଶ ସେହି ତୋମର ସାତ୍ୟକିଙ୍କର ବାମଭୁଜକୁ ଭେଦକରି ଧରଣୀ ମଧ୍ୟରେ ପ୍ରବେଶ କଲା । ସତ୍ୟବିକ୍ରମ ସାତ୍ୟକିଙ୍କର ବାମହସ୍ତ ନିର୍ଭିନ୍ନ ହେଲେ ମଧ୍ୟ ସେ ତିରିଶଗୋଟି ତୀକ୍ଷ୍ଣ ଶରଦ୍ୱାରା ଜଳସନ୍ଧକୁ ପ୍ରହାର କଲେ ।

ଅନନ୍ତର ମହାବଳବାନ୍ ଜଳସନ୍ଧ ଶତଚନ୍ଦ୍ରଶୋଭିତ ପ୍ରଦୀପ୍ତ ଗୋଟିଏ ମହତ୍ ଆର୍ଷଭ ଚର୍ମ ଓ ଖଡ୍ଗ ଗ୍ରହଣପୂର୍ବକ ସେହି ଖଡ୍ଗକୁ ଭ୍ରମଣ କରାଇ ସାତ୍ୟକିଙ୍କ ଉପରକୁ ନିକ୍ଷେପ କଲେ । ୪୭ । ସେହି ନିକ୍ଷିପ୍ତ ଖଡ୍ଗ

ସାତ୍ୟକଙ୍କ ଧନୁରୁ ଚ୍ଛେଦନପୂର୍ବକ ଅଳାତଚକ୍ରସଦୃଶ ପ୍ରଦୀପ୍ତ ଓ ପଣ୍ଡିତ ହୋଇ ଧରାତଳରେ ଶୋଭମାନ ହେଲା । ୪୮ । ଅନନ୍ତର ମଧୁକୁଳସତ୍ତମ ସାତ୍ୟକ କ୍ରୁଦ୍ଧ ହୋଇ ଶାଳସ୍ତମ୍ଭସଦୃଶ ଇନ୍ଦ୍ରଙ୍କ ଅଶନିସମ ଶବ୍ଦଶୀଳ, ପରକାୟବିଦାରଣ ଅପର ଗୋଟିଏ ଶରାସନ ଗ୍ରହଣ ଓ ବିସ୍ତାରଣ କରି ଗୋଟିଏ ଶରରେ ଜଳସନ୍ଧଙ୍କୁ ବିଦ୍ଧ କଲେ । ଅନନ୍ତର ହସି ହସି ଦୁଇଗୋଟି କ୍ଷୁରାସ୍ତ୍ରଦ୍ୱାରା ଜଳସନ୍ଧଙ୍କର ଭୂଷଣବିଭୂଷିତ ବାହୁଦ୍ୱୟକୁ ଚ୍ଛେଦନ କଲେ । ଯେପରି ପର୍ବତଉପରୁ ପଞ୍ଚଶୀର୍ଷ ସର୍ପଦ୍ୱୟ ପରିଭ୍ରଷ୍ଟ ହୁଅନ୍ତି, ସେହିପରି ତାହାଙ୍କର ପରିଘତୁଲ୍ୟ ବାହୁଦ୍ୱୟ ଶ୍ରେଷ୍ଠହସ୍ତୀ ଉପରୁ ପତିତ ହେଲା । ଅନନ୍ତର ସାତ୍ୟକ ଅନ୍ୟ ଗୋଟିଏ କ୍ଷୁରାସ୍ତ୍ରଦ୍ୱାରା ଜଳସନ୍ଧଙ୍କର ମନୋହର ନାସିକା ଓ ଦନ୍ତଶୋଭିତ ସୁବୃତ୍ତ କୁଣ୍ଡଳାଳଙ୍କୃତ ଶୋଭମାନ ମସ୍ତକ ଚ୍ଛେଦନ କଲେ ।

ଜଳସନ୍ଧଙ୍କର ଦେହରୁ ବାହୁଦ୍ୱୟ ଓ ମସ୍ତକ ଛିନ୍ନହୋଇ ପତିତ ହୁଅନ୍ତେ ସେହି ଦେହରୂପ ଭୟାନକ କବନ୍ଧ ତାହାଙ୍କ ହସ୍ତୀକୁ ରୁଧିରସିକ୍ତ କଲା । ସାତ୍ୟକ ଜଳସନ୍ଧଙ୍କୁ ସଂଗ୍ରାମରେ ସଂହାର କରି ଭୂରିସହ ତାହାଙ୍କର ମହାମାତ୍ରକୁ ଗଜସ୍କନ୍ଧରୁ ନିପାତିତ କଲେ । ଜଳସନ୍ଧଙ୍କର ବୃହତ୍ ହସ୍ତୀ ସାତ୍ୟକଙ୍କ ଶରରେ ପ୍ରପୀଡ଼ିତ ଓ ରୁଧିରାକ୍ତ ହୋଇ ତଦୁପରି ସଂଲଗ୍ନ ଲମ୍ବମାନ ଉତ୍କୃଷ୍ଟ ଆସନକୁ ବହନ କରି ଘୋରତର ଆର୍ତ୍ତନାଦପୂର୍ବକ ସ୍ୱପକ୍ଷୀୟ ସୈନ୍ୟମାନଙ୍କୁ ବିମର୍ଦ୍ଦିତ କରି ଧାବମାନ ହେଲା । ଜଳସନ୍ଧଙ୍କୁ ବୃଷ୍ଣିପ୍ରବର ସାତ୍ୟକଙ୍କକର୍ତ୍ତୃକ ନିହତ ହେବାର ନିରୀକ୍ଷଣ କରି ଆପଣଙ୍କ ସୈନ୍ୟମଧ୍ୟରେ ମହା ହାହାକାର ଶବ୍ଦ ହେଲା । ଆପଣଙ୍କପକ୍ଷୀୟ ଯୋଦ୍ଧାମାନେ ଶତ୍ରୁଜୟରେ ନିରୁତ୍ସାହ, ପଳାୟନରେ ଉତ୍ସାହୀ ଓ ରଣବିମୁଖ ହୋଇ ଚତୁର୍ଦ୍ଦିଗକୁ ଧାବମାନ ହେଲେ ।

ହେ ମହାରାଜ ! ଏହି ସମୟରେ ଶସ୍ତ୍ରଧାରିଶ୍ରେଷ୍ଠ ଦ୍ରୋଣ ବେଗବାନ୍ ଅଶ୍ୱଦ୍ୱାରା ମହାରଥୀ ସାତ୍ୟକଙ୍କ ସମୀପରେ ଉପସ୍ଥିତ ହେଲେ । କୁରୁପ୍ରଧାନଗଣ ଶିନିପ୍ରଧାନ ସାତ୍ୟକଙ୍କୁ ସମରରେ ସମୁଦ୍ଧତ ସନ୍ଦର୍ଶନ କରି କ୍ରୁଦ୍ଧ ଚିତ୍ତରେ ଦ୍ରୋଣଙ୍କସହିତ ତାହାଙ୍କ ସମୀପକୁ ଧାବମାନ ହେଲେ ।

ତଦନନ୍ତର ସାତ୍ୟକଙ୍କ ସହିତ ଦ୍ରୋଣ ଓ କୁରୁବୀରମାନଙ୍କର ଦେବାସୁର ଯୁଦ୍ଧସଦୃଶ ଘୋରଯୁଦ୍ଧ ଆରମ୍ଭ ହେଲା । ୬୧ ।

---

# ୧୧୬ ଅଧ୍ୟାୟ

ସଞ୍ଜୟ କହିଲେ—ହେ ମହାରାଜ ! ପ୍ରହାରପଟୁ କୌରବମାନେ ସମସ୍ତେ ସନ୍ନଦ୍ଧ ଓ ସତ୍ୱର ହୋଇ ସାତ୍ୟକଙ୍କ ସହିତ ଯୁଦ୍ଧାରମ୍ଭ କଲେ । ୧ । ଦ୍ରୋଣ ସୁଶାଣିତ ସପ୍ତସପ୍ତତି, ଦୁର୍ମର୍ଷଣ ଦ୍ୱାଦଶ, ଦୁଃସହ ଦଶ ଏବଂ ବିକର୍ଣ୍ଣ କଙ୍କପତ୍ରଯୁକ୍ତ ଶାଣିତ ତ୍ରିଂଶତ ଶରଦ୍ୱାରା ସାତ୍ୟକଙ୍କ ବାମପାର୍ଶ୍ୱ ଓ ହୃଦୟକୁ ବିଦ୍ଧ କଲେ । ୩ । ଦୁର୍ମୁଖ ଦଶଗୋଟି, ଦୁଃଶାସନ ଆଠଗୋଟି ଓ ଚିତ୍ରସେନ ଦୁଇଗୋଟି ବାଣରେ ସାତ୍ୟକଙ୍କୁ ବିଦ୍ଧ କଲେ । ଦୁର୍ଯ୍ୟୋଧନ ଓ ଅନ୍ୟାନ୍ୟ ମହାରଥିମାନେ ଅତିଶୟ ଶରବର୍ଷଣ କରି ତାହାଙ୍କୁ ପୀଡ଼ିତ କଲେ । ୫ ।

ସେହି ମହାରଥୀ ଆପଣଙ୍କ ପୁତ୍ରମାନଙ୍କକର୍ତ୍ତୃକ ସର୍ବପ୍ରକାରରେ ପ୍ରତିବିଦ୍ଧ ହୋଇ ସେମାନଙ୍କର ପ୍ରତ୍ୟେକଙ୍କୁ ପୃଥକ୍ ପୃଥକ୍‌ରୂପେ ଶରସମୂହ-ଦ୍ୱାରା ବିଦ୍ଧ କଲେ । ୬ । ଦ୍ରୋଣଙ୍କୁ ତିନଗୋଟି, ଦୁଃଶାସନକୁ ଦଶଗୋଟି, ବିକର୍ଣ୍ଣଙ୍କୁ ପଚଶଗୋଟି, ଚିତ୍ରସେନକୁ ସାତଗୋଟି, ଦୁର୍ମର୍ଷଣକୁ ବାରଗୋଟି, ବିବିଂଶତିକୁ ଆଠଗୋଟି, ସତ୍ୟବ୍ରତକୁ ନଅଗୋଟି ଓ ବିଜୟକୁ ଦଶଗୋଟି ଶରରେ ବିଦ୍ଧ କଲେ । ୮ । ତଦନନ୍ତର ମହାରଥୀ ସାତ୍ୟକି ସ୍ୱର୍ଣ୍ଣ ଅଙ୍ଗଦ-ଭୂଷିତ ଶରାସନକୁ ପ୍ରକମ୍ପିତ କରି ସର୍ବଲୋକର ରାଜା ସର୍ବଶସ୍ତ୍ରଧାରୀଶ୍ରେଷ୍ଠ ଆପଣଙ୍କ ମହାରଥୀ ପୁତ୍ରଙ୍କ ଅଭିମୁଖକୁ ଶୀଘ୍ର ଗମନ କରି ତାହାଙ୍କୁ ଶରସମୂହଦ୍ୱାରା ଗାଢ଼ଭାବରେ ଆହତ କଲେ ।

ତତ୍ପରେ ସେ ଦୁହିଁଙ୍କ ମଧ୍ୟରେ ଯୁଦ୍ଧ ଆରମ୍ଭ ହେଲା । ସେହି ମହାରଥୀଦ୍ୱୟ ଶରାସନ ଧାରଣ କରି ତୀକ୍ଷ୍ଣ ତୀକ୍ଷ୍ଣ ଶରସମୂହ ନିକ୍ଷେପ-ପୂର୍ବକ ପରସ୍ପରକୁ ସମରରେ ଅଦୃଶ୍ୟ କଲେ । ୧୧ । ଯେପରି ରକ୍ତଚନ୍ଦନ ବୃକ୍ଷ ସ୍ୱକୀୟ ରସ କ୍ଷରଣ କରେ ସେହିପରି ସାତ୍ୟକି କୁରୁରାଜଙ୍କ କର୍ତ୍ତୃକ

ନିର୍ବିଦ୍ଧ ହୋଇ ରୁଧିରସ୍ରାବ କରି ଅତିଶୟ ଶୋଭମାନ ହେଲେ । ୧୨ । ଆପଣଙ୍କ ପୁତ୍ର ମଧ୍ୟ ସାତ୍ୟକଙ୍କକର୍ତ୍ତୃକ ଶରନିକରରେ ନିର୍ଭିନ୍ନ ହୋଇ ସ୍ୱର୍ଣ୍ଣମୟ ଭୂଷଣରେ ବିଭୂଷିତ ଉଚ୍ଛ୍ରିତ ପ୍ରଫୁଲ୍ଲ ଯଷ୍ଟିପ୍ରାପ୍ତ ହେଲେ । ୧୩ । ମଧୁକୁଳନନ୍ଦନ ହସି ହସି କୁରୁରାଜଙ୍କ ଧନୁକୁ ଗୋଟିଏ କ୍ଷୁରପ୍ରଦ୍ୱାରା ଛେଦନ କରି ତାହାଙ୍କୁ ବହୁଶରଦ୍ୱାରା ବିଦ୍ଧ କଲେ । କୁରୁରାଜ ଦୁର୍ଯ୍ୟୋଧନ ଲଘୁହସ୍ତ ଶତ୍ରୁଙ୍କକର୍ତ୍ତୃକ ନିର୍ଭିନ୍ନ ହୋଇ ଶତ୍ରୁବିଜୟ ଲକ୍ଷଣକୁ ସହନ କରି ପାରିଲେ ନାହିଁ । ସେ ହେମପୃଷ୍ଠ ଦୁରାସଦ ଅନ୍ୟ ଗୋଟିଏ ଶରାସନ ଗ୍ରହଣ କରି ସହସା ସାତ୍ୟକଙ୍କୁ ଏକଶତ ଶରରେ ଶୀଘ୍ର ବିଦ୍ଧ କଲେ । ସାତ୍ୟକି ବଳବାନ୍ ଓ ଧନୁର୍ଦ୍ଧର ଆପଣଙ୍କ ପୁତ୍ରକର୍ତ୍ତୃକ ଅତିବିଦ୍ଧ ଓ କ୍ରୋଧବଶବର୍ତ୍ତୀ ହୋଇ ଆପଣଙ୍କ ପୁତ୍ରଙ୍କୁ ପୀଡ଼ିତ କଲେ ।

ଆପଣଙ୍କ ମହାରଥୀ ପୁତ୍ରମାନେ ରାଜା ଦୁର୍ଯ୍ୟୋଧନଙ୍କୁ ପୀଡ଼ିତ ହେବାର ଦେଖି ବଳପୂର୍ବକ ସାତ୍ୟକଙ୍କୁ ଶରବର୍ଷଣଦ୍ୱାରା ସମାଚ୍ଛନ୍ନ କଲେ । ମହାଯଶା ସାତ୍ୟକି ଆପଣଙ୍କ ମହାରଥୀ ପୁତ୍ରମାନଙ୍କଦ୍ୱାରା ଶରସମୂହରେ ସମାଚ୍ଛନ୍ନ ହୋଇ ସେମାନଙ୍କର ପ୍ରତ୍ୟେକଙ୍କୁ ପାଞ୍ଚ ପାଞ୍ଚଗୋଟି ବାଣଦ୍ୱାରା ବିଦ୍ଧ କରି ପୁନର୍ବାର ସାତ ସାତଗୋଟି ବାଣରେ ବିଦ୍ଧ କଲେ ଓ ଦୁର୍ଯ୍ୟୋଧନଙ୍କୁ ତ୍ୱରାପୂର୍ବକ ଆଠଗୋଟି ବାଣରେ ବିଦ୍ଧ କରି ହସି ହସି ବହୁଶରଦ୍ୱାରା ତାହାଙ୍କ ଶତ୍ରୁର ଭୀଷଣ ଶରାସନକୁ ଛେଦନପୂର୍ବକ ତାହାଙ୍କର ରତ୍ନମୟ ନାଗଧ୍ୱଜ ନିପାତିତ କଲେ । ୨୧ । ତତ୍ପରେ ତାହାଙ୍କର ଚାରି ଅଶ୍ୱକୁ ଚାରିଗୋଟି ଶାଣିତ ଶରଦ୍ୱାରା ନିହତ କରି ଗୋଟିଏ କ୍ଷୁରପ୍ରଦ୍ୱାରା ତାହାଙ୍କର ସାରଥିକୁ ନିପାତିତ କଲେ । ୨୨ । ଏହି ସମସ୍ତ କାର୍ଯ୍ୟ ମଧ୍ୟରେ ସେ ହର୍ଷସହକାରେ ମହାରଥୀ କୁରୁରାଜଙ୍କୁ ମଧ୍ୟ ବହୁଳ ଶରଦ୍ୱାରା ସମାଚ୍ଛନ୍ନ କଲେ । ୨୩ । ଆପଣଙ୍କ ପୁତ୍ର ଦୁର୍ଯ୍ୟୋଧନ ଶିନିପୌତ୍ରଙ୍କର ପ୍ରବଳ ଶରସମୂହଦ୍ୱାରା ବଧ୍ୟମାନ ହୋଇ ସହସା ସେ ସ୍ଥାନରୁ ପଳାୟନ କଲେ ଓ ଲମ୍ଫପ୍ରଦାନପୂର୍ବକ ଧନୁର୍ଦ୍ଧର ଚିତ୍ରସେନଙ୍କ ରଥରେ ଆରୋହଣ କଲେ । ଆକାଶରେ ରାହୁଗ୍ରସ୍ତ ଚନ୍ଦ୍ରସଦୃଶ ରାଜା ଦୁର୍ଯ୍ୟୋଧନଙ୍କୁ ସାତ୍ୟକଙ୍କକର୍ତ୍ତୃକ ଗ୍ରସ୍ୟମାନ ଦେଖି ସର୍ବତ୍ର ରଣସ୍ଥଳ ହାହାକାର ଶବ୍ଦରେ ପରିପୂର୍ଣ୍ଣ ହେଲା ।

ଅନନ୍ତର ମହାରଥୀ କୃତବର୍ମା ସେହି ହାହାକାର ଶବ୍ଦ ଶ୍ରବଣ କରି ସ୍ୱକୀୟ ଶ୍ରେଷ୍ଠ ଶରାସନକୁ ପ୍ରକମ୍ପିତ କଲେ ଓ ସାରଥିକୁ ଉଗ୍ରଭାବରେ

ଭର୍ତ୍ସନା କରି ଶୀଘ୍ର "ଗମନ କର, ଗମନ କର" ବୋଲି କହି ଅଶ୍ୱମାନଙ୍କୁ ସଞ୍ଚାଳନାପୂର୍ବକ ସାତ୍ୟକିଙ୍କ ନିକଟକୁ ଆଗମନ କଲେ । କୃତବର୍ମ୍ମାଙ୍କୁ ବ୍ୟାଦିତାନନ ଯମସଦୃଶ ଆଗମନ କରିବାର ଅବଲୋକନ କରି ସାତ୍ୟକି ସାରଥିକୁ କହିଲେ ଯେ, ସମସ୍ତ ଧନୁର୍ଦ୍ଧରଙ୍କ ମଧ୍ୟରେ ପ୍ରଧାନ ଧନୁର୍ବାଣଯୁକ୍ତ କୃତବର୍ମା ବେଗରେ ସମାଗତ ହେଉଅଛନ୍ତି । ତୁମ୍ଭେ ତାହାଙ୍କ ନିକଟକୁ ଅଗ୍ରସର ହୁଅ । ତଦନନ୍ତର ସାତ୍ୟକି ବେଗଶୀଳତୁରଙ୍ଗଯୁକ୍ତ ବିଧିବତ୍ ସଜ୍ଜିତ ରଥରେ ଆରୋହଣ କରିଥିବା ଧନୁର୍ଦ୍ଧରମାନଙ୍କର ଆଦର୍ଶ ସ୍ୱରୂପ ଭୋଜରାଜ କୃତବର୍ମାଙ୍କ ସମୀପରେ ଉପସ୍ଥିତ ହେଲେ । ତଦନନ୍ତର ଜ୍ୱଳିତ-ଅନଳସଦୃଶ, ବେଗବାନ୍ ବ୍ୟାଘ୍ରଦ୍ୱୟତୁଲ୍ୟ, ସେହି ଦୁଇ ନରବ୍ୟାଘ୍ର ମହା ସଂକ୍ରୁଦ୍ଧ ହୋଇ ସଂଗ୍ରାମରେ ସମବେତ ହେଲେ ।

ରୁକ୍ମଧ୍ୱଜବିଶିଷ୍ଟ, ରୁକ୍ମାଙ୍ଗଦବିଶିଷ୍ଟ ଭୂଷିତ, ରୁକ୍ମବର୍ମାବୃତ, କୃତବର୍ମ୍ମା ରୁକ୍ମପୃଷ୍ଠଶୋଭିତ ମହତ୍ ଶରାସନ ବିସ୍ତାରଣପୂର୍ବକ ଶାଣିତ ତୀକ୍ଷ୍ଣ ଛତିଶଗୋଟି ଶରରେ ତାହାଙ୍କର ସାରଥିକୁ ଓ ପ୍ରବଳ ଚାରିଗୋଟି ବାଣରେ ତାହାଙ୍କର ସୁଶିକ୍ଷିତ, ଦାନ୍ତ, ସିନ୍ଧୁଦେଶୀୟ ବୃହତ୍ ବୃହତ୍ ଚାରିଅଶ୍ୱଙ୍କୁ ବିଦ୍ଧକରି ଶରସମୂହ ଦ୍ୱାରା ତାହାଙ୍କୁ ସମାଚ୍ଛନ୍ନ କଲେ । ଅନନ୍ତର ଧନଞ୍ଜୟପ୍ରଦର୍ଶନେଚ୍ଛୁ ତ୍ୱରାଯୁକ୍ତ ସାତ୍ୟକି କୃତବର୍ମ୍ମାଙ୍କପ୍ରତି ଅଶୀତି ଶର ନିକ୍ଷେପ କଲେ ।

ଯେପରି ଭୂମିକମ୍ପ ହେଲେ ପର୍ବତ କମ୍ପିତ ହୁଏ, ସେହିପରି ଶତ୍ରୁ-ତାପନ ଦୁର୍ଦ୍ଧର୍ଷ କୃତବର୍ମା ବଳବାନ୍ ଶତ୍ରୁକର୍ତ୍ତୃକ ଅତିବିଦ୍ଧ ହୋଇ ପ୍ରକମ୍ପିତ ହେଲେ । ସାତ୍ୟକି ସତ୍ୱର ହୋଇ ପୁନର୍ବାର ତାହାଙ୍କର ଚାରିଅଶ୍ୱକୁ ଶାଣିତ ତିଷଷ୍ଟି ଶରରେ ଓ ତାହାଙ୍କର ସାରଥିକୁ ତୀକ୍ଷ୍ଣ ସପ୍ତଗୋଟି ଶରରେ ବିଦ୍ଧ କଲେ । ତତ୍ପରେ କ୍ରୁଦ୍ଧ ସର୍ପସଦୃଶ ମହାଜ୍ୱାଳା-ପ୍ରଦୀପ୍ତ, ସୁବର୍ଣ୍ଣପୁଙ୍ଖଯୁକ୍ତ ଗୋଟିଏ ଶର ତାଙ୍କପ୍ରତି ନିକ୍ଷେପ କଲେ । ସେହି ଯମଦଣ୍ଡ-ତୁଲ୍ୟ ଉଗ୍ର ଶର କୃତବର୍ମାଙ୍କ ସ୍ୱର୍ଣ୍ଣଭୂଷିତ ପ୍ରଦୀପ୍ତ ବର୍ମ୍ମକୁ ଭେଦକରି ଦେହମଧ୍ୟରେ ପ୍ରବେଶପୂର୍ବକ ରୁଧିରସିକ୍ତ ହୋଇ ଧରଣୀମଧ୍ୟରେ ପ୍ରବିଷ୍ଟ ହେଲା । ୪୦ । ଅମିତବିକ୍ରମ କୃତବର୍ମା ସାତ୍ୟକିଙ୍କ ଶରସମୂହରେ ଅତି ପୀଡ଼ିତ ଓ ରୁଧିରସିକ୍ତ ହୋଇ ସଶର ଶରାସନ ପରିତ୍ୟାଗପୂର୍ବକ ସିଂହଦଂଷ୍ଟ୍ର-

ସଦୃଶ ଦନ୍ତନିଃସରଣ କରି ଉତ୍ତମ ରଥମାଡ଼ରୁ ଆଣ୍ଠୁ ମାଡ଼ି ଭୂତଳରେ ଖସିପଡ଼ିଲେ । ୪୨ ।

ଶିନିପ୍ରବର ସାତ୍ୟକି ସହସ୍ରବାହୁ କାର୍ତ୍ତବୀର୍ଯ୍ୟତୁଲ୍ୟ ଓ ଅକ୍ଷୋଭ୍ୟ ସାଗରସଦୃଶ କୃତବର୍ମାଙ୍କୁ ନିବାରଣ କରି ପୁନର୍ବାର ଗମନ କଲେ । ୪୩ । ସେ ସର୍ବ ସୈନ୍ୟଙ୍କ ସାକ୍ଷାତରେ ଖଡ୍ଗ, ଶକ୍ତି ଓ ଶରାସନସମାକୁଳ, ତୁରଙ୍ଗ, ମାତଙ୍ଗ ଓ ଶତାଙ୍ଗସଙ୍କୁଳ, ଶତ ଶତ କ୍ଷତ୍ରିୟପ୍ରବରସମନ୍ୱିତ ସୈନ୍ୟମାନଙ୍କୁ ଭୀଷଣ ରୁଧିରରେ ପରିପ୍ଲୁତ କରି ଭେଦପୂର୍ବକ ବୃତ୍ରାସୁର ଦେବସେନ୍ୟ ମଧ୍ୟରେ ପ୍ରବେଶ କଲାପ୍ରାୟ ସେହି ସୈନ୍ୟମଧ୍ୟରେ ପ୍ରବେଶ-ପୂର୍ବକ ଗମନ କଲେ । ୪୫ । ବଳବାନ୍ କୃତବର୍ମା ସଂଜ୍ଞାଲାଭ କରି ମହତ୍ ଶରାସନ ଗ୍ରହଣପୂର୍ବକ ପାଣ୍ଡବମାନଙ୍କୁ ନିବାରଣ କରିବା ନିମିତ୍ତ ସେହି-ସ୍ଥାନରେ ଅବସ୍ଥିତ ହେଲେ । ୪୬ ।

---

## ୧୧୭ ଅଧ୍ୟାୟ

ସଞ୍ଜୟ କହିଲେ—ହେ ମହାରାଜ ! ଏହିପ୍ରକାରେ କୌରବ ସେନାମାନେ ସାତ୍ୟକଙ୍କକର୍ତ୍ତୃକ କମ୍ପିତ ହୁଅନ୍ତେ ଦ୍ରୋଣାଚାର୍ଯ୍ୟ ତାହାଙ୍କୁ ଶରସମୂହଦ୍ୱାରା ସମାକୀର୍ଣ୍ଣ କଲେ । ୧ । ଯେପରି ଇନ୍ଦ୍ରଙ୍କ ସହିତ ବଳୀର ଯୁଦ୍ଧ ହୋଇଥିଲା ସେହିପରି ସମସ୍ତ ସୈନ୍ୟଙ୍କ ସାକ୍ଷାତ୍‌ରେ ଦ୍ରୋଣଙ୍କ ସହିତ ସାତ୍ୟକଙ୍କର ତୁମୁଳ ସଂଗ୍ରାମ ହେଲା । ୨ । ଦ୍ରୋଣ ସର୍ବଲୌହମୟ ସର୍ପାକାର ତିନିଗୋଟି ଶର ସାତ୍ୟକଙ୍କ ଲଲାଟରେ ବିଦ୍ଧ କଲେ । ୩ । ଲଲାଟାର୍ପିତ ସେହି ତିନିଗୋଟି ବାଣରେ ଅଳଂକୃତ ହୋଇ ସାତ୍ୟକି ତ୍ରିଶୃଙ୍ଗ ପର୍ବତତୁଲ୍ୟ ଶୋଭାପ୍ରାପ୍ତ ହେଲେ । ୪ । ଛିଦ୍ରାନ୍ୱେଷୀ ଭରଦ୍ୱାଜ-ନନ୍ଦନ ତତ୍ପରେ ପୁନର୍ବାର ଇନ୍ଦ୍ରଙ୍କ ଅଶନିସମ ଶବ୍ଦବାନ୍ ଅନ୍ୟ କେତେ-ଗୁଡ଼ାଏ ଶର ସାତ୍ୟକଙ୍କ ଉପରକୁ ନିକ୍ଷେପ କଲେ । ୫ । ପରମାସ୍ତ୍ରବିତ୍ ସାତ୍ୟକି ଦ୍ରୋଣଙ୍କ ଧନୁର୍ମୁକ୍ତ ସେହି ଶରସମୂହକୁ ଆପତିତ ହେବାର ଅବଲୋକନ କରି ମନୋହର ପୁଙ୍ଖଯୁକ୍ତ ଦୁଇଦୁଇଗୋଟି ଶରଦ୍ୱାରା ସେସମସ୍ତକୁ ଛେଦନ କଲେ । ୬ । ଦ୍ରୋଣ ସାତ୍ୟକଙ୍କର ତାଦୃଶ ଶୀଘ୍ର-

ହସ୍ତତା ଦେଖି ହାସ୍ୟପୂର୍ବକ ବିଂଶତି ଶରରେ ତାହାଙ୍କୁ ବିଦ୍ଧ କଲେ । ୭ । ଅସ୍ତ୍ରପ୍ରହାରଦ୍ୱାରା ଆପଣାର ହସ୍ତଲାଘବ ପ୍ରକାଶପୂର୍ବକ ଯୁଯୁଧାନଙ୍କର ହସ୍ତଲାଘବକୁ ଅପକୃଷ୍ଟ କରି ପୁନର୍ବାର ଶାଣିତ ଶରରେ ତାହାଙ୍କୁ ବିଦ୍ଧ କଲେ । ୮ । ଯେପରି ମହୋରଗଗଣ କ୍ରୋଧାବିଷ୍ଟ ହୋଇ ବଲ୍ମୀକରୁ ବିନିର୍ଗତ ହୁଅନ୍ତି ସେହିପରି ତନୁଚ୍ଛେଦୀ ଶତସମୂହ ଦ୍ରୋଣଙ୍କ ରଥରୁ ଉତ୍ପତିତ ହେଲାପ୍ରାୟ ପ୍ରଖ୍ୟାୟମାନ ହେଲା । ୯ । ସାତ୍ୟକି ମଧ୍ୟ ସେହିପରି ରୁଧିରଭୋକ୍ତା ଶତ ଶତ, ସହସ୍ର ସହସ୍ର ବାଣ ନିକ୍ଷିପ୍ତ କରି ଦ୍ରୋଣଙ୍କ ରଥ ସମାକୀର୍ଣ୍ଣ କଲେ । ୧୦ । ଦ୍ୱିଜପ୍ରବର ଦ୍ରୋଣ କିମ୍ବା ସାତ୍ୱତପ୍ରବର ସାତ୍ୟକି କାହାର ହସ୍ତଲାଘବ ବିଷୟରେ ବିଶେଷ ଜଣାଗଲା ନାହିଁ । ସେହି ନରର୍ଷଭଦ୍ୱୟ ସମଭାବରେ ସଂଗ୍ରାମ କଲେ ।

ଅନନ୍ତର ସାତ୍ୟକି ଅତିଶୟ କ୍ରୁଦ୍ଧ ହୋଇ ନବ ସଂଖ୍ୟକ ନତପର୍ବ ବାଣଦ୍ୱାରା ଦ୍ରୋଣଙ୍କୁ ସମାହତ କରି ତାହାଙ୍କର ସାକ୍ଷାତ୍‌ରେ ସୁଶାଣିତ ଶରସମୂହଦ୍ୱାରା ତାହାଙ୍କର ଧ୍ୱଜକୁ ଓ ଏକଶତ ବାଣରେ ତାହାଙ୍କର ସାରଥିକୁ ଆହତ କଲେ । ମହାରଥୀ ଦ୍ରୋଣ ମହାତ୍ମା ସାତ୍ୟକିଙ୍କର ହସ୍ତ-ଲାଘବ ଅବଲୋକନ କରି ସପ୍ତତି ଶରରେ ତାହାଙ୍କୁ ବିଦ୍ଧ କରି ତିନିତିନି-ଗୋଟି ଶରରେ ତାହାଙ୍କର ଅଶ୍ୱମାନଙ୍କୁ ବିଦ୍ଧ କଲେ ଏବଂ ଗୋଟିଏ ଶରରେ ତାହାଙ୍କର ରଥସ୍ଥିତ ଧ୍ୱଜ ଛେଦନ କରି ହେମପୁଙ୍ଖଯୁକ୍ତ ଗୋଟିଏ ଗୋଟିଏ ଭଲ୍ଲଦ୍ୱାରା ତାହାଙ୍କର ଶରଶରାସନ ଛେଦନ କଲେ । ୧୫ । ତଦନନ୍ତର ସାତ୍ୟକି କ୍ରୁଦ୍ଧ ହୋଇ ଛିନ୍ନ ଶରାସନ ପରିତ୍ୟାଗପୂର୍ବକ ଗୋଟିଏ ମହତୀ ଗଦା ଗ୍ରହଣ କରି ଦ୍ରୋଣଙ୍କପ୍ରତି ନିକ୍ଷେପ କଲେ । ୧୬ । ଦ୍ରୋଣ ସେହି ଲୌହମୟୀ ପଟ୍ଟବଦ୍ଧ ଗଦାକୁ ସହସା ସମାଗତ ହେବାର ଅବଲୋକନ କରି ବହୁପ୍ରକାର ଅନେକ ଶରଦ୍ୱାରା ତାହାକୁ ନିବାରଣ କଲେ । ୧୭ । ପରବୀର-ହନ୍ତା ବୀର ସାତ୍ୟକି ଅନ୍ୟ ଗୋଟିଏ ଶରାସନ ଗ୍ରହଣ କରି ଶାଣିତ ବହୁଳ ଶରଦ୍ୱାରା ଦ୍ରୋଣଙ୍କୁ ବିଦ୍ଧ କରି ସିଂହନାଦ କଲେ । ୧୮ । ସର୍ବାସ୍ତ୍ରଧାରିପ୍ରବର ଦ୍ରୋଣ ତାହା ସହି ନ ପାରି ଉଗ୍ରସହ ସୁବର୍ଣ୍ଣଦଣ୍ଡାନ୍ୱିତ ଲୌହନିର୍ମିତ ଗୋଟିଏ ଶକ୍ତି ଗ୍ରହଣ କରି ମାଧବ ସାତ୍ୟକିଙ୍କ ରଥଉପରକୁ ନିକ୍ଷେପ କଲେ । ୧୯ । କାଳସନ୍ନିଭ ଉଗ୍ରରୂପ ସେହି ଶକ୍ତି ସାତ୍ୟକିଙ୍କର ଶରୀର ସ୍ପର୍ଶ ନ କରି ତାହାଙ୍କ ରଥ ଭେଦପୂର୍ବକ ଧରଣୀଗତ ହେଲା । ୨୦ ।

ଅନନ୍ତର ସାତ୍ୟକ ଦ୍ରୋଣଙ୍କର ଦକ୍ଷିଣଭୁଜକୁ ଲକ୍ଷ୍ୟକର ତାହାଙ୍କୁ ପୀଡ଼ନପୂର୍ବକ ଶରଦ୍ୱାରା ବିଦ୍ଧ କଲେ । ୨୧ । ଦ୍ରୋଣ ମଧ୍ୟ ଅର୍ଦ୍ଧଚନ୍ଦ୍ର ବାଣରେ ମାଧବ ସାତ୍ୟକଙ୍କର ମହତ୍ ଶରାସନକୁ ଛେଦନ ଓ ରଥଶକ୍ତିଦ୍ୱାରା ତାହାଙ୍କର ସାରଥିକୁ ଗାଢ଼ବିଦ୍ଧ କଲେ । ୨୩ । ସାରଥୀ ରଥଶକ୍ତିଦ୍ୱାରା ସମାହତ ହୋଇ ମୋହିତ ହେଲେ ଓ ମୁହୂର୍ତ୍ତିକ ପର୍ଯ୍ୟନ୍ତ ରଥମାଡ଼ରେ ବିକ୍ଷତ୍ତ ହୋଇ ଅବସ୍ଥାନ କଲେ । ୨୪ । ହେ ମହାରାଜ ! ସେହି ସମୟରେ ସାତ୍ୟକ ସେହି ସମରରେ ଏହି ଅଲୌକିକ କର୍ମ କଲେ ଯେ, ସେ ଦ୍ରୋଣଙ୍କ ସହିତ ଯୁଦ୍ଧ ମଧ୍ୟ କଲେ ଓ ସ୍ୱୟଂ ଅଶ୍ୱରଶ୍ମି ମଧ୍ୟ ଧାରଣ କଲେ । ୨୫ ।

ତଦନନ୍ତର ମହାରଥୀ ଯୁଯୁଧାନ ହୃଷ୍ଟ ହୋଇ ଶତ ଶରଦ୍ୱାରା ବ୍ରାହ୍ମଣ ଦ୍ରୋଣଙ୍କୁ ବିଦ୍ଧ କଲେ । ୨୬ । ଦ୍ରୋଣ ତାହାଙ୍କ ପ୍ରତି ପାଞ୍ଚଗୋଟି ବାଣ ନିକ୍ଷେପ କଲେ । ସେହି ବାଣରାଜ ତାହାଙ୍କର କବଚ ଭେଦ କରି ଶୋଣିତପାନ କଲା । ୨୭ । ମହାରଥୀ ବୀର ସାତ୍ୟକ ସେହି ଭୟଙ୍କର ଶରରେ ଅତିଶୟ ବିଦ୍ଧ ହୋଇ କ୍ରୋଧାବିଷ୍ଟ ହେଲେ ଓ ସୁବର୍ଣ୍ଣରଥାରୋହୀ ଦ୍ରୋଣଙ୍କପ୍ରତି ଶରସମୂହ ନିକ୍ଷେପ କଲେ । ୨୮ । ତଦନନ୍ତର ଗୋଟିଏ ଶରରେ ତାହାଙ୍କର ସାରଥୀକୁ ଧରାତଳରେ ନିପାତିତ କରି ଶରସମୂହ ବିମୋଚନପୂର୍ବକ ତାହାଙ୍କର ସାରଥୀବିହୀନ ଅଶ୍ୱମାନଙ୍କୁ ବିଦ୍ରାବିତ କଲେ । ଦ୍ରୋଣଙ୍କର ସ୍ୱର୍ଣ୍ଣମୟ ରଥ ଧାବମାନ ଅଶ୍ୱଗଣଦ୍ୱାରା ରଣସ୍ଥଳରେ ପ୍ରଦ୍ରୁତ ହୋଇ ଦୀପ୍ତିମାନ୍ ସୂର୍ଯ୍ୟସଦୃଶ ସହସ୍ର ସହସ୍ର ଥର ମଣ୍ଡଳାକାରରେ ଭ୍ରମଣ କଲା । ୩୦ । ଏହି ସମୟରେ ସମସ୍ତ ରାଜା ଓ ରାଜପୁତ୍ରମାନେ ଉଚ୍ଚୈଃସ୍ୱରରେ ଶବ୍ଦ କରି କହିଲେ ଯେ, ଧାବମାନ ହୁଅ, ତାହାଙ୍କର ଧାବମାନ ଅଶ୍ୱମାନଙ୍କୁ ଗ୍ରହଣ କର । ୩୧ ।

ହେ ରାଜନ୍ ! ସମସ୍ତ ମହାରଥ ସାତ୍ୟକଙ୍କୁ ଶୀଘ୍ର ପରିତ୍ୟାଗ କରି ଯୁଦ୍ଧରେ ଯେଉଁ ସ୍ଥାନରେ ଦ୍ରୋଣ ଥିଲେ ସେହି ସ୍ଥାନପ୍ରତି ସହସା ଧାବମାନ ହେଲେ । ୩୨ । ଆପଣଙ୍କର ସୈନ୍ୟମାନେ ଆତ୍ମପକ୍ଷୀୟ ସେହି-ସମସ୍ତ ସୈନ୍ୟଙ୍କୁ ସାତ୍ୟକଙ୍କ ଶରରେ ପ୍ରପୀଡ଼ିତ ଓ ସେଠାରୁ ପଳାୟମାନ ହେବାର ଅବଲୋକନ କରି ବ୍ୟାକୁଳଚିତ୍ତରେ ପୁନର୍ବାର ଭଗ୍ନ ହେଲେ । ୩୩ । ସାତ୍ୟକଙ୍କ ଶରରେ ପ୍ରପୀଡ଼ିତ ଦ୍ରୋଣ ବାୟୁବେଗରେ ଗମନକାରୀ

ଅଶ୍ୱମାନଙ୍କଦ୍ୱାରା ନୀତ ହୋଇ ବ୍ୟୂହଦ୍ୱାରକୁ ପୁନର୍ବାର ଗମନପୂର୍ବକ ଅବସ୍ଥିତ ହେଲେ । ୩୪ । ବଳବାନ୍ ଦ୍ରୋଣ ପାଣ୍ଡବ ଓ ପାଞ୍ଚାଳଗଣଙ୍କ କର୍ତ୍ତୃକ ଆପଣାର ବ୍ୟୂହକୁ ଭଗ୍ନ ହୋଇଥିବାର ଅବଲୋକନ କରି ସାତ୍ୟକିଙ୍କୁ ନିବାରଣ କରିବାନିମିତ୍ତ ଆଉ ଯତ୍ନ କଲେନାହିଁ ଓ ବ୍ୟୂହ ରକ୍ଷାକରିବାରେ ପ୍ରବୃତ୍ତ ହେଲେ । ୩୫ । ସେ କ୍ରୋଧାଗ୍ନିଦ୍ୱାରାପ୍ରଦୀପ୍ତ ଓ ଦହନକାଙ୍କ୍ଷୀ ଅଗ୍ନିସଦୃଶ ହୋଇ ପାଣ୍ଡବ ଓ ପାଞ୍ଚାଳମାନଙ୍କୁ ନିବାରଣପୂର୍ବକ ପ୍ରଳୟ-କାଳୀନ ଉଦିତସୂର୍ଯ୍ୟସଦୃଶ ବ୍ୟୂହମୁଖରେ ଅବସ୍ଥିତ ହେଲେ । ୩୬ ।

---

# ୧୧୮ ଅଧ୍ୟାୟ

ସଞ୍ଜୟ କହିଲେ—ହେ କୁରୁପ୍ରବରାଗ୍ରଗଣ୍ୟ ! ପୁରୁଷପ୍ରବୀର ଶିନି-କୁଳବୀର ସାତ୍ୟକି ଦ୍ରୋଣଙ୍କୁ ଓ କୃତବର୍ମା ପ୍ରଭୃତି ଆପଣଙ୍କପକ୍ଷୀୟ ଯୋଦ୍ଧାମାନଙ୍କୁ ପରାଜିତ କରି ହାସ୍ୟମୁଖରେ ସାରଥିକୁ କହିଲେ । ୧ । ହେ ସାରଥେ ! ଆମ୍ଭେମାନେ କେବଳ ନିମିତ୍ତମାତ୍ର, ଆମ୍ଭମାନଙ୍କର ଶତ୍ରୁ-ମାନେ କୃଷ୍ଣାର୍ଜ୍ଜୁନକର୍ତ୍ତୃକ ପୂର୍ବରୁ ଦଗ୍ଧ ହୋଇଅଛନ୍ତି । ଇନ୍ଦ୍ରପୁତ୍ର ନରଶ୍ରେଷ୍ଠ ଅର୍ଜ୍ଜୁନ ସେମାନଙ୍କୁ ନିହତ କରି ରଖିଅଛନ୍ତି । ଆମ୍ଭେମାନେ ସେହି ନିହତ-ମାନଙ୍କୁ ନିହତ କରିଅଛୁଁ । ୨ । ଶତ୍ରୁହନ୍ତା ଧନୁର୍ଦ୍ଧରାଗ୍ରଗଣ୍ୟ ବଳବାନ୍ ଶିନିକୁଳବୀର ସେହି ସମୟରେ ସାରଥିକୁ ଏହି କଥା କହି ଚତୁର୍ଦ୍ଦିଗକୁ ବାଣ ବିକୀରଣ କରି ଆମିଷନିମିତ୍ତଆପତିତ ଶ୍ୟେନପକ୍ଷୀସଦୃଶ ସହସା ସୈନ୍ୟ-ମଧ୍ୟରେ ଆପତିତ ହେଲେ । ୩ ।

ହେ ଭାରତ ! ସୂର୍ଯ୍ୟକିରଣପ୍ରଭ ତେଜସ୍ୱୀ, ଅସହ୍ୟବିକ୍ରମ, ଅଦୀନ-ସତ୍ତ୍ୱ ସୁରେନ୍ଦ୍ରସଦୃଶପ୍ରଭାବସମ୍ପନ୍ନ ମେଘାବସାନରେ ଗଗନସ୍ଥ ସୂର୍ଯ୍ୟସଦୃଶ ସେହି ପୁରୁଷପ୍ରବୀରଙ୍କୁ ଚନ୍ଦ୍ରବର୍ଣ୍ଣ, ଶଙ୍ଖବର୍ଣ୍ଣ ଅଶ୍ୱଦ୍ୱାରା ଚତୁର୍ଦ୍ଦିଗରେ ସୈନ୍ୟା-ଲୋଡ଼ନପୂର୍ବକ ସମାଗତ ହେବାର ସନ୍ଦର୍ଶନ କରି ଆପଣଙ୍କପକ୍ଷୀୟ ସୈନ୍ୟ-ମାନଙ୍କ ମଧ୍ୟରେ କୌଣସି ସୈନ୍ୟଗଣ ତାହାଙ୍କୁ ନିବାରଣ କରିବାକୁ ସମର୍ଥ ହେଲେ ନାହିଁ । ୪ । ପରନ୍ତୁ ଅତିବିଚିତ୍ରଯୋଧୀ କାଞ୍ଚନବର୍ଣ୍ଣ ଓ ଧନୁର୍ଦ୍ଧାରୀ ରାଜପ୍ରବର ସୁଦର୍ଶନ ସାତ୍ୟକିଙ୍କୁ ସହସା ସମାଗତ ହେବାର ଅବଲୋକନ

କରି କ୍ରୋଧାବିଷ୍ଟ ହୋଇ ତାହାଙ୍କୁ ନିବାରଣ କରିବାରେ ପ୍ରବୃତ୍ତ ହେଲେ । ୬ । ତାହାଙ୍କ ସହିତ ସାତ୍ୟକଙ୍କର ସୁଦାରୁଣ ସଂଗ୍ରାମ ସମାରବ୍ଧ ହେଲା ।

ଯେପରି ଦେବଗଣ ଇନ୍ଦ୍ର ଓ ବୃତ୍ରାସୁରଙ୍କର ଯୁଦ୍ଧକୁ ପ୍ରଶଂସା କରିଥିଲେ, ସେହିପରି ଆପଣଙ୍କପକ୍ଷୀୟ ଯୋଧଗଣ ଓ ସୋମକଗଣ ସେ ଦୁହିଁଙ୍କର ଯୁଦ୍ଧ ସନ୍ଦର୍ଶନ କରି ପ୍ରଶଂସା କଲେ । ୭ । ସୁଦର୍ଶନ ଅତି ତୀକ୍ଷ୍ଣ ଶତ ଶତ ଶର ସାତ୍ୱତଶ୍ରେଷ୍ଠ ସାତ୍ୟକଙ୍କ ପ୍ରତି ନିକ୍ଷେପ କଲେ ; କିନ୍ତୁ ସାତ୍ୟକ ତାହାଙ୍କର ସେହି ଶରସମୂହର ସମୀପସ୍ଥ ନ ହେଉଣୁ ସେସମସ୍ତଙ୍କୁ ଛେଦନକରି ପକାଇଲେ । ୮ । ସୁରେନ୍ଦ୍ରତୁଲ୍ୟ ସାତ୍ୟକ ମଧ୍ୟ ଯେଉଁ ଶର-ସମୂହ ସୁଦର୍ଶନଙ୍କ ପ୍ରତି ନିକ୍ଷେପ କଲେ, ରଥବରସ୍ଥ ସୁଦର୍ଶନ ସେସମସ୍ତଙ୍କୁ ସେହିପରି ଉତ୍ତମ ଉତ୍ତମ ଶରଦ୍ୱାରା ଦୁଇ ତିନିଖଣ୍ଡ କରି ଛେଦନ କଲେ ।୯। ତୀକ୍ଷ୍ଣତେଜା ସୁଦର୍ଶନ ସେହି କାଳରେ ଆପଣାର ନିକ୍ଷିପ୍ତ ବାଣମାନଙ୍କୁ ସାତ୍ୟକଙ୍କ ବାଣବେଗରେ ନିହତ ହେବାର ନିରୀକ୍ଷଣ କରି କ୍ରୋଧରେ ମୃତ୍ୟକଳ୍ପପ୍ରାପ୍ତ ହୋଇ ସୁବର୍ଣ୍ଣଚିହ୍ନିତ କେତେକ ବାଣ ନିକ୍ଷେପ କଲେ । ୧୦ । ପୁନର୍ବାର ସୁଶାଣିତ ସୁପୁଙ୍ଖଯୁକ୍ତ ଅଗ୍ନିକଳ୍ପ ତିନିଗୋଟି ବାଣକୁ ଆକର୍ଣ୍ଣ ଆକର୍ଷଣ କରି ସାତ୍ୟକଙ୍କୁ ବିଦ୍ଧ କଲେ । ସେହି ତିନିଗୋଟି ବାଣ ସାତ୍ୟକଙ୍କର ବର୍ମ ଭେଦକରି ଶରୀରରେ ପ୍ରବିଷ୍ଟ ହେଲା । ୧୧ ।

ତତ୍ପରେ ରାଜପୁତ୍ର ସୁଦର୍ଶନ ଜ୍ୱଳଦଗ୍ନିତୁଲ୍ୟ ଆଉ ଚାରିଗୋଟି ବାଣ ସନ୍ଧାନ କରି, ତଦ୍ଦ୍ୱାରା ତାହାଙ୍କର ରଜତସଂକାଶ ଚାରି ଅଶ୍ୱକୁ ବଳପୂର୍ବକ ସମାହତ କଲେ । ୧୨ । ଇନ୍ଦ୍ରତୁଲ୍ୟ ପରାକ୍ରମୀ ବେଗବାନ୍ ସାତ୍ୟକ ସୁଦର୍ଶନଙ୍କକର୍ତ୍ତୃକ ଏହିପ୍ରକାରେ ଆହତ ହୋଇ ଅତିଶୟ ତୀକ୍ଷ୍ଣ ଶରସମୂହ-ଦ୍ୱାରା ସୁଦର୍ଶନଙ୍କ ଅଶ୍ୱମାନଙ୍କୁ ନିହତ କରି ସିଂହନାଦ କଲେ । ୧୩ ।

ଅନନ୍ତର ଇନ୍ଦ୍ରବଜ୍ରସନ୍ନିଭ ଗୋଟିଏ ଭଲ୍ଲରେ ତାହାଙ୍କ ସାରଥିର ମସ୍ତକ ଛେଦନ କରି ସହସା ଗୋଟିଏ କ୍ଷୁରପ୍ରଦ୍ୱାରା ତାହାଙ୍କର ମସ୍ତକ ଚ୍ଛେଦନ କଲେ । ୧୪ । ପୂର୍ବକାଳରେ ଇନ୍ଦ୍ର ଯେପରି ସମରରେ ଅତି-ବଳବାନ୍ ବଳାସୁରର ମସ୍ତକକୁ ଛେଦନ କରିଥିଲେ, ସେହିପରି ସାତ୍ୟକ ସୁଦର୍ଶନଙ୍କ କୁଣ୍ଡଳଭୂଷିତ ପୂର୍ଣ୍ଣଚନ୍ଦ୍ରତୁଲ୍ୟପ୍ରତିମାନ୍ ମସ୍ତକକୁ ତାହାଙ୍କ ଦେହରୁ

କର୍ତ୍ତନ କରି ନିପାତିତ କଲେ । ୧୫ । ନରବୀର ଯଦୁକୁଳଶ୍ରେଷ୍ଠ ବଳବାନ୍ ମହାତ୍ମା ସାତ୍ୟକି ପିତୃପିତାମହାଦ୍ଦିଷ୍ଟମତରେ ରାଜକୁଳସମ୍ଭୂତ ସୁଦର୍ଶନଙ୍କୁ ସଂଗ୍ରାମରେ ନିହତ କରି ମହାହର୍ଷାନ୍ୱିତ ହୋଇ ଦେବରାଜ ଇନ୍ଦ୍ରଙ୍କସଦୃଶ ବିରାଜମାନ ହେଲେ । ତଦନନ୍ତର ସେ ଅର୍ଜ୍ଜୁନ ଯେଉଁ ପଥରେ ଗମନ କରିଥିଲେ ସଦଶ୍ୱଯୁକ୍ତ ରଥାରୋହଣରେ ଆପଣଙ୍କ ସୈନିକମାନଙ୍କୁ ନିବାରଣପୂର୍ବକ ଲୋକମାନଙ୍କୁ ବିସ୍ମୟାପନ୍ନ କରିବାକୁ ସମୁତ୍ସୁକ ହୋଇ ସେହି ପଥରେ ଗମନ କଲେ । ୧୭ । ତାହାଙ୍କର ବାଣଗୋଚରରେଅବସ୍ଥିତ ଶତ୍ରୁମାନଙ୍କୁ ଶରସମୂହଦ୍ୱାରା ସେ ଅଗ୍ନିସଦୃଶ ଦଗ୍ଧ କରୁଥିଲେ । ଯୋଦ୍ଧାମାନେ ମିଳିତ ହୋଇ ତାହାଙ୍କର ସେହି ଲୋକବିସ୍ମୟକର ଶ୍ରେଷ୍ଠକାର୍ଯ୍ୟକୁ ଯଥେଷ୍ଟ ପ୍ରଶଂସା କଲେ । ୧୮ ।

---

# ୧୧୯ ଅଧ୍ୟାୟ

ସଞ୍ଜୟ କହିଲେ—ହେ ମହାରାଜ ! ବୃଷ୍ଣିକୁଳପ୍ରବର ଧୀମାନ୍ ମହାତ୍ମା ସାତ୍ୟକି ସୁଦର୍ଶନଙ୍କୁ ନିହତ କରି ସାରଥିକୁ ପୁନର୍ବାର କହିଲେ ।୧। ହେ ପ୍ରିୟ ସଖେ ! ଜଳସନ୍ଧିରାଜାଙ୍କ ସୈନ୍ୟମାନଙ୍କଦ୍ୱାରା ଓ ରାକ୍ଷସସଦୃଶ ଅନ୍ୟାନ୍ୟ ସୈନ୍ୟମାନଙ୍କଦ୍ୱାରା ସମାବୃତ ତୁରଙ୍ଗ ମାତଙ୍ଗ ଓ ପଦାତିସମୂହରେ ସମାକୁଳ ଶର ଓ ଶକ୍ତିରୂପତରଙ୍ଗମାଳାବିଶିଷ୍ଟ, ଖଡ୍‌ଗରୂପମତ୍ସ୍ୟସଂକୁଳ, ଗଦାରୂପଗ୍ରାହସମ୍ପନ୍ନ, ଶୂରମାନଙ୍କର ସିଂହନାଦରୂପଶବ୍ଦଯୁକ୍ତ, ପ୍ରାଣାପହାରକ, ତୁମୁଳବାଦ୍ୟଧ୍ୱନିଯୁକ୍ତ, ଜୟୈଷୀ ଯୋଦ୍ଧାମାନଙ୍କର ଦୁଃସ୍ପୃଶ୍ୟ ଭୟାନକ ଦୁସ୍ତର ଦ୍ରୋଣ-ସୈନ୍ୟ-ସାଗରରୁ ଉତ୍ତୀର୍ଣ୍ଣ ହେଲୁଁ । ବର୍ତ୍ତମାନ ଅବଶିଷ୍ଟ ଯେଉଁ ସୈନ୍ୟମାନଙ୍କୁ ସମୁତ୍ତୀର୍ଣ୍ଣ ହେବାକୁ ହେବ, ତାହା ଅଳ୍ପଜଳସମ୍ପନ୍ନ ସାମାନ୍ୟ ନଦୀସଦୃଶ ବୋଧ କରୁଅଛୁଁ । ତୁମ୍ଭେ ନିର୍ଭୟଚିତ୍ତରେ ସେହି ସୈନ୍ୟମାନଙ୍କ ପ୍ରତି ଅଶ୍ୱଚାଳନା କର । ୫ । ଦୁର୍ଦ୍ଧର୍ଷ ଦ୍ରୋଣଙ୍କୁ ଓ ଯୋଧପ୍ରବର କୃତବର୍ମ୍ମାଙ୍କୁ ସେମାନଙ୍କର ଅନୁଗ ସୈନ୍ୟସହିତ ପରାଜିତ କରି ସମ୍ପ୍ରତି ଅର୍ଜ୍ଜୁନଙ୍କୁ ନିକଟରେ ପ୍ରାପ୍ତ ହେବାବୋଲି ମନେ କରୁଁଅଛୁଁ । ଏହି-ସମସ୍ତ ବହୁଳ ସୈନ୍ୟମାନଙ୍କୁ ଅବଲୋକନ କରି ଆମ୍ଭର ଭୟ ହେଉନାହିଁ ।

ଗ୍ରୀଷ୍ମକାଳରେ ପ୍ରଦୀପ୍ତବହ୍ନି ଯେପରି ଶୁଷ୍କ ତୃଣାଦିକୁ ଦଗ୍‌ଧ କରେ ଆମ୍ଭେ ସେହିପରି ସେମାନଙ୍କୁ ଦଗ୍‌ଧ କରିବୁଁ । ହେ ସାରଥେ ! ଦେଖ, ପଦାତି, ଅଶ୍ୱ, ରଥ ଓ ଗଜସମୂହଦ୍ୱାରା ରଣଭୂମି ବିଷମିକୃତ ହୋଇଅଛି । ଏହା ପାଣ୍ଡବପ୍ରବର କିରୀଟିଙ୍କଦ୍ୱାରା ହୋଇଅଛି । ଯେଉଁ ସୈନ୍ୟମାନେ ଭଗ୍ନ ହୋଇ ପଳାୟନ କରୁଅଛନ୍ତି, ତାହା ସେହି ମହାତ୍ମାଙ୍କକର୍ତ୍ତୃକ ହୋଇଅଛି । ଯେଉଁ ଗଜାରୋହୀ ଓ ସାଦୀମାନେ ଧାବମାନ ହେବାରୁ କୌଶେୟବର୍ଣ୍ଣ ଧୂଳି ସମୁଦ୍ଧୃତ ହୋଇଅଛି ତାହାମଧ୍ୟ ସେହି ମହାତ୍ମାଙ୍କକର୍ତ୍ତୃକ ହୋଇଅଛି । ୧୦ । ଶ୍ରବଣ କର, ଅପରିମିତବଳବନ୍ତ ଗାଣ୍ଡୀବ ଧନୁର ଶବ୍ଦ ଶ୍ରୁତ ହେଉଅଛି । ଏଣୁ ବୋଧହୁଏ କୃଷ୍ଣ ସାରଥୀ ଓ ଶ୍ୱେତାଶ୍ୱ ଅର୍ଜ୍ଜୁନ ନିକଟରେ ଅବସ୍ଥିତ କରିଅଛନ୍ତି । ୧୧ । ଆମ୍ଭଠାରେ ନିମିତ୍ତସକଳ ଯେପରି ପ୍ରାଦୁର୍ଭୂତ ହେଉ-ଅଛି ତହିଁରୁ ବୋଧ ହେଉଅଛି, ସୂର୍ଯ୍ୟାସ୍ତକାଳର ପୂର୍ବରୁ ଅର୍ଜ୍ଜୁନ ସିନ୍ଧୁରାଜ-ଙ୍କର ବଧ ନିଷ୍ପାଦନ କରିବେ । ୧୨ । ହେ ସାରଥେ ! ଯେଉଁସ୍ଥାନରେ ଦୁର୍ଯ୍ୟୋଧନଙ୍କ ପୁରୋବର୍ତ୍ତୀ କ୍ରୂରକର୍ମା, ବଦ୍ଧବର୍ମା, ବଦ୍ଧତଳତ୍ରାଣ, ଯୁଦ୍ଧଦୁର୍ମଦ ଧନୁର୍ବାଣଧାରୀ, ପ୍ରହାରପଟୁ, କାମ୍ବୋଜ, ଯବନ, କିରାତ, ଦରଦ, ବର୍ବର ତାମ୍ରଲିପ୍ତକ ଓ ବିବିଧାସ୍ତ୍ରଧାରୀ ଅନ୍ୟାନ୍ୟ ମ୍ଳେଚ୍ଛସୈନ୍ୟମାନେ ଆମ୍ଭପ୍ରତି ଅଭିମୁଖ ଓ ସମରଥୀ ହୋଇ ଅବସ୍ଥାନ କରିଅଛନ୍ତି, ତୁମ୍ଭେ ଅଶ୍ୱମାନଙ୍କୁ ଶୀଘ୍ର କରି ଶନୈଃ ଶନୈଃ ସେହିସ୍ଥାନକୁ ଗମନ କର । ୧୬ । ସେହିସମସ୍ତ ରଥୀ, ଗଜାରୋହୀ, ଅଶ୍ୱାରୋହୀ ଓ ପଦାତିମାନଙ୍କୁ ନିହତ କରି ଆମ୍ଭେ ସେହି ଭୟଙ୍କର ଦୁର୍ଗକୁ ସମୁତ୍ତୀର୍ଣ୍ଣ ହୋଇଅଛୁ ବୋଲି ନିଶ୍ଚୟ ଜାଣ ।୧୭।

ସାରଥି କହିଲେ—ହେ ସତ୍ୟବିକ୍ରମ ବୃଷ୍ଣିନନ୍ଦନ ! ଆମ୍ଭେ ଆପଣଙ୍କ ଆଶ୍ରୟରେ ଥିଲେ, କ୍ରୁଦ୍ଧ ଯମଦଗ୍ନିନନ୍ଦନ ପରଶୁରାମ, ନର-ଶ୍ରେଷ୍ଠ ଦ୍ରୋଣ, କୃପ, କିମ୍ବା ମଦ୍ରରାଜ ମଧ୍ୟ ଯୁଦ୍ଧରେ ଯଦି ଅଗ୍ରେ ଅବସ୍ଥିତ ହୁଅନ୍ତି ତେବେ ଆମ୍ଭର ଭୟ ହୁଏ ନାହିଁ । ୧୯ । ହେ ଶତ୍ରୁସୂଦନ ! ଆପଣ ଅଦ୍ୟ ଯୁଦ୍ଧଦୁର୍ମଦ, କ୍ରୂରକର୍ମା, ବର୍ମଧାରୀ, କାମ୍ବୋଜମାନଙ୍କୁ ଧନୁର୍ବାଣଧାରୀ, ପ୍ରହାରନିପୁଣ ଯବନଗଣଙ୍କୁ ଏବଂ ନାନାସ୍ତ୍ରଧାରୀ କିରାତ, ଦରଦ, ବର୍ବର ଓ ତାମ୍ରଲିପ୍ତକପ୍ରଭୃତି ମ୍ଳେଚ୍ଛମାନଙ୍କୁ ସମରରେ ପରାଜିତ କରିଅଛନ୍ତି ; ସେହି ସମୟରେ ଆମ୍ଭର କଦାଚ କିଞ୍ଚିନ୍ମାତ୍ର ଭୟ ହୋଇନାହିଁ । ବର୍ତ୍ତମାନ ଏହି ଗୋଷ୍ପଦସଦୃଶ ଯୁଦ୍ଧରେ ଆମ୍ଭର ଭୟ ବିଷୟ କ'ଣ ଅଛି ? ହେ

ଆୟୁଷ୍ମନ ! ଆପଣଙ୍କୁ କେଉଁ ପଥରେ ଧନଞ୍ଜୟଙ୍କ ନିକଟକୁ ନେଇଯିବୁଁ ? ୨୩ । ଆପଣ କେଉଁମାନଙ୍କ ଉପରେ କ୍ରୋଧ ହୋଇ ଅଛନ୍ତି ? କେଉଁମାନଙ୍କର ମୃତ୍ୟୁ ଉପସ୍ଥିତ ହୋଇଅଛି ? କେଉଁମାନଙ୍କର ମନ ଅଦ୍ୟ ଯମାଳୟକୁ ଯିବାନିମିତ୍ତ ଉତ୍ସାହିତ ହେଉଅଛି ? ୨୪ । କେଉଁମାନେ ଆପଣଙ୍କୁ ବିକ୍ରମସମ୍ପନ୍ନ କାଳାନ୍ତକ ଯମୋପମ ଓ ପରାକ୍ରାନ୍ତ ଅବଲୋକନ କରି ରଣ ପରିତ୍ୟାଗପୂର୍ବକ ପଳାୟନ କରିବେ ? ୨୫ । ଅଦ୍ୟ ଯମରାଜ କେଉଁମାନଙ୍କୁ ସ୍ମରଣ କରୁଅଛନ୍ତି ?

ସାତ୍ୟକି କହିଲେ—ହେ ସାରଥେ ! ଇନ୍ଦ୍ର ଯେପରି ଦାନବମାନଙ୍କୁ ନିହତ କରିଥିଲେ ଆମ୍ଭେ ଅଦ୍ୟ ସେହିପରି ମୁଣ୍ଡିତମସ୍ତକ କାମ୍ବୋଜ ସୈନ୍ୟମାନଙ୍କୁ ସଂହାର କରିବୁ । ତୁମ୍ଭେ ଆମ୍ଭଙ୍କୁ ସେମାନଙ୍କ ନିକଟକୁ ନିଅ । ଆମ୍ଭେ ପ୍ରତିଜ୍ଞା ପାଳନ କରିବୁଁ । ଅଦ୍ୟ ସେହି ସୈନ୍ୟମାନଙ୍କୁ ବିମର୍ଦ୍ଦିତ କରି ଶୀଘ୍ର ଅର୍ଜ୍ଜୁନଙ୍କ ସମୀପକୁ ଗମନ କରିବୁଁ । ୨୭ । ଅଦ୍ୟ ଦୁର୍ଯ୍ୟୋଧନଙ୍କସହିତ କୌରବମାନେ ଆମ୍ଭର ବଳବୀର୍ଯ୍ୟ ଅବଲୋକନ କରିବେ । ଅଦ୍ୟ ମୁଣ୍ଡିତମସ୍ତକ ସୈନ୍ୟମାନେ ନିହତ ଓ ଅନ୍ୟାନ୍ୟ ସମସ୍ତ ସୈନ୍ୟ ନିରାକୃତ ହେଲେ ; ବିଦୀର୍ଯ୍ୟମାଣ ସେହିସମସ୍ତ କୌରବସୈନ୍ୟଙ୍କର ବହୁପ୍ରକାର ଆର୍ତ୍ତଧ୍ୱନି ଶ୍ରବଣ କରି ଦୁର୍ଯ୍ୟୋଧନ ସନ୍ତପ୍ତ ହେବେ ।୨୯। ଅଦ୍ୟ ଆମ୍ଭେ ସଂଗ୍ରାମରେ ପାଣ୍ଡବପ୍ରବର ଶ୍ୱେତାଶ୍ୱ ମହାତ୍ମା ଆଚାର୍ଯ୍ୟ ଅର୍ଜ୍ଜୁନଙ୍କର ଉପଦିଷ୍ଟ ପଥକୁ ଲୋକମାନଙ୍କୁ ଦେଖାଇବୁଁ । ୩୦ । ଅଦ୍ୟ ରାଜା ଦୁର୍ଯ୍ୟୋଧନ ସହସ୍ର ସହସ୍ର ପ୍ରଧାନ ଯୋଦ୍ଧାମାନଙ୍କୁ ମଦୀୟ ବାଣଦ୍ୱାରା ନିହତ ହେବାର ନିରୀକ୍ଷଣ କରି ଅନୁତାପ କରିବେ । ୩୧ । ଅଦ୍ୟ ଆମ୍ଭେ ଲଘୁହସ୍ତରେ ବାଣମାନ ନିକ୍ଷେପ କରିବୁଁ । କୌରବମାନେ ଆମ୍ଭର ଶରାସନକୁ ଅଲାତଚକ୍ରସଦୃଶ ଦର୍ଶନ କରିବେ । ୩୨ । ଅଦ୍ୟ ସୈନ୍ୟମାନେ ମଦୀୟ ବାଣସମୂହରେ ପରିବ୍ୟାପ୍ତ ହୋଇ ରୁଧିରାକ୍ତ ଦେହରେ ପ୍ରାଣତ୍ୟାଗ କରି ଅଛନ୍ତି ବୋଲି ଶ୍ରବଣ କରି ଦୁର୍ଯ୍ୟୋଧନ ସନ୍ତପ୍ତ ହେବେ ।

ଅଦ୍ୟ ଆମ୍ଭେ କ୍ରୁଦ୍ଧ ହୋଇ ପ୍ରଧାନ ପ୍ରଧାନ ବୀରମାନଙ୍କୁ ନିହତ କଲେ ଇହଲୋକରେ ଦୁଇଗୋଟି ଅର୍ଜ୍ଜୁନ ଅଛନ୍ତିବୋଲି ମନେ କରିବେ ।୩୪। ଅଦ୍ୟ ସହସ୍ର ସହସ୍ର ରାଜାମାନଙ୍କୁ ମହାରଣରେ ଆମ୍ଭକର୍ତ୍ତୃକ ନିହତ

ହେବାର ନିରୀକ୍ଷଣ କରି ଦୁର୍ଯ୍ୟୋଧନ ସନ୍ତପ୍ତ ହେବେ । ୩୫ । ଅଦ୍ୟ ଆମ୍ଭେ ସହସ୍ର ସହସ୍ର ରାଜାମାନଙ୍କୁ ନିହତ କରି ମହାତ୍ମା ପାଣ୍ଡବମାନଙ୍କପ୍ରତି ଆମ୍ଭର ସ୍ନେହ ଓ ଭକ୍ତି ଥିବାର ରାଜାମାନଙ୍କୁ ପ୍ରଦର୍ଶନ କରାଇବୁଁ । ୩୬ । ଅଦ୍ୟ କୌରବମାନେ ଆମ୍ଭର ବଳବୀର୍ଯ୍ୟ ଓ ପାଣ୍ଡବମାନଙ୍କ ପ୍ରତି ଆମ୍ଭର କୃତଜ୍ଞତା ଜାଣିପାରିବେ ।

ସଞ୍ଜୟ କହିଲେ—ସାରଥୀ ସାତ୍ୟକିଙ୍କକର୍ତ୍ତୃକ ଏହିରୂପେ ଉକ୍ତ ହୋଇ ଶଶାଙ୍କ ବର୍ଣ୍ଣସନ୍ନିଭ ସାଧୁବାହୀ ଅଶ୍ୱମାନଙ୍କୁ ବେଗରେ ଚାଳିତ କଲେ । ବାୟୁତୁଲ୍ୟବେଗବାନ୍ ଉତ୍ତମ ଅଶ୍ୱମାନେ ଆକାଶକୁ ପାନକଲାପ୍ରାୟ ସତ୍ୱର ଯବନ ଯୋଦ୍ଧାମାନଙ୍କ ନିକଟରେ ସାତ୍ୟକିଙ୍କୁ ଉପନୀତ କଲେ । ଯବନ ସୈନ୍ୟଗଣ ସେନାମଧ୍ୟରେ ଅପରାଙ୍ମୁଖ ସାତ୍ୟକିଙ୍କୁ ପ୍ରାପ୍ତ ହେଲେ । ସେମାନଙ୍କମଧ୍ୟରୁ ବହୁ ଲଘୁହସ୍ତ ବୀରମାନେ ଶରବର୍ଷଣଦ୍ୱାରା ତାହାଙ୍କୁ ସମାଚ୍ଛନ୍ନ କଲେ । ସାତ୍ୟକି ବେଗସହକାରେ ନତପର୍ବ ବହୁବାଣଦ୍ୱାରା ସେମାନଙ୍କର ଶର ଓ ଅନ୍ୟାନ୍ୟ ଅସ୍ତ୍ରସମୂହକୁ ଛେଦନ କଲେ । ସେମାନଙ୍କର ନିକ୍ଷିପ୍ତ ବାଣମାନ ସାତ୍ୟକିଙ୍କ ନିକଟକୁ ଯାଇପାରିଲା ନାହିଁ । ସେ ଉଗ୍ରରୂପ ଧାରଣ କରି ସୁବର୍ଣ୍ଣପୁଙ୍ଖ ଗୃଧ୍ରପକ୍ଷଯୁକ୍ତ ସୁଶାଣିତ ଶରସମୂହରେ ସେମାନଙ୍କ ମସ୍ତକ ଓ ହସ୍ତସବୁ କର୍ତ୍ତନ କଲେ । ତାହାଙ୍କର ନିକ୍ଷିପ୍ତ ଶରସମୂହ ଶୈଙ୍ଗ ଲୌହମୟ ଓ କାଂସ୍ୟମୟ ବର୍ମମାନଙ୍କୁ ଭେଦ କରି ଶରୀର ଭେଦପୂର୍ବକ ମହୀତଳକୁ ଗମନ କଲେ । ଶତଶତ ମ୍ଳେଚ୍ଛବୀର ସାତ୍ୟକିଙ୍କକର୍ତ୍ତୃକ ହନ୍ୟମାନ ହୋଇ ପ୍ରାଣତ୍ୟାଗପୂର୍ବକ ନିପାତିତ ହେଲେ । ସେ ସମ୍ପୂର୍ଣ୍ଣରୂପେ ଆକର୍ଣ୍ଣ-ସନ୍ଧାନପୂର୍ବକ ଏକନିଷ୍ଠ ନିବଦ୍ଧ ପୁଞ୍ଜପୁଞ୍ଜ ଶରଦ୍ୱାରା ପ୍ରତି ଥରରେ ପାଞ୍ଚଛଅ ସାତ ବା ଆଠଜଣ ଲେଖାଏଁ ସୈନ୍ୟମାନଙ୍କୁ ଛେଦନ କଲେ । ଶିନିପୌତ୍ର ସାତ୍ୟକି ଏହିପରି ସହସ୍ର ସହସ୍ର କାମ୍ବୋଜ, ଶକ, ଶବର, କିରାତ ଓ ବର୍ବର ସୈନ୍ୟମାନଙ୍କୁ ହନନ ଓ ଛେଦନପୂର୍ବକ ଆପଣଙ୍କ ସୈନ୍ୟ କ୍ଷୟପ୍ରାପ୍ତ କଲେ । ସୈନିକମାନଙ୍କର ରକ୍ତମାଂସରେ ଧରାତଳ କର୍ଦ୍ଦମାନ୍ୱିତ ହୋଇ ମନୁଷ୍ୟମାନଙ୍କର ଅଗମ୍ୟ ହେଲା । ଦସ୍ୟୁ ମ୍ଳେଚ୍ଛମାନଙ୍କର ଉଷ୍ଣୀଷଯୁକ୍ତ ପକ୍ଷ-ହୀନପକ୍ଷୀସଦୃଶ ମୁଣ୍ଡିତମସ୍ତକସକଳ ଇତସ୍ତତଃ ଭୂତଳରେ ପତିତ ହୋଇ ପୃଥିବୀକୁ ସମାକୀର୍ଣ୍ଣ କଲା । ଯେପରି ତାମ୍ରବର୍ଣ୍ଣ ମେଘଦ୍ୱାରା ଆକାଶ ପରିକୀର୍ଣ୍ଣ ହୋଇ ପ୍ରକାଶିତ ହୁଏ, ସେହିପରି ରୁଧିରସିକ୍ତ କବନ୍ଧସମୂହରେ ସମସ୍ତ

ରଣସ୍ଥଳ ସମାବୃତ ହୋଇ ପ୍ରକାଶପ୍ରାପ୍ତ ହେଲା । ଏହିପରି ସେହି ସୈନ୍ୟମାନେ ସାତ୍ୟକିଙ୍କ ସୁପର୍ବଯୁକ୍ତ ବକ୍ରଭୁଲ୍ୟ ଶରସମୂହରେ ନିହତ ହୋଇ ବସୁନ୍ଧରାକୁ ସମାଚ୍ଛନ୍ନ କଲେ ।

ହେ ମହାରାଜ ! ଆପଣଙ୍କର ସେହିସମସ୍ତ ବଦ୍ଧବର୍ମ୍ମ ସୈନ୍ୟମଧ୍ୟରେ ଯାହାକିଛି ଅଳ୍ପାବଶିଷ୍ଟ ରହିଲେ ସେମାନେ ଯୁଯୁଧାନଙ୍କ ନିକଟରେ ପରାଜିତ ହେଲେ ଓ ସେମାନଙ୍କର ପ୍ରାଣ ସଙ୍କଟାପନ୍ନ ହେଲା । ସେମାନେ ଖ୍ରିତ ଓ ମୃଗ୍ଧଚିତ୍ତରେ ରଣରୁ ଭଗ୍ନ ହୋଇ ପାର୍ଷ୍ଣି ଓ କଶାଘାତରେ ଅଶ୍ୱମାନଙ୍କୁ ତାଡ଼ିତ କରି ଦ୍ରୁତବେଗରେ ସର୍ବ ଦିଗକୁ ପଳାୟନ କଲେ । ପୁରୁଷସିଂହ ସତ୍ୟବିକ୍ରମ ସାତ୍ୟକି, କାମ୍ବୋଜ, ଯବନ ଓ ଶକଦେଶୀୟ ଦୁର୍ଜ୍ଜୟ ମହତୀ ସୈନ୍ୟମାନଙ୍କୁ ବିଦ୍ରାବିତ ଓ ଆପଣଙ୍କର ଅପରାପର ଯୋଦ୍ଧାମାନଙ୍କୁ ପରାଜିତ କରି ହୃଷ୍ଟଚିତ୍ତ ହୋଇ ରଥଚାଳନାନିମିତ୍ତ ଆଦେଶ ପ୍ରଦାନ କଲେ । ଗନ୍ଧର୍ବ ଓ ଚାରଣଗଣ ସମରରେ ସାତ୍ୟକିଙ୍କର ଅଲୌକିକ କାର୍ଯ୍ୟ ଓ ଅଦ୍ଭୁତ ପରାକ୍ରମ ଅବଲୋକନ କରି ଅତିଶୟ ପ୍ରଂଶସା କଲେ । ସାତ୍ୟକି ଅର୍ଜ୍ଜୁନଙ୍କ ପୃଷ୍ଠରକ୍ଷାର୍ଥ ଗମନ କରିବାବେଳେ ଆପଣଙ୍କପକ୍ଷୀୟ କେହି ବୀର ତାହାଙ୍କ ସମ୍ମୁଖରେ ଅବସ୍ଥାନ କରିପାରିଲେ ନାହିଁ । ୫୫ ।

---

# ୧୨୦ ଅଧ୍ୟାୟ

ସଞ୍ଜୟ କହିଲେ—ହେ ମହାରାଜ ! ରଥିଶ୍ରେଷ୍ଠ ଯୁଯୁଧାନ ଯବନ ଓ କାମ୍ବୋଜମାନଙ୍କୁ ପରାଜିତ କରି ଆପଣଙ୍କର ସୈନ୍ୟର ମଧ୍ୟସ୍ଥଳ ଭେଦପୂର୍ବକ ଅର୍ଜ୍ଜୁନଙ୍କ ସମୀପକୁ ଯାତ୍ରା କଲେ । ୧ । ଯେପରି ବ୍ୟାଘ୍ର ମୃଗଯୂଥର ଆଘ୍ରାଣ ପାଇ ଖ୍ରିଷଣଭାବରେ ଗମନ କରେ, ସେହିପରି ବିଚିତ୍ର-କବଚ ଓ ବିଚିତ୍ରଧ୍ୱଜବିଶିଷ୍ଟ ଶରରୂପ ଭୟାନକଦନ୍ତସମ୍ପନ୍ନ ନରବ୍ୟାଘ୍ର ଯୁଯୁଧାନ ଆପଣଙ୍କ ସୈନ୍ୟମାନଙ୍କର ଭୟୋତ୍ପାଦନପୂର୍ବକ ଗମନ କଲେ । ୨ । ସେ ରଥାରୋହଣ କରି କରି ରୁକ୍ମଚନ୍ଦ୍ରଶୋଭିତ ରୁକ୍ମପୃଷ୍ଠ ମହାବେଗ-ଶୀଳ ଶରାସନକୁ ଅତିଶୟ ଭ୍ରମଣ କରାଉଥିଲେ । ୩ । ତାହାଙ୍କ ଅଙ୍ଗଦ, ଶିରସ୍ତ୍ରାଣ, ବର୍ମ, ଧନୁ ଓ ଧ୍ୱଜ ଏ ସମସ୍ତ ସ୍ୱର୍ଣ୍ଣମୟ ଥିବାରୁ ସୁମେରୁଶୃଙ୍ଗଭୁଲ୍ୟ

ଶୋଭା ପାଇଲା । ୪ । ରଣସ୍ଥଳରେ ତାହାଙ୍କର ପରିଭ୍ରମିତ ମଣ୍ଡଳାକାର ଧନୁ ଶରତ୍‌କାଳୀକ ତେଜଃପ୍ରାପ୍ତ ରଶ୍ମିବାନ୍ ଉଦିତ ସୂର୍ଯ୍ୟସଦୃଶ ପ୍ରକାଶ ପ୍ରାପ୍ତ ହେଲା । ସେହି ସମୟରେ ଦୁଇଗୋଟି ସୂର୍ଯ୍ୟ ବିରାଜମାନ ହେଲାପ୍ରାୟ ବୋଧ ହେଲା । ବୃଷସ୍କନ୍ଧ, ବୃଷଭଲୋଚନ, ବିକ୍ରମଶୀଳ ନରଶ୍ରେଷ୍ଠ ଯୁଯୁଧାନ, ଗୋ-ଗଣ ମଧ୍ୟରେ ବୃଷଭତୁଲ୍ୟ ଆପଣଙ୍କ ସୈନ୍ୟମଧ୍ୟରେ ପ୍ରକାଶ ପ୍ରାପ୍ତ ହେଲେ । ୬ । ଯେପରି ବହୁ ବ୍ୟାଘ୍ର ଜିଘାଂସାପରବଶ ହୋଇ ଗୋଟିଏ ହସ୍ତୀପ୍ରତି ଧାବମାନ ହୁଅନ୍ତି ସେହିପରି ଆପଣଙ୍କପକ୍ଷୀୟ ଯୋଦ୍ଧାମାନେ ଯୂଥମଧ୍ୟରେ ଅବସ୍ଥିତ ମତ୍ତହସ୍ତୀସଦୃଶ ବୀର୍ଯ୍ୟବାନ୍ ମତ୍ତଦ୍ୱିରଦଗାମୀ ଯୁଯୁଧାନଙ୍କ ପ୍ରତି ରଣମଧ୍ୟରେ ଧାବମାନ ହେଲେ । ଦ୍ରୋଣସୈନ୍ୟ, ଭୋଜସୈନ୍ୟ ଓ ଜଳନ୍ଧରସୈନ୍ୟ ଏହି ସମସ୍ତ ଦୁସ୍ତରଣୀୟ ସୈନ୍ୟସାଗରମଧ୍ୟରୁ ଓ କୃତବର୍ମାଙ୍କର ସଂଗ୍ରାମରୁ ଯେ ସମୁତ୍ତୀର୍ଣ୍ଣ ହୋଇ ଅଛନ୍ତି, ତାଦୃଶ ପରାକ୍ରମଶୀଳ ସାତ୍ୟକଙ୍କୁ ଆପଣଙ୍କପକ୍ଷୀୟ ରଥିମାନେ ଅତିଶୟ କ୍ରୋଧାବିଷ୍ଟ ହୋଇ ଚତୁର୍ଦ୍ଦିଗରୁ ପରିବେଷ୍ଟନ କଲେ । ସାତ୍ୟକି ଗମନ କରନ୍ତେ, ଦୁର୍ଯ୍ୟୋଧନ, ଚିତ୍ରସେନ, ଦୁଃଶାସନ, ବିଂବିଶତି, ଶକୁନି, ଦୁଃସହ, ଦୁର୍ମର୍ଷଣ, କ୍ରଥ ଓ ଅପରାପର ବହୁଳ ଦୁରାସଦ ଶସ୍ତ୍ରାସ୍ତ୍ର ଶୂରମାନେ ରୋଷକଷାୟିତଲୋଚନରେ ତାହାଙ୍କର ପଶ୍ଚାତ୍ ପଶ୍ଚାତ୍ ଧାବମାନ ହେଲେ । ତହୁଁ ଆପଣଙ୍କ ସୈନ୍ୟମଧ୍ୟରେ ପର୍ବକାଳୀକ ପ୍ରବଳ ପବନୋଦ୍ଧୂତ ବେଗବାନ୍ ସାଗରତୁଲ୍ୟ ଶବ୍ଦ ହେଲା ।

ଶିନିକୁଳପ୍ରବର ସାତ୍ୟକି ସେହି ବୀରଗଣଙ୍କୁ ମହାବେଗରେ ଆଗମନ କରିବାର ଅବଲୋକନ କରି ହାସ୍ୟମୁଖରେ ସାରଥିଙ୍କୁ କହିଲେ, ହେ ସୂତ ! ଧୀରେ ଧୀରେ ଗମନ କର । ଗଜ, ଅଶ୍ୱ ଓ ପଦାତିସଙ୍କୁଳ ଦୁର୍ଯ୍ୟୋଧନଙ୍କର ଏହି ସୈନ୍ୟମାନେ ରଥନିର୍ଘୋଷଦ୍ୱାରା ସମସ୍ତ ଦିଗକୁ ନିନାଦିତ ଓ ପୃଥିବୀ, ଅନ୍ତରୀକ୍ଷ ଓ ସାଗର ଏସମସ୍ତ ପ୍ରକମ୍ପିତ କରି ଅତି-ବେଗରେ ଆମ୍ଭ ଅଭିମୁଖକୁ ଆଗମନ କରୁଅଛନ୍ତି ।

ହେ ବତ୍ସ ! ଯେପରି ବେଳାଭୂମି ପୂର୍ଣ୍ଣିମାସମୁଦ୍ଧତ ସାଗରକୁ ନିବାରଣ କରେ, ଆମ୍ଭେ ସେହିପରି ଏହି ସାଗରକୁ ନିବାରଣ କରିବୁଁ । ଏହି ମହାସାଗରରେ ତୁମ୍ଭେ ଆମ୍ଭର ଇନ୍ଦ୍ରଙ୍କତୁଲ୍ୟ ବିକ୍ରମ

ଅବଲୋକନ କରିବ । ୧୭ । ଆମ୍ଭେ ଶାଣିତଶରସମୂହରେ ଏହି ଶତ୍ରୁସୈନ୍ୟମାନଙ୍କୁ ଦଗ୍ଧ କରିବୁଁ । ଏହି ଯୁଦ୍ଧରେ ଆମ୍ଭର ଅଗ୍ନିତୁଲ୍ୟ ବାଣସମୂହଦ୍ୱାରା ସହସ୍ର ସହସ୍ର ପଦାତି, ଅଶ୍ୱ, ରଥ ଓ ହସ୍ତିମାନଙ୍କୁ କ୍ଷତବିକ୍ଷତ ଓ ନିହତ ହେବାର ତୁମ୍ଭେ ନିରୀକ୍ଷଣ କରିବ । ଅମିତତେଜା ସାତ୍ୟକି ଏହିପରି କହୁଅଛନ୍ତି, ଏମନ୍ତ ସମୟରେ ସେହିସମସ୍ତ ସୈନ୍ୟମାନେ ଯୁଯୁତ୍ସୁ ହୋଇ ତାହାଙ୍କ ସମୀପରେ ଶୀଘ୍ର ଉପସ୍ଥିତ ହେଲେ । ସେହି ବୀରମାନେ 'ଦହନ କର', 'ଧାବମାନ ହୁଅ', 'ରହ', 'ଦେଖ' ଏହିପରି କହୁଥିବା ସମୟରେ ସାତ୍ୟକି ସୁଶାଣିତ ଶରସମୂହଦ୍ୱାରା ସେମାନଙ୍କର ପ୍ରଧାନ ପ୍ରଧାନ ତିନିଶତ ଯୋଦ୍ଧାଙ୍କୁ ଓ ଚାରିଶତ ହସ୍ତୀଙ୍କୁ ନିହତ କଲେ । ୨୧ । ସେହି ଧନ୍ୱୀମାନଙ୍କ ସହିତ ତାହାଙ୍କର ଦେବାସୁର ଯୁଦ୍ଧସଦୃଶ ତୁମୁଳ ଓ ଜନକ୍ଷୟକର ଯୁଦ୍ଧ ଆରମ୍ଭ ହେଲା । ୨୨ । ହେ ମାରିଷ ! ଶିନିପୌତ୍ର ଆପଣଙ୍କ ପୁତ୍ରଙ୍କର ମେଘଜାଲସନ୍ନିଭ ସେହି ସୈନ୍ୟମାନଙ୍କୁ ଆଶୀବିଷତୁଲ୍ୟ ଶରସମୂହଦ୍ୱାରା ପ୍ରତିଗ୍ରହ କଲେ । ୨୩ ।

ହେ ମହାରାଜ ! ସେହି ବୀର୍ଯ୍ୟବାନ୍ ସାତ୍ୟକି ସମରରେ ଶରଜାଲ-ଦ୍ୱାରା ପ୍ରଚ୍ଛାଦ୍ୟମାନ ହୋଇ ସୁଦ୍ଧା ଅସମ୍ଭ୍ରମଚିତ୍ତରେ ଆପଣଙ୍କର ବହୁସୈନ୍ୟ ବିନାଶ କଲେ । ହେ ରାଜେନ୍ଦ୍ର ! ପ୍ରଭୋ ! ସାତ୍ୟକିଙ୍କର ଏହି ସୁମହତ୍ ଆଶ୍ଚର୍ଯ୍ୟ ବିଷୟ ଦେଖିଲୁ ଯେ ସଂଗ୍ରାମରେ ତାହାଙ୍କର ଗୋଟିଏ ସୁଦ୍ଧା ବାଣ ବ୍ୟର୍ଥ ହେଲା ନାହିଁ । ୧୫ । ରଥ, ଅଶ୍ୱ ଓ ହସ୍ତୀରୂପ ଜଳସମ୍ପନ୍ନ, ପଦାତି-ରୂପ ତରଙ୍ଗଦ୍ୱାରାସମାକୁଳ ସେହି ସୈନ୍ୟ-ମହାର୍ଣ୍ଣବ ଶିନିପୌତ୍ରରୂପ ବେଳାଭୂମିକୁ ପ୍ରାପ୍ତ ହୋଇ ସ୍ଥିତ ହେଲା । ସହସ୍ର ସହସ୍ର ତୁରଙ୍ଗ, ମାତଙ୍ଗ ଓ ଶତାଙ୍ଗସମ୍ପନ୍ନ ସେହି ସୈନ୍ୟସମୂହ ସାତ୍ୟକିଙ୍କର ଶରନିକରରେ ବଧ୍ୟମାନ ଓ ଭୟାକୁଳ ହୋଇ ମୁହୁର୍ମୁହୁଃ ଆବର୍ତ୍ତିତ ହେଲେ । ୨୭ । ଯେପରି ଗୋଗଣ ସିଂହକର୍ତ୍ତୃକ ଅର୍ଦ୍ଦିତ ହୋଇ ଭ୍ରମଣ କରନ୍ତି ସେହିପରି ରଥୀ, ପତ୍ତି, ନାଗ, ଅଶ୍ୱ ଓ ସାଦମାନେ ଶରାହତ ହୋଇ ଇତସ୍ତତଃ ଭ୍ରମଣ କଲେ । ସେହି ସମୟରେ ପଦାତି, ରଥୀ, ନାଗ, ସାଦୀ ଓ ଅଶ୍ୱମାନଙ୍କ ମଧ୍ୟରେ ଏହିପରି କାହାରିକୁ ଦେଖିଲୁ ନାହିଁ, ଯେ କି ଯୁଯୁଧାନଙ୍କର ଶାୟକଦ୍ୱାରା ବିଦ୍ଧ ହୋଇ ନାହିଁ । ହେ ଭୂପାଳ ! ସାତ୍ୟକି ଯେଉଁପରି ସୈନ୍ୟ କ୍ଷୟ କଲେ, ଧନଞ୍ଜୟ ସେପରି କରି ନାହାନ୍ତି । ଶିନିପୌତ୍ର

ସାତ୍ୟକି ନିର୍ଭୀକ ଓ ଲଘବାନ୍ୱିତ ହୋଇ କୃତିତ୍ୱ ପ୍ରଦର୍ଶନପୂର୍ବକ ଅର୍ଜୁନଙ୍କ ଅପେକ୍ଷା ମଧ୍ୟ ଅତିରିକ୍ତ କାର୍ଯ୍ୟ କଲେ ।

ତଦନନ୍ତର ରାଜା ଦୁର୍ଯୋଧନ ତିନିଗୋଟି ଶରରେ ସାତ୍ୟକିଙ୍କ ସାରଥିକୁ, ଚାରିଗୋଟି ଶରରେ ତାହାଙ୍କର ଚାରି ଅଶ୍ୱକୁ ଓ ତିନିଗୋଟି ଶରରେ ସାତ୍ୟକିଙ୍କୁ ବିଦ୍ଧ କରି ପୁନର୍ବାର ଆଠଗୋଟି ଶରରେ ତାହାଙ୍କୁ ବିଦ୍ଧ କଲେ ।୩୨। ସେହି ସମୟରେ ଦୁଃଶାସନ ଷୋଡ଼ଶଗୋଟି, ଶକୁନି ପଚିଶଗୋଟି, ଚିତ୍ରସେନ ସାତଗୋଟି ଓ ଦୁଃସହ ପନ୍ଦରଗୋଟି ଶରଦ୍ୱାରା ସାତ୍ୟକିଙ୍କର ବକ୍ଷସ୍ଥଳ ବିଦ୍ଧ କଲେ । ବୃଷ୍ଣିକୁଳସିଂହ ଏହି ପ୍ରକାରେ ବାଣ-ସମୂହଦ୍ୱାରା ଆହତ ହୋଇ ହାସ୍ୟପୂର୍ବକ ସେସମସ୍ତଙ୍କୁ ତିନିତିନିଗୋଟି ବାଣରେ ବିଦ୍ଧ କଲେ । ଆଶୁବିକ୍ରମ ଶିନିପୌତ୍ର ସେହି ଶତ୍ରୁମାନଙ୍କୁ ତେଜନ ଶରସମୂହଦ୍ୱାରା ଗାଢ଼ବିଦ୍ଧ କରି ଶ୍ୟେନପକ୍ଷୀସଦୃଶ ସମରରେ ବିଚରଣ-ପୂର୍ବକ ଶକୁନିଙ୍କର ଶରାସନ ଛେଦନ କଲେ । ଅନନ୍ତର ତିନିଗୋଟି ବାଣରେ ସେ ଦୁର୍ଯୋଧନଙ୍କର ସ୍ତନାନ୍ତରକୁ ବିଦ୍ଧ କଲେ । ଚିତ୍ରସେନକୁ ଏକଶତ ବାଣରେ, ଦୁଃସହକୁ ଦଶଗୋଟି ବାଣରେ ଓ ଦୁଃଶାସନକୁ ବିଂଶଗୋଟି ବାଣରେ ବିଦ୍ଧ କଲେ । ଆପଣଙ୍କର ଶ୍ୟାଳକ ଶକୁନି ଅପର ଗୋଟିଏ ଶରାସନ ଗ୍ରହଣପୂର୍ବକ ସାତ୍ୟକିଙ୍କୁ ଆଠଗୋଟି ଶରରେ ବିଦ୍ଧ କରି ପୁନର୍ବାର ପାଞ୍ଚଗୋଟି ଶରରେ ବିଦ୍ଧ କଲେ । ଦୁଃଶାସନ ଦଶଗୋଟି ବାଣରେ, ଦୁଃସହ ତିନିଗୋଟି ବାଣରେ ଓ ଦୁର୍ମୁଖ ଦ୍ୱାଦଶଗୋଟି ବାଣରେ ସାତ୍ୟକିଙ୍କୁ ବିଦ୍ଧ କଲେ । ଦୁର୍ଯୋଧନ ତିସପ୍ତତି ବାଣରେ ସାତ୍ୟକିଙ୍କୁ ବିଦ୍ଧ କରି ସୁଶାଣିତ ତିନିଗୋଟି ବାଣରେ ସାତ୍ୟକିଙ୍କ ସାରଥିକୁ ବିଦ୍ଧ କଲେ ।

ତତ୍ପରେ ସାତ୍ୟକି ଏକତ୍ରିତ ହୋଇଥିବା ସେହି ମହାରଥୀ ଯତ୍ନବାନ୍ ବୀରମାନଙ୍କୁ ପାଞ୍ଚପାଞ୍ଚଗୋଟି ବାଣରେ ପୁନର୍ବାର ବିଦ୍ଧ କରି ଦୁର୍ଯୋଧନର ସାରଥିକୁ ଏକ ଭଲ୍ଲଦ୍ୱାରା ଶୀଘ୍ର ନିହତ କଲେ । ସାରଥୀ ହତ ହୋଇ ଭୂତଳରେ ପତିତ ହେଲା । ତାହାଙ୍କର ଅନିଳତୁଲ୍ୟବେଗଶୀଳ ଅଶ୍ୱମାନେ ସାରଥୀବିହୀନ ହୋଇ ରଥକୁ ନେଇ ରଣସ୍ଥଳରୁ ଅପସୃତ ହେଲେ । ଆପଣଙ୍କ ପୁତ୍ରଗଣ ଓ ଶତ ଶତ ସୈନିକମାନେ ରାଜାଙ୍କର ରଥକୁ ତାଦୃଶ ଅବସ୍ଥାପନ୍ନ ଦେଖି ସାତ୍ୟକିଙ୍କପ୍ରତି ଧାବମାନ ହେଲେ । ସାତ୍ୟକି ସେହି

ମଦ୍ରକ ସୈନ୍ୟମାନଙ୍କୁ ଧାବମାନ ହୋଇ ଆସିବାର ଦେଖି ଶିଳାଶାଣିତ ରୁକ୍ମପୁଙ୍ଖ ତୀକ୍ଷ୍ଣ ଶରସମୂହଦ୍ୱାରା ସେମାନଙ୍କୁ ସମାଚ୍ଛନ୍ନ କଲେ । ଅନନ୍ତର ସମସ୍ତ ସୈନ୍ୟମାନଙ୍କୁ ଚତୁର୍ଦ୍ଦିଗକୁ ବିଦ୍ରାବିତ କରି ଅର୍ଜ୍ଜୁନଙ୍କ ରଥସମୀପକୁ ପ୍ରସ୍ଥାନ କଲେ ।

ଆପଣଙ୍କପକ୍ଷୀୟ ଯୋଦ୍ଧାମାନେ ସାତ୍ୟକଙ୍କୁ ସ୍ୱୀୟ ସାରଥିର ରକ୍ଷା, ଶରଗ୍ରହଣ ଓ ନିଜକୁ ସଂକଟରୁ ବିମୋଚନ କରିବାର ଅବଲୋକନ କରି ଯଥେଷ୍ଟ ପ୍ରଶଂସା କଲେ । ୪୭ ।

---

# ୧୨୧ ଅଧ୍ୟାୟ

ଧୃତରାଷ୍ଟ୍ର କହିଲେ—ହେ ସଞ୍ଜୟ ! ସାତ୍ୟକି ସେହି ମହତ୍ ସୈନ୍ୟଙ୍କୁ ମର୍ଦ୍ଦିତ କରି ଅର୍ଜ୍ଜୁନଙ୍କ ସମୀପକୁ ଗମନ କରିବା ନିମିତ୍ତ ପ୍ରବୃତ୍ତ ହୁଅନ୍ତେ ଆମ୍ଭର ସେହି ନିର୍ଲ୍ଲଜ ପୁତ୍ରମାନେ କ'ଣ କଲେ ? ୧ । ସବ୍ୟସାଚୀଙ୍କତୁଲ୍ୟ ପରାକ୍ରମୀ ସାତ୍ୟକଙ୍କୁ ଯୁଦ୍ଧରେ ପ୍ରାପ୍ତ ହୋଇ ସେମାନେ କପରି ସମରରେ ଧୈର୍ଯ୍ୟାବଲମ୍ବନ କଲେ ? ୨ । ସେମାନେ ଓ ଅନ୍ୟାନ୍ୟ କ୍ଷତ୍ରିୟଗଣ ସମରରେ ପରାଜିତ ହୋଇ କି ବିଧାନ କଲେ ? ମହାଯଶା ସାତ୍ୟକି ଅବା କି ପ୍ରକାରେ ସେହି ସଂଗ୍ରାମରୁ ଅତିକ୍ରାନ୍ତ ହେଲେ ? ୩ । ଆମ୍ଭର ପୁତ୍ରମାନଙ୍କର ଜୀବନ ଥାଉ ଥାଉ ବା ସାତ୍ୟକି କି ପ୍ରକାରେ ସଂଗ୍ରାମରେ ସେମାନଙ୍କୁ ଅତିକ୍ରମ କରି ଗମନ କଲେ ? ଏହି ସମସ୍ତ ବୃତ୍ତାନ୍ତ ଆନୁପୂର୍ବିକ କୀର୍ତ୍ତନ କର ।

ହେ ବତ୍ସ ! ତୁମ୍ଭ ନିକଟରୁ ଅତ୍ୟନ୍ତ ଆଶ୍ଚର୍ଯ୍ୟ ବିଷୟ ଶ୍ରବଣ କଲି ଯେ, ବହୁମହାରଥ ଶତ୍ରୁମାନଙ୍କସହିତ ଏକ ବ୍ୟକ୍ତିର ଯୁଦ୍ଧ ହୋଇଥିଲା । ସେହି ଯୁଦ୍ଧରେ ସାତ୍ୟକି ଏକାକୀ ହୋଇ ଯେ ଆମ୍ଭର ମନ୍ଦଭାଗ୍ୟ ପୁତ୍ରମାନଙ୍କୁ ପରାଜିତ କଲେ, ଏହା ଆମ୍ଭଙ୍କୁ ବିପରୀତ ବୋଧ ହେଉଅଛି । ହେ ସଞ୍ଜୟ ! ପାଣ୍ଡବମାନଙ୍କ କଥା ଦୂରେ ଥାଉ, କେବଳ ଏକାକୀ କ୍ରୁଦ୍ଧ ସାତ୍ୟକଙ୍କ ସମୀପରେ ଆମ୍ଭର ସମସ୍ତ ସୈନ୍ୟ ଯଥେଷ୍ଟ ହେବେ ନାହିଁ । ୬ ।

ସାତ୍ୟକି ଯୁଦ୍ଧଦୁର୍ମ୍ମଦ କୃଷ୍ଣ ଦ୍ରୋଣଙ୍କୁ ସମରରେ ପରାଜିତ କରି ସିଂହ ପଶୁମାନଙ୍କୁ ହନନ କଲାପ୍ରାୟ ଆମ୍ଭର ପୁତ୍ରମାନଙ୍କୁ ହନନ କରିଅଛନ୍ତି । ଯାହାଙ୍କୁ କୃତବର୍ମ୍ମାପ୍ରଭୃତି ବୀରମାନେ ଯତ୍ନବାନ୍ ହୋଇ ସମରରେ ପରାଜିତ କରିପାରି ନାହାନ୍ତି ସେ ଆମ୍ଭର ପୁତ୍ରମାନଙ୍କୁ ନିଶ୍ଚୟ ପରାଜିତ କରିବେ । ମହାଯଶା ଶିନପୌତ୍ର ଯେପରି ଯୁଦ୍ଧ କରିଅଛନ୍ତି ସେପରି ଯୁଦ୍ଧ ଅର୍ଜ୍ଜୁନ ମଧ୍ୟ କରିନାହାନ୍ତି । ୧୦ ।

ସଞ୍ଜୟ କହିଲେ—ହେ ଭୂପାଳ ! ଦୁର୍ଯ୍ୟୋଧନଙ୍କର ଦୁର୍ନୀତି ଓ ଆପଣଙ୍କର ଦୁର୍ମନ୍ତ୍ରଣା ହେତୁରୁ ଯାହାଯାହା ଘଟିଅଛି, ସେସମସ୍ତ ଆମ୍ଭେ କହୁଅଛୁଁ, ସେସମସ୍ତ ଅବହିତ ହୋଇ ଶ୍ରବଣ କରନ୍ତୁ । ୧୧ ।

ଆପଣଙ୍କପକ୍ଷୀୟ ସେହିସମସ୍ତ ସୈନ୍ୟମାନେ ଆପଣଙ୍କ ପୁତ୍ରଙ୍କର ଶାସନାନୁସାରେ ଯୁଦ୍ଧରେ ଦୃଢ଼ ଓ କ୍ରୂରମତି ହୋଇ ପରସ୍ପର ପ୍ରତିଜ୍ଞାବଦ୍ଧ ହୋଇ ପୁନର୍ବାର ସାତ୍ୟକିଙ୍କ ନିକଟକୁ ପ୍ରତ୍ୟାଗତ ହେଲେ । ୧୨ । ତିନିସହସ୍ର ସାଦୀ, ଶକ, କାମ୍ବୋଜ, ବାହ୍ଲୀକ, ଯବନ, ପାରଦ, କୁଳିନ୍ଦ, ତଙ୍ଗନ, ଅମ୍ବଷ୍ଠ, ପୈଶାଚ, ମନ୍ଦର, ପାଷାଣହସ୍ତ ପାର୍ବତୀୟ ଯୋଦ୍ଧାଗଣ ଓ ଅନ୍ୟାନ୍ୟ ପଞ୍ଚଶତ ବୀର ପୁରୁଷମାନେ ଦୁର୍ଯ୍ୟୋଧନଙ୍କୁ ଅଗ୍ରବର୍ତ୍ତୀ କରି ଶଲଭସମୂହ ଅଗ୍ନି ନିକଟକୁ ଧାବମାନ ହେଲାପ୍ରାୟ ସାତ୍ୟକିଙ୍କ ପ୍ରତି ଧାବମାନ ହେଲେ । ଏକସହସ୍ର ରଥୀ, ଏକଶତ ମହାରଥୀ, ଏକସହସ୍ର ଗଜାରୋହୀ ଓ ଦୁଇସହସ୍ର ଅଶ୍ୱାରୋହୀସହିତ ମହାରଥୀଗଣ ଓ ଅସଂଖ୍ୟ ପଦାତି ନାନାବିଧ ଶରବର୍ଷଣ କରୁ କରୁ ସାତ୍ୟକିଙ୍କୁ ଆକ୍ରମଣ କଲେ । ଦୁଃଶାସନ 'ସାତ୍ୟକିଙ୍କୁ ନିହତ କର' ବୋଲି ସୈନ୍ୟମାନଙ୍କୁ ଉତ୍ତେଜିତ କରି ତାହାଙ୍କୁ ପରିବେଷ୍ଟନ କଲେ । ସେହି ସମୟରେ ସାତ୍ୟକିଙ୍କର ଏହି ଅଦ୍ଭୁତ ମହତ୍ କାର୍ଯ୍ୟ ଅବଲୋକନ କଲୁଁ ଯେ, ସେ ଏକାକୀ ଅସମ୍ଭ୍ରାନ୍ତ-ଚିତ୍ତରେ ବହୁ ଯୋଦ୍ଧାମାନଙ୍କ ସହିତ ଯୁଦ୍ଧ କଲେ । ପୁଣି ରଥସୈନ୍ୟ, ଗଜସୈନ୍ୟ, ସାଦୀସୈନ୍ୟ ଓ ସେହି ସହସ୍ର ଦସ୍ୟୁସୈନ୍ୟମାନଙ୍କୁ ସଂହାର କଲେ । ଭଗ୍ନଚକ୍ର, ଭଲ୍ଲାଦି ନାନାବିଧ ଅସ୍ତ୍ର, ଅକ୍ଷ, ବନ୍ଧୁର, ଈଶାଦଣ୍ଡ ପ୍ରମଥିତ ଗଜସମୂହ, ନିପାତିତ-ରଥ-ଧ୍ୱଜ-ବର୍ମ୍ମ-ଚର୍ମ୍ମ ଏବଂ ଇତସ୍ତତଃ ବିକୀର୍ଣ୍ଣ ମାଲ୍ୟ, ଆଭରଣ ବସ୍ତ୍ର ଓ ରଥରୁ ନିମ୍ନସ୍ଥ କାଷ୍ଠସମୂହଦ୍ୱାରା

ଗ୍ରହଗଣାଚ୍ଛନ୍ନ ଆକାଶସଦୃଶ ପୃଥିବୀ ସମାଚ୍ଛନ୍ନ ହେଲା । ଅଞ୍ଜନ, ବାମନ, ସୁପ୍ରତୀକ, ମହାପଦ୍ମ ଓ ଐରାବତ ମାତଙ୍ଗମାନଙ୍କ ବଂଶ-ସମ୍ଭୂତ ଓ ଅନ୍ୟାନ୍ୟ କୁଳସମ୍ପନ୍ନ ପର୍ବତାକାର ବହୁ ମହାହସ୍ତୀ ନିହତ ଓ ପତିତ ହୋଇ ରଣଭୂମିରେ ଶୟନ କଲେ । ୨୬ । ସେ ବାନାୟୁଜ, ପାର୍ବତୀୟ, କାମ୍ବୋଜ ଓ ବହ୍ଲୀକଦେଶୀୟ ଉତ୍ତମ ଉତ୍ତମ ଅଶ୍ୱମାନଙ୍କୁ ନିହତ କଲେ । ୨୭ । ନାନାଦେଶୀୟ ନାନାଜାତୀୟ ଶତଶତ ସହସ୍ର ସହସ୍ର ପଦାତିମାନଙ୍କୁ ବିନାଶ କଲେ । ୨୮ । ହତାବଶିଷ୍ଟ ସୈନ୍ୟମାନେ ଇତସ୍ତତଃ ବିକୀର୍ଣ୍ଣ ହୋଇ ପଳାୟମାନ ହେବାର ଅବଲୋକନ କରି ଆପଣଙ୍କ ପୁତ୍ର ଦୁଃଶାସନ ସେହିସମସ୍ତ ଦସ୍ୟୁମାନଙ୍କୁ କହିଲେ, ଆହେ ଅଧାର୍ମିକଗଣ, ପଳାୟନରେ ପ୍ରୟୋଜନ କଅଣ ? ପ୍ରତ୍ୟାବୃତ୍ତ ହୋଇ ଯୁଦ୍ଧ କର । ୨୯ ।

ଅନନ୍ତର ପାଷାଣଯୁଦ୍ଧରେ ନିପୁଣ ପାର୍ବତୀୟ ପାଷାଣଯୋଦ୍ଧା ଶୂରମାନଙ୍କୁ ଭଗ୍ନ ହେବାର ଅବଲୋକନ କରି କହିଲେ, ଯୁଦ୍ଧକାମୁକ ସାତ୍ୟକି ପାଷାଣଯୁଦ୍ଧ ଜାଣନ୍ତି ନାହିଁ । କୌରବମାନେ ମଧ୍ୟ ପାଷାଣଯୁଦ୍ଧରେ ନିପୁଣ ନୁହନ୍ତି । ଅତଏବ ତୁମ୍ଭେମାନେ ତାହାକୁ ନିହତ କର । ତାହା ନିକଟକୁ ଧାବମାନ ହୁଅ, ଭୟ କରନାହିଁ । ସେ ତୁମ୍ଭମାନଙ୍କୁ ବାଣ-ଗୋଚରରେ ପ୍ରାପ୍ତହୋଇ ପାରିବେ ନାହିଁ । ୩୨ । ହେ ମହାରାଜ ! ଯେପରି ମନ୍ତ୍ରିମାନେ ରାଜାଙ୍କ ନିକଟକୁ ଗମନ କରନ୍ତି, ସେହିପରି ପାଷାଣଯୋଦ୍ଧା ପାର୍ବତୀୟମାନେ ପାଷାଣ ହସ୍ତରେ ଧରି ସାତ୍ୟକିଙ୍କ ନିକଟକୁ ଗମନ କଲେ । ୩୩ ।

ସେମାନେ ଆପଣଙ୍କ ପୁତ୍ର ଦୁଃଶାସନଙ୍କର ଆଦେଶାନୁସାରେ ମାତଙ୍ଗମସ୍ତକସଦୃଶ ପାଷାଣଖଣ୍ଡ ଉଦ୍ୟତ କରି ସାତ୍ୟକିଙ୍କ ସମ୍ମୁଖରେ ଯୁଦ୍ଧରେ ଦଣ୍ଡାୟମାନ ହେଲେ । ୩୪ । ଅନ୍ୟାନ୍ୟମାନେ କ୍ଷେପଣୀୟ ଘେନି ସାତ୍ୟକିଙ୍କୁ ବିନାଶ କରିବାକୁ ଉଦ୍ୟତ ହେଲେ । ଏହିପରି ସେମାନେ ସର୍ବଦିଗରୁ ସାତ୍ୟକିଙ୍କୁ ପରିବେଷ୍ଟନ କଲେ । ୩୫ । କିନ୍ତୁ ଶିଳାଯୁଦ୍ଧ କରିବା ମାନସରେ ସେମାନେ ଉଦ୍ୟତ ହେଉ ହେଉ ସାତ୍ୟକି ତିରିଶି ଗୋଟି ବାଣ ସନ୍ଧାନ କରି ସେମାନଙ୍କପ୍ରତି ନିକ୍ଷେପ କଲେ । ୩୬ । ସେମାନେ ମଧ୍ୟ ସାତ୍ୟକିଙ୍କପ୍ରତି ଅତୁଳନୀୟ ଶରବୃଷ୍ଟି ପ୍ରୟୋଗ କଲେ ।

ପରନ୍ତୁ ଶିନିପୁଙ୍ଗବ ଉରଗସଙ୍କାଶ ନାରାଚସମୂହ ଦ୍ୱାରା ସେମାନଙ୍କର ନିକ୍ଷିପ୍ତ ପାଷାଣସମୂହକୁ ଭେଦ କଲେ । ୩୭ । ନିକ୍ଷିପ୍ତ ପାଷାଣସକଳ ସେହି ନାରାଚସମୂହର ଆଘାତରେ ଚୂର୍ଣ୍ଣିତ ହେବାରୁ ଖଦ୍ୟୋତସମୂହସଦୃଶ ପ୍ରଦୀପ୍ତ ହୋଇ ପ୍ରାୟ ସମସ୍ତ ସୈନ୍ୟଙ୍କୁ ଆଘାତ କଲା । ତହୁଁ ସୈନ୍ୟମଧ୍ୟରୁ ହାହାକାର ଶବ୍ଦ ଉତ୍ଥିତ ହେଲା । ୩୮ । ସେମାନଙ୍କ ମଧ୍ୟରୁ ପାଞ୍ଚଶତ ଯୋଦ୍ଧାଙ୍କର ବାହୁମାନ ପାଷାଣଖଣ୍ଡ ସହିତ ଛିନ୍ନ ହୋଇଗଲା । ସେମାନେ ମଧ୍ୟ ଧରାତଳରେ ପତିତ ହେଲେ । ୩୯ । ତତ୍ପରେ ପୁନର୍ବାର ଏକଲକ୍ଷ ଏକସହସ୍ର ଯୋଦ୍ଧା ସାତ୍ୟକିଙ୍କ ନିକଟସ୍ଥ ନ ହେଉଣୁ ସେମାନଙ୍କର ବାହୁ-ସମୂହ ପାଷାଣଖଣ୍ଡସହିତ ଛିନ୍ନ ହେବାରୁ ସେମାନେ ପତିତ ହେଲେ ।୪୦।

ଏହିପରି ସାତ୍ୟକି ଯୁଦ୍ଧରେ ଯତ୍ନବାନ୍ ବହୁସହସ୍ର ପାଷାଣଯୋଧୀ-ମାନଙ୍କୁ ସଂହାର କଲେ । ତାହା ଅଦ୍ଭୁତବତ୍ ହେଲା । ୪୧ । ତଦନନ୍ତର ସେହିସମସ୍ତ ଦରଦ, ତଙ୍ଗନ, ଖଶ, ଲମ୍ପାକ ଓ କୁଳିନ୍ଦସୈନ୍ୟମାନେ ଲୌହ ଓ ଶୂଳହସ୍ତରେ ଏକତ୍ରିତ ହୋଇ ଚତୁର୍ଦ୍ଦିଗରୁ ପାଷାଣବୃଷ୍ଟି କଲେ । ରଣମର୍ମଜ୍ଞ ସାତ୍ୟକି ମଧ୍ୟ ସେମାନଙ୍କପ୍ରତି ନାରାଚସମୂହ ନିକ୍ଷେପ କରି ପ୍ରତିବନ୍ଧ କଲେ । ୪୩ ।

ସେହିସମସ୍ତ ନିକ୍ଷିପ୍ତ ପାଷାଣଖଣ୍ଡମାନ ସାତ୍ୟକିଙ୍କ ଶାଣିତ ଶରସମୂହଦ୍ୱାରା ଅନ୍ତରୀକ୍ଷରେ ନିର୍ଭିନ୍ନ ହେଲା । ତାହାର ଶବ୍ଦରେ ତୁରଙ୍ଗ, ମାତଙ୍ଗ, ରଥାଙ୍ଗ ଓ ପଦାତିମାନେ ଇତସ୍ତତଃ ଧାବମାନ ହେଲେ । ୪୦ । ଶରାଘାତରେ ସେହିସମସ୍ତ ପାଷାଣଖଣ୍ଡ ଚୂର୍ଣ୍ଣିତ ହୋଇ ମନୁଷ୍ୟ, ଗଜ ଓ ବାଜିମାନଙ୍କୁ ସମାକୀର୍ଣ୍ଣ କଲା । ତହୁଁ ସେମାନେ ଭ୍ରମରମାନଙ୍କଦ୍ୱାରା ଦଂଶିତ ହେଲାପ୍ରାୟ ହୋଇ ରଣସ୍ଥଳରେ ଅବସ୍ଥାନ କରିବାକୁ ସମର୍ଥ ହେଲେ ନାହିଁ । ୪୪ । ହତାବଶିଷ୍ଟ ବହୁଳ ମାତଙ୍ଗ କ୍ଷତମସ୍ତକ ଓ ରୁଧିରାକ୍ତ ହୋଇ ସେହି ସମୟରେ ସାତ୍ୟକିଙ୍କ ରଥନିକଟରୁ ପଳାୟନ କଲେ । ୪୬ ।

ହେ ମାରିଷ ! ଯେପରି ପୂର୍ବକାଳରେ ସାଗରର ଶବ୍ଦ ହୁଏ, ସାତ୍ୟକିକର୍ତ୍ତୃକ ପୀଡ୍ୟମାନ ଆପଣଙ୍କ ସୈନ୍ୟମାନଙ୍କ ମଧ୍ୟରେ ସେହିପରି ଶବ୍ଦ ହେଲା । ୪୭ । ହେ ନରପାଳ ! ଦ୍ରୋଣ ସେହି ତୁମୁଳଶବ୍ଦ ଶ୍ରବଣକରି

ସାରଥିଙ୍କୁ କହିଲେ—ହେ ସୂତ ! ସାତ୍ୱତକୁଳର ମହାରଥୀ ସେହି ସାତ୍ୟକି କ୍ରୁଦ୍ଧହୋଇ ସମରରେ ସୈନ୍ୟମାନଙ୍କୁ ବିବିଧ ପ୍ରକାରରେ ବିଦାରଣ କରି କାଳସଦୃଶ ବିଚରଣ କରୁଅଛନ୍ତି । ଯେଉଁଠାରେ ସେହି ତୁମୁଳ ଶବ୍ଦ ହେଉଅଛି, ତୁମ୍ଭେ ସେହିଠାକୁ ରଥଚାଳନା କର । ୪୭ । ସାତ୍ୟକି ପାଷାଣଯୋଦ୍ଧାମାନଙ୍କର ସମରରେ ନିଶ୍ଚୟ ସମବେତ ହୋଇଅଛନ୍ତି । ରଥସମୂହର ଅଶ୍ୱସବୁ ରଥିମାନଙ୍କୁ ଇତସ୍ତତଃ ନେଇଯାଉଅଛନ୍ତି । ରଥିମାନେ ଶସ୍ତ୍ରକବଚବିହୀନ ଓ ରୁଗ୍‌ଣ ହୋଇ ଇତସ୍ତତଃ ପତିତ ହେଉଅଛନ୍ତି । ସେହି ତୁମୁଳ ଯୁଦ୍ଧରେ ସାରଥିମାନେ ଅଶ୍ୱମାନଙ୍କୁ ସଂଯତ କରି ପାରୁନାହାନ୍ତି । ୫୧

ଶସ୍ତ୍ରଧାରିଶ୍ରେଷ୍ଠ ଦ୍ରୋଣାଚାର୍ଯ୍ୟଙ୍କ ସାରଥୀ ତାହାଙ୍କର ତାଦୃଶ କଥା ଶ୍ରବଣ କରି କହିଲେ ।୫୨। ହେ ଆୟୁଷ୍ମନ୍ ! ଦେଖନ୍ତୁ, କୁରୁ ସୈନ୍ୟମାନେ ଭଗ୍ନ ହୋଇ ଚତୁର୍ଦ୍ଦିଗକୁ ପଳାୟନ କରୁଅଛନ୍ତି । ଯୋଦ୍ଧାମାନେ ଶରାହତ ହୋଇ ଇତସ୍ତତଃ ଧାବିତ ହେଉଅଛନ୍ତି । ୫୩ । ପାଣ୍ଡବ ଓ ପାଞ୍ଚାଳ ଶୂରମାନେ ମିଳିତ ହୋଇ ଆପଣଙ୍କୁ ହନନ କରିବା ମାନସରେ ଚତୁର୍ଦ୍ଦିଗରୁ ଆଗମନ କରୁଅଛନ୍ତି । ୫୪ । ଅତଏବ ହେ ଅରିନ୍ଦମ ! ଏହି ସମୟରେ ଆପଣଙ୍କର ଏଠାରେ ଅବସ୍ଥାନ କରିବା କିମ୍ବା ସାତ୍ୟକିଙ୍କ ସମୀପକୁ ଗମନ କରିବା ଉଚିତ, ତାହା ଆପଣ ବିବେଚନା କରି ଅବଧାରଣ କରନ୍ତୁ । ସାତ୍ୟକି ମଧ୍ୟ ଦୂରରେ ଅବସ୍ଥାନ କରୁଅଛନ୍ତି । ୫୫ ।

ଦ୍ରୋଣଙ୍କ ସହିତ ସାରଥିର ଏହିପରି କଥୋପକଥନ ହେଉଥିବା-ସମୟରେ ସାତ୍ୟକି ଆପଣଙ୍କପକ୍ଷୀୟ ଅନେକ ରଥିମାନଙ୍କୁ ନିହତ କରିବାର ଦେଖାଗଲା । ୫୬ । ସେମାନେ ସାତ୍ୟକିଙ୍କ କର୍ତ୍ତୃକ କ୍ଷତବିକ୍ଷତ ହୋଇ ତାହାଙ୍କ ରଥ ପରିତ୍ୟାଗପୂର୍ବକ ଦ୍ରୋଣସୈନ୍ୟ ସମୀପକୁ ଧାବିତ ହେଲେ । ୫୭ । ପୂର୍ବେ ଦୁଃଶାସନ ଯେଉଁସବୁ ରଥିମାନଙ୍କୁ ଘେନି ସାତ୍ୟକିଙ୍କ ନିକଟକୁ ଯୁଦ୍ଧନିମିତ୍ତ ଗମନ କରିଥିଲେ ସେମାନେ ମଧ୍ୟ ସମସ୍ତେ ଭୀତ ହୋଇ ଦ୍ରୋଣଙ୍କ ରଥ ସମୀପକୁ ଆଗମନ କଲେ । ୫୮ ।

---

# ୧୨୨ ଅଧ୍ୟାୟ

ସଞ୍ଜୟ କହିଲେ— ହେ ମହାରାଜ ! ଭରଦ୍ୱାଜନନ୍ଦନ ଦ୍ରୋଣ ଦୁଃଶାସନଙ୍କର ରଥକୁ ସମୀପସ୍ଥ ଅବଲୋକନ କରି ତାହାଙ୍କୁ କହିଲେ ।୧। ହେ ଦୁଃଶାସନ ! ଏହି ମହାରଥିମାନେ କି ହେତୁ ପଳାୟନ କରୁଅଛନ୍ତି ? ରାଜାଙ୍କର ମଙ୍ଗଳ ତ ? ସିନ୍ଧୁରାଜ ଜୀବିତ ଅଛନ୍ତି ତ ? ୨ । ତୁମ୍ଭେ ରାଜପୁତ୍ର, ରାଜଭ୍ରାତା ମହାରଥୀ ଓ ଯୁବରାଜ ହୋଇ ଯୁଦ୍ଧରେ କି ନିମିତ୍ତ ପଳାୟନ କରୁଅଛ ? ୩ । ତୁମ୍ଭେ ପୂର୍ବେ ଦ୍ରୌପଦୀଙ୍କୁ ସମ୍ବୋଧନ କରି କହିଥିଲ ଯେ, ତୁମ୍ଭଙ୍କୁ ତୁମ୍ଭର ସ୍ୱାମୀ ଦ୍ୟୂତକ୍ରୀଡ଼ାରେ ପଣ ରଖି ହାରି ଅଛନ୍ତି ; ଅତଏବ ତୁମ୍ଭେ ଆମ୍ଭର ଜ୍ୟେଷ୍ଠଭ୍ରାତା ରାଜା ଦୁର୍ଯ୍ୟୋଧନଙ୍କର ବସ୍ତ୍ରବାହିକା ଦାସୀ ଓ ଅଭିଳଷିତ କର୍ମଗ୍ରହଣୀ ହୁଅ । ୪ । ବର୍ତ୍ତମାନ ପାଣ୍ଡବମାନେ ତୁମ୍ଭର ପତି ନୁହନ୍ତି । ସେମାନେସମସ୍ତେ ଷଣ୍ଢତିଳ (ତିଳରଅଗାଡ଼) ସଦୃଶ ଅକର୍ମଣ୍ୟ ହୋଇଅଛନ୍ତି” । ତୁମ୍ଭେ ପୂର୍ବେ ଦ୍ରୁପଦତନୟାଙ୍କୁ ଏହିପରି କହି ବର୍ତ୍ତମାନ କି ନିମିତ୍ତ ସମର ତ୍ୟାଗପୂର୍ବକ ପଳାୟନ କରୁଅଛ ? ୫ । ତୁମ୍ଭେ ସ୍ୱୟଂ ପାଣ୍ଡବ ଓ ପାଞ୍ଚାଳମାନଙ୍କ ସହିତ ମହାନ୍ ଶତ୍ରୁତା ସୃଷ୍ଟି କରି ବର୍ତ୍ତମାନ ଏକମାତ୍ର ସାତ୍ୟକିଙ୍କ ସହିତ ଯୁଦ୍ଧରେ କି ନିମିତ୍ତ ଭୀତ ହେଉଅଛ ?୬। ପୂର୍ବେ ଦ୍ୟୂତକ୍ରୀଡ଼ା ସମୟରେ ଅକ୍ଷ ଗ୍ରହଣ କରି ତୁମ୍ଭେ କ'ଣ ଜାଣିପାରି ନ ଥିଲ ଯେ, ଏହି ଅକ୍ଷ ନିଶ୍ଚୟ ପରିଣାମରେ ଭୟଙ୍କର ଭୁଜଙ୍ଗ-ତୁଲ୍ୟ ବାଣରୂପରେ ପରିଣତ ହେବ ? ୭ । ପୂର୍ବେ ତୁମ୍ଭେ ହିଁ ବିଶେଷରୂପେ ପାଣ୍ଡବମାନଙ୍କ ପ୍ରତି ଅପ୍ରିୟ ବାକ୍ୟ ପ୍ରୟୋଗ କରିବାର ଓ ଦ୍ରୌପଦୀଙ୍କୁ କ୍ଳେଶ ଦେବାର ମୂଳ ହୋଇଥିଲ । ୮ । ହେ ବୀର ! ବର୍ତ୍ତମାନ ତୁମ୍ଭର ସେହି ମାନ କେଉଁଠାରେ ? ତୁମ୍ଭର ସେହି ଗର୍ଜନ ଅବା କେଉଁଠାରେ ? ତୁମ୍ଭେ ସର୍ପସଦୃଶ ପାଣ୍ଡବମାନଙ୍କୁ ପ୍ରକୋପିତ କରି ବର୍ତ୍ତମାନ କେଉଁଠାକୁ ଗମନ କରିବ ? ୯ । ତୁମ୍ଭେ ରାଜା ଦୁର୍ଯ୍ୟୋଧନଙ୍କର ଭ୍ରାତା ହୋଇ ଯେତେବେଳେ ତାହାଙ୍କପ୍ରତି ନିଷ୍ଠୁରତା ପ୍ରଦର୍ଶନ କରି ପଳାୟନପର ହୋଇଅଛ ତେତେବେଳେ କୁରୁସୈନ୍ୟ ଓ ରାଜା ଦୁର୍ଯ୍ୟୋଧନଙ୍କ ପକ୍ଷରେ ଏହା ବଡ଼ ଶୋକର ବିଷୟ ହୋଇଅଛି । ୧୦ ।

ହେ ବୀର ! ସୈନ୍ୟମାନେ ଶତ୍ରୁକର୍ତ୍ତୃକ ବଧ୍ୟମାନ ଓ ଭୟାତୁର ହେଲେ ତୁମ୍ଭେ ସ୍ୱକୀୟ ବାହୁବଳରେ ସେମାନଙ୍କୁ ରକ୍ଷା କରିବ କଅଣ, ତାହା ନ କରି ତୁମ୍ଭେ ଭୀତ ହୋଇ ରଣ ପରିତ୍ୟାଗପୂର୍ବକ ଶତ୍ରୁମାନଙ୍କର ହର୍ଷୋତ୍ପାଦନ କରୁଅଛ ! ହେ ଶତ୍ରୁସୂଦନ ! ତୁମ୍ଭେ ସେନାପତି ହୋଇ ଭୟରେ ପଳାୟନ କଲେ ତୁମ୍ଭର ଆଶ୍ରିତ ସୈନ୍ୟମାନେ ସମସ୍ତେ ଭୀତ ହେବେ । ସୁତରାଂ ଆଉ କେଉଁ ବ୍ୟକ୍ତି ସମରରେ ଅବସ୍ଥାନ କରିବ ? ଅଦ୍ୟ ଏକମାତ୍ର ସାତ୍ୟକଙ୍କ ସହିତ ଯୁଦ୍ଧରେ ତୁମ୍ଭର ସଂଗ୍ରାମରୁ ପଳାୟନ କରିବାର ମତି ହେଲା । କିନ୍ତୁ ହେ କୁରୁନନ୍ଦନ ! ଯେତେବେଳେ ଗାଣ୍ଡୀବଧନ୍ୱା, ଭୀମସେନ, ନକୁଳ ଓ ସହଦେବ ଏମାନଙ୍କୁ ସମରରେ ଅବଲୋକନ କରିବ, ସେତେବେଳେ ତୁମ୍ଭେ କଅଣ କରିବ ? ତୁମ୍ଭେ ସାତ୍ୟକଙ୍କର ଯେଉଁ ସମସ୍ତ ବାଣକୁ ଅବଲୋକନ କରି ଭୀତ ହୋଇ ପଳାୟନ କରୁଅଛ ସେସମସ୍ତ ବାଣ ଅର୍ଜ୍ଜୁନଙ୍କ ବାଣତୁଲ୍ୟ ତେଜସ୍ୱୀ ନୁହେ । ଅର୍ଜ୍ଜୁନଙ୍କର ବାଣ ସୂର୍ଯ୍ୟ ଓ ଅଗ୍ନିର ସମାନ ।

ହେ ବୀର ! ତୁମ୍ଭେ ଶୀଘ୍ର ଗାନ୍ଧାରୀଙ୍କ ଉଦରମଧ୍ୟରେ ପ୍ରବେଶ କର । ୧୬ । ତାହା ନ କଲେ ସମୁଦାୟ ପୃଥିବୀ ପର୍ଯ୍ୟଟନ କଲେ ହେଁ ତୁମ୍ଭର ଜୀବନରକ୍ଷା ହେବନାହିଁ । ଯଦି ତୁମ୍ଭର ବୁଦ୍ଧି ପଳାୟନରେ ପ୍ରବୃତ୍ତ ହୋଇ-ଅଛି, ତେବେ ଧର୍ମରାଜଙ୍କ ସହିତ ସନ୍ଧି କରି ତାହାଙ୍କୁ ପୃଥିବୀ ପ୍ରଦାନ କର । ପୂର୍ବେ ଭୀଷ୍ମ ତୁମ୍ଭ ଭ୍ରାତା ସୁଯୋଧନଙ୍କୁ କହିଥିଲେ ଯେ, ଯେଉଁ ପର୍ଯ୍ୟନ୍ତ ମୋକନିର୍ମୁକ୍ତ ଉରଗସନ୍ନିଭ ବାଣସମୂହ ତୁମ୍ଭ ଶରୀରରେ ପ୍ରବିଷ୍ଟ କରିନାହିଁ ସେହି ସମୟ ମଧ୍ୟରେ ତୁମ୍ଭେ ପାଣ୍ଡବମାନଙ୍କ ସହିତ ସନ୍ଧି କର । ଯେପର୍ଯ୍ୟନ୍ତ ମହାତ୍ମା ପାଣ୍ଡବମାନେ ତୁମ୍ଭ ଶତ ଭ୍ରାତାଙ୍କୁ ନିହତ କରି ପୃଥିବୀ ଆକ୍ରମଣ କରିନାହାନ୍ତି ସେହି ସମୟ ମଧ୍ୟରେ ତୁମ୍ଭେ ପାଣ୍ଡବମାନଙ୍କ ସହିତ ସନ୍ଧି କର । ଯେପର୍ଯ୍ୟନ୍ତ ଧର୍ମପୁତ୍ର ଯୁଧିଷ୍ଠିର ଓ ସମରଶ୍ଳାଘୀ କୃଷ୍ଣ କ୍ରୁଦ୍ଧ ହୋଇ ନାହାନ୍ତି ତାବତ୍ କାଳମଧ୍ୟରେ ପାଣ୍ଡବମାନଙ୍କ ସହିତ ସନ୍ଧି କର । ଯେ ପର୍ଯ୍ୟନ୍ତ ମହାବାହୁ ଭୀମ ମହତୀ ସେନା ଆଲୋଡ଼ିତ କରି ତୁମ୍ଭର ସହୋଦର-ମାନଙ୍କୁ ନିଗ୍ରହ କରିନାହାନ୍ତି ସେହି ସମୟମଧ୍ୟରେ ପାଣ୍ଡବମାନଙ୍କ ସହିତ ସନ୍ଧି କର । ହେ ପ୍ରିୟଦର୍ଶନ ! ପାଣ୍ଡବମାନେ ଯୁଦ୍ଧରେ ଅଜେୟ ; ଅତଏବ ତୁମ୍ଭେ ପାଣ୍ଡବମାନଙ୍କ ସହିତ ସନ୍ଧି କର ।

ତୁମ୍ଭର ଭ୍ରାତା ମନ୍ଦବୁଦ୍ଧି ସୁଯୋଧନ ଭୀଷ୍ମଙ୍କ ଏହି ବାକ୍ୟକୁ ଗ୍ରହଣ କଲେନାହିଁ । ହେ ସୁମୂର୍ଖ ଦୁଃଶାସନ ! ଆମ୍ଭେ ଶ୍ରବଣ କରିଅଛୁଁ ଯେ, ବୃକୋଦର ତୁମ୍ଭର ରୁଧିର ପାନ କରିବ । ତୁମ୍ଭେ କ'ଣ ବୃକୋଦରଙ୍କ ବିକ୍ରମ ଅବଲୋକନ କରିନାହିଁ ? ବୃକୋଦରଙ୍କ ବାକ୍ୟ କଦାଚ ମିଥ୍ୟା ହେବ ନାହିଁ । ହେ ଦୁଃଶାସନ ! ବୈରାନଳ ପ୍ରଜ୍ୱଳିତ କରି ବର୍ତ୍ତମାନ କେଉଁଠାକୁ ପଳାୟନ କରିବ ? ତୁମ୍ଭେ ଯୁଦ୍ଧରେ ଧୈର୍ଯ୍ୟାବଲମ୍ବନପୂର୍ବକ ଯତ୍ନବାନ୍ ହୋଇ ଯୁଦ୍ଧ କର । ଯେଉଁଠାରେ ସାତ୍ୟକି ଅଛନ୍ତି ସତ୍ୱର ହୋଇ ରଥା-ରୋହଣରେ ସେଠାକୁ ଗମନ କର । ୨୬ । ଏହି ସୈନ୍ୟମାନେ ତୁମ୍ଭଙ୍କୁ ନ ଦେଖିଲେ ଭଗ୍ନ ହୋଇ ପଳାୟନ କରିବେ । ତୁମ୍ଭେ ଆତ୍ମୀୟମାନଙ୍କ ନିମିତ୍ତ ସତ୍ୟବିକ୍ରମ ସାତ୍ୟକିଙ୍କ ସହିତ ଯୁଦ୍ଧ କର । ୨୭ ।

ଆଚାର୍ଯ୍ୟ ଦ୍ରୋଣ ଆପଣଙ୍କ ପୁତ୍ର ଦୁଃଶାସନଙ୍କୁ ଏହିପରି କହନ୍ତେ ସେ କିଛିହିଁ ଉତ୍ତର କଲେ ନାହିଁ । ତାହାଙ୍କର କଥାକୁ ଶୁଣି ନ ଶୁଣିଲା ପରି ସାତ୍ୟକି ଯେଉଁ ପଥରେ ଗମନ କରିଥିଲେ, ସେ ସେହି ବାଟରେ ଗମନ କଲେ । ୨୮ । ସେ ଯୁଦ୍ଧରେ ଅପଳାୟୀ ମହତ୍ ମ୍ଳେଚ୍ଛସୈନ୍ୟମାନଙ୍କଦ୍ୱାରା ସମାବୃତ ଓ ସଯତ୍ନ ହୋଇ ସାତ୍ୟକିଙ୍କ ନିକଟକୁ ଗମନପୂର୍ବକ ଯୁଦ୍ଧାରମ୍ଭ କଲେ । ୨୯ । ରଥିଶ୍ରେଷ୍ଠ ଦ୍ରୋଣ ମଧ୍ୟ ପାଞ୍ଚାଳ ଓ ପାଣ୍ଡବମାନଙ୍କ ପ୍ରତି ଅତି କ୍ରୁଦ୍ଧ ହୋଇ ମଧ୍ୟମ ବେଗ ଅବଲମ୍ବନପୂର୍ବକ ଧାବମାନ ହେଲେ ।୩୦। ସେ ପାଞ୍ଚାଳ ସୈନ୍ୟମଧ୍ୟରେ ପ୍ରବିଷ୍ଟ ହୋଇ ଶତ ଶତ ସହସ୍ର ସହସ୍ର ଯୋଦ୍ଧାମାନଙ୍କୁ ବିଦ୍ରାବିତ କଲେ । ୩୧ । ଅନନ୍ତର ରଣମଧ୍ୟରେ ନିଜର ନାମକୁ ଶୁଣାଇ ପାଣ୍ଡବ, ପାଞ୍ଚାଳ ଓ ମତ୍ସ୍ୟଦେଶୀୟମାନଙ୍କୁ ନିହତ କଲେ । ୩୨ ।

ଦ୍ରୋଣ ଇତସ୍ତତଃ ସୈନ୍ୟମାନଙ୍କୁ ପରାଜିତ କରିବାର ଅବଲୋକନ କରି ପାଞ୍ଚାଳ ରାଜପୁତ୍ର ତେଜସ୍ୱୀ ବୀରକେତୁ ତାହାଙ୍କୁ ଆକ୍ରମଣ କଲେ ।୩୩। ସେ ନତପର୍ବ ପାଞ୍ଚଗୋଟି ବାଣଦ୍ୱାରା ଦ୍ରୋଣଙ୍କୁ ବିଦ୍ଧ କରି, ଗୋଟିଏ ବାଣରେ ତାହାଙ୍କର ଧ୍ୱଜ ଓ ସାତଗୋଟି ବାଣରେ ତାହାଙ୍କର ସାରଥିକୁ ବିଦ୍ଧ କଲେ । ୩୪ । ସେହି ଯୁଦ୍ଧରେ ଏହି ଆଶ୍ଚର୍ଯ୍ୟ ଦେଖିଲୁ ଯେ, ଦ୍ରୋଣ ତାଦୃଶ ବେଗଶୀଳ ହୋଇମଧ୍ୟ ପାଞ୍ଚାଲ୍ୟ ବୀରକେତୁଙ୍କ ଆଗରେ ରହିପାରିଲେ

ନାହିଁ । ୩୫ । ରାଜା ଯୁଧିଷ୍ଠିରଙ୍କ ଜୟୈଷୀ ପାଞ୍ଚାଳମାନେ ଦ୍ରୋଣଙ୍କୁ ଯୁଦ୍ଧରେ ଅବରୁଦ୍ଧ ହେବାର ଅବଲୋକନ କରି ତାହାଙ୍କୁ ସର୍ବତୋଭାବରେ ପରିବେଷ୍ଟନ କଲେ । ୩୬ । ସେମାନେ ସମସ୍ତେ ଏକାକୀଥିବା ଦ୍ରୋଣଙ୍କୁ ପରିବେଷ୍ଟନ କରି ଅଗ୍ନିତୁଲ୍ୟ ଓ ବହୁମୂଲ୍ୟ ଶର ଓ ତୋମରମାନଙ୍କଦ୍ୱାରା ଏବଂ ଅନ୍ୟାନ୍ୟ ବହୁବିଧ ଶସ୍ତ୍ରସମୂହଦ୍ୱାରା ସମାକୀର୍ଣ୍ଣ କଲେ । ୩୭ । ଅନନ୍ତର ଯେପରି ପ୍ରବଳ ପବନ ଆକାଶରେ ମେଘସମୂହକୁ ଛିନ୍ନଭିନ୍ନ କରେ ସେହିପରି ଦ୍ରୋଣ ଏକାକୀ ଚତୁର୍ଦ୍ଦିଗରେ ନିକ୍ଷିପ୍ତ ସେହି ବାଣସମୂହକୁ ଶର-ନିକରଦ୍ୱାରା ନିହତ କରି ପ୍ରତିଭାପ୍ରାପ୍ତ ହେଲେ । ୩୮ । ତଦନନ୍ତର ପରବୀରହନ୍ତା ଦ୍ରୋଣ ସୂର୍ଯ୍ୟାଗ୍ନିସଦୃଶ ମହାବେଗବିଶିଷ୍ଟ ଗୋଟିଏ ଶର ସନ୍ଧାନ କରି ବୀରକେତୁଙ୍କ ରଥପ୍ରତି ନିକ୍ଷେପ କଲେ । ୩୯ । ହେ କୁରୁ-ନନ୍ଦନ ! ଦ୍ରୋଣନିକ୍ଷିପ୍ତ ପ୍ରଜ୍ୱଳିତ ଅଗ୍ନିତୁଲ୍ୟ ସେହି ଶରଟି ପାଞ୍ଚାଳ ରାଜପୁତ୍ର ବୀରକେତୁଙ୍କୁ ଶୀଘ୍ର ଭେଦ କରି ଲୋହିତାର୍ଦ୍ର ହୋଇ ଧରଣୀରେ ପ୍ରବିଷ୍ଟ ହେଲା । ୪୦ । ତଦ୍ଦ୍ୱାରା ପାଞ୍ଚାଳକୁଳନନ୍ଦନ ବୀରକେତୁ ପର୍ବତଶୃଙ୍ଗ-ନିପତିତ ପବୋନପ୍ରୋଥିତ ମହା ଚମ୍ପକବୃକ୍ଷସଦୃଶ ଶୀଘ୍ର ରଥରୁ ପତିତ ହେଲେ । ୪୧ ।

ହେ ମହାରାଜ ! ମହାଧନୁର୍ଦ୍ଧର ମହାରଥୀ ପାଞ୍ଚାଳରାଜପୁତ୍ର ନିହତ ହୁଅନ୍ତେ ପାଞ୍ଚାଳମାନେ ଭୟନ୍ୱିତ ହୋଇ ଚତୁର୍ଦ୍ଦିଗରୁ ଦ୍ରୋଣଙ୍କୁ ବେଷ୍ଟନ କଲେ । ୪୨ । ଚିତ୍ରକେତୁ, ସୁଧନ୍ୱା, ଚିତ୍ରବର୍ମା ଓ ଚିତ୍ରରଥ ଏମାନେ ଭ୍ରାତୃଶୋକରେ କାତର ଓ ମିଳିତ ହୋଇ ବର୍ଷାକାଳୀନ ବଳାହକସଦୃଶ ଶରବର୍ଷଣ କରୁ କରୁ ଯୁଦ୍ଧମାନସରେ ଦ୍ରୋଣଙ୍କ ପ୍ରତି ଧାବମାନ ହେଲେ । ୪୪ । ଦ୍ୱିଜବର ଦ୍ରୋଣ ସେହି ମହାରଥୀ ରାଜପୁତ୍ରମାନଙ୍କ ଶରମାନଙ୍କଦ୍ୱାରା ବହୁଧା ସମାହତ ହେଉଥିବା ସମୟରେ ସେମାନଙ୍କର ସଂହାରନିମିତ୍ତ କ୍ରୋଧାବିଷ୍ଟ ହୋଇ ଶରଜାଳ ବର୍ଷଣ କରିବାରେ ପ୍ରବୃତ୍ତ ହେଲେ । ସେହି ରାଜକୁମାରଗଣ ଦ୍ରୋଣଙ୍କ ଶରସମୂହଦ୍ୱାରା ହନ୍ୟମାନ ହୋଇ କିଂକର୍ତ୍ତବ୍ୟ-ବିମୂଢ଼ ହେଲେ । ମହାଯଶା ଦ୍ରୋଣ କୁପିତ ହୋଇ ହସି ହସି ସେହି ହତଜ୍ଞାନକୁମାରମାନଙ୍କୁ ଅଶ୍ୱ, ସାରଥୀ ଓ ରଥବିହୀନ କଲେ ।

ଅନନ୍ତର ସୁଶାଣିତ ଭଲ୍ଲାସ୍ତ୍ରଦ୍ୱାରା ପୁଷ୍ପଚୟନସଦୃଶ ସେମାନଙ୍କ ମସ୍ତକ ଚୟନ କରି ନିପାତିତ କଲେ । ଯେପରି ଦେବାସୁର ସଂଗ୍ରାମରେ ଦୈତ୍ୟଦାନବମାନେ ପତିତ ହୋଇଥିଲେ, ସେହିପରି ଶକ୍ତିମାନ୍ ସେହି ରାଜପୁତ୍ରମାନେ ନିହତ ହୋଇ ରଥରୁ ଧରାତଳରେ ପତିତ ହେଲେ ।

ହେ ମହାରାଜ ! ପ୍ରତାପାନ୍ୱିତ ଭରଦ୍ୱାଜନନ୍ଦନ ସଂଗ୍ରାମରେ ସେମାନଙ୍କୁ ସଂହାର କରି ସ୍ୱକୀୟ ଦୁରାସଦ ସ୍ୱର୍ଣ୍ଣପୁଷ୍ପଶୋଭିତ ଶରାସନକୁ ଭ୍ରମଣ କରାଇବାରେ ପ୍ରବୃତ୍ତ ହେଲେ । ଧୃଷ୍ଟଦ୍ୟୁମ୍ନ ଦେବକଳ୍ପ ମହାରଥୀ ପାଞ୍ଚାଳମାନଙ୍କୁ ନିହତ ହେବାର ନିରୀକ୍ଷଣ କରି ଚକ୍ଷୁଦ୍ୱୟରୁ ବାରିନିଃସରଣ କରୁ କରୁ ଅତ୍ୟନ୍ତ କ୍ରୁଦ୍ଧ ଓ ସଯତ୍ନ ହୋଇ ଦ୍ରୋଣଙ୍କ ରଥ ସମୀପକୁ ଆଗମନପୂର୍ବକ ତାହାଙ୍କ ପ୍ରତି ଶର ନିକ୍ଷେପ କଲେ । ୫୨ ।

ତତ୍ପରେ ଦ୍ରୋଣଙ୍କୁ ଧୃଷ୍ଟଦ୍ୟୁମ୍ନଙ୍କ ଶରସମୂହଦ୍ୱାରା ସମାବୃତ୍ତ ଦେଖି ସୈନ୍ୟମାନେ ସହସା ହାହାକାର ଶବ୍ଦ କଲେ । ୫୩ । ପରନ୍ତୁ ଦ୍ରୋଣ ମହାତ୍ମା ପୃଷତନନ୍ଦନଙ୍କକର୍ତ୍ତୃକ ବହୁବିଧ ଶରରେ ସମାଚ୍ଛନ୍ନ ହୋଇ ମଧ୍ୟ ବ୍ୟଥିତ ହେଲେନାହିଁ । ବରଂ ହାସ୍ୟମୁଖରେ ପ୍ରତିଯୁଦ୍ଧ କଲେ । ୫୪ । ହେ ମହାରାଜ ! ପାଞ୍ଚାଳପୁତ୍ର ଧୃଷ୍ଟଦ୍ୟୁମ୍ନ କ୍ରୋଧରେ ମୂର୍ଚ୍ଛିତପ୍ରାୟ ହୋଇ ନତପର୍ବ ନବେଗୋଟି ବାଣଦ୍ୱାରା ଦ୍ରୋଣଙ୍କର ବକ୍ଷଃସ୍ଥଳକୁ ବିଦ୍ଧ କଲେ । ୫୫ । ମହାରଥୀ ଦ୍ରୋଣ ତହିଁରେ ଗାଢ଼ବିଦ୍ଧ, ବ୍ୟଥିତ ଓ ମୋହିତ ହୋଇ ରଥମଧ୍ୟରେ ଉପବିଷ୍ଟ ହେଲେ । ୫୬ ।

ବୀର୍ଯ୍ୟବାନ୍ ପରାକ୍ରମଶୀଳ ଧୃଷ୍ଟଦ୍ୟୁମ୍ନ ଦ୍ରୋଣଙ୍କୁ ତଦବସ୍ଥ ଦେଖି ଶୀଘ୍ର ଶରାସନ ପରିତ୍ୟାଗପୂର୍ବକ ଖଡ୍ଗ ଗ୍ରହଣ କଲେ । ୫୭ । ସେ କ୍ରୋଧରକ୍ତଲୋଚନ ଓ ତ୍ୱରାଯୁକ୍ତ ହୋଇ ଦ୍ରୋଣଙ୍କ ମସ୍ତକ ଛେଦନ କରିବା ମାନସରେ ସ୍ୱକୀୟ ରଥରୁ ଲମ୍ଫପ୍ରଦାନପୂର୍ବକ ଦ୍ରୋଣଙ୍କ ରଥରେ ଆରୋହଣ କଲେ ।

ଅନନ୍ତର ମହାବଳବାନ୍ ଦ୍ରୋଣ ସଂଜ୍ଞାପ୍ରାପ୍ତ ହୋଇ ଧୃଷ୍ଟଦ୍ୟୁମ୍ନଙ୍କ ପ୍ରତି ଜିଘାଂସୁ ହୋଇ ଓ ତାହାଙ୍କୁ ସମୀପସ୍ଥ ଦେଖି ଯେଉଁ ଶରସମୂହ

ନକ୍ଷେତ୍ରୁ ଶତ୍ରୁଙ୍କ ପ୍ରତି ବ୍ୟବହୃତ ହୁଏ, ସେହି ସମସ୍ତ ବିତସ୍ତିପରିମିତ ଶର-ସମୂହଦ୍ୱାରା ମହାରଥୀ ଧୃଷ୍ଟଦ୍ୟୁମ୍ନଙ୍କୁ ବିଦ୍ଧ କଲେ । ବିତସ୍ତିକ ନାମରେ ନକ୍ଷତ୍ରବେଧୀ ସେହିସମସ୍ତ ଦ୍ୱାଦଶାଙ୍ଗୁଳ ପରିମିତ ବାଣନିକର ଦ୍ରୋଣଙ୍କୁ ବିଦିତ ଥିଲା । ତଦ୍ଦ୍ୱାରା ସେ ଧୃଷ୍ଟଦ୍ୟୁମ୍ନଙ୍କୁ ଆହତ କଲେ । ମହାବଳ ପରାକ୍ରାନ୍ତ ମହାରଥୀ ଧୃଷ୍ଟଦ୍ୟୁମ୍ନ ବହୁଳ ବିତସ୍ତିକ ବାଣଦ୍ୱାରା ସମାହତ ହୋଇ ଭଗ୍ନବେଗରେ ଶୀଘ୍ର ଦ୍ରୋଣଙ୍କ ରଥରୁ ଲମ୍ଫ ପ୍ରଦାନପୂର୍ବକ ସ୍ୱୀୟ ରଥକୁ ଆଗମନ କଲେ । ଧନୁର୍ବାଣ ଗ୍ରହଣ କରି ଦ୍ରୋଣଙ୍କୁ ବିଦ୍ଧ କରିବାରେ ପ୍ରବୃତ୍ତ ହେଲେ । ଦ୍ରୋଣ ମଧ୍ୟ ପୃଷତରାଜପୁତ୍ର ଧୃଷ୍ଟଦ୍ୟୁମ୍ନଙ୍କୁ ଶରସମୂହଦ୍ୱାରା ବିଦ୍ଧ କଲେ । ୬୪ ।

ଯେପରି ତ୍ରୈଲୋକ୍ୟାଭିଳାଷୀ ଇନ୍ଦ୍ର ଓ ପ୍ରହ୍ଲାଦ ପରସ୍ପର ଯୁଦ୍ଧ କରିଥିଲେ, ସେହିପରି ସେହି ଦୁଇଜଣଙ୍କ ମଧ୍ୟରେ ଅଦ୍ଭୁତ ସଂଗ୍ରାମ ହେଲା । ୬୫ । ଯୁଦ୍ଧମାର୍ଗବିଶାରଦ ଦ୍ରୋଣ ଓ ଧୃଷ୍ଟଦ୍ୟୁମ୍ନ ଏ ଦୁହେଁ ଯୁଦ୍ଧସ୍ଥଳରେ ବିବିଧ ମଣ୍ଡଳାକାର ଯମକ ଓ ଅନ୍ୟାନ୍ୟ ଗତିକ୍ରମେ ବିଚରଣପୂର୍ବକ ଦର୍ଶକ ଯୋଦ୍ଧାମାନଙ୍କର ଚିତ୍ତବିମୋହନ କରି ପରସ୍ପର ପରସ୍ପରକୁ ଶର ପ୍ରହାର କଲେ । ୬୬ । ସେହି ଦୁଇ ମହାତ୍ମା ବର୍ଷାକାଳୀନ ମେଘଦ୍ୱୟ-କର୍ତ୍ତୃକ ଜଳବର୍ଷଣସଦୃଶ ଶରବର୍ଷଣ କରି ଆକାଶ, ପୃଥିବୀ ଓ ସମସ୍ତ ଦିଗକୁ ସମାଚ୍ଛନ୍ନ କଲେ । ଆକାଶସ୍ଥ ପ୍ରାଣିମାନେ ଓ ସେହି ରଣସ୍ଥଳସ୍ଥ କ୍ଷତ୍ରିୟ ଓ ଅପରାପର ସୈନିକଗଣ ସେ ଦୁହିଁଙ୍କର ଅଦ୍ଭୁତ ସଂଗ୍ରାମ ସନ୍ଦର୍ଶନ କରି ପ୍ରଶଂସା କଲେ ।

ପାଞ୍ଚାଳମାନେ ଏହି କଥା କହି ଉଚ୍ଚୈଃସ୍ୱରରେ ଶବ୍ଦ କଲେ ଯେ, ଦ୍ରୋଣ ଯେତେବେଳେ ଧୃଷ୍ଟଦ୍ୟୁମ୍ନଙ୍କସହିତ ସମରରେ ସମବେତ ହୋଇ-ଅଛନ୍ତି, ସେତେବେଳେ ସେ ଅବଶ୍ୟ ଆମ୍ଭମାନଙ୍କର ବଶବର୍ତ୍ତୀ ହେବେ । ପରନ୍ତୁ ଦ୍ରୋଣ ତ୍ୱରିତ ହୋଇ ବୃକ୍ଷରୁ ପକ୍ୱଫଳପାତନ କଲାସଦୃଶ ଧୃଷ୍ଟଦ୍ୟୁମ୍ନଙ୍କର ସାରଥିର ମସ୍ତକକୁ ନିପାତିତ କଲେ । ତଦନନ୍ତର ମହାତ୍ମା ଧୃଷ୍ଟଦ୍ୟୁମ୍ନଙ୍କର ଅଶ୍ୱମାନେ ସାରଥିବିହୀନ ହୋଇ ସେଠାରୁ ଧାବମାନ ହେଲେ । ୬୧ ।

ତତ୍ପରେ ପରାକ୍ରମସମ୍ପନ୍ନ ଦ୍ରୋଣ ପାଞ୍ଚାଳ ଓ ସୃଞ୍ଜୟମାନଙ୍କୁ ତାଡ଼ିତ କଲେ । ପ୍ରତାପଶାଳୀ ଅରିନ୍ଦମ ଦ୍ରୋଣ ଏହିପରି ପାଣ୍ଡବ ଓ ପାଞ୍ଚାଳମାନଙ୍କୁ ପରାଜିତ କରି, ପୁନର୍ବାର ସ୍ୱକୀୟ ବ୍ୟୂହ ଆଶ୍ରୟପୂର୍ବକ ଅବସ୍ଥିତ ହେଲେ । ପାଣ୍ଡବମାନେ ସେହିସମୟରେ ତାହାଙ୍କୁ ଯୁଦ୍ଧରେ ପରାଜୟ କରିବାକୁ ଉତ୍ସାହିତ ହେଲେ ନାହିଁ । ୨୩ ।

---

# ୧୨୩ ଅଧ୍ୟାୟ

ସଞ୍ଜୟ କହିଲେ—ହେ ରାଜନ୍ ! ଅନନ୍ତର ଦୁଃଶାସନ ବାରିଧାରା ବର୍ଷଣକାରୀ ପର୍ଜନ୍ୟସଦୃଶ ଅସଂଖ୍ୟ ଶରବର୍ଷଣ କରି ସାତ୍ୟକିଙ୍କପ୍ରତି ଧାବମାନ ହେଲେ ଓ ତାହାଙ୍କୁ ପ୍ରଥମରେ ଷାଠିଏଗୋଟି ଓ ତତ୍ପରେ ଷୋଡ଼ଶଗୋଟି ଶରରେ ସମାହତ କଲେ । ମହାବୀର ସାତ୍ୟକ ତାହାଙ୍କର ଶରସମୂହଦ୍ୱାରା କିଞ୍ଚିନ୍ମାତ୍ର ବିଚଳିତ ନ ହୋଇ ମୈନାକପର୍ବତସଦୃଶ ଅବସ୍ଥାନ କଲେ । ୨ ।

ସେହି ସମୟରେ ଭରତକୁଳଶ୍ରେଷ୍ଠ ମହାବୀର ଦୁଃଶାସନ ନାନା-ଦେଶୀୟ ମହାରଥୀମାନଙ୍କସହିତ ସମବେତ ହୋଇ ମେଘତୁଲ୍ୟ ଦଶଦିଗକୁ ନିନାଦିତ କରି ବହୁବାଣ ବିମୋଚନ କରୁ କରୁ ସାତ୍ୟକିଙ୍କ ନିକଟକୁ ଧାବମାନ ହେଲେ । ମହାବାହୁ ସାତ୍ୟକି ମଧ୍ୟ କୁରୁପ୍ରବର ଦୁଃଶାସନଙ୍କୁ ସମାଗତ ହେବାର ଦେଖି ତାହାଙ୍କ ଅଭିମୁଖକୁ ଗମନପୂର୍ବକ ତାହାଙ୍କୁ ଶର-ସମୂହରେ ସମାଚ୍ଛନ୍ନ କଲେ । ୫ । ଦୁଃଶାସନଙ୍କର ପୁରୋବର୍ତ୍ତୀ ନାନାଦେଶୀୟ ବୀରମାନେ ସାତ୍ୟକିଙ୍କ ଶରସମୂହଦ୍ୱାରା ସମାଚ୍ଛନ୍ନ ହୋଇ ଭୀତଚିତ୍ତରେ ଆପଣଙ୍କ ସମକ୍ଷରେ ପଳାୟନ କଲେ । ୬ । କିନ୍ତୁ ଆପଣଙ୍କ ପୁତ୍ର ଦୁଃଶାସନ ସେହି ସୈନ୍ୟମାନେ ପଳାୟନ କଲେହେଁ ଭୟ ପରିତ୍ୟାଗ କରି ରଣସ୍ଥାନରେ ଅବସ୍ଥାନପୂର୍ବକ ସାତ୍ୟକିଙ୍କୁ ଶରନିଚୟ ଦ୍ୱାରା ପୀଡ଼ିତ କଲେ । ୭ । ସେ ଚାରିଗୋଟି ଶରରେ ସାତ୍ୟକିଙ୍କର ଚାରିଅଶ୍ୱକୁ, ତିନିଗୋଟି ଶରରେ ତାହାଙ୍କର ସାରଥିକୁ ଓ ଏକଶତ ଶରରେ ତାହାଙ୍କୁ ବିଦ୍ଧ କରି ସିଂହନାଦ କଲେ । ୮ ।

ହେ ମହାରାଜ ! ତଦନନ୍ତର ମଧୁକୁଳୋଦ୍ଭବ ସାତ୍ୟକି କ୍ରୁଦ୍ଧ ହୋଇ ରଥ, ସାରଥୀ ଓ ଧ୍ୱଜସହିତ ଦୁଃଶାସନଙ୍କୁ ଅଦୃଶ୍ୟ କଲେ । ୯ । ଯେପରି ଊର୍ଣ୍ଣନାଭ ଊର୍ଣ୍ଣାମଧ୍ୟରେ ମଶକକୁ ପ୍ରାପ୍ତହୋଇ ସମାବୃତ କରେ, ସେହିପରି ଶତ୍ରୁଜୟୀ ସାତ୍ୟକି ଲୀଳାସହକାରେ ଦୁଃଶାସନଙ୍କୁ ବାଣଦ୍ୱାରା ସମାବୃତ କଲେ ।

ରାଜା ଦୁର୍ଯ୍ୟୋଧନ ଦୁଃଶାସନଙ୍କୁ ସାତ୍ୟକିଙ୍କ ଶରସମୂହରେ ପରି-ବ୍ୟାପ୍ତ ଦେଖି ତ୍ରିଗର୍ତ୍ତଦେଶୀୟ ସୈନ୍ୟମାନଙ୍କୁ ସାତ୍ୟକିଙ୍କର ରଥସମୀପକୁ ପ୍ରେରଣ କଲେ । କ୍ରୂରକର୍ମା ଯୁଦ୍ଧବିଶାରଦ ତିନିସହସ୍ର ରଥୀ ସାତ୍ୟକିଙ୍କ ସମୀପକୁ ଗମନ କଲେ । ସେମାନେ ଯୁଦ୍ଧରେ ସ୍ଥିରବୁଦ୍ଧି ଓ ପରସ୍ପର କୃତ-ପ୍ରତିଜ୍ଞ ହୋଇ ମହତ୍ ରଥସମୂହଦ୍ୱାରା ସାତ୍ୟକିଙ୍କୁ ସର୍ବତୋଭାବରେ ବେଷ୍ଟନ କଲେ । ସେମାନେ ସଯତ୍ନ ହୋଇ ଶରବର୍ଷଣ କରିବାବେଳେ ଶିନିପ୍ରବର ସାତ୍ୟକି ସେମାନଙ୍କର ସୈନ୍ୟାଗ୍ରରେ ଅବସ୍ଥିତ ପଞ୍ଚଶତ ପ୍ରଧାନ ଯୋଦ୍ଧା-ମାନଙ୍କୁ ନିହତ କଲେ । ଯେପରି ମହାପବନବେଗରେ ବୃହତ୍ ବୃକ୍ଷସବୁ ନିପତିତ ହୁଏ, ସେହିପରି ସେମାନେ ସାତ୍ୟକିଙ୍କ ଶରସମୂହରେ ନିହତ ହୋଇ ପତିତ ହେଲେ । ବହୁଳ ରଥ, ଧ୍ୱଜ ଓ କନକଭୂଷିତ ଅଶ୍ୱସମୂହ ସାତ୍ୟକିଙ୍କ ଶରନିକରଦ୍ୱାରା ଛିନ୍ନ ଓ ଶୋଣିତସିକ୍ତ ହୋଇ ପତିତ ହୁଅନ୍ତେ ତଦ୍ୱାରା ଧରାତଳ ପୁଷ୍ପିତକିଂଶୁକବୃକ୍ଷତୁଲ୍ୟ ଶୋଭମାନ ହେଲା ।

ହତାବଶିଷ୍ଟ ଆପଣଙ୍କ ସେହି ସୈନ୍ୟମାନେ ସାତ୍ୟକିଙ୍କକର୍ତ୍ତୃକ ସମାହତ ହୋଇ ପଙ୍କମଗ୍ନ ମାତଙ୍ଗଗଣସଦୃଶ କାହାରିକୁ ଆପଣାର ପରିତ୍ରାତା ପ୍ରାପ୍ତ ହେଲେ ନାହିଁ । ଯେପରି ଭୁଜଙ୍ଗମାନେ ଗରୁଡ଼ର ଭୟରେ ଗର୍ତ୍ତମଧ୍ୟକୁ ଗମନ କରନ୍ତି ସେହିପରି ସେମାନେସମସ୍ତେ ଦ୍ରୋଣଙ୍କର ରଥ ସମୀପକୁ ଆଗମନ କଲେ । ବୀର ସାତ୍ୟକି ଆଶୀବିଷତୁଲ୍ୟ ଶରସମୂହଦ୍ୱାରା ସେମାନ-ଙ୍କର ପଞ୍ଚଶତ ଯୋଦ୍ଧାମାନଙ୍କୁ ନିହତ କରି ଧନଞ୍ଜୟଙ୍କ ରଥସମୀପକୁ ଶନୈଃ ଶନୈଃ ଗମନ କଲେ ।

ନରସିଂହ ସାତ୍ୟକି ତଦ୍ରୂପ ଗମନ କରନ୍ତେ ଆପଣଙ୍କପୁତ୍ର ଦୁଃଶାସନ ସତ୍ୱର ହୋଇ ନତପର୍ବ ନଅଗୋଟି ଶରଦ୍ୱାରା ତାହାଙ୍କୁ ବିଦ୍ଧ କଲେ ।

ମହାଧନୁର୍ଦ୍ଧର ସାତ୍ୟକି ମଧ୍ୟ ଗୃଧ୍ରପକ୍ଷଯୁକ୍ତ ସ୍ୱର୍ଣ୍ଣପୁଙ୍ଖ ସୁଶାଣିତ ପାଞ୍ଚଗୋଟି ଶରଦ୍ୱାରା ଦୁଃଶାସନଙ୍କୁ ବିଦ୍ଧ କଲେ । ତତ୍ପରେ ଦୁଃଶାସନ ହସିଲପରି ହୋଇ ସାତ୍ୟକିଙ୍କୁ ତିନିଗୋଟି ବାଣରେ ବିଦ୍ଧ କରି ପୁନର୍ବାର ପାଞ୍ଚଗୋଟି ବାଣରେ ବିଦ୍ଧ କଲେ । ଅନନ୍ତର ସାତ୍ୟକି ଆପଣଙ୍କ ପୁତ୍ରଙ୍କୁ ପାଞ୍ଚଗୋଟି ବାଣରେ ବିଦ୍ଧ କଲେ ଓ ତାହାଙ୍କର ଶରାସନ ଛେଦନ କରି ତାହାଙ୍କୁ ଅବଜ୍ଞାପୂର୍ବକ ଅର୍ଜୁନଙ୍କ ନିକଟକୁ ଗମନ କଲେ । ସେ ସେଠାରୁ ଗମନକଲା ସମୟରେ ଦୁଃଶାସନ ସଂକ୍ରୁଦ୍ଧ ହୋଇ ତାହାଙ୍କର ବଧମାନସରେ ଉତ୍କୃଷ୍ଟ ଲୌହମୟୀ ଗୋଟିଏ ଶକ୍ତି ତାହାଙ୍କ ପ୍ରତି ନିକ୍ଷେପ କଲେ । ସାତ୍ୟକି ଆପଣଙ୍କ ପୁତ୍ରଙ୍କର ନିକ୍ଷିପ୍ତ ସେହି ଭୟଙ୍କର ଶକ୍ତିକୁ କଙ୍କପତ୍ରଯୁକ୍ତ ବହୁ ଶାଣିତଶରଦ୍ୱାରା ଶତଖଣ୍ଡ କରି ଛେଦନ କଲେ ।

ଅନନ୍ତର ଆପଣଙ୍କ ପୁତ୍ର ଅପର ଗୋଟିଏ ଶରାସନ ଗ୍ରହଣପୂର୍ବକ ସାତ୍ୟକିଙ୍କୁ ଦଶଗୋଟି ବାଣରେ ବିଦ୍ଧ କରି ସିଂହନାଦ କଲେ । ପରନ୍ତୁ ସାତ୍ୟକି କ୍ରୋଧାବିଷ୍ଟ ହୋଇ ଅଗ୍ନିଶିଖାକାର କେତେଗୁଡ଼ିଏ ନତପର୍ବ ବାଣଦ୍ୱାରା ତାହାଙ୍କର ସ୍ତନଦ୍ୱୟର ମଧ୍ୟସ୍ଥଳରେ ଆଘାତ କରି ତାହାଙ୍କୁ ବିମୋହିତ କଲେ । ତତ୍ପରେ ସର୍ବାଙ୍ଗ ଲୌହମୟ ତୀକ୍ଷ୍ଣମୁଖବିଶିଷ୍ଟ ଆଠଗୋଟି ବାଣରେ ତାହାଙ୍କୁ ବିଦ୍ଧ କଲେ । କିନ୍ତୁ ଦୁଃଶାସନ ମଧ୍ୟ ବିଂଶତି ବାଣରେ ପୁନର୍ବାର ସାତ୍ୟକିଙ୍କୁ ପ୍ରତିବିଦ୍ଧ କଲେ । ୩୦ । ତହିଁ ଉତ୍ତାରୁ ସାତ୍ୟକି ଅତିକ୍ରୁଦ୍ଧ ହୋଇ ତିନିଗୋଟି ନତପର୍ବ ବାଣଦ୍ୱାରା ଦୁଃଶାସନଙ୍କ ସ୍ତନଦ୍ୱୟର ମଧ୍ୟଭାଗକୁ ଅତି ବେଗରେ ବିଦ୍ଧ କଲେ । ୩୧ । ତାହାଙ୍କ ଅଶ୍ୱମାନଙ୍କୁ ଶାଣିତ ଶରସମୂହରେ ନିହତ କରି ଛଅଗୋଟି ନତପର୍ବ ଶରଦ୍ୱାରା ତାହାଙ୍କର ସାରଥିକୁ ହତ କଲେ ଏବଂ ଗୋଟିଏ ଭଲ୍ଲଦ୍ୱାରା ତାହାଙ୍କର ଧନୁକୁ, ଗୋଟିଏ ଭଲ୍ଲରେ ତାହାଙ୍କର ଧ୍ୱଜକୁ, ପାଞ୍ଚଗୋଟି ଭଲ୍ଲରେ ତାହାଙ୍କର ହସ୍ତାବାପ (ଦସ୍ତାନା)କୁ, ଆଉ ଗୋଟିଏ ଭଲ୍ଲରେ ତାହାଙ୍କର ରଥଶକ୍ତିକୁ ଓ କେତେଗୁଡ଼ିଏ ତୀକ୍ଷ୍ଣ ବାଣଦ୍ୱାରା ତାହାଙ୍କର ଦୁଇଜଣ ପୃଷ୍ଠରକ୍ଷକଙ୍କୁ ଛେଦନ କଲେ ।

ତାହାଙ୍କର ଶରାସନ ଛିନ୍ନ ଏବଂ ରଥ, ଅଶ୍ୱ ଓ ସାରଥି ନିହତ ହୁଅନ୍ତେ ତ୍ରିଗର୍ତ୍ତ ସେନାପତି ତାହାଙ୍କୁ ସ୍ୱୀୟ ରଥଦ୍ୱାରା ସେଠାରୁ ଅପସାରିତ

କଲେ । ଶିନପୌତ୍ର ମହାବାହୁ ସାତ୍ୟକ ମୁହୂର୍ତ୍ତକାଳପର୍ଯ୍ୟନ୍ତ ଦୁଃଶାସନଙ୍କ ପ୍ରତି ଧାବମାନ ହୋଇ ପରିଶେଷରେ ଭୀମସେନଙ୍କ ବାକ୍ୟସ୍ମରଣ କରି ତାଙ୍କୁ ନିହତ କଲେ ନାହିଁ । ଯେହେତୁ ଯୁଦ୍ଧରେ ଆପଣଙ୍କ ସମସ୍ତ ପୁତ୍ରମାନଙ୍କୁ ବଧକରିବେ ବୋଲି ସଭାମଧ୍ୟରେ ଭୀମସେନ ପ୍ରତିଜ୍ଞା କରିଥିଲେ । ହେ ପ୍ରଭୋ ! ସାତ୍ୟକ ଦୁଃଶାସନଙ୍କୁ ଏହିପରି ପରାଜିତ କରି ଧନଞ୍ଜୟ ଯେଉଁ ପଥରେ ଗମନ କରିଥିଲେ ତ୍ୱରିତ ହୋଇ ସେହି ପଥରେ ଗମନ କଲେ । ୩୭ ।

---

# ୧୨୪ ଅଧ୍ୟାୟ

ଧୃତରାଷ୍ଟ୍ର କହିଲେ—ହେ ସଞ୍ଜୟ ! ଆମ୍ଭର ସେହି ସୈନ୍ୟମାନଙ୍କ ମଧ୍ୟରେ କି ଏପରି କୌଣସି ମହାରଥୀମାନେ ନ ଥିଲେ ଯେଉଁମାନେ କି ସାତ୍ୟକଙ୍କର ସେହିପରି ଗମନ ସମୟରେ ତାହାଙ୍କୁ ନିହତ ବା ନିବାରିତ କରିପାରନ୍ତେ । ୧ । ଅସୁରମାନଙ୍କ ସହିତ ସୁରେନ୍ଦ୍ର ଯେପରି କାର୍ଯ୍ୟ କରିଥିଲେ ସତ୍ୟବିକ୍ରମ ସାତ୍ୟକ ଏକାକୀ ମହେନ୍ଦ୍ରତୁଲ୍ୟ ବଳପ୍ରକାଶପୂର୍ବକ ସେହିପରି କାର୍ଯ୍ୟ କଲେ । ୨ । ସାତ୍ୟକ ଯେଉଁ ପଥରେ ଗମନ କରିଥିଲେ ସେ ପଥ ଶୂନ୍ୟ ଥିଲା । ଅଥବା ସେହି ପଥରେ ହତାବଶିଷ୍ଟ ଅଳ୍ପସଂଖ୍ୟକ ସୈନିକ ଥିଲେ । ହେ ସଞ୍ଜୟ ! ବୃଷ୍ଣିକୁଳୋଦ୍ଭବ ବୀର ସାତ୍ୟକ ସମରରେ ଯେଉଁସମସ୍ତ କାର୍ଯ୍ୟ କରୁଅଛନ୍ତି ସେସମସ୍ତ ଆମ୍ଭ ନିକଟରେ କୀର୍ତ୍ତନ କର । ଇନ୍ଦ୍ର ମଧ୍ୟ ତଦ୍ରୂପ କାର୍ଯ୍ୟ କରିବାକୁ ଅସମର୍ଥ ଅଟନ୍ତି । ୪ । ସେହି ମହାତ୍ମା ବୃଷ୍ଣି ଓ ଅନ୍ଧକଙ୍କ ଶାଦ୍ଭବ ମହାବୀର ସାତ୍ୟକଙ୍କର ସେହି ଅଶ୍ରଦ୍ଧେୟ ଓ ଅଚିନ୍ତ୍ୟ କର୍ମ ଶ୍ରବଣ କରି ଆମ୍ଭର ମନ ଅତ୍ୟନ୍ତ ବ୍ୟଥିତ ହେଉଅଛି । ୫ । ହେ ସଞ୍ଜୟ ! ତୁମ୍ଭ କଥା ଶୁଣି ଆମ୍ଭେ ବୋଧକରୁଁ, ଆମ୍ଭ ପୁତ୍ରମାନେ କେହି ଜୀବିତ ନାହାନ୍ତି । ସାତ୍ୟକ ଏକାକୀ ବହୁଳ ସେନା ବିମର୍ଦ୍ଦିତ କରି ଯୁଧ୍ୟମାନ ମହାତ୍ମା ରଥୀମାନଙ୍କୁ କିପରି ଅତିକ୍ରମ କଲେ ? ସେସମସ୍ତ ଆମ୍ଭ ନିକଟରେ ତୁମ୍ଭେ କୀର୍ତ୍ତନ କର । ୭ ।

ସଞ୍ଜୟ କହିଲେ—ହେ ମହାରାଜ ! ଆପଣଙ୍କର ନାଗ, ଅଶ୍ୱ, ରଥ ଓ ପଦାତିସଙ୍କୁଳ ସୈନ୍ୟମାନଙ୍କର ପ୍ରଳୟକାଳସଦୃଶ ତୁମୁଳ ସମାରୋହ ହୋଇଥିଲା । ୮ । ଆପଣଙ୍କ ପକ୍ଷରେ ଯେପରି ସୈନ୍ୟସମୂହ ଆହୃତ ହୋଇ ଅଛନ୍ତି, ବୋଧକରୁଁ ଜଗତରେ ଏତାଦୃଶ ସୈନ୍ୟସମୂହର ସଂଗ୍ରହ ଆଜ କେବେ ହୋଇନାହିଁ । ୯ । ସମର ଦର୍ଶନାର୍ଥ ସୁର ଓ ଚାରଣଗଣ କହିଥିଲେ ଯେ "ମହୀତଳରେ ଏ ପ୍ରକାର ଏକତ୍ରୀଭୂତ ସୈନ୍ୟସମୂହ ଏହି ଶେଷ ଅଟେ । ଆଜ କେବେହେଁ ଏପରି ହେବ ନାହିଁ" । ୧୦ । ହେ ନରନାଥ ! ଜୟଦ୍ରଥ ବଧରେ ଦ୍ରୋଣ ଯେପରି ବ୍ୟୂହ ରଚନା କରିଥିଲେ, ତାଦୃଶ ବ୍ୟୂହ ଆଜ କଦାପି ହୋଇ ନାହିଁ । ୧୧ । ସେହିସମସ୍ତ ସୈନ୍ୟଦଳର ପରସ୍ପର ଧାବନ ସମୟରେ ଅତି ପ୍ରବଳ ପବନାନ୍ଦୋଳିତ ସାଗରତୁଲ୍ୟ ଶବ୍ଦ ହେଉଥିଲା । ଆପଣଙ୍କ ଓ ପାଣ୍ଡବ ସୈନ୍ୟମଧ୍ୟରେ ସମାଗତ ଶତ ଶତ ସହସ୍ର ସହସ୍ର ରାଜାମାନେ ଥିଲେ । ୧୩ । ସେମାନେ ସମସ୍ତେ ସମରରେ ଦୃଢ଼କାର୍ଯ୍ୟକାରୀ ଓ ସଂରବ୍ଧ ଥିଲେ । ଯୁଦ୍ଧକାଳରେ ସେମାନଙ୍କର ଅତି ମହାନ୍ ଶବ୍ଦ ଶ୍ରବଣ କରି ମନୁଷ୍ୟମାନଙ୍କର ଲୋମାଞ୍ଚ ହେଉଥିଲା ।୧୪।

ଭୀମସେନ, ଧୃଷ୍ଟଦ୍ୟୁମ୍ନ, ନକୁଳ, ସହଦେବ ଓ ଧର୍ମରାଜ ଏମାନେ ଉଚ୍ଚୈଃସ୍ୱରରେ ସୈନ୍ୟମାନଙ୍କୁ କହିଲେ, ହେ ବୀରଗଣ, ଆଗମନ କର; ଶୀଘ୍ର ଧାବମାନ ହୁଅ । କୃଷ୍ଣାର୍ଜ୍ଜୁନ ଦୁଇ ବୀର ଜୟଦ୍ରଥ ବଧନିମିତ୍ତ ଯେପରି ଅନାୟାସରେ ଶତ୍ରୁସେନା ମଧ୍ୟଦେଇ ଗମନ କରନ୍ତି ଶୀଘ୍ର ତାହାର ବିଧାନ କର । ୧୬ । ସେହି ଦୁହିଁଙ୍କର ବିଘ୍ନ ହେଲେ ଆମ୍ଭେମାନେ ପରାଜିତ ହେବା । କୌରବମାନେ କୃତକାର୍ଯ୍ୟ ହେବେ । ଅତଏବ ତୁମ୍ଭେମାନେ ଶୀଘ୍ର ମିଳିତ ହୋଇ ପବନ ସମୁଦ୍ରକୁ କ୍ଷୋଭିତ କଲାପ୍ରାୟ ମହାବେଗସହ ବିପକ୍ଷ ସୈନ୍ୟସାଗରକୁ କ୍ଷୋଭିତ କର ।

ଭୀମସେନ ଓ ଧୃଷ୍ଟଦ୍ୟୁମ୍ନ ଏହିପରି କହନ୍ତେ ମହାତେଜସ୍ୱୀ ସୈନ୍ୟମାନେ ଆପଣା ଆପଣା ପ୍ରିୟ ପ୍ରାଣପରିତ୍ୟାଗରେ କୃତନିଶ୍ଚୟ ହୋଇ କୌରବମାନଙ୍କୁ ଶସ୍ତ୍ରସମୂହଦ୍ୱାରା ସମାହତ କଲେ । ସେମାନେ ମିତ୍ରଙ୍କ ହିତନିମିତ୍ତ ସ୍ୱର୍ଗାଭିଳାଷରେ ମରଣ କାମନା କଲେ । ନିଜ ଜୀବନକୁ ଆଉ ଅଭିନନ୍ଦନ କଲେ ନାହିଁ । ଆପଣଙ୍କପକ୍ଷୀୟ ଯୋଦ୍ଧାମାନେ ମଧ୍ୟ ମହାଯଶଃ-

ପ୍ରାର୍ଥୀ ହୋଇ ସେହିପରି ଯୁଦ୍ଧରେ ଦୃଢ଼ମତି କରି ଯୁଦ୍ଧାର୍ଥ ଅବସ୍ଥାନ କଲେ । ସେହି ଉଭୟଙ୍କର ତୁମୁଳ ଯୁଦ୍ଧ ଉପସ୍ଥିତ ହୁଅନ୍ତେ ସାତ୍ୟକି ସମୁଦାୟ ସୈନ୍ୟମାନଙ୍କୁ ପରାଜିତ କରି ଅର୍ଜ୍ଜୁନଙ୍କ ସମୀପକୁ ଗମନ କଲେ । ସୈନ୍ୟମାନଙ୍କର କବଚର ପ୍ରଭା ସୂର୍ଯ୍ୟକିରଣରେ ମିଶ୍ରିତ ହୋଇ ରଣସ୍ଥଳର ଚତୁର୍ଦ୍ଦିଗରେ ଦୃଷ୍ଟିର ବ୍ୟାଘାତ ଜନ୍ମାଇଲା । ହେ ମହାରାଜ ! ମହାତ୍ମା ପାଣ୍ଡବମାନେ ଯୁଦ୍ଧରେ ତଦ୍ରୂପ ସଂଯତ ହୁଅନ୍ତେ ଦୁର୍ଯ୍ୟୋଧନ ସେମାନଙ୍କର ମହତ୍ ସୈନ୍ୟମଧ୍ୟକୁ ଗମନ କଲେ । ଉଭୟ ପକ୍ଷର ସୈନ୍ୟମାନେ ଏକତ୍ରୀଭୂତ ହୁଅନ୍ତେ ଜନକ୍ଷୟକର ମହା ତୁମୁଳ ସଂଗ୍ରାମ ଆରମ୍ଭ ହେଲା ।

ଧୃତରାଷ୍ଟ୍ର କହିଲେ—ହେ ସୂତ ! ସେହିପରି ସମବେଦ୍ୟତ ବିପକ୍ଷ ସୈନ୍ୟମଧ୍ୟରେ ଦୁର୍ଯ୍ୟୋଧନ ସ୍ୱୟଂ କୃଚ୍ଛ୍ରପ୍ରାପ୍ତ ହୋଇ ମଧ୍ୟ କ'ଣ ରଣ ପରିତ୍ୟାଗ କଲେ ନାହିଁ ? ଜଣଙ୍କସହିତ ବହୁଯୋଦ୍ଧାଙ୍କର ସଂଗ୍ରାମ, ବିଶେଷତଃ ଦୁର୍ଯ୍ୟୋଧନ ରାଜା ଅଟନ୍ତି । ଅନେକ ବ୍ୟକ୍ତିଙ୍କସହିତ ଜଣେ ରାଜାଙ୍କର ଯୁଦ୍ଧ ଆରମ୍ଭ ବିବେଚନାରେ ବିଷମ ବୋଧ ହେଉଅଛି । ଅତ୍ୟନ୍ତ ସୁଖୀ ଲକ୍ଷ୍ମୀବାନ୍ ଓ ସମସ୍ତ ଲୋକଙ୍କ ଅଧିପତି ଦୁର୍ଯ୍ୟୋଧନ ଏକାକୀ ବହୁଯୋଦ୍ଧା ସହିତ ଯୁଦ୍ଧରେ ସମବେତ ହୋଇ ପରାଙ୍ମୁଖ ହୋଇ ନାହାଁନ୍ତି ତ ?

ସଞ୍ଜୟ କହିଲେ—ହେ ମହାରାଜ ! ଆପଣଙ୍କ ପୁତ୍ର ଏକାକୀ ବହୁଯୋଦ୍ଧାସହିତ ଯେଉଁ ଆଶ୍ଚର୍ଯ୍ୟ ସଂଗ୍ରାମ କରିଥିଲେ ତାହା ଆମ୍ଭେ କହୁଅଛୁ, ଶ୍ରବଣ କରନ୍ତୁ । ଯେପରି ହସ୍ତୀ ପଦ୍ମସରୋବରକୁ ଇତସ୍ତତଃ ଆଲୋଡ଼ିତ କରେ ସେହିପରି ଦୁର୍ଯ୍ୟୋଧନ ସେହି ରଣରେ ପାଣ୍ଡବ-ସୈନ୍ୟମାନଙ୍କୁ ଆଲୋଡ଼ିତ କଲେ । ଭୀମସେନପୁରୋବର୍ତ୍ତୀ ପାଞ୍ଚାଳଗଣ ଓ ପାଣ୍ଡବସୈନ୍ୟମାନଙ୍କୁ ଦୁର୍ଯ୍ୟୋଧନଙ୍କକର୍ତ୍ତୃକ ନିହତ ହେବାର ନିରୀକ୍ଷଣ କରି ତାହାଙ୍କୁ ଆକ୍ରମଣ କଲେ । ଯେପରି ଯମ କ୍ରୁଦ୍ଧ ହୋଇ ପ୍ରଜାମାନଙ୍କୁ ବିନାଶ କରନ୍ତି ସେହିପରି ଦୁର୍ଯ୍ୟୋଧନ ଭୀମସେନଙ୍କୁ ଦଶଗୋଟି ଶରରେ, ନକୁଳ ଓ ସହଦେବଙ୍କୁ ତିନି ତିନି ଗୋଟି, ଧର୍ମ୍ମରାଜଙ୍କୁ ସାତଗୋଟି, ବିରାଟ ଓ ଦ୍ରୁପଦଙ୍କୁ ଛଅ ଛଅ ଗୋଟି, ଶିଖଣ୍ଡୀଙ୍କୁ ଏକଶତ ଗୋଟି, ଧୃଷ୍ଟଦ୍ୟୁମ୍ନଙ୍କୁ କୋଡ଼ିଏ, ଦ୍ରୌପଦୀଙ୍କ ପଞ୍ଚପୁତ୍ରଙ୍କୁ ପ୍ରତ୍ୟେକକୁ ତିନି ତିନି ଗୋଟି ବାଣଦ୍ୱାରା ବିଦ୍ଧକରି ଶତଶତ ଭୟାନକ ଶରରେ ଅନ୍ୟାନ୍ୟ ଯୋଦ୍ଧାମାନଙ୍କୁ

ଓ ଅନେକଙ୍କୁ ହସ୍ତିରସନ୍ନିଭ ବଦ୍ଧ କଲେ। ସେ ଶିକ୍ଷାନୈପୁଣ୍ୟ ଓ ଅସ୍ତ୍ର-ବଳଦ୍ୱାରା ଏତାଦୃଶ ସତ୍ୱରହସ୍ତରେ ଶତ୍ରୁମାନଙ୍କୁ ଦହନ କଲେ ଯେ, ତାହାଙ୍କର ବାଣ ସନ୍ଧାନ ବା ମୋଚନ କିଛି ହିଁ ଦୃଷ୍ଟ ହେଲା ନାହିଁ। କେବଳ ମାତ୍ର ସେ ମଣ୍ଡଳାକାର ଧନୁର୍ବିଶିଷ୍ଟ ହୋଇ ଜନମାନଙ୍କର ଦୃଷ୍ଟିଗୋଚର ହେଲେ।

ଲୋକମାନେ ସମରରେ ତାହାଙ୍କର ଶତ୍ରୁହନନ କାଳରେ ସ୍ୱର୍ଣ୍ଣପୃଷ୍ଠଶୋଭିତ ମହତ୍ ଶରାସନକୁ ଅନବରତ ମଣ୍ଡଳାକାର ହୋଇଥିବାର ଅବଲୋକନ କଲେ। ତଦନନ୍ତର ରାଜା ଯୁଧିଷ୍ଠିର ସମରରେ ଯତ୍ନବାନ ଆପଣଙ୍କ ପୁତ୍ରଙ୍କର ଶରାସନକୁ ଦୁଇଗୋଟି ଭଲ୍ଲଦ୍ୱାରା ଛେଦନ କଲେ ଓ ଦଶଗୋଟି ସୁଶାଣିତ ଶର ବଳପୂର୍ବକ ନିକ୍ଷେପ କରି ତାହାଙ୍କୁ ବିଦ୍ଧ କଲେ। ୩୮। କିନ୍ତୁ ସେହି ବାଣମାନ ଶୀଘ୍ର ତାହାଙ୍କ ବର୍ମ୍ମରେ ଲଗ୍ନ ଓ ଭଗ୍ନ ହୋଇ ଧରଣୀରେ ପ୍ରବେଶ କଲା। ଅନନ୍ତର ପୂର୍ବକାଳରେ ମହର୍ଷି ଓ ଦେବଗଣ ବୃତ୍ରାସୁର ବଧସମୟରେ ଯେପରି ଇନ୍ଦ୍ରଙ୍କୁ ପରିବେଷ୍ଟନ କରିଥିଲେ, ସେହିପରି ପାଣ୍ଡବମାନେ ହର୍ଷାନ୍ୱିତ ହୋଇ ଯୁଧିଷ୍ଠିରଙ୍କୁ ପରିବେଷ୍ଟନ କଲେ। ତତ୍ପରେ ରାଜା ଦୁର୍ଯ୍ୟୋଧନ ଗୋଟିଏ ଦୃଢ଼ ଶରାସନ ଗ୍ରହଣ କରି 'ରହ ରହ' ବୋଲି ରାଜା ଯୁଧିଷ୍ଠିରଙ୍କ ନିକଟକୁ ଅଗ୍ରସର ହେଲେ।

ଜୟାଭିଳାଷୀ ପାଞ୍ଚାଳମାନେ ଆପଣଙ୍କ ପୁତ୍ରଙ୍କୁ ସଂଗ୍ରାମରେ ଆଗମନ କରିବାର ଦେଖି ହର୍ଷସହକାରେ ତାହାଙ୍କ ନିକଟରେ ଉପଗତ ହେଲେ। ପରନ୍ତୁ ଅଚଳ ଯେପରି ପବନୋଦ୍ଧୂତ ସଜଳ ଜଳଦାବଳୀକୁ ଗ୍ରହଣ କରେ ତଦ୍ରୂପ ଦ୍ରୋଣ ଯୁଦ୍ଧରେ ରାଜା ଦୁର୍ଯ୍ୟୋଧନଙ୍କୁ ରକ୍ଷାକରିବା ମାନସରେ ପାଞ୍ଚାଳମାନଙ୍କୁ ଯୁଦ୍ଧାର୍ଥ ଗ୍ରହଣ କଲେ।

ହେ ମହାବାହୋ ଭୂପାଳ ! ସେହିସ୍ଥଳରେ ପାଣ୍ଡବମାନଙ୍କ ସହିତ ଆପଣଙ୍କ ପକ୍ଷୀୟ ଯୋଦ୍ଧାମାନଙ୍କର ଶ୍ମଶାନସଦୃଶ ସର୍ବପ୍ରାଣୀ ସଂହାରକ ମହାଭୟବର୍ଦ୍ଧନ ସଂଗ୍ରାମ ସଂଘଟିତ ହେଲା ! ୪୫ । ସେହିସମୟରେ ଧନଞ୍ଜୟଙ୍କ ନିକଟରୁ ଏପରି ଶବ୍ଦ ଉତ୍ଥିତ ହେଲା ଯେ, ତାହା ସମସ୍ତ

ଶବ୍ଦକୁ ଅତିକ୍ରମ କରି ଶ୍ରୁତ ହେଲା । ତାହା ଶ୍ରବଣ କରି ଲୋକମାନଙ୍କର ଲୋମାଞ୍ଚ ହେଲା । ୪୫ ।

ହେ ମହାବାହୋ ! ବ୍ୟୂହ ମଧ୍ୟରେ ଯେଉଁଠାରେ ଜୟଦ୍ରଥ ଅବସ୍ଥାନ କରୁଥିଲେ ସେହିଠାରେ ଆପଣଙ୍କ ଧନୁର୍ଦ୍ଧରମାନଙ୍କ ସହିତ ଅର୍ଜ୍ଜୁନଙ୍କର, ବ୍ୟୂହର ମଧ୍ୟସ୍ଥଳରେ କୁରୁସୈନ୍ୟଙ୍କ ସହିତ ସାତ୍ୟକିଙ୍କର ଓ ବ୍ୟୂହଦ୍ୱାରରେ ବିପକ୍ଷମାନଙ୍କ ସହିତ ଦ୍ରୋଣଙ୍କର ଯେଉଁ ମହାରଣ ହେଉଥିଲା ତାହାଦ୍ୱାରା ଏକକାଳରେ ମହାଶବ୍ଦ ହେଲା । ହେ ପୃଥ୍ୱୀନାଥ ! ଅର୍ଜ୍ଜୁନ ଦ୍ରୋଣ ଓ ସାତ୍ୟକି କ୍ରୁଦ୍ଧ ହୋଇ ଯୁଦ୍ଧରେ ପ୍ରବୃତ୍ତ ହେବାରୁ ଏକସମୟରେ ପୃଥିବୀରେ ଅସଂଖ୍ୟ ଲୋକଙ୍କର ସଂହାର ହେଲା । ୪୭ ।

---

# ୧୨୫ ଅଧ୍ୟାୟ

ସଞ୍ଜୟ କହିଲେ—ହେ ମହାରାଜ ! ଅପରାହ୍ଣ ସମୟରେ ପୁନର୍ବାର ସେମାନଙ୍କସହିତ ଦ୍ରୋଣଙ୍କର ମେଘନିର୍ଘୋଷସଦୃଶଶବ୍ଦସହିତ ସଂଗ୍ରାମ ହେଲା । ମହାଧନୁର୍ଦ୍ଧର ମହାବଳଶାଳୀ ପ୍ରତାପାନ୍ୱିତ ନରବୀର ଭରଦ୍ୱାଜନନ୍ଦନ ଦ୍ରୋଣ ଆପଣଙ୍କ ପ୍ରିୟ ଓ ହିତକାର୍ଯ୍ୟରେ ରତ ହୋଇ ଯତ୍ନସହକାରେ ଶୋଣବର୍ଣ୍ଣବାଜିଯୁକ୍ତ ରଥାରୋହଣପୂର୍ବକ ମଧ୍ୟମବେଗ ଅବଲମ୍ବନ କରି ପାଣ୍ଡବମାନଙ୍କୁ ଆକ୍ରମଣ କଲେ । ସେ ଯୋଦ୍ଧାମାନଙ୍କ ମଧ୍ୟରୁ ପ୍ରଧାନମାନଙ୍କୁ ଚିତ୍ରପୁଙ୍ଖ ଶାଣିତ ଶରସମୂହଦ୍ୱାରା ପୁଷ୍ପଚୟନକଲାସଦୃଶ ଚୟନ କରି କ୍ରୀଡ଼ା କଲେ । ୪ । କେକେୟମାନଙ୍କ ପଞ୍ଚଭ୍ରାତାଙ୍କର ଜ୍ୟେଷ୍ଠଭ୍ରାତା ମହାରଥୀ ସମରକର୍କଶ ବୃହତ୍କ୍ଷତ୍ର ଦ୍ରୋଣଙ୍କ ନିକଟକୁ ଯୁଦ୍ଧାର୍ଥେ ଗମନ କଲେ । ଯେପରି ମହାମେଘ ଗନ୍ଧମାଦନ ପର୍ବତରେ ବାତବର୍ଷଣ କରେ ସେହିପରି ସେ ତୀକ୍ଷ୍ଣ ବାଣସମୂହ ଆଚାର୍ଯ୍ୟଙ୍କ ପ୍ରତି ନିକ୍ଷେପ କରି ତାହାଙ୍କୁ ଅତିଶୟ ପୀଡ଼ିତ କଲେ । ୬ ।

ହେ ମହାରାଜ ! ଦ୍ରୋଣ କ୍ରୁଦ୍ଧ ହୋଇ ସ୍ୱର୍ଣ୍ଣପୁଙ୍ଖଯୁକ୍ତ ଶିଳାଶାଣିତ ପନ୍ଦରଗୋଟି ବାଣ ତାହାଙ୍କ ପ୍ରତି ନିକ୍ଷେପ କଲେ । ୭ । ସେ ହର୍ଷାନ୍ୱିତ

ହୋଇ ଦ୍ରୋଣଙ୍କର ଧନୁର୍ନିକ୍ଷିପ୍ତ ସର୍ପସଦୃଶ ସେହି ବାଣସମୂହର ପ୍ରତ୍ୟେକ ବାଣକୁ ଦଶଦଶଗୋଟି ବାଣଦ୍ୱାରା ଛେଦନ କଲେ । ଦ୍ୱିଜସତ୍ତମ ଦ୍ରୋଣ ବୃହତ୍କ୍ଷତ୍ରଙ୍କର ଲଘୁହସ୍ତ ଅବଲୋକନ କରି ହାସ୍ୟପୂର୍ବକ ଆଠଗୋଟି ନତପର୍ବ ବାଣ ତାହାଙ୍କ ପ୍ରତି ନିକ୍ଷେପ କଲେ ।୯। ବୃହତ୍କ୍ଷତ୍ର ଦ୍ରୋଣଙ୍କର ଧନୁର୍ମୁକ୍ତ ସେହି ବାଣନିକରକୁ ଆଗତହେବାର ଦେଖି ସମସଂଖ୍ୟକ ଶାଣିତ ବାଣଦ୍ୱାରା ସେସମସ୍ତକୁ ନିବାରଣ କଲେ ।୧୦। ବୃହତ୍କ୍ଷତ୍ରଙ୍କୁ ତାଦୃଶ ଦୁଷ୍କର କର୍ମ କରିବାର ଅବଲୋକନ କରି ଆପଣଙ୍କ-ପକ୍ଷୀୟ ସୈନ୍ୟମାନଙ୍କର ବିସ୍ମୟ ଜାତ ହେଲା ।୧୧। ତଦନନ୍ତର ମହାତପସ୍ୱୀ ଦ୍ରୋଣ କେକେୟରାଜଙ୍କ ଅପେକ୍ଷା ଆପଣାର ଉତ୍କର୍ଷ ପ୍ରଦର୍ଶନ କରି ଦିବ୍ୟ ବ୍ରାହ୍ମଅସ୍ତ୍ର ପ୍ରାଦୁର୍ଭୂତ କଲେ ।୧୨।

ହେ ମହାରାଜ ! କେକେୟରାଜ ବୃହତ୍କ୍ଷତ୍ର ସେହି ଦ୍ରୋଣବିମୁକ୍ତ ବ୍ରାହ୍ମ-ଅସ୍ତ୍ରକୁ ବ୍ରହ୍ମଅସ୍ତ୍ରଦ୍ୱାରା ନିବାରଣ କଲେ ।୧୩। ସେ ଦ୍ରୋଣଙ୍କର ବ୍ରହ୍ମଅସ୍ତ୍ରକୁ ପ୍ରତିହତ କରି ଶିଳାଶାଣିତ ସ୍ୱର୍ଣ୍ଣପୁଙ୍ଖ ଷାଠିଏଗୋଟି ଶରଦ୍ୱାରା ତାହାଙ୍କୁ ବିଦ୍ଧ କଲେ । ଅନନ୍ତର ମାନବପ୍ରବର ଦ୍ରୋଣ ବୃହତ୍କ୍ଷତ୍ରଙ୍କ ପ୍ରତି ଗୋଟିଏ ନାରାଚ ନିକ୍ଷେପ କଲେ । ସେହି ନାରାଚ ବୃହତ୍କ୍ଷତ୍ରଙ୍କର କବଚ ଭେଦକରି ଧରଣୀ ତଳରେ ପ୍ରବେଶ କଲା ।୧୫। ଯେପରି କୃଷ୍ଣସର୍ପ ବଲ୍ମୀକ ମଧ୍ୟରେ ପ୍ରବେଶ କରେ, ସେହିପରି ସେହି ନାରାଚ କେକେୟରାଜାଙ୍କୁ ଭେଦକରି ପୃଥିବୀରେ ପ୍ରବିଷ୍ଟ ହେଲା ।୧୬।

ହେ ମହାରାଜ ! କେକେୟରାଜ ଅସ୍ତ୍ରବିଦ୍ୟାବିଶାରଦ ଦ୍ରୋଣଙ୍କକର୍ତ୍ତୃକ ଅତିଶୟ ବିଦ୍ଧ ହୋଇ ମହାକ୍ରୋଧାବିଷ୍ଟ, ତତ୍ପରେ ସୁନ୍ଦର ନେତ୍ରଦ୍ୱୟକୁ ଘୂର୍ଣ୍ଣାୟମାନ କରି ଶିଳାଶାଣିତ ସ୍ୱର୍ଣ୍ଣପୁଙ୍ଖ ସତୁରିଗୋଟି ଶରଦ୍ୱାରା ତାହାଙ୍କର ସାରଥିର ଦୁଇବାହୁ ଓ ବକ୍ଷଃସ୍ଥଳରେ ପ୍ରହାର କଲେ ।୧୮। ଆଚାର୍ଯ୍ୟ ଦ୍ରୋଣ ବୃହତ୍କ୍ଷତ୍ରଙ୍କକର୍ତ୍ତୃକ ବହୁପ୍ରକାରେ ବିଦ୍ଧ ହୋଇ ତୀକ୍ଷ୍ଣ ବାଣସମୂହ ତାହାଙ୍କ ରଥ ଉପରକୁ ନିକ୍ଷେପପୂର୍ବକ ତାହାଙ୍କୁ ବ୍ୟାକୁଳିତ କରି ଚାରିଗୋଟି ଶରରେ ତାହାଙ୍କର ଚାରିଅଶ୍ୱକୁ ବଧ କଲେ ଓ ଗୋଟିଏ ଶରରେ ତାହାଙ୍କର ସାରଥିକୁ ରଥମଣ୍ଡରୁ ପାତିତ କଲେ । ତତ୍ପରେ ଦୁଇଗୋଟି ଶରରେ ତାହାଙ୍କର ଧ୍ୱଜ ଓ ଛତ୍ର ଛେଦନ କରି ଭୂତଳରେ

ପାତିତ କଲେ । ୨୧ । ତଦନନ୍ତର ଗୋଟିଏ ନାରାଚ ବିଧିପୂର୍ବକ ପ୍ରୟୋଗ କରି ତାହାଙ୍କର ହୃଦୟ ବିଦ୍ଧ କଲେ । ତଦ୍ଦ୍ୱାରା ବୃହତ୍‌କ୍ଷତ୍ର ଛିନ୍ନହୃଦୟ ହୋଇ ନିପତିତ ହେଲେ । ୨୨ ।

ହେ ନରପାଳ ! କେକେୟମାନଙ୍କର ମହାରଥୀ ବୃହତ୍‌କ୍ଷତ୍ର ନିହତ ହୁଅନ୍ତେ ଶିଶୁପାଳପୁତ୍ର ଧୃଷ୍ଟକେତୁ ଅତି କ୍ରୁଦ୍ଧହୋଇ ସାରଥିଙ୍କୁ କହିଲେ । ୨୩ । ହେ ସାରଥେ ! ଯେଉଁଠାରେ ସେହି ଦ୍ରୋଣ ବଦ୍ଧବର୍ମା ହୋଇ ସମୁଦାୟ କେକେୟ ଓ ପାଞ୍ଚାଳମାନଙ୍କୁ ନିହତ କରୁଅଛନ୍ତି ତୁମ୍ଭେ ସେହିସ୍ଥାନକୁ ରଥ ଚାଳନା କର । ୨୪ । ସାରଥୀ ତାହାଙ୍କର ସେହି ବାକ୍ୟ ଶ୍ରବଣ କରି କାମ୍ବୋଜଦେଶୀୟ ବେଗଶୀଳ ଅଶ୍ୱମାନଙ୍କଦ୍ୱାରା ତାହାଙ୍କୁ ଦ୍ରୋଣଙ୍କ ନିକଟକୁ ଘେନିଗଲେ । ୨୫ । ଅତିବଳୋଦ୍ଧତ ଚେଦିଶ୍ରେଷ୍ଠ ରଥିପ୍ରଧାନ ଧୃଷ୍ଟକେତୁ ପତଙ୍ଗ ଅଗ୍ନି ନିକଟକୁ ଆତ୍ମବିନାଶାର୍ଥ ଗମନ କଲା ସଦୃଶ ଦ୍ରୋଣଙ୍କ ଅଭିମୁଖକୁ ଧାବମାନ ହେଲେ । ୨୬ । ତତ୍ପରେ ଚେଦିରାଜ ଧୃଷ୍ଟକେତୁ ଷାଠିଏଗୋଟି ଶରରେ ଦ୍ରୋଣଙ୍କୁ ଅଶ୍ୱ, ରଥ, ଧ୍ୱଜ ସହିତ ବିଦ୍ଧ କଲେ । ନିଦ୍ରିତ ବ୍ୟାଘ୍ରକୁ ଉତ୍ତ୍ୟକ୍ତ କଲାପ୍ରାୟ ତାହାଙ୍କୁ ପୁନର୍ବାର ତୀକ୍ଷ୍ଣ ଶରସମୂହରେ ବିଦ୍ଧ କଲେ । ୨୭ ।

ଦ୍ରୋଣ ସେହି ଯତ୍ନବାନ୍ ବଳବାନ୍ ବୀରଙ୍କର ଧନୁର ମଧ୍ୟସ୍ଥଳକୁ ଗୋଟିଏ ଶାଣିତ କ୍ଷୁରପ୍ରଦ୍ୱାରା ଛେଦନ କଲେ । ୨୮ । ମହାରଥୀ ଶିଶୁପାଳ-ପୁତ୍ର ପୁନର୍ବାର ଅପର ଗୋଟିଏ ଶରାସନ ଗ୍ରହଣ କରି ଦ୍ରୋଣଙ୍କୁ ସୁଶାଣିତ ଦୃଢ଼ ଶରସମୂହଦ୍ୱାରା ବିଦ୍ଧ କଲେ । ୨୯ । ଦ୍ରୋଣ ହାସ୍ୟ ପୂର୍ବକ ଚାରି ଗୋଟି ଶରରେ ତାହାଙ୍କର ଚାରିଅଶ୍ୱକୁ ନିହତ କରି ତାହାଙ୍କର ସାରଥିର ମସ୍ତକ ଛେଦନ କଲେ । ୩୦ । ତତ୍ପରେ ପଞ୍ଚବିଂଶତି ଗୋଟି ବାଣ ତାହାଙ୍କ ପ୍ରତି ନିକ୍ଷେପ କଲେ । ଚେଦିରାଜ ସତ୍ୱର ଲମ୍ଫପ୍ରଦାନ କରି ରୁଷିତ ସର୍ପିଣୀ-ସଦୃଶ ଗୋଟିଏ ଗଦା ଗ୍ରହଣ କରି ଦ୍ରୋଣଙ୍କ ପ୍ରତି ନିକ୍ଷେପ କଲେ । ଭରଦ୍ୱାଜନନ୍ଦନ ପାଷାଣସଦୃଶ ସାରମୟ ସ୍ୱର୍ଣ୍ଣଭୂଷିତ କାଳରାତ୍ରିତୁଲ୍ୟ ସେହି ଗୁରୁତର ଗଦାକୁ ଆଗତ ହେବାର ଅବଲୋକନ କରି ବହୁ ସହସ୍ର ଶାଣିତଶରଦ୍ୱାରା ତାହାକୁ ଛେଦନ କଲେ । ୩୩ । ସେହି ଗଦା ଦ୍ରୋଣଙ୍କର

ବହୁବାଣଦ୍ୱାରା ଛିନ୍ନ ହୋଇ ଶବ୍ଦସହକାରେ ଧରଣୀତଳରେ ପତିତ ହେଲା । ୩୪ ।

ଗଦା ପ୍ରତିହତ ହେବାର ଅବଲୋକନ କରି ଧୃଷ୍ଟକେତୁ କ୍ରୋଧ-ପରବଶ ହୋଇ ତ୍ୱରାପୂର୍ବକ ତୋମର ଓ କନକୋଜ୍ଜ୍ୱଳ ଗୋଟିଏ ଶକ୍ତି ଦ୍ରୋଣଙ୍କ ପ୍ରତି ନିକ୍ଷେପ କଲେ । ୩୫ । ମହାବଳବାନ୍ ପ୍ରତାପଶାଳୀ ଦ୍ରୋଣ ଲଘୁହସ୍ତରେ ତିନିଗୋଟି ବାଣଦ୍ୱାରା ସେହି ତୋମରକୁ ଛେଦନ କରି ସେହି ଶକ୍ତିକୁ ଶତଖଣ୍ଡ କଲେ । ୩୬ । ତାହାଙ୍କର ବଧାକାଂକ୍ଷୀ ଚେଦିରାଜଙ୍କୁ ନିହତ କରିବା ମାନସରେ ଗୋଟିଏ ତୀକ୍ଷ୍ଣ ବାଣ ତାହାଙ୍କ ଉପରକୁ ନିକ୍ଷେପ କଲେ । ୩୭ । ଯେପରି ହଂସ ପଦ୍ମସରୋବରକୁ ଗମନ କରେ ତଦ୍ରୂପ ଦ୍ରୋଣନିକ୍ଷିପ୍ତ ସେହି ବାଣ ଅପରିମିତବଳଶାଳୀ ଧୃଷ୍ଟକେତୁଙ୍କ କବଚ ଓ ହୃଦୟକୁ ଭେଦ କରି ଧରଣୀତଳରେ ପତିତ ହେଲା ।୩୮।

ଯେପରି ବୁଭୁକ୍ଷୁ ଶ୍ୟେନପକ୍ଷୀ କ୍ଷୁଦ୍ର ପତଙ୍ଗକୁ ଗ୍ରାସକରେ ସେହିପରି ଶୌର୍ଯ୍ୟସମ୍ପନ୍ନ ଦ୍ରୋଣ ମହାସମରରେ ଧୃଷ୍ଟକେତୁଙ୍କୁ ଗ୍ରାସ କଲେ । ୩୯ । ଚେଦିରାଜ ଧୃଷ୍ଟକେତୁ ନିହତ ହୁଅନ୍ତେ ତାହାଙ୍କର ଆତ୍ମା ପିତୃଲୋକରେ ପ୍ରବେଶ କଲା । ପରମାସ୍ତ୍ରବିତ୍ ଧୃଷ୍ଟକେତୁଙ୍କ ପୁତ୍ର ପିତାଙ୍କ ନିଧନରେ କ୍ରୋଧାବିଷ୍ଟ ହେଲେ । ୪୦ । ଦ୍ରୋଣ ହାସ୍ୟପୂର୍ବକ ଶରସମୂହଦ୍ୱାରା ଅରଣ୍ୟରେ ବୁଭୁକ୍ଷୁ ମହାବ୍ୟାଘ୍ରକର୍ତ୍ତୃକ ମୃଗଶାବକର ବିନାଶତୁଲ୍ୟ ତାହାକୁ ମଧ୍ୟ ଯମ ସଦନକୁ ପ୍ରେରଣ କଲେ । ୪୧ ।

ହେ ଭରତପ୍ରବର ! ପାଣ୍ଡବପକ୍ଷୀୟ ସୈନ୍ୟମାନେ କ୍ଷୟପ୍ରାପ୍ତ ହୁଅନ୍ତେ ଜରାସନ୍ଧପୁତ୍ର ହାସ୍ୟପୂର୍ବକ ବୀରତ୍ୱପ୍ରକାଶ କରି ଦ୍ରୋଣଙ୍କ ଅଭି-ମୁଖକୁ ଧାବମାନ ହେଲେ । ଯେପରି ଜଳଦାବଳୀ ପ୍ରଭାକରଙ୍କୁ ସମାଚ୍ଛନ୍ନ କରେ, ସେହିପରି ସେ ସତ୍ୱରହୋଇ ଶାଣିତ ଶରସମୂହଦ୍ୱାରା ଦ୍ରୋଣଙ୍କୁ ସମାଚ୍ଛନ୍ନ କରି ଅଦୃଶ୍ୟ କଲେ । ୪୩ । ତାହାଙ୍କର ତାଦୃଶ ଲଘୁହସ୍ତତା ଅବଲୋକନ କରି କ୍ଷତ୍ରିୟମର୍ଦ୍ଦନ ଦ୍ରୋଣ ତ୍ୱରାନ୍ୱିତ ହୋଇ ଶତ ଶତ ସହସ୍ର ସହସ୍ର ବାଣ ତାହାଙ୍କପ୍ରତି ନିକ୍ଷେପ କଲେ । ୪୪ । ପରନ୍ତୁ ରଥସ୍ଥ ଦ୍ରୋଣ ରଥିପ୍ରବର ଜରାସନ୍ଧପୁତ୍ରଙ୍କୁ ଶରନିକରଦ୍ୱାରା ସମାଚ୍ଛାଦିତ କରି

ଧନୁର୍ଦ୍ଧରମାନଙ୍କ ସାକ୍ଷାତରେ ତାହାଙ୍କୁ ସଂହାର କଲେ । ୪୫ । ଯେଉଁମାନେ ଦ୍ରୋଣଙ୍କ ନିକଟରେ ଉପଗତ ହେଲେ ପ୍ରଳୟ କାଳରେ ଯମ ଯେପରି ସମୁଦାୟ ପ୍ରାଣିଙ୍କୁ ଗ୍ରହଣ କରନ୍ତି ସେହିପରି ଦ୍ରୋଣ ଅନ୍ତକତୁଲ୍ୟ ହୋଇ ସେସମସ୍ତଙ୍କୁ ସଂହାର କଲେ । ୪୬ । ତଦନନ୍ତର ମହାଧନୁର୍ଦ୍ଧର ଦ୍ରୋଣ ରଣସ୍ଥଳରେ ଆପଣାର ନାମ ଶ୍ରବଣ କରାଇ ବହୁ ସହସ୍ର ଶରଦ୍ୱାରା ପାଣ୍ଡବଙ୍କୁ ବିମୋହିତ କଲେ । ୪୭ । ସ୍ୱର୍ଣ୍ଣପୁଙ୍ଖଶୋଭିତ ଶିଳାଶାଣିତ ଦ୍ରୋଣନାମାଙ୍କିତ ଶରସମୂହଦ୍ୱାରା ସର୍ବତ୍ର ରଣସ୍ଥଳରେ ନର, ନାଗ, ଅଶ୍ୱମାନଙ୍କୁ ଦ୍ରୋଣ ନିହତ କଲେ । ୪୮ । ଯେପରି ବଳବାନ୍ ଅସୁର-ମାନେ ଇନ୍ଦ୍ରକର୍ତ୍ତୃକ ଆହତ ହୋଇ କମ୍ପିତ ହୋଇଥିଲେ ; ସେହିପରି ପାଞ୍ଚାଳମାନେ ଦ୍ରୋଣକର୍ତ୍ତୃକ ସମାହତ ହୋଇ ଶୀତାର୍ଦ୍ଦିତ ଗୋଗଣସଦୃଶ କମ୍ପିତ ହେଲେ । ୪୯ ।

ହେ ଭରତ ! ପାଣ୍ଡବ ସୈନ୍ୟମାନେ ଦ୍ରୋଣକର୍ତ୍ତୃକ ସମାହତ ହୋଇ ଘୋର ଆର୍ତ୍ତନାଦ କଲେ । ୫୦ । ସେହି ସମୟରେ ପାଞ୍ଚାଳଗଣ ସୂର୍ଯ୍ୟକିରଣରେ ଉଦ୍ଭାସିତ ଓ ଦ୍ରୋଣଙ୍କ ଶରଦ୍ୱାରା ସମାହତ ହେବାରୁ ସେମାନଙ୍କର ଚିତ୍ତ ଗ୍ଲାସାନ୍ୱିତ ହେଲା । ୫୧ । ସେମାନେ ଭରଦ୍ୱାଜ-ନନ୍ଦନଙ୍କ ଶରଜାଳରେ ମୋହିତ ହେଲେ । ପାଞ୍ଚାଳ ମହାରଥିମାନଙ୍କର ଉରୁ ସ୍ତମ୍ଭ ହେଲା । ୫୨ । ହେ ମହାରାଜ ! ତତ୍ପରେ ଚେଦି, ସୃଞ୍ଜୟ ଓ ସୋମକମାନେ ହର୍ଷାବିଷ୍ଟ ହୋଇ ଯୁଦ୍ଧାଭିଳାଷରେ ଦ୍ରୋଣଙ୍କ ନିକଟକୁ ଧାବମାନ ହେଲେ । ୫୩ । ଚେଦି, ପାଞ୍ଚାଳ ଓ ସୃଞ୍ଜୟଗଣ ଦ୍ରୋଣଙ୍କୁ ହନନ କର ବୋଲି ପରସ୍ପର କହାକହି ହୋଇ ଦ୍ରୋଣଙ୍କ ସମ୍ମୁଖରେ ସମାଗତ ହେଲେ । ୫୪ । ହେ ମହାତେଜସ୍ୱିନ୍ ! ସେହି ପୁରୁଷଶ୍ରେଷ୍ଠମାନେ ଦ୍ରୋଣଙ୍କୁ ଯମାଳୟକୁ ପ୍ରେରଣ କରିବା ଅଭିଳାଷରେ ସର୍ବଶକ୍ତି ଅନୁସାରେ ଯୁଦ୍ଧରେ ଯତ୍ନବାନ୍ ହେଲେ ।୫୫। ପରନ୍ତୁ ଭରଦ୍ୱାଜ-ପୁତ୍ର ଯତ୍ନବାନ୍ ସେହିସମସ୍ତ ଯୋଦ୍ଧାମାନଙ୍କୁ ବିଶେଷତଃ ଚେଦିମାନଙ୍କର ପ୍ରଧାନ ବୀରମାନଙ୍କୁ ଯମସଦନକୁ ପ୍ରେରଣ କଲେ । ୫୬ । ଚେଦିମାନଙ୍କର ପ୍ରଧାନ ଯୋଦ୍ଧାମାନେ କ୍ଷୟପ୍ରାପ୍ତ ହେବାରୁ ଦ୍ରୋଣଙ୍କ ଶରସମୂହରେ ପୀଡ଼ିତ ପାଞ୍ଚାଳମାନେ କମ୍ପିତ ହେଲେ । ୫୭ । ସେମାନେ ଦ୍ରୋଣଙ୍କ ତାଦୃଶ କର୍ମ

ଅବଲୋକନ କରି ଭୀମସେନ ଓ ଧୃଷ୍ଟଦ୍ୟୁମ୍ନଙ୍କୁ ଲକ୍ଷ୍ୟକରି ଚିତ୍କାରପୂର୍ବକ କହିଲେ । ୫୮ । ଏହି ବ୍ରାହ୍ମଣ ନିଶ୍ଚୟ ମହତ୍ ଦୁଷ୍କର ତପସ୍ୟା କରିଥିଲେ । ଯେଣୁ ତପପ୍ରଭାବରୁ ସଂକ୍ରୁଦ୍ଧ ହୋଇ କ୍ଷତ୍ରିୟଶ୍ରେଷ୍ଠମାନଙ୍କୁ ରଣରେ ଦଗ୍ଧ କରୁଅଛନ୍ତି । ୫୯ । କ୍ଷତ୍ରିୟମାନଙ୍କ ଧର୍ମ ଯୁଦ୍ଧକରିବା ଓ ବ୍ରାହ୍ମଣମାନଙ୍କର ଧର୍ମ ଶ୍ରେଷ୍ଠ ତପସ୍ୟା ଅଟେ । କୃତବିଦ୍ୟ ତପସ୍ୱୀ ବ୍ରାହ୍ମଣ ଦୃଷ୍ଟିମାତ୍ରରେ ଶତ୍ରୁମାନଙ୍କୁ ନିଃଶେଷରେ ଦଗ୍ଧ କରି ପାରନ୍ତି । ୬୦ । ସେହି କାରଣରୁ ବହୁ କ୍ଷତ୍ରିୟଶ୍ରେଷ୍ଠମାନେ ଦ୍ରୋଣଙ୍କ ଅଗ୍ନିସମସ୍ପର୍ଶ ଦୁସ୍ତରଣୀୟ ନିଦାରୁଣ ଅସ୍ତ୍ରରେ ପ୍ରବେଶକରି ଦଗ୍ଧ ହେଉ ଅଛନ୍ତି । ୬୧ । ଦ୍ରୋଣ ଆପଣାର ଯଥାବଳ, ଯଥାଉତ୍ସାହ, ଯଥାଶକ୍ତି ଅନୁସାରେ ଆମ୍ଭମାନଙ୍କର ସୈନ୍ୟମାନଙ୍କୁ ମୋହିତ କରି ସଂହାର କରୁଅଛନ୍ତି । ୬୨ ।

ମହାବଳୀ କ୍ଷତ୍ରଧର୍ମା ସେମାନଙ୍କର ତଦ୍ରୂପ କଥା ଶ୍ରବଣ କରି କ୍ଷତ୍ରିୟ ଧର୍ମରେ ନିଷ୍ଠିତ ହୋଇ ଅର୍ଦ୍ଧଚନ୍ଦ୍ରବାଣ ଦ୍ୱାରା ବଳବାନ୍ କ୍ରୋଧାକୁଳ ଆଚାର୍ଯ୍ୟ ଦ୍ରୋଣଙ୍କର ସଶରଶରାସନକୁ ଛେଦନ କଲେ । ତଦନନ୍ତର କ୍ଷତ୍ରିୟମର୍ଦ୍ଦନ ଦ୍ରୋଣ କ୍ରୋଧାବିଷ୍ଟ ହୋଇ ବେଗଶୀଳ ଦୀପ୍ତିବିଶିଷ୍ଟ ଅପର ଗୋଟିଏ ଶରାସନଗ୍ରହଣପୂର୍ବକ ତଦ୍ଦ୍ୱାରା ଶତ୍ରୁବିନାଶକ ତୀକ୍ଷ୍ଣ ଓ ଦୃଢ଼ ଗୋଟିଏ ଶର ଆକର୍ଣ୍ଣ ସନ୍ଧାନକରି ନିକ୍ଷେପ କଲେ । ସେହି ପ୍ରବଳ ବାଣ ଧୃଷ୍ଟଦ୍ୟୁମ୍ନଙ୍କପୁତ୍ର କ୍ଷତ୍ରଧର୍ମାଙ୍କ ହୃଦୟବିଦାରଣପୂର୍ବକ ତାହାଙ୍କୁ ନିହତ କରି ଧରଣୀତଳରେ ପତିତ ହେଲା । ୬୩ । କ୍ଷତ୍ରଧର୍ମା ନିର୍ଭିନ୍ନହୃଦୟ ହୋଇ ରଥରୁ ଭୂତଳରେ ପତିତ ହେଲେ । ଧୃଷ୍ଟଦ୍ୟୁମ୍ନଙ୍କ ପୁତ୍ର କ୍ଷତ୍ରଧର୍ମା ନିହତ ହେବାରୁ ସୈନ୍ୟମାନେ କମ୍ପିତ ହେଲେ । ୬୭ । ତତ୍ପରେ ମହାରଥୀ ଚେକିତାନ ଦ୍ରୋଣଙ୍କୁ ଆକ୍ରମଣ କରି ଦଶଗୋଟି ବାଣରେ ତାହାଙ୍କର ସ୍ତନଦ୍ୱୟର ମଧ୍ୟଭାଗକୁ ବିଦ୍ଧ କଲେ । ୬୮ । ତାହାଙ୍କ ସାରଥିକୁ ପାଞ୍ଚଗୋଟି ବାଣରେ ବିଦ୍ଧ କରି ଚାରିଗୋଟି ଶରରେ ତାହାଙ୍କର ଚାରିଅଶ୍ୱକୁ ବିଦ୍ଧ କଲେ ।

ପରନ୍ତୁ ଆଚାର୍ଯ୍ୟ ଦ୍ରୋଣ ତିନିଗୋଟି ବାଣରେ ଚେକିତାନଙ୍କ ଦୁଇ ବାହୁ ଓ ବକ୍ଷଃସ୍ଥଳକୁ ବିଦ୍ଧ କରି ସାତଗୋଟି ବାଣରେ ଧ୍ୱଜ ଉନ୍ମଥନପୂର୍ବକ ତିନିଗୋଟି ବାଣରେ ତାହାଙ୍କର ସାରଥିକୁ ବିନାଶ କଲେ । ସାରଥୀ ହତ

ହୁଅନ୍ତେ ତାହାଙ୍କର ଅଶ୍ୱମାନେ ଦ୍ରୋଣଙ୍କ ଶରଦ୍ୱାରା ପୀଡ଼ିତ ହୋଇ ରଥ ଘେନି ଧାବମାନ ହେଲେ । ଚେକିତାନ ରଥସାରଥୀହୀନ ହୋଇ ଧାବମାନ ହେଉଥିବାର ଅବଲୋକନ କରି ପାଞ୍ଚାଳ ଓ ପାଣ୍ଡବମାନଙ୍କ ଚିତ୍ତରେ ମହାଭୟ ଜାତ ହେଲା । ଏକତ୍ର ସମବେତ ଚେଦି, ପାଞ୍ଚାଳ ଓ ସୃଞ୍ଜୟ ବୀରମାନଙ୍କୁ ଚତୁର୍ଦ୍ଦିଗରେ ବିଦ୍ରାବିତ କରି ଦ୍ରୋଣାଚାର୍ଯ୍ୟ ଅତିଶୟ ଶୋଭମାନ ହେଲେ ।୭୨। ପଞ୍ଚାଶୀତିବର୍ଷବୟସ୍କ, ଆକର୍ଣ୍ଣପଳିତ ଓ କୃଷ୍ଣବର୍ଣ୍ଣଗଣ୍ଡବିଶିଷ୍ଟ ବୃଦ୍ଧ ଦ୍ରୋଣ ଷୋଡ଼ଶବର୍ଷବୟସ୍କ ଯୁବାସଦୃଶ ରଣରେ ବିଚରଣ କଲେ । ହେ ମହାରାଜ ! ତଦନନ୍ତର ଶତ୍ରୁସୂଦନ ଦ୍ରୋଣ ଶତ୍ରୁଧ୍ୱଂସ କରି ନିର୍ଭୟରେ ବିଚରଣ କରୁଥିବାର ଦେଖି ଶତ୍ରୁମାନେ ତାହାଙ୍କୁ ବଜ୍ରହସ୍ତ ଇନ୍ଦ୍ରସଦୃଶ ମନେ କଲେ । ୭୪ ।

ତତ୍ପରେ ବୁଦ୍ଧିମାନ୍ ରାଜା ଦ୍ରୁପଦ କହିଲେ ଯେ, ଯେପରି ବ୍ୟାଘ୍ର ପଶୁମାନଙ୍କୁ ହତ କରେ ତଦ୍ରୂପ ଏହି ଲୁବ୍ଧ ବ୍ରାହ୍ମଣ କ୍ଷତ୍ରିୟମାନଙ୍କୁ ନିହତ କରୁଅଛନ୍ତି । ୭୫ । ପାପାତ୍ମା ଦୁର୍ମତି ଦୁର୍ଯ୍ୟୋଧନର ଲୋଭ ହେତୁ ଶତ ଶତ କ୍ଷତ୍ରିୟଶ୍ରେଷ୍ଠମାନେ ସମରରେ ନିହତ ଓ ରୁଧିରଳିପ୍ତଗାତ୍ର ହୋଇ ନିକୃତବୃଷଭତୁଲ୍ୟ ଶୃଗାଳ ଓ କୁକୁରମାନଙ୍କର ଭକ୍ଷ୍ୟ ହୋଇ ଭୂତଳଶାୟୀ ହେଉଅଛନ୍ତି । ଏଣୁ ସେହି ପାପାତ୍ମାକୁ କଷ୍ଟଜନକଲୋକ ପ୍ରାପ୍ତ ହେବ । ଏହା କହି ଏକ ଅକ୍ଷୌହିଣୀର ସେନାପତି ରାଜା ଦ୍ରୁପଦ ସତ୍ୱର ହୋଇ ଯୁଦ୍ଧରେ ପାଣ୍ଡବମାନଙ୍କୁ ପୁରୋବର୍ତ୍ତୀ କରି ଦ୍ରୋଣଙ୍କ ନିକଟକୁ ଯୁଦ୍ଧାର୍ଥ ଗମନ କଲେ । ୭୮ ।

---

## ୧୨୭ ଅଧ୍ୟାୟ

ସଞ୍ଜୟ କହିଲେ—ହେ ଭାରତ ! ପାଣ୍ଡବମାନଙ୍କର ସୈନ୍ୟବ୍ୟୂହ ଇତସ୍ତତଃ ଆଲୋଡ଼ିତ ହେଲାରୁ ପାଣ୍ଡବମାନେ ଓ ସୋମକଗଣ ସହିତ ପାଞ୍ଚାଳମାନେ ଅତିଦୂରକୁ ଗମନ କଲେ । ୧ । ସେହି ଯୁଗାନ୍ତକାଳସଦୃଶ ଲୋକକ୍ଷୟକର ଲୋମହର୍ଷଣ ଅତିଭୟଙ୍କର ତୀବ୍ର ସଂଗ୍ରାମରେ ମହାବଳ-ପରାକ୍ରାନ୍ତ ମୁହୁର୍ମୁହୁଃ ଶବ୍ଦ କଲେ ଓ ତାହାଙ୍କଦ୍ୱାରା ପାଞ୍ଚାଳଗଣ କ୍ଷୟପ୍ରାପ୍ତ

ଓ ପାଣ୍ଡବଗଣ ଆହତ ହୁଅନ୍ତେ ରାଜଶ୍ରେଷ୍ଠ ଧର୍ମରାଜ ଯୁଧିଷ୍ଠିର କାହାରିକୁ ଯୁଦ୍ଧରେ ପରିହାତା ନଦେଖି ଚିନ୍ତାକଲେ ଯେ "ଏହାର କି ଉପାୟ ହେବ" ? ୪ । ସେ ଅର୍ଜ୍ଜୁନଙ୍କୁ ଦେଖିବା ନିମିତ୍ତ ସବଦିଗକୁ ଦୃଷ୍ଟିପାତ କରି ପାର୍ଥ ଅବା ମାଧବ କାହାରିକୁ ଦେଖିଲେ ନାହିଁ । ୫ ।

କପିବରକେତନ ନରଶାର୍ଦ୍ଦୂଳ ପାର୍ଥଙ୍କୁ ନ ଦେଖି ଓ ତାହାଙ୍କର ଗାଣ୍ଡୀବଧନୁର ଶବ୍ଦ ମଧ୍ୟ ଶ୍ରବଣ ନ କରି ଦୁଃଖିତ ହେଲେ ।୬। ବୃଷ୍ଣିକୁଳ-ଶ୍ରେଷ୍ଠ ମହାରଥୀ ସାତ୍ୟକଙ୍କୁ ମଧ୍ୟ ନ ଦେଖି ଅତ୍ୟନ୍ତ ଉତ୍କଣ୍ଠିତ ହେଲେ । ୭ । ନରଶ୍ରେଷ୍ଠ ଅର୍ଜ୍ଜୁନ ଓ ସାତ୍ୟକ ଏହି ଦୁହିଁଙ୍କର ସମ୍ବାଦ ନ ପାଇ କୌଣସି ରୂପେ ଶାନ୍ତିଲାଭ କରିପାରିଲେ ନାହିଁ । ବିଶେଷତଃ ଲୋକନିନ୍ଦା ଭୟରେ ସାତ୍ୟକଙ୍କ ନିମିତ୍ତ ଚିନ୍ତାକଲେ ଯେ, ଆମ୍ଭେ ଏହି ମହାସମରରେ ମିତ୍ରର ଅଭୟଦାତା ଶୂର ସାତ୍ୟକଙ୍କୁ ଅର୍ଜ୍ଜୁନଙ୍କଠାକୁ ପ୍ରେରଣ କରିଅଛୁଁ, ଅତଏବ ପୂର୍ବେ ଆମ୍ଭ ମନ କେବଳ ଅର୍ଜ୍ଜୁନଙ୍କ ପାଇଁ ବ୍ୟାକୁଳିତ ହେଉଥିଲା ; ବର୍ତ୍ତମାନ ପୁଣି ସାତ୍ୟକଙ୍କ ନିମିତ୍ତ ଉତ୍କଣ୍ଠିତ ହେଲା । ସମ୍ପ୍ରତି ଅର୍ଜ୍ଜୁନ ଓ ସାତ୍ୟକ ଏ ଉଭୟଙ୍କର ସମ୍ବାଦ ଜାଣିବା ଆବଶ୍ୟକ । ଅର୍ଜ୍ଜୁନଙ୍କ ନିମିତ୍ତ ସାତ୍ୟକଙ୍କୁ ପ୍ରେରଣ କରିଅଛୁଁ, ଏହିକ୍ଷଣି ସାତ୍ୟକଙ୍କର ପୃଷ୍ଠରକ୍ଷକ କରି କାହାକୁ ପ୍ରେରଣ କରିବୁଁ ? ଯଦି ଯୁଯୁଧାନଙ୍କର ଅନ୍ୱେଷଣ ନ କରି ଭ୍ରାତୃଙ୍କର ଅନ୍ୱେଷଣ କରୁଁ ତାହାହେଲେ ଲୋକେ ଅମ୍ଭଙ୍କୁ ଏହାବୋଲି ନିନ୍ଦା କରିବେ ଯେ, "ଧର୍ମରାଜ ଯୁଧିଷ୍ଠିର ବୃଷ୍ଣିନନ୍ଦନ ସତ୍ୟବିକ୍ରମ ସାତ୍ୟକଙ୍କର ଅନ୍ୱେଷଣ ନ କରି ଭ୍ରାତାର ଅନ୍ୱେଷଣ କଲେ । ଏହି ଲୋକାପବାଦ ଭୟରେ ମହାତ୍ମା ସାତ୍ୟକଙ୍କ ଅନ୍ୱେଷଣ ନିମିତ୍ତ ଭ୍ରାତା ବୃକୋଦରଙ୍କୁ ପ୍ରେରଣ କରିବୁଁ । ଶତ୍ରୁସୂଦନ ଅର୍ଜ୍ଜୁନଙ୍କ ପ୍ରତି ଆମ୍ଭର ଯେରୂପ ସ୍ନେହ, ସାତ୍ୱତକୁଳସମ୍ଭୂତ ଯୁଦ୍ଧଦୁର୍ମଦ ବୃଷ୍ଣିବୀର ସାତ୍ୟକଙ୍କ ପ୍ରତି ମଧ୍ୟ ତଦ୍ରୂପ ସ୍ନେହ । ଶିନପୌତ୍ରଙ୍କ ପ୍ରତି ଆମ୍ଭେ ଅତି ଗୁରୁଭାର ଅର୍ପଣ କରିଅଛୁଁ । ସେହି ବଳାଢ୍ୟ ଶିନବୀର ମିତ୍ରଙ୍କ ଉପରୋଧରେ ଓ ଆମ୍ଭ ଗୌରବ ରକ୍ଷାର୍ଥ ସାଗରମଧ୍ୟରେ ମକର ପ୍ରବେଶ କଲାପ୍ରାୟ ଭାରତୀସେନାମଧ୍ୟରେ ପ୍ରବେଶ କରିଅଛନ୍ତି । ୧୭ । ଧୀମାନ୍ ସାତ୍ୟକଙ୍କ ସହିତ ଯୁଧ୍ୟମାନ ରଣରେ ଅନିବର୍ତ୍ତୀ ଶୂରମାନଙ୍କର ତୁମୁଳ କୋଳାହଳ ଶବ୍ଦ ଶ୍ରୁତିଗୋଚର ହେଉଅଛି । ୧୮ ।

ଆମ୍ଭେ ଅନେକପ୍ରକାର ଚିନ୍ତା କରି ଦେଖିଲୁଁ ଯେ, ଏହି ସଙ୍କଟ ସମୟରେ ଯେଉଁଠାକୁ ସେହି ଦୁଇ ମହାରଥୀ ଗମନ କରିଅଛନ୍ତି ସେଠାକୁ ଭ୍ରାତା ଭୀମସେନଙ୍କର ଗମନ କରିବା ଉଚିତ ବୋଧ ହେଉଅଛି । ପୃଥିବୀ ମଧ୍ୟରେ ତାହାର ଅସାଧ୍ୟ କିଛିହିଁ ନାହିଁ । ସେ ସ୍ୱୀୟ ବାହୁବଳକୁ ଆଶ୍ରୟ କରି ଯତ୍ନବାନ୍ ହେଲେ ପୃଥିବୀ ମଧ୍ୟରେ ସମୁଦାୟ ଧନୁର୍ଦ୍ଧରମାନଙ୍କ ସହିତ ବ୍ୟୂହ ବିପକ୍ଷରେ ଏକାକୀ ଅନାୟାସରେ ପ୍ରତିବ୍ୟୂହର କାର୍ଯ୍ୟ କରିପାରେ । ୨୧ । ସେହି ମହାତ୍ମାର ବାହୁବଳକୁ ଆଶ୍ରୟ କରି ଆମ୍ଭେ ସମସ୍ତେ ବନ-ବାସରୁ ସମୁତ୍ତୀର୍ଣ୍ଣ ହୋଇଅଛୁଁ ଓ କାହାରି ସହିତ ଯୁଦ୍ଧରେ ପରାଜିତ ହୋଇ-ନାହୁଁ । ୨୨ ।

ଭ୍ରାତା ଭୀମସେନ ଏଠାରୁ ଗମନ କରି ସାତ୍ୟକଙ୍କ ନିକଟରେ ଉପନୀତ ହେଲେ ସାତ୍ୟକି ଓ ଅର୍ଜ୍ଜୁନ ଏ ଦୁହେଁ ସହାୟସମ୍ପନ୍ନ ହେବେ । ୨୩ । ପରନ୍ତୁ ଅର୍ଜ୍ଜୁନ ଓ ସାତ୍ୟକଙ୍କ ନିମିତ୍ତ ଆମ୍ଭର ଚିନ୍ତା କରିବା କର୍ତ୍ତବ୍ୟ ନୁହେ । କିମ୍ପାକି କୃଷ୍ଣ ସେମାନଙ୍କୁ ରକ୍ଷାକରୁଅଛନ୍ତି ଓ ସେମାନେ ସ୍ୱୟଂ ଅସ୍ତ୍ରବିଦ୍ୟାରେ ପାରଦର୍ଶୀ ତଥାପି ଆମ୍ଭ ମନରେ ଯେଉଁ ଚିନ୍ତା ଉପସ୍ଥିତ ହୋଇଅଛି, ତାହାକୁ ନିବାରଣ କରିବା ଅବଶ୍ୟ କର୍ତ୍ତବ୍ୟ । ଅତଏବ ସାତ୍ୟକଙ୍କର ରକ୍ଷାନିମିତ୍ତ ଭୀମସେନଙ୍କୁ ନିଯୁକ୍ତ କରିବୁଁ । ତାହାହେଲେ ସାତ୍ୟକଙ୍କ ନିମିତ୍ତ ସମୁଚିତ କାର୍ଯ୍ୟର ବିଧାନ କରାହେଲା ବୋଲି ମନେ କରିବୁଁ ।

ଧର୍ମପୁତ୍ର ଯୁଧିଷ୍ଠିର ମନେ ମନେ ଏହିପରି ଚିନ୍ତା କରି ସାରଥିଙ୍କୁ କହିଲେ । ହେ ସାରଥେ ! ଆମ୍ଭଙ୍କୁ ଭୀମସେନଙ୍କ ନିକଟକୁ ଘେନିଯାଅ । ଅଶ୍ୱ-କୋବିଦ ସାରଥି ଧର୍ମରାଜଙ୍କ ଆଦେଶ ପ୍ରାପ୍ତ ହୋଇ ସ୍ୱର୍ଣ୍ଣବିଭୂଷିତରଥ ଭୀମସେନଙ୍କ ସମୀପରେ ଉପସ୍ଥିତ କଲେ । କୁନ୍ତୀପୁତ୍ର ରାଜା ଯୁଧିଷ୍ଠିର ଭୀମସେନଙ୍କ ନିକଟରେ ଉପସ୍ଥିତ ହୋଇ ସେହି ସମୟର ଉପସ୍ଥିତବିଷୟ କହିବାର ଉପକ୍ରମକାଳରେ ସେହି ସମସ୍ତ କଥା ସ୍ମରଣ କରି ମୋହାବିଷ୍ଟ ହେଲେ । ସେ ବିମୁଗ୍ଧ ହୋଇ ଭୀମଙ୍କୁ ଆହ୍ୱାନ କରି କହିଲେ, ହେ ଭୀମସେନ ! ଯେ ଏକମାତ୍ର ରଥରେ ଆରୋହଣ କରି ଦେବ, ଗନ୍ଧର୍ବ ଓ

ଦୈତ୍ୟମାନଙ୍କୁ ପରାଜୟ କରିଅଛନ୍ତି ତୁମ୍ଭର ସେହି ଅନୁଜ ଅର୍ଜୁନର କୌଣସି ନିଦର୍ଶନ ଅବଲୋକନ କରୁନାହୁଁ ।

ତଦନନ୍ତର ଭୀମସେନ ଧର୍ମରାଜଙ୍କୁ ସେହିପରି ମୋହାବିଷ୍ଟ ଅବଲୋକନ କରି କହିଲେ, ହେ ରାଜେନ୍ଦ୍ର ! ଆପଣଙ୍କର ଈଦୃଶ ମୋହ ଆମ୍ଭେ କେବେ ଦର୍ଶନ ବା ଶ୍ରବଣ କରିନାହୁଁ । ପୂର୍ବେ ଆମ୍ଭେମାନେ ଦୁଃଖାର୍ତ୍ତ ହେଲେ ଆପଣ ଆମ୍ଭମାନଙ୍କର ଦୁଃଖନିବାରଣପୂର୍ବକ ଆଶ୍ୱାସିତ କରନ୍ତି । ୩୨ । ଆପଣ ଉତ୍ଥାନ କରନ୍ତୁ ; ଆପଣଙ୍କ ନିମିତ୍ତ ଆମ୍ଭଙ୍କୁ କି କାର୍ଯ୍ୟ କରିବାକୁ ହେବ ତାହା ଆଜ୍ଞା କରନ୍ତୁ । ହେ ମାନଦ ! ଆମ୍ଭର କର୍ତ୍ତବ୍ୟ ବା ଅସାଧ୍ୟ କୌଣସି କର୍ମ ନାହିଁ । ୩୩ । ହେ କୁରୁଶ୍ରେଷ୍ଠ ! ଆପଣ ଶୋକରେ ଚିତ୍ତନିବେଶ କରନ୍ତୁ ନାହିଁ ; ଯେଉଁ କାର୍ଯ୍ୟ ସାଧନ କରିବାକୁ ହେବ ତାହା ଆମ୍ଭଙ୍କୁ ଆଜ୍ଞା କରନ୍ତୁ ।

ରାଜା ଯୁଧିଷ୍ଠିର ଅଶ୍ରୁପୂର୍ଣ୍ଣନୟନରେ ଅତିଶୟ ମ୍ଳାନବଦନରେ କୃଷ୍ଣସର୍ପସଦୃଶ ନିଃଶ୍ୱାସ ପରିତ୍ୟାଗ କରି କରି ଭୀମସେନଙ୍କୁ କହିଲେ, ହେ ଭୀମସେନ ! ଯଶସ୍ୱୀ ରୋଷାବିଷ୍ଟ ବାସୁଦେବଙ୍କମୁଖମାରୁତରେପୂରିତ ପାଞ୍ଚଜନ୍ୟ ଶଙ୍ଖର ଶବ୍ଦ ବର୍ତ୍ତମାନ ଯେପରି ଶୁଣାଯାଉଅଛି, ତହିଁରୁ ନିଶ୍ଚୟ ବୋଧ ହେଉଅଛି ଯେ, ତୁମ୍ଭର ଭ୍ରାତା ଧନଞ୍ଜୟ ଅଦ୍ୟ ଯୁଦ୍ଧରେ ନିହତ ହୋଇ ଶୟନ କରିଅଛନ୍ତି ; ସେ ନିହତ ହେବାରୁ କୃଷ୍ଣ ସ୍ୱୟଂ ଯୁଦ୍ଧ କରୁଅଛନ୍ତି ।

ଯେଉଁ ସତ୍ତ୍ୱବାନ୍ ପୁରୁଷର ବଳବୀର୍ଯ୍ୟକୁ ଆଶ୍ରୟ କରି ପାଣ୍ଡବମାନେ ଜୀବିତ ଅଛନ୍ତି ଓ କୌଣସି ଭୟ ଉପସ୍ଥିତ ହେଲେ ଦେବଗଣ ଯେପରି ଇନ୍ଦ୍ରଙ୍କ ଅନୁଗତ ହୁଅନ୍ତି, ସେହିପରି କୌଣସି ଭୟ ଉପସ୍ଥିତ ହେଲେ ପାଣ୍ଡବମାନେ ଯାହାଙ୍କର ଅନୁଗତ ହୁଅନ୍ତି, ସେ ଶୌର୍ଯ୍ୟସମ୍ପନ୍ନ ସିନ୍ଧୁପତିଙ୍କୁ ସମରରେ ପ୍ରାପ୍ତହେବା ମାନସରେ ଭାରତୀସେନାମଧ୍ୟକୁ ଗମନ କରିଅଛନ୍ତି । କିନ୍ତୁ ସେହି ମହାବାହୁ ଶ୍ୟାମବର୍ଣ୍ଣ ଯୁବା, ଜିତନିଦ୍ର, ସୁଦୃଶ୍ୟ, ମହାରଥୀ, ବିଶାଳବକ୍ଷବିଶିଷ୍ଟ, ମତ୍ତହସ୍ତୀସଦୃଶବିକ୍ରମଶୀଳ, ଚକୋରଲୋଚନ, ଶତ୍ରୁପୀଡ଼ାପ୍ରଦ ଓ ତାମ୍ରବର୍ଣ୍ଣବଦନବିଶିଷ୍ଟ ଅର୍ଜୁନର ଗମନକୁ ହିଁ ଜାଣି

ପାରୁଅଛୁ । ସେ ଯେ ପୁନରାଗମନ କରିବେ ଏପରି ବୁଝିପାରୁନାହୁଁ । ଏହାହିଁ ଆମ୍ଭର ଶୋକର କାରଣ । ହେ ମହାବାହୁ ! ଅର୍ଜ୍ଜୁନ ଓ ସାତ୍ୟକଙ୍କ ନିମିତ୍ତ ଆମ୍ଭର ଶୋକାଗ୍ନି ଘୃତପ୍ରଜ୍ଜ୍ୱଳିତଅଗ୍ନିସଦୃଶ ପୁନଃପୁନଃ ବର୍ଦ୍ଧିତ ହେଉଅଛି । ସେହି ମହାସତ୍ତ୍ୱ ଅର୍ଜ୍ଜୁନର ରଥଚିହ୍ନ ନିରୀକ୍ଷଣ ନ କରି ଆମ୍ଭେ ଅତି ଦୁଃଖିତ ହେଉଅଛୁଁ ।

ପୁରୁଷବ୍ୟାଘ୍ର ସାତ୍ୱତଙ୍କୁ ତୁମ୍ଭେ ମହାରଥୀ ବୋଲି ଜାଣ । ସେ ତୁମ୍ଭ ଅନୁଜର ପଦବୀକୁ ଗମନ କରିଅଛନ୍ତି । ସେହି ମହାରଥୀଙ୍କୁ ଆମ୍ଭେ ନ ଦେଖି ଶୋକାକୁଳ ହେଉଅଛୁଁ । ପାର୍ଥ ନିହତ ହେବାରୁ ନିଶ୍ଚୟ ପୁରୁଷୋତ୍ତମ ସ୍ୱୟଂ ଯୁଦ୍ଧ କରୁଅଛନ୍ତି । କିନ୍ତୁ ତାହାଙ୍କର କେହି ସହାୟ ନାହିଁ, ସେଥିରେ ଆମ୍ଭେ ଉଦ୍‌ବିଗ୍ନ ହୋଇଅଛୁଁ । ଯୁଦ୍ଧଦୁର୍ମଦ କୃଷ୍ଣ ଅବଶ୍ୟ ଏକାକୀ ଯୁଦ୍ଧ କରୁଅଛନ୍ତି । ୪୫ । ଏଣୁ ସେହି ଜଣଙ୍କ ନିମିତ୍ତ ଆମ୍ଭର ଚିତ୍ତ-ପ୍ରସନ୍ନ ହେଉନାହିଁ । ହେ ଧର୍ମଜ୍ଞ ! ଆମ୍ଭେ ତୁମ୍ଭର ଜ୍ୟେଷ୍ଠଭ୍ରାତା, ଆମ୍ଭ କଥା ଯଦି ତୁମ୍ଭର ରକ୍ଷାକରିବା କର୍ତ୍ତବ୍ୟ ବୋଧହୁଏ, ତେବେ ଧନଞ୍ଜୟ ଓ ସାତ୍ୟକି ଯେଉଁସ୍ଥାନରେ ଅଛନ୍ତି, ତୁମ୍ଭେ ସେହିସ୍ଥାନକୁ ଗମନ କର । ୪୭ । ସାତ୍ୟକି ଆମ୍ଭର ପ୍ରିୟକାର୍ଯ୍ୟ କରିବା ଅଭିଳାଷରେ ସାମାନ୍ୟ ବ୍ୟକ୍ତିର ଅଗମ୍ୟ ଭୟାନକ ଦୁର୍ଗମ୍ୟ ସେହି ଅର୍ଜ୍ଜୁନଙ୍କ ପଦବୀକୁ ଗମନ କରିଅଛନ୍ତି । ଅତଏବ ଅର୍ଜ୍ଜୁନଙ୍କ ସମ୍ବାଦ ଅପେକ୍ଷା ସାତ୍ୟକଙ୍କ ସମ୍ବାଦ ଜାଣିବା ତୁମ୍ଭର ବିଶେଷ କର୍ତ୍ତବ୍ୟ । ତୁମ୍ଭେ କୃଷ୍ଣାର୍ଜ୍ଜୁନ ଓ ସାତ୍ୟକଙ୍କୁ କୁଶଳୀଥିବାର ଅବ-ଲୋକନ କରି ସିଂହନାଦଦ୍ୱାରା ଆମ୍ଭଙ୍କୁ ପ୍ରବୋଧିତ କରିବ । ୪୯ ।

---

## ୧୨୭ ଅଧ୍ୟାୟ

ଭୀମସେନ କହିଲେ —ହେ ମହାରାଜ ! ଯେଉଁ ରଥ ପୂର୍ବକାଳରେ ବ୍ରହ୍ମା, ଈଶାନ, ଇନ୍ଦ୍ର ଓ ବରୁଣଙ୍କୁ ବହନ କରିଥିଲା, କୃଷ୍ଣାର୍ଜ୍ଜୁନ ଦୁହେଁ ସେହି ରଥରେ ଅବସ୍ଥାନ କରି ଗମନ କରିଅଛନ୍ତି । ଅତଏବ ସେମାନଙ୍କର ଆଜ ଭୟର ବିଷୟ କିଛି ନାହିଁ । ତଥାଚ ଆପଣଙ୍କ ଆଜ୍ଞାକୁ ଶିରୋଧାର୍ଯ୍ୟ କରି ଆମ୍ଭେ ଗମନ କରୁଅଛୁଁ । ଆପଣ ଶୋକ କରିବେ ନାହିଁ । ଆମ୍ଭେ

ସେହି ନରସିଂହମାନଙ୍କର ସମୀପସ୍ଥ ହୋଇ ଆପଣଙ୍କୁ ସଂବାଦ ପ୍ରଦାନ କରିବୁଁ । ୨ ।

ସଞ୍ଜୟ କହିଲେ—ମହାବଳପରାକ୍ରାନ୍ତ ଭୀମସେନ ଏହିପରି କହି ଧୃଷ୍ଟଦ୍ୟୁମ୍ନ ଓ ଅନ୍ୟାନ୍ୟ ସୁହୃଦ୍‌ଗଣଙ୍କ ନିକଟରେ ରାଜା ଯୁଧିଷ୍ଠିରଙ୍କୁ ସମର୍ପଣ କରି ଧୃଷ୍ଟଦ୍ୟୁମ୍ନଙ୍କୁ ପୁନଃପୁନଃ ଏହି କଥା କହିଲେ, ହେ ମହାବାହୋ ! ମହାରଥ ଦ୍ରୋଣ ସର୍ବପ୍ରକାର ଉପାୟଦ୍ୱାରା ଧର୍ମରାଜଙ୍କୁ ଗ୍ରହଣ କରିବା ନିମିତ୍ତ ଅବସ୍ଥାନ କରୁଅଛନ୍ତି, ତାହା ତୁମ୍ଭଙ୍କୁ ବିଦିତ ଅଛି । ହେ ପାର୍ଷତ ! ଆମ୍ଭମାନଙ୍କର ଦ୍ରୋଣଙ୍କ ନିକଟରୁ ରାଜାଙ୍କୁ ରକ୍ଷାକରିବା ଯେପରି ପ୍ରୟୋଜନୀୟ କାର୍ଯ୍ୟ, ଆମ୍ଭର କୃଷ୍ଣାର୍ଜ୍ଜୁନାଦି ସମୀପକୁ ଗମନ କରିବା ତାଦୃଶ ପ୍ରୟୋଜନୀୟ ନୁହେ । କିନ୍ତୁ ରାଜା ଆମ୍ଭଙ୍କୁ ଗମନ କରିବା ନିମିତ୍ତ ଆଜ୍ଞା କରିଅଛନ୍ତି । ତାହାଙ୍କ ଆଜ୍ଞାର ପ୍ରତିବାଦ କରିବାକୁ ଆମ୍ଭେ ଉତ୍ସାହ କରୁନାହୁଁ । କାରଣ ଧର୍ମରାଜଙ୍କ ଆଜ୍ଞାକୁ ନିଃଶଙ୍କଚିତ୍ତରେ ପାଳନ କରିବା ଆମ୍ଭର କର୍ତ୍ତବ୍ୟ । ଅତଏବ ଯେଉଁ ସ୍ଥାନରେ ମୁମୂର୍ଷୁ ଜୟଦ୍ରଥ ଅବସ୍ଥାନ କରୁଅଛି, ଆମ୍ଭେ ସେହି ସ୍ଥାନକୁ ଭ୍ରାତା ଅର୍ଜ୍ଜୁନ ଓ ଧୀମାନ୍ ସାତ୍ୟକିଙ୍କ ନିକଟକୁ ଗମନ କରୁଅଛୁଁ । ତୁମ୍ଭେ ଅଦ୍ୟ ଯୁଦ୍ଧରେ ଯତ୍ନବାନ୍ ହୋଇ ରାଜାଙ୍କୁ ସର୍ବତୋଭାବରେ ରକ୍ଷା କରିବ । ଏହି ଯୁଦ୍ଧରେ ସମୁଦାୟ କାର୍ଯ୍ୟ ମଧ୍ୟରେ ରାଜାଙ୍କୁ ରକ୍ଷାକରିବାହିଁ ପ୍ରଧାନ କାର୍ଯ୍ୟ ।

ହେ ମହାରାଜ ! ଧୃଷ୍ଟଦ୍ୟୁମ୍ନ ଭୀମସେନଙ୍କୁ କହିଲେ— ହେ ପାର୍ଥ ! ଆମ୍ଭେ ତୁମ୍ଭର ଅଭିଳଷିତ କାର୍ଯ୍ୟ କରିବୁଁ । ତୁମ୍ଭେ ଗମନ କର । କୌଣସି ଚିନ୍ତା କରନାହିଁ । ଦ୍ରୋଣ ସଂଗ୍ରାମରେ ଧୃଷ୍ଟଦ୍ୟୁମ୍ନଙ୍କୁ ବିନାଶ କରି କୌଣସି ପ୍ରକାରେ ଧର୍ମରାଜଙ୍କୁ ଗ୍ରହଣ କରି ପାରିବେ ନାହିଁ । ତଦନନ୍ତର ଭୀମସେନ ରାଜାଙ୍କୁ ଧୃଷ୍ଟଦ୍ୟୁମ୍ନଙ୍କ ସମୀପରେ ସମର୍ପଣ କରି, ଜ୍ୟେଷ୍ଠଭ୍ରାତା, ଗୁରୁ, ଧର୍ମରାଜଙ୍କୁ ଅଭିବାଦନ କଲେ । ଧର୍ମରାଜ ତାହାଙ୍କୁ ଆଲିଙ୍ଗନପୂର୍ବକ ମସ୍ତକାଘ୍ରାଣ କରି ଶୁଭାଶୀର୍ବାଦ କଲେ । ଅନନ୍ତର ଭୀମସେନ ବିପ୍ରମାନଙ୍କୁ ଅର୍ଚ୍ଚନାଦ୍ୱାରା ସନ୍ତୁଷ୍ଟ କରି ସେମାନଙ୍କୁ ପ୍ରଦକ୍ଷିଣପୂର୍ବକ ବ୍ରାହ୍ମଣ, ଗୋ, ହୁତାଶନ ପ୍ରଭୃତି ଅଷ୍ଟବିଧ ମଙ୍ଗଳଦ୍ରବ୍ୟ ସ୍ପର୍ଶ କଲେ ଓ କୈରାତମଧୁ ପାନ କରି ମଦବିହ୍ୱଳଲୋଚନ ଓ ଦ୍ୱିଗୁଣ ଉତ୍ସାହସମ୍ପନ୍ନ ହେଲେ । ୧୩ । ବ୍ରାହ୍ମଣମାନେ

ତାହାଙ୍କର ବିଜୟସୂଚକ ହୋଇ ସ୍ୱସ୍ତ୍ୟୟନ କଲେ । ସେ ବିଜୟାନନ୍ଦସୂଚକ ଆତ୍ମବୃଦ୍ଧି ଅନୁଭବ କରି ଯାତ୍ରା କଲେ । ୧୫ ।

ଯାତ୍ରାକାଳରେ ବାୟୁ ତାହାଙ୍କର ଅନୁକୂଳଗାମୀ ହୋଇ ବିଜୟ ସୂଚନା କଲେ । ମହାରଥୀଶ୍ରେଷ୍ଠ ମହାବାହୁ ଭୀମସେନଙ୍କ କର୍ଣ୍ଣରେ ସୁରୁଚିର କୁଣ୍ଡଳ, ବାହୁରେ ମନୋହର ଅଙ୍ଗଦ, ହସ୍ତରେ ତଳତ୍ରାଣ ଓ ଅଙ୍ଗରେ ସ୍ୱର୍ଣ୍ଣଚିତ୍ରିତ କୃଷ୍ଣଲୌହମୟ ମହାମୂଲ୍ୟ କବଚ ପରିଧାନ କଲେ । ଏତଦ୍ଦ୍ୱାରା ସବିଦ୍ୟୁତ୍ ମେଘ ଯେପରି ଅଚଳକୁ ଆଶ୍ଳିଷ୍ଟ ହୋଇ ଶୋଭମାନ ହୁଏ, ତାହାଙ୍କର ସେହି କବଚ ଅଙ୍ଗଶ୍ଳିଷ୍ଟ ହୋଇ ସେହିପରି ଶୋଭାପାଇଲା । ଇନ୍ଦ୍ରାୟୁଧ ସହିତ ଜଳଧାରା ଯେପରି ଶୋଭାପ୍ରାପ୍ତ ହୁଏ, ପୀତ, ରକ୍ତ, କୃଷ୍ଣ ଓ ଶୁକ୍ଳବର୍ଣ୍ଣ ବସନ ଓ କଣ୍ଠତ୍ରାଣ ପରିଧାନଦ୍ୱାରା ସେ ସେହିପ୍ରକାର ଶୋଭମାନ ହେଲେ ।

ଆପଣଙ୍କ ସୈନ୍ୟମାନଙ୍କ ସହିତ ଯୁଦ୍ଧ କରିବା ଅଭିଳାଷରେ ଭୀମସେନ ପ୍ରସ୍ଥାନରେ ଉଦ୍ୟୋଗ କରିବାସମୟରେ ପୁନର୍ବାର ପାଞ୍ଚଜନ୍ୟ ଶଙ୍ଖଧ୍ୱନି ହେଲା । ତ୍ରୈଲୋକ୍ୟତ୍ରାସଜନକ ଭୟଙ୍କର ସେହି ମହତ୍ ଶଙ୍ଖଧ୍ୱନି ଶ୍ରବଣ କରି ଧର୍ମରାଜ ଯୁଧିଷ୍ଠିର ପୁନର୍ବାର ମହାବାହୁ ଭୀମସେନଙ୍କୁ କହିଲେ, ହେ ବୃକୋଦର ! ତୁମ୍ଭେ ତ ଶୁଣୁଅଛ ଯେ, ବୃଷ୍ଣିକୁଳବୀର କୃଷ୍ଣ ପାଞ୍ଚଜନ୍ୟ ଶଙ୍ଖଧ୍ୱନି କରୁଅଛନ୍ତି । ସେହି ନିରତିଶୟ ଶଙ୍ଖଧ୍ୱନିଦ୍ୱାରା ପୃଥିବୀ ଓ ଅନ୍ତରୀକ୍ଷ ନିନାଦିତ ହେଉଅଛି । ସବ୍ୟସାଚୀ ଅତିଶୟ ମହତ୍ ବ୍ୟସନାପନ୍ନ ହୋଇଥିବେ । ସେହିହେତୁ କୃଷ୍ଣ ସ୍ୱୟଂ ଚକ୍ରଧାରଣ କରି ସମସ୍ତ କୁରୁମାନଙ୍କସହିତ ଯୁଦ୍ଧ କରୁଅଛନ୍ତି । ଅଦ୍ୟ ଜନନୀ କୁନ୍ତୀ ଦ୍ରୌପଦୀ ଓ ସୁଭଦ୍ରା ବନ୍ଧୁମାନଙ୍କସହିତ ମହାଅନିଷ୍ଟ ଆଶଙ୍କା କରୁଅଛନ୍ତି । ହେ ଭୀମ ! ତୁମ୍ଭେ ଶୀଘ୍ର ଧନଞ୍ଜୟଙ୍କ ନିକଟକୁ ଗମନ କର । ଆମ୍ଭେ ଧନଞ୍ଜୟଙ୍କ ସମ୍ବାଦପ୍ରାପ୍ତି ଅଭିଳାଷରେ ଓ ସାତ୍ୟକଙ୍କ ନିମିତ୍ତ ହିକ୍‌ବିହିକ୍‌ଜ୍ଞାନଶୂନ୍ୟ ହେଉଅଛୁଁ ।୨୫।

ତତ୍ପରେ ପ୍ରତାପବାନ୍ ଭୀମସେନଙ୍କୁ ତାହାଙ୍କର ଗୁରୁ ଓ ଜ୍ୟେଷ୍ଠଭ୍ରାତା ଯୁଧିଷ୍ଠିର 'ଗମନ କର, ଗମନ କର' ବୋଲି ଆଦେଶ କରନ୍ତେ ସେ ଜ୍ୟେଷ୍ଠଭ୍ରାତାଙ୍କର ପ୍ରିୟ କରିବା ମାନସରେ ବଦ୍ଧଗୋଧାଙ୍ଗୁଳି-

ବାଣ ଓ ଶରାସନଧାରୀ ହୋଇ ଦୁନ୍ଦୁଭି ଓ ଶଙ୍ଖଧ୍ୱନି କରି ବାରମ୍ବାର ସିଂହନାଦ ଓ ଶରାସନ ବିକର୍ଷଣପୂର୍ବକ ବୀରମାନଙ୍କ ଅନ୍ତଃକରଣକୁ ବିଚଳିତ କରି ଓ ସ୍ୱୟଂ ଭୀଷଣ ରୂପ ପ୍ରଦର୍ଶନ କରାଇ ଶତ୍ରୁମାନଙ୍କପ୍ରତି ସହସା ଗମନ କଲେ । ୨୯ । ମନ ବା ସମୀରଣସଦୃଶବେଗଗାମୀ ସୁଶିକ୍ଷିତ ଅଶ୍ୱମାନେ ତାହାଙ୍କ ସାରଥୀ ବିଶୋକଙ୍କକର୍ତ୍ତୃକ ଚାଳିତ ହୋଇ ସମୁଚିତ ଶବ୍ଦ କରି ତାହାଙ୍କୁ ବହନ କଲେ । ୩୦ । ପୃଥାନନ୍ଦନ କରଦ୍ୱାରା ଧନୁଷ୍ଟଙ୍କାର କରି ଶତ୍ରୁସୈନ୍ୟମାନଙ୍କ ଅଗ୍ରରେ ଅବସ୍ଥିତ ଯୋଦ୍ଧାମାନଙ୍କୁ ଶସ୍ତ୍ରସମୂହଦ୍ୱାରା ନାନାପ୍ରକାର ପୀଡ଼ା ପ୍ରଦାନ କରି ଆଲୋଡ଼ନପୂର୍ବକ ଗମନ କଲେ । ଯେପରି ଦେବଗଣ ଇନ୍ଦ୍ରଙ୍କର ଅନୁଗମନ କରନ୍ତି ସେହିପରି ସୋମକ ଓ ପାଞ୍ଚାଳ ଶୂରମାନେ ମହାବାହୁ ବୃକୋଦରଙ୍କ ପଶ୍ଚାତ୍ ଗମନ କଲେ ।୩୨।

ହେ ମହାରାଜ ! ଦୁଃଶାସନ, ଚିତ୍ରସେନ, କୁଣ୍ଡଭେଦୀ, ବିବିଂଶତି, ଦୁର୍ମୁଖ, ଦୁଃସହ, ବିକର୍ଣ୍ଣ, ଶଳ, ବିନ୍ଦ, ଅନୁବିନ୍ଦ, ଦୁର୍ଦ୍ଧର୍ଷ, ଦୀର୍ଘବାହୁ, ସୁଦର୍ଶନ, ବୃନ୍ଦାରକ, ସୁହସ୍ତ, ସୁଷେଣ, ଦୀର୍ଘଲୋଚନ, ରୌଦ୍ରକର୍ମା, ସୁବର୍ମା ଓ ଦୁର୍ବିମୋଚନ, ଏହିସମସ୍ତ ରଥିଶ୍ରେଷ୍ଠ ଶୌର୍ଯ୍ୟସମ୍ପନ୍ନ ଆପଣଙ୍କ ପୁତ୍ରମାନେ ନାନାବିଧ ଅନୁରାଗସମ୍ଭବବ୍ୟାହାରରେ ପରମ ଯତ୍ନସହକାରେ ଭୀମସେନଙ୍କ ପ୍ରତି ଧାବମାନ ହୋଇ ତାହାଙ୍କୁ ପରିବେଷ୍ଟନ କଲେ । ୩୬ । ପରାକ୍ରମଶୀଳ କୁନ୍ତୀନନ୍ଦନ ମହାରଥ ଭୀମସେନ ସିଂହ କ୍ଷୁଦ୍ର ମୃଗମାନଙ୍କ ନିକଟକୁ ଧାବମାନ ହେଲପ୍ରାୟ ସେମାନଙ୍କୁ ଅବଲୋକନ କରି ସେମାନଙ୍କ ନିକଟକୁ ଧାବମାନ ହେଲେ । ୩୭ । ମେଘମଣ୍ଡଳ ଯେପରି ଉଦିତ ସୂର୍ଯ୍ୟଙ୍କୁ ଆଚ୍ଛନ୍ନ କରେ ତଦ୍ରୂପ ସେହି ବୀରମାନେ ତାହାଙ୍କୁ ଶରଜାଲରେ ସମାବୃତ କରି ଦିବ୍ୟମହାସ୍ତ୍ରସମୂହ ପ୍ରଦର୍ଶନ କରାଇଲେ । ୩୮ । ପରନ୍ତୁ ସେ ବେଗ-ସହାକରେ ସେମାନଙ୍କୁ ଅତିକ୍ରମ କରି ଦ୍ରୋଣସୈନ୍ୟଙ୍କ ନିକଟକୁ ଧାବମାନ ହେଲେ । ସମ୍ମୁଖବର୍ତ୍ତୀ ଗଜସୈନ୍ୟଙ୍କପ୍ରତି ଶରବର୍ଷଣ କଲେ । ୩୯ । ପବନପୁତ୍ର ମୁହୂର୍ତ୍ତିକ ମଧ୍ୟରେ ସେହି ଗଜସୈନ୍ୟଙ୍କୁ ଶରସମୂହଦ୍ୱାରା ଚତୁର୍ଦ୍ଦିଗରେ ଛିନ୍ନଭିନ୍ନ କଲେ । ୪୦ ।

ଯେପରି ଅରଣ୍ୟମଧ୍ୟରେ ଶରଭଗର୍ଜନଦ୍ୱାରା ମୃଗମାନେ ତ୍ରାସିତ ହୋଇ ପଳାୟନ କରନ୍ତି । ସେହିପରି ସେହିସମସ୍ତ ଦ୍ୱିରଦଗଣ ଭୈରବ

ରବ କରି ପଳାୟନ କଲେ । ୪୧ । ତତ୍ପରେ ସେ ବେଗପୂର୍ବକ ସେଠାରୁ ଦ୍ରୋଣସୈନ୍ୟଙ୍କ ପ୍ରତି ଧାବମାନ ହେଲେ । ବେଳାଭୂମି ଉଦ୍ଧତ ସାଗରକୁ ନିବାରଣ କଲପ୍ରାୟ ଆଚାର୍ଯ୍ୟ ଦ୍ରୋଣ ତାହାଙ୍କୁ ଅବରୋଧ କଲେ । ୪୨ । ହସିହସି ଦ୍ରୋଣ ତାହାଙ୍କ ଲଲାଟରେ ନାରାଚ ବିଦ୍ଧ କଲେ । ତହୁଁ ପାଣ୍ଡୁପୁତ୍ର ଊର୍ଦ୍ଧ୍ୱରଶ୍ମି ଦିବାକରସଦୃଶ ପ୍ରକାଶମାନ ହେଲେ । ୪୩ । ଅର୍ଜ୍ଜୁନ ଯେପରି ଆମ୍ଭର ମାନରକ୍ଷା କରି ଗମନ କରିଅଛନ୍ତି । ସେହିପରି ଭୀମ ମଧ୍ୟ ଗମନ କରନ୍ତୁ । ଏହା ମନେକରି ଆଚାର୍ଯ୍ୟ ଦ୍ରୋଣ କହିଲେ, ହେ ଭୀମସେନ ! ଆମ୍ଭେ ଶତ୍ରୁ, ଅଦ୍ୟ ଆମ୍ଭଙ୍କୁ ପରାଜିତ ନ କରି ତୁମ୍ଭେ ଶତ୍ରୁସୈନ୍ୟ ମଧ୍ୟରେ ପ୍ରବେଶ କରିପାରିବ ନାହିଁ । ୪୫ । ତୁମ୍ଭ ଅନୁଜସହିତ କୃଷ୍ଣ ଆମ୍ଭର ଅନୁମତିକ୍ରମେ ସୈନ୍ୟମଧ୍ୟରେ ପ୍ରବେଶ କରିଥିଲେ ହେଁ ତୁମ୍ଭେ ଆମ୍ଭ ନିକଟରେ ସେ ବିଷୟରେ କୌଣସିପ୍ରକାର କୃତକାର୍ଯ୍ୟ ହୋଇ ପାରିବ ନାହିଁ । ୪୬ ।

ଅଶାନ୍ତଚିତ୍ତ ଭୀମସେନ ଆଚାର୍ଯ୍ୟଙ୍କ ସେହି ବାକ୍ୟ ଶ୍ରବଣ କରି ସଂକ୍ରୁଦ୍ଧ ହୋଇ ରକ୍ତବର୍ଣ୍ଣ ନେତ୍ରଦ୍ୱାରା କଟାକ୍ଷଦୃଷ୍ଟିପୂର୍ବକ ନିଃଶ୍ୱାସ ପରିତ୍ୟାଗକରି ତାହାଙ୍କୁ କହିଲେ । ୪୭ । ଆହେ ବ୍ରାହ୍ମଣାଧମ ! ଦୁର୍ଦ୍ଧର୍ଷ ଅର୍ଜ୍ଜୁନ ଯେ, ତୁମ୍ଭର ଅନୁମତି କ୍ରମେ ସମରସାଗରରେ ପ୍ରବିଷ୍ଟ ହୋଇ ଅଛନ୍ତି, ଏହା ସମ୍ଭବ ନୁହେ । କିପାଁକି ସେ ଇନ୍ଦ୍ରରକ୍ଷିତ ସେନାଙ୍କମଧ୍ୟରେ ମଧ୍ୟ ପ୍ରବେଶ କରି ପାରନ୍ତି । ୪୮ । ଅର୍ଜ୍ଜୁନ ତୁମ୍ଭର ପୂଜାପୂର୍ବକ ସମ୍ମାନିତ କରି ଯଦି ଗମନ କରିଥାନ୍ତି, ତେବେ ଆମ୍ଭେ ସେହି ଦୟାଳୁ ଅର୍ଜ୍ଜୁନ ନୋହୁଁ, ଆମ୍ଭେ ଭୀମସେନ, ତୁମ୍ଭର ଶତ୍ରୁ ଅଟୁଁ । ୪୯ ।

ହେ ଆଚାର୍ଯ୍ୟ ! ତୁମ୍ଭେ ଆମ୍ଭମାନଙ୍କର ପିତା, ଗୁରୁ ଓ ବନ୍ଧୁ ଏବଂ ଆମ୍ଭେମାନେ ତୁମ୍ଭର ପୁତ୍ରତୁଲ୍ୟ । ଆମ୍ଭେମାନେ ଏହିପରି ବିବେଚନା କରି ତୁମ୍ଭ ନିକଟରେ ପ୍ରଣତଭାବରେ ଅବସ୍ଥାନ କରିଥାଉଁ । ୫୦ । କିନ୍ତୁ ଅଦ୍ୟ ତୁମ୍ଭେ ଯେପରି ବାକ୍ୟ ପ୍ରୟୋଗ କଲ ତହିଁରୁ ତାହାର ବିପରୀତ ବୋଧ ହେଲା । ଯଦି ତୁମ୍ଭେ ଆମ୍ଭମାନଙ୍କର ଶତ୍ରୁବୋଲି ମନେ କରିଥାଅ, ତାହା ହେଉ । ୫୧ । ଆମ୍ଭେ ମଧ୍ୟ ତୁମ୍ଭର ଶତ୍ରୁର ଉପଯୁକ୍ତ ଭୀଷଣ କର୍ମ କରୁଅଛୁଁ । ଏହା କହି ଭୀମସେନ ଶମନସଦୃଶ ହୋଇ କାଳଦଣ୍ଡତୁଲ୍ୟ ଗଦାକୁ ଉତ୍ତୋଳନ

କରି ଦ୍ରୋଣଙ୍କ ପ୍ରତି ନିକ୍ଷେପ କଲେ । ଦ୍ରୋଣ ତତ୍କ୍ଷଣାତ୍ ରଥରୁ ତଳକୁ ଅପସୃତ ହେଲେ ; ତାହାଙ୍କର ଅଶ୍ୱ, ସାରଥୀ ଓ ଧ୍ୱଜସହିତ ରଥ ଚୂର୍ଣ୍ଣ ହୋଇଗଲା । ପ୍ରବଳ ବାୟୁ ବେଗରେ ଭଗ୍ନବୃକ୍ଷ ପତିତ ହେଲାପ୍ରାୟ ଯୋଦ୍ଧାମାନେ ବିମର୍ଦ୍ଦିତ ହେଲେ ।

ଆପଣଙ୍କ ମହାରଥୀ ପୁତ୍ରମାନେ ପୁନର୍ବାର ଭୀମସେନଙ୍କୁ ପରି- ବେଷ୍ଟନ କଲେ । ୫୪ । ପ୍ରହାରପଟୁ ଦ୍ରୋଣ ମଧ୍ୟ ଅନ୍ୟ ଗୋଟିଏ ରଥରେ ଆରୋହଣ କରି ବ୍ୟୂହଦ୍ୱାରରେ ଯୁଦ୍ଧରେ ଅବସ୍ଥିତ ହେଲେ । ୫୫ । ହେ ମହାରାଜ ! ତଦନନ୍ତର ମହାବଳପରାକ୍ରମୀ ଭୀମସେନ କ୍ରୁଦ୍ଧ ହୋଇ ଅଗ୍ରରେ ଅବସ୍ଥିତ ରଥୀସୈନ୍ୟମାନଙ୍କୁ ଶରବର୍ଷଣଦ୍ୱାରା ସମାଚ୍ଛନ୍ନ କଲେ । ୫୬ । ଆପଣଙ୍କ ଭୀମବଳସମ୍ପନ୍ନ ମହାରଥ ପୁତ୍ରମାନେ ଭୀମଙ୍କକର୍ତ୍ତୃକ ବଧ୍ୟମାନ ହୋଇ ମଧ୍ୟ ଜୟାଭିଳାଷୀ ହୋଇ ତାହାଙ୍କ ସହିତ ଯୁଦ୍ଧ କଲେ । ୫୭ । ଦୁଃଶାସନ କ୍ରୋଧାବିଷ୍ଟ ହୋଇ ଭୀମଙ୍କୁ ସଂହାର କରିବା ମାନସରେ କାଳ- ଦଣ୍ଡତୁଲ୍ୟ ଗୋଟିଏ ଗୁରୁତର ରଥଶକ୍ତି ଗ୍ରହଣକରି ନିକ୍ଷେପ କଲେ । ୫୮ । ସେ ଆପଣଙ୍କ ପୁତ୍ରଙ୍କ ନିକ୍ଷିପ୍ତ ସେହି ମହାଶକ୍ତିକୁ ଆପତିତ ହେବାର ଅବଲୋକନ କରି ତାହାକୁ ଦୁଇଖଣ୍ଡ କରି ଛେଦନ କଲେ । ତାହା ଅଦ୍ଭୁତ ସଦୃଶ ହେଲା । ୫୯ । ଅନନ୍ତର ବୃକୋଦର କ୍ରୋଧସହକାରେ ଅନ୍ୟାନ୍ୟ ସୁଶାଣିତ ବାଣସମୂହଦ୍ୱାରା କୁଣ୍ଡଭେଦୀ, ସୁଷେଣ ଓ ଦୀର୍ଘନେତ୍ର ଏହି ତିନି ଭ୍ରାତାଙ୍କୁ ତିନି ତିନି ଗୋଟି ବାଣରେ ନିହତ କଲେ । ୬୦ ।

ଆପଣଙ୍କର ପୁତ୍ରମାନେ ଶୌର୍ଯ୍ୟ ପ୍ରକାଶ କରି ଯୁଦ୍ଧ କରୁଥିବା ସମୟରେ ସେମାନଙ୍କ ମଧ୍ୟରୁ କୁରୁକୁଳକୀର୍ତ୍ତିବର୍ଦ୍ଧନ ବୀର ବୃନ୍ଦାରକଙ୍କୁ ଭୀମସେନ ନିହତ କରି ପୁନର୍ବାର ଅଭୟ, ରୌଦ୍ରକର୍ମା ଓ ଦୁର୍ବିମୋଚନ ଏହି ତିନିଜଣଙ୍କୁ ତିନି ତିନି ଗୋଟି ବାଣରେ ନିହତ କଲେ । ୬୨ । ଆପଣଙ୍କ ଅନ୍ୟାନ୍ୟ ପୁତ୍ରମାନେ ବଳବାନ୍ ଭୀମଙ୍କକର୍ତ୍ତୃକ ହନ୍ୟମାନ ହୋଇ ମୃତ୍ୟୁଭୟକୁ ଅନ୍ତଃକରଣରୁ ବହିଷ୍କୃତ କରି ତାହାଙ୍କୁ ଚତୁର୍ଦ୍ଦିଗରୁ ପରି- ବେଷ୍ଟନ କଲେ । ୬୩ । ଯେପରି ଗ୍ରୀଷ୍ମକାଳର ଅବସାନରେ ମେଘମଣ୍ଡଳୀ ପର୍ବତୋପରି ଜଳଧାରା ବର୍ଷଣ କରେ, ସେହିପରି ସେମାନେ ଭୀମକର୍ମା ଭୀମଙ୍କ ଉପରେ ଶରବର୍ଷଣ କଲେ । ୬୪ । ଶତ୍ରୁହନ୍ତା ଭୀମସେନ ହାସ୍ୟ-

ମୂର୍ଦ୍ଧକ ଶିଳାବର୍ଷଣତୁଲ୍ୟ ସେହି ବାଣବର୍ଷଣକୁ ଅଚଳତୁଲ୍ୟ ହୋଇ ଗ୍ରହଣ କଲେ । ତଦ୍ଦ୍ୱାରା କିଛିମାତ୍ର ବ୍ୟଥିତ ହେଲେ ନାହିଁ ପୁଣି ଆପଣଙ୍କ ପୁତ୍ର ବନ୍ଧ, ଅନୁବନ୍ଧ ଓ ସୁବର୍ମାଙ୍କୁ ହାସ୍ୟମୁଖରେ ଶମନ ଭବନକୁ ପ୍ରେରଣ କଲେ । ୬୬ । ଅନନ୍ତର ଆପଣଙ୍କ ପୁତ୍ର ବୀର ସୁଦର୍ଶନଙ୍କୁ ଶରବଦ୍ଧ କରିବାରୁ ତଦ୍ଦ୍ୱାରା ସୁଦର୍ଶନ ନିହତ ହୋଇ ପତିତ ହେଲା । ୬୭ ।

ତତ୍ପରେ ପାଣ୍ଡୁନନ୍ଦନ ସେହି ରଥସୈନ୍ୟମାନଙ୍କ ଶୀଘ୍ର ଶରନିକର-ଦ୍ୱାରା ଚତୁର୍ଦ୍ଦିଗକୁ ଛିନ୍ନଭିନ୍ନ କରିଦେଲେ । ୬୮ । ଆପଣଙ୍କ ତତ୍ପସ୍ଥ ଅବଶିଷ୍ଟ ପୁତ୍ରମାନେ ଭୀମଙ୍କ ଶରଦ୍ୱାରା ସମାହତ ହୋଇ ଓ ତାହାଙ୍କର ମେଘଗର୍ଜନ-ସଦୃଶ ରଥଘୋଷକୁ ଶୁଣି ଭୟାକୁଳିତ ମୃଗସଦୃଶ ସେଠାରୁ ପଳାୟନ କଲେ । ମହାବଳସମ୍ପନ୍ନ ମହାବାହୁ ଭୀମସେନ ଆପଣଙ୍କ ପୁତ୍ରମାନଙ୍କର ମହାସୈନ୍ୟମାନଙ୍କ ପଶ୍ଚାତ୍ ଗମନ କରି ଚତୁର୍ଦ୍ଦିଗରେ କୌରବ ସୈନ୍ୟ-ମାନଙ୍କୁ ଶର ବିଦ୍ଧ କଲେ । ଆପଣଙ୍କପକ୍ଷୀୟ ସେହିସମସ୍ତ ସୈନ୍ୟମାନେ ଭୀମଙ୍କକର୍ତ୍ତୃକ କ୍ଷତବିକ୍ଷତ ହୋଇ ତାହାଙ୍କୁ ପରିତ୍ୟାଗପୂର୍ବକ ସ୍ୱସ୍ୱ ଅଶ୍ୱ-ଗୁଳନା କରି ଗମନ କଲେ । ମହାବଳଶାଳୀ ଭୀମ ସେମାନଙ୍କୁ ସମରରେ ପରାଜିତ କରି ଉଚ୍ଚୈଃସ୍ୱରରେ ସିଂହନାଦ, ବାହୁଶବ୍ଦ ଓ ଅତିଶୟ ଭୀଷଣ ତଳଶବ୍ଦଦ୍ୱାରା ରଥୀମାନଙ୍କୁ ଭୟପ୍ରଦର୍ଶନ କରାଇ ପ୍ରଧାନ ପ୍ରଧାନ ଯୋଦ୍ଧା-ମାନଙ୍କ ନିହତ କଲେ । ଅନନ୍ତର ରଥୀମାନଙ୍କୁ ଅତିକ୍ରମପୂର୍ବକ ଦ୍ରୋଣ ସୈନ୍ୟପ୍ରତି ଧାବମାନ ହେଲେ । ୭୪ ।

---

## ୧୨୮ ଅଧ୍ୟାୟ

ସଞ୍ଜୟ କହିଲେ—ଭୀମସେନ ରଥସୈନ୍ୟମାନଙ୍କୁ ସମୁତ୍ତୀର୍ଣ୍ଣ ହେବାର ଅବଲୋକନ କରି ଆଚାର୍ଯ୍ୟ ଦ୍ରୋଣ ହାସ୍ୟପୂର୍ବକ ତାହାଙ୍କୁ ନିବାରଣ କରିବା ଅଭିଳାଷରେ ତାହାଙ୍କ ପ୍ରତି ଶରବର୍ଷଣ କଲେ । ୧ । ପରନ୍ତୁ ଭୀମସେନ ଦ୍ରୋଣଙ୍କ ଧନୁର୍ନିର୍ମୁକ୍ତ ସେହିସମସ୍ତ ବାଣପ୍ରବାହକୁ ପାନ କଲା-ସଦୃଶ ହୋଇ ସୈନ୍ୟମାନଙ୍କୁ ମାୟାଦ୍ୱାରା ମୋହିତ କରି ଆପଣଙ୍କ ପୁତ୍ର-ମାନଙ୍କ ପ୍ରତି ଧାବମାନ ହେଲେ । ୨ । ଆପଣଙ୍କ ପୁତ୍ରମାନଙ୍କ ଆଦେଶାନୁସାରେ

ଧନୁର୍ଦ୍ଧାରୀ ମହୀପାଳମାନେ ଅତିବେଗାବଲମ୍ବନପୂର୍ବକ ତାହାଙ୍କୁ ଚତୁର୍ଦ୍ଦିଗରୁ ପରିବେଷ୍ଟନ କଲେ । ୩ । ସେ ପ୍ରଧାନ ଧନ୍ୱୀମାନଙ୍କଦ୍ୱାରା ତଦ୍ରୂପ ପରିବୃତ ହୋଇ ହାସ୍ୟପୂର୍ବକ ସିଂହନାଦସହକାରେ ଶତ୍ରୁପକ୍ଷବିନାଶକ୍ଷମ ଅତି ଭୟାନକ ଗୋଟିଏ ଗଦା ଉଦ୍ୟତ କରି ବେଗପୂର୍ବକ ସେମାନଙ୍କ ଉପରକୁ ନିକ୍ଷେପ କଲେ । ଇନ୍ଦ୍ରଙ୍କକର୍ତ୍ତୃକ ଉଦ୍‌ଭ୍ରାମିତ ଇନ୍ଦ୍ରବଜ୍ରତୁଲ୍ୟ ମହାତ୍ମା ଭୀମଙ୍କକର୍ତ୍ତୃକ ଉଦ୍‌ଭ୍ରାମିତ ସେହି ଗଦା ଆପଣଙ୍କ ସୈନ୍ୟମାନଙ୍କୁ ପ୍ରମଥିତ କଲା । ୪ । ତେଜଃପ୍ରଦୀପ୍ତ ସେହି ଗଦା ମହାଶବ୍ଦ ଦ୍ୱାରା ପୃଥିବୀକୁ ପରିପୂର୍ଣ୍ଣ କରି ଆପଣଙ୍କ ପୁତ୍ରମାନଙ୍କୁ ଭୀଷିତ କଲା । ୬ । ଆପଣଙ୍କପକ୍ଷୀୟ ବୀରମାନେ ସେହି ତେଜପୁଞ୍ଜ ବିରାଜିତ ଗଦାକୁ ମହାବେଗରେ ଆପତିତ ହେବାର ଅବଲୋକନ କରି ଭୈରବ ରବ ପରିତ୍ୟାଗ କରୁ କରୁ ପଳାୟନ କଲେ । ୭ । ମନୁଷ୍ୟମାନେ ସେହି ଗଦାର ଅସହ୍ୟ ଶବ୍ଦ ଶ୍ରବଣ କରି ଭୂତଳରେ ପତିତ ହେଲେ ଓ ଅନେକ ରଥୀ ମଧ୍ୟ ରଥରୁ ଭୂମିରେ ନିପତିତ ହେଲେ । ୮ । ଅନନ୍ତର ଭୀମସେନ ଗଦାହସ୍ତ ହୋଇ ଆପଣଙ୍କ ପକ୍ଷମାନଙ୍କୁ ଏପରି ହନନ କଲେ ଯେ, ସେମାନେ ବ୍ୟାଘ୍ରକର୍ତ୍ତୃକ ଆହତ ମୃଗଗଣସଦୃଶ ଭୀତ ହୋଇ ପଳାୟନ କଲେ । ୯ । କୁନ୍ତୀପୁତ୍ର ଯୁଦ୍ଧରେ ସେହିସମସ୍ତ ଦୁରାସଦ ଶତ୍ରୁମାନଙ୍କୁ ବିଦ୍ରାବିତ କରି ପକ୍ଷିରାଜ ଗରୁଡ଼ ଯେପରି ବେଗରେ ଗମନ କରେ ସେହିପରି ଚମୂମଧ୍ୟରେ ଗମନ କଲେ । ୧୦ ।

ହେ ମହାରାଜ ! ରଥୀଶ୍ରେଷ୍ଠମାନଙ୍କର ଅଧିପତି ଭୀମସେନଙ୍କୁ ସେହିପ୍ରକାର ଅନିଷ୍ଟ କରିବାର ଅବଲୋକନ କରି ଭରଦ୍ୱାଜନନ୍ଦନ ତାହାଙ୍କ ପ୍ରତି ଅଭିମୁଖୀନ ହେଲେ । ୧୧ । ସେ ଶରବେଗଦ୍ୱାରା ଭୀମସେନଙ୍କୁ ନିବାରିତ କରି ପାଣ୍ଡବମାନଙ୍କର ଭୟୋତ୍ପାଦନପୂର୍ବକ ସିଂହନାଦ କଲେ । ୧୨ । ମହାତ୍ମା ଭୀମସେନଙ୍କ ସହିତ ଦ୍ରୋଣଙ୍କର ଦେବାସୁର ସମର ସଦୃଶ ଘୋରତର ଅତି ତୁମୁଳ ସଂଗ୍ରାମ ହେଲା । ୧୩ । ଯେତେବେଳେ ଭୀମସେନ ଦ୍ରୋଣଧନୁର୍ନିର୍ମୁକ୍ତ ଶତ ଶତ, ସହସ୍ର ସହସ୍ର ତୀକ୍ଷ୍ଣ ବାଣଜାଳଦ୍ୱାରା ହନ୍ୟମାନ ହେଲେ, ତେତେବେଳେ ସେ ରଥରୁ ଲମ୍ଫ ପ୍ରଦାନପୂର୍ବକ ନୟନ-ଯୁଗଳ ନିମୀଳିତ କରି କରଯୁଗଳ ବକ୍ଷଃସ୍ଥଳରେ ଅର୍ପଣ କରି ମସ୍ତକ ସ୍ଥିର-ପୂର୍ବକ ପଦବ୍ରଜରେ ଦ୍ରୋଣଙ୍କ ରଥସମୀପକୁ ମନୋତୁଲ୍ୟ ବେଗରେ ଗମନ

କଲେ । ୧୬ । ଯେପରି ବୃଷ ଅବଲୀଳାକ୍ରମେ ଜଳବର୍ଷଣ ପ୍ରତିଗ୍ରହ କରେ, ପୁରୁଷଶ୍ରେଷ୍ଠ ଭୀମ ମଧ୍ୟ ସେହିପରି ଦ୍ରୋଣନିକ୍ଷିପ୍ତ ଶରବର୍ଷଣକୁ ଅନାୟାସରେ ପ୍ରତିଗ୍ରହଣ କଲେ । ୧୭ । ମହାବଳଶାଳୀ ସେହି ବୀର ସମରରେ ଦ୍ରୋଣଙ୍କ ଶରସମୂହରେ ସମାହତ ହୋଇ ମଧ୍ୟ ତାହାଙ୍କ ସମୀପରେ ଉପସ୍ଥିତ ହୋଇ ରଥର ଈଶାକୁ ହସ୍ତରେ ଧାରଣ କରି ରଥକୁ ଦୂରରେ ନିକ୍ଷେପ କଲେ । ୧୮ । ହେ କୁରୁରାଜ ! ଦ୍ରୋଣ ଭୀମଙ୍କକର୍ତ୍ତୃକ ନିକ୍ଷିପ୍ତ ହୋଇ ଶୀଘ୍ର ଅନ୍ୟ ରଥରେ ଆରୋହଣକରି ବ୍ୟୂହଦ୍ୱାରକୁ ଗମନ କଲେ । ୧୯ । ଭୀମସେନ ବ୍ୟୂହଦ୍ୱାରରେ ସମାଗତ ଭଗ୍ନୋତ୍ସାହ ଗୁରୁଙ୍କୁ ସନ୍ଦର୍ଶନ କରି ମହାବେଗରେ ଗମନପୂର୍ବକ ରୋଷସହକାରେ ତାହାଙ୍କର ରଥର ଯୁଗକାଷ୍ଠକୁ ଗ୍ରହଣ କରି ପୁନଃ ପୁନଃ ତାହାଙ୍କୁ ଦୂରରେ ନିକ୍ଷେପ କଲେ ।

ହେ ମହାରାଜ ! ଭୀମସେନ ଏହିପରି ଅବଲୀଳାକ୍ରମେ ରଥସହିତ ତାହାଙ୍କୁ ଆଠଥର ଦୂରକୁ ନିକ୍ଷେପ କରି ନିମେଷମଧ୍ୟରେ ସ୍ୱକୀୟ ରଥରେ ପୁନର୍ବାର ଅବସ୍ଥିତ ହେଲେ । ଆପଣଙ୍କର ସୈନ୍ୟମାନେ ବିସ୍ମୟୋତ୍ଫୁଲ୍ଲ-ଲୋଚନରେ ଅବଲୋକନ କଲେ । ୨୨ । ଭୀମସେନଙ୍କ ସାରଥୀ ମଧ୍ୟ ତତ୍କ୍ଷଣାତ୍ ଅଶ୍ୱମାନଙ୍କୁ ଶୀଘ୍ର ଚାଳିତ କଲେ । ତାହା ଅଦ୍ଭୁତସଦୃଶ ହେଲା । ତତ୍ପରେ ସେ ସ୍ୱ ରଥରେ ଆରୋହଣ କରି ବେଗପୂର୍ବକ ଆପଣଙ୍କ ପୁତ୍ରଙ୍କ ସୈନ୍ୟମଧ୍ୟକୁ ଗମନ କଲେ । ୨୪ ।

ଯେପରି ଉଦ୍ଧତ ବାୟୁ ବୃକ୍ଷମାନଙ୍କୁ ଭଗ୍ନ କରେ ତଦ୍ରୂପ ସେ କ୍ଷତ୍ରିୟମାନଙ୍କୁ ମର୍ଦ୍ଦନ କରି ନଦୀବେଗଦ୍ୱାରା ନିର୍ମୂଳିତ ବୃକ୍ଷସଦୃଶ ସେନା-ମାନଙ୍କୁ ବିଦାରଣପୂର୍ବକ ଗମନ କଲେ । ୨୫ । ହୃଦିକପୁତ୍ର କୃତବର୍ମାଙ୍କ-ଦ୍ୱାରା ପରିରକ୍ଷିତ ଭୋଜସୈନ୍ୟ ମଧ୍ୟରେ ପ୍ରବିଷ୍ଟ ହୋଇ ସେମାନଙ୍କୁ ବହୁପ୍ରକାର ପ୍ରମଥିତ କରି ଗମନ କଲେ । ୨୬ । ଶାର୍ଦ୍ଦୂଳ ଯେପରି ଗୋଗଣକୁ ପୀଡ଼ିତ କରେ ସେହିପରି ତଳଶବ୍ଦଦ୍ୱାରା ସୈନ୍ୟମାନଙ୍କୁ ତ୍ରାସିତ କରି ପୀଡ଼ିତ କଲେ । ୨୭ । ସେହିପରି ଭୋଜସୈନ୍ୟ, କାମ୍ବୋଜସୈନ୍ୟ, ମ୍ଳେଚ୍ଛସୈନ୍ୟ ଓ ଅନ୍ୟାନ୍ୟ ଯୁଦ୍ଧବିଶାରଦ ବହୁସୈନ୍ୟଙ୍କୁ ଅତିକ୍ରମପୂର୍ବକ ମହାରଥୀ ସାତ୍ୟକିଙ୍କୁ ଅବଲୋକନ କରି ପରମଯତ୍ନସହକାରେ ଧନଞ୍ଜୟଙ୍କ ଦର୍ଶନାଭିଳାଷରେ ଆପଣଙ୍କପକ୍ଷୀୟ ଯୋଦ୍ଧାମାନଙ୍କୁ ସମରରେ ଅତିକ୍ରମ

କରି ବେଗରେ ରଥଗ୍ଭଳନାପୂର୍ବକ ଗମନ କଲେ । କପୂତ୍ତକ୍ଷଣ ପରେ ଜୟଦ୍ରଥବଧାର୍ଥ ସମରରେ ପ୍ରବୃତ୍ତ ମହାବଳ ପରାକ୍ରାନ୍ତ ମହାବୀର ଧନଞ୍ଜୟ ତାହାଙ୍କ ନେତ୍ରପଥରେ ପତିତ ହେଲେ । ୩୧ ।

ହେ ମହାରାଜ ! ଯେପରି ପ୍ରାବୃଟ୍ କାଳରେ ମେଘଗର୍ଜନ ଶବ୍ଦ ହୁଏ, ପୁରୁଷସିଂହ ଭୀମସେନ ଅର୍ଜୁନଙ୍କୁ ଅବଲୋକନ କରି ତଦ୍ରୂପ ମହାଶବ୍ଦ କଲେ । ୩୨ । କୃଷ୍ଣ ଓ ଅର୍ଜୁନ ଭୀମସେନଙ୍କର ସେହି ମହାଶବ୍ଦକୁ ଶ୍ରବଣ କଲେ । ୩୩ । ସେହି ବୀର ଦୁହେଁ ତେଜସ୍ୱୀ ଭୀମସେନଙ୍କ ନିନାଦ ଶ୍ରବଣ କରି ତାହାଙ୍କୁ ଦର୍ଶନ କରିବା ଅଭିଳାଷରେ ପୁନଃ ପୁନଃ ଶବ୍ଦ କଲେ । ୩୪ । ତଦନନ୍ତର ଭୀମସେନ ଓ ସାତ୍ୟକି ବୃଷଦ୍ୱୟ ସଦୃଶ ନିନାଦ କରୁ କରୁ ସେମାନଙ୍କ ସମୀପକୁ ଗମନ କଲେ । ୩୫ ।

ହେ ମହାରାଜ ! ଧର୍ମପୁତ୍ର ବିଭୁ ମହାରାଜ ଯୁଧିଷ୍ଠିର ଭୀମସେନଙ୍କର ଓ ଅର୍ଜୁନ, ସାତ୍ୟକି ଏବଂ କୃଷ୍ଣଙ୍କର ନିନାଦ ଶ୍ରବଣ କରି ପ୍ରୀତ ଓ ଶୋକଶୂନ୍ୟ ହୋଇ ଅର୍ଜୁନଙ୍କର ବିଜୟ ପ୍ରାର୍ଥନା କଲେ । ୩୭ । ଭୀମସେନ ସେହିପରି ନିନାଦ କରିବାକୁ ଆରମ୍ଭ କଲେ । ଧାର୍ମିକାଗ୍ରଗଣ୍ୟ ଧର୍ମପୁତ୍ର ମହାବାହୁ ଯୁଧିଷ୍ଠିର ତାହା ଶ୍ରବଣ କରି ହାସ୍ୟପୂର୍ବକ ହୃଦ୍‌ଗତ ଭାବ ଚିନ୍ତାକରି ମନେ ମନେ କହିଲେ, ହେ ଭୀମ ! ତୁମ୍ଭେ ଧନଞ୍ଜୟାଦିଙ୍କ ସମ୍ବାଦ ପ୍ରଦାନକରି ଗୁରୁଙ୍କ ଆଦେଶ ପାଳନ କଲ । ଅତଏବ ତୁମ୍ଭେ ଯୁଦ୍ଧରେ ଯେଉଁମାନଙ୍କର ଦ୍ୱେଷୀ ହେବ ସେମାନଙ୍କର ଜୟଲାଭ ହେବ ନାହିଁ । ସଂଗ୍ରାମରେ ଭାଗ୍ୟକ୍ରମେ ସତ୍ୟବିକ୍ରମ ବୀର ସାତ୍ୟକି କୁଶଳୀ ଅଛନ୍ତି, ଭାଗ୍ୟକ୍ରମେ କୃଷ୍ଣାର୍ଜୁନଙ୍କର ଗର୍ଜନଧ୍ୱନି ଶ୍ରବଣ କଲୁ । ୪୧ ।

ଯେ ସଂଗ୍ରାମରେ ଇନ୍ଦ୍ରଙ୍କୁ ପରାଜିତ କରି ଅଗ୍ନିଙ୍କୁ ପରିତୃପ୍ତ କରିଥିଲେ, ସେହି ଶତ୍ରୁହନ୍ତା ଫାଲ୍ଗୁନ ଭାଗ୍ୟକ୍ରମେ ଜୀବିତ ଅଛନ୍ତି । ୪୨ । ଯାହାଙ୍କ ବାହୁବଳକୁ ଆଶ୍ରୟ କରି ଆମ୍ଭେମାନେ ସମସ୍ତେ ଜୀବିତ ଅଛୁଁ, ସେହି ରିପୁବଳହନ୍ତା ଫାଲ୍ଗୁନ ଭାଗ୍ୟକ୍ରମେ ଜୀବିତ ଅଛନ୍ତି । ୪୩ । ଯେ ଏକମାତ୍ର ଶରାସନ ଗ୍ରହଣ କରି ଦେବଗଣଙ୍କର ମଧ୍ୟ ଦୁର୍ଦ୍ଧର୍ଷ ନିବାତ-କବଚକୁ ପରାଜିତ କରିଅଛନ୍ତି ସେହି ପାର୍ଥ ଭାଗ୍ୟକ୍ରମରେ ଜୀବିତ ଅଛନ୍ତି । ୪୪ । ଯେ ମତ୍ସ୍ୟନଗରରେ ଗୋଗ୍ରହଣନିମିତ୍ତ ଏକତ୍ର ମିଳିତ ସମୁଦାୟ

କୌରବମାନଙ୍କୁ ପରାଜୟ କରିଅଛନ୍ତି ସେହି ଫାଲ୍ଗୁନ ଭାଗ୍ୟକ୍ରମରେ ଜୀବିତ ଅଛନ୍ତି । ୪୫ । ଯେ ଭୁଜବଳଦ୍ୱାରା ଚତୁର୍ଦ୍ଦଶ ସହସ୍ର କାଳକେୟ ଅସୁର-ମାନଙ୍କୁ ମହାରଣରେ ନିହତ କରିଅଛନ୍ତି ସେହି ପାର୍ଥ ଭାଗ୍ୟକ୍ରମରେ ଜୀବିତ ଅଛନ୍ତି । ୪୬ । ଯେ ଦୁର୍ଯ୍ୟୋଧନ ନିମିତ୍ତ ବଳଶାଳୀ ଗନ୍ଧର୍ବରାଜ ଚିତ୍ରରଥଙ୍କୁ ଅସ୍ତ୍ରବଳରେ ରଣରେ ପରାସ୍ତ କରିଥିଲେ ସେହି ପାର୍ଥ ଭାଗ୍ୟକ୍ରମେରେ ଜୀବିତ ଅଛନ୍ତି । ୪୭ । ସେହି କିରୀଟମାଳୀ, ବଳବାନ୍, ଶ୍ୱେତାଶ୍ୱ, କୃଷ୍ଣସାରଥୀ, ଆମ୍ଭର ପ୍ରିୟଭ୍ରାତା ଅର୍ଜ୍ଜୁନ ଭାଗ୍ୟକ୍ରମେ ଜୀବିତ ଅଛନ୍ତି ।୪୮।

ଯେ ପୁତ୍ରଶୋକରେ କାତର ହୋଇ ଅତି ଦୁଷ୍କର କାର୍ଯ୍ୟ କରିବା ଅଭିଳାଷରେ ଜୟଦ୍ରଥକୁ ବଧକରିବାକୁ ଦୁଷ୍କର ପ୍ରତିଜ୍ଞା କରିଅଛନ୍ତି, ସେ କ'ଣ ଯୁଦ୍ଧରେ ଜୟଦ୍ରଥକୁ ବଧକରି ପାରିବେ ? କୃଷ୍ଣଙ୍କଦ୍ୱାରା ରକ୍ଷିତ ଅର୍ଜ୍ଜୁନ କ'ଣ ସୂର୍ଯ୍ୟାସ୍ତମଧ୍ୟରେ ପ୍ରତିଜ୍ଞାରୁ ସମୁତ୍ତୀର୍ଣ୍ଣ ହୋଇ ଆମ୍ଭ ନିକଟକୁ ଆଗମନ କରିବେ ? ଦୁର୍ଯ୍ୟୋଧନହିତନିରତ ସିନ୍ଧୁପତି ଅର୍ଜ୍ଜୁନଙ୍କକର୍ତ୍ତୃକ ନିପାତିତ ହୋଇ ସ୍ୱୀୟ ଶତ୍ରୁମାନଙ୍କୁ ଆନନ୍ଦିତ କରିବେ ? ରାଜା ଦୁର୍ଯ୍ୟୋଧନ କ'ଣ ସିନ୍ଧୁପତିଙ୍କୁ ଅର୍ଜ୍ଜୁନକର୍ତ୍ତୃକ ଯୁଦ୍ଧରେ ନିପତିତ କରିବା ନିରୀକ୍ଷଣ କରି ଆମ୍ଭମାନଙ୍କ ସହିତ ସନ୍ଧି ସ୍ଥାପନ କରିବେ ? ସମରରେ ଭ୍ରାତାମାନଙ୍କୁ ନିହତ ହେବାର ଦେଖି ମନ୍ଦବୁଦ୍ଧି ଦୁର୍ଯ୍ୟୋଧନ କ'ଣ ଆମ୍ଭମାନଙ୍କ ସହିତ ସନ୍ଧି କରିବେ ?୫୩। ଦୁର୍ବୁଦ୍ଧି ଦୁର୍ଯ୍ୟୋଧନ କ'ଣ ଅନ୍ୟାନ୍ୟ ଯୋଦ୍ଧାମାନଙ୍କୁ ନିପାତିତ ହେବାର ଅବଲୋକନ କରି ଅନୁତାପ କରିବେ ? ୫୪ । ଏକମାତ୍ର ଭୀଷ୍ମ ନିପାତଦ୍ୱାରା ଏହି ବୈରାନଳର କି ଶାନ୍ତି ହେବ ? ଅବଶିଷ୍ଟ ସୈନ୍ୟମାନଙ୍କର ଜୀବନରକ୍ଷାର୍ଥ ଦୁର୍ଯ୍ୟୋଧନ କ'ଣ ଆମ୍ଭମାନଙ୍କ ସହିତ ସନ୍ଧିସ୍ଥାପନ କରିବେ ?

ହେ ଭୂପାଳ ! ସେହି ଘୋରତର ଯୁଦ୍ଧ ସମୟରେ କୃପାପରତନ୍ତ୍ର ରାଜା ଯୁଧିଷ୍ଠିର ଏହିପରି ବହୁବିଧ ଚିନ୍ତାକଲେ । ୫୬ ।

# ୧୨୯ ଅଧ୍ୟାୟ

ଧୃତରାଷ୍ଟ୍ର କହିଲେ—ହେ ସଞ୍ଜୟ ! ମେଘସଦୃଶଗର୍ଜନକାରୀ ମହାବଳପରାକ୍ରାନ୍ତ ଭୀମସେନ ସେହିପରି ଶବ୍ଦ କରିବାକୁ ଆରମ୍ଭ କରନ୍ତେ କେଉଁ କେଉଁ ବୀରମାନେ ତାହାଙ୍କୁ ନିବାରଣ କଲେ ? ୧ । କ୍ରୁଦ୍ଧ ଭୀମ-ସେନଙ୍କ ସମ୍ମୁଖସମରରେ ଅବସ୍ଥାନ କରିବାକୁ ସମର୍ଥ ଏପରି କାହାରିକୁ ଆମ୍ଭେ ତ୍ରିଭୁବନରେ ମଧ୍ୟ ଦେଖୁନାହୁଁ । ୨ । ହେ ତାତ ସଞ୍ଜୟ ! ସେ ଯେତେବେଳେ ଯୁଦ୍ଧାଭିଳାଷରେ ସାକ୍ଷାତ୍ କୃତାନ୍ତତୁଲ୍ୟ ଗଦା ଉଦ୍ୟତ କରେ, ତେତେବେଳେ ସେହି ରଣସ୍ଥଳରେ ଅବସ୍ଥାନ କରିବାକୁ ସମର୍ଥ ଏପରି କାହାରିକୁ ଦେଖୁନାହୁଁ । ୩ । ଯେ ରଥଦ୍ୱାରା ରଥକୁ ଓ ହସ୍ତୀ ଦ୍ୱାରା ହସ୍ତୀକୁ ବିନାଶ କରେ, ପୁରନ୍ଦରସଦୃଶ ହେଲେ ମଧ୍ୟ କିଏ ତାହାଙ୍କ ଯୁଦ୍ଧରେ ଅବସ୍ଥାନ କରିପାରିବ ? ୪ ।

ଭୀମସେନ ସଂକ୍ରୁଦ୍ଧ ହୋଇ ଆମ୍ଭ ପୁତ୍ରମାନଙ୍କ ସଂହାରରେ ପ୍ରବୃତ୍ତ ହୁଅନ୍ତେ କେଉଁ କେଉଁ ବ୍ୟକ୍ତିମାନେ ଦୁର୍ଯ୍ୟୋଧନଙ୍କ ହିତରେ ନିଯୁକ୍ତ ହୋଇ ଭୀମଙ୍କ ଅଗ୍ରରେ ଅବସ୍ଥାନ କରିଥିଲେ ? ୫ । ଭୀମ ଦାବାଗ୍ନିରୂପ ହୋଇ ତୃଣୋପମ ଆମ୍ଭର ପୁତ୍ରମାନଙ୍କୁ ଦଗ୍ଧ କରିବାରେ ଉଦ୍ୟତ ହୁଅନ୍ତେ କେଉଁ କେଉଁ କ୍ଷତ୍ରିୟମାନେ ତାହାଙ୍କ ରଣମୁଖରେ ଅବସ୍ଥିତ ଥିଲେ ? ୬ । କାଳ ଯେପରି ସମୁଦାୟ ପ୍ରଜାମାନଙ୍କୁ ସଂହାର କରିବାକୁ ଉଦ୍ୟତ ହୁଏ, ତଦ୍ରୂପ ଭୀମକର୍ତ୍ତୃକ ଆମ୍ଭ ପୁତ୍ରମାନଙ୍କୁ ବଧ୍ୟମାନ ଅବଲୋକନ କରି କେଉଁ-ମାନେ ତାହାଙ୍କୁ ନିବାରଣ କରିବାରେ ପ୍ରବୃତ୍ତ ହୋଇଥିଲେ ? ୭ । ଭୀମ-ସେନଠାରୁ ଆମ୍ଭର ଯେପରି ଭୟ ହେଉଅଛି ଅର୍ଜ୍ଜୁନ, କୃଷ୍ଣ ବା ଧୃଷ୍ଟଦ୍ୟୁମ୍ନ-ଙ୍କଠାରୁ ଆମ୍ଭର ତାଦୃଶ ଭୟ ହେଉନାହିଁ । ୮ । ଭୀମ ପ୍ରଦୀପ୍ତଅନଳସଦୃଶ ହୋଇ ଆମ୍ଭ ପୁତ୍ରମାନଙ୍କୁ ଦଗ୍ଧ କରିବାର ଅଭିଳାଷ କରନ୍ତେ ଯେଉଁ ଶୂରମାନେ ତାହାର ସମ୍ମୁଖବର୍ତ୍ତୀ ହୋଇଥିଲେ ତାହା ତୁମ୍ଭେ ଆମ୍ଭ ନିକଟରେ କୀର୍ତ୍ତନ କର । ୯ ।

ସଞ୍ଜୟ କହିଲେ—ହେ ମହାରାଜ ! ମହାବଳପରାକ୍ରାନ୍ତ ଭୀମସେନ ସେହିପରି ଶବ୍ଦ କରନ୍ତେ, ସେହି ଶବ୍ଦ ଶ୍ରବଣ କରି କର୍ଣ୍ଣ ତାହାଙ୍କ ସମ୍ମୁଖକୁ

ଗମନ କଲେ । ୧୦ । ବଳଶାଳୀ କର୍ଣ୍ଣ ଅତ୍ୟନ୍ତ କ୍ରୋଧାବିଷ୍ଟ ହୋଇ ସ୍ୱକୀୟ ପ୍ରବଳ ଶରାସନ ଆସ୍ଫାଳନ କରି ବଳପ୍ରଦର୍ଶନପୂର୍ବକ ଧର୍ମଯୁଦ୍ଧ ଆକାଂକ୍ଷା କରି, ବୃକ୍ଷ ବାୟୁର ଗମନପଥକୁ ଅବରୋଧ କଲାପରି ଭୀମଙ୍କ ଗମନପଥକୁ ଅବରୋଧ କଲେ । କର୍ଣ୍ଣ ଯତ୍ନ ସହକାରେ ପୁରୋବର୍ତ୍ତୀ ହେବାର ଦେଖି ଭୀମ ମଧ୍ୟ କୋପାନ୍ୱିତ ହେଲେ ଓ ଶିଳାଶାଣିତ ବାଣସମୂହଦ୍ୱାରା ତାହାଙ୍କୁ ଦୃଢ଼ରୂପେ ବିଦ୍ଧ କଲେ । କର୍ଣ୍ଣ ଭୀମନିକ୍ଷିପ୍ତ ବାଣସମୂହକୁ ସ୍ୱୀକାର କରି ଶିତ୍ୱ ଭୀମସେନଙ୍କ ପ୍ରତି ବହୁଶର ନିକ୍ଷେପ କଲେ । ୧୩ ।

ସମରରେ କର୍ଣ୍ଣଙ୍କ ସହିତ ଭୀମସେନଙ୍କର ସମାଗମ ସନ୍ଦର୍ଶନ କରି ଓ ସେମାନଙ୍କର ତଳଶବ୍ଦ ଶ୍ରବଣ କରି ରଥୀ, ସାଦୀ ଓ ଅପରାପର ସମୁଦାୟ ଯୋଦ୍ଧାମାନଙ୍କର କଳେବର ପ୍ରକମ୍ପିତ ହେଲା ; ଭୀମସେନଙ୍କ ଭୀମନିନାଦ ଶ୍ରବଣ କରି କ୍ଷତ୍ରିୟଶ୍ରେଷ୍ଠମାନେ ଆକାଶ ଓ ପୃଥିବୀକୁ ଅବରୋଧ ମନେ କଲେ । ମହାତ୍ମା ଭୀମଙ୍କର ପୁନଃପୁନଃ ଘୋରତର ଗର୍ଜନଧ୍ୱନିଦ୍ୱାରା ସମସ୍ତ ଯୋଦ୍ଧାଙ୍କର ହସ୍ତରୁ ଶରମାନ ଭୂତଳରେ ପତିତ ହେଲା । ବାହନସବୁ ତ୍ରାସାନ୍ୱିତ ହୋଇ ମଳମୂତ୍ର ପରିତ୍ୟାଗ କଲେ ଓ ବିମନା ହେଲେ । ୧୮ ।

ଭୀମଙ୍କ ସହିତ କର୍ଣ୍ଣଙ୍କର ତୁମୁଳ ଯୁଦ୍ଧ ଆରମ୍ଭ ହୁଅନ୍ତେ ମହତ୍ ଓ ଭୟାନକ ନିମିତ୍ତମାନ ପ୍ରାଦୁର୍ଭୂତ ହେଲା, ଗୃଧ୍ର ଓ ବାୟସମାନେ ଅନ୍ତରୀକ୍ଷକୁ ସମାବୃତ କଲେ । ୧୯ । ତଦନନ୍ତର କର୍ଣ୍ଣ ବିଂଶତି ବାଣରେ ଭୀମଙ୍କୁ ପ୍ରପୀଡ଼ିତ କରି ତ୍ୱରାସହକାରେ ତାହାଙ୍କ ସାରଥିକୁ ପଞ୍ଚବାଣଦ୍ୱାରା ବିଦ୍ଧ କଲେ । ଆଶୁପ୍ରହାରୀ ମହାବଳପରାକ୍ରାନ୍ତ ଭୀମସେନ ହାସ୍ୟପୂର୍ବକ ଚତୁଃଷଷ୍ଟି ଶରଦ୍ୱାରା କର୍ଣ୍ଣଙ୍କୁ ବିଦ୍ଧ କଲେ । ଅନନ୍ତର ମହାଧନୁର୍ଦ୍ଧର କର୍ଣ୍ଣ ଚାରିଗୋଟି ଶର ଭୀମଙ୍କ ପ୍ରତି ନିକ୍ଷେପ କଲେ । ଭୀମସେନ ସ୍ୱୀୟ ହସ୍ତଲାଘବପ୍ରଦର୍ଶନ କରି ସେହି ନିକ୍ଷିପ୍ତ ଚାରିଗୋଟି ବାଣ ତାହାଙ୍କ ନିକଟକୁ ନ ଆସୁଣୁ ନତ-ପର୍ବ ଶରସମୂହଦ୍ୱାରା ସେସବୁକୁ ବହୁଧା ଛେଦନ କଲେ । ୨୩ । ଅନନ୍ତର କର୍ଣ୍ଣ ଅନେକ ବାଣଦ୍ୱାରା ଭୀମଙ୍କୁ ସମାଚ୍ଛନ୍ନ କଲେ । ଭୀମସେନ କର୍ଣ୍ଣଙ୍କ ବହୁବାଣଦ୍ୱାରା ବହୁପ୍ରକାର ସମାଚ୍ଛାଦିତ ହୋଇ କର୍ଣ୍ଣଙ୍କ ଶରାସନର ମୁଷ୍ଟି-ପ୍ରଦେଶକୁ ଛେଦନ କଲେ । ନତପର୍ବ ବାଣସମୂହଦ୍ୱାରା କର୍ଣ୍ଣଙ୍କୁ ବିଦ୍ଧ କଲେ । ୨୫ ।

ଭୀମକର୍ମା ମହାରଥ ସୂତପୁତ୍ର କର୍ଣ୍ଣ ଅନ୍ୟ ଗୋଟିଏ ଶରାସନରେ ଜ୍ୟା-ରୋପଣ କରି ଭୀମଙ୍କୁ ବିଦ୍ଧ କଲେ । ୨୬ । ଭୀମସେନ ଅତିଶୟ କ୍ରୁଦ୍ଧ ହୋଇ ବେଗଶୀଳ କର୍ଣ୍ଣଙ୍କ ବକ୍ଷଃସ୍ଥଳକୁ ତିନିଗୋଟି ନତପର୍ବ ଶରଦ୍ୱାରା ବିଦ୍ଧ କଲେ । ୨୭ । ବକ୍ଷଃସ୍ଥଳରେ ମଧ୍ୟସ୍ଥିତ ସେହି ତିନିଗୋଟି ଶରଦ୍ୱାରା କର୍ଣ୍ଣ ଉଚ୍ଚ ତ୍ରିଶୃଙ୍ଗ ପର୍ବତସଦୃଶ ଶୋଭମାନ ହେଲେ । ୨୮ । ଯେପରି ଧାତୁସ୍ରାବୀ ପର୍ବତରୁ ଗୈରିକଧାତୁସମୂହ ନିଃସୃତ ହୁଏ, ସେହିପରି ଭୀମ-ଶରବିଦ୍ଧ କର୍ଣ୍ଣଙ୍କ ଶରୀରରୁ ରୁଧିରଧାରା ନିର୍ଗତ ହେଲା । ସେ ଭୀମଙ୍କ ପ୍ରହାରରେ ପୀଡ଼ିତ ଓ କିଞ୍ଚିତ୍ ବିଚଳିତ ହୋଇ ଶରାସନକୁ ଆକର୍ଣ୍ଣ ଆକର୍ଷଣ କରି ଶରଦ୍ୱାରା ଭୀମଙ୍କୁ ବିଦ୍ଧ କଲେ । ତତ୍ପରେ ଶତ ଶତ ସହସ୍ର ସହସ୍ର ବାଣ-ସମୂହ ଭୀମଙ୍କ ପ୍ରତି ନିକ୍ଷେପ କଲେ । ପାଣ୍ଡୁନନ୍ଦନ ଭୀମ ଦୃଢ଼ଧନ୍ୱା କର୍ଣ୍ଣ-କର୍ତ୍ତୃକ ଶରଦ୍ୱାରା ନିତାନ୍ତ ପୀଡ଼ିତ ହୋଇ ସହସା ଗର୍ବପ୍ରକାଶପୂର୍ବକ କର୍ଣ୍ଣଙ୍କ ଶରାସନ ଛେଦନ କରି ଗୋଟିଏ ଭଲ୍ଲଦ୍ୱାରା ତାହାଙ୍କର ସାରଥିକୁ ଶମନ-ସଦନକୁ ପ୍ରେରଣ କଲେ । ତତ୍ପରେ ତାହାଙ୍କର ଚାରିଅଶ୍ୱକୁ ସଂହାର କଲେ । ୩୨ । ମହାରଥ କର୍ଣ୍ଣ ଅଶ୍ୱବିହୀନ ରଥରୁ ଶୀଘ୍ର ଲମ୍ଫପ୍ରଦାନପୂର୍ବକ ବୃଷସେନଙ୍କ ରଥରେ ଆରୋହଣ କଲେ । ୩୩ ।

ପ୍ରତାପଶାଳୀ ଭୀମସେନ ଏହିପରି କର୍ଣ୍ଣଙ୍କୁ ସମରରେ ପରାଜିତ କରି ମେଘଗମ୍ଭୀରଗର୍ଜନସଦୃଶ ମହା ନିନାଦ କଲେ । ୩୪ । ଭୀମସେନଙ୍କର ସେହି ଶବ୍ଦ ଶ୍ରବଣକରି ରାଜା ଯୁଧିଷ୍ଠିର ଅତିଶୟ ଆନନ୍ଦିତ ହେଲେ । କର୍ଣ୍ଣ ଭୀମସେନଙ୍କକର୍ତ୍ତୃକ ପରାଜିତ ହୋଇଅଛନ୍ତି ; ଏହା ଜାଣି ପାଣ୍ଡବ ସୈନ୍ୟମାନେ ଚତୁର୍ଦ୍ଦିଗରୁ ଶଙ୍ଖଧ୍ୱନି କଲେ । ଆପଣଙ୍କପକ୍ଷୀୟ ସୈନ୍ୟମାନେ ବିପକ୍ଷଙ୍କ ଶବ୍ଦ ଶ୍ରବଣକରି ଅତିଶୟ ଶବ୍ଦ କଲେ । ୩୬ । ରାଜା ଯୁଧିଷ୍ଠିର ଶଙ୍ଖ, ବାଣ ଓ ହର୍ଷନାଦଦ୍ୱାରା ହର୍ଷାନ୍ୱିତ ହୋଇ ସମୁଦାୟ ସୈନ୍ୟମାନଙ୍କୁ ନିନାଦ କରିବା ନିମିତ୍ତ ଆଜ୍ଞା ଦେଲେ । ୩୭ । ଅର୍ଜ୍ଜୁନ ଗାଣ୍ଡୀବଧନୁରେ ଟଙ୍କାର ଦେଲେ । କୃଷ୍ଣ ପାଞ୍ଚଜନ୍ୟ ଶଙ୍ଖବାଦନ କଲେ । ପରନ୍ତୁ ଭୀମସେନଙ୍କ ଗର୍ଜ୍ଜନଧ୍ୱନି ସମସ୍ତ ଧ୍ୱନିକୁ ଅତିକ୍ରମ କରି ସୈନ୍ୟମାନଙ୍କ ମଧ୍ୟରେ ଶ୍ରୁତ ହେଲା । ୩୮ ।

ତଦନନ୍ତର କର୍ଣ୍ଣ ଓ ଭୀମସେନ ପରସ୍ପର ପୃଥକରୂପେ ଶରଯୁଦ୍ଧଦ୍ୱାରା ପରସ୍ପରକୁ ପ୍ରହାର କଲେ । କର୍ଣ୍ଣ ମୃଦୁଭାବରେ ଓ ଭୀମ ଦୃଢ଼ଭାବରେ ଶରପ୍ରହାର କରିବାରେ ପ୍ରବୃତ୍ତ ହେଲେ । ୩୯ ।

---

# ୧୩୦ ଅଧ୍ୟାୟ

ସଞ୍ଜୟ କହିଲେ—ହେ ମହାରାଜ ! ସିନ୍ଧୁପତିଙ୍କ ବଧାର୍ଥ ଅର୍ଜ୍ଜୁନ, ସାତ୍ୟକି ଓ ଭୀମସେନ ଗମନ କରନ୍ତେ ସୈନ୍ୟମାନେ କ୍ଷୁଭିତ ହେଲେ । ତହୁଁ ଆପଣଙ୍କ ପୁତ୍ର ଦୁର୍ଯୋଧନ କର୍ତ୍ତବ୍ୟ ବିଷୟରେ ବହୁପ୍ରକାର ଚିନ୍ତା-କରି ତ୍ୱରିସହ ରଥାରୋହଣରେ ଏକାକୀ ଦ୍ରୋଣଙ୍କ ନିକଟକୁ ଯାତ୍ରା କଲେ । ଆପଣଙ୍କ ପୁତ୍ରଙ୍କ ରଥ ମନ ଓ ପବନସଦୃଶ ମହାବେଗରେ ଦ୍ରୋଣଙ୍କ ସମୀପରେ ଉପସ୍ଥିତ ହେଲା । ଆପଣଙ୍କ ପୁତ୍ର ଦୁର୍ଯୋଧନ କ୍ରୋଧରେ ଲୋହିତଲୋଚନ ହୋଇ ଦ୍ରୋଣଙ୍କୁ ଏହି ବାକ୍ୟ କହିଲେ । ହେ ବିପ୍ରଶ୍ରେଷ୍ଠ ! ଅର୍ଜ୍ଜୁନ ଭୀମସେନ ଓ ସାତ୍ୟକି ଏହି ତିନିଜଣ ଅପରାଜିତ ମହାରଥୀ ଅଟନ୍ତି । ଏମାନେ ଅତି ମହତ୍ ସୈନ୍ୟସମୂହକୁ ପରାଜିତ କରି ସିନ୍ଧୁରାଜଙ୍କ ସମୀପବର୍ତ୍ତୀ ହୋଇ ଅଛନ୍ତି ।

ଏମାନେ ସମସ୍ତେ ସେହି ସମରରେ ଯୁଦ୍ଧ କରୁଅଛନ୍ତି । ମହାବଳ-ପରାକ୍ରାନ୍ତ ଅର୍ଜ୍ଜୁନ ସମରରେ ଆପଣଙ୍କୁ ଅତିକ୍ରମ କରି ଅଛନ୍ତି ! କିନ୍ତୁ ସାତ୍ୟକି ଓ ଭୀମ କି ପ୍ରକାରେ ଆପଣଙ୍କୁ ଅତିକ୍ରମ କରି ଗମନ କଲେ ? ଇହଲୋକରେ ଆପଣଙ୍କର ଈଦୃଶ ପରାଜୟ ସମୁଦ୍ରଶୋଷଣତୁଲ୍ୟ ଅତି ଆଶ୍ଚର୍ଯ୍ୟର ବିଷୟ ହୋଇଅଛି । ୭ । ଲୋକେ କହୁଛନ୍ତି ଯେ, ଅର୍ଜ୍ଜୁନ ସାତ୍ୟକି ଓ ଭୀମସେନଙ୍କଠାରେ ଆପଣଙ୍କର ପରାଜୟ ହୋଇଅଛି । ଯୋଦ୍ଧାମାନେ ଆପଣଙ୍କ ସମ୍ବନ୍ଧରେ ଏହି ଅଶ୍ରଦ୍ଧେୟ ବାକ୍ୟ କହୁଅଛନ୍ତି ଯେ, ଧନୁର୍ବେଦପାରଦର୍ଶୀ ଦ୍ରୋଣ ସମରରେ କପରି ପରାଜିତ ହେଲେ ? ୯ । ଆପଣ ପୁରୁଷସିଂହ ଅଟନ୍ତି । ଆପଣଙ୍କୁ ଯେତେବେଳେ ସେହି ତିନି ମହାରଥୀ ଅତିକ୍ରମ କରିଅଛନ୍ତି, ତେତେବେଳେ ଆମ୍ଭର ଭାଗ୍ୟ ଅତି ମନ୍ଦବୋଲି ବୋଧ ହେଉଅଛି । ସୁତରାଂ ସଂଗ୍ରାମରେ ଆମ୍ଭର ଅବଶ୍ୟ

ମୃତ୍ୟୁ ହେବ । ୧୦ । ଯାହା ହେବାର ତାହା ହୋଇଅଛି । ବର୍ତ୍ତମାନ ଶେଷ ଚିନ୍ତା କରନ୍ତୁ । ଏହି ଉପସ୍ଥିତ କାର୍ଯ୍ୟରେ ଆପଣଙ୍କର ଯାହା ବକ୍ତବ୍ୟ ଥାଏ, ତାହା କହନ୍ତୁ ଏବଂ ସିନ୍ଧୁରାଜଙ୍କ ନିମିତ୍ତ ଯାହା କର୍ତ୍ତବ୍ୟ ତଦ୍ବିଷୟରେ ଆପଣ ସୁବିଧାନ କରନ୍ତୁ । ୧୨ ।

ଦ୍ରୋଣ କହିଲେ—ହେ ରାଜନ୍ ! ଚିନ୍ତାର ବିଷୟ ଅନେକ ହୋଇ-ଅଛି କିନ୍ତୁ ବର୍ତ୍ତମାନ ଯାହା କର୍ତ୍ତବ୍ୟ ତାହା ଶ୍ରବଣ କରନ୍ତୁ । ପାଣ୍ଡବମାନଙ୍କର ସେହି ତିନ ମହାରଥୀ ଯେତେବେଳେ ବ୍ୟୂହମଧ୍ୟରେ ପ୍ରବେଶ କରିଅଛନ୍ତି ତେତେବେଳେ ବ୍ୟୂହର ଅଗ୍ର ଓ ପଶ୍ଚାତ୍ ଏ ଉଭୟ ସ୍ଥଳରେ ଭୟର ସମ୍ଭାବନା ହୋଇଅଛି । ଏହି ଉଭୟସ୍ଥଳମଧ୍ୟରୁ ଯେଉଁଠାରେ କୃଷ୍ଣାର୍ଜ୍ଜୁନ ଅଛନ୍ତି ସେହି ସ୍ଥାନକୁ ଆମ୍ଭେ ଗୁରୁତର ବୋଲି ବିବେଚନା କରୁଅଛୁଁ । ୧୪ । କୁରୁସୈନ୍ୟମାନଙ୍କର ଅଗ୍ର ଓ ପଶ୍ଚାତ୍ ଭାଗ ବିପକ୍ଷଙ୍କକର୍ତ୍ତୃକ ଆକ୍ରାନ୍ତ ହେଲେହେଁ, ବର୍ତ୍ତମାନ ସିନ୍ଧୁରାଜଙ୍କୁ ରକ୍ଷାକରିବାହିଁ ପ୍ରଧାନ କାର୍ଯ୍ୟ ବୋଲି ବିବେଚନା କରୁଁ । କାରଣ ସିନ୍ଧୁପତି ଏକମାତ୍ର କୋପାବିଷ୍ଟ ଅର୍ଜ୍ଜୁନଙ୍କଠାରୁ ଭୀତ ହୋଇଅଛନ୍ତି; ତହିଁରେ ପୁଣି ବୀର ସାତ୍ୟକି ଓ ବୃକୋ-ଦର ଏ ଦୁହେଁ ତାହାଙ୍କ ନିକଟକୁ ଗମନ କରିଅଛନ୍ତି । ସୁତରାଂ ସିନ୍ଧୁରାଜଙ୍କୁ ରକ୍ଷାକରିବା ଆମ୍ଭମାନଙ୍କର ସର୍ବପ୍ରଥମ କର୍ତ୍ତବ୍ୟ । ୧୬ ।

ହେ ବତ୍ସ ! ଶକୁନି ବୁଦ୍ଧିରେ ସଭାମଧ୍ୟରେ ଯେଉଁ ଦ୍ୟୂତକ୍ରୀଡ଼ା ହୋଇ-ଥିଲା, ତାହା ଏହିପରି ଉପସ୍ଥିତ ହୋଇଅଛି । ଦ୍ୟୂତକ୍ରୀଡ଼ାରେ ଯେଉଁ ଜୟ ପରାଜୟ ହୁଏ, ତାହା ପ୍ରକୃତ ଜୟ ପରାଜୟ ନୁହେ । ଅଦ୍ୟ ଆମ୍ଭେମାନେ ପଣ ରଖି, ଦ୍ୟୂତକ୍ରୀଡ଼ାରେ ପ୍ରବୃତ୍ତ ହୋଇଅଛୁଁ । ଏହି ଦ୍ୟୂତକ୍ରୀଡ଼ାରେ ଯେଉଁ ଜୟ ପରାଜୟ ତାହା ପ୍ରକୃତ ଜୟ ପରାଜୟ ଅଟେ । ଶକୁନି କୁରୁସଭାରେ ଯେଉଁ ସମସ୍ତ ଭୟଙ୍କର ଅକ୍ଷ ଦେଇ ପଣସହିତ କ୍ରୀଡ଼ା କରିଥିଲେ ତାହା ଅକ୍ଷ ନୁହେ । ତାହା ଆପଣମାନଙ୍କର ତନୁଚ୍ଛେଦନକାରୀ ସୁଶାଣିତ ଭୟାନକ ଶରସମୂହ ଅଟେ ।

ହେ ମହାରାଜ ! ଅଦ୍ୟ ଏହି ଯୁଦ୍ଧକୁ ଦ୍ୟୂତକ୍ରୀଡ଼ା ବୋଲି ମନେ କରନ୍ତୁ । ଏହି ବହୁସଂଖ୍ୟକ ଓ ଯୁଦ୍ଧାର୍ଥ ଅବସ୍ଥିତ କୌରବସୈନ୍ୟମାନଙ୍କ

ସେହି କ୍ରୀଡ଼ାରେ ଦୁରୋଦର ବୋଲି ବୋଧ କରନ୍ତୁ । ଶରସମୂହକୁ ଅକ୍ଷ, ଓ ଜୟଦ୍ରଥକୁ ପଣ, ବୋଲି ଜ୍ଞାନ କରନ୍ତୁ । କାହିଁକି ନା ତାହାଙ୍କ ପ୍ରାଣରକ୍ଷା ବା ବିନାଶ ଏହାଦ୍ୱାରା ଏହି ଯୁଦ୍ଧରୂପ ଦ୍ୟୁତକ୍ରୀଡାରେ ଜୟ ପରାଜୟ ନିଶ୍ଚୟ କରାଯିବ । ଅତଏବ ବର୍ତ୍ତମାନ ନିଜ ନିଜ ଜୀବନପ୍ରତି ନିରପେକ୍ଷ ହୋଇ ସିନ୍ଧୁରାଜଙ୍କୁ ରକ୍ଷାକରିବା ନିମିତ୍ତ ଯଥାବିଧି ତତ୍ପର ହୁଅ ।୨୨। ହେ ବୀର ! ଯେଉଁସ୍ଥାନରେ ସେହି ମହାଧନୁର୍ଦ୍ଧରମାନେ ଯତ୍ନବାନ୍ ହୋଇ ଜୟଦ୍ରଥଙ୍କୁ ରକ୍ଷା କରୁଅଛନ୍ତି ଆପଣ ସେହିସ୍ଥାନକୁ ଗମନ କରି ସ୍ୱପକ୍ଷରକ୍ଷୀବର୍ଗଙ୍କୁ ରକ୍ଷା କରନ୍ତୁ । ଆପଣମାନଙ୍କ ସାହାଯ୍ୟାର୍ଥ ଆମ୍ଭେ ଅପରାପର ସୈନ୍ୟମାନଙ୍କୁ ସେଠାକୁ ପ୍ରେରଣ କରିବୁଁ । ଆମ୍ଭେ ଏହିଠାରେ ଅବସ୍ଥାନ କରି ପାଣ୍ଡବ, ସୃଞ୍ଜୟ ଓ ପାଞ୍ଚାଳମାନଙ୍କୁ ନିବାରଣ କରିବୁଁ । ୨୪ ।

ହେ ରାଜନ୍ ! ତଦନନ୍ତର ଦୁର୍ଯୋଧନ ଆଚାର୍ଯ୍ୟଙ୍କ ଆଦେଶାନୁସାରେ ଅତିଶୟ ଦୁଷ୍କର କର୍ମ କରିବାରେ ଉଦ୍ୟତ ହୋଇ ସତ୍ୱର ଅନୁଚର ବର୍ଗଙ୍କସହିତ ଯାତ୍ରା କଲେ । ୨୫ । ପୂର୍ବେ ଅର୍ଜୁନ ଯୁଦ୍ଧ ଇଚ୍ଛାକରି ଆପଣଙ୍କ ସୈନ୍ୟମଧ୍ୟରେ ପ୍ରବେଶ କରିବା ସମୟରେ ତାହାଙ୍କର ଚକ୍ରରକ୍ଷକ ପାଞ୍ଚାଳଦେଶୀୟ ଲଘୁହସ୍ତ ଉତ୍ତମୌଜା ଓ ଯୁଧାମନ୍ୟୁ ଏ ଦୁହିଁଙ୍କୁ କୃତବର୍ମା ନିବାରଣ କରିଥିଲେ । ବର୍ତ୍ତମାନ ସେ ଦୁହେଁ ସେନାର ବହିର୍ଭାଗଦେଇ ସବ୍ୟସାଚୀଙ୍କ ନିକଟକୁ ଗମନ କରିବାରେ ପ୍ରବୃତ୍ତ ହେଲେ । ବଳବାନ୍ ଯୁଦ୍ଧଦୁର୍ମଦ କୁରୁପତି ଦୁର୍ଯୋଧନ ସେ ଦୁହିଁଙ୍କୁ ସେନାର ପାର୍ଶ୍ୱଦେଶ ଭେଦକରି ମଧ୍ୟରେ ପ୍ରବେଶ କରିବାର ଅବଲୋକନ କରି ତ୍ୱରାସହକାରେ ସେ ଦୁହିଁଙ୍କ ସହିତ ଯୁଦ୍ଧାର୍ଥ ସଂଗତ ହେଲେ ।

ସମରରେ ବେଗବାନ୍ କ୍ଷତ୍ରିୟଶ୍ରେଷ୍ଠ ସେହି ମହାରଥୀ ଦୁଇଭ୍ରାତା ଶରାସନ ଉଦ୍ୟତ କରି ଦୁର୍ଯୋଧନଙ୍କ ପ୍ରତି ଧାବମାନ ହେଲେ । ୩୦ । ଯୁଧାମନ୍ୟୁ କଙ୍କପତ୍ରଯୁକ୍ତ ତିରିଶଗୋଟି ବାଣରେ କୁରୁପତିଙ୍କୁ ବିଦ୍ଧ କରି ବିଂଶଗୋଟି ଶରଦ୍ୱାରା ତାହାଙ୍କର ସାରଥିକୁ ଓ ଚାରିଗୋଟି ଶରରେ ତାହାଙ୍କ ଚାରିଅଶ୍ୱକୁ ବିଦ୍ଧ କଲେ । ୩୧ । ଆପଣଙ୍କ ପୁତ୍ର ଦୁର୍ଯୋଧନ ମଧ୍ୟ ଗୋଟିଏ ବାଣରେ ଯୁଧାମନ୍ୟୁଙ୍କ ଧ୍ୱଜ ଓ ଗୋଟିଏ ବାଣରେ ତାହାଙ୍କର ଶରାସନ ଛେଦନ କରି ଗୋଟିଏ ଭଲ୍ଲଦ୍ୱାରା ତାହାଙ୍କର ସାରଥିକୁ ରଥପାଢ଼ରୁ

ନିପାତିତ କଲେ । ତତ୍ପରେ ଚାରିଗୋଟି ସୁତୀକ୍ଷ୍ଣ ଶରଦ୍ୱାରା ତାହାଙ୍କର ଅଶ୍ୱଚତୁଷ୍ଟୟକୁ ବଧ କଲେ । ୩୩ । ଅନନ୍ତର ଯୁଧାମନ୍ୟୁ ଅତିଶୟ କୁପିତ ହୋଇ ଅତି ବୃହତ୍ ବିଂଶତିଗୋଟି ବାଣଗ୍ରହଣପୂର୍ବକ ଆପଣଙ୍କ ପୁତ୍ରଙ୍କର ହୃଦୟପ୍ରଦେଶକୁ ନିକ୍ଷେପ କଲେ ; ଏବଂ ଉତ୍ତମୌଜା ମଧ୍ୟ ସଂକ୍ରୁଦ୍ଧ ହୋଇ ହେମବିଭୂଷିତ ଶରସମୂହଦ୍ୱାରା ତାହାଙ୍କର ସାରଥିକୁ ବଧ କରି ଶମନ-ଭବନକୁ ପ୍ରେରଣ କଲେ । ୩୪ ।

ହେ ରାଜେନ୍ଦ୍ର ! ଦୁର୍ଯ୍ୟୋଧନ ମଧ୍ୟ ପାଞ୍ଚାଳନନ୍ଦନ ଉତ୍ତମୌଜାଙ୍କର ଚାରିଅଶ୍ୱକୁ ଓ ପୃଷ୍ଠରକ୍ଷକ ଦୁଇଜଣଙ୍କୁ ନିପାତିତ କଲେ । ୩୬ । ରଣ-ସ୍ଥଳରେ ଉତ୍ତମୌଜାଙ୍କର ଅଶ୍ୱ ଓ ସାରଥି ହତ ହୁଅନ୍ତେ ସେ ସତ୍ୱର ହୋଇ ଭ୍ରାତା ଯୁଧାମନ୍ୟୁଙ୍କର ରଥରେ ଆରୋହଣ କଲେ । ୩୭ । ସେ ଭ୍ରାତୃରଥରେ ଆରୋହଣ କରି ବହୁ ଶରନିକରରେ କୁରୁରାଜଙ୍କର ଅଶ୍ୱ-ମାନଙ୍କୁ ପ୍ରହାର କଲେ । ଅଶ୍ୱମାନେ ଅବିଳମ୍ବେ ଗତାସୁ ହୋଇ ଭୂତଳରେ ପତିତ ହେଲେ । ୩୮ । ଏହି ସମୟରେ ଯୁଧାମନ୍ୟୁ ମହାସ୍ତ୍ରବଳରେ ସତ୍ୱର କୁରୁରାଜାଙ୍କର ତୂଣୀର ଓ ଶରାସନ ଛେଦନ କଲେ । ୩୯ । ଆପଣଙ୍କ ନରଶ୍ରେଷ୍ଠ ପୁତ୍ର ସେହି ଅଶ୍ୱ ଓ ସାରଥୀହୀନ ରଥରୁ ଲମ୍ଫପ୍ରଦାନପୂର୍ବକ ଗଦା ଗ୍ରହଣ କରି ପାଞ୍ଚାଳନନ୍ଦନଦ୍ୱୟଙ୍କ ପ୍ରତି ଧାବମାନ ହେଲେ । ୪୦ ।

ଯୁଧାମନ୍ୟୁ ଉତ୍ତମୌଜା ପରପୁରବିଜୟୀ କୁପିତ କୁରୁପତିଙ୍କୁ ଗଦାହସ୍ତ ହୋଇ ଆଗମନ କରିବାର ଅବଲୋକନ କରି ରଥମାଡ଼ରୁ ଲମ୍ଫପ୍ରଦାନ-ପୂର୍ବକ ଭୂତଳରେ ଅବସ୍ଥିତ ହେଲେ । ତଦନନ୍ତର ବଳବାନ୍ କୁରୁରାଜ ସ୍ୱର୍ଣ୍ଣଚିତ୍ରିତାଙ୍ଗ ସେହି ରଥପ୍ରବରକୁ ଗଦାଘାତରେ ଅଶ୍ୱ, ସାରଥୀ ଓ ଧ୍ୱଜ-ସହିତ ଚୂର୍ଣ୍ଣ କଲେ ।୪୨। ଆପଣଙ୍କ ପୁତ୍ର ସ୍ୱୟଂ ଅଶ୍ୱ ଓ ରଥବିହୀନ ହୋଇ ମଧ୍ୟ ପାଞ୍ଚାଳ କୁମାରଙ୍କ ରଥ ଏହିପ୍ରକାର ଚୂର୍ଣ୍ଣ କରି ସତ୍ୱର ମହାରାଜାଙ୍କ ରଥରେ ଆରୋହଣ କଲେ । ସେହି ପାଞ୍ଚାଳପ୍ରଧାନ ମହାବଳପରାକ୍ରମ ରାଜ-କୁମାର ଦୁହେଁ ଅନ୍ୟରଥରେ ଆରୋହଣ କରି ଧନଞ୍ଜୟଙ୍କ ନିକଟକୁ ଗମନ କଲେ । ୪୪ ।

---

# ୧୩୧ ଅଧ୍ୟାୟ

ସଞ୍ଜୟ କହିଲେ—ହେ ମହାରାଜ ! ତାଦୃଶ ଲୋମହର୍ଷଣ ଯୁଦ୍ଧ ଉପସ୍ଥିତ ହୁଅନ୍ତେ ଓ ସେହି ସଂଗ୍ରାମରେ ସୈନିକମାନେ ଦଳ ଦଳ ହୋଇ ନିପୀଡ଼ିତ ଓ ବ୍ୟାକୁଳିତ ହୁଅନ୍ତେ ବନମଧ୍ୟରେ ଗୋଟିଏ ମତ୍ତଗଜ ଅପର ଗୋଟିଏ ମତ୍ତଗଜ ପ୍ରତି ଧାବମାନ ହେଲାପ୍ରାୟ ରାଧାନନ୍ଦନ କର୍ଣ୍ଣ ଭୀମଙ୍କ ପ୍ରତି ଯୁଦ୍ଧାର୍ଥ ଧାବମାନ ହେଲେ । ୨ ।

ଧୃତରାଷ୍ଟ୍ର କହିଲେ—ହେ ସଞ୍ଜୟ ! ମହାବଳ କର୍ଣ୍ଣ ଓ ଭୀମ ଉଭୟେ ଯୁଦ୍ଧାର୍ଥ ମିଳିତ ହୋଇ ଅର୍ଜୁନଙ୍କ ରଥ ସମୀପରେ କପରି ଯୁଦ୍ଧ କଲେ ତାହା ଆମ୍ଭ ନିକଟରେ କୀର୍ତ୍ତନ କର । ୩ । ପୂର୍ବରେ ଭୀମସେନଙ୍କ-କର୍ତ୍ତୃକ କର୍ଣ୍ଣ ଯୁଦ୍ଧରେ ପରାଜିତ ହୋଇଥିଲେ । ସେ ମହାରଥ ପୁନର୍ବାର କପରି ଭୀମଙ୍କ ନିକଟକୁ ଗମନକଲେ ? ୪ । ଯେଉଁ ମହାରଥ କର୍ଣ୍ଣ ପୃଥିବୀସ୍ଥ ମହାରଥୀମାନଙ୍କ ମଧ୍ୟରେ ଶ୍ରେଷ୍ଠବୋଲି ବିଖ୍ୟାତ ସେହି ସୂତ-ତନୟ ସମୀପକୁ ଭୀମ ଅବା ଯୁଦ୍ଧାର୍ଥ କପରି ପ୍ରତ୍ୟୁଦ୍‌ଗତ ହେଲେ ? ୫ । ଧର୍ମନନ୍ଦନ ଯୁଧିଷ୍ଠିରଙ୍କର ଭୀଷ୍ମ, ଦ୍ରୋଣ ଓ ଧନୁର୍ଦ୍ଧର କର୍ଣ୍ଣଙ୍କ ବ୍ୟତୀତ ଅନ୍ୟ କାହାରି-ଠାରୁ ଭୟ ହୁଅଇ ନାହିଁ । ୬ । ହେ ମହାବାହୋ ! ଯେଉଁ ମହାତ୍ମା କର୍ଣ୍ଣଙ୍କ ବଳବୀର୍ଯ୍ୟ ଚିନ୍ତାକରି ଭୟରେ ଯୁଧିଷ୍ଠିର ବହୁବର୍ଷାବଧି ସୁଖରେ ନିଦ୍ରାପ୍ରାପ୍ତ ହୁଅନ୍ତିନାହିଁ, ସେହି ସୂତପୁତ୍ରଙ୍କ ସହିତ ଭୀମ କପରି ସଂଗ୍ରାମରେ ଯୁଦ୍ଧ କଲେ ? ୭ । ହେ ସଞ୍ଜୟ ! ଯେଉଁ କର୍ଣ୍ଣ ବ୍ରହ୍ମନିଷ୍ଠ ବୀର୍ଯ୍ୟସମ୍ପନ୍ନ ସମରରେ ଅନିବର୍ତ୍ତୀ ଓ ସମସ୍ତ ଯୋଦ୍ଧାମାନଙ୍କ ଭିତରେ ଶ୍ରେଷ୍ଠ, ତାହାଙ୍କ ସହିତ ଭୀମ କପରି ଯୁଦ୍ଧ କଲେ ? ୮ । ସେହି ବୀର ବୃକୋଦର ଓ କର୍ଣ୍ଣ ଦୁହେଁ ଅର୍ଜୁନଙ୍କ ରଥ ସମୀପରେ କପରି ଯୁଦ୍ଧ କରିଥିଲେ ତାହା ବର୍ଣ୍ଣନା କର । ୯ । ପାଣ୍ଡବ-ମାନଙ୍କ ସହିତ ଆପଣାର ଭ୍ରାତୃଭାବ ଥିବାର କଥା କର୍ଣ୍ଣ ପୂର୍ବରୁ କୁନ୍ତୀଙ୍କ-ଠାରୁ ଅବଗତ ହୋଇଥିଲେ । ସେ ନିଜେ କୃପାଳୁ ଅଟନ୍ତି । ଅତଏବ ସେ ବର୍ତ୍ତମାନ କୁନ୍ତୀଙ୍କ ବାକ୍ୟ ସ୍ମରଣକରି ଭୀମଙ୍କ ସହିତ କପରି ଯୁଦ୍ଧ କଲେ ? କର୍ଣ୍ଣଙ୍କ ପୂର୍ବକୃତଶତ୍ରୁତା ସ୍ମରଣକରି ମହାବୀର ଭୀମ ସଂଗ୍ରାମରେ ତାହାଙ୍କ ସହିତ କପରି ଯୁଦ୍ଧ କରିଥିଲେ ? ୧୧ । ହେ ସୂତ ! ଆମ୍ଭର ମନ୍ଦମତି ପୁତ୍ର

ଦୁର୍ଯ୍ୟୋଧନ ନିରନ୍ତର ଏହିପରି ଆଶା କରିଥିଲେ ଯେ କର୍ଣ୍ଣ ସମରରେ ଏକାକୀ ମିଳିତ ସମସ୍ତ ପାଣ୍ଡବଙ୍କୁ ପରାଜୟ କରିବେ । ୧୨ । ଆମ୍ଭ ପୁତ୍ରର ଯୁଦ୍ଧଜୟାଶା ଯେଉଁ କର୍ଣ୍ଣଙ୍କସହିତ ସମାବେଶିତ ହୋଇଅଛି, ସେହି କର୍ଣ୍ଣ ଭୀମକର୍ମା ଭୀମସେନଙ୍କ ସହିତ କିପରି ଯୁଦ୍ଧକଲେ ? ୧୩ । ହେ ବତ୍ସ ! ଯାହାଙ୍କୁ ଆଶ୍ରୟକରି ଆମ୍ଭର ପୁତ୍ର ମହାରଥିମାନଙ୍କ ସହିତ ଶତ୍ରୁତା ସୃଷ୍ଟି କରିଅଛି, ସେହି ସୂତତନୟ ସହିତ ଭୀମ କିପରି ଯୁଦ୍ଧ କଲେ ? ୧୪ ।

ସୂତ-ପୁତ୍ରଙ୍କ ମନ୍ତ୍ରଣାଦ୍ୱାରା ଦୁର୍ଯ୍ୟୋଧନ ଯେଉଁସବୁ ଅନିଷ୍ଟ କରିଅଛି ସେ ସମସ୍ତ ସ୍ମରଣକରି ଭୀମ କର୍ଣ୍ଣଙ୍କସହିତ କିପରି ଯୁଦ୍ଧକଲେ ? ୧୫ । ଯେଉଁ ବୀର୍ଯ୍ୟବାନ୍ ପୁରୁଷ ଏକରଥରେ ଏହିସମସ୍ତ ବସୁନ୍ଧରାକୁ ଜୟ କରିଥିଲେ ସେହି ସୂତପୁତ୍ରଙ୍କ ସହିତ ଭୀମସେନ କିପରି ଯୁଦ୍ଧ କଲେ ? ୧୬ । ଯେ କୁଣ୍ଡଳ ଓ କବଚସହିତ ପୃଥିବୀରେ ଜାତ ହୋଇଥିଲେ, ତାଦୃଶ ସୂତପୁତ୍ରଙ୍କ ସହିତ ଭୀମସେନ କିପରି ଯୁଦ୍ଧ କଲେ ? ୧୭ । ହେ ସଞ୍ଜୟ ! ସେହି ଦୁଇବୀରଙ୍କ ମଧ୍ୟରେ ଯେ ପ୍ରକାର ଯୁଦ୍ଧ ହୋଇଥିଲା ଓ ସେ ଦୁହିଁଙ୍କ ମଧ୍ୟରୁ କିଏ ଜୟୀ ହେଲା ତାହା ତୁମ୍ଭେ ଆମ୍ଭ ନିକଟରେ କୀର୍ତ୍ତନ କର । ଯେହେତୁ ତୁମ୍ଭେ ବାକ୍ୟକୁଶଳ ଅଟ । ୧୮ ।

ସଞ୍ଜୟ କହିଲେ—ହେ ମହାରାଜ ! ଭୀମସେନ ରଥିଶ୍ରେଷ୍ଠ ରାଧା-ତନୟଙ୍କୁ ପରିତ୍ୟାଗ କରି ଯେଉଁ ସ୍ଥାନରେ କୃଷ୍ଣ ଓ ଧନଞ୍ଜୟ ବୀରଦ୍ୱୟ ଅବସ୍ଥାନ କରୁଥିଲେ ସେହିସ୍ଥାନକୁ ଯିବାନିମିତ୍ତ ଇଚ୍ଛାକଲେ । ୧୯ । ସେ ଗମନ କରିବା ସମୟରେ ରାଧେୟ କର୍ଣ୍ଣ ତାହାଙ୍କ ପ୍ରତି ଧାବମାନ ହୋଇ ପର୍ବତରେ ମେଘ ବୃଷ୍ଟି କଲାପ୍ରାୟ କଙ୍କପତ୍ରଯୁକ୍ତ ବାଣସମୂହ ତାହାଙ୍କ ଉପରେ ବର୍ଷଣ କଲେ । ୨୦ । ପୁଣି ସେ ପ୍ରଫୁଲ୍ଲପଙ୍କଜବଦନରେ ହାସ୍ୟ କରୁ କରୁ ଭୀମଙ୍କୁ ସମରରେ ଆହ୍ୱାନକରି କହିଲେ । ୨୧ । ହେ ଭୀମ ! ତୁମ୍ଭେ ଯେ ସମରରେ ପୃଷ୍ଠପ୍ରଦର୍ଶନ କରିବ ଏହା ତୁମ୍ଭ ଶତ୍ରୁମାନେ ସ୍ୱପ୍ନରେ ସୁଦ୍ଧା ଚିନ୍ତାକରି ନାହାନ୍ତି । ତେବେ କି ହେତୁରୁ ତୁମ୍ଭେ ଧନଞ୍ଜୟଙ୍କର ଦର୍ଶନେଚ୍ଛୁ ହୋଇ ଆମ୍ଭମାନଙ୍କୁ ପୃଷ୍ଠ ଦର୍ଶନ କରାଉଅଛ ? ୨୨ ।

ହେ ପାଣ୍ଡବନନ୍ଦନ ! ତୁମ୍ଭେ କୁନ୍ତୀଙ୍କ ପୁତ୍ର । ଏହା ତୁମ୍ଭର ଉପଯୁକ୍ତ କାର୍ଯ୍ୟ ହେଉନାହିଁ । ଅତଏବ ତୁମ୍ଭେ ଆମ୍ଭ ମୁଖରେ ଅବସ୍ଥାନ

କରି ଶରଜାଳଦ୍ୱାରା ଆମ୍ଭଙ୍କୁ ସମାକୀର୍ଣ୍ଣ କର । ୨୩ । ଭୀମସେନ କର୍ଣ୍ଣଙ୍କର ସେହି ଆହ୍ୱାନକୁ ସହନ କରି ନ ପାରି ଅର୍ଦ୍ଧମଣ୍ଡଳାକାରରେ ପରିଭ୍ରମଣ ପୂର୍ବକ ଶରସମୂହ ନିକ୍ଷେପଦ୍ୱାରା ତାହାଙ୍କ ସହିତ ଯୁଦ୍ଧ କଲେ । ୨୪ । ସର୍ବଶସ୍ତ୍ରଧାରୀପ୍ରବର ମହାଯଶସ୍ୱୀ ଭୀମସେନ କର୍ଣ୍ଣଙ୍କୁ ଦ୍ୱୈରଥ ଯୁଦ୍ଧନିମିତ୍ତ ସଜ୍ଜିତ ହୋଇ ଆସିବାର ଦେଖି ତାହାଙ୍କପ୍ରତି ଅବକ୍ରଗାମୀ ବାଣସମୂହ ବର୍ଷଣ କରିବାରେ ପ୍ରବୃତ୍ତ ହେଲେ । ୨୫ । ମହାବଳବାନ୍ ଭୀମ କର୍ଣ୍ଣଙ୍କୁ ସଂହାର କରି ବିବାଦ ଶେଷ କରିବା ଅଭିଳାଷରେ ତାହାଙ୍କୁ ବାଣସମୂହଦ୍ୱାରା ନିପୀଡ଼ିତ କଲେ । ଶତ୍ରୁତାପନ କ୍ରୋଧପରାୟଣ ପାଣ୍ଡୁନନ୍ଦନ କୁପିତ ହୋଇ ସମରରେ ସୂତ-ପୁତ୍ରଙ୍କୁ ଓ ଅନ୍ୟାନ୍ୟ ସୈନ୍ୟମାନଙ୍କୁ ବିନାଶ କରିବା ମାନସରେ ନାନାପ୍ରକାର ଅସ୍ତ୍ରମାନ ବର୍ଷଣ କଲେ । ୨୭ । ମହାଯଶସ୍ୱୀ କର୍ଣ୍ଣ ଅସ୍ତ୍ରମାୟାପ୍ରଭାବରେ ମତ୍ତମାତଙ୍ଗସଦୃଶଗମନଶୀଳ ଭୀମସେନଙ୍କ ଶସ୍ତ୍ରବୃଷ୍ଟିକୁ ସଂହାର କଲେ । ୨୮ ।

ହେ ମହାରାଜ ! ମହାଧନୁର୍ଦ୍ଧର ସୂତପୁତ୍ର ଧନୁର୍ବିଦ୍ୟାରେ ଯଥୋଚିତ ପ୍ରତିଷ୍ଠାଲାଭ କରିଥିବାରୁ ସମରରେ ଆଚାର୍ଯ୍ୟଙ୍କ ସଦୃଶ ବିଚରଣ କଲେ । ୨୯ । କୋପନସ୍ୱଭାବ ରାଧାନନ୍ଦନ ଭୀମସେନଙ୍କୁ ସଂରମ୍ଭ ସହ ଯୁଦ୍ଧ କରିବାର ଅବଲୋକନ କରି ହସିଲପ୍ରାୟ ହୋଇ ତାହାଙ୍କ ଅଭିମୁଖକୁ ଆଗମନ କଲେ । ୩୦ । ସେହି ରଣାଙ୍ଗନର ଚତୁର୍ଦ୍ଦିଗରେ ସମରରେ ପ୍ରବୃତ୍ତ ହୋଇଥିବା ସୈନ୍ୟମାନଙ୍କ ସମକ୍ଷରେ କର୍ଣ୍ଣଙ୍କର ତଦ୍ରୂପ ଅବଜ୍ଞା କୁନ୍ତୀ-ନନ୍ଦନ ଭୀମଙ୍କ ପକ୍ଷରେ ଅସହ୍ୟ ହେଲା । ବଳଶାଳୀ ଭୀମ କ୍ରୁଦ୍ଧ ହୋଇ ଅଙ୍କୁଶଦ୍ୱାରା ଗଜକୁ ନିପୀଡ଼ିତ କଲପ୍ରାୟ ବତ୍ସଦନ୍ତ ନାମକ ଅସ୍ତ୍ରଦ୍ୱାରା କର୍ଣ୍ଣଙ୍କର ହୃଦୟକୁ ବିଦ୍ଧ କଲେ । ତତ୍ପରେ ଶାଣିତ ସୁପୁଙ୍ଖଯୁକ୍ତ ଏକବିଂଶତି ଶର ନିକ୍ଷେପ କରି କର୍ଣ୍ଣଙ୍କର ବିଚିତ୍ରବର୍ମ୍ମକୁ ବିଦାରଣ କଲେ । ୩୩ । କର୍ଣ୍ଣ ମଧ୍ୟ ପାଞ୍ଚ ପାଞ୍ଚ ଗୋଟି ବାଣଦ୍ୱାରା ଭୀମସେନଙ୍କର ସୁବର୍ଣ୍ଣଜାଲ-ବିଭୂଷିତ ପବନତୁଲ୍ୟବେଗଶୀଳ ଅଶ୍ୱମାନଙ୍କୁ ବିଦ୍ଧ କଲେ । ୩୪ । ତଦନନ୍ତର କର୍ଣ୍ଣପ୍ରେରିତ ଶରଜାଲଦ୍ୱାରା ଭୀମସେନଙ୍କ ରଥ ନିମେଷାର୍ଦ୍ଧ ମଧ୍ୟରେ ଅଦୃଶ୍ୟ ହୋଇ କେବଳ ବାଣମୟ ବୋଧ ହେଲା । ୩୫ । କର୍ଣ୍ଣ-ଧନୁର୍ବିମୁକ୍ତ ବାଣସମୂହଦ୍ୱାରା ରଥଧ୍ୱଜ ଓ ସାରଥି ସହିତ ପାଣ୍ଡୁନନ୍ଦନ ଭୀମସେନ ସମାଚ୍ଛନ୍ନ ହେଲେ । ୩୬ । ସୂତ-ପୁତ୍ର କ୍ରୁଦ୍ଧ ହୋଇ ଚତୁଷଷ୍ଟି-

ଶାୟକଦ୍ୱାରା ଭୀମସେନଙ୍କ ସୁଦୃଢ଼ କବଚ ଭେଦ କଲେ ଓ ତାହାଙ୍କୁ ମର୍ମଭେଦୀ ନାରାଚସମୂହଦ୍ୱାରା ବିଦ୍ଧ କଲେ । ତତ୍ପରେ ବୃକୋଦର କର୍ଣ୍ଣଙ୍କ କାର୍ମୁକନିଃସୃତ ମହାବେଗବାନ୍ ବାଣସମୂହକୁ ଲକ୍ଷ୍ୟ ନ କରି ଅସମ୍ଭ୍ରାନ୍ତ ଚିତ୍ତରେ ତାହାଙ୍କ ସହିତ ଯୁଦ୍ଧରେ ମିଳିତ ହେଲେ । ୩୮ ।

ହେ ମହାରାଜ ! ବୃକୋଦର କର୍ଣ୍ଣ-ଶରାସନବିମୁକ୍ତ ଆଶୀବିଷ-ସଦୃଶ ଶରସମୂହଦ୍ୱାରା ଆଘାତପ୍ରାପ୍ତ ହୋଇ ମଧ କିଞ୍ଚିନ୍ମାତ୍ର ବ୍ୟଥିତ ହେଲେ ନାହିଁ । ୩୯ । ସେ ବିକ୍ରମ ସହିତ ପ୍ରଖରଶାଣିତ ଦ୍ୱାତ୍ରିଂଶତ ଭଲ୍ଲଦ୍ୱାରା କର୍ଣ୍ଣଙ୍କୁ ବିଦ୍ଧ କଲେ । ୪୦ । କର୍ଣ୍ଣ ମଧ ଅବଲୀଳାକ୍ରମେ ସିନ୍ଧୁରାଜବଧୈଷୀ ମହାବାହୁ ଭୀମସେନଙ୍କୁ ଶରଜାଲଦ୍ୱାରା ଅତ୍ୟନ୍ତ ସମାକୀର୍ଣ୍ଣ କଲେ । ୪୧ । ପରନ୍ତୁ ରାଧାନନ୍ଦନ ମୃଦୁତାପୂର୍ବକ ଓ ଭୀମସେନ ପୂର୍ବଶତ୍ରୁତା ସ୍ମରଣ କରି କ୍ରୋଧସହକାରେ ଯୁଦ୍ଧ କଲେ । ୪୨ । ଶତ୍ରୁବିଜୟୀ ଭୀମସେନ ତାହାଙ୍କର ତଦ୍ରୂପ ଅବଜ୍ଞା ସହନକରି ନ ପାରି କୁପିତ ଓ ସତ୍ୱର ହୋଇ ତାହାଙ୍କ ପ୍ରତି ଶରବର୍ଷଣ କଲେ । ୪୩ । ସେହିସମସ୍ତ ଉପୂଙ୍କର ଶରସମୂହ ଭୀମଙ୍କକର୍ତ୍ତୃକ ନିକ୍ଷିପ୍ତ ହୋଇ ଶବ୍ଦାୟମାନ ବିହଙ୍ଗକୁଳସଦୃଶ ରଣଭୂମିର ଚତୁର୍ଦ୍ଦିଗରେ ନିପତିତ ହେଲା । ୪୪ ।

ହେ ମହାରାଜ ! ସେହି ସୁବର୍ଣ୍ଣପୁଙ୍ଖବିଶିଷ୍ଟ ଶରସମୂହ ଭୀମଙ୍କ ଶରାସନରୁ ବିମୁକ୍ତ ହୋଇ ବ୍ୟାଘ୍ର କ୍ଷୁଦ୍ର କୁରଙ୍ଗପ୍ରତି ବେଗରେ ଆପତିତ ହେଲପ୍ରାୟ କର୍ଣ୍ଣଙ୍କ ଉପରେ ପତିତ ହେଲା । ୪୫ । ରଥିଶ୍ରେଷ୍ଠ କର୍ଣ୍ଣ ସମରର ଚତୁର୍ଦ୍ଦିଗରେ ଶସ୍ତ୍ରଜାଲଦ୍ୱାରା ସମାଚ୍ଛନ୍ନ ହୋଇ ଭୀଷଣ ବାଣସକଳ ବର୍ଷଣ କରିବାରେ ପ୍ରବୃତ୍ତ ହେଲେ । ୪୬ । ବୃକୋଦର ମଧ ସମରଶୋଭୀ କର୍ଣ୍ଣଙ୍କର ଅଶନିସଦୃଶ ଶରସମୂହ ନିକଟସ୍ଥ ନ ହେଉଣୁ ସେସମସ୍ତଙ୍କୁ ବହୁଳ ଭଲ୍ଲାସ୍ତ୍ରଦ୍ୱାରା ଛେଦନ କଲେ । ୪୭ । ପରନ୍ତୁ ସୂର୍ଯ୍ୟତନୟ କର୍ଣ୍ଣ ସମରରେ ପୁନର୍ବାର ମହାରଥି ଭୀମଙ୍କୁ ଶରବୃଷ୍ଟିଦ୍ୱାରା ସମାଚ୍ଛନ୍ନ କଲେ । ୪୮ ।

ହେ ଭାରତ ! ସେହି ସମୟରେ ଭୀମ କର୍ଣ୍ଣଙ୍କ ଶରନିକରଦ୍ୱାରା ଧମାବୃତ ହେବାରୁ ତାହାଙ୍କର ଅଙ୍ଗ କଣ୍ଟକସମାବୃତ ଶଲ୍ଲକୀସଦୃଶ ବୋଧ ହୋଇଲା । ୪୯ । ସେହି ମହାବୀର ହାଟକରିତ କର୍ଣ୍ଣକାର୍ମୁକବିମୁକ୍ତ ଶିଳାଧୌତ

ସ୍ୱର୍ଣ୍ଣପୁଙ୍ଖସମନ୍ୱିତ ଶରସମୂହଦ୍ୱାରା ବିଦ୍ଧ ହୋଇ ଦିବାକରରଶ୍ମି ବ୍ୟୂହ ଧାରଣକଲାପ୍ରାୟ ଶୋଭମାନ ହେଲେ ଓ ତାହାଙ୍କର ସର୍ବାଙ୍ଗରୁ ରୁଧିର କ୍ଷରଣ ହେବାରୁ ବସନ୍ତକାଳୀନ କୁସୁମପରିଶୋଭିତ ଅଶୋକତରୁସଦୃଶ ଶୋଭାପ୍ରାପ୍ତ ହେଲେ । ୫୧ । କିନ୍ତୁ ମହାଧନୁର୍ଦ୍ଧର ଭୀମସେନ ସମରରେ ସୂତପୁତ୍ରଙ୍କ ତାଦୃଶ କାର୍ଯ୍ୟକୁ ସହି ପାରିଲେ ନାହିଁ । ସେ କ୍ରୋଧରେ ଦୁଇ ଚକ୍ଷୁକୁ ଉଦ୍‌ବୃତ୍ତ କରି ପ୍ରଖର ବିଷଯୁକ୍ତ ସର୍ପସମୂହ ଶ୍ୱେତଶୈଳକୁ ଦଂଶନ ଦ୍ୱାରା ପୀଡ଼ିତ କଲାପ୍ରାୟ ପଞ୍ଚବିଂଶତି ବାଣଦ୍ୱାରା କର୍ଣ୍ଣଙ୍କୁ ପୀଡ଼ିତ କଲେ । ୫୩ । ପ୍ରତାପାନ୍ୱିତ ଅମରସଦୃଶବିକ୍ରମଶାଳୀ ଭୀମସେନ ସେହି ମହା-ସମରରେ ଚତୁର୍ଦ୍ଦଶ ଶରଦ୍ୱାରା ସୂତପୁତ୍ରଙ୍କର ମର୍ମ୍ମସ୍ଥଳକୁ ବିଦ୍ଧ କଲେ । ତତ୍ପରେ ସତ୍ୱର ହୋଇ ହସି ହସି ଅପର ଗୋଟିଏ ବାଣଦ୍ୱାରା କର୍ଣ୍ଣଙ୍କର ଶରାସନ ଛେଦନ କଲେ । ପୁଣି ବହୁଳ ଶରଦ୍ୱାରା ତାହାଙ୍କର ତୁରଙ୍ଗ-ମାନଙ୍କୁ ଓ ସାରଥିକୁ ନିପାତିତ କରି ସୂର୍ଯ୍ୟରଶ୍ମି ସଦୃଶ ନାରାଚସମୂହଦ୍ୱାରା ତାହାଙ୍କର ବକ୍ଷଃସ୍ଥଳକୁ ବିଦ୍ଧ କଲେ । ୫୬ । ଯେପରି ସୂର୍ଯ୍ୟରଶ୍ମି ମେଘ-ମଣ୍ଡଳକୁ ଭେଦକରି ଭୂମଣ୍ଡଳରେ ପତିତ ହୁଏ, ସେହିପରି ଭୀମନିକ୍ଷିପ୍ତ ନାରାଚସମୂହ କର୍ଣ୍ଣଙ୍କୁ ଭେଦକରି ଅବନୀତଳରେ ପତିତ ହେଲା । ୫୭ ।

ହେ ମହାରାଜ ! ପୁରୁଷାଭିମାନୀ କର୍ଣ୍ଣ ଭୀମଙ୍କ ଶରଦ୍ୱାରା ଛିନ୍ନଚାପ, ନିପୀଡ଼ିତ ଓ ବିକଳାଙ୍ଗ ହୋଇ ଅପର ଗୋଟିଏ ରଥର ଆଶ୍ରୟଗ୍ରହଣ-ପୂର୍ବକ ପ୍ରସ୍ଥାନ କଲେ । ୫୮ ।

---

# ୧୩୨ ଅଧ୍ୟାୟ

ଧୃତରାଷ୍ଟ୍ର ବୋଇଲେ—ଯେଉଁ ପରଶୁରାମ ମହେଶଙ୍କ ଶିଷ୍ୟ, ଭୃଗୁବଂଶ ମଧ୍ୟରେ ଉତ୍ତମ ଧନୁର୍ଦ୍ଧର ଓ ଅସ୍ତ୍ରବିଦ୍ୟାରେ ମହେଶଙ୍କ ତୁଲ୍ୟ, କର୍ଣ୍ଣ ସେହି ଭାର୍ଗବଙ୍କର ଶିଷ୍ୟତ୍ୱ ପ୍ରାପ୍ତହୋଇ ତାହାଙ୍କ ସମାନ ହୋଇ-ଅଛନ୍ତି । କିନ୍ତୁ କୁନ୍ତୀନନ୍ଦନ ଭୀମସେନ ଅବଲୀଳାକ୍ରମେ ସମରରେ ତାହାଙ୍କୁ ଜୟ କଲେ । ୨ । ହେ ସଞ୍ଜୟ ! ଯାହାଙ୍କ ଦ୍ୱାରା ଆମ୍ଭ ପୁତ୍ରମାନେ ରକ୍ଷିତ

ଜୟୀ ହେବେ ବୋଲି ମହତ୍ତ ଆଶା କରିଥିଲେ, ସେହି ସୂତପୁତ୍ରଙ୍କୁ ଭୀମଙ୍କ-ଠାରେ ସମରରେ ପରାଙ୍ମୁଖ ହେବାର ଅବଲୋକନ କରି ଦୁର୍ଯ୍ୟୋଧନ କି କାର୍ଯ୍ୟ କଲେ ? ୩ । ତତ୍ପରେ ବଳଶ୍ଳାଘୀ ମହାବଳଶାଳୀ ଭୀମସେନ କପରି ଯୁଦ୍ଧ କଲେ ଓ କର୍ଣ୍ଣ ଅବା ସେହି ସମରରେ ଜ୍ୱଳନ୍ତ ଅଗ୍ନିତୁଲ୍ୟ ଭୀମଙ୍କୁ ଅବଲୋକନ କରି କି କାର୍ଯ୍ୟ କଲେ ତାହା ଆମ୍ଭ ନିକଟରେ କୀର୍ତ୍ତନ କର । ୪ ।

ସଞ୍ଜୟ କହିଲେ—ହେ ମହାରାଜ ! କର୍ଣ୍ଣ ପୁନର୍ବାର ଯଥାବିଧାନରେ ସୁସଜ୍ଜିତ ଅପର ଗୋଟିଏ ରଥରେ ଆରୋହଣ କରି ବାୟୁବେଗରେ ଉଦ୍ଧୂତ ସାଗରସଦୃଶ ଭୀମଙ୍କ ସମୀପକୁ ଗମନ କଲେ । ୫ । ଆପଣଙ୍କ ପୁତ୍ରମାନେ ଅଧିରଥକୁମାରଙ୍କୁ କ୍ରୋଧିତ ଅବଲୋକନ କରି ଭୀମଙ୍କୁ ଯମ-ଦଂଷ୍ଟ୍ରାର ଅନ୍ତର୍ଗତ ବୋଲି ମନେ କଲେ । ୬ ।

ହେ ମନୁଜେଶ୍ୱର ! ରାଧାନନ୍ଦନ ଭୟଙ୍କର ଧନୁଷ୍ଟଙ୍କାର ଓ କରତଳ ଶବ୍ଦ କରୁ କରୁ ଭୀମସେନଙ୍କ ରଥ ନିକଟରେ ଉପନୀତ ହେଲେ । ପୁନର୍ବାର ସେ ଦୁହିଁଙ୍କ ମଧ୍ୟରେ ଘୋରତର ସଂଗ୍ରାମ ଉପସ୍ଥିତ ହେଲା । ୮ । ପରସ୍ପର ବଧାର୍ଥୀ ସେହି ବୀରଦ୍ୱୟ କ୍ରୋଧରେ ରକ୍ତନେତ୍ର ହୋଇ କୁପିତ ଭୁଜଙ୍ଗସଦୃଶ ନିଃଶ୍ୱାସ ପରିତ୍ୟାଗପୂର୍ବକ ଦୃଷ୍ଟିପାତଦ୍ୱାରା ପରସ୍ପର ପରସ୍ପରକୁ ଦହନ କରିବାପ୍ରାୟ ନିରୀକ୍ଷଣ କଲେ । ସେହି ଶତ୍ରୁ-ଦମନକାରୀ ବୀରଦ୍ୱୟ ସମରରେ ଏକକୁ ଅପର ପ୍ରାପ୍ତ ହୋଇ କ୍ଷତବିକ୍ଷତ କଲେ । ସେମାନେ ବେଗଗମନରେ ଶ୍ୟେନପକ୍ଷୀ ସଦୃଶ ଏବଂ କ୍ରୋଧରେ ବ୍ୟାଘ୍ର ଓ ଶରଭ ସଦୃଶ ହୋଇ ଯୁଦ୍ଧ କରିବାରେ ପ୍ରବୃତ୍ତ ହେଲେ । ୧୧ ।

ହେ ଶତ୍ରୁସୂଦନ ମହାରାଜ ! ଭୀମ ଅକ୍ଷକ୍ରୀଡ଼ା, ବନବାସ ଓ ବିରାଟ ନଗରରେ ଅଜ୍ଞାତବାସଜନିତ ଯେ ସମସ୍ତ ଦୁଃଖ ଭୋଗ କରିଥିଲେ, ଆପଣଙ୍କ ପୁତ୍ରମାନଙ୍କକର୍ତ୍ତୃକ ସେମାନଙ୍କର ଯେଉଁ ସମୃଦ୍ଧିସମ୍ପନ୍ନ ରାଜ୍ୟ ଅପହୃତ ହୋଇଥିଲା, ଆପଣଙ୍କ ପୁତ୍ରମାନେ ସେମାନଙ୍କୁ ନିରନ୍ତର ଯେଉଁ ନାନାପ୍ରକାର କ୍ଲେଶ ପ୍ରଦାନ କରିଥିଲେ, ଆପଣ ନିରପରାଧିନୀ କୁନ୍ତୀଙ୍କୁ ପୁତ୍ରଗଣଙ୍କ ସହିତ ଦଗ୍ଧ କରିବାକୁ ଯାହା ଅଭିଳାଷ କରିଥିଲେ,

ସଭାରେ ଆପଣଙ୍କ ଦୁରାତ୍ମା ପୁତ୍ରଗଣଙ୍କ କର୍ତ୍ତୃକ କୃଷ୍ଣାଙ୍କ ବହୁପ୍ରକାର ଅବଜ୍ଞା ଓ ଦୁଃଶାସନକୃତ କେଶଗ୍ରହଣ ଓ କର୍ଣ୍ଣ ଯାହା କହିଥିଲେ ଯେ, "ହେ ପାଞ୍ଚାଳି, ତୁମ୍ଭର ପତିମାନେ ଜୀବିତ ନାହାନ୍ତି, ଷଣ୍ଢତିଳତୁଲ୍ୟ ପୃଥାପୁତ୍ରମାନେ ସମସ୍ତେ ନରକରେ ପତିତ ହୋଇଅଛନ୍ତି, ଅତଏବ ତୁମ୍ଭେ ବର୍ତ୍ତମାନ ଅପର କାହାରିକୁ ପତି ବୋଲି ଇଚ୍ଛା କର"। ଏହିସମସ୍ତ ପରୁଷବାକ୍ୟ, ଆପଣଙ୍କ ପୁତ୍ରଗଣ କୃଷ୍ଣାଙ୍କୁ ଦାସୀ ଭାବରେ ଭୋଗକରିବା ଅଭିଳାଷରେ ଆପଣଙ୍କ ସାକ୍ଷାତ୍‌ରେ ଯେଉଁ ସମସ୍ତ ଉକ୍ତି କରିଥିଲେ, ପାଣ୍ଡବମାନେ କୃଷ୍ଣାଜିନପରିଧାୟୀ ହୋଇ ଅରଣ୍ୟକୁ ପ୍ରବ୍ରାଜିତ ହେବା ସମୟରେ କର୍ଣ୍ଣ ଆପଣଙ୍କ ସାକ୍ଷାତରେ ସଭାମଧ୍ୟରେ ଯେଉଁ ସମସ୍ତ କଟୂକ୍ତି କରିଥିଲେ, ଆପଣଙ୍କ ପୁତ୍ର ପଦସ୍ଥ ହୋଇ ଅଜ୍ଞାନତାବଶତଃ ପାଣ୍ଡବମାନଙ୍କୁ ତୃଣତୁଲ୍ୟ ବୋଧକରି ଗର୍ବସହକାରେ ଯେଉଁ ନୃତ୍ୟ କରିଥିଲେ, ସେମାନେ ଆପଣ-ମାନଙ୍କଠାରୁ ବାଲ୍ୟକାଳରୁ ଅନ୍ୟାନ୍ୟ ଯେଉଁ ସମସ୍ତ ଦୁଃଖ ପ୍ରାପ୍ତ ହୋଇ-ଥିଲେ, ସେହି ସମସ୍ତ କ୍ଲେଶକୁ ଧର୍ମାତ୍ମା ଭରତଶ୍ରେଷ୍ଠ ଭୀମ ଚିନ୍ତାକରି ନିଜ ଜୀବନରକ୍ଷାରେ ନିରପେକ୍ଷ ହୋଇ ଦୁରାସଦ ସୁବର୍ଣ୍ଣପୃଷ୍ଠ ମହାକାର୍ମୁକକୁ ବିସ୍ଫାରଣପୂର୍ବକ କର୍ଣ୍ଣଙ୍କ ପ୍ରତି ଧାବମାନ ହେଲେ। ୨୧। ସେ କର୍ଣ୍ଣଙ୍କ ରଥାଭିମୁଖରେ ଭାସ୍ୱର-ଶାଣିତ ଶରଜାଲବିସ୍ତାର କରି ଦିବାକରଙ୍କ କିରଣସମୂହକୁ ଆଚ୍ଛାଦନ କଲେ। ୨୨।

ହେ ମହାରାଜ! ମହାବାହୁ ଅଧିରଥନନ୍ଦନ କର୍ଣ୍ଣ ବଳଶାଳୀ ପୁରୁଷମାନଙ୍କ ମଧ୍ୟରେ ମହାବଳବାନ୍, ବିକ୍ରମରେ ଅତ୍ୟନ୍ତ ବେଗବାନ୍, ରଥୀମାନଙ୍କ ମଧ୍ୟରେ ମହାରଥୀ ଅଟନ୍ତି। ସେ ଭୀମନିକ୍ଷିପ୍ତ ସେହି ଶରଜାଲକୁ ଶିଳାଶାଣିତ ଶରନିକରଦ୍ୱାରା ଅବଲୀଳାକ୍ରମେ ଶୀଘ୍ର ଛେଦନ କଲେ। ନଅଗୋଟି ଶାଣିତ ଶରଦ୍ୱାରା ଭୀମଙ୍କୁ ବିଦ୍ଧ କଲେ। ବୃକୋଦର ସୂତ-ପୁତ୍ରଙ୍କର ପତ୍ରବିଶିଷ୍ଟ ଶରସମୂହଦ୍ୱାରା ନିବାରିତ ହୋଇ ତୋତ୍ରଦ୍ୱାରା ତାଡ଼ିତ ମାତଙ୍ଗସଦୃଶ ଅସମ୍ଭ୍ରାନ୍ତଚିତ୍ତରେ ତାହାଙ୍କ ପ୍ରତି ଅଭିଧାବିତ ହେଲେ। ୨୫। କର୍ଣ୍ଣ ପାଣ୍ଡୁନନ୍ଦନ ଭୀମଙ୍କୁ ଅତିଶୟ ବେଗରେ ଆପତିତ ହେବାର ଦେଖି ଗୋଟିଏ ମତ୍ତଗଜ ଅପର ଗୋଟିଏ ମତ୍ତଗଜ ପ୍ରତି ଧାବମାନ ହେବା-ସଦୃଶ ତାହାଙ୍କ ଯୁଦ୍ଧାର୍ଥୀ ହୋଇ ପ୍ରତ୍ୟୁଦ୍‌ଗମନ କଲେ। ୨୬। ତତ୍ପରେ

ସୈନ୍ୟସମୂହ ହର୍ଷସହକାରେ ଶତ ଭେରୀଶବ୍ଦସଦୃଶ ଶବ୍ଦବାନ୍ ଶଙ୍ଖକୁ ପ୍ରଧ୍ମାପିତ କରି ଉଦ୍ଧୂତ ସାଗରତୁଲ୍ୟ ସ୍ଫୀତ ହେଲେ । ଭୀମ ସେହି ହସ୍ତୀ-ଅଶ୍ୱ-ପଦାତିସଂକୁଳ ସୈନ୍ୟମାନଙ୍କୁ ହର୍ଷରେ ଉଦ୍ଧୂତ ହେବାର ଅବଲୋକନ କରି କର୍ଣ୍ଣଙ୍କୁ ବାଣଜାଲରେ ଆଚ୍ଛାଦିତ କଲେ । ୨୮ । କର୍ଣ୍ଣ ବୃକୋଦରଙ୍କୁ ଶରସମୂହଦ୍ୱାରା ସମାଚ୍ଛାଦିତ କରି ଭୀମଙ୍କ ଭଲ୍ଲୂକସବର୍ଣ୍ଣ ଅଶ୍ୱଗଣସହିତ ଆପଣାର ହଂସବର୍ଣ୍ଣ ଅଶ୍ୱଗଣଙ୍କୁ ମିଳିତ କଲେ । ୨୯ ।

ହେ ମହାରାଜ ! ସେହି ଶ୍ୱେତବର୍ଣ୍ଣ ଅଶ୍ୱମାନଙ୍କ ସହିତ ମାରୁତତୁଲ୍ୟ ବେଗଶୀଳ ଭଲ୍ଲୂକବର୍ଣ୍ଣ ଅଶ୍ୱମାନଙ୍କ ମିଳନ ହେବାର ଅବଲୋକନ କରି ଆପଣଙ୍କ ପୁତ୍ରମାନଙ୍କର ସୈନିକଗଣଙ୍କ ମଧ୍ୟରେ ହାହାକାର ଶବ୍ଦ ଉତ୍ଥିତ ହେଲା । ୩୦ । ସେହି ସମୀରଣସଦୃଶ ବେଗବାନ୍ ସିତ ଓ ଅସିତବର୍ଣ୍ଣ ଅଶ୍ୱମାନେ ପରସ୍ପର ମିଳିତହୋଇ ଗଗନ ମଣ୍ଡଳସ୍ଥ ଶ୍ୱେତ ଓ କୃଷ୍ଣ ମେଘତୁଲ୍ୟ ଶୋଭା ଧାରଣ କଲେ । ୩୧ ।

ହେ ମହାରାଜ ! କ୍ରୋଧାରୁଣନେତ୍ର କର୍ଣ୍ଣ ଓ ବୃକୋଦରଙ୍କୁ ଅତିଶୟ ସଂରବ୍ଧ ଅବଲୋକନ କରି ଆପଣଙ୍କପକ୍ଷୀୟ ମହାରଥମାନେ ମଧ୍ୟ ତ୍ରାସରେ କମ୍ପିତ ହେଲେ । ସେ ଉଭୟଙ୍କର ଯୁଦ୍ଧ ଯମରାଷ୍ଟ୍ରତୁଲ୍ୟ ଭୟାନକ ଓ ଶ୍ମଶାନଭୂମି ସଦୃଶ ଦୁର୍ନିରୀକ୍ଷ ହେଲା । ୩୩ । ସେହି ସମୟରେ ମହାରଥି-ମାନେ ଆପଣଙ୍କ ଓ ଆପଣଙ୍କ ପୁତ୍ରମାନଙ୍କର ଦୁର୍ମନ୍ତ୍ରଣାସଂଘଟିତ ସେହି ମହାପ୍ରବୀର ଦୁହିଁଙ୍କର ସଂଗ୍ରାମ ନିରୀକ୍ଷଣ କଲେ । ୩୪ । ସେହି ଦୁଇ ଅଦ୍ଭୁତ ବିକ୍ରମଶାଳୀ ଶତ୍ରୁହନ୍ତା କର୍ଣ୍ଣ ଓ ଭୀମ ପରସ୍ପର ପରସ୍ପରକୁ ଶର-ନିକରରେ ସମାଚ୍ଛାଦିତ କରି ଗଗନମଣ୍ଡଳକୁ ଶରଜାଲରେ ଆବୃତ କଲେ । ୩୬ । ସେମାନେ ଦୁଇଜଣ ଯାକ ମହାରଥି ସୁତରାଂ ପରସ୍ପର ପରସ୍ପରକୁ ହନନେଚ୍ଛା ହେତୁ ତୀକ୍ଷ୍ଣ ଶରଜାଲ ବର୍ଷଣ କରିବାରୁ ବର୍ଷଣଶୀଳ ଦୁଇଖଣ୍ଡ ମେଘସଦୃଶ ଦର୍ଶନୀୟ ହେଲେ । ୩୭ ।

ହେ ପ୍ରଭୋ ! ଶତ୍ରୁଦମନକାରୀ ସେହି ଦୁଇବୀର ଉଲ୍କାପାତସଦୃଶ ସ୍ୱର୍ଣ୍ଣନିର୍ମିତ ବାଣସମୂହ ବିମୋଚନ କରି ନଭୋମଣ୍ଡଳକୁ ଜ୍ୟୋତିର୍ମୟ କଲେ । ୩[illegible] । [illegible] ଦୁଇ [illegible]ରଙ୍କର [illegible] ଗୃଧ୍ରପକ୍ଷଯୁକ୍ତ ଶରସମୂହ

ଶରତ୍କାଳରେ ମତ୍ତ ସାରସଶ୍ରେଣୀ ଗଗନମଣ୍ଡଳରେ ପ୍ରକାଶିତ ହେଲାପ୍ରାୟ ଶୋଭମାନ ହେଲା । ୩୯ ।

ହେ ମହାରାଜ ! କୃଷ୍ଣାର୍ଜ୍ଜୁନ ଅରିନ୍ଦମ ଭୀମଙ୍କୁ ଅଧିରଥ-ତନୟଙ୍କ ସହିତ ସମରରେ ସମାସକ୍ତ ହେବାର ଅବଲୋକନ କରି ତାହାଙ୍କୁ ଅତିଭାରାକ୍ରାନ୍ତ ବୋଲି ମନେକଲେ । ୪୦ । ପରନ୍ତୁ ତୁରଙ୍ଗ ମାତଙ୍ଗ ଓ ମନୁଷ୍ୟଗଣ ଭୀମସେନ ଓ ସୂତପୁତ୍ର ଏ ଦୁଇଜଣଙ୍କ ନିର୍ମ୍ମୁକ୍ତ ଶରନିକରରେ ଦୃଢ଼ତର ଆହତ ହୋଇ ଶରପାତ ସ୍ଥଳକୁ ଅତିକ୍ରମ କରି ନିପତିତ ହେଲେ । ୪୧ । କେତେକ ସୈନ୍ୟ ସେହିସମସ୍ତ ହସ୍ତ୍ୟାଦିର ପତନାଭି-ଘାତରେ ପାତିତ ଓ ଅନ୍ୟ କେତେକ ସୈନ୍ୟ ବିନଷ୍ଟ ହେବାରୁ ଆପଣଙ୍କ ପୁତ୍ରମାନଙ୍କର ମହାନ୍ ବଳ-କ୍ଷୟ ଉପସ୍ଥିତ ହେଲା । ୪୨ । ମନୁଷ୍ୟ, ଅଶ୍ୱ ଓ ହସ୍ତିମାନଙ୍କର ମୃତଦେହଦ୍ୱାରା ସମରଭୂମି ମୁହୂର୍ତ୍ତକାଳ ମଧ୍ୟରେ ସମାବୃତ ହେଲା । ୪୩ ।

---

## ୧୩୩ ଅଧ୍ୟାୟ

ଧୃତରାଷ୍ଟ୍ର କହିଲେ—ହେ ସଞ୍ଜୟ ! ଲଘୁବିକ୍ରମ କର୍ଣ୍ଣଙ୍କ ସହିତ ଭୀମସେନ ଯେତେବେଳେ ଯୁଦ୍ଧ କରିବାରେ ସମର୍ଥ ହେଲେ ତେତେବେଳେ ତାହାର ବଳବୀର୍ଯ୍ୟ ଅତ୍ୟନ୍ତ ଆଶ୍ଚର୍ଯ୍ୟ ବୋଲି ବୋଧ ହେଉଅଛି । ୧ । ଶସ୍ତ୍ରଧାରୀପ୍ରବର କର୍ଣ୍ଣ ସମରରେ ଉଦ୍ୟତ ଯକ୍ଷ ଅସୁର ଓ ମନୁଷ୍ୟମିଳିତ ସମସ୍ତ ଅମରଗଣଙ୍କୁ ମଧ୍ୟ ନିବାରିତ କରିପାରନ୍ତି । ତେବେ ସେ କି ନିମିତ୍ତ ଯୁଦ୍ଧରେ ଶ୍ରୀପ୍ରଦୀପ୍ତ ପାଣ୍ଡୁ-ପୁତ୍ର ନିକଟରୁ ଉତ୍ତୀର୍ଣ୍ଣ ହୋଇ ପାରିଲେ ନାହିଁ ? ହେ ବତ୍ସ ! ଏହି ପ୍ରାଣପଣ ବିଷୟକ ଯୁଦ୍ଧକ୍ରୀଡ଼ାରେ ଜୟ ବା ପରାଜୟ ସେ ଦୁହିଁଙ୍କର ଆୟତ୍ତ ବୋଲି ଆମ୍ଭେ ମନେ କରୁଅଛୁଁ । ପୁନର୍ବାର ସେମାନଙ୍କ ମଧ୍ୟରେ କପରି ଯୁଦ୍ଧ ହୋଇଥିଲା ତାହା ଆମ୍ଭ ନିକଟରେ କୀର୍ତ୍ତନ କର । ୪ ।

ହେ ସୂତ ! ଆମ୍ଭର ପୁତ୍ର ସୁଯୋଧନ କର୍ଣ୍ଣଙ୍କୁ ପ୍ରାପ୍ତ ହୋଇ ସମରରେ ଗୋବିନ୍ଦ ଓ ସାତ୍ୟକିଙ୍କ ସହିତ କୁନ୍ତୀପୁତ୍ରମାନଙ୍କୁ ପରାଜୟ

କରିବା ନିମିତ୍ତ ଉତ୍ସାହିତ କରିଥାଆନ୍ତି । ୫ । କିନ୍ତୁ ଭୀମକର୍ମା ଭୀମଙ୍କଦ୍ୱାରା ସେହି କର୍ଣ୍ଣଙ୍କର ବାରମ୍ବାର ପରାଜୟ ବୃତ୍ତାନ୍ତ ଶ୍ରବଣ କରି ଆମ୍ଭେ ମୋହରେ ନିତାନ୍ତ ଅଭିଭୂତ ହେଲପ୍ରାୟ ହୋଇଅଛୁଁ । ୬ । ଆମ୍ଭ ପୁତ୍ରର ଦୁର୍ମନ୍ତ୍ର ହେତୁରୁ ସମସ୍ତ କୌରବମାନଙ୍କୁ ନିହତ ବୋଲି ମନେ କରୁଅଛୁଁ । କାରଣ କର୍ଣ୍ଣ କଦାଚ ସମରରେ ମହାଧନୁର୍ଦ୍ଧର ପୃଥାନନ୍ଦନମାନଙ୍କୁ ପରାଜିତ କରିପାରିବେ ନାହିଁ । ୭ । କର୍ଣ୍ଣ ପାଣ୍ଡବମାନଙ୍କ ସହିତ ଯେତେଥର ଯୁଦ୍ଧ କରିଅଛନ୍ତି, ସେମାନେ ସେତେଥର ସମରାଙ୍ଗନରେ ତାହାଙ୍କୁ ପରାଜିତ କରିଅଛନ୍ତି । ୮ ।

ହେ ବତ୍ସ ! ମନୁଷ୍ୟମାନଙ୍କ କଥା ତ ଦୂରର କଥା, ପାଣ୍ଡବମାନେ ସୁରପତି ସହିତ ଦେବଗଣଙ୍କର ମଧ୍ୟ ଅଜେୟ ଅଟନ୍ତି । କିନ୍ତୁ ଆମ୍ଭର ପୁତ୍ର ଦୁର୍ବୁଦ୍ଧି ଦୁର୍ଯ୍ୟୋଧନ ତାହା ବୁଝିପାରୁ ନାହିଁ । ଯେପରି ମଧୁଅଭିଳାଷୀ ନିର୍ବୋଧ ମନୁଷ୍ୟ ବୃକ୍ଷରେ ଆରୋହଣ କରିବା ସମୟରେ ଆପଣାର ଅଧଃପାତକୁ ଅନୁଧାବନ କରେନାହିଁ, ସେହିପରି ଆମ୍ଭର ପୁତ୍ର ଦୁର୍ଯ୍ୟୋଧନ ଧନେଶ୍ୱରତୁଲ୍ୟ ଧର୍ମରାଜ ଯୁଧିଷ୍ଠିରଙ୍କର ଧନ ହରଣକରି ବୁଦ୍ଧିହୀନତା-ପ୍ରଯୁକ୍ତ ଆପଣାର ମୃତ୍ୟୁ ବିଷୟ ବୁଝିପାରୁ ନାହିଁ । ୧୦ । ସେହି ଛଳପ୍ରଜ୍ଞ ଦୁର୍ଯ୍ୟୋଧନ ଶଠତାଦ୍ୱାରା ମହାତ୍ମା ପାଣ୍ଡବମାନଙ୍କର ରାଜ୍ୟ ଅପହରଣ କରି ସେମାନଙ୍କୁ ପରାଜିତ ମନେକରି ଅବମାନନା କରେ । ୧୧ । ଆମ୍ଭେ ମଧ୍ୟ ଅକୃତାତ୍ମା ଅଟୁଁ । ତେଣୁ ପୁତ୍ରସ୍ନେହରେ ଅଭିଭୂତ ହୋଇ ସେହି ଧର୍ମପରାୟଣ ମହାତ୍ମା ପାଣ୍ଡୁପୁତ୍ରମାନଙ୍କୁ ବଞ୍ଚିତ କରିଅଛୁଁ । ୧୨ । ପୃଥାନନ୍ଦନ ଦୂରଦର୍ଶୀ ଯୁଧିଷ୍ଠିର ଶାନ୍ତି ଇଚ୍ଛାକରି ଅନେକ କଷ୍ଟ ସହିଅଛନ୍ତି । କିନ୍ତୁ ଆମ୍ଭ ପୁତ୍ରମାନେ ତାହାଙ୍କୁ ସମରରେ ଅସମର୍ଥ ମନେକରି ନିରାକୃତ କରିଅଛନ୍ତି । ୧୩ ।

ହେ ସଞ୍ଜୟ ! ଆମ୍ଭମାନଙ୍କୁ ବୋଧ ହେଉଅଛି ଯେ ମହାବାହୁ ଭୀମ ଦୁର୍ଯ୍ୟୋଧନାଦିପ୍ରଦତ୍ତ ବିବିଧ ପ୍ରକାର କ୍ଳେଶ ଓ ସେମାନଙ୍କର ପ୍ରତାରଣା ସମୂହକୁ ସ୍ମରଣ କରି ସୂତ-ପୁତ୍ରଙ୍କ ସହିତ ଯୁଦ୍ଧ କରିଥିବେ ।୧୪। ଅତଏବ ସେହି ଯୋଧପ୍ରଧାନ କର୍ଣ୍ଣ ଓ ଭୀମସେନ ପରସ୍ପର ପରସ୍ପରର ବଧୈଷୀ ହୋଇ ଯେପରି ସଂଗ୍ରାମ କଲେ ତାହା ଆମ୍ଭ ନିକଟରେ କୀର୍ତ୍ତନ କର । ୧୫ ।

ସଞ୍ଜୟ କହିଲେ—ହେ ରାଜନ୍ ! ଭୀମସେନ ଓ କର୍ଣ୍ଣ ଏ ଦୁହିଁଙ୍କ ମଧ୍ୟରେ ପରସ୍ପର ବଧାକାଙ୍କ୍ଷୀ ଅରଣ୍ୟମଧ୍ୟସ୍ଥ କୁଞ୍ଜରଯୁଗଳର ଯୁଦ୍ଧତୁଲ୍ୟ ଯେପରି ସଂଗ୍ରାମ ହୋଇଥିଲା ତାହା ଆପଣ ଶ୍ରବଣ କରନ୍ତୁ । ୧୬ । କର୍ଣ୍ଣ ପ୍ରଥମରେ କୁପିତ ହୋଇ ବିକ୍ରମପ୍ରକାଶପୂର୍ବକ ଶତ୍ରୁସୂଦନ କ୍ରୋଧାନ୍ୱିତ ପରାକ୍ରମଶାଳୀ ଭୀମସେନଙ୍କୁ ତିଂଶତ୍ ବାଣରେ ବିଦ୍ଧ କଲେ । କର୍ଣ୍ଣନିକ୍ଷିପ୍ତ ସେହି ବାଣନିକର ଅତିବେଗବାନ୍ ସୁବର୍ଣ୍ଣଖଚିତ ଓ ନିର୍ମଳାଗ୍ର ଥିଲା । ୧୮ । ପରନ୍ତୁ ଭୀମସେନ କର୍ଣ୍ଣଙ୍କର ଶରନିକ୍ଷେପ ସମୟରେ ତାହାଙ୍କର ଶରାସନକୁ ତିନିଗୋଟି ଶରଦ୍ୱାରା ଛେଦନ କଲେ ଓ ଗୋଟିଏ ଭଲ୍ଲଦ୍ୱାରା ତାହାଙ୍କର ସାରଥିକୁ ରଥମାଡ଼ରୁ ଭୂତଳରେ ପାତିତ କଲେ । ୧୯ । ଅନନ୍ତର ମହାବଳଶାଳୀ ରାଧାନନ୍ଦନ ଭୀମସେନଙ୍କର ବଧାଭିଳାଷୀ ହୋଇ ବଳପୂର୍ବକ ସୁବର୍ଣ୍ଣ ଓ ବୈଦୂର୍ଯ୍ୟଖଚିତ-ଦଣ୍ଡସଂଯୁକ୍ତ ଗୋଟିଏ ଶକ୍ତି ଗ୍ରହଣ କଲେ ।୨୦। ସେ ସେହି ଦ୍ୱିତୀୟ କାଳତୁଲ୍ୟ ଜୀବନାନ୍ତକର ମହାଶକ୍ତି ଗ୍ରହଣ କରି ଉତ୍କ୍ଷେପଣପୂର୍ବକ ସନ୍ଧାନ କରଣାନନ୍ତର ଭୀମଙ୍କପ୍ରତି ନିକ୍ଷେପ କଲେ ।

ହେ ମହାରାଜ ! ବଳବାନ୍ ସୂତପୁତ୍ର କର୍ଣ୍ଣ ଇନ୍ଦ୍ରାଶନିସମ ସେହିଶକ୍ତି ପରିତ୍ୟାଗ କରି ଅତି ମହତ୍ ସିଂହନାଦ କଲେ । ଆପଣଙ୍କର ପୁତ୍ରମାନେ ସେହି ସିଂହନାଦକୁ ଶ୍ରବଣକରି ହୃଷ୍ଟଚିତ୍ତ ହେଲେ । ୨୩ । ଭୀମସେନ କର୍ଣ୍ଣଙ୍କର ବାହୁମୁକ୍ତ ପ୍ରଭାକର ଓ ଅଗ୍ନିତୁଲ୍ୟ ପ୍ରଭାଯୁକ୍ତ ସେହି ଶକ୍ତିକୁ ସାତଗୋଟି ବାଣରେ ଛେଦନ କଲେ । ସେ ସେହି ସମୟରେ ନିର୍ମୋକ-ନିର୍ମୁକ୍ତ ଭୁଜଙ୍ଗତୁଲ୍ୟ ସେହି ଶକ୍ତିକୁ ଛେଦନ କରି ସୂତପୁତ୍ରଙ୍କର ଜୀବନାନୁସନ୍ଧାନରେ ପ୍ରବୃତ୍ତ ହେଲପ୍ରାୟ ହୋଇ ସରମ୍ଭସହ ସୁବର୍ଣ୍ଣଖଚିତ-ପୁଙ୍ଖବିଶିଷ୍ଟ ମୟୂରପକ୍ଷସମନ୍ୱିତ ଶିଳାଶାଣିତ କାଳଦଣ୍ଡସମ ଶରନିକର ନିକ୍ଷେପ କଲେ । ୨୬ । ମହାତେଜସ୍ୱୀ କର୍ଣ୍ଣ ମଧ୍ୟ ସ୍ୱର୍ଣ୍ଣପୃଷ୍ଠଶୋଭିତ ଅପର ଗୋଟିଏ ଶରାସନ ଗ୍ରହଣକରି ବିକର୍ଷଣପୂର୍ବକ ବହୁଳ ବାଣଜାଲ ବିମୋଚନ କଲେ । ୨୭ । ପାଣ୍ଡୁନନ୍ଦନ କର୍ଣ୍ଣ ନିକ୍ଷିପ୍ତ ବାଣକୁ ସୁବର୍ଣ୍ଣବିକୃତ ନତପର୍ବ ନଅଗୋଟି ବାଣଦ୍ୱାରା ଛେଦନ କଲେ ।

ହେ ମହାରାଜ ! ଭୀମ ବସୁଷେଣ-ବିନିର୍ମୁକ୍ତ ମହତ୍ ଶରସମୂହକୁ ଛେଦନ କରି ସିଂହସଦୃଶ ଶବ୍ଦ କଲେ । ଯେପରି ଋତୁମତୀ ଗବୀ ନିମିତ୍ତ ଦୁଇ-

ଗୋଟି ବୃଷଭ ଓ ଆମିଷ ନିମନ୍ତେ ଦୁଇଗୋଟି ଶାର୍ଦ୍ଦୂଳ ଗର୍ଜ୍ଜନ କରନ୍ତି ସେହିପରି ସେ ଦୁହେଁ ଗର୍ଜ୍ଜନ କଲେ । ଗୋଷ୍ଠ ମଧ୍ୟରେ ଦୁଇଗୋଟି ମହା-ବୃଷଭତୁଲ୍ୟ ସେ ଦୁହେଁ ପରସ୍ପର ପରସ୍ପର ପ୍ରତି ପ୍ରହାରାଭିଳାଷୀ ଛିଦ୍ରାନ୍ୱେଷୀ ହୋଇ ପରସ୍ପରକୁ ନିରୀକ୍ଷଣ କଲେ । ଯେପରି ଦୁଇଗୋଟି ମହାଗଜ ପରସ୍ପର ପରସ୍ପରକୁ ପ୍ରାପ୍ତହୋଇ ଦନ୍ତାଗ୍ରଭାଗଦ୍ୱାରା ହନନ କରନ୍ତି, ସେହିପରି ସେ ଦୁହେଁ ମଧ୍ୟ ଆକର୍ଣ୍ଣପୂର୍ଣ୍ଣ ଶରଜାଲ ବିମୋଚନ କରି ପରସ୍ପର ପରସ୍ପରକୁ ଛେଦନ କଲେ । ହେ ମହାରାଜ ! ସେ ଦୁହେଁ ପରସ୍ପର ଛିଦ୍ରାନୁସନ୍ଧାୟୀ ହୋଇ କୋପରେ ଚକ୍ଷୁଦ୍ୱୟକୁ ବିକୃତ କରି ଶରାଗ୍ନି ବୃଷ୍ଟି ଦ୍ୱାରା ଏକକୁ ଅନ୍ୟ ଦଗ୍ଧ କରିବାରେ ପ୍ରବୃତ୍ତହେଲା ପ୍ରାୟ ପ୍ରତୀୟମାନ ହେଲେ । ସେହି ସମୟରେ ସେ ଦୁହେଁ କେତେବେଳେ ଉଚ୍ଚହାସ୍ୟ କେତେବେଳେ ଭର୍ତ୍ସନା କରି ବାରମ୍ବାର ଶଙ୍ଖଧ୍ୱନିପୂର୍ବକ ଯୁଦ୍ଧ କଲେ । ହେ ମହାରାଜ ! ଭୀମସେନ କର୍ଣ୍ଣଙ୍କ କାର୍ମୁକର ମୁଷ୍ଟିପ୍ରଦେଶକୁ ପୁନର୍ବାର ଛେଦନ କଲେ ! ତତ୍ପରେ ତାହାଙ୍କର ଶଙ୍ଖ-ବର୍ଣ୍ଣ ଅଶ୍ୱମାନଙ୍କୁ ଶରନିକରରେ ଯମାଳୟକୁ ପ୍ରେରଣ କରି ସାରଥିକୁ ରଥମଣ୍ଡଳରୁ ଭୂତଳରେ ନିପାତିତ କଲେ । ୩୫ ।

ଏହିପରି ମହାବୀର କର୍ଣ୍ଣ ଭୀମଙ୍କ ଶରଦ୍ୱାରା ହତାଶ୍ୱ ଓ ସାରଥି ହତ ହୋଇ ଚିନ୍ତା-ସାଗରରେ ନିମଗ୍ନ ହେଲେ । ସେ ସମୟରେ କର୍ତ୍ତବ୍ୟ ଅବଧାରଣ କରିପାରିଲେ ନାହିଁ । ରାଜା ଦୁର୍ଯ୍ୟୋଧନ କର୍ଣ୍ଣଙ୍କୁ ସେହିପରି ଆପଦ୍‌ଗ୍ରସ୍ତ ଅବଲୋକନ କରି କ୍ରୋଧରେ କମ୍ପିତ ହୋଇ ଦୁର୍ଜ୍ଜୟକୁ ଆଦେଶ କଲେ । ହେ ଦୁର୍ଜ୍ଜୟ ! ତୁମ୍ଭେ ଶୀଘ୍ର ଗମନ କର ; ତୁମ୍ଭ ସମ୍ମୁଖରେ ପାଣ୍ଡୁପୁତ୍ର ଭୀମ କର୍ଣ୍ଣଙ୍କୁ କବଳିତ କରିବାର ଉପକ୍ରମ କରୁଅଛି । ଅତଏବ ତୁମ୍ଭେ ତାହାଙ୍କର ସହାୟ ହୋଇ ସେହି ଅଜାତଶ୍ମଶ୍ରୁ ଭୀମଙ୍କୁ ଶୀଘ୍ର ବିନାଶ କର । ଆପଣଙ୍କ ପୁତ୍ର ଦୁର୍ଜ୍ଜୟ ଜ୍ୟେଷ୍ଠଭ୍ରାତା ଦୁର୍ଯ୍ୟୋଧନଙ୍କଦ୍ୱାରା ଏହିପରି ଆଦିଷ୍ଟ ହେବାରୁ ତାହାଙ୍କର ବାକ୍ୟକୁ "ହେଉ" ବୋଲି ସ୍ୱୀକାର କରି ଶରଜାଲ ବିକୀରଣ କରୁ କରୁ କର୍ଣ୍ଣଙ୍କସହ ସମରସମାସକ୍ତ ଭୀମସେନଙ୍କ ପ୍ରତି ଧାବମାନ ହେଲେ ।

ସେ ଦଶଗୋଟି ବାଣଦ୍ୱାରା ଭୀମଙ୍କୁ ଆଠଗୋଟି ବାଣରେ ତାହାଙ୍କର ଅଶ୍ୱମାନଙ୍କୁ, ଛଅଗୋଟି ବାଣରେ ତାହାଙ୍କର ସାରଥିକୁ ଓ

ତିନିଗୋଟି ବାଣରେ ତାହାଙ୍କର ଧ୍ୱଜକୁ ବିଦ୍ଧ କରି ପୁନର୍ବାର ସାତଗୋଟି ବାଣରେ ତାହାଙ୍କର ବକ୍ଷସ୍ଥଳକୁ ପୀଡ଼ିତ କଲେ । ଅନନ୍ତର ଭୀମସେନ କ୍ରୁଦ୍ଧହୋଇ ଶୀଘ୍ରଗାମୀ ଶରନିକରଦ୍ୱାରା ଦୁର୍ଜ୍ଜୟର ମର୍ମ୍ମସ୍ଥାନ ଭେଦ କରି ତାହାଙ୍କୁ ଅଶ୍ୱ ଓ ସାରଥି ସହିତ ଶମନ ସଦନକୁ ପ୍ରେରଣ କଲେ । କର୍ଣ୍ଣ ସୁନ୍ଦର ଅଳଙ୍କାର ପରିଶୋଭିତ ଆପଣଙ୍କର ପୁତ୍ର ଦୁର୍ଜ୍ଜୟକୁ କ୍ଷତବିକ୍ଷତାଙ୍ଗ ଓ ଲୁଣ୍ଠମାନ ଭୁଜଙ୍ଗସଦୃଶ ଭୂତଳରେ ନିପତିତ ହେବାର ନିରୀକ୍ଷଣ କରି ଶୋକାର୍ତ୍ତଚିତ୍ତରେ ରୋଦନ କରୁ କରୁ ତାହାଙ୍କୁ ପ୍ରଦକ୍ଷିଣ କଲେ । ଭୀମସେନ କର୍ଣ୍ଣଙ୍କୁ ରଥବିହୀନ କରି ତାହାଙ୍କର ଆଚରିତ ଆତ୍ୟନ୍ତିକ ଶତ୍ରୁତାସବୁ ସ୍ମରଣପୂର୍ବକ କୌଣସି ଲୌହମୟ ପଦାର୍ଥକୁ ଲୌହକୀଳକ ସମୂହଦ୍ୱାରା ବିଦ୍ଧ କଲା ପ୍ରାୟ ଶରସମୂହଦ୍ୱାରା ତାହାଙ୍କୁ ବିଦ୍ଧ କଲେ । ହେ ଶତ୍ରୁତାପନ ମହାରାଜ ! ଅତିରଥି କର୍ଣ୍ଣ ସମରରେ ଶରସମୂହଦ୍ୱାରା ତାଦୃଶ ଭିଦ୍ୟମାନ ହୋଇ ମଧ୍ୟ ସେହି କ୍ରୋଧମୂର୍ତ୍ତି ଭୀମଙ୍କୁ ପରିତ୍ୟାଗ କଲେ ନାହିଁ । ୪୫ ।

---

# ୧୩୪ ଅଧ୍ୟାୟ

ସଞ୍ଜୟ କହିଲେ—ହେ ମହାରାଜ ! କର୍ଣ୍ଣ ଭୀମଙ୍କକର୍ତ୍ତୃକ ରଥବିହୀନ ଓ ପରାଜିତ ହୋଇ ପୁନର୍ବାର ଅପର ଗୋଟିଏ ରଥରେ ଆରୋହଣପୂର୍ବକ ତତ୍କ୍ଷଣାତ୍ ତାହାଙ୍କୁ ଶରଜାଲରେ ବିଦ୍ଧ କଲେ । ୧ । ଗୋଟିଏ ମହାଗଜ ଅପର ଗୋଟିଏ ଗଜକୁ ପ୍ରାପ୍ତହୋଇ ଉଭୟେ ଦନ୍ତଦ୍ୱାରା ପରସ୍ପରକୁ ପ୍ରହାର କଲାସଦୃଶ ସେ ଦୁହେଁ ପରସ୍ପର ପୂର୍ଣ୍ଣାୟତ ଶରସମୂହ ବିମୋଚନ କରି ପରସ୍ପରକୁ ପ୍ରହାର କଲେ । ୨ । ଅନନ୍ତର କର୍ଣ୍ଣ ଶରନିକରଦ୍ୱାରା ଭୀମଙ୍କୁ ଅତିଶୟ ପୀଡ଼ିତକରି ମହା ସିଂହନାଦ ସହକାରେ ପୁନର୍ବାର ତାହାଙ୍କର ବକ୍ଷସ୍ଥଳକୁ ବିଦ୍ଧ କଲେ । ୩ । ଭୀମସେନ ମଧ୍ୟ କର୍ଣ୍ଣଙ୍କର ହୃଦୟପ୍ରଦେଶକୁ ଦଶଗୋଟି ବାଣରେ ବିଦ୍ଧ କରି ପୁନର୍ବାର ସନ୍ନତପର୍ବ ବିଂଶତି ଶରରେ ତାହାଙ୍କୁ ବିଦ୍ଧ କଲେ । ୪ । ପରନ୍ତୁ କର୍ଣ୍ଣ ନଅଗୋଟି ବାଣରେ ଭୀମଙ୍କ ବକ୍ଷସ୍ଥଳ ବିଦ୍ଧ କରି ସୁଶାଣିତ ଏକଗୋଟି ଶରଦ୍ୱାରା ତାହାଙ୍କର ଧ୍ୱଜକୁ ବିଦ୍ଧ କଲେ । ୫ ।

ତଦନନ୍ତର ଭୀମସେନ ଅଙ୍କୁଶାଘାତରେ ହସ୍ତୀକୁ ଓ କଶାଘାତରେ ଅଶ୍ୱକୁ ନିପୀଡ଼ିତ କଲାପ୍ରାୟ ଶାୟକସମୂହଦ୍ୱାରା କର୍ଣ୍ଣଙ୍କୁ ନିପୀଡ଼ିତ କଲେ । ୭ । ମହାବୀର କର୍ଣ୍ଣ ଯଶସ୍ୱୀ ପାଣ୍ଡୁପୁତ୍ରଙ୍କ ଶରଦ୍ୱାରା ଅତ୍ୟନ୍ତ ବିଦ୍ଧ ଓ କୋପରେ ଆରକ୍ତ ଲୋଚନ ହୋଇ ସୃକ୍କଣୀ ଲେହନପୂର୍ବକ ଇନ୍ଦ୍ର ବଳାସୁର ପ୍ରତି ବଜ୍ର ନିକ୍ଷେପ କଲାପ୍ରାୟ ସର୍ବଶରୀରବିଦାରଣକ୍ଷେମ ଗୋଟିଏ ଶର ଗ୍ରହଣପୂର୍ବକ ଭୀମଙ୍କ ପ୍ରତି ନିକ୍ଷେପ କଲେ । ୮ । କର୍ଣ୍ଣଙ୍କ ଶରାସନ-ନିର୍ମ୍ମୁକ୍ତ ଚିତ୍ରିତପୁଙ୍ଖବିଶିଷ୍ଟ ସେହି ଶର ଭୀମସେନଙ୍କ ଶରୀର ଭେଦ କରି ପୃଥିବୀମଧ୍ୟରେ ପ୍ରବେଶ କଲା । ୯ । ତଦନନ୍ତର ମହାବାହୁ ଭୀମସେନ କୋପରେ ଲୋହିତଲୋଚନ ହୋଇ ଚତୁର୍ହସ୍ତପରିମିତ ସର୍ବ ଲୌହମୟ ଛଅଗୋଟି ଶିରାଯୁକ୍ତ ସ୍ୱର୍ଣ୍ଣାଙ୍ଗଦବିଭୂଷିତ ଗୋଟିଏ ଗୁରୁଭାର ଗଦା ଗ୍ରହଣ କରି କୌଣସି ବିଷୟ ବିଚାର ନ କରି ସୂତପୁତ୍ରଙ୍କ ପ୍ରତି ନିକ୍ଷେପ କଲେ ।

ଯେପରି ସୁରପତି କ୍ରୁଦ୍ଧହୋଇ ଅଶନିଦ୍ୱାରା ଅସୁର କୁଳକୁ ନିର୍ମ୍ମୂଳ କରିଥିଲେ, ସେହିପରି ଭୀମ ସୂତପୁତ୍ରଙ୍କ ରଥ-ବହନ-ନିପୁଣ ଉତ୍ତମ ଅଶ୍ୱ-ମାନଙ୍କୁ ଗଦାଘାତରେ ଚୂର୍ଣ୍ଣ କଲେ । ତଦନନ୍ତର ଦୁଇଗୋଟି କ୍ଷୁରପ୍ରାସ୍ତ୍ର ଦ୍ୱାରା ରାଧାନନ୍ଦନଙ୍କର ରଥ-ଧ୍ୱଜ ଛେଦନ କରି ବହୁଳ ଶରଜାଳରେ ତାହାଙ୍କର ସାରଥିକୁ ନିପାତିତ କଲେ । କର୍ଣ୍ଣ ଧ୍ୱଜ, ଅଶ୍ୱ ଓ ସାରଥିବିହୀନ ରଥକୁ ପରିତ୍ୟାଗ କରି ଶରାସନ ବିସ୍ତାରଣପୂର୍ବକ ଦୁର୍ମ୍ମନା ହୋଇ ଭୂତଳରେ ଅବସ୍ଥାନ କଲେ । କିନ୍ତୁ ହେ ମହାରାଜ ! ସେହି ସ୍ଥଳରେ ଆମ୍ଭେମାନେ ତାହାଙ୍କର ଗୋଟିଏ ଆଶ୍ଚର୍ଯ୍ୟ ପରାକ୍ରମ ଦର୍ଶନ କଲୁଁ ଯେ, ସେହି ରଥି-ପ୍ରବର ରଥହୀନ ହୋଇ ମଧ୍ୟ ଶତ୍ରୁ ଭୀମସେନଙ୍କୁ ନିବାରଣ କଲେ ।

ଅନନ୍ତର ରାଜା ଦୁର୍ଯ୍ୟୋଧନ ରଥୀ କର୍ଣ୍ଣଙ୍କୁ ସମରରେ ରଥବିହୀନ ଅବଲୋକନ କରି ଭ୍ରାତା ଦୁର୍ମ୍ମୁଖକୁ କହିଲେ, ହେ ଦୁର୍ମ୍ମୁଖ ! ଦେଖ, ମହା-ରଥୀ କର୍ଣ୍ଣ ଭୀମଙ୍କକର୍ତ୍ତୃକ ରଥଭ୍ରଷ୍ଟ ହୋଇଅଛନ୍ତି । ତୁମ୍ଭେ ସେହି ନରଶ୍ରେଷ୍ଠଙ୍କୁ ଶୀଘ୍ର ରଥସ୍ଥ କର । ଦୁର୍ମ୍ମୁଖ ଦୁର୍ଯ୍ୟୋଧନଙ୍କର ବାକ୍ୟ ଶ୍ରବଣ କରି ତ୍ୱରା ସହକାରେ ରଥ ନେଇ କର୍ଣ୍ଣଙ୍କ ନିକଟରେ ପ୍ରବିଷ୍ଟ ହେଲେ । ଭୀମସେନଙ୍କୁ ଶରନିକରରେ ନିବାରଣ କଲେ । ବାୟୁନନ୍ଦନ ଭୀମ ସମରରେ ଦୁର୍ମ୍ମୁଖଙ୍କୁ କର୍ଣ୍ଣଙ୍କର ଅନୁଗାମୀ ହେବାର ଅବଲୋକନ କରି ହୃଷ୍ଟାନ୍ତଃକରଣରେ

ସୃକ୍କଣୀ ଲେହନ କରୁକରୁ ଶରଜାଲରେ କର୍ଣ୍ଣଙ୍କୁ ନିବାରଣ କରି ରଥ ନେଇ ଦୁର୍ମୁଖସମ୍ମୁଖରେ ଉପସ୍ଥିତ ହେଲେ ଓ ତତ୍‌କ୍ଷଣାତ୍ ତୀକ୍ଷ୍ଣାଗ୍ର ସନ୍ନତପର୍ବ ନଅଗୋଟି ବାଣଦ୍ୱାରା ତାହାକୁ ମୃତ୍ୟୁମୁଖକୁ ପ୍ରେରଣ କଲେ ।

ଦୁର୍ମ୍ମୁଖ ନିହତ ହୁଅନ୍ତେ କର୍ଣ୍ଣ ତାହାଙ୍କର ସେହି ରଥରେ ସମାରୂଢ଼ ହୋଇ ପ୍ରଦୀପ୍ତ ସୂର୍ଯ୍ୟସଦୃଶ ଶୋଭାପ୍ରାପ୍ତ ହେଲେ । କିନ୍ତୁ ସେ ଭୀମଙ୍କର ଶରରେ ଭିନ୍ନମର୍ମ୍ମ ଓ ଶୋଣିତକଳେବର ଦୁର୍ମ୍ମୁଖକୁ ଭୂତଳରେ ଶୟାନ ଅବଲୋକନ କରି ଅଶ୍ରୁପୂର୍ଣ୍ଣ ଲୋଚନରେ ମୁହୂର୍ତ୍ତକାଳ ସ୍ତମ୍ଭିତ ହୋଇଥିଲେ । ଅନନ୍ତର ବୀର କର୍ଣ୍ଣ ସେହି ଗତାସୁ-ଦୁର୍ମ୍ମୁଖଙ୍କ ନିକଟସ୍ଥ ହୋଇ ତାହାଙ୍କୁ ପ୍ରଦକ୍ଷିଣ କଲେ । ୨୩ । ସେହି ସମୟରେ ସେ କାହାକୁ କିଛି କହିଲେ ନାହିଁ । କେବଳ ଦୀର୍ଘ ଓ ଉଷ୍ଣ ନିଶ୍ୱାସ ପରିତ୍ୟାଗ କଲେ ।

ହେ ମହାରାଜ ! ଭୀମସେନ ସେହି ଅବସର ପ୍ରାପ୍ତ ହୋଇ ଗୃଧ୍ରପକ୍ଷ ସମନ୍ୱିତ ଚତୁର୍ଦ୍ଦଶ ଗୋଟି ନାରାଚ ସୂତପୁତ୍ରଙ୍କ ଉପରକୁ ନିକ୍ଷେପ କଲେ । ଭୀମନିକ୍ଷିପ୍ତ ଶୋଣିତପାୟୀ ଅତ୍ୟନ୍ତ ସାରବାନ୍ ସୁବର୍ଣ୍ଣପୁଙ୍ଖ ହେମଚିତ୍ରିତ ସେହି ନାରାଚସମୂହ ସୂତପୁତ୍ରଙ୍କ କବଚ ଭେଦ କରି ରୁଧିର ପାନପୂର୍ବକ ଦଶଦିଗକୁ ଆଲୋକମୟ କରଣାନନ୍ତର ଭୂତଳରେ ପ୍ରବିଷ୍ଟ ହେଲା ଓ କାଳପ୍ରେରିତ ଗମନଶୀଳ ଗର୍ତ୍ତମଧ୍ୟରେ ଅର୍ଦ୍ଧକାୟପ୍ରବିଷ୍ଟ କ୍ରୋଧୋଦ୍ଧତ ମହାଭୁଜଙ୍ଗ ସଦୃଶ ଶୋଭା ପାଇଲା । ରାଧାନନ୍ଦନ କର୍ଣ୍ଣ ମଧ୍ୟ ଜାମ୍ବୁନଦବିଭୂଷିତ ଅତି ଭୀଷଣ ଚତୁର୍ଦ୍ଦଶଗୋଟି ନାରାଚଦ୍ୱାରା ଅବିଚ୍ଛିନ୍ନ ଚିତ୍ତରେ ଭୀମସେନଙ୍କୁ ପ୍ରତିବିଦ୍ଧ କଲେ । ସେହି ସମସ୍ତ ଭୟଙ୍କର ନାରାଚ ପକ୍ଷିମାନେ କୁଞ୍ଜମଧ୍ୟରେ ପ୍ରବେଶ କଲାପ୍ରାୟ ଭୀମସେନଙ୍କର ବାମହସ୍ତକୁ ଭେଦକରି ଭୂଗର୍ଭରେ ପ୍ରବେଶ କଲା ।

ହେ ମହାରାଜ ! ଯେପରି ଦିନମଣି ଅସ୍ତାଚଳ ପ୍ରାପ୍ତହେଲେ ତାହାଙ୍କର ରଶ୍ମିସମୂହ ଦୀପ୍ତିପ୍ରାପ୍ତ ହୋଇଥାଏ, ସେହିପରି କର୍ଣ୍ଣଙ୍କର ନିକ୍ଷିପ୍ତ ନାରାଚନିକର ବସୁନ୍ଧରା ପ୍ରବେଶ କାଳରେ ଦୀପ୍ତିପ୍ରାପ୍ତ ହେଲା । ଯେପରି ଅଚଳ ଦେଶରୁ ଜଳରାଶି ନିଃସୃତ ହୁଏ, ସମରରେ କର୍ଣ୍ଣଙ୍କର ମର୍ମ୍ମଭେଦୀ ନାରାଚନିର୍ଭିନ୍ନ ଭୀମସେନଙ୍କ ଶରୀରରୁ ସେହିପରି ଅତିଶୟ ରୁଧିରସ୍ରାବ ହେଲା । ସେହି

ସମୟରେ ସେ କୁପିତହୋଇ ଗରୁଡ଼ତୁଲ୍ୟ ବେଗବାନ୍ ତିନିଗୋଟି ବାଣଦ୍ୱାରା କର୍ଣ୍ଣଙ୍କୁ ଓ ସାତଗୋଟି ବାଣଦ୍ୱାରା ତାହାଙ୍କର ସାରଥିକୁ ବିଦ୍ଧ କଲେ । ହେ ମହାରାଜ ! ମହାଯଶା କର୍ଣ୍ଣ ଭୀମସେନଙ୍କ ଶରନିକର ଦ୍ୱାରା ସମାଚ୍ଛନ୍ନ ହୋଇ ବିହ୍ୱଳ ହେଲେ ଓ ସଂଗ୍ରାମ ପରିତ୍ୟାଗ ପୂର୍ବକ ବେଗଗାମୀ ତୁରଙ୍ଗ ଦ୍ୱାରା ସେ ସ୍ଥାନରୁ ପ୍ରସ୍ଥାନ କଲେ । ପରନ୍ତୁ ଅତିରଥ ଭୀମସେନ ହେମପରିଷ୍କୃତ ଶରାସନକୁ ବିସ୍ତାରଣ କରି ଜ୍ୱଳନ୍ତ ଅନଳତୁଲ୍ୟ ରଣସ୍ଥଳରେ ଅବସ୍ଥାନ କଲେ । ୩୫ ।

---

## ୧୩୫ ଅଧ୍ୟାୟ

ଧୃତରାଷ୍ଟ୍ର କହିଲେ—ହେ ସଞ୍ଜୟ ! ଅଧିରଥ-ନନ୍ଦନ କର୍ଣ୍ଣ ମଧ୍ୟ ଭୀମସେନଙ୍କୁ ଯେତେବେଳେ ପରାଜିତ କରିପାରିଲେ ନାହିଁ କିନ୍ତୁ ସ୍ୱୟଂ ପରାଜିତ ହେଲେ ତେତେବେଳେ ଅନର୍ଥକ ପୁରୁଷକାରକୁ ଧିକ୍ ; ଦୈବହିଁ ଏକା ଆମ୍ଭ ବିବେଚନାରେ ଶ୍ରେଷ୍ଠ ଅଟେ । ୧ । ଦୁର୍ଯ୍ୟୋଧନ ମୁଖରୁ ଆମ୍ଭେ ବାରମ୍ବାର ଏହିକଥା ଶ୍ରବଣ କରିଅଛୁ ଯେ କର୍ଣ୍ଣ ଏକାକୀ ସମରରେ ଗୋବିନ୍ଦ ସହିତ ପାଣ୍ଡବମାନଙ୍କୁ ପରାଜୟ କରିବା ନିମିତ୍ତ ଉତ୍ସାହ କରି ପାରନ୍ତି । ଆମ୍ଭେ ଏହି ପୃଥିବୀରେ କର୍ଣ୍ଣଙ୍କତୁଲ୍ୟ ଯୋଦ୍ଧା ଆଉ କାହାରିକୁ ଦେଖୁନାହୁଁ । ସେହି ମୂଢ଼ ପୂର୍ବେ ଆମ୍ଭଙ୍କୁ ଆତୁର କହିଅଛି ଯେ କର୍ଣ୍ଣ ଦୃଢ଼ଧନ୍ୱା, ଜିତକ୍ଳମ, ଶୌର୍ଯ୍ୟସମ୍ପନ୍ନ ଓ ବଳବାନ୍ । ଅତଏବ ହେ ରାଜନ୍ ! ସମରରେ କର୍ଣ୍ଣ ଆମ୍ଭର ସହାୟ ଥିଲେ ହୀନ-ସତ୍ତ୍ୱ, ହତଚେତା ପାଣ୍ଡବମାନଙ୍କର କଥା ଦୂରେ ଥାଉ ଦେବଗଣ ମଧ୍ୟ ଆମ୍ଭଙ୍କୁ ପରାଜୟ କରିବାକୁ ସମର୍ଥ ହେବେ ନାହିଁ । ବର୍ତ୍ତମାନ ଦୁର୍ଯ୍ୟୋଧନ କର୍ଣ୍ଣଙ୍କୁ ସମରରେ ପରାଜିତ ଓ ନିର୍ବିଷଭୁଜଙ୍ଗତୁଲ୍ୟ ରଣଭୂମିରୁ ପଳାୟିତ ହେବାର ନିରୀକ୍ଷଣ କରି କଅଣ କହିଲା ?

ଅହୋ ! ଅଶ୍ୱତ୍ଥାମା, ମହାରାଜ ଶଲ୍ୟ, କୃପାଚାର୍ଯ୍ୟ ଓ କର୍ଣ୍ଣ ଏମାନେ ସମସ୍ତେ ମିଳିତ ହୋଇ ସୁଦ୍ଧା ସଂଗ୍ରାମରେ ଯାହା ସମ୍ମୁଖରେ ଅବସ୍ଥାନ କରିପାରନ୍ତି ନାହିଁ, ସେହି ଜ୍ୱଳଦଗ୍ନିତୁଲ୍ୟ

ଭୀମସେନ ନିକଟକୁ ପତଙ୍ଗରୂପ ଯୁଦ୍ଧରେ ଅପଟୁ ଏକାକୀ ଦୁର୍ମୁଖକୁ ଦୁର୍ଯ୍ୟୋଧନ ମୋହବଶତଃ ପ୍ରେରଣ କଲା । ପୁଣି ଅଶ୍ୱତ୍ଥାମା ପ୍ରଭୃତି ମହାରଥମାନେ ମଧ୍ୟ ବାୟୁତୁଲ୍ୟ ତେଜସ୍ୱୀ ଭୀମସେନର ବଳ, କ୍ରୋଧ ଓ ପରାକ୍ରମ ବିଷୟରେ ଅନଭିଜ୍ଞ ନୁହନ୍ତି । ସେମାନେ ତାହାର ସେହି ନିଷ୍ଠୁର ସ୍ୱଭାବ ଓ ଅଯୁତ ନାଗସମ ଅତିଭୀଷଣ ବଳବିଷୟ ଜାଣି ଓ ତାହାକୁ କ୍ରୂରକର୍ମା ଓ ସାକ୍ଷାତ୍ କାଳାନ୍ତକ ଯମସଦୃଶ ଅବଗତ ହୋଇ ମଧ୍ୟ କି ନିମିତ୍ତ ସମରରେ କୁପିତ କରିବେ ! ମହାବାହୁ କର୍ଣ୍ଣ ସ୍ୱୀୟ ବଳକୁ ଆଶ୍ରୟ କରି ଅନାଦର ପୂର୍ବକ ଭୀମସେନ ସହିତ ଯୁଦ୍ଧ କରିଥିଲେ । କିନ୍ତୁ ପୁରନ୍ଦର ଯେପରି ଅସୁରମାନଙ୍କୁ ଜୟ କରିଥିଲେ ଭୀମସେନ ସେହିପରି ତାହାଙ୍କୁ ପରାଜିତ କରିଅଛି । ଏପରି କୌଣସି ବ୍ୟକ୍ତି ନାହିଁ ଯେ କି ସମରରେ ଭୀମକୁ ପରାଜୟ କରିପାରିବ । ବିଶେଷତଃ ସେ ଯେତେବେଳେ ଅର୍ଜୁନର ଅନ୍ୱେଷଣାଭିଳାଷରେ ଦ୍ରୋଣଙ୍କୁ ପ୍ରମଥିତ କରି ଆମ୍ଭ ସୈନ୍ୟମଧ୍ୟରେ ପ୍ରବେଶ କରିଅଛି ତେତେବେଳେ ଜୀବିତାକାଙ୍କ୍ଷୀ ହୋଇ ଆଉ କେଉଁ ବ୍ୟକ୍ତି ତାହାଙ୍କୁ ଉତ୍ତ୍ୟକ୍ତ କରିପାରିବ ?

ହେ ସଞ୍ଜୟ ! ଯେପରି ଦାନବଗଣ ଉଦ୍ୟତ ବଜ୍ର-ହସ୍ତ ଦେବରାଜଙ୍କ ସମ୍ମୁଖରେ ଅବସ୍ଥାନ କରିବାକୁ ଉତ୍ସାହ କରନ୍ତି ନାହିଁ, ସେହିପରି ଗଦାପାଣି ଭୀମସେନର ସମ୍ମୁଖରେ କେଉଁ ବ୍ୟକ୍ତି ଅବା ଅବସ୍ଥାନ କରିବାକୁ ସମର୍ଥ ହେବ ! ପ୍ରେତରାଜପୁରକୁ ପ୍ରାପ୍ତହୋଇ ମନୁଷ୍ୟ ପ୍ରତିନିବୃତ୍ତ ହୋଇପାରେ, କିନ୍ତୁ ସମରରେ ଭୀମନିକଟରୁ କେବେହେଁ ଫେରିଆସି ପାରିବ ନାହିଁ । ଯେଉଁ ଅଳ୍ପବୁଦ୍ଧି ବ୍ୟକ୍ତିମାନେ ଅଜ୍ଞାନତାବଶରୁ ସମରରେ କ୍ରୁଦ୍ଧ ଭୀମସେନଙ୍କ ସମ୍ମୁଖବର୍ତ୍ତୀ ହୁଅନ୍ତି, ସେମାନେ ପତଙ୍ଗମାନଙ୍କର ଅଗ୍ନିପ୍ରବେଶତୁଲ୍ୟ ଭୀମରୂପ ବହ୍ନିରେ ପ୍ରବେଶ କରନ୍ତି । ପୂର୍ବେ ଉଦ୍ଧତ ଓ କଠୋରସ୍ୱଭାବ ଭୀମସେନ ଦ୍ୟୂତକ୍ରୀଡ଼ା ସଭାରେ ଆମ୍ଭପୁତ୍ରମାନଙ୍କୁ ବଧ ବିଷୟରେ କୌରବଗଣଙ୍କ ସାକ୍ଷାତରେ ଯେଉଁ ପ୍ରତିଜ୍ଞା କରିଥିଲେ, ସେହି ବିଷୟ ଚିନ୍ତାକରି ଓ କର୍ଣ୍ଣଙ୍କୁ ଭୀମଙ୍କଦ୍ୱାରା ପରାଜିତ ଅବଲୋକନ କରି ଦୁଃଶାସନ ଦୁର୍ଯ୍ୟୋଧନ ସହିତ ଭୟପ୍ରଯୁକ୍ତ ଭୀମଙ୍କସହ ଯୁଦ୍ଧ କରିବାରୁ ବିରତ ହେଲା ।

ଦୁର୍ବୁଦ୍ଧି ଦୁର୍ଯୋଧନ ପୂର୍ବେ ବାରମ୍ବାର କହୁଥିଲା ଯେ, ଆମ୍ଭେ କର୍ଣ୍ଣ ଓ ଦୁଃଶାସନ ଏହି ତିନିଜଣ ମିଳିତ ହୋଇ ସମରରେ ପାଣ୍ଡବମାନଙ୍କୁ ପରାଜିତ କରିବୁ କିନ୍ତୁ ବର୍ତ୍ତମାନ ସେ କର୍ଣ୍ଣଙ୍କୁ ରଥଭ୍ରଷ୍ଟ ଓ ପରାଜିତ ହେବାର ଅବଲୋକନ କରି କୃଷ୍ଣଙ୍କ ପ୍ରତ୍ୟାଖ୍ୟାନ ନିମିତ୍ତ ଅବଶ୍ୟ ସନ୍ତାପ କରୁଅଛି, ଏଥିରେ ସନ୍ଦେହ ନାହିଁ । ଆମ୍ଭ ପୁତ୍ର ବଦ୍ଧସନ୍ନାହ ଭ୍ରାତୃମାନଙ୍କୁ ଭୀମଙ୍କ କର୍ତ୍ତୃକ ନିହତ ହେବାର ନିରୀକ୍ଷଣ କରି ନିଶ୍ଚୟ ଆପଣାର ଅପରାଧ ବିଷୟରେ ଅତିଶୟ ସନ୍ତାପ କରୁଅଛି । କେଉଁ ବ୍ୟକ୍ତିର ଜୀବିତାଶା ନାହିଁ ଯେ, ସେ ସଂଗ୍ରାମରେ ସାକ୍ଷାତ୍ କାଳସଦୃଶ ଅବସ୍ଥିତ ଭୀଷଣ ଅସ୍ତ୍ରଧାରୀ କୁପିତ ଶତ୍ରୁ ଭୀମସେନଙ୍କ ନିକଟକୁ ଗମନ କରିବ ! ଆମ୍ଭ ବିବେଚନାରେ କେହି ବଡ଼ବାଗ୍ନି ମଧ୍ୟଗତ ହୋଇ କଦାଚିତ୍ ପରିତ୍ରାଣ ପାଇପାରେ ; କିନ୍ତୁ ସଂଗ୍ରାମରେ ଭୀମଙ୍କ ନିକଟରୁ କେବେହେଁ ପରିତ୍ରାଣ ପାଇପାରିବେ ନାହିଁ । ପୃଥାପୁତ୍ରମାନେ, ପାଞ୍ଚାଳମାନେ, କେଶବ ଓ ସାତ୍ୟକି ଏମାନେ ଯୁଦ୍ଧରେ ସଚେଷ୍ଟ ହେଲେ ଜୀବନ ରକ୍ଷାକରିବା ଅସମ୍ଭବ । ଅତଏବ, ହେ ସୂତ ! ଆମ୍ଭର ପୁତ୍ରମାନଙ୍କର ଜୀବନ ବିପଦରେ ନିଶ୍ଚୟ ପତିତ ହୋଇଅଛି, ସନ୍ଦେହ ନାହିଁ ।

ସଞ୍ଜୟ କହିଲେ—ହେ କୁରୁଶ୍ରେଷ୍ଠ ମହାରାଜ ! ବର୍ତ୍ତମାନ ଉପସ୍ଥିତ ମହାଭୟରେ ଆପଣ ଶୋକ କରୁଅଛନ୍ତି କିନ୍ତୁ ଆପଣ ଏକା ନିଃସନ୍ଦେହରେ ସମସ୍ତ ବିନାଶର ମୂଳ ଅଟନ୍ତି । କାରଣ ସେ ସମୟରେ ଆପଣ ପୁତ୍ରମାନଙ୍କର ମତାବଲମ୍ବୀ ହୋଇ ଆସନ୍ନମୃତ୍ୟୁ ବ୍ୟକ୍ତି ଔଷଧ ଓ ପଥ୍ୟ ଗ୍ରହଣ ନକଲା-ପ୍ରାୟ ହିତୈଷୀ ବନ୍ଧୁମାନେ ବାରମ୍ବାର କହିଲେ ମଧ୍ୟ ଆପଣ କାହାରି କଥା ଗ୍ରହଣ ନ କରି ସ୍ୱୟଂ ଏହି ମହତ୍ ଶତ୍ରୁତା ଉତ୍ପାଦନ କରିଅଛନ୍ତି । ୨୬ । ହେ ମହାରାଜ ! ଆପଣ ସ୍ୱୟଂ ଯେଉଁ କାଳକୂଟ ପାନ କରିଅଛନ୍ତି ତାହା ସହଜରେ ଜୀର୍ଣ୍ଣ ହେବାର ନୁହେ । ସୁତରାଂ ତାହାର ସମସ୍ତ ଫଳ ଆପଣ ବର୍ତ୍ତମାନ ଭୋଗ କରନ୍ତୁ । ୨୭ । ଯୋଦ୍ଧାମାନେ ଯଥାଶକ୍ତି ଯୁଦ୍ଧ କଲେ ମଧ୍ୟ ଆପଣ ସେମାନଙ୍କୁ ନିନ୍ଦା କରୁଅଛନ୍ତି । କିନ୍ତୁ ଯେପରି ଯୁଦ୍ଧ ହୋଇ-ଥିଲା, ତାହା ସମସ୍ତ ବର୍ଣ୍ଣନ କରୁଅଛୁଁ ଶ୍ରବଣ କରନ୍ତୁ । ୨୮ ।

ଆପଣଙ୍କ ପୁତ୍ର ମହାଧନୁର୍ଦ୍ଧର ଦୁର୍ମର୍ଷଣ, ଦୁଃସହ, ଦୁର୍ମଦ, ଦୁର୍ଦ୍ଧର ଓ ଜୟ କର୍ଣ୍ଣଙ୍କୁ ଭୀମଙ୍କକର୍ତ୍ତୃକ ପରାଜିତ ହେବାର ଦେଖି ସହିପାରିଲେ ନାହିଁ । ସେହି ପଞ୍ଚସହୋଦର ଅପୂର୍ବ ସନ୍ନାହଯୁକ୍ତ ହୋଇ ଭୀମସେନଙ୍କ ପ୍ରତି ଅଭିଦ୍ରୁତ ହେଲେ । ୩୦ । ସେମାନେ ମହାବାହୁ ଭୀମଙ୍କୁ ଚତୁର୍ଦ୍ଦିଗରୁ ପରିବେଷ୍ଟନ କରି ଶଲଭସଦୃଶ ଶରଜାଲରେ ସମସ୍ତ ଦିଗକୁ ସମାବୃତ କଲେ । ୩୧ । ଭୀମସେନ ସେହିସମସ୍ତ ଦେବତୁଲ୍ୟ କୁମାରମାନଙ୍କୁ ସହସା ସମରରେ ସମାଗତ ହେବାର ଦେଖି ସେମାନଙ୍କୁ ପ୍ରତିଗ୍ରହ କଲେ । ୩୨ । ରାଧାନନ୍ଦନ କର୍ଣ୍ଣ ଆପଣଙ୍କ ପୁତ୍ରମାନଙ୍କୁ ମହାବଳବାନ୍ ଭୀମସେନଙ୍କର ପୁରୋବର୍ତ୍ତୀ ଅବଲୋକନ କରି ତାହାଙ୍କ ସମ୍ମୁଖରେ ଉପସ୍ଥିତ ହେଲେ ।୩୩।

ପରନ୍ତୁ ଭୀମସେନ ଆପଣଙ୍କ ପୁତ୍ରମାନଙ୍କକର୍ତ୍ତୃକ ନିବାର୍ଯ୍ୟମାଣ ହୋଇ ମଧ୍ୟ ସୁବର୍ଣ୍ଣପୁଙ୍ଖ ଶିଳାଶାଣିତ ତୀକ୍ଷ୍ଣ ଶରଜାଲ ବିମୋଚନ କରୁ କରୁ ସତ୍ୱର କର୍ଣ୍ଣଙ୍କ ପ୍ରତି ଅଭିଦ୍ରୁତ ହେଲେ । ୩୪ । ଅନନ୍ତର ସେହି କୁରୁବଂଶୀୟ ରାଜପୁତ୍ରଗଣ କର୍ଣ୍ଣଙ୍କର ଚତୁର୍ଦ୍ଦିଗରେ ଅବସ୍ଥାନପୂର୍ବକ ଭୀମଙ୍କ ପ୍ରତି ସନ୍ନତପର୍ବ ଶରଜାଲ ବିକୀର୍ଣ୍ଣ କଲେ । ୩୫ । ହେ ମହାରାଜ ! ଭୀମସେନ ଆପଣଙ୍କ ସେହି ଭୟାନକ କାର୍ମୁକଧାରୀ ନରଶ୍ରେଷ୍ଠ ପୁତ୍ରମାନଙ୍କୁ ପଞ୍ଚବିଂଶତି ବାଣରେ ଅଶ୍ୱ ଓ ସାରଥିସହିତ ଶମନଭବନକୁ ପ୍ରେରଣ କଲେ । ୩୬ । ଯେପରି ନାନାବର୍ଣ୍ଣ କୁସୁମସମନ୍ୱିତ ମହାଦ୍ରୁମସମୂହ ବାୟୁକର୍ତ୍ତୃକ ଭଗ୍ନ ହୋଇ ନିପତିତ ହୁଏ, ସେମାନେ ସେହିପରି ଭୀମଙ୍କ ଶରରେ ଗତାସୁ ହୋଇ ସାରଥିସହିତ ରଥରୁ ନିପତିତ ହେଲେ । ୩୭ । ସେ ସ୍ଥଳରେ ଆମ୍ଭେମାନେ ଭୀମସେନଙ୍କର ଏହି ଆଶ୍ଚର୍ଯ୍ୟ ପରାକ୍ରମ ଅବଲୋକନ କଲୁଁ ଯେ, ସେ ଶରନିକରଦ୍ୱାରା କର୍ଣ୍ଣଙ୍କୁ ନିବାରିତ କରି ଆପଣଙ୍କ ପୁତ୍ରମାନଙ୍କୁ ସଂହାର କଲେ । ୩୮ । ସୂତପୁତ୍ର ଭୀମସେନଙ୍କ ନିଶିତ ଶରଜାଲଦ୍ୱାରା ଚତୁର୍ଦ୍ଦିଗରେ ନିବାର୍ଯ୍ୟମାଣ ହୋଇ ତାହାଙ୍କୁ ନିରୀକ୍ଷଣ କଲେ । ୩୯ । ଭୀମସେନ ମଧ୍ୟ ସଂରମ୍ଭହେତୁ କ୍ରୋଧରେ ଆରକ୍ତନେତ୍ର ହୋଇ ସୁମହତ୍ ଶରାସନ ବିସ୍ଫାରଣ କରି ବାରମ୍ବାର କର୍ଣ୍ଣଙ୍କ ପ୍ରତି ଦୃଷ୍ଟିପାତ କଲେ । ୪୦ ।

---

# ୧୩୫ ଅଧ୍ୟାୟ

ସଞ୍ଜୟ କହିଲେ—ହେ ମହାରାଜ ! ପ୍ରତାପବାନ୍ କର୍ଣ୍ଣ ଆପଣଙ୍କର ପୁତ୍ରମାନଙ୍କୁ ନିପତିତ ହେବାର ନିରୀକ୍ଷଣ କରି ଅତିଶୟ କ୍ରୋଧାବିଷ୍ଟ ହୋଇ ଜୀବନରେ ନିରପେକ୍ଷ ହେଲେ । ୧ । ସେ ନିଜ ସମ୍ମୁଖରେ ଆପଣଙ୍କ ପୁତ୍ର-ମାନଙ୍କୁ ଭୀମସେନଦ୍ୱାରା ସମରରେ ନିପାତିତ ହେବାର ଅବଲୋକନ କରି ଆପଣଙ୍କୁ ଅପରାଧୀ ମନେ କଲେ । ୨ । ତଦନନ୍ତର ଭୀମସେନ ପୂର୍ବ ଶତ୍ରୁତା ସ୍ମରଣ କରି କ୍ରୋଧପରବଶ ହୋଇ ସଯତ୍ନମନରେ କର୍ଣ୍ଣଙ୍କ ପ୍ରତି ନିଶିତଶରସମୂହ ନିକ୍ଷେପ କଲେ । ୩ । କର୍ଣ୍ଣ ଭୀମସେନଙ୍କୁ ଅବଜ୍ଞାପୂର୍ବକ ପାଞ୍ଚଗୋଟି ବାଣରେ ବିଦ୍ଧ କରି ପୁନର୍ବାର ଶିଳାଶାଣିତ ସୁବର୍ଣ୍ଣପୁଙ୍ଖ ସପ୍ତତି-ବାଣଦ୍ୱାରା ତାହାଙ୍କୁ ବିଦ୍ଧ କଲେ । ୪ । କିନ୍ତୁ ଭୀମସେନ କର୍ଣ୍ଣନିକ୍ଷିପ୍ତ ସେହି ବାଣସମୂହକୁ କିଞ୍ଚିନ୍ମାତ୍ର ଗଣ୍ୟ ନ କରି ଆନତପର୍ବ ଶତବାଣଦ୍ୱାରା ରାଧା-ନନ୍ଦନଙ୍କୁ ବିଦ୍ଧ କଲେ ଓ ପାଞ୍ଚଗୋଟି ତୀକ୍ଷ୍ଣ ଶରରେ କର୍ଣ୍ଣଙ୍କ ମର୍ମ-ସ୍ଥଳ ଭେଦକରି ତତ୍ପରେ ଗୋଟିଏ ଭଲ୍ଲଦ୍ୱାରା ତାହାଙ୍କର ଶରାସନ ଛେଦନ କଲେ । ୫ । ତହିଁରେ କର୍ଣ୍ଣ ବିମନା ହୋଇ ଅପର ଗୋଟିଏ କାର୍ମୁକ ଗ୍ରହଣପୂର୍ବକ ଶତ୍ରୁତାପନ ଭୀମସେନଙ୍କୁ ଶରଜାଲରେ ସମାଚ୍ଛାଦିତ କଲେ । ୬ । ପରନ୍ତୁ ଭୀମସେନ ତାହାଙ୍କର ଅଶ୍ୱ ଓ ସାରଥିକୁ ନିହତ କରି ବୈର ନିର୍ଯ୍ୟାତନ କରିବା ହେତୁ ପୁନଃ ପୁନଃ ଉଚ୍ଚୈଃସ୍ୱରରେ ହାସ୍ୟ କଲେ । ତତ୍ପରେ ସେହି ପୁରୁଷଶ୍ରେଷ୍ଠ ପାଣ୍ଡୁପୁତ୍ର ପୁନର୍ବାର ଶରନିକରଦ୍ୱାରା କର୍ଣ୍ଣଙ୍କ ଶରାସନକୁ ଛେଦନ କଲେ ।

ହେ ମହାରାଜ ! ସେହି ସୁବର୍ଣ୍ଣପୃଷ୍ଠଶୋଭିତ କାର୍ମୁକ ଭୀମଙ୍କ ଶରଦ୍ୱାରା ନିକୃତ୍ତ ହୋଇ ମହାଶବ୍ଦସହିତ ଭୂତଳରେ ପତିତ ହେଲା । ମହାରଥି କର୍ଣ୍ଣ ରଥରୁ ଅବତରଣ କଲେ ଓ କ୍ରୋଧରେ ଗଦା ଗ୍ରହଣ କରି ଭୀମଙ୍କ ପ୍ରତି ନିକ୍ଷେପ କଲେ । ୧୦ । ଭୀମସେନ ସେହି ମହତୀ ଗଦାକୁ ଆସିବାର ଦେଖି ସର୍ବସୈନ୍ୟମାନଙ୍କ ସମକ୍ଷରେ ଶରସମୂହଦ୍ୱାରା ତାହାକୁ ନିବାରଣ କଲେ । ୧୧ । ତତ୍ପରେ ପରାକ୍ରମଶାଳୀ ପାଣ୍ଡୁପୁତ୍ର କର୍ଣ୍ଣଙ୍କର ବଧାକାଂକ୍ଷୀ ହୋଇ ଉଗ୍ରସହକାରେ ସହସ୍ର ସହସ୍ର ବାଣ ନିକ୍ଷେପ କଲେ । ୧୨ । କର୍ଣ୍ଣ ଭୀମନିକ୍ଷିପ୍ତ ସେହି ବାଣମାନଙ୍କୁ ବାଣଦ୍ୱାରା ନିବାରିତ କରି

ଶରନିକରଦ୍ୱାରା ତାହାଙ୍କର କବଚଚ୍ଛେଦନ କରି ଭୂତଳରେ ନିପାତିତ କଲେ । ତଦ୍ୱାରେ ସମସ୍ତସୈନ୍ୟଙ୍କ ସାକ୍ଷାତରେ ପଞ୍ଚବିଂଶତି ବାଣଦ୍ୱାରା ଭୀମଙ୍କୁ ଅତିଶୟ ପୀଡ଼ିତ କଲେ । ତାହା ଅଦ୍ଭୁତସଦୃଶ ହୋଇଥିଲା ।୧୪। ତଦନନ୍ତର ମହାବାହୁ ଭୀମସେନ କ୍ରୁଦ୍ଧ ହୋଇ ସନ୍ନତପର୍ବ ନଅଗୋଟି ବାଣ କର୍ଣ୍ଣଙ୍କ ପ୍ରତି ନିକ୍ଷେପ କଲେ ।। ୧୫ । ହେ ମହାରାଜ ! ଯେପରି ଭୁଜଙ୍ଗମାନେ ବଲ୍ମୀକ ମଧ୍ୟରେ ପ୍ରବେଶ କରନ୍ତି, ସେହିପରି ଭୀମନିକ୍ଷିପ୍ତ ସେହି ତୀକ୍ଷ୍ଣ ଶରସମୂହ କର୍ଣ୍ଣଙ୍କ କବଚ ଓ ଦକ୍ଷିଣବାହୁ ଭେଦ କରି ଭୂଗର୍ଭରେ ପ୍ରବେଶ କଲା । ୧୬ । କର୍ଣ୍ଣ, ଭୀମଶରାସନଚ୍ୟୁତ ବାଣଜାଲରେ ସମାଚ୍ଛନ୍ନ ହୋଇ ପୁନର୍ବାର ସମରରେ ତାହାଙ୍କଦ୍ୱାରା ପରାଙ୍ମୁଖ ହେଲେ । ୧୭ ।

ରାଜା ଦୁର୍ଯ୍ୟୋଧନ ସୂତପୁତ୍ରଙ୍କୁ ଭୀମଙ୍କ ଶରଦ୍ୱାରା ସମାଚ୍ଛନ୍ନ ହୋଇ ରଣସ୍ଥଳରୁ ପାଦଚଳନଦ୍ୱାରା ପଳାୟନ କରିବାର ଦେଖି ଭ୍ରାତୃମାନଙ୍କୁ ଆଦେଶ କଲେ । ହେ ଭ୍ରାତୃଗଣ ! ତୁମ୍ଭେମାନେ ସର୍ବତୋଭାବେ ଯତ୍ନଶୀଳ ହୋଇ କର୍ଣ୍ଣଙ୍କ ରକ୍ଷାନିମିତ୍ତ ସତ୍ୱର ଦୃଷ୍ଟ । ଅନନ୍ତର ଚିତ୍ର, ଉପଚିତ୍ର, ଚିତ୍ରାକ୍ଷ, ଚାରୁଚିତ୍ର, ଶରାସନ, ଚିତ୍ରାୟୁଧ, ଚିତ୍ରବର୍ମା, ଆପଣଙ୍କର ଏହି ବିଚିତ୍ରଯୋଦ୍ଧା ପୁତ୍ରମାନେ ଦୁର୍ଯ୍ୟୋଧନଙ୍କର ଆଦେଶକ୍ରମେ ବାଣ ନିକ୍ଷେପ କରୁ କରୁ ସତ୍ୱର ଭୀମଙ୍କ ନିକଟକୁ ଅଭିଦ୍ରୁତ ହେଲେ । ଭୀମସେନ ଆପଣଙ୍କର ପୁତ୍ରମାନଙ୍କ ସତ୍ୱର ସମରରେ ସମାଗତ ହେବାର ଦେଖି ସେମାନଙ୍କର ପ୍ରତ୍ୟେକଙ୍କୁ ଗୋଟିଏ ଗୋଟିଏ ବାଣରେ ନିପାତିତ କଲେ । ସେମାନେ ବାତାହତ ବୃକ୍ଷସଦୃଶ ଧରାତଳରେ ନିପତିତ ହେଲେ । ୨୨ । କର୍ଣ୍ଣ ଆପଣଙ୍କର ସେହି ମହାରଥୀ ପୁତ୍ରମାନଙ୍କୁ ଭୀମଶରରେ ନିହତ ହେବାର ଦେଖି ଅଶ୍ରୁପୂର୍ଣ୍ଣ ନୟନରେ ବିଦୁରଙ୍କର ବାକ୍ୟସମୂହ ସ୍ମରଣ କଲେ ଓ ସତ୍ୱର ଆଉ ଗୋଟିଏ ରଥକୁ ବିଧିପୂର୍ବକ ସୁସଜ୍ଜିତ କରି ତତ୍କ୍ଷଣରେ ଆରୋହଣାନନ୍ତର ପୁନର୍ବାର ପରାକ୍ରମ ସହିତ ଭୀମଙ୍କ ପ୍ରତି ଧାବିତ ହେଲେ ।୨୪। ସେ ଦୁହେଁ ପରସ୍ପର ପରସ୍ପରକୁ ଶିଳାଶାଣିତ ସ୍ୱର୍ଣ୍ଣପୁଙ୍ଖ ଶର-ଜାଲରେ ଭେଦକରି ସୂର୍ଯ୍ୟରଶ୍ମିଦ୍ୱାରା ଭିଦ୍ୟମାନ ଦୁଇଖଣ୍ଡ ମେଘସଦୃଶ ଶୋଭାପ୍ରାପ୍ତ ହେଲେ । ୨୫ । ପାଣ୍ଡୁପୁତ୍ର ଭୀମ କୁପିତ ହୋଇ ଶିଳାଶାଣିତ ସୁବର୍ଣ୍ଣପୁଙ୍ଖ ଷଟ୍‌ତ୍ରିଂଶ ବାଣରେ କର୍ଣ୍ଣଙ୍କର କବଚ ଭେଦ କଲେ । ୨୬ ।

ମହାବାହୁ କର୍ଣ୍ଣ ମଧ୍ୟ ସନ୍ନତପର୍ବ ପଞ୍ଚାଶତ ବାଣଦ୍ୱାରା ଭୀମସେନଙ୍କୁ ବିଦ୍ଧ କଲେ । ୨୭ । ରକ୍ତଚନ୍ଦନଲିପ୍ତାଙ୍ଗ ସେହି ବୀରଦ୍ୱୟ ଶରଜାଲରେ କ୍ଷତ-ବିକ୍ଷତ ହୋଇ ରକ୍ତାକ୍ତ କଳେବର ଏକକାଳୀନ ଉଦିତ ଚନ୍ଦ୍ରସୂର୍ଯ୍ୟସଦୃଶ ଶୋଭା ପାଇଲେ । ୨୮ । ଶସ୍ତ୍ରଦ୍ୱାରା ଉଭୟଙ୍କର କବଚ ଛିନ୍ନ ହେବାରୁ ଉଭୟେ ଶୋଣିତସିକ୍ତଦେହ ହୋଇ ନିର୍ମୋକ-ନିର୍ମୁକ୍ତ ଭୁଜଙ୍ଗସଦୃଶ ଅବସ୍ଥାନ କଲେ ।

ଦୁଇଗୋଟି ବ୍ୟାଘ୍ର କରାଳ ଦନ୍ତରୂପ ଅସ୍ତ୍ରଦ୍ୱାରା ପରସ୍ପର ପରସ୍ପରକୁ ପ୍ରହାର କରି ବାରିଧାରାବର୍ଷୀ ମେଘଯୁଗଳସଦୃଶ ନିରନ୍ତର ଶରଧାରା ବର୍ଷଣ କଲେ । ୩୦ । ଦୁଇଗୋଟି ହସ୍ତୀ ଦନ୍ତଦ୍ୱାରା ପରସ୍ପର ପରସ୍ପରକୁ ପ୍ରହାର କଲାପ୍ରାୟ ସେ ଦୁହେଁ ଶରଦ୍ୱାରା ପରସ୍ପର ପରସ୍ପରର ଶରୀରକୁ ଭେଦ କରି ଉଭୟେ ମନୋହର ରୂପରେ ଶୋଭମାନ ହେଲେ । ୩୧ । ସେହି ରଥସତ୍ତମ ଦୁହେଁ କେତେବେଳେ ସିଂହନାଦ, କେତେବେଳେ ଉଲ୍ଲମ୍ଫନ, କେତେବେଳେ ମଣ୍ଡଳାକାରରେ ରଥକୁ ପରିଭ୍ରାମିତ କରି କ୍ରୀଡ଼ାକଲାପରି ପ୍ରଶୋଭମାନ ହେଲେ । ୩୨ । ସିଂହସଦୃଶ ବିକ୍ରମଶାଳୀ ପରାକ୍ରାନ୍ତ ନରସିଂହ ମହାବଳ ଭୀମ ଓ କର୍ଣ୍ଣ ବୃଷଭଦ୍ୱୟ ଋତୁମତୀ ଗବୀନିମିତ୍ତ ଗର୍ଜ୍ଜନ କଲାପ୍ରାୟ ଗର୍ଜ୍ଜନପୂର୍ବକ କ୍ରୋଧରେ ରକ୍ତନେତ୍ର ହୋଇ ପରସ୍ପରକୁ ଅବଲୋକନ କରି ଦେବରାଜ ଶଚୀପତି ଓ ବିରୋଚନପୁତ୍ର ବଳସଦୃଶ ଯୁଦ୍ଧରେ ପ୍ରବୃତ୍ତ ହେଲେ । ୩୪ । ହେ ମହାରାଜ ! ଅନନ୍ତର ମହାବାହୁ ଭୀମସେନ ଶରାସନ ଆସ୍ଫାଳନ ପୂର୍ବକ ସବିଦ୍ୟୁତ୍ ବାରିଦ-ପଟଳସଦୃଶ ରଣାଙ୍ଗନରେ ବିରାଜମାନ ହେଲେ । ୩୫ । ତାହାଙ୍କର ରଥନେମିର ନିର୍ଘୋଷ ମେଘଗର୍ଜ୍ଜନ ସ୍ୱରୂପ ଓ ହସ୍ତସ୍ଥିତ ଶରାସନ ସୌଦାମିନୀ ସ୍ୱରୂପ ଓ ସେ ନିଜେ ମହାମେଘ ସ୍ୱରୂପ ହୋଇ ଶରଧାରା ରୂପ ଜଳବର୍ଷଣପୂର୍ବକ କର୍ଣ୍ଣରୂପ ପର୍ବତକୁ ସମାଚ୍ଛାଦିତ କଲେ ।

ହେ ଭାରତ ! ଭୀମପରାକ୍ରମ ଭୀମସେନ ଏହିରୂପରେ ସହସ୍ର ଶରଦ୍ୱାରା କର୍ଣ୍ଣଙ୍କୁ ସମାକୀର୍ଣ୍ଣ କଲେ । ୩୭ । ସେ ଯାହା କର୍ଣ୍ଣଙ୍କୁ କଙ୍କପତ୍ର-ଯୁକ୍ତ ସୁପୁଙ୍ଖ ବାଣଜାଲରେ ସମାବୃତ କଲେ, ଆପଣଙ୍କର ପୁତ୍ରମାନେ ତାହାଙ୍କର ସେହି ପରାକ୍ରମ ଅବଲୋକନ କଲେ । ୩୮ । ସେ ଯଶସ୍ୱୀ

କେଶବ, ଅର୍ଜୁନ ଓ ସାତ୍ୟକିଙ୍କୁ ଓ ଚକ୍ରରକ୍ଷକ ଦ୍ୱୟଙ୍କୁ ଭୀମ ଆନନ୍ଦିତ କରି ସମରରେ କର୍ଣ୍ଣଙ୍କୁ ନିବାରିତ କଲେ । ୩୯ । ହେ ମହାରାଜ ! ଆପଣଙ୍କ ପୁତ୍ରମାନେ ମହାତ୍ମା ଭୀମସେନଙ୍କ ପରାକ୍ରମ, ଧୈର୍ଯ୍ୟ ଓ ବାହୁବଳ ଅବଲୋକନ କରି ବିମନା ହେଲେ । ୪୦ ।

---

# ୧୩୭ ଅଧ୍ୟାୟ

ସଞ୍ଜୟ କହିଲେ—ହେ ମହାରାଜ ! ଗୋଟିଏ ମତ୍ତଗଜ ଯେପରି ପ୍ରତିପକ୍ଷ ଗଜର ଗର୍ଜ୍ଜନ ଶ୍ରବଣ କରି ସହି ପାରେ ନାହିଁ, ସେହିପରି ରାଧା-ନନ୍ଦନ କର୍ଣ୍ଣ ମଧ୍ୟ ଭୀମସେନଙ୍କର ଜ୍ୟା-ନିର୍ଘୋଷ ଓ ତାଳ ଶବ୍ଦ ଶ୍ରବଣ କରି ସହି ପାରିଲେ ନାହିଁ । ୧ । ସେ ସେହି ସମୟରେ କ୍ଷଣକାଳ ରଣସ୍ଥଳରୁ ଅପକ୍ରାନ୍ତ ହୋଇଥିଲେହେଁ ଭୀମ ଶରରେ ଆପଣଙ୍କ ପୁତ୍ରମାନେ ନିପାତିତ ହେବାର ଦେଖି ବିମନା ଓ ଅତିମାତ୍ର ଦୁଃଖିତ ହୋଇ ଦୀର୍ଘ ଓ ଉଷ୍ଣ ନିଃଶ୍ୱାସ ପରିତ୍ୟାଗ କରି କରୁ ପୁନର୍ବାର ଭୀମାଭିମୁଖକୁ ଗମନ କଲେ ।୩। ସେ କ୍ରୋଧାରୁଣ ନୟନରେ ମହାସର୍ପସଦୃଶ ଗର୍ଜ୍ଜନ କରି ଦିବାକରଙ୍କ କିରଣଜାଳତୁଲ୍ୟ ଶରଜାଲ ବିକିରଣ କରି ଶୋଭମାନ ହେଲେ । ୪ । ହେ ଭରତଶ୍ରେଷ୍ଠ ! ମହାବୀର ବୃକୋଦର ଦିବାକରଙ୍କ କରଜାଲସଦୃଶ କର୍ଣ୍ଣ ଶରାସନମୁକ୍ତ ଶରଜାଲଦ୍ୱାରା ସମାଛନ୍ନ ହେଲେ । ୫ ।

ଯେପରି ପକ୍ଷୀମାନେ ଅବସ୍ଥାନ ନିମିତ୍ତ ବୃକ୍ଷସ୍ଥ କୁଳାୟମଧ୍ୟରେ ପ୍ରବେଶ କରନ୍ତି ସେହିପରି କର୍ଣ୍ଣଶରାସନମୁକ୍ତ ସେହି ମନୋହର ମୟୂର-ବର୍ହିବିରଚିତ ବାଣସମୂହ ଭୀମଙ୍କ ସର୍ବାଙ୍ଗରେ ପ୍ରବେଶ କଲା । ୬ । କେତେଗୋଟି ରୁକ୍ମପୁଙ୍ଖ ବାଣ କର୍ଣ୍ଣଙ୍କ ଶରାସନରୁ ବିଚ୍ୟୁତ ଓ ଇତସ୍ତତଃ ନିପତିତ ହୋଇ ଶ୍ରେଣୀଭୂତ ହଂସତୁଲ୍ୟ ଶୋଭା ପାଇଲେ । ୭ । ହେ ମହାରାଜ ! ସେ ସମୟରେ ବୋଧ ହେଲା ଯେପରି ବାଣସମୂହ କର୍ଣ୍ଣଙ୍କ କାର୍ମୁକ, ରଥ-ଧ୍ୱଜ, ଉପସ୍କର, ଈଷା-ମୁଖ, ଯୁପକାଷ୍ଠ ଓ ଛତ୍ରପ୍ରଭୃତି ରଥର ଅନ୍ୟାନ୍ୟ ଉପକରଣମାନଙ୍କରୁ ବହିର୍ଗତ ହେଉଅଛି । ସେ ବ୍ୟୋମଚର ପକ୍ଷୀଗଣତୁଲ୍ୟ ଗୃଧ୍ରପତ୍ରସମନ୍ୱିତ ସ୍ୱର୍ଣ୍ଣବିକୃତ ବେଗବାନ୍ ବିଶିଖ ବାଣ-

ସମୂହ ବିମୋଚନ କରି ନଭଃସ୍ଥଳକୁ ପରିପୂରିତ କଲେ । ୯ । ବୃକୋଦର ତାହାଙ୍କୁ ସାକ୍ଷାତ୍ ଅନ୍ତକସଦୃଶ ଆଗମନ କରିବାର ଅବଲୋକନ କରି ଆପଣା ପ୍ରାଣରକ୍ଷାରେ ନିରପେକ୍ଷ ହୋଇ ତାହାଙ୍କୁ ଅତିକ୍ରମପୂର୍ବକ ନିଶିତ ଶରନିକରରେ ବିଦ୍ଧ କଲେ । ୧୦ । ସେ କର୍ଣ୍ଣଙ୍କର ଅସହ୍ୟ ବିକ୍ରମ ଅବଲୋକନ କରି ଓ ତାହାଙ୍କ ନିକ୍ଷିପ୍ତ ଶରଜାଲରେ ବିଦ୍ଧ ହୋଇ ମଧ୍ୟ ସ୍ୱକୀୟ ପ୍ରଭାବରୁ କିଛିମାତ୍ର ବ୍ୟଥିତ ହେଲେ ନାହିଁ । ତାହାଙ୍କର ନିକ୍ଷିପ୍ତ ଶରଜାଲକୁ ନିବାରଣ କରି ଶିଳାଶାଣିତ ବିଂଶତି ବାଣରେ ତାହାଙ୍କୁ ବିଦ୍ଧ କଲେ । ୧୨ । ଭୀମସେନ ଯେପରି କର୍ଣ୍ଣଙ୍କର ଶରଜାଲଦ୍ୱାରା ସମାଚ୍ଛନ୍ନ ହୋଇଥିଲେ ସେହିପରି ସେ ମଧ୍ୟ କର୍ଣ୍ଣଙ୍କୁ ସମାଚ୍ଛାଦିତ କଲେ । ୧୩ ।

ହେ ମହାରାଜ ! ସମରରେ ଭୀମସେନଙ୍କର ତାଦୃଶ ବିକ୍ରମ ଦର୍ଶନ କରି ଚାରଣଗଣ ଓ ଆପଣଙ୍କପକ୍ଷୀୟ ଯୋଦ୍ଧାଗଣ ସମସ୍ତେ ପ୍ରହୃଷ୍ଟାନ୍ତଃକରଣରେ ତାହାଙ୍କୁ ଅଭିନନ୍ଦିତ କଲେ । ୧୪ । ଭୂରିଶ୍ରବା, କୃପାଚାର୍ଯ୍ୟ, ଅଶ୍ୱତ୍ଥାମା, ମଦ୍ରରାଜ ଶଲ୍ୟ, ଜୟଦ୍ରଥ, ଉତ୍ତମୌଜା, ଯୁଧାମନ୍ୟୁ, ସାତ୍ୟକି, କେଶବ ଓ ଅର୍ଜ୍ଜୁନ କୁରୁ-ପାଣ୍ଡବ ପକ୍ଷର ପ୍ରଧାନ ଏହି ଦଶଜଣ ମହାରଥ ସାଧୁ ସାଧୁ ବୋଲି ଅତିବେଗରେ ସିଂହନାଦ କଲେ । ୧୭ । ସେହି ଲୋମହର୍ଷଣ ତୁମୁଳ ଶବ୍ଦ ସମୁତ୍ଥିତ ହୁଅନ୍ତେ ଆପଣଙ୍କ ପୁତ୍ର ଦୁର୍ଯ୍ୟୋଧନ ଭୀବ୍ର ସହକାରେ ରାଜା ଓ ରାଜପୁତ୍ରମାନଙ୍କୁ ବିଶେଷତଃ ସ୍ୱୀୟ ସହୋଦରମାନଙ୍କୁ ଏହିପରି ଆଦେଶ ଦେଲେ ଯେ, ହେ ବୀରଗଣ ! ତୁମ୍ଭମାନଙ୍କର ମଙ୍ଗଳ ହେଉ, ତୁମ୍ଭେମାନେ ଭୀମଙ୍କ ନିକଟରୁ କର୍ଣ୍ଣଙ୍କୁ ରକ୍ଷାକରିବା ନିମିତ୍ତ ଶୀଘ୍ର ଗମନ କର । ୧୮ । ହେ ମହାଧନୁର୍ଦ୍ଧରଗଣ ! ଯେପର୍ଯ୍ୟନ୍ତ ଭୀମର କାର୍ମୁକନିର୍ମୁକ୍ତ ଶରସମୂହ କର୍ଣ୍ଣଙ୍କୁ ନିହତ କରିନାହିଁ, ତୁମ୍ଭେମାନେ ତାହାପୂର୍ବରୁ ସୂତପୁତ୍ରଙ୍କ ରକ୍ଷା ବିଷୟରେ ଯତ୍ନଶୀଳ ହୁଅ ।୧୯।

ଆପଣଙ୍କର ସାତଗୋଟି ପୁତ୍ର, ଜ୍ୟେଷ୍ଠଭ୍ରାତା ରାଜା ଦୁର୍ଯ୍ୟୋଧନଙ୍କର ଆଦେଶାନୁସାରେ ସଂରବ୍ଧ ହୋଇ ଭୀମସେନଙ୍କ ନିକଟକୁ ଗମନପୂର୍ବକ ତାହାଙ୍କୁ ବେଷ୍ଟନ କଲେ । ୨୦ । ଯେପରି ବର୍ଷାକାଳରେ ଜଳଦାବଳି ଅଚଳୋପରି ବାରିଧାରା ବର୍ଷଣ କରେ, ସେହିପରି ସେମାନେ କୁନ୍ତୀନନ୍ଦନ ଭୀମଙ୍କୁ ଚତୁର୍ଦ୍ଦିଗରୁ ପରିବୃତ କରି ତାହାଙ୍କ ଉପରେ ଶରବୃଷ୍ଟି

କଲେ । ୨୧ । ଯେପରି ପ୍ରଳୟ କାଳରେ ସପ୍ତଗ୍ରହ ଏକା ସୋମଗ୍ରହକୁ ପୀଡ଼ିତ କରନ୍ତି, ସେହିପରି ଆପଣଙ୍କର ସେହି ସପ୍ତପୁତ୍ର ଯୁଦ୍ଧ ହୋଇ ଭୀମସେନଙ୍କୁ ପୀଡ଼ିତ କଲେ । ୨୨ ।

ଅନନ୍ତର ଭୀମସେନ ପରିଷ୍କୃତ ଶରାସନ ଦୃଢ଼ରୂପେ ବାମମୁଷ୍ଟିଦ୍ୱାରା ନିପୀଡ଼ିତ କରି ଯେତେବେଳେ ତାହାଙ୍କୁ ଆୟୁତ୍ତ ବୋଧକଲେ, ତେତେବେଳେ ସେ ପୂର୍ବର ବୈରଭାବ ସ୍ମରଣ କରି ଅତ୍ୟନ୍ତ କୁପିତ ହୋଇ ଆପଣଙ୍କ ପୁତ୍ରମାନଙ୍କ ଦେହରୁ ଜୀବନ ନିଷ୍କାସିତ କରିବେ ବୋଲି ସୂର୍ଯ୍ୟ-ରଶ୍ମି ସଦୃଶ ସାତଗୋଟି ବାଣ ତହିଁରେ ସନ୍ଧାନ କରି କର୍ଣ୍ଣଙ୍କପ୍ରତି ନିକ୍ଷେପ କଲେ । ୨୫ । ଭୀମନିକ୍ଷିପ୍ତ ସେହି ଶିଳାଶାଣିତ ସୁବର୍ଣ୍ଣପୁଙ୍ଖ ଶରସମୂହ ଭାରତବଂଶୀୟ ରାଜକୁମାରମାନଙ୍କୁ ବିଦାରଣ କରି ଗଗନମଣ୍ଡଳକୁ ସମୁ-ତ୍ପତିତ ହେଲା । ୨୬ ।

ହେ ମହାରାଜ ! ସେହି ସୁବର୍ଣ୍ଣଭୂଷିତ ଶରସମୂହ ଆପଣଙ୍କ ପୁତ୍ର-ମାନଙ୍କର ହୃଦୟ ବିଦୀର୍ଣ୍ଣ କରି ସେମାନଙ୍କର କ୍ଷତସ୍ଥଳରେ ଉଚ୍ଛଳିତ ଶୋଣିତ ପାନପୂର୍ବକ ରୁଧିରାକ୍ତ ହୋଇ ଗଗନଗାମୀ ସୁପର୍ଣ୍ଣଙ୍କସଦୃଶ ଶୋଭା ପାଇଲେ । ୨୮ । ଯେପରି ପର୍ବତସାନୁଜାତ ମହାଦ୍ରୁମସମୂହ କୌଣସି ଗଜକର୍ତ୍ତୃକ ଭଗ୍ନ ହୋଇ ଭୂଗର୍ଭରେ ନିପତିତ ହୁଏ, ସେହିପରି ଆପଣଙ୍କ ପୁତ୍ରମାନେ ଭୀମଙ୍କ ଶରରେ ଭିନ୍ନମର୍ମା ହୋଇ କ୍ଷିତିତଳରେ ନିପତିତ ହେଲେ । ୨୯ ।

ହେ ମହାରାଜ ! ଶତ୍ରୁଞ୍ଜୟ, ଶତ୍ରୁସହ, ଚିତ୍ରାୟୁଧ, ଚିତ୍ର, ଦୃଢ଼, ଚିତ୍ରସେନ ଓ ବିକର୍ଣ୍ଣ ଆପଣଙ୍କର ଏହି ସାତଗୋଟି ପୁତ୍ର ତତ୍କାଳରେ ଭୀମଙ୍କ କର୍ତ୍ତୃକ ନିପତିତ ହେଲେ । ୩୦ । ତନ୍ମଧ୍ୟରୁ ପାଣ୍ଡବପ୍ରିୟ ବିକର୍ଣ୍ଣଙ୍କ ନିମିତ୍ତ ବୃକୋଦର ଶୋକରେ ନିତାନ୍ତ ବ୍ୟାକୁଳ ହୋଇ କହିଲେ, ହେ ବିକର୍ଣ୍ଣ ! ଆମ୍ଭେ ରଣସ୍ଥଳରେ ତୁମ୍ଭ ଶତଭ୍ରାତାଙ୍କୁ ବିନାଶ କରିବୁଁ ବୋଲି ପ୍ରତିଜ୍ଞା କରିଥିଲୁଁ । ସେହି ପ୍ରତିଜ୍ଞା ପ୍ରତିପାଳନ ନିମିତ୍ତ ଅଦ୍ୟ ତୁମ୍ଭେ ନିହତ ହେଲ । ତୁମ୍ଭେ ଆମ୍ଭମାନଙ୍କର ବିଶେଷତଃ ମହାରାଜ ଯୁଧିଷ୍ଠିରଙ୍କ ହିତ-ସାଧନରେ ଏକାନ୍ତ ତତ୍ପର, ଯୁଦ୍ଧହିଁ କ୍ଷତ୍ରିୟର ପ୍ରଧାନ ଧର୍ମ୍ମ, ଏହା ମନେ-କରି ଅସୀମବୁଦ୍ଧି ସୁରଗୁରୁସମ ଗଙ୍ଗାନନ୍ଦନ ଭୀଷ୍ମ ସମରରେ ପ୍ରାଣତ୍ୟାଗ

କରୁଅଛନ୍ତି । ହେ ଭ୍ରାତ ! ତୁମ୍ଭେ ମଧ୍ୟ ତଦ୍ରୂପ ମନେକରି ନ୍ୟାଯ୍ୟାନୁସାରେ ରଣସ୍ଥଳକୁ ଆଗମନ କରିଥିଲ, ଅତଏବ ତୁମ୍ଭ ନିମିତ୍ତ ଅନୁତାପ କରିବା ନ୍ୟାଯ୍ୟାନୁଗତ ନୁହେ । ୨୫ । ଶୌର୍ଯ୍ୟସମ୍ପନ୍ନ ମହାବାହୁ ଭୀମସେନ ରାଧା-ନନ୍ଦନଙ୍କ ସମକ୍ଷରେ ଆପଣଙ୍କ ପୁତ୍ରମାନଙ୍କୁ ବିନାଶ କରି ଧର୍ମ୍ମରାଜ ଯୁଧିଷ୍ଠିରଙ୍କୁ ତତ୍ରତ୍ୟ ଯୁଦ୍ଧ ବିଷୟରେ ଆପଣାର ମହତ୍ ବିଜୟସମ୍ବାଦ ଦେବାନିମିତ୍ତ ଭୟଙ୍କର ସିଂହନାଦ କଲେ । ୩୭ ।

ଧର୍ମ୍ମନନ୍ଦନ ଯୁଧିଷ୍ଠିର ଧନୁର୍ଦ୍ଧର ଭୀମସେନଙ୍କର ସିଂହନାଦ ପ୍ରତିଗ୍ରହ କଲେ । ୩୯ । ତାହାଙ୍କର ସିଂହନାଦଦ୍ୱାରା ଜୟର ସଙ୍କେତ ପ୍ରାପ୍ତ ହୋଇ ଅତିଶୟ ହର୍ଷସହିତ ସର୍ବଶସ୍ତ୍ରଧାରିଶ୍ରେଷ୍ଠ ଦ୍ରୋଣଙ୍କ ସହିତ ଯୁଦ୍ଧ କରିବା ନିମିତ୍ତ ଗମନ କଲେ । ୪୦ । ତତ୍ପରେ ଆପଣଙ୍କ ପୁତ୍ର ରାଜା ଦୁର୍ଯ୍ୟୋଧନ ଆପଣଙ୍କ ଏକବିଂଶତି ପୁତ୍ରଙ୍କୁ ଭୀମଙ୍କ ହସ୍ତରେ କ୍ରମଶଃ ନିପାତିତ ହେବାର ନିରୀକ୍ଷଣ କରି ବିଦୁରଙ୍କ ବାକ୍ୟ ସ୍ମରଣ କଲେ । ୪୧ । ବର୍ତ୍ତମାନ ତାହାଙ୍କର ବାକ୍ୟ ସଫଳ ହେଲା, ଏହିପରି ଚିନ୍ତାକରି ଦୁର୍ଯ୍ୟୋଧନ ନିରୁତ୍ତର ହୋଇ ରହିଲେ । ୪୨ । ସେହି ଅଳ୍ପଚେତା ଦୁର୍ମତି ଦୁର୍ଯ୍ୟୋଧନ ଦ୍ୟୁତକ୍ରୀଡ଼ା କାଳରେ ପାଞ୍ଚାଳୀଙ୍କୁ ସଭାକୁ ଆନୟନପୂର୍ବକ କର୍ଣ୍ଣଙ୍କ ସହିତ ମିଳିତ ହୋଇ ଯାହା କହିଥିଲେ, କର୍ଣ୍ଣ ମଧ୍ୟ ପାଣ୍ଡବମାନଙ୍କ ସମକ୍ଷରେ କହିଥିଲେ ଯେ, ହେ ପାଞ୍ଚାଳ ! ଅନ୍ୟ କାହାରିକୁ ପତିରୂପରେ ବରଣ କର, ଏହିପରି ଯେଉଁ ପରୁଷବାକ୍ୟ କହିଥିଲେ, ତାହା ଆପଣ ଓ ସମସ୍ତ କୌରବମାନେ ଶ୍ରବଣ କରିଥିଲେ । ତାହାର ଏହି ଫଳ ଉପସ୍ଥିତ ହୋଇଅଛି । ପୁଣି ଆପଣଙ୍କର ପୁତ୍ରମାନେ ସେ ସମୟରେ ମହାତ୍ମା ପାଣ୍ଡବମାନଙ୍କୁ କୁପିତ କରି ଷଣ୍ଢ-ତିଳ (ନପୁଂସକ) ପ୍ରଭୃତି ନାନାପ୍ରକାର କଟୂକ୍ତିମାନ ଶ୍ରବଣ କରାଇ ଥିଲେ । ଏହି ହେତୁ ଭୀମସେନ ତ୍ରୟୋଦଶବର୍ଷସଞ୍ଚିତ ସେହି କ୍ରୋଧାଗ୍ନିକୁ ଉଦ୍‌ଗାର କରି ଆପଣଙ୍କ ପୁତ୍ରମାନଙ୍କୁ ଶେଷ କରୁଅଛନ୍ତି । ୪୭ ।

ହେ ମହାରାଜ ! ପୂର୍ବେ ବିଦୁର ଶାନ୍ତିକାମନାରେ ଆପଣଙ୍କ ନିକଟରେ ଅନେକ ବିଳାପ କରିଥିଲେ । କିନ୍ତୁ ଆପଣ କାହିଁକି ତାହା ସ୍ୱୀକାର କଲେନାହିଁ । ଆପଣ ପଣ୍ଡିତ ଓ ସମସ୍ତପ୍ରକାର କାର୍ଯ୍ୟର ତତ୍ତ୍ୱଦର୍ଶୀ ହୋଇ ମଧ୍ୟ ଯେତେବେଳେ ସୁହୃଦ୍‌ମାନଙ୍କର ବାକ୍ୟ ଶ୍ରବଣ କଲେନାହିଁ,

ତେତେବେଳେ ଦୈବହିଁ ଏ କାର୍ଯ୍ୟରେ ବଳବାନ୍ । ୪୯ । ହେ ନରଶ୍ରେଷ୍ଠ ! ଆପଣ ଶୋକ କରନ୍ତୁ ନାହିଁ, କାରଣ ଏହି ମହାନ୍ କ୍ଷୟ ବ୍ୟାପାର ଆପଣଙ୍କର ଦୁର୍ମତି ହେତୁ ଘଟିଅଛି । ସୁତରାଂ ଆମ୍ଭ ବିବେଚନାରେ ଆପଣ ଏକା ଆପଣଙ୍କର ପୁତ୍ରମାନଙ୍କର ବିନାଶର କାରଣ ଅଟନ୍ତି । ୫୦ । ବୀର୍ଯ୍ୟବାନ୍ ବିକର୍ଣ୍ଣ ଓ ଚିତ୍ରସେନ ପ୍ରଭୃତି ଆପଣଙ୍କ ପ୍ରଧାନ ପ୍ରଧାନ ମହାରଥି ପୁତ୍ରମାନେ ନିହତ ହୋଇଅଛନ୍ତି । ୫୧ । ଆପଣଙ୍କ ଅନ୍ୟାନ୍ୟ ଯେଉଁ ପୁତ୍ରମାନେ ସେମାନଙ୍କ ଦୃଷ୍ଟିର ବିଷୟୀଭୂତ ହୋଇଅଛନ୍ତି, ସେମାନେ ଭୀମଙ୍କ ନିରନ୍ତରବିମୁକ୍ତ ସହସ୍ର ସହସ୍ର ଶରଦ୍ୱାରା ଦହ୍ୟମାନ, ହେବାର ଅବଲୋକନ କଲୁଁ । ୫୩ ।

---

## ୧୩୮ ଅଧ୍ୟାୟ

ଧୃତରାଷ୍ଟ୍ର ବୋଇଲେ—ହେ ସୂତ ! ବୋଧହୁଏ ଆମ୍ଭର ସେହି ମହତୀ ଦୁର୍ନୀତିର ପରିଣାମ ଉପସ୍ଥିତ ହୋଇଅଛି । ୧ । ଆମ୍ଭେ ପୂର୍ବରୁ ଏହା ମନେ କରିଥିଲୁ ଯେ ଯାହା ଘଟିଅଛି, ତାହା ଗତ ହୋଇଅଛି । ବର୍ତ୍ତମାନ ଆମ୍ଭେ ଏ ବିଷୟରେ କି ପ୍ରତିକାର କରିବୁଁ ? ୨ । ଯାହାହେଉ, ବର୍ତ୍ତମାନ ଧୈର୍ଯ୍ୟାବଲମ୍ବନ କଲୁଁ । ତତ୍ପରେ କଅଣ ହେଲା ବର୍ଣ୍ଣନ କର ।

ହେ ମହାରାଜ ! ମହାବଳଶାଳୀ ପରାକ୍ରାନ୍ତ ଭୀମ ଓ କର୍ଣ୍ଣ ଏ ଦୁହେଁ ସଜଳଜଳଦତୁଲ୍ୟ ନିରନ୍ତର ବାଣବୃଷ୍ଟି କରିବାରେ ପ୍ରବୃତ୍ତ ହେଲେ । ଭୀମନାମାଙ୍କିତ ଶିଳାଶାଣିତ ସୁବର୍ଣ୍ଣପୁଙ୍ଖ ବାଣସମୂହ କର୍ଣ୍ଣଙ୍କର ପ୍ରାଣହାରକ ପ୍ରାୟ ହୋଇ ତାହାଙ୍କ ଶରୀରରେ ପ୍ରବିଷ୍ଟ ହେଲେ । ୫ । ସେହିରୂପ କର୍ଣ୍ଣପ୍ରେରିତ ମୟୂରବର୍ହ୍ବିରାଜିତ ଶତଶତ ସହସ୍ର ସହସ୍ର ବାଣସମୂହ ଭୀମସେନଙ୍କୁ ସମାଚ୍ଛାଦିତ କଲା । ୬ । ହେ ମହାରାଜ ! ସେ ଉଭୟଙ୍କର ନିକ୍ଷିପ୍ତ ବାଣସମୂହ ଚତୁର୍ଦ୍ଦିଗରେ ନିପତିତ ହେବାରୁ ସୈନ୍ୟମାନେ ଅତ୍ୟନ୍ତ କ୍ଷୁଭିତ ହେଲେ । ୭ । ଭୀମଙ୍କର ଶରାସନନିର୍ମୁକ୍ତ ଭୀଷଣ ଆଶୀବିଷତୁଲ୍ୟ ଶରଜାଲରେ ଆପଣଙ୍କପକ୍ଷୀୟ ବ୍ୟୂହମଧ୍ୟସ୍ଥ ସୈନ୍ୟମାନେ ନିହତ ହେଲେ । ସେହି ସମସ୍ତ ନିହତ ଓ ନିପତିତ ତୁରଙ୍ଗ, ମାତଙ୍ଗ ଓ ମନୁଷ୍ୟମାନଙ୍କଦ୍ୱାରା

ମହୀତଳ ସମାକୀର୍ଣ୍ଣ ହୋଇ ପ୍ରଚଣ୍ଡବାୟୁଭଗ୍ନ ନିପତିତ ବନସ୍ପତିସମୂହରେ ସମାଚ୍ଛନ୍ନ ହେଲପ୍ରାୟ ବୋଧ ହେଲା । ୯ । ତଦନନ୍ତର ଆପଣଙ୍କପକ୍ଷୀୟ ଯୋଦ୍ଧାମାନେ ଭୀମଙ୍କ ଶରାସନଚ୍ୟୁତ ଶରନିକରରେ ବଧ୍ୟମାନ ହୋଇ 'ଏକ' 'ଏକ' ବୋଲି କହୁକହୁ ପଳାୟନ କଲେ ।୧୦। ସିନ୍ଧୁ, ସୌବୀର ଓ କୁରୁସୈନ୍ୟମାନେ ଭୀମ ଓ କର୍ଣ୍ଣଙ୍କ ଶରବେଗରେ କ୍ଷୟୋନ୍ମୁଖ ହୋଇ ଦୂରକୁ ଅପସାରିତ ହେଲେ । ୧୧ । ଅଧିକାଂଶ ବୀର ବିନଷ୍ଟ ହେବାରୁ କେହି ହସ୍ତୀ, କେହି ଅଶ୍ୱ, କେହି ଅବା ଅନ୍ୟାନ୍ୟ ପ୍ରକାର ବାହନବିହୀନ ହୋଇ ସମରାଙ୍ଗଣରେ ଭୀମ ଓ କର୍ଣ୍ଣଙ୍କୁ ପରିତ୍ୟାଗପୂର୍ବକ ପଳାୟନ କଲେ । ପଳାୟନ ସମୟରେ ସେମାନେ ଏହିକଥା କହୁଥିଲେ ଯେ, ଅର୍ଜ୍ଜୁନଙ୍କ ନିମିତ୍ତ ନିଶ୍ଚୟ ଦେବତାମାନେ ଆମ୍ଭମାନଙ୍କୁ ମୋହିତ କରିଅଛନ୍ତି, ଯେହେତୁ ଭୀମ ଓ କର୍ଣ୍ଣଙ୍କ ଶରଦ୍ୱାରା କେବଳ ଆମ୍ଭମାନଙ୍କର ସେନା ନିହତ ହେଉଅଛନ୍ତି । ହେ ମହାରାଜ ! ଆପଣଙ୍କପକ୍ଷୀୟ ଯୋଦ୍ଧାମାନେ ଭୟାର୍ତ୍ତ ହୋଇ ଭୀମ ଓ କର୍ଣ୍ଣଙ୍କର ଶରପତନ ସ୍ଥଳକୁ ଅତିକ୍ରମ କରି କେବଳ ଯୁଦ୍ଧ ଅବଲୋକନ କରିବା ଇଚ୍ଛାରେ ଦୂରରେ ଅବସ୍ଥାନ କଲେ । ୧୪ ।

ହେ ଭରତ ରାଜ ! ଏହି ସମର ସ୍ଥଳରେ ଶୂରମାନଙ୍କର ହର୍ଷ-ଜନନୀ, ଭୀରୁମାନଙ୍କର ଭୟ-ବର୍ଦ୍ଧିନୀ ତୁରଙ୍ଗ, ମାତଙ୍ଗ ଓ ମନୁଷ୍ୟ-ଶୋଣିତସମୁଦ୍ଭବା ଭୟଙ୍କରୀ ଗୋଟିଏ ନଦୀ ସମୁତ୍ପନ୍ନ ହେଲା । ସେହି ସମୟରେ ଭଗ୍ନ ରଥଦ୍ୱାରା, ପତାକାନୁକର୍ଷ, ଚକ୍ର, ଅକ୍ଷ, କୂବର ପ୍ରଭୃତି ଭଗ୍ନ ରଥୋପକରଣଦ୍ୱାରା, ମନୁଷ୍ୟ, ହସ୍ତୀ ଓ ଅଶ୍ୱର ମୃତଦେହଦ୍ୱାରା, ଭୀମ ଓ କର୍ଣ୍ଣଙ୍କର ସୁବର୍ଣ୍ଣପରିଷ୍କୃତ ମହାଶବ୍ଦାୟମାନ ଶରାସନରୁ ନିର୍ମୁକ୍ତ ନିର୍ମୋକ-ବିହୀନ ଭୁଜଙ୍ଗତୁଲ୍ୟ ସହସ୍ର ସହସ୍ର ସୁବର୍ଣ୍ଣପୁଙ୍ଖ ଶର, ନାରାଚ, ପ୍ରାସ, ତୋମର, ଖଡ୍‌ଗ, ପରଶ୍ୱଧ, ସୁବର୍ଣ୍ଣଚିହ୍ନିତ ଗଦା, ମୂଷଳ, ପଟ୍ଟିଶ, ବଜ୍ରତୁଲ୍ୟ ନାନାପ୍ରକାର ଶକ୍ତି, ପରିଘ ଓ ବିଚିତ୍ର ଶତଘ୍ନୀ ଏହି ସମସ୍ତ ଅସ୍ତ୍ରଦ୍ୱାରା ବସୁନ୍ଧରା ସମାଚ୍ଛନ୍ନା ହୋଇ ଅଭୂତପୂର୍ବ ଶୋଭା ଧାରଣ କଲା । ପୁଣି ବୀରମାନଙ୍କର ଅଙ୍ଗବିଚ୍ୟୁତ ସୁବର୍ଣ୍ଣନିର୍ମିତ ଅଙ୍ଗଦ, ହାର, କୁଣ୍ଡଳ, ମୁକୁଟ ବଳୟ, ଅଙ୍ଗୁରୀୟ ଚୂଡ଼ାମଣିସମନ୍ୱିତ ଉଷ୍ଣୀଷ, ସୁବର୍ଣ୍ଣ ଯଜ୍ଞସୂତ୍ର, ତନୁତ୍ର, ତଳତ୍ର, ଗ୍ରୀବାଭୂଷଣ, ବସ୍ତ୍ର, ବିଧ୍ୱସ୍ତ ଛତ୍ର, ଚାମର, ବ୍ୟଜନ ଓ ନାନାପ୍ରକାର ଅସ୍ତ୍ର ନିର୍ଭିନ୍ନ ଇତସ୍ତତଃ ନିପତିତ ମନୁଷ୍ୟାଦିମାନଙ୍କର ଶୋଣିତାକ୍ତ

କଳେବରଦ୍ୱାରା ପୃଥିବୀ ଗ୍ରହଗଣବିରାଜିତ ନଭୋମଣ୍ଡଳତୁଲ୍ୟ ଦୀପ୍ତିପ୍ରାପ୍ତ ହେଲପ୍ରାୟ ବୋଧ ହେଲା । ୨୪ ।

ସେ ଦୁହିଁଙ୍କର ଅଦ୍ଭୁତ, ଅଚିନ୍ତ୍ୟମୀୟ, ଅଲୌକିକକର୍ମ ନିରୀକ୍ଷଣକରି ସିଦ୍ଧ ଓ ଚାରଣଗଣ ଅତିଶୟ ବିସ୍ମିତ ହେଲେ । ୨୫ । ହେ ମହାରାଜ ! ଯେପରି ଶୁଷ୍କତୃଣାଦିଦହନୋନ୍ମୁଖ ଅଗ୍ନି ବାୟୁ ସହଯୋଗରେ ଦ୍ୱିଗୁଣିତ ତେଜସ୍ୱୀ ହୁଏ, ସେହିପରି ଅଧିରଥନନ୍ଦନ କର୍ଣ୍ଣ ସମରରେ ଭୀମଙ୍କୁ ପ୍ରାପ୍ତ ହୋଇ ଉଭୟଙ୍କର ତେଜସ୍ୱୀ ହେଲେ । ସେ ଦୁହିଁଙ୍କ ମଧ୍ୟରେ ଏପରି ଘୋରତର ସମର ଉପସ୍ଥିତ ହେଲା ଯେ ହସ୍ତୀଯୁଗଳର ପରସ୍ପର ସମ୍ମର୍ଦ୍ଦନ-ଦ୍ୱାରା ବିମଥିତ ନଳବନସଦୃଶ ଧ୍ୱଜସମୂହ ଖଣ୍ଡ ଖଣ୍ଡ, ରଥାଦିଚୂର୍ଣ୍ଣିତ, ହସ୍ତୀ, ଅଶ୍ୱ ଓ ମନୁଷ୍ୟମାନେ ବିମର୍ଦ୍ଦିତ ହେଲେ । ନବଜ ମେଘତୁଲ୍ୟ ଆପଣଙ୍କର ସୈନ୍ୟମାନେ ଏକାବେଳକେ ଛିନ୍ନଭିନ୍ନ ହୋଇଗଲେ । ୨୯ ।

---

## ୧୩୯ ଅଧ୍ୟାୟ

ସଞ୍ଜୟ କହିଲେ—ହେ ମହାରାଜ ! ତଦନନ୍ତର କର୍ଣ୍ଣ ଭୀମସେନଙ୍କୁ ତିନିଗୋଟି ବାଣରେ ବିଦ୍ଧ କରି ପୁନର୍ବାର ତାହାଙ୍କ ପ୍ରତି ବହୁ ବିଚିତ୍ର ବାଣ ବର୍ଷଣ କଲେ । ୧ । ମହାବାହୁ ଭୀମସେନ ସୂତପୁତ୍ରଙ୍କର ଶରନିକରଦ୍ୱାରା ତାଦୃଶ ବିଧ୍ୟମାନ ହୋଇ ସୁଦ୍ଧା ବ୍ୟଥିତ ହେଲେ ନାହିଁ । ଅଚଳସଦୃଶ ଅଚଳଭାବରେ ଅବସ୍ଥାନ କଲେ । ୨ । ଭୀମ ମଧ୍ୟ ତୈଳଧୌତ ଶାଣ-ଜଳପାୟିତ ନିଶିତ ଗୋଟିଏ କର୍ଣ୍ଣିକାସ୍ତ୍ରଦ୍ୱାରା କର୍ଣ୍ଣଙ୍କୁ ଅତିଶୟ ବିଦ୍ଧ କଲେ । ୩ । ତଦନନ୍ତର କର୍ଣ୍ଣଙ୍କର ମନୋହର ରତ୍ନମୟ କୁଣ୍ଡଳକୁ ଛେଦନ କଲେ । ତାହା ଅମ୍ବରଚ୍ୟୁତ ଦୀପ୍ୟମାନ ସୂର୍ଯ୍ୟଜ୍ୟୋତିସଦୃଶ ଭୂତଳରେ ପତିତ ହେଲା । ପୁନଶ୍ଚ କ୍ରୁଦ୍ଧ ହୋଇ ଗୋଟିଏ ଭଲ୍ଲାସ୍ତ୍ରଦ୍ୱାରା ହସିଲପ୍ରାୟ ହୋଇ ବୃକୋଦର କର୍ଣ୍ଣଙ୍କର ସ୍ତନ୍ୟଦ୍ୱୟର ମଧ୍ୟଦେଶରେ ଦୃଢ଼ରୂପରେ ଆଘାତ କଲେ । ୫ । ତତ୍ପରେ ମହାବାହୁ ଭୀମ ସତ୍ୱର ହୋଇ ଆଶୀବିଷ-ସଦୃଶ ଦଶଗୋଟି ନାରାଚ ଗ୍ରହଣକରି ସୂତପୁତ୍ରଙ୍କ ପ୍ରତି ନିକ୍ଷେପ କଲେ ।

ହେ ମହାରାଜ ! ଭୁଜଙ୍ଗମଗଣ ବଲ୍ମୀକ ମଧ୍ୟରେ ପ୍ରବେଶ କଲାପ୍ରାୟ ଭୀମନିକ୍ଷିପ୍ତ ସେହି ନାରାଚସମୂହ କର୍ଣ୍ଣଙ୍କର ଲଲାଟଦେଶ ଭେଦ କରି ତନ୍ମଧ୍ୟରେ ପ୍ରବିଷ୍ଟ ହେଲା । ୭ । କର୍ଣ୍ଣ ପୂର୍ବେ ନୀଳୋତ୍ପଳମୟୀ ମାଳା ଧାରଣ କରି ଯେପରି ଶୋଭାପ୍ରାପ୍ତ ହୋଇଥିଲେ, ବର୍ତ୍ତମାନ ଲଲାଟସ୍ଥିତ ସେହି ନାରାଚମାନଙ୍କଦ୍ୱାରା ତଦ୍ରୂପ ଶୋଭାପ୍ରାପ୍ତ ହେଲେ । ୮ । କର୍ଣ୍ଣ ତେଜସ୍ୱୀ ଭୀମସେନଙ୍କ ଶରରେ ଗାଢ଼ତରରୂପେ ବିଦ୍ଧ ହୋଇ ନିମୀଳିତ-ଲୋଚନରେ ରଥ-କୂବରକୁ ଅବଲମ୍ବନ କରି ଅବସ୍ଥାନ କଲେ । ୯ । ଶତ୍ରୁ-ତାପନ ମହାବେଗଶାଳୀ କର୍ଣ୍ଣ ମୁହୂର୍ତ୍ତକ ପରେ ସଂଜ୍ଞାଲାଭ କଲେ ଓ ସ୍ୱକାୟ ସର୍ବାଙ୍ଗ ଶୋଣିତସିକ୍ତ ଦର୍ଶନ କରି କୋପରେ ଅଧୀର ହେଲେ । ଦୃଢ଼ଧନ୍ୱା ଭୀମସେନଙ୍କ କର୍ତ୍ତୃକ ଅତିଶୟ ନିପୀଡ଼ିତ ହୋଇ ମଧ୍ୟ କ୍ରୋଧ ଓ ବେଗ ସହକାରେ ତାହାଙ୍କ ରଥ ସମୀପରେ ଉପସ୍ଥିତ ହେଲେ । ୧୧ । ଅତିଶୟ କୁପିତ ହୋଇ ଗୃଧ୍ରପକ୍ଷସମନ୍ୱିତ ଏକଶତ ବାଣ ଭୀମଙ୍କ ପ୍ରତି ନିକ୍ଷେପ କଲେ । ୧୨ । ପାଣ୍ଡୁପୁତ୍ର ଭୀମ, କର୍ଣ୍ଣଙ୍କର ତାଦୃଶ ପରାକ୍ରମ ଦର୍ଶନ କରି ମଧ୍ୟ ଚିନ୍ତିତ ହେଲେ ନାହିଁ । ତାହାଙ୍କୁ ଅନାଦର କରି ତାହାଙ୍କପ୍ରତି ଉଗ୍ରରେ ଶରନିକର ବର୍ଷଣ କଲେ । ୧୩ । ଶତ୍ରୁ-ତାପନ କର୍ଣ୍ଣ ଅତିଶୟ କୁପିତ ହୋଇ ନଅଗୋଟି ବାଣ ଗ୍ରହଣପୂର୍ବକ ସେହି କ୍ରୋଧମୂର୍ତ୍ତି ବୃକୋଦରଙ୍କର ବକ୍ଷଃସ୍ଥଳରେ ଆଘାତ କଲେ । ୧୪ । ହେ ମହାରାଜ ! ଯେପରି ଦୁଇଗୋଟି ବ୍ୟାଘ୍ର ପରସ୍ପର ପରସ୍ପରକୁ ଦନ୍ତଦ୍ୱାରା ପ୍ରହାର କରନ୍ତି ସେହିପରି ସେହି ନରଶାର୍ଦ୍ଦୂଳଦ୍ୱୟ ସମରରେ ପରସ୍ପର ପରସ୍ପରକୁ ଅସ୍ତ୍ରଦ୍ୱାରା ପ୍ରହାର କଲେ ଓ ବର୍ଷଣଶୀଳ ଦୁଇଖଣ୍ଡି ମେଘସଦୃଶ ଶରବର୍ଷଣ କଲେ । ୧୫ । ସେ ଦୁହେଁ କ୍ରୋଧରେ ପରସ୍ପର ପ୍ରତିହିଂସାଭିଳାଷୀ ହୋଇ ପରସ୍ପରକୁ ତଳଶବ୍ଦଦ୍ୱାରା ତ୍ରାସିତ ଓ ଶରଜାଲରେ ସମାଚ୍ଛାଦିତ କଲେ । ତଦନନ୍ତର ପରବୀରହନ୍ତା ମହାବାହୁ ଭୀମସେନ ଗୋଟିଏ କ୍ଷୁରପାସ୍ତ୍ରଦ୍ୱାରା ସୂତପୁତ୍ରଙ୍କର ଶରାସନ ଛିନ୍ନ କରି ସିଂହନାଦ କଲେ । ମହାରଥୀ କର୍ଣ୍ଣ ସେହି ଛିନ୍ନଚାପ ପରିତ୍ୟାଗ କରି ଅପର ଗୋଟିଏ ଶରାସନ ଗ୍ରହଣ କଲେ । ମହାବୀର ବୃକୋଦର ତତ୍କ୍ଷଣାତ୍ ସେହି ଶରାସନ ଛିନ୍ନ କରି ସିଂହନାଦ କଲେ ।

ଏହାପରେ ଭୀମସେନ କର୍ଣ୍ଣଙ୍କର ଶରାସନକୁ ଅଷ୍ଟାଦଶ ବାର ଛିନ୍ନ କରି ଶରନିକରବର୍ଷଣଦ୍ୱାରା ସୈନ୍ୟ ସଂହାର କଲେ । ମହାରଥ କର୍ଣ୍ଣ ମହାବେଗବାନ୍ ଓ ଭାରସାଧନ ଅପର ଗୋଟିଏ ଶରାସନ ଗ୍ରହଣ କଲେ । ସିନ୍ଧୁ ଓ ସୌବୀର-ସୈନ୍ୟ ସହିତ କୌରବପକ୍ଷୀୟ ସୈନ୍ୟମାନଙ୍କୁ କ୍ଷୟ ହେବାର ଦେଖି, ନିହତ ତୁରଙ୍ଗ, ମାତଙ୍ଗ ଓ ମନୁଷ୍ୟମାନଙ୍କୁ ଚତୁର୍ଦ୍ଦିଗରେ ନିପତିତ ହେବାର ନିରୀକ୍ଷଣ କରି ଓ ଇତସ୍ତତଃ ବିକୀର୍ଣ୍ଣ ଧ୍ୱଜ, ବର୍ମ୍ମ ଓ ଶସ୍ତ୍ରରେ ମହୀତଳ ଆଚ୍ଛାଦିତ ହେବାର ଅବଲୋକନ କରି ତାହାଙ୍କ ଶରୀର କ୍ରୋଧରେ ଉଦ୍ଦୀପ୍ତ ହେଲା । ତେତେବେଳେ ସେ ସୁବର୍ଣ୍ଣମଣ୍ଡିତ ମହତ୍ ଶରାସନକୁ ବିସ୍ତାରଣ କରି ଭୀଷଣ ନୟନଦ୍ୱାରା ଭୀମସେନଙ୍କୁ ନିରୀକ୍ଷଣ କଲେ ଓ କୁପିତ ହୋଇ ଭୀମଙ୍କ ପ୍ରତି ନିରନ୍ତର ଶରଜାଲ ବିସ୍ତାର କଲେ । ସେ ଶରତ୍‌କାଳରେ ପ୍ରଖର ରଶ୍ମିମାଳାସୁଶୋଭିତ ମଧ୍ୟାହ୍ନକାଳୀନ ସୂର୍ଯ୍ୟସଦୃଶ ଶୋଭମାନ ହେଲେ । ତାହାଙ୍କର ଶରୀର ଭୀମସେନଙ୍କର ଶତଶତ ଶରଦ୍ୱାରା ସମାଚ୍ଛିତ ହୋଇ କିରଣଜାଳବିରାଜିତ ଭାନୁମାନ୍‌ସଦୃଶ ଘୋରତର ହେଲା । ସେ କେତେବେଳେ ତୂଣରୁ ଶରଗ୍ରହଣ, କେତେବେଳେ ଶରସନ୍ଧାନ, ବିକର୍ଷଣ ବା ବିମୋଚନ କରୁଥିଲେ, ତାହାର ଛିଦ୍ର ସମରରେ କେହି ଲକ୍ଷ୍ୟ କରିବାକୁ ସମର୍ଥ ହେଲେ ନାହିଁ । ହେ ମହାରାଜ ! ସେହି ସମୟରେ ମହାବୀର କର୍ଣ୍ଣଙ୍କର ବାମ ଓ ଦକ୍ଷିଣ ଦିଗରେ ତାହାଙ୍କର ଭୀଷଣ ଶରାସନ ଅଗ୍ନି, ଚନ୍ଦ୍ରତୁଲ୍ୟ ମଣ୍ଡଳୀକୃତ ଦେଖାଯାଉଥିଲା । ତହିଁରୁ ନିଃସୃତ ସୁବର୍ଣ୍ଣପୁଙ୍ଖ ଅତ୍ୟନ୍ତ ନିଶିତ ଶରସମୂହ ଚତୁର୍ଦ୍ଦିଗରେ ନିକ୍ଷିପ୍ତ ହେବାରୁ ଦିଗସମୂହ ସମାଚ୍ଛନ୍ନ ହେଲା ଓ ପ୍ରଭାକର ନିଷ୍ପ୍ରଭ ହେଲେ ।

ତଦନନ୍ତର ଭୀମ ଓ କର୍ଣ୍ଣଙ୍କର ଶରାସନବିନିଃସୃତ କନକପୁଙ୍ଖଯୁକ୍ତ ସନ୍ନତପର୍ବ ଶରଜାଲ ନଭୋମଣ୍ଡଳରେ ନାନାପ୍ରକାରେ ଦୃଶ୍ୟମାନ ହେଲା । କର୍ଣ୍ଣଙ୍କର ଶରାସନସମ୍ଭୂତ ଶରସମୂହ ଆକାଶଗାମୀ ଶ୍ରେଣୀକୃତ କ୍ରୌଞ୍ଚପକ୍ଷୀ-ମାନଙ୍କ ତୁଲ୍ୟ ଶୋଭାପ୍ରାପ୍ତ ହେଲା । ଅଧିରଥ-ନନ୍ଦନ ଗୃଧ୍ରପକ୍ଷବିରାଜିତ ଶିଳାଧୌତ, ରତ୍ନବିମଣ୍ଡିତ, ମହାବେଗଶୀଳ ପ୍ରସନ୍ନାଗ୍ର ଶରସମୂହକୁ ବିମୋଚନ କଲେ । ସୁବର୍ଣ୍ଣବିଭୂଷିତ ଶରସମୂହ ଅତିବେଗ ସହକାରେ କର୍ଣ୍ଣଙ୍କର କାର୍ମୁକରୁ ନିଃସୃତ ହୋଇ ନିରନ୍ତର ଭୀମସେନଙ୍କର ରଥୋପରି

ପତିତ ହେଲା । ହେ ମହାରାଜ ! କର୍ଣ୍ଣପ୍ରେରିତ ସେହି ସହସ୍ର ସହସ୍ର ସୁବର୍ଣ୍ଣାଳଙ୍କୃତ ଶରସମୂହ ନଭୋମଣ୍ଡଳରେ ଶରଭପୁଞ୍ଜତୁଲ୍ୟ ଦୀପ୍ତିପ୍ରାପ୍ତ ହେଲା । ବାଣସମୂହ ତାହାଙ୍କ ଶରାସନରୁ ନିଃସୃତ ନଭୋମଣ୍ଡଳରେ ମିଳିତ ହୋଇ ଦୀର୍ଘାକାର ଗୋଟିଏ ଶରସଦୃଶ ଦୃଷ୍ଟ ହେଲା । ଯେପରି ବାରିଧାରା-ବର୍ଷୀ ଜଳଧର ଜଳବର୍ଷଣଦ୍ୱାରା ପର୍ବତକୁ ସମାଚ୍ଛନ୍ନ କରେ, କର୍ଣ୍ଣ କ୍ରୁଦ୍ଧ ହୋଇ ଶରବୃଷ୍ଟି ଦ୍ୱାରା ଭୀମସେନଙ୍କୁ ତଦ୍ରୂପ ସମାବୃତ କଲେ ।

ଏହି ସମୟରେ ଆପଣଙ୍କ ପୁତ୍ରମାନେ ସୈନ୍ୟମାନଙ୍କ ସହିତ ଭୀମସେନଙ୍କର ବଳବୀର୍ଯ୍ୟ ପରାକ୍ରମ ଓ କାର୍ଯ୍ୟ ଦର୍ଶନ କଲେ । ୩୮ । ଭୀମ କର୍ଣ୍ଣସମୁତ୍ପନ୍ନ ଉଦ୍ଧୃତ ସାଗରସଦୃଶ ସେହି ଶରବୃଷ୍ଟିକୁ କିଛିମାତ୍ର ଗଣନା କଲେ ନାହିଁ । ପ୍ରତ୍ୟୁତ କ୍ରୋଧଭରରେ କର୍ଣ୍ଣଙ୍କ ପ୍ରତି ଅଭିଦ୍ରୁତ ହେଲେ । ୩୯ । ଭୀମସେନଙ୍କର ସୁବର୍ଣ୍ଣପୃଷ୍ଠଶୋଭିତ ମହତ୍ ଶରାସନ ଆକର୍ଷଣଦ୍ୱାରା ମଣ୍ଡଳୀକୃତ ଦ୍ୱିତୀୟ ଶକ୍ରଧନୁସଦୃଶ ପ୍ରତୀୟମାନ ହେଲା । ସେହି ରୂପରୁ ସନ୍ନତପର୍ବ ସୁବର୍ଣ୍ଣପୁଙ୍ଖ ଶରଜାଲ ପ୍ରାଦୁର୍ଭୂତ ହୋଇ ଅମ୍ବର ମଣ୍ଡଳକୁ ସମାଚ୍ଛନ୍ନ କଲାରୁ ଗଗନମଣ୍ଡଳ ଶରରାଜିବିରଚିତ କନକାବଳୀ ମାଳଦ୍ୱାରା ଶୋଭମାନ ହେଲାପ୍ରାୟ ବୋଧ ହେଲା । ୪୨ ।

ତଦନନ୍ତର ସୂତପୁତ୍ରନିକ୍ଷିପ୍ତ ଆକାଶସ୍ଥିତ ସେହି ଶରଜାଲ ଖଗକ୍ରମରେ ଭୀମଙ୍କ ଶରଦ୍ୱାରା ସମାହତ ହୋଇ ବିଶୀର୍ଣ୍ଣ ହେଲା । ୪୩ । ସେ ଦୁହିଁଙ୍କର ଅଗ୍ନିସ୍ପର୍ଶ ବେଗଗାମୀ ସ୍ୱର୍ଣ୍ଣପୁଙ୍ଖ ଶରନିକରଦ୍ୱାରା ନଭୋମଣ୍ଡଳ ସମାଚ୍ଛାଦିତ ହେଲା । ପ୍ରଭାକର ତାଦୃଶ ପ୍ରତିଭାତ ହେଲେ ନାହିଁ ଓ ବାୟୁର ଗତି ରୋଧ ହେଲା । ସେମାନଙ୍କ ଶରଜାଲରେ ଚତୁର୍ଦ୍ଦିଗ ସମାବୃତ ହେବାରୁ ସେ ସମୟରେ ଆଉ କୌଣସି ବସ୍ତୁ ଦୃଷ୍ଟିଗୋଚର ହେଲା ନାହିଁ ।

ଅନନ୍ତର ସୂତ-ପୁତ୍ର କର୍ଣ୍ଣ ମହାତ୍ମା ଭୀମସେନଙ୍କ ବୀର୍ଯ୍ୟରେ ଅବଜ୍ଞା ପ୍ରଦର୍ଶନ କରି ତାହାଙ୍କୁ ଅସଂଖ୍ୟ ଶରଦ୍ୱାରା ସମାଚ୍ଛନ୍ନ କରଣାନନ୍ତର ସମରରେ ତାହାଙ୍କଠାରୁ ଅଧିକ ପରାକ୍ରମ ପ୍ରକାଶ କଲେ । ହେ ମହାରାଜ ! ଯେପରି ଉଭୟ ଦିଗରୁ ସମାଗତ ଦୁଇ ବାୟୁର ପରସ୍ପର ସଂଘଟ୍ଟନଦ୍ୱାରା ଅଗ୍ନ୍ୟୁତ୍ପାତ ହେବାର ଦେଖାଯାଏ, ସେହିପରି ନରସିଂହ ଭୀମ ଓ କର୍ଣ୍ଣଙ୍କର

ଶରସମୂହରେ ପରସ୍ପର ସଂଘର୍ଷଣ ହେବାରୁ ଅନ୍ତରୀକ୍ଷରେ ଭୟଙ୍କର ଅଗ୍ନିର ସୃଷ୍ଟି ହେଲା । କର୍ଣ୍ଣ କ୍ରୁଦ୍ଧ ହୋଇ ଭୀମଙ୍କ ବଧାଭିଳାଷରେ କର୍ମାରମାର୍ଜିତ ହେମବଦ୍ଧ ତୀକ୍ଷ୍ଣବାଣସମୂହ ତାହାଙ୍କ ପ୍ରତି ନିକ୍ଷେପ କଲେ । ପରନ୍ତୁ ବଳବାନ୍ ଅମର୍ଷୀ ଭୀମସେନ ସୂତ-ପୁତ୍ରଙ୍କଠାରୁ ଅଧିକ ପରାକ୍ରମ ପ୍ରକାଶ-ପୂର୍ବକ ତାହାଙ୍କ ନିକ୍ଷିପ୍ତ ଶରସମୂହର ପ୍ରତ୍ୟେକକୁ ତିନିତିନିଖଣ୍ଡ କରି ଗଗନମାର୍ଗରେ ଶରଦ୍ୱାରା ଛେଦନ କଲେ । କର୍ଣ୍ଣଙ୍କୁ 'ରହ, ରହ' ବୋଲି କହି କ୍ରୋଧରେ ଅଗ୍ନିତୁଲ୍ୟ ହୋଇ ତାହାଙ୍କୁ ଯେମନ୍ତ ଦଗ୍‌ଧ କରିବେ ଏପରି ଅଭିଳାଷରେ ତାହାଙ୍କ ପ୍ରତି ଭୟାନକ ଶରଜାଲ ବର୍ଷଣ କଲେ ।

ତଦନନ୍ତର ସେ ଦୁହିଁଙ୍କର ଗୋଧାନିର୍ମିତ ଅଙ୍ଗୁଳିର ଆଘାତରେ ଚଟଚଟା ଶବ୍ଦ, ସୁମହାନ୍ ତଳଶବ୍ଦ, ଭୟଙ୍କର ସିଂହନାଦ, ରଥନେମି ଓ ଜ୍ୟାନିର୍ଘୋଷ ଏହି ଶବ୍ଦସମସ୍ତ ଏକତ୍ରିତ ହେବାରୁ ସମରାଙ୍ଗଣରେ ଗୋଟିଏ ତୁମୁଳ ଶବ୍ଦ ସମୁତ୍ପନ୍ନ ହେଲା ।

ସେହି କାଳରେ ଯୋଦ୍ଧାମାନେ ପରସ୍ପର ବଧାଭିଳାଷୀ କର୍ଣ୍ଣ ଓ ଭୀମ ଏ ଦୁହିଁଙ୍କର ପରାକ୍ରମ ଦର୍ଶନେଚ୍ଛାରେ ଯୁଦ୍ଧରୁ ବିରତ ହେଲେ । ଦେବର୍ଷି, ସିଦ୍ଧ, ଗନ୍ଧର୍ବ ଓ ବିଦ୍ୟାଧରଗଣ ସେ ଦୁହିଁଙ୍କ ଉପରେ ବାରମ୍ବାର ପୁଷ୍ପବୃଷ୍ଟି କରି ସାଧୁବାଦପ୍ରଦାନପୂର୍ବକ ପ୍ରଶଂସା କଲେ । ୫୫ ।

ତଦନନ୍ତର ଦୃଢ଼ ବିକ୍ରମଶାଳୀ ମହାବାହୁ ଭୀମସେନ ସ୍ୱୀୟ ଅସ୍ତ୍ର ପ୍ରଭାବରେ କର୍ଣ୍ଣପ୍ରେରିତ ଶରଜାଲ ନିବାରିତ କରି ପରମ୍ପସହକାରେ ତାହାଙ୍କୁ ଶରସମୂହଦ୍ୱାରା ବିଦ୍ଧ କଲେ । ୫୬ । ମହାବଳଶାଳୀ କର୍ଣ୍ଣ ମଧ୍ୟ ସମରରେ ଭୀମନିକ୍ଷିପ୍ତ ବାଣସମୂହକୁ ନିରାକୃତ କରି ଆଶୀବିଷତୁଲ୍ୟ ନଅ-ଗୋଟି ନାରାଚ ତାହାଙ୍କ ପ୍ରତି ନିକ୍ଷେପ କଲେ । ୫୭ । ମହାବାହୁ ଭୀମସେନ ସୂତପୁତ୍ରଙ୍କ ନିକ୍ଷିପ୍ତ ସେହି ନଅଗୋଟି ନାରାଚକୁ ନଅଗୋଟି ଶରଦ୍ୱାରା ନଭୋମଣ୍ଡଳରେ ଛେଦନ କରି ତାହାଙ୍କୁ ରହରହ ବୋଲି କହି ଗର୍ଜ୍ଜନ-ପୂର୍ବକ କ୍ରୁଦ୍ଧ ଅନ୍ତକ ଓ ଯମଦଣ୍ଡତୁଲ୍ୟ ଗୋଟିଏ ଶର ଗ୍ରହଣ କରି ତାହାଙ୍କ ପ୍ରତି ନିକ୍ଷେପ କଲେ । ୫୯ । ପ୍ରତାପବାନ୍ କର୍ଣ୍ଣ ଭୀମଙ୍କର ସେହି ଶରକୁ ଆଗମନ କରିବାର ଦେଖି ଅମ୍ଳାନବଦନରେ ତିନିଗୋଟି ଶରଦ୍ୱାରା ତାହାଙ୍କୁ

ଛେଦନ କଲେ । ୭୦ । ପାଣ୍ଡୁପୁତ୍ର ଭୀମ ପୁନର୍ବାର ତାହାଙ୍କପ୍ରତି ଉଗ୍ରତର ଶରସମୂହ ବର୍ଷଣ କରିବାରେ ପ୍ରବୃତ୍ତ ହେଲେ । କର୍ଣ୍ଣ ସେ ସମସ୍ତଙ୍କୁ ନିର୍ଭୀକ ସଦୃଶ ପ୍ରତିଗ୍ରହ କଲେ । ୭୧ ।

ହେ ମହାରାଜ ! ଭୀମସେନ ସେହିରୂପ ଯୁଦ୍ଧ କରନ୍ତେ ସୂତ-ପୁତ୍ର କ୍ରୋଧାବିଷ୍ଟ ହୋଇ ମାୟାପ୍ରଭାବଦ୍ୱାରା ସନ୍ନତପର୍ବ ଶରରେ ତାହାଙ୍କ ତୂଣୀର, ଜ୍ୟା, ଅଶ୍ୱ-ରଶ୍ମି ଓ ଯୋକ୍ତ୍ରକୁ ଛେଦନ କଲେ । ତତ୍ପରେ ତାହାଙ୍କର ଅଶ୍ୱମାନଙ୍କୁ ନିପାତିତ କରି ସାରଥିକୁ ବଧ କଲେ । ୭୩ । ଭୀମଙ୍କର ସାରଥି କର୍ଣ୍ଣଙ୍କ ଶରଦ୍ୱାରା ସମାହତ ହୋଇ ସତ୍ୱର ଭୀମଙ୍କ ରଥ ପରିତ୍ୟାଗପୂର୍ବକ ଯୁଧାମନ୍ୟୁଙ୍କ ରଥକୁ ଗମନ କଲେ । ତହୁଁ ଅଧିରଥ-ନନ୍ଦନ କର୍ଣ୍ଣ କୋପରେ କାଳାନଳସଦୃଶ ହୋଇ ହାସ୍ୟମୁଖରେ ଭୀମଙ୍କର ରଥଧ୍ୱଜା ଓ ପତାକା ଛେଦନ କଲେ । ମହାବାହୁ ଭୀମସେନ ଜ୍ୟାଶୂନ୍ୟ ଶରାସନକୁ ପରିତ୍ୟାଗ ପୂର୍ବକ ଶକ୍ତି ଗ୍ରହଣ କରି କ୍ରୋଧରେ କର୍ଣ୍ଣଙ୍କ ରଥ ଉପରକୁ ନିକ୍ଷେପ କଲେ ।

କର୍ଣ୍ଣ ମହୋଲ୍ଲାସମନରେ ସେହି କନକବିଭୂଷିତ ଶକ୍ତିକୁ ସମାଗତ ହେବାର ସନ୍ଦର୍ଶନ କରି କ୍ରୋଧଭରରେ ଦଶଗୋଟି ଶରରେ ତାହାକୁ ଛେଦନ କଲେ । ସେ ମିତ୍ର ଦୁର୍ଯ୍ୟୋଧନଙ୍କର ପ୍ରୟୋଜନ ସିଦ୍ଧିନିମିତ୍ତ ଅଦ୍ଭୁତ ପରାକ୍ରମ ପ୍ରକାଶପୂର୍ବକ ଶରଦ୍ୱାରା ଭୀମପ୍ରେରିତ ଶକ୍ତିକୁ ଦଶଖଣ୍ଡ କରି କାଟି ଭୂତଳରେ ନିପାତିତ କଲେ । ତତ୍କାଳରେ ଭୀମସେନ ମୃତ୍ୟୁ ହେଉ ବା ଜୟ ହେଉ ଏ ଦୁଇ ମଧ୍ୟରୁ ଏକକୁ ଲାଭ କରିବାକୁ ଅଭିଳାଷୀ ହୋଇ ସ୍ୱର୍ଣ୍ଣଖଚିତ ଚର୍ମ ଓ ଖଡ୍ଗ ଗ୍ରହଣ କଲେ । ପରନ୍ତୁ ସୂତପୁତ୍ର କର୍ଣ୍ଣ ହାସ୍ୟପୂର୍ବକ ତତ୍କ୍ଷଣାତ୍ ତାହାଙ୍କର ସୁନ୍ଦରପ୍ରଭାସମନ୍ୱିତ ସେହି ଚର୍ମକୁ ବହୁତର ଭୟାନକ ଶରଦ୍ୱାରା ଛେଦନ କଲେ ।

ବୃକୋଦର ଚର୍ମ ଓ ରଥହୀନ ହେବାରୁ କ୍ରୋଧରେ ମୂର୍ଚ୍ଛିତ ହୋଇ ବେଗରେ ଏକ ମହାନ୍ ଅସି ପରିଭ୍ରାମିତ କରି ସୂତପୁତ୍ରଙ୍କର ରଥ ପ୍ରତି ନିକ୍ଷେପ କଲେ । ସେହି ଅସି କର୍ଣ୍ଣଙ୍କର ଜ୍ୟା-ସମନ୍ୱିତ ଶରାସନକୁ ଛିନ୍ନ କରି କ୍ରୁଦ୍ଧଭୁଜଙ୍ଗ ସଦୃଶ ନଭୋମଣ୍ଡଳରୁ ଭୂତଳରେ ନିପତିତ ହେଲା ।

ତଦନନ୍ତର କର୍ଣ୍ଣ ଅକ୍ଷୁବ୍ଧ ଚିତ୍ତରେ ଶତ୍ରୁ-ବିନାଶକ୍ଷମ ଅତିଶୟ ବେଗସହ ଦୃଢ଼ତର ଜ୍ୟାଯୁକ୍ତ ଅନ୍ୟ ଗୋଟିଏ ଶରାସନ ଗ୍ରହଣପୂର୍ବକ ଭୀମଙ୍କର ସଂହାର କାମନାକରି କ୍ରୋଧସହ ତହିଁରେ ରୁକ୍ମପୁଙ୍ଖ ଅତି ତୀକ୍ଷ୍ଣତର ସହସ୍ର ସହସ୍ର ବାଣ ସଂଯତ କରି ତାହାଙ୍କ ପ୍ରତି ନିକ୍ଷେପ କଲେ । ସେହି ସମୟରେ ବଳୀୟାନ ଭୀମସେନ କର୍ଣ୍ଣ-ଶରାସନବିମୁକ୍ତ ବହୁ ଶରନିକରରେ ବଧ୍ୟମାନ ହୋଇ ତାହାଙ୍କ ଅନ୍ତଃକରଣକୁ ବ୍ୟଥିତ କରି ରଥରୁ ଅନ୍ତରୀକ୍ଷକୁ ସମୁତ୍ଥିତ ହେଲେ ।

ସୂତ-ପୁତ୍ର ସମର ବିଜୟାଭିଳାଷୀ ଭୀମଙ୍କର ସେହି ଅଦ୍ଭୁତ କାର୍ଯ୍ୟ ସନ୍ଦର୍ଶନ କରି ରଥନୀଡ଼ରେ ବିଲୀନ ହୋଇ ତାହାଙ୍କୁ ବଞ୍ଚିତ କଲେ । ବୃକୋଦର ତାହାଙ୍କୁ ରଥୋପସ୍ଥରେ ବିଲୀନ ଓ ବ୍ୟାକୁଳେନ୍ଦ୍ରିୟ ଅବଲୋକନ କରି ତାହାଙ୍କର ଧ୍ୱଜଯଷ୍ଟି ଗ୍ରହଣପୂର୍ବକ ଭୂତଳରେ ଅବସ୍ଥାନ କଲେ ।

ହେ ମହାରାଜ ! ବିହଗରାଜ ଗରୁଡ଼ ଯେପରି ନଭୋମଣ୍ଡଳରୁ ଭୁଜଙ୍ଗଙ୍କୁ ଆକ୍ରମଣ କରେ ତଦ୍ରୂପ କର୍ଣ୍ଣବଧାଭିଳାଷରେ ଭୀମସେନ ରଥରୁ ଗଗନମାର୍ଗକୁ ସମୁତ୍ଥିତ ହୁଅନ୍ତେ କୌରବ ଓ ଚାରଣଗଣ ତାହାଙ୍କର ସେହି କାର୍ଯ୍ୟକୁ ଭୂରି ଭୂରି ପ୍ରଶଂସା କଲେ । ଭୀମସେନ ସ୍ୱୀୟ ରଥକୁ ପଶ୍ଚାତ୍ ଭାଗରେ ରଖି କ୍ଷତ୍ରିୟ ଧର୍ମ୍ମ ପ୍ରତିପାଳନପୂର୍ବକ ଛିନ୍ନଧନ୍ୱା ଓ ବିରଥ ହୋଇ କର୍ଣ୍ଣଙ୍କ ସହିତ ଯୁଦ୍ଧାର୍ଥ ଭୂତଳରେ ଅବସ୍ଥାନ କଲେ । ସୂତପୁତ୍ର ମଧ୍ୟ ଉକ୍ତରୂପେ ତାହାଙ୍କର ଆକ୍ରମଣ ନିଷ୍ଫଳ କରି ତାହାଙ୍କୁ ଯୁଦ୍ଧାର୍ଥ ସମ୍ମୁଖରେ ଅବସ୍ଥିତ ଥିବାର ଦେଖି ସଂରମ୍ଭସହ ତାହାଙ୍କ ପ୍ରତି ଅଭିଦ୍ରୁତ ହେଲେ । ମହାବଳଶାଳୀ ନରଶ୍ରେଷ୍ଠ ଭୀମ ଓ କର୍ଣ୍ଣ ପରସ୍ପର ସମରରେ ସ୍ପର୍ଦ୍ଧମାନ ଓ ସମବେତ ହୋଇ ବର୍ଷାକାଳୀନ ଦୁଇଖଣ୍ଡି ଜଳଧରସଦୃଶ ଗର୍ଜନ କଲେ ।

ତଦନନ୍ତର ସେହି ନରସିଂହ ଦ୍ୱୟ କ୍ରୋଧରେ ଅଧୀର ହୋଇ ଦେବାସୁରସଦୃଶ ଘୋରତର ସଂଗ୍ରାମ କଲେ । ମହାବୀର କର୍ଣ୍ଣ ଅସ୍ତ୍ର-ବଳରେ ଭୀମସେନଙ୍କୁ ଶସ୍ତ୍ରବିହୀନ କରି ତାହାଙ୍କ ପଶ୍ଚାତ୍ ଧାବମାନ ହେଲେ । ଭୀମସେନ ତାହାଦେଖି ଭୟରେ ଅର୍ଜ୍ଜୁନ ଶରରେ ନିହତ

ହୋଇଥିବା ପର୍ବତୋପମ ହସ୍ତିରାଶି ନିପତିତ ନିରୀକ୍ଷଣ କରି ଏଠାରେ ଅବଶ୍ୟ କର୍ଣ୍ଣର ରଥଗତି ପ୍ରତିହତ ହେବ, ଏହା ବିବେଚନା କରି ଅସ୍ତ୍ରଶୂନ୍ୟ ହସ୍ତରେ ତାହାମଧ୍ୟରେ ପ୍ରବେଶ କଲେ । ୮୩ । ସେ ଜୀବନ ରକ୍ଷାମାନସରେ ରଥର ଗତିରୋଧକାରୀ ସେହି ହସ୍ତିରାଶିକୁ ଦେଖି ତନ୍ମଧ୍ୟରେ ପ୍ରବେଶପୂର୍ବକ କର୍ଣ୍ଣଙ୍କୁ ଆଉ ପ୍ରହାର କଲେ ନାହିଁ । ୮୪ ।

ହେ ମହାରାଜ ! ଶତ୍ରୁପୁରବିଜୟୀ ଭୀମ ସ୍ୱଶରୀରର ଆଚ୍ଛାଦନାକାଂକ୍ଷୀ ହୋଇ ମହାବୀର ହନୁମାନ ନାନାପ୍ରକାର ମହୌଷଧିଯୁକ୍ତ ଗନ୍ଧମାଦନ ଗିରି ଉତ୍ତୋଳନ କଲାପ୍ରାୟ ଧନଞ୍ଜୟଶରନିହତ ଗୋଟିଏ ବୃହତ୍ ହସ୍ତୀକୁ ଉତ୍ତୋଳନ କରି ଅବସ୍ଥାନ କଲେ । ସୂତପୁତ୍ର ତାହାଙ୍କର ସେହି ଉତ୍ତୋଳିତ ହସ୍ତୀକୁ ବାଣଜାଲରେ ଖଣ୍ଡ ଖଣ୍ଡ କଲେ । ସେ ହସ୍ତୀର ଛିନ୍ନଅଙ୍ଗସବୁ ଗ୍ରହଣ କରି କର୍ଣ୍ଣଙ୍କ ପ୍ରତି ନିକ୍ଷେପ କଲେ । ସେହି ସମୟରେ ବୃକୋଦର ରଣସ୍ଥଳରେ ଚକ୍ରଚ୍ଛିନ୍ନ ଅଶ୍ୱପ୍ରଭୃତି ଯେଉଁସବୁ ବସ୍ତୁ ଦେଖିଲେ, କ୍ରୋଧାବିଷ୍ଟ ହୋଇ ସେହି ସମୁଦାୟ ଗ୍ରହଣପୂର୍ବକ କର୍ଣ୍ଣଙ୍କ ପ୍ରତି ନିକ୍ଷେପ କଲେ ।

ପରନ୍ତୁ ରାଧାନନ୍ଦନ ତାହାଙ୍କର ପୁନଃ ପୁନଃ ନିକ୍ଷିପ୍ତ ସେହିସମସ୍ତ ବସ୍ତୁକୁ ସୁଶାଣିତ ଶରସମୂହଦ୍ୱାରା ଛିନ୍ନଭିନ୍ନ କଲେ । ୮୮ । ତହୁଁ ଭୀମସେନ ସୁଦାରୁଣ ବଜ୍ରସାର ମୁଷ୍ଟିବନ୍ଧନପୂର୍ବକ କର୍ଣ୍ଣଙ୍କୁ ବିନାଶ କରିବାକୁ ଇଚ୍ଛା କଲେ । କିନ୍ତୁ ମୁହୂର୍ତ୍ତିକ ମଧ୍ୟରେ ଅର୍ଜ୍ଜୁନଙ୍କ ପ୍ରତିଜ୍ଞା ତାହାଙ୍କର ସ୍ମରଣ ହେଲା । ସେ ସମର୍ଥ ହୋଇ ମଧ୍ୟ ଅର୍ଜ୍ଜୁନଙ୍କକୃତ କର୍ଣ୍ଣବଧବିଷୟକ ପ୍ରତିଜ୍ଞା ରକ୍ଷାର୍ଥ ତାହାଙ୍କୁ ବିନାଶ କଲେ ନାହିଁ । ୯୦ । ତଦନନ୍ତର କର୍ଣ୍ଣ ଭୀମସେନଙ୍କୁ ପୁନଃ ପୁନଃ ଶାଣିତ ଶରସମୂହଦ୍ୱାରା ପ୍ରହାରପୂର୍ବକ ବ୍ୟାକୁଳେନ୍ଦ୍ରିୟ ଓ ବିମୋହିତ କଲେ । ୯୧ । କର୍ଣ୍ଣ ମଧ୍ୟ ସେହି ସମୟରେ କୁନ୍ତୀଙ୍କର ବାକ୍ୟ ସ୍ମରଣ କରି ସେହି ନିରସ୍ତ୍ର ଭୀମସେନଙ୍କୁ ବିନାଶ କଲେ ନାହିଁ । କିନ୍ତୁ ଧାବମାନ ହୋଇ ଧନୁଷ୍କୋଟିଦ୍ୱାରା ତାହାଙ୍କର ଅଙ୍ଗ ସ୍ପର୍ଶ କଲେ ।୯୨।

ଭୀମ ତତ୍‌କ୍ଷଣାତ୍ କୁପିତଭୁଜଙ୍ଗସଦୃଶ ଗର୍ଜନପୂର୍ବକ କର୍ଣ୍ଣଙ୍କ ଶରାସନକୁ ଛିନ୍ନଭିନ୍ନ କରି ତାହାଙ୍କ ମସ୍ତକରେ ଆଘାତ କଲେ । ୯୩ । କର୍ଣ୍ଣ କ୍ରୋଧରେ ଆରକ୍ତନେତ୍ର ହୋଇ ହାସ୍ୟ କରୁ କରୁ ପୁନଃ ପୁନଃ

ଏପରି କଠୋର ବାକ୍ୟମାନ କହିଲେ ଯେ ଆରେ କ୍ଳୀବ, ମୂଢ଼, ତୁ କେବଳ ଉଦରର ବଶୀଭୂତ । ଅସ୍ତ୍ରବିଦ୍ୟାରେ ତୋର ପାରଦର୍ଶିତା ନାହିଁ । ରେ ସମରଶାସ୍ତ୍ର ବାଳକ, ତୁ କଦାଚ ମାଦୃଶ ବ୍ୟକ୍ତିସହିତ ଆଜ ଯୁଦ୍ଧରେ ପ୍ରବୃତ୍ତ ହେବୁନାହିଁ । ୯୫ । ରେ ନିର୍ବୋଧ ! ଯେଉଁସ୍ଥାନରେ ନାନାପ୍ରକାର ଭକ୍ଷ୍ୟଭୋଜ୍ୟ ଓ ପେୟ ବସ୍ତୁମାନ ଅଛି, ତୁ ସେହି ସ୍ଥାନରେ ରହିବାର ଯୋଗ୍ୟ ; ଯୁଦ୍ଧସ୍ଥଳରେ କଦାଚ ଅବସ୍ଥାନର ଯୋଗ୍ୟ ନୋହୁ । ୯୬ । ରେ ଭୀମ, ଫଳମୂଳାହାରୀ ହୋଇ ବ୍ରତନିୟମ ପାଳନପୂର୍ବକ ଅରଣ୍ୟରେ ବାସ କରିବା ତୋ ପକ୍ଷରେ ଶ୍ରେୟସ୍କର ଅଟେ । କାରଣ ସଂଗ୍ରାମରେ ତୁ ଅନ୍ତିଶୟ ଅପଟୁ । ରେ ବତ୍ସ ! ଯୁଦ୍ଧ ଓ ମୁନିବୃତ୍ତି ଏ ଦୁଇଟି ମଧ୍ୟରେ ଅନେକ ଅନ୍ତର । ଅତଏବ ତୁ ଅରଣ୍ୟକୁ ଗମନ କର । ବିଶେଷତଃ ବନବାସ ବିଷୟରେ ତୋହର ଅଭିରୁଚି, ସୁତରାଂ ଯୁଦ୍ଧ କରିବା ତୋ ପକ୍ଷରେ କଦାଚ ଶ୍ରେୟସ୍କର ନୁହେ ।୯୮। ରେ ଦୁର୍ବୁଦ୍ଧି ବୃକୋଦର ! ତୁ କେବଳ ଗୃହ ମଧ୍ୟରେ ଭୋଜନାର୍ଥ ଲୁବ୍ଧ ହୋଇ ସୂଦ ଓ ଦାସପ୍ରଭୃତି ଭୃତ୍ୟଗଣଙ୍କୁ କ୍ରୋଧରେ ତାଡ଼ନା କରିବାକୁ ଅଥବା ଅରଣ୍ୟବାସୀ ମୁନିମାନଙ୍କର ବ୍ରତାବଲମ୍ବନପୂର୍ବକ ଫଳାଦି ଭୋଜନ କରିବାକୁ ଉପଯୁକ୍ତ ଅଟୁ । ଅତଏବ ଅରଣ୍ୟବାସ ତୋ ପକ୍ଷରେ ବିଧେୟ ; ସମରରେ ତୋର କିଛିମାତ୍ର ନୈପୁଣ୍ୟ ନାହିଁ । ୧୦୦ । ରେ ବୃକୋଦର ! ଆମ୍ଭେ ଜାଣିଲୁଁ ଯେ, ତୁ କେବଳ ଫଳମୂଳ ଭୋଜନରେ ଓ ଅତିଥି ସେବାରେ ନିପୁଣ ଅଟୁ, ଅସ୍ତ୍ରଶସ୍ତ୍ର ପ୍ରୟୋଗରେ ତୁ ନିତାନ୍ତ ଅନଭିଜ୍ଞ । ୧୦୧ ।

ହେ ମହାରାଜ ! ସେହି ସମୟରେ କର୍ଣ୍ଣ ଏହିପରି ରୁକ୍ଷ ବାକ୍ୟ ଓ ତାହାଙ୍କର ବାଲ୍ୟକାଳକୃତ ଅପ୍ରିୟବିଷୟକ ଅନ୍ୟାନ୍ୟ ନାନାପ୍ରକାର ପରୁଷ ବାକ୍ୟ ସମସ୍ତ ଶ୍ରବଣ କରାଇଲେ । ୧୦୨ । ଅନନ୍ତର ସେହି ଦୁରବସ୍ଥାପନ୍ନ ପାଣ୍ଡୁପୁତ୍ରଙ୍କୁ ପୁନର୍ବାର ଧନୁଦ୍ୱାରା ସ୍ପର୍ଶକରି କର୍ଣ୍ଣ ହସିହସି କହିଲେ, ହେ ରାଜପୁତ୍ର ! ତୁମ୍ଭେ ଆଜ କଦାଚ ମାଦୃଶ ବ୍ୟକ୍ତି ସହିତ ଯୁଦ୍ଧରେ ପ୍ରବୃତ୍ତ ହେବନାହିଁ । ନିଜର ସମକକ୍ଷ ବ୍ୟକ୍ତି ସହିତ ଯୁଦ୍ଧ କରିବ । ମାଦୃଶ ବ୍ୟକ୍ତି ସହିତ ଯୁଦ୍ଧ କଲେ, ଏହିପରି ଅଥବା ଏହାଠାରୁ ଅନ୍ୟପ୍ରକାର ଅବସ୍ଥା ଘଟିପାରେ । ୧୦୪ । ଅତଏବ ଯେଉଁସ୍ଥାନରେ କୃଷ୍ଣାର୍ଜ୍ଜୁନ ଅଛନ୍ତି ତୁମ୍ଭେ ସେହି ସ୍ଥାନକୁ ଗମନ କର, କାରଣ ସେମାନେ ତୁମ୍ଭଙ୍କୁ ସମରରେ ରକ୍ଷା

କରିବେ । ନଚେତ୍ ତୁମ୍ଭର ଗୃହକୁ ଗମନ କରିବା ଶ୍ରେୟସ୍କର । ତୁମ୍ଭେ ବାଳକ, ଯୁଦ୍ଧରେ ତୁମ୍ଭର କି ପ୍ରୟୋଜନ ଅଛି ? ୧୦୫ ।

ମହାବୀର ବୃକୋଦର କର୍ଣ୍ଣଙ୍କର ଏହିପରି ନିଦାରୁଣ ବଚନ ଶ୍ରବଣ କରି ହାସ୍ୟପୂର୍ବକ ସମସ୍ତଙ୍କ ସମକ୍ଷରେ ତାହାଙ୍କୁ କହିଲେ । ରେ ମୂଢ଼ କର୍ଣ୍ଣ ! ଆମ୍ଭେ ତୋତେ ବାରମ୍ବାର ପରାଜିତ କରିଅଛୁଁ । ତେବେ କି ନିମିତ୍ତ ବୃଥା ଆତ୍ମଶ୍ଳାଘା କରୁଅଛୁ ? ପୂର୍ବତନ ଲୋକମାନେ ଦେବରାଜ ଇନ୍ଦ୍ରଙ୍କର ମଧ୍ୟ ଜୟ ପରାଜୟ ଅବଲୋକନ କରିଅଛନ୍ତି । ୧୦୬ । ରେ ଦୁଷ୍କୁଳୋଦ୍ଭବ ! ତୁ ଥରେ ଆତ୍ମସହିତ ମଲ୍ଲଯୁଦ୍ଧରେ ପ୍ରବୃତ୍ତ ହୁଅ । ତାହା-ହେଲେ ଅଦ୍ୟ ଆମ୍ଭେ ସମସ୍ତ ରାଜଗଣଙ୍କ ସମକ୍ଷରେ ମହାବଳପରାକ୍ରାନ୍ତ ବୃହତ୍କାୟ କୀଚକସଦୃଶ ତୋତେ ସଂହାର କରିବୁଁ । ସେ ସମୟରେ ମତିମାନ୍ କର୍ଣ୍ଣ ଭୀମଙ୍କ ଅଭିସନ୍ଧି ବୁଝିପାରି ସମସ୍ତ ଧନୁର୍ଦ୍ଧରଙ୍କ ସମକ୍ଷରେ ମଲ୍ଲଯୁଦ୍ଧରୁ ବିରତ ହେଲେ ।

ହେ ମହାରାଜ ! ସୂତପୁତ୍ର ଏହିପରି ଭୀମସେନଙ୍କୁ ରଥଭ୍ରଷ୍ଟ କରି ବୃଷ୍ଣିକୁଳସିଂହ କୃଷ୍ଣ ଓ ଅର୍ଜ୍ଜୁନଙ୍କ ସମକ୍ଷରେ ବାରମ୍ବାର ଆତ୍ମଶ୍ଳାଘା କରିବାରେ ପ୍ରବୃତ୍ତ ହେବାରୁ କପିଧ୍ୱଜରଥାରୋହୀ ମହାବୀର ଅର୍ଜ୍ଜୁନ କେଶବଙ୍କ ବାକ୍ୟାନୁସାରେ ସୂତପୁତ୍ରଙ୍କ ପ୍ରତି ଶାଣିତ ଶରନିକର ନିକ୍ଷେପ କଲେ । ସେହିସମସ୍ତ କନକବିଭୂଷିତ ବାଣ ଧନଞ୍ଜୟଙ୍କ ଭୁଜବଳରେ ଗାଣ୍ଡୀବ ଶରାସନରୁ ବିମୁକ୍ତ ହୋଇ ହଂସଗଣ ଶ୍ରେଣୀବଦ୍ଧ ହୋଇ କ୍ରୌଞ୍ଚ ପର୍ବତରେ ପ୍ରବେଶକଲାପ୍ରାୟ କର୍ଣ୍ଣଙ୍କ ଶରୀରରେ ପ୍ରବିଷ୍ଟ ହେଲା । ଧନଞ୍ଜୟ ଗାଣ୍ଡୀବ-ପ୍ରେରିତ ଭୁଜଙ୍ଗସଦୃଶ ଶର ପ୍ରଭାବରେ ସୂତପୁତ୍ରଙ୍କୁ ଭୀମନିକଟରୁ ନିରାକୃତ କଲେ । ତାହାଙ୍କ କର୍ତ୍ତୃକ ଭ୍ରାତା ଭୀମଙ୍କର ପରାଜୟ ହେତୁ ଅତ୍ୟନ୍ତ କ୍ରୁଦ୍ଧ ହୋଇ ତାହାଙ୍କର ଶରାସନ ଛେଦନ କରି ତାହାଙ୍କୁ ଦୃଢ଼ତର ଶରଦ୍ୱାରା ଆହତ କଲେ । କର୍ଣ୍ଣ ତତ୍‌କ୍ଷଣାତ୍ ସମରରେ ଭୀମଙ୍କୁ ପରିତ୍ୟାଗ କରି ରଥାରୋହଣଦ୍ୱାରା ଯାଇ ସେସ୍ଥାନରୁ ପ୍ରସ୍ଥାନ କଲେ । ଭୀମସେନ ମଧ୍ୟ ଭ୍ରାତା ସବ୍ୟସାଚୀଙ୍କ ସମୀପକୁ ଗମନ କରିବା ମାନସରେ ସାତ୍ୟକିଙ୍କ ରଥ ନିକଟକୁ ଗମନ କଲେ ।

ତଦନନ୍ତର ତରସ୍ୱୀ ଧନଞ୍ଜୟ କୋପରେ ଅନ୍ତକ ସଦୃଶ ହୋଇ ଆରକ୍ତନୟନରେ କର୍ଣ୍ଣଙ୍କୁ ଲକ୍ଷ୍ୟକରି ମୃତ୍ୟୁତୁଲ୍ୟ ଗୋଟିଏ ନାରାଚ ନିକ୍ଷେପ କଲେ । ବିହଗରାଜ ଗରୁଡ଼ ଭୁଜଗଭୋଜନାଭିଳାଷରେ ବେଗରେ ଆକାଶରୁ ପତିତ ହେଲପ୍ରାୟ ଗାଣ୍ଡୀବବିଚ୍ୟୁତ ସେହି ନାରାଚଟି କର୍ଣ୍ଣଙ୍କ ପ୍ରତି ବେଗରେ ଆପତିତ ହେଉଅଛି, ଏହା ଦେଖି ଆଗୃର୍ଯ୍ୟନନ୍ଦନ ମହାରଥୀ ଅଶ୍ୱତ୍ଥାମା ଧନଞ୍ଜୟଙ୍କଠାରୁ କର୍ଣ୍ଣଙ୍କ ଉଦ୍ଧାର ମାନସରେ ଗଗନମାର୍ଗରେ ତାହାକୁ ଶରଦ୍ୱାରା ଛେଦନ କଲେ । ନାରାଚ ବ୍ୟର୍ଥ ହୁଅନ୍ତେ ଅର୍ଜ୍ଜୁନ ଅଶ୍ୱତ୍ଥାମାଙ୍କ ପ୍ରତି ଅତିମାତ୍ର କ୍ରୁଦ୍ଧ ହୋଇ "ପଳାୟନ କର ନାହିଁ, ଅବସ୍ଥାନ କରି ଯୁଦ୍ଧ କର" ଏହି କଥା କହି ତାହାଙ୍କୁ ଚତୁଃଷଷ୍ଟି ଶାୟକରେ ବିଦ୍ଧ କଲେ । ଦ୍ରୋଣନନ୍ଦନ ଅର୍ଜ୍ଜୁନଙ୍କ ଶରସମୂହଦ୍ୱାରା ଅତିଶୟ ପୀଡ଼ିତ ହୋଇ ସତ୍ୱର ମତ୍ତମାତଙ୍ଗସମାକୀର୍ଣ୍ଣ ରଥସଙ୍କୁଳ ସୈନ୍ୟମଧ୍ୟରେ ପ୍ରବେଶ କଲେ ।

ତଦନନ୍ତର କୁନ୍ତୀନନ୍ଦନ ମହାବୀର ଅର୍ଜ୍ଜୁନ ଗାଣ୍ଡୀବ-ନିର୍ଘୋଷରେ ରଣସ୍ଥଳସ୍ଥିତ ସୁବର୍ଣ୍ଣପୃଷ୍ଠଶୋଭିତ ସମସ୍ତ ଶରାସନର ଆସ୍ଫାଳନ ଶବ୍ଦକୁ ଅନ୍ତର୍ହିତ କଲେ । ଅଶ୍ୱତ୍ଥାମା ବହୁଦୂର ନ ଯାଉଣୁ ତାହାଙ୍କୁ ପଶ୍ଚାତ୍ତରୁ ଶରପ୍ରଭାବରେ ହାସିତ କରି କଙ୍କପତ୍ରବିରାଜିତ ନାରାଚଦ୍ୱାରା ତୁରଙ୍ଗ, ମାତଙ୍ଗ ଓ ମନୁଷ୍ୟମାନଙ୍କର କଳେବର ବିଦାରଣପୂର୍ବକ ସୈନ୍ୟକ୍ଷୟରେ ପ୍ରବୃତ୍ତ ହେଲେ । ହେ ମହାରାଜ ! ତତ୍କାଳରେ ଇନ୍ଦ୍ରନନ୍ଦନ ଅର୍ଜ୍ଜୁନ କୋପରେ ପ୍ରଜ୍ୱଳିତ ହୋଇ ଏହି ପ୍ରକାରରେ ସେହି ନରବାରଣବାଜିସଙ୍କୁଳ ସୈନ୍ୟମାନଙ୍କୁ ସଂହାର କଲେ । ୧୨୫ ।

---

# ୧୪୦ ଅଧ୍ୟାୟ

ଧୃତରାଷ୍ଟ୍ର କହିଲେ—ହେ ସଞ୍ଜୟ ! ପ୍ରତିଦିନ କେବଳ ଆମ୍ଭମାନଙ୍କର ବହୁତର ଯୋଧବର୍ଗ ବିପକ୍ଷମାନଙ୍କର ଶରରେ ନିହତ ହେଉଅଛନ୍ତି ଓ ତ୍ରିଦାପ୍ତ ଯଶୋରାଶିର ବିଲୋପ ହେଉଅଛି । ଅତଏବ ବୋଧ ହେଉଅଛି, କାଳ ବିପର୍ଯ୍ୟୟଦ୍ୱାରା ଏପରି ଘଟୁଅଛି । ନଚେତ୍ ଯେତେବେଳେ ଅଶ୍ୱତ୍ଥାମା ଓ କର୍ଣ୍ଣଙ୍କଦ୍ୱାରା ରକ୍ଷିତ ସୈନ୍ୟମଧ୍ୟରେ ଦେବଗଣ ମଧ୍ୟ

ପ୍ରବେଶ କରିବାକୁ ସମର୍ଥ ନୁହନ୍ତି, ସେତେବେଳେ ଧନଞ୍ଜୟ ଏକାକୀ ଆମ୍ଭମାନଙ୍କର ତାଦୃଶ ସୈନ୍ୟମଧ୍ୟରେ ପ୍ରବେଶ କଲା । ପୁଣି ପ୍ରଭୂତବୀର୍ଯ୍ୟଶାଳୀ କୃଷ୍ଣ, ଭୀମ ଓ ଶିନିପ୍ରବର ସାତ୍ୟକିଙ୍କ ସହିତ ମିଳିତ ହେବାରୁ ତାହାର ପରାକ୍ରମ ସମ୍ୟକ୍ ବର୍ଦ୍ଧିତ ହୋଇଅଛି । ୩ । ହେ ସଞ୍ଜୟ ! ଏହି ସମ୍ବାଦ ଶ୍ରବଣାବଧି ନିଜ ଆଧାରସ୍ଥାନ ଦହନକାରୀ ଅଗ୍ନିସଦୃଶ ହୃଦୟସ୍ଥିତ ଶୋକାଗ୍ନି ଆମ୍ଭର ଅନ୍ତରକୁ ନିରନ୍ତର ଦଗ୍ଧ କରୁଅଛି । ଜୟଦ୍ରଥ ପ୍ରଭୃତି ମହୀପାଳମାନେ କାଳଗ୍ରାସରେ ପତିତ ହେଲପ୍ରାୟ ଆମ୍ଭେ ମନେ କରୁଅଛୁଁ । ୪ ।

ସିନ୍ଧୁରାଜ କିରୀଟୀର ମହତ୍ ଅପ୍ରିୟକାର୍ଯ୍ୟ କରିଅଛନ୍ତି । ଅତଏବ ବର୍ତ୍ତମାନ ସେ ତାହାଙ୍କର ଦୃଷ୍ଟିଗୋଚରରେ ଆସି କିପରି ଜୀବନରକ୍ଷା କରିପାରିବେ ? ୫ । ହେ ସଞ୍ଜୟ ! ଆମ୍ଭେ ଅନୁମାନ କରୁଁ ସମରରେ ସିନ୍ଧୁପତି ପରିତ୍ରାଣ ପାଇବେ ନାହିଁ । ଯାହାହେଉ ସେହି ଯୁଦ୍ଧ ଯେପରି ହୋଇଥିଲା, ତାହା ତୁମ୍ଭେ ଆମ୍ଭ ନିକଟରେ ଯଥାର୍ଥରୂପେ ବର୍ଣ୍ଣନା କର । ୬ । ଏକାକୀ ହୋଇ ଯେଉଁ ସାତ୍ୟକୀ ନଳିନୀବନଦଳନକାରୀ କ୍ରୁଦ୍ଧକୁଞ୍ଜରସଦୃଶ ବାରମ୍ବାର ଆମ୍ଭର ମହତ୍ ସୈନ୍ୟଙ୍କୁ ଆଲୋଡ଼ିତ ଓ ବିକ୍ଷୋଭିତ କରି ତନ୍ମଧ୍ୟରେ ଧନଞ୍ଜୟଙ୍କ ସାହାଯ୍ୟାର୍ଥ ପ୍ରବିଷ୍ଟ ହୋଇଅଛନ୍ତି, ସେହି ବୃଷ୍ଣିପ୍ରବୀରଙ୍କର ଯୁଦ୍ଧ ବିଷୟ ଆମୂଳ ଆମ୍ଭ ନିକଟରେ କୀର୍ତ୍ତନ କର । ହେ ସଞ୍ଜୟ ତୁମ୍ଭେ ବାକ୍ୟକୁଶଳ ଅଟ । ୮ ।

ସଞ୍ଜୟ କହିଲେ—ହେ ମହାରାଜ ! ଶିନିପ୍ରବୀର ସାତ୍ୟକି ମହୀପାଳମାନଙ୍କ ସମକ୍ଷରେ ପୁରୁଷଶ୍ରେଷ୍ଠ ଭୀମଙ୍କୁ କର୍ଣ୍ଣଙ୍କକର୍ତ୍ତୃକ ନିପୀଡ଼ିତ ହୋଇ ତାଦୃଶ ପ୍ରକାରେ ଗମନ କରିବାର ଦେଖି ରଥାରୋହଣପୂର୍ବକ ତାହାଙ୍କର ଅନୁଗାମୀ ହେଲେ । ସେହି ସମୟରେ ସାତ୍ୟକି ଶରତ୍କାଳୀନ ସୂର୍ଯ୍ୟସଦୃଶ ପ୍ରଜ୍ୱଳିତ ହୋଇ ବର୍ଷାକାଳର ଜଳଧରତୁଲ୍ୟ ଗର୍ଜ୍ଜନପୂର୍ବକ ଦୃଢ଼ତର ଶରାସନଦ୍ୱାରା ଆପଣଙ୍କ ପୁତ୍ରର ସୈନ୍ୟମାନଙ୍କୁ ବିକମ୍ପିତ କରି ଶତ୍ରୁସଂହାର କରୁ କରୁ ଗମନ କରିବାରେ ପ୍ରବୃତ୍ତ ହେଲେ । ୧୦ । ରଣାଙ୍ଗନରେ ମଧୁକୁଳପ୍ରବର ମହାବୀର ସାତ୍ୟକି ଗର୍ଜ୍ଜନପୂର୍ବକ ରଜତସଙ୍କାଶ ଅଶ୍ୱଗଣଦ୍ୱାରା ଗମନ କରିବା ସମୟରେ ଆପଣଙ୍କପକ୍ଷୀୟ କୌଣସି ବୀର ତାହାଙ୍କୁ ନିବାରଣ କରିବାକୁ ସମର୍ଥ ହେଲେ ନାହିଁ । ୧୧ । ସମରରେ ଅନିବର୍ତ୍ତୀ

ରାଜଶ୍ରେଷ୍ଠ ଅଳମ୍ବୁଷ କାଞ୍ଚନମୟ ବର୍ମ୍ମ ଧାରଣପୂର୍ବକ ଶରଗଣ ବିସ୍ତାରଣ କରି ମଧୁକୁଳାଗ୍ରଗଣ୍ୟ ସାତ୍ୟକଙ୍କ ସମ୍ମୁଖରେ ଉପସ୍ଥିତ ହୋଇ ତାହାଙ୍କୁ ନିବାରଣ କଲେ । ୧୨ ।

ସେ ଦୁଇଜଣଙ୍କ ମଧ୍ୟରେ ଯାଦୃଶ ସଂଗ୍ରାମ ଉପସ୍ଥିତ ହେଲା, ତାଦୃଶ ସଂଗ୍ରାମ ଆଉ କଦାପି ଉପସ୍ଥିତ ହୋଇନାହିଁ । ସେହି ସମୟରେ ଆପଣଙ୍କ-ପକ୍ଷୀୟ କିମ୍ବା ଶତ୍ରୁପକ୍ଷୀୟ ଏହି ଉଭୟ ପକ୍ଷୀୟ ଯୋଦ୍ଧାମାନେ ସମରଶୋଭୀ ସେହି ବୀରଦ୍ୱୟଙ୍କୁ ନିରୀକ୍ଷଣ କରିବାରେ ପ୍ରବୃତ୍ତ ହେଲେ । ୧୩ । ରାଜପ୍ରବର ଅଳମ୍ବୁଷ ସାତ୍ୟକଙ୍କୁ ଲକ୍ଷ୍ୟ କରି ବଳପୂର୍ବକ ଦଶଗୋଟି ବାଣ ନିକ୍ଷେପ କଲେ । ସାତ୍ୟକ ସେହିସମସ୍ତ ବାଣ ନିକଟସ୍ଥ ନ ହେଉଣୁ ସବୁକୁ ଛେଦନ କଲେ । ୧୪ । ବାଣ ବ୍ୟର୍ଥ ହୁଅନ୍ତେ ଅଳମ୍ବୁଷ ପୁନର୍ବାର ସୁବର୍ଣ୍ଣପୁଙ୍ଖ ନିଶିତ ଅଗ୍ନିକଳ୍ପ ତିନିଗୋଟି ବାଣଦ୍ୱାରା ସାତ୍ୟକଙ୍କି ବିଦ୍ଧ କଲେ । ସେହି ଶରସବୁ ତାହାଙ୍କର ଦେହାବରଣ ବିଦୀର୍ଣ୍ଣ କରି ଶରୀର ମଧ୍ୟରେ ପ୍ରବିଷ୍ଟ ହେଲେ । ୧୫ । ରାଜା ଅଳମ୍ବୁଷ ବାୟୁତୁଲ୍ୟ ବେଗଗାମୀ ଜ୍ୱଳଦଗ୍ନିସଦୃଶ ସେହି ସକଳ ଶାଣିତ ଶରମାନଙ୍କଦ୍ୱାରା ସାତ୍ୟକଙ୍କ ଶରୀର ବିଦୀର୍ଣ୍ଣ କରି ତାହାଙ୍କର ରଜତପ୍ରଭ ଅଶ୍ୱଚତୁଷ୍ଟୟଙ୍କୁ ଚାରିଗୋଟି ବାଣରେ ସମାହତ କଲେ । ୧୬ ।

କୃଷ୍ଣତୁଲ୍ୟ ପ୍ରଭାବଶାଳୀ ମହାବେଗସମ୍ପନ୍ନ ଶିନିପୌତ୍ର ସାତ୍ୟକ ଅଳମ୍ବୁଷର ଶରସମୂହଦ୍ୱାରା ସେହି ପ୍ରକାରେ ସମାହତ ହେବାରୁ ମହାବେଗ-ବାନ୍ ଚାରିଗୋଟି ଶରରେ ଅଳମ୍ବୁଷର ଅଶ୍ୱମାନଙ୍କୁ ବିନାଶ କଲେ । ୧୭ । ତତ୍ପରେ କାଳାନଳ-ସନ୍ନିଭ ଆଉ ଗୋଟିଏ ଭଲ୍ଲାସ୍ତ୍ରଦ୍ୱାରା ଅଳମ୍ବୁଷଙ୍କ ସାରଥିର ମସ୍ତକକୁ ଛେଦନ କରି ତାହାଙ୍କର ସୁବର୍ଣ୍ଣକୁଣ୍ଡଳଭୂଷିତ ପୂର୍ଣ୍ଣ-ଶଶଧରତୁଲ୍ୟ ସମୁଜ୍ଜ୍ୱଳବଦନସୁଶୋଭିତ ମସ୍ତକକୁ ଦେହରୁ ପୃଥକ୍ କରି ଭୂତଳରେ ପାତିତ କଲେ । ୧୮ ।

ହେ ମହାରାଜ ! ତଦନନ୍ତର ଶତ୍ରୁକୁଳପ୍ରମାଥୀ ଯଦୁକୁଳଶ୍ରେଷ୍ଠ ବୀର ସାତ୍ୟକ ରାଜବଂଶଜାତ ରାଜା ଅଳମ୍ବୁଷକୁ ଯୁଦ୍ଧରେ ନିହତ କରି ଓ ଆପଣଙ୍କ ସୈନ୍ୟମାନଙ୍କୁ ନିବାରିତ କରି ଅର୍ଜ୍ଜୁନଙ୍କ ନିକଟକୁ ଗମନ

କଲେ । ହେ ଆଜମୀଢ଼କୁଳସମ୍ଭୂତ ! ଯେପରି ପ୍ରଚଣ୍ଡବାୟୁ ମେଘସମୂହକୁ ଛିନ୍ନଭିନ୍ନ କରେ, ସେହିପରି ବୃଷ୍ଣିପ୍ରବର ସାତ୍ୟକି ବିପକ୍ଷ ମଧ୍ୟରେ ପ୍ରବେଶପୂର୍ବକ ସେମାନଙ୍କୁ ସଂହାର କରି କରି ଆଗମନ କରୁଥିବାର ଦେଖି ଆପଣଙ୍କ ପୁତ୍ରମାନେ ଆପଣଙ୍କ ସେନାସହିତ ମିଳିତ ହୋଇ ଯୋଧମୁଖ୍ୟ ଦୁଃଶାସନକୁ ଅଗ୍ରବର୍ତ୍ତୀ କରି ତାହାଙ୍କୁ ଚତୁର୍ଦ୍ଦିଗରୁ ପରିବେଷ୍ଟନପୂର୍ବକ ପ୍ରହାର କଲେ । ସାତ୍ୟକିଙ୍କର ସିନ୍ଧୁଦେଶୀୟ ସୁବର୍ଣ୍ଣଜାଲଭୂଷିତ ଗୋଦୁଗ୍-କୁନ୍ଦ-ଚନ୍ଦ୍ର-ହିମ-ସବର୍ଣ୍ଣ ସୁଶିକ୍ଷିତ ସାରଥିବଶୀଭୂତ ସଦଶ୍ୱମାନେ ସେହି ନରସିଂହଙ୍କୁ ସେ ଯେଉଁ ଯେଉଁ ସ୍ଥାନକୁ ଗମନ କରିବାପାଇଁ ଇଚ୍ଛା କରିଥିଲେ, ସେହି ସେହି ସ୍ଥାନରେ ତାହାଙ୍କୁ ନେଇ ଉପସ୍ଥିତ କଲେ । ସାତ୍ୱତକୁଳ-ତିଳକ ଅମିତଯାଶ୍ଚି ଶିନପୌତ୍ର ବାଣସମୂହଦ୍ୱାରା ସେମାନଙ୍କର ନିକ୍ଷିପ୍ତ ବାଣଜାଲକୁ ନିବାରଣ କଲେ ଓ ଶରାସନ ଉଦ୍ୟତ କରି ଅଗ୍ନିକଳ୍ପ ବାଣନିକରଦ୍ୱାରା ଦୁଃଶାସନର ତୁରଙ୍ଗମାନଙ୍କୁ ସଂହାର କଲେ । ହେ ମହାରାଜ ! କୃଷ୍ଣ ଓ ଧନଞ୍ଜୟ ପୁରୁଷପ୍ରବର ସାତ୍ୟକିଙ୍କର କାର୍ଯ୍ୟ ଅବଲୋକନ କରି ଅତିଶୟ ହୃଷ୍ଟ ହେଲେ ।

---

## ୧୪୧ ଅଧ୍ୟାୟ

ସଞ୍ଜୟ କହିଲେ—ହେ ମହାରାଜ ! ସ୍ୱର୍ଣ୍ଣବିକୃତଧ୍ୱଜସମନ୍ୱିତ ତ୍ରିଗର୍ତ୍ତ ସୈନ୍ୟମାନଙ୍କ ମଧ୍ୟରେ ମହାରଥିଗଣ ମହାବାହୁ ସାତ୍ୟକିଙ୍କୁ ଧନଞ୍ଜୟଙ୍କ ଜୟକାମନାରେ ଅସୀମ ସାଗର ସଦୃଶ ସୈନ୍ୟମଧ୍ୟରେ ପ୍ରବିଷ୍ଟ ଓ ତ୍ୱରାସହ ଦୁଃଶାସନଙ୍କର ରଥନିକଟକୁ ଗମନୋଦ୍ୟତ ହେବାର ଦେଖି କ୍ରୋଧସହକାରେ ରଥସମୂହଦ୍ୱାରା ତାହାଙ୍କୁ ଚତୁର୍ଦ୍ଦିଗରୁ ବେଷ୍ଟନ କରି ନିବାରଣପୂର୍ବକ ଶରଜାଲ ବିକିରଣ କରିବାରେ ପ୍ରବୃତ୍ତ ହେଲେ । ୩ । କିନ୍ତୁ ସତ୍ୟବିକ୍ରମ ସାତ୍ୟକି ତଳଶବ୍ଦସମାକୁଳ ଅସି-ଶକ୍ତି ଓ ଗଦାପୂର୍ଣ୍ଣ ଅପାର ଜଳଧିସଦୃଶ ସେହି ଭାରତୀସେନାର ମଧ୍ୟଦେଶରେ ଅବସ୍ଥାନ କରି ସମରରେ ସମ୍ପରାପ୍ତ ଧନୁର୍ଦ୍ଧରାଗ୍ରଗଣ୍ୟ ପଞ୍ଚାଶତ୍ ବିପକ୍ଷ ରାଜକୁମାରଙ୍କୁ ଏକାକୀ ପରାଜିତ କଲେ । ୫ ।

ହେ ମହାରାଜ ! ସେହି ସ୍ଥାନରେ ସାତ୍ୟକଙ୍କର ଏହି ଅଦ୍ଭୁତ କାର୍ଯ୍ୟ ଦର୍ଶନ କଲୁଁ ଯେ ଆମ୍ଭେମାନେ ତାହାଙ୍କୁ ପଶ୍ଚିମ ଦିଗରେ ଅବଲୋକନ କରି ପୂର୍ବଦିଗକୁ ଦୃଷ୍ଟିପାତ କରିବାମାତ୍ରେ ପୁନର୍ବାର ସେ ପୂର୍ବଦିଗରେ ଦୃଷ୍ଟ ହେଲେ । ସେହିପରି ପୂର୍ବଦିଗରୁ ଉତ୍ତର ଦିଗରେ ଓ ସେଠାରୁ ଦକ୍ଷିଣ ଦିଗରେ ଯେତେବେଳେ ଯେଉଁଆଡ଼କୁ ଦୃଷ୍ଟିପାତ କଲୁ ତେତେବେଳେ ସେହି ଦିଗରେ ଲାଘବପ୍ରଯୁକ୍ତ ସେହି ବୀର ଆମ୍ଭମାନଙ୍କର ଦୃଷ୍ଟିଗୋଚର ହୋଇ ରଥମାର୍ଗରେ ନୃତ୍ୟ କଲାପ୍ରାୟ ଏକାକୀ ଶତରଥୀ ସଦୃଶ ବିଚରଣ କଲେ । ୭ । ତ୍ରିଗର୍ତ୍ତମାନେ ସମସ୍ତେ ସିଂହବିକ୍ରାନ୍ତଗାମୀ ସାତ୍ୟକଙ୍କର ତାଦୃଶ ଅଦ୍ଭୁତ କାର୍ଯ୍ୟ ଦର୍ଶନଦ୍ୱାରା ସନ୍ତପ୍ତ ହୋଇ ସ୍ୱଜନ ସମୀପକୁ ପ୍ରତିନିବୃତ୍ତ ହେଲେ । ୮ । ଅଙ୍କୁଶଦ୍ୱାରା ମତ୍ତମାତଙ୍ଗଙ୍କୁ ନିବାରଣ କଲାପ୍ରାୟ ଶୂରସେନଦେଶୀୟ ଶୌର୍ଯ୍ୟସମ୍ପନ୍ନ ବୀରମାନେ ସାତ୍ୟକଙ୍କୁ ଶରନିପୀଡ଼ିତ କରି ନିବାରଣ କଲେ । ଅଚିନ୍ତ୍ୟବିକ୍ରମ ମହାତ୍ମା ସାତ୍ୟକ କ୍ଷଣକମଧ୍ୟରେ ସେମାନଙ୍କୁ ନିରାକୃତ କରି କଳିଙ୍ଗ ସୈନ୍ୟମାନଙ୍କ ସହିତ ଯୁଦ୍ଧ କଲେ । ୧୦ ।

ତଦନନ୍ତର ସେହି ମହାବାହୁ ଦୁର୍ଜ୍ଜୟ କଳିଙ୍ଗ ସୈନ୍ୟମାନଙ୍କୁ ଅତିକ୍ରମ କରି ପୃଥାନନ୍ଦନ ଧନଞ୍ଜୟଙ୍କୁ ଦର୍ଶନ କଲେ । ୧୧ । ହେ ଭାରତ ! ସଲିଳରାଶି ସନ୍ତରଣଦ୍ୱାରା ଶ୍ରାନ୍ତହୋଇ ସ୍ଥଳପ୍ରାପ୍ତ ହେଲେ ଲୋକେ ଯେପରି ଆଶ୍ୱସ୍ତ ହୁଅନ୍ତି, ସେହିପରି ଯୁଯୁଧାନ ପୁରୁଷବ୍ୟାଘ୍ର ଅର୍ଜ୍ଜୁନଙ୍କୁ ଦର୍ଶନ କରି ସମାଶ୍ୱସ୍ତ ହେଲେ । ୧୨ ।

ସାତ୍ୟକଙ୍କୁ ଆଗମନ କରିବାର ଦେଖି କେଶବ ଅର୍ଜ୍ଜୁନଙ୍କୁ କହିଲେ, ହେ ପାର୍ଥ ! ତୁମ୍ଭର ପଦାନୁସାରୀ ଶିନିକୁଳୋଦ୍ଭବ ସାତ୍ୟକ ତୁମ୍ଭ ନିକଟକୁ ଆଗମନ କରୁଅଛନ୍ତି । ୧୩ । ସେ ତୁମ୍ଭର ସଖା ଓ ଶିଷ୍ୟ । ଏହାଙ୍କର ପରାକ୍ରମ ଅକ୍ଷୟ । ସେହି ପୁରୁଷଶ୍ରେଷ୍ଠ ସମସ୍ତ ଯୋଦ୍ଧାମାନଙ୍କୁ ତୃଣତୁଲ୍ୟ ଜ୍ଞାନ କରି ପରାଜିତ କରିଅଛନ୍ତି । ୧୪ । ସେ ତୁମ୍ଭର ପ୍ରାଣଠାରୁ ମଧ୍ୟ ପ୍ରିୟତମ । ସେ କୌରବ ସୈନ୍ୟମଧ୍ୟରେ ଘୋରତର ଉପଦ୍ରବ ଉତ୍ପାଦନ କରି ତୁମ୍ଭ ସମୀପକୁ ଆସୁଅଛନ୍ତି । ୧୫ । ସେ ଶସ୍ତ୍ର ପ୍ରଭାବରେ ଆଚାର୍ଯ୍ୟ ଦ୍ରୋଣ ଓ ଭୋଜରାଜ କୃତବର୍ମ୍ମାଙ୍କୁ ତୁଚ୍ଛ କରିଅଛନ୍ତି । ୧୬ । ଅସ୍ତ୍ରବିଦ୍ୟାରେ

ପାରଦର୍ଶୀ ସେହି ମହାବୀର ଧର୍ମ୍ମରାଜଙ୍କର ପ୍ରିୟକାମନାରେ ପ୍ରଧାନ ପ୍ରଧାନ ଯୋଦ୍ଧାମାନଙ୍କୁ ନିପାତିତ କରିଅଛନ୍ତି । ୧୭ । ସେ ଅଦ୍ୟ ତୁମ୍ଭର ଦର୍ଶନେଚ୍ଛୁ ହୋଇ କୌରବ ସୈନ୍ୟମଧ୍ୟରେ ଅତି ଦୁଷ୍କର କାର୍ଯ୍ୟ କରିଅଛନ୍ତି । ୧୮ । ସେ ଏକ ରଥରେ ଆଚାର୍ଯ୍ୟପ୍ରମୁଖ ବହୁତର ମହାରଥିଙ୍କ ସହିତ ଯୁଦ୍ଧ କରିଅଛନ୍ତି । ୧୯ । ଧର୍ମ୍ମରାଜଙ୍କଦ୍ୱାରା ଆଦିଷ୍ଟ ହୋଇ ସେ ସ୍ୱୀୟ ବାହୁବଳକୁ ଆଶ୍ରୟ କରି କୌରବମାନଙ୍କର ବ୍ୟୂହିତ ସୈନ୍ୟମାନଙ୍କୁ ବିଦାରଣ କରିଅଛନ୍ତି । ୨୦ । ହେ କୌନ୍ତେୟ ! ଏହି ସମସ୍ତ କୌରବ-ମାନଙ୍କ ମଧ୍ୟରେ ଏହାଙ୍କତୁଲ୍ୟ ଯୋଦ୍ଧା କେହି ନାହାନ୍ତି । ସେହି ଯୁଦ୍ଧଦୁର୍ମଦ ସାତ୍ୟକି ଆସୁଅଛନ୍ତି । ୨୩ । ଅଦ୍ୟ ସେ ଭ୍ରାତୃଗଣ ସହିତ କୁରୁପତି ଦୁର୍ଯ୍ୟୋଧନଙ୍କୁ ପରାଜିତ କରିଅଛନ୍ତି ଓ ରାଜା ଜଳସନ୍ଧରକୁ ନିହତ କରି-ଅଛନ୍ତି । ୨୪ । ଅଦ୍ୟ ସାତ୍ୟକି ଶସ୍ତ୍ରପ୍ରଭାବରେ କୌରବମାନଙ୍କୁ ତୃଣତୁଲ୍ୟ ନିରାକୃତ କରି ଶୋଣିତକର୍ଦ୍ଦମାନ୍ୱିତା ରୁଧିରପ୍ରବାହବତୀ ନଦୀ ଉତ୍ପାଦନ କରିଅଛନ୍ତି । ୨୫ ।

ତଦନନ୍ତର ଅର୍ଜ୍ଜୁନ ଅପହୃଷ୍ଟମନା ହୋଇ କେଶବଙ୍କୁ କହିଲେ, ହେ ମହାବାହୁ କେଶବ ! ସାତ୍ୟକିଙ୍କର ଆଗମନରେ ଆମ୍ଭେ ସନ୍ତୁଷ୍ଟ ନୋହୁ । ୨୬ । ଧର୍ମରାଜଙ୍କର ଯେ କି ଅବସ୍ଥା ଘଟିଅଛି ତାହା ଆମ୍ଭେ ବୁଝି ପାରୁନାହୁଁ । ସେ ସାତ୍ୟକିବିହୀନ ହୋଇ ଜୀବିତ ଅଛନ୍ତି କି ନାହିଁ ତାହା ଜାଣି ପାରୁନାହୁଁ । ୨୭ । ହେ କୃଷ୍ଣ ! ଧର୍ମ୍ମରାଜଙ୍କୁ ରକ୍ଷାକରିବା ତାହାଙ୍କର କର୍ତ୍ତବ୍ୟ ଥିଲା । ତାହା ନ କରି ସେ ଆମ୍ଭ ନିକଟକୁ କି ନିମିତ୍ତ ଆଗମନ କଲେ ! ୨୮ । ଧର୍ମ୍ମରାଜ ଦ୍ରୋଣଙ୍କ ହସ୍ତରେ ଉତ୍ସୃଷ୍ଟ ହୋଇଅଛନ୍ତି । ଜୟଦ୍ରଥ ମଧ୍ୟ ଏ ପର୍ଯ୍ୟନ୍ତ ବିନଷ୍ଟ ହୋଇନାହିଁ । ଭୂରିଶ୍ରବା ସାତ୍ୟକିଙ୍କ ସହିତ ଯୁଦ୍ଧାର୍ଥ ପ୍ରତ୍ୟୁଦ୍‌ଗତ ହେଉଅଛନ୍ତି । ୨୯ । ଅତଏବ ଜୟଦ୍ରଥ ବଧନିମିତ୍ତ ଆମ୍ଭେ ଗୁରୁଭାରଦ୍ୱାରା ଆକ୍ରାନ୍ତ ହୋଇଅଛୁ । କିନ୍ତୁ ବର୍ତ୍ତମାନ ଧର୍ମ୍ମରାଜଙ୍କ ସନ୍ଦେଶ ଜ୍ଞାତହେବା, ସାତ୍ୟକିଙ୍କୁ ରକ୍ଷାକରିବା ଓ ସିନ୍ଧୁରାଜଙ୍କୁ ବିନାଶକରିବା ଏହି ତିନିଗୋଟି କାର୍ଯ୍ୟ ଆମ୍ଭର ଅବଶ୍ୟ କର୍ତ୍ତବ୍ୟ ଅଟେ ।

ଏହି ଦିବାକର ଅସ୍ତ ହେବାର ଉପକ୍ରମ କରୁଅଛନ୍ତି । ପୁଣି ମହାବାହୁ ସାତ୍ୟକି ମଧ୍ୟ ଶ୍ରାନ୍ତ ହୋଇ ଅଛନ୍ତି । ତାହାଙ୍କର ଅଶ୍ୱସ୍ୱ

ପ୍ରାପ୍ତ ନିଃଶେଷିତ ହୋଇଅଛି । ୩୧ । ତାହାଙ୍କର ଅଶ୍ୱଗଣ ଓ ସାରଥି ଅତିଶୟ ଶ୍ରାନ୍ତ ହୋଇଅଛନ୍ତି । କିନ୍ତୁ ଭୂରିଶ୍ରବା ବର୍ତ୍ତମାନ ଅଶ୍ରାନ୍ତ ଓ ସହାୟସମ୍ପନ୍ନ । ୩୨ । ହେ କେଶବ ! ଏହି ଯୁଦ୍ଧରେ ସାତ୍ୟକିଙ୍କର କି ମଙ୍ଗଳ ହେବ ? ମହାବଳଶାଳୀ ସତ୍ୟବିକ୍ରମ ଶିନିପୁଙ୍ଗବ ସାତ୍ୟକି ସାଗର ଉତ୍ତୀର୍ଣ୍ଣ ହୋଇ ବର୍ତ୍ତମାନ କ'ଣ ଗୋଷ୍ପଦ ପ୍ରାପ୍ତହୋଇ ଅବସନ୍ନ ହେବେ ? ଅସ୍ତ୍ରବିଦ୍ୟାପାରଦର୍ଶୀ କୌରବପ୍ରଧାନ ମହାତ୍ମା ଭୂରିଶ୍ରବାଙ୍କ ସହିତ ସମରରେ ସଙ୍ଗତ ହୋଇ ସାତ୍ୟକି କ'ଣ କୁଶଳରେ ଉତ୍ତୀର୍ଣ୍ଣ ହୋଇ-ପାରିବେ ? ହେ କେଶବ ! ଧର୍ମ୍ମରାଜଙ୍କର ଏ ବୁଦ୍ଧିବିପର୍ଯ୍ୟୟର କାର୍ଯ୍ୟ । ସେ ଦ୍ରୋଣାଚାର୍ଯ୍ୟଙ୍କ ଭୟରେ ଶଙ୍କିତ ନ ହୋଇ ସାତ୍ୟକିଙ୍କୁ ଆମ୍ଭ ନିକଟକୁ ପ୍ରେରଣ କରିଅଛନ୍ତି । ଦ୍ରୋଣାଚାର୍ଯ୍ୟ ଆମିଷଗ୍ରହଣାର୍ଥୀ ଶ୍ୟେନପକ୍ଷୀସଦୃଶ ନିୟତ ତାହାଙ୍କୁ ଗ୍ରହଣ କରିବାନିମିତ୍ତ ଚେଷ୍ଟା କରିଥାନ୍ତି । ଅତଏବ ଧର୍ମ୍ମରାଜ କୁଶଳୀ ଅଛନ୍ତି କି ନା ଏଥିରେ ସନ୍ଦେହ । ୩୭ ।

---

# ୧୪୨ ଅଧ୍ୟାୟ

ସଞ୍ଜୟ କହିଲେ—ହେ ମହାରାଜ ! ଭୂରିଶ୍ରବା ଯୁଦ୍ଧଦୁର୍ମ୍ମଦ ଶିନି-ପୁଙ୍ଗବ ସାତ୍ୟକିଙ୍କୁ ତଦ୍ରୂପ ଆଗମନ କରିବାର ଅବଲୋକନ କରି ସହସା କ୍ରୋଧରେ ତାହାଙ୍କ ପ୍ରତି ଅଭିଦ୍ରୁତ ହୋଇ କହିଲେ—ହେ ଦାଶାର୍ହ ! ଅଦ୍ୟ ତୁମ୍ଭେ ଭାଗ୍ୟକ୍ରମେ ଆମ୍ଭର ଦୃଷ୍ଟିଗୋଚର ହୋଇଅଛ । ଅଦ୍ୟ ଆମ୍ଭେ ସମରରେ ଚିରସଞ୍ଚିତକାମନା ପୂରଣ କରିବୁଁ । ଯଦି ତୁମ୍ଭେ ରଣ ପରିତ୍ୟାଗ ନ କର ତାହାହେଲେ ଜୀବନ ଥାଉ ଥାଉ ଆମ୍ଭ ନିକଟରୁ ପରିତ୍ରାଣ ପାଇ ପାରିବ ନାହିଁ । ତୁମ୍ଭେ ସର୍ବଦା ଶୌର୍ଯ୍ୟାଭିମାନ କରିଥାଅ । କିନ୍ତୁ ଅଦ୍ୟ ଆମ୍ଭେ ତୁମ୍ଭଙ୍କୁ ସଂହାର କରି କୁରୁପତି ସୁଯୋଧନଙ୍କୁ ଆନନ୍ଦିତ କରିବୁଁ । ଅଦ୍ୟ ମହାବୀର କୃଷ୍ଣ ଓ ଅର୍ଜ୍ଜୁନ ସମବେତ ହୋଇ ତୁମ୍ଭଙ୍କୁ ଆମ୍ଭର ଶରାଗ୍ନିଦ୍ୱାରା ଦଗ୍ଧ ଓ ଭୂତଳରେ ନିପତିତ ହେବାର ନିରୀକ୍ଷଣ କରିବେ । ୫ । ଧର୍ମନନ୍ଦନ ଯୁଧିଷ୍ଠିର ଅଦ୍ୟ ତୁମ୍ଭଙ୍କୁ ଆମ୍ଭ ହସ୍ତରେ ନିହତ ହେବାର ଦେଖି ସଦ୍ୟ ଲଜ୍ଜିତ ହେବେ । କାରଣ ସେ ତୁମ୍ଭଙ୍କୁ ବ୍ୟୂହ ମଧ୍ୟରେ ପ୍ରବେଶ କରାଇ ଅଛନ୍ତି । ୬ । ତୁମ୍ଭେ ଆମ୍ଭକର୍ତ୍ତୃକ ନିହତ ହୋଇ ଶୋଣିତସିକ୍ତ

କଳେବରରେ ଧରଣୀଶାୟୀ ହେଲେ ପୃଥାନନ୍ଦନ ଧନଞ୍ଜୟ ଅଦ୍ୟ ଆମ୍ଭର ବିକ୍ରମ ଜ୍ଞାତ ହେବେ । ୭ । ପୂର୍ବେ ଦେବାସୁର ଯୁଦ୍ଧକାଳରେ ବଳିରାଜାଙ୍କ ସହିତ ସୁରପତି ଇନ୍ଦ୍ରଙ୍କର ଯେପରି ଯୁଦ୍ଧ ଉପସ୍ଥିତ ହୋଇଥିଲା, ସେହିପରି ତୁମ୍ଭ ସହିତ ଆମ୍ଭର ଯୁଦ୍ଧ ଉପସ୍ଥିତ ହେଉ । ଏହାହିଁ ଆମ୍ଭର ଚିରଅଭିଳଷିତ ଅଟେ । ୮ । ଅତଏବ ହେ ସାତ୍ୟକି ! ଅଦ୍ୟ ଆମ୍ଭେ ତୁମ୍ଭ ସହିତ ଘୋରତର ସଂଗ୍ରାମରେ ପ୍ରବୃତ୍ତ ହେବୁଁ । ତାହାହେଲେ ତୁମ୍ଭେ ଆମ୍ଭର ବଳବୀର୍ଯ୍ୟ ଓ ପୌରୁଷ ଉତ୍ତମରୂପେ ଜାଣିପାରିବ । ୯ । ହେ ମାଧବ ! ରାବଣପୁତ୍ର ରାମାନୁଜ ଲକ୍ଷ୍ମଣଙ୍କକର୍ତ୍ତୃକ ଯେପରି ରଣରେ ନିହତ ହେଲେ ଅଦ୍ୟ ତୁମ୍ଭେ ମଧ୍ୟ ସେହିପରି ଆମ୍ଭ କର୍ତ୍ତୃକ ନିହତ ହୋଇ ଶମନଭବନକୁ ଗମନ କରିବ । ୧୦ । ତୁମ୍ଭେ ଆଜ ହତ ହେଲେ ଧର୍ମ୍ମରାଜ ଯୁଧିଷ୍ଠିର ଓ କୃଷ୍ଣାର୍ଜ୍ଜୁନ ଏମାନେ ନିଶ୍ଚୟ ନିରୁତ୍ସାହ ହୋଇ ସମର ପରିତ୍ୟାଗ କରିବେ । ୧୧ । ହେ ମାଧବ ! ଆଜ ତୁମ୍ଭଙ୍କୁ ଶରନିକରଦ୍ୱାରା ସଂହାର କରି ତୁମ୍ଭର ଶରନିହତ ବୀରଗଣଙ୍କର ସ୍ତ୍ରୀମାନଙ୍କୁ ଆନନ୍ଦିତ କରିବୁଁ । ତୁମ୍ଭେ ଯେତେବେଳେ ଆମ୍ଭ ନେତ୍ରପଥରେ ପତିତ ହୋଇଅଛ, ସେତେବେଳେ ସିଂହର ଦୃଷ୍ଟିଗୋଚରରେ ପତିତ କ୍ଷୁଦ୍ର ମୃଗସଦୃଶ ତୁମ୍ଭେ କଦାଚ ମୁକ୍ତି ଲାଭ କରିପାରିବ ନାହିଁ । ୧୩ ।

ଭୂରିଶ୍ରବାଙ୍କ ବାକ୍ୟ ଶ୍ରବଣ କରି ଯୁଯୁଧାନ ହସି ହସି ତାହାଙ୍କୁ ଏହିପରି ପ୍ରତ୍ୟୁତ୍ତର କଲେ ଯେ, ହେ କୌରବ ! ସଂଗ୍ରାମରେ କଦାପି ଆମ୍ଭର ଭୟ ହୁଏ ନାହିଁ । ଯେଉଁ ବ୍ୟକ୍ତି ରଣ ସ୍ଥଳରେ ଆମ୍ଭଙ୍କୁ ନିରସ୍ତ୍ର କରିପାରିବ ସେହି ବ୍ୟକ୍ତି ଆମ୍ଭଙ୍କୁ ବିନାଶ କରିବାକୁ ସମର୍ଥ ହେବ । କେବଳ ବାକ୍ୟଦ୍ୱାରା ଆମ୍ଭଙ୍କୁ କେହି ସନ୍ତ୍ରାସିତ କରିପାରିବ ନାହିଁ । ୧୫ । ସମରରେ ଯେ ଆମ୍ଭଙ୍କୁ ନିହତ କରିବ ସେ ଇହସଂସାରରେ ଦୀର୍ଘକାଳ ନିରାପଦରେ ଅବସ୍ଥାନ କରିପାରିବ । ଆଉ ବୃଥା ବାକ୍ୟାଡ଼ମ୍ବରରେ ପ୍ରୟୋଜନ ନାହିଁ, ତୁମ୍ଭର ବାକ୍ୟକୁ କାର୍ଯ୍ୟରେ ପ୍ରତିପନ୍ନ କରିବାକୁ ଚେଷ୍ଟା କର । ୧୬ । ଶରତ୍କାଳୀନ ମେଘର ନିଷ୍ଫଳ ଗର୍ଜ୍ଜନସଦୃଶ ତୁମ୍ଭର ବୃଥା ଗର୍ଜ୍ଜିତ ବାକ୍ୟସମୂହ ଶ୍ରବଣ କରି ଆମ୍ଭର ହାସ୍ୟ ଜାତ ହେଉଅଛି । ୧୭ । ପୁଣି ତୁମ୍ଭ ସହିତ ଯୁଦ୍ଧ କରିବାନିମିତ୍ତ ଆମ୍ଭର ଅନ୍ତଃକରଣ ନିତାନ୍ତ ବ୍ୟଗ୍ର ହେଉଅଛି । ଅତଏବ ଆମ୍ଭ ସହିତ ତୁମ୍ଭର ଚିରଦିନର ଯେଉଁ ସମରବାସନା ଅଛି,

ତାହା ଅଦ୍ୟ ପୂରଣ ହେଉ । ରେ ପୁରୁଷାଧମ ! ଅଦ୍ୟ ଆମ୍ଭେ ତୋତେ ସଂହାର ନ କରି କଦାଚ ପ୍ରତିନିବୃତ୍ତ ହେବୁନାହିଁ ।

ହେ ମହାରାଜ ! ମହାଧନୁର୍ଦ୍ଧର କ୍ରୋଧପରାୟଣ ତେଜସ୍ୱୀ ନରସିଂହ ସାତ୍ୟକି ଓ ଭୂରିଶ୍ରବା ପରସ୍ପର ପରସ୍ପରକୁ ବାକ୍ୟରୂପ ଶଲ୍ୟଦ୍ୱାରା ଯେପରି ପୀଡ଼ିତ କରିଥିଲେ ସେହିପରି ପରସ୍ପର ଜିଘାଂସୁ ହୋଇ ପରସ୍ପରକୁ ପ୍ରହାର କଲେ । କରିଣୀଗ୍ରହଣାର୍ଥୀ କ୍ରୁଦ୍ଧ ମଦୋତ୍କଟ ମାତଙ୍ଗଦ୍ୱୟସଦୃଶ ଦୁହେଁ ପରସ୍ପର ସ୍ପର୍ଦ୍ଧାଶୀଳ ଓ ରୋଷାବିଷ୍ଟ ହୋଇ ବାରିଧାରାବର୍ଷୀ ବାରିଦଯୁଗଳ ସଦୃଶ ନିରନ୍ତର ଉଭୟଙ୍କର ଶରଧାରା ବର୍ଷଣ କଲେ । ହେ ମହାରାଜ ! ସୋମଦତ୍ତନନ୍ଦନ ଭୂରିଶ୍ରବା ସାତ୍ୟକିଙ୍କୁ ସଂହାର କରିବା ମାନସରେ ଶୀଘ୍ରଗାମୀ ଶରନିକରଦ୍ୱାରା ତାହାଙ୍କୁ ସମାଚ୍ଛନ୍ନ କରି ଦଶଗୋଟି ଶାଣିତ ଶରରେ ବିଦ୍ଧ କଲେ । ତତ୍ପରେ ସେ ସେହି ଶିନିପ୍ରବରଙ୍କ ବିନାଶକାମନାରେ ଅସଂଖ୍ୟ ଶରଜାଲ ବିମୋଚନ କଲେ । ସେହି ତୀକ୍ଷ୍ଣ ବାଣଜାଲ ସମୀପସ୍ଥ ନ ହେଉଣୁ ମହାବୀର ସାତ୍ୟକି ସେ ସମସ୍ତଙ୍କୁ ଅସ୍ତ୍ରମାୟା ପ୍ରଭାବରେ ବ୍ୟର୍ଥ କଲେ । ସତ୍‌କୁଳସମ୍ଭୂତ କୁରୁ ଓ ବୃଷ୍ଣି ବଂଶଦ୍ୱୟର ଯଶସ୍କର ବୀର ଭୂରିଶ୍ରବା ଓ ସାତ୍ୟକି ଏ ଦୁହେଁ ନିରନ୍ତର ଶରବୃଷ୍ଟି କରିବାରେ ପ୍ରବୃତ୍ତ ହେଲେ । ଯେପରି ନଖଦ୍ୱାରା ଦୁଇଗୋଟି ଶାର୍ଦ୍ଦୂଳ ଓ ଦନ୍ତଦ୍ୱାରା ଦୁଇଗୋଟି ମତ୍ତ-ହସ୍ତୀ ପରସ୍ପର ପରସ୍ପରକୁ ପ୍ରହାର କରନ୍ତି ତଦ୍ରୂପ ସେ ଦୁହେଁ ରଥଶକ୍ତି ଓ ବହୁ ଶରନିକରଦ୍ୱାରା ପରସ୍ପର ପରସ୍ପରକୁ ପ୍ରହାର କଲେ । ତଦ୍ୱାରା ଉଭୟଙ୍କର ଶରୀର କ୍ଷତବିକ୍ଷତ ହେଲା । ଗାତ୍ରରୁ ରୁଧିରଧାରା ପ୍ରବାହିତ ହେଲା । ୨୭ ।

ହେ ମହାରାଜ ! କୁରୁ ଓ ବୃଷ୍ଣିକୁଳର ଯଶସ୍କର ସତ୍‌କର୍ମଶାଳୀ ସେହି ବୀରଦ୍ୱୟ ପ୍ରାଣକୁ ପଣ ରଖି ଯୁଦ୍ଧକ୍ରୀଡ଼ାରେ ପ୍ରବୃତ୍ତ ହେଲେ ଓ ପରସ୍ପର ପରସ୍ପରକୁ ସ୍ତମ୍ଭିତ କରି ଯୂଥପତି ମାତଙ୍ଗଦ୍ୱୟସଦୃଶ ଯୁଦ୍ଧ କରିବାରେ ପ୍ରବୃତ୍ତ ହେଲେ । ବ୍ରହ୍ମଲୋକପ୍ରାପ୍ତିସ୍ୱାର୍ଥୀ ସେହି ବୀରଦ୍ୱୟ ଅଚିର-କାଳରେ ପରମଧାମକୁ ଗମନ କରିବା ଉଦ୍ଦେଶ୍ୟରେ ପରସ୍ପର ଜିଘାଂସୁ ହୋଇ ଶରବର୍ଷଣ ସହ ଗର୍ଜନ କଲେ । ୩୦ । ଦୁହିଁଙ୍କ ଯୁଦ୍ଧ ଦର୍ଶନରେ ଆପଣଙ୍କ ପକ୍ଷୀୟ ସୈନ୍ୟଗଣ ପରସ୍ପର ପରସ୍ପରପ୍ରତି ବାଣବର୍ଷଣ କରି

ସେହି ବୀରଦ୍ୱୟଙ୍କୁ ଦେଖିଲେ । ହେ ମହାରାଜ ! ସେହି ଯୋଧପ୍ରଧାନଦ୍ୱୟ ହସ୍ତିନୀ ଗ୍ରହଣାର୍ଥ ଯୁଧମାନ ଯୂଥପତି କୁଞ୍ଜରଯୁଗଳସଦୃଶ ଯୁଦ୍ଧ କରିବାରେ ପ୍ରବୃତ୍ତ ହେଲେ । ସମସ୍ତ ସୈନ୍ୟମାନେ ସେ ଦୁହିଁଙ୍କପ୍ରତି ଦୃଷ୍ଟିପାତ କରି ରହିଲେ ।

ତଦନନ୍ତର ସେ ଦୁହେଁ ପରସ୍ପରର ଅଶ୍ୱମାନଙ୍କୁ ଓ ଶରାସନକୁ ଛେଦନ କଲେ । ଉଭୟେ ରଥ ପରିତ୍ୟାଗ ପୂର୍ବକ ଅସିଯୁଦ୍ଧ କରିବା ନିମିତ୍ତ ସମବେତ ହୋଇ ଚିତ୍ରିତ ମନୋହର ବିପୁଳ ଆର୍ଷଭ ଚର୍ମ୍ମ ଗ୍ରହଣ-ପୂର୍ବକ ଓ କୋଷରୁ ଅସି ନିଷ୍କାସିତ କରି ସମରାଙ୍ଗଣରେ ବିଚରଣ କଲେ । ଶତ୍ରୁଦମନକାରୀ ଭୂରିଶ୍ରବା ଓ ସାତ୍ୟକି ଯଥାକ୍ରମେ ମଣ୍ଡଳାକାର ଗତିଦ୍ୱାରା ଯୁଦ୍ଧବିଷୟକ ବିବିଧ ବର୍ତ୍ମ ପ୍ରଦର୍ଶନ କରି ବିଚରଣପୂର୍ବକ କ୍ରୋଧଭରରେ ଦୁହେଁ ଦୁହିଁଙ୍କୁ ବାରମ୍ବାର ଆଘାତ କଲେ ।

ସେହି ଯଶସ୍ୱୀ ବୀରଦ୍ୱୟ ଚିତ୍ରିତବର୍ମ୍ମ, ଅଙ୍ଗଦାଦି ଭୂଷଣ ଧାରଣ କରି ଖଡ୍‌ଗହସ୍ତରେ ଭ୍ରାନ୍ତ, ଉଦ୍‌ଭ୍ରାନ୍ତ, ଆବିଦ୍ଧ, ଆପ୍ଲୁତ, ବିପ୍ଲୁତ, ସୃତ, ସମ୍ପାତ ଓ ସମୁଦୀର୍ଣ୍ଣ ପ୍ରଭୃତି ବିବିଧ ଗତି ପ୍ରଦର୍ଶନପୂର୍ବକ ପରସ୍ପର ପରସ୍ପରର ଛିଦ୍ରାନ୍ୱେଷୀ ହୋଇ ଆଶ୍ଚର୍ଯ୍ୟପ୍ରକାର ଉଲ୍ଲମ୍ଫନଦ୍ୱାରା ପରସ୍ପରକୁ ଅସ୍ତ୍ରପ୍ରହାର କଲେ । ୩୭ । ସେହି ରଣଦକ୍ଷ ବୀରଦ୍ୱୟ ଆପଣା ଆପଣା ଲାଘବସୌଷ୍ଠବ ଓ ଶିକ୍ଷାବଳ ପ୍ରଦର୍ଶନପୂର୍ବକ ଦୁହେଁ ଦୁହିଁକି ଆକର୍ଷଣ କରିବାରେ ପ୍ରବୃତ୍ତ ହେଲେ । ୩୮ । ସମସ୍ତ ସୈନ୍ୟମାନଙ୍କ ସାକ୍ଷାତରେ ଉଭୟେ ଉଭୟଙ୍କୁ କିୟତ୍‌କାଳ ପ୍ରହାର କରି ବିଶ୍ରାମ କଲେ । ୩୯ ।

ତଦନନ୍ତର ପୁରୁଷବ୍ୟାଘ୍ର ସାତ୍ୟକି ଓ ଭୂରିଶ୍ରବା ପରସ୍ପର ଖଡ୍‌ଗ-ଦ୍ୱାରା ପରସ୍ପରର ଶତଚନ୍ଦ୍ରଚିହ୍ନିତ ଚର୍ମ୍ମକୁ ଛିନ୍ନଭିନ୍ନ କରି ବାହୁଯୁଦ୍ଧ କରି-ବାରେ ପ୍ରବୃତ୍ତ ହେଲେ । ୪୦ । ବିଶାଳବକ୍ଷ ଓ ଦୀର୍ଘବାହୁସମନ୍ୱିତ ବାହୁ-ଯୁଦ୍ଧକୁଶଳ ସେହି ବୀରଦ୍ୱୟ ଲୌହମୟ ପରିଘତୁଲ୍ୟ ବାହୁଦ୍ୱାରା ସମରରେ ସମାସକ୍ତ ହେଲେ ।୪୧। ହେ ମହାରାଜ ! ସେ ଦୁହିଁଙ୍କର ଶିକ୍ଷାନୈପୁଣ୍ୟପ୍ରଯୁକ୍ତ ଭୁଜାଘାତ, ହସ୍ତଧାରଣ ଓ ଗଳାରେ ହସ୍ତାର୍ପଣ ଅବଲୋକନ କରି ତତ୍ରତ୍ୟ ସୈନ୍ୟମାନଙ୍କର ହର୍ଷୋତ୍ପତ୍ତି ହେଲା । ୪୨ । ସେହି ନରବୀର ଦ୍ୱୟ ଏହି

ପ୍ରକାରେ ଯୁଦ୍ଧ କରନ୍ତେ ବଜ୍ରଦ୍ୱାରା ପର୍ବତସଦୃଶ ଭୟଙ୍କର ଶବ୍ଦ ଉପସ୍ଥିତ ହେଲା । ୪୩ । ଯେପରି ଦନ୍ତଦ୍ୱାରା ଦୁଇଗୋଟି ହସ୍ତୀ ଓ ଶୃଙ୍ଗଦ୍ୱାରା ଦୁଇଗୋଟି ମହାବୃଷଭ ଯୁଦ୍ଧ କରନ୍ତି, ସେହିପରି କୁରୁପ୍ରବର ଓ ସାତ୍ୱତ-କୁଳପ୍ରଧାନ ମହାବୀରଦ୍ୱୟ ପରସ୍ପର ଭୁଜପାଶ ଦ୍ୱାରା ବନ୍ଧନ, ମସ୍ତକରେ-ମସ୍ତକାଘାତ, ଚରଣାକର୍ଷଣ, ତୋମର, ଅଙ୍କୁଶ ଓ ଗୃପନକ୍ଷେପ, ପାଦବନ୍ଧନ, ଉଦରବନ୍ଧ, ଭୂତଳରେ ଉଦ୍ଭ୍ରମଣ, ଗମନ, ପ୍ରତ୍ୟାଗମନ, ଆସ୍ଫାଳନ, ଭୂମିପ୍ରାପଣ, ସମୁତ୍‌ଥାନ, ଓ ଲମ୍ଫପ୍ରଦାନ ପ୍ରଭୃତି ନାନାପ୍ରକାର କୌଶଳ ପ୍ରଦର୍ଶନପୂର୍ବକ ଯୁଦ୍ଧ କଲେ । ବାହୁଯୁଦ୍ଧରେ ଯେଉଁ ଦ୍ୱାତ୍ରିଂଶତ୍ ପ୍ରକାର ପ୍ରକ୍ରିୟା ନିର୍ଦ୍ଦିଷ୍ଟ ଅଛି ରଣପ୍ରବୃତ୍ତ ସେହି ମହାବଳବାନ୍ ବୀରଦ୍ୱୟ ସମରା-ଙ୍ଗଣରେ ସେହିସମସ୍ତ ପ୍ରଦର୍ଶନ କରାଇଲେ । ୪୭ ।

ତଦନନ୍ତର ସାତ୍ୟକଙ୍କୁ ନିରସ୍ତ୍ର ହୋଇ ତାଦୃଶଭାବରେ ଯୁଦ୍ଧ କରିବାର ଦେଖି ବାସୁଦେବ ଅର୍ଜୁନଙ୍କୁ କହିଲେ, ହେ ପାର୍ଥ ! ଦେଖ ସର୍ବଧନୁର୍ଦ୍ଧରଶ୍ରେଷ୍ଠ ସାତ୍ୟକି ରଥବିହୀନ ହୋଇ ଯୁଦ୍ଧ କରୁଅଛନ୍ତି । ୪୮ । ସେ ତୁମ୍ଭର ଅନୁଗାମୀ ହୋଇ ମହାବୀର୍ଯ୍ୟଶାଳୀ କୌରବସେନାଙ୍କୁ ଭେଦ-କରି ସେମାନଙ୍କ ସହିତ ଯୁଦ୍ଧ କରୁଅଛନ୍ତି । ୪୯ । ବର୍ତ୍ତମାନ ଭୂରିଦକ୍ଷିଣାପ୍ରଦ ଭୂରିଶ୍ରବା ସେହି ଯୋଧପ୍ରଧାନ ସାତ୍ୟକଙ୍କୁ ନିତାନ୍ତ ପରିଶ୍ରାନ୍ତଭାବରେ ଆଗମନ କରିବାର ଦେଖି ଯୁଦ୍ଧବାସନାରେ ତାହାଙ୍କୁ ଆକ୍ରମଣ କରିଅଛନ୍ତି, ଏହା ଅତି ଅନୁଚିତ ବୋଧ ହେଉଅଛି ।

ହେ ମହାରାଜ ! ବାସୁଦେବ ଏହି ପ୍ରକାର କହୁଅଛନ୍ତି । ଏମନ୍ତ ସମୟରେ ଯୁଦ୍ଧଦୁର୍ମଦ ଭୂରିଶ୍ରବା କ୍ରୋଧରେ ଏକ ମତ୍ତମାତଙ୍ଗ ଅନ୍ୟ ଗୋଟିଏ ମତ୍ତମାତଙ୍ଗଙ୍କୁ ଆଘାତ କଲାପ୍ରାୟ ସର୍ବଯୋଧାଗ୍ରଗଣ୍ୟ ରଣନିଷ୍ଠୁର ରଥସ୍ଥ କେଶବାର୍ଜୁନଙ୍କ ସମକ୍ଷରେ ସାତ୍ୟକଙ୍କୁ ଉତ୍ତୋଳନପୂର୍ବକ ଆଘାତ କଲେ । ୫୨ । ମହାବାହୁ କୃଷ୍ଣ ସାତ୍ୟକଙ୍କ ତାଦୃଶ ଅବସ୍ଥା ସନ୍ଦର୍ଶନ କରି ପୁନର୍ବାର ଅର୍ଜୁନଙ୍କୁ କହିଲେ, ହେ ଅନଘ ! ଯେଉଁ ବୀର ରଣସ୍ଥଳରେ ଅସଂଖ୍ୟ ସୈନ୍ୟର ଅଜେୟ, ଦେଖ, ଅଦ୍ୟ ବୃଷ୍ଣି ଓ ଅନ୍ଧକବଂଶର ଅଗ୍ର-ଗଣ୍ୟ ସେହି ସାତ୍ୟକି ସମରରେ ଭୂରିଶ୍ରବାଙ୍କ ବଶବର୍ତ୍ତୀ ହୋଇଅଛନ୍ତି । ୫୩ । ସେ ଅଦ୍ୟ ସମରରେ ଦୁଷ୍କରକାର୍ଯ୍ୟ କରି ପରିଶ୍ରାନ୍ତ ହୋଇଥିବାରୁ

ବର୍ତ୍ତମାନ ଭୂରିଶ୍ରବାଙ୍କକର୍ତ୍ତୃକ ଭୂତଳରେ ନିପତିତ ହୋଇଅଛନ୍ତି । ଅତଏବ ହେ ଧନଞ୍ଜୟ ! ତୁମ୍ଭେ ତାହାଙ୍କୁ ରକ୍ଷାକର, ସେ ତୁମ୍ଭର ଶିଷ୍ୟ ଓ ଅତିଶୟ ଶୌର୍ଯ୍ୟଶାଳୀ । ୫୪ । ତୁମ୍ଭେ ଶତ୍ରୁବିନାଶରେ ସମର୍ଥ ।

ଅତଏବ ହେ ପୁରୁଷଶ୍ରେଷ୍ଠ ! ଯଦ୍ଦ୍ୱାରା ସାତ୍ୟକି ତୁମ୍ଭର ସାହାଯ୍ୟ କରିବାକୁ ଆସି ଭୂରିଶ୍ରବାଙ୍କର ବଶବର୍ତ୍ତୀ ନ ହୁଅନ୍ତି, ତୁମ୍ଭେ ତହିଁର ପ୍ରତିକାରାର୍ଥ ସତ୍ୱର ଯତ୍ନବାନ୍ ହୁଅ । ୫୫ । ବାସୁଦେବଙ୍କର ବାକ୍ୟ ଶ୍ରବଣ କରି ଅର୍ଜ୍ଜୁନ ହୃଷ୍ଟଚିତ୍ତରେ କହିଲେ, ଦେଖ ! ଅରଣ୍ୟ ମଧ୍ୟରେ ଯୂଥପତି ସିଂହ ମହାମତ୍ତ ମାତଙ୍ଗଙ୍କୁ ଯେପରି କ୍ରୀଡ଼ାକଲସଦୃଶ କୁରୁପୁଙ୍ଗବ ଭୂରିଶ୍ରବା ବୃଷ୍ଣିବୀର ସାତ୍ୟକିଙ୍କୁ ସେହିପରି କ୍ରୀଡ଼ା କରୁଅଛନ୍ତି ।

ସଞ୍ଜୟ କହିଲେ—ହେ ମହାରାଜ ! ଧନଞ୍ଜୟ ଏହିପରି ବାସୁଦେବଙ୍କୁ କହୁଅଛନ୍ତି । ଏମନ୍ତ ସମୟରେ ମହାବାହୁ ଭୂରିଶ୍ରବା ସାତ୍ୟକିଙ୍କୁ ଉତ୍ତୋଳନ କରି ଆଘାତ କରିବାରୁ ସୈନ୍ୟମଧ୍ୟରେ ହାହାକାର ଶବ୍ଦ ଉତ୍ଥିତ ହେଲା । ୫୮ । ଯେପରି ମୃଗେନ୍ଦ୍ର ମାତଙ୍ଗଙ୍କୁ ଆକର୍ଷଣ କରି ଶୋଭାପାଏ, ସେହିପରି ଭୂରିଦକ୍ଷିଣାପ୍ରଦ ଭୂରିଶ୍ରବା ସମରରେ ସାତ୍ୱତପ୍ରବରଙ୍କୁ ଆକର୍ଷଣ-ପୂର୍ବକ ଶୋଭାପ୍ରାପ୍ତ ହେଲେ ।

ତଦନନ୍ତର ସେ କୋଷ ମଧ୍ୟରୁ ଅସି ନିଷ୍କାସନ କରି ସାତ୍ୟକିଙ୍କ କେଶ ଗ୍ରହଣପୂର୍ବକ ବକ୍ଷଃସ୍ଥଳରେ ପଦାଘାତ କଲେ । ୬୦ । ତାହାଙ୍କର କୁଣ୍ଡଳାଲଂକୃତ ମସ୍ତକ ଦେହରୁ ପୃଥକ୍ କରିବାକୁ ଉପକ୍ରମ କଲେ । ପରନ୍ତୁ କୁଲାଳ ଯେପରି ଚକ୍ରକୁ ଦଣ୍ଡଦ୍ୱାରା ଭ୍ରାମିତ କରେ, ସେହିପରି ସାତ୍ୟକି ମଧ୍ୟ ସେହିକାଳରେ ଭୂରିଶ୍ରବା ଯେଉଁହସ୍ତରେ ତାହାଙ୍କର କେଶ ଧାରଣ କରିଥିଲେ, ବେଗରେ ସେହି ବାହୁସହିତ ସ୍ୱୀୟ ମସ୍ତକକୁ ପରିଭ୍ରାମିତ କଲେ । ୬୨ । ହେ ମହାରାଜ ! ବାସୁଦେବ ସାତ୍ୟକିଙ୍କୁ ଭୂରିଶ୍ରବାଙ୍କ କର୍ତ୍ତୃକ ତାଦୃଶ ଆକୃଷ୍ଟ ହେବାର ଅବଲୋକନ କରି ପୁନର୍ବାର ଧନଞ୍ଜୟଙ୍କୁ କହିଲେ । ୬୩ । ହେ ମହାବାହୁ ପାର୍ଥ ! ଦେଖ, ବୃଷ୍ଣି ଓ ଅନ୍ଧକକୁଳର ଅଗ୍ରଗଣ୍ୟ ସାତ୍ୟକି ବର୍ତ୍ତମାନ ସମ୍ପୂର୍ଣ୍ଣରୂପେ ଭୂରିଶ୍ରବାଙ୍କର ବଶବର୍ତ୍ତୀ ହୋଇଅଛନ୍ତି । ସେ ତୁମ୍ଭର ଶିଷ୍ୟ ଓ ଧନୁର୍ବିଦ୍ୟାରେ ମଧ୍ୟ ତୁମ୍ଭଠାରୁ ନ୍ୟୂନ

ନୁହନ୍ତି । ୭୪ । କିନ୍ତୁ ଭୂରିଶ୍ରବା ତାହାଙ୍କୁ ପରିଶ୍ରାନ୍ତ ଦେଖି ସମଧିକ ପରାକ୍ରମ ପ୍ରକାଶପୂର୍ବକ ତାହାଙ୍କର ସେହି ସତ୍ୟବିକ୍ରମର ନାମକୁ ବ୍ୟର୍ଥ କରିବାର ଉପକ୍ରମ କରୁଅଛନ୍ତି । ୭୫ ।

ଧନଞ୍ଜୟ ବାସୁଦେବଙ୍କର ବାକ୍ୟ ଶ୍ରବଣ କରି ଭୂରିଶ୍ରବାଙ୍କୁ ମନେ ମନେ ପ୍ରଶଂସା କଲେ । ୭୬ । କୁରୁକୁଳକୀର୍ତ୍ତିବର୍ଦ୍ଧନ ଭୂରିଶ୍ରବା ବୃଷ୍ଣିକୁଳ-ପ୍ରବର ସାତ୍ୟକିଙ୍କୁ ଯେପରି କ୍ରୀଡ଼ା କଲାପରି ବିକର୍ଷଣ ଓ ଅରଣ୍ୟରେ ମତ୍ତମାତଙ୍ଗଆକ୍ରମଣକାରୀ କେଶରୀସଦୃଶ ଆକ୍ରାନ୍ତ କରୁଅଛନ୍ତି । ଏଥିରେ ଆମ୍ଭେ ଅତ୍ୟନ୍ତ ଆନନ୍ଦିତ ହେଉଅଛୁଁ । ୭୮ । ପୃଥା-ନନ୍ଦନ ମହାବାହୁ ଧନଞ୍ଜୟ ଏହିପ୍ରକାରେ କୌରବପ୍ରଧାନ ଭୂରିଶ୍ରବାଙ୍କର ପ୍ରଶଂସା କରି ବାସୁଦେବଙ୍କୁ କହିଲେ । ୭୯ । ହେ ମାଧବ ! ଆମ୍ଭର ଦୃଷ୍ଟି ନିୟତ ସିନ୍ଧୁରାଜଙ୍କ ପ୍ରତି ସମାସକ୍ତ ଥିବାରୁ ସାତ୍ୟକିଙ୍କୁ ଅବଲୋକନ କରୁନାହୁଁ । ଯାହାହେଉ ବର୍ତ୍ତମାନ ଆମ୍ଭେ ଯଦୁକୁଳତିଳକ ସାତ୍ୟକିଙ୍କ ନିମିତ୍ତ ଅତିଦୁଷ୍କର କାର୍ଯ୍ୟରେ ପ୍ରବୃତ୍ତ ହେବୁଁ । ହେ ମହାରାଜ ! ସେହିସମୟରେ ଅର୍ଜ୍ଜୁନ ଏହିକଥା କହି ବାସୁଦେବଙ୍କର ଆଦେଶାନୁସାରେ ଅତି ତୀକ୍ଷ୍ଣ ଗୋଟିଏ କ୍ଷୁରାସ୍ତ୍ର ଗାଣ୍ଡୀବରେ ଯୋଜନା କଲେ । ୭୧ । ଧନଞ୍ଜୟଭୁଜପ୍ରମୁକ୍ତ ସେହି ବାଣ ନଭୋଭ୍ରଷ୍ଟ ଉତ୍ତମହୋଲ୍‌କାସଦୃଶ ଆପତିତ ହୋଇ ଭୂରିଶ୍ରବାଙ୍କର ଅଙ୍ଗଦବିଭୂଷିତ ଖଡ୍‌ଗସମନ୍ୱିତ ସେହି ବାହୁକୁ ଛେଦନ କଲା । ୭୨ ।

---

# ୧୪୩ ଅଧ୍ୟାୟ

ସଞ୍ଜୟ କହିଲେ—ହେ ମହାରାଜ ! ଭୂରିଶ୍ରବାଙ୍କର ପ୍ରହାରୋଦ୍ୟତ ମହାର୍ହଅଙ୍ଗଦସୁଶୋଭିତ ଖଡ୍‌ଗସମନ୍ୱିତ ମନୋହର ଦକ୍ଷିଣବାହୁ ତରସ୍ୱୀ କିରୀଟୀଙ୍କର କ୍ଷୁରାସ୍ତ୍ରଦ୍ୱାରା ଅଲକ୍ଷିତରୂପେ ଛିନ୍ନ ହୋଇ ପ୍ରାଣୀମାନଙ୍କର ଦୁଃଖୋତ୍ପାଦନ କରି ପଞ୍ଚଶୀର୍ଷଭୁଜଙ୍ଗତୁଲ୍ୟ ଭୂତଳରେ ନିପତିତ ହେଲା । ଭୂରିଶ୍ରବାଙ୍କର ବାହୁ ଅର୍ଜ୍ଜୁନଙ୍କଦ୍ୱାରା ଛିନ୍ନ ହେବାରୁ ସେ ଆପଣାକୁ ଅକର୍ମଣ୍ୟ ବୋଧକରି ସାତ୍ୟକିଙ୍କୁ ପରିତ୍ୟାଗ ପୂର୍ବକ କ୍ରୋଧରେ ଅର୍ଜ୍ଜୁନଙ୍କୁ ନିନ୍ଦାକରି କହିଲେ । ୩ । ହେ କୁନ୍ତୀନନ୍ଦନ ! ତୁମ୍ଭର ଏହି କାର୍ଯ୍ୟ ଅତ୍ୟନ୍ତ ନୃଶଂସ

ହୋଇଅଛୁ । କାରଣ ଆମ୍ଭେ ଅନ୍ୟ ବ୍ୟକ୍ତିସହିତ ଯୁଦ୍ଧରେ ଆସକ୍ତ ଥିବା-ବେଳେ ତୁମ୍ଭେ ଆମ୍ଭର ଅଗୋଚରରେ ବାହୁ ଛେଦନ କଲ । ୪ । ଧର୍ମ୍ମ-ପୁତ୍ର ଯୁଧିଷ୍ଠିର ତୁମ୍ଭଙ୍କୁ ଏ ବିଷୟ ପଚାରିଲେ ତୁମ୍ଭେ କି ତାହାଙ୍କୁ ଏହିପରି ଉତ୍ତର ଦେବ ଯେ ଭୂରିଶ୍ରବା ସମରରେ ସାତ୍ୟକିଙ୍କ ବିନାଶ ନିମିତ୍ତ ଉଦ୍ୟତ ହୋଇ ଅତିଶୟ କୁତ୍ସିତ କର୍ମ୍ମର ଅନୁଷ୍ଠାନ କରୁଥିବାରୁ ଆମ୍ଭେ ତାହାଙ୍କୁ ନିହତ କରିଅଛୁଁ ? ୫ ।

ଏହିପରି ଅସ୍ତ୍ରପ୍ରୟୋଗର ଉପଦେଶ ମହାତ୍ମା ଇନ୍ଦ୍ରଙ୍କ ନିକଟରୁ କି ଦ୍ରୋଣ କି କୃପଙ୍କ ନିକଟରୁ ଅଥବା ରୁଦ୍ରଙ୍କ ନିକଟରୁ ପ୍ରାପ୍ତ ହୋଇଥିଲ ? ୬ । ତୁମ୍ଭେ ଏହି ଭୂମଣ୍ଡଳ ମଧ୍ୟରେ ଅସ୍ତ୍ରଯୁଦ୍ଧରେ ସମଧିକ ଧର୍ମ୍ମଜ୍ଞ ହୋଇ ରଣସ୍ଥଳରେ ତୁମ୍ଭର ଅପ୍ରତିଦ୍ୱନ୍ଦୀ ବ୍ୟକ୍ତି ପ୍ରତି କିପରି ଅସ୍ତ୍ରପ୍ରହାର କଲ ? ୭ । ମନସ୍ୱୀମାନେ ପ୍ରମତ୍ତ, ଭୀତ, ରଥବିହୀନ, ଶରଣାଗତ ଓ ବ୍ୟସନାପନ୍ନ ବ୍ୟକ୍ତିମାନଙ୍କ ପ୍ରତି କଦାପି ଅସ୍ତ୍ରପ୍ରହାର କରନ୍ତି ନାହିଁ । ୮ । ପଣ୍ଡିତମାନେ କହନ୍ତି ଯେ, ଇହ ସଂସାରରେ ସାଧୁଗଣ ସର୍ବଦା ସତ୍‌କାର୍ଯ୍ୟର ଅନୁଷ୍ଠାନ କରନ୍ତି । କଦାଚ ଅସତ୍‌କାର୍ଯ୍ୟ ଅନୁଷ୍ଠାନରେ ପ୍ରବୃତ୍ତ ହୁଅନ୍ତି ନାହିଁ, କିନ୍ତୁ ତୁମ୍ଭେ କି ନିମିତ୍ତ ନୀଚପ୍ରକୃତିସଦୃଶ ଏହି ଅସଜ୍ଜନଚରିତ ଅତି ଦୁଷ୍କର ପାପାଚରଣ କଲ ? ୧୦ । ଆମ୍ଭେ ଜାଣିଲୁ ଯେ ମନୁଷ୍ୟ ଯେଉଁ ସ୍ଥାନରେ ଯେପରି ସମ୍ପର୍କରେ ଅବସ୍ଥାନ କରେ ଅଚିରକାଳ ମଧ୍ୟରେ ସେ ସେହିପରି ଗୁଣର ଅନୁବର୍ତ୍ତୀ ହୁଏ । ଏହା ତୁମ୍ଭଠାରେ ପ୍ରତ୍ୟକ୍ଷମାନ ହେଉ-ଅଛି । ୧୧ ।

ତାହା ନ ହେଲେ ତୁମ୍ଭେ ରାଜବଂଶରେ ବିଶେଷତଃ କୌରବ-କୁଳରେ ଜନ୍ମ ଗ୍ରହଣକରି ଓ ନିଜେ ମଧ୍ୟ ସତ୍‌କର୍ମାନୁଷ୍ଠାୟୀ ହୋଇ କିପରି କ୍ଷତ୍ରିୟଧର୍ମ୍ମରେ ପରାଙ୍ମୁଖ ହେଲ ? ବୋଧହୁଏ ବାସୁଦେବଙ୍କ ମତା-ନୁସାରେ ସାତ୍ୟକିଙ୍କର ରକ୍ଷାର୍ଥ ତୁମ୍ଭେ ଏହି ଅସତ୍‌କାର୍ଯ୍ୟ ଅନୁଷ୍ଠାନ କଲ । କାରଣ ତୁମ୍ଭଠାରେ ଏପରି କାର୍ଯ୍ୟ ସମ୍ଭବ ନୁହେ । ୧୩ । କୃଷ୍ଣଙ୍କର ବଶବର୍ତ୍ତୀ ନ ହେଲେ କେଉଁ ବ୍ୟକ୍ତି ଅନବହିତ ଓ ଅନ୍ୟସହିତ ଯୁଦ୍ଧାସକ୍ତ ବ୍ୟକ୍ତିକୁ ଏମନ୍ତ ବ୍ୟସନାର୍ଣ୍ଣବରେ ନିମଗ୍ନ କରେ ? ବୃଷ୍ଣି ଓ ଅନ୍ଧକବଂଶୀୟ-ମାନେ ସମସ୍ତେ ବ୍ରାତ୍ୟନିନ୍ଦିତ, ସେମାନେ ଯାହା କହନ୍ତି କାର୍ଯ୍ୟରେ ତାହା

କରନ୍ତି ନାହିଁ । ସେମାନେ ସ୍ୱଭାବତଃ ନିନ୍ଦନୀୟ । ତୁମ୍ଭେ କି ନିମିତ୍ତ ଏପରି ଗର୍ହିତବଂଶସମ୍ଭୂତ କୃଷ୍ଣଙ୍କର ଆଦେଶ ପାଳନରେ ସମ୍ମତ ହେଲ ? ୧୫ ।

ହେ ମହାରାଜ ! ମହାବୀର ଧନଞ୍ଜୟ ଭୂରିଶ୍ରବାଙ୍କ କର୍ତ୍ତୃକ ଏହିପରି ଅଭିହିତ ହୋଇ କହିଲେ—ହେ ପ୍ରଭୋ ! ନିଶ୍ଚୟ ବୋଧହେଉଅଛି, ମନୁଷ୍ୟ ଜରାଜୀର୍ଣ୍ଣ ହେଲେ ତାହାର ବୁଦ୍ଧି ମଧ୍ୟ ଜୀର୍ଣ୍ଣ ହୋଇଯାଏ । ବର୍ତ୍ତମାନ ଆମ୍ଭଙ୍କୁ ଯେଉଁ ସମସ୍ତ ବାକ୍ୟ କହିଲ ସେ ସମସ୍ତ ନିରର୍ଥକ । ତୁମ୍ଭେ କୃଷ୍ଣଙ୍କୁ ଓ ଆମ୍ଭଙ୍କୁ ସମ୍ୟକ ଜ୍ଞାତ ହୋଇ ମଧ୍ୟ ଆମ୍ଭମାନଙ୍କର ନିନ୍ଦା କରୁଅଛ । ୧୭ । ଆମ୍ଭେ ସଂଗ୍ରାମଧର୍ମଜ୍ଞ ଓ ସର୍ବଶାସ୍ତ୍ରବିଶାରଦ ହୋଇ କି ନିମିତ୍ତ ଅଧର୍ମାଚରଣ କରିବୁଁ ? ତୁମ୍ଭେ ଏହା ଜାଣି ସୁଦ୍ଧା ବିମୋହିତ ହେଉଅଛ । ୧୮ । କ୍ଷତ୍ରିୟମାନେ ପିତା, ଭ୍ରାତା, ପୁତ୍ର, ସମ୍ବନ୍ଧୀ ଓ ଅନ୍ୟାନ୍ୟ ବନ୍ଧୁବାନ୍ଧବମାନଙ୍କ ଦ୍ୱାରା ପରିବୃତ୍ତ ହୋଇ ସେମାନଙ୍କର ବାହୁବଳ ଅବଲମ୍ବନ ପୂର୍ବକ ଯୁଦ୍ଧ କରୁଅଛନ୍ତି ।

ହେ ମହାରାଜ ! ରଣସ୍ଥଳରେ କେବଳ ଆତ୍ମରକ୍ଷା କରିବା ରାଜାର କର୍ତ୍ତବ୍ୟ ନୁହେ । ଯେଉଁମାନେ କାର୍ଯ୍ୟସାଧନରେ ନିଯୁକ୍ତ ହୋଇ ଅଛନ୍ତି, ଅଗ୍ରେ ସେମାନଙ୍କୁ ରକ୍ଷାକରିବା ସର୍ବତୋଭାବେ ବିଧେୟ । ସେହି ବ୍ୟକ୍ତିମାନେ ରକ୍ଷିତ ହେଲେ ରାଜା ସୁରକ୍ଷିତ ହୋଇଥାଆନ୍ତି । ମହାବୀର ସାତ୍ୟକି ଆମ୍ଭମାନଙ୍କ ନିମିତ୍ତ ସୁଦୁସ୍ତ୍ୟଜ୍ୟ ପ୍ରାଣପରିତ୍ୟାଗରେ କୃତସଂକଳ୍ପ ହୋଇ ଘୋରତର ସମରରେ ପ୍ରବୃତ୍ତ ହୋଇ ଅଛନ୍ତି । ସେ ଆମ୍ଭର ଶିଷ୍ୟ, ସମ୍ବନ୍ଧୀ ଓ ଦକ୍ଷିଣବାହୁସ୍ୱରୂପ । ଯଦି ଆମ୍ଭେ ତାହାଙ୍କୁ ହନ୍ୟମାନ ନିରୀକ୍ଷଣ କରି ଉପେକ୍ଷା କରନ୍ତୁ ତାହାହେଲେ ନିଶ୍ଚୟ ଆମ୍ଭଙ୍କୁ ପାପଭାଗୀ ହେବାକୁ ହୁଅନ୍ତା । ଆମ୍ଭେ ଏହି କାରଣରୁ ସାତ୍ୟକିଙ୍କୁ ରକ୍ଷା କରିଅଛୁଁ । ତୁମ୍ଭେ କି ନିମିତ୍ତ ଆମ୍ଭ ଉପରେ ବୃଥା କ୍ରୋଧାବିଷ୍ଟ ହେଉଅଛ ? ହେ ରାଜନ୍ ! ତୁମ୍ଭେ ଅନ୍ୟ ସହିତ ଯୁଦ୍ଧ କରୁଥିଲ, ସେହି ଅବସ୍ଥାରେ ଆମ୍ଭେ ତୁମ୍ଭର ବାହୁ ଛେଦନ କରିଅଛୁଁ । ଏଥିନିମିତ୍ତ ତୁମ୍ଭେ ଆମ୍ଭର ନିନ୍ଦା କରୁଅଛ । କିନ୍ତୁ ବିବେଚନା କରି ଦେଖ, ଆମ୍ଭେ କଦାପି ନିନ୍ଦନୀୟ ନୋହୁଁ ।

ତୁରଙ୍ଗ, ମାତଙ୍ଗ, ଶତାଙ୍ଗ, ପଦାତିସମାକୁଳ ସିଂହନାଦବହୁଳ ଅତିଗଭୀର ସୈନ୍ୟସାଗର ମଧ୍ୟରେ କେତେବେଳେ କବଚକମ୍ପନ, କେତେ-ବେଳେ ରଥାରୋହଣ, କେତେବେଳେ ଧନୁର୍ଜ୍ୟାଆକର୍ଷଣ, କେତେବେଳେ ଅବା ଶତ୍ରୁମାନଙ୍କ ସହିତ ଘୋରତର ସଂଗ୍ରାମ କରୁଥିଲୁଁ । ସେହି ଭୟଙ୍କର ସମର-ସାଗରରେ ଏକମାତ୍ର ସାତ୍ୟକଙ୍କ ସହିତ ଗୋଟିଏ ଲୋକର ଯୁଦ୍ଧ କପରି ସମ୍ଭବ ହୋଇପାରେ, ଏହା ମନେକରି ସେ ସମୟରେ ଆମ୍ଭର ବୁଦ୍ଧିବିଭ୍ରମ ଘଟିଥିଲା । ୨୮ । ହେ ମହାବୀର ସମରପାରଦର୍ଶୀ ସାତ୍ୟକ ଏକାକୀ ଅସଂଖ୍ୟ ମହାରଥିମାନଙ୍କ ସହିତ ଯୁଦ୍ଧ କରି ସେମାନଙ୍କୁ ପରାଜୟ-ପୂର୍ବକ ଶ୍ରାନ୍ତ, କ୍ଲାନ୍ତ, ବାହନଶସ୍ତ୍ରନପୀଡ଼ିତ ଓ ନିତାନ୍ତ ବିମନାୟମାନ ହୋଇ ତୁମ୍ଭର ବଶବର୍ତ୍ତୀ ହୋଇଥିଲେ । ତୁମ୍ଭେ କପରି ତାହାଙ୍କୁ ପରାଜୟ କରି ନିଜର ଶୌର୍ଯ୍ୟାଧିକ୍ୟ ପ୍ରକାଶ କରିବାକୁ ଇଚ୍ଛାକଲ ? ତୁମ୍ଭେ ଖଡ୍‌ଗଦ୍ୱାରା ସାତ୍ୟକଙ୍କ ଶିର ଛେଦନ କରିବାକୁ ସମୁଦ୍ୟତ ହୋଇଥିଲ । ତେଣୁ ଆମ୍ଭେ ତାହାଙ୍କୁ ରକ୍ଷାକଲୁଁ । କେଉଁ ବ୍ୟକ୍ତି ଆତ୍ମୀୟ ଜନକୁ ତଦ୍ରୂପ ବିପଦଗ୍ରସ୍ତ ଅବଲୋକନ କରି ଉପେକ୍ଷା କରିପାରେ ?

ହେ ବୀର ! ତୁମ୍ଭେ ତୁମ୍ଭର ଆଶ୍ରିତ ବକ୍ତିଙ୍କ ସହିତ କପରି ବ୍ୟବସ୍ଥା କରିଥାଅ ? ତୁମ୍ଭେ ଆତ୍ମରକ୍ଷାରେ ଅମନୋଯୋଗୀ ହୋଇ ପରପୀଡ଼ନରେ ସମୁଦ୍ୟତ ହୋଇଥିଲ । ଅତଏବ ବର୍ତ୍ତମାନ ଆପଣାର ନିନ୍ଦା କରିବା ତୁମ୍ଭର କର୍ତ୍ତବ୍ୟ । ୩୨ ।

ସଞ୍ଜୟ କହିଲେ—ମହାଯଶା, ମହାବାହୁ ଯୂପକେତୁ ଭୂରିଶ୍ରବା ଅର୍ଜ୍ଜୁନଙ୍କକର୍ତ୍ତୃକ ଏହିପ୍ରକାର ଅଭିହିତ ହୋଇ ଯୁଯୁଧାନଙ୍କୁ ପରିତ୍ୟାଗପୂର୍ବକ ପ୍ରାୟୋପବେଶନ କଲେ । ୩୩ । ସେହି ପୁଣ୍ୟଲକ୍ଷଣାନ୍ୱିତ ରାଜା ବ୍ରହ୍ମ-ଲୋକକୁ ଗମନାଭିଳାଷରେ ବାମହସ୍ତଦ୍ୱାରା ଶରସମୂହ ଆସ୍ତରଣପୂର୍ବକ ପ୍ରାଣାଦିବାୟୁ ନିରୋଧ କଲେ ଓ ସୂର୍ଯ୍ୟଙ୍କ ପ୍ରତି ଦୃଷ୍ଟିସ୍ଥାପନ କରି ଓ ମନକୁ ପ୍ରସନ୍ନଭାବରେ ଚନ୍ଦ୍ରଙ୍କଠାରେ ସମାଧାନପୂର୍ବକ ମୌନାବ୍ରତାବଲମ୍ବନରେ ଯୋଗ-ଯୁକ୍ତ ହୋଇ ଉପନିଷଦୁକ୍ତ ବ୍ରହ୍ମଙ୍କର ଚିନ୍ତା କଲେ । ୩୫ ।

ତଦନନ୍ତର ବ୍ୟୂହମଧ୍ୟସ୍ଥିତ ଯୋଧବର୍ଗ କୃଷ୍ଣାର୍ଜ୍ଜୁନଙ୍କର ନିନ୍ଦା ଓ ପୁରୁଷଶ୍ରେଷ୍ଠ ଭୂରିଶ୍ରବାଙ୍କର ପ୍ରଶଂସା କଲେ । ପରନ୍ତୁ କୃଷ୍ଣାର୍ଜ୍ଜୁନ ଆପଣା

ଆପଣ। ନନ୍ଦା ଶ୍ରବଣକର କୌଣସି ପ୍ରକାର ଅପ୍ରିୟ ବାକ୍ୟ କହିଲେ ନାହିଁ, ଯୂପକେତୁ ମଧ୍ୟ ତାଦୃଶ ପ୍ରଶଂସିତ ହୋଇ ସନ୍ତୁଷ୍ଟ ହେଲେନାହିଁ । ହେ ମହାରାଜ ! ଆପଣଙ୍କ ପୁତ୍ରଗଣ ସେହି ପ୍ରକାରେ ନନ୍ଦା କରିବାରୁ ସେମାନଙ୍କର ନନ୍ଦିତବାକ୍ୟ ଓ ଭୂରିଶ୍ରବାଙ୍କର ଉକ୍ତ ନନ୍ଦିତବାକ୍ୟସମୂହ ଧନଞ୍ଜୟଙ୍କୁ ଅସହ୍ୟ ହେଲା, ସେ ଅକ୍ରୋଧ ଚିତ୍ତରେ ସେମାନଙ୍କୁ ପୂର୍ବବିବରଣ ସ୍ମରଣ-କରାଇ ଦେଇ ଆକ୍ଷେପ ସହିତ କହିଲେ । ୩୯ । ଏହି ସମସ୍ତ ନରପାଳଗଣ ଅବଗତ ଅଛନ୍ତି ଯେ, ଯୁଦ୍ଧସ୍ଥଳରେ ଆମ୍ଭର ଏହି ଗୋଟିଏ ବିଶେଷ ନିୟମ ଅଛି ଯେ, ସମରରେ ଆମ୍ଭମାନଙ୍କପକ୍ଷୀୟ କୌଣସି ବ୍ୟକ୍ତି ଆମ୍ଭର ବାଣ—ପଥର ସମ୍ମୁଖୀନ ଥିଲେ ତାହାଙ୍କୁ କେହି ବିନାଶ କରି ପାରିବେ ନାହିଁ ।୪୦। ହେ ଯୂପକେତୋ ! ଏହି ନିୟମର ବିଷୟ ପର୍ଯ୍ୟାଲୋଚନା କରି ଆମ୍ଭଙ୍କୁ ତିରସ୍କାର କରିବା ତୁମ୍ଭର ଉପଯୁକ୍ତ ହେଉନାହିଁ, କାରଣ ପ୍ରକୃତ ଧର୍ମ୍ମ ନ ଜାଣି କଦାପି ନନ୍ଦା କରିବା ଉଚିତ ନୁହେଁ । ୪୧ । ତୁମ୍ଭେ ସଶସ୍ତ୍ର ହୋଇ ପରିଶ୍ରାନ୍ତ, ନିରସ୍ତ୍ର, ବୃଷ୍ଣିପ୍ରବୀର, ସାତ୍ୟକିଙ୍କୁ ବିନାଶ କରିବା ନିମିତ୍ତ ଉଦ୍ୟତ ହେବାରୁ ଆମ୍ଭେ ତୁମ୍ଭର ବାହୁଚ୍ଛେଦନ କରିଅଛୁ । ତହିଁରେ ଆମ୍ଭର ଧର୍ମବିଗର୍ହିତ କାର୍ଯ୍ୟ ହୋଇନାହିଁ । ୪୨ । ଶସ୍ତ୍ରବିହୀନ ରଥବିହୀନ ବର୍ମବିହୀନ ବାଳକ ଅଭିମନ୍ୟୁର ବଧ ବିଷୟରେ ଧର୍ମଜ୍ଞାନସମ୍ପନ୍ନ କେଉଁ ବ୍ୟକ୍ତି ପ୍ରଶଂସା କରିବ ? ଭୂରିଶ୍ରବା ଅର୍ଜ୍ଜୁନଙ୍କ ବାକ୍ୟ ଶ୍ରବଣ କଲାରୁ ମସ୍ତକଦ୍ୱାରା ଭୂମି ସ୍ପର୍ଶକରି କଟୂକ୍ତି ହେତୁ ତାହାଙ୍କଠାରେ କ୍ଷମା ପ୍ରାର୍ଥନା କଲେ ; ବାମ ହସ୍ତରେ ଛିନ୍ନ ଦକ୍ଷିଣ ବାହୁକୁ ଅର୍ଜ୍ଜୁନଙ୍କ ଆଡ଼କୁ ନିକ୍ଷେପ କରି ସୂଚନା କଲେ ଯେ ଅର୍ଜ୍ଜୁନ ଅନ୍ୟାୟରୂପେ ତାହାଙ୍କର ଦକ୍ଷିଣବାହୁ ଛେଦନ କରି ନାହାନ୍ତି, ତାହା ଧର୍ମସଙ୍ଗତ ହୋଇଅଛି । ତଦନନ୍ତର ମହାଦ୍ୟୁତିମାନ୍ ଯୂପକେତୁ ପାର୍ଥଙ୍କ ବାକ୍ୟାବସାନରେ ସଙ୍କେତ ଦ୍ୱାରା ତାହାଙ୍କୁ ଏହିପରି ପରିହାର କରି ମୌନବ୍ରତାବଲମ୍ବନପୂର୍ବକ ଅଧୋମୁଖ ହୋଇ ରହିଲାରୁ ମହାତ୍ମା ଅର୍ଜ୍ଜୁନ କହିଲେ, ହେ ଯୂପକେତୋ ! ଧର୍ମରାଜ ଯୁଧିଷ୍ଠିରଙ୍କ ପ୍ରତି ଓ ବଳଶାଳୀମାନଙ୍କର ଅଗ୍ରଗଣ୍ୟ ମହାବୀର ଭୀମସେନ, ନକୁଳ ଓ ସହଦେବଙ୍କ ପ୍ରତି ଆମ୍ଭର ଯାଦୃଶ ପ୍ରୀତି ତୁମ୍ଭପ୍ରତି ମଧ୍ୟ ଆମ୍ଭର ତାଦୃଶ ପ୍ରୀତି । ଅତଏବ ଉଶୀନରବଂଶୀୟ ଶିବିରାଜ ଯେଉଁ ସ୍ଥାନକୁ

ଗମନ କରିଅଛନ୍ତି ତୁମ୍ଭେ ମଧ୍ୟ ଆମ୍ଭର ଓ ମହାତ୍ମା କେଶବଙ୍କର ଆଦେଶାନୁସାରେ ସେହି ପବିତ୍ରଲୋକକୁ ଗମନ କର ।

ଅର୍ଜୁନ ଏହିରୂପ କହନ୍ତେ ବାସୁଦେବ ମଧ୍ୟ କହିଲେ, ହେ ଭୂରିଶ୍ରବା ! ତୁମ୍ଭେ ଅଗ୍ନିରେ ଆହୁତି ପ୍ରଦାନପୂର୍ବକ ଦେବତାମାନଙ୍କର ତୃପ୍ତି ସାଧନ କରିଅଛ । ଅତଏବ ତୁମ୍ଭେ ଚତୁର୍ଭୁଜମୂର୍ତ୍ତି ହୋଇ ଗରୁଡ଼ାସନରେ ଉପବେଶନପୂର୍ବକ ଅବଳମ୍ବେ ବିରଞ୍ଚି ପ୍ରଭୃତି ସୁରବରଗଣଙ୍କ ପ୍ରାର୍ଥନୀୟ ଅଦ୍ୱିତୀୟ ରୂପରେ ପ୍ରତିଭାତ ଆମ୍ଭର ସେହି ପବିତ୍ର ଧାମକୁ ଗମନ କର । ୪୮ ।

ସଞ୍ଜୟ କହିଲେ—ହେ ମହାରାଜ ! ତେତେବେଳେ ଶିନିକୁଳନନ୍ଦନ ସାତ୍ୟକି ଭୂରିଶ୍ରବାଙ୍କ ହସ୍ତରୁ ବିମୁକ୍ତ ଓ ଉତ୍ଥିତ ହୋଇ ସେହି ମହାତ୍ମାଙ୍କ ମସ୍ତକଚ୍ଛେଦନ କରିବା ନିମିତ୍ତ ଖଡ଼୍ଗ ଗ୍ରହଣ କଲେ । ୪୯ । ଭୂରିଦକ୍ଷିଣାପ୍ରଦ ଯୋଗାସକ୍ତଚିତ୍ତ ପାର୍ଥଶରରେ ନିହତପ୍ରାୟ ଭୂରିଶ୍ରବା ବାହୁଚ୍ଛିନ୍ନ ହେବାରୁ ଛିନ୍ନଶୁଣ୍ଡମାତଙ୍ଗସଦୃଶ ଉପବିଷ୍ଟ ଥିବା ସମୟରେ ସାତ୍ୟକି ସେହି ନିରପରାଧ ବ୍ୟକ୍ତିର ପ୍ରାଣସଂହାର କରିବାକୁ ଇଚ୍ଛା କଲେ । ସୈନ୍ୟମାନେ ସାତ୍ୟକିଙ୍କୁ ତାଦୃଶ କାର୍ଯ୍ୟରେ ପ୍ରବୃତ୍ତ ହେବାର ଅବଲୋକନ କରି ଉଚ୍ଚୈଃସ୍ୱରରେ ତାହାଙ୍କୁ ନିନ୍ଦା କଲେ । ୫୧ । ମହାତ୍ମା କେଶବ, ଧନଞ୍ଜୟ, ଭୀମ, ଯୁଧାମନ୍ୟୁ, ଉତ୍ତମୌଜା, ଅଶ୍ୱତ୍ଥାମା, କୃପାଚାର୍ଯ୍ୟ, କର୍ଣ୍ଣ, ବୃଷସେନ ଓ ସିନ୍ଧୁରାଜ ଏମାନେ ସମସ୍ତେ ତାହାଙ୍କୁ ନିବାରଣ କଲେ । କିନ୍ତୁ ସେ ସେମାନଙ୍କର କିମ୍ବା ସୈନ୍ୟମାନଙ୍କର ବାକ୍ୟରେ କର୍ଣ୍ଣପାତ ନ କରି ସେହି ସଂଯତଚିତ୍ତ ଭୂରିଶ୍ରବାଙ୍କୁ ବିନାଶ କଲେ । ହେ ମହାରାଜ ! ସେ କାଳରେ ସାତ୍ୟକି ଅର୍ଜୁନଶରରେ ଛିନ୍ନବାହୁ ସମରାଙ୍ଗଣରେ ପ୍ରାୟୋପବିଷ୍ଟ ଭୂରିଶ୍ରବାଙ୍କ ମସ୍ତକରେ ଖଡ଼୍ଗାଘାତ କରିବାରୁ ସୈନ୍ୟମଧ୍ୟରେ କେହି ତାହାଙ୍କର ସେହି କାର୍ଯ୍ୟକୁ ପ୍ରଶଂସା କଲେ ନାହିଁ, କାରଣ ସେ ଅର୍ଜୁନଙ୍କର ଶରାହତ ବ୍ୟକ୍ତିଙ୍କୁ ସଂହାର କଲେ । ୫୫ । ଦେବ, ସିଦ୍ଧ, ଚାରଣ ଓ ମାନବଗଣ ସମସ୍ତେ ଶକ୍ରତୁଲ୍ୟ ଭୂରିଶ୍ରବାଙ୍କୁ ରଣସ୍ଥଳରେ ପ୍ରାୟୋପବିଷ୍ଟ ଓ ନିହତ ନିରୀକ୍ଷଣ କରି ତାହାଙ୍କର କାର୍ଯ୍ୟସମୂହରେ ବିସ୍ମିତ ହୋଇ ତାହାଙ୍କୁ ପ୍ରଶଂସା କଲେ ।

ଅନନ୍ତର ଆପଣଙ୍କପକ୍ଷୀୟ ଯୋଦ୍ଧାମାନେ ପରସ୍ପର ନାନା ବାକ୍ୟରେ ଆନ୍ଦୋଳନ କରି ଏହିପରି କହିଲେ । ୫୭ । ଯାହା ହେବାର ଥିଲା ତାହା ହୋଇଅଛି । ଏଥିରେ ସାତ୍ୟକିଙ୍କର କିଛି ଅପରାଧ ନାହିଁ । ଏବିଷୟରେ ଆମ୍ଭମାନଙ୍କର କ୍ରୋଧ କରିବା ନିଷ୍ପ୍ରୟୋଜନ । କ୍ରୋଧହିଁ ମାନବମାନଙ୍କର ଦୁଃଖର ହେତୁ । ୫୮ । ବିଧାତା ସମରରେ ସାତ୍ୟକିଙ୍କୁ ଭୂରିଶ୍ରବାଙ୍କର ମୃତ୍ୟୁରୂପରେ ନିର୍ଦ୍ଦେଶ କରି ଅଛନ୍ତି । ଏହି ବୀରଙ୍କ ହସ୍ତରେ ତାହାଙ୍କ ମରଣ ହେବାର ଥିଲା । ଅତଏବ ଏ ବିଷୟରେ ଆଉ କୌଣସି ବିଚାର କରିବାର ଆବଶ୍ୟକ ନାହିଁ । ୫୯ । ଏହି ସମସ୍ତ କଥା ଶ୍ରବଣ କରି ସାତ୍ୟକି କହିଲେ, ହେ ଅଧାର୍ମିକ କୌରବଗଣ ! ତୁମ୍ଭେମାନେ ଯେ ଧର୍ମକଞ୍ଚୁକ ଆଶ୍ରୟ କରି ମୁଁପକେତୁଙ୍କୁ "ବିନାଶ କର ନାହିଁ" "ବିନାଶ କର ନାହିଁ" ବୋଲି ଧର୍ମ ଉପଦେଶ ଦେଉଥିଲ ; କିନ୍ତୁ ଯେତେବେଳେ ତୁମ୍ଭେ ସମସ୍ତେ ମିଳିତ ହୋଇ ସୁଭଦ୍ରାନନ୍ଦନ ନିରସ୍ତ୍ର ବାଳକ ଅଭିମନ୍ୟୁଙ୍କୁ ସମରରେ ନିହତ କରିଥିଲ, ତେତେବେଳେ ତୁମ୍ଭମାନଙ୍କର ଧର୍ମ କେଉଁଠାରେ ଥିଲା ? ୬୧ । ପରନ୍ତୁ ଆମ୍ଭେ କୌଣସି ସମୟରେ ଏହି ପ୍ରତିଜ୍ଞା କରିଥିଲୁ ଯେ, ଯେ କେହି ଆମ୍ଭଙ୍କୁ ନିଷ୍ପେଷଣ କରି ରୋଷବଶତଃ ପଦାଘାତ କରିବ, ସେହି ଶତ୍ରୁ ମୁନିବ୍ରତାବଲମ୍ବନ କଲେହେଁ ଆମ୍ଭେ ତାହାଙ୍କୁ ବିନାଶ କରିବୁଁ । ତୁମ୍ଭେମାନେ ଆମ୍ଭଙ୍କୁ ଅଚ୍ଛିନ୍ନବାହୁ ଜାଣି ଓ ଭୂରିଶ୍ରବାଙ୍କୁ ପ୍ରତିଘାତ କରିବାରେ ଯତ୍ନବାନ୍ ଦେଖିମଧ୍ୟ ଯେ ମୃତଜ୍ଞାନ କରିଥିଲ, ସେ ତୁମ୍ଭ ବୁଦ୍ଧିଲାଘବର ଦୋଷ । ହେ କୌରବପକ୍ଷୀୟ ଯୋଦ୍ଧୃଶ୍ରେଷ୍ଠଗଣ ; ଭୂରିଶ୍ରବାଙ୍କୁ ବିନାଶ କରିବା ଆମ୍ଭର ଉଚିତ କାର୍ଯ୍ୟ ହୋଇଅଛି । ୬୪ । ମହାବୀର ଅର୍ଜ୍ଜୁନ ଯେ ଆମ୍ଭଙ୍କୁ ତଦବସ୍ଥାପନ୍ନ ଅବଲୋକନ କରି ଭୂରିଶ୍ରବାଙ୍କର ଖଡ୍‌ଗସମନ୍ୱିତ ବାହୁ ଛେଦନ କରି ଅଛନ୍ତି, ତଦ୍ଦ୍ୱାରା ଆମ୍ଭେ ବଞ୍ଚିତ ହୋଇଅଛୁଁ । ୬୫ । ଯାହାହେଉ ଭବିତବ୍ୟ ବିଷୟକୁ କେହି ଖଣ୍ଡନ କରିପାରେ ନାହିଁ । ତାହା ଘଟାଇବା ନିମିତ୍ତ ଦୈବ ଯତ୍ନବାନ୍ ହୁଅନ୍ତି । ଅତଏବ ଭୂରିଶ୍ରବାଙ୍କୁ ବିନାଶ କରିବାରୁ ଆମ୍ଭର କାହାରି ଅଧର୍ମ ହୋଇନାହିଁ । ୬୭ । ଏବିଷୟରେ ପୁରାକାଳୀନ ମହର୍ଷି ବାଲ୍ମୀକିପ୍ରଣୀତ ରାମାୟଣ ଇତିହାସରେ ବର୍ଣ୍ଣିତ ଅଛି ଯେ, ଯେଉଁକାଳରେ ଲଙ୍କେଶ୍ୱର ମାୟା ସୀତାଙ୍କୁ ସଂହାର କରିବା ନିମିତ୍ତ ଉଦ୍ୟତ ହେଲେ, ସେହିକାଳରେ

ମହାବୀର ହନୁମାନ ସ୍ତ୍ରୀ ହତ୍ୟାକରିବାକୁ ନିଷେଧ କରିବାରୁ ଦଶାନନ ଉତ୍ତର କଲେ ଯେ, ରେ ବାନର ! ତୁ ସ୍ତ୍ରୀ ହତ୍ୟା କରିବାକୁ ନିଷେଧ କରୁ-ଅଛୁ ମାତ୍ର ସବୁକାଳରେ ଯତ୍ନ ସହକାରେ ଶତ୍ରୁର କ୍ଲେଶକର କାର୍ଯ୍ୟ ଅନୁଷ୍ଠାନ କରିବା ଅବଶ୍ୟ କର୍ତ୍ତବ୍ୟ । ୬୮ ।

ସଞ୍ଜୟ କହିଲେ —ହେ ମହାରାଜ ! ସାତ୍ୟକି ଏହିପ୍ରକାରେ କହି-ଲାରୁ କୌରବପକ୍ଷୀୟ ପ୍ରଧାନ ଯୋଧବର୍ଗ କେହି କୌଣସି ଉତ୍ତର କଲେ ନାହିଁ । କେବଳ ମନେ ମନେ ଭୂରିଶ୍ରବାଙ୍କର ପ୍ରଶଂସା କଲେ । ୬୯ । ସେ ସମୟରେ ଅରଣ୍ୟଗତ ମୁନିସଦୃଶ ମହାଯଜ୍ଞରେ ମନ୍ତ୍ରାଭିଭୂତ, ସହସ୍ର ସହସ୍ର ସୁବର୍ଣ୍ଣପ୍ରଦ, ମହାଯଶସ୍ୱୀ ଭୂରିଶ୍ରବାଙ୍କର ବଧ ବିଷୟରେ ଅଭିନନ୍ଦନ କଲେ ନାହିଁ । ୭୦ । ତାହାଙ୍କର ସୁନୀଳକେଶସମନ୍ୱିତ ପାରାବତଚକ୍ଷୁସଦୃଶ ଲୋହିତଲୋଚନଯୁକ୍ତ ମସ୍ତକ ରଣଭୂମିରେ ନିପତିତ ହୋଇ ଆହୁତି ପ୍ରଦାନାର୍ଥ ଯଜ୍ଞୀୟ ଅଶ୍ୱର ଛିନ୍ନମସ୍ତକତୁଲ୍ୟ ଶୋଭା ପାଇଲା । ୭୧ । ହେ ମହାରାଜ ! ପ୍ରାର୍ଥୀମାନଙ୍କର କାମନାପ୍ରଦ ସର୍ବଜନମାନ୍ୟ ଭୂରିଶ୍ରବା ମହା-ଯୁଦ୍ଧରେ ଶସ୍ତ୍ରାଘାତଦ୍ୱାରା ମୃତ ହେବାରୁ ପୂତ ହୋଇ ଶରୀରତ୍ୟାଗପୂର୍ବକ ନିଜ ତେଜରେ ଦ୍ୟାବା ପୃଥିବୀକୁ ଅତିକ୍ରମ କରି ପରମଧର୍ମ ବଳରେ ଊର୍ଦ୍ଧ୍ୱଲୋକକୁ ଗମନ କଲେ । ୭୨ ।

---

## ୧୪୪ ଅଧ୍ୟାୟ

ଧୃତରାଷ୍ଟ୍ର କହିଲେ— ହେ ସଞ୍ଜୟ ! ଯେଉଁ ମହାବୀର ସାତ୍ୟକି ଯୁଧିଷ୍ଠିରଙ୍କ ନିକଟରେ ପ୍ରତିଜ୍ଞା କରି ସଂଗ୍ରାମରେ ଦ୍ରୋଣ, କର୍ଣ୍ଣ, ବିକର୍ଣ୍ଣ, ଓ କୃତବର୍ମ୍ମା ପ୍ରଭୃତି ମହାରଥମାନଙ୍କୁ ପରାଜିତ କରିଣାନନ୍ତର ସାଗରସଦୃଶ କୌରବମାନଙ୍କୁ ଉତ୍ତୀର୍ଣ୍ଣ ହେଲେ ଓ ଯେ ଯୁଦ୍ଧରେ ସୈନ୍ୟମାନଙ୍କର ଅଜେୟ ତାହାଙ୍କୁ କୁରୁବଂଶୀୟ ଭୂରିଶ୍ରବା କି ହେତୁରୁ ବଳପୂର୍ବକ ନିଗୃହୀତ କରି ଭୂତଳରେ ପାତିତ କରିବାକୁ ସମର୍ଥ ହେଲେ ? ୨ ।

ସଞ୍ଜୟ କହିଲେ—ହେ ମହାରାଜ ! ଶିନିକୁଳନନ୍ଦନ ସାତ୍ୟକି ଓ ଭୂରିଶ୍ରବା ଏ ଦୁଇଜଣଙ୍କର ଯେପରି ଉତ୍ପତ୍ତି ଓ ଯେଉଁ ବିଷୟରେ ଆପଣଙ୍କର ସଂଶୟ ଉପସ୍ଥିତ ହୋଇଅଛି, ସେ ସମସ୍ତ ବର୍ଣ୍ଣନ କରୁଅଛି ; ଶ୍ରବଣ କରିବା ହେଉନ୍ତୁ । ୩ । ମହର୍ଷି ଅତ୍ରିଙ୍କ ପୁତ୍ର ସୋମ ; ସୋମଙ୍କ ପୁତ୍ର ବୁଧ, ବୁଧଙ୍କର ଗୋଟିଏ ପୁତ୍ର ଇନ୍ଦ୍ରଙ୍କତୁଲ୍ୟ ପୁରୂରବା । ୪ । ପୁରୂରବାଙ୍କ ପୁତ୍ର ଆୟୁ, ଆୟୁଙ୍କ ପୁତ୍ର ନହୁଷ, ନହୁଷଙ୍କ ପୁତ୍ର ଦେବତୁଲ୍ୟ ରାଜର୍ଷି ଯଯାତି । ୫ । ଯଯାତିଙ୍କ ଜ୍ୟେଷ୍ଠ ପୁତ୍ର ଯଦୁ, ଦେବଯାନୀଙ୍କ ଗର୍ଭସମ୍ଭୂତ ଅଟନ୍ତି । ସେହି ଯଦୁବଂଶରେ ପ୍ରସିଦ୍ଧ ଦେବମୀଢ଼ଙ୍କର ଉତ୍ପତ୍ତି । ୬ । ଦେବମୀଢ଼ଙ୍କ ପୁତ୍ର ତ୍ରିଲୋକସମ୍ମାନିତ ଶୂର । ଶୂରଙ୍କର ପୁତ୍ର ମହାଯଶା ନରଶ୍ରେଷ୍ଠ ବସୁଦେବ । ୭ । ମହାତ୍ମା ଶୂର ସମରରେ କାର୍ତ୍ତବୀର୍ଯ୍ୟଙ୍କ ସଦୃଶ ଧନୁର୍ବିଦ୍ୟାରେ ପାରଦର୍ଶୀ ଥିଲେ । ତାହାଙ୍କ ବଂଶରେ ତତ୍ତୁଲ୍ୟ ପରାକ୍ରମଶାଳୀ ଶିନିନାମକ ଜଣେ ମହାତ୍ମା ଜନ୍ମଗ୍ରହଣ କଲେ । ୮ ।

କୌଣସି ସମୟରେ ମହାତ୍ମା ଦେବକଙ୍କର କନ୍ୟାର ସ୍ୱୟମ୍ବର ଉପଲକ୍ଷରେ ପ୍ରାୟ ପୃଥିବୀର ସମସ୍ତ କ୍ଷତ୍ରିୟମାନେ ସମାଗତ ହୋଇଥିଲେ । ୯ । ତନ୍ମଧ୍ୟରେ ମହାତ୍ମା ଶିନି ତତ୍ରତ୍ୟ ସମସ୍ତ ପାର୍ଥିବମାନଙ୍କୁ ଅବଲୀଳାରେ ପରାଜିତ କରି ବସୁଦେବଙ୍କ ନିମିତ୍ତ ଦେବକ-କନ୍ୟାଙ୍କୁ ରଥରେ ଆରୋହଣ କରାଇଲେ । ୧୦ । ହେ ମହାରାଜ ! ମହାତେଜସ୍ୱୀ ରାଜା ସୋମଦତ୍ତ ଦେବକୀଙ୍କୁ ଶୂରବଂଶୀୟ ଶିନିଙ୍କର ରଥରେ ଅବଲୋକନ କରି ତାହା ସହନ କରି ପାରିଲେ ନାହିଁ । ୧୧ । ସେହି ମହାବଳଶାଳୀ ବୀରଦ୍ୱୟଙ୍କ ଭିତରେ ମଧ୍ୟାହ୍ନକାଳରେ ଅତୀବ ଆଶ୍ଚର୍ଯ୍ୟ ଦର୍ଶନୀୟ ବାହୁଯୁଦ୍ଧ ହେଲା । ପରନ୍ତୁ ଶିନି ଚତୁର୍ଦ୍ଦିଗସ୍ଥ ରାଜାମାନଙ୍କ ସମକ୍ଷରେ ସୋମଦତ୍ତଙ୍କୁ ବଳପୂର୍ବକ ଭୂତଳରେ ପାତିତ କରି ଖଡ୍ଗ ଧାରଣପୂର୍ବକ ତାହାଙ୍କର କେଶାକର୍ଷଣ କରି ବକ୍ଷଃସ୍ଥଳରେ ପଦାଘାତ କଲେ "ତୁମ୍ଭେ ଜୀବିତ ଥାଅ" ଏହା କହି ତାହାଙ୍କୁ ପରିତ୍ୟାଗ କଲେ । ୧୪ ।

ହେ ମହାରାଜ ! ସୋମଦତ୍ତ ରାଜାମାନଙ୍କ ସମକ୍ଷରେ ଏହିପରି ଅବମାନିତ ହୋଇ କ୍ରୋଧସହକାରେ ଆଚମନପୂର୍ବକ ତପସ୍ୟାଦ୍ୱାରା ମହାଦେବଙ୍କୁ ପ୍ରସନ୍ନ କଲେ । ୧୫ । ବରଦଗଣଙ୍କର ବରଦାତା ଦେବାଦିଦେବ

ମହାଦେବ ତାହାଙ୍କ ତପସ୍ୟାରେ ସନ୍ତୁଷ୍ଟ ହୋଇ ତାହାଙ୍କୁ ବରଦାନାର୍ଥ ଆଶ୍ୱାସିତ କରିବାରୁ ସେ ଏହିପରି ପ୍ରାର୍ଥନା କଲେ । ୧୬ । ହେ ଭଗବନ୍ ! ଆମ୍ଭେ ଏପରି ଗୋଟିଏ ପୁତ୍ରପ୍ରାପ୍ତିର ଅଭିଳାଷ କରୁଁ ଯେ ସମରରେ ସହସ୍ର ସହସ୍ର ରାଜଗଣଙ୍କ ସମକ୍ଷରେ ଶିନିର ସନ୍ତାନକୁ ଭୂତଳରେ ପାତିତ କରି ପଦାଘାତ କରିବାକୁ ସମର୍ଥ ହେବ । ୧୭ ।

ମହାଦେବ ସୋମଦତ୍ତଙ୍କର ସେହି ବାକ୍ୟ ଶ୍ରବଣ କରି "ତାହା ହେବ" ଏହା କହି ସେଠାରୁ ଅନ୍ତର୍ହିତ ହେଲେ । ୧୮ । ମହାରାଜ ସୋମଦତ୍ତ ଶିବଙ୍କର ସେହି ବର ପ୍ରଭାବରୁ ଭୂରିଦକ୍ଷିଣାପ୍ରଦ ଭୂରିଶ୍ରବାଙ୍କୁ ପୁତ୍ର ଲାଭ କଲେ । ସେହି ନିମିତ୍ତ ଭୂରିଶ୍ରବା ସମସ୍ତ ନରପତିମାନଙ୍କ ସମକ୍ଷରେ ସମରଭୂମିରେ ଶିନିକୁଳସମ୍ଭୂତ ସାତ୍ୟକିଙ୍କୁ ପାତିତ ଓ ପଦାଘାତ କରିବାକୁ ସମର୍ଥ ହୋଇଥିଲେ । ନୋହିଲେ ପୃଥିବୀ ମଧ୍ୟରେ ଏପରି କୌଣସି ଶ୍ରେଷ୍ଠ ବ୍ୟକ୍ତି ନାହିଁ ଯେ କି ସାତ୍ୟକିଙ୍କୁ ପରାଜିତ କରିପାରିବ । ହେ ମହାରାଜ ! ଆପଣ ଯେଉଁ ବିଷୟ ପ୍ରଶ୍ନ କରିଥିଲେ ସେ ସମସ୍ତ ବିଷୟ ଆମ୍ଭେ ବର୍ଣ୍ଣନା କଲୁଁ । ସମରରେ ବୃଷ୍ଣିବଂଶୀୟମାନେ ସମସ୍ତେ ଲବ୍ଧଲକ୍ଷ୍ୟ ଓ ଓ ଚିତ୍ରଯୋଧୀ, ଯୁଦ୍ଧସ୍ଥଳରେ ସେମାନେ କେହି ବିସ୍ମିତ ହୁଅନ୍ତି ନାହିଁ । ସେମାନେ ସଂଗ୍ରାମରେ ଦେବ, ଦାନବ, ଗନ୍ଧର୍ବମାନଙ୍କର ବିଜେତା । ଯୁଦ୍ଧ-ସ୍ଥଳରେ ସେମାନେ କାହାରି ସାହାଯ୍ୟ ଗ୍ରହଣ କରନ୍ତି ନାହିଁ । ସେମାନେ ସ୍ୱ-ବୀର୍ଯ୍ୟ ପ୍ରଭାବରୁ ବିଜୟ ଲାଭ କରନ୍ତି । ୨୨ ।

ହେ ପ୍ରଭୋ ! ବୃଷ୍ଣିବଂଶୀୟମାନଙ୍କ ସହିତ ତୁଳନା ଦେବାରେ ଯୋଗ୍ୟ ବ୍ୟକ୍ତି ପୃଥିବୀ ମଧ୍ୟରେ କେହି ନାହାନ୍ତି । ସେମାନଙ୍କ ତୁଲ୍ୟ ବୀର୍ଯ୍ୟଶାଳୀ କେହି ପୂର୍ବେ ଥିଲେ ନାହିଁ । ଭବିଷ୍ୟତରେ ହେବେ ନାହିଁ, ବର୍ତ୍ତମାନ ମଧ୍ୟ ନାହାନ୍ତି । ୨୩ । ସେମାନେ ସମସ୍ତେ ବୃଦ୍ଧମାନଙ୍କର ଆଦେଶାନୁବର୍ତ୍ତୀ ଅଟନ୍ତି । କଦାଚ ଜ୍ଞାତିମାନଙ୍କର ଅବମାନନାରେ ପ୍ରବୃତ୍ତ ହୁଅନ୍ତି ନାହିଁ । ପୁଣି ଯୁଦ୍ଧ ବିଷୟରେ ମନୁଷ୍ୟମାନେ ତ ଦୂରର କଥା ସେମାନଙ୍କୁ ଦେବତା, ଅସୁର, ଯକ୍ଷ, ଗନ୍ଧର୍ବ, ଉରଗ, ଅବା ରାକ୍ଷସ କେହି ପରାଜିତ କରିବାକୁ ସମର୍ଥ ନୁହନ୍ତି । ସେମାନେ ଦେବଦ୍ରବ୍ୟ, ଗୁରୁଦ୍ରବ୍ୟ ବା ଜ୍ଞାତିଦ୍ରବ୍ୟ ଏଥିରେ ଈର୍ଷା କରନ୍ତି ନାହିଁ । ବ୍ରାହ୍ମଣ କିମ୍ବା ଜ୍ଞାତିମାନେ କୌଣସିପ୍ରକାରେ

ବିପଦାପନ୍ନ ହେଲେ ସେମାନଙ୍କୁ ସର୍ବତୋଭାବରେ ରକ୍ଷା କରନ୍ତି । ସେମାନେ ସମୃଦ୍ଧିଶାଳୀ ହୋଇ ମଧ୍ୟ ଗର୍ବିତ ନୁହନ୍ତି । ସେମାନେ ବ୍ରହ୍ମନିଷ୍ଠ ଓ ସତ୍ୟବାଦୀ । ୨୭ । ସେମାନେ ସମର୍ଥ ହୋଇ ମଧ୍ୟ କୌଣସି ବ୍ୟକ୍ତିର ଅବମାନନା କରନ୍ତି ନାହିଁ । ଦୀନ ଦୁଃଖୀମାନଙ୍କୁ ସର୍ବଦା ବିପଦରୁ ଉଦ୍ଧାର କରନ୍ତି । ସେମାନେ ସମସ୍ତେ ଦେବପରାୟଣ, ଜିତେନ୍ଦ୍ରିୟ, ଦାତା ଓ ଶ୍ଳାଘାରହିତ । ଏଥି ନିମିତ୍ତ ସଂସାର ମଧ୍ୟରେ ବୃଷ୍ଣିବଂଶୀୟମାନଙ୍କର ପ୍ରଭାବ କୌଣସିଠାରେ ପ୍ରତିହତ ହୁଏ ନାହିଁ । କଦାଚିତ୍ କେହି ସୁମେରୁ ପର୍ବତକୁ ବହନ କରିପାରେ ଅବା ଅପାର ଜଳଧିକୁ ସନ୍ତରଣରେ ସମର୍ଥ ହୁଏ ; କିନ୍ତୁ ସମରରେ ବୃଷ୍ଣିକୁଳ ବୀରମାନଙ୍କୁ ପରାଜିତ କରିବାକୁ ସମର୍ଥ ହୁଅନ୍ତି ନାହିଁ । ହେ ବିଭୋ ! କୁରୁକୁଳତିଳକ ! ଆପଣ ଯେଉଁ ବିଷୟରେ ସଂଶୟ କରିଥିଲେ ସେ ସମସ୍ତ ଆମ୍ଭେ ବର୍ଣ୍ଣନା କଲୁଁ, କିନ୍ତୁ ଏହି ମହାଅପନୟନର ମୂଳଭୂତ ଆପଣ ଅଟନ୍ତି । ୨୯ ।

---

# ୧୪୫ ଅଧ୍ୟାୟ

ଧୃତରାଷ୍ଟ୍ର ବୋଇଲେ—ହେ ସଞ୍ଜୟ ! କୁରୁବଂଶୀୟ ଭୂରିଶ୍ରବା ସେହି ପ୍ରକାରେ ନିହତ ହେଲାରୁ ପୁନର୍ବାର କିପରି ଯୁଦ୍ଧ ହେଲା, ତାହା କୀର୍ତ୍ତନ କର । ୧ । ସଞ୍ଜୟ କହିଲେ—ହେ ମହାରାଜ ! ଭୂରିଶ୍ରବା ପରଲୋକଗତ ହୁଅନ୍ତେ ମହାବାହୁ ଅର୍ଜ୍ଜୁନ ବାସୁଦେବଙ୍କୁ କହିଲେ, ହେ କୃଷ୍ଣ ! ଯେଉଁଠାରେ ସିନ୍ଧୁରାଜ ଜୟଦ୍ରଥ ଅବସ୍ଥାନ କରୁଅଛନ୍ତି ତୁମ୍ଭେ ସେହିସ୍ଥାନକୁ ଆମ୍ଭର ରଥ ଶୀଘ୍ର ଚାଳନ କର । ଯହିଁରେ ଆମ୍ଭର ପ୍ରତିଜ୍ଞା ସଫଳ ହୁଏ ସେ ବିଷୟରେ ଯତ୍ନପର ହୁଅ । ହେ ମହାବାହୁ ! ଦେଖ, ଦିବାକର ଭ୍ରତସହ ଅସ୍ତାଚଳକୁ ଗମନ କରୁଅଛନ୍ତି । ଆମ୍ଭଙ୍କୁ ଜୟଦ୍ରଥ ବଧରୂପ ମହତ୍ କାର୍ଯ୍ୟ ସମ୍ପାଦନ କରିବାକୁ ହେବ । କିନ୍ତୁ କୌରବପକ୍ଷୀୟ ମହାରଥମାନେ ତାହାଙ୍କୁ ରକ୍ଷା କରୁଅଛନ୍ତି । ଅତଏବ ହେ ପୁରୁଷବ୍ୟାଘ୍ର କୃଷ୍ଣ ! ତୁମ୍ଭେ ଏପରି ରଥଚାଳନା କର ଯେପରି ଅଦ୍ୟ ଆମ୍ଭେ ସୂର୍ଯ୍ୟାସ୍ତ ପୂର୍ବରୁ ଜୟଦ୍ରଥକୁ ବିନାଶ କରି ସତ୍ୟପ୍ରତିଜ୍ଞ ହୋଇ ପାରିବୁ । ୬ । ତଦନନ୍ତର ଅଶ୍ୱବିଦ୍ୟା-

ବିଶାରଦ ବାସୁଦେବ ରଜତସଂକାଶ ଅଶ୍ୱମାନଙ୍କୁ ଜୟଦ୍ରଥଙ୍କ ରଥାଭିମୁଖକୁ ଚାଳନ କରିବାରେ ପ୍ରବୃତ୍ତ ହେଲେ । ୭ ।

ହେ ମହାରାଜ ! ସେହି ଦ୍ରୁତଗାମୀ ଅଶ୍ୱମାନେ ଅମୋଘାସ୍ତ୍ର ଧନଞ୍ଜୟଙ୍କୁ ବହନ କରିବାରୁ ବୋଧ ହେଲା ଯେପରି ସେମାନେ ଗଗନମାର୍ଗରେ ଉଡ଼ି ଯାଉଅଛନ୍ତି । ରାଜା ଦୁର୍ଯ୍ୟୋଧନ, କର୍ଣ୍ଣ, ବୃଷସେନ, ମହାରାଜ ଶଲ୍ୟ, କୃପାଚାର୍ଯ୍ୟ ଓ ସ୍ୱୟଂ ଜୟଦ୍ରଥ ଏମାନେ ଅର୍ଜ୍ଜୁନଙ୍କୁ ଆଗମନ କରିବାର ଦେଖି ଭୟସହକାରେ ତାହାଙ୍କ ପ୍ରତି ଅଭିଦ୍ରୁତ ହେଲେ । ୯ । ସିନ୍ଧୁରାଜଙ୍କୁ ସମ୍ମୁଖରେ ଉପସ୍ଥିତ ଦେଖି ତାହାଙ୍କୁ ଦଗ୍ଧ କରିବା ମାନସରେ କ୍ରୋଧୋଦ୍ଦୀପ୍ତ ନୟନରେ ତାହାଙ୍କୁ ନିରୀକ୍ଷଣ କଲେ । ଅନନ୍ତର ଦୁର୍ଯ୍ୟୋଧନ ଅର୍ଜ୍ଜୁନଙ୍କୁ ଜୟଦ୍ରଥଙ୍କ ରଥ ସମୀପକୁ ଗମନ କରିବାର ଦେଖି ତ୍ୱରାନ୍ୱିତ ହୋଇ କର୍ଣ୍ଣଙ୍କୁ କହିଲେ । ୧୧ ।

ହେ ମହାତ୍ମନ୍ ! ବର୍ତ୍ତମାନ ସେହି ଯୁଦ୍ଧକାଳ ଉପସ୍ଥିତ ହୋଇଅଛି । ଅତଏବ ଏହି ସମସ୍ତ ସୈନ୍ୟମାନଙ୍କୁ ଆପଣାର ପ୍ରଭାବ ଦେଖାଅ । ଧନଞ୍ଜୟ ଯେପରି ଜୟଦ୍ରଥଙ୍କୁ ବିନାଶ କରି ନ ପାରନ୍ତି ତୁମ୍ଭେ ତହିଁରେ ଯତ୍ନବାନ୍ ହୁଅ । ୧୨ । ହେ ନରବୀର ! ଦିବାବସାନ ହେବାକୁ ଆଉ ଅଳ୍ପ ସମୟ ଅବଶିଷ୍ଟ ଅଛି । ଏହି ସମୟରେ ତୁମ୍ଭେ ଶରଜାଲ ବିସ୍ତାର କରି ତାହାଙ୍କ କାର୍ଯ୍ୟରେ ବିଘ୍ନ ସାଧନ କର । ଦିନ କ୍ଷୟ ହେଲେ ନିଶ୍ଚୟ ଆମ୍ଭେମାନେ ଜୟଲାଭ କରିବୁଁ । ୧୩ । ସୂର୍ଯ୍ୟାସ୍ତକାଳ ପର୍ଯ୍ୟନ୍ତ ଜୟଦ୍ରଥଙ୍କୁ ରକ୍ଷା କରି ପାରିଲେ କୁନ୍ତୀନନ୍ଦନ ମିଥ୍ୟାପ୍ରତିଜ୍ଞ ହୋଇ ନିଶ୍ଚୟ ହୁତାଶନରେ ପ୍ରବେଶ କରିବ । ୧୪ । ତାହାହେଲେ ତାହାର ଭ୍ରାତାମାନେ ଅନୁଚରବର୍ଗସହ ଅର୍ଜ୍ଜୁନଶୂନ୍ୟ ପୃଥିବୀରେ ଜୀବନଧାରଣକରିବାକୁ ଉତ୍ସାହ କରିବେ ନାହିଁ । ୧୫ । ଏହିପରି ସମସ୍ତ ପାଣ୍ଡବ ବିନଷ୍ଟ ହେଲେ ଆମ୍ଭେମାନେ ଏହି ସସାଗରା ବସୁନ୍ଧରାକୁ ନିଷ୍କଣ୍ଟକରୂପେ ଭୋଗ କରିବୁଁ । ୧୬ । ହେ ମାନଦ କର୍ଣ୍ଣ ! କିରୀଟୀ ଦୈବପ୍ରଭାବରୁ ବିପରୀତବୁଦ୍ଧି ଓ କାର୍ଯ୍ୟାକାର୍ଯ୍ୟବିବେକଶୂନ୍ୟ ହୋଇ ଆତ୍ମ ବିନାଶ ନିମିତ୍ତ ଜୟଦ୍ରଥ ବଧରେ ପ୍ରତିଜ୍ଞା କରିଅଛି ।

ହେ ରାଧେୟ ! ଏହି ପୃଥିବୀ ମଧ୍ୟରେ ଏପରି କୌଣସି ବ୍ୟକ୍ତି ଦୃଷ୍ଟ ହୁଏ ନାହିଁ, ଯେ କି ତୁମ୍ଭଙ୍କୁ ଧର୍ଷଣ କରିପାରିବ ? ଅତଏବ ତୁମ୍ଭେ ଆଜି ଆଉ

ଫାଲ୍‌ଗୁନ କପରି ସୂର୍ଯ୍ୟାସ୍ତପୂର୍ବରୁ ସିନ୍ଧୁରାଜଙ୍କ ବଧରେ ସମର୍ଥ ହେବ ? ୧୯ । ମଦ୍ରରାଜ ଶଲ୍ୟ, ମହାତ୍ମା କୃପାଚାର୍ଯ୍ୟ, ଅଶ୍ୱତ୍ଥାମା, ଦୁଃଶାସନ ଓ ଆମ୍ଭେ ସମସ୍ତେ ମିଳିତ ହୋଇ ରକ୍ଷା କଲେ ସେ କପରି ରଣମୁଖରେ ଜୟଦ୍ରଥଙ୍କୁ ପ୍ରାପ୍ତ ହେବ ? ସୁତରାଂ ଅଦ୍ୟ ଅର୍ଜୁନର କାଳ ପୂର୍ଣ୍ଣ ହୋଇ-ଅଛି । ୨୧ । ଅନେକ ଯୋଦ୍ଧାମାନେ ଯୁଦ୍ଧ କରିବେ । ତନ୍ମଧ୍ୟରେ ପୁଣି ଦିବାକର ଅସ୍ତମିତ, ଏଣୁ ଆମ୍ଭେ ବିବେଚନା କରୁଁ, ପାର୍ଥ କଦାପି ଜୟ-ଦ୍ରଥଙ୍କୁ ବିନାଶ କରି ପାରିବ ନାହିଁ । ୨୨ । ଅତଏବ ହେ କର୍ଣ୍ଣ ! ତୁମ୍ଭେ ବର୍ତ୍ତମାନ ଆମ୍ଭ ସହିତ ଓ ଅନ୍ୟାନ୍ୟ ମଦ୍ରରାଜ ଶଲ୍ୟ, ଅଶ୍ୱତ୍ଥାମା ଓ ଅନ୍ୟାନ୍ୟ ଶୌର୍ଯ୍ୟଶାଳୀ ବୀରମାନଙ୍କ ସହିତ ମିଳିତ ହୋଇ ସମରାଙ୍ଗଣରେ ବିଶେଷ ଯତ୍ନପୂର୍ବକ ଅର୍ଜୁନଙ୍କ ସହିତ ଯୁଦ୍ଧ କର ।

ସଞ୍ଜୟ କହିଲେ—ହେ ମହାରାଜ ! କର୍ଣ୍ଣ ଆପଣଙ୍କର ପୁତ୍ରର ବାକ୍ୟ ଶ୍ରବଣ କରି ଏହିପରି ଉତ୍ତର କଲେ ଯେ, ହେ ରାଜନ୍ ! ଦୃଢ଼-ପ୍ରତିଜ୍ଞ ଓ ଦୃଢ଼ଲକ୍ଷ୍ୟଭେଦୀ ଧନୁର୍ଦ୍ଧର ମହାବୀର ଭୀମସେନଙ୍କର ଶରଜାଲ ଦ୍ୱାରା ଆମ୍ଭ ଶରୀର କ୍ଷତବିକ୍ଷତ ହୋଇଅଛି । ବର୍ତ୍ତମାନ ଏଠାରେ ଅବସ୍ଥାନ କରିବାକୁ ହୁଏ ବୋଲି କେବଳ ଆମ୍ଭେ ଅବସ୍ଥାନ କରିଅଛୁଁ । ୨୬ । ଆମ୍ଭର ଦେହ ଶରସମୂହରେ ଏପରି କ୍ଷତବିକ୍ଷତ ହୋଇଅଛି ଯେ ସ୍ପନ୍ଦନ କଲେ ବେଦନା ବୋଧ ହେଉଅଛି । କଦାପି ସେହି ପାଣ୍ଡବପ୍ରଧାନ ଅର୍ଜୁନ ଯେପରି ସିନ୍ଧୁପତି ଜୟଦ୍ରଥଙ୍କୁ ନିହତ କରି ନପାରେ ତୁମ୍ଭ ପ୍ରୟୋଜନସିଦ୍ଧି ନିମିତ୍ତ ଆମ୍ଭ ଶରୀରରେ ଜୀବନଥିବାପର୍ଯ୍ୟନ୍ତ ଯଥାଶକ୍ତି ଯୁଦ୍ଧ କରିବୁଁ । ସମରାଙ୍ଗଣରେ ଆମ୍ଭେ ନିଶିତ ଶରସମୁହ ବର୍ଷଣ କରିବାରେ ପ୍ରବୃତ୍ତ ହେଲେ କଦାପି ସବ୍ୟସାଚୀ ଜୟଦ୍ରଥଙ୍କୁ ପ୍ରାପ୍ତ ହୋଇ ପାରିବ ନାହିଁ । ହେ କୁରୁଶ୍ରେଷ୍ଠ ! ହିତୈଷୀ ଭକ୍ତିମାନ୍ ପୁରୁଷର ଯେପରି କର୍ତ୍ତବ୍ୟ ତାହା ଆମ୍ଭେ ଅବଶ୍ୟ କରିବୁଁ ; କିନ୍ତୁ ଜୟ ବିଜୟ ଦୈବାଧୀନ ଅଟେ । ଅଦ୍ୟ ଆମ୍ଭେ ତୁମ୍ଭ ପ୍ରିୟ କାମନାରେ ସିନ୍ଧୁରାଜଙ୍କ ନିମିତ୍ତ ରଣସ୍ଥଳରେ ବିଶେଷ ଯତ୍ନ କରିବୁଁ କିନ୍ତୁ ଜୟ ପରାଜୟ ଦୈବର ଅଧୀନ । ହେ ପୁରୁଷବ୍ୟାଘ୍ର ! ଅଦ୍ୟ ଆମ୍ଭେ ତୁମ୍ଭ ନିମିତ୍ତ ସ୍ୱୀୟ ପୌରୁଷ ଉପରେ ନିର୍ଭର କରି ଅର୍ଜୁନ ସହିତ ଯୁଦ୍ଧ କରିବୁଁ, କିନ୍ତୁ ଜୟ ପରାଜୟ ଦୈବାୟତ୍ତ । ଅଦ୍ୟ ଏହି

ସମସ୍ତ ସୈନ୍ୟମାନେ ଆମ୍ଭ ଦୁହିଁଙ୍କର ଲୋମହର୍ଷଣକର ଓ ଭୟଙ୍କର ଯୁଦ୍ଧ ଅବଲୋକନ କରନ୍ତୁ ।

ସଞ୍ଜୟ କହିଲେ—ହେ ମହାରାଜ ! କର୍ଣ୍ଣ ଓ ଦୁର୍ଯ୍ୟୋଧନ ପରସ୍ପର ଏହିପରି କଥୋପକଥନ କରୁଅଛନ୍ତି, ଏହି ସମୟରେ ମହାବୀର ଅର୍ଜ୍ଜୁନ ନିଶିତ ଶରନିକରଦ୍ୱାରା ଆପଣଙ୍କପକ୍ଷୀୟ ସୈନ୍ୟମାନଙ୍କୁ ସଂହାର କରିବାରେ ପ୍ରବୃତ୍ତ ହେଲେ । ସେ ସୁଶାଣିତ ଶରସମୂହଦ୍ୱାରା ସମରରେ ଅନିବର୍ତ୍ତୀ ବୀରମାନଙ୍କର ଅର୍ଗଳତୁଲ୍ୟ ଓ କରିଶୁଣ୍ଡତୁଲ୍ୟ ବାହୁସକଳକୁ ଓ ମସ୍ତକ ସମୁଦାୟକୁ ଛେଦନ କଲେ । ହେ ମହାରାଜ ! ମହାବାହୁ ଧନଞ୍ଜୟ ନିରନ୍ତର ଶରସମୂହ ବିସ୍ତାରକରି କୌଣସି ସ୍ଥଳରେ ହସ୍ତିମାନଙ୍କର ଶୁଣ୍ଡ-ସବୁକୁ, କେଉଁଠାରେ ଅବା ଅଶ୍ୱମାନଙ୍କର ଗ୍ରୀବାସବୁକୁ, କୌଣସି ସ୍ଥାନରେ ରଥସମୂହର ଅକ୍ଷମାନଙ୍କୁ ଓ କୌଣସି କୌଣସି ସ୍ଥଳରେ ପ୍ରାସ ଓ ତୋମରହସ୍ତ ଶୋଣିତାକ୍ତକଳେବର ଅଶ୍ୱାରୋହିମାନଙ୍କୁ ତୀକ୍ଷ୍ଣ କ୍ଷୁରପ୍ରଦ୍ୱାରା ଦୁଇ ବା ତିନିଖଣ୍ଡ କରି ଛେଦନ କଲେ । ଏହି ପ୍ରକାରେ ସମରାଙ୍ଗଣରେ ସହସ୍ର ସହସ୍ର ପ୍ରକାଣ୍ଡ ମାତଙ୍ଗ ଓ ତୁରଙ୍ଗମାନେ ତାହାଙ୍କର ଶରସମୂହ-ଦ୍ୱାରା ନିହତ ହୋଇ ଭୂତଳରେ ପତିତ ହେଲେ । ୩୬ । ଧ୍ୱଜ, ଛତ୍ର ଓ ଶ୍ୱେତଚାମରସମୂହ ଅର୍ଜ୍ଜୁନଙ୍କ ଶରରେ ଖଣ୍ଡ ଖଣ୍ଡ ହୋଇ ଭୂତଳରେ ପତିତ ହେଲା । ଯେପରି ପ୍ରଦୀପ୍ତ ହୁତାଶନ ଅଳ୍ପକାଳ ମଧ୍ୟରେ ତୃଣଲତାଦିକୁ ଭସ୍ମସାତ୍ କରେ ତଦ୍ରୂପ ମହାବୀର ପାର୍ଥ ଆପଣଙ୍କପକ୍ଷୀୟ ସୈନ୍ୟମାନଙ୍କୁ ଛିନ୍ନଭିନ୍ନ କରି କ୍ଷଣକାଳ ମଧ୍ୟରେ ପୃଥିବୀକୁ ରୁଧିରମୟୀ କଲେ ।

ଦୁର୍ଦ୍ଧର୍ଷ ଅକ୍ଷୟପରାକ୍ରମ ମହାବଳବାନ୍ ଅର୍ଜ୍ଜୁନ ଆପଣଙ୍କ ସୈନ୍ୟ-ମଧ୍ୟରେ ବହୁତର ଯୋଦ୍ଧାମାନଙ୍କୁ ବିନଷ୍ଟକରି ଜୟଦ୍ରଥଙ୍କ ରଥସମୀପରେ ଉପସ୍ଥିତ ହେଲେ । ସେ ସାତ୍ୟକି ଓ ଭୀମଙ୍କକର୍ତ୍ତୃକ ରକ୍ଷିତ ହୋଇ ପ୍ରଜ୍ୱଳିତ ହୁତାଶନସଦୃଶ ଦୀପ୍ତି ପାଇଲେ । ପରନ୍ତୁ ଆପଣଙ୍କ ପକ୍ଷୀୟ ବୀର୍ଯ୍ୟସମ୍ପନ୍ନ ମହାରଥୀ ପୁରୁଷଶ୍ରେଷ୍ଠମାନେ ଅର୍ଜ୍ଜୁନଙ୍କୁ ତାଦୃଶ ପ୍ରକାରେ ସମରରେ ଅବସ୍ଥିତ ହେବାର ଅବଲୋକନ କରି ସହି ପାରିଲେ ନାହିଁ । ଦୁର୍ଯ୍ୟୋଧନ, କର୍ଣ୍ଣ, ବୃଷସେନ, ମଦ୍ରରାଜ ଶଲ୍ୟ, ଅଶ୍ୱତ୍ଥାମା, କୃପାଚାର୍ଯ୍ୟ ଓ ସ୍ୱୟଂ ଜୟଦ୍ରଥ ଏମାନେ କ୍ରୋଧାବିଷ୍ଟ ହୋଇ ଅର୍ଜ୍ଜୁନଙ୍କୁ ପରିବେଷ୍ଟନ କଲେ ।

ସଂଗ୍ରାମକୋବିଦ, ବ୍ୟାଦିତାନନ, ଅନ୍ତକସଦୃଶ ନିତାନ୍ତ ଭୟଙ୍କର ମହାବୀର ଧନଞ୍ଜୟ ଧନୁଷ୍ଟଙ୍କାର ଓ ସିଂହନାଦ କରି ସମରାଙ୍ଗଣରେ ନୃତ୍ୟ କଲା ପ୍ରାୟ ଦୃଷ୍ଟ ହେଲେ । କୌରବପକ୍ଷୀୟ ବୀରମାନେ ନର୍ଣ୍ଣିକ ଚତୁରେ ତାହାଙ୍କୁ ପରିବେଷ୍ଟନ କରି ଓ ଜୟଦ୍ରଥଙ୍କୁ ପଶ୍ଚାଦ୍‌ଭାଗରେ ସ୍ଥାପନପୂର୍ବକ କୃଷ୍ଣଙ୍କ ସହିତ ତାହାଙ୍କୁ ସଂହାର କରିବାକୁ ଅଭିଳାଷୀ ହେଲେ । ୪୫ ।

ହେ ମହାରାଜ ! ଏହି ସମୟରେ ଭଗବାନ୍ ଭାସ୍କର ଲୋହିତବର୍ଣ୍ଣ ଧାରଣ କଲେ । କୌରବପକ୍ଷୀୟ ବୀରମାନେ ତାହା ଦେଖି ଆହ୍ଲାଦିତ ହୋଇ ସୂର୍ଯ୍ୟ ଶୀଘ୍ର ଅସ୍ତଗମନ କରନ୍ତୁ, ଏହା କାମନା କଲେ ଓ ଭୁଜଙ୍ଗ-ଭୋଗସଦୃଶ ଭୁଜବଳଦ୍ୱାରା ପ୍ରଚଣ୍ଡ ଶରାସନମାନଙ୍କୁ ଆନମିତ କରି ସୂର୍ଯ୍ୟ ରଶ୍ମିସଦୃଶ ଶତଶତ ଶାୟକ ଅର୍ଜ୍ଜୁନଙ୍କ ପ୍ରତି ନିକ୍ଷେପ କଲେ । ଯୁଦ୍ଧଦୁର୍ମଦ କିରୀଟୀ ସେହି ବୀରମାନଙ୍କର ନିକ୍ଷିପ୍ତ ଓ କ୍ଷିପ୍ୟମାଣ ବାଣସମୂହକୁ ଦୁଇ ତିନି ଓ ଅଷ୍ଟଖଣ୍ଡରେ ଛେଦନ କରି ସେମାନଙ୍କର ପ୍ରତ୍ୟେକଙ୍କୁ ପ୍ରତିବିଦ୍ଧ କଲେ । ସିଂହଲାଙ୍ଗୁଳଧ୍ୱଜଶୋଭିତ ରଥରେ ଆରୋହଣ କରି ଶାରଦ୍ୱତୀ-ପୁତ୍ର ଅଶ୍ୱତ୍ଥାମା ସ୍ୱୀୟ ବୀର୍ଯ୍ୟ ପ୍ରଦର୍ଶନପୂର୍ବକ ଅର୍ଜ୍ଜୁନଙ୍କୁ ନିବାରିତ କଲେ । ସେ ସିନ୍ଧୁରାଜଙ୍କ ରକ୍ଷାନିମିତ୍ତ ରଥ ବର୍ମରେ ଅବସ୍ଥାନ କରି ଦଶଗୋଟି ବାଣରେ ପାର୍ଥଙ୍କୁ ଓ ସାତଗୋଟି ବାଣରେ ବାସୁଦେବଙ୍କୁ ବିଦ୍ଧ କଲେ ।

ତଦନନ୍ତର କୌରବପକ୍ଷୀୟ ସମସ୍ତ ମହାରଥି ଆପଣଙ୍କ ପୁତ୍ରର ଆଦେଶାନୁସାରେ ଅର୍ଜ୍ଜୁନଙ୍କୁ ମହତ୍ ମହତ୍ ରଥସମୂହଦ୍ୱାରା ପରିବେଷ୍ଟିତ କରି ଶରାସନ ବିସ୍ତାରଣ ଓ ବାଣଜାଲ ବିମୋଚନପୂର୍ବକ ଜୟଦ୍ରଥଙ୍କୁ ରକ୍ଷା କଲେ । ପରନ୍ତୁ ମହାବୀର ଅର୍ଜ୍ଜୁନଙ୍କର ବାହୁବଳ ତୂଣୀରଦ୍ୱୟର ଅକ୍ଷୟତା ଓ ପ୍ରଚଣ୍ଡ ଗାଣ୍ଡୀବ ଧନୁର ଦୃଢ଼ତା ଆଶ୍ଚର୍ଯ୍ୟରୂପେ ଦୃଷ୍ଟ ହେଲା । ସେ ଅସ୍ତ୍ର ପ୍ରଭାବରେ ଅଶ୍ୱତ୍ଥାମାଙ୍କର ଶରଜାଲ ନିରାକୃତ କରି ସେମାନଙ୍କର ପ୍ରତ୍ୟେକଙ୍କୁ ଦଶଗୋଟି ଲେଖାଏଁ ବାଣରେ ନିପୀଡ଼ିତ କଲେ । ଅନନ୍ତର ତାହାଙ୍କୁ ଅଶ୍ୱତ୍ଥାମା ପଞ୍ଚବିଂଶତି ବାଣରେ, ବୃଷସେନ ସପ୍ତବାଣରେ, ଦୁର୍ଯ୍ୟୋଧନ ସପ୍ତତି ବାଣରେ ଓ କର୍ଣ୍ଣ ଦଶଗୋଟି ବାଣରେ, ବିଦ୍ଧ କଲେ । ଏହିପରି ସେହିସମସ୍ତ ମହାରଥିମାନେ ଗର୍ଜ୍ଜନପୂର୍ବକ ପୁନଃ ପୁନଃ ଶରାସନକୁ ବିକମ୍ପିତ କରି ଅସ୍ତ୍ରଦ୍ୱାରା ଅର୍ଜ୍ଜୁନଙ୍କୁ ବିଦ୍ଧ କଲେ । ସୂର୍ଯ୍ୟାସ୍ତ ପ୍ରତୀକ୍ଷାରେ ଉଗ୍ରସହ ଅର୍ଜ୍ଜୁନଙ୍କୁ ଏପରିଭାବରେ ମଣ୍ଡଳାକାରରେ ବେଷ୍ଟନ କଲେ ଯେ

ସେମାନଙ୍କର ପରସ୍ପର ରଥ ସଂଶ୍ଳେଷରେ ବିନ୍ଦୁମାତ୍ର ବ୍ୟବଧାନ ରହିଲା ନାହିଁ ।

ହେ ମହାରାଜ ! ପରିଘସଦୃଶବାହୁବିଶିଷ୍ଟ ବୀରମାନେ ସିଂହନାଦ ସହକାରେ ଶରାସନ ବିସ୍ଫାରଣ ଓ ମହାଦିବ୍ୟାସ୍ତ୍ରସମୂହ ପ୍ରଦର୍ଶନପୂର୍ବକ ଧନଞ୍ଜୟଙ୍କ ଶରୀରରେ ଏପରି ତୀକ୍ଷ୍ଣତର ବାଣମାନ ବୃଷ୍ଟିକଲେ ଯେ ତାହା ନିରନ୍ତରଧାରାବର୍ଷୀ ନୀରଦ-ପଙ୍‌କ୍ତି ଭୂ-ପୃଷ୍ଠରେ ବାରିବର୍ଷଣ କଲାଭଳି ପ୍ରତୀୟମାନ ହେଲା । ପରନ୍ତୁ ଦୁର୍ଦ୍ଧର୍ଷ ଅକ୍ଷୟପରାକ୍ରମ ଅର୍ଜ୍ଜୁନ ଆପଣଙ୍କ ସୈନ୍ୟମଧ୍ୟରେ ଅସଂଖ୍ୟ ଯୋଦ୍ଧାମାନଙ୍କୁ ଶମନ ସଦନକୁ ପ୍ରେରଣ କରି ଜୟଦ୍ରଥଙ୍କ ରଥ ସମୀପକୁ ଗମନ କଲେ । ତତ୍‌କାଳରେ ସୂତ-ପୁତ୍ର କର୍ଣ୍ଣ ସାତ୍ୟକି ଓ ଭୀମସେନଙ୍କ ସାକ୍ଷାତରେ ଅର୍ଜ୍ଜୁନଙ୍କୁ ଶରନିକରଦ୍ୱାରା ନିବାରିତ କଲେ । ମହାବାହୁ ଅର୍ଜ୍ଜୁନ ମଧ୍ୟ ସେହିମତି ସମସ୍ତ ସୈନ୍ୟମାନଙ୍କ ସମକ୍ଷରେ କର୍ଣ୍ଣଙ୍କୁ ଦଶଗୋଟି ବାଣରେ ବିଦ୍ଧ କଲେ ଓ ସାତ୍ୟକି ତିନିଗୋଟି ବାଣରେ ଓ ପୁନର୍ବାର ଅର୍ଜ୍ଜୁନ ସାତଗୋଟି ବାଣରେ ତାହାଙ୍କୁ ବିଦ୍ଧ କଲେ । ମହାରଥୀ କର୍ଣ୍ଣ ସେମାନଙ୍କର ପ୍ରତ୍ୟେକଙ୍କୁ ଷାଠିଏ ଗୋଟି ବାଣରେ ବିଦ୍ଧ କଲେ । ୬୩ ।

ଏହିପରି ସେମାନଙ୍କ ସହିତ କର୍ଣ୍ଣଙ୍କର ଯୁଦ୍ଧ ହେଲା । କିନ୍ତୁ ହେ ମହାରାଜ ! ସେହି ସ୍ଥଳରେ ସୂତପୁତ୍ରଙ୍କର ଏହି ଆଶ୍ଚର୍ଯ୍ୟ ପରାକ୍ରମ ଅବଲୋକନ କଲୁଁ ଯେ ସେ ସେହି ସମରାଙ୍ଗଣରେ ତିନିଜଣ ମହାରଥୀଙ୍କୁ ଏକାକୀ କ୍ରୁଦ୍ଧ ହୋଇ ନିବାରଣ କଲେ । ମହାବାହୁ ଫାଲ୍‌ଗୁନ ଏକଶତ ଶରଦ୍ୱାରା ସୂତ-ପୁତ୍ରଙ୍କ ସମସ୍ତ ମର୍ମ୍ମସ୍ଥଳକୁ ନିପୀଡ଼ିତ କଲେ । ପ୍ରତାପବାନ୍ କର୍ଣ୍ଣ ରୁଧିରକ୍ତକଳେବର ହୋଇ ପଞ୍ଚାଶତ୍ ଶରରେ ଅର୍ଜ୍ଜୁନଙ୍କୁ ବିଦ୍ଧ କଲେ । ଧନଞ୍ଜୟ ତାହାଙ୍କର ତାଦୃଶ ହସ୍ତଲାଘବ ଅବଲୋକନ କରି ସହି ପାରିଲେ ନାହିଁ । ଅବିଳମ୍ବେ ସୂତ-ପୁତ୍ରଙ୍କର ଶରାସନ ଛେଦନ କରି ନଅଗୋଟି ଶରଦ୍ୱାରା ତାହାଙ୍କର ହୃଦୟ-ଦେଶ ବିଦ୍ଧ କଲେ । ୬୮ ।

ପ୍ରତାପବାନ୍ ସୂତପୁତ୍ର କର୍ଣ୍ଣ ମଧ୍ୟ ତତ୍‌କ୍ଷଣାତ୍ ଅନ୍ୟ ଗୋଟିଏ ଶରାସନ ଗ୍ରହଣ କରି ସହସ୍ର ସହସ୍ର ବାଣଜାଲ ଦ୍ୱାରା ଧନଞ୍ଜୟଙ୍କୁ ସମାଚ୍ଛନ୍ନ କଲେ ।

ହେ ମହାରାଜ ! ଯେପରି ବାୟୁ ଶଲଭଶ୍ରେଣୀକୁ ଦୂରୀକୃତ କରେ ତଦ୍ରୂପ ବୀର୍ଯ୍ୟଶାଳୀ ପୃଥାପୁତ୍ର ଧନଞ୍ଜୟ, କର୍ଣ୍ଣକାର୍ମୁକସମ୍ଭୂତ ଶରବୃଷ୍ଟିକୁ ନିରାକୃତ କରି ହସ୍ତଲାଘବ ପ୍ରଦର୍ଶନପୂର୍ବକ ସୈନ୍ୟମାନଙ୍କ ସମକ୍ଷରେ ରଣାଙ୍ଗନରେ କର୍ଣ୍ଣଙ୍କୁ ଶରଜାଲଦ୍ୱାରା ସମାଚ୍ଛନ୍ନ କଲେ । ୭୧ । ପୁଣି ସେ ଜୟଦ୍ରଥ ବଧନିମିତ୍ତ ଉଦ୍ୟତ ହୋଇ ସୂତପୁତ୍ରଙ୍କ ସଂହାରାର୍ଥ ସୂର୍ଯ୍ୟରଶ୍ମିସମ ଗୋଟିଏ ବାଣ ଅତିବେଗରେ ନିକ୍ଷେପ କଲେ । ୭୨ । ହେ ମହାରାଜ ! ଦ୍ରୋଣପୁତ୍ର ଅଶ୍ୱତ୍ଥାମା ଅର୍ଜ୍ଜୁନଙ୍କ ନିକ୍ଷିପ୍ତ ସେହି ବାଣକୁ ବେଗରେ ଆପତିତ ହେବାର ଦେଖି ତାହାକୁ ତୀକ୍ଷ୍ଣ ଅର୍ଦ୍ଧଚନ୍ଦ୍ର ଅସ୍ତ୍ରଦ୍ୱାରା ଛିନ୍ନ କରି ଭୂତଳରେ ପାତିତ କଲେ । ୭୩ । ଶତ୍ରୁହନ୍ତା ସୂତପୁତ୍ର ମଧ୍ୟ ତାହାଙ୍କର ପ୍ରତିକାର ଇଚ୍ଛୁକ ହୋଇ ତାହାଙ୍କୁ ଅସଂଖ୍ୟ ଶରନିକରରେ ସମାବୃତ କଲେ । ୭୪ ।

ପୁରୁଷସିଂହ ମହାରଥ ଧନଞ୍ଜୟ ଓ କର୍ଣ୍ଣ, ବୃଷଭଦ୍ୱୟ ସଦୃଶ ଗର୍ଜ୍ଜନପୂର୍ବକ ନିରନ୍ତର ବାଣଜାଲ ବିସ୍ତାର କରି ମୁହୂର୍ତ୍ତକ ମଧ୍ୟରେ ଆକାଶ ମଣ୍ଡଳକୁ ଆଚ୍ଛାଦିତ କଲେ । ୭୫ । ଉଭୟେ ଉଭୟଙ୍କ ଶର ସମୂହଦ୍ୱାରା ସୈନ୍ୟମାନଙ୍କର ଅଦୃଶ୍ୟ ହୋଇ ପରସ୍ପରକୁ ପ୍ରହାର କଲେ । ସେହି କାଳରେ ସେ ଦୁହେଁ "ଆହେ କର୍ଣ୍ଣ, ଅବସ୍ଥାନ କର ଆମ୍ଭେ ଅର୍ଜ୍ଜୁନ", "ଆହେ ଅର୍ଜ୍ଜୁନ, ଅବସ୍ଥାନ କର, ଆମ୍ଭେ କର୍ଣ୍ଣ", ଏହିପରି ତର୍ଜ୍ଜନ ପୂର୍ବକ ପରସ୍ପର ପରସ୍ପରକୁ ବାକ୍ୟ ଶଲ୍ୟରେ ନିପୀଡ଼ିତ କରି ଲଘବସୌଷ୍ଠବ ଅଥବା ନାନାପ୍ରକାର ରଣକୌଶଳ ପ୍ରଦର୍ଶନ କରାଇ ଯୁଦ୍ଧଦ୍ୱାରା ସମରାଙ୍ଗଣରେ ସୈନ୍ୟମାନଙ୍କର ଦର୍ଶନୀୟ ହେଲେ ।

ହେ ମହାରାଜ ! ଏହିପରି ସେ ବୀରଦ୍ୱୟ ପରସ୍ପର ପରସ୍ପରର ବଧାଭିଳାଷରେ ଯୁଦ୍ଧ କରନ୍ତେ ସିଦ୍ଧ, ଚାରଣ ଓ ପନ୍ନଗଗଣ ସମସ୍ତେ ସେମାନଙ୍କୁ ପ୍ରଶଂସା କଲେ । ତଦନନ୍ତର ରାଜା ଦୁର୍ଯ୍ୟୋଧନ ଆପଣା ସୈନ୍ୟମାନଙ୍କୁ ଏହିପରି ଆଦେଶ ଦେଲେ ଯେ, ହେ ସୈନ୍ୟଗଣ ! ଅଦ୍ୟ ମହାବୀର କର୍ଣ୍ଣ ଆମ୍ଭ ନିକଟରେ ଏହିପରି ପ୍ରତିଜ୍ଞା କରିଅଛନ୍ତି ଯେ ସମରରେ ଅର୍ଜ୍ଜୁନଙ୍କୁ ନିହତ ନ କରି ପ୍ରତିନିବୃତ୍ତ ହେବେନାହିଁ । ଅତଏବ ତୁମ୍ଭେମାନେ ଯତ୍ନପୂର୍ବକ ତାହାଙ୍କୁ ରକ୍ଷା କର । ୮୦ । ଦୁର୍ଯ୍ୟୋଧନ ସୈନ୍ୟମାନଙ୍କୁ ଏହିପରି ଆଦେଶ କରୁଅଛନ୍ତି, ଏମନ୍ତ ସମୟରେ ଶ୍ୱେତବାହନ କିରୀଟୀ

କର୍ଣ୍ଣଙ୍କ ପରାକ୍ରମ ଦର୍ଶନ କରି ଆକର୍ଣ୍ଣ ସନ୍ଧାନପୂର୍ବକ ଚାରିଗୋଟି ବାଣରେ ତାହାଙ୍କର ଚାରିଗୋଟି ଅଶ୍ୱକୁ ସଂହାର କଲେ ଓ ଅପର ଗୋଟିଏ ଭଲ୍ଲାସ୍ତ୍ରଦ୍ୱାରା ତାହାଙ୍କ ସାରଥିକୁ ରଥମାଡ଼ରୁ ଭୂତଳରେ ନିପାତିତ କରି ଆପଣଙ୍କ ପୁତ୍ରଙ୍କ ସମକ୍ଷରେ ତାହାଙ୍କୁ ଶରଜାଲରେ ସମାଚ୍ଛନ୍ନ କଲେ ।

ହେ ମହାରାଜ ! ସୂତପୁତ୍ର ଏହିପରି ରଣସ୍ଥଳରେ ଅର୍ଜ୍ଜୁନଙ୍କ ଶରସମୂହଦ୍ୱାରା ସମାଚ୍ଛନ୍ନ ଅଶ୍ୱସାରଥିବିହୀନ ଓ ବିମୋହିତ ହୋଇ ସେ ସମୟରେ କର୍ତ୍ତବ୍ୟ ସ୍ଥିର କରି ପାରିଲେ ନାହିଁ, ତତ୍‌କାଳରେ ଆଚାର୍ଯ୍ୟନନ୍ଦନ ଅଶ୍ୱତ୍‌ଥାମା, କର୍ଣ୍ଣଙ୍କୁ ରଥଭ୍ରଷ୍ଟ ଅବଲୋକନ କରି ସ୍ୱୀୟ ରଥରେ ତାହାଙ୍କୁ ଆରୋହଣ କରାଇ ପୁନର୍ବାର ଅର୍ଜ୍ଜୁନଙ୍କସହିତ ସମରରେ ପ୍ରବୃତ୍ତ ହେଲେ । ସେହି ସମୟରେ ମଦ୍ରରାଜ ଶଲ୍ୟ ତ୍ରିଂଶତ୍‌ବାଣରେ ଅର୍ଜ୍ଜୁନଙ୍କୁ ବିଦ୍ଧ କଲେ । କୃପାଚାର୍ଯ୍ୟ ବିଂଶତିବାଣରେ ବାସୁଦେବଙ୍କୁ ଓ ଦ୍ୱାଦଶବାଣରେ ଅର୍ଜ୍ଜୁନଙ୍କୁ ବିଦ୍ଧ କଲେ । ୮୬ । ତତ୍‌ପରେ ଜୟଦ୍ରଥ ଚାରିଗୋଟି ବାଣରେ ଓ ବୃଷସେନ ସାତଗୋଟି ବାଣରେ ତାହାଙ୍କୁ ବିଦ୍ଧ କଲେ । ଏହିପରି ସେମାନେ ପ୍ରତ୍ୟେକ କୃଷ୍ଣାର୍ଜ୍ଜୁନଙ୍କୁ ପ୍ରହାର କଲେ । ୮୭ ।

ଧନଞ୍ଜୟ ମଧ୍ୟ ସେ ସମସ୍ତଙ୍କୁ ପ୍ରତିବିଦ୍ଧ କଲେ । ସେ ଦ୍ରୋଣପୁତ୍ରଙ୍କୁ ଚତୁଃଷଷ୍ଟି ବାଣରେ, ମଦ୍ରରାଜଙ୍କୁ ଶତବାଣରେ, ଜୟଦ୍ରଥଙ୍କୁ ଦଶବାଣରେ, ବୃଷସେନଙ୍କୁ ତିନିବାଣରେ ଓ କୃପାଚାର୍ଯ୍ୟଙ୍କୁ ବିଂଶତି ବାଣରେ ବିଦ୍ଧ କରି ସିଂହନାଦ କଲେ । ୮୯ । ସେତେବେଳେ ଆପଣଙ୍କପକ୍ଷୀୟ ମହାରଥିମାନେ ଅର୍ଜ୍ଜୁନଙ୍କ ପ୍ରତିଜ୍ଞା ବିଘ୍ନ କରିବା ମାନସରେ ମିଳିତ ହୋଇ ସତ୍ୱର ତାହାଙ୍କ ପ୍ରତି ଧାବମାନ ହେଲେ । ୯୦ । ଅର୍ଜ୍ଜୁନ ଆପଣଙ୍କପକ୍ଷୀୟ ସୈନ୍ୟମାନଙ୍କୁ ସନ୍ତାପିତ କରି ଚତୁର୍ଦ୍ଦିଗରେ ବାରୁଣାସ୍ତ୍ର ପ୍ରାଦୁର୍ଭୂତ କଲେ । ପରନ୍ତୁ କୌରବଗଣ ମଧ୍ୟ ମହାର୍ହ ରଥରେ ଆରୋହଣ କରି ଶରବୃଷ୍ଟି କରୁ କରୁ ଅର୍ଜ୍ଜୁନଙ୍କ ଅଭିମୁଖକୁ ଧାବମାନ ହେଲେ । ୯୧ । ହେ ମହାରାଜ ! ସେହି ସର୍ବଜନମୋହକର ଅତି ଭୀଷଣ ତୁମୁଳ ସଂଗ୍ରାମ ଉପସ୍ଥିତ ହେଲେ ହେଁ କିରୀଟମାଳୀ ଧନଞ୍ଜୟ ମୋହିତ ହେଲେ ନାହିଁ । ସେ ଜୟଦ୍ରଥଙ୍କୁ ଅବଲୋକନ କରି ନିରନ୍ତର ଶରବର୍ଷଣ କଲେ । ୯୦ । ଅପ୍ରମେୟପରାକ୍ରମଶାଳୀ ମହାତ୍ମା ସବ୍ୟସାଚୀ ରାଜ୍ୟାର୍ଥୀ ହୋଇ କୌରବମାନଙ୍କ

ପ୍ରଦତ୍ତ ଦ୍ୱାଦଶ ବର୍ଷସମ୍ଭୂତ କ୍ଲେଶସମୂହକୁ ସ୍ମରଣ କରି ଗାଣ୍ଡୀବପ୍ରମୁକ୍ତ ଶରଜାଲଦ୍ୱାରା ସମସ୍ତ ଦିଗ୍‌ବିଦିଗକୁ ସମାଚ୍ଛନ୍ନ କଲେ । ୯୩ । ତାହାଙ୍କର ଅନବରତ ଶରସମ୍ପାତରେ ଅନ୍ତରୀକ୍ଷ ପ୍ରଦୀପ୍ତ ଉଲ୍‌କାମୟ ଦୃଷ୍ଟ ହେଲା । ଆକାଶରେ ପକ୍ଷୀମାନେ ଶ୍ରେଣୀଭୂତ ହୋଇ ମନୁଷ୍ୟମାନଙ୍କ ଶରୀର ଉପରେ ନିପତିତ ହେଲେ । ସେହି ସମୟରେ ସେ କ୍ରୁଦ୍ଧ ହୋଇ ପିଙ୍ଗଳବର୍ଣ୍ଣ-ଜ୍ୟା-ଯୁକ୍ତ ହରପିନାକସଦୃଶ ପ୍ରଚଣ୍ଡ ଗାଣ୍ଡୀବନିର୍ମୁକ୍ତ ଶରଜାଲଦ୍ୱାରା ଅରାତିକୁଳକୁ ନିର୍ମୂଳ କରିବାରେ ପ୍ରବୃତ୍ତ ହେଲେ । ୯୪ । ଶତ୍ରୁସୈନ୍ୟ-ବିଜୟୀ ମହାଯଶା କିରୀଟୀ ଶ୍ରେଷ୍ଠ ଶ୍ରେଷ୍ଠ ଅଶ୍ୱାରୋହୀ ଓ ଗଜାରୋହୀ କୁରୁ-ପ୍ରବୀରମାନଙ୍କର ନିକ୍ଷିପ୍ତ ଅସ୍ତ୍ରସମୂହକୁ ସ୍ୱୀୟ ମହାଶରାସନ ପ୍ରଭାବରେ ନିରାକୃତ କରି ଶରସମୂହଦ୍ୱାରା ସେମାନଙ୍କୁ ନିପାତିତ କଲେ । ୯୫ । କ୍ଷତ୍ରିୟମାନେ କ୍ରୋଧରେ ଘୋରମୂର୍ତ୍ତି ହୋଇ ଗୁରୁତର ଗଦା, ସର୍ବଲୌହମୟ ପରିଘ, ଅସି ଓ ଶକ୍ତି ପ୍ରଭୃତି ବିବିଧ ମହାସ୍ତ୍ରସମୂହ ଗ୍ରହଣପୂର୍ବକ ସହସା ଅର୍ଜ୍ଜୁନାଭିମୁଖକୁ ଧାବମାନ ହେଲେ । ୯୬ । ହେ ମହାରାଜ ! ସେହି ସମୟରେ ମହାଧନୁର୍ଦ୍ଧର ଅର୍ଜ୍ଜୁନ ଯୁଗାନ୍ତକାଳୀନ ମେଘସଦୃଶ ଶବ୍ଦାୟମାନ ମହେନ୍ଦ୍ରକୋଦଣ୍ଡତୁଲ୍ୟ ଗାଣ୍ଡୀବ ଶରାସନକୁ ବାହୁବଳରେ ଆକର୍ଷଣପୂର୍ବକ ଅବଲୀଳାକ୍ରମେ କୌରବ ସୈନ୍ୟମାନଙ୍କୁ ଶରାନଳରେ ଦଗ୍‌ଧ କରି ଯମ-ରାଷ୍ଟ୍ର ବର୍ଦ୍ଧିତ କଲେ । ୯୭ । ଏହାପରେ ସେ ତୁରଙ୍ଗ, ମାତଙ୍ଗ, ଶତାଙ୍ଗ ଓ ପଦାତିସମୂହସମାକୁଳ ଉଦ୍ଧତ ସୈନ୍ୟମାନଙ୍କୁ ଶସ୍ତ୍ରହୀନ ଓ ଜୀବନବିହୀନ କରି ପ୍ରେତପତି ଭୁବନକୁ ପ୍ରେରଣ କଲେ । ୯୮ ।

---

# ୧୪୭ ଅଧ୍ୟାୟ

ମହାବୀର ଧନଞ୍ଜୟ ଗାଣ୍ଡୀବ ଶରାସନକୁ ଆକର୍ଷଣ କରନ୍ତେ ସାକ୍ଷାତ୍ କୃତାନ୍ତର ସୁସ୍ପଷ୍ଟ ଉତ୍‌କ୍ରୋଶ ସଦୃଶ ଓ ଇନ୍ଦ୍ରାଶନିତୁଲ୍ୟ ଅତି ଗମ୍ଭୀର ନିନାଦଶ୍ରବଣ କରି ଆପଣଙ୍କ ସୈନ୍ୟମାନେ ଭୟରେ ଉଦ୍‌ଭ୍ରାନ୍ତ ହୋଇ ପ୍ରଳୟକାଳସମ୍ଭୂତ ବାୟୁକର୍ତ୍ତୃକସଂକ୍ଷୁଭିତ ଉତ୍ତୁଙ୍ଗତରଙ୍ଗମାଳାସଙ୍କୁଳ ମୀନମକରାଦିସମନ୍ୱିତ ସାଗର ଜଳତୁଲ୍ୟ ଚଞ୍ଚଳ ହେଲେ । ଅର୍ଜ୍ଜୁନ ଶସ୍ତ୍ର ସମୂହ ପ୍ରଦର୍ଶନ କରାଇ ରଣସ୍ଥଳରେ ବିଚରଣ କରୁ କରୁ ଯୁଗପତ୍

ସର୍ବଦିଗରେ ଦୃଷ୍ଟ ହେଲେ । ହେ ମହାରାଜ ! ସେ ଅସାମାନ୍ୟ ଲଘୁହସ୍ତତା-ପ୍ରଯୁକ୍ତ କେତେବେଳେ ଶର ଗ୍ରହଣ, କେତେବେଳେ ଶରସନ୍ଧାନ, କେତେ-ବେଳେ ଜ୍ୟାକର୍ଷଣ, କେତେବେଳେ ବାଣ ବିମୋଚନ କରୁଥିଲେ, ତାହା କିଛି ହିଁ ଲକ୍ଷିତ ହେଉ ନ ଥିଲା । ମହାବାହୁ ପାର୍ଥ ସମସ୍ତ କୌରବୀ ସେନାମାନଙ୍କୁ ସନ୍ତ୍ରାସିତ କରି ଦୁରାସଦ ଐନ୍ଦ୍ରଅସ୍ତ୍ର ପ୍ରାଦୁର୍ଭୂତ କଲେ । ସେହି ଇନ୍ଦ୍ରାସ୍ତ୍ରରୁ ପ୍ରଦୀପ୍ତାଗ୍ର, ଅଗ୍ନିମୁଖ, ଶତ ଶତ, ସହସ୍ର ସହସ୍ର ପ୍ରତି-ମନ୍ତ୍ରିତ ଦିବ୍ୟାସ୍ତ୍ର ସମୂହ ସମୁତ୍ପନ୍ନ ହେଲା । ଆକର୍ଣ୍ଣ ପୂର୍ଣ୍ଣ ଗାଣ୍ଡୀବପ୍ରମୁକ୍ତ ଅଗ୍ନି ଓ ସୂର୍ଯ୍ୟରଶ୍ମି ସନ୍ନିଭ ଶରପ୍ରଭାବରେ ନଭୋମଣ୍ଡଳ ପ୍ରଜ୍ଜ୍ୱଳିତ ଉଲ୍‌କାମୟ ପ୍ରାୟ ହୋଇ ଜନମାନଙ୍କର ଦୁର୍ନିରୀକ୍ଷ ହେଲା ।

କୌରବମାନେ ଯେଉଁ ଅନ୍ଧକାରକୁ ଶରନିକ୍ଷେପ ଦ୍ୱାରା ସମୁଦ୍ଭୂତ କରିଥିଲେ, ସେହି ଅନ୍ଧକାରକୁ ମହାବୀର ଅର୍ଜ୍ଜୁନ ମନ୍ତ୍ରପୂତ ଦିବ୍ୟାସ୍ତ୍ର ପ୍ରଭାବରେ ବିକ୍ରମପ୍ରକାଶ ପୂର୍ବକ ପ୍ରଭାତ କାଳରେ ପ୍ରଭାକରଙ୍କ କିରଣରାଜି ବିସ୍ତାର ପରି ନିଶାକାଳସମ୍ଭୂତ ତମୋରାଶିକୁ ଧ୍ୱଂସ କଲେ । ନିଦାଘକାଳୀନ ଦିନକର କ୍ଷୁଦ୍ର ଜଳାଶୟର ସଲିଳକୁ ଶୋଷଣ କରି ନିଃଶେଷିତ କଲାପ୍ରାୟ ଅର୍ଜ୍ଜୁନ ଶରରଶ୍ମି ଦ୍ୱାରା କୌରବ ସୈନ୍ୟମାନଙ୍କୁ ନିଃଶେଷିତ କଲେ । ସୂର୍ଯ୍ୟରଶ୍ମି ଯେପରି ସମସ୍ତ ଭୂମଣ୍ଡଳରେ ବିକୀର୍ଣ୍ଣ ହୁଏ, ସେହିପରି ଦିବ୍ୟାସ୍ତ୍ର-ବିତ୍ କିରୀଟୀଙ୍କଦ୍ୱାରା ପ୍ରେରିତ ଶରସମୂହ ମୁହୂର୍ତ୍ତକ ମଧ୍ୟରେ ରଣଭୂମିସ୍ଥ ସମସ୍ତ ସୈନ୍ୟଙ୍କ ମଧ୍ୟରେ ସମାକୀର୍ଣ୍ଣ ହେଲା । ହେ ମହାରାଜ ! ଗାଣ୍ଡୀବ-ପ୍ରମୁକ୍ତ ତୀକ୍ଷ୍ଣତର ଶରନିକର ପ୍ରିୟ ସୁହୃଦ୍‌ତୁଲ୍ୟ ବୀରମାନଙ୍କ ହୃଦୟରେ ସଂଲଗ୍ନ ହେଲା । ଆପଣଙ୍କ ପକ୍ଷୀୟ ଯେଉଁ ଶୌର୍ଯ୍ୟାଭିମାନୀ ବୀରମାନେ ସମରରେ ତାହାଙ୍କ ସମ୍ମୁଖୀନ ହୋଇଥିଲେ ସେମାନେ ସମସ୍ତେ ପତଙ୍ଗ-ସଦୃଶ ପାର୍ଥରୂପ ଅଗ୍ନିରେ ଭସ୍ମୀଭୂତ ହୋଇ ଶମନସଦନକୁ ଗମନ କଲେ ।

ଏହିପରି ଧନଞ୍ଜୟ ବୀରମାନଙ୍କର ଯଶ ଓ ଜୀବନକୁ ବିଲୋପ କରି ରଣାଙ୍ଗନରେ ମୂର୍ତ୍ତିମାନ୍ ମୃତ୍ୟୁସଦୃଶ ବିଚରଣ କଲେ । ସେ ଶରଦ୍ୱାରା କାହାର କିରୀଟସମନ୍ୱିତ ମସ୍ତକକୁ, କାହାର ଅଙ୍ଗଦବିଭୂଷିତ ବିପୁଳବାହୁକୁ,

କାହାର କାହାର କୁଣ୍ଡଳାଳଙ୍କୃତ କର୍ଣ୍ଣଯୁଗଳକୁ ଛେଦନ କରି ଓ ଗଜାରୋହି-ମାନଙ୍କ ତୋମରସମନ୍ବିତ, ଅଶ୍ୱାରୋହିମାନଙ୍କର ପ୍ରାସବିଶିଷ୍ଟ, ପଦାତି-ମାନଙ୍କର ଅସିଚର୍ମ୍ମଯୁକ୍ତ, ରଥିମାନଙ୍କ ଶରାସନସମନ୍ବିତ ଓ ସାରଥିମାନଙ୍କର ପ୍ରତୋଦଯୁକ୍ତ ବାହୁମାନଙ୍କୁ ଛେଦନପୂର୍ବକ ପ୍ରଦୀପ୍ତାଗ୍ର ଶରରୂପ ଶିଖାଦ୍ୱାରା ଶୋଭିତ ହୋଇ ବିସ୍ଫୁଲିଙ୍ଗଯୁକ୍ତ ଉଗ୍ରତରଶିଖାସୁଶୋଭିତ ଜ୍ୱଳନ୍ତ ହୁତାଶନସଦୃଶ ଦୀପ୍ତିପ୍ରାପ୍ତ ହେଲେ ।

ହେ ମହାରାଜ ! କପିଧ୍ୱଜରଥାରୂଢ଼ ସର୍ବଶସ୍ତ୍ରଧାରୀଶ୍ରେଷ୍ଠ ଦେବରାଜପ୍ରତିମ ମହାବୀର ଧନଞ୍ଜୟ ସମରରେ ମହାସ୍ତ୍ରମାନଙ୍କୁ ନିକ୍ଷେପ କରି ଜ୍ୟାଘୋଷ ଓ ତଳଶବ୍ଦଦ୍ୱାରା ରଥବର୍ତ୍ମରେ ନୃତ୍ୟକଳାପ୍ରାୟ ଏକକାଳରେ ସର୍ବତ୍ର ଦୃଷ୍ଟ ହେଲେ ।୨୦। ଆପଣଙ୍କପକ୍ଷୀୟ ଯୋଦ୍ଧାମାନେ ଅତିଶୟ ଯତ୍ନବାନ୍ ହେଲେହେଁ ମଧ୍ୟାହ୍ନକାଳୀନ ସୂର୍ଯ୍ୟସଦୃଶ ସେହି ପ୍ରତାପଶାଳୀ ବୀରଙ୍କୁ ନିରୀକ୍ଷଣ କରିବାକୁ ସମର୍ଥ ହେଲେ ନାହିଁ । ୨୧ । ଯେପରି ବର୍ଷାକାଳରେ ଇନ୍ଦ୍ରଧନୁସୁଶୋଭିତ ବର୍ଷୁକ ଜଳଧରପଙ୍କ୍ତି ଶୋଭାପ୍ରାପ୍ତ ହୁଏ, ସେହିପରି କିରୀଟୀଙ୍କ ଗାଣ୍ଡୀବ ଶରାସନରେ ପ୍ରଦୀପ୍ତାଗ୍ରବାଣ-ସମୂହ ସନ୍ଧାନ କରିବାକାଳରେ ତଦ୍ରୂପ ଶୋଭା ପାଇଲା । ୨୨ ।

ହେ ମହାରାଜ ! ଏହିପରି ଧନଞ୍ଜୟପ୍ରମୁକ୍ତ ଅତିଦୁସ୍ତର ଭୀଷଣ ଅସ୍ତ୍ରସମ୍ପ୍ଲବରେ ବୀରମାନେ ନିମଜ୍ଜିତ ହେଲେ । ସେମାନଙ୍କ ମଧ୍ୟରୁ କାହାର ଛିନ୍ନଦେହ, କାହାରଭୁଜଦଣ୍ଡଶୂନ୍ୟ ଶରୀର, କାହାରବା ପାଣିତଳଶୂନ୍ୟ ଭୁଜ, କାହାର ଅବା ଅଙ୍ଗୁଳିଶୂନ୍ୟ ପାଣିତଳ ସେହି ଯୁଦ୍ଧଭୂମିରେ ପତିତ ହେଲା । ୨୪ । ମଦୋତ୍କଟ ହସ୍ତିମାନଙ୍କ ମଧ୍ୟରେ କୌଣସି କୌଣସି ହସ୍ତିର ଦନ୍ତାଗ୍ରକର୍ତ୍ତିତ ଓ କୌଣସି କୌଣସି ହସ୍ତିର ଦନ୍ତସବୁ ଖଣ୍ଡିତ ହେଲା । ଏହିପରି ଅଶ୍ୱମାନଙ୍କ ମଧ୍ୟରେ କୌଣସି କୌଣସି ଅଶ୍ୱର ଖୁର ଓ ଗ୍ରୀବା ଛିନ୍ନ ହେଲା ଓ ରଥସବୁ ଖଣ୍ଡଖଣ୍ଡ ହୋଇ ପତିତ ହେଲା । କାହାର ଅସ୍ତ୍ର ଛିନ୍ନ, କାହାର ପାଦ ଛିନ୍ନ, କାହାର ସନ୍ଧିସ୍ଥଳ ଭଗ୍ନ ହେବାରୁ ସେମାନେ ନିଶ୍ଚେଷ୍ଟ ହୋଇ ଅନେକ ପ୍ରକାରେ ବିକଟ ଶବ୍ଦ କଲେ । ୨୬ ।

ହେ ମହାରାଜ ! ସେହି ଚତୁରଙ୍ଗିଣୀ ସେନା ପାର୍ଥଶରସମୂହରେ ଛିନ୍ନଭିନ୍ନ ହୋଇ ନାନାସ୍ଥାନରେ ନିପତିତ ହୁଅନ୍ତେ ସେହି ସମରଭୂମି

ପଶୁକୁଳବିନାଶୀ ରୁଦ୍ରଙ୍କର କ୍ରୀଡ଼ାସ୍ଥାନ ସ୍ୱରୂପ ହୋଇ ଭୀରୁମାନଙ୍କର ଅତି ଭୟାବହ ହେଲା । ସ୍ଥାନେ ସ୍ଥାନେ ସେହି ରଣଭୂମି କ୍ଷୁରାସ୍ତ୍ରସଂଛିନ୍ନ-ହସ୍ତି-ଶୁଣ୍ଡ ସମୂହରେ ଆଚ୍ଛାଦିତ ହେବାରୁ ତାହା ଭୁଜଙ୍ଗବେଷ୍ଟିତ ହେଲାପ୍ରାୟ ଶୋଭା ପାଇଲା । କୌଣସି କୌଣସି ସ୍ଥଳରେ ସେହି ରଣଭୂମି, ବକ୍ତ୍ର-ପଦ୍ମରାଜିରେ ସମାଚ୍ଛିତ ହେବାରୁ ତାହା ସରୋଜମାଳା ଧାରଣ କଲାପ୍ରାୟ ସୁଶୋଭିତ ହେଲା । ପୁଣି କୌଣସି କୌଣସି ସ୍ଥଳରେ ସେହି ରଣଭୂମି ବିଚିତ୍ର ଉଷ୍ଣୀଷ, ମୁକୁଟ, କେୟୁର, ଅଙ୍ଗଦ, କୁଣ୍ଡଳ, ସୁବର୍ଣ୍ଣଚିତ୍ରିତ ତନୁତ୍ର, ଅଶ୍ୱ ଓ ହସ୍ତିମାନଙ୍କର ପରିଚ୍ଛଦ ଓ ଶତଶତ କବଚମାନଙ୍କଦ୍ୱାରା ସମାକୀର୍ଣ୍ଣ ହେବାରୁ ସମଲଙ୍କୃତା ନବବଧୂସଦୃଶ ଶୋଭା ପାଇଲା ।

ତଦନନ୍ତର ଧର୍ମରାଙ୍ଗଣରେ ଭୀରୁଜନଭୟବର୍ଦ୍ଧିନୀ ଓ ସାଧାରଣଙ୍କର ଦୃଷ୍ଟିମାତ୍ରରେ ଭୟସଞ୍ଚାରିଣୀ, ବୈତରଣୀ ନଦୀସଦୃଶ ଅତି ଭୟାନକ ଶୋଣିତତରଙ୍ଗସଂଯୁକ୍ତା ଗୋଟିଏ ନଦୀ ସମୁତ୍ପନ୍ନ ହେଲା । ମେଦ ଓ ମଜ୍ଜା ସବୁ ସେହି ନଦୀର କର୍ଦ୍ଦମ, କେଶସମୂହ ତାହାର ଶୈବାଳ ଓ ଶାଦ୍ୱଳ ମସ୍ତକ ଓ ବାହୁ ତାହାର ଉପଳଖଣ୍ଡ, ଛତ୍ରରାଜି ତାହାର ଊର୍ମ୍ମିମାଳା, ଶତଶତ ରଥ ତାହାର ଭେଳା, କାକ ଓ କଙ୍କ ତାହାର କୁମ୍ଭୀର, ଗୋମାୟୁଗଣ ତାହାର ମକର, ଘୋର ଗୃଧ୍ରସମୂହ ତାହାର ମହାଗ୍ରାହ ସ୍ୱରୂପ ହେଲା । ସେହି ନଦୀରେ ବୀରମାନଙ୍କର ବର୍ମ୍ମରୂପ ଅସ୍ଥି ପତିତ ହେବାରୁ ତାହା ଦୁସ୍ତରଣୀୟା ହେଲା । ରଥୀମାନଙ୍କର ନିପତିତ ଶଙ୍ଖସମୂହ ତାହାର ଗର୍ଭସ୍ଥ ଅସ୍ଥିରୂପରେ ସମାକୀର୍ଣ୍ଣ ହେବାରୁ ତାହା ଦୁର୍ଗମ୍ୟା ହେଲା । ବିଚିତ୍ର ଧ୍ୱଜପତାକାରେ ପରିବ୍ୟାପ୍ତ ହେବାରୁ ତାହା ଅତିଶୟ ଶୋଭାନ୍ୱିତ ହେଲା । ମୃତ ମନୁଷ୍ୟ, ହସ୍ତୀ ଓ ଅଶ୍ୱମାନଙ୍କର ଶରୀରଦ୍ୱାରା ସେହି ନଦୀ ସମାକୀର୍ଣ୍ଣ ହେବାରୁ ଓ ମୃତ ଅଶ୍ୱମାନଙ୍କର ଦେହରାଶି ତାହାର ତୀରଭୂମି ହେବାରୁ ଓ ରଥ-ଚକ୍ର ଯୁଗକାଷ୍ଠ, ଅକ୍ଷ ଓ କୂବର ସମୂହ ତାହାର ଚତୁର୍ଦ୍ଦିଗରେ ନିପତିତ ହେବାରୁ ତାହା ଗମନସଙ୍କଟା ହେଲା । ପ୍ରାସ, ଅସି, ପରଶୁ ପ୍ରଭୃତି ଅସ୍ତ୍ରସମୂହ ତହିଁରେ ସର୍ପସ୍ୱରୂପ ହେବାରୁ ତାହା ସମସ୍ତଙ୍କର ଦୁର୍ନିରୀକ୍ଷ୍ୟା ହେଲା । ଶିବାଗଣ ଭୈରବ ରବ କରୁଥିବାରୁ ଓ ସହସ୍ର ସହସ୍ର ପ୍ରେତ ପିଶାଚବୃନ୍ଦ ଭୂତଗଣ ତହିଁରେ ନୃତ୍ୟ କରିବାରୁ ତାହା ଅତିଶୟ ଭୀଷଣା ହେଲା । ମୃତ ଯୋଧବର୍ଗଙ୍କ ନିଶ୍ଚେଷ୍ଟ କଳେବରମାନ ତହିଁରେ

ପ୍ରବାହିତ ହେଲା । ଅନ୍ତକରୂପୀ ଧନଞ୍ଜୟଙ୍କର ତାଦୃଶ ପରାକ୍ରମ ଅବଲୋକନ କରି କୌରବମାନଙ୍କର ଅନ୍ତଃକରଣରେ ଅଭୂତପୂର୍ବ ଭୟର ସଞ୍ଚାର ହେଲା ।

ସେହି ସମୟରେ ମହାବୀର ଧନଞ୍ଜୟ ସ୍ୱୀୟ ଅସ୍ତ୍ର ପ୍ରଭାବରେ ଆପଣଙ୍କ ପକ୍ଷୀୟ ବୀରମାନଙ୍କର ଅସ୍ତ୍ରସମୂହ ଛେଦନ କରି ଅତି ରୌଦ୍ର କାର୍ଯ୍ୟର ଅନୁଷ୍ଠାନ ପୂର୍ବକ ଆପଣାକୁ ଭୀଷଣକର୍ମା ବୋଲି ପରିଚୟ ଦେଲେ । ସେ ରଥୀମାନଙ୍କୁ ଅତିକ୍ରମ କରନ୍ତେ କୌଣସି ବୀର ମଧ୍ୟାହ୍ନକାଳୀନ ପ୍ରଚଣ୍ଡ ମାର୍ତ୍ତଣ୍ଡ ସଦୃଶ ତାହାଙ୍କୁ ନିରୀକ୍ଷଣ କରିବାକୁ ସମର୍ଥ ହେଲେ ନାହିଁ । ତାହାଙ୍କ ଗାଣ୍ଡୀବଧନୁରୁ ଶରସମୂହ ନିର୍ଗତ ହୁଅନ୍ତେ ନଭୋମଣ୍ଡଳ ବକପଂକ୍ତିଦ୍ୱାରା ପରିଶୋଭିତ ହେଲପ୍ରାୟ ବୋଧ ହେଲା । ଏହିପରି ଜୟଦ୍ରଥ-ବଧାର୍ଥୀ କୃଷ୍ଣସାରଥି ଅର୍ଜୁନ ନାରାଚଦ୍ୱାରା ସେହି ରଥିଶ୍ରେଷ୍ଠମାନଙ୍କୁ ମୋହିତ କଲପ୍ରାୟ ଅତିକ୍ରମ କଲେ ଓ ଚତୁର୍ଦ୍ଦିଗରେ ଶରଜାଲ ବିସ୍ତାର କରି ସମସ୍ତଲୋକଙ୍କ ଦର୍ଶନୀୟ ହୋଇ ରଣାଙ୍ଗଣରେ ବେଗ ସହକାରେ ବିଚରଣ କଲେ ।

ସେହି ସମୟରେ ଆମ୍ଭେମାନେ କେବଳ ସେହି ବୀରମାନଙ୍କ ନିକ୍ଷିପ୍ତ ଶତଶତ ସହସ୍ର ସହସ୍ର ଶରନିକରକୁ ଅନ୍ତରୀକ୍ଷରେ ଭ୍ରମଣ କରୁଥିବାର ଦେଖିଲୁଁ । ସେ କେଉଁ ସମୟରେ ତୂଣରୁ ବାଣ ଗ୍ରହଣ, କେଉଁ ସମୟରେ ବାଣ ସନ୍ଧାନ, କେଉଁ ସମୟରେ ଅବା ବାଣ ବିମୋଚନ କଲେ, ତାହା ଦୃଷ୍ଟ ହେଲା ନାହିଁ । ସେ ଶରବୃଷ୍ଟିଦ୍ୱାରା ଦିକ୍ ଓ ବିଦିକ୍ ସମାଚ୍ଛନ୍ନ କରି କଦମ୍ବ କୁସୁମ ସଦୃଶ ରଥୀମାନଙ୍କୁ ସୁଶୋଭିତ କରଣାନନ୍ତର ଜୟଦ୍ରଥଙ୍କ ସମୀପକୁ ଅଭିଦ୍ରୂତ ହେଲେ ଓ ସନ୍ନତପର୍ବ ଚତୁଃଷଷ୍ଟି ବାଣରେ ତାହାଙ୍କୁ ବିଦ୍ଧ କଲେ । ୪୮ । ହେ ମହାରାଜ ! ଆପଣଙ୍କପକ୍ଷୀୟ ଯୋଦ୍ଧାମାନେ କୁନ୍ତୀନନ୍ଦନଙ୍କୁ ସିନ୍ଧୁରାଜଙ୍କ ଅଭିମୁଖକୁ ଗମନ କରିବାର ଅବଲୋକନ କରି ସିନ୍ଧୁରାଜଙ୍କ ଜୀବନରେ ନିରାଶ ହୋଇ ସଂଗ୍ରାମରୁ ନିବୃତ୍ତ ହେଲେ । ୪୯ । ସେହି ସମୟରେ ଯେଉଁ ବୀରମାନେ ଅର୍ଜୁନଙ୍କ ସମ୍ମୁଖୀନ ହେଲେ, ସେମାନଙ୍କ ଶରୀରରେ ଅର୍ଜୁନନିକ୍ଷିପ୍ତ ଯମତୁଲ୍ୟ ବାଣମାନ ନିପତିତ ହେଲା । ବିଜୟୀ-

ଶ୍ରେଷ୍ଠ ମହାରଥି ଧନଞ୍ଜୟ ସୂର୍ଯ୍ୟରଶ୍ମି ସନ୍ନିଭ ଶରହାସ ନିରନ୍ତର ନର-
ମାନଙ୍କର ମସ୍ତକସମୂହ ଛିନ୍ନ କରିବାରୁ ସୈନ୍ୟମଧ୍ୟରେ ଅସଂଖ୍ୟ କବନ୍ଧଗଣ
ସମୁତ୍ଥିତ ହେଲା । ୫୧ ।

ହେ ମହାରାଜ ! ଏହିପରି ମହାବୀର ଧନଞ୍ଜୟ ଆପଣଙ୍କର ଚତୁ-
ରଙ୍ଗିଣୀ ସେନାକୁ ବ୍ୟାକୁଳିତ କରି ଜୟଦ୍ରଥଙ୍କ ପ୍ରତି ଧାବିତ ହେଲେ ।
ଅଶ୍ୱତ୍ଥାମାଙ୍କୁ ପଞ୍ଚାଶତ୍ ଓ ବୃଷସେନଙ୍କୁ ତିନିଗୋଟି ଶରରେ ବିଦ୍ଧ କରି
କୃପାପରବଶ ହୋଇ କୃପାଚାର୍ଯ୍ୟଙ୍କୁ ଅଯତ୍ନସହକାରେ ନଅଗୋଟି ଶରରେ
ବିଦ୍ଧ କଲେ । ୫୩ । ତତ୍ପରେ ଶଲ୍ୟଙ୍କୁ ଷୋଡ଼ଶଗୋଟି, କର୍ଣ୍ଣଙ୍କୁ ଦ୍ୱାତ୍ରିଂଶତ
ସଂଖ୍ୟକ ଓ ସିନ୍ଧୁରାଜଙ୍କୁ ଚତୁଃଷଷ୍ଟି ଶାୟକଦ୍ୱାରା ବିଦ୍ଧ କରି ସିଂହନାଦ
କଲେ । ୫୪ । ସିନ୍ଧୁରାଜ ଗାଣ୍ଡୀବଧାରୀ ଧନଞ୍ଜୟଙ୍କ ଶରସମୂହରେ ତାଦୃଶ
ପ୍ରକାରେ ବିଦ୍ଧ ହୋଇ ସହନ କଲେ ନାହିଁ । ଅଙ୍କୁଶାହତ ମାତଙ୍ଗସଦୃଶ
କ୍ରୁଦ୍ଧ ହେଲେ । ୫୫ । ବରାହଧ୍ୱଜ ରଥରେ ଅବସ୍ଥାନପୂର୍ବକ କର୍ମାରମାର୍ଜିତ
କୁପିତ ଭୁଜଙ୍ଗସଦୃଶ ଅବକ୍ରଗାମୀ ଗୃଧ୍ରପକ୍ଷବିରାଜିତ ତୀକ୍ଷ୍ଣ ବାଣସମୂହ
ସତ୍ୱର ଅର୍ଜ୍ଜୁନଙ୍କ ପ୍ରତି ନିକ୍ଷେପ କଲେ ।

ତତ୍ପରେ ସେ ତିନିଗୋଟି ବାଣରେ ବାସୁଦେବଙ୍କୁ ବିଦ୍ଧ କରି
ଛଅଗୋଟି ନାରାଚଦ୍ୱାରା ଅର୍ଜ୍ଜୁନଙ୍କୁ, ଆଠଗୋଟି ବାଣରେ ତାହାଙ୍କର ଅଶ୍ୱ-
ଚତୁଷ୍ଟୟକୁ ଓ ଗୋଟିଏ ବାଣରେ ତାହାଙ୍କର ଧ୍ୱଜକୁ ବିଦ୍ଧ କଲେ । ସେହି
ସମୟରେ କିରୀଟୀ ଜୟଦ୍ରଥଙ୍କ ନିକ୍ଷିପ୍ତ ବାଣଜାଲକୁ ନିରାକୃତ କରି ଦୁଇ-
ଗୋଟି ଶରଦ୍ୱାରା ତାହାଙ୍କର ସାରଥିର ମସ୍ତକକୁ ଓ ସମଲଙ୍କୃତ ଧ୍ୱଜକୁ
ଯୁଗପତ୍ ଛେଦନ କଲେ । ୫୯ । ସିନ୍ଧୁରାଜଙ୍କର ଅଗ୍ନିଶିଖୋପମ ବରାହ-
ଲାଞ୍ଛିତ ଧ୍ୱଜ ଅର୍ଜ୍ଜୁନଙ୍କର ଶରାଘାତରେ ବିଶୀର୍ଣ୍ଣ ହୋଇ ଭୂତଳରେ ନିପତିତ
ହେଲା । ୬୦ ।

ଏହି ସମୟରେ ବାସୁଦେବ ଦିବାକରଙ୍କୁ ସତ୍ୱର ଅସ୍ତାଚଳଗାମୀ
ହେବାର ଦେଖି ବ୍ୟଗ୍ର ହୋଇ ଅର୍ଜ୍ଜୁନଙ୍କୁ କହିଲେ । ୬୧ । ହେ ମହାବାହୁ
ପାର୍ଥ ! ଦେଖ, ସିନ୍ଧୁରାଜ ଜୟଦ୍ରଥ ଜୀବନାକାଂକ୍ଷୀ ହୋଇ ଭୟରେ
ଛଅଜଣ ମହାରଥୀ ବୀରମାନଙ୍କର ମଧ୍ୟସ୍ଥଳରେ ଅବସ୍ଥାନ କରୁଅଛି । ୬୨ ।

ତୁମ୍ଭେ ସେହି ଛଅଜଣ ରଥିଙ୍କୁ ପରାଜିତ ନ କଲେ କଦାପି ସିନ୍ଧୁରାଜଙ୍କର ବିନାଶରେ ସମର୍ଥ ହେବ ନାହିଁ । ଅତଏବ ଅନୁରୋଧ ତ୍ୟାଗକରି ସର୍ବତୋ-ଭାବରେ ଯତ୍ନ କର । ୭୩ । ଆମ୍ଭେ ମଧ୍ୟ ସୂର୍ଯ୍ୟଙ୍କ ଆଚ୍ଛାଦନ ନିମିତ୍ତ ଯୋଗ ବିଧାନ କରୁଁ । ତାହାହେଲେ ସିନ୍ଧୁରାଜ ସୈନ୍ୟମଧ୍ୟରୁ ପୃଥକ୍ ହୋଇ ପ୍ରକାଶ୍ୟଭାବରେ ଏକାକୀ ସୂର୍ଯ୍ୟାସ୍ତପ୍ରତି ଦୃଷ୍ଟିପାତ କରୁଥିବ । ୭୪ । ସେହି ଦୁରାତ୍ମର ସୂର୍ଯ୍ୟାସ୍ତ ହେଲେ ତୁମ୍ଭେ ବିନଷ୍ଟ ହେବ, ଏହା ବିବେଚନା କରି ହର୍ଷସହକାରେ ଆଉ ଜୀବନ ରକ୍ଷାଭିଳାଷରେ କଦାଚ ଆତ୍ମଗୋପନ କରିବ ନାହିଁ । ୭୫ । ତୁମ୍ଭେ ସେହି ସମୟରେ ସେହି ଅବକାଶ ମଧ୍ୟରେ ତାହାପ୍ରତି ଅସ୍ତ୍ର ପ୍ରହାର କରିବ । ଦିବାକର ଅସ୍ତମିତ ହୋଇଅଛନ୍ତି ବୋଲି ମନେକରି ତୁମ୍ଭେ କଦାଚ କାଳବିଳମ୍ବ କରିବ ନାହିଁ । ୭୬ ।

ବୀଭତ୍ସୁ କେଶବଙ୍କ ବାକ୍ୟ ଶ୍ରବଣ କରି ସେହିପ୍ରକାର କରିବେ ବୋଲି ଅଙ୍ଗୀକାର କଲେ । ଅନନ୍ତର ଯୋଗୀଶ୍ୱର ମହାଯୋଗୀ ବିତାପ-ହାରୀ ଭଗବାନ୍ ବାସୁଦେବ ସୂର୍ଯ୍ୟଙ୍କ ଆଚ୍ଛାଦନ ନିମିତ୍ତ ଯୋଗପ୍ରଭାବରେ ଅନ୍ଧକାର ସୃଷ୍ଟି କଲେ । ହେ ମହାରାଜ ! କୃଷ୍ଣ ସେହିପ୍ରକାର ଅନ୍ଧକାର ସୃଷ୍ଟି କରନ୍ତେ କୌରବଗଣ ଦିବାକର ଅସ୍ତାଚଳକୁ ଗମନ କରିଅଛନ୍ତି, ଏବେ ଅର୍ଜୁନ ବିନଷ୍ଟ ହେବ, ଏହିପରି ମନେକରି ମହା ହର୍ଷଯୁକ୍ତ ହେଲେ । ସେମାନେ ଓ ସ୍ୱୟଂ ଜୟଦ୍ରଥ ମଧ୍ୟ ପ୍ରହୃଷ୍ଟ ହୋଇ ଉନ୍ନତ ବଦନରେ ସୂର୍ଯ୍ୟଙ୍କ ପ୍ରତି ଦୃଷ୍ଟିପାତ କଲେ । ସିନ୍ଧୁରାଜ ସେହିପରି ସୂର୍ଯ୍ୟଙ୍କୁ ନିରୀକ୍ଷଣ କରନ୍ତେ ବାସୁଦେବ ପୁନର୍ବାର ଅର୍ଜୁନଙ୍କୁ କହିଲେ, ହେ ପାର୍ଥ ! ଦେଖ, ଜୟଦ୍ରଥ ତୁମ୍ଭଠାରେ ନିର୍ଭୟ ହୋଇ ସୂର୍ଯ୍ୟଙ୍କ ପ୍ରତି ଦୃଷ୍ଟିପାତ କରୁଅଛି । ହେ ମହାବାହୋ ! ଏହି ଦୁରାତ୍ମାର ପ୍ରକୃତ ବଧର କାଳ ଉପସ୍ଥିତ ହୋଇଅଛି । ଅତଏବ ତୁମ୍ଭେ ଅବିଳମ୍ବେ ତାହାର ମସ୍ତକ ଛେଦନ କରି ଆପଣାର ପ୍ରତିଜ୍ଞା ସଫଳ କର ।

ପ୍ରତାପବାନ୍ ପାଣ୍ଡୁନନ୍ଦନ ଧନଞ୍ଜୟ ବାସୁଦେବଙ୍କର ଏହିପରି ଆଦେଶ ପ୍ରାପ୍ତ ହୋଇ ଅଗ୍ନି ଓ ସୂର୍ଯ୍ୟରଶ୍ମି ସନ୍ନିଭ ଶରସମୂହଦ୍ୱାରା ଆପଣଙ୍କ ପକ୍ଷୀୟ ସୈନ୍ୟମାନଙ୍କ ବିନାଶ କରିବାରେ ପ୍ରବୃତ୍ତ ହେଲେ । ସେ କୃପା-ଚାର୍ଯ୍ୟଙ୍କୁ ବିଂଶତି ବାଣରେ ଓ କର୍ଣ୍ଣଙ୍କୁ ପଞ୍ଚାଶତ୍ ଶରରେ ବିଦ୍ଧ କରି ଶଲ୍ୟ

ଓ ଦୁର୍ଯ୍ୟୋଧନ ପ୍ରତ୍ୟେକଙ୍କୁ ଛଅ ଛଅଗୋଟି ଶରରେ ତାଡ଼ିତ କଲେ । ତତ୍ପରେ ବୃଷସେନଙ୍କୁ ଆଠଗୋଟି ଶରରେ, ଜୟଦ୍ରଥଙ୍କୁ ଷଷ୍ଟିଶରରେ ଓ ଆପଣଙ୍କପକ୍ଷୀୟ ସୈନ୍ୟଙ୍କୁ ଅସଂଖ୍ୟକ ଶରରେ ଗାଢ଼ତର ବିଦ୍ଧ କରି ଜୟଦ୍ରଥଙ୍କ ପ୍ରତି ଧାବିତ ହେଲେ ।୭୬। ହେ ମହାରାଜ ! ଆପଣଙ୍କ ପକ୍ଷୀୟ ଯେଉଁ ସମସ୍ତ ଯୋଦ୍ଧା ଜୟଦ୍ରଥଙ୍କ ରକ୍ଷାର୍ଥ ସେଠାରେ ଉପସ୍ଥିତ ଥିଲେ ସେମାନେ ଅର୍ଜ୍ଜୁନଙ୍କୁ ଲେଲିହାନ ଅଗ୍ନିସଦୃଶ ସମୀପରେ ଅବଲୋକନ କରି ଅତିଶୟ ସଂଶୟ ପ୍ରାପ୍ତ ହେଲେ । ୭୭ । ସେମାନେ ଜୟୈଷୀ ହୋଇ ଅର୍ଜ୍ଜୁନଙ୍କ ପ୍ରତି ନିରନ୍ତର ଶରଧାରା ବର୍ଷଣ କଲେ । ୭୮ ।

ସମରରେ ଅପରାଜେୟ ପୁରୁଷବ୍ୟାଘ୍ର କୁନ୍ତୀନନ୍ଦନ କୌରବପକ୍ଷୀୟ ଯୋଦ୍ଧାମାନଙ୍କର ଅନବରତନିକ୍ଷିପ୍ତ ଶରଜାଳରେ ସମାଚ୍ଛନ୍ନ ହୋଇ ଏପରି କ୍ରୋଧାବିଷ୍ଟ ହେଲେ ଯେ, ସେ କୌରବସୈନ୍ୟଙ୍କ କ୍ଷୟାଭିଳାଷରେ ମୁହୂର୍ତ୍ତକ ମଧ୍ୟରେ ରଣସ୍ଥଳକୁ କେବଳ ବାଣମୟ କଲେ । ୮୦ । ଯୋଦ୍ଧାମାନେ ମହାବୀର ପାର୍ଥଙ୍କ କର୍ତ୍ତୃକ ଶରାହତ ହୋଇ ଜୟଦ୍ରଥଙ୍କୁ ପରିତ୍ୟାଗ କଲେ । ସେମାନେ ସେ ସମୟରେ ଏପରି ଭୀତ ହେଲେ ଯେ, ଦୁଇଜଣ ହୋଇ ଗମନ କଲେ ନାହିଁ । ୮୧ । ସେହି ସ୍ଥଳରେ ଆମ୍ଭେମାନେ ମହାବୀର ମହାଯଶା କିରୀଟୀ ଧନଞ୍ଜୟଙ୍କୁ ଯେପରି ଆଶ୍ଚର୍ଯ୍ୟ ପରାକ୍ରମ ପ୍ରକାଶ କରିବାର ଦେଖିଲୁଁ ତାହା କଦାପି ହୋଇ ନାହିଁ କି ହେବ ନାହିଁ । ସେ ଗଜସହିତ ଗଜାରୋହୀମାନଙ୍କୁ, ଅଶ୍ୱସହିତ ଅଶ୍ୱାରୋହୀମାନଙ୍କୁ, ସାରଥି ସହ ରଥିମାନଙ୍କୁ ପଶୁକୁଳ ସଂହାରକ ରୁଦ୍ରସଦୃଶ ବିନାଶ କଲେ । ୮୩ ।

ହେ ମହାରାଜ ! ସେହି ସମୟରେ ସେହି ସମରାଙ୍ଗଣରେ ତୁରଙ୍ଗ, ମାତଙ୍ଗ ବା ମନୁଷ୍ୟ ଏପରି କେହି ନଥିଲେ ଯେ କି ପାର୍ଥଶରରେ ଆହତ ହୋଇ ନାହାନ୍ତି ।୮୪। ସେହି ସ୍ଥାନରେ ଉଡ୍ଡୀନ ଧୂଳିପଟଳ ଓ ଅନ୍ଧକାର ହେତୁ ଯୋଦ୍ଧାମାନଙ୍କର ଚକ୍ଷୁ କଳୁଷିତ ହେଲା ଓ ସେମାନେ ହତଚେତା ହୋଇ ପରସ୍ପରଙ୍କୁ ଚିହ୍ନି ପାରିଲେ ନାହିଁ । ସୈନିକମାନେ ପାର୍ଥପ୍ରେରିତ ଶରସମୂହଦ୍ୱାରା ଭିନ୍ନମର୍ମା, ଭ୍ରାନ୍ତ, ସ୍ଖଳିତ, ପତିତ, ମ୍ଳାନ ଓ ଅବସନ୍ନ ହେଲେ । ୮୬ । ପ୍ରଳୟକାଳ ସଦୃଶ ଅତି ଭୀଷଣ, ନିଷ୍ଠୁରତର ସେହି ସୁଦୁସ୍ତର ସଂଗ୍ରାମ ଉପସ୍ଥିତ ସମୟରେ ବାୟୁବେଗ ବଶତଃ ରଣଭୂମିର

ଚତୁର୍ଦ୍ଦିଗ ଶୋଣିତସିକ୍ତ ହେବାରୁ ତତ୍ରତ୍ୟ ଧୂଳିସମୂହ ପ୍ରଶାନ୍ତ ହେଲା । ରଥଚକ୍ରସମୂହ ନାଭିଦେଶ ପର୍ଯ୍ୟନ୍ତ ଶୋଣିତରେ ନିମଗ୍ନ ହେଲା । ଆରୋହୀମାନେ ନିହତ ହେବାରୁ ସହସ୍ର ସହସ୍ର ମାତଙ୍ଗଗଣ ବିଦୀର୍ଣ୍ଣକଳେବର ହୋଇ ସ୍ୱପକ୍ଷ ସୈନ୍ୟମାନଙ୍କୁ ବିମର୍ଦ୍ଦନପୂର୍ବକ ଆର୍ତ୍ତନାଦ କରୁ କରୁ ବେଗରେ ରଥାଙ୍ଗଣର ଚତୁର୍ଦ୍ଦିଗକୁ ଧାବମାନ ହେଲେ । ୯୦ । ସେହିପରି ହତାରୋହୀ ଅଶ୍ୱମାନେ ଓ ପଦାତିଗଣ ଶର-ନିପୀଡ଼ିତ ହୋଇ ଭୟରେ ପଳାୟନ କଲେ । ୯୧ ।

ଏହିପରି ସୈନ୍ୟମାନେ କେହି ରୁଧିର କ୍ଷରଣ କରୁ କରୁ କେହି ବା ମୁକ୍ତକେଶ ବା ବର୍ମ୍ମଶୂନ୍ୟ ହୋଇ ତ୍ରାସରେ ରଣଭୂମି ପରିତ୍ୟାଗପୂର୍ବକ ଚତୁର୍ଦ୍ଦିଗରେ ଧାବମାନ ହେଲେ । ୯୨ । କେହି ବା ଊରୁଦେଶ ଧାରଣ ପୂର୍ବକ ସେହି ସ୍ଥାନରେ ପତିତ ହେଲେ । ଅପର କେତେକ ଯୋଦ୍ଧା ନିହତ ହସ୍ତିରାଶି ମଧ୍ୟରେ ବିଲୀନ ହୋଇ ପ୍ରାଣ ରକ୍ଷା କଲେ । ୯୩ ।

ହେ ମହାରାଜ ! ମହାବୀର ଧନଞ୍ଜୟ ଏହିପରି ଆପଣଙ୍କପକ୍ଷୀୟ ଚତୁରଙ୍ଗିଣୀ ସେନାକୁ ବିଦ୍ରାବିତ କରି ଘୋରତର ଶାୟକଦ୍ୱାରା ସିନ୍ଧୁରାଜଙ୍କ ରଥିବର୍ଗଙ୍କୁ ପ୍ରହାର କଲେ । ସେ କର୍ଣ୍ଣ, ଅଶ୍ୱତ୍ଥାମା, କୃପାଚାର୍ଯ୍ୟ, ଶଲ୍ୟ, ବୃଷସେନ ଓ ଦୁର୍ଯ୍ୟୋଧନ ପ୍ରଭୃତି ବୀରମାନଙ୍କୁ ତୀବ୍ରତର ଶରଜାଲରେ ସମାଚ୍ଛନ୍ନ କଲେ । ୯୫ । ପାଣ୍ଡୁପୁତ୍ର କିରୀଟୀ ସମରାଙ୍ଗଣରେ କେତେବେଳେ ଧନୁ ଆସ୍ଫାଳନ, କେତେବେଳେ ବା ଶରଗ୍ରହଣ, କେତେବେଳେ ବା ଶରସନ୍ଧାନ ଓ କେତେବେଳେ ବା ଶରବିମୋଚନ କରୁଥିଲେ ତାହା ତାହାଙ୍କ ହସ୍ତଲାଘବପ୍ରଯୁକ୍ତ କିଛିମାତ୍ର ଦୃଷ୍ଟିଗୋଚର ହେଲାନାହିଁ । ୯୬ । ସେହି ବୀର ବାରିଧାରା ସଦୃଶ ନିରନ୍ତର ଶରଧାରା ବର୍ଷଣ କରନ୍ତେ ଚତୁର୍ଦ୍ଦିଗରେ ସମାକୀର୍ଣ୍ଣ ଶରରାଶି ଓ ତାହାଙ୍କର ମଣ୍ଡଳୀକୃତ କାର୍ମ୍ମୁକମାତ୍ର ଦୃଷ୍ଟ ହେଲା । ୯୭ । ସେ କର୍ଣ୍ଣ ଓ ବୃଷସେନଙ୍କ ଶରାସନ ଛେଦନ କରି ଗୋଟିଏ ଭଲ୍ଲାସ୍ତ୍ରଦ୍ୱାରା ଶଲ୍ୟଙ୍କ ସାରଥିକୁ ରଥନୀଡ଼କୁ ନିପାତିତ କଲେ । ତତ୍ପରେ କୃପାଚାର୍ଯ୍ୟ ଓ ଅଶ୍ୱତ୍ଥାମାଙ୍କୁ ଶରନିକରରେ ଗାଢ଼ତର ବିଦ୍ଧ କଲେ । ହେ ମହାରାଜ ! ବିଜୟୀଶ୍ରେଷ୍ଠ ଧନଞ୍ଜୟ ଏହିପରି ଆପଣଙ୍କପକ୍ଷୀୟ ମହାରଥମାନଙ୍କୁ ବ୍ୟାକୁଳିତ କରି ଇନ୍ଦ୍ରାଶନିତୁଲ୍ୟ ଅତି ଘୋରସହ

ଦିବ୍ୟମନ୍ତ୍ରରେ ଅଭିମନ୍ତ୍ରିତ, ନିପୂତ ଗନ୍ଧମାଲ୍ୟାଦିଦ୍ୱାରା ଅର୍ଚ୍ଚିତ, ଅନଳସନ୍ନିଭ ଅତି ଭୟଙ୍କର ଗୋଟିଏ ବାଣ ତୂଣରୁ ଉଦ୍ଧୃତ କଲେ । ସେହି ବାଣ ବିଧି-ପୂର୍ବକ ବଜ୍ରାସ୍ତ୍ରସହିତ ସଂଯୋଗ କରି ସତ୍ୱର ଗାଣ୍ଡୀବ ଶରାସନରେ ଯୋଜନା କଲେ । ୧୦୨ । ହେ ଭରତଶ୍ରେଷ୍ଠ ! କିରୀଟୀ ଅଗ୍ନିତୁଲ୍ୟ ତେଜସ୍ୱୀ ସେହି ଶରକୁ ଶରାସନରେ ସନ୍ଧାନ କରନ୍ତେ ଅନ୍ତରୀକ୍ଷସ୍ଥ ପ୍ରାଣି-ମାନଙ୍କର ମହାଶବ୍ଦ ହେଲା । ୧୦୩ ।

ବାସୁଦେବ ତ୍ୱରାନ୍ୱିତ ହୋଇ ଅର୍ଜ୍ଜୁନଙ୍କୁ କହିଲେ, ହେ ଧନଞ୍ଜୟ, ଦେଖ, ପ୍ରଭାକର ଅସ୍ତାଚଳକୁ ଗମନ କରିବାକୁ ଉପକ୍ରମ କରୁଅଛନ୍ତି । ତୁମ୍ଭେ ଏହି ସମୟରେ ଜୟଦ୍ରଥର ମସ୍ତକକୁ ଛେଦନ କର । କିନ୍ତୁ ଯେପରି ତାହାକୁ ବଧକରିବାକୁ ହେବ ତାହା ଆମ୍ଭଠାରୁ ଶ୍ରବଣ କର । ୧୦୫ । ଜୟଦ୍ରଥଙ୍କ ପିତା ଲୋକବିଖ୍ୟାତ ସିନ୍ଧୁଦେଶୀୟ ରାଜା ବୃଦ୍ଧକ୍ଷତ୍ର ଯେଉଁ-ବେଳେ ସେହି ଶତ୍ରୁଘାତି ଜୟଦ୍ରଥକୁ ପୁତ୍ରରୂପରେ ଲାଭ କଲେ, ସେହି ସମୟରେ ତାହାଙ୍କ ପ୍ରତି ମେଘଗମ୍ଭୀର ଦୁନ୍ଦୁଭି ନିଃସ୍ୱନ ସଦୃଶ ଏହିପରି ଅଲକ୍ଷିତ ଆକାଶବାଣୀ ହେଲା । ୧୦୭ । ହେ ମନୁଷ୍ୟେନ୍ଦ୍ର ସିନ୍ଧୁରାଜ ! ତୁମ୍ଭର ଏହି ପୁତ୍ର କୁଳଶୀଳ ଓ ଇନ୍ଦ୍ରିୟ ଦମନାଦି ଗୁଣଦ୍ୱାରା ଚନ୍ଦ୍ର ଓ ସୂର୍ଯ୍ୟ-ବଂଶୀୟ ରାଜାମାନଙ୍କର ଅନୁରୂପ ହେବେ । ୧୦[illegible] । ବୀରମାନେ ଏହାଙ୍କୁ ସମାଦର କରିବେ । କ୍ଷତ୍ରିୟମାନଙ୍କ ମଧ୍ୟରେ ଏ ଜଣେ ପ୍ରଧାନ ବୀର ବୋଲି ପରିଗଣିତ ହେବେ । ପରନ୍ତୁ ସମୟାନ୍ତରେ ଶତ୍ରୁକୁଳସହ ସମରରେ ଏ ପ୍ରବୃତ୍ତ ଥିବାବେଳେ କୌଣସି ପ୍ରସିଦ୍ଧ କ୍ଷତ୍ରିୟ ଜଣେ କ୍ରୋଧାବିଷ୍ଟ ହୋଇ ରଣସ୍ଥଳରେ ଏହାଙ୍କର ଶିରଚ୍ଛେଦନ କରିବେ । ଶତ୍ରୁଦମନକାରୀ ସିନ୍ଧୁରାଜ ବୃଦ୍ଧକ୍ଷତ୍ର ଏହିପରି ଆକାଶବାଣୀ ଶ୍ରବଣ କରି ବହୁକ୍ଷଣ ଚିନ୍ତାପୂର୍ବକ ପୁତ୍ର ସ୍ନେହପ୍ରଯୁକ୍ତ ଜ୍ଞାତିମାନଙ୍କର ସମକ୍ଷରେ କହିଲେ, ରଣସ୍ଥଳରେ ଯେଉଁ ବ୍ୟକ୍ତି ଆମ୍ଭର ଏହି ମହତ୍ ରାଜ୍ୟଧୁରନ୍ଧର ପୁତ୍ରର ଶିରଚ୍ଛେଦନ କରି ଭୂତଳରେ ପାତିତ କରିବେ ତାହାଙ୍କ ମସ୍ତକ ନିଶ୍ଚୟ ଶତଧା ବିଦୀର୍ଣ୍ଣ ହୋଇ ଭୂତଳରେ ପତିତ ହେବ । ୧୧୨ । ଏହା କହି ନରପତି ବୃଦ୍ଧକ୍ଷତ୍ର ଜୟଦ୍ରଥଙ୍କୁ ରାଜ୍ୟ ଭାର ଅର୍ପଣ କରି ଅରଣ୍ୟକୁ ଗମନପୂର୍ବକ ଉଗ୍ରତର ତପସ୍ୟାରେ ପ୍ରବୃତ୍ତ ହେଲେ । ୧୧୩ ।

ସେହି ତେଜସ୍ୱୀ ରାଜା ଏହି ସାମନ୍ତପଞ୍ଚକର ବହିର୍ଭାଗରେ ଅତି ଦୁଷ୍କର ତପଶ୍ଚରଣ କରୁଅଛନ୍ତି । ହେ ଶତ୍ରୁତାପନ କପିକେତନ ଧନଞ୍ଜୟ ! ତୁମ୍ଭେ ବାୟୁସୁତ ଭୀମଙ୍କର ଅନୁଜ, ଅତଏବ ତୁମ୍ଭେ ଅଦ୍ୟ ସମରାଙ୍ଗଣରେ ଏହି ଅଦ୍ଭୁତ କାର୍ଯ୍ୟ ପ୍ରଦର୍ଶନ କରଅ ଯେ ଘୋରତର ଦିବ୍ୟାସ୍ତ୍ର ପ୍ରଭାବରେ ଜୟଦ୍ରଥର କୁଣ୍ଡଳାଳଂକୃତ ମସ୍ତକକୁ ଛେଦନ କରି ଅବିଳମ୍ବେ ସେହି ତପୋନିରତ ତାହାଙ୍କର ପିତା ବୃଦ୍ଧକ୍ଷତ୍ରଙ୍କ କୋଡ଼ରେ ସେହି ମସ୍ତକକୁ ନିକ୍ଷେପ କର । ୧୧୬ । ଯଦି ତୁମ୍ଭେ ସ୍ୱୟଂ ତାହାର ମସ୍ତକକୁ ଭୂତଳରେ ପାତିତ କରିବ ତାହାହେଲେ ତୁମ୍ଭର ମସ୍ତକ ନିଃସନ୍ଦେହରେ ଶତଧା ବିଦୀର୍ଣ୍ଣ ହୋଇ ଭୂତଳରେ ପତିତ ହେବ । ୧୧୭ । ଅତଏବ ତୁମ୍ଭେ ଦିବ୍ୟାସ୍ତ୍ରଦ୍ୱାରା ଏପରି ଅଲକ୍ଷିତ ଭାବରେ ତାହାର ମସ୍ତକକୁ ନେଇ ତାହାର ପିତାଙ୍କର ଅଙ୍କରେ ପାତିତ କରିବ ଯେପରି ସେହି ତପୋନିରତ ରାଜା ବୃଦ୍ଧକ୍ଷତ୍ର କୌଣସିରୂପେ ଅବଗତ ହୋଇ ପାରିବେ ନାହିଁ । ୧୧୮ । ହେ କୁରୁକୁଳ-ଶ୍ରେଷ୍ଠ ! ଏହି ତ୍ରିଲୋକ ମଧ୍ୟରେ କୌଣସି କାର୍ଯ୍ୟ ତୁମ୍ଭର ଅସାଧ୍ୟ ନୁହେ । କାରଣ ତୁମ୍ଭେ ଇନ୍ଦ୍ରଙ୍କ ପୁତ୍ର ଅଟ । ୧୧୯ ।

କିରୀଟୀ କେଶବଙ୍କର ଉପଦେଶ ଶ୍ରବଣ କରି ସୃକ୍କଣୀ ଲେହନ ପୂର୍ବକ ଜୟଦ୍ରଥ ବଧାର୍ଥ ଇନ୍ଦ୍ରାଶନିତୁଲ୍ୟ ଅତୀବ ଭାରସହ ନିତ୍ୟ ଗନ୍ଧମାଲ୍ୟାଦି ଦ୍ୱାରା ଅର୍ଚ୍ଚିତ ଦିବ୍ୟମନ୍ତ୍ରରେ ଅଭିମନ୍ତ୍ରିତ ବେଗଗାମୀ ଗୋଟିଏ ଶର ଗ୍ରହଣ କରି ସତ୍ୱର ଜୟଦ୍ରଥ ପ୍ରତି ବିମୋଚନ କଲେ । ୧୨୧ । ଅର୍ଜ୍ଜୁନଭୁଜନିର୍ମୁକ୍ତ ସେହି ଶର ବେଗଗାମୀ ଶ୍ୟେନପକ୍ଷୀସଦୃଶ ଜୟଦ୍ରଥର ଶିରଶ୍ଛେଦନ କରି ଆକାଶକୁ ଉତ୍ପତିତ ହେଲା । ୧୨୨ । ଶତ୍ରୁମାନଙ୍କର ଶୋକୋଦ୍ଦୀପନ ଓ ସୁହୃଦ୍‌ମାନଙ୍କର ହର୍ଷବର୍ଦ୍ଧନ ନିମିତ୍ତ ଛିନ୍ନ ମସ୍ତକ ଶରସମୂହଦ୍ୱାରା ଆକାଶକୁ ଉତ୍ଥାପିତ ହେଲା । ୧୨୩ । ସେହି ସମୟ ମଧ୍ୟରେ ମହାବୀର ଅର୍ଜ୍ଜୁନ ଅଜସ୍ର ଶରବୃଷ୍ଟି କରି କର୍ଣ୍ଣ ପ୍ରଭୃତି ଛଅଜଣ ମହାରଥିଙ୍କ ସହିତ ଯୁଦ୍ଧ କଲେ । ୧୨୪ ।

ତଦନନ୍ତର ଆମ୍ଭେମାନେ ସେହିସ୍ଥଳରେ ଗୋଟିଏ ମହା ଆଶ୍ଚର୍ଯ୍ୟ ବିଷୟ ସନ୍ଦର୍ଶନ କଲୁଁ ଯେ ସେହି ଅର୍ଜ୍ଜୁନପ୍ରେରିତ ଦିବ୍ୟାସ୍ତ୍ର ଜୟଦ୍ରଥର ଛିନ୍ନ ମସ୍ତକକୁ ନେଇ ସାମନ୍ତପଞ୍ଚକର ବହିର୍ଭାଗରେ ଯାଇ ଉପସ୍ଥିତ ହେଲା ।

ହେ ମହାରାଜ ! ଆପଣଙ୍କ ସମ୍ବନ୍ଧୀ ତେଜସ୍ୱୀ ନରପତି ବୃଦ୍ଧକ୍ଷତ୍ର ସେହି ସ୍ଥାନରେ ସନ୍ଧ୍ୟା ଉପାସନା କରୁଥିଲେ । ଜୟଦ୍ରଥଙ୍କର କୃଷ୍ଣବର୍ଣ୍ଣ-କେଶସମନ୍ୱିତ ସୁବୃତ୍ତ କୁଣ୍ଡଳାଳଂକୃତ ମସ୍ତକ କିରୀଟୀଙ୍କ ଦିବ୍ୟାସ୍ତ୍ର ପ୍ରଭାବରେ ଅଲକ୍ଷିତରୂପେ ତାହାଙ୍କ ଉତ୍ସଙ୍ଗରେ ନିପତିତ ହେଲା । ୧୨୮ । ସେ ଭୀତ ହୋଇ ସହସା ଉତ୍ଥାନ କଲାବେଳେ ଅଙ୍କସ୍ଥିତ ମସ୍ତକ ଭୂତଳରେ ନିପତିତ ହେଲା । ୧୨୯ । ଜୟଦ୍ରଥଙ୍କ ମସ୍ତକ ଭୂତଳସ୍ଥ ହୁଅନ୍ତେ ବୃଦ୍ଧ-କ୍ଷତ୍ରଙ୍କ ମସ୍ତକ ମଧ୍ୟ ଶତଧା ବିଦୀର୍ଣ୍ଣ ହୋଇ ଭୂତଳରେ ପତିତ ହେଲା ।

ତଦନନ୍ତର ସୈନ୍ୟମାନେ ଅତିଶୟ ବିସ୍ମିତ ହୋଇ ମହାରଥି କିରୀଟୀଙ୍କ ଓ ବାସୁଦେବଙ୍କୁ ବିଶେଷ ପ୍ରଶଂସା କଲେ । ୧୩୧ । ଏହିପରି ସିନ୍ଧୁରାଜ ଜୟଦ୍ରଥ କିରୀଟୀଙ୍କ କର୍ତ୍ତୃକ ନିହତ ହୁଅନ୍ତେ ବାସୁଦେବ ଅନ୍ଧ-କାରକୁ ପ୍ରତିସଂହାର କଲେ । ୧୩୨ । ତେତେବେଳେ ଆପଣଙ୍କ ପୁତ୍ରମାନେ ଓ ସେମାନଙ୍କ ଅନୁଗଗଣ ସମ୍ପୂର୍ଣ୍ଣରୂପେ ଜ୍ଞାତ ହେଲେ ଯେ, ଏହା କେବଳ ବାସୁଦେବଙ୍କ ସୃଷ୍ଟ ମାୟା । ୧୩୩ ।

ହେ ମହାରାଜ ! ଆପଣଙ୍କ ଜାମାତା ସିନ୍ଧୁରାଜ ଅଷ୍ଟ ଅକ୍ଷୌହିଣୀ ସେନା ବିନଷ୍ଟ କରି ପରିଶେଷରେ ନିଜେ ଅମିତତେଜା ପାର୍ଥଙ୍କ ଶରରେ ନିହତ ହେଲେ । ୧୩୪ । ଆପଣଙ୍କ ପୁତ୍ରମାନେ ତାହାଙ୍କୁ ନିହତ ହେବାର ଅବଲୋକନ କରି ଦୁଃଖରେ ଅଶ୍ରୁ ବିମୋଚନ କଲେ ଓ ଜୟରେ ନିରାଶ ହେଲେ । ୧୩୫ । ବାସୁଦେବ ଜୟଦ୍ରଥଙ୍କୁ ପାର୍ଥଶରରେ ବିନଷ୍ଟ ହେବାର ଦେଖି ଆନନ୍ଦସହ ପାଞ୍ଚଜନ୍ୟ ଶଙ୍ଖ ନିନାଦ କଲେ । ୧୩୬ । ତତ୍ପରେ ଶତ୍ରୁତାପନ ମହାବାହୁ ଅର୍ଜ୍ଜୁନ, ଭୀମ, ବୃଷ୍ଣିସିଂହ ସାତ୍ୟକି, ପରାକ୍ରମଶାଳୀ ଯୁଧାମନ୍ୟୁ ଓ ଉତ୍ତମୌଜା ଏମାନେ ପ୍ରତ୍ୟେକେ ନିଜ ନିଜ ଶଙ୍ଖ ବାଦନ କଲେ । ୧୩୭ । ସେହି ତୁମୁଳ ଶଙ୍ଖ ନିନାଦ ଶ୍ରବଣ କରି ଧର୍ମ୍ମରାଜ ଯୁଧିଷ୍ଠିର ମହାତ୍ମା ଫାଲ୍‌ଗୁନଙ୍କ କର୍ତ୍ତୃକ ଜୟଦ୍ରଥ ନିହତ ହୋଇଥିବାର ଜାଣି ବାଦିତ୍ର ଘୋଷଦ୍ୱାରା ସ୍ୱପକ୍ଷୀୟ ଯୋଦ୍ଧାମାନଙ୍କୁ ହର୍ଷିତ କଲେ ଓ ଯୁଦ୍ଧାଭିଳାଷରେ ଭରଦ୍ୱାଜନନ୍ଦନ ଦ୍ରୋଣଙ୍କର ସମ୍ମୁଖୀନ ହେଲେ ।୧୩୮।

ହେ ମହାରାଜ ! ତଦନନ୍ତର ସେହି ସୂର୍ଯ୍ୟାସ୍ତକାଳରେ ସୋମକ-ଗଣଙ୍କ ସହିତ ଦ୍ରୋଣାଚାର୍ଯ୍ୟଙ୍କର ଲୋମହର୍ଷଣ ସଂଗ୍ରାମ ଉପସ୍ଥିତ ହେଲା ।

ସିନ୍ଧୁରାଜ ନିହତ ହୁଅନ୍ତେ ସେହି ମହାରଥୀମାନେ ଦ୍ରୋଣଙ୍କ ସଂହାର ନିମିତ୍ତ ସର୍ବପ୍ରଯତ୍ନ ସହିତ ଯୁଦ୍ଧ କଲେ । ୧୪୧ । ସେହି ସମୟରେ ପାଣ୍ଡବ-ମାନେ ମଧ୍ୟ ଜୟଦ୍ରଥ ନିଧନ ହେତୁ ବିଜୟ ଲାଭରେ ଜୟୋନ୍ମତ୍ତ ହୋଇ ଦ୍ରୋଣଙ୍କ ସହିତ ସମରରେ ପ୍ରବୃତ୍ତ ହେଲେ । ୧୪୨ । ହେ ମହାରାଜ ! ଯେପରି ଦିବାକର ଉଦିତ ହୋଇ ଅନ୍ଧକାରକୁ ଧ୍ୱଂସ କରନ୍ତି ଓ ଦେବରାଜ ଶତକ୍ରତୁ ଯେପରି ଦାନବମାନଙ୍କୁ ଦଳନ କରିଥିଲେ ସେହିପରି କିରୀଟମାଳୀ ମହାବୀର ଧନଞ୍ଜୟ ଜୟଦ୍ରଥ ବଧବିଷୟକ ସ୍ୱୀୟ ପ୍ରତିଜ୍ଞା ପୂର୍ଣ୍ଣ କରି ଆପଣଙ୍କ ପକ୍ଷୀୟ ସୈନ୍ୟମାନଙ୍କୁ ଚତୁର୍ଦ୍ଦିଗରେ ଛିନ୍ନ ଭିନ୍ନ କରି ଶେଷରେ ପ୍ରଧାନ ପ୍ରଧାନ ରଥୀମାନଙ୍କ ସହିତ ଯୁଦ୍ଧ ଆରମ୍ଭ କଲେ । ୧୪୪ ।

---

# ୧୪୭ ଅଧ୍ୟାୟ

ଧୃତରାଷ୍ଟ୍ର ବୋଇଲେ—ହେ ସଞ୍ଜୟ ! ମହାବୀର ସିନ୍ଧୁରାଜ ଜୟଦ୍ରଥ ସବ୍ୟସାଚୀଙ୍କ କର୍ତ୍ତୃକ ବିନଷ୍ଟ ହୁଅନ୍ତେ କୌରବମାନେ କି କାର୍ଯ୍ୟ କଲେ ସେ ବିଷୟ କୀର୍ତ୍ତନ କର ।

ସଞ୍ଜୟ କହିଲେ—ହେ ମହାରାଜ ! ସିନ୍ଧୁରାଜ ପାର୍ଥଶରରେ ନିହତ ହେବାର ଦେଖି ଶରଦ୍ୱତନନ୍ଦନ କୃପ ଓ ତାହାଙ୍କର ଭାଗିନେୟ ଅଶ୍ୱତ୍ଥାମା ଅମର୍ଷବଶବର୍ତ୍ତୀ ହୋଇ ରଥାରୋହଣ ପୂର୍ବକ ମହତ୍ ଶରବୃଷ୍ଟି-ଦ୍ୱାରା ଅର୍ଜ୍ଜୁନଙ୍କୁ ସମାକୀର୍ଣ୍ଣ କଲେ । ୩ । ସେହି ଦୁଇ ରଥିଶ୍ରେଷ୍ଠ ଦୁଇଦିଗରୁ ରଥିସତ୍ତମ ପାର୍ଥଙ୍କ ପ୍ରତି ବାରିଧାରା ସଦୃଶ ନିରନ୍ତର ତୀକ୍ଷ୍ଣ ଶରଧାରା ବର୍ଷଣ କଲେ । ୪ । ରଥିପ୍ରବର ମହାବାହୁ କୁନ୍ତୀ-ପୁତ୍ର ଧନଞ୍ଜୟ ସେହି ଦୁଇ ମହାରଥିବିସୃଷ୍ଟ ଶରଦ୍ୱାରା ନିପୀଡ଼ିତ ହୋଇ ଅତିଶୟ କାତର ହେଲେ । ଗୁରୁପୁତ୍ର ଅଶ୍ୱତ୍ଥାମା ଓ ଗୁରୁକୃପାଚାର୍ଯ୍ୟଙ୍କର ସଂହାର ଅଭିଳାଷରେ ଆଚାର୍ଯ୍ୟଙ୍କ ସଦୃଶ ବିକ୍ରମ ପ୍ରକାଶ କଲେ । ୬ । ତହିଁରେ ସେ ସ୍ୱୀୟ ଅସ୍ତ୍ରବଳରେ ଅଶ୍ୱତ୍ଥାମା ଓ କୃପାଚାର୍ଯ୍ୟଙ୍କର ନିକ୍ଷିପ୍ତ ଶର-ଜାଲକୁ ନିରାକୃତ କରି ସେ ଦୁହିଁଙ୍କର ବିନାଶ ବାସନା କଲେ ନାହିଁ । କେବଳ ସେ ଦୁହିଁଙ୍କ ପ୍ରତି ମନ୍ଦବେଗରେ ବାଣ ନିକ୍ଷେପ କଲେ । ୭ ।

ସେହି ମନ୍ଦବେଗବିଶିଷ୍ଟ ବାଣସମସ୍ତ ମଧ୍ୟ କ୍ରମେ ବହୁଳ ସଂଖ୍ୟାରେ ପ୍ରେରିତ ହୋଇ ସେହି ଦୁଇ ମହାରଥିଙ୍କୁ ଅତିଶୟ ପୀଡ଼ିତ କଲେ । ଶରଦ୍‌ବତ-କୁମାର କୃପ ଶରାହତ ହୋଇ ଅବସନ୍ନ ହେଲେ ଓ ତତ୍‌କ୍ଷଣାତ୍ ରଥମାଡ଼ରେ ମୂର୍ଚ୍ଛିତ ହୋଇ ପତିତ ହେଲେ । ୯ । ତାହାଙ୍କ ସାରଥି ସ୍ୱୀୟ ପ୍ରଭୁ କୃପାଚାର୍ଯ୍ୟଙ୍କୁ ବିହ୍ୱଳ ଦେଖି ସେ ନିହତ ହୋଇଅଛନ୍ତି ବୋଲି ମନେକରି ସତ୍ୱର ସେ ସ୍ଥାନରୁ ରଥନେଇ ପ୍ରସ୍ଥାନ କଲେ । ୧୦ ।

ହେ ମହାରାଜ ! କୃପାଚାର୍ଯ୍ୟ ରଣାଙ୍ଗନରୁ ଅପସୃତ ହେବାର ଅବଲୋକନ କରି ଅଶ୍ୱତ୍ଥାମା ମଧ୍ୟ ଅର୍ଜ୍ଜୁନଙ୍କ ସମୀପରୁ ପଳାୟନ କଲେ । ୧୧ । ସେହି ସମୟରେ ମହାଧନୁର୍ଦ୍ଧର କୁନ୍ତୀ-ନନ୍ଦନ ଅର୍ଜ୍ଜୁନ ଶରଦ୍‌ବାନ୍ ଋଷିକୁମାର କୃପାଚାର୍ଯ୍ୟଙ୍କୁ ଶରପୀଡ଼ିତ ଓ ମୂର୍ଚ୍ଛିତ ଅବଲୋକନ କରି କପିଧ୍ୱଜ ରଥ ମଧ୍ୟରେ ବିଳାପ କଲେ । ଅଶ୍ରୁପୂର୍ଣ୍ଣ ନୟନରେ ଦୀନଭାବରେ କହିଲେ ଯେ, କୁଳାନ୍ତକାରୀ ମହାପାପୀ ଦୁରାତ୍ମା ଦୁର୍ଯ୍ୟୋଧନ ଜନ୍ମିବାମାତ୍ରେ ମହାପ୍ରାଜ୍ଞ ବିଦୁର ଭବିଷ୍ୟତ ବିଷୟ ଜାଣିପାରି ଧୃତରାଷ୍ଟ୍ରଙ୍କୁ କହିଥିଲେ । ହେ ମହାରାଜ ଧୃତରାଷ୍ଟ୍ର ! ଏହି କୁଳପାଂଶୁଳ କୁମାରକୁ ଏହିକ୍ଷଣି ବିନାଶ-କର, ତାହାହେଲେ ମଙ୍ଗଳ ହେବ । ନଚେତ୍ ଏହାଠାରୁ ଆମ୍ଭମାନଙ୍କର ଏହି ପ୍ରଧାନ କୁରୁବଂଶର ମହତ୍‌ଭୟ ଉପସ୍ଥିତ ହେବ । କିନ୍ତୁ ଅନ୍ଧରାଜ ତାହାଁରେ କର୍ଣ୍ଣପାତ ନ କରିବାରୁ ବର୍ତ୍ତମାନ ସେହି ସତ୍ୟବାଦୀ ବିଦୁରଙ୍କ ବାକ୍ୟ ସଫଳ ହେଲା ।

ଆମ୍ଭେ ସେହି ଦୁରାତ୍ମା ଦୁର୍ଯ୍ୟୋଧନ ନିମିତ୍ତ ଅଦ୍ୟ ଗୁରୁ କୃପାଚାର୍ଯ୍ୟଙ୍କୁ ଶରଶଯ୍ୟାରେ ଶୟନ ହେବାର ଦର୍ଶନ କଲୁଁ । କ୍ଷତ୍ରିୟ-ମାନଙ୍କର ଆଚାର, ବଳ ଓ ପୁରୁଷକାରକୁ ଧିକ୍, କାହିଁକି ନା ଏହି ସଂସାର ମଧ୍ୟରେ ମାଦୃଶ କେଉଁ ବ୍ୟକ୍ତି ବ୍ରାହ୍ମଣଦ୍ରୋହୀ ବା ଆଚାର୍ଯ୍ୟ ଦ୍ରୋହୀ ହୋଇଥାଏ ? ସେ ଋଷିକୁମାର ଆଚାର୍ଯ୍ୟ ବିଶେଷତଃ ଆମ୍ଭର ପିତାଙ୍କର ପରମସଖା ହେଲେହେଁ ଆମ୍ଭ ବାଣରେ ପୀଡ଼ିତ ହୋଇ ରଥମାଡ଼ରେ ଶୟନ କରୁଅଛନ୍ତି । ତାହାଙ୍କୁ ପୀଡ଼ିତ କରିବାର ଆମ୍ଭର ଇଚ୍ଛା ନ ଥିଲେହେଁ ଆମ୍ଭ ନିକ୍ଷିପ୍ତ ଶରନିକରରେ ପୀଡ଼ିତ ଓ ରଥମାଡ଼ରେ ଅବସନ୍ନ ହୋଇ ଆମ୍ଭ ଅନ୍ତଃକରଣକୁ ଅତିଶୟ ବ୍ୟଥିତ କରୁଅଛନ୍ତି । ଆମ୍ଭେ ପୁତ୍ରଶୋକରେ

ନିତାନ୍ତ ଅଭିଭୂତ ଓ ସେମାନଙ୍କ ନିକ୍ଷିପ୍ତ ଶରସମୂହଦ୍ୱାରା ନିପୀଡ଼ିତ ହୋଇ ଉନ୍ମତ୍ତବତ୍ ଅବିଶ୍ରାନ୍ତ ଚିତ୍ତରେ ତାହାଙ୍କପ୍ରତି ନିରନ୍ତର ଶରପ୍ରହାର କରୁଅଛୁଁ ।

ହେ କୃଷ୍ଣ ! ସେ ସ୍ୱୀୟ ରଥରେ ଅବସନ୍ନ ହୋଇ ଯେପରି କାତରଭାବରେ ଅବସ୍ଥାନ କରୁଅଛନ୍ତି, ତାହା ତୁମ୍ଭେ ଅବଲୋକନ କର । ସେ ଏହିପରି ଅବସ୍ଥାନ କରିବାରୁ ଅଭିମନ୍ୟୁ ବଧଜନିତ ଶୋକାପେକ୍ଷା ମଧ୍ୟ ଆମ୍ଭେ ଅଧିକତର ଶୋକରେ କାତର ହୋଇଅଛୁଁ । ଏହି ସଂସାର ମଧ୍ୟରେ ଯେଉଁ ନରଶ୍ରେଷ୍ଠମାନେ ଆଚାର୍ଯ୍ୟଙ୍କଠାରୁ କୃତବିଦ୍ୟ ହୋଇ ସେମାନଙ୍କର ଅଭିଳଷିତ ଦକ୍ଷିଣା ପ୍ରଦାନ କରନ୍ତି, ସେମାନେ ଦେବଭାବ ପ୍ରାପ୍ତ ହୁଅନ୍ତି । କିନ୍ତୁ ଯେଉଁ ପୁରୁଷାଧମ ସବୁ ଗୁରୁଙ୍କ ନିକଟରୁ ବିଦ୍ୟା-ଲାଭକରି ସେମାନଙ୍କୁ ବିନାଶ କରିବାରେ ପ୍ରବୃତ୍ତ ହୁଅନ୍ତି, ସେହି ଗୁରୁଘାତି ଦୁର୍ବୃତ୍ତଗଣ ଅବଶେଷରେ ପରମ ଯନ୍ତ୍ରଣାଳୟକୁ ଗମନ କରନ୍ତି । ଅତଏବ ଆମ୍ଭେ ଅଦ୍ୟ ଆଚାର୍ଯ୍ୟଙ୍କୁ ପ୍ରସନ୍ନ କରିବା ପରିବର୍ତ୍ତେ ଶରଦ୍ୱାରା ତାହାଙ୍କୁ ଅବସନ୍ନ କରି ନିଶ୍ଚୟ ନରକୋତ୍ପାଦନର ଅନୁଷ୍ଠାନ କଲୁଁ ।

ପୂର୍ବେ ଅସ୍ତ୍ରଶିକ୍ଷା ପ୍ରଦାନ କାଳରେ କୃପାଚାର୍ଯ୍ୟ ଆମ୍ଭଙ୍କୁ କହିଥିଲେ ଯେ, ହେ କୌରବ ! ତୁମ୍ଭେ କଦାଚ ଗୁରୁଙ୍କୁ ପ୍ରହାର କରିବ ନାହିଁ । କିନ୍ତୁ ଆମ୍ଭେ ସେହି ସାଧୁମହାତ୍ମା ଆଚାର୍ଯ୍ୟଙ୍କର ଆଦେଶ ପାଳନ ନ କରି ତାହାଙ୍କୁ ଶରଦ୍ୱାରା ପ୍ରହାର କଲୁଁ । ଆମ୍ଭେ ସେହି ପରମପୂଜନୀୟ ସମରରେ-ଅନିବର୍ତ୍ତୀ ମହାତ୍ମା ଗୌତମପୁତ୍ରଙ୍କୁ ନମସ୍କାର କରୁଅଛୁଁ । ହେ କୃଷ୍ଣ ! ଆମ୍ଭଙ୍କୁ ଧିକ୍, ଯେ ହେତୁ ଆମ୍ଭେ ତାହାଙ୍କୁ ପ୍ରହାର କଲୁଁ । ହେ ମହାରାଜ ! ସବ୍ୟସାଚୀ ଏହିପରି କୃପାଚାର୍ଯ୍ୟଙ୍କ ନିମିତ୍ତ ବିଳାପ କରୁଅଛନ୍ତି, ଏମନ୍ତ ସମୟରେ କର୍ଣ୍ଣ ଜୟଦ୍ରଥର ନିଧନହେତୁ କ୍ରୋଧାବିଷ୍ଟ ହୋଇ ଧନଞ୍ଜୟଙ୍କ ପ୍ରତି ଧାବମାନ ହେଲେ । କର୍ଣ୍ଣଙ୍କୁ ଅର୍ଜୁନଙ୍କର ରଥପ୍ରତି ଆପତିତ ହେବାର ଦେଖି ପାଞ୍ଚାଳନନ୍ଦନ ଯୁଧାମନ୍ୟୁ, ଉତ୍ତମୌଜା ଓ ବୃଷ୍ଣିପ୍ରବର ସାତ୍ୟକି ସହସା ତାହାଙ୍କ ପ୍ରତିଗମନ କଲେ । ତତ୍କାଳରେ ଧନଞ୍ଜୟ ମଧ୍ୟ ରାଧା-ନନ୍ଦନଙ୍କୁ ସ୍ୱୀୟ ରଥସମୀପକୁ ସମାଗତ ହେବାର ଦେଖି ହାସ୍ୟ ବଦନରେ କୃଷ୍ଣଙ୍କୁ କହିଲେ, ହେ ଜନାର୍ଦ୍ଦନ ! ଦେଖ ! ଅଧିରଥନନ୍ଦନ ନିଶ୍ଚୟ

ଭୂରିଶ୍ରବାଙ୍କ ନିଧନ ସହ୍ଯ ନ ପାରି ସାତ୍ୟକିଙ୍କ ଅଭିମୁଖକୁ ଧାବମାନ ହେଉ ଅଛନ୍ତି । ସେ ଯେଉଁ ସ୍ଥାନକୁ ଗମନ କରୁଅଛନ୍ତି, ତୁମ୍ଭେ ସେହି ସ୍ଥାନକୁ ଆମ୍ଭ ରଥ ଚାଳନା କର । ୩୧ । କର୍ଣ୍ଣ କ୍ରୁଦ୍ଧ ହୋଇ ସାତ୍ୟକିଙ୍କୁ ଭୂରିଶ୍ରବାଙ୍କ ପଦବୀକୁ ଯେପରି ପ୍ରେରଣ କରି ନ ପାରନ୍ତି ତାହା କର ।

ମହାତେଜା ମହାବାହୁ ବାସୁଦେବ ସବ୍ୟସାଚୀଙ୍କ ବାକ୍ୟ ଶ୍ରବଣ କରି ତତ୍କାଳୋଚିତ ଏହି ବାକ୍ୟ କହିଲେ, ହେ ଅର୍ଜ୍ଜୁନ ! ଏହି ମହାବାହୁ ସାତ୍ତ୍ୱତବଂଶପ୍ରବର ସାତ୍ୟକି କର୍ଣ୍ଣଙ୍କ ସହିତ ଯୁଦ୍ଧ କରିବାକୁ ସମର୍ଥ ଅଟନ୍ତି । ପୁଣି ପାଞ୍ଚାଳନନ୍ଦନ ଯୁଧାମନ୍ୟୁ ଓ ଉତ୍ତମୌଜା ଏ ଦୁହେଁ ଯେତେବେଳେ ତାହାଙ୍କର ସହାୟ ଅଛନ୍ତି ସେତେବେଳେ ତାହାଙ୍କପାଇଁ ଚିନ୍ତା କରିବା ଉଚିତ ନୁହେ । କର୍ଣ୍ଣଙ୍କ ନିକଟରେ ଯେ ପର୍ଯ୍ୟନ୍ତ ଜ୍ୱଳନ୍ତ ମହୋଲ୍କାସଦୃଶ ବାସବଦତ୍ତଶକ୍ତି ବିଦ୍ୟମାନ ଅଛି, ସେ ପର୍ଯ୍ୟନ୍ତ ତାହାଙ୍କ ସହିତ ତୁମ୍ଭର ଦ୍ୱୈରଥ ଯୁଦ୍ଧରେ ପ୍ରବୃତ୍ତ ହେବା ଉଚିତ ନୁହେ । କାହିଁକି ନା କର୍ଣ୍ଣ ସେହି ଶକ୍ତିକୁ ଅର୍ଚ୍ଚନା କରି ତୁମ୍ଭ ନିମିତ୍ତ ରକ୍ଷା କରିଅଛି । ଅତଏବ ଶତ୍ରୁ-ତାପନ କର୍ଣ୍ଣ ବର୍ତ୍ତମାନ ସାତ୍ୟକିଙ୍କ ନିକଟକୁ ଯେଉଁ ଭାବରେ ଗମନ କରୁ-ଅଛି ସେହି ଭାବରେ ଗମନ କରୁ । ସେହି ଦୁରାତ୍ମା କର୍ଣ୍ଣର ବଧ ସମୟ ଆମ୍ଭଙ୍କୁ ଜ୍ଞାତ ଅଛି, ଯେଉଁ ସମୟରେ ତାହାକୁ ତୀକ୍ଷ୍ଣତର ଶରସମୂହରେ ଭୂତଳରେ ପାତିତ କରିବାକୁ ହେବ ଆମ୍ଭେ ତୁମ୍ଭ ନିକଟରେ ସେହି ସମୟ ଜ୍ଞାପନ କରିବୁଁ । ୩୨ ।

ଧୃତରାଷ୍ଟ୍ର କହିଲେ—ହେ ସଞ୍ଜୟ ! ଭୂରିଶ୍ରବା ଓ ଜୟଦ୍ରଥ ନିହତ ହେଲାରୁ ବୃଷ୍ଣିବୀର ସାତ୍ୟକିଙ୍କ ସହିତ କର୍ଣ୍ଣଙ୍କର ଯେପରି ସଂଗ୍ରାମ ହେଲା ଓ ରଥବିହୀନ ସାତ୍ୟକି, ଯୁଧାମନ୍ୟୁ ଓ ଉତ୍ତମୌଜା କେଉଁ କେଉଁ ରଥରେ ସମାରୂଢ଼ ହେଲେ ସେ ବିଷୟ ଆମ୍ଭ ନିକଟରେ କୀର୍ତ୍ତନ କର । ୩୮ ।

ସଞ୍ଜୟ କହିଲେ—ହେ ମହାରାଜ ! ଆମ୍ଭେ ସେହି ମହତ୍ ରଣର ଯଥାଯଥ ବୃତ୍ତାନ୍ତ ବର୍ଣ୍ଣନ କରିବୁଁ, ଆପଣ ସ୍ଥିର ହୋଇ ଆପଣଙ୍କ ଦୁରାଚାର-ଜନିତ ଏହି ଘଟଣା ବିଷୟ ଶ୍ରବଣ କରନ୍ତୁ । ୩୯ । ହେ ପ୍ରଭୋ ! ଭଗବାନ୍ ବାସୁଦେବ ଅତୀତ ଓ ଅନାଗତ ସମସ୍ତ ବିଷୟ ଅବଗତ ଅଛନ୍ତି ।

ସାତ୍ୟକି ଯେ ଭୂରିଶ୍ରବାଙ୍କ କର୍ତ୍ତୃକ ପରାଜିତ ହେବେ ଏହା ପୂର୍ବରୁ ସେ ଅବଗତ ଥିଲେ । ମହାବଳ କୃଷ୍ଣ ଏହି ନିମିତ୍ତ ନିଜ ସାରଥୀ ଦାରୁକଙ୍କୁ ପୂର୍ବରୁ ଏହିପରି ଆଦେଶ ଦେଇଥିଲେ ଯେ କାଲି ତୁମ୍ଭେ ଆମ୍ଭର ରଥକୁ ସୁସଜ୍ଜିତ କରି ରଖିବ ଏବଂ ଯେଉଁ ସମୟରେ ଆମ୍ଭେ ମହାଶବ୍ଦରେ ଶଙ୍ଖ ନିନାଦ କରିବୁଁ ତତ୍‌କ୍ଷଣାତ୍ ରଥ ନେଇ ଆମ୍ଭ ନିକଟରେ ଉପସ୍ଥିତ ହେବ । ଅତଏବ ହେ ରାଜନ୍ ! ମନୁଷ୍ୟ, ଦେବ, ଗନ୍ଧର୍ବ, ଯକ୍ଷ, ଉରଗ ବା ରାକ୍ଷସ ସଂସାର ମଧ୍ୟରେ ଏପରି କେହି ନାହାନ୍ତି ଯେ କି କୃଷ୍ଣାର୍ଜ୍ଜୁନଙ୍କୁ ଜୟ କରି ପାରିବେ । ପିତାମହ ପ୍ରଭୃତି ଦେବଗଣ ଓ ସିଦ୍ଧଗଣ ମଧ୍ୟ ସେ ଦୁହିଁଙ୍କର ଅତୁଳ ପ୍ରଭାବ ବିଷୟ ଅବଗତ ଅଛନ୍ତି । ବର୍ତ୍ତମାନ ସେହି ଯୁଦ୍ଧ ଯେପରି ହୋଇଥିଲା । ତାହା ଆପଣ ଶ୍ରବଣ କରନ୍ତୁ ।

ବାସୁଦେବ ସାତ୍ୟକିଙ୍କୁ ରଥବିହୀନ ଏବଂ କର୍ଣ୍ଣଙ୍କୁ ସମରରେ ସମୁଦ୍ୟତ ହେବାର ଅବଲୋକନ କରି ମହାଶବ୍ଦରେ ଶଙ୍ଖଧ୍ୱନି କଲେ । ଦାରୁକ ଶଙ୍ଖ ଧ୍ୱନି ଶ୍ରବଣ କରି ସମସ୍ତ ବିଦିତ ହୋଇ ଉଚ୍ଛ୍ରିତ ଗରୁଡ଼ଧ୍ୱଜ ନେଇ ସେଠାରେ ଉପସ୍ଥିତ ହେଲେ । ତେତେବେଳେ ଶିନିପୌତ୍ର ସାତ୍ୟକି କୃଷ୍ଣଙ୍କର ଅନୁମତିକ୍ରମେ ହେମପରିଚ୍ଛଦସୁଶୋଭିତ କାମଗାମୀ ଶୈବ୍ୟ, ସୁଗ୍ରୀବ, ମେଘପୁଷ୍ପ ଓ ବଳାହକ ନାମକ ଅଶ୍ୱଶ୍ରେଷ୍ଠଚତୁଷ୍ଟୟସଂଯୋଜିତ ଦାରୁକକର୍ତ୍ତୃକପରିଚାଳିତ ଆଦିତ୍ୟ ଓ ଅଗ୍ନିସଙ୍କାଶ ରଥରେ ଆରୋହଣ କଲେ । ସେ ସେହି ବିମାନପ୍ରତିମ ରଥରେ ସମାରୂଢ଼ ହୋଇ ବହୁବିଧ ଶରଜାଲ ବିସ୍ତାର କରୁ କରୁ ରାଧାନନ୍ଦନ କର୍ଣ୍ଣଙ୍କ ପ୍ରତି ଧାବମାନ ହେଲେ । ଅର୍ଜ୍ଜୁନଙ୍କ ଚକ୍ରରକ୍ଷକ ଯୁଧାମନ୍ୟୁ ଓ ଉତ୍ତମୌଜା ନିହତ ଜୟଦ୍ରଥଙ୍କ ରଥରେ ଆରୋହଣ ପୂର୍ବକ କର୍ଣ୍ଣଙ୍କ ପ୍ରତି ଦ୍ରୁତବେଗରେ ଧାବିତ ହେଲେ । କର୍ଣ୍ଣ ମଧ୍ୟ ଅତିଶୟ କ୍ରୁଦ୍ଧ ହୋଇ ଶରବୃଷ୍ଟି ବିମୋଚନ ପୂର୍ବକ ଅକ୍ଷୟସନ୍ତୁ-ସମ୍ପନ୍ନ ସାତ୍ୟକିଙ୍କ ପ୍ରତି ଅଭିଦ୍ରୁତ ହେଲେ ।

ହେ ମହାରାଜ ! ସେ ଦୁହିଁଙ୍କ ମଧ୍ୟରେ ଯେପରି ଯୁଦ୍ଧ ହେଲା, ଭୂଲୋକରେ କିମ୍ବା ଦ୍ୟୁଲୋକରେ ଦେବ, ଗନ୍ଧର୍ବ, ଅସୁର ବା ରାକ୍ଷସ-ମାନଙ୍କ ମଧ୍ୟରେ କେବେହେଁ ତାଦୃଶ ଯୁଦ୍ଧ ଦୃଷ୍ଟ ବା ଶ୍ରୁତ ହୋଇନାହିଁ । ସେ ଦୁହିଁଙ୍କ କାର୍ଯ୍ୟ ଅବଲୋକନ କରି ହସ୍ତୀ, ଅଶ୍ୱ, ରଥ ଓ ପଦାତିସଂକୁଳ

ଚତୁରଙ୍ଗିଣୀ ସେନା ବିମୋହିତ ହୋଇ ଅବସ୍ଥାନ କଲେ । ସଂଗ୍ରାମରୁ ବିରତ ହୋଇ ସମସ୍ତେ ସେହି ନରଶ୍ରେଷ୍ଠ ବୀରଦ୍ୱୟଙ୍କର ଅଲୌକିକ ଯୁଦ୍ଧ ଏବଂ ଦାରୁକଙ୍କର ସାରଥ୍ୟନୈପୁଣ୍ୟ ଦର୍ଶନ କଲେ । କଶ୍ୟପ-କୁଳନନ୍ଦନ ରଥସ୍ଥ ଦାରୁକଙ୍କର ଗତ, ପ୍ରତ୍ୟାଗତ, ଆବୃତ, ମଣ୍ଡଳ ଓ ସନ୍ନିବର୍ତ୍ତ ପ୍ରଭୃତି ରଥଗତିଦ୍ୱାରା କର୍ଣ୍ଣ ଓ ସାତ୍ୟକିଙ୍କର ଯୁଦ୍ଧ ଦର୍ଶନରେ ଅଭିହିତମନା ନଭସ୍ଥଳଗତ ଦେବ, ଦାନବ ଓ ଗନ୍ଧର୍ବଗଣ ସମସ୍ତେ ବିସ୍ମିତ ହେଲେ ।

ହେ ମହାରାଜ ! ପରାକ୍ରମଶାଳୀ ମହାତେଜସ୍ୱୀ ଅମରତୁଲ୍ୟ ଯୁଯୁଧାନ ଓ କର୍ଣ୍ଣ ଉଭୟେ ମିତ୍ର କାର୍ଯ୍ୟାର୍ଥ ସ୍ପର୍ଦ୍ଧାବାନ୍ ହୋଇ ପରସ୍ପର ପରସ୍ପରଙ୍କ ପ୍ରତି ଶରବୃଷ୍ଟି କଲେ । ୫୭ । ପରନ୍ତୁ ସାତ୍ୟକି ପ୍ରଥମରେ ଶରନିକର ବର୍ଷଣଦ୍ୱାରା କର୍ଣ୍ଣଙ୍କୁ ପ୍ରମଥିତ କଲେ । ଶତ୍ରୁତାପନ କର୍ଣ୍ଣ ମଧ୍ୟ କୁରୁବଂଶୀୟ ଭୂରିଶ୍ରବା ଓ ଜଳସନ୍ଧ ଏ ଦୁହିଁଙ୍କ ବଧରେ ଅସହନଶୀଳ ଓ ଶୋକାବିଷ୍ଟ ହୋଇ ମହାଭୁଜଙ୍ଗସଦୃଶ ନିଃଶ୍ୱାସ ତ୍ୟାଗ କରୁ କରୁ କ୍ରୋଧ-ଦୃଷ୍ଟିଦ୍ୱାରା ସାତ୍ୟକିଙ୍କୁ ଦଗ୍ଧ କରିବେ ବୋଲି ଅତି ବେଗରେ ପୁନଃ ପୁନଃ ତାହାଙ୍କ ଅଭିମୁଖକୁ ଗମନ କଲେ । ସାତ୍ୟକି କର୍ଣ୍ଣଙ୍କୁ ଅତିଶୟ କୁପିତ ଦେଖି ଗୋଟିଏ ଗଜ ଅପର ଗୋଟିଏ ବିପକ୍ଷ ଗଜ ସହିତ ଯୁଦ୍ଧ କଲାପ୍ରାୟ ମହତ୍ ଶରବୃଷ୍ଟିଦ୍ୱାରା ଯୁଦ୍ଧ କରିବାରେ ପ୍ରବୃତ୍ତ ହେଲେ । ପରମ ବିକ୍ରମଶାଳୀ ତରସ୍ୱୀ ସେହି ନରଶାର୍ଦ୍ଦୂଳଦ୍ୱୟ ସମରରେ ମିଳିତ ହୋଇ ବ୍ୟାଘ୍ରସଦୃଶ ପରସ୍ପର ପ୍ରହାରଦ୍ୱାରା ପରସ୍ପରକୁ କ୍ଷତବିକ୍ଷତ କଲେ ।

ତଦନନ୍ତର ଶିନିପୌତ୍ର ସାତ୍ୟକି ସର୍ବପାରସବ ଅସ୍ତ୍ରନିଚୟରେ ପୁନଃ ପୁନଃ କର୍ଣ୍ଣଙ୍କର କଳେବରକୁ କ୍ଷତ ବିକ୍ଷତ, ଭଲ୍ଲାସ୍ତ୍ରରେ ତାହାଙ୍କର ସାରଥିକୁ ରଥମଣ୍ଡରୁ ନିପାତିତ, ନିଶିତ ଶରଦ୍ୱାରା ତାହାଙ୍କର ଶ୍ୱେତବର୍ଣ୍ଣ ଅଶ୍ୱ ଚତୁଷ୍ଟୟକୁ ନିହତ ପୁଣି ତାହାଙ୍କର ରଥ ଓ ରଥଧ୍ୱଜକୁ ଶତଖଣ୍ଡରେ ଛିନ୍ନ କରି ଆପଣଙ୍କ ପୁତ୍ରଙ୍କ ସମକ୍ଷରେ ତାହାଙ୍କୁ ରଥଭ୍ରଷ୍ଟ କଲେ । ତହିଁରେ ଆପଣଙ୍କପକ୍ଷୀୟ କର୍ଣ୍ଣ-ପୁତ୍ର ବୃଷସେନ, ମଦ୍ରରାଜ ଶଲ୍ୟ ଓ ଦ୍ରୋଣ-ପୁତ୍ର ଅଶ୍ୱତ୍ଥାମା ପ୍ରଭୃତି ମହାରଥିଗଣ ପ୍ରଥମରେ ବିମନସ୍କ ହେଲେ । କେହି କିଛି ଜ୍ଞାତ ହୋଇ ପାରିଲେ ନାହିଁ । କର୍ଣ୍ଣ ସାତ୍ୟକିଙ୍କ କର୍ତ୍ତୃକ ବିରଥ ହୁଅନ୍ତେ ସମସ୍ତ ସୈନ୍ୟମଧ୍ୟରେ ମହା ହାହାକାର ଶବ୍ଦ ସମୁତ୍ଥିତ ହେଲା ।

ପରନ୍ତୁ କର୍ଣ୍ଣ ସାତ୍ୟକଙ୍କ କର୍ତ୍ତୃକ ରଥବିହୀନ ହୋଇ ଆପଣଙ୍କପୁତ୍ର ଦୁର୍ଯ୍ୟୋଧନଙ୍କ ସହିତ ବାଲ୍ୟାବଧି ସୌହୃଦ୍ୟ ସ୍ମରଣ କରି ଓ ତାହାଙ୍କ ନିକଟରୁ ରାଜ୍ୟ ପ୍ରାପ୍ତି ହେତୁ ପାଣ୍ଡବମାନଙ୍କୁ ପରାଜୟ କରିବେ ବୋଲି ଯେ ପ୍ରତିଜ୍ଞା କରିଥିଲେ, ତାହା ପ୍ରତିପାଳନ ନିମିତ୍ତ ନିଃଶ୍ୱାସ ପରିତ୍ୟାଗ କରୁ କରୁ ସତ୍ୱର ଦୁର୍ଯ୍ୟୋଧନଙ୍କ ରଥରେ ଆରୋହଣ କଲେ ।

ହେ ମହାରାଜ ! ଜିତେନ୍ଦ୍ରିୟ ସାତ୍ୟକ ସେହି ପ୍ରକାରେ ବିରଥୀକୃତ କର୍ଣ୍ଣଙ୍କୁ ଓ ଦୁଃଶାସନ ପ୍ରଭୃତି ଆପଣଙ୍କର ଶୂରପୁତ୍ରମାନଙ୍କୁ ବିନଷ୍ଟ କଲେ ନାହିଁ । ସେ ଭୀମାର୍ଜ୍ଜୁନଙ୍କର ପୂର୍ବକୃତ ପ୍ରତିଜ୍ଞା ରକ୍ଷାର୍ଥ କର୍ଣ୍ଣଙ୍କୁ ଓ ଆପଣଙ୍କ ପୁତ୍ରମାନଙ୍କୁ ନିହତ ନ କରି କେବଳ ସେମାନଙ୍କୁ ରଥଭ୍ରଷ୍ଟ ଓ ବିହ୍ୱଳ କଲେ । କାରଣ ପୁନର୍ବାର ଦ୍ୟୁତକ୍ରୀଡ଼ା ସମୟରେ ଭୀମସେନ ଆପଣଙ୍କର ପୁତ୍ରମାନଙ୍କୁ ବଧ କରିବେ ବୋଲି ଓ ଅର୍ଜ୍ଜୁନ କର୍ଣ୍ଣଙ୍କୁ ବଧ କରିବାକୁ ପ୍ରତିଜ୍ଞା କରିଥିଲେ । କର୍ଣ୍ଣ ପ୍ରଭୃତି ରଥିପ୍ରବରମାନେ ଯତ୍ନଶୀଳ ହୋଇ ମଧ୍ୟ ସାତ୍ୟକଙ୍କୁ ସଂହାର କରିବାକୁ ସମର୍ଥ ହେଲେନାହିଁ । ସେହି ମହାବୀର ସାତ୍ୟକ ଧର୍ମ୍ମରାଜଙ୍କ ହିତାନୁଷ୍ଠାନ ନିମିତ୍ତ ଜୀବନାଶା ପରିତ୍ୟାଗ ପୂର୍ବକ ସମରରେ ପ୍ରବୃତ୍ତ ହୋଇ ଏକମାତ୍ର ଧନୁପ୍ରଭାବରେ ଅଶ୍ୱତ୍ଥାମା, କୃତବର୍ମ୍ମା, ଓ ଅପରାପର ଶତଶତ ମହାରଥୀ କ୍ଷତ୍ରିୟଶ୍ରେଷ୍ଠମାନଙ୍କୁ ପରାଜିତ କଲେ । ୭୫ ।

ହେ ମହାରାଜ ! କୃଷ୍ଣାର୍ଜ୍ଜୁନଙ୍କ ସଦୃଶ ବୀର୍ଯ୍ୟଶାଳୀ ସତ୍ୟବିକ୍ରମ ସାତ୍ୟକ ହାସ୍ୟମୁଖରେ ଆପଣଙ୍କପକ୍ଷୀୟ ସୈନ୍ୟମାନଙ୍କୁ ପରାଭୂତ କଲେ । ୭୬ । ଈଦୃଶ କାର୍ଯ୍ୟ କରିବା ନିମିତ୍ତ ଭଗବାନ ବାସୁଦେବ, ଧନୁର୍ଦ୍ଧର ଅର୍ଜ୍ଜୁନ ଓ ନରଶାର୍ଦ୍ଦୂଳ ସାତ୍ୟକ ଏହି ତିନିଜଣଙ୍କ ବ୍ୟତୀତ ପୃଥିବୀରେ ଆଉ କେହି ଚତୁର୍ଥ ବ୍ୟକ୍ତି ନାହାନ୍ତି । ୭୭ ।

ଧୃତରାଷ୍ଟ୍ର କହିଲେ—ହେ ସଞ୍ଜୟ ! ବାସୁଦେବଙ୍କ ତୁଲ୍ୟ ସମରକୁଶଳ ସାତ୍ୟକ ବାସୁଦେବଙ୍କ ଅଜେୟ ରଥରେ ସମାରୂଢ଼ ହୋଇ କର୍ଣ୍ଣଙ୍କୁ ବିରଥ କଲେ । ୭୮ । କିନ୍ତୁ ଦାରୁକ କର୍ତ୍ତୃକ ସହାୟବାନ୍ ଓ ନିଜ ବାହୁବଳଦର୍ପିତ ସେହି ସାତ୍ୱତପ୍ରବର ଦାରୁକଙ୍କ ରଥରେ ଅବସ୍ଥିତ କଲେ

କିମ୍ବା ଅପର କୌଣସି ରଥରେ ଆରୋହଣ କଲେ, ତାହା ଶ୍ରବଣ କରିବାକୁ ଆମ୍ଭେ ଅଭିଳାଷ କରୁଁ । ତୁମ୍ଭେ ଆମ୍ଭ ନିକଟରେ ତାହା କୀର୍ତ୍ତନ କର । କାରଣ ଆମ୍ଭେ ସାତ୍ୟକିଙ୍କୁ ସମସ୍ତ ସୈନ୍ୟମାନଙ୍କର ଅସହ୍ୟ ବୋଲି ମନେ କରୁଅଛୁଁ । ଅତଏବ ସେହି ବିଷୟ ବର୍ଣ୍ଣନ କର । ୮୦ ।

ସଞ୍ଜୟ କହିଲେ— ହେ ମହାରାଜ ! ଆପଣ ଯାହା ପ୍ରଶ୍ନ କରୁଅଛନ୍ତି, ତାହା ଆମ୍ଭେ ସବିଶେଷ ବର୍ଣ୍ଣନ କରୁଅଛୁଁ, ଆପଣ ଶ୍ରବଣ କରନ୍ତୁ । କ୍ଷଣକାଳ ଉତ୍ତାରେ ମହାମତିମାନ୍ ଦାରୁକଙ୍କ କନିଷ୍ଠଭ୍ରାତା ବିଧିବତ୍ ସୁସଜ୍ଜିତ ଲୌହ ଓ କାଞ୍ଚନମୟ ପଟ୍ଟଦ୍ୱାରା ସନ୍ନାହଯୁକ୍ତ କୂବେରସୁଶୋଭିତ ସହସ୍ର ସହସ୍ର ତାରକାଖଚିତ ସିଂହଚିହ୍ନିତପତାକାଯୁକ୍ତ ଏପରି ଗୋଟିଏ ରଥ ନେଇ ଉପନୀତ ହେଲେ । ସେହି ରଥରେ ବାୟୁବେଗଗାମୀ ସ୍ୱର୍ଣ୍ଣପରିଚ୍ଛଦ-ବିଭୂଷିତ କାଞ୍ଚନମୟ ବିଚିତ୍ରସନ୍ନାହଯୁକ୍ତ ରଣଶବ୍ଦସହଚୂଡ଼ିକାୟ ଚନ୍ଦ୍ର-ସଦୃଶଶୁଭ୍ରବର୍ଣ୍ଣ ସିନ୍ଧୁଦେଶୀୟ ଅଶ୍ୱଶ୍ରେଷ୍ଠମାନେ ସଂଯୋଜିତ ହୋଇଥିଲେ । ସେହି ରଥରେ ଏତେଗୁଡ଼ିଏ ଘଣ୍ଟା ସନ୍ନିବେଶିତ ହୋଇଥିଲା ଯେ ସେ ସମସ୍ତର ଟଣ୍ ଟଣ୍ ଶବ୍ଦ ଅନ୍ୟ ସମସ୍ତ ଶବ୍ଦକୁ ଅତିକ୍ରମ କରୁଥିଲା । ଶକ୍ତି ତୋମର ପ୍ରଭୃତି ବହୁବିଧ ଶସ୍ତ୍ର ଓ ସାଂଗ୍ରାମିକ ଦ୍ରବ୍ୟଦ୍ୱାରା ପରିଶୋଭିତ ଥିବାରୁ ସେହି ରଥ ବିଦ୍ୟୁତ୍‌ସଦୃଶ ଦୀପ୍ତିପ୍ରାପ୍ତ ହେଲା । ଶିନିକୁଳନନ୍ଦନ ମେଘସଦୃଶ ଗମ୍ଭୀରଶବ୍ଦଯୁକ୍ତ ସେହି ରଥରେ ସମାରୂଢ଼ ହୋଇ ଆପଣଙ୍କ ସୈନ୍ୟମାନଙ୍କ ପ୍ରତି ଅଭିଦ୍ରୂତ ହେଲେ । ଦାରୁକ ମଧ୍ୟ ସ୍ୱୀୟ ଇଚ୍ଛାନୁସାରେ କେଶବଙ୍କ ନିକଟକୁ ଗମନ କଲେ । ୮୬ ।

ହେ ମହାରାଜ ! ସେ ସମୟରେ ଶଙ୍ଖ ଓ ଦୁଗ୍ଧଶୁଭ୍ର ପାଣ୍ଡୁରବର୍ଣ୍ଣ ବିଚିତ୍ର କାଞ୍ଚନମୟସନ୍ନାହଶୋଭିତ ଅତୀବ ବେଗଗାମୀ ସୁଶିକ୍ଷିତ ଅଶ୍ୱଗଣ-ସଂଯୋଜିତ ସୁବର୍ଣ୍ଣମୟ କକ୍ଷା ଓ ଧ୍ୱଜରେ ସୁଶୋଭିତ, ନାନାବିଧ ଯନ୍ତ୍ର ଓ ପତାକାସମନ୍ୱିତ ବିବିଧ ଶସ୍ତ୍ରାଦି ଉପକରଣପୂର୍ଣ୍ଣ ନିପୁଣ ସାରଥିକୃତ-ପରିଚାଳିତ ଗୋଟିଏ ଉତ୍ତମ ରଥ କର୍ଣ୍ଣଙ୍କ ନିମିତ୍ତ ସମାନୀତ ହେଲା । କର୍ଣ୍ଣ ସେହି ରଥରେ ଆରୋହଣ କରି ରିପୁକୁଳ ମର୍ଦ୍ଦନ ନିମିତ୍ତ ଧାବିତ ହେଲେ । ହେ ମହାରାଜ ! ଆପଣ ଯାହା ଜିଜ୍ଞାସା କରିଥିଲେ, ସେସମସ୍ତ ବର୍ଣ୍ଣନ

ଥିଲୁଁ । ବର୍ତ୍ତମାନ ଆପଣଙ୍କ ଦୁର୍ନୀତିଜନିତ ସେହି ପ୍ରାଣିକ୍ଷୟକର ବ୍ୟାପାର ପୁନଶ୍ଚ ଶ୍ରବଣ କରନ୍ତୁ ।

ହେ ମହାରାଜ ! ଆପଣଙ୍କର ଦୁର୍ମୁଖାଦି ଚିତ୍ରଯୋଧୀ ଏକତିଂଶତି ପୁତ୍ର ଭୀମସେନଙ୍କ କର୍ତ୍ତୃକ ନିହତ ହେଲେ । ଅତଏବ ଏହି ମହାପ୍ରାଣିକ୍ଷୟକର ବ୍ୟାପାର ନିଶ୍ଚୟ ଆପଣଙ୍କ ଦୁର୍ମନ୍ତ୍ରଣାରୁ ଜାତ ହୋଇଅଛି, ଜାଣିବେ ।୯୨।

---

# ୧୪୮ ଅଧ୍ୟାୟ

କୌରବ ଓ ପାଣ୍ଡବପକ୍ଷୀୟ ବୀରମାନେ ସମରଭୂମିରେ ସେହିପରି ଅବସ୍ଥାନ କରନ୍ତେ ତତ୍କାଳରେ ଭୀମାର୍ଜ୍ଜୁନ ଓ ସାତ୍ୟକି କିପରି କାର୍ଯ୍ୟ ଅନୁଷ୍ଠାନ କଲେ ? ୧ ।

ସଞ୍ଜୟ କହିଲେ, ହେ ମହାରାଜ ! ଯେଉଁ ସମୟରେ ଭୀମସେନ ରଣସ୍ଥଳରେ କର୍ଣ୍ଣଙ୍କ କର୍ତ୍ତୃକ ରଥଭ୍ରଷ୍ଟ ହେଲେ ସେକାଳରେ କର୍ଣ୍ଣ ତାହାଙ୍କ ପ୍ରତି ପରୁଷୋକ୍ତିମାନ ପ୍ରୟୋଗ କରିଥିଲେ । ବର୍ତ୍ତମାନ ଭୀମସେନ ଅମର୍ଷ ବଶବର୍ତ୍ତୀ ହୋଇ ସେହି କର୍ଣ୍ଣଙ୍କ କଟୂକ୍ତିମାନ ଅର୍ଜ୍ଜୁନଙ୍କ ନିକଟରେ ଏହିପରି ବିଜ୍ଞାପନ କଲେ ।୨। ହେ ଧନଞ୍ଜୟ ! କର୍ଣ୍ଣ ତୁମ୍ଭ ସମକ୍ଷରେ ଆମ୍ଭଙ୍କୁ ବାରମ୍ବାର କହିଅଛି ଯେ, "ତୁମ୍ଭେ ତୂବରକ, ମୂଢ଼, ଔଦରିକ ଓ ଅକୃତାସ୍ତ୍ର, ତୁମ୍ଭେ ଆଉ ଯୁଦ୍ଧ କର ନାହିଁ । ତୁମ୍ଭ ସଂଗ୍ରାମକାତର ବାଳକ, ଏହିପରି ନାନା-ବିଧ କଟୂକ୍ତିମାନ କହିଅଛି ।" ହେ ମହାବାହୋ ! ଧନଞ୍ଜୟ ! ପୂର୍ବେ ତୁମ୍ଭର ପ୍ରତିଜ୍ଞା କାଳରେ ଆମ୍ଭେ ମଧ୍ୟ ପ୍ରତିଜ୍ଞା କରିଥିଲୁଁ ଯେ, ଯେଉଁ ବ୍ୟକ୍ତି ଆମ୍ଭ-ପ୍ରତି ଉକ୍ତପ୍ରକାର କଟୂକ୍ତି ପ୍ରୟୋଗ କରିବ ସେ ନିଶ୍ଚୟ ଆମ୍ଭର ବଧ୍ୟ ହେବ । ବର୍ତ୍ତମାନ କର୍ଣ୍ଣ ତଦ୍ରୂପ କାର୍ଯ୍ୟ କରିଅଛନ୍ତି । ପ୍ରତିଜ୍ଞା ରକ୍ଷାକରିବା ବିଷୟ ତୁମ୍ଭ ପକ୍ଷରେ ଯେପରି ଆମ୍ଭ ପକ୍ଷରେ ମଧ୍ୟ ସେହିପରି, ଏଥିରେ ସନ୍ଦେହ ନାହିଁ । ୫ । ଅତଏବ ହେ ନରଶ୍ରେଷ୍ଠ ! ବର୍ତ୍ତମାନ ଆମ୍ଭର ବାକ୍ୟ ଶ୍ରବଣ କର ଯହିଁରେ ସେ ସତ୍ୟ ରକ୍ଷାହୁଏ, ତାହା ପାଳନ କରିବାକୁ ଯତ୍ନ କର । ୬ ।

ସେହି ସମୟରେ ଅମିତପରାକ୍ରମଶାଳୀ ଅର୍ଜ୍ଜୁନ ଭୀମଙ୍କର ସେହି ବାକ୍ୟ ଶ୍ରବଣ କରି କର୍ଣ୍ଣଙ୍କ ସମୀପବର୍ତ୍ତୀ ହୋଇ କହିଲେ, ହେ କର୍ଣ୍ଣ ! ବୃଥାଦୃଷ୍ଟି, ସୂତକୁଳାତ୍ମଜ ! ତୁମ୍ଭର ବୁଦ୍ଧି ନିୟତ ଅଧର୍ମନିରତ । ଏଣୁ ତୁମ୍ଭେ ଆତ୍ମଶ୍ଳାଘା ସର୍ବଦା କରିଥାଅ । ସମ୍ପ୍ରତି ଆମ୍ଭେ ତୁମ୍ଭଙ୍କୁ ଯାହା କହୁଅଛୁଁ, ତାହା ଶ୍ରବଣ କର । ଯୁଦ୍ଧସ୍ଥଳରେ ବୀର ପୁରୁଷମାନଙ୍କର ଜୟ ଅଥବା ପରାଜୟ ଏହି ଦୁଇ ପ୍ରକାର କର୍ମ ଘଟିଥାଏ । ସେହି ଜୟ ପରାଜୟ ଅନିଶ୍ଚିତ । କାରଣ ସମୟରେ ଦେବରାଜ ଇନ୍ଦ୍ର ମଧ୍ୟ ପରାଜିତ ହୋଇ ଥାଆନ୍ତି । ଏହି ମୁହୂର୍ତ୍ତକାଳ ପୂର୍ବରୁ ଯୁଯୁଧାନ ତୁମ୍ଭଙ୍କୁ ରଥଭ୍ରଷ୍ଟ ଓ ବିକଳେନ୍ଦ୍ରିୟ କରିବାରୁ ତୁମ୍ଭେ ମୂର୍ଚ୍ଛାପ୍ରାପ୍ତ ହୋଇଥିଲ । ସେ ତୁମ୍ଭଙ୍କୁ ଆମ୍ଭର ବଧ୍ୟ ବୋଲି ଜାଣି କେବଳ ପରାଭୂତ କରି ପ୍ରାଣରେ ମାରିନାହାନ୍ତି । କିନ୍ତୁ ତୁମ୍ଭେ ଦୈବବଶତଃ ମହାବଳପରାକ୍ରାନ୍ତ ଭୀମସେନଙ୍କୁ ରଥବିହୀନ କରି ଯେଉଁସବୁ କଟୂକ୍ତି ପ୍ରୟୋଗ କରିଅଛ, ତଦ୍ଦ୍ୱାରା ତୁମ୍ଭର ଅତିଶୟ ଅଧର୍ମ ହୋଇଅଛି । କାରଣ ସତ୍‌ସ୍ୱଭାବାପନ୍ନ ନରଶ୍ରେଷ୍ଠ ବୀରପୁରୁଷମାନେ ଶତ୍ରୁକୁ ପରାଜିତ କରି କଦାଚ ଆତ୍ମଶ୍ଳାଘା ଦୁର୍ବାକ୍ୟ ପ୍ରୟୋଗ ଅବା ନିନ୍ଦା କରନ୍ତି ନାହିଁ । କିନ୍ତୁ ତୁମ୍ଭେ ଅତି ଅଳ୍ପଜ୍ଞାନସମ୍ପନ୍ନ ଓ ସୂତକୁଳଜାତ । ଏଣୁ ଗୁରୁଲଘୁପ୍ରଯୁକ୍ତ ବିବେଚନା ନ କରି ଉକ୍ତପ୍ରକାର ବହୁ ଅସମ୍ବଦ୍ଧ ଓ ଅପ୍ରିୟ ବାକ୍ୟମାନ ପ୍ରୟୋଗ କରିଅଛ ।

ହେ ରାଧେୟ ! ତୁମ୍ଭେ ଏହି ଆର୍ଯ୍ୟାବର୍ତ୍ତରେ ସ୍ଥିତ ମହାବଳ-ପରାକ୍ରାନ୍ତ ମହାବୀର ଭୀମସେନଙ୍କୁ ଯୁଦ୍ଧ କାଳରେ ଯେଉଁସବୁ ଅପ୍ରିୟ ବାକ୍ୟ କହିଅଛ, ସେସମସ୍ତରେ ଗୋଟିଏ ସୁଦ୍ଧା ପ୍ରକୃତ ନୁହେ । ପାଣ୍ଡୁନନ୍ଦନ ଭୀମ-ସେନ ଏହି ସମସ୍ତ ସୈନ୍ୟଙ୍କ ସମକ୍ଷରେ ପୁଣି କେଶବ ଓ ଆମ୍ଭ ସମକ୍ଷରେ ତୁମ୍ଭଙ୍କୁ ଅନେକ ଥର ରଥଭ୍ରଷ୍ଟ କରିଅଛନ୍ତି । ମାତ୍ର କୌଣସି ପ୍ରକାରେ ପରୁଷୋକ୍ତି ପ୍ରୟୋଗ କରି ନାହାନ୍ତି । ୧୭ । ତୁମ୍ଭେ ଯେତେବେଳେ ଭୀମସେନଙ୍କ ପ୍ରତି କଟୂକ୍ତି ପ୍ରୟୋଗ କରିଅଛ ଏବଂ ଅଧ୍ୱାଘାତରେ ଅପରାପର ବୀରମାନଙ୍କ ସହିତ ସମବେତ ହୋଇ ଅଭିମନ୍ୟୁଙ୍କୁ ନିହତ କରିଅଛ, ତେତେବେଳେ ସେହି ଅପରାଧର ଫଳ ଅଚିରାତ୍ ପ୍ରାପ୍ତ ହେବ । ହେ ଦୁର୍ମତେ ! ତୁମ୍ଭେ ଆତ୍ମ ବିନାଶ ନିମିତ୍ତ ଅଭିମନ୍ୟୁର ଶରାସନ ଛେଦନ କରିଥିଲ । ସେଥିନିମିତ୍ତ ଆମ୍ଭେ ତୁମ୍ଭର ପୁତ୍ର, ଭୃତ୍ୟ ଓ ବାନ୍ଧବଗଣ ସହିତ

ତୁମ୍ଭଙ୍କୁ ବିନାଶ କରିବୁଁ । ତୁମ୍ଭେ ଏହି ସମୟରେ ତୁମ୍ଭର କର୍ତ୍ତବ୍ୟ କାର୍ଯ୍ୟ-ମାନ ସମ୍ପନ୍ନ କର । କାରଣ ତୁମ୍ଭର ମହାଭୟ ଉପସ୍ଥିତ ହୋଇଅଛି । ୧୯ । ଆମ୍ଭେ ଆୟୁଧ ସ୍ପର୍ଶ କରି ସତ୍ୟ କରୁଅଛୁଁ ଯେ ତୁମ୍ଭ ସମକ୍ଷରେ ତୁମ୍ଭ ପୁତ୍ର ବୃଷସେନଙ୍କୁ ଓ ଅନ୍ୟାନ୍ୟ ଯେଉଁ ରାଜବର୍ଗ ମୋହବଶରୁ ସଂଗ୍ରାମରେ ଆମ୍ଭର ସମ୍ମୁଖୀନ ହେବେ ସେସମସ୍ତଙ୍କୁ ନିହତ କରିବୁଁ । ହେ ମୂଢ଼ ! ତୁମ୍ଭର ଲେଶମାତ୍ର ବୁଦ୍ଧି ନାହିଁ । ତୁମ୍ଭେ କେବଳ ଆତ୍ମା-ଭିଳାଷୀ । ଅତଏବ ସେହି ଦୁର୍ମ୍ମତି ଦୁର୍ଯ୍ୟୋଧନ ତୁମ୍ଭଙ୍କୁ ରଣସ୍ଥଳରେ ନିପାତିତ ଅବଲୋକନ କରି ଅତିଶୟ ପରିତାପ କରିବ ।

ହେ ମହାରାଜ ! ଅର୍ଜ୍ଜୁନ କର୍ଣ୍ଣଙ୍କ ପୁତ୍ରକୁ ବିନାଶ କରିବ ବୋଲି ପ୍ରତିଜ୍ଞା କରନ୍ତେ ରଥସୈନ୍ୟମଧ୍ୟରେ ମହାନ୍ ତୁମୁଳ ଶବ୍ଦ ଉତ୍ଥିତ ହେଲା । ସେହି ଭୀଷଣ ସଂଗ୍ରାମ ସମୟରେ ଦିନକର କିରଣରାଜି ମନ୍ଦୀଭୂତ କରି ଅସ୍ତାଚଳ ଶିଖରରେ ଆରୋହଣ କଲେ । ତଦନନ୍ତର ବାସୁଦେବ ରଣା-ଙ୍ଗନସ୍ଥିତ ପ୍ରତିଜ୍ଞାସମୁତ୍ତୀର୍ଣ୍ଣ ଧନଞ୍ଜୟଙ୍କୁ ଆଲିଙ୍ଗନ କରି କହିଲେ, ହେ ଜିଷ୍ଣୋ ! ଭାଗ୍ୟକ୍ରମେ ତୁମ୍ଭେ ଏହି ମହତୀ ପ୍ରତିଜ୍ଞା ପରିପୂର୍ଣ୍ଣ କଲ । ୨୫ । ଭାଗ୍ୟକ୍ରମେ ସିନ୍ଧୁରାଜ ବୃଦ୍ଧକ୍ଷତ୍ର ସ୍ୱୀୟ ପୁତ୍ର ଜୟଦ୍ରଥ ସହିତ ବିନଷ୍ଟ ହୋଇ-ଅଛନ୍ତି । ହେ ଭରତନନ୍ଦନ ଧନଞ୍ଜୟ ! ଏହି କୌରବସୈନ୍ୟଙ୍କ ସହିତ ସମରରେ ପ୍ରବୃତ୍ତ ହେଲେ ଦେବସେନା ମଧ୍ୟ ଅବସନ୍ନ ହୁଅନ୍ତି, ଏଥିରେ ସନ୍ଦେହ ନାହିଁ ।

ହେ ପୁରୁଷଶାର୍ଦ୍ଦୂଳ ! ଆମ୍ଭେ ଚିନ୍ତା କରି ଏହି ତ୍ରିଲୋକ ମଧ୍ୟରେ ଏପରି କୌଣସି ପୁରୁଷଙ୍କୁ ଅବଲୋକନ କରୁନାହୁଁ ଯେ କି ତୁମ୍ଭ ବ୍ୟତି-ରେକେ ଏହି କୌରବସୈନ୍ୟମାନଙ୍କ ସହିତ ଯୁଦ୍ଧ କରିବାକୁ ସକ୍ଷମ ହେବ । ଦେଖ, ଏହି ସମରରେ ତୁମ୍ଭତୁଲ୍ୟ ଅଥବା ତୁମ୍ଭ ଅପେକ୍ଷା ଅଧିକ ବଳବୀର୍ଯ୍ୟ-ସମ୍ପନ୍ନ ମହାପ୍ରଭାବ ବହୁ ଭୂପାଳ ଦୁର୍ଯ୍ୟୋଧନଙ୍କ ନିମିତ୍ତ ସମବେତ ହୋଇ-ଅଛନ୍ତି କିନ୍ତୁ ସେହି ବଦ୍ଧସନ୍ନାହ ବୀରମାନେ କ୍ରୋଧଭରରେ ଗମନ କରି ସମରରେ କେହି ତୁମ୍ଭ ସମ୍ମୁଖରେ ଅବସ୍ଥାନ କରିବାକୁ ସମର୍ଥ ହେଲେ ନାହିଁ ।

ଅତଏବ ତୁମ୍ଭର ବଳବୀର୍ଯ୍ୟ ଇନ୍ଦ୍ର ବା ଅନ୍ତକ କିମ୍ବା ରୁଦ୍ରଙ୍କର ତୁଲ୍ୟ । ଅଦ୍ୟ ତୁମ୍ଭେ ରଣସ୍ଥଳରେ ଶତ୍ରୁମାନଙ୍କୁ ସନ୍ତାପିତ କରି ଯାଦୃଶ ପରାକ୍ରମ ପ୍ରକାଶ କରିଅଛ, ଏହି ସଂସାର ମଧ୍ୟରେ ଅନ୍ୟ କୌଣସି ପୁରୁଷ ଏପରି କରିବାକୁ ସମର୍ଥ ନୁହନ୍ତି । ଏହିପରି ପରାକ୍ରମ ପ୍ରକାଶପୂର୍ବକ ଦୁରାତ୍ମା କର୍ଣ୍ଣଙ୍କୁ ଅନୁଚରବର୍ଗଙ୍କ ସହିତ ତୁମ୍ଭେ ବିନାଶ କରି ପାରିଲେ ଆମ୍ଭେ ଶତ୍ରୁବିଜୟ ଓ ଦ୍ୱେଷକାରୀର ବଧହେତୁ ପୁନର୍ବାର ତୁମ୍ଭଙ୍କୁ ଅଭିନନ୍ଦନ କରିବୁଁ । ଧନଞ୍ଜୟ ବାସୁଦେବଙ୍କ ମୁଖରୁ ଆପଣାର ପ୍ରଶଂସା କଥା ଶ୍ରବଣ କରି ଉତ୍ତର କଲେ, ହେ ମାଧବ ! ଆମ୍ଭେ କେବଳ ତୁମ୍ଭ ପ୍ରସାଦରୁ ଅମରଗଣଙ୍କର ଦୁସ୍ତରଣୀୟ ଏହି ପ୍ରତିଜ୍ଞା-ସାଗରରୁ ଉତ୍ତୀର୍ଣ୍ଣ ହେଲୁଁ । ହେ କେଶବ ! ତୁମ୍ଭେ ଯେଉଁମାନଙ୍କର ନାଥ ସେମାନଙ୍କର ଯେ ଜୟଲାଭ ହେବ ଏହା ଆଶ୍ଚର୍ଯ୍ୟ ନୁହେ । ୩୩ । ରାଜା ଯୁଧିଷ୍ଠିର ତୁମ୍ଭ ପ୍ରସାଦରୁ ନିଶ୍ଚୟ ଏହି ସମଗ୍ର ବସୁନ୍ଧରାକୁ ପୁନଃ ପ୍ରାପ୍ତ ହେବେ ।

ହେ ପ୍ରଭୋ ! ଏହି ଯୁଦ୍ଧର ସମସ୍ତ ଭାର ତୁମ୍ଭପ୍ରତି ଅର୍ପିତ ହୋଇଅଛି । ସୁତରାଂ ଆଜି ଯେ ଜୟ ଲାଭ ହେଲା ତାହା ତୁମ୍ଭର ଅଟେ । ଆମ୍ଭେମାନେ ତୁମ୍ଭର ଆଜ୍ଞାନୁବର୍ତ୍ତୀ, ଅତଏବ ଆମ୍ଭମାନଙ୍କୁ ଉତ୍ସାହିତ କରିବା ତୁମ୍ଭର କର୍ତ୍ତବ୍ୟ । ଅର୍ଜ୍ଜୁନ କୃଷ୍ଣଙ୍କୁ ଏହିପ୍ରକାରେ କହିବାରୁ କୃଷ୍ଣ ମନ୍ଦବେଗରେ ରଥଚାଳନାପୂର୍ବକ ଅର୍ଜ୍ଜୁନଙ୍କୁ ସେହି ଭୀଷଣ ରଣଭୂମିକୁ ଦେଖାଇଲେ । ୩୫ । କୃଷ୍ଣ କହିଲେ, ହେ ଅର୍ଜ୍ଜୁନ ! ଦେଖ, ମହୀପାଳମାନେ ଜୟ ଓ ବିପୁଳ ଯଶୋଲାଭାର୍ଥ ସମରରେ ପ୍ରବୃତ୍ତ ହୋଇ ତୁମ୍ଭର ଶର ପ୍ରଭାବରେ ପ୍ରିୟ ପ୍ରାଣବିସର୍ଜନପୂର୍ବକ ଭୂତଳରେ ଶୟନ କରିଅଛନ୍ତି ।

ସେମାନଙ୍କର ଶସ୍ତ୍ର ଓ ଆଭରଣସମୂହ ଇତସ୍ତତଃ ବିକୀର୍ଣ୍ଣ ହୋଇଅଛି । ହସ୍ତୀ ଓ ରଥସବୁ ବିଧ୍ୱସ୍ତ ହୋଇଅଛି ଓ ସେମାନଙ୍କର ମର୍ମ୍ମସ୍ଥଳ ଛିନ୍ନଭିନ୍ନ ହେବାରୁ ସେମାନେ ଅତ୍ୟନ୍ତ ଶୋଚନୀୟ ଅବସ୍ଥା ପ୍ରାପ୍ତ ହୋଇଅଛନ୍ତି । ୩୭ । ସେମାନଙ୍କ ମଧ୍ୟରେ କେତେକ ତ୍ୟକ୍ତପ୍ରାଣ, କେତେକ ଅବା ଜୀବିତ ଅଛନ୍ତି । ପରନ୍ତୁ ଯେଉଁମାନେ ଗତାସୁ ହୋଇଅଛନ୍ତି, ସେମାନେ ସ୍ୱୀୟ ପରମ ପ୍ରଭା ହେତୁରୁ ସଜୀବତୁଲ୍ୟ ଲକ୍ଷିତ ହେଉଅଛନ୍ତି ।୩୮। ଦେଖ, ଏହି ନରପାଳମାନଙ୍କର ସ୍ୱର୍ଣ୍ଣପୁଙ୍ଖ ଶର, ବିବିଧ ଶାଣିତ ଶସ୍ତ୍ର,

ନାନାପ୍ରକାର ବାହନ ଓ ଆୟୁଧସମୂହ ଦ୍ୱାରା ମେଦିନୀ ପରିପୂର୍ଣ୍ଣ ହୋଇଅଛି । ୩୯ । ପୁଣି ଇତସ୍ତତଃ ନିପତିତ ଚର୍ମ୍ମ, ବର୍ମ୍ମ, ହାର, କୁଣ୍ଡଳାଳଂକୃତ ମସ୍ତକ, ଉଷ୍ଣୀଷ, ମୁକୁଟ, ମାଲ୍ୟଦାମ, ଚୂଡ଼ାମଣି, ବସ୍ତ୍ର, କଣ୍ଠସୂତ୍ର, ଅଙ୍ଗଦ, ପ୍ରଭାଯୁକ୍ତ ନିଷ୍କ ଓ ଅନ୍ୟାନ୍ୟ ବିଚିତ୍ର ଆଭରଣସମୂହ ଦ୍ୱାରା ବସୁନ୍ଧରା ଅପୂର୍ବ ଶୋଭା ଧାରଣ କରିଅଛି । ୪୧ । ଅସଂଖ୍ୟ ଅନୁକର୍ଷ, ତୂଣୀର, ପତାକା, ଧ୍ୱଜ, ଅଳଙ୍କାର, ଆସନ, ଈଷା, ଦଣ୍ଡ, ଚକ୍ର, ରାଶିରାଶି ଭଗ୍ନଚକ୍ର, ବହୁବିଧ ବିଚିତ୍ର ଅକ୍ଷଯୁଗକାଷ୍ଠ ଓ ଯୋକ୍ତ୍ର ପ୍ରଭୃତି ନାନାପ୍ରକାର ରଥଭୂଷଣ, ସଶରଶରାସନ, ବିଚିତ୍ର-କମ୍ବଳ, ପରିଘ, ଅଙ୍କୁଶ, ଭିନ୍ଦିପାଳ, ଶକ୍ତି, ଶୂଳ, ପରଶ୍ୱଧ, ପ୍ରାସ, ତୋମର, କୁନ୍ତ, ଯଷ୍ଟି, ଶତଘ୍ନୀ, ଭୁଷଣ୍ଡୀ, ଖଡ୍‌ଗ, କୁଠାର, ମୂଷଳ, ମୁଦ୍‌ଗର, ଗଦା, କୁଣପ, ତୂଣୀର, ସୁବର୍ଣ୍ଣ-ଚିତ୍ର ଓ କକ୍ଷା, ହସ୍ତୀ-ମାନଙ୍କର ବିବିଧ ପରିଚ୍ଛଦ, ଘଣ୍ଟା, ମାଲ୍ୟଭୂଷିତ ନାନାପ୍ରକାର ଆଭରଣ ଓ ମହାମୂଲ୍ୟ ବସନ ସମସ୍ତ ଇତସ୍ତତଃ ବିକୀର୍ଣ୍ଣ ହୋଇଥିବାରୁ ରଣସ୍ଥଳ ନକ୍ଷତ୍ରାଦି ଗ୍ରହଗଣ ବିରାଜିତ ଶରତ୍‌କାଳୀନ ନଭୋମଣ୍ଡଳସଦୃଶ ଶୋଭମାନ ହୋଇଅଛି ।

ଦେଖ, ଏହି ନରପାଳଗଣ ଦୁର୍ଯ୍ୟୋଧନଙ୍କ ନିମିତ୍ତ ରାଜ୍ୟାଭିଳାଷୀ ହୋଇ ପ୍ରାଣ ପରିତ୍ୟାଗ ପୂର୍ବକ ପ୍ରିୟ କାନ୍ତାକୁ ଆଲିଙ୍ଗନ କଲାପ୍ରାୟ ପୃଥିବୀକୁ ଆଲିଙ୍ଗନ କରି ଶୟନ କରିଅଛନ୍ତି । ଦେଖ, ଯେପରି ବର୍ଷା-କାଳରେ ଗିରିଗହ୍ୱର ମୁଖରୁ ଜଳମିଶ୍ରିତ ଗୈରିକ ଧାତୁ ସ୍ରାବିତ ହୁଏ, ସେହିପରି ଗିରିଶୃଙ୍ଗ ଓ ଐରାବତତୁଲ୍ୟ ହସ୍ତିମାନେ ତୁମ୍ଭର ଶରଦ୍ୱାରା କ୍ଷତବିକ୍ଷତ ହୋଇଥିବାରୁ ଗହ୍ୱର ସଦୃଶ ସେହି କ୍ଷତମୁଖରୁ ରୁଧିରଧାରା କ୍ଷରିତ ହେଉଅଛି । ସ୍ୱର୍ଣ୍ଣାଳଙ୍କାରବିଭୂଷିତ ଏହିସବୁ ଅଶ୍ୱ ଓ ହସ୍ତିମାନେ ତୁମ୍ଭର ବାଣରେ ସମାହତ ଓ ରଣସ୍ଥଳରେ ନିପତିତ ହୋଇ ବିକଟ ଶବ୍ଦ କରୁଅଛନ୍ତି । ୫୧ । ଦେଖ, ସାରଥୀ ଓ ରଥବିହୀନ ଗନ୍ଧର୍ବନଗରାକାର ରଥସବୁ ଧ୍ୱଜ, ପତାକା, ଅକ୍ଷ, ଚକ୍ର, କୂବର, ଯୁଗକାଷ୍ଠ, ଈଷା ଓ ବନ୍ଧୁରବିହୀନ ହୋଇ ପୃଥିବୀରେ ନିପତିତ ହୋଇଅଛି । ଶତଶତ ସହସ୍ର ସହସ୍ର ଧନୁ ଓ ଅସିଚର୍ମ୍ମଧାରୀ ପଦାତିଗଣ ସର୍ବାଙ୍ଗରେ ପୃଥିବୀ ଆଲିଙ୍ଗନ-ପୂର୍ବକ ରୁଧିରକ୍ତ କଳେବରରେ ପାଂଶୁବିଲୁଣ୍ଠିତ କେଶରେ ଶୟନ କରୁ-

ଅଛନ୍ତି । ଦେଖ, ସେମାନଙ୍କର ଶରୀର ତୁମ୍ଭର ଶରନିକରଦ୍ୱାରା ବିଦୀର୍ଣ୍ଣ ହୋଇଅଛି । ୫୫ ।

ହେ ନରଶ୍ରେଷ୍ଠ ଅର୍ଜ୍ଜୁନ ! ଦେଖ, ଏହି ରଣସ୍ଥଳ ଇତସ୍ତତଃ ନିପତିତ ତୁରଙ୍ଗ, ମାତଙ୍ଗ ଓ ଶତାଙ୍ଗମାନଙ୍କଦ୍ୱାରା ସଙ୍କୁଳ ହୋଇଅଛି ଓ ବସା, ମାଂସ ଓ ନିରନ୍ତର ରୁଧିର ପ୍ରବାହରେ କର୍ଦ୍ଦମମୟ ହୋଇଅଛି । ଅତଏବ ଏହା ନିଶାଚର, ବୃକ ପ୍ରଭୃତି ଶ୍ୱାପଦ ଓ ପିଶାଚମାନଙ୍କର ହର୍ଷଜନକ ହୋଇ ଦୁର୍ନିରୀକ୍ଷ ହୋଇଅଛି । ୫୬ । ହେ ମହାବାହୋ ! ରଣାଙ୍ଗନରେ ଅଦ୍ୟ ଏହି ଯଶୋବର୍ଦ୍ଧନକର ମହତ୍‌କାର୍ଯ୍ୟ ତୁମ୍ଭଠାରେ ଓ ଦାନବକୁଳସଂହାରକାରୀ ଦେବସତ୍ତମ ଶତକ୍ରତୁଙ୍କଠାରେ ସମ୍ଭାବିତ । ୫୭ ।

ସଞ୍ଜୟ କହିଲେ—ହେ ମହାରାଜ ! ଶତ୍ରୁହନ୍ତା ଜନାର୍ଦ୍ଦନ ଏହିପରି କିରୀଟୀଙ୍କୁ ସେହି ରଣଭୂମି ପ୍ରଦର୍ଶନ ପୂର୍ବକ ପାଞ୍ଚଜନ୍ୟ ଶଙ୍ଖଧ୍ୱନି କରୁକରୁ ସତ୍ୱର ରଥ ନେଇ ଅଜାତଶତ୍ରୁ ରାଜା ଯୁଧିଷ୍ଠିରଙ୍କ ସମକ୍ଷରେ ଉପସ୍ଥିତ ହୋଇ ଜୟଦ୍ରଥର ବଧ ବିଷୟକ ସମସ୍ତ ବୃତ୍ତାନ୍ତ ତାହାଙ୍କୁ ବିଜ୍ଞାପିତ କଲେ । ୫୮ ।

---

## ୧୪୯ ଅଧ୍ୟାୟ

ସଞ୍ଜୟ କହିଲେ—ହେ ରାଜନ୍ ! ତଦନନ୍ତର ବାସୁଦେବ ରାଜା ଯୁଧିଷ୍ଠିରଙ୍କ ସମୀପସ୍ଥ ହୋଇ ପ୍ରହୃଷ୍ଟ ଚିତ୍ତରେ ଜୟଦ୍ରଥ ବଧ ବିଷୟକ ସମସ୍ତ ବୃତ୍ତାନ୍ତ ଏହିପରି ବର୍ଣ୍ଣନା କଲେ । ୧ । ହେ ନରୋତ୍ତମ ରାଜେନ୍ଦ୍ର ! ଭାଗ୍ୟକ୍ରମେ ଆପଣଙ୍କ ଶତ୍ରୁ ନିହତ ହେବାରୁ ଆପଣ ପରିବର୍ଦ୍ଧିତ ହେଲେ । ଭାଗ୍ୟକ୍ରମେ ଆପଣଙ୍କ କନିଷ୍ଠଭ୍ରାତା ଅର୍ଜ୍ଜୁନ ପ୍ରତିଜ୍ଞାରୁ ସମୁତ୍ତୀର୍ଣ୍ଣ ହୋଇ-ଅଛନ୍ତି । ୨ । ଶତ୍ରୁପୁରବିଜୟୀ ରାଜା ଯୁଧିଷ୍ଠିର କୃଷ୍ଣଙ୍କ ବାକ୍ୟ ଶ୍ରବଣରେ ପରମ ଆହ୍ଲାଦିତ ହୋଇ ଆପଣା ରଥରୁ ଅବତରଣ ପୂର୍ବକ ଆନନ୍ଦାଶ୍ରୁ-ପୂର୍ଣ୍ଣଲୋଚନରେ କୃଷ୍ଣ ଓ ଅର୍ଜ୍ଜୁନ ଦୁହିଙ୍କୁ ଆଲିଙ୍ଗନ କଲେ । ତତ୍ପରେ କମଳପ୍ରଭ ଶୁଭ୍ରବର୍ଣ୍ଣ ମୁଖମଣ୍ଡଳକୁ ପରିମାର୍ଜିତ କରି କୃଷ୍ଣ ଓ ଧନଞ୍ଜୟଙ୍କୁ କହିଲେ, ହେ କମଳଲୋଚନ କୃଷ୍ଣ ! ଯେପରି ସମୁଦ୍ରତାରଣେଚ୍ଛୁ ବ୍ୟକ୍ତି

କୃଳପ୍ରାପ୍ତ ହୁଅଇନାହିଁ, ଏମନ୍ତସ୍ଥଳରେ ଜୟଦ୍ରଥ ବଧବୃତ୍ତାନ୍ତପ୍ରେଣୀ ଏହି ମଙ୍ଗଳମୟୀ ବାର୍ତ୍ତା ତୁମ୍ଭମୁଖରୁ ଶ୍ରବଣ କରି ଆମ୍ଭେ ଆନନ୍ଦର ସୀମାଲାଭ କରି-ପାରୁନାହୁଁ ।

ହେ ମହାରଥ ବୀରଦ୍ୱୟ ! ଅଦ୍ୟ ଭାଗ୍ୟକ୍ରମେ ପାପାତ୍ମା, ନରାଧମ ସିନ୍ଧୁରାଜ ନିହତ ହୋଇଅଛି । ତୁମ୍ଭେମାନେ ପ୍ରତିଜ୍ଞାସାଗରରୁ ଉତ୍ତୀର୍ଣ୍ଣ ହୋଇଅଛ । ଆମ୍ଭେ ମହତ୍ତ୍ୱ ପ୍ରୀତି ପ୍ରାପ୍ତ ହୋଇଅଛୁଁ ।

ହେ କୃଷ୍ଣ ! ଧୀମାନ୍ ପାର୍ଥ ତୁମ୍ଭ କର୍ତ୍ତୃକ ରକ୍ଷିତ ହୋଇ ଦୁରାତ୍ମା ଜୟଦ୍ରଥକୁ ବିନାଶପୂର୍ବକ ଅତି ଅଦ୍ଭୁତକାର୍ଯ୍ୟ କରିଅଛନ୍ତି । ୮ । କିନ୍ତୁ ତୁମ୍ଭେ ଯେଉଁମାନଙ୍କର ଆଶ୍ରୟ ପୁଣି ପ୍ରତିନିୟତ ସର୍ବପ୍ରକାର ଯତ୍ନସହକାରେ ତୁମ୍ଭେ ଯେଉଁମାନଙ୍କର ପ୍ରିୟ ଓ ହିତକାର୍ଯ୍ୟରେ ନିରତ ସେମାନଙ୍କ ପକ୍ଷରେ ଏପରି କାର୍ଯ୍ୟ ବିଶେଷ ଆଶ୍ଚର୍ଯ୍ୟ ନୁହେ । ହେ ମଧୁସୂଦନ ! ତୁମ୍ଭେ ତ୍ରିଲୋକଗୁରୁ, ତୁମ୍ଭେ ସହାୟ ଥିଲେ ତ୍ରିଲୋକମଧ୍ୟରେ କୌଣସି କାର୍ଯ୍ୟ ଦୁଷ୍କର ହୁଅଇ ନାହିଁ । ଆମ୍ଭେମାନେ କେବଳ ତୁମ୍ଭର ପ୍ରସାଦରୁ ଅରାତି-ମାନଙ୍କୁ ପରାଜିତ କରୁଅଛୁଁ ।

ହେ ଉପେନ୍ଦ୍ର ! ଯେପରି ଦେବାସୁର ସଂଗ୍ରାମ ସମୟରେ ଦେବଗଣ ଅସୁରବଧାର୍ଥୀ ହୋଇ ଇନ୍ଦ୍ରଙ୍କୁ ଆଶ୍ରୟ କରିଥିଲେ, ସେହିପରି ଆମ୍ଭେମାନେ ତୁମ୍ଭଙ୍କୁ ଆଶ୍ରୟ କରି ଏହି ଶସ୍ତ୍ର ସମୁଦ୍ୟମ ବ୍ୟାପାରରେ ପ୍ରବୃତ୍ତ ହୋଇଅଛୁଁ । ହେ ଜନାର୍ଦ୍ଦନ ! ଅଦ୍ୟ ଫାଲ୍‌ଗୁନ ତୁମ୍ଭର ବୁଦ୍ଧି ଓ ବଳବୀର୍ଯ୍ୟ ପ୍ରଭାବରୁ ଯେଉଁ କାର୍ଯ୍ୟ ସମ୍ପାଦନ କରିଅଛନ୍ତି, ତାହା ଦେବତାମାନଙ୍କ ଦ୍ୱାରା ମଧ୍ୟ ନିଷ୍ପନ୍ନ ହେବା ଅସମ୍ଭବ । ଆମ୍ଭେ ତୁମ୍ଭର ବାଲ୍ୟକାଳାବଧି ଅନେକ ଅନେକ ଦିବ୍ୟ ଓ ଅମାନୁଷିକ କାର୍ଯ୍ୟସମୂହର କଥା ଶ୍ରବଣ କରିଅଛୁଁ । ଅତଏବ ତୁମ୍ଭେ ଯେତେବେଳେ ସ୍ନେହାନୁରାଗ-ବଶରୁ ଆମ୍ଭମାନଙ୍କ ପ୍ରତି ଅନୁଗ୍ରହ କରିଅଛ, ଆମ୍ଭେ ସେହିସମୟରୁ ଜାଣିଅଛୁଁ ଯେ ଆମ୍ଭର ଶତ୍ରୁସମସ୍ତ ନିହତ ହୋଇଅଛନ୍ତି ଓ ପୃଥିବୀ ଆମ୍ଭର ହସ୍ତଗତ ହୋଇଅଛି । ୧୪ । ତୁମ୍ଭର ପ୍ରସାଦରୁ ଦେବରାଜ ଇନ୍ଦ୍ର ସହସ୍ର ସହସ୍ର ଦାନବଦଳନପୂର୍ବକ ତ୍ରିଲୋକ ମଧ୍ୟରେ ଜୟଲାଭ କରି ଦେବଗଣଙ୍କର ଈଶ୍ୱର ହୋଇଅଛନ୍ତି । ୧୫ ।

ହେ ବୀର ! ତୁମ୍ଭର ପ୍ରସାଦରୁ ଏହି ଚରାଚର ପୃଥିବୀର ସମୁଦାୟ ଲୋକେ ସ୍ୱସ୍ୱ ଧର୍ମ୍ମ ଅବଲମ୍ବନପୂର୍ବକ ନିତ୍ୟ ଜପ ହୋମାଦିର ଅନୁଷ୍ଠାନରେ ତତ୍ପର ହୋଇଅଛନ୍ତି । ୧୬ । ପୂର୍ବେ ସମସ୍ତ ଜଗତ୍ ଏକାର୍ଣ୍ଣବମୟ ହୋଇ ଗାଢ଼ ଅନ୍ଧକାରରେ ଆଚ୍ଛନ୍ନ ଥିଲା । କେବଳ ତୁମ୍ଭ ପ୍ରସାଦରୁ ପୁନର୍ବାର ତାହା ବ୍ୟକ୍ତ ହୋଇଅଛି । ୧୭ ।

ହେ କେଶବ ! ତୁମ୍ଭେ ସର୍ବଲୋକର ସ୍ରଷ୍ଟା, ପରମାତ୍ମା, ଅବ୍ୟୟ, ପୁରାଣପୁରୁଷ, ଦେବଦେବ, ସନାତନ, ପରାତ୍ପର ଓ ପରମପୁରୁଷ, ତୁମ୍ଭର ଆଦି ନାହିଁ, ନିଧନ ନାହିଁ । ତୁମ୍ଭେ ଯେଉଁମାନଙ୍କର ନୟନର ପଥରେ ପତିତ ହୁଅ ସେମାନେ କେବେହେଁ ମୋହଯୁକ୍ତ ହୁଅନ୍ତି ନାହିଁ । ହେ ହୃଷୀକେଶ ! ତୁମ୍ଭେ ଭକ୍ତଜନମାନଙ୍କୁ ଆପଦରୁ ଉଦ୍ଧାର କର । ଯେ ତୁମ୍ଭର ଶରଣାପନ୍ନ ହୁଏ ସେ ପରମ ଐଶ୍ୱର୍ଯ୍ୟ ଲଭ କରେ । ୨୧ ।

ହେ ପରମାତ୍ମନ୍ ! ତୁମ୍ଭେ ବୃହଦ୍‌ବେଦରେ ଗୀତ ହୁଅ । ଆମ୍ଭେ ତୁମ୍ଭଙ୍କୁ ପ୍ରାପ୍ତ ହୋଇ ଅତ୍ୟୁତ୍ତମ ଐଶ୍ୱର୍ଯ୍ୟ ଭୋଗ କରୁଅଛୁଁ । ୨୨ । ହେ ନରେଶ୍ୱର ! ତୁମ୍ଭେ ପରମେଶ୍ୱର, ତିର୍ଯ୍ୟକ୍‌ମାନଙ୍କର ଈଶ୍ୱର ଓ ଈଶ୍ୱରଙ୍କର ଈଶ୍ୱର । ହେ ପୁରୁଷୋତ୍ତମ ! ଅତଏବ ତୁମ୍ଭଙ୍କୁ ନମସ୍କାର । ୨୩ । ହେ ମାଧବ ! ହେ ପ୍ରଭୋ ! ତୁମ୍ଭେ ଈଶଙ୍କର ଈଶ, ଈଶ୍ୱର ଓ ଈଶାନ । ତୁମ୍ଭେ ଜୟଲାଭରେ ପରିବର୍ଦ୍ଧିତ ହୁଅ । ହେ ସର୍ବାତ୍ମନ୍ ! ହେ ପୃଥୁଲୋଚନ ! ତୁମ୍ଭେ ସର୍ବଲୋକର ଆଦିକାରଣ ଓ ପ୍ରଳୟକର୍ତ୍ତା । ୨୪ । ଯେ ଧନଞ୍ଜୟର ସଖା, ଯେ ଧନଞ୍ଜୟର ହିତାକାଙ୍କ୍ଷୀ ଓ ଯେ ଧନଞ୍ଜୟଙ୍କର ରକ୍ଷାକର୍ତ୍ତା ସେ ତୁମ୍ଭଙ୍କୁ ପ୍ରାପ୍ତ ହୋଇ ସୁଖଭୋଗ କରନ୍ତି । ୨୫ । ହେ ନିଷ୍କଳ ! ତୁମ୍ଭର ତତ୍ତ୍ୱଜ୍ଞ ପୁରାତନ ଋଷି ମହାମୁନି ମାର୍କଣ୍ଡେୟ ଆମ୍ଭ ନିକଟରେ ତୁମ୍ଭର ପ୍ରଭାବ ଓ ମହାତ୍ମ୍ୟ ପୂର୍ବେ କୀର୍ତ୍ତନ କରିଅଛନ୍ତି । ୨୬ ।

ପୁଣି ଅସିତ, ଦେବଳ, ମହାତପା ନାରଦ ଓ ଆମ୍ଭମାନଙ୍କର ପିତାମହ ମହର୍ଷି ବ୍ୟାସ ତୁମ୍ଭଙ୍କୁ ପରମ ବିଧାତା ବୋଲି କୀର୍ତ୍ତନ କରନ୍ତି । ତୁମ୍ଭେ ତେଜୋମୟ ପରମବ୍ରହ୍ମ ସତ୍ୟ ଓ ମହତ୍ ତପସ୍ୟା ସ୍ୱରୂପ । ତୁମ୍ଭେ

ଏହି ନିଖିଳ ମଧ୍ୟରେ ଉତ୍କୃଷ୍ଟ ମୂର୍ତ୍ତିମାନ୍ ଯଶଃ, ଜଗତର କାରଣ ଓ ମଙ୍ଗଳ-ସ୍ୱରୂପ । ଏହି ସ୍ଥାବର ଜଙ୍ଗମାତ୍ମକ ଜଗତ୍ ତୁମ୍ଭ କର୍ତ୍ତୃକ ସୃଷ୍ଟ ହୋଇ ପ୍ରଳୟକାଳରେ ପୁନର୍ବାର ତୁମ୍ଭଠାରେ ବିଲୀନ ହୁଏ । ବେଦଜ୍ଞ ବ୍ରାହ୍ମଣଗଣ ତୁମ୍ଭଙ୍କୁ ଜନ୍ମମରଣବର୍ଜିତ, ଦ୍ୟୋତନାତ୍ମକ, ବିଶ୍ୱନିୟନ୍ତା, ପ୍ରଜାପତି, ଧାତା, ଅଜ ଓ ଅବ୍ୟକ୍ତ ବୋଲି କୀର୍ତ୍ତନ କରନ୍ତି । ତୁମ୍ଭେ ସର୍ବଭୂତର ଆତ୍ମା, ମହାତ୍ମା, ଅନନ୍ତ ଓ ବିଶ୍ୱତୋମୁଖ । ତୁମ୍ଭେ ଏହି ଜଗତର ପାଳୟିତା ଓ ଆଦିସ୍ୱରୂପ, ତୁମ୍ଭେ ଅବ୍ୟକ୍ତ ଅତଏବ ଦେବତାମାନେ ତୁମ୍ଭଙ୍କୁ ଅବଗତ ହୋଇ ପାରନ୍ତି ନାହିଁ । ତୁମ୍ଭେ ସର୍ବଜୀବାଶ୍ରୟ, ପରମଦେବତା, ପରମାତ୍ମା, ସର୍ବେଶ୍ୱର, ଜ୍ଞାନରକାରଣ, ହିତାପହାରୀ, ସର୍ବବ୍ୟାପୀ ଓ ମୁମୁକ୍ଷୁମାନଙ୍କର ପରମାଶ୍ରୟ । ତୁମ୍ଭେ ସନାତନ, ପରମପୁରୁଷ, ସମସ୍ତ ପୁରାତନମାନଙ୍କର ପ୍ରଧାନ । ୩୨ । ହେ ପ୍ରଭୋ ! ତୁମ୍ଭର ଏହିପରି ଗୁଣବିଶିଷ୍ଟ ଅତୀତ ଅନାଗତ ଓ ବର୍ତ୍ତମାନ ଦୈବ ଓ ମାନୁଷ କର୍ମ୍ମସବୁକୁ ସଂଖ୍ୟାକରି ହେବନାହିଁ । ୩୩ । ପରନ୍ତୁ ଆମ୍ଭେମାନେ ଯେତେବେଳେ ତୁମ୍ଭଙ୍କୁ ସର୍ବଗୁଣସମନ୍ୱିତ ସୁହୃତ୍‌ରୂପରେ ପ୍ରାପ୍ତ ହୋଇଅଛୁଁ, ସେତେ-ବେଳେ ଇନ୍ଦ୍ରାଦି ସମସ୍ତ ଦେବଗଣଙ୍କର ସର୍ବତୋଭାବରେ ରକ୍ଷଣୀୟ ହୋଇଅଛୁଁ । ୩୪ । ମହାଯଶା ବାସୁଦେବ ଧର୍ମ୍ମରାଜଙ୍କର ଏହିପରି ସ୍ତୁତିବାକ୍ୟ ଶ୍ରବଣ କରି ତାହାଙ୍କୁ କହିଲେ ।

ହେ ମହାରାଜ ! ଏପରି ବାକ୍ୟ ଆପଣଙ୍କର ଉପଯୁକ୍ତ ହୋଇଅଛି । ୩୫ । ପରନ୍ତୁ ଆପଣଙ୍କ ସାଧୁତା, ସରଳତା ପୁଣି ଉଗ୍ରତର ତପସ୍ୟା ଓ ଅସାମାନ୍ୟ ଧର୍ମ୍ମପ୍ରଭାବରୁ ପାପାତ୍ମା ଜୟଦ୍ରଥ ନିହତ ହୋଇଅଛି । ୩୬ । ହେ ମହାରାଜ ! ପୁରୁଷଶାର୍ଦ୍ଦୂଳ ଜିଷ୍ଣୁ କେବଳ ଆପଣଙ୍କ ଅନୁଧ୍ୟାନରେ ବର୍ଦ୍ଧିତତେଜା ହୋଇ ସହସ୍ର ସହସ୍ର ଯୋଦ୍ଧାମାନଙ୍କୁ ନିପାତିତ କରି ଜୟଦ୍ରଥକୁ ସଂହାର କରିଅଛନ୍ତି । ୩୭ । ଏହି ସଂସାର ମଧ୍ୟରେ କୃତିତ୍ୱ, ବାହୁବୀର୍ଯ୍ୟ, ଅଚଞ୍ଚଳତା, ଶୀଘ୍ରତା ଓ ଅମୋଘ ବୁଦ୍ଧିରେ ପାର୍ଥଙ୍କତୁଲ୍ୟ ଆଉ କୌଣସି ପୁରୁଷ ବିଦ୍ୟମାନ ନାହାନ୍ତି । ୩୮ । ସୁତରାଂ ଏହିସମସ୍ତ କାରଣରୁ ଆପଣଙ୍କ ଭ୍ରାତା ଅର୍ଜ୍ଜୁନ କୌରବ ସୈନ୍ୟମାନଙ୍କୁ କ୍ଷୟ କରି ଜୟଦ୍ରଥଙ୍କ ମସ୍ତକଚ୍ଛେଦନରେ ସମର୍ଥ ହୋଇଅଛନ୍ତି । ୩୯ । ତଦନନ୍ତର

ମାତକୁଶଳ, ଧର୍ମନନ୍ଦନ ଯୁଧିଷ୍ଠିର ଅର୍ଜୁନଙ୍କୁ ଆଲିଙ୍ଗନ ଓ ତାହାଙ୍କ ବଦନ ପରିମାର୍ଜନ ପୂର୍ବକ ଏହିପରି ଉତ୍ସାହିତ କଲେ । ୪୦ ।

ହେ ଫାଲ୍‌ଗୁନ ! ଅଦ୍ୟ ତୁମ୍ଭେ ସମର କ୍ଷେତ୍ରରେ ଅତୀବ ସୁମହତ୍ କାର୍ଯ୍ୟ କରିଅଛ । ତୁମ୍ଭର ସେହି କାର୍ଯ୍ୟ ଇନ୍ଦ୍ରାଦି ଦେବଗଣଙ୍କର ମଧ୍ଯ ଅଶକ୍ୟ ଓ ଅବିସହ୍ୟ । ୪୧ । ହେ ଶତ୍ରୁହନ୍ ! ଭାଗ୍ୟକ୍ରମେ ତୁମ୍ଭେ ଶତ୍ରୁସଂହାର ପୂର୍ବକ ମହାଭାରରୁ ଉତ୍ତୀର୍ଣ୍ଣ ହେଲ । ଭାଗ୍ୟକ୍ରମେ ଜୟଦ୍ରଥଙ୍କୁ ବିନାଶ କରି ତୁମ୍ଭର ପ୍ରତିଜ୍ଞା ସଫଳ କଲ । ୪୨ । ମହାଯଶା ଧର୍ମରାଜ ଯୁଧିଷ୍ଠିର ଗୁଡ଼ାକେଶ ଅର୍ଜୁନଙ୍କୁ ଏହି କଥା କହି ପବିତ୍ର ଗନ୍ଧସମନ୍ୱିତ ହସ୍ତଦ୍ୱାରା ତାହାଙ୍କର ପୃଷ୍ଠଦେଶ ସ୍ପର୍ଶ କଲେ । ୪୩ । ମହାତ୍ମା କେଶବ ଓ ଅର୍ଜୁନ ଧର୍ମରାଜଙ୍କର ବାକ୍ୟ ଶ୍ରବଣ କରି ରାଜା ଯୁଧିଷ୍ଠିରଙ୍କୁ କହିଲେ, ୪୪ । ହେ ମହାରାଜ ! ପାପାତ୍ମା ସିନ୍ଧୁରାଜ ଜୟଦ୍ରଥ ଆପଣଙ୍କ କୋପାନଳରେ ଦଗ୍ଧ ହୋଇଅଛି ଓ ଆମ୍ଭେମାନେ ଧୃତରାଷ୍ଟ୍ରଙ୍କର ସୁମହତ୍ ସୈନ୍ୟସାଗରରୁ ଉତ୍ତୀର୍ଣ୍ଣ ହୋଇଅଛୁଁ । ଧୃତରାଷ୍ଟ୍ର ପୁତ୍ରଙ୍କର ଏହି ସୁମହତ୍ ଉଦ୍ଧତ ସୈନ୍ୟମଧ୍ୟରେ ଯେଉଁମାନେ ନିହତ ହୋଇଅଛନ୍ତି ଓ ନିହତ ହେବେ ତାହା ଆପଣଙ୍କର କ୍ରୋଧାଗ୍ନିପ୍ରଯୁକ୍ତ ବୋଲି ଜାଣିବେ ।

ହେ ମହାରାଜ ! ଏହି ସମସ୍ତ କୌରବଗଣ ଆପଣଙ୍କ କୋପରେ ନିହତ ହୋଇଅଛନ୍ତି ବୋଲି ମନେ କରନ୍ତୁ । କାରଣ ଆପଣ ଯାହାଙ୍କୁ କୋପଦୃଷ୍ଟିରେ ଥରେମାତ୍ର ଦେଖନ୍ତି ସେ ତତ୍‌କ୍ଷଣାତ୍ ବିନଷ୍ଟ ହୁଏ । ଆପଣ ବୀର ପୁରୁଷ ଅତଏବ ଦୁର୍ବୁଦ୍ଧି ଦୁର୍ଯୋଧନ ଯେତେବେଳେ ଆପଣଙ୍କୁ କୋପାନ୍ୱିତ କରିଅଛି, ସେତେବେଳେ ସେ ନିଶ୍ଚୟ ବନ୍ଧୁବର୍ଗଙ୍କ ସହିତ ସମରରେ ପ୍ରାଣତ୍ୟାଗ କରିବ । ୪୭ । ଦେଖନ୍ତୁ, କୁରୁପିତାମହ ଭୀଷ୍ମ ଦେବଗଣଙ୍କର ମଧ୍ଯ ଅଜେୟ କିନ୍ତୁ ସେ ଆପଣଙ୍କ କୋପପ୍ରଭାବରୁ ପରାଭୂତ ହୋଇ ଶରଶଯ୍ୟାରେ ଶୟନ କରିଅଛନ୍ତି । ଅତଏବ ହେ ଶତ୍ରୁ-ସୂଦନ ମହାରାଜ ! ଆପଣ ଯେଉଁମାନଙ୍କ ପ୍ରତି କୁପିତ ହୁଅନ୍ତି ସେମାନଙ୍କର ସଂଗ୍ରାମରେ ଜୟଲାଭ କରିବା ଅତିଶୟ ଦୁର୍ଲ୍ଲଭ । ସେମାନଙ୍କୁ ନିଶ୍ଚୟ ମୃତ୍ୟୁମୁଖଗତ ବୋଲି ଆପଣ ଅବଧାରଣ କରିବେ । ୪୯ । ହେ ମାନଦ ! ଆପଣ ଯେଉଁମାନଙ୍କ ପ୍ରତି କୁପିତ ହୁଅନ୍ତି, ଅଳ୍ପକାଳ

ମଧ୍ୟରେ ନଷ୍ଟପ୍ରାୟ ସେମାନଙ୍କର ରାଜ୍ୟ, ପ୍ରିୟ-ପ୍ରାଣ, ପୁତ୍ର ଓ ବିବିଧପ୍ରକାର ସୁଖ ବିଲୁପ୍ତ ହୁଏ । ୫୦ ।

ହେ ଶତ୍ରୁତାପନ ମହାରାଜ ! କୌରବମାନଙ୍କ ପ୍ରତି ଆପଣ ଯେତେ-ବେଳେ ଅତିଶୟ କୁପିତ ହୋଇଅଛନ୍ତି, ତେତେବେଳେ ଆମ୍ଭେ ସେମାନଙ୍କୁ ପୁତ୍ର, ପଶୁ ଓ ବନ୍ଧୁବର୍ଗଙ୍କ ସହିତ ନିହତ ବୋଲି ମନେ କରୁଁ । ୫୧ । ତଦନନ୍ତର ଶସ୍ତ୍ରକ୍ଷତବିକ୍ଷତାଙ୍ଗ ମହାବାହୁ ମହାଧନୁର୍ଦ୍ଧର ରଥିଶ୍ରେଷ୍ଠ ଭୀମ ଓ ସାତ୍ୟକି ପାଣ୍ଡବଜ୍ୟେଷ୍ଠଗୁରୁ ଯୁଧିଷ୍ଠିରଙ୍କୁ ଅଭିବାଦନ କରି ପାଞ୍ଚାଳସୈନ୍ୟ ଦ୍ୱାରା ପରିବେଷ୍ଟିତ ହୋଇ ଭୂତଳରେ ଅବସ୍ଥାନ କଲେ । କୁନ୍ତୀନନ୍ଦନ ଯୁଧିଷ୍ଠିର, ପ୍ରଫୁଲ୍ଲଚିତ୍ତ ଭୀମ ଓ ସାତ୍ୟକି ଦୁହିଁଙ୍କୁ କୃତାଞ୍ଜଳିପୂର୍ବରେ ସମ୍ମୁଖରେ ଅବସ୍ଥିତ ହେବାର ଅବଲୋକନ କରି ଅଭିନନ୍ଦନ କରି କହିଲେ, ହେ ବୀରଦ୍ୱୟ ! ଭାଗ୍ୟକ୍ରମେ ଆମ୍ଭେ ତୁମ୍ଭ ଦୁହିଁଙ୍କୁ ଦ୍ରୋଣରୂପ ଗ୍ରାହଦ୍ୱାରା ଦୁରାଧର୍ଷ ଓ ହୃଦିକାତ୍ମଜ କୃତବର୍ମ୍ମାରୂପ ମକରଦ୍ୱାରା ପରିବେଷ୍ଟିତ କୌରବ ସୈନ୍ୟସାଗର ମଧ୍ୟରୁ ବିମୁକ୍ତ ହେବାର ଦେଖିଲୁଁ । ଭାଗ୍ୟକ୍ରମେ ତୁମ୍ଭେମାନେ ଏହି ପୃଥିବୀର ସମସ୍ତ ନରପତିମାନଙ୍କୁ ପରାଜିତ କରିଅଛ । ଭାଗ୍ୟକ୍ରମେ ତୁମ୍ଭ ଦୁହିଁଙ୍କୁ ସମରବିଜୟୀ ହୋଇ ଆଗମନ କରିବାର ଦେଖିଲୁଁ । ଭାଗ୍ୟକ୍ରମେ ବିବିଧ ଶସ୍ତ୍ରଦ୍ୱାରା ମହାବଳ ଦ୍ରୋଣ ଓ କୃତବର୍ମ୍ମାଙ୍କୁ ପୁଣି ପୁରୁଷଶ୍ରେଷ୍ଠ କର୍ଣ୍ଣ ଓ ଶଲ୍ୟଙ୍କୁ ପରାଜିତ କରିଅଛ । ୫୭ । ଭାଗ୍ୟକ୍ରମେ ରଥିଶ୍ରେଷ୍ଠ ସମରବିଶାରଦ ଉଭୟଭ୍ରାତାଙ୍କୁ ମହାସଂଗ୍ରାମ ମଧ୍ୟରୁ ଅକ୍ଷତ-ଶରୀରରେ ପୁନରାଗମନ କରିବାର ଅବଲୋକନ କଲୁଁ । ୫୮ । ତୁମ୍ଭେ ଦୁଇ ବୀର ଆମ୍ଭର ଆଜ୍ଞାନୁବର୍ତ୍ତୀ ଓ ନିୟତ ଆମ୍ଭ ଗୌରବ ରକ୍ଷାନିମିତ୍ତ ତତ୍ପର । ଭାଗ୍ୟକ୍ରମେ ତୁମ୍ଭ ଦୁହିଁଙ୍କୁ ସମରସାଗରରୁ ସମୁତ୍ତୀର୍ଣ୍ଣ ଦେଖିଲୁଁ । ୫୯ । ତୁମ୍ଭେ ଦୁହେଁ ଆମ୍ଭର ପ୍ରାଣତୁଲ୍ୟ, ସମରରେ ଅପରାଜିତ ଓ ସମରଶ୍ଳାଘୀ । ଭାଗ୍ୟକ୍ରମେ ତୁମ୍ଭ ଦୁହିଁଙ୍କୁ ପୁନର୍ବାର ଦେଖିଲୁଁ । ୬୦ ।

କୁନ୍ତୀନନ୍ଦନ ଯୁଧିଷ୍ଠିର ପୁରୁଷଶାର୍ଦ୍ଦୂଳ ଭୀମ ଓ ଯୁଯୁଧାନଙ୍କୁ ଏହିପରି କହି ଆଲିଙ୍ଗନପୂର୍ବକ ଆନନ୍ଦାଶ୍ରୁ ବିସର୍ଜନ କଲେ । ୬୧ । ତଦନନ୍ତର ପାଣ୍ଡବସୈନ୍ୟମାନେ ପ୍ରଫୁଲ୍ଲିତ ହୋଇ ହର୍ଷଭରରେ ଯୁଦ୍ଧ ନିମିତ୍ତ ଉଦ୍ୟୋଗ କଲେ । ୬୨ ।

# ୧୫୦ ଅଧ୍ୟାୟ

ସଞ୍ଜୟ କହିଲେ—ହେ ମହାରାଜ ! ସିନ୍ଧୁରାଜ ଜୟଦ୍ରଥ ନିହତ ହେବାରୁ ଆପଣଙ୍କ ପୁତ୍ର ସୁଯୋଧନ ଦୀନଭାବାପନ୍ନ ହୋଇ ବାଷ୍ପ ବିସର୍ଜନ-କଲେ ଓ ଶତ୍ରୁଜୟରେ ନିରୁତ୍ସାହ ହେଲେ । ୧ । ସେହି ସମୟରେ ସେ ଦୁର୍ମନାୟମାନ ହୋଇ ଭଗ୍ନଦଂଷ୍ଟ୍ର ଭୁଜଙ୍ଗତୁଲ୍ୟ ଉଷ୍ଣ ନିଃଶ୍ୱାସ ପରିତ୍ୟାଗ-ପୂର୍ବକ ସମସ୍ତଙ୍କ ନିକଟରେ ଆପଣାକୁ ଅପରାଧୀ ବୋଧକରି ଅତିଶୟ ବେଦନାପ୍ରାପ୍ତ ହେଲେ । ପୁଣି ସେ ଜୟଶୀଳ ଅର୍ଜୁନ, ଭୀମ ଓ ସାତ୍ୟକି ଏମାନଙ୍କ କର୍ତ୍ତୃକ ଆପଣାର ସୁମହତ୍ ସୈନ୍ୟମାନଙ୍କର ସଂହାର ନିରୀକ୍ଷଣ କରି କୃଶ ଓ ବିବର୍ଣ୍ଣ ହେଲେ ଏବଂ ଦୀନଭାବରେ ରୋଦନ କରି ଏହିପରି ମନେକଲେ ଯେ, ଏହି ପୃଥିବୀରେ କେହି ଅର୍ଜୁନଙ୍କ ସଦୃଶ ଯୋଦ୍ଧା ନାହିଁ । ଦ୍ରୋଣ, କର୍ଣ୍ଣ, କୃପ କିମ୍ବା ଅଶ୍ୱତ୍ଥାମା ଏମାନଙ୍କ ମଧ୍ୟରୁ କେହି କ୍ରୁଦ୍ଧ ଅର୍ଜୁନଙ୍କ ସମ୍ମୁଖରେ ଅବସ୍ଥାନ କରିବାକୁ ସମର୍ଥ ନୁହନ୍ତି । ୫ । ଯେତେ-ବେଳେ ଅର୍ଜୁନ ମଦ୍‌ପକ୍ଷୀୟ ସହସ୍ର ମହାରଥମାନଙ୍କୁ ପରାଜିତ କରି ସିନ୍ଧୁ-ରାଜଙ୍କୁ ସଂହାର କରିଅଛନ୍ତି ଅଥଚ ତାହାଙ୍କୁ କେହି ନିବାରଣ କରିବାକୁ ସମର୍ଥ ହୋଇନାହାଁନ୍ତି ସେତେବେଳେ ସ୍ୱୟଂ ପୁରନ୍ଦର ଆଗମନ କଲେହେଁ ଏହି ନିହତପ୍ରାୟ କୌରବସୈନ୍ୟଙ୍କୁ ଆଉ ରକ୍ଷା କରି ପାରିବେ ନାହିଁ ।୭। ଯାହାଙ୍କୁ ଆଶ୍ରୟ କରି ଏହି ସମରରେ ଶସ୍ତ୍ରସମୁଦ୍‌ଯୋଗ କରାହୋଇଥିଲା ସେହି କର୍ଣ୍ଣ ବର୍ତ୍ତମାନ ପରାଜିତ ହୋଇଅଛନ୍ତି ଓ ଜୟଦ୍ରଥ ମଧ୍ୟ ନିହତ ହୋଇଅଛନ୍ତି । ୮ । ବାସୁଦେବ ଯେତେବେଳେ ଶାନ୍ତିପ୍ରାର୍ଥନା କରିଥିଲେ ସେତେବେଳେ ଯାହାଙ୍କ ବୀର୍ଯ୍ୟକୁ ଆଶ୍ରୟ କରି ସେହି ବାସୁଦେବଙ୍କୁ ଆମ୍ଭେ ତୃଣତୁଲ୍ୟ ଜ୍ଞାନରେ ନିରାକୃତ କରିଥିଲୁଁ, ବର୍ତ୍ତମାନ ତାଦୃଶ କର୍ଣ୍ଣ ମଧ୍ୟ ପରାଜିତ ହୋଇଅଛନ୍ତି । ୯ ।

ହେ ମହାରାଜ ! ସର୍ବ ପାର୍ଥିବମାନଙ୍କର ଅପରାଧକାରୀ ଆପଣଙ୍କ ପୁତ୍ର ଦୁର୍ଯ୍ୟୋଧନ ଏହିପରି କ୍ଳାନ୍ତମନା ହୋଇ ଦ୍ରୋଣଙ୍କୁ ଦର୍ଶନ କରିବା ମାନସରେ ତାହାଙ୍କ ନିକଟକୁ ଗମନ କଲେ । ୧୦ । ତଦନନ୍ତର ସେ ଆଚାର୍ଯ୍ୟଙ୍କ ସମୀପରେ ଶତ୍ରୁମାନଙ୍କର ବିଜୟବୃତ୍ତାନ୍ତ ଓ ନିମ୍ନପ୍ରାୟ କୌରବ-ମାନଙ୍କର ସୁମହତ୍ ସୈନ୍ୟକ୍ଷୟ ବିଷୟ ବର୍ଣ୍ଣନ କଲେ । ୧୧ ।

ଦୁର୍ଯ୍ୟୋଧନ କହିଲେ—ହେ ଆଚାର୍ଯ୍ୟ ! ଅସ୍ମତ୍ପକ୍ଷୀୟ ମୂର୍ଦ୍ଧା-ଭିଷିକ୍ତ ରାଜାଗଣଙ୍କର ବିନାଶ ଅବଲୋକନ କରନ୍ତୁ । ସେମାନେ ଯେଉଁ ମହୈଶ୍ୱର୍ଯ୍ୟସମ୍ପନ୍ନ ପିତାମହ ଭୀଷ୍ମଙ୍କୁ ସମ୍ମୁଖବର୍ତ୍ତୀ କରି ସମରରେ ପ୍ରବୃତ୍ତ ହୋଇଥିଲେ, ଲବ୍ଧସ୍ୱଭାବ ଶିଖଣ୍ଡୀ ତାହାଙ୍କୁ ସଂହାର କରି ପୂର୍ଣ୍ଣମନୋରଥ ହୋଇଅଛି । ବର୍ତ୍ତମାନ ସେ ଓ ଆପଣଙ୍କର ଅପର ଶିଷ୍ୟ ଦୁର୍ଦ୍ଧର୍ଷ ଧୃଷ୍ଟଦ୍ୟୁମ୍ନ ସମସ୍ତ ପାଞ୍ଚାଳମାନଙ୍କଦ୍ୱାରା ପରିବୃତ୍ତ ହୋଇ ସେନାମୁଖରେ ଅବସ୍ଥାନ କରୁଅଛି ।୧୪। ବର୍ତ୍ତମାନ ପୁଣି ସବ୍ୟସାଚୀ ସପ୍ତ ଅକ୍ଷୌହିଣୀ ସେନା ଭେଦ କରି ସିନ୍ଧୁରାଜ ଜୟଦ୍ରଥଙ୍କୁ ବିନାଶ କରିଅଛନ୍ତି । ୧୫ । ବର୍ତ୍ତମାନ ଯେଉଁ ସମସ୍ତ ଉପକାରୀ ସୁହୃଦ୍‌ବର୍ଗ ଆମ୍ଭମାନଙ୍କର ଜୟାଭିଳାଷୀ ହୋଇ ଯମାଳୟକୁ ଗମନ କରିଅଛନ୍ତି ଆମ୍ଭେ ସେମାନଙ୍କର ଋଣରୁ କପରି ମୁକ୍ତ ହେବୁଁ ? ଯେଉଁ ସମସ୍ତ ବସୁଧାଧିପ ରାଜ୍ୟକାମନା କରିଥିଲେ ବର୍ତ୍ତମାନ ସେମାନେ ସମସ୍ତ ଐଶ୍ୱର୍ଯ୍ୟ ପରିତ୍ୟାଗ କରି ବସୁଧାରେ ଶୟନ କରିଅଛନ୍ତି । ୧୬ । ଆମ୍ଭେ ଅତି କାପୁରୁଷ, ଆମ୍ଭେ ମିତ୍ରମାନଙ୍କର ଏହିପରି ବିନାଶ ସାଧନ କରି ସହସ୍ର ଅଶ୍ୱମେଧ ଦ୍ୱାରା ମଧ୍ୟ ଯେ ଆତ୍ମାକୁ ପବିତ୍ର କରିପାରିବୁଁ, ଏପରି ଉତ୍ସାହ ଆମ୍ଭର ହେଉନାହିଁ । ୧୭ । ମୋପରି ଧର୍ମ୍ମକ୍ଷୟକାରୀ ପାପାତ୍ମା ଲୁବ୍ଧକ ନିମିତ୍ତ ଯୁଦ୍ଧାଭିଳାଷୀ ହୋଇ ନରପତିମାନେ ଘୋରତର ସଂଗ୍ରାମ କରି ବୈବସ୍ୱତ ଭବନକୁ ପ୍ରୟାଣ କରିଅଛନ୍ତି । ୧୮ । ପାର୍ଥିବଗଣ ମଧ୍ୟରେ ଏହି ମିତ୍ରଦ୍ରୋହୀକୁ ପୃଥିବୀ ଅବା କି ନିମିତ୍ତ ବିବର ପ୍ରଦାନ କରୁନାହିଁ । ୧୯ । ଯେତେବେଳେ ସମସ୍ତ ନରପତିମାନଙ୍କ ମଧ୍ୟରେ ପିତାମହ ଭୀଷ୍ମ ରୁଧିରକ୍ତକଳେବର ହୋଇ ରଣଭୂମିରେ ଶୟନ କଲେ, ମାତ୍ର ଆମ୍ଭେ ତାହାଙ୍କୁ କୌଣସି ପ୍ରକାରେ ରକ୍ଷା କରି ପାରିଲୁ ନାହିଁ, ତେତେବେଳେ ଆମ୍ଭତୁଲ୍ୟ ଅଧାର୍ମ୍ମିକ ମିତ୍ରଦ୍ରୋହୀ ଓ ଅନାର୍ଯ୍ୟ ପୁରୁଷ କିଏ ଅଛି ? ପର-ଲୋକବିଜୟୀ ଦୁର୍ଦ୍ଧର୍ଷ ପିତାମହ ଅବା ଇନ୍ଦ୍ରଲୋକକୁ ଗମନ କରି ଆମ୍ଭଙ୍କୁ କ'ଣ କହିବେ ? ୨୧ ।

ଦେଖନ୍ତୁ, ମହାଧନୁର୍ଦ୍ଧର ଶୌର୍ଯ୍ୟସମ୍ପନ୍ନ ମହାରଥୀ ଜଳସନ୍ଧ ସମରରେ ଆମ୍ଭ ନିମିତ୍ତ ପ୍ରାଣପଣରେ ଉଦ୍ୟମ କରି ସାତ୍ୟକିଙ୍କ କର୍ତ୍ତୃକ ନିହତ ହୋଇଅଛନ୍ତି । ୨୨ । ପୁଣି କାମ୍ବୋଜରାଜ ସୁଦକ୍ଷିଣ, ଅଳମ୍ବୁଷ ଓ ଅନ୍ୟାନ୍ୟ ବହୁଳ ସୁହୃତ୍ ନରପତିମାନଙ୍କୁ ନିହତ ହେବାର ନିରୀକ୍ଷଣ କରି

ଆମ୍ଭର ଜୀବନରେ କି ପ୍ରୟୋଜନ ? ଏହି ସମସ୍ତ ସମରରେ ଅପରାଙ୍ମୁଖ ବୀରମାନେ ଆମ୍ଭର ଶତ୍ରୁମାନଙ୍କ ଜୟକରଣାଭିଳାଷରେ ଯଥାଶକ୍ତି ଯତ୍ନପର ହୋଇ ଯୁଦ୍ଧ କରି ନିହତ ହୋଇଅଛନ୍ତି । ଅତଏବ ହେ ଶତ୍ରୁତାପନ ଆଚାର୍ଯ୍ୟ ! ଆମ୍ଭେ ମଧ୍ୟ ଅଦ୍ୟ ଶକ୍ତି ପ୍ରକାଶ କରି ସେହି ସମସ୍ତ ନରପତି-ମାନଙ୍କର ଋଣ ପରିଶୋଧ କରି ପଶ୍ଚାତ୍ ଯମୁନାଜଳରେ ସେମାନଙ୍କର ତର୍ପଣ କରିବୁଁ । ୨୫ । ହେ ସର୍ବଶସ୍ତ୍ରଧାରିଶ୍ରେଷ୍ଠ ଆଚାର୍ଯ୍ୟ ! ଆମ୍ଭେ ଆମ୍ଭର ବୀର୍ଯ୍ୟପୁଞ୍ଜ ଓ ଇଷ୍ଟପୂର୍ତ୍ତି ଦ୍ୱାରା ଶପଥପୂର୍ବକ ଆପଣଙ୍କ ନିକଟରେ ସତ୍ୟ ପ୍ରତିଜ୍ଞା କରୁଅଛୁଁ ଯେ, ପାଣ୍ଡବମାନଙ୍କ ସହିତ ସମସ୍ତ ପାଞ୍ଚାଳମାନଙ୍କୁ ସଂହାର କରି ଶାନ୍ତିଲାଭ କରିବୁଁ ନଚେତ୍ ସେମାନଙ୍କ କର୍ତ୍ତୃକ ସମରରେ ନିହତ ହୋଇ ରାଜନ୍ୟଗଣଙ୍କର ସାଲୋକ୍ୟ ପ୍ରାପ୍ତ ହେବୁଁ । ୨୭ ।

ସେହି ପୁରୁଷଶ୍ରେଷ୍ଠମାନେ ଆମ୍ଭ ନିମିତ୍ତ ଯୁଦ୍ଧ କରି ସଂଗ୍ରାମରେ କିରୀଟୀ କର୍ତ୍ତୃକ ନିହତ ହୋଇ ଯେଉଁ ସ୍ଥାନକୁ ଗମନ କରିଅଛନ୍ତି ଆମ୍ଭର ମଧ୍ୟ ସେହି ସ୍ଥାନକୁ ଗମନ କରିବା କର୍ତ୍ତବ୍ୟ । ୨୮ । ହେ ମହାବାହୋ ଆଚାର୍ଯ୍ୟ ! ବର୍ତ୍ତମାନ ଆମ୍ଭର ଯେଉଁମାନେ ସହାୟ ଅଛନ୍ତି, ସେମାନଙ୍କ ମଧ୍ୟରେ ଏପରି କାହାକୁ ଦେଖୁନାହୁଁ ଯେ କି ଶତ୍ରୁମାନଙ୍କ କର୍ତ୍ତୃକ ଅନୁରୁଦ୍ଧ ନୁହନ୍ତି । କାହିଁକି ନା ସେମାନେ ପାଣ୍ଡବ ପକ୍ଷର ଯେପରି ଶ୍ରେୟକାମନା କରନ୍ତି ଆମ୍ଭର ପକ୍ଷରେ ସେପରି କରନ୍ତି ନାହିଁ । ୨୯ ।

ଦେଖନ୍ତୁ, ସତ୍ୟସନ୍ଧ ଭୀଷ୍ମ ସ୍ୱୟଂ ନିଜ ମୃତ୍ୟୁର ଉପାୟ କହିଦେଲେ । ଆପଣ ମଧ୍ୟ ଅର୍ଜ୍ଜୁନଙ୍କ ପ୍ରତି ସ୍ନେହ କରି ଯୁଦ୍ଧରେ ଉପେକ୍ଷା କରିଥାଆନ୍ତି । ଆମ୍ଭ ପକ୍ଷର ବିଜୟୋତ୍କର୍ଷୁ ସମସ୍ତେ ନିହତ ହୋଇଅଛନ୍ତି । ବର୍ତ୍ତମାନ କେବଳ କର୍ଣ୍ଣଙ୍କୁ ଆମ୍ଭ ନିମିତ୍ତ ଜୟାଭିଳାଷୀ ଦେଖୁଅଛୁଁ । ୩୧ । ଯେ ନିର୍ବୋଧ ଶତ୍ରୁକୁ ଚିହ୍ନି ନ ପାରି ମିତ୍ରଜ୍ଞାନରେ ଆପଣା କାର୍ଯ୍ୟରେ ନିଯୁକ୍ତ କରେ ନିଶ୍ଚୟ ତାହାର ଉଦ୍ଦେଶ୍ୟ ବିଫଳ ହୁଏ । ୩୨ । ଆମ୍ଭେ ମୋହଲୁବ୍ଧ ଓ ପାପାତ୍ମା । ସେହିହେତୁ କୁଟିଳାଚାରୀ ଶତ୍ରୁମାନେ ବାକ୍ୟଦ୍ୱାରା ସୌହୃଦ୍ୟ ପ୍ରକାଶ କରି ଆମ୍ଭର ତାଦୃଶ ଭବରେ ସର୍ବଥା କାର୍ଯ୍ୟହାନି କଲେ । ଏହି ନିମିତ୍ତ ବୀର୍ଯ୍ୟବାନ୍ ଜୟଦ୍ରଥ, ଭୂରିଶ୍ରବା, ଅଭୀଷାହ, ଶୂରସେନ, ଶିବି ଓ ବଶାତିଦେଶୀୟ ବୀରମାନେ ନିହତ ହେଲେ ।

ଅତଏବ ହେ ପାଣ୍ଡୁପୁତ୍ରମାନଙ୍କର ଆଚାର୍ଯ୍ୟ ! ସେହି ପୁରୁଷଶ୍ରେଷ୍ଠ-ଆମ୍ଭ ନିମିତ୍ତ ଯୁଦ୍ଧ କରି ସଂଗ୍ରାମରେ କିରୀଟୀଙ୍କ କର୍ତ୍ତୃକ ନିହତ ହୋଇ ଯେଉଁସ୍ଥାନକୁ ଗମନ କରିଅଛନ୍ତି, ଆମ୍ଭେ ମଧ୍ୟ ସେହି ସ୍ଥାନକୁ ଗମନ କରିବୁଁ । ବର୍ତ୍ତମାନ ଆପଣ ଆମ୍ଭଙ୍କୁ ଅନୁମତି ଦିଅନ୍ତୁ । ୩୭ ।

---

# ୧୫୧ ଅଧ୍ୟାୟ

ଧୃତରାଷ୍ଟ୍ର ବୋଇଲେ—ହେ ସଞ୍ଜୟ ! ସିନ୍ଧୁରାଜ ଜୟଦ୍ରଥ ଅର୍ଜ୍ଜୁନଙ୍କ କର୍ତ୍ତୃକ ଓ ଭୂରିଶ୍ରବା ସାତ୍ୟକିଙ୍କ କର୍ତ୍ତୃକ ନିହତ ହୁଅନ୍ତେ ସେ ସମୟରେ ତୁମ୍ଭମାନଙ୍କର ମନ କପରି ହୋଇଥିଲା ଓ ଦୁର୍ଯ୍ୟୋଧନ କୌରବମାନଙ୍କ ମଧ୍ୟରେ ଦ୍ରୋଣାଚାର୍ଯ୍ୟଙ୍କ ନିକଟରେ ତାଦୃଶ ଅନୁତାପ କରିବାରୁ ଆଚାର୍ଯ୍ୟ ତାହାଙ୍କୁ କି ଉତ୍ତର ପ୍ରଦାନ କଲେ ତୁମ୍ଭେ ଏ ସମସ୍ତ ଆମ୍ଭ ନିକଟରେ କୀର୍ତ୍ତନ କର । ୨ ।

ସଞ୍ଜୟ କହିଲେ—ହେ ମହାରାଜ ! ସିନ୍ଧୁରାଜ ଜୟଦ୍ରଥଙ୍କୁ ଓ କୌରବ୍ୟ ଭୂରିଶ୍ରବାଙ୍କୁ ନିହତ ହେବାର ନିରୀକ୍ଷଣ କରି ଆପଣଙ୍କ ସୈନ୍ୟ-ମାନେ ମହାନ୍ ଆର୍ତ୍ତନାଦ କଲେ । ସେମାନେ ଆପଣଙ୍କ ପୁତ୍ରଙ୍କର ମନ୍ତ୍ର-ଣାରେ ଆଉ ଶ୍ରଦ୍ଧା କଲେ ନାହିଁ । କାରଣ ତାହାଙ୍କର ମନ୍ତ୍ରଣା ଦୋଷରୁ ଶତ ଶତ କ୍ଷତ୍ରିୟଶ୍ରେଷ୍ଠମାନେ ବିନଷ୍ଟ ହେଲେ । ୪ ।

ପରନ୍ତୁ ଦ୍ରୋଣାଚାର୍ଯ୍ୟ ଆପଣଙ୍କ ପୁତ୍ରଙ୍କର ସେହି ସମସ୍ତ ବାକ୍ୟ ଶ୍ରବଣ କରି ଦୁର୍ମ୍ମନା ହେଲେ ଓ ସନ୍ତାପିତ ଚିତ୍ତରେ ମୁହୂର୍ତ୍ତେ ଚିନ୍ତାକରି ଉତ୍ତର କଲେ । ୫ । ହେ ଦୁର୍ଯ୍ୟୋଧନ ! ଆମ୍ଭେ ତୁମ୍ଭଙ୍କୁ ନିସ୍ତୃତ କହିଅଛୁଁ ଯେ, ସବ୍ୟସାଚୀ ଏହି ସଂସାର ମଧ୍ୟରେ ଅଜେୟ । ତେବେ ତୁମ୍ଭେ କାହିଁକି ଆମ୍ଭଙ୍କୁ ବାକ୍ୟବାଣରେ ସନ୍ତାପିତ କରୁଅଛ ? ୬ । କିରୀଟୀଙ୍କ କର୍ତ୍ତୃକ ରକ୍ଷିତ ହୋଇ ଶିଖଣ୍ଡୀ ଯେତେବେଳେ ରଣସ୍ଥଳରେ ଭୀଷ୍ମଙ୍କୁ ସଂହାର କଲା ତେତେବେଳେ ସେହି କାର୍ଯ୍ୟଦ୍ୱାରା ଅର୍ଜ୍ଜୁନଙ୍କର ଯଥେଷ୍ଟ ପରିଚୟ ମିଳି-ଅଛି । ୭ ଦେବମାନୁଷଙ୍କର ଅବଧ୍ୟ କୁରୁକୁଳ ଚୂଡ଼ାମଣି ଭୀଷ୍ମଙ୍କୁ ସମରରେ

ନିହତ ହେବାର ନିରୀକ୍ଷଣ କରି ଆମ୍ଭେ ଜାଣିପାରିଅଛୁଁ ଯେ ଏହି ଭାରତୀ-ସେନାର ଆଉ ରକ୍ଷା ନାହିଁ । ଯାହାଙ୍କୁ ଆମ୍ଭେମାନେ ଏହି ତ୍ରିଲୋକସ୍ଥ ପୁରୁଷମାନଙ୍କ ମଧ୍ୟରେ ଶୂର ବୋଲି ମନେ କରିଥିଲୁଁ ସେହି ବୀରବର ଭୀଷ୍ମ ସମରରେ ନିପାତିତ ହେବାରୁ ଆଉ କ'ଣ ଅବଶିଷ୍ଟ ଅଛି ଯେ ଆମ୍ଭେ-ମାନେ ତାହାର ଆଶ୍ରୟ ନେବୁଁ ? ୯ ।

ହେ ବତ୍ସ ଦୁର୍ଯ୍ୟୋଧନ ! ପୂର୍ବେ କୁରୁସଭା ମଧ୍ୟରେ ଶକୁନି ଯେଉଁ-ସବୁ ଅକ୍ଷ ଘେନି କ୍ରୀଡ଼ାକରିଥିଲେ ସେସବୁ ବର୍ତ୍ତମାନ ଶତ୍ରୁସନ୍ତାପକ ନିଶିତ ବାଣ ହୋଇଅଛି । ୧୦ । ସେ ସମୟରେ ବିଦୁର ପୁନଃ ପୁନଃ କହିଲେହେଁ ତୁମ୍ଭେ ଯାହା ଅବଗତ ହୋଇ ପାରିଲ ନାହିଁ । ସେହି ଅକ୍ଷ ବର୍ତ୍ତମାନ ଶରରୂପ ଧାରଣ କରି ଅର୍ଜ୍ଜୁନଙ୍କ କର୍ତ୍ତୃକ ପ୍ରେରିତ ହୋଇ ଆମ୍ଭମାନଙ୍କୁ ବିନାଶ କରୁଅଛି । ୧୧ । ହେ ଦୁର୍ଯ୍ୟୋଧନ ! ପ୍ରଜ୍ଞାବାନ୍ ମହାତ୍ମା ବିଦୁର ବାରମ୍ବାର ବିଳାପ କରି ତୁମ୍ଭ ମଙ୍ଗଳାର୍ଥ ହିତକର ବାକ୍ୟ କହିଲେ ହେଁ ତୁମ୍ଭେ ତାହା ଶ୍ରବଣ ନ କରିବାରୁ ସେହି ଅବମାନନାପ୍ରଯୁକ୍ତ ତୁମ୍ଭର ହେତୁ ଏହି ଘୋରତର କ୍ଷୟବ୍ୟାପାର ଉପସ୍ଥିତ ହୋଇଅଛି । ୧୩ ।

ଯେଉଁ ମୂଢ଼ ଆତ୍ମୀୟ ସୁହୃଦ୍‌ବର୍ଗଙ୍କର ହିତକର ବାକ୍ୟକୁ ଅବମାନନା କରି ସ୍ୱେଚ୍ଛାଚାରୀ ହୋଇ କାର୍ଯ୍ୟ କରେ, ସେ ଅଳ୍ପକାଳ ମଧ୍ୟରେ ସମସ୍ତଙ୍କର ଶୋଚନୀୟ ହୁଏ । ୧୪ । ହେ ଗାନ୍ଧାରୀନନ୍ଦନ ! ତୁମ୍ଭେ ଲୋକସମାଜକୁ ଆନୟନକରିବାରଅଯୋଗ୍ୟା, ସତ୍‌କୁଳଜାତା, ସର୍ବଧର୍ମ୍ମା-ଚରଣଶୀଳା କୃଷ୍ଣାଙ୍କୁ ଯେ ଆମ୍ଭମାନଙ୍କର ସମକ୍ଷରେ ସଭାକୁ ଆନୟନ କରି ଓ ପାଣ୍ଡବମାନଙ୍କୁ ଅନ୍ୟାୟଭାବରେ ଦ୍ୟୁତକ୍ରୀଡ଼ାରେ ପରାଜିତ କରି ରୌରବଚର୍ମ୍ମ ପରିଧାନ କରାଇ ଅରଣ୍ୟକୁ ପ୍ରବ୍ରାଜିତ କରିଥିଲ, ସେହି ଅଧର୍ମ୍ମର ମହତ୍‌ଫଳ ପ୍ରାପ୍ତ ହେଉଅଛ । ଯଦି ଇହଲୋକରେ ତୁମ୍ଭର ଏପରି ଅବସ୍ଥା ନ ହୁଅନ୍ତା ତେବେ ପରଲୋକରେ ତୁମ୍ଭଙ୍କୁ ଏହା ଅପେକ୍ଷା ଅଧିକତର ଫଳଭୋଗ କରିବାକୁ ହୁଅନ୍ତା । ୧୭ ।

ଆମ୍ଭ ବ୍ୟତୀତ ଅନ୍ୟ କେଉଁ ବ୍ରାହ୍ମଣବାଦୀ ମନୁଷ୍ୟ ନିଯୁକ୍ତ ଧର୍ମାଚରଣଶୀଳ ପୁତ୍ରତୁଲ୍ୟ ସେହି ପାଣ୍ଡୁନନ୍ଦନମାନଙ୍କର ବିଦ୍ରୋହାଚରଣରେ

ପ୍ରବୃତ୍ତ ହୁଅନ୍ତା ? ୧୮ । ସେହି ସମୟରେ ତୁମ୍ଭେ କୁରୁସଭାମଧ୍ୟରେ ଶକୁନି ସହିତ ମିଳିତ ହୋଇ ଧୃତରାଷ୍ଟ୍ରଙ୍କ ସମ୍ମତିକ୍ରମେ ପାଣ୍ଡବମାନଙ୍କର ଯେଉଁ କୋପର ଆଦରଣ କରିଅଛ, ତାହା ଦୁଃଶାସନ କର୍ତ୍ତୃକ ବର୍ଦ୍ଧମୂଳ ଓ କର୍ଣ୍ଣକର୍ତ୍ତୃକ ପରିବର୍ଦ୍ଧିତ ହୋଇଅଛି । ପୁଣି ତୁମ୍ଭେ ବିଦୁରଙ୍କର ବାକ୍ୟକୁ ଅନାସ୍ଥା କରି ପୁନଃପୁନଃ ସେହି କୋଧକୁ ଉତ୍ତେଜିତ କରିଅଛ । ୨୦ । ଜୟଦ୍ରଥ ରକ୍ଷାର୍ଥ ସମସ୍ତେତ ଯତ୍ନଶୀଳ ହୋଇ ଅର୍ଜ୍ଜୁନଙ୍କୁ ନିବାରଣ କରିବାରେ ପ୍ରବୃତ୍ତ ହୋଇଥିଲ, ତେବେ ତୁମ୍ଭେ ସମସ୍ତେ କିପାଁ ପରାଭୂତ ହେଲ ? ତୁମ୍ଭମାନଙ୍କ ମଧ୍ୟସ୍ଥଳରେ ଅବସ୍ଥାନ କରି ସୁଦ୍ଧା ସିନ୍ଧୁରାଜ କିପରି ନିହତ ହେଲେ । ୨୧ ।

ହେ କୌରବ ! ତୁମ୍ଭେ ନିଜେ, କର୍ଣ୍ଣ, କୃପ, ଶଲ୍ୟ ଓ ଅଶ୍ୱତ୍ଥାମା ଜୀବିତ ଥାଉଥାଉ ସିନ୍ଧୁରାଜ କିପରି ନିହତ ହେଲେ ? ୨୨ । ଜୟଦ୍ରଥଙ୍କ ପରିତ୍ରାଣାର୍ଥ ସମସ୍ତ ରାଜା କ୍ଷତ୍ରିତର ତେଜପ୍ରକାଶପୂର୍ବକ ଯୁଦ୍ଧ କରିଥିଲେ । ତଥାପି ସେ ତୁମ୍ଭମାନଙ୍କ ମଧ୍ୟରେ ଅବସ୍ଥାନ କରି ମଧ୍ୟ କିପରି ବିନଷ୍ଟ ହେଲେ ? ୨୩ । ସେ ମହୀପତି ଜୟଦ୍ରଥ ତୁମ୍ଭର ଓ ଆମ୍ଭର ପରାକ୍ରମ ପ୍ରଭାବରେ ଅର୍ଜ୍ଜୁନଙ୍କଠାରୁ ପରିତ୍ରାଣ ପ୍ରାପ୍ତିର ଆଶା କରିଥିଲେ । କିନ୍ତୁ ସେ ଫାଲ୍‌ଗୁନଙ୍କଠାରୁ ପରିତ୍ରାଣ ଲାଭ କରିପାରିଲେ ନାହିଁ ।

ଅତଏବ ଆମ୍ଭେ ବର୍ତ୍ତମାନ ଆତ୍ମଜୀବନ ରକ୍ଷାର କୌଣସି ଉପାୟ ଦେଖୁନାହୁଁ । ୨୫ । ଆମ୍ଭେ ଯେପର୍ଯ୍ୟନ୍ତ ଧୃଷ୍ଟଦ୍ୟୁମ୍ନ, ଶିଖଣ୍ଡୀ ଓ ସମସ୍ତ ପାଞ୍ଚାଳମାନଙ୍କୁ ସଂହାର କରିବାକୁ ସମର୍ଥ ନ ହେଉଁ ସେ ପର୍ଯ୍ୟନ୍ତ ଧୃଷ୍ଟଦ୍ୟୁମ୍ନର କୌଟିଲ୍ୟ-ପଙ୍କରେ ଆତ୍ମାକୁ ନିମଗ୍ନପ୍ରାୟ ବୋଧ କରୁଅଛୁଁ । ଅତଏବ ହେ ଭାରତ ! ଆମ୍ଭେ ଯେତେବେଳେ ସିନ୍ଧୁରାଜଙ୍କର ପରିତ୍ରାଣରେ ଅସମର୍ଥ ହୋଇ ସନ୍ତାପିତ ହୋଇଅଛୁଁ ତେତେବେଳେ ତୁମ୍ଭେ ଆଉ କି ନିମିତ୍ତ ଆମ୍ଭଙ୍କୁ ବାକ୍ୟବାଣରେ ବିଦ୍ଧ କରୁଅଛ ? ୨୭ । ରଣସ୍ଥଳରେ ସେହି ଅକ୍ଳିଷ୍ଟକର୍ମା ସତ୍ୟସନ୍ଧ ଭୀଷ୍ମଙ୍କର ସୁବର୍ଣ୍ଣରଚିତ ଧ୍ୱଜ ଅବଲୋକନ ନ କରି କିପରି ଆଉ ଜୟର ଆଶା କରୁଅଛ ? ୨୮ । ସିନ୍ଧୁରାଜ ଜୟଦ୍ରଥ ଓ କୌରବ୍ୟ ଭୂରିଶ୍ରବା ସମସ୍ତ ମହାରଥମାନଙ୍କ ମଧ୍ୟରେ ଅବସ୍ଥାନ କରି ମଧ୍ୟ ଯେତେବେଳେ ନିହତ ହୋଇଅଛନ୍ତି, ସେତେବେଳେ ଆଉ କଅଣ

ଅବଶିଷ୍ଟ ଅଛି ବୋଲି ମନେ କରୁଅଛ ? ୨୯ । ଦୁର୍ଦ୍ଧର୍ଷ କୃପ, ଯଦି ସିନ୍ଧୁରାଜଙ୍କର ପଥାନୁଗାମୀ ନ ହୋଇ ଜୀବିତ ରହନ୍ତି, ତାହାହେଲେ ସେ ଆମ୍ଭର ବିଶେଷ ପ୍ରଶଂସାର ଯୋଗ୍ୟ ହେବେ । ସନ୍ଦେହ ନାହିଁ । ୩୦ ।

ହେ ରାଜନ୍ ! ଇନ୍ଦ୍ରାଦି ଦେବଗଣଙ୍କର ଅବଧିକଳ୍ପ ଦୁଷ୍କରକର୍ମକାରୀ ଭୀଷ୍ମଙ୍କୁ ତୁମ୍ଭର ଭ୍ରାତା ଦୁଃଶାସନ ସମକ୍ଷରେ ନିପତିତ ହେବାର ଯେତେ-ବେଳେ ଆମ୍ଭେ ନିରୀକ୍ଷଣ କଲୁଁ ସେହି ସମୟରୁ ଆମ୍ଭେ ବିବେଚନା କରୁଅଛୁଁ ଯେ ଏହିବସୁନ୍ଧରା ତୁମ୍ଭପ୍ରତି ବିମୁଖ ହୋଇଅଛନ୍ତି ।୩୨। ଦେଖ, ପାଣ୍ଡବ ଓ ସୃଞ୍ଜୟମାନଙ୍କର ସୈନ୍ୟସମୂହ ମିଳିତ ହୋଇ ଆମ୍ଭପ୍ରତି ଧାବମାନ ହେଉଅଛନ୍ତି । ଅତଏବ ଆମ୍ଭେ ଅଦ୍ୟ ସମରକ୍ଷେତ୍ରରେ ତୁମ୍ଭର ହିତାନୁଷ୍ଠାନ କରିବୁଁ । ସମସ୍ତ ପାଞ୍ଚାଳମାନଙ୍କୁ ସଂହାର ନ କରି ଆମ୍ଭେ କଦାପି କବଚ ବିମୋକ୍ଷଣ କରିବୁ ନାହିଁ । ୩୪ ।

ହେ ରାଜନ୍ ! ତୁମ୍ଭେ ଆମ୍ଭପୁତ୍ର ଅଶ୍ୱତ୍ଥାମାଙ୍କୁ କହିବ ଯେ, ତାହାର ଜୀବନ ଥାଉଥାଉ ସେ ଯେପରି ସୋମକମାନଙ୍କୁ କଦାପି ପରିତ୍ୟାଗ ନ କରେ । ୩୫ । ଆଉମଧ୍ୟ ତାହାକୁ କହିବ ଯେ, ହେ ଅଶ୍ୱତ୍ଥାମନ୍ ! ତୁମ୍ଭେ ପିତାଙ୍କଠାରୁ ଯେଉଁ ସମସ୍ତ ଉପଦେଶ ପ୍ରାପ୍ତ ହୋଇଅଛ ତାହା ସମ୍ୟକରୂପେ ପାଳନ କରିବ । ଆନୃଶଂସ୍ୟ, ଦମ, ସତ୍ୟ ଓ ସରଳତାରେ ପରିନିଷ୍ଠିତ ହୁଅ । ଧର୍ମ୍ମ, ଅର୍ଥ ଓ କାମରେ କୁଶଳୀ ରହ । ଧର୍ମ୍ମ ଓ ଅର୍ଥକୁ ପୀଡ଼ନ ନ କରି ସତତ ଧର୍ମ୍ମପ୍ରଧାନ କାର୍ଯ୍ୟର ଅନୁଷ୍ଠାନରେ ତତ୍ପର ହୁଅ । ୩୭ । ବ୍ରାହ୍ମଣମାନଙ୍କୁ ଚକ୍ଷୁ ଓ ମନଦ୍ୱାରା ସନ୍ତୋଷିତ ଓ ସେମାନଙ୍କୁ ଯଥାଶକ୍ତି ପୂଜା କରିବ । ସେମାନଙ୍କର ଅପ୍ରିୟ କାର୍ଯ୍ୟରେ କଦାପି ପ୍ରବୃତ୍ତ ହେବ ନାହିଁ । କାରଣ ସେମାନେ ଅଗ୍ନିଶିଖା ତୁଲ୍ୟ । ୩୮ ।

ହେ ଶତ୍ରୁ-ସୂଦନ ଦୁର୍ଯ୍ୟୋଧନ ! ଆଉ ଅଧିକ କଅଣ କହିବୁଁ ? ବର୍ତ୍ତମାନ ଆମ୍ଭେ ତୁମ୍ଭର ବାକ୍ୟଶଲ୍ୟରେ ପ୍ରପୀଡ଼ିତ ହୋଇ ଘୋରତର ସଂଗ୍ରାମାର୍ଥ ଶତ୍ରୁ ସୈନ୍ୟ ମଧ୍ୟରେ ପ୍ରବେଶ କରିବୁଁ । ୩୯ । ତୁମ୍ଭେ ଯେବେ ସମର୍ଥ ହୁଅ ତେବେ ଏହି ସମସ୍ତ ସୈନ୍ୟମାନଙ୍କୁ ରକ୍ଷା କର । କାରଣ

ଅଦ୍ୟ କୌରବ ଓ ସୃଞ୍ଜୟମାନେ ଅନ୍ତଃସ୍ଥ କ୍ରୁଦ୍ଧ ହୋଇଅଛନ୍ତି । ସେମାନେ ରାତିରେ ମଧ୍ୟ ଯୁଦ୍ଧ କରିବେ । ୪୦ ।

ହେ ମହାରାଜ ! ସୂର୍ଯ୍ୟ ନକ୍ଷତ୍ରମାନଙ୍କର ତେଜକୁ ଆକର୍ଷଣ କଲାପ୍ରାୟ କ୍ଷତ୍ରିୟମାନଙ୍କର ତେଜୋହରଣକାରୀ ଦ୍ରୋଣ ଆପଣଙ୍କ ପୁତ୍ର ଦୁର୍ଯ୍ୟୋଧନଙ୍କୁ ଏହିପରି କହି ପାଣ୍ଡବ ଓ ସୃଞ୍ଜୟ ସୈନ୍ୟମଧ୍ୟରେ ପ୍ରବିଷ୍ଟ ହେଲେ । ୪୧ ।

---

## ୧୫୨ ଅଧ୍ୟାୟ

ସଞ୍ଜୟ କହିଲେ—ହେ ମହାରାଜ ! ତଦନନ୍ତର ଆପଣଙ୍କ ପୁତ୍ର ରାଜା ଦୁର୍ଯ୍ୟୋଧନ ଦ୍ରୋଣାଚାର୍ଯ୍ୟଙ୍କ କର୍ତ୍ତୃକ ଉକ୍ତ ପ୍ରକାରେ ତିରସ୍କୃତ ହେବାରୁ ଅମର୍ଷବଶ ହୋଇ ଯୁଦ୍ଧନିମିତ୍ତ ଦୃଢ଼ ସଙ୍କଳ୍ପ କଲେ । ୧ । ସେହି ସମୟରେ କର୍ଣ୍ଣଙ୍କୁ ସମୀପସ୍ଥ ଦେଖି ଦୁର୍ଯ୍ୟୋଧନ କହିଲେ, ହେ କର୍ଣ୍ଣ ! ଦେଖ, କୃଷ୍ଣସହାୟ କିରୀଟୀ ଦେବତାଙ୍କମାନଙ୍କର ମଧ୍ୟ ଦୁର୍ଭେଦ୍ୟ ଆଚାର୍ଯ୍ୟବିରଚିତ ସେହି ବ୍ୟୂହକୁ ଅବଲୀଳାକ୍ରମେ ଭେଦ କଲେ । ପୁଣି ମହାତ୍ମା ଦ୍ରୋଣ, ଭୀଷ୍ମ ଓ ଅନ୍ୟାନ୍ୟ ପ୍ରଧାନ ଯୋଦ୍ଧାମାନେ ଯୁଦ୍ଧ କଲେହେଁ ସିନ୍ଧୁରାଜ ନିପାତିତ ହେଲେ । ଦେଖ, ଯେପରି ସିଂହ ସାମାନ୍ୟ ପଶୁମାନଙ୍କୁ ସଂହାର କରେ, ସେହିପରି ଅର୍ଜ୍ଜୁନ ଏକାକୀ ଏହି ପୃଥିବୀସ୍ଥ ସମରଦକ୍ଷ ନରପତିମାନଙ୍କୁ ସଂହାର କଲେ । ହେ ଶତ୍ରୁ-ସୂଦନ କର୍ଣ୍ଣ ! ସମର କ୍ଷେତ୍ରରେ ଆମ୍ଭେ ସ୍ୱୟଂ ସମରରେ ପ୍ରବୃତ୍ତ ହୋଇଥିଲେ ହେଁ ଇନ୍ଦ୍ରନନ୍ଦନ ଅର୍ଜ୍ଜୁନ ଆମ୍ଭର ସୈନ୍ୟଙ୍କୁ ଅଳ୍ପାବଶିଷ୍ଟ କଲେ । ପରନ୍ତୁ ଆଚାର୍ଯ୍ୟ ଦ୍ରୋଣ ଅବହିତ ଚିତ୍ତରେ ଯଦି ସଂଗ୍ରାମରେ ପ୍ରବୃତ୍ତ ହୋଇଥାନ୍ତେ ତେବେ ଫାଲ୍‌ଗୁନ ଯତ୍ନପର ହୋଇ ମଧ୍ୟ କି ପ୍ରକାରେ ସେହି ଦୁର୍ଭେଦ୍ୟ ବ୍ୟୂହକୁ ଭେଦକରି ପାରିଥାନ୍ତା !

ଅତଏବ ହେ କର୍ଣ୍ଣ ! ଦେଖ, ପୁରନ୍ଦରତୁଲ୍ୟ ପରାକ୍ରମଶାଳୀ ଏହି ବହୁସଂଖ୍ୟକ ନରପତିମାନେ କେବଳ ଆଚାର୍ଯ୍ୟଙ୍କ ଉପେକ୍ଷା ବଶରୁ

ପାର୍ଥଶରଦ୍ୱାରା ନିହତ ହୋଇ ସମର ଭୂମିରେ ଶୟନ କରିଅଛନ୍ତି । କେବଳ ସେହିନିମିତ୍ତ ଅର୍ଜ୍ଜୁନ ଜୟଦ୍ରଥଙ୍କୁ ନିହତ କରି ନିଜ ପ୍ରତିଜ୍ଞା ସଫଳ କଲା ।୮। ହେ ବୀର ! ସନ୍ନିପରାୟଣ ତେଜସ୍ୱୀ ଦ୍ରୋଣଙ୍କର ଇଚ୍ଛା ନ ଥିଲେ ପାଣ୍ଡୁନନ୍ଦନ ଅର୍ଜ୍ଜୁନ କି ପ୍ରକାର ସେହି ଦୁର୍ଭେଦ୍ୟ ବ୍ୟୂହକୁ ଯୁଦ୍ଧରେ ଭେଦ କରନ୍ତା ? ୯ । ଫାଲ୍‌ଗୁନ ମହାତ୍ମା ଆଚାର୍ଯ୍ୟଙ୍କର ନିୟତ ପ୍ରିୟ ; ତେଣୁ ବ୍ୟୂହପ୍ରବେଶ କାଳରେ ସେ ବିନାଯୁଦ୍ଧରେ ଫାଲ୍‌ଗୁନଙ୍କୁ ଦ୍ୱାର ପ୍ରଦାନ କଲେ । ୧୦ ।

ଦେଖ, ଆମ୍ଭର ଭାଗ୍ୟହୀନତାପ୍ରଯୁକ୍ତ ଶତ୍ରୁତାପନ ଦ୍ରୋଣ ରଣ-ସ୍ଥଳରେ ଜୟଦ୍ରଥଙ୍କୁ ଅଭୟ ପ୍ରଦାନ କରି ମଧ୍ୟ କିରୀଟୀଙ୍କୁ ଦ୍ୱାର ପ୍ରଦାନ କଲେ । ୧୧ । ସେ ଯଦି ପୂର୍ବରୁ ସିନ୍ଧୁରାଜଙ୍କୁ ଗୃହଗମନ ନିମିତ୍ତ ଅନୁମତି ଦେଇଥାନ୍ତେ, ତାହାହେଲେ ଆଜ ଈଦୃଶ ଜନକ୍ଷୟ ଉପସ୍ଥିତ ହୋଇ-ନଥାନ୍ତା । ୧୨ । ସିନ୍ଧୁରାଜ ଜୀବିତାର୍ଥୀ ହୋଇ ଯେଉଁ ସମୟରେ ଗୃହକୁ ଯିବାନିମିତ୍ତ ଉଦ୍ୟତ ହୋଇଥିଲେ, ଆମ୍ଭେ ଦ୍ରୋଣଙ୍କଠାରୁ ଅଭୟ ପ୍ରାପ୍ତ ହୋଇ ମୂର୍ଖତାବଶରୁ ତାହାଙ୍କୁ ନିବାରଣ କଲୁଁ । ୧୩ । ଦେଖ, ଅଦ୍ୟ ରଣସ୍ଥଳରେ ଚିତ୍ରସେନ ପ୍ରଭୃତି ଭ୍ରାତୃଗଣ ଆମ୍ଭମାନଙ୍କ ସମକ୍ଷରେ ଭୀମ କର୍ତ୍ତୃକ ନିହତ ହେଲେ, ଆମ୍ଭେ ଅତି ଦୁରାତ୍ମା । ୧୪ ।

ଦୁର୍ଯ୍ୟୋଧନଙ୍କର ଏପ୍ରକାର ଆକ୍ଷେପୋକ୍ତି ଶ୍ରବଣ କରି କର୍ଣ୍ଣ କହିଲେ; ହେ ମହାରାଜ ! ଆଚାର୍ଯ୍ୟ ଦ୍ରୋଣ ଜୀବନରେ ନିରପେକ୍ଷ ହୋଇ ସ୍ୱୀୟ, ବଳ, ଉତ୍ସାହ ଓ ଶକ୍ତିଅନୁସାରେ ଯୁଦ୍ଧ କରୁଅଛନ୍ତି । ଅତଏବ ଆପଣ ତାହାଙ୍କର ନିନ୍ଦା କରନ୍ତୁ ନାହିଁ । ୧୫ । ଶ୍ୱେତବାହନ ଅର୍ଜ୍ଜୁନ ଯଦି ତାହାଙ୍କୁ ଅତିକ୍ରମକରି ବ୍ୟୂହ ମଧ୍ୟରେ ପ୍ରବେଶ କରେ ତେବେ ସେ ବିଷୟରେ ଆଚାର୍ଯ୍ୟଙ୍କର କିଞ୍ଚିନ୍ମାତ୍ର ଦୋଷ ନାହିଁ । ୧୬ । କାରଣ ଅର୍ଜ୍ଜୁନ ଯୁବାଶୌର୍ଯ୍ୟସମ୍ପନ୍ନ, ରଣଦକ୍ଷ, କୃତୀ, ଲଘୁବିକ୍ରମ ଓ କୃତାସ୍ତ୍ର । ପୁଣି କୃଷ୍ଣ ଯେଉଁ ରଥର ଅଶ୍ୱରଶ୍ମି ଗ୍ରହଣ କରିଥିଲେ ବାନରଲକ୍ଷଣାନ୍ୱିତ ଧ୍ୱଜବିଶିଷ୍ଟ ଦିବ୍ୟାସ୍ତ୍ରଯୁକ୍ତ ସେହି ରଥରେ ବୀର୍ଯ୍ୟବାନ୍ ପାର୍ଥ ସମାରୂଢ଼ ହୋଇ ଓ ଅଭେଦ୍ୟ କବଚାବୃତ ଥିବାରୁ ସ୍ୱୀୟ ଭୁଜବଳରେ ଦର୍ପିତ ହୋଇ ଅକ୍ଷୟ

ଗାଣ୍ଡୀବ ଶରାସନ ଗ୍ରହଣ ପୂର୍ବକ ନଶିତ ଶରସମୂହ ବର୍ଷଣ କରୁକରୁ ଦ୍ରୋଣଙ୍କୁ ଯେ ଅତିକ୍ରମ କଲେ, ଏଥିରେ ଅସମ୍ଭବ କିଛି ନାହିଁ । ୧୯ ।

ହେ ମହାରାଜ ! ଆଚାର୍ଯ୍ୟ ଦ୍ରୋଣ ବୃଦ୍ଧ, ଶୀଘ୍ର ଗମନରେ ଅକ୍ଷମ ଓ ବାହୁବ୍ୟାୟାମରେ ନିତାନ୍ତ ଅଶକ୍ତ । ତେଣୁ କୃଷ୍ଣସାରଥି ଶ୍ୱେତବାହନ ଅର୍ଜୁନ ତାହାଙ୍କୁ ଅତିକ୍ରମ କରିଅଛି । ସୁତରାଂ ଏ ବିଷୟରେ ଆଚାର୍ଯ୍ୟଙ୍କର କୌଣସି ଦୋଷ ଥିବାର ବିବେଚନା ହୁଏନାହିଁ । ୨୧ । ହେ ମହାରାଜ ! ସମରରେ ପାଣ୍ଡବମାନେ ଅସ୍ତ୍ରବିତ୍ ଆଚାର୍ଯ୍ୟଙ୍କର ଅଜେୟ ବୋଲି ବୋଧହୁଏ । ଶ୍ୱେତବାହନ ଅର୍ଜୁନ ତାହାଙ୍କୁ ଅତିକ୍ରମ କରି ବ୍ୟୂହମଧ୍ୟରେ ପ୍ରବିଷ୍ଟ ହେଲା । ୨୨ । ହେ ରାଜନ୍ ! ନିଶ୍ଚୟ ଆମ୍ଭର ଏହି ବିବେଚନା ହେଉଅଛି ଯେ ଦୈବ ଯେଉଁ ବିଷୟରେ ଅନୁକୂଳ କୌଣସି ପ୍ରକାରେ ତାହା ଅନ୍ୟଥା ହୁଏ ନାହିଁ । କାରଣ ଆମ୍ଭେମାନେ ପରମ ଶକ୍ତି ସହକାରେ ଯୁଦ୍ଧ କଲେହେଁ ଯେତେବେଳେ ସିନ୍ଧୁରାଜ ନିହତ ହେଲେ, ତେତେବେଳେ ଦୈବ ଏକା ଏ ସ୍ଥଳରେ ପ୍ରବଳ ବୋଲି କହିବାକୁ ହେବ । ଦେଖ, ଆମ୍ଭେମାନେ ଆପଣଙ୍କ ସହିତ ମିଳିତ ହୋଇ ସମରାଙ୍ଗଣରେ ନିଯୁକ୍ତ କାପଟ୍ୟ ଓ ବିକ୍ରମଦ୍ୱାରା ଜୟାଭିଳାଷରେ ବିଶେଷ ଯତ୍ନ କଲେହେଁ ଦୈବ ଆମ୍ଭମାନଙ୍କର ସେହି ପୁରୁଷକାରକୁ ନଷ୍ଟ କରି ଆମ୍ଭମାନଙ୍କୁ ବିମୁଖ କରୁଅଛି । ୨୫ ।

ହେ ମହାରାଜ ! ଦୁର୍ଦ୍ଦୈବଗ୍ରସ୍ତ ମାନବ କୌଣସି ସମୟରେ ଯେଉଁ କର୍ମ କରେ ପ୍ରତିକୂଳ ଦୈବ ପୁନଃପୁନଃ ତାହାର ସେହି କୃତକାର୍ଯ୍ୟ ସମୂହକୁ ବିନଷ୍ଟ କରେ । ୨୬ । କର୍ମାନୁଯାୟୀ ପୁରୁଷର ଅଶଙ୍କିତ ଚିତ୍ତରେ ଅବଶ୍ୟ କର୍ତ୍ତବ୍ୟକର୍ମର ଅନୁଷ୍ଠାନ କରିବା ଉଚିତ । କଦାଚ କ୍ଷାନ୍ତ ରହିବା ଉଚିତ ନୁହେଁ । କାର୍ଯ୍ୟସିଦ୍ଧି ହେବା ନୋହିବା ଦୈବର ଆୟତ୍ତ । ୨୭ । ଦେଖନ୍ତୁ, ଆମ୍ଭେମାନେ ପାଣ୍ଡବମାନଙ୍କୁ ବିଷପ୍ରଦାନ, ଜତୁଗୃହରେ ଦାହ ଓ କପଟ ଦ୍ୟୂତ କ୍ରୀଡ଼ା ଇତ୍ୟାଦି ନାନାପ୍ରକାର ଛଳଦ୍ୱାରା ବଞ୍ଚିତ କରିଅଛୁଁ । ରାଜନୀତି ଅବଲମ୍ବନ ପୂର୍ବକ ସେମାନଙ୍କୁ ଅରଣ୍ୟରେ ନିର୍ବାସିତ କରା-ଯାଇଥିଲା । ଏହିପରି ଯେଉଁ ଯେଉଁ କର୍ମମାନଙ୍କର ଅନୁଷ୍ଠାନ ଯତ୍ନପୂର୍ବକ କରାଯାଇଥିଲା, ଦୈବକର୍ତ୍ତୃକ ସେ ସମସ୍ତ ନିଷ୍ଫଳ ହୋଇଅଛି । ୨୯ ।

ବର୍ତ୍ତମାନ ଆପଣ ପ୍ରାଣପଣରେ ଯୁଦ୍ଧ କରନ୍ତୁ । ଉଭୟ ପକ୍ଷମଧ୍ୟରୁ ଯେଉଁପକ୍ଷ ସୁଦୃଢ଼ ଓ ସହନଶୀଳ ହେବେ ଦୈବ ତାହାଙ୍କର ଅନୁକୂଳ ହେବ । ୩୦ ।

ଦେଖନ୍ତୁ, ପାଣ୍ଡବମାନେ ଯେ ବୁଦ୍ଧି ମୂଳକ ସତ୍‌କାର୍ଯ୍ୟ କରି ଅଛନ୍ତି, ଆଉ ଆପଣ ବୁଦ୍ଧିହୀନତା ପ୍ରଯୁକ୍ତ କୌଣସି ଅସତ୍‌କାର୍ଯ୍ୟ କରିଅଛନ୍ତି, ଏପରି ବିବେଚନା ମଧ୍ୟ ହୁଏ ନାହିଁ । ୩୧ । ତଥାପି ସେମାନଙ୍କର ଅନୁଷ୍ଠିତ କାର୍ଯ୍ୟମାନ ସତ୍‌ରୂପରେ ଓ ଆପଣଙ୍କର ଅନୁଷ୍ଠିତ କାର୍ଯ୍ୟମାନ ଅସତ୍‌ରୂପରେ ପରିଣତ ହେଉଅଛି । ଏଥିରେ ଦୈବହିଁ କେବଳ ପ୍ରମାଣ ଅଟେ । କାରଣ ଦୈବ ପ୍ରାଣିମାନଙ୍କର ନିଦ୍ରାକାଳରେ ମଧ୍ୟ ଅନନ୍ୟ କର୍ମ ହୋଇ ଜାଗରିତ ଥାନ୍ତି । ୩୨ ।

ଯେଉଁ ସମୟରେ ଏହି ଯୁଦ୍ଧ ଉପସ୍ଥିତ ହେଲା ସେତେବେଳେ ଆପଣଙ୍କ ପକ୍ଷରେ ଅସଂଖ୍ୟ ସୈନ୍ୟ ଓ ବହୁସଂଖ୍ୟକ ଯୋଦ୍ଧା ବର୍ତ୍ତମାନ ଥିଲେ । ପାଣ୍ଡୁପୁତ୍ରମାନଙ୍କର ତଦ୍ରୂପ ନ ଥିଲେ । ୩୩ । କିନ୍ତୁ ଆଶ୍ଚର୍ଯ୍ୟର ବିଷୟ ଯେ ସେମାନେ ଅଳ୍ପସଂଖ୍ୟକ ହୋଇ ମଧ୍ୟ ଆପଣଙ୍କର ବହୁସଂଖ୍ୟକ ବୀରପୁରୁଷଙ୍କୁ ବିନଷ୍ଟ କଲେ । ଏଣୁ ବୋଧ ହେଉଅଛି ଆମ୍ଭମାନଙ୍କର ପୁରୁଷକାର ସମସ୍ତ ଯେ ନଷ୍ଟ ହେଉଅଛି ତାହା ଦୈବର କାର୍ଯ୍ୟ । ୩୪ ।

ସଞ୍ଜୟ କହିଲେ, ହେ ମହାରାଜ ! ରାଜା ଦୁର୍ଯ୍ୟୋଧନ ଓ କର୍ଣ୍ଣ ପରସ୍ପର ଏହିପରି କଥୋପକଥନ କରୁଅଛନ୍ତି, ଏମନ୍ତ ସମୟରେ ସମରକ୍ଷେତ୍ରରେ ପାଣ୍ଡବମାନଙ୍କର ସୈନ୍ୟ ଦୃଷ୍ଟ ହେଲା । ୩୫ । ତଦନନ୍ତର ଆପଣଙ୍କ ପକ୍ଷୀୟ ଓ ପାଣ୍ଡବପକ୍ଷୀୟ ରଥମାନେ ରଥମାନଙ୍କସହିତ, ହସ୍ତ୍ୟାରୋହିମାନେ ହସ୍ତ୍ୟାରୋହିମାନଙ୍କ ସହିତ, ପଦାତିମାନେ ପଦାତିମାନଙ୍କ ସହିତ ପରସ୍ପର ସଦୃଶ ଯୋଦ୍ଧାମାନଙ୍କ ଭିତରେ ଘୋରତର ସଂଗ୍ରାମ ଉପସ୍ଥିତ ହେଲା । ହେ ମହାରାଜ ! ଆପଣଙ୍କ ଦୁର୍ମନ୍ତ୍ରଣାରୁ ଏକା ଏହି ଯୁଦ୍ଧର ମୂଳ ଜାତ ହୋଇଅଛି । ୩୬ ।

---

# ୧୫୩ ଅଧ୍ୟାୟ

ସଞ୍ଜୟ କହିଲେ— ହେ ମହାରାଜ ! ଆପଣଙ୍କ ପକ୍ଷୀୟ ପ୍ରଭୃତି ଗଜବାଜିସମନ୍ୱିତ ମହାସୈନ୍ୟ ପାଣ୍ଡବସୈନ୍ୟମାନଙ୍କ ଚତୁର୍ଦ୍ଦିଗରେ ଅଭିଦ୍ରୁତ ହୋଇ ସଂଗ୍ରାମରେ ପ୍ରବୃତ୍ତ ହେଲେ । ୧ । କୌରବ ଓ ପାଞ୍ଚାଳମାନେ ମହାନ୍ ସମରଯଜ୍ଞରୂପ ପରଲୋକ ନିମିତ୍ତ ଦୀକ୍ଷିତ ହୋଇ ପରସ୍ପର ସମରରେ ପ୍ରବୃତ୍ତ ହୁଅନ୍ତେ ଶୂରମାନେ ଶୌର୍ଯ୍ୟସମ୍ପନ୍ନ ପୁରୁଷଙ୍କ ସହିତ ସଙ୍ଗତ ହୋଇ ଶର, ଶକ୍ତି, ତୋମର ପ୍ରଭୃତି ଶସ୍ତ୍ରଦ୍ୱାରା ପରସ୍ପର ପରସ୍ପରକୁ ବିଦ୍ଧ କରି ଶମନଭବନକୁ ପ୍ରେରଣ କଲେ । ୩ । ପରସ୍ପର ପ୍ରହାରକାଙ୍କ୍ଷୀ ରଥୀମାନଙ୍କର ନିରନ୍ତର ରୁଧିରସ୍ରାବକାରୀ ଅତିଶୟ ଦାରୁଣ ଯୁଦ୍ଧ ପ୍ରବୃତ୍ତ ହେଲା । ୪ । ମଦମତ୍ତ ମାତଙ୍ଗସମୂହ ସମରରେ ସମାସକ୍ତ ହୋଇ କ୍ରୋଧଭରରେ ପରସ୍ପର ପରସ୍ପରକୁ ବିଷାଣଦ୍ୱାରା କ୍ଷତବିକ୍ଷତ କଲେ । ୫ । ସେହି ତୁମୁଳ ସମର ସ୍ଥଳରେ ଅଶ୍ୱାରୋହିମାନେ ମହତ୍ ଯଶପ୍ରାର୍ଥୀ ହୋଇ ପ୍ରାସ, ଶକ୍ତି, ପରଶ୍ୱଧ ପ୍ରଭୃତି ବହୁବିଧ ଅସ୍ତ୍ର ପ୍ରୟୋଗ ଦ୍ୱାରା ପରସ୍ପର ପରସ୍ପରର ଦେହ ଭେଦ କରିବାରେ ପ୍ରବୃତ୍ତ ହେଲେ । ୬ । ସେହିପରି ଶତଶତ ଶସ୍ତ୍ରପାଣି ପଦାତିମାନେ ପରାକ୍ରମ ପ୍ରକାଶରେ ଯତ୍ନପର ହୋଇ ପରସ୍ପର ପରସ୍ପରକୁ ବିମର୍ଦ୍ଦିତ କଲେ ।୭। ହେ ମହାରାଜ ! ପାଞ୍ଚାଳଗଣ କୌରବମାନଙ୍କ ସହିତ ସମରାର୍ଥ ମିଳିତ ହୁଅନ୍ତେ କିଏ ପାଞ୍ଚାଳ ପକ୍ଷୀୟ କିଏ କୌରବପକ୍ଷୀୟ କିଛିମାତ୍ର ଜଣାଗଲା ନାହିଁ । କେବଳ ସେହି ସମରପ୍ରବୃତ୍ତ ବୀରମାନଙ୍କର ଆପଣାର ମୁଖବ୍ୟକ୍ତ ପରିଚୟ ଶ୍ରବଣ କରି ଆମ୍ଭେମାନେ ସେମାନଙ୍କର ନାମଗୋତ୍ର ଏବଂ ବଂଶ ବିଷୟ ବୋଧ କରିବାକୁ ସମର୍ଥ ହେଲୁଁ । ୮ ।

ଏପରି ଯୋଧଗଣ ନର୍ତ୍ତକସଦୃଶ ରଣସ୍ଥଳରେ ବିଚରଣ କରି ଶର, ଶକ୍ତି ଓ ପରଶୁଦ୍ୱାରା ପରସ୍ପର ପରସ୍ପରକୁ ଶମନ ଭବନକୁ ପ୍ରେରଣ କଲେ । ୯ । ହେ ମହାରାଜ ! ଦିନକର ଅସ୍ତଗତ ହେଲେ ମଧ୍ୟ ସେହି ବୀରମାନଙ୍କର ନିରନ୍ତର ନିକ୍ଷିପ୍ତ ଶରରାଶି ଏତେ ପରିମାଣରେ ନିପତିତ ହେଲା ଯେ, ସେହି ସମୟରେ ଦିକ୍‌ସମୂହ ଏକକାଳୀନ ପ୍ରଭାଶୂନ୍ୟ ହେଲେ । ୧୦ । ପରନ୍ତୁ ପାଣ୍ଡୁସୈନ୍ୟମାନେ ତାଦୃଶଭାବରେ ଯୁଦ୍ଧ କରନ୍ତେ କୁରୁପତି

ଦୁର୍ଯ୍ୟୋଧନ ସେହି ସୈନ୍ୟମଧ୍ୟରେ ପ୍ରବେଶ କଲେ ।୧୧। ସେହି ସମୟରେ ସିନ୍ଧୁରାଜଙ୍କ ବଧହେତୁ ଅତ୍ୟନ୍ତ ଦୁଃଖିତ ଏବଂ ମରଣରେ କୃତନିଶ୍ଚୟ ହୋଇ ଶତ୍ରୁସୈନ୍ୟ ମଧ୍ୟରେ ପ୍ରବିଷ୍ଟ ହେଲେ । ୧୨ । ଆପଣଙ୍କ ପୁତ୍ର ଗମନକାଳରେ ରଥନିର୍ଘୋଷ ଦ୍ୱାରା ପୃଥିବୀକୁ କମ୍ପିତ ଓ ଦଶଦିଗକୁ ନିନାଦିତ କରି ପାଣ୍ଡବ ସୈନ୍ୟମାନଙ୍କର ଅଭିମୁଖୀନ ହେଲେ । ୧୩ । ତଦନନ୍ତର ପାଣ୍ଡବମାନଙ୍କ ସହିତ ତାହାଙ୍କର ମହାନ୍ ସୈନ୍ୟକ୍ଷୟକର ତୁମୁଳ ସଂଗ୍ରାମ ଆରମ୍ଭ ହେଲା । ୧୪ । ଆପଣଙ୍କ ପୁତ୍ର ଶରାନଳ ଦ୍ୱାରା ଶତ୍ରୁସୈନ୍ୟଙ୍କୁ ସନ୍ତାପିତ କରିବାରୁ ବୋଧ ହେଲା ଯେପରି ମଧ୍ୟାହ୍ନକାଳୀନ ମାର୍ତ୍ତଣ୍ଡ ପ୍ରଚଣ୍ଡ କିରଣଦ୍ୱାରା ଜଗତ୍‌କୁ ଉତ୍ତାପିତ କରୁଅଛନ୍ତି । ୧୫ । ସେହି ସମୟରେ ପାଣ୍ଡବ ସୈନ୍ୟମାନେ ସମରସ୍ଥିତ ଭରତକୁଳନନ୍ଦନ ଦୁର୍ଯ୍ୟୋଧନଙ୍କୁ ନିରୀକ୍ଷଣ କରିବାକୁ ସମର୍ଥ ହେଲେ ନାହିଁ । ସେମାନେ ଶତ୍ରୁଜୟରେ ନିରୁତ୍ସାହ ହୋଇ ସମସ୍ତେ ପଳାୟନର ଚେଷ୍ଟା କଲେ ।୧୬।

ହେ ମହାରାଜ ! ପାଞ୍ଚାଳଗଣ ଆପଣଙ୍କ ପୁତ୍ର ଧନୁର୍ଦ୍ଧରାଗ୍ରଗଣ୍ୟ ମହାତ୍ମା କୁରୁପତିଙ୍କ କର୍ତ୍ତୃକ ନିର୍ମ୍ମଳାଗ୍ର ସୁବର୍ଣ୍ଣପୁଙ୍ଖ ଶରନିଚୟରେ ବଧ୍ୟମାନ ହୋଇ ଇତସ୍ତତଃ ଧାବିତ ହେଲେ ଓ ପାଣ୍ଡବମାନଙ୍କର ଅନ୍ୟାନ୍ୟ ସୈନ୍ୟମାନେ କୁରୁରାଜଙ୍କର ଶରପୀଡ଼ିତ ହୋଇ ବେଗରେ ନିପତିତ ହେଲେ । ସେହି ସମୟରେ ଆପଣଙ୍କ ପୁତ୍ର ରଣସ୍ଥଳରେ ଯାଦୃଶ କର୍ମ୍ମ କଲେ ଆପଣଙ୍କ ପକ୍ଷୀୟ କୌଣସି ବ୍ୟକ୍ତି ତାଦୃଶ କର୍ମ୍ମ କରିବାକୁ ସମର୍ଥ ହୋଇନାହାନ୍ତି ।

ଯେପରି ମତ୍ତମାତଙ୍ଗ ସରୋବରସ୍ଥ ପ୍ରଫୁଲ୍ଲ କମଳଦଳକୁ ପ୍ରମଥିତ କରେ ସେହିପରି ଆପଣଙ୍କର ପୁତ୍ର ପାଣ୍ଡବସେନାକୁ ପ୍ରମଥିତ କଲେ । କମଳଦଳସୁଶୋଭିତ ସରୋବର ସୂର୍ଯ୍ୟ ଓ ଅନିଳ ପ୍ରଭାବରୁ ଶୁଷ୍କ ହେଲେ ଯେପରି ଶୋଭାବିହୀନ ହୁଏ, ସେହିପରି ପାଣ୍ଡବସୈନ୍ୟମାନେ ଆପଣଙ୍କ ପୁତ୍ରଙ୍କର ତେଜପ୍ରଭାବରେ ହତପ୍ରଭ ହେଲେ । ଭୀମସେନ ପ୍ରଭୃତି ପାଞ୍ଚାଳଗଣ ଆପଣଙ୍କ ପୁତ୍ରକର୍ତ୍ତୃକ ସ୍ୱପକ୍ଷୀୟ ସୈନ୍ୟକ୍ଷୟ ସନ୍ଦର୍ଶନ କରି ତାହାଙ୍କ ପ୍ରତି ଧାବମାନ ହେଲେ । କୁରୁରାଜ ଦୁର୍ଯ୍ୟୋଧନ ଭୀମସେନ ପ୍ରଭୃତି ପାଣ୍ଡବଗଣଙ୍କୁ ଆଗମନ କରିବାର ଅବଲୋକନ କରି ଭୀମସେନଙ୍କୁ

ଦଶଗୋଟି ଶରରେ, ନକୁଳ, ସହଦେବଙ୍କୁ ତିନି ତିନି ଗୋଟି ଶରରେ, ବିରାଟ ଓ ଦ୍ରୁପଦଙ୍କୁ ଛଅ ଛଅ ଗୋଟି ଶରରେ, ଶିଖଣ୍ଡୀଙ୍କୁ ଶତଗୋଟି ଶରରେ, ଧୃଷ୍ଟଦ୍ୟୁମ୍ନଙ୍କୁ ସପ୍ତତି ଶରରେ, ଯୁଧିଷ୍ଠିରଙ୍କୁ ସାତଟି ଶରରେ, କେକେୟ ଓ ଚେଦିମାନଙ୍କୁ ବହୁସଂଖ୍ୟକ ନଶିତ ଶରରେ ବିଦ୍ଧ କଲେ ।

ତଦନନ୍ତର ସାତ୍ୟକିଙ୍କୁ ପାଞ୍ଚଗୋଟି; ଦ୍ରୌପଦୀଙ୍କ ପୁତ୍ରମାନଙ୍କୁ ଓ ଘଟୋତ୍କଚଙ୍କୁ ତିନିତିନି ଗୋଟି ବାଣରେ ବିଦ୍ଧ କରି ସିଂହନାଦ କଲେ । ସେହି ମହା ସଂଗ୍ରାମରେ ସେ ପ୍ରଜାସଂହାରକ କ୍ରୁଦ୍ଧ ଅନ୍ତକ ସଦୃଶ ତୁରଙ୍ଗ, ମାତଙ୍ଗ ଓ ଅନ୍ୟାନ୍ୟ ଶତଶତ ଯୋଦ୍ଧାମାନଙ୍କୁ ଉଗ୍ରତର ଶରସମୂହ ଦ୍ୱାରା ଖଣ୍ଡଖଣ୍ଡ କଲେ । ହେ ମହାରାଜ ! ପାଣ୍ଡବ ସୈନ୍ୟମାନେ ଆପଣଙ୍କ ପୁତ୍ରଙ୍କର ଶରନିକରରେ ବାଧମାନ ହୋଇ ଚତୁର୍ଦ୍ଦିଗକୁ ପଳାୟନ କଲେ । ସେହି ସମୟରେ ସେମାନେ ସେହି ମହାରଣରେ କୁରୁରାଜଙ୍କୁ ପ୍ରଚଣ୍ଡ ସୂର୍ଯ୍ୟଙ୍କ ସଦୃଶ ସୈନ୍ୟ ଦଗ୍ଧ କରିବାର ଦେଖି ତାହାଙ୍କୁ ନିରୀକ୍ଷଣ କରି-ପାରିଲେ ନାହିଁ ।

ତଦନନ୍ତର ରାଜା ଯୁଧିଷ୍ଠିର କୁପିତ ହୋଇ ଜୟାଭିଳାଷରେ କୁରୁପତିଙ୍କ ପ୍ରତି ଧାବିତ ହେଲେ । ପରାକ୍ରମଶାଳୀ ଶତ୍ରୁତାପନ କୁରୁନନ୍ଦନ ରାଜା ଯୁଧିଷ୍ଠିର ଓ ଦୁର୍ଯ୍ୟୋଧନ ଉଭୟେ ରାଜ୍ୟହେତୁ ସମରରେ ସଂଗତ ହେଲେ । ପ୍ରଥମତଃ ମହାରଥୀ ଦୁର୍ଯ୍ୟୋଧନ କ୍ରୁଦ୍ଧ ହୋଇ ସନ୍ନତପର୍ବ ଦଶଗୋଟି ବାଣରେ ଯୁଧିଷ୍ଠିରଙ୍କୁ ବିଦ୍ଧ କରି ଅନ୍ୟ ଗୋଟିଏ ବାଣରେ ଅବିଳମ୍ବେ ତାହାଙ୍କର ଧ୍ୱଜ-ଦଣ୍ଡକୁ ଛେଦନ କଲେ । ସେ ବାଣଦ୍ୱାରା ମହାତ୍ମା ଧର୍ମରାଜଙ୍କର ପ୍ରିୟ ସାରଥି ଇନ୍ଦ୍ରସେନର ଲଲାଟଦେଶକୁ ବିଦ୍ଧ କଲେ । ତତ୍ପରେ ଅପର ଗୋଟିଏ ବାଣଦ୍ୱାରା ତାହାଙ୍କର ଶରାସନକୁ ଛେଦନ କରି ଚାରିଗୋଟି ବାଣରେ ଅଶ୍ୱ ଚତୁଷ୍ଟୟକୁ ବିଦ୍ଧ କଲେ । ସେତେବେଳେ ପାଣ୍ଡବଜ୍ୟେଷ୍ଠ ଧର୍ମନନ୍ଦନ ଯୁଧିଷ୍ଠିର ଦୁର୍ଯ୍ୟୋଧନଙ୍କୁ ଏହିପରି ଶତ୍ରୁସଂହାରରେ ପ୍ରବୃତ୍ତ ହେବାର ଦେଖି ଅତିଶୟ କ୍ରୁଦ୍ଧ ହୋଇ ନିମିଷକ ମଧ୍ୟରେ ଗୋଟିଏ କାର୍ମୁକ ଗ୍ରହଣ କରି ସୁତୀକ୍ଷ୍ଣ ଭଲ୍ଲଦ୍ୱାରା ତାହାଙ୍କର ସୁବର୍ଣ୍ଣପୃଷ୍ଠ ଶରାସନକୁ ତିନିଖଣ୍ଡ କରି ତାହାଙ୍କୁ ଦଶଗୋଟି ଶାଣିତ ବାଣରେ ବିଦ୍ଧ କଲେ । ଯୁଧିଷ୍ଠିରନିକ୍ଷିପ୍ତ ସେହି ତୀକ୍ଷ୍ଣ ଶରସମୂହ

ଦୁର୍ଯ୍ୟୋଧନଙ୍କର ଦେହ ଭେଦ କରି ଧରଣୀ ତଳରେ ପ୍ରବିଷ୍ଟ ହେଲା । ତେତେବେଳେ ପାଣ୍ଡବପକ୍ଷୀୟ ଯୋଦ୍ଧାମାନେ ବୃତ୍ରାସୁର ବିନାଶ କାଳରେ ଦେବତାମାନେ ପୁରନ୍ଦରଙ୍କୁ ପରିବେଷ୍ଟନ କଲାପ୍ରାୟ ଯୁଧିଷ୍ଠିରଙ୍କୁ ବେଷ୍ଟନ କଲେ । ତତ୍ପରେ ଧର୍ମାତ୍ମା ରାଜା ଯୁଧିଷ୍ଠିର ପୁନର୍ବାର ସୂର୍ଯ୍ୟରଶ୍ମି ତୁଲ୍ୟ ଅତ୍ୟନ୍ତ ଉଗ୍ରତର ଅନିବାର୍ଯ୍ୟ ଗୋଟିଏ ବାଣ ଯୋଜନା କରି ଦୁର୍ଯ୍ୟୋଧନଙ୍କୁ "ଆରେ ତୁ ହତ ହେଲୁ" ଏହି କଥା କହି ତାହାଙ୍କ ପ୍ରତି ନିକ୍ଷେପ କଲେ । କୁରୁରାଜ ସେହି ଆକର୍ଣ୍ଣମୁକ୍ତ ବାଣରେ ଗାଢ଼ତର ବିଦ୍ଧ ଓ ବିମୋହିତ ହୋଇ ତତ୍କ୍ଷଣାତ୍ ରଥମଣ୍ଡଳରେ ନିପତିତ ହେଲେ । ହେ ମହାରାଜ ! ତଦନନ୍ତର ସେହି ସମର ସ୍ଥଳରେ ଚତୁର୍ଦ୍ଦିଗରୁ "କୁରୁରାଜ ହତ ହେଲେ" "କୁରୁରାଜ ହତ ହେଲେ" ଏହିପରି ତୁମୁଳ ଶବ୍ଦ ପ୍ରହୃଷ୍ଟ ପାଞ୍ଚାଳମାନଙ୍କ ମଧ୍ୟରୁ ସମୁତ୍ଥିତ ଓ ଭୟାନକ ବାଣଶବ୍ଦ ଶ୍ରୁତ ହେଲା । ୪୦ ।

ସେହି ସମୟରେ ଦ୍ରୋଣାଚାର୍ଯ୍ୟ ସତ୍ୱର ଯୁଦ୍ଧସ୍ଥଳରେ ଉପସ୍ଥିତ ହେଲେ ଓ ଦୁର୍ଯ୍ୟୋଧନ ମଧ୍ୟ ଦୃଢ଼ତର ଗୋଟିଏ କାର୍ମ୍ମୁକ ଗ୍ରହଣ କରି ପ୍ରଫୁଲ୍ଲ ଚିତ୍ତରେ ଯୁଧିଷ୍ଠିରଙ୍କୁ "ତିଷ୍ଠ, ତିଷ୍ଠ" ବୋଲି କହି ତାହାଙ୍କ ପ୍ରତି ଧାବିତ ହେଲେ । ୪୨ ।

ହେ ମହାରାଜ ! ଯେପରି ପ୍ରଚଣ୍ଡ ବାୟୁ ପାଷାଣବର୍ଷୀ ଉଦ୍ଧତ ମେଘର ବେଗ ଧାରଣ କରି ତାହାକୁ ଛିନ୍ନଭିନ୍ନ କରେ, ତଦ୍ରୂପ ଦ୍ରୋଣାଚାର୍ଯ୍ୟ କୁରୁରାଜଙ୍କର ରକ୍ଷାର୍ଥୀ ହୋଇ ଆପତିତ ପାଞ୍ଚାଳମାନଙ୍କୁ ପ୍ରତିଗ୍ରହ କରି ସଂହାର କରିବାକୁ ଆରମ୍ଭ କଲେ । ତଦନନ୍ତର ସମରଭୂମିରେ ମିଳିତ କୌରବ ଓ ପାଣ୍ଡବମାନଙ୍କର ଭୂମିବର୍ଦ୍ଧନକର ତୁମୁଳ ସଂଗ୍ରାମ ଉପସ୍ଥିତ ହେଲା । ୪୪ ।

---

# ୧୫୪ ଅଧ୍ୟାୟ

ଧୃତରାଷ୍ଟ୍ର କହିଲେ—ହେ ସଞ୍ଜୟ ! ସେହି ସମୟରେ ବଳଶାଳୀ ଶୌର୍ଯ୍ୟସମ୍ପନ୍ନ ମହାଧନୁର୍ଦ୍ଧର ଆଚାର୍ଯ୍ୟ ଦ୍ରୋଣ କୁପିତ ହୋଇ ଶାସନାତି-କ୍ରମକାରୀ ଆମ୍ଭର ପୁତ୍ର ମନ୍ଦମତି ଦୁର୍ଯ୍ୟୋଧନଙ୍କୁ ତିରସ୍କାର କରି ପାଣ୍ଡବ ସୈନ୍ୟ ମଧ୍ୟରେ ପ୍ରବେଶ ପୂର୍ବକ ରଣସ୍ଥଳରେ ସ୍ଥିରଭାବରେ ବିଚରଣ କରନ୍ତେ ପାଣ୍ଡବମାନେ ତାହାଙ୍କୁ କିପରି ନିବାରଣ କଲେ ? ୨ । ସେହି ମହା ସଂଗ୍ରାମରେ ଆଚାର୍ଯ୍ୟ ବହୁସଂଖ୍ୟକ ଶତ୍ରୁସଂହାରରେ ପ୍ରବୃତ୍ତ ହୁଅନ୍ତେ ଆମ୍ଭପକ୍ଷୀୟ କେଉଁ କେଉଁ ବୀରମାନେ ତାହାଙ୍କର ଦକ୍ଷିଣ ଚକ୍ରକୁ ଓ କେଉଁ କେଉଁ ବୀରମାନେ ତାହାଙ୍କର ବାମ ଚକ୍ରକୁ ରକ୍ଷା କରିଥିଲେ ? ୩ । ସେହି ମହାବୀର ଦ୍ରୋଣ ସମରରେ ପ୍ରବୃତ୍ତ ହୁଅନ୍ତେ କେଉଁ କେଉଁ ବୀର ତାହାଙ୍କ ପୃଷ୍ଠଦେଶ ରକ୍ଷାରେ ନିଯୁକ୍ତ ଥିଲେ ? ପୁଣି ଶତ୍ରୁପକ୍ଷୀୟ କେଉଁ କେଉଁ ରଥୀମାନେ ସେହି ସମୟରେ ତାହାଙ୍କର ସମ୍ମୁଖୀନ ହୋଇଥିଲେ ?୪।

ହେ ସଞ୍ଜୟ ! ଆମ୍ଭର ବୋଧ ହେଉଅଛି ଯେତେବେଳେ ଧନୁର୍ଦ୍ଧରାଗ୍ରଗଣ୍ୟ ଅପରାଜିତ ଦ୍ରୋଣ ପାଞ୍ଚାଳମାନଙ୍କ ମଧ୍ୟରେ ପ୍ରବିଷ୍ଟ ହେଲେ ସେତେବେଳେ କୌଣସି ମନୁଷ୍ୟ ଅକାଳରେ ଅତିଶୟ ଶୀତପ୍ରଭାବରେ ଯେପରି କମ୍ପିତ ହୁଏ ସେହିପରି ପାଞ୍ଚାଳମାନେ ତ୍ରାସରେ ତଦ୍ରୂପ କମ୍ପିତ ହୋଇଥିବେ । ଆମ୍ଭେ ନିଶ୍ଚୟ ବିବେଚନା କରୁଅଛୁ ଯେ ସେମାନେ ଶିଶିରକାଳୀନ ଗୋସମୂହ ସଦୃଶ ଅତିଶୟ କମ୍ପିତ ହୋଇଥିଲେ । ସେହି ସର୍ବଶସ୍ତ୍ରଧାରୀଶ୍ରେଷ୍ଠ ରଥୀପ୍ରବର ଦ୍ରୋଣ କ୍ରୋଧରେ ଧୂମକେତୁ ସଦୃଶ ରଥବର୍ତ୍ମରେ ନୃତ୍ୟ କରୁକରୁ ସମସ୍ତ ପାଞ୍ଚାଳମାନଙ୍କୁ ଦଗ୍ଧ କରିବାକୁ ପ୍ରବୃତ୍ତ ହୋଇ କିପରି ମୃତ୍ୟୁମୁଖରେ ପତିତ ହେଲେ ? ୭ ।

ସଞ୍ଜୟ କହିଲେ—ହେ ମହାରାଜ ! ପୃଥାପୁତ୍ର ମହାଧନୁର୍ଦ୍ଧର ଧନଞ୍ଜୟ ଓ ସାତ୍ୟକି ସିନ୍ଧୁରାଜାଙ୍କ ବଧ ସାଧନାନନ୍ତର ସନ୍ଧ୍ୟାସମୟରେ ଧର୍ମରାଜଙ୍କ ସହିତ ସାକ୍ଷାତ୍ କରି ଯୁଦ୍ଧାର୍ଥେ ଦ୍ରୋଣଙ୍କ ପ୍ରତି ଧାବିତ ହେଲେ । ତଦନନ୍ତର ରାଜା ଯୁଧିଷ୍ଠିର ଓ ଭୀମସେନ ଯତ୍ନପର ହୋଇ ପୃଥକ୍ ପୃଥକ୍ ବ୍ୟୂହିତ ସୈନ୍ୟମାନଙ୍କୁ ସଙ୍ଗରେ ଘେନି ଆଚାର୍ଯ୍ୟଙ୍କ

ଅଭିମୁଖୀନ ହେଲେ । ୯ । ହେ ମହାରାଜ ! ଏହାପରେ ଦ୍ରୋଣଙ୍କ ସହିତ ଯୁଦ୍ଧାର୍ଥୀ ହୋଇ ଦୁର୍ଜ୍ଜୟ ସହଦେବ, ଧୀମାନ୍ ନକୁଳ, ଧୃଷ୍ଟଦ୍ୟୁମ୍ନ, ବିରାଟ, କେକେୟ, ମତ୍ସ୍ୟ ଓ ଶାଲ୍ୱେୟମାନେ ସସୈନ୍ୟରେ ସମସ୍ତେ ଅଭିଦ୍ରୁତ ହେଲେ । ପୁଣି ପାଞ୍ଚାଳ ସୈନ୍ୟଦ୍ୱାରା ପରିରକ୍ଷିତ ଧୃଷ୍ଟଦ୍ୟୁମ୍ନଙ୍କ ପିତା ପାଞ୍ଚାଳରାଜା ଦ୍ରୁପଦ, ଦ୍ରୌପଦୀ ପୁତ୍ରଗଣ ଓ ରାକ୍ଷସ ଘଟୋତ୍କଚ ଏମାନେ ସମସ୍ତେ ସ୍ୱୀୟ ସ୍ୱୀୟ ସୈନ୍ୟମାନଙ୍କ ସଙ୍ଗରେ ଘେନି ଦ୍ୟୁତିମାନ୍ ଦ୍ରୋଣଙ୍କର ଅଭିମୁଖୀନ ହେଲେ । ରଣଦକ୍ଷ ଷଟ୍‌ସହସ୍ର ପାଞ୍ଚାଳ ଓ ପ୍ରଭଦ୍ରକଗଣ ଶିଖଣ୍ଡୀଙ୍କୁ ପୁରୋବର୍ତ୍ତୀ କରି ଦ୍ରୋଣଙ୍କ ପ୍ରତି ଧାବିତ ହେଲେ । ଏତଦ୍-ବ୍ୟତୀତ ପାଣ୍ଡବପକ୍ଷୀୟ ଅନ୍ୟାନ୍ୟ ମହାରଥ ନରଶାର୍ଦ୍ଦୂଳମାନେ ମିଳିତ ହୋଇ ଦ୍ୱିଜଶ୍ରେଷ୍ଠ ଦ୍ରୋଣଙ୍କର ସମ୍ମୁଖୀନ ହେଲେ ।

ହେ ମହାରାଜ ! ସେହି ଶୂରମାନେ ଯୁଦ୍ଧାର୍ଥ ସମାଗତ ହୁଅନ୍ତେ, ଯୋଧମାନଙ୍କର ଅଶିବରୂପ ଲୋକକ୍ଷୟକର ଭୀରୁମାନଙ୍କରଭୟବର୍ଦ୍ଧନ ଅତୀବ ଭୟଙ୍କର ରଜନୀକାଳ ଉପସ୍ଥିତ ହେଲା । ୧୬ । କାରଣ ସେହି ରଜନୀରେ ଅସଂଖ୍ୟ ତୁରଙ୍ଗ, ମାତଙ୍ଗ ଓ ମନୁଷ୍ୟମାନଙ୍କର ପ୍ରାଣବିନଷ୍ଟ ହୋଇଥିଲା ।

ସେହି ଭୀଷଣ ରଜନୀ ମୁଖରେ ଶିବାଗଣ ଜ୍ୱଳାକବଳିତ ମୁଖ ବ୍ୟାଦାନପୂର୍ବକ ଚତୁର୍ଦ୍ଦିଗରୁ ଘୋର ରବରେ ଚିତ୍କାର କରି ମହଦ୍‌ଭୟର ବିଜ୍ଞାପନ କଲେ । କୌରବସୈନ୍ୟ ମଧ୍ୟରେ ବିପୁଳ ଭୟସୂଚକ ଅତୀବ ଭୀଷଣମୂର୍ତ୍ତି ପେଚକମାନେ ଦୃଷ୍ଟ ହେଲେ । ହେ ମହାରାଜ ! ତଦନନ୍ତର ଶତଶତ ମୃଦଙ୍ଗ ନିଃସ୍ୱନ, ହସ୍ତୀମାନଙ୍କର ବୃଂହିତ ଧ୍ୱନି, ଅଶ୍ୱମାନଙ୍କର ହ୍ରେଷାରବ ଓ ଖୁର ନିକ୍ଷେପ ଶବ୍ଦ, ସୁଗଭୀର ଭେରୀ ନିର୍ଘୋଷ ସହିତ ମିଳିତ ହୋଇ ସୈନ୍ୟ ମଧ୍ୟରେ ତୁମୁଳ ଶବ୍ଦ ସମୁତ୍ଥିତ ହେଲା । ସେହି ଶର୍ବରୀ ସମାଗମ ସମୟରେ ପାଞ୍ଚାଳ ଓ ସୃଞ୍ଜୟମାନଙ୍କ ସହିତ ଦ୍ରୋଣାଚାର୍ଯ୍ୟଙ୍କର ଘୋରତର ସଂଗ୍ରାମ ଉପସ୍ଥିତ ହେଲା । ସେହି କାଳରେ ପ୍ରଗାଢ଼ାନ୍ଧକାରରେ ଦିଙ୍‌ମଣ୍ଡଳ ସମାଚ୍ଛନ୍ନ ଓ ଚତୁର୍ଦ୍ଦିଗରୁ ସୈନ୍ୟମାନଙ୍କର ପଦୋତ୍‌ଥିତ ଧୂଳିପଟଳ ଗଗନମଣ୍ଡଳ ପର୍ଯ୍ୟନ୍ତ ସମୁତ୍‌କ୍ଷିପ୍ତ ହେବାରୁ ପ୍ରଥମତଃ କିଛିମାତ୍ର ଦୃଷ୍ଟିଗୋଚର ହେଲା ନାହିଁ । କିନ୍ତୁ କ୍ଷଣକାଳ ପରେ ତୁରଙ୍ଗ, ମାତଙ୍ଗ ଓ

ମନୁଷ୍ୟମାନଙ୍କର ଶୋଣିତ ପ୍ରବାହରେ ମୋହାବସ୍ଥ ହୋଇ ଆମ୍ଭେମାନେ ସେହି ରଣସ୍ଥଳକୁ ରଜଃଶୂନ୍ୟ ବୋଲି ବୋଧ କଲୁଁ ।

ହେ ମହାରାଜ ! ରାତ୍ରିକାଳରେ ପର୍ବତସ୍ଥ ବଂଶବନରେ ଅଗ୍ନି ସଂଲଗ୍ନ ହେଲେ ଯେପରି ଶବ୍ଦ ହୁଏ ସେହିପରି ସେହି ବୀରମାନଙ୍କର ମୁହୁର୍ମୁହୁଃ ଶସ୍ତ୍ର-ସମ୍ପାତ ଦ୍ୱାରା ଘୋରତର ଚଟଚଟା ଶବ୍ଦ ସମୁତ୍ଥିତ ହେଲା । ମୃଦଙ୍ଗ, ଭେରୀ, ପଟହ ଓ ଝର୍ଝରୀ ପ୍ରଭୃତି ବିବିଧ ବାଦ୍ୟର ନିନାଦସହ ଫେତ୍କାର ଓ ହ୍ରେଷିତ ଶବ୍ଦ ମିଳିତ ହେବାରୁ ଦିଙ୍ମଣ୍ଡଳସବୁ ବ୍ୟାକୁଳିତ ହେଲା । ସେହି ରଜନୀ ମୁଖରେ ଚତୁର୍ଦ୍ଦିଗ ତିମିରାବୃତ ହେବାରୁ ସମସ୍ତ ସୈନ୍ୟ ଉନ୍ମତ୍ତ ପ୍ରାୟ ହେଲେ । ସେହି ସମୟରେ ଆତ୍ମପକ୍ଷୀୟ କିମ୍ବା ପର-ପକ୍ଷୀୟ କେହି ଦୃଷ୍ଟିଗୋଚର ହେଲେ ନାହିଁ । ତତ୍ପରେ ଶୋଣିତ ପ୍ରବାହ ଦ୍ୱାରା ଯେପରି ରଣଭୂମିରେ ଧୂଳିସମୂହ ବିନଷ୍ଟ ହୋଇଥିଲା, ସେହିପରି ଯୋଦ୍ଧାମାନଙ୍କର କାଞ୍ଚନମୟ ବର୍ମ୍ମ ଓ ନାନାପ୍ରକାର ଅଳଙ୍କାରର ପ୍ରଭାରେ ଅନ୍ଧକାରର ଅନେକାଂଶ ତିରୋହିତ ହେଲା । ମଣିରତ୍ନବିଭୂଷିତ ସେହି ଭାରତୀସେନା ରଜନୀ କାଳରେ ନକ୍ଷତ୍ରରାଜିବିରାଜିତ ନଭୋମଣ୍ଡଳସଦୃଶ ଶୋଭା ପ୍ରାପ୍ତ ହେଲା । ଶକ୍ତିପ୍ରଭୃତି ବିବିଧ ଶସ୍ତ୍ର ଧ୍ୱଜସମାକୁଳ ସେହି ସୈନ୍ୟ ନିରନ୍ତର କାକ ଓ ଗୋମାୟୁଗଣର ବିକୃତ ରବରେ ପରିପୂର୍ଣ୍ଣ ହସ୍ତିମାନଙ୍କର ବୃଂହିତ ଧ୍ୱନି ଓ ଯୋଦ୍ଧାମାନଙ୍କର ବାହ୍ୱାସ୍ଫୋଟ ଓ ବୀରନାଦରେ ନିନାଦିତ ହୋଇ ଅତି ଭୟାନକ ହେଲା । ତଦ୍ଦ୍ୱାରା ଏପରି ଲୋମହର୍ଷଣକର ମହାନ୍ ତୁମୁଳ କୋଳାହଳ ହେଲା ଯେ, ବୋଧ ହେଲା ଯେପରି ଦିଗ୍‌ସମସ୍ତଙ୍କୁ ସ୍ତମ୍ଭିତ କରି ମହେନ୍ଦ୍ରଙ୍କର ବଜ୍ର ନିନାଦ ହେଉଅଛି । ପୁଣି ନିଶୀଥ ସମୟରେ ସେହି ଭାରତୀସେନା ଅଙ୍ଗଦ, କୁଣ୍ଡଳ, ନିଷ୍କ ଓ ବହୁବିଧ ଶସ୍ତ୍ରଦ୍ୱାରା ଉଦ୍ଭାସିତ ହୋଇ ଅପୂର୍ବ ଶୋଭା ଧାରଣ କଲା । ସେହି ସେନା ମଧ୍ୟସ୍ଥିତ ଜାମ୍ବୁନଦ-ବିଭୂଷିତ ହସ୍ତୀ ଓ ରଥସମୂହ ବିଦ୍ୟୁଦ୍ଦାମଜଡ଼ିତ ଜଳଦପଟଳ ସଦୃଶ ଲକ୍ଷିତ ହେଲା । ଶକ୍ତି, ଋଷ୍ଟି, ଗଦା, ବାଣ, ମୂଷଳ, ପ୍ରାସ ଓ ପଟ୍ଟିଶ ପ୍ରଭୃତି ଶସ୍ତ୍ର-ସମୂହର ପତନ କାଳରେ ଚତୁର୍ଦ୍ଦିଗରୁ ଜ୍ୱଳନ୍ତ ଅଗ୍ନି ବୃଷ୍ଟି ହେଲା ପ୍ରାୟ ବୋଧ ହେଲା ।

ହେ ମହାରାଜ ! ତଦନନ୍ତର ସେହି ସୈନ୍ୟ ମଧ୍ୟରେ ଦ୍ରୋଣ ଓ ପାଣ୍ଡବରୂପ ପର୍ଜ୍ଜନ୍ୟର ଉଦୟ ହେଲା । ଦୁର୍ଯ୍ୟୋଧନ ତାହାର ଅଗ୍ରଗାମୀ ବାୟୁ, ହସ୍ତୀ ଓ ରଥସମୂହ ତାହାର ବଳାକାଶ୍ରେଣୀ, ବାଦିତ୍ର ଧ୍ୱନି ତାହାର ନିର୍ଘୋଷ, ରୂପ ଓ ଧ୍ୱଜ ତାହାର ବିଦ୍ୟୁତ୍, ଖଡ୍‌ଗ ଶକ୍ତି ଓ ଗଦା ତାହାର ଅଶନି, ନିରନ୍ତର ଶରସମ୍ପାତ ତାହାର ଶୀତୋଷ୍ଣସଙ୍କୁଳ ବାରିଧାର । ଯୁଦ୍ଧାର୍ଥୀ ବୀରଗଣ ତାଦୃଶ ଭୟଙ୍କର ଘୋରତର ବିସ୍ମୟକର ଉଗ୍ରତର ଜୀବନାନ୍ତକାରୀ ସାଧାରଣଙ୍କର ଦୁସ୍ତରଣୀୟ ସେହି ଭୀଷଣ ଭାରତୀସେନା ମଧ୍ୟରେ ପ୍ରବେଶ କଲେ ।

ହେ ମହାରାଜ ! ଶୂରମାନଙ୍କର ହର୍ଷବର୍ଦ୍ଧନ, ଭୀରୁମାନଙ୍କର ତ୍ରାସଜନକ ତୁମୁଳ କୋଳାହଳମୟ ସେହି ଭୟଙ୍କର ବିଭାବରୀରେ ନିଦାରୁଣ ଯୁଦ୍ଧ ଉପସ୍ଥିତ ହେଲା । ପାଣ୍ଡବ ଓ ସୃଞ୍ଜୟଗଣ ମିଳିତ ହୋଇ କ୍ରୋଧଭରରେ ଦ୍ରୋଣଙ୍କ ପ୍ରତି ଅଭିଦ୍ରୁତ ହେଲେ । ପରନ୍ତୁ ଯେଉଁ ବୀରମାନେ ସେହି ସମରରେ ମହାତ୍ମା ଦ୍ରୋଣଙ୍କର ସମ୍ମୁଖୀନ ହେଲେ ସେହି ସମସ୍ତଙ୍କୁ ବିମୁଖୀକୃତ ଓ ଅନେକଙ୍କୁ ଶମନଭବନକୁ ପ୍ରେରଣ କଲେ । ତଦନନ୍ତର ସେହି ନିଶାକାଳରେ ଦ୍ରୋଣ ଏକାକୀ ନାରାଚଦ୍ୱାରା ସହସ୍ର ହସ୍ତୀ, ଅୟୁତେ ରଥୀ, ପ୍ରୟୁତେ ପଦାତି ଓ ଅର୍ବୁଦେ ଅଶ୍ୱ ବିଦୀର୍ଣ୍ଣ କଲେ । ୪୧ ।

---

## ୧୫୫ ଅଧ୍ୟାୟ

ଧୃତରାଷ୍ଟ୍ର ବୋଇଲେ—ହେ ସଞ୍ଜୟ ! ସମରରେ ଦୁର୍ବିସହ ଅମିତବଳଶାଳୀ ଦୁର୍ଦ୍ଧର୍ଷ ଦ୍ରୋଣ କ୍ରୁଦ୍ଧ ହୋଇ ସୃଞ୍ଜୟ ସୈନ୍ୟ ମଧ୍ୟରେ ପ୍ରବେଶ କରନ୍ତେ ତୁମ୍ଭମାନଙ୍କର ବୁଦ୍ଧି ସେହି ସମୟରେ କିପରି ହୋଇଥିଲା ? ୧ । ସେ ଶାସନ ଅତିକ୍ରମକାରୀ ଆମ୍ଭର ପୁତ୍ର ଦୁର୍ଯ୍ୟୋଧନକୁ ତିରସ୍କାର କରି ବିପକ୍ଷ ମଧ୍ୟରେ ପ୍ରବେଶ କରନ୍ତେ ପୃଥାପୁତ୍ର କଅଣ କଲେ ? ୨ । କାରଣ ସମରରେ ଅପରାଜିତ ମହାତେଜା ଆଗ୍ରୂର୍ଯ୍ୟ ମହାବୀର ଜୟଦ୍ରଥ ଭୂରିଶ୍ରବାଙ୍କର ନିଧନ ହେତୁ ପାଞ୍ଚାଳମାନଙ୍କ ପ୍ରତି ଅଭିଦ୍ରୁତ ହୋଇଥିଲେ । ୩ ।

ଅତଏବ ଦୁର୍ଦ୍ଧର୍ଷ ସେହି ଶସ୍ତ୍ରତାପନ ଦ୍ରୋଣ ଶସ୍ତ୍ରମାନଙ୍କ ମଧ୍ୟରେ ପ୍ରବିଷ୍ଟ ହେଲାରୁ ତୁମ୍ଭେମାନେ ମନରେ କଅଣ କରିଥିଲ ଓ ଦୁର୍ଯୋଧନ ଅବା ତତ୍କାଳୋଚିତ କର୍ତ୍ତବ୍ୟ ବିଷୟରେ କିପରି ବିବେଚନା କରିଥିଲେ ?

ହେ ସଞ୍ଜୟ ! ଦୁର୍ଯୋଧନର କାମନାପ୍ରଦ ବୀରାଗ୍ରଗଣ୍ୟ ଦ୍ୱିଜସତ୍ତମ ଦ୍ରୋଣଙ୍କର ଗମନକାଳରେ ଆମ୍ଭପକ୍ଷୀୟ କେଉଁ ବୀରମାନେ ତାହାଙ୍କର ଅନୁଗାମୀ ହୋଇଥିଲେ । ସମର କାଳରେ କେଉଁ କେଉଁ ବୀରମାନେ ସେହି ଶୂରପୁରୁଷଙ୍କର ପୃଷ୍ଠରକ୍ଷାରେ ନିଯୁକ୍ତ ଥିଲେ ? ପୁଣି ରଣସ୍ଥଳରେ ସେ ଶସ୍ତ୍ରସଂହାରରେ ପ୍ରବୃତ୍ତ ହେଲାରୁ କେଉଁ କେଉଁ ଶତ୍ରୁପକ୍ଷୀୟ ବୀରମାନେ ତାହାଙ୍କର ପୁରୋବର୍ତ୍ତୀ ହେଲେ ? ହେ ସଞ୍ଜୟ ! ଆମ୍ଭଙ୍କୁ ବୋଧ ହେଉଅଛି ଯେପରି ଶିଶିର ସମୟରେ କୃଶ ଗୋ-ସମୂହ କମ୍ପିତ ହୁଅନ୍ତି, ଭରଦ୍ୱାଜ-ଶରପୀଡ଼ିତ ପାଣ୍ଡବମାନେ ମଧ୍ୟ ସେହିପରି କମ୍ପିତ ହୋଇଥିବେ । ସେହି ଶତ୍ରୁବିମର୍ଦ୍ଦନକାରୀ ପୁରୁଷଶାର୍ଦ୍ଦୂଳ ମହାଧନୁର୍ଦ୍ଧର ଆଚାର୍ଯ୍ୟ ପାଞ୍ଚାଳସୈନ୍ୟ ମଧ୍ୟରେ ପ୍ରବିଷ୍ଟ ହୋଇ କି ପ୍ରକାର ପଞ୍ଚତ୍ୱ ପ୍ରାପ୍ତ ହେଲେ ? ୭ । ସେହି ରାତ୍ରିରେ ଏକତ୍ରିତ ମହାବୀରମାନେ ଯୁଦ୍ଧାର୍ଥ ମିଳିତ ହୋଇ ବିମର୍ଦ୍ଦିତ ହୁଅନ୍ତେ ତୁମ୍ଭମାନଙ୍କ ମଧ୍ୟରେ କେଉଁ କେଉଁ ବୀରମାନେ ସେହି ସମୟରେ ପ୍ରକୃତିସ୍ଥ ଥିଲେ ? ୮ । ତୁମ୍ଭେ କହୁଅଛ ଯେ ଆମ୍ଭପକ୍ଷୀୟ ବୀରମାନେ ସେହି ସମର ସମୟରେ କେତେକ ନିହତ, କେତେକ ପଳାୟିତ, କେତେକ ଅବା ପରାଭୂତ ହୋଇଥିଲେ ଓ ରଥିସୈନ୍ୟ ମଧ୍ୟରୁ ଅନେକ ରଥୀ ରଥଭ୍ରଷ୍ଟ ହୋଇଥିଲେ । ୯ । ସେହି ସମୟରେ ତୁମ୍ଭେମାନେ ସେହି ପ୍ରଗାଢ଼ାନ୍ଧକାରରେ ନିମଗ୍ନ ଥିଲ । ପାଣ୍ଡବଗଣଙ୍କ କର୍ତ୍ତୃକ ଯେତେବେଳେ ବିମର୍ଦ୍ଦିତ ଓ ବିମୋହିତ ହୋଇଥିଲ ତେତେବେଳେ ତୁମ୍ଭମାନଙ୍କର ବୁଦ୍ଧି କିପରି ଥିଲା ? ୧୦ । ପୁଣି ତୁମ୍ଭେ କହୁଅଛ ଯେ ପାଣ୍ଡବମାନେ ଜୟଲାଭ କରି ପ୍ରହୃଷ୍ଟ, ଉଦ୍ଧତ ଓ ପରିତୃପ୍ତ ଥିଲେ ଓ ଆମ୍ଭପକ୍ଷୀୟମାନେ ଭୀତ ଓ ନିରାନନ୍ଦ ହୋଇଥିଲେ । ୧୧ । କିନ୍ତୁ ସେହି ରାତ୍ରିଯୁଦ୍ଧରେ ଅନିବର୍ତ୍ତୀ ପାଣ୍ଡବ ଓ କୌରବମାନଙ୍କର ପରସ୍ପର କିପ୍ରକାର ଦୃଷ୍ଟିଗୋଚର ହେଲା ? ୧୨ ।

ସଞ୍ଜୟ କହିଲେ—ହେ ମହାରାଜ ! ସେହି ଭୟଙ୍କର ରାତ୍ରିଯୁଦ୍ଧ ଉପସ୍ଥିତ ହୁଅନ୍ତେ ପାଣ୍ଡବମାନେ ସୋମକମାନଙ୍କ ସହିତ ମିଳିତ ହୋଇ

ଦ୍ରୋଣଙ୍କର ଅଭିମୁଖକୁ ଧାବମାନ ହେଲେ । ପରନ୍ତୁ ଦ୍ରୋଣ ଧୃଷ୍ଟଦ୍ୟୁମ୍ନଙ୍କର ଆତ୍ମଜଗଣଙ୍କୁ ଓ କେକୟମାନଙ୍କୁ ଦ୍ରୁତଗାମୀ ଶାୟକସମୂହ ଦ୍ୱାରା ପ୍ରେତଲୋକକୁ ପ୍ରେରଣ କଲେ । ୧୪ । ସେହି କାଳରେ ଯେଉଁ ମହାରଥୀମାନେ ମହାତ୍ମା ଆଚାର୍ଯ୍ୟଙ୍କର ସମ୍ମୁଖୀନ ହେଲେ ସେମାନଙ୍କୁ ସେ ତତ୍କ୍ଷଣାତ୍ ପିତୃଲୋକକୁ ପ୍ରେରଣ କଲେ । ୧୫ । ହେ ମହାରାଜ ! ସେହି ସମୟରେ ଭରଦ୍ୱାଜନନ୍ଦନ ଦ୍ରୋଣ ପାଣ୍ଡବପକ୍ଷୀୟ ବୀରମାନଙ୍କୁ ପ୍ରମଥିତ କରନ୍ତେ ପ୍ରତାପବାନ୍ ଶିବିରାଜ କ୍ରୁଦ୍ଧ ହୋଇ ତାହାଙ୍କର ଅଭିମୁଖୀନ ହେଲେ । ଦ୍ରୋଣ ପାଣ୍ଡବପକ୍ଷୀୟ ମହାରଥୀ ଶିବିରାଜଙ୍କୁ ସମାଗତ ହେବାର ଦେଖି ସର୍ବଲୌହମୟ ଦଶଗୋଟି ନିଶିତ ବାଣଦ୍ୱାରା ତାହାଙ୍କୁ ବିଦ୍ଧ କଲେ । ୧୬। ଶିବିରାଜ ମଧ୍ୟ ଶାଣିତ ତିଂଶତ୍ ବାଣଦ୍ୱାରା ଦ୍ରୋଣଙ୍କୁ ବିଦ୍ଧ କରି ଦର୍ପସହକାରେ ତାହାଙ୍କ ସାରଥିକୁ ଭଲ୍ଲାସ୍ତ୍ରଦ୍ୱାରା ନିପାତିତ କଲେ । ୧୮ । ତତ୍‌ପରେ ଦ୍ରୋଣ ମହାତ୍ମା ଶିବିଙ୍କ ସାରଥି ଓ ଅଶ୍ୱମାନଙ୍କୁ ସଂହାର କରି ଗୋଟିଏ ବାଣରେ ତାହାଙ୍କର ଶିରସ୍ତ୍ରାଣସମନ୍ୱିତ ମସ୍ତକକୁ ଶରୀରରୁ ବିଚ୍ଛିନ୍ନ କଲେ । ୧୯ । ଦୁର୍ଯ୍ୟୋଧନ ଦ୍ରୋଣଙ୍କ ନିମିତ୍ତ ସତ୍ୱର ଆଉ ଜଣେ ସାରଥିକୁ ପ୍ରେରଣ କଲେ । ସାରଥି ରାଜାଙ୍କ ଆଦେଶରେ ଅଶ୍ୱରଶ୍ମି ଗ୍ରହଣ କଲାରୁ ଦ୍ରୋଣ ପୁନର୍ବାର ଶତ୍ରୁମାନଙ୍କ ପ୍ରତି ଧାବିତ ହେଲେ । ୨୦ ।

ହେ ମହାରାଜ ! ପୂର୍ବେ ଭୀମସେନ କଳିଙ୍ଗ ରାଜାଙ୍କୁ ନିହତ କରିଥିବାରୁ ବର୍ତ୍ତମାନ ତାହାଙ୍କ ପୁତ୍ର ପିତୃବଧଜନିତ କ୍ରୋଧରେ ଅଧୀର ହୋଇ କଳିଙ୍ଗସୈନ୍ୟ ସହ ଭୀମଙ୍କ ପ୍ରତି ଧାବମାନ ହେଲେ । ୨୧ । କଳିଙ୍ଗ ରାଜକୁମାର ପ୍ରଥମରେ ଭୀମଙ୍କୁ ପାଞ୍ଚଗୋଟି ବାଣରେ ବିଦ୍ଧ କରି ପୁନର୍ବାର ତାହାଙ୍କୁ ସାତଗୋଟି ବାଣରେ ବିଦ୍ଧ କଲେ । ତଦନନ୍ତର ସେ ତିନିଗୋଟି ବାଣରେ ଭୀମଙ୍କର ସାରଥି ବିଶୋକକୁ ଓ ଗୋଟିଏ ବାଣରେ ତାହାଙ୍କର ଧ୍ୱଜକୁ ଛେଦ କଲେ । ୨୨ । ତହୁଁ ବୃକୋଦର କ୍ରୁଦ୍ଧ ହୋଇ ସ୍ୱୀୟ ରଥରୁ ଅବତରଣ କରି କଳିଙ୍ଗରାଜକୁମାରଙ୍କ ରଥରେ ସମାରୂଢ଼ ହେଲେ ଓ ସେହି କ୍ରୋଧାନ୍ୱିତ ବୀରବର ରାଜକୁମାରଙ୍କୁ ମୁଷ୍ଟି ପ୍ରହାରରେ ବିନାଶ କଲେ । ୨୩। ରଣସ୍ଥଳରେ ବଳୀୟାନ ଭୀମସେନଙ୍କର ମୁଷ୍ଟିପ୍ରହାରରେ କଳିଙ୍ଗରାଜକୁମାରଙ୍କ ଅସ୍ଥିସମୂହ ପୃଥକ୍ ପୃଥକ୍ ହୋଇ ନିପତିତ ହେଲା । ୨୪ ।

ହେ ମହାରାଜ ! କର୍ଣ୍ଣ ଓ କଳିଙ୍ଗ ରାଜକୁମାରଙ୍କ ଭ୍ରାତା ଧ୍ରୁବ ଓ ଜୟରାତ ପ୍ରଭୃତି ବୀରମାନେ ଭୀମସେନଙ୍କର ତାଦୃଶ କାର୍ଯ୍ୟକୁ ସହି ପାରିଲେ ନାହିଁ । ସେମାନେ ଏକତ୍ରିତ ହୋଇ ଆଶୀବିଷତୁଲ୍ୟ ନାରାଚସମୂହ ଦ୍ୱାରା ଭୀମଙ୍କୁ ପ୍ରହାର କଲେ । ୨୫ । ତତ୍ପରେ ଭୀମସେନ କଳିଙ୍ଗ ରାଜକୁମାରଙ୍କ ରଥ ପରିତ୍ୟାଗ କରି ଧ୍ରୁବଙ୍କର ରଥ ସମୀପରେ ଉପସ୍ଥିତ ହେଲେ । ଧ୍ରୁବ ନିରନ୍ତର ଅସ୍ତ୍ରବୃଷ୍ଟି କରୁଥିଲେହେଁ ଭୀମ ତାହାଙ୍କୁ ମୁଷ୍ଟି-ପ୍ରହାର କଲେ । ଧ୍ରୁବ ବଳଶାଳୀ ପାଣ୍ଡୁନନ୍ଦନ ଭୀମଙ୍କର ମୁଷ୍ଟିଦ୍ୱାରା ଆହତ ହୋଇ ଭୂତଳରେ ପତିତ ହେଲେ । ମହାବଳବାନ ଭୀମସେନ ଧ୍ରୁବଙ୍କୁ ସଂହାର କରି ଜୟରାତଙ୍କ ରଥରେ ଆରୋହଣପୂର୍ବକ ବାରମ୍ବାର ସିଂହତୁଲ୍ୟ ଗର୍ଜ୍ଜନ କଲେ । ଅନନ୍ତର ସେ ଜୟରାତଙ୍କୁ ବାମହସ୍ତରେ ଉତ୍କ୍ଷେପଣ କରି କର୍ଣ୍ଣଙ୍କ ସମକ୍ଷରେ ଗର୍ଜ୍ଜନପୂର୍ବକ ଗୋଟିଏ ଚପେଟାଘାତରେ ତାହାଙ୍କୁ ବିନାଶ କଲେ । ସେତେବେଳେ କର୍ଣ୍ଣ ଗୋଟିଏ କାଞ୍ଚନମୟୀ ଶକ୍ତି ଗ୍ରହଣ କରି ଭୀମଙ୍କ ପ୍ରତି ନିକ୍ଷେପ କଲେ । ୨୯ । ପାଣ୍ଡୁନନ୍ଦନ ଦୁର୍ଦ୍ଧର୍ଷ ବୃକୋଦର କର୍ଣ୍ଣନିକ୍ଷିପ୍ତ ସେହି ଶକ୍ତିକୁ ହାସ୍ୟପୂର୍ବକ ଗ୍ରହଣ କରି ତାହା କର୍ଣ୍ଣଙ୍କ ପ୍ରତି ନିକ୍ଷେପ କଲେ । ୩୦ । ଶକୁନି କର୍ଣ୍ଣଙ୍କ ପ୍ରତି ସେହି ଶକ୍ତି ସହସା ଆସୁଥିବାର ଦେଖି ତୈଳଧୌତ ଗୋଟିଏ ବାଣଦ୍ୱାରା ତାହାଙ୍କୁ ତତ୍କ୍ଷଣାତ୍ ଛେଦନ କଲେ ।

ହେ ମହାରାଜ ! ଅଦ୍ଭୁତ ପରାକ୍ରମଶାଳୀ ବୃକୋଦର ରଣସ୍ଥଳରେ ଏହିପରି ଅସାଧାରଣ କାର୍ଯ୍ୟକରି ସ୍ୱୀୟ ରଥରେ ଆରୋହଣପୂର୍ବକ ପୁନର୍ବାର ଆପଣଙ୍କ ସୈନ୍ୟ ପ୍ରତି ଧାବିତ ହେଲେ । ସେତେବେଳେ ଆପଣଙ୍କ ମହାରଥି ପୁତ୍ରମାନେ ଜିଘାଂସା ପରବଶ ମହାବାହୁ ଭୀମସେନଙ୍କୁ କ୍ରୁଦ୍ଧ ଅନ୍ତକସଦୃଶ ଆଗମନ କରିବାର ଦେଖି ତାହାଙ୍କୁ ମହତ୍ ଶରବୃଷ୍ଟି ଦ୍ୱାରା ସମାଚ୍ଛାଦିତ କଲେ । ୩୩ । ତଦନନ୍ତର ଭୀମସେନ ହାସ୍ୟ ବଦନରେ ସମରସ୍ଥିତ ଦୁର୍ମ୍ମଦଙ୍କର ଅଶ୍ୱ ଓ ସାରଥିକୁ ଶରନିକର ଦ୍ୱାରା ନିହତ କଲେ । ୩୪ । ଦୁର୍ମ୍ମଦ ଅଶ୍ୱ-ସାରଥି ବିହୀନ ରଥରୁ ଲମ୍ଫ ପ୍ରଦାନପୂର୍ବକ ଭ୍ରାତା ଦୁଷ୍କର୍ଣ୍ଣଙ୍କ ରଥରେ ଆରୋହଣ କଲେ । ହେ ମହାରାଜ ! ଯେପରି ଦେବାସୁର ଯୁଦ୍ଧରେ ସୂର୍ଯ୍ୟ ଓ ବରୁଣ ଦୈତ୍ୟସତ୍ତମ ତାରକା ପ୍ରତି ଧାବିତ

ହୋଇଥିଲେ ସେହିପରି ଶତ୍ରୁତାପନ ସେହି ଭ୍ରାତୃଦ୍ୱୟ ସମରାଙ୍ଗଣରେ ଏକା-ରଥରେ ସମାରୂଢ଼ ହୋଇ ଭୀମଙ୍କ ପ୍ରତି ଧାବିତ ହେଲେ । ୩୬ । ଏହିପରି ଏକ ରଥସ୍ଥିତ ଆପଣଙ୍କ ପୁତ୍ର ଦୁଷ୍କର୍ଣ୍ଣ ଓ ଦୁର୍ମ୍ମଦ ଶରସମୂହଦ୍ୱାରା ଭୀମ-ସେନଙ୍କୁ ବିଦ୍ଧ କଲେ । ୩୭ ।

ହେ ମହାରାଜ ! ଶତ୍ରୁଦମନକାରୀ ପାଣ୍ଡୁନନ୍ଦନ ଭୀମ କର୍ଣ୍ଣ, ଅଶ୍ୱତ୍ଥାମା, ଦୁର୍ଯ୍ୟୋଧନ, କୃପାଚାର୍ଯ୍ୟ, ସୋମଦତ୍ତ ଓ ବାହ୍ଲୀକଙ୍କ ସମକ୍ଷରେ ଦୁଷ୍କର୍ଣ୍ଣଙ୍କର ସେହି ରଥକୁ ପଦାଘାତରେ ଧରଣୀତଳରେ ପ୍ରବିଷ୍ଟ କରାଇଲେ । ୩୯ । ତତ୍ପରେ ସେ ଅତିଶୟ କ୍ରୁଦ୍ଧ ହୋଇ ବଳଶାଳୀ ଶୂର ଦୁଷ୍କର୍ଣ୍ଣ ଓ ଦୁର୍ମ୍ମଦ ଏ ଦୁହିଁଙ୍କୁ ମୁଷ୍ଟିପ୍ରହାରରେ ବିନଷ୍ଟ କରି ଚିତ୍କାର କଲେ । ୪୦ । ହେ ମହାରାଜ ! ସୈନ୍ୟମାନେ ଭୀମସେନଙ୍କର ତାଦୃଶ କର୍ମ୍ମ ଅବ-ଲୋକନ କରି ହାହାକାର କଲେ । ନରପତିମାନେ କହିଲେ, ଏ ନିଶ୍ଚୟ ରୁଦ୍ର, ଭୀମରୂପ ଧାରଣକରି କୌରବସୈନ୍ୟ ମଧ୍ୟରେ ଯୁଦ୍ଧ କରୁଅଛନ୍ତି । ୪୧ । ପାର୍ଥିବମାନେ ଏହିପରି କହି ବିସଂଜ୍ଞ ହୋଇ ଆପଣା ଆପଣା ବାହନ ପରିଚାଳନପୂର୍ବକ ପଳାୟନ କଲେ । ସେହି ସମୟରେ ସେମାନେ ଏହିପରି ଭୀତ ହୋଇଥିଲେ ଯେ, ଦୁଇଜଣ ଏକତ୍ରିତ ହୋଇ ଗମନ କଲେ ନାହିଁ ।

ହେ ମହାରାଜ ! ସେହି ନିଶାମୁଖରେ ଏହିପରି ସୈନ୍ୟସମୂହ କ୍ଷୁଭିତ ହୁଅନ୍ତେ ପ୍ରଫୁଲ୍ଲ କମଳଲୋଚନ ମହାବଳବାନ୍ ବୃକୋଦର ପ୍ରଧାନ ପ୍ରଧାନ ପାର୍ଥିବଗଣଙ୍କକର୍ତ୍ତୃକ ଅତିଶୟ ପ୍ରଶଂସିତ ହୋଇ ସୈନ୍ୟ ସମଭିବ୍ୟାହାରରେ ଯୁଧିଷ୍ଠିରଙ୍କ ନିକଟରେ ଉପସ୍ଥିତ ହୋଇ ତାହାଙ୍କୁ ବନ୍ଦନା କଲେ । ୪୩ । ଧର୍ମନନ୍ଦନ ଯୁଧିଷ୍ଠିର, ନକୁଳ, ସହଦେବ, ଦ୍ରୁପଦ, ବିରାଟ ଓ କେକେୟ ପ୍ରଭୃତି ରାଜାମାନେ ଭୀମଙ୍କର ତାଦୃଶ କାର୍ଯ୍ୟ ଅବଲୋକନ କରି ଅତିଶୟ ହୃଷ୍ଟ ହେଲେ ! ପୁଣି ଅନ୍ଧକାସୁର ନିହତ ହୁଅନ୍ତେ ଯେପରି ଦେବଗଣ ମହାଦେବଙ୍କୁ ପୂଜା କରିଥିଲେ ସେହିପରି ସେମାନେ ସମସ୍ତେ ଭୀମଙ୍କୁ ଅତିଶୟ ସମ୍ମାନ କଲେ । ୪୪ । ହେ ମହାରାଜ ! ବରୁଣାତ୍ମଜସଦୃଶ ଆପଣଙ୍କ ଆତ୍ମଜଗଣ ପାଣ୍ଡବଗଣଙ୍କ ହର୍ଷରେ ରୋଷାନ୍ୱିତ ହୋଇ ରଥ, ପଦାତି, କୁଞ୍ଜରପ୍ରଭୃତି ଚତୁରଙ୍ଗିଣୀ ସେନାସହ ମହାତ୍ମା ଆଚାର୍ଯ୍ୟ ଦ୍ରୋଣଙ୍କୁ ପୁରୋବର୍ତ୍ତୀ କରି ଯୁଦ୍ଧାଭିଳାଷରେ ଦୃଢ଼ରୂପେ ଭୀମଙ୍କୁ ଚତୁର୍ଦ୍ଦିଗରୁ ବେଷ୍ଟନ

କଲେ । ୪୫ । ତତ୍‌ପରେ ସେହି ଜଳଦଜାଲସଦୃଶ ଅନ୍ଧକାରସମାଚ୍ଛନ୍ନ ଭୀଷଣ ଶର୍ବରୀରେ ମହାତ୍ମା କ୍ଷତ୍ରିୟଗଣ ବୃକ, କାକ ଓ ଗୃଧ୍ରମାନଙ୍କର ହର୍ଷଜନକ ନିଦାରୁଣ ଭୟପ୍ରଦ ଅତିଶୟ ଅଦ୍ଭୁତତମ ଯୁଦ୍ଧ ଆରମ୍ଭ କଲେ । ୪୬ ।

---

# ୧୫୬ ଅଧ୍ୟାୟ

ସଞ୍ଜୟ କହିଲେ--ହେ ମହାରାଜ ! ଜୟଦ୍ରଥଙ୍କ ବଧଦିବସରେ ରଣସ୍ଥଳରେ ପ୍ରାୟୋପବିଷ୍ଟ ସୋମଦତ୍ତଙ୍କ ପୁତ୍ର ଭୂରିଶ୍ରବା ନିହତ ହୋଇଥିଲେ । ବର୍ତ୍ତମାନ ଭୂରିଶ୍ରବାଙ୍କ ପିତା ସୋମଦତ୍ତ ସାତ୍ୟକିଙ୍କ ପ୍ରତି ଅତିଶୟ କ୍ରୁଦ୍ଧ ହୋଇ କହିଲେ । ୧ । ହେ ସାତ୍ୟକି ! ପୂର୍ବେ ମହାତ୍ମା ଦେବଗଣଙ୍କ କର୍ତ୍ତୃକ କ୍ଷତ୍ରିୟଧର୍ମ୍ମ ଯେପରି ନିର୍ଣ୍ଣିତ ହୋଇଅଛି, ତାହା ତୁମ୍ଭେ ତ୍ୟାଗ କରି ଦସ୍ୟୁଧର୍ମ୍ମରେ କିପରି ରତ ହେଲ ? ୨ । କ୍ଷତ୍ରଧର୍ମ୍ମରତ ପ୍ରାଜ୍ଞପୁରୁଷ ସମର ପରାଙ୍ମୁଖ ଦୀନତାପନ୍ନ କିମ୍ବା ନ୍ୟସ୍ତଶସ୍ତ୍ର ବ୍ୟକ୍ତିଙ୍କ ପ୍ରତି ରଣରେ କିପରି ଶସ୍ତ୍ର ପ୍ରହାର କରିପାରନ୍ତି ? ୩ । ବୃଷ୍ଣିବଂଶରେ ମହାବାହୁ ପ୍ରଦ୍ୟୁମ୍ନ ଓ ତୁମ୍ଭେ ଏ ଦୁହେଁ ସମରରେ ମହାରଥୀ ବୋଲି ବିଖ୍ୟାତ । ୪ । ତେବେ ତୁମ୍ଭେ କିପରି ପାର୍ଥକର୍ତ୍ତୃକ ଛିନ୍ନବାହୁ ରଣସ୍ଥଳରେ ପ୍ରାୟୋପବିଷ୍ଟ ଆମ୍ଭପୁତ୍ର ଭୂରିଶ୍ରବାଙ୍କ ପ୍ରତି ନୃଶଂସ ଓ ନରକୋତ୍ପାଦନକର ବ୍ୟବହାର କଲ ? ୫ । ହେ ଦୁର୍ବୃତ୍ତ ! ଅଦ୍ୟ ତୁମ୍ଭେ ସମରରେ ସେହି ସ୍ୱକୃତ କର୍ମ୍ମର ଫଳ ଭୋଗ କର । ରେ ମୂଢ଼ ! ଆମ୍ଭେ ସୁକୃତ ଇଷ୍ଟକାର୍ଯ୍ୟ ଓ ପୁତ୍ରମାନଙ୍କଦ୍ୱାରା ଶପଥ କରୁଅଛୁଁ ଯେ ଆମ୍ଭେ ବିକ୍ରମ ପ୍ରକାଶପୂର୍ବକ ନିଶ୍ଚୟ ଶରଦ୍ୱାରା ତୁମ୍ଭର ଶିର ଛେଦନ କରିବୁଁ । ହେ ବୃଷ୍ଣିକୁଳ ପାଂଶୁଳ ! ତୁମ୍ଭେ ଅତିଶୟ ବୀରାଭିମାନୀ । ଯଦି ଅର୍ଜ୍ଜୁନ ତୁମ୍ଭଙ୍କୁ ଅଦ୍ୟ ରକ୍ଷା ନ କରନ୍ତି ତାହାହେଲେ ଏହି ରାତ୍ରି ଶେଷ ନ ହେଉଣୁ ତୁମ୍ଭଙ୍କୁ ପୁତ୍ର ଓ ଅନୁଜଗଣଙ୍କ ସହିତ ବିନାଶ କରିବୁଁ । ଯଦି ଆମ୍ଭର ଏହି ପ୍ରତିଜ୍ଞା ବିଫଳ ହୁଏ, ତାହାହେଲେ ଆମ୍ଭେ ଘୋରତର ନରକରେ ପତିତ ହେବୁଁ । ୮ ।

ମହାବଳଶାଳୀ ସୋମଦତ୍ତ ଅମର୍ଷସହ ଏହିପରି କହି ଉଚ୍ଚୈଃସ୍ୱରରେ ଶଙ୍ଖଧ୍ୱନି ଓ ସିଂହନାଦ କଲେ । ୯ । ତଦନନ୍ତର କମଳ-ପତ୍ରାକ୍ଷ ସିଂହଦଂଷ୍ଟ୍ରା ଦୁରାସଦ ସାତ୍ୟକି ଅତିଶୟ କ୍ରୁଦ୍ଧ ହୋଇ ସୋମଦତ୍ତଙ୍କୁ କହିଲେ । ୧୦ । ହେ କୌରବ୍ୟ ! ତୁମ୍ଭ ସଙ୍ଗରେ ଅବା ଅନ୍ୟ କୌଣସି ପୁରୁଷ ସହିତ ଯୁଦ୍ଧକାଳରେ ଆମ୍ଭ ଅନ୍ତଃକରଣରେ କିଛିମାତ୍ର ଭୟ ସଞ୍ଚାର ହୁଏ ନାହିଁ । ୧୧ । ଯଦି ତୁମ୍ଭେ ଏହି ସମସ୍ତ ସୈନ୍ୟଦ୍ୱାରା ପରିରକ୍ଷିତ ହୋଇ ଆମ୍ଭସହିତ ଯୁଦ୍ଧ କର ତଥାପି ଆମ୍ଭ ମନରେ କିଞ୍ଚିନ୍ମାତ୍ର ପୀଡ଼ା ଉପସ୍ଥିତ ହେବନାହିଁ । ୧୨ । ହେ କୌରବ ! ଆମ୍ଭେ କ୍ଷତ୍ର ଧର୍ମରେ ଅବସ୍ଥିତ ; ଅତଏବ ତୁମ୍ଭେ ସାଧୁମାନଙ୍କର ଅସମ୍ମତ କେବଳ ବାକ୍ୟୁଦ୍ଧ ଦ୍ୱାରା ଆମ୍ଭର ଭୟୋତ୍ପାଦନ କରି ପାରିବ ନାହିଁ । ୧୩ । ଯଦି ଆମ୍ଭସହିତ ତୁମ୍ଭର ଏକାନ୍ତ ଯୁଦ୍ଧ କରିବାର ବାସନା ଥାଏ, ତେବେ ତୁମ୍ଭେ ନିର୍ଦ୍ଦୟ ହୋଇ ନିଶିତ ଶରସମୂହଦ୍ୱାରା ପ୍ରଥମେ ଆମ୍ଭଙ୍କୁ ପ୍ରହାର କରିବ ତତ୍ପରେ ଆମ୍ଭେ ତୁମ୍ଭଙ୍କୁ ପ୍ରହାର କରିବୁଁ । ୧୪ ।

ହେ ରାଜନ୍ ! ତୁମ୍ଭର ବୀରପୁତ୍ର ମହାରଥି ଭୂରିଶ୍ରବା ନିହତ ହୋଇ ଅଛନ୍ତି । ୧୫ । ଅଦ୍ୟ ତୁମ୍ଭଙ୍କୁ ମଧ୍ୟ ତୁମ୍ଭର ଅନ୍ୟାନ୍ୟ ପୁତ୍ର ଓ ବନ୍ଧୁବର୍ଗଙ୍କ ସହିତ ସଂହାର କରିବୁଁ । ତୁମ୍ଭେ କୌରବ କୁଳରେ ଜନ୍ମଗ୍ରହଣ କରିଅଛ । ପୁଣି ତୁମ୍ଭେ ମହାରଥି, ଅତଏବ ଯତ୍ନପରାୟଣ ହୋଇ ରଣସ୍ଥଳରେ ଅବସ୍ଥାନ କର । ୧୬ । ଦାନ, ଇନ୍ଦ୍ରିୟ ସଂଯମ, ସଦାଚାର, ଅହିଂସା, ଲଜ୍ଜା, ଧୈର୍ଯ୍ୟ ଓ କ୍ଷମାପ୍ରଭୃତି ଗୁଣମାନ ଯାହାଙ୍କଠାରେ ନିଶ୍ଚଳଭାବରେ ଅବସ୍ଥାନ କରୁଅଛି ; ଯାହାଙ୍କ ରଥ-ଧ୍ୱଜ ମୃଦଙ୍ଗଲକ୍ଷଣରେ ଚିହ୍ନିତ ସେହି ଧର୍ମନନ୍ଦନ ରାଜା ଯୁଧିଷ୍ଠିରଙ୍କ ତେଜ ପ୍ରଭାବଦ୍ୱାରା ଶକୁନି କର୍ଣ୍ଣ ପ୍ରଭୃତି ତୁମ୍ଭେମାନେ ସମସ୍ତେ ପୂର୍ବରୁ ନିହତ ହୋଇଅଛ । ବର୍ତ୍ତମାନ ସଂଗ୍ରାମସ୍ଥଳରେ କେବଳ ତୁମ୍ଭେମାନେ ବିନଷ୍ଟ ହେବ । ୧୮ । ତୁମ୍ଭପରି ପାପୀ ଯଦି ସମର ପରିତ୍ୟାଗ କରି ପଳାୟନ କରିବ ତାହାହେଲେ ମୁକ୍ତ ହୋଇ ପାରିବ । ନଚେତ୍ ଆମ୍ଭେ ରଣସ୍ଥଳରେ ରୋଷାନ୍ୱିତ ହୋଇ ପୁତ୍ରଗଣଙ୍କ ସହିତ ତୁମ୍ଭଙ୍କୁ ବିନାଶ କରିବୁଁ । ଏହାହିଁ ଆମ୍ଭର ଶ୍ରୀକୃଷ୍ଣଙ୍କର ଚରଣ ଓ ସ୍ୱୀୟ ଇଷ୍ଟାପୂର୍ତ୍ତିର ଶପଥ । ପୁରୁଷସତ୍ତମ ସୋମଦତ୍ତ ଓ ସାତ୍ୟକି ଏ ଦୁହେଁ କ୍ରୋଧରେ

ଲୋହିତଲୋଚନ ହୋଇ ପରସ୍ପର ପରସ୍ପରଙ୍କୁ ଏପ୍ରକାର ଉକ୍ତି ପ୍ରତ୍ୟୁକ୍ତି କରି ଶସ୍ତ୍ର ପ୍ରହାର କରିବାରେ ପ୍ରବୃତ୍ତ ହେଲେ । ତଦନନ୍ତର ରାଜା ଦୁର୍ଯ୍ୟୋଧନ ଏକସହସ୍ର ରଥୀ ଅଯୁତେ ହସ୍ତୀ ଘେନି ସୋମଦତ୍ତଙ୍କୁ ପରିବେଷ୍ଟନ କରି ଅବସ୍ଥାନ କଲେ ।

ହେ ମହାରାଜ ! ସର୍ବଶସ୍ତ୍ରଧାରିପ୍ରବର ଆପଣଙ୍କ ଶ୍ୟାଳକ ଯୁବା, ବଜ୍ରତୁଲ୍ୟକଳେବର ମହାବାହୁ ଶକୁନି ମଧ୍ୟ ଇନ୍ଦ୍ରତୁଲ୍ୟ ପରାକ୍ରାନ୍ତ ପୁତ୍ର, ପୌତ୍ର ଓ ଭ୍ରାତୃଗଣଦ୍ୱାରା ପରିବୃତ୍ତ ହୋଇ ସେହି ସ୍ଥାନରେ ଅବସ୍ଥିତ କଲେ । ୨୩ । ପୁଣି ସେହି ଧୀମାନ୍ ଶକୁନିଙ୍କର ଏକଲକ୍ଷ ପ୍ରଧାନ ଅଶ୍ୱାରୋହୀ ମହାଧନୁର୍ଦ୍ଧର ସୋମଦତ୍ତଙ୍କୁ ଚତୁର୍ଦ୍ଦିଗରୁ ରକ୍ଷା କଲେ । ୨୪ । ଏହିପରି ସୋମଦତ୍ତ ପ୍ରଭୃତି ସୈନ୍ୟ ଓ ପ୍ରଧାନ ପ୍ରଧାନ ବୀରଗଣଙ୍କଦ୍ୱାରା ରକ୍ଷିତ ହୋଇ ଶରବୃଷ୍ଟିଦ୍ୱାରା ସାତ୍ୟକିଙ୍କୁ ସମାଚ୍ଛାଦିତ କଲେ । ସେତେବେଳେ ଧୃଷ୍ଟଦ୍ୟୁମ୍ନ ସାତ୍ୟକିଙ୍କୁ ସନ୍ନତପର୍ବ ବିଶିଖଜାଲରେ ସମାଚ୍ଛନ୍ନ ହେବାର ଦେଖି କ୍ରୁଦ୍ଧ ହୋଇ ମହତୀ ସେନା ସମଭିବ୍ୟାହାରରେ ସେଠାରେ ଉପସ୍ଥିତ ହେଲେ ।

ହେ ମହାରାଜ ! ସେହି ସମୟରେ ଉଭୟପକ୍ଷୀୟ ସୈନ୍ୟମାନେ ପରସ୍ପର ପରସ୍ପରଙ୍କୁ ପ୍ରହାର କରିବାରେ ପ୍ରବୃତ୍ତ ହୁଅନ୍ତେ ପ୍ରଚଣ୍ଡ ବାତାଭିହତ ସାଗର-ନିଃସ୍ୱନସଦୃଶ କୋଳାହଳ ସମୁତ୍ଥିତ ହେଲା । ତତ୍ପରେ ସୋମଦତ୍ତ ନଅଗୋଟି ଶରଦ୍ୱାରା ସାତ୍ୟକିଙ୍କୁ ବିଦ୍ଧ କଲେ । ସାତ୍ୟକି ମଧ୍ୟ କୁରୁପୁଙ୍ଗବ ସୋମଦତ୍ତଙ୍କୁ ନଅଗୋଟି ଶରରେ ବିଦ୍ଧ କଲେ । ସୋମଦତ୍ତ ଦୃଢ଼ଧନ୍ୱା ବଳୀୟାନ୍ ସାତ୍ୟକିଙ୍କ ଶରରେ ଅତିଶୟ ବିଦ୍ଧ ହୋଇ ବିହ୍ୱଳଚିତ୍ତରେ ରଥନୀଡ଼ ଆଶ୍ରୟ କରି ବିମୋହିତ ହେଲେ । ସାରଥି ସ୍ୱୀୟ ପ୍ରଭୁ ମହାରଥୀ ବୀରବର ସୋମଦତ୍ତଙ୍କୁ ବିମୋହିତ ଦେଖି ସତ୍ୱର ରଣସ୍ଥଳରୁ ରଥ ଘେନି ପ୍ରସ୍ଥାନ କଲେ । ଦ୍ରୋଣ ସୋମଦତ୍ତଙ୍କୁ ସାତ୍ୟକିଙ୍କ ଶରରେ ପୀଡ଼ିତ ଓ ଅଚୈତନ୍ୟ ଅବଲୋକନ କରି ସାତ୍ୟକିଙ୍କ ବିନାଶବାସନାରେ ସେଠାରେ ଉପସ୍ଥିତ ହେଲେ । ଯୁଧିଷ୍ଠିର ପ୍ରଭୃତି ପାଣ୍ଡବମାନେ ଦ୍ରୋଣଙ୍କୁ ଆଗମନ କରିବାର ଦେଖି ସାତ୍ୟକିଙ୍କ ରକ୍ଷାର୍ଥ ସ୍ୱସୈନ୍ୟରେ ମହାତ୍ମା ଆଚାର୍ଯ୍ୟଙ୍କୁ ପରିବେଷ୍ଟନ କଲେ । ତଦନନ୍ତର ତ୍ରୈଲୋକ୍ୟ ବିଜୟ କାମନାରେ

ଦେବଗଣଙ୍କ ସହିତ ଅସୁରରାଜ ବଳଙ୍କର ପୂର୍ବେ ଯେପରି ଯୁଦ୍ଧ ହୋଇଥିଲା ଦ୍ରୋଣଙ୍କ ସହିତ ପାଣ୍ଡବମାନଙ୍କର ସେହିପରି ଘୋରତର ଯୁଦ୍ଧ ଉପସ୍ଥିତ ହେଲା ।

ତେଜଃପୁଞ୍ଜକଳେବର ଭରଦ୍ୱାଜନନ୍ଦନ ଶରଜାଲରେ ପାଣ୍ଡବ-ସୈନ୍ୟଙ୍କୁ ସମାବୃତ କରି ଯୁଧିଷ୍ଠିରଙ୍କୁ ବିଦ୍ଧ କଲେ । ତତ୍ପରେ ସେ ସାତ୍ୟକଙ୍କୁ ଦଶଗୋଟି ବାଣରେ, ଧୃଷ୍ଟଦ୍ୟୁମ୍ନଙ୍କୁ ପଞ୍ଚବିଂଶତି ବାଣରେ, ଭୀମସେନଙ୍କୁ ନଅଗୋଟି ବାଣରେ, ନକୁଳଙ୍କୁ ପାଞ୍ଚଗୋଟି ବାଣରେ, ସହଦେବଙ୍କୁ ଆଠଗୋଟି ବାଣରେ, ଶିଖଣ୍ଡୀଙ୍କୁ ଶତ ବାଣରେ, ଦ୍ରୌପଦୀ-ପୁତ୍ରମାନଙ୍କୁ ପାଞ୍ଚ ପାଞ୍ଚଗୋଟି ବାଣରେ, ମତ୍ସ୍ୟରାଜ ବିରାଟଙ୍କୁ ଆଠଗୋଟି ବାଣରେ, ପାଞ୍ଚାଳପତି ଦ୍ରୁପଦଙ୍କୁ ଦଶଗୋଟି ବାଣରେ, ଯୁଧାମନ୍ୟୁଙ୍କୁ ତିନଗୋଟି ବାଣରେ, ଉତ୍ତମୌଜାଙ୍କୁ ଛଅଗୋଟି ବାଣରେ ଓ ଅପରାପର ସୈନ୍ୟମାନଙ୍କୁ ଅସଂଖ୍ୟ ବାଣରେ ବିଦ୍ଧ କରି ଯୁଧିଷ୍ଠିରଙ୍କ ପ୍ରତି ଧାବିତ ହେଲେ । ୩୭ ।

ହେ ମହାରାଜ ! ପାଣ୍ଡବସୈନ୍ୟମାନେ ଦ୍ରୋଣଙ୍କ କର୍ତ୍ତୃକ ବଧ୍ୟମାନ ହୋଇ ଭୟରେ ଆର୍ତ୍ତନାଦ କରୁ କରୁ ଚତୁର୍ଦ୍ଦିଗକୁ ପଳାୟନ କଲେ । ୩୮ । ପୃଥାନନ୍ଦନ ଫାଲ୍‌ଗୁନ ସୈନ୍ୟମାନଙ୍କୁ ଦ୍ରୋଣଙ୍କକର୍ତ୍ତୃକ ତାଡ଼ିତ ହେବାର ଦେଖି ଈଷତ୍ ରୋଷାନ୍ୱିତ ହୋଇ ସତ୍ୱର ଗୁରୁଙ୍କ ଅଭିମୁଖକୁ ଧାବିତ ହେଲେ । ୩୯ । ଯୁଧିଷ୍ଠିରଙ୍କ ସୈନ୍ୟମାନେ ମହା-ସମରରେ ଅର୍ଜ୍ଜୁନଙ୍କୁ ଦ୍ରୋଣାଭିମୁଖକୁ ଗମନ କରିବାର ଦେଖି ପ୍ରତିନିବୃତ୍ତ ହେଲେ । ୪୦ । ଦ୍ରୋଣଙ୍କ ସହିତ ପାଣ୍ଡବମାନଙ୍କର ପୁନର୍ବାର ଘୋରତର ଯୁଦ୍ଧ ଉପସ୍ଥିତ ହେଲା । ହେ ମହାରାଜ ! ଦ୍ରୋଣ ଆପଣଙ୍କ ପୁତ୍ରମାନଙ୍କଦ୍ୱାରା ପରିବୃତ ହୋଇ ଅଗ୍ନି ତୁଳାରାଶିକୁ ଦଗ୍‌ଧକଲାପ୍ରାୟ ପାଣ୍ଡବସୈନ୍ୟମାନଙ୍କୁ ଦଗ୍‌ଧ କରିବାରେ ପ୍ରବୃତ୍ତ ହେଲେ । ପ୍ରଚଣ୍ଡ ମାର୍ତ୍ତଣ୍ଡ ଓ ଜ୍ୱଳନ୍ତ ଅନଳତୁଲ୍ୟ ଦ୍ୟୁତିମାନ୍ ଦ୍ରୋଣଙ୍କର ମଣ୍ଡଳୀକୃତ କାର୍ମ୍ମୁକରୁ ନିରନ୍ତର ଅଗ୍ନିଶିଖାସଦୃଶ ଶର-ରାଶି ନିକ୍ଷିପ୍ତ ହୋଇ ଶତ୍ରୁମାନଙ୍କୁ ଦଗ୍‌ଧ କରନ୍ତେ ଶତ୍ରୁମାନେ ତାହାଙ୍କୁ ଜଗଦୁତ୍ତାପକ ଭାସ୍କରସଦୃଶ ବୋଧ କରି ନିବାରଣ କରିବାକୁ ସମର୍ଥ ହେଲେ ନାହିଁ । ସେହି ସମୟରେ ଯେଉଁ ବୀରମାନେ ଆଚାର୍ଯ୍ୟଙ୍କ ସମ୍ମୁଖରେ

ଉପସ୍ଥିତ ଥିଲେ ତାହାଙ୍କ ନିକ୍ଷିପ୍ତ ଶର ସେମାନଙ୍କର ମସ୍ତକକୁ ଛେଦନ କରି ଭୂତଳରେ ପ୍ରବିଷ୍ଟ ହେଲା । ଏହିପରି ସେହି ପାଣ୍ଡବସେନା ମହାତ୍ମା ଦ୍ରୋଣଙ୍କର ଶରରେ ବଧ୍ୟମାନ ହୋଇ ସବ୍ୟସାଚୀ ଧନଞ୍ଜୟଙ୍କ ସମକ୍ଷରେ ପୁନର୍ବାର ଭୟରେ ପଳାୟନ କଲେ ।

ହେ କୁରୁରାଜ ! ସେହି ରାତ୍ରିକାଳରେ ଧନଞ୍ଜୟ ଦ୍ରୋଣଙ୍କ କର୍ତ୍ତୃକ ସ୍ୱପକ୍ଷୀୟ ସୈନ୍ୟମାନଙ୍କୁ ପଳାୟନ କରିବାର ଅବଲୋକନ କରି ଦାଶାର୍ହ କୃଷ୍ଣଙ୍କୁ କହିଲେ, ତୁମ୍ଭେ ଦ୍ରୋଣଙ୍କ ରଥସମୀପକୁ ଗମନ କର । କୃଷ୍ଣ ଅର୍ଜୁନଙ୍କ କର୍ତ୍ତୃକ ଆଦିଷ୍ଟ ହୋଇ ରଜତଦୁଗ୍ଧକୁନ୍ଦ ଓ ଇନ୍ଦୁସବର୍ଣ୍ଣ ଅଶ୍ୱମାନଙ୍କୁ ଦ୍ରୋଣଙ୍କ ନିକଟକୁ ଚାଳନା କଲେ । ସେତେବେଳେ ଭୀମସେନ ମଧ୍ୟ ଅର୍ଜୁନଙ୍କୁ ଦ୍ରୋଣଙ୍କ ସମୀପକୁ ଗମନ କରିବାର ଦେଖି ସ୍ୱୀୟ ସାରଥିକୁ ଏପରି ଆଦେଶ ଦେଲେ ଯେ ଆମ୍ଭଙ୍କୁ ଦ୍ରୋଣସୈନ୍ୟ ନିକଟକୁ ଘେନିଯାଅ । ଭୀମସାରଥି ବିଶୋକ ସ୍ୱୀୟ ପ୍ରଭୁଙ୍କ ଆଜ୍ଞା ଶ୍ରବଣ କରି ସତ୍ୟସନ୍ଧ କୃଷ୍ଣଙ୍କର ପଶ୍ଚାତ୍ ପଶ୍ଚାତ୍ ଅଶ୍ୱମାନଙ୍କୁ ଚାଳିତ କଲେ । ପାଞ୍ଚାଳ, ସୃଞ୍ଜୟ, ମହାରଥ କେକୟମାନେ, ମତ୍ସ୍ୟ, ଚେଦି, କାରୂଷ ଓ କୋଶଳଦେଶୀୟ ସୈନ୍ୟମାନେ ମଧ୍ୟ ଭୀମାର୍ଜୁନ ଦୁଇଭ୍ରାତାଙ୍କୁ ଯତ୍ନପର ହୋଇ ଦ୍ରୋଣସୈନ୍ୟାଭିମୁଖକୁ ଗମନ କରିବା ଦେଖି ସେମାନଙ୍କର ଅନୁଗାମୀ ହେଲେ । ୫୧ । ହେ ମହାରାଜ ! ତଦନନ୍ତର ଲୋମହର୍ଷଣ ଘୋରତର ସଂଗ୍ରାମ ଉପସ୍ଥିତ ହେଲା । ସେହି ସମୟରେ ଭୀମ ଓ ଅର୍ଜୁନ ଦୁହେଁ ସୁମହତ୍ ରଥବୃନ୍ଦଦ୍ୱାରା ଆପଣଙ୍କ ସୈନ୍ୟର ଉତ୍ତର ଓ ଦକ୍ଷିଣ ପାର୍ଶ୍ୱକୁ କ୍ରମାନ୍ୱୟରେ ଆକ୍ରମଣ କଲେ । ମହାବଳ ଧୃଷ୍ଟଦ୍ୟୁମ୍ନ ଓ ସାତ୍ୟକି ପୁରୁଷଶାର୍ଦ୍ଦୂଳ ଭୀମସେନ ଓ ଧନଞ୍ଜୟଙ୍କୁ ଦ୍ରୋଣ-ସୈନ୍ୟପ୍ରତି ଗମନ କରିବାର ଦେଖି ସେଠାରେ ଉପନୀତ ହେଲେ ।

ତଦନନ୍ତର ଉଭୟପକ୍ଷୀୟ ସୈନ୍ୟମାନେ ପରସ୍ପର ପରସ୍ପରକୁ ପ୍ରହାର କରିବାରେ ପ୍ରବୃତ୍ତ ହୁଅନ୍ତେ ପ୍ରଚଣ୍ଡ ବାତାଭିହତ ସାଗର ନିଃସ୍ୱନ ସଦୃଶ ତୁମୁଳ କୋଳାହଳ ସମୁତ୍ଥିତ ହେଲା । ସେହି ସମୟରେ ଆଚାର୍ଯ୍ୟ-ନନ୍ଦନ ଅଶ୍ୱତ୍ଥାମା ସାତ୍ୟକିଙ୍କୁ ରଣସ୍ଥଳରେ ଅବଲୋକନ କରି ଭୂରିଶ୍ରବାଙ୍କ ବଧହେତୁ କ୍ରୁଦ୍ଧ ଓ ସାତ୍ୟକିଙ୍କର ବଧ ନିମିତ୍ତ କୃତନିଶ୍ଚୟ ହୋଇ ତାହାଙ୍କ ପ୍ରତି ଧାବିତ ହେଲେ । ଭୀମସେନନନ୍ଦନ ଘଟୋତ୍କଚ ଅଶ୍ୱତ୍ଥାମାଙ୍କୁ

ସାତ୍ୟକଙ୍କ ରଥ ନିକଟକୁ ସମାଗତ ହେବାର ଦେଖି ଅତିଶୟ କ୍ରୁଦ୍ଧ ହୋଇ ତୀକ୍ଷ୍ଣ ଲୌହମୟ ଋକ୍ଷଚର୍ମ୍ମସମାଚ୍ଛନ୍ନ ବହୁବିଧଯନ୍ତ୍ରସନ୍ନାହପରିପୂରିତ ଅଷ୍ଟଚକ୍ରସମନ୍ୱିତ ମହାମେଘସଦୃଶଗମ୍ଭୀରଶବ୍ଦାୟମାନ ତ୍ରିଂଶନ୍ନଲ୍ୱବିସ୍ତୀର୍ଣ୍ଣ ଗୋଟିଏ ରଥବରରେ ଆରୋହଣ କଲେ । ତାହାଙ୍କର ସେହି ରଥରେ ମାତଙ୍ଗାକାର ବାହନସମୂହ ସଂଯୋଜିତ ହୋଇଥିଲେ । ସେହି ବାହନମାନେ ହସ୍ତୀ ନୁହନ୍ତି ବା ଅଶ୍ୱ ନୁହନ୍ତି, ଅଥଚ ସେମାନେ ପିଶାଚ । ସେହି ରଥରେ ସମୁଚ୍ଛ୍ରିତ ଧ୍ୱଜଦଣ୍ଡରେ ବିକୃତାକ୍ଷ ଗୋଟାଏ ପ୍ରକାଣ୍ଡ ଗୃଧ୍ର ବସି ଚରଣ ଓ ପକ୍ଷକୁ ବିକ୍ଷେପପୂର୍ବକ ବିକୃତସ୍ୱରରେ ଚିତ୍କାର କରୁଥିଲା । ହିଡ଼ିମ୍ବାନନ୍ଦନ ଶୋଣିତାର୍ଦ୍ର-ପତାକା ଓ ଅନ୍ତ୍ରମାଳାବିଭୂଷିତ ତାଦୃଶ ବିପୁଳ ରଥରେ ସମାରୂଢ଼ ହୋଇ ପାଷାଣ, ବୃକ୍ଷ, ଶୂଳ ଓ ମୁଦ୍‌ଗରହସ୍ତ ଭୀଷଣମୂର୍ତ୍ତି ଏକ ଅକ୍ଷୌହିଣୀ ସେନା ସଙ୍ଗରେ ଯେପରି ବିପକ୍ଷ ଦ୍ରୋଣ-ନନ୍ଦନଙ୍କୁ ନିବାରଣ କରିବାରେ ପ୍ରବୃତ୍ତ ହେଲେ । ନରପତିମାନେ ତାହାଙ୍କୁ ଯୁଗାନ୍ତକାଳୀନ ଦଣ୍ଡପାଣି ଅନ୍ତକସଦୃଶ ଶରାସନ ଉଦ୍ୟତ କରି ଆଗମନ କରିବାର ଦେଖି ସମସ୍ତେ ବ୍ୟଥିତାନ୍ତଃକରଣ ହେଲେ ।

ସେହି ଗିରିଶୃଙ୍ଗନିଭ ଭୀମମୂର୍ତ୍ତି ଭୟାବହ ଦଂଷ୍ଟ୍ରାକରାଳ ଓ ପ୍ରଦୀପ୍ତ ବିକଟବଦନ, ଶଙ୍କୁକର୍ଣ୍ଣ ଓ ମହାହନୁଗଣ୍ଡସମାଯୁକ୍ତ ଊର୍ଦ୍ଧ୍ୱକେଶ ବିରୂପାକ୍ଷ, ନିମ୍ନୋଦର ସୁଗଭୀର ଗର୍ତ୍ତସଦୃଶଗଳଦ୍ୱାରସମନ୍ୱିତ, କିରୀଟସମାବୃତ-ଶିରୋରୁହ, ସର୍ବପ୍ରାଣିତ୍ରାସଜନକ, ପ୍ରଦୀପ୍ତ ପାବକ ଓ ବ୍ୟାଦିତାସ୍ୟ ବୈବସ୍ୱତ ତୁଲ୍ୟ ବିପକ୍ଷ-ବିକ୍ଷୋଭକାରୀ ରକ୍ଷେନ୍ଦ୍ର ଘଟୋତ୍କଚଙ୍କୁ ମହତ୍ ଶରାସନହସ୍ତ ହୋଇ ଆଗମନ କରିବାର ଦେଖି ଆପଣଙ୍କ ପୁତ୍ରଙ୍କର ସୈନ୍ୟମାନେ ମଧ୍ୟ ଅତିଶୟ ଭୟପୀଡ଼ିତ ହେଲେ ଓ ବାୟୁକର୍ତ୍ତୃକ କ୍ଷୋଭିତ ଆବର୍ତ୍ତ ଓ ଉତ୍ତୁଙ୍ଗ-ତରଙ୍ଗମାଳିନୀ ସୁରତରଙ୍ଗିଣୀ ସଦୃଶ କ୍ଷୁଭିତ ହେଲେ । ୬୭ । ସେହି ସମୟରେ ଘଟୋତ୍କଚର ସିଂହନାଦ ଦ୍ୱାରା ମାତଙ୍ଗସବୁ ଭୀତ ହୋଇ ମୂତ୍ରତ୍ୟାଗ କଲେ । ୬୮ । ରଜନୀକାଳ ହେତୁ ରାକ୍ଷସମାନେ ଅଧିକ ବଳାନ୍ୱିତ ହୋଇ ରଣସ୍ଥଳର ଚତୁର୍ଦ୍ଦିଗରୁ ପାଷାଣ ବୃଷ୍ଟି କଲେ । ଲୌହ-ମୟ ଚକ୍ର, ଭୁଷଣ୍ଡୀ, ପ୍ରାସ, ତୋମର, ଶୂଳ, ଶତଘ୍ନୀ ଓ ପଟ୍ଟିଶ ପ୍ରଭୃତି ବହୁବିଧ ଅସ୍ତ୍ରସମୂହ ନିରନ୍ତର ପତିତ ହେଲା । ୭୦ ।

ହେ ମହାରାଜ ! ସେହି ଅତି ନିଷ୍ଠୁରତର ଭୀଷଣ ସଂଗ୍ରାମ ଦର୍ଶନ କରି ସମସ୍ତ ନରପତିମାନେ ଓ ଆପଣଙ୍କ ପୁତ୍ରଗଣ ଏବଂ କର୍ଣ୍ଣ ସମସ୍ତେ କାତର ହୋଇ ଚତୁର୍ଦ୍ଦିଗକୁ ପଳାୟନ କଲେ । ୭୧ । ସେହି ସ୍ଥାନରେ ଏକମାତ୍ର ଅସ୍ତ୍ରବଳଶ୍ଳାଘୀ ଅଶ୍ୱତ୍ଥାମା ଅକ୍ଷୁବ୍ଧଚିତ୍ତରେ ଅବସ୍ଥାନ କରି ଘଟୋତ୍କଚର ବିସ୍ତୃତ ମାୟାକୁ ବାଣ ପ୍ରଭାବରେ ଭସ୍ମୀଭୂତ କଲେ । ୭୨ । ମାୟା ବିନଷ୍ଟ ହେବାରୁ ଘଟୋତ୍କଚ ରୋଷାନ୍ୱିତ ହୋଇ ଘୋରତର ଶରଜାଲ ବିସ୍ତାର କଲା । ସେହି ସମସ୍ତ ଶର ଅଶ୍ୱତ୍ଥାମାଙ୍କ ଶରୀରରେ ପ୍ରବିଷ୍ଟ ହେଲା ।୭୩।

ହେ ମହାରାଜ ! ଯେପରି ଭୁଜଙ୍ଗଗଣ କ୍ରୋଧମୂର୍ଚ୍ଛିତ ହୋଇ ବଲ୍ମୀକ ମଧ୍ୟରେ ପ୍ରବେଶ କରନ୍ତି, ସେହିପରି ଘଟୋତ୍କଚକର୍ତ୍ତୃକନିକ୍ଷିପ୍ତ ସୁବର୍ଣ୍ଣପୁଙ୍ଖ ଶିଳାଶାଣିତ ଶୀଘ୍ରଗାମୀ ଶରସମୂହ ଅଶ୍ୱତ୍ଥାମାଙ୍କ ଦେହ ଭେଦକରି ରୁଧିରାକ୍ତ କଳେବରରେ ଧରାତଳରେ ପ୍ରବେଶ କଲା । ସେତେବେଳେ ପ୍ରତାପଶାଳୀ ଅଶ୍ୱତ୍ଥାମା ଅତିଶୟ କ୍ରୁଦ୍ଧ ହୋଇ ଲଘୁହସ୍ତରେ ଦଶଗୋଟି ଶରଦ୍ୱାରା ଘଟୋତ୍କଚର କଳେବର ଭେଦ କଲେ । ଘଟୋତ୍କଚ ଦ୍ରୋଣପୁତ୍ର ଅଶ୍ୱତ୍ଥାମାଙ୍କ ଶରଦ୍ୱାରା ମର୍ମ୍ମସ୍ଥଳରେ ଅତିଶୟ ବିଦ୍ଧ ହୋଇ ଅତି କାତର ହେଲେ । ତତ୍ପରେ ସେ ଶତସହସ୍ର ଅରବିଶିଷ୍ଟ ଗୋଟିଏ ମହତ୍ ଚକ୍ର ଗ୍ରହଣ କଲେ । ଭୀମସେନ-ନନ୍ଦନ ଘଟୋତ୍କଚ ଜିଘାଂସା ପରବଶ ହୋଇ ବାଳାର୍କପ୍ରଭ ବଜ୍ରମଣିବିଭୂଷିତ କ୍ଷୁରଧାର ସେହି ଚକ୍ର ଉତ୍ତୋଳନ ପୂର୍ବକ ଅଶ୍ୱତ୍ଥାମାଙ୍କ ପ୍ରତି ନିକ୍ଷେପ କଲେ ।

ହେ ମହାରାଜ ! ଯେପରି ଭାଗ୍ୟହୀନ ମନୁଷ୍ୟର ସମସ୍ତ ସଂକଳ୍ପ ନିଷ୍ଫଳ ହୁଏ, ସେହିପରି ମହାବେଗରେ ସମାଗତ ଘଟୋତ୍କଚପ୍ରମୁକ୍ତ ସେହି ଚକ୍ର ଅଶ୍ୱତ୍ଥାମାଙ୍କ ଶର ପ୍ରଭାବରେ ବିକ୍ଷିପ୍ତ ହୋଇ ଧରାତଳରେ ନିପତିତ ହେଲା । ସେହି ଦାରୁଣ ଚକ୍ର ଭୂତଳରେ ନିପତିତ ହେବାର ଅବଲୋକନ କରି ଘଟୋତ୍କଚର ପୁତ୍ର ସ୍ୱର୍ଭାନୁ ଭାନୁଙ୍କୁ ଆଚ୍ଛନ୍ନ କଲାପ୍ରାୟ ଦ୍ରୋଣପୁତ୍ରଙ୍କୁ ଶରନିକର ଦ୍ୱାରା ସମାଚ୍ଛନ୍ନ କଲା । ଯେପରି ମହାଗିରି ପ୍ରଚଣ୍ଡ ବାୟୁର ଗତିରୋଧ କରେ, ସେହିପରି ଭିନ୍ନାଞ୍ଜନସନ୍ନିଭକଳେବର ଘଟୋତ୍କଚତନୟ ଶ୍ରୀମାନ୍ ଅଞ୍ଜନପର୍ବା ଅଶ୍ୱତ୍ଥାମାଙ୍କୁ ସମାଗତ ହେବାର ଦେଖି ତାହାଙ୍କର ଗତିରୋଧ କଲେ । ଅଶ୍ୱତ୍ଥାମା ଭୀମସେନଙ୍କ ପୌତ୍ର ଅଞ୍ଜନପର୍ବାଙ୍କ

ଶରରେ ସମାଚ୍ଛତ ହୋଇ ନିରନ୍ତର ଧାରାଧରବର୍ଷ୍ମ କ୍ତ-ବାରିଧାରା-ସମାଚ୍ଛତ ସୁମେରୁ ସଦୃଶ ଶୋଭମାନ ହେଲେ । ତଦନନ୍ତର ରୁଦ୍ର, ଉପେନ୍ଦ୍ର ଓ ଇନ୍ଦ୍ରତୁଲ୍ୟ ପରାକ୍ରମଶାଳୀ ଅଶ୍ୱତ୍ଥାମା ଅସମ୍ଭ୍ରାନ୍ତ ଚିତ୍ତରେ ଗୋଟିଏ ବାଣଦ୍ୱାରା ଅଞ୍ଜନପର୍ବାର ଧ୍ୱଜକୁ ଛେଦନ କଲେ । ତତ୍ପରେ ସେ ଦୁଇଗୋଟି ବାଣଦ୍ୱାରା ତାହାଙ୍କର ସାରଥିକୁ ଓ ଚାରିଗୋଟି ବାଣଦ୍ୱାରା ତାହାଙ୍କର ଅଶ୍ୱଚତୁଷ୍ଟୟକୁ ନିହତ କରି ତିନିଗୋଟି ବାଣରେ ତାହାଙ୍କ ରଥର ତ୍ରିବେଣୁ ଓ ଗୋଟିଏ ବାଣରେ ତାହାଙ୍କର ହସ୍ତସ୍ଥିତ ଶରାସନ ଛେଦନ କଲେ । ଅଞ୍ଜନପର୍ବା ରଥଭ୍ରଷ୍ଟ ଓ ଛିନ୍ନଚାପ ହୋଇ ସ୍ୱର୍ଣ୍ଣବିନ୍ଦୁଖଚିତ ଗୋଟିଏ ଭୀଷଣ ଖଡ୍‌ଗ ଉଦ୍ୟତ କଲେ । ଅଶ୍ୱତ୍ଥାମା ଗୋଟିଏ ସୁତୀକ୍ଷ୍ଣ ଶରଦ୍ୱାରା ତାହାକୁ ଦୁଇଖଣ୍ଡ କଲେ । ସେହି ଖଡ୍‌ଗ ଛିନ୍ନ ହୁଅନ୍ତେ ଘଟୋତ୍କଚନନ୍ଦନ ସତ୍ୱର ହୋଇ ହେମାଙ୍ଗଦବିଭୂଷିତ ଗୋଟିଏ ଗଦା ଉଦ୍‌ଭ୍ରାମିତ କରି ଅଶ୍ୱତ୍‌ଥାମାଙ୍କ ଉପରିକୁ ନିକ୍ଷେପ କଲେ । ତାହା ନିକ୍ଷିପ୍ତ ହେବାମାତ୍ରେ ଅଶ୍ୱତ୍‌ଥାମାଙ୍କ ଶରନିକରରେ ଅଭିହତ ହୋଇ ଭୂତଳରେ ପତିତ ହେଲା । ତଦନନ୍ତର ଅଞ୍ଜନପର୍ବା ଅନ୍ତରୀକ୍ଷକୁ ସମୁତ୍ଥିତ ହୋଇ ବର୍ଷାକାଳୀନ ମେଘସଦୃଶ ଗର୍ଜ୍ଜନ କରି ନଭଃସ୍ଥଳରୁ ବୃକ୍ଷ ବୃଷ୍ଟି କଲା ।

ହେ ମହାରାଜ ! ଦିବାକର ସ୍ୱକୀୟ କରଜାଳଦ୍ୱାରା ମେଘଜାଲ ଭେଦକଲାପ୍ରାୟ ଅଶ୍ୱତ୍ଥାମା ଗଗନସ୍ଥିତ ମାୟାଧାରୀ ସେହି ଘଟୋତ୍କଚ-ତନୟକୁ ଶରନିକରରେ ଭେଦ କଲେ । ହେ ମହାରାଜ ! ଅଞ୍ଜନାଚଳ-ସଦୃଶ ଭୀଷଣ ଶ୍ରୀମାନ୍ ଅଞ୍ଜନପର୍ବା ଅମ୍ବର ଦେଶରୁ ଅବତୀର୍ଣ୍ଣ ହୋଇ ପୁନର୍ବାର ଭୂତଳସ୍ଥିତ ହେମପରିଚ୍ଛନ୍ନ ରଥରେ ଅବସ୍ଥାନ କଲେ । ଦ୍ରୋଣପୁତ୍ର ଅଶ୍ୱତ୍ଥାମା ମହେଶ୍ୱର ଅନ୍ଧକାସୁରକୁ ବିନାଶ କଲାପ୍ରାୟ ଲୌହମୟ ବର୍ମ୍ମଧାରୀ ସେହି ଭୀମପୌତ୍ର ଅଞ୍ଜନପର୍ବାକୁ ସଂହାର କଲେ ।

ତଦନନ୍ତର ଘଟୋତ୍କଚ ସ୍ୱୀୟ ମହାବଳୀ ପୁତ୍ରକୁ ଅଶ୍ୱତ୍ଥାମା କର୍ତ୍ତୃକ ନିହତ ହେବାର ଦେଖନ୍ତେ ରୋଷବଶରୁ ଜ୍ୱଳିତାଙ୍ଗଦ ହୋଇ ଅଶ୍ୱତ୍ଥାମାଙ୍କ ନିକଟରେ ଉପସ୍ଥିତ ହେଲେ ଓ ଉଦ୍ଧତ ଅଗ୍ନି ଅରଣ୍ୟ ଦଗ୍‌ଧକଲାପ୍ରାୟ ପାଣ୍ଡବ ସୈନ୍ୟଦଗ୍‌ଧକାରୀ ସେହି ଶାରଦ୍ୱତୀସୁତଙ୍କୁ ଅସମ୍ଭ୍ରାନ୍ତ ଚିତ୍ତରେ କହିଲେ । ହେ ଦ୍ରୋଣପୁତ୍ର ! କ୍ଷଣମାତ୍ର ଅବସ୍ଥାନ କର ।

ତୁମ୍ଭେ ଅଦ୍ୟ ଆମ୍ଭଠାରୁ ଜୀବନ ଘେନି ଗମନ କରିବାକୁ ସମର୍ଥ ହେବନାହିଁ । ୯୨ । ଯେପରି ଅଗ୍ନିପୁତ୍ର କାର୍ତ୍ତିକେୟ କ୍ରୌଞ୍ଚପର୍ବତକୁ ବିଦାର୍ଣ୍ଣ କରିଥିଲେ, ଅଦ୍ୟ ଆମ୍ଭେ ମଧ୍ୟ ତୁମ୍ଭଙ୍କୁ ସେହିପରି ବିଦାର୍ଣ୍ଣ କରିବୁଁ । ଘଟୋତ୍କଚଙ୍କର ଏହିପରି ବାକ୍ୟ ଶ୍ରବଣ କରି ଅଶ୍ୱତ୍ଥାମା କହିଲେ, ହେ ଅମରବିକ୍ରମ ବତ୍ସ, ହିଡ଼ିମ୍ବାନନ୍ଦନ ! ଗମନ କର, ଅନ୍ୟ ସହିତ ସମରରେ ପ୍ରବୃତ୍ତ ହୁଅ । କାରଣ ପିତାସହିତ ପୁତ୍ରଙ୍କର ସମରରେ ପ୍ରବୃତ୍ତ ହେବା କର୍ତ୍ତବ୍ୟ ନୁହେଁ । ଆମ୍ଭେ ନିଶ୍ଚୟ କହୁଅଛୁଁ ଯେ ତୁମ୍ଭପ୍ରତି ଆମ୍ଭର କିଞ୍ଚିନ୍ମାତ୍ର କ୍ରୋଧ ନାହିଁ । କିନ୍ତୁ ଜୀବଗଣ କ୍ରୋଧପରତନ୍ତ୍ର ହେଲେ ଆତ୍ମ-ହନନରେ ସୁଦ୍ଧା ପରାଙ୍ମୁଖ ହୁଅନ୍ତି ନାହିଁ ।

ସଞ୍ଜୟ କହିଲେ—ହେ ମହାରାଜ ! ପୁତ୍ରଶୋକାନ୍ୱିତ ଘଟୋତ୍କଚ ଅଶ୍ୱତ୍ଥାମାଙ୍କର ଏପରି ବାକ୍ୟ ଶ୍ରବଣ କରି ରୋଷରେ ଅରୁଣନୟନ ହୋଇ ଏହିପରି ପ୍ରତ୍ୟୁତ୍ତର କଲେ ଯେ, ଦ୍ରୋଣ-ନନ୍ଦନ ! ତୁମ୍ଭେ ଯାହା କହିଲ ତାହା ଅସାଧୁ । ଆମ୍ଭେ କ'ଣ ବୀର୍ଯ୍ୟ-ଶୂନ୍ୟ ଲୋକ ସଦୃଶ ସମରରେ କାତର ହୋଇଅଛୁଁ ଯେ ତୁମ୍ଭେ ବାଗାଡ଼ମ୍ବର ଦ୍ୱାରା ଆମ୍ଭଙ୍କୁ ଭୟ ଦେଖାଉଅଛ ? ଆମ୍ଭେ ଏହି ବିପୁଳ କୌରବକୁଳରେ ଭୀମସେନଙ୍କ ଔରସରୁ ଉତ୍ପନ୍ନ ହୋଇଅଛୁଁ । ଆମ୍ଭେ ସମରରେ ଅପରାଙ୍ମୁଖ ଓ ପାଣ୍ଡବ-ମାନଙ୍କ ପୁତ୍ର ଏବଂ ଦଶାନନ ସଦୃଶ ବଳଶାଳୀ ଓ ରାକ୍ଷସମାନଙ୍କର ଅଧିପତି । ୯୮ । କ୍ଷଣମାତ୍ର ଅବସ୍ଥାନ କର । ତୁମ୍ଭେ ପ୍ରାଣ ଘେନି ଅନ୍ୟତ୍ର ଗମନ କରିବାକୁ ସମର୍ଥ ହେବନାହିଁ । ଅଦ୍ୟ ଆମ୍ଭେ ରଣସ୍ଥଳରେ ତୁମ୍ଭର ଏହି ଯୁଦ୍ଧ-ଶ୍ରଦ୍ଧା ଅପନୟନ କରିବୁଁ । ୯୯ । ହେ ମହାରାଜ ! କ୍ରୁଦ୍ଧ ମୃଗେନ୍ଦ୍ର ଯେପରି ଗଜେନ୍ଦ୍ର ପ୍ରତି ଧାବିତ ହୁଏ, ସେହିପରି ମହା-ବଳଶାଳୀ ରାକ୍ଷସ ଘଟୋତ୍କଚ ଏହି କଥା କହି ରୋଷତାମ୍ରାକ୍ଷ ହୋଇ ଦ୍ରୋଣପୁତ୍ରଙ୍କ ପ୍ରତି ଧାବିତ ହେଲେ । ୧୦୦ । ଜଳଧର ଜଳଧାରା ବର୍ଷଣ କଲା ପରି ସେ ଅଶ୍ୱତ୍ଥାମାଙ୍କ ପ୍ରତି ରଥାକ୍ଷତୁଲ୍ୟ ଆୟତ ଶରନିକର ବର୍ଷଣ କଲେ । ୧୦୧ । ଦ୍ରୋଣନନ୍ଦନ ଘଟୋତ୍କଚନିକ୍ଷିପ୍ତ ସେହି ଶରବୃଷ୍ଟି ନିକଟସ୍ଥ ନ ହେଉଣୁ ସେ ସମସ୍ତଙ୍କୁ ସ୍ୱୀୟ ଶରପ୍ରଭାବରେ ବିନଷ୍ଟ କଲେ । ପରନ୍ତୁ ଉଭୟଙ୍କର ନିକ୍ଷିପ୍ତ ସେହି ଶରସମୂହ ପରସ୍ପର ସଂଶ୍ଳିଷ୍ଟ ହେବାରୁ ବୋଧ ହେଲା, ଯେପରି ଅନ୍ତରୀକ୍ଷରେ ଅନ୍ୟ ଗୋଟିଏ ଶରଯୁଦ୍ଧ ହେଉଅଛି ।

ସେହି ଶରସମୂହର ସଙ୍ଘର୍ଷଣରେ ରାଶି ରାଶି ବହ୍ନିସ୍ଫୁଲିଙ୍ଗ ସମୁତ୍‌ଥିତ ହେବାରୁ ବୋଧହେଲା, ଯେପରି ନଭୋମଣ୍ଡଳ ରଜନୀମୁଖରେ ଖଦ୍ୟୋତ ପୁଞ୍ଜଦ୍ୱାରା ସୁଶୋଭିତ ହୋଇଅଛି । ୧୦୩ । ତେତେବେଳେ ରଣଦକ୍ଷ ଦ୍ରୋଣ-ନନ୍ଦନଙ୍କର ଶରପ୍ରଭାବରୁ ସ୍ୱକୀୟ ଅସ୍ତ୍ରମାନ ପ୍ରତିହତ ହେବାର ଦେଖି ଘଟୋତ୍କଚ ଅନ୍ତର୍ହିତ ହୋଇ ପୁନର୍ବାର ଅପର ଗୋଟିଏ ମାୟା ସୃଷ୍ଟି କଲା । ୧୦୪ । ସେ ଶୂଳ, ପ୍ରାସ, ଅସି ଓ ମୂଷଳରୂପ ଜଳପ୍ରସ୍ରବଣ-ସମନ୍ୱିତ ତରୁରାଜବିରାଜିତଶିଖରସୁଶୋଭିତ ଅତିଶୟ ଗୋଟିଏ ମହାନ୍ ପର୍ବତ ମୂର୍ତ୍ତି ଧାରଣ କଲା । ୧୦୫ । ଦ୍ରୋଣନନ୍ଦନ ତାହାଙ୍କୁ ଅଞ୍ଜନ ଗିରିସଦୃଶ ମହୀଧର ମୂର୍ତ୍ତି ଧାରଣ କରିବାର ଦେଖି ଓ ବହୁବିଧ ଶସ୍ତ୍ରବୃଷ୍ଟି ତାହାଠାରୁ ଉତ୍ପନ୍ନ ହେବାର ନିରୀକ୍ଷଣ କରି କିଞ୍ଚିନ୍ମାତ୍ର ବିଚଳିତ ନ ହୋଇ ଅମ୍ଳାନ-ବଦନରେ ଦିବ୍ୟାସ୍ତ୍ରର ପ୍ରାଦୁର୍ଭାବ କଲେ । ଦିବ୍ୟାସ୍ତ୍ର ପ୍ରଭାବରେ ସେହି ମାୟାମୟ ଶୈଳେନ୍ଦ୍ର ତତ୍‌କ୍ଷଣାତ୍ ବିନଷ୍ଟ ହେଲା । ୧୦୭ । ସେହି ମାୟା-ପର୍ବତ ପ୍ରତିହତ ହୁଅନ୍ତେ ଘଟୋତ୍କଚ ଆକାଶରେ ଅବସ୍ଥାନ ପୂର୍ବକ ଇନ୍ଦ୍ରାୟୁଧଭୂଷିତ ଅତି ଭୀଷଣ ନୀଳତୋୟଦ ମୂର୍ତ୍ତି ଧାରଣ କରି ଶସ୍ତ୍ରବୃଷ୍ଟି ଦ୍ୱାରା ଦ୍ରୋଣପୁତ୍ରଙ୍କୁ ସମାଚ୍ଛନ୍ନ କଲା । ୧୦୮ । ଶସ୍ତ୍ରଜ୍ଞପ୍ରବର ମହାବୀର ଦ୍ରୋଣନନ୍ଦନ ବାୟବ୍ୟାସ୍ତ୍ର ସନ୍ଧାନପୂର୍ବକ ସେହି ମାୟାମୟ ନୀଳମେଘକୁ ନିରାକୃତ କରି ନିରନ୍ତର ଶରଜାଲ ବିସ୍ତାର ଦ୍ୱାରା ଦିଗମାନଙ୍କୁ ସମାଚ୍ଛନ୍ନ କଲେ ଓ ଏକଲକ୍ଷ ରଥୀଙ୍କର ପ୍ରାଣ ସଂହାର କଲେ । ୧୧୦ ।

ତଦନନ୍ତର ଘଟୋତ୍କଚ ପୁନର୍ବାର ରଥାରୋହଣ ପୂର୍ବକ ବହୁ-ସଂଖ୍ୟକ ରାକ୍ଷସୀ ସେନାଦ୍ୱାରା ପରିବୃତ ହୋଇ ଅସମ୍ଭ୍ରାନ୍ତ ଚିତ୍ତରେ ଶରାସନ ଆକୃଷ୍ଟ କରି ଆଗମନ କଲେ । ୧୧୧ । ତାହାର ସମଭିବ୍ୟାହାରୀ ନିଶାଚରମାନଙ୍କ ମଧ୍ୟରେ ଅନେକ ରାକ୍ଷସ ସିଂହ-ଶାର୍ଦ୍ଦୂଳାକାର କଳେବର-ସମ୍ପନ୍ନ, ସମସ୍ତେ ମତ୍ତମାତଙ୍ଗତୁଲ୍ୟ ବିକ୍ରମଶାଳୀ, ସେମାନଙ୍କ ମଧ୍ୟରୁ କେହି ଗଜରେ, କେହି ରଥରେ, କେହି ବା ଅଶ୍ୱରେ ସମାରୂଢ଼ ହୋଇଥିଲେ । କିନ୍ତୁ ସମସ୍ତେ ବିକୃତ ବଦନ, ବିକୃତ ମସ୍ତକ ଓ ବିକୃତ ଗ୍ରୀବା । ଏହି ସମସ୍ତ ତାମସ ପ୍ରକୃତି ନିଶାଚର ମଧ୍ୟରୁ ଅଧିକାଂଶ ହିଡ଼ିମ୍ବ-ବଂଶୀୟ ଓ କେତେକ ପୁଲସ୍ତ୍ୟ ବଂଶୀୟ ଥିଲେ । କିନ୍ତୁ ସେମାନେ ସମସ୍ତେ ଇନ୍ଦ୍ରତୁଲ୍ୟ

ପରାକ୍ରାନ୍ତ, ମୋଧୋଦ୍‌ବୃତ୍ତଲୋଚନ ବିବିଧ ଶସ୍ତ୍ରପାଣି ଓ ନାନାପ୍ରକାର କବଚଭୂଷିତ ଥିଲେ ।

ହେ ମହାରାଜ ! ଆପଣଙ୍କ ପୁତ୍ର ଦୁର୍ଯ୍ୟୋଧନ ସାତ୍ୟକିଙ୍କ ଆଡ଼କୁ ସେହି ସମସ୍ତ ଯୁଦ୍ଧ-ଦୁର୍ମ୍ମଦ, ଭୀମରବକାରୀ ରାକ୍ଷସମାନଙ୍କ ଦ୍ୱାରା ପରିବୃତ ହୋଇ ସମାଗତ ହେବାର ଦେଖି ଅତିଶୟ ବିଷଣ୍ଣ ହେଲେ । ଦ୍ରୋଣତନୟ ଅଶ୍ୱତ୍ଥାମା ତାହାଙ୍କୁ ଏପ୍ରକାର ବିଷଣ୍ଣ ହେବାର ଦେଖି କହିଲେ ଯେ ହେ ମହାରାଜ ଦୁର୍ଯ୍ୟୋଧନ ! ତୁମ୍ଭର ଭୟ କରିବା ଉଚିତ ନୁହେଁ । ବର୍ତ୍ତମାନ ତୁମ୍ଭେ ଏହି ସମସ୍ତ ଇନ୍ଦ୍ରତୁଲ୍ୟ ପରାକ୍ରମଶାଳୀ ପାର୍ଥିବଗଣଙ୍କ ସହିତ ଓ ତୁମ୍ଭର ମହାବୀର ଭ୍ରାତୃମାନଙ୍କ ସହିତ ଅବସ୍ଥିତ ହୋଇ ସୈନ୍ୟ-ମାନଙ୍କୁ ସମାଶ୍ୱାସିତ କର । କଦାଚ ତୁମ୍ଭର ପରାଜୟ ହେବ ନାହିଁ । ଆମ୍ଭେ ସତ୍ୟପୂର୍ବକ ପ୍ରତିଜ୍ଞା କରୁଅଛୁଁ—ତୁମ୍ଭର ଶତ୍ରୁମାନଙ୍କୁ ନିଶ୍ଚୟ ସଂହାର କରିବୁଁ । ୧୧୭ ।

ହେ ମହାରାଜ ! ଦୁର୍ଯ୍ୟୋଧନ ଅଶ୍ୱତ୍ଥାମାଙ୍କର ଏତାଦୃଶ ଆଶ୍ୱାସପ୍ରଦ ବାକ୍ୟ ଶ୍ରବଣ କରି ଉତ୍ତର କଲେ, ହେ ଦ୍ରୋଣନନ୍ଦନ ! ତୁମ୍ଭର ଚିତ୍ତ ଯେତେବେଳେ ଏତାଦୃଶ ଉନ୍ନତ ଓ ତୁମ୍ଭର ଆମ୍ଭମାନଙ୍କ ପ୍ରତି ଏହିପରି ଗାଢ଼ତର ଭକ୍ତି ବର୍ତ୍ତମାନ ଅଛି, ସେତେବେଳେ ଆମ୍ଭେ ଏହା ଅଦ୍ଭୁତ ମନେ କରୁନାହୁଁ । ୧୧୮ ।

ସଞ୍ଜୟ କହିଲେ—ହେ ମହାରାଜ ! ଆପଣଙ୍କ ପୁତ୍ର ଅଶ୍ୱତ୍ଥାମାଙ୍କୁ ଏହିପରି କହି ଶତ ସହସ୍ର ସମର-ବିଶାରଦ ଅଶ୍ୱାରୋହୀ ସୈନ୍ୟ-ସମାବୃତ ସୁବଳନନ୍ଦନ ଶକୁନିଙ୍କୁ କହିଲେ । ୧୧୯ । ହେ ମାତୁଳ ! ତୁମ୍ଭେ ଷାଠିସହସ୍ର ରଥସୈନ୍ୟ ନେଇ ଅର୍ଜ୍ଜୁନଙ୍କର ପ୍ରତିପକ୍ଷରେ ଯାତ୍ରା କର । କର୍ଣ୍ଣ, ବୃଷସେନ, କୃପ ନୀଳ, କୃତବର୍ମ୍ମା, ପୁରୁମିତ୍ର, ଶ୍ରୁତାର୍ପଣ, ଦୁଃଶାସନ, ନିକୁମ୍ଭ, କୁମ୍ଭଭେଦୀ, ପୁରୁଞ୍ଜୟ, ପୁରଞ୍ଜୟ, ଦୃଢ଼ରଥ, ପତାକୀ, ହେମକମ୍ପନ, ଶଲ୍ୟ, ଆରୁଣୀ, ଇନ୍ଦ୍ରସେନ, ସଞ୍ଜୟ, ବିଜୟ, ଜୟ, କମଳାକ୍ଷ, ପୁରୁହାଥୀ, ଜୟବର୍ମ୍ମା ଓ ସୁଦର୍ଶନ ଏହି ମହାରଥମାନେ, ଉଦିଚ୍ୟଦେଶୀୟ ବୀରମାନେ ଓ ଛଅ ଅଯୁତ ପଦାତି ତୁମ୍ଭ ପଛରେ ଗମନ କରିବେ । ୧୨୩ । ହେ

ମାତୁଳ ! ଆମ୍ଭର ସହସ୍ର ଜୟାଶା ତୁମ୍ଭଠାରେ ନିର୍ଭର କରେ । ଅତଏବ ସୁରରାଜ ଯେପରି ଅସୁରମାନଙ୍କୁ ବିନାଶ କରିଥିଲେ, ସେହିପରି ତୁମ୍ଭେ ମଧ୍ୟ ଭୀମ, ନକୁଳ, ସହଦେବ ଓ ଯୁଧିଷ୍ଠିରଙ୍କୁ ବିନାଶ କର । ୧୨୪ । କୁନ୍ତୀ-ପୁତ୍ରମାନେ ଆସ୍ମର୍ଯ୍ୟତନପୂର୍ବକ ଶରନିକରରେ ବିଦ୍ଧାଙ୍ଗ ଓ ଅତିଶୟ କ୍ଷତ-ବିକ୍ଷତକଳେବର ହୋଇଅଛନ୍ତି ।

ଏହି ସମୟରେ ଅଗ୍ନିକୁମାର କାର୍ତ୍ତିକେୟ ଦାନବକୁଳ ନିର୍ମୂଳ କଲା ସଦୃଶ ତୁମ୍ଭେ ସେମାନଙ୍କୁ ସଂହାର କର । ୧୨୫ । ହେ ମହାରାଜ ! ସୁବଳନନ୍ଦନ ଶକୁନି ଏହିପରି ଆଦିଷ୍ଟ ହୋଇ ଆପଣଙ୍କ ପୁତ୍ରମାନଙ୍କ ପ୍ରୀତି-କାମନାରେ ପାଣ୍ଡବମାନଙ୍କୁ ସଂହାର କରିବା ମାନସରେ ଦ୍ରୁତବେଗରେ ସେଠାକୁ ଗମନ କଲେ । ୧୨୬ । ସେହି ରଜନୀରେ ଇନ୍ଦ୍ର ଓ ପ୍ରହ୍ଲାଦସଦୃଶ ଦ୍ରୋଣନନ୍ଦନ ଅଶ୍ୱତ୍ଥାମା ଓ ରାକ୍ଷସ ଘଟୋତ୍କଚ ମଧ୍ୟରେ ତୁମୁଳ ସଂଗ୍ରାମ ହେଲା । ଘଟୋତ୍କଚ ଅତିଶୟ କ୍ରୁଦ୍ଧ ହୋଇ ବିଷାଗ୍ନିକଳ୍ପ ଦୃଢ଼ତର ଦଶ-ଗୋଟି ବାଣଦ୍ୱାରା ଦ୍ରୋଣପୁତ୍ର ଅଶ୍ୱତ୍ଥାମାଙ୍କର ବକ୍ଷଃସ୍ଥଳରେ ପ୍ରହାର କଲେ । ୧୨୮ । ଅଶ୍ୱତ୍ଥାମା ଭୀମସୁତ ଘଟୋତ୍କଚ ପ୍ରେରିତ ଶରନିକରରେ ଗାଢ଼-ରୂପେ ଆହତ ହୋଇ ସମୀରସଞ୍ଚାଳିତ ବୃକ୍ଷସଦୃଶ ରଥ ମଧ୍ୟରେ ବିଚଳିତ ହେଲେ । ୧୨୯ । ଘଟୋତ୍କଚ ପୁନର୍ବାର ଗୋଟିଏ ଅଞ୍ଜଳିକ ଅସ୍ତ୍ରଦ୍ୱାରା ଅବଲମ୍ବେ ଦ୍ରୋଣନନ୍ଦନଙ୍କ ହସ୍ତସ୍ଥିତ ମହାପ୍ରଭାସମନ୍ୱିତ ଶରାସନ ଛେଦନ କଲେ । ୧୩୦ । ତେତେବେଳେ ଦ୍ରୋଣନନ୍ଦନ ଅତୀବ ଭାରସହ ଅପର ଗୋଟିଏ ଶରାସନ ଗ୍ରହଣ କରି ଜଳଧାରାବର୍ଷୀ ଜଳଧରସଦୃଶ ସୁତୀକ୍ଷ୍ଣ ଶରବୃଷ୍ଟି କଲେ । ୧୩୧ । ତତ୍ପରେ ସେ ସେହି ଆକାଶରେ ନିଶାଚରଗଣଙ୍କ ପ୍ରତି ସୁବର୍ଣ୍ଣପୁଙ୍ଖାନ୍ୱିତ ଶତ୍ରୁଘାତୀ ଆକାଶଚର ବାଣସମୂହ ନିକ୍ଷେପ କରିବାରେ ପ୍ରବୃତ୍ତ ହେଲେ । ୧୩୨ ।

ହେ ମହାରାଜ ! ସେହି ସମୟରେ ଅଶ୍ୱତ୍ଥାମାଙ୍କ ଶରପୀଡ଼ିତ ପୀବରବକ୍ଷଃସ୍ଥଳସମନ୍ୱିତ ରାକ୍ଷସଗଣ ସିଂହାକ୍ରାନ୍ତମତ୍ତମାତଙ୍ଗକୁଳସଦୃଶ ବ୍ୟାକୁଳ ହେଲେ । ଯୁଗାନ୍ତକାଳରେ ଭଗବାନ୍ ବହ୍ନି ଯେପରି ପ୍ରାଣିମାନଙ୍କୁ ଦଗ୍ଧ କରନ୍ତି ସେହିପରି ଅଶ୍ୱତ୍ଥାମା ଶରାନଳରେ ରାକ୍ଷସଗଣଙ୍କୁ ଦଗ୍ଧ କରି ଅଶ୍ୱ ଓ ସାରଥି ସହିତ ରଥ ଓ ମାତଙ୍ଗମାନଙ୍କୁ ଦଗ୍ଧ କଲେ ।୧୩୪।

ହେ ମହାରାଜ ! ପୂର୍ବକାଳରେ ଦେବାଦିଦେବ ମହାଦେବ ଯେପରି ଆକାଶରେ ତ୍ରିପୁର ଦଗ୍‌ଧ କରି ଅତିଶୟ ଶୋଭାନ୍ୱିତ ହୋଇଥିଲେ, ସେହିପରି ଦ୍ରୋଣନନ୍ଦନ ଏକ ଅକ୍ଷୌହିଣୀ ସେନା ଦଗ୍‌ଧ କରି ଶୋଭା ପାଇଲେ । ୧୩୫ । ଜୟଶାଳୀଶ୍ରେଷ୍ଠ ଦ୍ରୋଣପୁତ୍ର ଆପଣଙ୍କ ଶତ୍ରୁମାନଙ୍କୁ ସଂହାର କରି ସେହି ସମୟରେ ସର୍ବଭୂତସଂହାରକାରୀ ଯୁଗାନ୍ତକାଳୀନ ଉଦ୍ଧତ ଅଗ୍ନି-ସଦୃଶ ପ୍ରଦୀପ୍ତ ହେଲେ । ୧୩୬ । ତଦନନ୍ତର ଘଟୋତ୍କଚ କ୍ରୋଧଭରରେ ଭୀମକର୍ମା ସୁମହତ୍ ରାକ୍ଷସ ସେନାଙ୍କ ପ୍ରତି ଆଦେଶ କଲେ ଯେ ତୁମ୍ଭେମାନେ ଅଶ୍ୱତ୍ଥାମାଙ୍କୁ ନିହତ କର । ଏହା କହି ସେହି ମହତୀ ସେନାକୁ ପ୍ରେରଣ କଲେ । ୧୩୭ ।

ହେ ମହାରାଜ ! ବିକଟଦନ୍ତୋଦ୍ଦୀପ୍ତ ମହାବକ୍ତ୍ରବିଶିଷ୍ଟ, ସର୍ବପ୍ରାଣିଙ୍କ ତ୍ରାସଜନକ ଦୀର୍ଘଜିହ୍ୱ ବ୍ୟାଦିତାସ୍ୟ ଭୀଷଣମୂର୍ତ୍ତି ରାକ୍ଷସମାନେ ଘଟୋତ୍କଚଙ୍କ ଠାରୁ ତାଦୃଶ ଆଜ୍ଞା ପ୍ରାପ୍ତ ହୋଇ ଅତିଶୟ ରୋଷକଷାୟିତ ଲୋଚନରେ ନାନାପ୍ରକାର ପ୍ରହରଣ ଗ୍ରହଣପୂର୍ବକ ସିଂହନାଦଦ୍ୱାରା ବସୁନ୍ଧରାକୁ ନିନାଦିତ କରି ଦ୍ରୋଣପୁତ୍ରଙ୍କ ବିନାଶାର୍ଥ ଧାବିତ ହେଲେ । ତଦନନ୍ତର ସେହି ଘୋର-ବିକ୍ରମଶାଳୀ ନିଶାଚରମାନେ କ୍ରୋଧରେ ଅରୁଣନୟନ ହୋଇ ଶକ୍ତି, ଶତଘ୍ନୀ, ପରିଘ, ଅଶନି, ଶୂଳ, ପଟ୍ଟିଶ, ଖଡ୍‌ଗ, ଗଦା, ଭିନ୍ଦିପାଳ, ମୂଷଳ, ପରଶ୍ୱଧ, ପ୍ରାସ, ଅସି, ତୋମର, କଣପ, ଶିତଧାର, କମ୍ପନ, ହୁଳ, ଭୁଷଣ୍ଡୀ, ଅଶ୍ମରୂଢ଼, କୃଷ୍ଣବର୍ଣ୍ଣ ଲୌହମୟ ସ୍ଥୂଣା, ଶତ୍ରୁକାୟାବିଦାରକ ଅତିଭୀଷଣ ମୁଦ୍‌ଗର ପ୍ରଭୃତି ବହୁବିଧ ଶତଶତ ସହସ୍ର ସହସ୍ର ଅସ୍ତ୍ରସବୁ ନିରନ୍ତର ଦ୍ରୋଣନନ୍ଦନଙ୍କ ମସ୍ତକୋପରି ନିକ୍ଷେପ କଲେ । ୧୪୩ ।

ହେ ମହାରାଜ ! ଆପଣଙ୍କ ପକ୍ଷୀୟ ଯୋଦ୍ଧାମାନେ ଅଶ୍ୱତ୍ଥାମାଙ୍କ ମସ୍ତକ ଉପରେ ତାଦୃଶ ସୁମହତ୍ ଶରବୃଷ୍ଟି ହେବାର ଅବଲୋକନ କରି ସମସ୍ତେ ବ୍ୟଥିତ ହେଲେ । ୧୪୪ । ପରନ୍ତୁ ମହାମନା ଦ୍ରୋଣତନୟ ଅସମ୍ଭ୍ରାନ୍ତ ଚିତ୍ତରେ ଶିଳାଶାଣିତ ବଜ୍ରକଳ୍ପ ଶରନିକରଦ୍ୱାରା ସେହି ଘୋରତର ଅସ୍ତ୍ରବୃଷ୍ଟିକୁ ନିରାକୃତ କଲେ ଓ ଅବିଳମ୍ବେ ଦିବ୍ୟାସ୍ତ୍ରପ୍ରତିମନ୍ତ୍ରିତ ସୁବର୍ଣ୍ଣପୁଙ୍ଖ ଶାୟକସମୂହଦ୍ୱାରା ରାକ୍ଷସମାନଙ୍କୁ ପ୍ରହାର କଲେ । ୧୪୬ । ବିଶାଳବକ୍ଷ ରାକ୍ଷସମାନେ ଅଶ୍ୱତ୍ଥାମାଙ୍କ ଶରନିକରରେ ପୀଡ଼ିତ ହୋଇ ସିଂହାକ୍ରାନ୍ତ

ଆକୁଳିତ ମତ୍ତମାତଙ୍ଗକୁଳସଦୃଶ ଶୋଭା ପାଇଲେ । ୧୪୭ । ପରନ୍ତୁ ଅତି-କୋପନସ୍ୱଭାବ ମହାବଳଶାଳୀ ରାକ୍ଷସମାନେ ଶରପ୍ରହାରରେ ତାଡ଼ିତ ହୋଇ ଦ୍ରୋଣତନୟଙ୍କର ବିନାଶ ବାସନା କରି କ୍ରୋଧଭରରେ ଧାବିତ ହେଲେ । ୧୪୮ ।

ହେ ମହାରାଜ ! ସେହିଠାରେ ଦ୍ରୋଣନନ୍ଦନ ଅନ୍ୟ ପ୍ରାଣିମାନଙ୍କ ଅସାଧ୍ୟ ମହତ୍ ଅଦ୍ଭୁତ ପରାକ୍ରମ ପ୍ରଦର୍ଶନ କରାଇଲେ । କାରଣ ସେହି ମହାସ୍ତ୍ରବେତ୍ତା ଏକାକୀ ମୁହୂର୍ତ୍ତକାଳ ମଧ୍ୟରେ ଜ୍ୱଳନ୍ତ ଅନଳତୁଲ୍ୟ ଶରଦ୍ୱାରା ରାକ୍ଷସେନ୍ଦ୍ର ଘଟୋତ୍କଚର ସମକ୍ଷରେ ସମସ୍ତ ରାକ୍ଷସସେନାକୁ ଦଗ୍ଧ କଲେ । ୧୫୦ । ରଣସ୍ଥଳରେ ସେ ସେହି ନିଶାଚରମାନଙ୍କୁ ଦଗ୍ଧ କରି ସର୍ବଭୂତ-ସଂହର୍ତ୍ତା, ଯୁଗାନ୍ତକାଳୀନ ସମ୍ବର୍ତ୍ତକ ଅଗ୍ନିତୁଲ୍ୟ ଦୀପ୍ତିପ୍ରାପ୍ତ ହେଲେ । ୧୫୧ । ଦ୍ରୋଣତନୟ ଭୁଜଙ୍ଗତୁଲ୍ୟ ବାଣ ପ୍ରଭାବରେ ନିଶାଚରମାନଙ୍କୁ ସଂହାର କରନ୍ତେ ମହାବଳପରାକ୍ରାନ୍ତ ରାକ୍ଷସେନ୍ଦ୍ର ଘଟୋତ୍କଚ ବ୍ୟତୀତ ପାଣ୍ଡବପକ୍ଷୀୟ ସହସ୍ର ସହସ୍ର ନରପତିମାନଙ୍କ ମଧ୍ୟରେ କେହି ତାହାଙ୍କୁ ନିରୀକ୍ଷଣ କରିବାକୁ ସମର୍ଥ ହେଲେ ନାହିଁ । ୧୫୩ । ସେହି ସମୟରେ ଘଟୋତ୍କଚ କ୍ରୋଧରେ ନୟନଦ୍ୱୟ ବିଘୂର୍ଣ୍ଣିତ କରି ଅଧରଦଂଶନ ଓ ତାଳଧ୍ୱନିପୂର୍ବକ ଆପଣା ସାରଥିକୁ କହିଲେ, ଆମ୍ଭଙ୍କୁ ଦ୍ରୋଣପୁତ୍ରଙ୍କ ନିକଟକୁ ଘେନିଯାଅ ।

ଏହିପରି ଆଦେଶ କରି ଜୟପତାକା ଲକ୍ଷିତ ପୂର୍ବବର୍ଣ୍ଣିତ ସେହି ଭୟାବହ ରଥରେ ସମାରୂଢ଼ ହୋଇ ଦ୍ରୋଣପୁତ୍ରଙ୍କ ନିକଟକୁ ଦ୍ୱୈରଥ ଯୁଦ୍ଧାର୍ଥ ଗମନ କଲେ । ସେହି ଶତ୍ରୁ-ନିସୂଦନକାରୀ ଭୀମପରାକ୍ରାନ୍ତ ଭୀମନନ୍ଦନ ମହାନାଦରେ ସିଂହନାଦପୂର୍ବକ ଅଷ୍ଟଘଣ୍ଟାସମନ୍ୱିତ ଅତୀବ ଘୋରରୂପ ଦେବନିର୍ମିତ ଗୋଟିଏ ଅଶନି ଉଦ୍‌ଭ୍ରାମିତ କରି ଦ୍ରୋଣପୁତ୍ରଙ୍କ ପ୍ରତି ନିକ୍ଷେପ କଲେ । ଦ୍ରୋଣତନୟ ରଥମଧ୍ୟରେ ନିଜ ଶରାସନ ରକ୍ଷା କରି ଲମ୍ଫପ୍ରଦାନ ପୂର୍ବକ ସେହି ଅଶନି ଗ୍ରହଣ କରି ତାହାକୁ ଘଟୋତ୍କଚ ପ୍ରତି ନିକ୍ଷେପ କଲେ । ଅଶନି ସମାଗତ ହେବାର ଦେଖି ଘଟୋତ୍କଚ ତତ୍‌କ୍ଷଣାତ୍ ରଥରୁ ଲମ୍ଫ ପ୍ରଦାନପୂର୍ବକ ଭୂମି ତଳରେ ପତିତ ହେଲେ । ୧୫୮ । ସେହି ସମୟରେ ସେହି ମହା ପ୍ରଭାନ୍ୱିତା ଅତିଭୀଷଣ ଅଶନି ଘଟୋତ୍କଚର ଅଶ୍ୱ, ସାରଥି ଓ ଧ୍ୱଜସହିତ ରଥକୁ ଭସ୍ମୀଭୂତ କରି ପୃଥିବୀ ବିଦାରଣପୂର୍ବକ

ଚନ୍ଦ୍ରଧରେ ପ୍ରବିଷ୍ଟ ହେଲା । ୧୫୯ । ପରନ୍ତୁ ଦ୍ରୋଣନନ୍ଦନ ଶଙ୍କରନିର୍ମିତ ସେହି ଭୟାବହ ଅଶନିକୁ ଲମ୍ଫପ୍ରଦାନପୂର୍ବକ ଗ୍ରହଣ କରିବାରୁ ତାହାଙ୍କୁ ସର୍ବ ପ୍ରାଣୀ ପ୍ରଶଂସା କଲେ । ୧୬୦ । ଘଟୋତ୍କଚ ଧୃଷ୍ଟଦ୍ୟୁମ୍ନଙ୍କ ରଥରେ ସମାରୂଢ଼ ହୋଇ ମହେନ୍ଦ୍ରକୋଦଣ୍ଡସଦୃଶ ଗୋଟିଏ ଭୀଷଣ ଶରାସନ ଗ୍ରହଣପୂର୍ବକ ଦ୍ରୋଣତନୟଙ୍କର ବିଶାଳ ବକ୍ଷଃସ୍ଥଳକୁ ଲକ୍ଷ୍ୟ କରି ନିଶିତ ଶରନିକର ନିକ୍ଷେପ କଲେ । ୧୬୧ । ସେହି ସମୟରେ ଧୃଷ୍ଟଦ୍ୟୁମ୍ନ ମଧ୍ୟ ଅସମ୍ଭ୍ରାନ୍ତ ଚିତ୍ତରେ ଆଶୀବିଷସଦୃଶ ବିଶିଖସମୂହ ଦ୍ରୋଣପୁତ୍ରଙ୍କର ବକ୍ଷ-ସ୍ଥଳରେ ବର୍ଷଣ କଲେ । ୧୬୨ । ସେହି ସମୟରେ ଅଶ୍ୱତ୍ଥାମା ମଧ୍ୟ ସେ ଦୁହିଁଙ୍କ ପ୍ରତି ସହସ୍ର ସହସ୍ର ନାରାଚ ନିକ୍ଷେପ କଲେ । ନାରାଚ ସମସ୍ତ ନିକ୍ଷିପ୍ତ ହେବା ମାତ୍ର ସେହି ଦୁଇବୀର ଅଗ୍ନିଶିଖାକାର ଶରସମୂହଦ୍ୱାରା ସେହି ବିଶିଖଜାଳକୁ ଛେଦନ କଲେ । ୧୬୩ ।

ହେ ମହାରାଜ ! ଏହିପରି ପୁରୁଷସିଂହ ଧୃଷ୍ଟଦ୍ୟୁମ୍ନ ଓ ଘଟୋତ୍କଚ ଏ ଦୁହିଁଙ୍କ ସହିତ ଆଚାର୍ଯ୍ୟନନ୍ଦନ ଅଶ୍ୱତ୍ଥାମାଙ୍କର ଯୋଦ୍ଧୃଗଣ ପ୍ରୀତିଜନକ ଅତି ତୀବ୍ରତର ଯୁଦ୍ଧ ହେଲା ।୧୬୪। ସେହି ସମୟରେ ଭୀମସେନ ଏକସହସ୍ର ରଥୀ, ତିନିଶତ ହସ୍ତୀ ଓ ଛଅସହସ୍ର ଅଶ୍ୱସୈନ୍ୟମାନଙ୍କ ସଙ୍ଗରେ ଘେନି ସେହି ସ୍ଥାନରେ ଉପସ୍ଥିତ ହେଲେ । ୧୬୫ । ଭୀମସେନ ଆଗମନ କଲେହେଁ ଧର୍ମାତ୍ମା ଦ୍ରୋଣପୁତ୍ର କାତରଶୂନ୍ୟ ହୃଦୟରେ ଅନୁଚରବର୍ଗବେଷ୍ଟିତ ଧୃଷ୍ଟଦ୍ୟୁମ୍ନ ଓ ଘଟୋତ୍କଚ ଏ ଦୁହିଁଙ୍କ ସହିତ ଯୁଦ୍ଧ କଲେ । ୧୬୬ । ହେ ମହାରାଜ ! ଆଚାର୍ଯ୍ୟ ନନ୍ଦନ ଅଶ୍ୱତ୍ଥାମା ସେହି ସମୟରେ ଏପରି ଅଦ୍ଭୁତ ପରାକ୍ରମ ପ୍ରକାଶ କଲେ ଯେ, ତାହା ପ୍ରାଣିମାନଙ୍କର ଅସାଧ୍ୟ । ୧୬୭ । ସେ ନିମିଷେକ ମଧ୍ୟରେ ଶାଣିତଶର ପ୍ରଭାବରେ ଭୀମସେନ, ତାହାଙ୍କପୁତ୍ର ଘଟୋତ୍କଚ ପୃଷତ-କୁଳ-ସମ୍ଭବ ଧୃଷ୍ଟଦ୍ୟୁମ୍ନ, ଯମଜ ନକୁଳ ସହଦେବ, ଧର୍ମନନ୍ଦନ ଯୁଧିଷ୍ଠିର, ଧନଞ୍ଜୟ ଓ ଅଚ୍ୟୁତ ବାସୁଦେବଙ୍କ ସମକ୍ଷରେ ଅଶ୍ୱ ଓ ସାରଥିସହିତ ଅସଂଖ୍ୟ ମାତଙ୍ଗ ସମବେତ ଏକ ଅକ୍ଷୌହିଣୀ ରାକ୍ଷସୀ-ସେନା ସଂହାର କଲେ ।୧୬୮। ସେହି ସମୟରେ ହସ୍ତିମାନେ ଅଶ୍ୱତ୍ଥାମାଙ୍କ ଶୀଘ୍ରଗାମୀ ନାରାଚସମୂହରେ ଗାଢ଼ତର ବିଦ୍ଧ ହୋଇ ସଶୃଙ୍ଗ ପର୍ବତତୁଲ୍ୟ ଭୂତଳରେ ନିପତିତ ହେଲେ । ୧୭୦ । ଶରନିକୃତ୍ତ କରିଶୁଣ୍ଡସମୂହ ଇତସ୍ତତଃ ବିଚଳିତ ହେଉଥିବାରୁ ବୋଧ ହେଲା, ଯେମନ୍ତ ସମରଭୂମି

ସଞ୍ଚରଣକାରୀ ସର୍ପଗଣରେ ସମାକୀର୍ଣ୍ଣ ହୋଇ ଶୋଭିତ ହୋଇଅଛି ।୧୭୧।
ନରପତିମାନଙ୍କର ଶୁଭ୍ରବର୍ଣ୍ଣ ଛତ୍ର ଓ କାଞ୍ଚନମୟ ଦଣ୍ଡସମୂହ ଚତୁର୍ଦ୍ଦିଗରେ ବିକୀର୍ଣ୍ଣ ହୋଇଥିବାରୁ ବସୁମତୀ ସମୁଦିତ ସୁଧାଂଶୁ ସୂର୍ଯ୍ୟ ପ୍ରଭୃତି ଗ୍ରହଗଣ-ବିରାଜିତ ପ୍ରଳୟକାଳୀନ ନଭୋମଣ୍ଡଳସଦୃଶ ଶୋଭା ଧାରଣ କଲା । ୧୭୨ ।

ଦ୍ରୋଣନନ୍ଦନ ସେହି ସମରସ୍ଥଳରେ ବୃହତ୍ ବୃହତ୍ ମାତଙ୍ଗ, ତୁରଙ୍ଗ ଓ ଯୋଦ୍ଧାମାନଙ୍କର ରୁଧିରପ୍ରବାହଶାଳୀ ଅତିଭୟାନକ ଘୋରରୂପ ଗୋଟିଏ ନଦୀ ସୃଷ୍ଟି କଲେ । ଛିନ୍ନଧ୍ୱଜସମୂହ ସେହି ନଦୀର ମଣ୍ଡୂକକୁଳ, ନିପତିତ ଭେରୀସମୂହ ତାହାର ବିସ୍ତୀର୍ଣ୍ଣ କଳେବରସମ୍ପନ୍ନ କଚ୍ଛପ, ଛତ୍ର-ସମୂହ ତାର ହଂସଶ୍ରେଣୀ, ଚାମରମାଳା ତାହାର ଫେନରାଶି, କଙ୍କ ଓ ଗୃଧ୍ର ପକ୍ଷୀ ତାହାର ମହାଗ୍ରାହ, ବହୁସଂଖ୍ୟକ ଶସ୍ତ୍ର ତାହାର ମତ୍ସ୍ୟ, ଇତସ୍ତତଃ ବିକୀର୍ଣ୍ଣ ହସ୍ତିସମୂହ ତାହାର ପାଷାଣ, ନିହତଅଶ୍ୱକୁଳ ତାହାର ମକର, ବିକ୍ଷିପ୍ତ ରଥସମୂହ ତାହାର ତୀରଭୂମି, ସଦଣ୍ଡ ପତାକାସମୂହ ତାହାର ତୀରସ୍ଥ ମନୋହର ବୃକ୍ଷ, ଶରସମୂହ ତାହାର କ୍ଷୁଦ୍ର ମତ୍ସ୍ୟ, ପ୍ରାସ ଓ ଶକ୍ତି ତାହାର ଜଳଚର ଡୁଣ୍ଡୁଭ, ମଜ୍ଜା ଓ ମାଂସ ତାହାର ମହତ୍ ପଙ୍କ, କବନ୍ଧ ଗଣ ତାହାର ଭେଳା, କେଶସବୁ ତାହାର କୃଷ୍ଣବର୍ଣ୍ଣ ଶୈବାଳ, ଯୋଦ୍ଧା-ମାନଙ୍କର ଆର୍ତ୍ତନାଦ ତାହାର କଳକଳ ଧ୍ୱନି ଓ ସୈନ୍ୟମାନଙ୍କର କ୍ଷତସ୍ଥଳ-ସମୁତ୍ଥିତ ଶୋଣିତ ତାହାର ତରଙ୍ଗମାଳା ସ୍ୱରୂପ ହୋଇଥିଲା । ସେହି ଭୟଙ୍କର ସ୍ରୋତସ୍ୱତୀ ଯମରାଷ୍ଟ୍ରରୂପ ମହାସାଗରରେ ସମ୍ମିଳିତ ଓ ନିରନ୍ତର ଶ୍ୱାପଦକୁଳରେ ସଂକୁଳ ହୋଇ ଅତିଭୀଷଣ ମୂର୍ତ୍ତି ଧାରଣପୂର୍ବକ ଭୀରୁ-ମାନଙ୍କର ଅତି ମୋହଜନକ ହୋଇଥିଲା । ୧୭୮ ।

ହେ ମହାରାଜ ! ଦ୍ରୋଣତନୟ ପୁନର୍ବାର ରୋଷାନ୍ୱିତ ହୋଇ ବୃକୋଦର, ଧୃଷ୍ଟଦ୍ୟୁମ୍ନ ଓ ବହୁସଂଖ୍ୟକ ରାକ୍ଷସମାନଙ୍କୁ ସମାହତ କରି ହଡ଼ିମ୍ବାନନ୍ଦନଙ୍କୁ ଶରନିକରରେ ନିପୀଡ଼ିତ କଲେ । ୧୭୯ । ଏହାପରେ ମହାବଳଶାଳୀ ସମରଦକ୍ଷ ଆଚାର୍ଯ୍ୟକୁମାର ଭୀମ ପ୍ରଭୃତିଙ୍କୁ ବିଦ୍ଧ କରି ପାଞ୍ଚାଳରାଜ ଦ୍ରୁପଦପୁତ୍ର ସୁରଥଙ୍କୁ ସଂହାର କଲେ । ୧୮୦ । ତତ୍ପରେ ସେ ସୁରଥଙ୍କର ଅନୁଜ ବଳାନୀକ, ଜୟାନୀକ ଓ ଜୟାଶ୍ୱଙ୍କୁ ଯମଲୋକକୁ ପ୍ରେରଣ କଲେ ।୧୮୧। ସେହି ସମୟରେ ସେ ସୁପୁଙ୍ଖସମନ୍ୱିତ ଅତି ତୀକ୍ଷ୍ଣ ତିନିଗୋଟି ଶରଦ୍ୱାରା ରାଜଶ୍ରେଷ୍ଠ ଶ୍ରୁତାହ୍ୱୟ ଓ ରୁକ୍ମମାଳୀଙ୍କୁ ପରଲୋକକୁ

ପ୍ରେରଣ କଲେ । ୧୮୭ । ଅନ୍ୟ ଗୋଟିଏ ସୁଶାଣିତ ଶରଦ୍ୱାରା ପୁଷଧ୍ର ଓ ଚନ୍ଦ୍ରସେନଙ୍କର ଶିରଚ୍ଛେଦନ କରି ଦଶଗୋଟି ବାଣରେ କୁନ୍ତିଭୋଜ ରାଜାଙ୍କର ଦଶଗୋଟି ପୁତ୍ରଙ୍କୁ ନିହତ କଲେ ।

ତଦନନ୍ତର ସେ ଅତିଶୟ କ୍ରୁଦ୍ଧ ହୋଇ ଯମଦଣ୍ଡୋପମ ଅବନ୍ଧ୍ୟଗାମୀ ଭୟଙ୍କର ଗୋଟିଏ ଶରକୁ ଶରାସନରେ ଆକର୍ଣ୍ଣ ସନ୍ଧାନପୂର୍ବକ ଘଟୋତ୍କଚକୁ ଲକ୍ଷ୍ୟକରି ନିକ୍ଷେପ କଲେ । ସେହି ମହାଶର ରାକ୍ଷସ ହିଡ଼ିମ୍ବାନନ୍ଦନର ହୃଦୟପ୍ରଦେଶ ଭେଦ କରି ପୁଙ୍ଖ ସହ ବେଗ ସହକାରେ ଭୂଗର୍ଭରେ ପ୍ରବିଷ୍ଟ ହେଲା । ଘଟୋତ୍କଚ ପତିତ ହୁଅନ୍ତେ ମହାରଥୀ ଧୃଷ୍ଟଦ୍ୟୁମ୍ନ ତାହାଙ୍କୁ ନିହତ ମନେକରି ସତ୍ୱର ଦ୍ରୋଣପୁତ୍ରଙ୍କ ସମୀପରୁ ରଥ ନେଇ ପଳାୟନ କଲେ । ଏହିପରି ମହାରଥୀମାନେ ସମସ୍ତେ ପରାଙ୍ମୁଖ ହୁଅନ୍ତେ ମହାବୀର ଦ୍ରୋଣ-ତନୟ ସେହି ଯୁଧିଷ୍ଠିର ପକ୍ଷୀୟ ସୈନ୍ୟମାନଙ୍କୁ ପରାଜିତ କରି ସିଂହନାଦ କଲେ । ଆପଣଙ୍କ ପୁତ୍ରମାନେ ଓ ଅନ୍ୟାନ୍ୟ ପ୍ରାଣିସମୂହ ତାହାଙ୍କର ପ୍ରଶଂସା କଲେ । ୧୮୮ ।

ହେ ମହାରାଜ ! ସେହି ସମୟରେ ଗିରିଶିଖରାକାର ନିଶାଚରଗଣ ଦ୍ରୋଣତନୟଙ୍କର ଶତଶତ ଶରରେ ସମାହତ, ନିହତ, ନିକୃତ୍ତ ଓ ବିଦୀର୍ଣ୍ଣ କଳେବର ହୋଇ ଚତୁର୍ଦ୍ଦିଗରେ ନିପତିତ ହୋଇଥିବାରୁ ରଣଭୂମି ଅତିଶୟ ଦୁର୍ଗମ ଓ ଭୟଙ୍କର ହୋଇଥିଲା । ୧୮୯ । ଏହି ଅଦ୍ଭୁତ ବ୍ୟାପାର ଅବ-ଲୋକନ କରି ଦେବ, ପିତୃ, ସିଦ୍ଧ, ଗନ୍ଧର୍ବ, ଅପ୍‌ସରା, ରାକ୍ଷସ, ପିଶାଚ, ଭୂତ, ସୁପର୍ଣ୍ଣ, ପକ୍ଷୀ ଓ ନାଗଗଣ ପ୍ରଭୃତି ସମସ୍ତେ ଆଚାର୍ଯ୍ୟକୁମାରଙ୍କର ପ୍ରଶଂସା କଲେ । ୧୯୦ ।

---

## ୧୫୭ ଅଧ୍ୟାୟ

ସଞ୍ଜୟ କହିଲେ ହେ ମହାରାଜ ! ଧର୍ମନନ୍ଦନ ଯୁଧିଷ୍ଠିର, ଭୀମସେନ, ଯୁଯୁଧାନ ଓ ପୃଷତକୁଳନନ୍ଦନ ଧୃଷ୍ଟଦ୍ୟୁମ୍ନ—ଏମାନେ ଦ୍ରୁପଦ ପୁତ୍ରମାନଙ୍କୁ, କୁନ୍ତିଭୋଜରାଜ ପୁତ୍ରଗଣଙ୍କୁ ଓ ଅସଂଖ୍ୟ ରାକ୍ଷସସମୂହକୁ

ଦ୍ରୋଣପୁତ୍ରଙ୍କ କର୍ତ୍ତୃକ ନିହତ ହେବାର ନିରୀକ୍ଷଣ କରି ଅତିଶୟ ଯତ୍ନ-ସହକାରେ ଯୁଦ୍ଧାର୍ଥ ମନୋଯୋଗୀ ହେଲେ । ୨ । ପରନ୍ତୁ କୁରୁବଂଶୀୟ ସୋମଦତ୍ତ ସାତ୍ୟକଙ୍କୁ ସମରସ୍ଥଳରେ ଦେଖି କ୍ରୁଦ୍ଧ ହୋଇ ଶରବୃଷ୍ଟିଦ୍ୱାରା ତାହାଙ୍କୁ ସମାଚ୍ଛନ୍ନ କଲେ । ୩ । ଅନନ୍ତର ଆପଣଙ୍କ ପକ୍ଷୀୟ ଓ ପାଣ୍ଡବ-ପକ୍ଷୀୟ ଜୟାଭିଳାଷୀ ବୀରମାନଙ୍କ ମଧ୍ୟରେ ପରସ୍ପର ଅତିଭୟବର୍ଦ୍ଧନକର ଘୋରତର ଯୁଦ୍ଧ ଆରମ୍ଭ ହେଲା । ୪ । ସେହି ସମୟରେ ଭୀମସେନ ସୋମଦତ୍ତଙ୍କୁ ସାତ୍ୟକଙ୍କ ପ୍ରତି ସମାଗତ ହେବାର ଦେଖି ସାତ୍ୟକଙ୍କ ସାହାଯ୍ୟାର୍ଥ ଶିଳାଶାଣିତ ସୁବର୍ଣ୍ଣପୁଙ୍ଖ ଦଶଗୋଟି ଶରରେ ସୋମଦତ୍ତଙ୍କୁ ବିଦ୍ଧ କଲେ । ୫ । ସୋମଦତ୍ତ ମଧ୍ୟ ସେହି ବୀରଙ୍କୁ ଏକଶତ ଶରରେ ବିଦ୍ଧ କଲେ । ଅନନ୍ତର ସାତ୍ୟକ ଅତିଶୟ କ୍ରୁଦ୍ଧ ହୋଇ ନହୁଷପୁତ୍ର ଯଯାତିଙ୍କ ତୁଲ୍ୟ ସ୍ଥବିରୋଚିତଗୁଣସମଳଂକୃତ ପୁତ୍ରଶୋକାର୍ତ୍ତ ବୃଦ୍ଧ ସୋମଦତ୍ତଙ୍କୁ ବଜ୍ରଧାର ସଦୃଶ ଅତି ତୀକ୍ଷ୍ଣ ଦଶଗୋଟି ଶରରେ ବିଦ୍ଧ କଲେ । ୬ । ତତ୍ପରେ ଗୋଟିଏ ଶକ୍ତିଦ୍ୱାରା ତାହାଙ୍କ କଳେବର ବିଦୀର୍ଣ୍ଣ କରି ପୁନର୍ବାର ସାତଗୋଟି ଶରରେ ତାହାଙ୍କୁ ବିଦ୍ଧ କଲେ । ସେହି ସମୟରେ ଭୀମସେନ ସାତ୍ୟକଙ୍କ ସାହାଯ୍ୟାର୍ଥ ସୁଦୃଢ଼ ଭୟଙ୍କର ଅଭିନବ ଗୋଟିଏ ପରିଘ ଘେନି ସୋମଦତ୍ତଙ୍କ ମସ୍ତକ ଉପରକୁ ନିକ୍ଷେପ କଲେ । ସାତ୍ୟକ ମଧ୍ୟ ଅତିଶୟ କ୍ରୁଦ୍ଧ ହୋଇ ଶୋଭନପକ୍ଷବିଶିଷ୍ଟ ଅନଳସଙ୍କାଶ ଗୋଟିଏ ନିଶିତ ଶର ସନ୍ଧାନପୂର୍ବକ ସୋମଦତ୍ତଙ୍କ ବକ୍ଷଃସ୍ଥଳକୁ ପ୍ରହାର କଲେ ।

ହେ ମହାରାଜ ! ଉଭୟଙ୍କ ନିକ୍ଷିପ୍ତ ସେହି ଭୀଷଣ ପରିଘ ଓ ଶର ଏକାସମୟରେ ମହାରଥୀ ସୋମଦତ୍ତଙ୍କ ଶରୀରରେ ନିପତିତ ହେବାରୁ ସେ ତତ୍କ୍ଷଣାତ୍ ମୂର୍ଚ୍ଛିତ ହେଲେ । ସୋମଦତ୍ତ ବିମୋହିତ ହେବାରୁ ତାହାଙ୍କ ପିତା ବାହ୍ଲୀକ ବର୍ଷାକାଳୀନ ନିରନ୍ତର ବାରିବର୍ଷୀ ବାରିଦସଦୃଶ ଶରବର୍ଷଣ କରି ସାତ୍ୟକଙ୍କ ପ୍ରତି ଧାବିତ ହେଲେ । ଭୀମସେନ ସାତ୍ୟକଙ୍କ ସାହାଯ୍ୟାର୍ଥ ନଅଗୋଟି ଶରଦ୍ୱାରା ସମରାଙ୍ଗଣସ୍ଥିତ ମହାତ୍ମା ବାହ୍ଲୀକଙ୍କୁ ଦୃଢ଼ରୂପେ ବିଦ୍ଧ କଲେ । ତେତେବେଳେ ମହାବାହୁ ପ୍ରତୀପନନ୍ଦନ ବାହ୍ଲୀକ ଅତିଶୟ ରୋଷାନ୍ୱିତ ହୋଇ ପୁରନ୍ଦର ବଜ୍ରନିକ୍ଷେପ କଲାସଦୃଶ ଗୋଟିଏ ଶକ୍ତି ଗ୍ରହଣ କରି ଭୀମସେନଙ୍କ ବକ୍ଷସ୍ଥଳରେ ପ୍ରହାର କଲେ । ମହାବଳଶାଳୀ ଭୀମସେନ ଶକ୍ତିଦ୍ୱାରା ସମାହତ ହୋଇ ବିଚଳିତ ଓ ମୋହିତ ହେଲେ ।

୧୪ । କିନ୍ତୁ ତତ୍ପରେ ସେ ସଞ୍ଜ୍ଞା ଲାଭ କରି ଗୋଟିଏ ଗଦା ଗ୍ରହଣପୂର୍ବକ ବାହ୍ଲୀକଙ୍କ ପ୍ରତି ନିକ୍ଷେପ କଲେ । ସେହି ଭୀଷଣ ଗଦା ପାଣ୍ଡୁପୁତ୍ରଙ୍କକର୍ତ୍ତୃକ ନିକ୍ଷିପ୍ତହୋଇ ବାହ୍ଲୀକଙ୍କ ମସ୍ତକକୁ ଚୂର୍ଣ୍ଣିତ କଲା । ବାହ୍ଲୀକ ତତ୍‌କ୍ଷଣାତ୍ ବଜ୍ରାହତ ଭୂଧର ସଦୃଶ ଗତାସୁ ହୋଇ ଭୂତଳରେ ପତିତ ହେଲେ ।

ହେ ମହାରାଜ ! ପୁରୁଷଶ୍ରେଷ୍ଠ ମହାବୀର ବାହ୍ଲୀକ ନିହତ ହୁଅନ୍ତେ ଦଶରଥପୁତ୍ରଙ୍କସଦୃଶ ଆପଣଙ୍କ ଦଶ ପୁତ୍ର ନାଗଦତ୍ତ, ଦୃଢ଼ରଥ, ମହାବାହୁ, ଅୟୋଭୁଜ, ଦୃଢ଼, ସୁହସ୍ତ, ବିରଜ, ପ୍ରମାଥୀ, ଉଗ୍ର, ଅନୁଯାୟୀ ଏମାନେ ସମସ୍ତେ ମିଳିତ ହୋଇ ଭୀମଙ୍କ ପ୍ରତି ଧାବମାନ ହେଲେ । ମହାବୀର ଭୀମ, ସେମାନଙ୍କୁ ଅବଲୋକନ କରି କାର୍ଯ୍ୟସାଧନକ୍ଷମ ନାରାଚ ସମୂହ ସନ୍ଧାନ ପୂର୍ବକ ପ୍ରତ୍ୟେକର ମର୍ମ୍ମଦେଶକୁ ବିଦ୍ଧ କଲେ । ସେମାନେ ଭୀମଙ୍କର ନାରାଚରେ ବିଦ୍ଧ ହୋଇ ମହୀରୁହଗଣ ପ୍ରଚଣ୍ଡବାୟୁ ବେଗରେ ଭଗ୍ନ ହୋଇ ଗିରିଶିଖରରୁ ପତିତ ହେଲା ପ୍ରାୟ ଗତାସୁ ହୋଇ ରଥଉପରୁ ଭୂତଳରେ ନିପତିତ ହେଲେ । ଏହିପରି ଭୀମ ଦଶଗୋଟି ନାରାଚରେ ଆପଣଙ୍କର ସେହି ଦଶ ପୁତ୍ରଙ୍କର ପ୍ରାଣସଂହାର କରି କର୍ଣ୍ଣଙ୍କର ପ୍ରିୟପୁତ୍ର ବୃଷସେନଙ୍କୁ ଶରଦ୍ୱାରା ସମାକୀର୍ଣ୍ଣ କଲେ । ଏହି ସମୟରେ କର୍ଣ୍ଣଙ୍କର ଭ୍ରାତା ପ୍ରସିଦ୍ଧ ବୃଷରଥ ନାରାଚ ନିକର ଦ୍ୱାରା ଭୀମଙ୍କୁ ପ୍ରହାର କରିବାରୁ ବଳବାନ୍ ଭୀମସେନ ତତ୍‌କ୍ଷଣାତ୍ ତାହାଙ୍କୁ ସଂହାର କଲେ । ତଦନନ୍ତର ମହାବୀର ପାଣ୍ଡୁନନ୍ଦନ ଆପଣଙ୍କ ଶ୍ୟାଳକମାନଙ୍କ ମଧ୍ୟରୁ ସାତଜଣ ରଥିଙ୍କୁ ନାରାଚ ନିକରଦ୍ୱାରା ନିହତ କରି ଶତଚନ୍ଦ୍ରଙ୍କୁ ସଂହାର କଲେ । ଗଜାକ୍ଷ, ଶରଭ, ବିଭୁ, ଶୁଭଗ ଓ ଭାନୁଦତ୍ତ ଶକୁନିଙ୍କର ଏହି ସମରଦକ୍ଷ ମହାରଥ ଭ୍ରାତା ଶତଚନ୍ଦ୍ରଙ୍କୁ ନିହତ ହେବାର ନିରୀକ୍ଷଣ କରି ଅତିଶୟ ରୋଷାନ୍ୱିତ ଚିତ୍ତରେ ଭୀମସେନଙ୍କ ପ୍ରତି ଦ୍ରୁତବେଗରେ ଗମନ ପୂର୍ବକ ତୀକ୍ଷ୍ଣତର ଶରନିକର ଦ୍ୱାରା ତାହାଙ୍କୁ ତାଡ଼ିତ କରିବାରେ ପ୍ରବୃତ୍ତ ହେଲେ । ବୃଷଭ ଯେପରି ବୃଷ୍ଟି ବେଗରେ ପୀଡ଼ିତହୁଏ ସେହିପରି ବଳଶାଳୀ ଭୀମ ସେମାନଙ୍କର ନାରାଚବୃଷ୍ଟିଦ୍ୱାରା ନିପୀଡ଼ିତ ହୋଇ ପାଞ୍ଚଗୋଟି ବାଣଦ୍ୱାରା ସେହି ପଞ୍ଚ ମହାରଥିଙ୍କୁ ସଂହାର କଲେ ।

ହେ ମହାରାଜ ! ରାଜସତ୍ତମମାନେ ସେହି ବୀରମାନଙ୍କୁ ନିହତ ହେବାର ଦେଖି ବିଚଳିତ ହେଲେ । ୨୬ । ସେହି ସମୟରେ ଯୁଧିଷ୍ଠିର ରୋଷାନ୍ୱିତ ହୋଇ ଦ୍ରୋଣ ଓ ଆପଣଙ୍କ ପୁତ୍ରମାନଙ୍କ ସମକ୍ଷରେ କୌରବ ସୈନ୍ୟ ବିମର୍ଦ୍ଦନ କଲେ । ୨୮ । ସେହି ସମୟରେ ନରପତି ଯୁଧିଷ୍ଠିର ଅଭିଷାହ, ଶୂରସେନ, ବାହ୍ଲୀକ ଓ ବସାତିମାନଙ୍କୁ ଖଣ୍ଡଖଣ୍ଡ କରି ସମର ସ୍ଥଳ କର୍ଦ୍ଦମମୟ କଲେ ଓ ଯୌଧେୟ, ମାଳବ ଓ ମଦ୍ରଦେଶୀୟ ଅସଂଖ୍ୟ ଶୂରଙ୍କୁ ଶାୟକସମୂହ ଦ୍ୱାରା ଯମ ଲୋକକୁ ପ୍ରେରଣ କଲେ । ୩୦ ।

ହେ ମହାରାଜ ! ସେହି ସମୟରେ ଯୁଧିଷ୍ଠିରଙ୍କ ରଥାଭିମୁଖରେ 'ବିନାଶ କର' 'ଆନୟନ କର' 'ଗ୍ରହଣ କର' 'ବିଦ୍ଧ କର' 'ଛେଦନ କର' ଏହିପରି ତୁମୁଳ ଶବ୍ଦ ସମୁତ୍ଥିତ ହେଲା । ପରନ୍ତୁ ଦ୍ରୋଣ ଯୁଧିଷ୍ଠିରଙ୍କୁ ସୈନ୍ୟ ବିଦ୍ରାବିତ କରିବାର ଦେଖି ଆପଣଙ୍କ ପୁତ୍ରଙ୍କର ଆଦେଶାନୁସାରେ ତାହାଙ୍କୁ ଶରସମୂହ ଦ୍ୱାରା ସମାକୀର୍ଣ୍ଣ କଲେ । ତତ୍ପରେ ସେ ଅତିମାତ୍ର କ୍ରୁଦ୍ଧ ହୋଇ ବାୟୁବ୍ୟାସ୍ତ୍ର ପ୍ରେରଣ କଲେ । ପୃଥିବୀପତି ଯୁଧିଷ୍ଠିର ସେହି ବାୟୁବ୍ୟାସ୍ତ୍ରକୁ ଦିବ୍ୟାସ୍ତ୍ର ଦ୍ୱାରା ନିରାକୃତ କଲେ । ୩୩ । ବାୟୁବ୍ୟାସ୍ତ୍ର ପ୍ରତିହତ ହୁଅନ୍ତେ ଭରଦ୍ୱାଜନନ୍ଦନ ଦ୍ରୋଣ ଅତିଶୟ ରୋଷପରବଶ ହୋଇ ଯୁଧିଷ୍ଠିରଙ୍କୁ ସଂହାର କରିବା ଅଭିଳାଷରେ ବାରୁଣ, ଯାମ୍ୟ, ଆଗ୍ନେୟ, ତ୍ୱାଷ୍ଟ୍ର ଓ ସାବିତ୍ର ଇତ୍ୟାଦି ଦିବ୍ୟାସ୍ତ୍ର ସମୂହ ପ୍ରାଦୁର୍ଭୂତ କଲେ ।

ହେ ମହାରାଜ ! କୁମ୍ଭୋଦ୍ଭବ ଦ୍ରୋଣଙ୍କର ନିକ୍ଷିପ୍ତ ଓ କ୍ଷିପ୍ୟମାଣ ସେହି ଅସ୍ତ୍ରସମୂହକୁ ମହାବାହୁ ଧର୍ମ୍ମନନ୍ଦନ ନିର୍ଭୀକ ଚିତ୍ତରେ ସ୍ୱୀୟ ଅସ୍ତ୍ର ପ୍ରଭାବରେ ନିରାକୃତ କଲେ । ତେତେବେଳେ ଆପଣଙ୍କ ପୁତ୍ରଙ୍କ ହିତାର୍ଥୀ ଦ୍ରୋଣ, ଧର୍ମ୍ମନନ୍ଦନଙ୍କ ବିନାଶ ଓ ସ୍ୱୀୟ ପ୍ରତିଜ୍ଞା ସଫଳ କାମନାରେ ପ୍ରାଜାପତ୍ୟ ଓ ଐନ୍ଦ୍ର ଅସ୍ତ୍ର ପ୍ରାଦୁର୍ଭୂତ କଲେ । ୩୭ । ମାତଙ୍ଗ ଓ ସିଂହଗାମୀ ବିଶାଳବକ୍ଷ, ପୃଥୁଲୋହିତାକ୍ଷ ଅପରିମିତତେଜା କୁରୁପତି ଯୁଧିଷ୍ଠିର ଉଗ୍ରତର ମହେନ୍ଦ୍ରାସ୍ତ୍ର ପ୍ରାଦୁର୍ଭୂତ କରି ସେହି ଦୁଇ ଅସ୍ତ୍ରକୁ ନିହତ କଲେ । ୩୮ । ଏହିପରି ବାରମ୍ବାର ଅସ୍ତ୍ରସମୂହ ବ୍ୟର୍ଥ ହୁଅନ୍ତେ ଦ୍ରୋଣ କ୍ରୋଧରେ ଅଧୀର ହୋଇ ଯୁଧିଷ୍ଠିରଙ୍କର ବଧାଭିଳାଷରେ ବ୍ରହ୍ମାସ୍ତ୍ର ପ୍ରେରଣ କଲେ । ୩୯ ।

ହେ ମହାରାଜ ! ବ୍ରହ୍ମାସ୍ତ୍ର ପ୍ରାଦୁର୍ଭୂତ ହୁଅନ୍ତେ ଘୋରତର ଅନ୍ଧକାରରେ ଦିଗ୍ ସକଳ ଏପରି ସମାଚ୍ଛନ୍ନ ହେଲା ଯେ ସେହି କାଳରେ ଆଉ କିଛିମାତ୍ର ବୋଧ କରିପାରିଲୁ ନାହିଁ । ସମସ୍ତ ପ୍ରାଣୀ ସନ୍ତାପିତ ହେଲେ । ୪୦ । ପରନ୍ତୁ କୁନ୍ତୀନନ୍ଦନ ଯୁଧିଷ୍ଠିର ବ୍ରହ୍ମାସ୍ତ୍ର ଉଦ୍ୟତ ହେବାର ଅବଲୋକନ କରି ବ୍ରହ୍ମାସ୍ତ୍ର ଦ୍ୱାରା ତାହାକୁ ନିବାରଣ କଲେ । ୪୧ । ତଦ୍‌ଦ୍ୱାରା ସୈନ୍ୟାଧ୍ୟକ୍ଷମାନେ ସମସ୍ତେ ସର୍ବଯୁଦ୍ଧବିଶାରଦ ଧନୁର୍ଦ୍ଧରାଗ୍ରଗଣ୍ୟ ପୁରୁଷଶ୍ରେଷ୍ଠ ଦ୍ରୋଣ ଓ ଯୁଧିଷ୍ଠିର ଦୁହିଁଙ୍କୁ ପ୍ରଶଂସା କଲେ । ୪୨ । ତଦନନ୍ତର ଦ୍ରୋଣ କୁନ୍ତୀନନ୍ଦନ ଯୁଧିଷ୍ଠିରଙ୍କୁ ପରିତ୍ୟାଗ କରି ରୋଷଭରରେ ଲୋହିତଲୋଚନ ହୋଇ ବାୟବ୍ୟାସ୍ତ୍ର ଦ୍ୱାରା ପାଞ୍ଚାଳ ସୈନ୍ୟମାନଙ୍କୁ ଦଗ୍ଧ କଲେ । ୪୩ । ପାଞ୍ଚାଳମାନେ ଦ୍ରୋଣଙ୍କ କର୍ତ୍ତୃକ ବଧ୍ୟମାନ ହୋଇ ମହାତ୍ମା ଅର୍ଜ୍ଜୁନ ଓ ଭୀମସେନଙ୍କ ସମକ୍ଷରେ ପଳାୟନ କଲେ । ୪୪ । ସୈନ୍ୟଭଙ୍ଗ ହେବାର ଦେଖି ଭୀମପରାକ୍ରମ ଭୀମସେନ ଓ କିରୀଟମାଳୀ ସହସା ସୁମହତ୍ ରଥିସୈନ୍ୟମାନଙ୍କ ଦ୍ୱାରା ଆପଣଙ୍କ ପକ୍ଷୀୟ ସୈନ୍ୟର ଉତ୍ତର ଓ ଦକ୍ଷିଣଭାଗ ଆକ୍ରମଣ ପୂର୍ବକ ଭରଦ୍ୱାଜନନ୍ଦନ ଦ୍ରୋଣଙ୍କ ପ୍ରତି ଧାବିତ ହେଲେ ଓ ତାହାଙ୍କ ପ୍ରତି ନିରନ୍ତର ଶରବୃଷ୍ଟି କଲେ । ସେହି ସମୟରେ ମହାତେଜସ୍ୱୀ ପାଞ୍ଚାଳଗଣ, ସୃଞ୍ଜୟଗଣ ଓ ମତ୍ସ୍ୟସେନାଗଣ ସାତ୍ୱତ ସୈନ୍ୟମାନଙ୍କ ସହିତ ମିଳିତ ହୋଇ ଭୀମାର୍ଜ୍ଜୁନଙ୍କ ଅନୁଗାମୀ ହେଲେ । ୪୭ । କୌରବ ସୈନ୍ୟମାନେ ନିଦ୍ରା ଓ ଅନ୍ଧକାରରେ ବ୍ୟାକୁଳ ଥିଲେ । ତହିଁରେ ପୁଣି କିରୀଟୀଙ୍କ ଶରଦ୍ୱାରା ବଧ୍ୟମାନ ହେବାରୁ ସେମାନେ ଛିନ୍ନଭିନ୍ନ ହୋଇଗଲେ । ୪୮ । ସେହି ସମୟରେ ସେହି ଯୋଦ୍ଧାମାନଙ୍କୁ ଦ୍ରୋଣ ଓ ସ୍ୱୟଂ ଆପଣଙ୍କ ପୁତ୍ର ପଳାୟନ କରିବାକୁ ନିଷେଧ କଲେ । କିନ୍ତୁ ସେମାନଙ୍କୁ କୌଣସି ପ୍ରକାରେ ପ୍ରତିନିବୃତ୍ତ କରିପାରିଲେ ନାହିଁ । ୪୯ ।

---

## ୧୫୮ ଅଧ୍ୟାୟ

ସଞ୍ଜୟ କହିଲେ—ହେ ମହାରାଜ ! କୁରୁପତି ଦୁର୍ଯ୍ୟୋଧନ ପାଣ୍ଡବମାନଙ୍କର ସେହି ସୁମହତ୍ ସୈନ୍ୟମାନଙ୍କୁ ରୋଷପରବଶ ଅବଲୋକନ

କରି ଅବିସହ୍ୟ ବିବେଚନାରେ କର୍ଣ୍ଣଙ୍କୁ କହିଲେ । ୧ । ହେ ମିତ୍ରବତ୍ସଳ କର୍ଣ୍ଣ ! ବର୍ତ୍ତମାନ ମିତ୍ରଜନୋଚିତ କାର୍ଯ୍ୟର ସମୟ ଉପସ୍ଥିତ ହୋଇଅଛି । ଦେଖ, ଅସ୍ମତ୍ପକ୍ଷୀୟ ମହାରଥୀ ଯୋଦ୍ଧାମାନେ ନିଃଶ୍ୱାସତ୍ୟାଗକାରୀ କ୍ରୁଦ୍ଧ ଭୁଜଙ୍ଗସଦୃଶ ପାଞ୍ଚାଳ, କେକେୟ, ମତ୍ସ୍ୟ ଓ ପାଣ୍ଡବପକ୍ଷୀୟ ମହାରଥିମାନଙ୍କଦ୍ୱାରା ଚତୁର୍ଦ୍ଦିଗରେ ପରିବୃତ ହୋଇ ଅଛନ୍ତି । ଅତଏବ ତୁମ୍ଭେ ସେମାନଙ୍କୁ ପରିତ୍ରାଣ କର । ୩ । ଇନ୍ଦ୍ରତୁଲ୍ୟ ପରାକ୍ରମଶାଳୀ ବହୁସଂଖ୍ୟକ ପାଞ୍ଚାଳସୈନ୍ୟମାନେ ଓ ଜୟପ୍ରଭାବାନ୍ୱିତ ପାଣ୍ଡବଗଣ ହୃଷ୍ଟଚିତ୍ତରେ ସିଂହନାଦ କରୁଅଛନ୍ତି । ୪ । ଦୁର୍ଯ୍ୟୋଧନଙ୍କର ଏହି ସମସ୍ତ କଥା ଶ୍ରବଣ କରି କର୍ଣ୍ଣ କହିଲେ, ହେ ମହାରାଜ ! ପୃଥାପୁତ୍ର ଅର୍ଜ୍ଜୁନଙ୍କ ରକ୍ଷାର୍ଥ ଯଦି ସ୍ୱୟଂ ପୁରନ୍ଦର ଆସି ଉପସ୍ଥିତ ହୁଅନ୍ତି, ତେବେ ତାହାଙ୍କୁ ମଧ୍ୟ ଆମ୍ଭେ ଅବିଳମ୍ବେ ପରାଜିତ କରି ଅର୍ଜ୍ଜୁନଙ୍କୁ ନିହତ କରିବୁଁ । ଅତଏବ ଆପଣ ଆଶ୍ୱସ୍ତ ହୁଅନ୍ତୁ । ୬ । ପୁଣି ଅନଳସମ୍ଭୂତ କାର୍ତ୍ତିକେୟ ଯେମନ୍ତ ମହେନ୍ଦ୍ରଙ୍କ ରକ୍ଷାର୍ଥ ପ୍ରତିଜ୍ଞା କରିଥିଲେ, ସେହିପରି ଆମ୍ଭେ ମଧ୍ୟ ଆପଣଙ୍କ ଜୟାର୍ଥ ପ୍ରତିଜ୍ଞା କରୁଅଛୁଁ । ଆମ୍ଭେ କେବଳ ଆପଣଙ୍କ ପ୍ରିୟକାର୍ଯ୍ୟ ସାଧନ ନିମିତ୍ତ ଏପର୍ଯ୍ୟନ୍ତ ଜୀବିତ ଅଛୁଁ । ୭ । ହେ ମାନଦ, ଦେଖନ୍ତୁ, ପୃଥାପୁତ୍ରମାନଙ୍କ ମଧ୍ୟରେ ଅର୍ଜ୍ଜୁନ ହିଁ ବୀର୍ଯ୍ୟବତ୍ତର । ଅତଏବ ଆମ୍ଭେ ବାସବନିର୍ମିତ ସେହି ଅମୋଘ ଶକ୍ତିକୁ ତାହାଙ୍କ ପ୍ରତି ନିକ୍ଷେପ କରିବୁଁ । ୮ । କାରଣ ଧନୁର୍ଦ୍ଧରାଗ୍ରଗଣ୍ୟ ନିହତ ହେଲେ ତାହାଙ୍କ ଭ୍ରାତୃଗଣ ଆପଣଙ୍କ ବଶୀଭୂତ ହେବେ । ନଚେତ୍ ପୁନର୍ବାର ବନକୁ ଗମନ କରିବେ । ୯ । ଆମ୍ଭେ ଜୀବିତ ଥିବା ପର୍ଯ୍ୟନ୍ତ ଆପଣ ବିଷଣ୍ଣ ହେବା ଉଚିତ ନୁହେଁ । ଆମ୍ଭେ ନିଶ୍ଚୟ ସମରରେ ସମବେତ ପାଣ୍ଡବମାନଙ୍କୁ ପରାଜିତ କରିବୁଁ । ପାଞ୍ଚାଳ, କେକେୟ, ବୃଷ୍ଣିବଂଶୀୟମାନଙ୍କୁ ଶରନିକର ଦ୍ୱାରା ଖଣ୍ଡ ଖଣ୍ଡ କରି ଆପଣଙ୍କୁ ଏହି ପୃଥିବୀ ପ୍ରଦାନ କରିବୁଁ । ୧୧ ।

ସଞ୍ଜୟ କହିଲେ—ହେ ମହାରାଜ ! ସୂତପୁତ୍ର କର୍ଣ୍ଣ ଏହିପରି କହନ୍ତେ, ଶରଦ୍ୱାନ ଋଷିଙ୍କପୁତ୍ର ମହାବାହୁ କୃପ ତାହାଙ୍କ କଥାକୁ ଅବଜ୍ଞା କଲା ପ୍ରାୟ ତାହାଙ୍କୁ କହିଲେ । ୧୨ । ହେ ରାଧାନନ୍ଦନ ! ଆହେ କର୍ଣ୍ଣ ! ତୁମ୍ଭର ଏହି କଥାଗୁଡ଼ିକ ବଡ଼ ସୁନ୍ଦର । ଯଦି କେବଳ ବାକ୍ୟରେ କାର୍ଯ୍ୟ ସିଦ୍ଧି ହୁଏ ତେବେ କୁରୁପତି ତୁମ୍ଭର ଦ୍ୱାରା କେବଳ ସହାୟସମ୍ପନ୍ନ ହୋଇ

ଅଛନ୍ତି, ଏଥିରେ ସନ୍ଦେହନାହିଁ । ୧୩ । ତୁମ୍ଭେ ନିତ୍ୟ କୁରୁରାଜଙ୍କ ସମୀପରେ ଏହି ଶ୍ଳାଘା କର, କିନ୍ତୁ କୌଣସି ସମୟରେ ତୁମ୍ଭର ତାଦୃଶ ପରାକ୍ରମ ବା ତଦନୁସାରେ ଫଳ ଦୃଷ୍ଟ ହୁଏ ନାହିଁ । ହେ ସୂତ-ନନ୍ଦନ ! ରଣସ୍ଥଳରେ ପାଣ୍ଡବମାନଙ୍କ ସହିତ ତୁମ୍ଭର ଅନେକ ଥର ଯୁଦ୍ଧ ଦୃଷ୍ଟ ହୋଇଅଛି, କିନ୍ତୁ ତୁମ୍ଭେ ସର୍ବଦା ପରାଜିତ ହୋଇଅଛ ।୧୫। ଆହେ କର୍ଣ୍ଣ ! ଯେତେବେଳେ ଧୃତରାଷ୍ଟ୍ରତନୟ ଗନ୍ଧର୍ବଗଣଙ୍କ କର୍ତ୍ତୃକ ଅପହୃତ ହୋଇ-ଥିଲେ ତେତେବେଳେ ସମସ୍ତ ସୈନ୍ୟମାନେ ଯୁଦ୍ଧ କରୁଥିଲେ ହେଁ କେବଳ ତୁମ୍ଭେ ଅଗ୍ରେ ପଳାୟନ କରିଥିଲ । ୧୬ । ପୁଣି ବିରାଟ ନଗରରେ ଯୁଦ୍ଧ କାଳରେ ସମବେତ କୌରବଗଣ ଓ ଅନୁଜଗଣଙ୍କସହ ତୁମ୍ଭେ ସମସ୍ତେ ଅର୍ଜ୍ଜୁନଙ୍କ କର୍ତ୍ତୃକ ପରାଜିତ ହୋଇଥିଲ । ୧୭ । ରଣସ୍ଥଳରେ ଯେତେବେଳେ ତୁମ୍ଭେ ଏକମାତ୍ର ଅର୍ଜ୍ଜୁନଙ୍କଠାରେ ଅସମର୍ଥ ତେତେବେଳେ କୃଷ୍ଣଙ୍କ ସହିତ ଏକତ୍ରିତ ସମସ୍ତ ପାଣ୍ଡବମାନଙ୍କୁ ପରାଜୟ କରିବାକୁ କିପରି ସାହସ କରୁଅଛ ? ୧୮ । ଆହେ ସୂତନନ୍ଦନ ! ତୁମ୍ଭେ ବାରମ୍ବାର ଶ୍ଳାଘା କରୁଅଛ କିନ୍ତୁ ଯେଉଁ ବ୍ୟକ୍ତି କିଛିମାତ୍ର ନ କହି କେବଳ ପରାକ୍ରମ ପ୍ରକାଶ କରନ୍ତି ତାହାଙ୍କର ସେହି କାର୍ଯ୍ୟ ସତ୍ପୁରୁଷୋଚିତ କାର୍ଯ୍ୟ ବୋଲି ଉକ୍ତ ହୋଇ-ଅଛି । ଅତଏବ ତୁମ୍ଭେ ବାଗାଡ଼ମ୍ବର ପରିତ୍ୟାଗ କରି ଯୁଦ୍ଧ କର । ୧୯ ।

ହେ ସୂତପୁତ୍ର ! ତୁମ୍ଭେ ସଳିଳଶୂନ୍ୟ ଶାରଦୀୟ ମେଘସଦୃଶ ବୃଥା ଗର୍ଜ୍ଜନ କରି ଜନସମାଜରେ କେବଳ ଅକର୍ମଣ୍ୟ ବୋଲି ପ୍ରତିପନ୍ନମାନ ହେଉଅଛ । କିନ୍ତୁ ରାଜା ଦୁର୍ଯ୍ୟୋଧନ ତାହା ବୁଝିପାରୁ ନାହାନ୍ତି । ୨୦ । ହେ ରାଧା-ନନ୍ଦନ ! ତୁମ୍ଭେ ଯେଉଁ ପର୍ଯ୍ୟନ୍ତ ଅର୍ଜ୍ଜୁନଙ୍କୁ ଅବଲୋକନ କରିନାହଁ ସେ ପର୍ଯ୍ୟନ୍ତ ଗର୍ଜ୍ଜନ କର । କାରଣ ଅର୍ଜ୍ଜୁନଙ୍କୁ ନିକଟସ୍ଥ ଅବଲୋକନ କଲେ ତୁମ୍ଭର ଏପରି ଗର୍ଜ୍ଜନ ଦୁର୍ଲ୍ଲଭ ହେବ । ୨୧ । ଯେ ପର୍ଯ୍ୟନ୍ତ ଫାଲ୍‌ଗୁନଙ୍କ ବାଣ ସହିତ ତୁମ୍ଭର ସାକ୍ଷାତ ହୋଇନାହିଁ ସେ ପର୍ଯ୍ୟନ୍ତ ଗର୍ଜ୍ଜନ କର । ଧନଞ୍ଜୟଙ୍କ ଶରସମୂହରେ ବିଦ୍ଧ ହେଲେ ଏପରି ଗର୍ଜ୍ଜନ ଆଉ ସୁଲଭ ହେବନାହିଁ । ୨୨ । ପୁଣି କ୍ଷତ୍ରିୟମାନେ ବାହୁବଳଦ୍ୱାରା, ଦ୍ୱିଜାତିମାନେ ବାକ୍ୟବଳ ଦ୍ୱାରା ଓ ଫାଲ୍‌ଗୁନ ସ୍ୱୀୟ ଶରାସନ ବଳଦ୍ୱାରା ଶୂର ବୋଲି ବିଖ୍ୟାତ । କିନ୍ତୁ କର୍ଣ୍ଣ କେବଳ ମନୋରଥରେ ଶୂର । ୨୩ ।

ଯେଉଁ ମହାବୀର ରୁଦ୍ରଙ୍କୁ ପ୍ରୀତ କରିଅଛନ୍ତି ସେହି ଅର୍ଜ୍ଜୁନଙ୍କୁ ନିହତ କରିବା କାହାର ସାଧ୍ୟ ? ହେ ମହାରାଜ ! ବୀରପ୍ରଧାନ ମହାବୀର କର୍ଣ୍ଣ ଶାରଦ୍ୱତ କୃପଙ୍କର ଏହି ଅବଜ୍ଞାସୂଚକ ବାକ୍ୟମାନ ଶୁଣି ଅତିଶୟ କ୍ରୋଧରେ ତାହାଙ୍କୁ ଏହିପରି ଉତ୍ତର ଦେଲେ ଯେ, ଶୂର ପୁରୁଷମାନେ ବର୍ଷାକାଳୀନ ସଜଳଜଳଦସମୂହ ସଦୃଶ ଅଟନ୍ତି । ଯେପରି ସେମାନେ ଗର୍ଜ୍ଜନ କରନ୍ତି ସେହିପରି ସମୁଚିତ ଋତୁକାଳରୋପିତ ବୀଜସଦୃଶ ଅବିଳମ୍ବରେ ଫଳପ୍ରଦାନ ମଧ୍ୟ କରନ୍ତି । ପୁଣି ସମର କାଳରେ ଶୂରମାନେ ଯୁଦ୍ଧର ଭାର ଯେପରି ବହନ କରନ୍ତି, ସେପରି ଶ୍ଲାଘା କଲେ ସେମାନଙ୍କର ଯେ କୌଣସି ଦୋଷ ହୁଏ, ତାହା ଆମ୍ଭେ ବିବେଚନା କରୁନାହୁଁ । ପୁରୁଷ ଯେଉଁ ଭାର ବହନ କରିବାକୁ ମନରେ ଅଧ୍ୟବସାୟ କରେ ଦୈବ ତାହାର ନିଶ୍ଚୟ ସାହାଯ୍ୟକାରୀ ହୁଅନ୍ତି । ହେ ବିପ୍ର ! ଆମ୍ଭେ ଯଦି ଏହି ଯୁଦ୍ଧର ଭାର ବହନପୂର୍ବକ ସମର ସ୍ଥଳରେ କୃଷ୍ଣ ଓ ସାତ୍ୱତମାନଙ୍କ ସହିତ ପାଣ୍ଡୁପୁତ୍ରମାନଙ୍କୁ ବିନାଶ କରିବୁଁ ବୋଲି ମନରେ ଅଧ୍ୟବସାୟ କରି ଗର୍ଜ୍ଜନ କରୁଁ ତେବେ ତହିଁରେ ତୁମ୍ଭର କ୍ଷତି କଅଣ ? ୨୯ । ଆଉ ଏହା ମଧ୍ୟ ଜାଣିବା ଉଚିତ ଯେ ଦୂରଦର୍ଶୀ ଶୂରମାନେ କଦାପି ଶାରଦୀୟ ମେଘସଦୃଶ ବୃଥାଗର୍ଜ୍ଜନ କରନ୍ତି ନାହିଁ । କାରଣ ସେମାନେ ଆପଣାର ସାମର୍ଥ୍ୟ ବୁଝି ଗର୍ଜ୍ଜନ କରିଥାଆନ୍ତି । ୩୦ ।

ଅତଏବ ହେ ଗୌତମ ! ଆମ୍ଭେ ମଧ୍ୟ ଅଦ୍ୟ ସମରରେ ଯତ୍ନପରାୟଣ କୃଷ୍ଣ-ସହାୟ ଅର୍ଜ୍ଜୁନଙ୍କୁ ପରାଜୟ କରିବୁଁ ବୋଲି ଉତ୍ସାହୀ ହୋଇ ଗର୍ଜ୍ଜନ କରୁଅଛୁଁ । ୩୧ । ହେ ବିପ୍ର ! ବର୍ତ୍ତମାନ ତୁମ୍ଭେ ଆମ୍ଭର ଏହି ଗର୍ଜ୍ଜନର ଫଳ ପ୍ରତ୍ୟକ୍ଷ କର । ଅଦ୍ୟ ଆମ୍ଭେ ସମରରେ ଅନୁଚରବର୍ଗଙ୍କ ସହିତ କୃଷ୍ଣ ଓ ସାତ୍ୱତଗଣସମବେତ ପାଣ୍ଡବମାନଙ୍କୁ ସଂହାର କରି ଦୁର୍ଯ୍ୟୋଧନଙ୍କୁ ଏହି ନିଷ୍କଣ୍ଟକ ବସୁନ୍ଧରା ପ୍ରଦାନ କରିବୁଁ ।

ହେ ମହାରାଜ ! କର୍ଣ୍ଣଙ୍କର ଏହିପରି ଗର୍ବୋକ୍ତି ଶ୍ରବଣ କରି କୃପାଚାର୍ଯ୍ୟ କହିଲେ, ହେ ସୂତ-ପୁତ୍ର ! ତୁମ୍ଭେ ଯେତେବେଳେ ଧର୍ମ୍ମରାଜ ଯୁଧିଷ୍ଠିର ଓ କୃଷ୍ଣାର୍ଜ୍ଜୁନଙ୍କର ନିନ୍ଦା କରୁଅଛ, ତେତେବେଳେ ତୁମ୍ଭର ଏହି ମନୋରଥ ପ୍ରଳାପବାକ୍ୟସମୂହ ଆମ୍ଭ ନିକଟରେ ଗ୍ରାହ୍ୟ ହେବ ନାହିଁ ।

ତୁମ୍ଭେ ଦୃଢ଼ରୂପେ ଜାଣିରଖ ଯେ ସମରରେ ବଦ୍ଧସନ୍ନାହ ଦେବ, ଯକ୍ଷ, ଗନ୍ଧର୍ବ, ମନୁଷ୍ୟ, ଉରଗ ଓ ରାକ୍ଷସାଦିଙ୍କ କର୍ତ୍ତୃକ ଅଜେୟ ସମରବିଶାରଦ କୃଷ୍ଣାର୍ଜ୍ଜୁନ ଯେଉଁ ପକ୍ଷ ଅବଲମ୍ବନ କରିଅଛନ୍ତି, ସେହି ପକ୍ଷରେ ନିଶ୍ଚୟ ଜୟ ହେବ । ୩୫ । ଧର୍ମ୍ମପୁତ୍ର ଯୁଧିଷ୍ଠିର ବ୍ରହ୍ମନିଷ୍ଠ, ସତ୍ୟବାଦୀ, ଜିତେନ୍ଦ୍ରିୟ, ଗୁରୁ ଓ ଦେବତାଙ୍କର ଅର୍ଚ୍ଚନାକାରୀ, ସତତ ଧର୍ମ୍ମନିରତ, କୃତାସ୍ତ୍ର, ଧୃତିମାନ୍ ଓ କୃତଜ୍ଞ ଓ ତାହାଙ୍କର ସହୋଦରମାନେ ମଧ୍ୟ ସମସ୍ତେ କୃତାସ୍ତ୍ର, ବଳବାନ୍, ଯଶସ୍ୱୀ, ଗୁରୁଜନମାନଙ୍କର ଆଜ୍ଞାନୁବର୍ତ୍ତୀ ପ୍ରାଜ୍ଞ ଓ ଧର୍ମ୍ମାନୁଷ୍ଠାନରତ । ସେମାନଙ୍କର ସ୍ୱସମ୍ପର୍କୀୟ ମହାସ୍ତ୍ରବେତ୍ତା ଦ୍ରୁପଦ ଓ ତାହାଙ୍କର ପୁତ୍ର ଧୃଷ୍ଟଦ୍ୟୁମ୍ନ, ଶିଖଣ୍ଡୀ, ଦୌର୍ମ୍ମୁଖୀ, ଜନମେଜୟ, ଇନ୍ଦ୍ରସେନ, ଭଦ୍ରସେନ, କୀର୍ତ୍ତିବର୍ମ୍ମା, ଧ୍ରୁବ, ଧର, ବସୁଚନ୍ଦ୍ର, ଦାମଚନ୍ଦ୍ର, ସିଂହଚନ୍ଦ୍ର, ସୁତେଜନା— ଏମାନେ ସମସ୍ତେ ଶକ୍ରତୁଲ୍ୟ ପରାକ୍ରମଶାଳୀ, ପ୍ରହାରପଟୁ ଓ ଅନୁରକ୍ତ । ପୁଣି ସୁଦର୍ଶନ, ଗଜାନୀକ, ଶ୍ରୁତାନକ, ଶ୍ରୁତଧ୍ୱଜ, ବଳାନୀକ, ଜୟାନୀକ, ଜୟାଶ୍ୱ, ରଥବାହନ, ଚନ୍ଦ୍ରୋଦୟ ଓ କାମରଥ ଏହି ସମସ୍ତ କୃତବିଦ୍ୟ ଭ୍ରାତୃଗଣ-ସହାୟ ମତ୍ସ୍ୟପତି ବିରାଟ ଯେଉଁମାନଙ୍କର ପ୍ରୟୋଜନ ସିଦ୍ଧିନିମିତ୍ତ ଯତ୍ନପର ହୋଇଅଛନ୍ତି, ଆଉ ଯମଜ ନକୁଳ ସହଦେବ, ଦ୍ରୌପଦୀପୁତ୍ରଗଣ ଓ ଘଟୋତ୍କଚ ଓ ଅପର ବହୁସଂଖ୍ୟକ ଆତ୍ମୀୟଗଣ ଯେଉଁମାନଙ୍କ ନିମିତ୍ତ ଯୁଦ୍ଧ କରୁଅଛନ୍ତି, ସେମାନଙ୍କର କଦାପି ଧ୍ୱଂସ ହୋଇ ପାରିବ ନାହିଁ । ଦେବ, ଅସୁର, ମନୁଷ୍ୟ, ଯକ୍ଷ, ରାକ୍ଷସ, ହସ୍ତୀ ଓ ଭୁଜଙ୍ଗ ପ୍ରଭୃତି ସମସ୍ତପ୍ରାଣୀ-ସମନ୍ୱିତ ସଚରାଚର ଜଗତ୍‌କୁ କେବଳ ଭୀମାର୍ଜ୍ଜୁନ ଦୁହେଁ ବାହୁବୀର୍ଯ୍ୟ ପ୍ରଭାବରେ ନିଃଶେଷ କରିପାରନ୍ତି । ୪୫ । ଯୁଧିଷ୍ଠିର ମଧ୍ୟ ରୋଷପ୍ରଦୀପ୍ତ କଟାକ୍ଷ ନିକ୍ଷେପ କରି ଏହି ପୃଥିବୀକୁ ଦଗ୍‌ଧ କରିବାକୁ ସମର୍ଥ ।

ହେ କର୍ଣ୍ଣ ! ଅପ୍ରମେୟବଳଶାଳୀ ଯଦୁକୁଳ-ଚୂଡ଼ାମଣି ବାସୁଦେବ ଯେଉଁମାନଙ୍କ ନିମିତ୍ତ ସଜ୍ଜିତ ହୋଇ ରହିଅଛନ୍ତି, ତୁମ୍ଭେ ତାଦୃଶ ଶତ୍ରୁଙ୍କୁ ସଂଗ୍ରାମରେ ପରାଜିତ କରିବାକୁ କିପରି ଉତ୍ସାହ କରୁଅଛ ? ହେ ସୂତ-ନନ୍ଦନ ! ତୁମ୍ଭେ ଯେ ସର୍ବଦା ବାସୁଦେବଙ୍କ ସହିତ ଯୁଦ୍ଧାର୍ଥ ଉତ୍ସାହୀ ହୋଇ-ଥାଅ ତାହା ତୁମ୍ଭ ପକ୍ଷରେ ମହାନ୍ ଅପନୟ ବୋଲି ଜାଣିବ ।

ସଞ୍ଜୟ କହିଲେ—ହେ ମହାରାଜ ! ରାଧାନନ୍ଦନ ଆଚାର୍ଯ୍ୟ କୃପଙ୍କର ଏହିପରି ବାକ୍ୟ ଶ୍ରବଣ କରି ହାସ୍ୟପୂର୍ବକ ଉତ୍ତର କଲେ, ହେ ବ୍ରହ୍ମନ୍ ! ପାଣ୍ଡବମାନଙ୍କ ବିଷୟରେ ତୁମ୍ଭେ ଯେଉଁ ସମସ୍ତ କଥା ଉଲ୍ଲେଖ କଲ, ସେ ସମସ୍ତ ସତ୍ୟ । ତୁମ୍ଭେ ଯାହା କହିଲ ତାହା ବ୍ୟତୀତ ସେମାନଙ୍କର ଅପରାପର ଅନେକ ଗୁଣ ମଧ୍ୟ ବିଦ୍ୟମାନ ଅଛି । ଯଦି ପୃଥାପୁତ୍ରମାନେ ଯକ୍ଷ, ପିଶାଚ, ଗନ୍ଧର୍ବ, ଭୁଜଙ୍ଗ, ରାକ୍ଷସ, ଅସୁର ଓ ଅମରଗଣସମବେତ ଇନ୍ଦ୍ରଙ୍କର ଅଜେୟ ତଥାପି ଆମ୍ଭେ ତାହାଙ୍କୁ ସେହି ଇନ୍ଦ୍ରଦତ୍ତ ଶକ୍ତିଦ୍ୱାରା ପରାଜିତ କରିବୁଁ । ୫୧ ।

ହେ ଦ୍ୱିଜ ! ଆମ୍ଭେ ବାସବପ୍ରଦତ୍ତ ସେହି ଅମୋଘଶକ୍ତିଦ୍ୱାରା ରଣ ସ୍ଥଳରେ ନିଶ୍ଚୟ ସବ୍ୟସାଚୀଙ୍କୁ ସଂହାର କରିବୁଁ । ୫୨ । ପାଣ୍ଡୁପୁତ୍ର ଧନଞ୍ଜୟ ନିହତ ହେଲେ ତାହାଙ୍କର ଅନ୍ୟାନ୍ୟ ସହୋଦରଗଣ ବା କୃଷ୍ଣ କଦାପି ଅର୍ଜୁନଶୂନ୍ୟ ପୃଥିବୀକୁ ଉପଭୋଗ କରି ପାରିବେ ନାହିଁ । ୫୩ । ହେ ଗୌତମନନ୍ଦନ ! ଯଦି କୃଷ୍ଣ ଓ ପାଣ୍ଡବଗଣ ସମସ୍ତେ ଏହିପରି ବିନଷ୍ଟ ହୁଅନ୍ତି, ତାହାହେଲେ ବିନାଯତ୍ନରେ ଏହି ସସାଗରା ବସୁନ୍ଧରା କୁରୁରାଜଙ୍କର ବଶବର୍ତ୍ତିନୀ ହେବ । ୫୪ । ଦେଖ, ଏହି ସଂସାର ମଧ୍ୟରେ ସୁନୀତି ଅବଲମ୍ବନ କଲେ ସମସ୍ତ କାର୍ଯ୍ୟ ସିଦ୍ଧ ହୁଏ, ଏଥିରେ ସନ୍ଦେହ ନାହିଁ । ଆମ୍ଭେ ଏହା ଅବଗତ ହୋଇ ଗର୍ଜ୍ଜନ କରିଥାଉଁ । ୫୫ । କିନ୍ତୁ ତୁମ୍ଭେ ବ୍ରାହ୍ମଣ, ବୃଦ୍ଧ ପୁଣି ସମରରେ ଅଶକ୍ତ ଓ ପାଣ୍ଡବମାନଙ୍କ ପ୍ରତି ତୁମ୍ଭର ବିଶେଷ ସ୍ନେହ ଥାଏ, ଏହି ହେତୁ ତୁମ୍ଭେ ମୋହବଶତଃ ଆମ୍ଭଙ୍କୁ ଅବମାନନା କରୁଅଛ । ୫୬ । ହେ ଦୁର୍ମ୍ମତେ ! ଯଦି ତୁମ୍ଭେ ପୁନର୍ବାର ଆମ୍ଭ ନିକଟରେ ଏପରି ଅପ୍ରିୟ ବାକ୍ୟ ପ୍ରୟୋଗ କର, ତାହାହେଲେ ଏହି ଖଡ଼୍‌ଗ ଉଦ୍ୟତ କରି ତୁମ୍ଭର ଜିହ୍ୱା ଛେଦନ କରିବୁଁ । ୫୭ ।

ଆହେ ଦୁର୍ବୁଦ୍ଧି ବ୍ରାହ୍ମଣ ! ତୁମ୍ଭେ ଯେ ଏହି ସମସ୍ତ କୌରବ ସୈନ୍ୟମାନଙ୍କୁ ସନ୍ତାସିତ କରି ପାଣ୍ଡବମାନଙ୍କର ସ୍ତବ କରିବାକୁ ଅଭିଳାଷ କରିଅଛ, ସେ ବିଷୟରେ ଆମ୍ଭେ ଯାହା କହୁଅଛୁଁ ତାହା ଶ୍ରବଣ କର । ଯେଉଁଠାରେ କୁରୁରାଜ ଦୁର୍ଯ୍ୟୋଧନ, ଦ୍ରୋଣ, ଶକୁନି, ଦୁର୍ମ୍ମୁଖ, ଜୟ, ଦୁଃଶାସନ, ବୃଷସେନ, ମଦ୍ରରାଜ ଶଲ୍ୟ, ତୁମ୍ଭେ, ସୋମଦତ୍ତ, ଭୂରିଶ୍ରବା,

ଦ୍ରୋଣନନ୍ଦନ ଅଶ୍ୱତ୍ଥାମା ଓ ବିବିଂଶତି ଏହି ସମସ୍ତ ସମରବିଶାରଦ ବୀରମାନେ ଯେଉଁ ସ୍ଥଳରେ ଦଂଶିତ ହୋଇ ଅବସ୍ଥାନ କରୁଅଛନ୍ତି, ସେସ୍ଥଳରେ ଶକ୍ର ଶକ୍ରସମ ପରାକ୍ରମଶାଳୀ ହେଲେହେଁ ସେ କି ଜୟ ଲାଭ କରିପାରିବ ? ଏମାନେ ସମସ୍ତେ ଶୂର କୃତାସ୍ତ୍ର, ବଳଶାଳୀ, ଧର୍ମଜ୍ଞ ଓ ରଣକୁଶଳ । ଏମାନେ ସ୍ୱର୍ଗଲିପ୍ସୁ ହେଲେ ଅମରମାନଙ୍କୁ ମଧ୍ୟ ପରାଜିତ କରିପାରନ୍ତି । ୬୨ । ଏହି ସକଳ ସନ୍ନାହିତ ଶୂରମାନେ କୁରୁରାଜଙ୍କର ଜୟାକାଙ୍କ୍ଷୀ ଓ ପାଣ୍ଡବମାନଙ୍କର ବଧାର୍ଥୀ ହୋଇ ରଣସ୍ଥଳରେ ଅବସ୍ଥାନ କରିବେ । ୬୩ । ପରନ୍ତୁ ଯେଉଁସ୍ଥଳରେ ମହାବାହୁ ଭୀଷ୍ମ, ଶତଶତ ଶରସମାଚିତ-କଳେବର ହୋଇ ସମରାଙ୍ଗଣରେ ଶୟନ କରିଅଛନ୍ତି ସେ ସ୍ଥଳରେ ମହା-ବଳବାନ୍ ହେଲେହେଁ ତାହାର ଜୟଲାଭ ଦୈବାଧୀନ ବୋଲି ମନେକରୁଁ । ୬୪ ।

ହେ ପୁରୁଷାଧମ ! ରଣସ୍ଥଳରେ ବିକର୍ଣ୍ଣ, ଚିତ୍ରସେନ, ବାହ୍ଲୀକ, ଜୟଦ୍ରଥ, ଭୂରିଶ୍ରବା, ଜୟ, ଜଳସନ୍ଧ, ସୁଦକ୍ଷିଣ, ରଥିପ୍ରବର ଶଳ୍ୟ ଓ ବୀର୍ଯ୍ୟବାନ୍ ଭଗଦତ୍ତ ଏମାନେ ଓ ଅପରାପର ଅମରଗଣଅଜେୟ ମହାବଳଶାଳୀ ବହୁସଂଖ୍ୟକ ଶୂର ନରପତିମାନେ ଯେତେବେଳେ ପାଣ୍ଡବ-ଗଣ କର୍ତ୍ତୃକ ନିହତ ହୋଇଛନ୍ତି, ତେତେବେଳେ ଦୈବର ପ୍ରତିକୂଳତା ଭିନ୍ନ ଆଉ କଅଣ ମନେ କରୁଅଛ ? ୬୭ । ଆହେ ଦ୍ୱିଜ ! ତୁମ୍ଭେ ଦୁର୍ଯ୍ୟୋଧନଙ୍କର ଯେଉଁ ଶତ୍ରୁମାନଙ୍କୁ ନିୟତ ସ୍ତବ କର ଏହି ସଂଗ୍ରାମରେ ସେମାନଙ୍କର ଶତଶତ ସହସ୍ର ସହସ୍ର ଶୂରମାନେ ନିହତ ହୋଇ ଅଛନ୍ତି । ୬୮ । ଅତଏବ ପାଣ୍ଡବଗଣଙ୍କ କର୍ତ୍ତୃକ ଯେଉଁ ଅସଂଖ୍ୟ ସୈନ୍ୟମାନେ କ୍ଷୟପ୍ରାପ୍ତ ହେଉଅଛନ୍ତି ତହିଁରେ ପାଣ୍ଡୁପୁତ୍ରମାନଙ୍କର କୌଣସି ପ୍ରଭାବ ଦୃଷ୍ଟ ହେଉନାହିଁ । ୬୯ । ଆହେ ବ୍ରାହ୍ମଣାଧମ ! ତୁମ୍ଭେ ଯେଉଁମାନଙ୍କୁ ବଳବାନ୍ ବୋଲି ବିବେଚନା କର ଆମ୍ଭେ ଦୁର୍ଯ୍ୟୋଧନଙ୍କର ହିତ-କାମନାରେ ରଣସ୍ଥଳରେ ସେହି ପାଣ୍ଡବମାନଙ୍କ ସହିତ ଯୁଦ୍ଧାର୍ଥ ଯଥାଶକ୍ତି ଯତ୍ନ କରିବୁଁ । କିନ୍ତୁ ଜୟଲାଭ କରିବା ଦୈବାଧୀନ ଅଟେ । ୭୦ ।

---

# ୧୫୯ ଅଧ୍ୟାୟ

ସଞ୍ଜୟ କହିଲେ—ହେ ମହାରାଜ ! ଦ୍ରୋଣନନ୍ଦନ ଅଶ୍ୱତ୍ଥାମା ସ୍ୱୀୟ ମାତୁଳ କୃପାଚାର୍ଯ୍ୟଙ୍କୁ ସୂତପୁତ୍ରଙ୍କ କର୍ତ୍ତୃକ ସେହି ପ୍ରକାରେ ଭର୍ତ୍ସିତ ହେବାର ଦେଖି କ୍ରୁଦ୍ଧ ସିଂହ ମତ୍ତମାତଙ୍ଗ ପ୍ରତି ଧାବିତ ହେଲାପ୍ରାୟ କୁରୁରାଜନ ସମକ୍ଷରେ ଖଡ୍ଗୋଦ୍ୟତ କରି ଅତିଶୟ ବେଗରେ କର୍ଣ୍ଣଙ୍କ ପ୍ରତି ଅଭିଦ୍ରୁତ ହେଲେ ଓ ରାଜାଙ୍କ ସାକ୍ଷାତରେ ଏହିପରି କହିଲେ । ୨ । ଆରେ ଦୁର୍ବୁଦ୍ଧି ନରାଧମ ! ମାତୁଳ କୃପାଚାର୍ଯ୍ୟ ଅର୍ଜ୍ଜୁନଙ୍କର ପ୍ରକୃତ ଗୁଣମାନ କୀର୍ତ୍ତନ କଲେ ହେଁ ତୁମ୍ଭେ ଶୂର-ବିଦ୍ୱେଷ-ବୁଦ୍ଧି ପ୍ରଭାବରୁ ତାହାଙ୍କୁ ଭର୍ତ୍ସନା କରୁଅଛ । ୩ । ତୁମ୍ଭେ ବର୍ତ୍ତମାନ ଶୌର୍ଯ୍ୟ ଓ ଦର୍ପଭରରେ ଉଦ୍ରିକ୍ତ ହୋଇ କାହାକୁମାତ୍ର ଗଣନା ନ କରି ଏହି ସମସ୍ତ ଧନୁର୍ଦ୍ଧରମାନଙ୍କ ସମକ୍ଷରେ ଆତ୍ମଶ୍ଳାଘା କରୁଅଛ । ୪ । କିନ୍ତୁ ଗାଣ୍ଡୀବଧନ୍ୱା ଧନଞ୍ଜୟ ଯେତେବେଳେ ତୁମ୍ଭଙ୍କୁ ପରାଜିତ କରି ରଣସ୍ଥଳରେ ତୁମ୍ଭ ସମକ୍ଷରେ ଜୟଦ୍ରଥକୁ ବିନାଶ କଲେ, ସେତେବେଳେ ତୁମ୍ଭର ବୀର୍ଯ୍ୟ ଓ ଅସ୍ତ୍ର ସମୂହ କେଉଁଠାରେ ଥିଲା ? ୫ । ଆରେ ସୂତ କୁଳାଙ୍ଗାର ! ପୂର୍ବେ ରଣସ୍ଥଳରେ ଯେ ସାକ୍ଷାତ୍ ମହାଦେବଙ୍କ ସହିତ ଯୁଦ୍ଧ କରିଅଛନ୍ତି ତୁମ୍ଭେ ଯେ ତାହାଙ୍କୁ ଜୟ କରିବାକୁ ଅଭିଳାଷ କରୁଅଛ ଏହା ତୁମ୍ଭର ବୃଥା କଳ୍ପନା ଅଟେ । ହେ ଦୁର୍ବୁଦ୍ଧି ସୂତ ! ଯେତେବେଳେ ସମସ୍ତ ଅସୁର ଓ ଇନ୍ଦ୍ରାଦି ଦେବଗଣ ମିଳିତ ହୋଇ ଯେଉଁ ସର୍ବଶସ୍ତ୍ରଧାରିପ୍ରବର କୃଷ୍ଣସହାୟ ଧନଞ୍ଜୟଙ୍କୁ ପରାଜୟ କରିପାରି ନାହାନ୍ତି, ସେତେବେଳେ ଏହି ସମସ୍ତ ପାଣ୍ଡବଗଣଙ୍କ ସହିତ ମିଳିତ ହୋଇ ତୁମ୍ଭେ କ'ଣ ସଂସାରରେ ଅଜେୟ ଅଦ୍ୱିତୀୟ ସେହି ବୀର ଧନଞ୍ଜୟଙ୍କୁ ପରାଜୟ କରିପାରିବ ? ଆହେ କର୍ଣ୍ଣ ! ହେ ଦୁର୍ବୁଦ୍ଧେ ! ବର୍ତ୍ତମାନ ଅବସ୍ଥାନ କର । ଦେଖ, ଆମ୍ଭେ ତୁମ୍ଭର ମସ୍ତକ ଏହିକ୍ଷଣି ଶରୀରରୁ ପୃଥକ୍ କରୁଅଛୁଁ । ୯ ।

ସଞ୍ଜୟ କହିଲେ—ହେ ମହାରାଜ ! ଅଶ୍ୱତ୍ଥାମା ଏହି କଥା କହି ବେଗରେ ଉପସ୍ଥିତ ହେଉଥିବାର ଅବଲୋକନ କରି ବାଗ୍ମିପ୍ରବର କୃପାଚାର୍ଯ୍ୟ ଓ ସ୍ୱୟଂ ରାଜା ଦୁର୍ଯ୍ୟୋଧନ ତାହାଙ୍କୁ ନିବାରଣ କଲେ ।୧୦। ତାହା ଦେଖି କର୍ଣ୍ଣ କୁରୁପତିଙ୍କୁ କହିଲେ, ହେ କୁରୁସତ୍ତମ ! ଏହି ମୂଢ଼ ସମରଶ୍ଳାଘୀ ଦୁର୍ମ୍ମତି ବ୍ରାହ୍ମଣାଧମ ଆମ୍ଭର ବୀର୍ଯ୍ୟ ଅନୁଭବ କରୁ । ଆପଣ

ତାହାଙ୍କୁ ପରିତ୍ୟାଗ କରନ୍ତୁ । ୧୧ । ସେତେବେଳେ ଅଶ୍ୱତ୍ଥାମା କହିଲେ, ରେ ଦୁର୍ବୁଦ୍ଧି ସୂତପୁତ୍ର, ଆମ୍ଭେ ତୁମ୍ଭର ଏହି ଅପରାଧ କ୍ଷମା କଲୁଁ । କିନ୍ତୁ ମହାବୀର ଅର୍ଜ୍ଜୁନ ତୁମ୍ଭର ଏହି ଉଦ୍ରିକ୍ତ ଦର୍ପକୁ ଚୂର୍ଣ୍ଣ କରିବେ । ୧୨ ।

ସେତେବେଳେ ରାଜା ଦୁର୍ଯ୍ୟୋଧନ କହିଲେ--ହେ ମାନଦ ଅଶ୍ୱତ୍ଥାମନ୍ ! ଆପଣ କ୍ଷାନ୍ତ ହୁଅନ୍ତୁ । ସୂତ ପୁତ୍ରଙ୍କ ପ୍ରତି କୋପ କରିବା କର୍ତ୍ତବ୍ୟ ନୁହେଁ, ଅତଏବ ପ୍ରସନ୍ନ ହୁଅନ୍ତୁ । ଦେଖନ୍ତୁ, ଆପଣ, କର୍ଣ୍ଣ, କୃପ, ଦ୍ରୋଣ, ମଦ୍ରରାଜ ଶଲ୍ୟ ଓ ସୁବଳନନ୍ଦନ ଶକୁନି ଏହିମାନଙ୍କ ପ୍ରତି ଆମ୍ଭର ସୁମହତ୍ କାର୍ଯ୍ୟ ଅର୍ପିତ ହୋଇଅଛି । ଅତଏବ ହେ ଦ୍ୱିଜସତ୍ତମ ! ପ୍ରସନ୍ନ ହୁଅନ୍ତୁ । ୧୪ । ହେ ବ୍ରହ୍ମନ୍ ! ଦେଖନ୍ତୁ, ପାଣ୍ଡବମାନେ ଚତୁର୍ଦ୍ଦିଗରୁ କର୍ଣ୍ଣଙ୍କୁ ଆହ୍ୱାନପୂର୍ବକ ଯୁଦ୍ଧାଭିଳାଷରେ ତାହାଙ୍କ ଅଭିମୁଖକୁ ଆଗମନ କରୁଅଛନ୍ତି । ୧୫ ।

ସଞ୍ଜୟ କହିଲେ -- ହେ ମହାରାଜ ! କ୍ରୋଧବେଗସମନ୍ୱିତ ମହାମନା ଦ୍ରୋଣ-ନନ୍ଦନ ରାଜା ଦୁର୍ଯ୍ୟୋଧନଙ୍କ କର୍ତ୍ତୃକ ଏହିପରି ପ୍ରସାଦିତ ହୋଇ କର୍ଣ୍ଣଙ୍କ ପ୍ରତି ପ୍ରସନ୍ନ ହେଲେ । ୧୬ । ତଦନନ୍ତର ମହାତ୍ମା କୃପାଚାର୍ଯ୍ୟ ସୌମ୍ୟପ୍ରଭାବପ୍ରଯୁକ୍ତ ଅବିଳମ୍ବେ ମୃଦୁଭାବ ଅବଲମ୍ବନ କରି କର୍ଣ୍ଣଙ୍କୁ କହିଲେ, ହେ ଦୁର୍ବୁଦ୍ଧି ସୂତପୁତ୍ର ! ଆମ୍ଭେମାନେ ତୁମ୍ଭର ଏହି ଅପରାଧ କ୍ଷମା କଲୁଁ କିନ୍ତୁ ଧନଞ୍ଜୟ ତୁମ୍ଭର ଉଦ୍ରିକ୍ତ ଦର୍ପକୁ ଚୂର୍ଣ୍ଣ କରିବେ । ୧୮ । ସଞ୍ଜୟ କହିଲେ—ହେ ମହାରାଜ ! ଯଶସ୍ୱୀ ପାଞ୍ଚାଳ ଓ ପାଣ୍ଡବମାନେ ଏକତ୍ରିତ ହୋଇ ଚତୁର୍ଦ୍ଦିଗରୁ ଗର୍ଜ୍ଜନ କରୁକରୁ କର୍ଣ୍ଣଙ୍କ ଅଭିମୁଖକୁ ଆଗମନ କଲେ । ୧୯ । ସେତେବେଳେ ବୀର୍ଯ୍ୟଶାଳୀ ତେଜସ୍ୱୀ ରଥିପ୍ରବର କର୍ଣ୍ଣ ସ୍ୱୀୟ ବାହୁବଳ ଅବଲମ୍ବନ ପୂର୍ବକ ସୁରଗଣପରିବେଷ୍ଟିତ ସୁରରାଜ ସଦୃଶ ପ୍ରଧାନ-ପ୍ରଧାନ କୌରବଙ୍କ ଦ୍ୱାରା ପରିବୃତ ହୋଇ ଶରାସନ ଉଦ୍ୟତ କରି ଅବସ୍ଥାନ କଲେ ।

ହେ ମହାରାଜ ! ତତ୍ପରେ ପାଣ୍ଡବମାନଙ୍କ ସହିତ କର୍ଣ୍ଣଙ୍କର ସିଂହନାଦସଙ୍କୁଳ ଭୀଷଣ ସଂଗ୍ରାମ ଆରମ୍ଭ ହେଲା । ପାଣ୍ଡବ ଓ ଯଶସ୍ୱୀ ପାଞ୍ଚାଳଗଣ ସେହି ମହାରଣରେ ମହାବାହୁ କର୍ଣ୍ଣଙ୍କୁ ନିରୀକ୍ଷଣ କରି

ମହାଶବ୍ଦରେ କହିଲେ, 'ଏହି କର୍ଣ୍ଣ', 'କର୍ଣ୍ଣ କେଉଁଠାରେ' । ହେ କର୍ଣ୍ଣ-ପୁରୁଷାଧମ ! ଆରେ ଦୁରାତ୍ମନ ! ଆମ୍ଭମାନଙ୍କ ସହିତ ଯୁଦ୍ଧ କର । ଅନ୍ୟାନ୍ୟ ଯୋଦ୍ଧାମାନେ ରାଧାନନ୍ଦନ କର୍ଣ୍ଣଙ୍କୁ ଅବଲୋକନ କରି କ୍ରୋଧରେ ଅରୁଣ-ନେତ୍ର ହୋଇ କହିଲେ । ୨୮ । ହେ ରାଜଶାର୍ଦ୍ଦୂଳଗଣ ! ଆପଣମାନେ ସମସ୍ତେ ମିଳିତ ହୋଇ ଏହି ଅଳ୍ପବୁଦ୍ଧି ଗର୍ବିତ କର୍ଣ୍ଣଙ୍କୁ ସଂହାର କରନ୍ତୁ । ଏହାକୁ ଜୀବିତ ରଖିବାକୁ ପ୍ରୟୋଜନ ନାହିଁ । ୨୯ । କାରଣ ଏହି ପାପାତ୍ମା ନିତ୍ୟ ଦୁର୍ଯୋଧନ ମତାବଲମ୍ବୀ ଓ ପାଣ୍ଡବମାନଙ୍କର ଅତ୍ୟନ୍ତ ବିରୋଧୀ ଓ ସମସ୍ତ ଅନର୍ଥର ମୂଳ । ଅତଏବ ଏହାକୁ ଏହିକ୍ଷଣି ବିନାଶ କରନ୍ତୁ । ଏହା କହି ମହାରଥୀ କ୍ଷତ୍ରିୟମାନେ ଯୁଧିଷ୍ଠିରଙ୍କ ଆଦେଶାନୁସାରେ ସୁମହତ୍ ଶରବୃଷ୍ଟି ଦ୍ୱାରା ଦିଗ ସମୂହକୁ ସମାଚ୍ଛାଦିତ କରି ସୂତପୁତ୍ର କର୍ଣ୍ଣଙ୍କର ବିନାଶାର୍ଥ ଧାବିତ ହେଲେ । ହେ ମହାରାଜ ! ସମରବିଜୟୀ, କ୍ଷିପ୍ରକାରୀ, ମହାବଳଶାଳୀ ସୂତପୁତ୍ର ମଧ୍ୟ ସେହି ସମସ୍ତ ମହାରଥୀମାନଙ୍କୁ ଆଗମନ କରିବାର ଦେଖି କିଞ୍ଚିନ୍ମାତ୍ର କାତର ବା ଖିନ୍ନ ହେଲେ ନାହିଁ । ସେ ଆପଣଙ୍କ ପୁତ୍ରମାନଙ୍କର ପ୍ରୀତି କାମନାରେ ଉଦ୍ଧୂତ ସାଗର ସଦୃଶ ଓ ନଗରକଳ୍ପ ସେହି ସୈନ୍ୟମାନଙ୍କୁ ଶତଶତ ସହସ୍ର ସହସ୍ର ଶରଦ୍ୱାରା ନିବାରଣ କରିବାରେ ପ୍ରବୃତ୍ତ ହେଲେ । ତଦ୍ରୂପ ପାଣ୍ଡବ ପକ୍ଷୀୟମାନେ ମଧ୍ୟ ତାହାଙ୍କୁ ଶରବୃଷ୍ଟିଦ୍ୱାରା ନିବାରଣ କଲେ । ୩୧ ।

ହେ ପ୍ରଭୋ ! ସେହି ପାର୍ଥିବମାନେ ଶତଶତ ଶରାସନ କମ୍ପିତ କରି ଯେପରି ଦାନବଗଣ ଦେବରାଜଙ୍କ ସହିତ ଯୁଦ୍ଧ କରିଥିଲେ ସେହିପରି ରାଧାନନ୍ଦନଙ୍କ ସହିତ ସଂଗ୍ରାମ କଲେ । ୩୨ । ଚତୁର୍ଦ୍ଦିଗରୁ ରାଜାମାନଙ୍କ କର୍ତ୍ତୃକ ଶରବୃଷ୍ଟି ହୁଅନ୍ତେ କର୍ଣ୍ଣ ସୁମହତ୍ ଶରବର୍ଷଣଦ୍ୱାରା ତାହା ନିରାକୃତ କଲେ । ଯେପରି ସୁରାସୁର ସମର ସମୟରେ ଅସୁରମାନଙ୍କ ସହିତ ସୁରରାଜ ଇନ୍ଦ୍ରଙ୍କର ସଂଗ୍ରାମ ହୋଇଥିଲା ସେହିପରି ପରସ୍ପର ପ୍ରତିକାରେଚ୍ଛୁ ସେହି ବୀରମାନଙ୍କ ମଧ୍ୟରେ ଘୋରତର ଯୁଦ୍ଧ ଉପସ୍ଥିତ ହେଲା । ୩୪ ।

ହେ ମହାରାଜ ! ସେ ସ୍ଥାନରେ ଆମ୍ଭେମାନେ ସୂତପୁତ୍ରଙ୍କର ଅତି ଆଶ୍ଚର୍ଯ୍ୟ ହସ୍ତଲାଘବ ଦର୍ଶନ କଲୁଁ । ଯେହେତୁ ସେହି ସମବେତ ଶତ୍ରୁମାନେ ରଣସ୍ଥଳରେ ଯତ୍ନପର ହେଲେହେଁ ତାହାଙ୍କୁ ଆୟତ୍ତ କରିପାରିଲେ ନାହିଁ ।

ମହାରଥୀ ରାଧାନନ୍ଦନ କ୍ଷଣକ ମଧ୍ୟରେ ପାର୍ଥିବଗଣଙ୍କ କର୍ତ୍ତୃକ ବିସ୍ତୀର୍ଣ୍ଣ ଶରଜାଳକୁ ନିରାକୃତ କରି ସ୍ୱନାମାଙ୍କିତ ଶାଣିତ ଶରସମୂହକୁ କାହାର ଈଷାଦଣ୍ଡ ଉପରକୁ, କାହାର ବା ଅଶ୍ୱମାନଙ୍କ ଉପରକୁ ନିକ୍ଷେପ କଲେ । ସେହି ସମୟରେ ଏହିରୂପେ କର୍ଣ୍ଣଶରନିପୀଡ଼ିତ ରାଜଗଣ ବ୍ୟାକୁଳିତ ହୋଇ ସିଂହାର୍ଦ୍ଦିତ ଗୋସମୂହ ସଦୃଶ ଇତସ୍ତତଃ ଭ୍ରମଣ କଲେ । ସେହିକାଳରେ ଆମ୍ଭେମାନେ ତୁରଙ୍ଗ, ମାତଙ୍ଗ ଓ ରଥୀ ସମସ୍ତଙ୍କୁ କର୍ଣ୍ଣ ଶରରେ ବଦ୍ଧ ଓ ପୀଡ଼ିତ ହେବାର ଦେଖିଲୁଁ ।

ହେ ମହାରାଜ ! ସମରରେ ଅପରାଙ୍ମୁଖ ସେହି ଶୂରମାନଙ୍କର ଅସଂଖ୍ୟ ଛିନ୍ନ ମସ୍ତକ ଓ ଛିନ୍ନ ବାହୁଦ୍ୱାରା ସମରଭୂମି ସମାଚ୍ଛନ୍ନ ହେଲା । କୌଣସି ସ୍ଥାନରେ ବହୁସଂଖ୍ୟକ ହସ୍ତୀ ଓ ଅଶ୍ୱାଦି ନିହତ ହୋଇ ପତିତ ହେବାରୁ ଓ କେଉଁ କେଉଁଠାରେ ନିହନ୍ୟମାଣ ଯୋଦ୍ଧୃଗଣ ଚତୁର୍ଦ୍ଦିଗରେ ବିକୃତ ସ୍ୱରରେ ଚିତ୍କାର କରୁଥିବାରୁ ସେହି ସମରଭୂମି ଏପରି ଭୟାବହ ହେଲା ଯେ ତାହା ସାକ୍ଷାତ୍ ଯମାଳୟ ସଦୃଶ ବୋଧହେଲା । ହେ ମହାରାଜ ! ତଦନନ୍ତର ରାଜା ଦୁର୍ଯ୍ୟୋଧନ କର୍ଣ୍ଣଙ୍କର ତାଦୃଶ ପରାକ୍ରମ ଅବଲୋକନ କରି ଅଶ୍ୱତ୍ଥାମାଙ୍କୁ କହିଲେ, ହେ ଆଚାର୍ଯ୍ୟନନ୍ଦନ ! କର୍ଣ୍ଣ ବର୍ମ୍ମଧାରଣ-ପୂର୍ବକ ସମସ୍ତ ପାର୍ଥିବଗଣଙ୍କ ସହିତ ଯୁଦ୍ଧ କରୁଅଛନ୍ତି । ୪୨ । ଦେଖନ୍ତୁ, ଯେପରି ଆସୁରୀସେନା କାର୍ତ୍ତିକେୟଙ୍କ କର୍ତ୍ତୃକ ବିଧ୍ୱସ୍ତ ହୋଇ ଇତସ୍ତତଃ ପଳାୟନ କରିଥିଲେ ତଦ୍ରୂପ କର୍ଣ୍ଣଙ୍କ ଶରନିକରରେ ପୀଡ଼ିତ ହୋଇ ପାଞ୍ଚାଳମାନେ ଚତୁର୍ଦ୍ଦିଗକୁ ପଳାୟନ କରୁଅଛନ୍ତି । ୪୩ । ପରନ୍ତୁ ବୀଭତ୍ସୁ ଧୀମାନ୍ କର୍ଣ୍ଣଙ୍କ କର୍ତ୍ତୃକ ସ୍ୱପକ୍ଷୀୟ ସୈନ୍ୟମାନଙ୍କୁ ନିର୍ଜିତ ହେବାର ଦେଖି ଜିଘାଂସାପରବଶ ହୋଇ ତାହାଙ୍କ ଅଭିମୁଖକୁ ଆଗମନ କରୁଅଛନ୍ତି ।

ଅତଏବ ପାଣ୍ଡୁନନ୍ଦନ ଆପଣମାନଙ୍କ ସମକ୍ଷରେ ଯଦ୍ଦ୍ୱାରା ମହାରଥୀ ସୂତ-ପୁତ୍ରଙ୍କୁ ସଂହାର କରି ନ ପାରେ ତଦ୍ରୂପ ମନ୍ତ୍ର ବିଧାନ କରନ୍ତୁ । ୪୪ । ତଦନନ୍ତର ଦ୍ରୋଣ-ପୁତ୍ର ଅଶ୍ୱତ୍ଥାମା, କୃପାଚାର୍ଯ୍ୟ, ଶଲ୍ୟ, ହୃଦିକନନ୍ଦନ ମହାରଥୀ କୃତବର୍ମ୍ମ ପ୍ରଭୃତି ସୂତ-ପୁତ୍ରଙ୍କ ରକ୍ଷାର୍ଥେ ଅର୍ଜ୍ଜୁନଙ୍କ ପ୍ରତି ଉଦ୍‌ଗମନ କଲେ । ୪୬ । ସୁରରାଜ ଇନ୍ଦ୍ରଙ୍କୁ ଅସୁରସୈନ୍ୟ ପ୍ରତି ଆପତିତ ହେବାର ଦେଖି ବୃତ୍ରାସୁର ଯେପରି ତାହାଙ୍କ ପ୍ରତି ଧାବିତ ହୋଇଥିଲା ସେହିପରି

କର୍ଣ୍ଣ ମଧ୍ୟ ପାଞ୍ଚାଳମାନଙ୍କ ଦ୍ୱାରା ପରିବୃତ ଅର୍ଜ୍ଜୁନଙ୍କୁ ଆପତିତ ହେବାର ଦେଖି ତାହାଙ୍କ ପ୍ରତି ଧାବମାନ ହେଲେ ।

ଧୃତରାଷ୍ଟ୍ର କହିଲେ—ହେ ସୂତ ! ସୂର୍ଯ୍ୟନନ୍ଦନ କର୍ଣ୍ଣ କାଳାନ୍ତକ ଯମ ତୁଲ୍ୟ କ୍ରୁଦ୍ଧ ଧନଞ୍ଜୟଙ୍କୁ ଆଗମନ କରିବାର ଦେଖି ତତ୍କାଳୋଚିତ କେଉଁ କାର୍ଯ୍ୟର ଅନୁଷ୍ଠାନ କଲେ ? କାରଣ ସେହି ମହାରଥ ସୂତପୁତ୍ର ନିତ୍ୟ ଅର୍ଜ୍ଜୁନଙ୍କ ସହିତ ସ୍ପର୍ଦ୍ଧା କରନ୍ତି ଓ ସୁଦାରୁଣ ସମରରେ ଧନଞ୍ଜୟଙ୍କୁ ଜୟ କରିବେ ବୋଲି ମଧ୍ୟ ତାଙ୍କର ଆଶା ଥିଲା । ଅତଏବ ସତତ ବୈରି-ଭାବାପନ୍ନ କିରୀଟୀଙ୍କୁ ସହସା ନିକଟସ୍ଥ ହେବାର ଅବଲୋକନ କରି କର୍ତ୍ତବ୍ୟ ବିଷୟରେ କିପରି ବିଚାର କଲେ ?

ସଞ୍ଜୟ କହିଲେ—ହେ ମହାରାଜ ! ହସ୍ତୀକୁ ଅବଲୋକନ କରି ପ୍ରତିଦ୍ୱନ୍ଦୀ ହସ୍ତୀ ଯେପରି ତାହାପ୍ରତି ଧାବିତ ହୁଏ, ସେହିପରି ମହାବୀର କର୍ଣ୍ଣ ପାଣ୍ଡୁନନ୍ଦନ ଧନଞ୍ଜୟଙ୍କୁ ସମାଗତ ହେବାର ଦେଖି ଅସମ୍ଭ୍ରାନ୍ତ ଚିତ୍ତରେ ତାହାଙ୍କ ପ୍ରତି ଧାବିତ ହେଲେ । ମହାତେଜସ୍ୱୀ ଶତ୍ରୁତାପନ ଅର୍ଜ୍ଜୁନ ମଧ୍ୟ ସୂର୍ଯ୍ୟନନ୍ଦନଙ୍କୁ ବେଗରେ ଆଗମନ କରିବାର ଦେଖି ସରଳ ଶରସମୂହ-ଦ୍ୱାରା ତାହାଙ୍କୁ ନିବାରିତ କଲେ । ହେ ଭାରତ ! ସେତେବେଳେ ସୂତପୁତ୍ର ଅତିଶୟ କ୍ରୁଦ୍ଧ ହୋଇ ଶରଜାଲ ବିସ୍ତାରପୂର୍ବକ ଅର୍ଜ୍ଜୁନଙ୍କୁ ସମାଚ୍ଛାଦିତ କରି ଅବନିଗାମୀ ତିନିଗୋଟି ଶରଦ୍ୱାରା ତାହାଙ୍କୁ ବିଦ୍ଧ କଲେ । ପରନ୍ତୁ ମହାବଳଶାଳୀ ଶତ୍ରୁତାପନ ପୃଥାପୁତ୍ର କର୍ଣ୍ଣଙ୍କର ସେହି ହସ୍ତ ଲାଘବ ସହି ପାରିଲେ ନାହିଁ । ସେ ତାହାଙ୍କ ପ୍ରତି ଶିଳାଧୌତ ନିର୍ମ୍ମଳାଗ୍ର ଅବନିଗାମୀ ତ୍ରିଂଶତ ଶର ନିକ୍ଷେପ କଲେ । ୫୫ । ମହାବଳଶାଳୀ ଦୃଢ଼ଚାପବାନ୍ ଅର୍ଜ୍ଜୁନ ସତ୍ୱର ହୋଇ ଅବଲୀଳା କ୍ରମେ ଗୋଟିଏ ନାରାଚଦ୍ୱାରା କର୍ଣ୍ଣଙ୍କର ବାମ ହସ୍ତର ଅଗ୍ରଭାଗକୁ ବିଦ୍ଧ କଲେ । ୫୭ । ହେ ମହାରାଜ ! ଭୁଜାଗ୍ରରେ ବିଦ୍ଧ ହେବାରୁ କର୍ଣ୍ଣଙ୍କର ହସ୍ତସ୍ଥିତ କାର୍ମ୍ମୁକ ପତିତ ହେଲା । କିନ୍ତୁ ସେହି ମହାବଳ ପରାକ୍ରାନ୍ତ ସୂତପୁତ୍ର ନିମେଷାର୍ଦ୍ଧ ମଧ୍ୟରେ ଶରାସନ ଗ୍ରହଣପୂର୍ବକ ପୁନର୍ବାର ଲଘୁହସ୍ତତା ପ୍ରଯୁକ୍ତ ଶରଜାଲ ଦ୍ୱାରା ଫାଲ୍‌ଗୁନଙ୍କୁ ସମାଚ୍ଛନ୍ନ କଲେ । ପରନ୍ତୁ ଧନଞ୍ଜୟ ଅମ୍ଲାନ ବଦନରେ କର୍ଣ୍ଣପ୍ରଯୁକ୍ତ ସେହି ଶର-ବୃଷ୍ଟିକୁ ନିରାକୃତ କଲେ ।

ହେ ମହାରାଜ ! ଏହିପରି ଧନୁର୍ଦ୍ଧରାଗ୍ରଗଣ୍ୟ ପୃଥାପୁତ୍ର କିରୀଟୀ ଓ କର୍ଣ୍ଣ ପରସ୍ପର ପ୍ରତିକାରଭିଳାଷୀ ହୋଇ ଶରବୃଷ୍ଟିଦ୍ୱାରା ପରସ୍ପରକୁ ସମାଚ୍ଛାଦିତ କଲେ । ଋତୁମତୀ ହସ୍ତିନୀ ନିମିତ୍ତ ଯେପରି ଦୁଇଗୋଟି ଆରଣ୍ୟ କ୍ରୁଦ୍ଧ ଗଜ ମଧ୍ୟରେ ସଂଗ୍ରାମ ହୁଏ ସେହିପରି ସେହି ବୀରଦ୍ୱୟଙ୍କ ମଧ୍ୟରେ ଘୋରତର ସଂଗ୍ରାମ ଆରମ୍ଭ ହେଲା । ଅନନ୍ତର ମହାଧନୁର୍ଦ୍ଧର ଶତ୍ରୁତାପନ ଧନଞ୍ଜୟ କର୍ଣ୍ଣଙ୍କର ପରାକ୍ରମ ଅବଲୋକନ କରି ସତ୍ୱର ହୋଇ ତାହାଙ୍କର କାର୍ମ୍ମୁକର ମୁଷ୍ଟିଦେଶକୁ ଛେଦନ କଲେ ଓ ଭଲ୍ଲାସ୍ତ୍ରଦ୍ୱାରା ତାହାଙ୍କର ଅଶ୍ୱ-ଚତୁଷ୍ଟୟକୁ ନିହତ କରି ସାରଥିର ମସ୍ତକକୁ ଶରୀରରୁ ପୃଥକ୍ କଲେ । ତତ୍ପରେ ସେ ସେହି ଛିନ୍ନଶରାସନ ଓ ଅଶ୍ୱସାରଥିବିହୀନ କର୍ଣ୍ଣଙ୍କୁ ଚାରିଗୋଟି ବାଣରେ ବିଦ୍ଧ କଲେ । ନରଶ୍ରେଷ୍ଠ କର୍ଣ୍ଣ ଅର୍ଜ୍ଜୁନଙ୍କ ଶରରେ ଅତିଶୟ ବିଦ୍ଧ ହୋଇ ଶଲ୍ଲକୀସଦୃଶ ପ୍ରତୀୟମାନ ହେଲେ ଓ ଜୀବନରକ୍ଷା ନିମିତ୍ତ ସେହି ହତାଶ୍ୱରଥରୁ ଲମ୍ଫପ୍ରଦାନ ପୂର୍ବକ କୃପାଚାର୍ଯ୍ୟଙ୍କ ରଥରେ ଆରୋହଣ କଲେ ।

ହେ ଭରତକୁଳପ୍ରବର ମହାରାଜ ! ଆପଣଙ୍କପକ୍ଷୀୟ ସୈନ୍ୟମାନେ ଧନଞ୍ଜୟଙ୍କ ଶରରେ କ୍ଷତବିକ୍ଷତ ହୋଇଥିଲେ । ପୁଣି ସେମାନେ ରାଧା-ନନ୍ଦନଙ୍କୁ ପରାଜିତ ହେବାର ଦେଖି ଚତୁର୍ଦ୍ଦିଗକୁ ପଳାୟନ କଲେ । କୁରୁରାଜ ଦୁର୍ଯ୍ୟୋଧନ ସୈନ୍ୟମାନଙ୍କୁ ପଳାୟନୋଦ୍ୟତ ଦେଖି ସେମାନଙ୍କୁ ନିବାରଣ-ପୂର୍ବକ ଏହିପରି କହିଲେ, ହେ କ୍ଷତ୍ରିୟଶ୍ରେଷ୍ଠ ଶୂରଗଣ ! ତୁମ୍ଭେମାନେ ପଳାୟନ କର ନାହିଁ । ଆମ୍ଭେ ଅର୍ଜ୍ଜୁନଙ୍କ ବଧ ନିମିତ୍ତ ସ୍ୱୟଂ ରଣସ୍ଥଳକୁ ଗମନ କରୁଅଛୁଁ । ଆମ୍ଭେ ପାଞ୍ଚାଳ ଓ ସୋମକଗଣଙ୍କ ସହିତ ପାଣ୍ଡବମାନଙ୍କୁ ସଂହାର କରିବୁଁ । ୬୯ । ଅଦ୍ୟ ଗାଣ୍ଡୀବଧନ୍ୱା ଧନଞ୍ଜୟଙ୍କ ସହିତ ସମରରେ ପ୍ରବୃତ୍ତ ହେଲେ ପୃଥାଙ୍କର ଅପର ପୁତ୍ରମାନେ ଆମ୍ଭଙ୍କୁ ଯୁଗାନ୍ତକାଳୀନ କାଳପୁରୁଷ ସଦୃଶ ସନ୍ଦର୍ଶନ କରିବେ । ୭୦ । ଅଦ୍ୟ ଯୋଦ୍ଧାମାନେ ରଣ-ସ୍ଥଳରେ ମଦୀୟ ଶରାସନରୁ ଶଲଭଶ୍ରେଣୀତୁଲ୍ୟ ଅସଂଖ୍ୟ ଶରଜାଲ ନିଃସୃତ ହେବାର ଦେଖିବେ । ୭୧ । ଆମ୍ଭେ ଅଦ୍ୟ ସମର ସ୍ଥଳରେ ଶରାସନ ବିସ୍ତାରଣପୂର୍ବକ ନିରନ୍ତର ଶରବୃଷ୍ଟି କରିବାବେଳେ ସୈନିକମାନେ ଆମ୍ଭଙ୍କୁ ବର୍ଷାକାଳୀନ ଧାରାବର୍ଷୀ ଜଳଧରସଦୃଶ ବୋଧ କରିବେ । ୭୨ । ହେ ବୀରଗଣ ! ଅଦ୍ୟ ଆମ୍ଭେ ସନ୍ନତପର୍ବ ଶାୟକସମୂହଦ୍ୱାରା ନିଶ୍ଚୟ ଧନଞ୍ଜୟଙ୍କୁ

ପରାଜୟ କରିବୁଁ । ଅତଏବ ତୁମ୍ଭେମାନେ ତାହାର ଭୟ ପରିତ୍ୟାଗ କରି ନିର୍ଭୟରେ ସମର ସ୍ଥଳରେ ଅବସ୍ଥାନ କର । ୭୩ । ମକରାଳୟ ସାଗର ତୀରଭୂମି ପ୍ରାପ୍ତ ହେଲେ ଯେପରି ତାହାର ବେଗ ପ୍ରତିହତ ହୁଏ ସେହିପରି ଅର୍ଜ୍ଜୁନ ମଧ୍ୟ ଆମ୍ଭ ନିକଟ ପ୍ରାପ୍ତ ହୋଇ ହତବେଗ ହେବ । ୭୪ ।

ହେ ମହାରାଜ ! ଦୁର୍ଦ୍ଧର୍ଷ ରାଜା ଦୁର୍ଯ୍ୟୋଧନ ଏହି କଥା କହି ରୋଷ-କଷାୟିତଲୋଚନରେ ମହତୀସେନାପରିବୃତ ହୋଇ ଧନଞ୍ଜୟଙ୍କ ପ୍ରତି ଧାବିତ ହେଲେ । ୭୫ । ସେହି ସମୟରେ ଶରଦ୍ୱାନର୍ଷିତନୟ କୃପ ସେହି ମହାବାହୁ କୁରୁପତିଙ୍କୁ ଅର୍ଜ୍ଜୁନାଭିମୁଖକୁ ଗମନ କରିବାର ଦେଖି ସ୍ୱୀୟ-ଭାଗିନେୟ ଅଶ୍ୱତ୍ଥାମାଙ୍କୁ କହିଲେ । ୭୬ । ଏହି ଅମର୍ଷବଶବର୍ତ୍ତୀ ମହାବାହୁ କୁରୁରାଜ କ୍ରୋଧମୂର୍ଚ୍ଛିତ ହୋଇ ପତଙ୍ଗବୃତ୍ତି ଅବଲମ୍ବନପୂର୍ବକ ଧନଞ୍ଜୟଙ୍କ ସହିତ ଯୁଦ୍ଧାଭିଳାଷ କରୁଅଛନ୍ତି । ୭୭ । ପୁରୁଷଶାର୍ଦ୍ଦୂଳ କୌରବପତି ସଂଗ୍ରାମରେ ଅର୍ଜ୍ଜୁନଙ୍କ ସହିତ ସଙ୍ଗତ ହୋଇ ଆମ୍ଭମାନଙ୍କ ସମକ୍ଷରେ ଜୀବନ ବିସର୍ଜନ କରିବାପୂର୍ବରୁ ତାହାଙ୍କୁ ତୁମ୍ଭେ ପ୍ରତିନିବୃତ୍ତ କର । ୭୮ । ସେହି ବୀର ଦୁର୍ଯ୍ୟୋଧନ ଧନଞ୍ଜୟଙ୍କ ବାଣଗୋଚରରେ ଉପସ୍ଥିତ ନ ହୋଇଣୁ ତାହାଙ୍କୁ ଯୁଦ୍ଧରୁ ପ୍ରତିନିବୃତ୍ତ କର । ୭୯ । ଅର୍ଜ୍ଜୁନଶରାସନପ୍ରମୁକ୍ତ ନିର୍ମୋକ-ନିର୍ମୁକ୍ତ ଭୁଜଙ୍ଗସନ୍ନିଭ ଶରସମୂହ କୁରୁପତିଙ୍କୁ ଭସ୍ମୀଭୂତ କରିବା ପୂର୍ବରୁ ତାହାଙ୍କୁ ଯୁଦ୍ଧରୁ ପ୍ରତିନିବୃତ୍ତ କର । ୮୦ ।

ହେ ମାନଦ ଅଶ୍ୱତ୍ଥାମନ୍ ! ଆମ୍ଭେ ଏହା ଅତିଶୟ ଅନୁଚିତ ବୋଲି ମନେ କରୁଅଛୁଁ ଯେ ଆମ୍ଭେମାନେ ସମସ୍ତେ ବିଦ୍ୟମାନ ଥାଉଁ ଥାଉଁ ରାଜା ସ୍ୱୟଂ ସହାୟହୀନ ବ୍ୟକ୍ତି ସଦୃଶ ଯୁଦ୍ଧାର୍ଥ ଧନଞ୍ଜୟଙ୍କ ନିକଟକୁ ଗମନ କରିବେ । ୮୧ । କୁରୁରାଜ କିରୀଟୀଙ୍କ ସହିତ ସଂଗ୍ରାମରେ ପ୍ରବୃତ୍ତ ହେଲେ ଆମ୍ଭେ ବିବେଚନା କରୁଁ ଶାର୍ଦ୍ଦୂଳ ସହିତ ସମରପ୍ରବୃତ୍ତ ହସ୍ତୀ-ସଦୃଶ ତାହାଙ୍କର ଜୀବନ ଆଜି ଦୁର୍ଲ୍ଲଭ ହେବ । ୮୨ । ହେ ମହାରାଜ ! ଶସ୍ତ୍ରଧାରିପ୍ରବର ଦ୍ରୋଣ-ନନ୍ଦନ ମାତୁଳ କୃପାଚାର୍ଯ୍ୟଙ୍କର ଆଦେଶ କ୍ରମେ ସତ୍ୱର ଦୁର୍ଯ୍ୟୋଧନଙ୍କ ନିକଟକୁ ଯାଇ ତାହାଙ୍କୁ ଏହିପରି କହିଲେ । ୮୩ । ହେ ଗାନ୍ଧାରୀ-ନନ୍ଦନ ! ଦେଖନ୍ତୁ, ଆପଣଙ୍କ ନିୟତ ହିତାଭିଳାଷୀ ଆମ୍ଭେ ଜୀବିତ ଥାଉଁ ଥାଉଁ ଆମ୍ଭଙ୍କୁ ଅନାଦର ପୂର୍ବକ ଆପଣଙ୍କର ସ୍ୱୟଂ ସଂଗ୍ରାମକୁ

ଗମନ କରିବା ଉଚିତ ନୁହେ । ହେ ସୁଯୋଧନ ! ଧନଞ୍ଜୟଙ୍କୁ ପରାଜୟ କରିବା ନିମିତ୍ତ ଆପଣଙ୍କର ଚିନ୍ତିତ ହେବା ଉଚିତ ନୁହେ । ଆପଣ ଅବସ୍ଥାନ କରନ୍ତୁ । ଆମ୍ଭେ ତାହାଙ୍କୁ ନିବାରଣ କରିବୁଁ । ୮୫ ।

ହେ ମହାରାଜ ! ଆପଣଙ୍କ ପୁତ୍ର ରାଜା ଦୁର୍ଯ୍ୟୋଧନ ଗୁରୁପୁତ୍ର ଅଶ୍ୱତ୍ଥାମାଙ୍କର ଏହିପରି ବାକ୍ୟ ଶ୍ରବଣ କରି ଉତ୍ତର କଲେ । ହେ ଦ୍ୱିଜସତ୍ତମ ! ଆଚାର୍ଯ୍ୟ ଦ୍ରୋଣ ପାଣ୍ଡୁପୁତ୍ରମାନଙ୍କୁ ଆପଣାପୁତ୍ର ସଦୃଶ ରକ୍ଷା କରିଥାଆନ୍ତି ଓ ଆପଣ ମଧ୍ୟ ସେମାନଙ୍କୁ ସର୍ବଦା ଉପେକ୍ଷା କରନ୍ତି । ୮୬ । ଆମ୍ଭର ଦୁର୍ଭାଗ୍ୟପ୍ରଯୁକ୍ତ ହେଉ କିମ୍ବା ଧର୍ମରାଜ ଯୁଧିଷ୍ଠିର ଓ ଦ୍ରୌପଦୀଙ୍କ ପ୍ରିୟ ସାଧନ ନିମିତ୍ତ ହେଉ ରଣସ୍ଥଳରେ କି ନିମିତ୍ତ ଯେ ଆପଣଙ୍କର ପରାକ୍ରମ ମନ୍ଦୀଭୂତ ହୁଏ, ତାହା ଆମ୍ଭେ ଅବଧାରଣ କରିପାରୁ ନାହୁଁ ।୮୭। ଆମ୍ଭଙ୍କୁ ଧିକ୍ । ଆମ୍ଭେ ଅତିଶୟ ଲୁବ୍ଧସ୍ୱଭାବ । ଏହି ଲୁବ୍ଧଜନ ନିମିତ୍ତ ସମରରେ ଅପରାଜିତ ସମସ୍ତ ବନ୍ଧୁମାନେ ନିୟତ ସୁଖ ଭୋଗର ଯୋଗ୍ୟ ହୋଇ ମଧ୍ୟ ଦୁଃଖପ୍ରାପ୍ତ ହେଉଅଛନ୍ତି । ୮୮ ।

ଶସ୍ତ୍ରାଭିଜ୍ଞମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ ଓ ସମରରେ ମହେଶ୍ୱରତୁଲ୍ୟ ସମର୍ଥ ହୋଇ ମଧ୍ୟ ଆପଣଙ୍କ ଭିନ୍ନ ଅନ୍ୟ କେଉଁ ବ୍ୟକ୍ତି ଶତ୍ରୁମାନଙ୍କୁ ଉପେକ୍ଷା କରିପାରେ ? ଅନଘ ! ଅଶ୍ୱତ୍ଥାମନ୍ ! ଆପଣ ଆମ୍ଭପ୍ରତି ପ୍ରସନ୍ନ ହେଉନ୍ତୁ ! ଦେଖନ୍ତୁ, ଆପଣଙ୍କ ଅସ୍ତ୍ର ନିକଟରେ ଅମରଗଣ ମଧ୍ୟ ଅବସ୍ଥାନ କରିବାକୁ ସମର୍ଥ ନୁହନ୍ତି । ଅତଏବ ଆପଣ ଆମ୍ଭର ଶତ୍ରୁମାନଙ୍କୁ ସଂହାର କରନ୍ତୁ । ୯୦ । ହେ ଦ୍ରୋଣନନ୍ଦନ ! ଆପଣ ଅନୁଚର ବର୍ଗଙ୍କ ସହିତ ସୋମକ ଓ ପାଞ୍ଚାଳମାନଙ୍କୁ ବିନାଶ କରନ୍ତୁ ! ତତ୍ପରେ ଆମ୍ଭେମାନେ ଆପଣଙ୍କ କର୍ତ୍ତୃକ ରକ୍ଷିତ ହୋଇ ଅବଶିଷ୍ଟ ସୈନ୍ୟମାନଙ୍କୁ ସଂହାର କରିବୁଁ । ୯୧ । ଦେଖନ୍ତୁ, ଯଶସ୍ୱୀ ପାଞ୍ଚାଳ ଓ ସୋମକମାନେ କ୍ରୋଧାବିଷ୍ଟ ହୋଇ ଦାବାନଳସଦୃଶ ଆମ୍ଭର ସୈନ୍ୟମଧ୍ୟରେ ବିଚରଣ କରୁଅଛନ୍ତି ।୯୨।

ଅତଏବ ହେ ମହାବାହୋ ! ନରୋତ୍ତମ ! ଆଚାର୍ଯ୍ୟପୁତ୍ର ! ସେମାନେ ଧନଞ୍ଜୟଙ୍କ କର୍ତ୍ତୃକ ରକ୍ଷିତ ହୋଇ ଆମ୍ଭର ସୈନ୍ୟମାନଙ୍କୁ ନିଃଶେଷ କରିବା ପୂର୍ବରୁ ଆପଣ ସେମାନଙ୍କୁ ଓ କେକୟମାନଙ୍କୁ ନିହତ

କରନ୍ତୁ ।୯୩। ହେ ଅରିମର୍ଦ୍ଦନ ! ଅଶ୍ୱତ୍ଥାମନ୍ ! ଅଗ୍ରେ ହେଉ ବା ପଶ୍ଚାତ୍ ହେଉ ଆପଣ ଅବଲମ୍ୱେ ଶତ୍ରୁମାନଙ୍କ ପ୍ରତି ଯୁଦ୍ଧଯାତ୍ରା କରନ୍ତୁ । ଏହାହିଁ ଆପଣଙ୍କର କର୍ତ୍ତବ୍ୟ କର୍ମ୍ମ । ୯୪ । ହେ ଅଚ୍ୟୁତ ! ପାଞ୍ଚାଳମାନଙ୍କ ବିନାଶାର୍ଥ ଆପଣ ଜନ୍ମଗ୍ରହଣ କରିଅଛନ୍ତି । ଆପଣ ନିଶ୍ଚୟ ଏହି ସମ୍ପ୍ରଦାୟ ଜଗତ୍‌କୁ ପାଞ୍ଚାଳଶୂନ୍ୟ କରିବେ । ୯୫ । ସିଦ୍ଧମାନେ ଆପଣଙ୍କ ବିଷୟରେ ଯେତେବେଳେ ଏହିପରି ଉକ୍ତି କରିଅଛନ୍ତି, ସେତେବେଳେ ଏହା ନିଶ୍ଚୟ ସିଦ୍ଧ ହେବ ।

ହେ ପୁରୁଷଶାର୍ଦ୍ଦୂଳ ! ଆପଣ ଅନୁଚରଗଣ ସହିତ ପାଞ୍ଚାଳମାନଙ୍କୁ ସଂହାର କରନ୍ତୁ । ୯୬ । ଆମ୍ଭେ ଆପଣଙ୍କୁ ସତ୍ୟ କହୁଅଛୁଁ ଯେ ସୁରରାଜ ସହିତ ଦେବତାମାନେ ମଧ୍ୟ ଆପଣଙ୍କ ଅସ୍ତ୍ର ଗୋଚରରେ ଅବସ୍ଥାନ କରିବାକୁ ସମର୍ଥ ନୁହନ୍ତି । ପାଞ୍ଚାଳ ଓ ପାଣ୍ଡବମାନଙ୍କ କଥା ବା କଅଣ କହିବା । ୯୭ । ହେ ବୀର ! ଆମ୍ଭେ ଏହା ସତ୍ୟ କହୁଅଛୁଁ ଯେ ଯୋମକ ଗଣ ସହିତ ପାଣ୍ଡବମାନେ ରଣସ୍ଥଳରେ ବଳପ୍ରକାଶପୂର୍ବକ ଆପଣଙ୍କ ସହିତ କଦାଚ ଯୁଦ୍ଧ କରିପାରିବେ ନାହିଁ । ୯୮ । ଦେଖନ୍ତୁ, ମଦୀୟ ସୈନ୍ୟଗଣ ଧନଞ୍ଜୟଙ୍କ ଶରରେ ପୀଡ଼ିତ ହୋଇ ଇତସ୍ତତଃ ପଳାୟନ କରୁଅଛନ୍ତି । ଅତଏବ ଆଉ ଆମ୍ଭମାନଙ୍କର ବୃଥା କାଳଅତିବାହିତ କରିବାର ପ୍ରୟୋଜନ ନାହିଁ । ଆପଣ ଶୀଘ୍ର ଯୁଦ୍ଧନିମିତ୍ତ ଗମନ କରନ୍ତୁ । ୯୯ । ହେ ମହାବାହୋ ! ଆପଣ ସ୍ୱକୀୟ ଦିବ୍ୟତେଜ ପ୍ରଭାବରେ ଅବଶ୍ୟ ପାଞ୍ଚାଳ ଓ ପାଣ୍ଡୁପୁତ୍ରମାନଙ୍କୁ ନିଗ୍ରହ କରିପାରିବେ । ୧୦୦ ।

---

## ୧୬୦ ଅଧ୍ୟାୟ

ସଞ୍ଜୟ କହିଲେ—ହେ ମହାରାଜ ! ଆପଣଙ୍କ ପୁତ୍ର ରାଜା ଦୁର୍ଯ୍ୟୋଧନ ଏହିପରି କହନ୍ତେ ସମରଦୁର୍ମ୍ମଦ ମହାବାହୁ ଦ୍ରୋଣନନ୍ଦନ ସୁରରାଜ ଇନ୍ଦ୍ର ଅସୁର ବଧ ନିମିତ୍ତ ଯେପରି ଯତ୍ନ କରିଥିଲେ, ସେହିପରି ଅରାତି ନିପାତନରେ ଯତ୍ନବାନ ହୋଇ ଆପଣଙ୍କ ପୁତ୍ର ଦୁର୍ଯ୍ୟୋଧନଙ୍କୁ କହିଲେ, ହେ ମହାବାହୁ କୁରୁରାଜ ! ଆପଣ ଯାହା କହିଲେ ତାହା ସତ୍ୟ

ଅଟେ । ପାଣ୍ଡବମାନେ ଯେପରି ଆମ୍ଭର ଓ ଆମ୍ଭ ପିତାଙ୍କର ନିୟତ ପ୍ରିୟ ସେହିପରି ଆମ୍ଭେ ଉଭୟେ ସେମାନଙ୍କର ପ୍ରୀତିଭାଜନ, କିନ୍ତୁ ଯୁଦ୍ଧକାଳରେ ସେପରି ନୁହେଁ । ହେ ଭ୍ରାତ ! ସଂଗ୍ରାମ ସମୟରେ ଆମ୍ଭେମାନେ ନିର୍ଭୟାନ୍ତଃକରଣରେ ଜୀବନରେ ନିରପେକ୍ଷ ହୋଇ ଯଥାଶକ୍ତି ଯୁଦ୍ଧ କରୁଁ । ୩ । ହେ ରାଜସତ୍ତମ ! ରଣସ୍ଥଳରେ ଯଦି ପାଣ୍ଡବଗଣ ଉପସ୍ଥିତ ନ ଥାନ୍ତି ତାହାହେଲେ ଆମ୍ଭେ କର୍ଣ୍ଣ, ଶଲ୍ୟ, ମାତୁଳ କୃପାଚାର୍ଯ୍ୟ ଓ ହୃଦିକନନ୍ଦନ କୃତବର୍ମ୍ମା ସମସ୍ତେ ନିମେଷ କାଳମଧ୍ୟରେ ସମସ୍ତ ପାଣ୍ଡବ ସେନାକୁ ସଂହାର କରିପାରୁଁ ଓ ଆମ୍ଭେମାନେ ଯଦି ସଂଗ୍ରାମରେ ଉପସ୍ଥିତ ନଥାଉ ତେବେ ସେମାନେ ମଧ୍ୟ ନିମେଷାର୍ଦ୍ଧ ମଧ୍ୟରେ ଏହି ସମସ୍ତ କୌରବୀ ସେନାମାନଙ୍କୁ ସଂହାର କରି ପାରନ୍ତି । ୫ ।

ହେ ଭାରତ ! ପାଣ୍ଡବମାନେ ଓ ଆମ୍ଭେମାନେ ଏହି ଦୁଇଦଳ ପରସ୍ପର ଯଥାଶକ୍ତି ସମରରେ ପ୍ରବୃତ୍ତ ଅଛୁଁ ବୋଲି ପରସ୍ପରଙ୍କ ତେଜ ପ୍ରଭାବରେ ପରସ୍ପରଙ୍କ ତେଜ ସମତାପ୍ରାପ୍ତ ହେଉଅଛି । ୬ । ଆପଣଙ୍କୁ ନିଶ୍ଚୟ କହୁଅଛୁଁ ଯେ ପାଣ୍ଡୁପୁତ୍ରମାନେ ଜୀବିତ ଥିବା ପର୍ଯ୍ୟନ୍ତ ବଳପୂର୍ବକ ସେମାନଙ୍କର ସୈନ୍ୟମାନଙ୍କୁ ପରାଜୟ କରିବା ଅସାଧ୍ୟ ଅଟେ । ୭ । ହେ ଭାରତ ! ପାଣ୍ଡବମାନେ ସମସ୍ତେ ସାମର୍ଥ୍ୟବାନ୍ । ଅତଏବ ସେମାନେ ଯେତେବେଳେ ନିଜ ପ୍ରୟୋଜନ ସିଦ୍ଧିନିମିତ୍ତ ଯୁଦ୍ଧ କରୁଅଛନ୍ତି, ତେତେବେଳେ ସେମାନେ କି ନିମିତ୍ତ ଆପଣଙ୍କ ସୈନ୍ୟମାନଙ୍କୁ କ୍ଷୟ ନ କରିବେ ? ୮ । ହେ କୌରବ ! ଆପଣ ଅତି ଶୟ ଲୁବ୍ଧସ୍ୱଭାବ, ଅଭିମାନୀ, ନିନ୍ଦନୀୟ, ପାପାତ୍ମା, କପଟବୁଦ୍ଧି ଓ ସମସ୍ତ ବିଷୟରେ ଶଙ୍କିତ । ଏହିପରି ଆପଣ ସତତ ଆମ୍ଭମାନଙ୍କ ପ୍ରତି ଆଶଙ୍କା କରନ୍ତି । ୧୦ ।

ହେ ଅରିନ୍ଦମ କୁରୁସତ୍ତମ ! ଆପଣଙ୍କ ନିମିତ୍ତ ଆମ୍ଭେ ଜୀବିତାଶା ପରିତ୍ୟାଗ ପୂର୍ବକ ଯତ୍ନବାନ୍ ହୋଇ ସଂଗ୍ରାମ ସ୍ଥଳକୁ ଗମନ କରୁଅଛୁଁ । ଅଦ୍ୟ ଆମ୍ଭେ ଆପଣଙ୍କ ପ୍ରିୟ ସାଧନାର୍ଥ ସମରରେ ପାଣ୍ଡବ, ପାଞ୍ଚାଳ କେକେୟ ଓ ସୋମକପ୍ରଭୃତି ଶତ୍ରୁମାନଙ୍କୁ ସଂହାର କରି ପ୍ରଧାନ ପ୍ରଧାନ ବୀରମାନଙ୍କୁ ସଂହାର କରିବୁଁ । ଅଦ୍ୟ ଆମ୍ଭର ଶରସନ୍ତପ୍ତ ପାଞ୍ଚାଳ ଓ ସୋମକମାନେ ସିଂହାର୍ଦ୍ଦିତ ଗୋସମୂହ ସଦୃଶ ଚତୁର୍ଦ୍ଦିଗକୁ ପଳାୟନ

କରିବେ । ଅଦ୍ୟ ସୋମକମାନଙ୍କ ସହିତ ଧର୍ମନନ୍ଦନ ରାଜା ଯୁଧିଷ୍ଠିର ଆମ୍ଭର ପରାକ୍ରମ ସନ୍ଦର୍ଶନ କରି ଏହି ଜଗତକୁ ଦ୍ରୋଣନନ୍ଦନମୟ ଅବଲୋକନ କରିବେ । ଅଦ୍ୟ ସେ ସମରରେ ପାଞ୍ଚାଳ ଓ ସୋମକମାନଙ୍କୁ ନିହତ ହେବାର ନିରୀକ୍ଷଣ କରି ଅତିଶୟ ବିଷାଦପ୍ରାପ୍ତ ହେବେ ।

ହେ ବୀର କୁରୁରାଜ ! ଆମ୍ଭେ ଆପଣଙ୍କୁ ଅଧିକ କି ବୋଲିବୁଁ ? ଅଦ୍ୟ ଯେଉଁମାନେ ଆମ୍ଭ ସହିତ ସମରରେ ପ୍ରବୃତ୍ତ ହେବେ ଆମ୍ଭେ ନିଶ୍ଚୟ ସେମାନଙ୍କୁ ଶମନ ଭବନକୁ ପ୍ରେରଣ କରିବୁଁ । କାରଣ ଆମ୍ଭର ଭୂଜାନ୍ତ-ବର୍ତ୍ତୀ ହୋଇ ସେମାନେ କଦାଚ ପରିତ୍ରାଣ ପାଇ ପାରିବେ ନାହିଁ । ହେ ନରବର ! ମହାବାହୁ ଅଶ୍ୱତ୍ଥାମା ଆପଣଙ୍କ ପୁତ୍ର ଦୁର୍ଯ୍ୟୋଧନଙ୍କୁ ଏହି କଥା କହି କୌରବମାନଙ୍କ ପ୍ରିୟ କାମନାରେ ସମସ୍ତ ଧନୁର୍ଦ୍ଧାରୀମାନଙ୍କୁ ବିଦ୍ରାବିତ କରି ଯୁଦ୍ଧ ନିମିତ୍ତ ରଣସ୍ଥଳକୁ ଆଗମନ କଲେ । ୧୮ ।

ସମ୍ମୁଖସ୍ଥ ପାଞ୍ଚାଳ ଓ କେକେୟମାନଙ୍କୁ ଅଶ୍ୱତ୍ଥାମା କହିଲେ, ହେ ମହାରଥି ବୀରଗଣ ! ତୁମ୍ଭେ ସମସ୍ତେ ମିଳିତ ହୋଇ ଆମ୍ଭଙ୍କୁ ପ୍ରହାର କର ଓ ଅସ୍ତ୍ରଲାଘବ ପ୍ରଦର୍ଶନ ପୂର୍ବକ ସ୍ଥିରଭାବରେ ଯୁଦ୍ଧ କର । ବୀରମାନେ ଦ୍ରୋଣପୁତ୍ରଙ୍କ କର୍ତ୍ତୃକ ଏହିପରି ଅଭିହିତ ହୋଇ ବାରିଧାରାବର୍ଷୀ ବାରିଧର ସଦୃଶ ତାହାଙ୍କ ପ୍ରତି ଶସ୍ତ୍ର ବୃଷ୍ଟି କରିବାରେ ପ୍ରବୃତ୍ତ ହେଲେ । ହେ ମହାରାଜ ! ଦ୍ରୋଣନନ୍ଦନ ପାଣ୍ଡୁପୁତ୍ରଗଣ ଓ ଧୃଷ୍ଟଦ୍ୟୁମ୍ନଙ୍କ ସାକ୍ଷାତ୍‌ରେ ସେହି ବୀରମାନଙ୍କୁ ଶରନିକରରେ ନିପୀଡ଼ିତ କରି ସେମାନଙ୍କ ମଧ୍ୟରୁ ଦଶଜଣ ବୀରଙ୍କୁ ଭୂମିସାତ୍ କଲେ । ପାଞ୍ଚାଳ ଓ ସୃଞ୍ଜୟମାନେ ଅଶ୍ୱତ୍ଥାମାଙ୍କ ଶରନିକରରେ ନିପୀଡ଼ିତ ହୋଇ ସମରରେ ତାହାଙ୍କୁ ପରିତ୍ୟାଗ ପୂର୍ବକ ଚତୁର୍ଦ୍ଦିଗକୁ ପଳାୟନ କଲେ ।

ପାଞ୍ଚାଳ ରାଜକୁମାର ମହାରଥୀ ଧୃଷ୍ଟଦ୍ୟୁମ୍ନ ସେମାନଙ୍କୁ ପଳାୟନ କରିବାର ଦେଖି ସମରରେ ଅନିବର୍ତ୍ତୀ ଜଳଧରସଦୃଶ ଗମ୍ଭୀର ନିନାଦକାରୀ ଏକଶତ ଶୂର ପୁରୁଷଙ୍କ ଦ୍ୱାରା ପରିବୃତ ହୋଇ ଦ୍ରୋଣପୁତ୍ରଙ୍କ ପ୍ରତି ଧାବିତ ହେଲେ ଓ ସ୍ୱପକ୍ଷୀୟ ସୈନ୍ୟକ୍ଷୟ ଦର୍ଶନ କରି ତାହାଙ୍କୁ ଏହିପରି କହିଲେ, ହେ ଦୁର୍ବୁଦ୍ଧି ଆଚାର୍ଯ୍ୟ ପୁତ୍ର ! ଇତର ସୈନ୍ୟମାନଙ୍କୁ ବିନାଶ

କରି ପୌରୁଷ ପ୍ରକାଶ କରୁଅଛ ? ସୈନ୍ୟମାନଙ୍କ ସହିତ ଆଗମନ କରି ଆମ୍ଭ ସହ ଯୁଦ୍ଧ କର । ଯଦି ତୁମ୍ଭେ ଶୂର ତେବେ ଆମ୍ଭ ସମ୍ମୁଖରେ ଅବସ୍ଥାନ କର । ଆମ୍ଭେ ତୁମ୍ଭଙ୍କୁ ନିଶ୍ଚୟ ଯମ ସଦନକୁ ପ୍ରେରଣ କରିବୁଁ । ୨୭ । ପ୍ରତାପଶାଳୀ ଧୃଷ୍ଟଦ୍ୟୁମ୍ନ ଏହିକଥା କହି ଆଚାର୍ଯ୍ୟପୁତ୍ର ଅଶ୍ୱତ୍ଥାମାଙ୍କୁ ମର୍ମଭେଦୀ ସୁତୀକ୍ଷ୍ଣ ଶରସମୂହ ଦ୍ୱାରା ପ୍ରହାର କଲେ । ୨୮ ।

ହେ ମହାରାଜ ! ମଧୁଲୋଲୁପ ଭ୍ରମରଗଣ ଯେପରି ଶ୍ରେଣୀବଦ୍ଧ ହୋଇ ପୁଷ୍ପିତ ବୃକ୍ଷ ଉପରେ ବେଗସହକାରେ ଆସି ପତିତ ହୁଅନ୍ତି, ତଦ୍ରୂପ ଧୃଷ୍ଟଦ୍ୟୁମ୍ନନିକ୍ଷିପ୍ତ ସର୍ବକାୟାବିଦାରଣ ନିର୍ମଳାଗ୍ର ସୁବର୍ଣ୍ଣପୁଙ୍ଖାନ୍ୱିତ ଶୀଘ୍ରଗାମୀ ଶରସମୂହ ଶ୍ରେଣୀବଦ୍ଧ ହୋଇ ଦ୍ରୋଣନନ୍ଦନଙ୍କ ଶରୀରରେ ବେଗସହ ନିପତିତ ହେଲା । ମହାମାନୀ ଅଶ୍ୱତ୍ଥାମା ଧୃଷ୍ଟଦ୍ୟୁମ୍ନଙ୍କ ଶରଜାଳରେ ଗାଢ଼ତର ବିଦ୍ଧ ହେବାରୁ ଶରଗ୍ରହଣପୂର୍ବକ ଉରଗସଦୃଶ କ୍ରୁଦ୍ଧ ହୋଇ ଅସମ୍ଭ୍ରାନ୍ତ ଚିତ୍ତରେ କହିଲେ, ହେ ଧୃଷ୍ଟଦ୍ୟୁମ୍ନ ! ସ୍ଥିର ହୋଇ ମୁହୂର୍ତ୍ତକାଳ ଅପେକ୍ଷା କର । ଆମ୍ଭେ ଅବିଳମ୍ବେ ତୁମ୍ଭଙ୍କୁ ନିଶିତ ଶରଦ୍ୱାରା ଶମନ ଭବନକୁ ପ୍ରେରଣ କରିବୁଁ ।

ଶତ୍ରୁହନ୍ତା ଆଚାର୍ଯ୍ୟକୁମାର ଅଶ୍ୱତ୍ଥାମା ପୃଷତ୍‌କୁଳନନ୍ଦନ ଧୃଷ୍ଟଦ୍ୟୁମ୍ନଙ୍କୁ ଏହି କଥା କହି ହସ୍ତଲାଘବ ପ୍ରଦର୍ଶନପୂର୍ବକ ନିରନ୍ତର ଶରବୃଷ୍ଟି ଦ୍ୱାରା ତାହାଙ୍କୁ ଦୃଢ଼ଆଚ୍ଛାଦିତ କଲେ । ସେହି ସମୟରେ ରଣଦୁର୍ମଦ ପାଞ୍ଚାଳରାଜତନୟ ଦ୍ରୋଣପୁତ୍ରଙ୍କ ଶରସମୂହରେ ସମାଚ୍ଛନ୍ନ ହୋଇ ଏହିପରି ବାକ୍ୟ ଦ୍ୱାରା ତାହାଙ୍କୁ ତର୍ଜନ କଲେ ଯେ, ହେ ବିପ୍ର ! ତୁମ୍ଭେ ଆମ୍ଭର ଉତ୍ପତ୍ତି ଓ ପ୍ରତିଜ୍ଞା ବିଷୟ ଜାଣ ନାହିଁ । ୩୪ । ହେ ଦୁର୍ବୁଦ୍ଧେ ! ପ୍ରଥମରେ ଦ୍ରୋଣଙ୍କୁ ବିନାଶ କରି ପଶ୍ଚାତ୍ ତୁମ୍ଭଙ୍କୁ ବିନାଶ କରିବୁଁ । ଦ୍ରୋଣ ଜୀବିତ ଥାଉଁ ଥାଉଁ ଅଦ୍ୟ ତୁମ୍ଭଙ୍କୁ ସଂହାର କରିବୁଁ ନାହିଁ । ୩୫ । ଆହେ ଦୁର୍ବୁଦ୍ଧି ବ୍ରାହ୍ମଣ ! ଅଦ୍ୟ ଏହି ରଜନୀ ପ୍ରଭାତ ନ ହେଉଣୁ ତୁମ୍ଭ ପିତାଙ୍କୁ ନିହତ କରି ପରେ ତୁମ୍ଭଙ୍କୁ ଶମନ ଭବନକୁ ପ୍ରେରଣ କରିବୁଁ । ଆମ୍ଭେ ମନ ମଧ୍ୟରେ ଏହା ସ୍ଥିର କରିଅଛୁଁ ।

ପୃଥାପୁତ୍ରଙ୍କ ପ୍ରତି ତୁମ୍ଭର ଯେପରି ବିଦ୍ୱେଷ ଓ କୌରବମାନଙ୍କ ପ୍ରତି ଯେତେଦୂର ଭକ୍ତି ସେ ସମସ୍ତ ରଣସ୍ଥଳରେ ସ୍ଥିର ଚିତ୍ତରେ ପ୍ରଦର୍ଶନ କର। କିନ୍ତୁ ତୁମ୍ଭେ ଜୀବନ ଘେନି ଆମ୍ଭଠାରୁ ପରିତ୍ରାଣ ପାଇବ ନାହିଁ। ଆହେ ପୁରୁଷାଧମ! ଯେଉଁ ବ୍ରାହ୍ମଣ ବ୍ରାହ୍ମଣ୍ୟଧର୍ମ ପରିତ୍ୟାଗ କରି କ୍ଷତ୍ରିୟ ଧର୍ମରେ ନିରତ ହୁଅନ୍ତି ସେ ତୁମ୍ଭ ସଦୃଶ ସମସ୍ତ ଲୋକର ବଧ୍ୟ ହୁଅନ୍ତି।

ହେ ମହାରାଜ! ଧୃଷ୍ଟଦ୍ୟୁମ୍ନ ଏହିପରି ପରୁଷବାକ୍ୟ ପ୍ରୟୋଗ କରନ୍ତେ ଦ୍ୱିଜୋତ୍ତମ ଅଶ୍ୱତ୍ଥାମା ଅତିଶୟ କ୍ରୁଦ୍ଧ ହୋଇ ଧୃଷ୍ଟଦ୍ୟୁମ୍ନଙ୍କୁ ଯେପରି ଦଗ୍‌ଧ କରିବେ, ଏପରି ଭାବରେ ତାହାଙ୍କ ପ୍ରତି ଦୃଷ୍ଟିନିକ୍ଷେପ କଲେ ଓ ଭୁଜଙ୍ଗସଦୃଶ ମୁହୁର୍ମୁହୁଃ ନିଃଶ୍ୱାସ ପରିତ୍ୟାଗପୂର୍ବକ 'ରହ' 'ରହ' ବୋଲି କହି ତାହାଙ୍କୁ ଅସଂଖ୍ୟ ଶରଜାଲରେ ସମାଚ୍ଛନ୍ନ କଲେ। ପାଞ୍ଚାଳ-ସୈନ୍ୟପରିବୃତ ରଥିପ୍ରବର ମହାବାହୁ ଧୃଷ୍ଟଦ୍ୟୁମ୍ନ ଦ୍ରୋଣପୁତ୍ରଙ୍କ ଶରନିକରରେ ସମାଚ୍ଛାଦିତ ହୋଇ କିଞ୍ଚିନ୍ମାତ୍ର ବିଚଳିତ ହେଲେ ନାହିଁ। ସ୍ୱୀୟ ଭୁଜବଳକୁ ଅବଲମ୍ବନ କରି ଅଶ୍ୱତ୍ଥାମାଙ୍କ ପ୍ରତି ବିବିଧ ଶରଜାଲ ବିମୋଚନ କଲେ।

ଏହିପରି ସେହି ଧନୁର୍ଦ୍ଧରାଗ୍ରଗଣ୍ୟ ପ୍ରାଣପଣ ସମରଦ୍ୟୂତରେ ପ୍ରବୃତ୍ତ ହୋଇ ପରସ୍ପର ବଧାଭିଳାଷରେ ବାଣଦ୍ୱାରା ପରସ୍ପରକୁ ନିପୀଡ଼ିତ କରି ପରିଶେଷରେ ନିରନ୍ତର ବାରିଧାରାସଦୃଶ ଚତୁର୍ଦ୍ଦିଗରେ ଶର ବୃଷ୍ଟି କଲେ। ୪୪। ପୃଷତ୍‌ବଂଶୀୟ ଧୃଷ୍ଟଦ୍ୟୁମ୍ନ ଓ ଆଚାର୍ଯ୍ୟନନ୍ଦନ ଅଶ୍ୱତ୍ଥାମାଙ୍କର ଅତିଶୟ ଘୋରରୂପ ଭୀମସମର ସନ୍ଦର୍ଶନ କରି ସିଦ୍ଧ ଚାରଣ, ବାୟୁରେଗମନ-ଶୀଳ ପ୍ରାଣୀମାନେ ସେମାନଙ୍କୁ ଅତିଶୟ ପ୍ରଶଂସା କଲେ। ୪୫। ସେ ଦୁହେଁ ଶରଜାଲ ବିସ୍ତାର କରି ଦିକ୍ ବିଦିକ୍ ଓ ନଭୋମଣ୍ଡଳକୁ ପରିପୂରଣପୂର୍ବକ ଏପ୍ରକାର ସୁମହାନ୍ ଅନ୍ଧକାର କଲେ ଯେ, ତଦ୍ଦ୍ୱାରା ସେ ବୀରଦ୍ୱୟ ସର୍ବପ୍ରାଣି-ଙ୍କର ଅଲକ୍ଷିତ ହୋଇ ଯୁଦ୍ଧ କଲେ। ୪୬। ପରସ୍ପର ପରସ୍ପରଙ୍କ ବଧ ନିମିତ୍ତ ଯତ୍ନପରାୟଣ ମହାବାହୁ ବଳଶାଳୀ ସେହି ବୀରଦ୍ୱୟ ରଣାଙ୍ଗନରେ ନୃତ୍ୟକଳ୍ପପ୍ରାୟ କୋଦଣ୍ଡକୁ ମଣ୍ଡଳୀକୃତ କରି ପରସ୍ପର ଜୟାଭିଳାଷରେ ଚିତ୍ର, ଲଘୁ ଓ ସୁଷ୍ଠୁ ପ୍ରଭୃତି ରଣକୌଶଳ ପ୍ରକାଶପୂର୍ବକ ସହସ୍ର ସହସ୍ର ସେନାଧ୍ୟକ୍ଷଗଣଙ୍କ କର୍ତ୍ତୃକ ପ୍ରଶଂସିତ ହୋଇ ଯୁଦ୍ଧ କଲେ। ୪୮।

ହେ ମହାରାଜ ! ଉଭୟ ପକ୍ଷର ସେନାମାନେ ସେ ଦୁଇଜଣଙ୍କୁ ବନ୍ୟହସ୍ତୀସଦୃଶ ଘୋରତର ସମରରେ ପ୍ରବୃତ୍ତ ହେବାର ଦେଖି ଅତ୍ୟନ୍ତ ହର୍ଷାବେଶରେ ବାରମ୍ବାର ସିଂହନାଦ, ଶଙ୍ଖଧ୍ୱନି ଓ ସହସ୍ର ସହସ୍ର ବାଦ୍ୟ ନିନାଦ ଆରମ୍ଭ କଲେ । ଭୀରୁମାନଙ୍କର ଭୟବର୍ଦ୍ଧକ ସେହି ସମର କାଳରେ ମୁହୂର୍ତ୍ତମାତ୍ର ସମଭାବରେ ଯୁଦ୍ଧ ହୋଇଥିଲା । ୫୧ ।

ତତ୍ପରେ ଦ୍ରୋଣନନ୍ଦନ ମହାତ୍ମା ଧୃଷ୍ଟଦ୍ୟୁମ୍ନଙ୍କର ଧ୍ୱଜ, ଦଣ୍ଡ, କୋଦଣ୍ଡ, ଛତ୍ର, ଅଶ୍ୱଚତୁଷ୍ଟୟ, ସାରଥି ଓ ଦୁଇଜଣ ପୃଷ୍ଠରକ୍ଷକଙ୍କୁ ସଂହାର କରି ତାହାଙ୍କ ପ୍ରତି ଅଭିଦ୍ରୁତ ହେଲେ । ସେହି ସମୟରେ ଅମେୟାତ୍ମା ଅଶ୍ୱତ୍ଥାମା ସନ୍ନତପର୍ବ ଶରନିକରରେ ଶତଶତ ସହସ୍ର ସହସ୍ର ପାଞ୍ଚାଳ ମାନଙ୍କୁ ବିଦ୍ରାବିତ କଲେ ।

ହେ ରାଜନ୍ ! ସମରାଙ୍ଗଣରେ ଦ୍ରୋଣପୁତ୍ରଙ୍କର ଇନ୍ଦ୍ରସଦୃଶ ସେହି କାର୍ଯ୍ୟକୁ ଅବଲୋକନ କରି ପାଣ୍ଡବପକ୍ଷୀୟ ସୈନ୍ୟମାନେ ବ୍ୟଥିତ ହେଲେ । କାରଣ ମହାରଥୀ ଆଚାର୍ଯ୍ୟକୁମାର ଶାଣିତ ଏକଶତ ଶରରେ ଏକଶତ ରଥୀଙ୍କୁ ଓ ତିନିଗୋଟି ଶରରେ ତିନିଜଣ ମହାରଥୀଙ୍କୁ ସଂହାର କଲେ । ତତ୍କାଳରେ ପାଞ୍ଚାଳପକ୍ଷୀୟ ଯେଉଁ ଯେଉଁ ଯୋଦ୍ଧାମାନେ ତାହାଙ୍କ ସମ୍ମୁଖରେ ଅବସ୍ଥିତ ଥିଲେ ସେ ଧନଞ୍ଜୟ ଓ ଧୃଷ୍ଟଦ୍ୟୁମ୍ନଙ୍କ ସମକ୍ଷରେ ସେମାନଙ୍କ ମଧ୍ୟରୁ ବହୁସଂଖ୍ୟକ ବ୍ୟକ୍ତିଙ୍କୁ ବିନାଶ କଲେ । ଏହିପରି ପାଞ୍ଚାଳ ଓ ସୃଞ୍ଜୟମାନେ ଶରନିକରରେ ବଧ୍ୟମାନ ହୋଇ ରଣସ୍ଥଳରେ ଦ୍ରୋଣନନ୍ଦନଙ୍କୁ ପରିତ୍ୟାଗ କରି ଧ୍ୱଜଦଣ୍ଡଖଣ୍ଡିତ ରଥରେ ଆରୋହଣପୂର୍ବକ ସେଠାରୁ ପଳାୟନ କଲେ ।

ତେତେବେଳେ ମହାରଥୀ ଦ୍ରୋଣପୁତ୍ର ସଂଗ୍ରାମରେ ବହୁ ସଂଖ୍ୟକ ଶତ୍ରୁମାନଙ୍କୁ ପରାଜୟ କରି ବର୍ଷାକାଳୀନ ଜଳଧରସଦୃଶ ଗମ୍ଭୀର ଗର୍ଜ୍ଜନ କଲେ ଓ ଶତ୍ରୁସଂହାର କରି ଅତ୍ୟନ୍ତ ପ୍ରୀତିପ୍ରାପ୍ତ ହେଲେ । ଦେବରାଜ ଇନ୍ଦ୍ର ଯେପରି ଦନୁଜଦଳ ବିଦଳିତ କରି ଶୋଭା ପାଇଥିଲେ ସେହିପରି ପ୍ରତାପବାନ୍ ଦ୍ରୋଣନନ୍ଦନ ରଣସ୍ଥଳରେ ସହସ୍ର ସହସ୍ର ରିପୁକୁଳ ସଂହାର କରି କୌରବଗଣଙ୍କ କର୍ତ୍ତୃକ ସମ୍ମାନିତ ହୋଇ ଶୋଭା ପାଇଲେ । ୬୦ ।

---

# ୧୬୧ ଅଧ୍ୟାୟ

ସଞ୍ଜୟ କହିଲେ—ହେ ମହାରାଜ ! ତଦନନ୍ତର ରାଜା ଯୁଧିଷ୍ଠିର ଓ ଭୀମସେନ ଦ୍ରୋଣପୁତ୍ରଙ୍କର ଚତୁର୍ଦ୍ଦିଗ ପରିବେଷ୍ଟନ କଲେ । ୧ । ସେହିପରି କୁରୁରାଜ ଦୁର୍ଯ୍ୟୋଧନ ମଧ୍ୟ ଭରଦ୍ୱାଜନନ୍ଦନ ଦ୍ରୋଣଙ୍କୁ ସଙ୍ଗରେ ଘେନି ପାଣ୍ଡବମାନଙ୍କ ପ୍ରତି ଧାବମାନ ହୁଅନ୍ତେ ଭୀରୁମାନଙ୍କର ଭୟବର୍ଦ୍ଧନ ଘୋରତର ଯୁଦ୍ଧ ଉପସ୍ଥିତ ହେଲା । ସେହି ସମୟରେ ଧର୍ମ୍ମନନ୍ଦନ ଯୁଧିଷ୍ଠିର କ୍ରୁଦ୍ଧ ହୋଇ ଅମ୍ବଷ୍ଠ, ମାଳବ, ବଙ୍ଗ, ଶିବ ଓ ତ୍ରିଗର୍ତ୍ତଦେଶୀୟ ଯୋଦ୍ଧାମାନଙ୍କୁ ଶମନ ଭବନକୁ ପ୍ରେରଣ କଲେ । ଭୀମସେନ ଯୁଦ୍ଧଦୁର୍ମ୍ମଦ ଅଭୀଷାହ ଓ ଶୂରସେନ ଦେଶୀୟ କ୍ଷତ୍ରିୟମାନଙ୍କୁ ଶରନିକରରେ ଖଣ୍ଡଖଣ୍ଡ କରି ସେମାନଙ୍କ ରୁଧିରଦ୍ୱାରା ରଣସ୍ଥଳକୁ କର୍ଦ୍ଦମମୟ କଲେ ।

ସେହି ସମୟରେ ମହାବଳ ପରାକ୍ରାନ୍ତ ଧନଞ୍ଜୟ ମଧ୍ୟ ଯୌଧେୟ ଆରଟ୍ଟ ଓ ମଦ୍ରଦେଶୀୟ ବୀରମାନଙ୍କୁ ଶାଣିତ ଶରଦ୍ୱାରା ମୃତ୍ୟୁଲୋକକୁ ପ୍ରେରଣ କଲେ । ମାତଙ୍ଗଗଣ ଶୀଘ୍ରଗାମୀ ନାରାଚସମୂହ ଦ୍ୱାରା ଗାଢ଼ ବିଦ୍ଧ ହୋଇ ଦ୍ୱିଶୃଙ୍ଗପର୍ବତ ସଦୃଶ ଭୂତଳରେ ନିପତିତ ହେଲେ । ଶରସମୂହ-ଦ୍ୱାରା କରଶୁଣ୍ଡମାନ ଛିନ୍ନ ହୋଇ ଇତସ୍ତତଃ ବିଲୁଣ୍ଠିତ ହେବାରୁ ରଣଭୂମି ଗତିଶୀଳ ଉରଗମାନଙ୍କ ଦ୍ୱାରା ସମାକୀର୍ଣ୍ଣ ହେଲପ୍ରାୟ ବୋଧ ହେଲା । କନକଖଚିତ ରାଜଛତ୍ର ସମୂହ ଚତୁର୍ଦ୍ଦିଗରେ ବିକ୍ଷିପ୍ତ ହେବାରୁ ସମରଭୂମି-ଯୁଗାନ୍ତକାଳୀନ ଚନ୍ଦ୍ରସୂର୍ଯ୍ୟାଦି ଗ୍ରହଗଣସମାକୀର୍ଣ୍ଣ ନଭୋମଣ୍ଡଳ ସଦୃଶ ଶୋଭା ଧାରଣ କଲା ।

ହେ ମହାରାଜ ! ସେହି ସମୟରେ "ହନନ କର, ହନନ କର, ପ୍ରହାର କର" ଏହିପରି ଭୟଙ୍କର ଶବ୍ଦ ଶୋଣାଶ୍ୱ ଦ୍ରୋଣଙ୍କର ରଥ ସମ୍ମୁଖରେ ଉତ୍ଥିତ ହେଲା । ପରନ୍ତୁ ଦ୍ରୋଣ ଅତିଶୟ କ୍ରୁଦ୍ଧ ହୋଇ ଦୁର୍ନିବାର୍ଯ୍ୟ ମହାବାୟୁ ମେଘମଣ୍ଡଳକୁ ଛିନ୍ନଭିନ୍ନ କଲପ୍ରାୟ ବାୟବ୍ୟାସ୍ତ୍ରଦ୍ୱାରା ପାଞ୍ଚାଳମାନଙ୍କୁ ବିଦ୍ରାବିତ କଲେ । ପାଞ୍ଚାଳମାନେ ଦ୍ରୋଣଙ୍କ କର୍ତ୍ତୃକ ବଧମାନ ହୋଇ ମହାତ୍ମା ଭୀମ ଓ ଅର୍ଜ୍ଜୁନଙ୍କ ସମକ୍ଷରେ ଭୟରେ ପଳାୟନ

କଲେ । ତଦନନ୍ତର ଭୀମସେନ ଓ କରୀଟମାଳୀ ଧନଞ୍ଜୟ ମହାନ୍ ରଥୀ-ସୈନ୍ୟଦ୍ୱାରା ଉତ୍ତର ଓ ଦକ୍ଷିଣ ପାର୍ଶ୍ୱକୁ ସହସା ଆକ୍ରମଣ ପୂର୍ବକ ଦ୍ରୋଣଙ୍କ ପ୍ରତି ସୁମହତ୍ ଶରନିକର ବର୍ଷଣ କଲେ ।

ସେତେବେଳେ ମତ୍ସ୍ୟ ଓ ସୋମକଗଣ ମହାବଳୀ ପାଞ୍ଚାଳ ଓ ସୃଞ୍ଜୟଗଣ ଏମାନେ ସମସ୍ତେ ମିଳିତ ହୋଇ ସେ ଦୁହିଁଙ୍କର ଅନୁଗାମୀ ହେଲେ । ସେହିପରି ଆପଣଙ୍କ ପୁତ୍ରପକ୍ଷୀୟ ପ୍ରହାରପଟୁ ମହାରଥୀମାନେ ମହତୀସେନା ସମଭିବ୍ୟାହାରରେ ଦ୍ରୋଣଙ୍କ ସାହାଯ୍ୟାର୍ଥ ତାହାଙ୍କ ସମୀପକୁ ଗମନ କଲେ । ପରନ୍ତୁ ଅନ୍ଧକାର ଓ ନିଦ୍ରାକର୍ଷଣ ହେତୁ କୌରବ ସୈନ୍ୟମାନେ ଧନଞ୍ଜୟଙ୍କ କର୍ତ୍ତୃକ ବଧ୍ୟମାନ ହୋଇ ପୁନର୍ବାର ଛିନ୍ନଭିନ୍ନ ହେଲେ । ସେହି ସମୟରେ ପଳାୟନପର ସେହି ଯୋଦ୍ଧାମାନଙ୍କୁ ଦ୍ରୋଣ ଓ ଆପଣଙ୍କ ପୁତ୍ର ନିବାରଣ କଲେହେଁ ସେମାନେ ପ୍ରତିନିବୃତ୍ତ ହେଲେ ନାହିଁ ।

ହେ ମହାରାଜ ! ସେହି ପ୍ରଗାଢ଼ ତମିସ୍ରାବୃତ ସମୟରେ ବ୍ୟୂହିତ ସେନାମାନେ ପାଣ୍ଡୁପୁତ୍ରଙ୍କର ଶରପ୍ରହାରରେ ନାନାଦିଗକୁ ପ୍ରଧାବିତ ହେଲେ । ସେନାଧ୍ୟକ୍ଷ ନରପତିମାନେ ଭୟାତୁର ହୋଇ ସ୍ୱ ସ୍ୱ ବାହନ ପରିତ୍ୟାଗ ପୂର୍ବକ ଚତୁର୍ଦ୍ଦିଗକୁ ପଳାୟନ କଲେ । ୧୮ ।

---

# ୧୬୨ ଅଧ୍ୟାୟ

ସଞ୍ଜୟ କହିଲେ—ହେ ମହାରାଜ ! ସେହି ସମୟରେ ସାତ୍ୟକି ସୋମଦତ୍ତଙ୍କୁ ଶରାସନ ବିକମ୍ପିତ କରିବାର ଦେଖି ସ୍ୱୀୟ ସାରଥିଙ୍କୁ କହିଲେ ହେ ସୂତ ! ଆମ୍ଭଙ୍କୁ ସୋମଦତ୍ତଙ୍କ ସମୀପକୁ ନିଅ । ୧ । ଆମ୍ଭେ ସତ୍ୟ କହୁଅଛୁ ଯେ ଆମ୍ଭେ ଅଦ୍ୟ ଏହି କୁରୁକୁଳାଧମ ବିପକ୍ଷ ବାହ୍ଲୀକପୁତ୍ରଙ୍କୁ ନିହତ ନ କରି ସଂଗ୍ରାମରୁ ପ୍ରତିନିବୃତ୍ତ ହେବୁନାହିଁ । ୨ । ସାରଥି ସାତ୍ୟକି-ଙ୍କର ବାକ୍ୟ ଶ୍ରବଣ କରି ମନୋବେଗଗାମୀ ଶଙ୍ଖସଦୃଶବର୍ଣ୍ଣବିଶିଷ୍ଟ ସିନ୍ଧୁ-ଦେଶୀୟ ତୁରଙ୍ଗମାନଙ୍କୁ ସଞ୍ଚାଳନ କଲେ । ୩ । ହେ ମହାରାଜ ! ପୂର୍ବେ

ଦୈତ୍ୟବଧୋଦ୍ୟତ ଦେବରାଜ ଇନ୍ଦ୍ରଙ୍କୁ ଯେପରି ତାହାଙ୍କର ଅଶ୍ୱମାନେ ବହନ କରଥିଲେ ସେହିପରି ମନ ଓ ବାୟୁତୁଲ୍ୟ ବେଗଗାମୀ ସେହି ଅଶ୍ୱଗଣ ସାତ୍ୟକଙ୍କୁ ବହନ କଲେ । ୪ ।

ମହାବାହୁ ସୋମଦତ୍ତ ସାତ୍ୟକଙ୍କୁ ବେଗରେ ସଂଗ୍ରାମାଭିମୁଖକୁ ଆଗମନ କରବାର ଦେଖି ସଜଳ ଜଳଧର ଯେପରି ଦିବାକରଙ୍କୁ ଆଚ୍ଛନ୍ନ-କରେ ସେହିପରି ଶରବୃଷ୍ଟି କରୁକରୁଁ ଅସମ୍ଭ୍ରାନ୍ତ ଚିତ୍ତରେ ତାହାଙ୍କ ଅଭିମୁଖୀନ ହେଲେ । ୬ । ସାତ୍ୟକ ମଧ୍ୟ ଅସମ୍ଭ୍ରାନ୍ତ ଚିତ୍ତରେ ଶରବର୍ଷଣ ଦ୍ୱାରା କୁରୁଶ୍ରେଷ୍ଠ ସୋମଦତ୍ତଙ୍କୁ ଚତୁର୍ଦ୍ଦିଗରୁ ସମାବୃତ କଲେ । ୭ । ତତ୍ପରେ ସୋମଦତ୍ତ ଷାଠିଏ ଗୋଟି ଶରଦ୍ୱାରା ମଧୁକୁଳସମ୍ଭୂତ ସାତ୍ୟକଙ୍କ ବକ୍ଷଃସ୍ଥଳକୁ ବିଦ୍ଧ କଲେ । ସାତ୍ୟକ ମଧ୍ୟ ତାହାଙ୍କୁ ଶାଣିତ ଶରନିକରଦ୍ୱାରା ବିଦ୍ଧ କଲେ । ୮ ।

ହେ ମହାରାଜ ! ଏହିପରି କୁରୁ, ବୃଷ୍ଣିବଂଶର ଯଶସ୍କର ନରପୁଙ୍ଗବ ସୋମଦତ୍ତ ଓ ସାତ୍ୟକ ଏହି ବୀରଦ୍ୱୟ ପରସ୍ପର ଶରରେ କ୍ଷତବିକ୍ଷତ ଓ ରକ୍ତାକ୍ତକଳେବର ହୋଇ ସୁପୁଷ୍ପଧର ବହୁପୁଷ୍ପାନ୍ୱିତ କିଂଶୁକ ବୃକ୍ଷସଦୃଶ ଶୋଭା ପାଇଲେ । ଯେପରିକି ପରସ୍ପର ପରସ୍ପରକୁ ଦଗ୍ଧ କରିବେ ସେହିପରି ଭାବରେ ପରସ୍ପର ପରସ୍ପରକୁ ଅବଲୋକନ କଲେ । ୧୦ । ସେହି ଶତ୍ରୁମର୍ଦ୍ଦନକାରୀ ବୀରଦ୍ୱୟ ମଣ୍ଡଳାକାର ଗତିରେ ରଥ ବର୍ତ୍ମରେ ବିଚରଣ କରି ବୃଷ୍ଟିମାନ୍ ବାରିଦ ସଦୃଶ ଭୀଷଣ ମୂର୍ତ୍ତି ଧାରଣ କଲେ ।୧୧। ତତ୍କାଳରେ ସେମାନଙ୍କର ପରସ୍ପର ପ୍ରହାରରେ ପରସ୍ପରଙ୍କ ସର୍ବାଙ୍ଗ ଶରବିଦ୍ଧ ଓ କ୍ଷତବିକ୍ଷତ ହେବାରୁ ସେ ଦୁହେଁ କଣ୍ଟକାବୃତ ଶଲ୍ଲକୀ ସଦୃଶ ପ୍ରତୀୟମାନ ହେଲେ । ୧୨ । ସେମାନେ ସୁବର୍ଣ୍ଣପୁଙ୍ଖ ଶରସମୂହରେ ସମାଚ୍ଛନ୍ନ ହୋଇ ବର୍ଷାକାଳୀନ ଖଦ୍ୟୋତଗଣବିରାଜିତ ଦୁଇଟି ବନସ୍ପତି ସଦୃଶ ଶୋଭମାନ ହେଲେ । ୧୩ ।

ଏହିପରି ମହାରଥୀ ସୋମଦତ୍ତ ଓ ସାତ୍ୟକ ପରସ୍ପରଙ୍କ ଶର-ପ୍ରହାରରେ ପରସ୍ପର ଉଦ୍ଭାସିତ କଳେବର ହୋଇ ସମରାଙ୍ଗଣରେ ଉଲ୍କାସମାବୃତ ଦୁଇଗୋଟି କୁଞ୍ଜର ସଦୃଶ ବିରାଜିତ ହେଲେ ।୧୪ ।

ତଦନନ୍ତର ମହାରଥ ସୋମଦତ୍ତ ଅର୍ଦ୍ଧଚନ୍ଦ୍ରବାଣଦ୍ୱାରା ମଧୁକୁଳସମ୍ଭୂତ ସାତ୍ୟକଙ୍କ ସୁମହତ୍ ଶରାସନ ଛେଦନ କଲେ ଓ ପଞ୍ଚବିଂଶତିବାଣଦ୍ୱାରା ତାହାଙ୍କୁ ବିଦ୍ଧ କରି ସତ୍ୱର ପୁନର୍ବାର ଦଶଗୋଟି ଶରରେ ବିଦ୍ଧ କଲେ । ୧୬ । ତେତେବେଳେ ସାତ୍ୟକ ଅତିବେଗବାନ୍ ଗୋଟିଏ ଶରାସନ ଗ୍ରହଣ ପୂର୍ବକ ସତ୍ୱର ପାଞ୍ଚଗୋଟି ବାଣରେ ସୋମଦତ୍ତଙ୍କୁ ବିଦ୍ଧ କଲେ । ୧୭ । ତତ୍ପରେ ଅପର ଗୋଟିଏ ଭଲ୍ଲାସ୍ତ୍ର ଦ୍ୱାରା ସହାସ୍ୟ ବଦନରେ ବାହ୍ଲୀକ-ନନ୍ଦନଙ୍କର କାଞ୍ଚନମୟ ଧ୍ୱଜଦଣ୍ଡକୁ ଛେଦନ କରି ଭୂତଳରେ ପାତିତ କଲେ । ୧୮ ।

ସୋମଦତ୍ତ ସ୍ୱୀୟ ରଥକେତୁକୁ ଭୂତଳରେ ନିପତିତ ହେବାର ଦେଖି ଅସମ୍ଭ୍ରାନ୍ତ ଚିତ୍ତରେ ଶିନିପୌତ୍ର ସାତ୍ୟକଙ୍କୁ ବିଂଶତି ଗୋଟି ଶାୟକରେ ବିଦ୍ଧ କଲେ । ୧୯ । ଅନନ୍ତର ସାତ୍ୟକ ଅତିଶୟ କ୍ରୁଦ୍ଧହୋଇ ନିଶିତ କ୍ଷୁରପ୍ର ଅସ୍ତ୍ରଦ୍ୱାରା ଧନୁର୍ଦ୍ଧର ସୋମଦତ୍ତଙ୍କର ଶରାସନ ଛିନ୍ନ କଲେ । ୨୦ । ଭଗ୍ନଦଂଷ୍ଟ୍ରା ମାତଙ୍ଗ ସଦୃଶ ଛିନ୍ନଶରାସନ ସୋମଦତ୍ତଙ୍କୁ ସୁବର୍ଣ୍ଣ ପୁଙ୍ଖାନ୍ୱିତ ସନ୍ନତପର୍ବ ବହୁବିଧ ବାଣଦ୍ୱାରା ସମାକୀର୍ଣ୍ଣ କଲେ । ୨୧ ।

ଅନନ୍ତର ମହାବଳ ପରାକ୍ରାନ୍ତ ମହାରଥୀ ସୋମଦତ୍ତ ଅନ୍ୟ ଗୋଟିଏ ଶରାସନ ଗ୍ରହଣ କରି ଶରବୃଷ୍ଟି ଦ୍ୱାରା ସାତ୍ୟକଙ୍କୁ ସମାବୃତ କଲେ । ୨୨ । ଏହାପରେ ସେ ଦୁହେଁ ସମରରେ କ୍ରୁଦ୍ଧ ହୋଇ ପରସ୍ପର ଅସଂଖ୍ୟ ଶରନିକରରେ ପରସ୍ପରକୁ ପୀଡ଼ିତ କଲେ । ୨୩ । ଏହି ସମୟରେ ଭୀମସେନ ସାତ୍ୟକଙ୍କ ରକ୍ଷାର୍ଥ ସୋମଦତ୍ତଙ୍କ ପ୍ରତି ଦଶଗୋଟି ଶର ପ୍ରହାର କଲେ ; କିନ୍ତୁ ସୋମଦତ୍ତ ଅସମ୍ଭ୍ରାନ୍ତ ଚିତ୍ତରେ କେବଳ ସାତ୍ୟକଙ୍କୁ ଶରନିକର ଦ୍ୱାରା ବିଦ୍ଧ କଲେ । ୨୪ ।

ଅନନ୍ତର ଭୀମସେନନନ୍ଦନ ଘଟୋତ୍କଚ ସାତ୍ୟକଙ୍କ ସାହାଯ୍ୟ ନିମିତ୍ତ ଅତି ଭୀଷଣ ଦୃଢ଼ତର ଗୋଟିଏ ଅଭିନବ ପରିଘ ଗ୍ରହଣ କରି ସୋମଦତ୍ତଙ୍କ ବକ୍ଷଃସ୍ଥଳରେ ପ୍ରହାର କଲେ । ୨୫ । ହେ ମହାରାଜ ! ସେହି ପରିଘକୁ ବେଗରେ ଆପତିତ ହେବାର ଦେଖି କୌରବ୍ୟ ସୋମଦତ୍ତ ଭୀଷଣଦର୍ଶନ ତାହାକୁ ଅମ୍ଳାନବଦନରେ ଦୁଇଖଣ୍ଡ କଲେ । ୨୬ ।

ହେ ମହାରାଜ ! ସେହି ଲୌହମୟ ମହାନ୍ ପରିଘ ସୋମଦତ୍ତଙ୍କ ଶରରେ ଦ୍ୱିଧାକୃତ ହୋଇ ବଜ୍ରବିଦାରିତ ଶୈଳଶିଖର ତୁଲ୍ୟ ଭୂତଳରେ ପତିତ ହେଲା । ୨୭ । ତାହା ଦେଖି ଶିନିପୁଙ୍ଗବ ନରଶାର୍ଦ୍ଦୂଳ ସାତ୍ୟକି ଅବଲମ୍ବେ ଭଲ୍ଲାସ୍ତ୍ରଦ୍ୱାରା ସୋମଦତ୍ତଙ୍କର ଶରାସନକୁ ଛେଦନ କରି ପାଞ୍ଚୋଟି ବାଣରେ ତାହାଙ୍କର ଶରମୁଷ୍ଟି ଓ ଚାରିଗୋଟି ବାଣରେ ତାହାଙ୍କର ଉତ୍କୃଷ୍ଟ ଅଶ୍ୱଚତୁଷ୍ଟୟକୁ ପ୍ରେତରାଜ ଭବନକୁ ପ୍ରେରଣ କଲେ ଓ ଗୋଟିଏ ସନ୍ନତ-ପର୍ବ ଭଲ୍ଲାସ୍ତ୍ରଦ୍ୱାରା ତାହାଙ୍କର ସାରଥିର ମସ୍ତକକୁ ଶରୀରରୁ ପୃଥକ୍ କଲେ । ୩୦ ।

ତତ୍ପରେ ସେ ଶିଳାଶାଣିତ ସୁବର୍ଣ୍ଣପୁଙ୍ଖାନ୍ୱିତ ଜ୍ୱଳନ୍ତଅନଳତୁଲ୍ୟ ମହାଭୟଙ୍କର ଗୋଟିଏ ଶର ଗ୍ରହଣପୂର୍ବକ ସୋମଦତ୍ତଙ୍କ ପ୍ରତି ନିକ୍ଷେପ କଲେ । ୩୧ । ହେ ମହାରାଜ ! ଅତି ଘୋଷଣ ସେହି ଶରୋତ୍ତମ ବଳବାନ୍ ଶିନିନନ୍ଦନ ସାତ୍ୟକିଙ୍କ କର୍ତ୍ତୃକ ବିମୁକ୍ତ ହୋଇ ଅବିଳମ୍ବରେ ସୋମଦତ୍ତଙ୍କର ବକ୍ଷଃସ୍ଥଳରେ ନିପତିତ ହେଲା ।୩୨। ମହାରଥ ମହାବାହୁ ସୋମଦତ୍ତ ସାତ୍ୟକିଙ୍କ ସେହି ଶରଦ୍ୱାରା ଅତିଶୟ ବିଦ୍ଧ ହୋଇ ନିହତ ଓ ଭୂତଳଗାମୀ ହେଲେ । ୩୩ ।

କୁରୁସେନାଗଣ ମହାରଥ ସୋମଦତ୍ତଙ୍କୁ ନିହତ ହେବାର ନିରୀକ୍ଷଣ କରି ଘୋରତର ଶରବୃଷ୍ଟି କରୁ କରୁ ଯୁଯୁଧାନଙ୍କ ପ୍ରତି ଧାବମାନ ହେଲେ । ୩୪ । ଯୁଧିଷ୍ଠିର ପ୍ରଭୃତି ପାଣ୍ଡବମାନେ ଯୁଯୁଧାନଙ୍କୁ ଶରନିକରରେ ସମାଚ୍ଛନ୍ନ ହେବାର ଦେଖି ସମୁଦାୟ ପ୍ରଭଦ୍ରକ ଓ ମହତୀ ସେନାସହ ଦ୍ରୋଣ ସୈନ୍ୟମାନଙ୍କ ପ୍ରତି ଧାବିତ ହେଲେ । ୩୫ । ସେହି ସମୟରେ ଯୁଧିଷ୍ଠିର କ୍ରୁଦ୍ଧ ହୋଇ ଦ୍ରୋଣଙ୍କ ସମକ୍ଷରେ ଅସଂଖ୍ୟ ଶରଦ୍ୱାରା ଆପଣଙ୍କପକ୍ଷୀୟ ସୁମହତ୍ ସୈନ୍ୟଙ୍କୁ ବିଦ୍ରାବିତ କଲେ । ୩୬ ।

ତେତେବେଳେ ଦ୍ରୋଣ ଯୁଧିଷ୍ଠିରଙ୍କୁ ସ୍ୱପକ୍ଷୀୟ ସୈନ୍ୟମାନଙ୍କୁ ବିଦ୍ରାବିତ କରିବାର ଦେଖି ରୋଷରେ ଲୋହିତଲୋଚନ ହୋଇ ଦ୍ରୁତ-ବେଗରେ ତାହାଙ୍କ ପ୍ରତି ଅଭିଦ୍ରୁତ ହେଲେ । ୩୭ । ସେ ତୀକ୍ଷ୍ଣତର ସପ୍ତଗୋଟି ବାଣରେ ଯୁଧିଷ୍ଠିରଙ୍କୁ ବିଦ୍ଧ କଲେ । ଯୁଧିଷ୍ଠିର ମଧ୍ୟ ଅତିଶୟ

କ୍ରୁଦ୍ଧ ହୋଇ ପାଞ୍ଚଗୋଟି ବାଣରେ ଆଚାର୍ଯ୍ୟଙ୍କୁ ବିଦ୍ଧ କଲେ ।୩୮। ମହାବାହୁ ଦ୍ରୋଣ ଗାଢ଼ତର ବିଦ୍ଧ ହୋଇ ସୃକ୍କଣୀ ଲେହନପୂର୍ବକ ଯୁଧିଷ୍ଠିରଙ୍କର ଧ୍ୱଜ ଓ କାର୍ମୁକ ଛେଦନ କଲେ ।୩୯। ଶରାସନ ଛିନ୍ନ ହେଲାରୁ ରାଜସତ୍ତମ ଯୁଧିଷ୍ଠିର ସତ୍ୱର ଅତି ବେଗବାନ୍ ଦୃଢ଼ତର ଅନ୍ୟ ଗୋଟିଏ ଶରାସନ ଗ୍ରହଣପୂର୍ବକ ଅଶ୍ୱ, ସାରଥି, ଧ୍ୱଜ ଓ ରଥ ସମେତ ଦ୍ରୋଣଙ୍କୁ ଅସଂଖ୍ୟ ଶରଦ୍ୱାରା ବିଦ୍ଧ କଲେ । ତାହା ଅତି ଅଦ୍ଭୁତସଦୃଶ ହେଲା ।୪୦।

ଦ୍ୱିଜସତ୍ତମ ଦ୍ରୋଣ ଯୁଧିଷ୍ଠିରଙ୍କର ନିରନ୍ତର ଶସ୍ତ୍ରସମ୍ପାତ ଦ୍ୱାରା ପ୍ରପୀଡ଼ିତ ହୋଇ ଏପରି କାତର ହେଲେ ଯେ ସେ ସମୟରେ ତାହାଙ୍କୁ ମୁହୂର୍ତ୍ତକାଳ ଅବସନ୍ନ ହୋଇ ରଥ ମାଡ଼ରେ ଅବସ୍ଥାନ କରିବାକୁ ହେଲା । ୪୨ । କିଛିକ୍ଷଣ ପରେ ସେ ସଂଜ୍ଞାଲାଭ କରି ମହାକ୍ରୋଧରେ ବାୟବ୍ୟାସ୍ତ୍ର ନିକ୍ଷେପ କଲେ । ୪୩ । ହେ ମହାରାଜ ! ବୀର୍ଯ୍ୟବାନ୍ ପୃଥାପୁତ୍ର ଯୁଧିଷ୍ଠିର ଅସମ୍ଭ୍ରାନ୍ତ ଚିତ୍ତରେ ଶରାସନ ଆକର୍ଷଣପୂର୍ବକ ସ୍ୱୀୟ ଅସ୍ତ୍ର ପ୍ରଭାବରେ ବାୟବ୍ୟାସ୍ତ୍ରକୁ ସ୍ତମ୍ଭିତ କରି ବ୍ରାହ୍ମଣ ଦ୍ରୋଣଙ୍କର ସୁଦୀର୍ଘ ଶରାସନକୁ ଛେଦନ କଲେ । ତେତେବେଳେ କ୍ଷତ୍ରିୟମର୍ଦ୍ଦନ ଦ୍ରୋଣାଚାର୍ଯ୍ୟ ସତ୍ୱର ଅପର ଗୋଟିଏ ଶରାସନ ଗ୍ରହଣ କଲେ । ୪୫ । କୁରୁପୁଙ୍ଗବ ଯୁଧିଷ୍ଠିର ଶାଣିତ ଭଲ୍ଲଦ୍ୱାରା ସେହି ଶରାସନକୁ ମଧ୍ୟ ଛେଦନ କଲେ ।

ସେହି ସମୟରେ ବାସୁଦେବ କୁନ୍ତୀନନ୍ଦନଙ୍କୁ କହିଲେ, ହେ ମହାବାହୋ ଯୁଧିଷ୍ଠିର ! ଆମ୍ଭେ ଆପଣଙ୍କୁ ଯାହା କହୁଅଛୁଁ ତାହା ଶ୍ରବଣ କରନ୍ତୁ । ଆପଣ ଆଚାର୍ଯ୍ୟ ଦ୍ରୋଣଙ୍କ ସହିତ ଆଉ ଯୁଦ୍ଧ ନ କରି ନିବୃତ୍ତ ହୁଅନ୍ତୁ । କାହିଁକି ନା— ରଣସ୍ଥଳରେ ସେ ଆପଣଙ୍କୁ ଗ୍ରହଣ କରିବେ ବୋଲି ନିରନ୍ତର ଆଶା କରିଅଛନ୍ତି । ଆଚାର୍ଯ୍ୟଙ୍କ ସହିତ ଆପଣଙ୍କର ଯୁଦ୍ଧ କରିବା ଅନୁରୂପ ବୋଲି ବିବେଚନା ହେଉନାହିଁ । ୪୮ । ଯେ ଦ୍ରୋଣଙ୍କ ବିନାଶାର୍ଥ ଏହି ଜଗନ୍ମଣ୍ଡଳରେ ଜନ୍ମଗ୍ରହଣ କରିଅଛନ୍ତି ସେ ତାହାଙ୍କୁ କାଲି ପ୍ରଭାତରେ ବିନାଶ କରିବେ । ଆପଣ ଆଚାର୍ଯ୍ୟ ଦ୍ରୋଣଙ୍କୁ ପରିତ୍ୟାଗ ପୂର୍ବକ ଯେଉଁ ସ୍ଥାନରେ ରାଜା ସୁଯୋଧନ ଅବସ୍ଥାନ କରୁଅଛନ୍ତି ସେହି ସ୍ଥାନକୁ ଗମନ କରନ୍ତୁ । କାରଣ ରାଜାମାନଙ୍କର ଅନ୍ୟ ବ୍ୟକ୍ତି ସହିତ ଯୁଦ୍ଧ ନ କରି ରାଜାଙ୍କ ସହିତ ଯୁଦ୍ଧ କରିବା କର୍ତ୍ତବ୍ୟ ।

ହେ ମହାରାଜ ! ଏ ସ୍ଥଳରେ ନରଶାର୍ଦ୍ଦୂଳ ଭୀମ ଓ ଧନଞ୍ଜୟ କେବଳ ଆମ୍ଭଙ୍କୁ ସହାୟ କରି ସମସ୍ତ କୌରବଗଣଙ୍କ ସହିତ ଯୁଦ୍ଧରେ ପ୍ରବୃତ୍ତ ଅଛନ୍ତି । ଆପଣ ହସ୍ତୀ, ଅଶ୍ୱ ଓ ରଥୀସୈନ୍ୟମାନଙ୍କ ଦ୍ୱାରା ପରିବୃତ ହୋଇ ଦୁର୍ଯ୍ୟୋଧନଙ୍କ ନିକଟକୁ ଗମନ କରନ୍ତୁ । ୫୧ । ଧର୍ମ୍ମରାଜ ଯୁଧିଷ୍ଠିର ବାସୁଦେବଙ୍କର ବାକ୍ୟ ଶ୍ରବଣ କରି ମୁହୂର୍ତ୍ତକାଳ ସେହି ନିଦାରୁଣ ସମର ବିଷୟ ଚିନ୍ତା କରି ଯେଉଁଠାରେ ଶତ୍ରୁହନ୍ତା ଭୀମସେନ ଦୃଢ଼ଭାବରେ ଅବସ୍ଥାନ ପୂର୍ବକ ଦଣ୍ଡଧର ନିନାଦକାରୀ ଜଳଧରସଦୃଶ ରଥ ନିର୍ଘୋଷରେ ବସୁଧା ନିନାଦିତ କରି ବ୍ୟାଦିତାନନ କୃତାନ୍ତ ତୁଲ୍ୟ ଆପଣଙ୍କପକ୍ଷୀୟ ଯୋଦ୍ଧା-ମାନଙ୍କୁ ସଂହାର କରୁଥିଲେ ସେହି ସ୍ଥାନକୁ ଗମନପୂର୍ବକ ଅରାତିକୁଳ-ନିର୍ମ୍ମୂଳକାରୀ ଭୀମଙ୍କର ପାର୍ଶ୍ୱଦେଶ ଗ୍ରହଣ କଲେ । ସେହି ନିଶାମୁଖରେ ଦ୍ରୋଣାଚାର୍ଯ୍ୟ ମଧ୍ୟ ପାଣ୍ଡବ ଓ ପାଞ୍ଚାଳମାନଙ୍କୁ ଅସ୍ତ୍ରାନଳରେ ଦଗ୍ଧ କରିବାରେ ପ୍ରବୃତ୍ତ ହେଲେ । ୫୫ ।

---

## ୧୬୩ ଅଧ୍ୟାୟ

ସଞ୍ଜୟ କହିଲେ--ହେ ମହାରାଜ ! ଅନ୍ଧକାର ଓ ଧୂଳିପଟଳ ଦ୍ୱାରା ଭୂମଣ୍ଡଳ ସମାବୃତ ହେଲା । ସେହି ସମୟରେ ଉଭୟ ପକ୍ଷଙ୍କ ମଧ୍ୟରେ ତାଦୃଶ ଭୀଷଣ ଭୟାବହ ଯୁଦ୍ଧ ଉପସ୍ଥିତ ହୁଅନ୍ତେ ସମରସ୍ଥିତ ଯୋଦ୍ଧାମାନେ କେହି କାହାରିକୁ ଦେଖିପା'ରିଲେ ନାହିଁ । ସେହି ସମୟରେ ସେମାନେ କେବଳ ସ୍ୱ ସ୍ୱ ନାମ କୀର୍ତ୍ତନ ଓ ଅନୁମାନ ଦ୍ୱାରା ତୁରଙ୍ଗ ଓ ମନୁଷ୍ୟ ପ୍ରମଥନ କରି ଅତୀବ ଲୋମହର୍ଷଣକର ସମରରେ ପ୍ରବୃତ୍ତ ହେଲେ ।

ସେହି କାଳରେ ଆମ୍ଭ ପକ୍ଷରୁ ଦ୍ରୋଣ, କୃପ, କର୍ଣ୍ଣ ଓ ବିପକ୍ଷମାନଙ୍କ ପକ୍ଷରୁ ଭୀମସେନ ପୃଷତନନ୍ଦନ ଧୃଷ୍ଟଦ୍ୟୁମ୍ନ ଓ ସାତ୍ୟକି ଯୁଦ୍ଧ କଲେ । ସେମାନେ ସଂଗ୍ରାମରେ ପ୍ରବୃତ୍ତ ହୁଅନ୍ତେ ପରସ୍ପର ପରସ୍ପରଙ୍କ ସୈନ୍ୟଙ୍କୁ କ୍ଷୋଭିତ କଲେ ।

ହେ ମହାରାଜ ! ସୈନ୍ୟମାନେ ଧୂଳି ଓ ଅନ୍ଧକାରରେ ସମାଚ୍ଛନ୍ନ ଓ ପୂର୍ବୋକ୍ତ ମହାରଥିମାନଙ୍କ କର୍ତ୍ତୃକ ବଧ୍ୟମାନ ହୋଇ ଦିକ୍‌ବିଦିକ୍ ପଳାୟନ କଲେ । ସେମାନେ ବିହ୍ୱଳଲୋଚନ ହୋଇ ଚତୁର୍ଦ୍ଦିଗକୁ ବିଦ୍ରୁତ ଓ ଧାବମାନ ହେବା ସମୟରେ ଅନେକେ ନିହତ ହେଲେ । ଆପଣଙ୍କର ପୁତ୍ରଙ୍କର ମନ୍ତ୍ରଣା ଦୋଷରୁ ସେହି ପ୍ରଗାଢ଼ ଅନ୍ଧକାରରେ ବିମୋହିତ ହୋଇ ସହସ୍ର ସହସ୍ର ମହାରଥିମାନେ ପରସ୍ପରକୁ ପରସ୍ପର ବିନାଶ କଲେ । ଅନ୍ଧକାରରେ ଚତୁର୍ଦ୍ଦିଗ ସମାବୃତ ହୁଅନ୍ତେ କି ସେନା କି ସେନାପତିମାନେ ସମସ୍ତେ ବିମୋହିତ ହେଲେ ।

ଧୃତରାଷ୍ଟ୍ର କହିଲେ—ହେ ସଞ୍ଜୟ ! ସେହି ସମୟରେ ତୁମ୍ଭେମାନେ ପାଣ୍ଡବଗଣଙ୍କ କର୍ତ୍ତୃକ ବିଲୋଡ଼ିତ ହୋଇ ପ୍ରତିହତ ପ୍ରଭାବ ଓ ଗାଢ଼ତର ଅନ୍ଧକାରରେ ନିମଗ୍ନ ହୁଅନ୍ତେ ତୁମ୍ଭମାନଙ୍କର ବୁଦ୍ଧି କିପରି ସୁସ୍ଥିର ରହିଲା ଓ ଅନ୍ଧକାରରେ ଦିକ୍‌ସମୂହ ସମାଚ୍ଛନ୍ନ ହୁଅନ୍ତେ ଆତ୍ମପକ୍ଷୀୟ ଓ ପାଣ୍ଡବ-ପକ୍ଷୀୟମାନଙ୍କର କିପରି ପ୍ରକାଶ ହେଲା ? ୯ ।

ସଞ୍ଜୟ କହିଲେ—ହେ ମହାରାଜ ! ତଦନନ୍ତର ସେନାପତିଗଣ ଦ୍ରୋଣଙ୍କର ଆଦେଶାନୁସାରେ ହତାବଶିଷ୍ଟ ସୈନ୍ୟମାନଙ୍କୁ ସଂଗ୍ରହ କରି ପୁନର୍ବାର ବ୍ୟୂହ ରଚନା କଲେ । ୧୦ । ସେହି ନିଶାକାଳ କଳ୍ପିତ ବ୍ୟୂହର ଅଗ୍ରଭାଗରେ ଦ୍ରୋଣ, ପଶ୍ଚାଦ୍‌ଭାଗରେ ଶଲ୍ୟ ଓ ଉଭୟ ପାର୍ଶ୍ୱରେ ଅଶ୍ୱତ୍ଥାମା ଓ ସୁବଳନନ୍ଦନ ଶକୁନି ଅବସ୍ଥାନ କଲେ । ରାଜା ଦୁର୍ଯୋଧନ ସ୍ୱୟଂ ସୈନ୍ୟମାନଙ୍କୁ ରକ୍ଷା କରି ବିପକ୍ଷାଭିମୁଖକୁ ଗମନ କରିବାରେ ପ୍ରବୃତ୍ତ ହେଲେ ଓ ପଦାତିମାନଙ୍କୁ ସାନ୍ତ୍ୱନାପୂର୍ବକ କହିଲେ, ତୁମ୍ଭେମାନେ ଉତ୍କୃଷ୍ଟ ଅସ୍ତ୍ର ପରିତ୍ୟାଗ ପୂର୍ବକ ହସ୍ତରେ ପ୍ରଜ୍ୱଳିତ ପ୍ରଦୀପ ଗ୍ରହଣ କର । ୧୨ । ପଦାତିମାନେ ରାଜାଙ୍କର ଆଜ୍ଞାନୁସାରେ ପ୍ରହୃଷ୍ଟଚିତ୍ତ ହୋଇ ପ୍ରଦୀପ ଗ୍ରହଣ କଲେ । ଦେବର୍ଷି, ଗନ୍ଧର୍ବ, ବିଦ୍ୟାଧର, ଅପ୍‌ସର, ନାଗ, ଯକ୍ଷ ଓ କିନ୍ନରଗଣ କୁତୂହଳ ସହକାରେ ଗଗନମଣ୍ଡଳରେ ଅବସ୍ଥାନ ପୂର୍ବକ ପ୍ରଦୀପ ଗ୍ରହଣ କଲେ । ଦିଗ୍‌ଦେବତାମାନେ, ମହର୍ଷି ନାରଦ ଓ ପର୍ବତ କୁରୁପାଣ୍ଡବମାନଙ୍କର ହିତାନୁଷ୍ଠାନ ନିମିତ୍ତ ସୁଗନ୍ଧତୈଳସଂଯୁକ୍ତ ପ୍ରଦୀପ ସମୂହ ଅନ୍ତରୀକ୍ଷରୁ ନିକ୍ଷେପ କଲେ । ସେହି ଘୋରତର ସମରରେ

ପ୍ରବୃତ୍ତ ହୋଇଥିବା ସୈନ୍ୟସମୂହ ଅଗ୍ନିପ୍ରଭା ଓ ମହାର୍ଘ ଆଭରଣ ଓ ପ୍ରଭାଗର୍ଥ ନକ୍ଷିପ୍ତ ମାର୍ଜିତ ଦିବ୍ୟଅସ୍ତ୍ର ପ୍ରଭାବରୁ ଉଦ୍‌ଭାସିତ ହେଲେ । କୌରବଗଣ ପ୍ରତି ରଥରେ ପାଞ୍ଚ ପାଞ୍ଚ ଗୋଟି, ପ୍ରତି ଗଜରେ ତନ ତନ ଗୋଟି ଓ ପ୍ରତି ଅଶ୍ୱରେ ଗୋଟିଏ ଗୋଟିଏ ପ୍ରଦୀପ ପ୍ରଜ୍ୱଳିତ କଲେ ।

ହେ ମହାରାଜ ! ଏହିପରି କ୍ଷଣକମଧ୍ୟରେ ନିଶା ସମୟରେ ସେହି ଜ୍ୱଳିତ ଦୀପସମୂହ ଅବଳମ୍ବରେ ଆପଣଙ୍କ ପକ୍ଷୀୟ ସୈନ୍ୟମାନଙ୍କୁ ଆଲୋକ ପ୍ରଦାନ କଲା । ସୈନ୍ୟମାନେ ଦୀପ-ହସ୍ତ ପଦାତିଗଣଙ୍କ କର୍ତ୍ତୃକ ଆଲୋକଦ୍ୱାରା ସେବ୍ୟମାନ ହୋଇ ଏପରି ପ୍ରକାଶିତ ହେଲେ ଯେ ବିଦ୍ୟୁଦ୍ଦାମବିମଣ୍ଡିତ ନଭୋମଣ୍ଡଳସ୍ଥ ଜଳଦାବଳୀ ସଦୃଶ ଲକ୍ଷିତ ହେଲେ ।

ଏହିପରି ସୈନ୍ୟମାନେ ପ୍ରକାଶିତ ହୁଅନ୍ତେ ସୁବର୍ଣ୍ଣମୟ ବର୍ମଧାରୀ ଦ୍ରୋଣ ଅନଳତୁଲ୍ୟ ହୋଇ ଚତୁର୍ଦ୍ଦିଗକୁ ଉତ୍ତପିତ କରି ସେହି ସୈନ୍ୟମାନଙ୍କ ମଧ୍ୟରେ ଖିରଣ କିରଣବିକୀର୍ଣ୍ଣକାରୀ ମଧ୍ୟାହ୍ନକାଳୀନ ସୂର୍ଯ୍ୟ ସଦୃଶ ବିରାଜିତ ହେଲେ । ୧୯ । ହେ ଆଜମୀଢ଼ ! ସେହି କାଳରେ ସ୍ୱର୍ଣ୍ଣମୟ ଆଭରଣ ନିଷ୍କ, ଅଳଂକୃତ ଶରାସନ ଓ ଦୀପାବଳୀର ପ୍ରଭା ଓ ଶାଣିତ ଶସ୍ତ୍ର ସମୂହରେ ନିପତିତ ହୋଇ ପ୍ରତିଫଳିତ ହେଲା । ଲୌହମୟ ଗଦା, ଶୁଭ୍ରବର୍ଣ୍ଣ ପରିଘ, ରଥ-ଶକ୍ତି ଓ ଶକ୍ତି ଏହି ଶସ୍ତ୍ରସମୂହ ବୀରମାନଙ୍କ କର୍ତ୍ତୃକ ବିଘୂର୍ଣ୍ଣିତ ହୋଇ ପୁନଃ ପୁନଃ ପ୍ରଦୀପ ସମୂହର ପ୍ରତିପ୍ରଭା ଉତ୍ପାଦନ କଲା । ୨୧ ।

ସେହିପରି ପରସ୍ପର ସଂଗ୍ରାମରେ ପ୍ରବୃତ୍ତ କ୍ଷତ୍ରିୟମାନଙ୍କର ବିଘୂର୍ଣ୍ଣମାନ ସୁବର୍ଣ୍ଣମାଳା ଛତ୍ର, ଚାମର ଓ ପ୍ରଦୀପ୍ତ ଖଡ୍‌ଗସମୂହ ମହତୀ ଉଲ୍‌କାସଦୃଶ ଶୋଭା ଧାରଣ କଲା ।୨୨। ହେ ମହାରାଜ ! ସେହି କାଳରେ ସୈନ୍ୟମାନେ ଶସ୍ତ୍ରପ୍ରଭାବରେ ଓ ଦୀପ ପ୍ରଭାବରେ ବିରାଜିତ ହୋଇ ଅତିଶୟ ପ୍ରକାଶମାନ ହେଲେ । ୨୩ । ପରିଘ, ବର୍ମ ଓ ଶୋଣିତସିକ୍ତ ଶାଣିତ ଶସ୍ତ୍ରସମୂହ ବୀର-ଗଣଙ୍କ କର୍ତ୍ତୃକ ବିକମ୍ପିତ ହୋଇ ବର୍ଷାକାଳୀନ ବିଦ୍ୟୁତ୍ ସଦୃଶ ଅନ୍ତରୀକ୍ଷରେ ପ୍ରଦୀପ୍ତପ୍ରଭା ଉତ୍ପାଦନ କଲା । ୨୪ । ଅଭିଘାତ ବେଗରେ ପ୍ରକମ୍ପିତ ପରସ୍ପର ପ୍ରହାରରେପ୍ରବୃତ୍ତ ଓ ବିପୁଳ ବେଗରେ ଆପତିତ ବୀରମାନଙ୍କର ମୁଖମଣ୍ଡଳ ବାୟୁକମ୍ପିତ ମହାପଦ୍ମସଦୃଶ ଶୋଭମାନ ହେଲା । ୨୫ ।

ସେହି ସମୟରେ ଦାରୁମୟ ମହାଅରଣ୍ୟ ପ୍ରଚଣ୍ଡ ଦାବାନଳ ଦ୍ୱାରା ପ୍ରଜ୍ୱଳିତ ହେଲେ ଯେପରି ସୂର୍ଯ୍ୟଙ୍କର ସମଧିକ ପ୍ରଭା ପ୍ରକାଶିତ ହୁଏ, ସେହିପରି ସେହି ଗ୍ନିମରୂପ ସୈନ୍ୟଗଣ ମହାଭୟଙ୍କର ମହା ସଂଗ୍ରାମ ସ୍ଥଳରେ ପ୍ରଭାନ୍ୱିତ ହେଲେ । ୨୬ ।

ସେତେବେଳେ ପାଣ୍ଡବମାନେ ଆତ୍ମପକ୍ଷୀୟ ସୈନ୍ୟମାନଙ୍କୁ ପ୍ରକାଶିତ ଅବଲୋକନ କରି ଅବଲମ୍ବରେ ସ୍ୱପକ୍ଷୀୟ ପଦାତିମାନଙ୍କୁ ଆଦେଶ କରିବାରୁ ସେମାନେ ତତ୍‌କ୍ଷଣାତ୍ ଜ୍ୱଳନ୍ତ ପ୍ରଦୀପ ଧାରଣ କଲେ । ୨୭ । ପ୍ରତ୍ୟେକ ଗଜରେ ସାତଗୋଟି, ପ୍ରତି ରଥରେ ଦଶଗୋଟି, ପ୍ରତି ଅଶ୍ୱରେ ଦୁଇଗୋଟି ଦୀପ ପାଣ୍ଡବମାନେ ପ୍ରଜ୍ୱାଳିତ କଲେ । ତତ୍ପରେ ସେମାନଙ୍କ ଦୁଇ ପାର୍ଶ୍ୱରେ କେତେଗୋଟି ପ୍ରଦୀପ, ଧ୍ୱଜରେ କେତେଗୋଟି ଓ ବ୍ୟୂହର ଜଘନ ଦେଶରେ କେତେକଗୋଟି ପ୍ରଦୀପ ପ୍ରଜ୍ୱଳିତ ହେଲା । ୨୮ । ଏହିପରି ସମସ୍ତ ସେନାମାନଙ୍କ ମଧ୍ୟଭାଗରେ ପାର୍ଶ୍ୱ, ପଶ୍ଚାତ୍, ଓ ପୁରୋଭାଗରେ ଜ୍ୱଳିତଦୀପ-ହସ୍ତ ପଦାତିମାନେ ପାଣ୍ଡୁପୁତ୍ର ସୈନ୍ୟମାନଙ୍କୁ ପ୍ରକାଶିତ କଲେ । ପୁଣି କେତେକ ମନୁଷ୍ୟ ପ୍ରଜ୍ୱଳିତ ଦୀପ ହସ୍ତରେ ଘେନି ଉଭୟ ପକ୍ଷୀୟ ସୈନ୍ୟ ମଧ୍ୟରେ ବିଚରଣ କଲେ । ହେ ମହାରାଜ ! ଏହିପରି ଉଭୟପକ୍ଷର ସେନା ମଧ୍ୟରେ ପଦାତିଗଣ ତୁରଙ୍ଗ, ମାତଙ୍ଗ ଓ ରଥ-ସମୂହରେ ମିଳିତ ହୋଇ ପ୍ରଭାବଶାଳୀ ସୈନ୍ୟମାନଙ୍କୁ ପ୍ରକାଶିତ କରନ୍ତେ ବିପକ୍ଷ ସୈନ୍ୟମାନେ ପାଣ୍ଡବଗଣଙ୍କ କର୍ତ୍ତୃକ ସୁରକ୍ଷିତ ହୋଇ ପ୍ରଦୀପ୍ତ ହେଲେ । ଯେପରି ପ୍ରଚଣ୍ଡ କିରଣବର୍ଷୀ ଭାନୁମାନ୍ ଦିବାକରଙ୍କ କର୍ତ୍ତୃକ ଅଗ୍ନି ଉତ୍ତପ୍ତ ହୁଏ ସେହିପରି ଆପଣଙ୍କପକ୍ଷୀୟ ସୈନ୍ୟମାନେ ବିପକ୍ଷମାନଙ୍କ କର୍ତ୍ତୃକ ଅତିଶୟ ଉଦ୍ଦୀପିତ ହେଲେ । ସେହି ସମୟରେ ଅନ୍ତରୀକ୍ଷ ପୃଥିବୀ ଓ ଦିକ୍‌ସମୂହ ଏ ସମସ୍ତଙ୍କୁ ଅତିକ୍ରମ କରି ଉଭୟପକ୍ଷର ଦୀପାଲୋକର ପ୍ରଭା ପ୍ରବୃଦ୍ଧ ହେଲା । ୩୨ । ସେହି ପ୍ରଭାଦ୍ୱାରା ଉଭୟପକ୍ଷୀୟ ସୈନ୍ୟମାନେ ଅତିଶୟ ପ୍ରକାଶମାନ ହେଲେ ।

ହେ ମହାରାଜ ! ସେହି ସମୟରେ ସେହି ଦୀପପ୍ରଭା ଦ୍ୱାରା ପ୍ରବୋଧିତ ହୋଇ ନଭୋମଣ୍ଡଳସ୍ଥ ଦେବ, ଗନ୍ଧର୍ବ, ଯକ୍ଷ, ସିଦ୍ଧ ଓ ଅପ୍‌ସରାମାନେ ଏକତ୍ରିତ ହୋଇ ଆଗମନ କଲେ । ସେହି ସମୟରେ ରଣନିହତ ବୀରମାନେ

ସ୍ୱର୍ଗାରୋହଣରେ ପ୍ରବୃତ୍ତ ହେବାରୁ ଉଲ୍ଲିଖିତ ଦେବ, ଗନ୍ଧର୍ବ ଓ ଯକ୍ଷଗଣ-ଦ୍ୱାରା ସେହି ରଣସ୍ଥଳ ସମାକୁଳ ହୋଇ ଦେବତାମାନଙ୍କର ବାସସ୍ଥଳୀ ସଦୃଶ ପ୍ରତୀୟମାନ ହେଲା । ସେହି ନିଶାକାଳରେ ତୁରଙ୍ଗ, ମାତଙ୍ଗ ଓ ଶତାଙ୍ଗସ୍ଥିତ ଦୀପମାଳା ଦ୍ୱାରା ପ୍ରଦୀପ୍ତ ନିହତ ଓ ପଳାୟିତ ଅଶ୍ୱସମୂହରେ ସଙ୍କୁଳ ସଂରବ୍ଧ ଯୋଦ୍ଧାମାନଙ୍କର ସମାକୀର୍ଣ୍ଣ ତୁରଙ୍ଗ, ମାତଙ୍ଗ ଓ ରଥାଦି ଦ୍ୱାରା ବ୍ୟୂହିତ ସେହିସମସ୍ତ ସୁରାସୁର ବ୍ୟୂହ ସଦୃଶ ପ୍ରତୀୟମାନ ହେଲା ।

ହେ ମହାରାଜ ! ସେହି ରାତ୍ରିପ୍ରବୃତ୍ତ ସମର ଦୁର୍ଦ୍ଦିନତୁଲ୍ୟ ଭୟମାନ ହେଲା । ଶକ୍ତିସମୂହ ସେହି ଦୁର୍ଦ୍ଦିନର ପ୍ରଚଣ୍ଡ ବାୟୁ, ହସ୍ତୀ, ଅଶ୍ୱ ଓ ରଥ ତହିଁରେ ଭୟଙ୍କର ମେଘମଣ୍ଡଳ, ଶସ୍ତ୍ରସମୂହ ବର୍ଷଣ କର୍ତ୍ତୃକ କ୍ଷରିତ ରୁଧିର ତାହାର ଧାରା ସମ୍ପାତତୁଲ୍ୟ ହୋଇଥିଲା । ସେହି ରଣସ୍ଥଳରେ ଅନଳତୁଲ୍ୟ ପ୍ରତାପଶାଳୀ ବ୍ରାହ୍ମଣ ଶ୍ରେଷ୍ଠ ଦ୍ରୋଣ ଶରତ୍‌କାଳୀନ ପ୍ରଚଣ୍ଡ କିରଣ-ବିକୀର୍ଣ୍ଣ-କାରୀ ମାଧ୍ୟନ୍ଦିନ ସୂର୍ଯ୍ୟସଦୃଶ ପାଣ୍ଡବମାନଙ୍କୁ ସନ୍ତାପିତ କରି ବିଚରଣ କଲେ । ୩୭ ।

---

# ୧୭୪ ଅଧ୍ୟାୟ

ସଞ୍ଜୟ କହିଲେ—ହେ ମହାରାଜ ! ଅନ୍ଧକାର ଓ ଧୂଳିପଟଳ ସମାଚ୍ଛନ୍ନ ଦିକ୍‌ସମୂହ ଦୀପପ୍ରଭାରେ ପ୍ରକାଶିତ ହୁଅନ୍ତେ ବୀରମାନେ ଏକତ୍ରିତ ହୋଇ ଅସି, ପ୍ରାସପ୍ରଭୃତି ବିବିଧ ଶସ୍ତ୍ର ଧାରଣ ପୂର୍ବକ ପରସ୍ପର ବିନାଶ-ମାନସରେ ପରସ୍ପରର ଛିଦ୍ରାନ୍ୱେଷଣ କରି ପରସ୍ପର ପ୍ରତି ଅବଲୋକନ କଲେ । ୨ । ଚତୁର୍ଦ୍ଦିଗରେ ସହସ୍ର ସହସ୍ର ପ୍ରଦୀପରତ୍ନଖଚିତ ସ୍ୱର୍ଣ୍ଣଦଣ୍ଡ ଓ ଦେବଗନ୍ଧର୍ବ ଗୃହୀତ ଗନ୍ଧତୈଳ ସୁବାସିତ ସମଧିକ ଉଜ୍ଜ୍ୱଳ ଦୀପସମୂହର ପ୍ରଭାଦ୍ୱାରା ରଣସ୍ଥଳ ଗ୍ରହଗଣ ପରିପୂର୍ଣ୍ଣ ଗଗନମଣ୍ଡଳ ସଦୃଶ ଶୋଭମାନ ହେଲା । ୪ । ପୁଣି ଶତଶତ ଉଲ୍‌କା ପ୍ରଜ୍ୱଳିତ ହୁଅନ୍ତେ ରଣଭୂମି ଲୋକଶୂନ୍ୟ ଅନଳଦହ୍ୟମାନ ବସୁନ୍ଧରା ସଦୃଶ ପ୍ରତିଭାତ ହେଲା । ୫ ।

ସେହିକାଳରେ ଦୀପପ୍ରଭାଦ୍ୱାରା ଦିକ୍‌ସମୂହ ଏପରି ଆଲୋକମୟ ହେଲା ଯେ ବୋଧ ହେଲା ଯେପରିକି ବର୍ଷାକାଳର ପ୍ରଦୋଷ ସମୟରେ

ଖଦ୍ୟୋତପୁଞ୍ଜ-ପରିବୃତ ପାଦପନିଚୟର ଶୋଭାକୁ ଧାରଣ କରିଅଛି ।୭।
ହେ ମହାରାଜ ! ସେହି ଭୟଙ୍କର ନିଶାମୁଖରେ ଆପଣଙ୍କ ପୁତ୍ରଙ୍କର
ଆଦେଶାନୁସାରେ ବୀରମାନେ ପୃଥକ୍ ପୃଥକ୍ ହୋଇ ସ୍ୱ ସ୍ୱ ଅନୁରୂପ
ହସ୍ତ୍ୟାରୋହୀ ହସ୍ତ୍ୟାରୋହୀର ସହିତ, ଅଶ୍ୱାରୋହୀ ଅଶ୍ୱାରୋହୀର ସହିତ,
ରଥୀ ରଥୀର ସହିତ ଆନନ୍ଦ ସହକାରେ ସମରରେ ପ୍ରବୃତ୍ତ ହେଲେ । ୮ ।

ହେ ମହାରାଜ ! ଏହାପରେ ସେହି ଚତୁରଙ୍ଗସେନା ଘୋରତର ସମରରେ ପ୍ରବୃତ୍ତ ହୁଅନ୍ତେ ମହାବୀର ଅର୍ଜ୍ଜୁନ ସତ୍ୱର ସମସ୍ତ ପାର୍ଥିବମାନଙ୍କୁ ଅଭିଭୂତ କରି କୌରବ ସୈନ୍ୟମାନଙ୍କୁ ଦଗ୍ଧ କଲେ ।

ଧୃତରାଷ୍ଟ୍ର କହିଲେ ହେ ସଞ୍ଜୟ ! ସମରଦୁର୍ଦ୍ଧର୍ଷ ଅସହନଶୀଳ ଅର୍ଜ୍ଜୁନ ଯେତେବେଳେ କ୍ରୋଧ ହୋଇ ଆମ୍ଭମାନଙ୍କର ସୈନ୍ୟମଧ୍ୟରେ ପ୍ରବେଶ କଲେ ସେତେବେଳେ ତୁମ୍ଭମାନଙ୍କର ଅନ୍ତଃକରଣ କିପରି ହେଲା ? ତାହାଙ୍କ ପ୍ରବେଶ କାଳରେ ଆମ୍ଭପକ୍ଷୀୟ ସୈନ୍ୟମାନେ ମନରେ କି ବିଚାର କଲେ ? ଦୁର୍ଯ୍ୟୋଧନ ଅବା ତତ୍କାଳୋଚିତ କାର୍ଯ୍ୟ କିପରି ବିବେଚନା କଲା ? ପୁଣି ଆମ୍ଭପକ୍ଷୀୟ କେଉଁ କେଉଁ ଶତ୍ରୁବିମର୍ଦ୍ଦନକାରୀ ବୀରମାନେ ମହାବୀର ଧନଞ୍ଜୟଙ୍କ ସମ୍ମୁଖକୁ ଗମନ କଲେ ? ଆଉ କେଉଁ ବୀରମାନେ ଅବା ସେହି କାଳରେ ଦ୍ରୋଣାଚାର୍ଯ୍ୟଙ୍କୁ ରକ୍ଷା କଲେ ଓ କେଉଁ କେଉଁ ବୀରମାନେ ଯୁଦ୍ଧକାଳରେ ଦ୍ରୋଣଙ୍କର ଦକ୍ଷିଣ, ବାମ ଓ ପୃଷ୍ଠରକ୍ଷାରେ ନିଯୁକ୍ତ ଥିଲେ ?

ଯେତେବେଳେ ସେହି ଧନୁର୍ଦ୍ଧାରିପ୍ରବର ସମରରେ ଅପରାଜିତ ବୀର୍ଯ୍ୟବାନ୍ ନରଶ୍ରେଷ୍ଠ ଦ୍ରୋଣ ରଥ ବର୍ତ୍ମରେ ନୃତ୍ୟ କରୁକରୁ ପାଞ୍ଚାଳ ସୈନ୍ୟମଧ୍ୟରେ ପ୍ରବେଶ ପୂର୍ବକ ବିପକ୍ଷମାନଙ୍କୁ ବିନାଶ କରିବାରେ ପ୍ରବୃତ୍ତ ହେଲେ, ସେହି ସମୟରେ ବିପକ୍ଷ ପକ୍ଷୀୟ କେଉଁ କେଉଁ ବୀରମାନେ ତାହାଙ୍କର ସମ୍ମୁଖୀନ ହୋଇଥିଲେ ? ୧୫ । ଯେଉଁ ଦ୍ରୋଣ ରଣାଙ୍ଗଣରେ କ୍ରୁଦ୍ଧ ହୋଇ ଧୂମକେତୁ ସଦୃଶ ପାଞ୍ଚାଳପକ୍ଷୀୟ ରଥୀସୈନ୍ୟମାନଙ୍କୁ ଶରାନଳରେ ଦଗ୍ଧ କରୁଥିଲେ ସେ କିପରି ମୃତ୍ୟୁମୁଖରେ ନିପତିତ ହେଲେ ? ହେ ସଞ୍ଜୟ ! ତୁମ୍ଭେ କେବଳ ଶତ୍ରୁପକ୍ଷୀୟ ବୀରମାନଙ୍କୁ ସମରରେ ଅବ୍ୟଗ୍ର

ଅପରାଜିତ ଓ ହୃଷ୍ଟ ବୋଲି କହୁଅଛି ; କିନ୍ତୁ ଅସ୍ମତ୍‌ପକ୍ଷୀୟମାନଙ୍କୁ ତାହାର ବିପରୀତ ବୋଲି ପ୍ରକାଶ କରୁଅଛି । ସେମାନଙ୍କୁ ହତ, ବିଦୀର୍ଣ୍ଣ, ବିପ୍ରକୀର୍ଣ୍ଣ ହେବାର ଓ ରଥିମାନଙ୍କୁ ରଥଭ୍ରଷ୍ଟ ଓ ନାନାପ୍ରକାର ଦୁରବସ୍ଥାପନ୍ନ ହେବାର କହୁଅଛି । ୧୮ ।

ସଞ୍ଜୟ କହିଲେ—ହେ ମହାରାଜ ! ଆପଣଙ୍କ ପୁତ୍ର ରାଜା ଦୁର୍ଯ୍ୟୋଧନ ସେହି ଶବଶ୍ରୀ ସମୟରେ ସମରାଭିଳାଷୀ ଦ୍ରୋଣଙ୍କର ଅଭିପ୍ରାୟ ଅବଗତ ହୋଇ ବିକର୍ଣ୍ଣ, ଚିତ୍ରସେନ, ମହାବାହୁ, ଦୀର୍ଘବାହୁ ଓ ଦୁର୍ଦ୍ଧର୍ଷ ପ୍ରଭୃତି ବଶୀଭୂତ ଭ୍ରାତୃଗଣଙ୍କୁ ଓ ସେମାନଙ୍କର ପଦାନୁଗମାନଙ୍କୁ ଏପରି ଆଦେଶ ଦେଲେ ଯେ, ହେ ପରାକ୍ରମଶୀଳ ବୀରଗଣ ! ତୁମ୍ଭେମାନେ ସମସ୍ତେ ଯତ୍ନପର ହୋଇ ଦ୍ରୋଣଙ୍କ ପୃଷ୍ଠଦେଶ ରକ୍ଷା କର । ହୃଦିକନନ୍ଦନ କୃତବର୍ମ୍ମା ଓ ମଦ୍ରରାଜ ଶଲ୍ୟ ଏ ଦୁହେଁ କ୍ରମାନ୍ୱୟେ ଦକ୍ଷିଣ ଓ ବାମଚକ୍ର ରକ୍ଷା କରନ୍ତୁ । ୨୧ । ହତାବଶିଷ୍ଟ ତ୍ରିଗର୍ତ୍ତଦେଶୀୟ ମହାରଥମାନେ ତାହାଙ୍କ ପୁରୋଭାଗ ରକ୍ଷା କରନ୍ତୁ । ହେ ରାଜନ୍ ! ଆପଣଙ୍କ ପୁତ୍ର ଏହି କଥା କହି ସେମାନଙ୍କୁ ଆଦେଶ ଦେଲେ ଯେ ଏହି ସମୟରେ ଆଚାର୍ଯ୍ୟ ସମରରେ ଅତିଶୟ ମନୋଯୋଗୀ ହୋଇଅଛନ୍ତି । ପାଣ୍ଡବମାନେ ମଧ୍ୟ ଯତ୍ନପର ହୋଇ ଅବସ୍ଥାନ କରୁଅଛନ୍ତି । ତୁମ୍ଭେମାନେ ସମସ୍ତେ ମିଳିତ ହୋଇ ଶତ୍ରୁସଂହାରରେପ୍ରବୃତ୍ତ ଆଚାର୍ଯ୍ୟଙ୍କୁ ବିଶେଷ ଯତ୍ନ ସହକାରେ ରକ୍ଷା କର । ୨୩ । ମହାବଳଶାଳୀ ପ୍ରତାପବାନ୍ ଆଚାର୍ଯ୍ୟ ସମରରେ ଅତିଶୟ କ୍ଷିପ୍ରହସ୍ତ । ସେ କ୍ରୁଦ୍ଧ ହେଲେ ସୋମକଗଣସମବେତ ପାଣ୍ଡବମାନଙ୍କ କଥା ଦୂରେ ଥାଉ ଦେବଗଣଙ୍କୁ ମଧ୍ୟ ଜୟ କରି ପାରନ୍ତି । ୨୪ ।

ଅତଏବ ହେ ମହାରଥିଗଣ ! ତୁମ୍ଭେମାନେ ମିଳିତ ହୋଇ ବିଶେଷ ଯତ୍ନପୂର୍ବକ ମହାବଳବାନ୍ ପାଞ୍ଚାଳନନ୍ଦନ ଧୃଷ୍ଟଦ୍ୟୁମ୍ନଙ୍କଠାରୁ ଦ୍ରୋଣଙ୍କୁ ରକ୍ଷା କର । ୨୫ । ହେ ନରପତିଗଣ ! ପାଣ୍ଡବସୈନ୍ୟ ମଧ୍ୟରେ ଧୃଷ୍ଟଦ୍ୟୁମ୍ନଙ୍କ ବ୍ୟତୀତ ଆମ୍ଭେ କାହାରିକୁ ଏପରି ଦେଖୁନାହୁଁ ଯେ କି ଦ୍ରୋଣଙ୍କ ସହିତ ଯୁଦ୍ଧ କରିବାକୁ ସମର୍ଥ ହେବ । ଅତଏବ ସର୍ବ ଯତ୍ନସହକାରେ ଭରଦ୍ୱାଜ-ନନ୍ଦନ ଦ୍ରୋଣଙ୍କୁ ରକ୍ଷାକରିବା କର୍ତ୍ତବ୍ୟ । ସେ ରକ୍ଷିତ ହେଲେ ସୋମକ ଓ ସୃଞ୍ଜୟସମବେତ ପାଣ୍ଡବମାନଙ୍କୁ ବିନାଶ କରି ପାରିବୁଁ । ୨୭ । ବ୍ୟୂହ

ମୁଖରେ ସମସ୍ତ ସୃଞ୍ଜୟଗଣ ନିହତ ହେଲେ ଅଶ୍ୱତ୍ଥାମା ଧୃଷ୍ଟଦ୍ୟୁମ୍ନଙ୍କୁ ନିଶ୍ଚୟ ନିହତ କରିବେ । ୨୮ । ମହାରଥୀ କର୍ଣ୍ଣ ଅର୍ଜୁନଙ୍କୁ ପରାଜିତ କରିବେ ଓ ଆମ୍ଭେ ସ୍ୱୟଂ ବର୍ମଧାରୀ ଭୀମସେନଙ୍କୁ ରଣସ୍ଥଳରେ ପରାଜିତ କରିବୁଁ ।୨୯। ତତ୍ପରେ ତେଜୋହୀନ ଅବଶିଷ୍ଟ ପାଣ୍ଡୁପୁତ୍ରମାନଙ୍କୁ ଗୌପାଳକସୈନ୍ୟମାନେ ବଳପୂର୍ବକ ବିନାଶ କରିବେ । ଏହିପରି ହେଲେ ଦୀର୍ଘକାଳ ନିମିତ୍ତ ଆମ୍ଭର ସୁସ୍ପଷ୍ଟରୂପେ ଜୟ ହେବ । ଅତଏବ ରଣସ୍ଥଳରେ ତୁମ୍ଭେମାନେ ମହାରଥୀ ଦ୍ରୋଣଙ୍କୁ ରକ୍ଷା କର ।

ହେ ଭରତଶ୍ରେଷ୍ଠ ! ଆପଣଙ୍କ ପୁତ୍ର ରାଜା ଦୁର୍ଯ୍ୟୋଧନ ଏହି କଥା କହି ସେହି ପ୍ରଗାଢ଼ ଅନ୍ଧକାର ସମୟରେ ସୈନ୍ୟମାନଙ୍କୁ ଆଦେଶ ଦେଲେ । ସେହି ନିଶା କାଳରେ ପରସ୍ପର ବିଜୟାକାଙ୍‌କ୍ଷାରେ ଉଭୟପକ୍ଷୀୟ ସୈନ୍ୟମାନଙ୍କର ଘୋରତର ସଂଗ୍ରାମ ଆରମ୍ଭ ହେଲା । ଅର୍ଜୁନ କୌରବ ସୈନ୍ୟମାନଙ୍କୁ, କୌରବମାନେ ଅର୍ଜୁନଙ୍କୁ ପରସ୍ପର ନାନାବିଧ ଶସ୍ତ୍ରସମୂହଦ୍ୱାରା ନିପୀଡ଼ିତ କରିବାରେ ପ୍ରବୃତ୍ତ ହେଲେ । ସେହି ସମୟରେ ଦ୍ରୋଣନନ୍ଦନ ଅଶ୍ୱତ୍ଥାମା ଦ୍ରୁପଦରାଜଙ୍କୁ ଓ ଭରଦ୍ୱାଜନନ୍ଦନ ଦ୍ରୋଣ ସୃଞ୍ଜୟମାନଙ୍କୁ ସନ୍ନତପର୍ବ ଅସଂଖ୍ୟ ଶରନିକରରେ ସମାଚ୍ଛାଦିତ କଲେ ।

ହେ ମହାରାଜ ! ଏହିପରି ପାଣ୍ଡବ, ପାଞ୍ଚାଳ ଓ କୌରବସୈନ୍ୟମାନେ ପରସ୍ପର ପ୍ରହାରରେ ପ୍ରବୃତ୍ତ ହୁଅନ୍ତେ ଭୟଙ୍କର ଆର୍ତ୍ତନାଦ ସମୁତ୍‌ଥିତ ହେଲା । ସେହି ରାତ୍ରିକାଳରେ ଯେପରି ଭୟଙ୍କର ଯୁଦ୍ଧ ଉପସ୍ଥିତ ହୋଇଥିଲା ଆମ୍ଭର ପୂର୍ବପୁରୁଷଗଣ କିମ୍ୱା ଆମ୍ଭେମାନେ କେବେହେଁ ତାଦୃଶ ଯୁଦ୍ଧ ଦର୍ଶନ ବା ଶ୍ରବଣ କରିନାହୁଁ । ୩୬ ।

---

## ୧୬୫ ଅଧ୍ୟାୟ

ସଞ୍ଜୟ କହିଲେ—ହେ ମହାରାଜ ! ସର୍ବପ୍ରାଣିବିନାଶନ ଭୀଷଣ ରାତ୍ରିଯୁଦ୍ଧ ଉପସ୍ଥିତ ହୁଅନ୍ତେ ଧର୍ମପୁତ୍ର ଯୁଧିଷ୍ଠିର ପାଣ୍ଡବ, ପାଞ୍ଚାଳ ଓ ସୋମକମାନଙ୍କୁ କହିଲେ, "ହେ ବୀରଗଣ" ତୁମ୍ଭେମାନେ ଜିଘାଂସୁ ହୋଇ

ଅବଲମ୍ବନରେ ଦ୍ରୋଣଙ୍କ ପ୍ରତି ଧାବିତ ହୁଅ । ୨ । ହେ ରାଜନ୍ ! ପାଞ୍ଚାଳ ଓ ସୃଞ୍ଜୟମାନେ ଧର୍ମରାଜଙ୍କର ଏହିପରି ଆଦେଶ ପ୍ରାପ୍ତ ହୋଇ ଭୈରବ ନିନାଦ କରୁ କରୁ ଦ୍ରୋଣଙ୍କ ସମ୍ମୁଖକୁ ଗମନ କଲେ । ୩ । ତହୁଁ ଆମ୍ଭେମାନେ ମଧ୍ୟ କ୍ରୁଦ୍ଧ ହୋଇ ପରାକ୍ରମ, ଉତ୍ସାହ ଓ ଶକ୍ତିଅନୁସାରେ ଗର୍ଜନ କରୁ କରୁ ସେମାନଙ୍କର ବିପକ୍ଷରେ ଗମନ କଲୁଁ । ୪ ।

ହେ ମହାରାଜ ! ସେହି ସମୟରେ ଯୁଧିଷ୍ଠିର ଦ୍ରୋଣଙ୍କ ବିରୁଦ୍ଧରେ ଆଗମନ କରିବାକୁ ପ୍ରବୃତ୍ତ ହୁଅନ୍ତେ ଗୋଟିଏ ମତ୍ତମାତଙ୍ଗ ଯେପରି ଅପର ଗୋଟିଏ ମାତଙ୍ଗ ପ୍ରତି ଧାବିତ ହୁଏ ସେହିପରି ହୃଦିକାତ୍ମଜ କୃତବର୍ମା ତାହାଙ୍କ ପ୍ରତି ଧାବମାନ ହେଲେ । ୫ ଏହିପରି ରଣାଙ୍ଗଣସ୍ଥିତ ଶିନିକୁଳ-ନନ୍ଦନ ସାତ୍ୟକି ଚତୁର୍ଦ୍ଦିଗରେ ଶରବୃଷ୍ଟି କରନ୍ତେ କୁରୁବଂଶୀୟ ଭୂରିଶ୍ରବା ତାହାଙ୍କ ବିପକ୍ଷରେ ଧାବିତ ହେଲେ । ୬ । ପାଣ୍ଡୁପୁତ୍ର ସହଦେବ ଜିଘାଂସା-ପରବଶ ହୋଇ ଦ୍ରୋଣଙ୍କ ପ୍ରତି ଆଗମନ କରନ୍ତେ ବୈକର୍ତ୍ତନ କର୍ଣ୍ଣ ତାହାଙ୍କୁ ନିବାରଣ କରିବାରେ ପ୍ରବୃତ୍ତ ହେଲେ । ୭ । ଅନନ୍ତର ବ୍ୟାଦିତାନନ ଶମନ ଓ ମୂର୍ତ୍ତିମାନ୍ ମୃତ୍ୟୁସଦୃଶ ସମାଗତ ଦେହ ଭୀମସେନଙ୍କ ବିପକ୍ଷରେ ସ୍ୱୟଂ ରାଜା ଦୁର୍ଯ୍ୟୋଧନ ଗମନ କଲେ । ୮ । ସର୍ବଯୁଦ୍ଧବିଶାରଦ ଯୋଦ୍ଧୃ-ଶ୍ରେଷ୍ଠ ନକୁଳଙ୍କୁ ସୁବଳନନ୍ଦନ ଶକୁନି ନିବାରଣ କଲେ । ୧୦ । ମୟୂର-ବର୍ଣ୍ଣସଦୃଶ ଅଶ୍ୱଗଣଦ୍ୱାରାସମାଗତ ସମରରେପରାକ୍ରମଶାଳୀ ପ୍ରତିବିନ୍ଧ୍ୟଙ୍କୁ ଦୁଃଶାସନ ନିବାରଣ କଲେ । ୧୧ । ଶତମାୟାବିଶାରଦ ଭୀମସେନନନ୍ଦନ ରାକ୍ଷସ ଘଟୋତ୍କଚ ଆଗମନ କରନ୍ତେ ଅଶ୍ୱତ୍ଥାମା ତାହାଙ୍କୁ ନିବାରଣ କଲେ । ୧୨ । ଅନୁଚର ଓ ଅସଂଖ୍ୟ ସୈନ୍ୟସମବେତ ଦ୍ରୋଣବଧାର୍ଥୀ ମହାରଥୀ ଦ୍ରୁପଦଙ୍କୁ ବୃଷସେନ ନିବାରଣ କଲେ । ୧୩ ।

ହେ ରାଜନ୍ ! ଦ୍ରୋଣବଧାର୍ଥୀ ସତ୍ୱରସମାଗତ ବିରାଟଙ୍କୁ ନିବାରଣ କରିବା ନିମିତ୍ତ ମହାରାଜ ଶଲ୍ୟ ଅତିଶୟ କ୍ରୁଦ୍ଧ ହୋଇ ଧାବିତ ହେଲେ । ୧୪ । ନକୁଳନନ୍ଦନ ଶତାନୀକ ବେଗସହ ଆଗମନ କରନ୍ତେ ଆତ୍ମରକ୍ଷୀୟ ଚିତ୍ରସେନ ଦ୍ରୋଣଙ୍କ ରକ୍ଷାକରିବା ବାସନାରେ ମନ୍ତ୍ରର ତାହାଙ୍କର ଗତିରୋଧ କଲେ । ୧୫ । ସତ୍ୱରସମାଗତ ଯୋଧଗଣାଗ୍ରଗଣ୍ୟ ମହାରଥୀ ଅର୍ଜ୍ଜୁନଙ୍କୁ ରାକ୍ଷସେନ୍ଦ୍ର ଅଳମ୍ବୁଷ ନିବାରଣ କଲେ । ୧୬ ।

ସେହି କାଳରେ ଧନୁର୍ଦ୍ଧରାଗ୍ରଗଣ୍ୟ ଦ୍ରୋଣ ହୃଷ୍ଟଚିତ୍ତରେ ସମରରେ ଶତ୍ରୁସଂହାର କରିବାରେ ପ୍ରବୃତ୍ତ ହେଲେ । ପାଞ୍ଚାଳନନ୍ଦନ ଧୃଷ୍ଟଦ୍ୟୁମ୍ନ ତାହାଙ୍କୁ ନିବାରଣ କଲେ । ୧୭ । ହେ ମହାରାଜ ! ଏହିପରି ପାଣ୍ଡବ-ପକ୍ଷୀୟ ଅନ୍ୟାନ୍ୟ ଯେଉଁ ମହାରଥୀମାନେ ସେହି ସମୟରେ ଆଗମନ କଲେ, ସେମାନଙ୍କୁ ଆପଣଙ୍କ ପକ୍ଷୀୟ ସୈନ୍ୟମାନେ ପରାକ୍ରମ ସହି ନିବାରଣ କରିବାକୁ ଯତ୍ନବାନ୍ ହେଲେ । ୧୮ । ସେହି ନିଶୀଥ ସମୟରେ ଶତଶତ ସହସ୍ର ସହସ୍ର ଗଜାରୋହୀମାନେ ଗଜାରୋହୀମାନଙ୍କ ପ୍ରତି ବେଗରେ ନିପତିତ ହୋଇ ଯୁଦ୍ଧ କରିବାର ଦୃଷ୍ଟ ହେଲେ ।୧୯। ଅଶ୍ୱସମୂହ ପରସ୍ପର ପ୍ରତି ବେଗରେ ଆପତିତ ହୁଅନ୍ତେ ସେମାନେ ପକ୍ଷବାନ୍ ପର୍ବତସଦୃଶ ଦୃଷ୍ଟ ହେଲେ । ୨୦ । ପ୍ରାସ, ଶକ୍ତି ଓ ଋଷ୍ଟି ପ୍ରଭୃତି ବହୁବିଧ ଶସ୍ତ୍ରପାଣି ଅଶ୍ୱା-ରୋହୀମାନେ ପୃଥକ୍ ପୃଥକ୍ ହୋଇ ଘୋର ଚିତ୍କାର କରୁ କରୁ ଯୁଦ୍ଧାର୍ଥ ଅଶ୍ୱାରୋହୀମାନଙ୍କ ସହିତ ସଙ୍ଗତ ହେଲେ । ୨୧ ।

ସେହିପରି ପଦାତିମାନେ ମଧ୍ୟ ଗଦା ଓ ମୁଷଳ ପ୍ରଭୃତି ନାନାଶସ୍ତ୍ର ଗ୍ରହଣପୂର୍ବକ ସମରରେ ମିଳିତ ହେଲେ । ୨୨ । ସେ କାଳରେ ହୃଦିକ-ନନ୍ଦନ କୃତବର୍ମ୍ମା ଅତିଶୟ କ୍ରୁଦ୍ଧ ହୋଇ ବେଳାଭୂମି ଉଦ୍ଧୂତ ଅର୍ଣ୍ଣବକୁ ଅବରୋଧ କଲାପ୍ରାୟ ଧର୍ମ୍ମନନ୍ଦନ ଯୁଧିଷ୍ଠିରଙ୍କୁ ନିବାରଣ କଲେ । ୨୩ । ଯୁଧିଷ୍ଠିର ହାର୍ଦ୍ଦିକ କୃତବର୍ମ୍ମାଙ୍କୁ ପାଞ୍ଚଗୋଟି ବାଣରେ ବିଦ୍ଧ କରି "ରହ" "ରହ" ବୋଲି କହି ପୁନର୍ବାର ବିଂଶତି ବାଣରେ ତାହାଙ୍କୁ ବିଦ୍ଧ କଲେ ।

ତେତେବେଳେ କୃତବର୍ମ୍ମା ଅତିଶୟ କ୍ରୁଦ୍ଧ ହୋଇ ଭଲ୍ଲାସ୍ତ୍ରଦ୍ୱାରା ଯୁଧିଷ୍ଠିରଙ୍କ ଶରାସନ ଛେଦନପୂର୍ବକ ସାତଗୋଟି ବାଣରେ ତାହାଙ୍କୁ ବିଦ୍ଧ କଲେ । ୨୫ । ଧର୍ମ୍ମପୁତ୍ର ଯୁଧିଷ୍ଠିର ଅନ୍ୟ ଗୋଟିଏ ଶରାସନ ଗ୍ରହଣ କରି ଦଶଗୋଟି ବାଣଦ୍ୱାରା କୃତବର୍ମ୍ମାଙ୍କ ବାହୁରେ ଓ ବକ୍ଷଃସ୍ଥଳରେ ପ୍ରହାର କଲେ । ୨୬ । ହେ ମହାରାଜ ! ମଧୁବଂଶୀୟ କୃତବର୍ମ୍ମା ଯୁଧିଷ୍ଠିରଙ୍କ ଶରରେ ବିଦ୍ଧ ହୋଇ କ୍ରୋଧରେ କମ୍ପିତ ହେଲେ ଓ ସାତଗୋଟି ଶରରେ ତାହାଙ୍କୁ ନିପୀଡ଼ିତ କଲେ । ୨୭ । ପୃଥାନନ୍ଦନ କୃତବର୍ମ୍ମାଙ୍କ ଶରାସନ ଓ ଶରମୁଷ୍ଟି ଛେଦନ କରି ଶିଳାଶାଣିତ ତୀକ୍ଷ୍ଣତର ପାଞ୍ଚଗୋଟି ବାଣ ତାହାଙ୍କ ପ୍ରତି ନିକ୍ଷେପ କଲେ । ୨୮ । ପନ୍ନଗମାନେ ବଲ୍ମୀକ ମଧ୍ୟରେ ପ୍ରବେଶ

କଲାପ୍ରାୟ ଯୁଧିଷ୍ଠିରଙ୍କ ପ୍ରେରିତ ଶରସମୂହ କୃତବର୍ମ୍ମାଙ୍କର ସୁବର୍ଣ୍ଣଖଚିତ ମହାମୂଲ୍ୟ କବଚ ଭେଦ କରି ଭୂତଳରେ ପ୍ରବିଷ୍ଟ ହେଲା । କୃତବର୍ମ୍ମା ନିମେଷକ ମଧ୍ୟରେ ଅପର ଗୋଟିଏ ଶରାସନ ଗ୍ରହଣ କରି ଯୁଧିଷ୍ଠିରଙ୍କୁ ଷାଠିଏଗୋଟି ଶରଦ୍ୱାରା ଓ ତାହାଙ୍କ ସାରଥିଙ୍କୁ ନଅଗୋଟି ଶରଦ୍ୱାରା ବିଦ୍ଧ କଲେ । ୩୦ ।

ସେହି ସମୟରେ ଅପରିମେୟାତ୍ମା ଯୁଧିଷ୍ଠିର ରଥମଧ୍ୟରେ ସ୍ୱୀୟହସ୍ତ ଶରାସନ ସଂସ୍ଥାପନ ପୂର୍ବକ ସର୍ପାକୃତି ଗୋଟିଏ ଶକ୍ତି ଗ୍ରହଣ କରି କୃତବର୍ମ୍ମାଙ୍କ ପ୍ରତି ନିକ୍ଷେପ କଲେ । ୩୧ । ପାଣ୍ଡବପ୍ରେରିତ ସେହି ହେମଖଚିତ ମହାଶକ୍ତି କୃତବର୍ମ୍ମାଙ୍କ ଦକ୍ଷିଣ ଭୁଜ ଭେଦ କରି ଧରଣୀ ତଳରେ ପ୍ରବିଷ୍ଟ ହେଲା । ୩୨ ।

ସେହି ସମୟରେ ଧର୍ମ୍ମରାଜ ରଥମଧ୍ୟରୁ ଶରାସନ ଗ୍ରହଣ କରି ସନ୍ନତପର୍ବ ଶରନିକର ଦ୍ୱାରା କୃତବର୍ମ୍ମାଙ୍କୁ ସମାଚ୍ଛାଦିତ କଲେ । ୩୩ । ତଦନନ୍ତର ବୃଷ୍ଣିବଂଶୀୟ ରଥୀପ୍ରବର ବୀର କୃତବର୍ମ୍ମା ନିମେଷାର୍ଦ୍ଧ ମଧ୍ୟରେ ଯୁଧିଷ୍ଠିରଙ୍କ ଅଶ୍ୱ ଓ ସାରଥିଙ୍କୁ ଶମନଭବନକୁ ପ୍ରେରଣ କଲେ । ୩୪ । ତାହା ଦେଖି ପାଣ୍ଡବଜ୍ୟେଷ୍ଠ ଧର୍ମ୍ମରାଜ ଯୁଧିଷ୍ଠିର ଅସିଚର୍ମ ଗ୍ରହଣ କଲେ । କିନ୍ତୁ ମଧୁକୁଳୋଦ୍ଭବ କୃତବର୍ମ୍ମା ଶାଣିତ ଶରସମୂହ ଦ୍ୱାରା ତତ୍‌କ୍ଷଣାତ୍ ତାହା ଛେଦନ କଲେ । ୩୫ । ଖଡ଼୍‌ଗ ଓ ଚର୍ମ୍ମ ଛିନ୍ନ ହୁଅନ୍ତେ ଯୁଧିଷ୍ଠିର ସ୍ୱର୍ଣ୍ଣଦଣ୍ଡାନ୍ୱିତ ଦୁରାସଦ ଗୋଟିଏ ତୋମର ଗ୍ରହଣପୂର୍ବକ ଅବିଳମ୍ବେ କୃତବର୍ମ୍ମାଙ୍କ ପ୍ରତି ନିକ୍ଷେପ କଲେ । ୩୬ । ଧର୍ମ୍ମରାଜଙ୍କ ଭୁଜଚ୍ୟୁତ ସେହି ତୋମର ସହସା ଆପତିତ ହେବାର ଦେଖି କୃତବର୍ମ୍ମା ହସ୍ତଲାଘବ ଦ୍ୱାରା ଅମ୍ଳାନ ବଦନରେ ତାହାକୁ ଦୁଇଖଣ୍ଡ କରି ଛେଦନ କଲେ । ୩୭ । ପୁଣି ସେ ଅତିଶୟ କ୍ରୁଦ୍ଧ ହୋଇ ସମରସ୍ଥିତ ଧର୍ମ୍ମନନ୍ଦନଙ୍କୁ ଶତଶତ ଶରସମୂହ ଦ୍ୱାରା ସମାକୀର୍ଣ୍ଣ କରି ତୀକ୍ଷ୍ଣତର ଶରଦ୍ୱାରା ତାହାଙ୍କ କବଚକୁ ବିଦାରଣ କଲେ । ୩୮ ।

ହେ ମହାରାଜ ! ମହାତ୍ମା ଯୁଧିଷ୍ଠିରଙ୍କ କବଚ ହୃଦିକାତ୍ମଜଙ୍କ ଅସଂଖ୍ୟ ଶରଦ୍ୱାରା ସମାଚ୍ଛନ୍ନ ହୋଇ ଗଗନବିଚ୍ୟୁତ ତାରକାଜାଲସଦୃଶ

ରଣସ୍ଥଳରେ ବିଶୀର୍ଣ୍ଣ ହୋଇ ନିପତିତ ହେଲା । ୩୯ । ଧର୍ମନନ୍ଦନ ଯୁଧିଷ୍ଠିର କୃତବର୍ମାଙ୍କ କର୍ତ୍ତୃକ ରଥଶୂନ୍ୟ ଛିନ୍ନଧନ୍ୱା ବିଶୀର୍ଣ୍ଣ-ବର୍ମା ଓ ଶରବିଦ୍ଧକରରେ ନିପୀଡ଼ିତ ହୋଇ ଅବିଳମ୍ବେ ସେଠାରୁ ପ୍ରସ୍ଥାନ କଲେ । ୪୦ । କୃତବର୍ମା ଏହିପରି ଧର୍ମରାଜଙ୍କୁ ପରାଜିତ କରି ପୁନର୍ବାର ମହାତ୍ମା ଦ୍ରୋଣାଚାର୍ଯ୍ୟଙ୍କ ଚକ୍ରରକ୍ଷାରେ ପ୍ରବୃତ୍ତ ହେଲେ । ୪୧ ।

---

# ୧୬୬ ଅଧ୍ୟାୟ

ସଞ୍ଜୟ କହିଲେ—ହେ ମହାରାଜ ! କୁରୁବଂଶୀୟ ଭୂରିଶ୍ରବା ଉନ୍ନତ ଭୂମି ଉପରୁ ନିମ୍ନଭୂମିକୁ ଅବତୀର୍ଣ୍ଣ ମାତଙ୍ଗସଦୃଶ ଆପତିତ ରଥିଶ୍ରେଷ୍ଠ ଶିନିପୌତ୍ର ସାତ୍ୟକିଙ୍କୁ ନିବାରଣ କରିବାରେ ପ୍ରବୃତ୍ତ ହୁଅନ୍ତେ ସାତ୍ୟକି କ୍ରୁଦ୍ଧ ହୋଇ ପାଞ୍ଚଗୋଟି ନିଶିତବାଣ ଦ୍ୱାରା ଭୂରିଙ୍କ ହୃଦୟଦେଶ ବିଦ୍ଧ କଲେ । ତଦ୍ଦ୍ୱାରା ତାହାଙ୍କ ବକ୍ଷଃସ୍ଥଳରୁ ତତ୍କ୍ଷଣାତ୍ ରୁଧିର କ୍ଷରିତ ହେଲା । ୨ । ଅନନ୍ତର କୁରୁକୁଳୋଦ୍ଭବ ଭୂରି ମଧ୍ୟ ଦଶଗୋଟି ସୁତୀକ୍ଷ୍ଣ ଶରଦ୍ୱାରା ରଣଦୁର୍ମ୍ମଦ ସାତ୍ୟକିଙ୍କ ବକ୍ଷଃସ୍ଥଳକୁ ବିଦ୍ଧ କଲେ । ୩ । ହେ ମହାରାଜ ! ଏହିପରି ସେହି ବୀରଦ୍ୱୟ କ୍ରୋଧରେ ଆରକ୍ତନେତ୍ର ହୋଇ ଶରାସନ ବିସ୍ତାରଣପୂର୍ବକ ପରସ୍ପର ପରସ୍ପରକୁ ଶରବିଦ୍ଧକରଦ୍ୱାରା ଅତିଶୟ କ୍ଷତ ବିକ୍ଷତ କଲେ । ୪ ।

ସେହି ସମୟରେ ନିରନ୍ତର ଶରଜାଲ ବିମୋଚନକାରୀ ଯମ ଓ ଅନ୍ତକ ସଦୃଶ ରୋଷାବିଷ୍ଟ ଭୂରି ଓ ସାତ୍ୟକି ଏହି ଦୁହିଁଙ୍କର ମଧ୍ୟରେ ଭୟଙ୍କର ଶରବୃଷ୍ଟି ହେଲା । ୫ । ରଣସ୍ଥିତ ସେହି ବୀରଦ୍ୱୟ ପରସ୍ପର ପରସ୍ପରକୁ ଶରବିଦ୍ଧକରଦ୍ୱାରା ସମାଚ୍ଛନ୍ନ କରିବାରୁ ମୁହୂର୍ତ୍ତେକାଳ ସେ ଦୁହିଁଙ୍କର ସମଭାବରେ ଯୁଦ୍ଧ ହେଲା ।୬। ତତ୍ପରେ ଶିନିବଂଶାବତଂସ ସାତ୍ୟକି ଅତିଶୟ କ୍ରୁଦ୍ଧ ହୋଇ ହାସ୍ୟ କଲପ୍ରାୟ କୁରୁବଂଶୀୟ ମହାତ୍ମା ଭୂରିଙ୍କର କୋଦଣ୍ଡକୁ ଦ୍ୱିଖଣ୍ଡିତ କଲେ ।୭। ପୁଣି ସେ ତାହାଙ୍କ ବକ୍ଷଃସ୍ଥଳରେ ନଅଗୋଟି ନିଶିତ ବାଣ ଆଘାତପୂର୍ବକ "ରହ" "ରହ" ବୋଲି କହି ଶରାସନ ଆସ୍ଫାଳନ କଲେ ।୮। ଶତ୍ରୁତାପନ ଭୂରି ବଳଶାଳୀ ସାତ୍ୟକିଙ୍କ କର୍ତ୍ତୃକ ଗାଢ଼ଭାବରେ

ବଦ୍ଧ ହୋଇ ଛିନ୍ନ ଶରାସନ ପରିତ୍ୟାଗ ପୂର୍ବକ ଅପର ଗୋଟିଏ ଶରାସନ ଗ୍ରହଣ କରି ସାତ୍ୟକିଙ୍କୁ ବଦ୍ଧ କଲେ । ୯ ।

ହେ ନରନାଥ ! କୌରବ୍ୟ ଭୂରି ସାତ୍ୟକିଙ୍କୁ ବଦ୍ଧ କରି ଅମ୍ଳାନ ବଦନରେ ଗୋଟିଏ ସୁତୀକ୍ଷ୍ଣ ଭଲ୍ଲାସ୍ତ୍ର ଦ୍ୱାରା ତାହାଙ୍କର କୋଦଣ୍ଡକୁ ଦ୍ୱିଖଣ୍ଡିତ କଲେ । ୧୦ । ଶତ୍ରୁଶରଦ୍ୱାରା ଶରାସନ ଛିନ୍ନ ହୁଅନ୍ତେ ସାତ୍ୟକି କ୍ରୋଧମୂର୍ଚ୍ଛିତ ହୋଇ ଗୋଟିଏ ଶକ୍ତି ଗ୍ରହଣ ପୂର୍ବକ ମହାବେଗରେ ଭୂରିଙ୍କର ବକ୍ଷଃସ୍ଥଳରେ ପ୍ରହାର କଲେ । ୧୧ । ହେ ମହାରାଜ ! କୌରବ୍ୟ ଭୂରି ସାତ୍ୟକିଙ୍କର ସେହି ଶକ୍ତିଦ୍ୱାରା ବିଦୀର୍ଣ୍ଣ କଳେବର ହୋଇ ଦେବାତ୍ ଆକାଶଚ୍ୟୁତ ଧୂମ୍ରତେଜା ମଙ୍ଗଳଗ୍ରହ ସଦୃଶ ଉତ୍କୃଷ୍ଟ ରଥରୁ ଧରାତଳରେ ନିପତିତ ହେଲେ । ୧୨ ।

ମହାରଥୀ ଅଶ୍ୱତ୍ଥାମା ରଣସ୍ଥଳରେ ଶୌର୍ଯ୍ୟସମ୍ପନ୍ନ ଭୂରିଙ୍କୁ ନିହତ ହେବାର ନିରୀକ୍ଷଣ କରି ବେଗରେ ସାତ୍ୟକିଙ୍କ ପ୍ରତି ଧାବିତ ହେଲେ । ୧୩ । ସେ ସାତ୍ୟକିଙ୍କୁ "ରହ" "ରହ" ବୋଲି କହି ଧାରାଧର ପର୍ବତ ପୃଷ୍ଠରେ ବାରି ବର୍ଷଣ କଲାପ୍ରାୟ ସାତ୍ୟକିଙ୍କ ପ୍ରତି ଶରବୃଷ୍ଟି କଲେ । ୧୪ । ରଥିପ୍ରବର ଘଟୋତ୍କଚ ଅଶ୍ୱତ୍ଥାମାଙ୍କୁ ସାତ୍ୱତ୍‌ଧମନ ସାତ୍ୟକିଙ୍କ ରଥାଭିମୁଖକୁ ଆଗମନ କରିବାର ଦେଖି ଉଚ୍ଚୈଃସ୍ୱରରେ କହିଲେ । ୧୫ । ଆହେ ଦ୍ରୋଣପୁତ୍ର ! ଆଜ ତୁମ୍ଭେ ସେହି ସ୍ଥାନରେ ଅବସ୍ଥାନ କର ; ତୁମ୍ଭେ ଜୀବନ ଦେନି ଆମ୍ଭନିକଟରୁ ଯାଇ ପାରିବ ନାହିଁ । କାର୍ତ୍ତିକେୟ ଯେପରି ମହିଷାସୁରକୁ ସଂହାର କରିଥିଲେ ସେହିପରି ଅଦ୍ୟ ଆମ୍ଭେ ସମରାଙ୍ଗଣରେ ତୁମ୍ଭର ଯୁଦ୍ଧଶ୍ରଦ୍ଧା ଅପନୟନ କରି ବର୍ତ୍ତମାନ ତୁମ୍ଭଙ୍କୁ ବିନାଶ କରିବୁଁ । ଶତ୍ରୁହନ୍ତା ନିଶାଚର ଘଟୋତ୍କଚ ଏହି କଥା କହି କ୍ରୁଦ୍ଧ ମୃଗେନ୍ଦ୍ର ମାତଙ୍ଗ ପ୍ରତି ଧାବିତ ହେଲାପ୍ରାୟ ରଥାକ୍ଷପରିମିତ ବାଣସମୂହ ଗ୍ରହଣ କରି ଧାରାବର୍ଷୀ ଜଳଧର ସଦୃଶ ରଥୀପ୍ରବର ଅଶ୍ୱତ୍ଥାମାଙ୍କ ଉପରେ ବର୍ଷଣ କଲେ । ଦ୍ରୋଣନନ୍ଦନ ସେହି ଶରବୃଷ୍ଟି ପ୍ରାପ୍ତ ହୋଇ ଆଶୀବିଷୋପମ ଶରନିକର ଦ୍ୱାରା ତାହାକୁ ଅବଲୀଳାକ୍ରମେ ନିରାକୃତ କଲେ । ତତ୍ପରେ ସେ ବେଗଗାମୀ ମର୍ମଭେଦୀ ତୀକ୍ଷ୍ଣତର ଶତଶତ ଶରଦ୍ୱାରା ଶତ୍ରୁମର୍ଦ୍ଦନ-କାରୀ ରାକ୍ଷସେନ୍ଦ୍ର ଘଟୋତ୍କଚକୁ ସମାଚ୍ଛନ୍ନ କଲେ । ପ୍ରତାପବାନ୍ ଭୀମନନ୍ଦନ

ସମରରେ ଅଶ୍ୱତ୍ଥାମାଙ୍କ ଶରନିକର ଦ୍ୱାରା ସମାଚ୍ଛନ୍ନ ହୋଇ କଣ୍ଟକ-ଶୋଭିତ ଶଲ୍ଲକୀ ସଦୃଶ ଶୋଭାପ୍ରାପ୍ତ ହେଲେ । ସେ ପୁଣି ଅତିଶୟ କ୍ରୋଧାବିଷ୍ଟ ହୋଇ କ୍ଷୁରପ୍ର, ଅର୍ଦ୍ଧଚନ୍ଦ୍ର ନାରାଚ, ବରାହକର୍ଣ୍ଣ, ନାଳୀକ, ସୁତୀକ୍ଷ୍ଣ କର୍ଣ୍ଣ ପ୍ରଭୃତି ବଜ୍ର ଓ ଅଶନିତୁଲ୍ୟ ବହୁବିଧ ଶସ୍ତ୍ର ଓ ଶରନିଚୟ ଦ୍ୱାରା ଦ୍ରୋଣପୁତ୍ରଙ୍କର କଳେବରକୁ କ୍ଷତବିକ୍ଷତ କଲେ । ବଜ୍ରାଶନିତୁଲ୍ୟ-ଶବ୍ଦାୟମାନ ଅତିଶୟ ଦୁଃସହ ସେହି ଅସୀମ ଶସ୍ତ୍ରବୃଷ୍ଟି ମହାତେଜା ଅଶ୍ୱତ୍ଥାମାଙ୍କ ଉପରେ ନିରନ୍ତର ନିପତିତ ହୁଅନ୍ତେ, ପ୍ରଚଣ୍ଡ ବାୟୁ ମେଘମଣ୍ଡଳୀକୁ ଛିନ୍ନଭିନ୍ନ କଲାପ୍ରାୟ ଅଶ୍ୱତ୍ଥାମା ଦିବ୍ୟାସ୍ତ୍ରପ୍ରତିମନ୍ତ୍ରିତ ଭୟଙ୍କର ଶରସମୂହ ଦ୍ୱାରା ସେହି ଶସ୍ତ୍ରବୃଷ୍ଟିକୁ ନିରାକୃତ କଲେ । ତଦ୍ଦ୍ୱାରା ଏପରି ବୋଧ ହେଲା, ଯେମନ୍ତ କି ନଭୋମଣ୍ଡଳରେ ଯୋଦ୍ଧାମାନଙ୍କର ହର୍ଷବର୍ଦ୍ଧନ ଅତି ଭୟଙ୍କର ଅନ୍ୟ ଗୋଟିଏ ବାଣଯୁଦ୍ଧ ହେଉଅଛି । ସେହି ଅସ୍ତ୍ରସମୂହର ପରସ୍ପର ସଂଘର୍ଷଣରେ ସମୁତ୍ଥିତ ବିସ୍ଫୁଲିଙ୍ଗମାନ ଚତୁର୍ଦ୍ଦିଗରେ ବିକୀର୍ଣ୍ଣ ହେବାରୁ ବୋଧ ହେଲା ଯେପରି ନଭୋମଣ୍ଡଳରେ ନିଶାକାଳରେ ଇନ୍ଦ୍ର ଓ ପ୍ରହ୍ଲାଦ ସଦୃଶ ନିଶାଚର ଘଟୋତ୍କଚ ଓ ଅଶ୍ୱତ୍ଥାଙ୍କର ଘୋରତର ଯୁଦ୍ଧ ହେଲା ।

ଅନନ୍ତର ଘଟୋତ୍କଚ ଅତ୍ୟନ୍ତ କ୍ରୁଦ୍ଧ ହୋଇ କାଳାନଳ ସଦୃଶ ଦଶଗୋଟି ଶରଦ୍ୱାରା ଅଶ୍ୱତ୍ଥାମାଙ୍କର ବକ୍ଷଃସ୍ଥଳରେ ପ୍ରହାର କଲେ । ହେ ମହାରାଜ ! ମହାବଳଶାଳୀ ଆଚାର୍ଯ୍ୟନନ୍ଦନ ସମରରେ ଘଟୋତ୍କଚର ସେହି ଅତିଶୟ ଆୟତବାଣଦ୍ୱାରା ବିଦ୍ଧ ହୋଇ ସମୀରଣସଂଚାଳିତ ମହୀରୁହ ସଦୃଶ ବିଚଳିତ ହେଲେ । ସେହି କାଳରେ ସେ ବିମୋହିତ ହୋଇ ଧ୍ୱଜଯଷ୍ଟି ଅବଲମ୍ବନ ପୂର୍ବକ ଅବସ୍ଥିତ ହୁଅନ୍ତେ ଆପଣଙ୍କ ପକ୍ଷୀୟ ସୈନ୍ୟମାନେ ହାହାକାର ଶବ୍ଦ କଲେ ଓ ସେନାଧ୍ୟକ୍ଷମାନେ ତାହାଙ୍କୁ ନିହତ ବୋଲି ମନେ କଲେ । ୩୩ । ସେହି କାଳରେ ପାଞ୍ଚାଳ ଓ ସୃଞ୍ଜୟ-ମାନେ ଅଶ୍ୱତ୍ଥାମାଙ୍କୁ ତଦବସ୍ଥାପନ୍ନ ଦେଖି ସିଂହନାଦ କଲେ । ୩୪ ।

ଅନନ୍ତର ମହାବଳବାନ୍ ଅରିନ୍ଦମ ଅଶ୍ୱତ୍ଥାମା ସଂଜ୍ଞା ଲାଭ କରି ବାମକରଦ୍ୱାରା କାର୍ମ୍ମୁକର ମୁଷ୍ଟିଦେଶକୁ ଦୃଢ଼ଭାବରେ ଧାରଣ କଲେ । ୩୫ । ସେ ଅବିଳମ୍ବରେ ଯମଦଣ୍ଡସଦୃଶ ଗୋଟିଏ ଭୟଙ୍କର

ଉତ୍କୃଷ୍ଟ ଶର ଗ୍ରହଣ କରି ଆକର୍ଣ୍ଣ ସନ୍ଧାନ ପୂର୍ବକ ଘଟୋତ୍କଚଙ୍କୁ ଲକ୍ଷ୍ୟ କରି ନିକ୍ଷେପ କଲେ ।୩୬। ସେହି ଉଗ୍ରତର ସୁଦର୍ଶନୀୟ ଶର ନିଶାଚରର ହୃଦୟ ଭେଦ କରି ପୁଙ୍ଖସହ ବସୁଧାତଳରେ ପ୍ରବିଷ୍ଟ ହେଲା ।୩୭। ମହାବଳ ପରାକ୍ରାନ୍ତ ରାକ୍ଷସେନ୍ଦ୍ର ଘଟୋତ୍କଚ ସମରବିଶାରଦ ଦ୍ରୋଣନନ୍ଦନଙ୍କର ଶରଦ୍ୱାରା ଗାଢ଼ଭାବରେ ବିଦ୍ଧ ହୋଇ ରଥ-ମାଡ଼ରେ ଉପବିଷ୍ଟ ହେଲେ ।୩୮।

ସାରଥି ହିଡ଼ମ୍ବାନନ୍ଦନଙ୍କୁ ବିମୋହିତ ହେବାର ଦେଖି ସନ୍ତ୍ରାସିତ ହୋଇ ସତ୍ୱର ରଣସ୍ଥଳରୁ ରଥ ଘେନି ପ୍ରସ୍ଥାନ କଲେ ।୩୯। ମହାରଥୀ ଦ୍ରୋଣପୁତ୍ର ରାକ୍ଷସେନ୍ଦ୍ର ଘଟୋତ୍କଚଙ୍କୁ ସେହି ପ୍ରକାରେ ବିଦ୍ଧ କରି ଉଚ୍ଚୈଃସ୍ୱରରେ ମହାନାଦ କଲେ ।୪୦। ହେ ମହାରାଜ ! ସେହି ସମୟରେ ଅଶ୍ୱତ୍ଥାମା ଆପଣଙ୍କ ପୁତ୍ର ଓ ଯୋଦ୍ଧାମାନଙ୍କ କର୍ତ୍ତୃକ ପ୍ରଶଂସିତ ହୋଇ ତେଜଃପୁଞ୍ଜକଳେବରଦ୍ୱାରା ମଧ୍ୟାହ୍ନକାଳୀନ ସୂର୍ଯ୍ୟସଦୃଶ ପ୍ରଦୀପ୍ତ ହେଲେ । ଦ୍ରୋଣଙ୍କର ରଥାଭିମୁଖରେ ଯୁଦ୍ଧପ୍ରବୃତ୍ତ ଭୀମସେନଙ୍କୁ ରାଜା ଦୁର୍ଯ୍ୟୋଧନ ସ୍ୱୟଂ ନିଶିତ ଶରନିକର ଦ୍ୱାରା ବିଦ୍ଧ କଲେ ।୪୨। ଭୀମସେନ ମଧ୍ୟ ତାହାଙ୍କୁ ଦଶଗୋଟି ଶରରେ ବିଦ୍ଧ କଲେ । ଦୁର୍ଯ୍ୟୋଧନ ପୁନର୍ବାର ଭୀମସେନଙ୍କୁ ବିଂଶତି ଶରଦ୍ୱାରା ବିଦ୍ଧ କଲେ ।୪୩। ରଣାଙ୍ଗନସ୍ଥିତ ସେହି ବୀରଦ୍ୱୟ ଶରଜାଳରେ ପରସ୍ପର ସମାଚ୍ଛନ୍ନ ହୋଇ ନଭୋମଣ୍ଡଳସ୍ଥ ଜଳଦଜାଲସମାବୃତ ଚନ୍ଦ୍ର ସୂର୍ଯ୍ୟ ସଦୃଶ ଦୃଷ୍ଟ ହେଲେ ।୪୪।

ତଦନନ୍ତର କୁରୁପତି ଦୁର୍ଯ୍ୟୋଧନ ଭୀମସେନଙ୍କୁ 'ରହ ରହ' ବୋଲି କହି ପାଞ୍ଚଗୋଟି ବାଣଦ୍ୱାରା ତାହାଙ୍କୁ ବିଦ୍ଧ କଲେ ।୪୫। ସେହି ସମୟରେ ଭୀମସେନ ଦଶଗୋଟି ଶରଦ୍ୱାରା ତାହାଙ୍କର ଧ୍ୱଜ ଓ କୋଦଣ୍ଡକୁ ଖଣ୍ଡ ଖଣ୍ଡ କରି ସନ୍ନତପର୍ବ ନବତି ସଂଖ୍ୟକ ବାଣଦ୍ୱାରା ତାହାଙ୍କୁ ବିଦ୍ଧ କଲେ ।୪୬। ତହୁଁ ଦୁର୍ଯ୍ୟୋଧନ କ୍ରୁଦ୍ଧ ହୋଇ ଗୋଟିଏ ସୁମହତ୍ ଶରାସନ ଗ୍ରହଣପୂର୍ବକ ରଣସ୍ଥଳସ୍ଥିତ ସମସ୍ତ ଧନୁର୍ଦ୍ଧରମାନଙ୍କ ସମକ୍ଷରେ ଶାଣିତ ଶରସମୂହଦ୍ୱାରା ଭୀମସେନଙ୍କୁ ନିପୀଡ଼ିତ କଲେ ।୪୭।

ଭୀମସେନ ଦୁର୍ଯ୍ୟୋଧନ-ଶରାସନଚ୍ୟୁତ ସେହି ଶରସମୂହକୁ ନିରାକୃତ କରି ପଞ୍ଚବିଂଶତି କ୍ଷୁଦ୍ରକାସ୍ତ୍ରଦ୍ୱାରା ତାହାଙ୍କୁ ନିପୀଡ଼ିତ କଲେ ।

୪୮। ହେ ମହାରାଜ ! ଦୁର୍ଯୋଧନ ଅତିଶୟ କ୍ରୁଦ୍ଧ ହୋଇ କ୍ଷୁରପ୍ରାସ୍ତଦ୍ୱାରା ଭୀମସେନଙ୍କର ଶରାସନକୁ ଛେଦନ କରି ଦଶଗୋଟି ବାଣରେ ତାହାଙ୍କୁ ବିଦ୍ଧ କଲେ । ୪୯ । ମହାବଳଶାଳୀ ଭୀମସେନ ଅନ୍ୟ ଗୋଟିଏ ଶରାସନ ଗ୍ରହଣ କରି ଅବିଳମ୍ବେ ସାତଗୋଟି ନିଶିତ ଶରଦ୍ୱାରା କୁରୁରାଜଙ୍କୁ ବିଦ୍ଧ କଲେ । ୫୦ ।

ହେ ମହାରାଜ ! ଜୟପ୍ରଭାବାନ୍ୱିତ ଆପଣଙ୍କ ମହୋତ୍କଟ ପୁତ୍ର ହସ୍ତଲାଘବଦ୍ୱାରା ଭୀମସେନଙ୍କର ସେହି ଧନୁକୁ ତତ୍‌କ୍ଷଣାତ୍ ଛିନ୍ନ କଲେ । ଭୀମସେନ ଦ୍ୱିତୀୟ, ତୃତୀୟ ଓ ଚତୁର୍ଥ ଏହି କ୍ରମରେ ଯେତେଥର ଶରାସନ ଗ୍ରହଣ କଲେ କୁରୁରାଜ ଦୁର୍ଯୋଧନ ତାହାଙ୍କର ସମସ୍ତ ଧନୁକୁ ସେତେଥର କ୍ରମରେ ଛେଦନ କଲେ । ୫୨ । ସେହି ସମୟରେ ଏହିପ୍ରକାର ଶରାସନ ସମୂହ ପୁନଃ ପୁନଃ ଛିନ୍ନ ହୁଅନ୍ତେ ଭୀମସେନ ସର୍ବଲୌହମୟ ଗୋଟିଏ ସୁଦୃଢ଼ ଶକ୍ତି ଗ୍ରହଣ କରି କୁରୁରାଜଙ୍କର ଉପରକୁ ନିକ୍ଷେପ କଲେ । ୫୩ ।

ହେ ମହାରାଜ ! ନଭୋମଣ୍ଡଳର ସୀମନ୍ତରେଖା ସଦୃଶ ଅନଳ-ପ୍ରଭାସମନ୍ୱିତ ସାକ୍ଷାତ୍ ମୃତ୍ୟୁତୁଲ୍ୟପ୍ରଦୀପ୍ତ କେତୁଶିଖାସମ ସେହି ଶକ୍ତି ନିକଟସ୍ଥ ନ ହେଉଣୁଁ ଦୁର୍ଯୋଧନ ତାହାକୁ ମହାତ୍ମା ଭୀମସେନ ଓ ସମସ୍ତ ଲୋକଙ୍କ ସମକ୍ଷରେ ତିନିଖଣ୍ଡ କରି ଛେଦନ କଲେ । ୫୫ । ତାହା ଦେଖି ଭୀମସେନ ମହାପ୍ରଭାବାନ୍ୱିତ ଗୋଟିଏ ଗୁରୁତର ଗଦା ଉଦ୍‌ଭ୍ରାମିତ କରି ବେଗରେ ଦୁର୍ଯୋଧନଙ୍କର ରଥ ଉପରକୁ ନିକ୍ଷେପ କଲେ । ୫୬ ।

ହେ ମହାରାଜ ! ସେହି ଗୁରୁଭାର ଗଦା ଭୀମଙ୍କ କର୍ତ୍ତୃକ ନିକ୍ଷିପ୍ତ-ହୋଇ ତତ୍‌କ୍ଷଣାତ୍ କୁରୁରାଜଙ୍କର ସାରଥି ଓ ତୁରଙ୍ଗମାନଙ୍କୁ ବିମର୍ଦ୍ଦିତ କଲା । ୫୭ । ସାରଥି ଓ ଅଶ୍ୱମାନେ ବିନଷ୍ଟ ହେବାରୁ ଆପଣଙ୍କ ପୁତ୍ର ସେହି ହେମପରିଷ୍କୃତ ରଥରୁ ସହସା ଲମ୍ଫପ୍ରଦାନ ପୂର୍ବକ ମହାତ୍ମାନନ୍ଦନଙ୍କ ରଥରେ ଆରୋହଣ କଲେ । ୫୮ । ପରନ୍ତୁ ଭୀମସେନ ମହାରଥ ଦୁର୍ଯୋଧନଙ୍କୁ ନିହତ ମନେ କରି କୌରବମାନଙ୍କ ପ୍ରତି ତର୍ଜ୍ଜନ ପ୍ରକାଶ କରି ସିଂହନାଦ କଲେ । ୫୯ ।

ତାହା ଦେଖି ଆପଣଙ୍କ ପକ୍ଷୀୟ ସୈନ୍ୟମାନେ ମଧ୍ୟ ନୃପତି ନିହତ ହୋଇଅଛନ୍ତି ବୋଲି ମନେ କରି ହାହାକାର ରବରେ ଚିତ୍କାର କଲେ । ରାଜା ଯୁଧିଷ୍ଠିର ସେହି ଭୟବିହ୍ୱଳ କୁରୁସୈନ୍ୟମାନଙ୍କର ହାହାକାର ଧ୍ୱନି ଓ ମହାତ୍ମା ଭୀମସେନଙ୍କର ସିଂହନାଦ ଶ୍ରବଣ କରି ଦୁର୍ଯୋଧନଙ୍କୁ ନିହତ ବିବେଚନା କଲେ । ଯେଉଁଠାରେ ପୃଥାନନ୍ଦନ ବୃକୋଦର ଅବସ୍ଥାନ କରୁଥିଲେ ସେଠାକୁ ଅବିଳମ୍ବେ ଗମନ କଲେ । ପୁଣି ପାଞ୍ଚାଳ, କେକେୟ, ମତ୍ସ୍ୟ ଓ ସୃଞ୍ଜୟମାନେ ଯୁଦ୍ଧାଭିଳାଷରେ ସର୍ବପ୍ରକାର ଉଦ୍‌ଯୋଗ କରି ଦ୍ରୋଣଙ୍କ ଅଭିମୁଖକୁ ଗମନ କଲେ । ୬୩ ।

ଅନନ୍ତର ସେହି ଭୟଙ୍କର ତମିରରେ ସମଗ୍ର ସେନାଗଣ ପରସ୍ପର ପ୍ରହାରରେ ପ୍ରବୃତ୍ତ ହୁଅନ୍ତେ ବିପକ୍ଷମାନଙ୍କ ସହିତ ଦ୍ରୋଣଙ୍କର ସୁମହାନ୍ ଯୁଦ୍ଧ ଆରମ୍ଭ ହେଲା । ୬୪ ।

---

## ୧୬୭ ଅଧ୍ୟାୟ

ସଞ୍ଜୟ କହିଲେ—ହେ ମହାରାଜ ! ରଣସ୍ଥିତ ବିକର୍ତ୍ତନନନ୍ଦନ କର୍ଣ୍ଣ ଦ୍ରୋଣ ବଧନିମିତ୍ତ ସମାଗତ ସହଦେବଙ୍କୁ ନିବାରଣ କରିବାରେ ପ୍ରବୃତ୍ତ ହେଲନ୍ତି । ସହଦେବ ରାଧାନନ୍ଦନଙ୍କୁ ନଅଗୋଟି ଶରରେ ବିଦ୍ଧ କରି ପୁନର୍ବାର ଦଶଗୋଟି ସନ୍ନତପର୍ବ ଶରଦ୍ୱାରା ବିଦ୍ଧ କଲେ । ୨ । କର୍ଣ୍ଣ ମଧ୍ୟ ଆନତ ପର୍ବ ଏକଶତ ଶରଦ୍ୱାରା ସହଦେବଙ୍କୁ ବିଦ୍ଧ କରି ହସ୍ତଲାଘବପ୍ରଯୁକ୍ତ ଅବିଳମ୍ବେ ତାହାଙ୍କର ବ୍ୟାସମେତ ଶରାସନକୁ ଛେଦନ କଲେ । ୩ । ଶରାସନ ଛିନ୍ନ ହୁଅନ୍ତେ ପ୍ରତାପବାନ୍ ମାଦ୍ରୀତନୟ ଅନ୍ୟ ଗୋଟିଏ ଶରାସନ ଗ୍ରହଣ କରି ବିଂଶତି ଶରରେ କର୍ଣ୍ଣଙ୍କୁ ବିଦ୍ଧ କଲେ । ତାହା ଅଦ୍ଭୁତ ସଦୃଶ ହେଲା । ୪ ତେତେବେଳେ କର୍ଣ୍ଣ ସନ୍ନତପର୍ବ ଶରସମୂହରେ ସହଦେବଙ୍କର ଅଶ୍ୱମାନଙ୍କୁ ସଂହାର କରି ସତ୍ୱର ଭଲ୍ଲାସ୍ତ୍ରଦ୍ୱାରା ତାହାଙ୍କର ସାରଥିକୁ ନିହତ କଲେ । ୫ ।

ହେ ମହାରାଜ ! ମାଦ୍ରୀନନ୍ଦନ ସହଦେବ ରଥଭ୍ରଷ୍ଟ ହୋଇ ଅସି ଓ ଚର୍ମ୍ମ ଗ୍ରହଣ କରନ୍ତେ କର୍ଣ୍ଣ ତାହା ମଧ୍ୟ ଶରନିକରରେ ଅବଲୀଳାକ୍ରମେ

ପ୍ରତିହତ କଲେ । ୬ । ତତ୍ପରେ ସହଦେବ ସୁବର୍ଣ୍ଣଖଚିତ ମହାଭୟଙ୍କର ଗୋଟିଏ ଗୁରୁତର ଗଦା ଗ୍ରହଣ କରି ବିକର୍ତ୍ତନନନ୍ଦନଙ୍କର ରଥ ଉପରକୁ ନିକ୍ଷେପ କଲେ । ୭ । ସହଦେବଭୁଜପ୍ରେରିତ ସେହି ଗଦା ସହସା ଆଗମନ କରନ୍ତେ କର୍ଣ୍ଣ ଅସଂଖ୍ୟ ଶରଦ୍ୱାରା ତାହାକୁ ସ୍ତମ୍ଭିତ କରି ଭୂତଳରେ ନିପାତିତ କଲେ । ୮ । ସହଦେବ ଆପଣାର ଗଦା ପ୍ରତିହତ ହେବାର ଦେଖି ଅବିଳମ୍ବେ ଗୋଟିଏ ଶକ୍ତି ନିକ୍ଷେପ କଲେ । କର୍ଣ୍ଣ ସେହି ଶକ୍ତିକୁ ମଧ୍ୟ ଶରଦ୍ୱାରା ଛିନ୍ନ କଲେ । ୯ ।

ହେ ମହାରାଜ ! ଏହିପରି ଶସ୍ତ୍ରସମୂହ ବ୍ୟର୍ଥ ହୁଅନ୍ତେ, ମାଦ୍ରୀନନ୍ଦନ ସହଦେବ କର୍ଣ୍ଣଙ୍କୁ ଦୃଢ଼ରୂପରେ ସମରରେ ଅବସ୍ଥିତ ଅବଲୋକନ କରି ଅସମ୍ଭ୍ରାନ୍ତ ଚିତ୍ତରେ ରଥଶ୍ରେଷ୍ଠରୁ ଅବିଳମ୍ବେ ଲମ୍ଫପ୍ରଦାନପୂର୍ବକ ଗୋଟିଏ ରଥଚକ୍ର ଗ୍ରହଣ କରି ତାହାଙ୍କ ପ୍ରତି ନିକ୍ଷେପ କଲେ । ଉଦ୍ୟତ କାଳଚକ୍ର ସଦୃଶ ସେହି ରଥ ଚକ୍ରକୁ ସହସା ସମାଗତ ହେବାର ଦେଖି ସୂତନନ୍ଦନ ବହୁ ସହସ୍ର ଶରଦ୍ୱାରା ତାହାକୁ ଛେଦନ କଲେ । ମହାତ୍ମା ସୂତାତ୍ମଜଙ୍କ କର୍ତ୍ତୃକ ସେହି ଚକ୍ର ପ୍ରତିହତ ହୁଅନ୍ତେ ସହଦେବ ଈଶାଦଣ୍ଡ, ଯୋକ୍ତ୍ର ଓ ଯୂପକାଷ୍ଠ ପ୍ରଭୃତି ବହୁବିଧ ରଥାଙ୍ଗ ଓ ନିକୃତ୍ତ ହସ୍ତୀ କଳେବର ଓ ବହୁ-ସଂଖ୍ୟକ ମୃତ ମନୁଷ୍ୟ ଓ ଅଶ୍ୱଶରୀର ଗ୍ରହଣପୂର୍ବକ କର୍ଣ୍ଣଙ୍କ ପ୍ରତି ନିକ୍ଷେପ କଲେ । କର୍ଣ୍ଣ ଶରସମୂହ ଦ୍ୱାରା ତାହା ଭସ୍ମୀଭୂତ କଲେ ।

ଏହିପରି ମାଦ୍ରୀତନୟ ସହଦେବ କର୍ଣ୍ଣଙ୍କ ଶରନିକର ଦ୍ୱାରା ନିବାରିତ ହୋଇ ଆପଣାକୁ ନିରସ୍ତ୍ର ଜ୍ଞାନ କରି ସଂଗ୍ରାମ ପରିତ୍ୟାଗ କଲେ । କିନ୍ତୁ କର୍ଣ୍ଣ କିଞ୍ଚିତ୍‌କାଳ ତାହାଙ୍କ ପଶ୍ଚାତ୍ ଧାବମାନ ହୋଇ ହସି ହସି କହିଲେ, ହେ ବୀର ମାଦ୍ରୀନନ୍ଦନ ! ତୁମ୍ଭେ ଆମ୍ଭ ବାକ୍ୟକୁ ଅବହେଳା ନ କରି ଶ୍ରବଣ କର । ତୁମ୍ଭେ ଆପଣାର ସମତୁଲ୍ୟ ବ୍ୟକ୍ତି ସହିତ ଯୁଦ୍ଧ କରିବ । ନିଜଠାରୁ ବିଶିଷ୍ଟ ରଥୀମାନଙ୍କ ସହିତ କଦାଚ ଯୁଦ୍ଧ କରିବ ନାହିଁ । ତତ୍ପରେ ସେ ସହଦେବଙ୍କୁ ଧନୁର ଅଗ୍ରଭାଗ ଦ୍ୱାରା ସ୍ପର୍ଶ ପୂର୍ବକ ତାହାଙ୍କୁ ବ୍ୟଥିତ କରି ପୁନର୍ବାର କହିଲେ । ୧୭ । ହେ ମାଦ୍ରୀତନୟ ! ଦେଖ, ଅର୍ଜ୍ଜୁନ ପରମ ଯତ୍ନସହ କୌରବମାନଙ୍କ ସହ ଯୁଦ୍ଧ କରୁଅଛନ୍ତି । ତୁମ୍ଭେ ସେହିଠାକୁ ଗମନ କର ଅଥବା ଯଦି ଇଚ୍ଛା ହୁଏ, ତେବେ ଗୃହକୁ ଫେରିଯାଅ । ୧୮ ।

କର୍ଣ୍ଣ ହସି ହସି ଏହି କଥା କହି ପାଣ୍ଡବ ଓ ପାଞ୍ଚାଳ ସୈନ୍ୟମଧ୍ୟକୁ ଗମନ କଲେ । ୧୯ ।

ହେ ମହାରାଜ ! ଶତ୍ରୁହନ୍ତା ସତ୍ୟସନ୍ଧ ମହାରଥ କର୍ଣ୍ଣ ରଣସ୍ଥଳରେ ମୃତକଳ୍ପ ସହଦେବଙ୍କୁ କୁନ୍ତୀଙ୍କର ବାକ୍ୟକୁ ସ୍ମରଣ କରି ବିନାଶ କଲେ ନାହିଁ । ୨୦ । କିନ୍ତୁ ସହଦେବ କର୍ଣ୍ଣଙ୍କ ଶରଦ୍ୱାରା ପୀଡ଼ିତ ଓ ବାକ୍‌ଶଲ୍ୟରେ ଅନୁତାପିତ ହୋଇ ଏପରି ଦୁର୍ମନସ୍ୟ ହେଲେ ଯେ ସେ ସମୟରେ ତାହାଙ୍କର ଜୀବନରେ ହେୟଜ୍ଞାନ ହେଲା । ୨୧ । ତଦନନ୍ତର ସେ ସତ୍ୱର ରଣସ୍ଥିତ ପାଞ୍ଚାଳକୁଳନନ୍ଦନ ରଥିପ୍ରବର ମହାତ୍ମା ଜନମେଜୟଙ୍କ ରଥରେ ଆରୋହଣ କଲେ । ୨୨ ।

ସେହି କାଳରେ ଦ୍ରୋଣାଚାର୍ଯ୍ୟଙ୍କ ପ୍ରତିପକ୍ଷରେ ସମାଗତ ସସୈନ୍ୟ ଧନୁର୍ଦ୍ଧର ବିରାଟ ନୃପତିଙ୍କୁ ମଦ୍ରରାଜ ଶଲ୍ୟ ଶରସମୂହ ଦ୍ୱାରା ସମାଚ୍ଛାଦିତ କଲେ । ୨୩ । ହେ ମହାରାଜ ! ପୂର୍ବକାଳରେ ଦେବରାଜ ଇନ୍ଦ୍ର ଓ ଜମ୍ଭାସୁରର ଯେପରି ଯୁଦ୍ଧ ହୋଇଥିଲା ରଣସ୍ଥିତ ଦୃଢ଼ଧନ୍ୱା ସେହି ବୀରଦ୍ୱୟଙ୍କ ମଧ୍ୟରେ ସେହିପରି ଯୁଦ୍ଧ ହେଲା । ୨୪ ।

ହେ ରାଜନ୍ ! ମଦ୍ରରାଜ ଶଲ୍ୟ ସତ୍ୱର ହୋଇ ସେନାପତି ବିରାଟଙ୍କୁ ବେଗ ସହକାରେ ଆନତପର୍ବ ଶରସମୂହଦ୍ୱାରା ପ୍ରହାର କଲେ । ୨୫ । ତେତେବେଳେ ମତ୍ସ୍ୟରାଜ ବିରାଟ ଶଲ୍ୟଙ୍କୁ ନଅଗୋଟି ନିଶିତ ଶରଦ୍ୱାରା ପ୍ରତିବିଦ୍ଧ କରି ପୁନର୍ବାର ତିନିସପ୍ତତି ଓ ପରେ ଏକଶତ ଶରଦ୍ୱାରା ବିଦ୍ଧ କଲେ । ୨୬ । ଅନନ୍ତର ମଦ୍ରରାଜ ବିରାଟ ରାଜାଙ୍କର ଚାରିଗୋଟି ଅଶ୍ୱଙ୍କୁ ବିନାଶପୂର୍ବକ ଦୁଇଗୋଟି ବାଣଦ୍ୱାରା ସାରଥି ଓ ଧ୍ୱଜଦଣ୍ଡକୁ ଛେଦନ କରି ଭୂତଳରେ ନିପାତିତ କଲେ । ୨୭ । ମହୀପତି ବିରାଟ ଅଶ୍ୱ ଓ ସାରଥିବିହୀନ ରଥରୁ ଲମ୍ଫ ପ୍ରଦାନପୂର୍ବକ ଭୂତଳରେ ଅବସ୍ଥିତ ହୋଇ ଶରାସନ ବିସ୍ତାରିତ କରି ଶାଣିତ ଶରସମୂହ ନିକ୍ଷେପ କଲେ । ୨୮ ।

ତେତେବେଳେ ଶତାନୀକ ବିରାଟଙ୍କୁ ରଥଭ୍ରଷ୍ଟ ଅବଲୋକନ କରି ସର୍ବଲୋକଙ୍କ ସମକ୍ଷରେ ଅବିଳମ୍ବେ ରଥାରୋହଣପୂର୍ବକ ସେଠାରେ ଉପସ୍ଥିତ ହେଲେ । ୨୯ । ମଦ୍ରରାଜ ଶଲ୍ୟ ମହାସମରରେ ସମାଗତ ଶତାନୀକଙ୍କୁ

ବହୁସଂଖ୍ୟକ ବାଣଦ୍ୱାରା ବିଦ୍ଧ କରି ତତ୍‌କ୍ଷଣାତ୍ ନିହତ କଲେ । ୩୦ । ମହାବୀର ଶତାନୀକ ନିହତ ହେବାରୁ ରଥିସତ୍ତମ ବିରାଟ ଧ୍ୱଜମାଳା-ସୁଶୋଭିତ ଆପଣା ଭ୍ରାତାଙ୍କର ସେହି ରଥରେ ଆରୋହଣ କଲେ ।୩୧।

ଅନନ୍ତର ବିରାଟ ନୟନଦ୍ୱୟ ବିସ୍ତାରଣପୂର୍ବକ କ୍ରୋଧଭରରେ ଦ୍ୱିଗୁଣ ବିକ୍ରମ ପ୍ରକାଶପୂର୍ବକ ମଦ୍ରରାଜଙ୍କର ରଥକୁ ଅବଲମ୍ବେ ଶରସମୂହ ଦ୍ୱାରା ସମାଚ୍ଛାଦିତ କଲେ । ୩୨ । ସେତେବେଳେ ମଦ୍ରରାଜ ଶଲ୍ୟ କ୍ରୋଧା-ବିଷ୍ଟ ହୋଇ ଆନତପର୍ବ ଏକଶତ ଶରଦ୍ୱାରା ସେନାପତି ବିରାଟଙ୍କ ବକ୍ଷଃ-ସ୍ଥଳରେ ପ୍ରହାର କଲେ । ୩୩ ।

ହେ ଭରତଶ୍ରେଷ୍ଠ ମହାରାଜ ! ନରପତି ବିରାଟ ଶଲ୍ୟଙ୍କ ଶରଦ୍ୱାରା ଗାଢ଼ଭାବରେ ବିଦ୍ଧ ହୋଇ ଅତିଶୟ ବିମୂଢ଼ାବସ୍ଥାରେ ରଥମଧ୍ୟରେ ଉପ-ବେଶନ କଲେ । ତହୁଁ ସାରଥି ଶରବିକ୍ଷତ ମତ୍ସ୍ୟରାଜଙ୍କୁ ସେଠାରୁ ଘେନି ପ୍ରସ୍ଥାନ କଲେ । ତଦନନ୍ତର ସେହି ନିଶାକାଳରେ ମହତୀ ମତ୍ସ୍ୟସେନା ସମରଶୋଭୀ ଶଲ୍ୟଙ୍କର ଶତ ଶତ ଶରରେ ବଧ୍ୟମାନ ହୋଇ ନାନାଦିଗକୁ ପଳାୟନ କଲେ । ହେ ମହାରାଜ ! ବାସୁଦେବ ଓ ଧନଞ୍ଜୟ ସେହି ସୈନ୍ୟମାନଙ୍କୁ ପଳାୟନପର ଦେଖି ମଦ୍ରରାଜ ଶଲ୍ୟ ଯେଉଁଠାରେ ଅବସ୍ଥାନ କରୁଥିଲେ ସେହି ସ୍ଥାନକୁ ଗମନ କଲେ ।

ସେହି ସମୟରେ ରାକ୍ଷସେନ୍ଦ୍ର ଅଳମ୍ବୁଷ ତୁରଙ୍ଗବଦନ ଭୀଷଣଦର୍ଶନ ପିଶାଚଗଣଯୋଜିତ ଲୋହିତାର୍ଦ୍ର ପତାକାଶୋଭିତ ରକ୍ତମାଳାବିଭୂଷିତ ଋକ୍ଷଚର୍ମସମାବୃତ ଅଷ୍ଟଚକ୍ରସମନ୍ୱିତ କୃଷ୍ଣବର୍ଣ୍ଣ ଲୌହମୟ ଗୋଟିଏ ବୃହତ୍ ରଥରେ ସମାରୂଢ଼ ହୋଇ କୃଷ୍ଣାର୍ଜୁନଙ୍କ ପ୍ରତି ଧାବମାନ ହେଲେ । ୩୯ । ସେହି ରଥର ଉଚ୍ଛ୍ରିତ ଧ୍ୱଜଦଣ୍ଡୋପରି ବିରାଜମାନ ବିଚିତ୍ରପକ୍ଷ ବିକୃତାକ୍ଷଶୋଭିତ ଭୟଙ୍କରମୂର୍ତ୍ତି ଗୋଟିଏ ଗୃଧ୍ର ବିକୃତ ସ୍ୱରରେ ଚିତ୍କାର କରୁଥିଲା । ୪୦ ।

ହେ ମହାରାଜ ! ଅଞ୍ଜନପୁଞ୍ଜସଦୃଶ ସେହି ନିଶାଚର ତଦ୍ରୂପ ରଥବର ଦ୍ୱାରା ପ୍ରଭାବସମ୍ପନ୍ନ ହୋଇ ଶୈଳରାଜ ସମୀରଣର ଗତିରୋଧ କଲା ପ୍ରାୟ ସମାଗତ ଅର୍ଜୁନଙ୍କ ମସ୍ତକ ଉପରେ ଶତଶତ ଶର ବିକୀର୍ଣ୍ଣ କରି

ତାହାଙ୍କର ଗତିରୋଧ କଲା । ସେହି ସମୟରେ ସେହି ନର ଓ ନିଶାଚର ଏ ଦୁହିଁଙ୍କ ମଧ୍ୟରେ ଏପରି ଘୋରତର ଯୁଦ୍ଧ ଆରମ୍ଭ ହେଲା ଯେ ତାହା ଗୃଧ୍ର, କଙ୍କ, କାକ, ପେଚକ ଓ ଶୃଗାଳାଦିମାନଙ୍କର ହର୍ଷୋତ୍ପାଦକ ଓ ଦର୍ଶକ-ମାନଙ୍କର ପ୍ରୀତିଜନକ ହେଲା । ୪୩ ।

ଅନନ୍ତର ଅର୍ଜୁନ ତାହାକୁ ଏକଶତ ଶରଦ୍ୱାରା ତାଡ଼ିତ କରି ନଅଗୋଟି ନିଶିତ ଶରଦ୍ୱାରା ତାହାର ଧ୍ୱଜକୁ, ତିନିଗୋଟି ଶରରେ ସାରଥିକୁ, ତିନିଗୋଟି ଶରଦ୍ୱାରା ତ୍ରିବେଣୁକୁ, ଗୋଟିଏ ଶରରେ ଧନୁକୁ ଓ ଚାରିଗୋଟି ଶରରେ ତାହାର ଅଶ୍ୱଚତୁଷ୍ଟୟକୁ ଛେଦନ କଲେ । ସେତେବେଳେ ରାକ୍ଷସ ଅଳମ୍ବୁଷ ପୁନର୍ବାର ଜ୍ୟାଯୁକ୍ତ ଅନ୍ୟଗୋଟିଏ ଶରାସନ ଗ୍ରହଣ କଲା । ମହାବୀର ଅର୍ଜୁନ ଅବିଳମ୍ବେ ତାହାକୁ ମଧ୍ୟ ଛେଦନ କଲେ । ଅନନ୍ତର ସେ ରଥଭ୍ରଷ୍ଟ ହୋଇ ଖଡ୍‌ଗ ଉଦ୍ୟତ କରନ୍ତେ ଅର୍ଜୁନ ତାହାକୁ ଗୋଟିଏ ଶରଦ୍ୱାରା ଦ୍ୱିଖଣ୍ଡିତ କରି ସୁଶାଣିତ ଚାରିଗୋଟି ଶରରେ ସେହି ରାକ୍ଷସକୁ ନିପୀଡ଼ିତ କଲେ । ରାକ୍ଷସେନ୍ଦ୍ର ଅଳମ୍ବୁଷ ଅର୍ଜୁନଙ୍କ ଶର ପ୍ରହାରରେ ଅତିଶୟ ବିଦ୍ଧ ହୋଇ ପ୍ରାଣଭୟରେ ସମର ପରିତ୍ୟାଗପୂର୍ବକ ସେଠାରୁ ପଳାୟନ କଲା । ୪୭ ।

ସେତେବେଳେ ଧନଞ୍ଜୟ ତାହାକୁ ପରାଜିତ କରି ହସ୍ତି, ଅଶ୍ୱ ଓ ମନୁଷ୍ୟ ମାନଙ୍କ ପ୍ରତି ଅସଂଖ୍ୟ ଶରଜାଲ ବିସ୍ତାରପୂର୍ବକ ତ୍ୱରାସହକାରେ ଦ୍ରୋଣଙ୍କ ସମୀପକୁ ଗମନ କଲେ । ୪୮ । ହେ ମହାରାଜ ! ସୈନିକମାନେ ଯଶସ୍ୱୀ ପାଣ୍ଡୁନନ୍ଦନଙ୍କ କର୍ତ୍ତୃକ ବଧ୍ୟମାନ ହୋଇ ସମୀରଣ ଭଗ୍ନୀକୃତ ମହୀରୁହ ସଦୃଶ ଭୂତଳରେ ନିପତିତ ହେଲେ । ୪୯ । ଏହି ପ୍ରକାରେ ସେମାନେ ମହାତ୍ମା ଫାଲ୍‌ଗୁନଙ୍କ କର୍ତ୍ତୃକ ନିହତ ହୁଅନ୍ତେ ଆପଣଙ୍କ ପୁତ୍ରମାନଙ୍କର ସୈନ୍ୟମାନେ ପଳାୟନରେ ପ୍ରବୃତ୍ତ ହେଲେ । ୫୦ ।

---

## ୧୭୮ ଅଧ୍ୟାୟ

ସଞ୍ଜୟ କହିଲେ—ହେ ମହାରାଜ ! ନକୁଳନନ୍ଦନ ଶତାନୀକ ବେଗସହ ଶରାନଳଦ୍ୱାରା କୌରବ ସୈନ୍ୟମାନଙ୍କୁ ଦଗ୍ଧ କରନ୍ତେ ଆପଣଙ୍କ

ପୁତ୍ର ଚିତ୍ରସେନ ତାହାଙ୍କୁ ନିବାରଣ କଲେ । ୧ । ସେତେବେଳେ ଶତାନୀକ ନିଶିତାସ୍ତ୍ର ଦ୍ୱାରା ଚିତ୍ରସେନଙ୍କୁ ଅତିଶୟ ପୀଡ଼ିତ କରନ୍ତେ ସେ ଦଶଗୋଟି ନିଶିତ ଶରଦ୍ୱାରା ଶତାନୀକଙ୍କୁ ବିଦ୍ଧ କରି ପୁନର୍ବାର ନଅଗୋଟି ଶାଣିତ ବାଣଦ୍ୱାରା ତାହାଙ୍କର ବକ୍ଷଃସ୍ଥଳକୁ ବିଦ୍ଧ କଲେ ।୩। ତାହା ଦେଖି ନକୁଳ-ନନ୍ଦନ ନତପର୍ବ ଶରନିକର ଦ୍ୱାରା ଚିତ୍ରସେନଙ୍କ ବିଚିତ୍ର ବର୍ମକୁ ଛେଦନ କରି ଭୂତଳରେ ପାତିତ କଲେ । ଏହା ଅଦ୍‌ଭୁତ ସଦୃଶ ହେଲା । ୪ । ହେ ମହାରାଜ ! ଆପଣଙ୍କ ପୁତ୍ର ଚିତ୍ରସେନ ବର୍ମ-ଚ୍ୟୁତ ହୋଇ ନିର୍ମୋକ-ନିର୍ମୁକ୍ତ ଭୁଜଙ୍ଗ ସଦୃଶ ଶୋଭାଧାରଣ କଲେ । ୫ ।

ତଦନନ୍ତର ନକୁଳନନ୍ଦନ ନିଶିତ ଶରସମୂହ ଦ୍ୱାରା ସମରରେ ଯତ୍ନପରାୟଣ ଚିତ୍ରସେନଙ୍କର ଧ୍ୱଜ ଓ ଶରାସନକୁ ଛେଦନ କଲେ । ୬ । ମହାରଥ ଚିତ୍ରସେନ ରଣସ୍ଥଳରେ ବର୍ମଶୂନ୍ୟକଳେବର ଓ ଛିନ୍ନକାର୍ମୁକ ହୋଇ କ୍ରୋଧସହ ଶତ୍ରୁବିଦାରଣକ୍ଷମ ଅନ୍ୟ ଗୋଟିଏ ଶରାସନ ଗ୍ରହଣ ପୂର୍ବକ ଅବିଳମ୍ବେ ନଅଗୋଟି ଶରଦ୍ୱାରା ଶତାନୀକଙ୍କୁ ବିଦ୍ଧ କଲେ । ୮ । ତହୁଁ ନରୋତ୍ତମ ଶତାନୀକ ଅତିଶୟ କ୍ରୁଦ୍ଧ ହୋଇ ଚିତ୍ରସେନଙ୍କର ଅଶ୍ୱ ଚତୁଷ୍ଟୟ ସହ ସାରଥିକୁ ସଂହାର କରନ୍ତେ ବଳବାନ୍ ମହାରଥୀ ଚିତ୍ରସେନ ରଥରୁ ଲମ୍ଫପ୍ରଦାନ ପୂର୍ବକ ଭୂତଳରେ ଅବସ୍ଥିତ ହୋଇ ନକୁଳନନ୍ଦନଙ୍କୁ ବିଂଶତି ଶରରେ ନିପୀଡ଼ିତ କଲେ । ୧୦ । ସେ ଏପରି କାର୍ଯ୍ୟରେ ପ୍ରବୃତ୍ତ ହୁଅନ୍ତେ ନକୁଳନନ୍ଦନ ଅର୍ଦ୍ଧଚନ୍ଦ୍ର ବାଣଦ୍ୱାରା ତାହାଙ୍କର ରତ୍ନବିଭୂଷିତ ଶରାସନକୁ ଛେଦନ କଲେ । ୧୧ । ଚିତ୍ରସେନ ଅଶ୍ୱ, ରଥ, ସାରଥି ଓ ଶରାସନବିହୀନ ହୋଇ ସତ୍ୱର ମହାତ୍ମା ହାର୍ଦ୍ଦିକ୍ୟଙ୍କ ରଥରେ ଆରୋହଣ କଲେ । ୧୨ ।

ସେହି ସମୟରେ କର୍ଣ୍ଣନନ୍ଦନ ବୃଷସେନ ଦ୍ରୋଣଙ୍କ ବଧନିମିତ୍ତ ସମାଗତ ସସୈନ୍ୟ ମହାରଥୀ ଦ୍ରୁପଦଙ୍କୁ ଶତଶତ ଶରଦ୍ୱାରା ସମାକୀର୍ଣ୍ଣ କରି ତାହାଙ୍କ ପ୍ରତି ଧାବିତ ହେଲେ । ୧୩ । ହେ ମହାରାଜ ! ପାଞ୍ଚାଳରାଜ ଯଜ୍ଞସେନ ମଧ୍ୟ ଷଷ୍ଟି ସଂଖ୍ୟକ ଶରଦ୍ୱାରା ମହାରଥୀ ବୃଷସେନଙ୍କର ବାହୁ-ଦ୍ୱୟକୁ ଓ ବକ୍ଷଃସ୍ଥଳକୁ ବିଦ୍ଧ କଲେ । ୧୪ । ତହୁଁ କର୍ଣ୍ଣତନୟ ବୃଷସେନ

ଅତିଶଯ୍ୟ ରୋଷାବିଷ୍ଟ ହୋଇ ବହୁସଂଖ୍ୟକ ତୀକ୍ଷ୍ଣ ବାଣଦ୍ୱାରା ରଥସ୍ଥିତ ଦ୍ରୁପଦରାଜଙ୍କର ବକ୍ଷଃସ୍ଥଳକୁ ପ୍ରହାର କଲେ । ୧୫ ।

ସେହି କାଳରେ ସେହୁହେଁ ପରସ୍ପରଙ୍କ ଶରଜାଲରେ ପରସ୍ପର ନିପୀଡ଼ିତ ଓ ଶରସମାଚିତକଳେବର ହୋଇ କଣ୍ଟକାବୃତ ଶଲ୍ଲକୀ ସଦୃଶ ଶୋଭମାନ ହେଲେ । ୧୬ । ତପ୍ତକାଞ୍ଚନନିଭ ବିଚିତ୍ରକଳେବରଧାରୀ ସେହି ବୀରଦ୍ୱୟ ପରସ୍ପର ନିକ୍ଷିପ୍ତ ନିର୍ମଳାଗ୍ର ସୁବର୍ଣ୍ଣପୁଙ୍ଖାନ୍ୱିତ ଶରନିକର ଦ୍ୱାରା ଛିନ୍ନବର୍ମା ଓ ରୁଧିରକ୍ଲିନ୍ନ ହୋଇ ରଣାଙ୍ଗଣରେ ବିରାଜିତ ଥିବା ସମୟରେ ବୋଧ ହେଲା ଯେପରି ଅଦ୍ଭୁତ କଳ୍ପବୃକ୍ଷ ଓ ପ୍ରଫୁଲ୍ଲ କିଂଶୁକ ବୃକ୍ଷଦ୍ୱୟ ଶୋଭା ପାଉଅଛି । ୧୮ । ତଦନନ୍ତର ବୃଷସେନ ଦ୍ରୁପଦଙ୍କୁ ନଅଗୋଟି ଶରରେ ବିଦ୍ଧ କରି ତତ୍ପରେ ତାହାଙ୍କୁ ସପ୍ତତି ଶରଦ୍ୱାରା ବିଦ୍ଧ କଲେ । ୧୯ ।

ହେ ମହାରାଜ ! ଏହିପରି କର୍ଣ୍ଣନନ୍ଦନ ସହସ୍ର ସହସ୍ର ଶରଜାଲ ବିସ୍ତାର କରି ବର୍ଷମାଣ ଜଳଧର ତୁଲ୍ୟ ଶୋଭମାନ ହେଲେ । ୨୦ । ସେତେବେଳେ ମହାବୀର ଦ୍ରୁପଦ କ୍ରୁଦ୍ଧ ହୋଇ ନିଶିତ ଭଲ୍ଲଦ୍ୱାରା ବୃଷସେନର ଶରାସନକୁ ଦ୍ୱିଖଣ୍ଡିତ କଲେ । ୨୧ । ମହାବୀର କର୍ଣ୍ଣନନ୍ଦନ ତତ୍କ୍ଷଣାତ୍ ଗୋଟିଏ ସୁବର୍ଣ୍ଣଭୂଷିତ ଶରାସନ ଗ୍ରହଣ ପୂର୍ବକ ତୂଣୀରରୁ ସୁବର୍ଣ୍ଣବିଦ୍ଧ ଗୋଟିଏ ନିଶିତ ଭଲ୍ଲ ବହିଷ୍କୃତ କରି ସେହି ଶରାସନରେ ସଂଯୋଜନ ପୂର୍ବକ ସୋମକମାନଙ୍କୁ ଭୀତ କରି ଦ୍ରୁପଦଙ୍କ ପ୍ରତି ନିକ୍ଷେପ କଲେ । ୨୩ । ବୃଷସେନନିକ୍ଷିପ୍ତ ଭଲ୍ଲ ଦ୍ରୁପଦରାଜଙ୍କର ବକ୍ଷଃସ୍ଥଳ ଭେଦ କରି ଧରାତଳରେ ପ୍ରବିଷ୍ଟ ହେଲା । ମହାବୀର ଯଜ୍ଞସେନ ସେହି ଭଲ୍ଲର ଆଘାତରେ ମୋହପ୍ରାପ୍ତ ହେଲେ । ସାରଥି ଆପଣାର କର୍ତ୍ତବ୍ୟ ସ୍ମରଣ କରି ତାହାଙ୍କୁ ସେ ସ୍ଥାନରୁ ଘେନି ପଳାୟନ କଲା ।

ହେ ରାଜେନ୍ଦ୍ର ! ଏହିପରି ସେହି ମହାରଥ ପାଞ୍ଚାଳରାଜ ସଂଗ୍ରାମ ପରିତ୍ୟାଗ କରନ୍ତେ ସେହି ଭୟଙ୍କର ନିଶୀଥ ସମୟରେ ଦ୍ରୁପଦ ସୈନ୍ୟମାନେ ବୃଷସେନଙ୍କର ଶରସମୂହ ଦ୍ୱାରା ଛିନ୍ନବର୍ମା ହୋଇ ପଳାୟନ କରିବାକୁ ଉଦ୍ୟତ ହେଲେ । ୨୬ । ସେମାନଙ୍କର ପଳାୟନ କାଳରେ

ହସ୍ତ-ଚ୍ୟୁତ ପ୍ରଦୀପସମୂହ ଇତସ୍ତତଃ ପ୍ରଜ୍ୱଳିତ ହେବାରୁ ରଣଭୂମି ଗ୍ରହଗଣ-ସମାକୀର୍ଣ୍ଣ ମେଘଶୂନ୍ୟ ନଭୋମଣ୍ଡଳସଦୃଶ ଦୀପ୍ତିପ୍ରାପ୍ତ ହେଲା । ୨୭ । ପୁଣି ନିପତିତ ଅଙ୍ଗଦସମୂହଦ୍ୱାରା ରଣ-ଭୂମି ବିଦ୍ୟୁତ୍‌ମଣ୍ଡିତ ବାରିଧର ସଦୃଶ ଶୋଭାଧାରଣ କଲା । ୨୮ ।

ତାରକାସୁରର ସମର କାଳରେ ସୁରାଗମାନେ ଯେପରି ଇନ୍ଦ୍ରଙ୍କ ଭୟରେ ଭୀତ ହୋଇ ପଳାୟନ କରିଥିଲେ, ସେହିପରି ସୋମକମାନେ ବୃଷସେନଙ୍କ ତ୍ରାସରେ ଚତୁର୍ଦ୍ଦିଗକୁ ପଳାୟନ କଲେ । ୨୯ । ସମରସ୍ଥିତ ସୋମକମାନେ ବୃଷସେନଙ୍କ କର୍ତ୍ତୃକ ନିପୀଡ଼ିତ ହୋଇ ସେହି ଗାଢ଼ତର ତମିରାଚ୍ଛନ୍ନ ନିଶାକାଳରେ ପଳାୟନ କରୁଥିଲେ ହେଁ ଦୀପାଲୋକଦ୍ୱାରା ସେମାନେ ଅବଭାସିତ ହୋଇ ପ୍ରକାଶମାନ ହୋଇଥିଲେ । ୩୦ । କର୍ଣ୍ଣନନ୍ଦନ ସୋମକମାନଙ୍କୁ ପରାଜିତ କରି ମଧ୍ୟାହ୍ନକାଳୀନ ସୂର୍ଯ୍ୟଙ୍କ ସାଦୃଶ୍ୟ ଧାରଣ କଲେ । ୩୧

ହେ ମହାରାଜ ! ସେହି ସମୟରେ ଆପଣଙ୍କ ପକ୍ଷୀୟ ଓ ବିପକ୍ଷୀୟ ସହସ୍ର ସହସ୍ର ରାଜାମାନଙ୍କ ମଧ୍ୟରେ ବୃଷସେନ ପ୍ରଦୀପ୍ତ ଅଗ୍ନିତୁଲ୍ୟ ହୋଇ ରଣାଙ୍ଗଣରେ ଅବସ୍ଥାନ କଲେ । ୩୨ । ଏହିପରି କର୍ଣ୍ଣତନୟ ସୋମକ-ମାନଙ୍କର ମହାରଥୀ ଶୂରମାନଙ୍କୁ ପରାଜିତ କରି ଯେଉଁଠାରେ ରାଜା ଯୁଧିଷ୍ଠିର ଅବସ୍ଥାନ କରୁଥିଲେ ସେହି ସ୍ଥାନକୁ ଅବିଳମ୍ବେ ଗମନ କଲେ । ୩୩ ।

ହେ ମହାରାଜ ! ଏହି ସମୟରେ ଯୁଧିଷ୍ଠିରନନ୍ଦନ ପ୍ରତିବିନ୍ଧ୍ୟ କ୍ରୋଧାବିଷ୍ଟ ହୋଇ କୌରବ ସୈନ୍ୟମାନଙ୍କୁ ଦଗ୍‌ଧ କରନ୍ତେ ଆପଣଙ୍କ ପୁତ୍ର ଦୁଃଶାସନ ତାହାଙ୍କୁ ନିବାରଣ କରିବାରେ ପ୍ରବୃତ୍ତ ହେଲେ । ୩୪ । ହେ ମହାରାଜ ! ଜଳଧରବିରହିତ ଗଗନ ମଣ୍ଡଳରେ ବୁଧଗ୍ରହ ଓ ସୂର୍ଯ୍ୟ ଏ ଦୁହିଁଙ୍କର ସମାଗମ ହେଲାପ୍ରାୟ ସେହି ବୀରଦ୍ୱୟଙ୍କର ଅଦ୍ଭୁତ ଯୁଦ୍ଧ ହେଲା । ତହୁଁ ଦୁଃଶାସନ ତିନିଗୋଟି ବାଣରେ ସମରରେ ଦୁଷ୍କରକର୍ମକାରୀ ପ୍ରତିବିନ୍ଧ୍ୟଙ୍କୁ ଲଲାଟ ଦେଶରେ ବିଦ୍ଧ କଲେ । ୩୬ । ହେ ମହାରାଜ ! ମହାବାହୁ ପ୍ରତିବିନ୍ଧ୍ୟ ଆପଣଙ୍କର ବଳବାନ୍ ଧନୁର୍ଦ୍ଧର ପୁତ୍ର ଦୁଃଶାସନଙ୍କ କର୍ତ୍ତୃକ ଅତିଶୟ ବିଦ୍ଧ ହୋଇ ସଶୃଙ୍ଗ ପର୍ବତସଦୃଶ ଶୋଭା ପାଇଲେ ।୩୭।

ତତ୍ପରେ ମହାରଥୀ ପ୍ରତିବିନ୍ଧ୍ୟ ଦୁଃଶାସନଙ୍କୁ ନଅଗୋଟି ବାଣରେ ବିଦ୍ଧ କରି ପୁନର୍ବାର ତାହାଙ୍କୁ ସାତଗୋଟି ବାଣରେ ବିଦ୍ଧ କଲେ । ୩୮ । ସେହି ସମୟରେ ଆପଣଙ୍କ ପୁତ୍ର ଦୁଃଶାସନ ଅତିଶୟ ଦୁଷ୍କର କାର୍ଯ୍ୟ କଲେ । କାରଣ ସେ ଉଗ୍ରତର ଶରସମୂହ ଦ୍ୱାରା ପ୍ରତିବିନ୍ଧ୍ୟଙ୍କର ଅଶ୍ୱ-ମାନଙ୍କୁ ନିପାତିତ କରି ଗୋଟିଏ ଭଲ୍ଲାସ୍ତ୍ରଦ୍ୱାରା ସାରଥି ଓ ଧ୍ୱଜକୁ ନିପାତିତ କଲେ । ପୁଣି ସନ୍ନତପର୍ବ ଶରସମୂହଦ୍ୱାରା ତୂଣୀର ଅଶ୍ୱରଶ୍ମି ଓ ଯୋକ୍ତ୍ର-ସମବେତ ରଥକୁ ତିଳ ତିଳ କରି କାଟିପକାଇଲେ । ୪୧ ।

ତେତେବେଳେ ଧର୍ମାତ୍ମା ପ୍ରତିବିନ୍ଧ୍ୟ ରଥବିହୀନ ହୋଇ ଶରାସନ ଗ୍ରହଣପୂର୍ବକ ଧରାତଳରେ ଅବସ୍ଥାନ କଲେ ଓ ଶତଶତ ଶରଜାଲ ବିକିରଣ କରି ଆପଣଙ୍କ ପୁତ୍ରଙ୍କ ସହିତ ଯୁଦ୍ଧ କଲେ । ତାହାଦେଖି ଆପଣଙ୍କ ପୁତ୍ର ଦୁଃଶାସନ କ୍ଷୁରପାସ୍ତ୍ର ଦ୍ୱାରା ତାହାଙ୍କର କୋଦଣ୍ଡକୁ ଦ୍ୱିଖଣ୍ଡିତ କରି ଦଶଗୋଟି ଶରଦ୍ୱାରା ତାହାଙ୍କୁ ନିପୀଡ଼ିତ କଲେ । ୪୩ । ପ୍ରତିବିନ୍ଧ୍ୟଙ୍କର ମହାରଥ ଭ୍ରାତୃମାନେ ସମରରେ ତାହାଙ୍କୁ ରଥଭ୍ରଷ୍ଟ ଅବଲୋକନ କରି ଅବିଳମ୍ବେ ମହତୀ ସୈନ୍ୟ ସଙ୍ଗେ ଯେନ ଭ୍ରାତାଙ୍କର ଅନୁବର୍ତ୍ତୀ ହେଲେ ।୪୪। ତେତେବେଳେ ପ୍ରତିବିନ୍ଧ୍ୟ ଭ୍ରାତାସୁତ ସୋମଙ୍କର ଭାସ୍ୱର ରଥରେ ଆରୋହଣ କରି ଶରାସନ ଗ୍ରହଣପୂର୍ବକ ଆପଣଙ୍କ ପୁତ୍ର ଦୁଃଶାସନଙ୍କୁ ବିଦ୍ଧ କଲେ । ତାହା ଦେଖି ଆପଣଙ୍କ ପକ୍ଷୀୟ ଯୋଦ୍ଧାମାନେ ମହତୀ ସେନାଦ୍ୱାରା ପରିବୃତ ହୋଇ ଦୁଃଶାସନଙ୍କୁ ପରିବେଷ୍ଟନ ପୂର୍ବକ ସଂଗ୍ରାମା-ଭିମୁଖରେ ଅବସ୍ଥାନ କଲେ ।

ହେ ମହାରାଜ ! ତତ୍ପରେ ସେହି ନିଦାରୁଣ ନିଶୀଥ ସମୟରେ ଉଭୟପକ୍ଷ ମଧ୍ୟରେ ଯମରାଷ୍ଟ୍ର ବର୍ଦ୍ଧନ ଘୋରତର ସଂଗ୍ରାମ ଆରମ୍ଭ ହେଲା । ୪୭ ।

---

# ୧୬୯ ଅଧ୍ୟାୟ

ସଞ୍ଜୟ କହିଲେ—ହେ ମହାରାଜ ! ପାଣ୍ଡୁନନ୍ଦନ ନକୁଳ ଅତିଶୟ ବେଗବାନ୍ ହୋଇ ଆପଣଙ୍କ ପକ୍ଷୀୟ ସୈନ୍ୟମାନଙ୍କୁ କ୍ଷୟ କରନ୍ତେ ସୁବଳ-ନନ୍ଦନ ଶକୁନି କ୍ରୋଧରେ ରହରହ ବୋଲି କହି ତାହାଙ୍କ ପ୍ରତି ଧାବିତ ହେଲେ । ୧ । ପୂର୍ବରୁ ଜାତବୈର ସେହି ବୀରଦ୍ୱୟ ପରସ୍ପର ବଧାକାଙ୍‌କ୍ଷୀ ହୋଇ ଶରାସନ ଆକର୍ଷଣ ପୂର୍ବକ ନିକ୍ଷିପ୍ତ ଶରସମୂହ ଦ୍ୱାରା ପରସ୍ପରକୁ ପ୍ରହାର କଲେ । ୨ । ହେ ମହାରାଜ ! ରଣସ୍ଥଳରେ ନକୁଳ ଯେପରି ଶରବୃଷ୍ଟି କଲେ ସୁବଳନନ୍ଦନ ଶକୁନି ମଧ୍ୟ ସେହିପରି ଶିକ୍ଷା କୌଶଳ ପ୍ରଦର୍ଶନ ପୂର୍ବକ ଶରଜାଲ ବିସ୍ତାର କଲେ । ୩ । ସେହି ସମୟରେ ସେ ଦୁହେଁ ଶରନିକରରେ ସମାଚ୍ଛନ୍ନକଳେବର ହୋଇ କଣ୍ଟକାବୃତ ଶଲ୍ଲକୀ ସଦୃଶ ଶୋଭମାନ ହେଲେ । ୪ । ବିଚିତ୍ର ସୁବର୍ଣ୍ଣକାନ୍ତି ସେହି ବୀରଦ୍ୱୟ ସରଳାଗ୍ର ସୁବର୍ଣ୍ଣପୁଙ୍ଖାନ୍ୱିତ ଶରସମୂହ ଦ୍ୱାରା ଛିନ୍ନବର୍ମ୍ମ ଓ ରୁଧିରକ୍ଲିନ୍ନ ହୋଇ ରଣାଙ୍ଗନରେ ଅଦ୍ଭୁତକଳ୍ପ ବୃକ୍ଷ ଓ ବିକଶିତ କିଂଶୁକ ବୃକ୍ଷ ସଦୃଶ ଶୋଭା ପାଇଲେ । ୫ । ପୁଣି ସେହି ସମୟରେ ସେ ଦୁହେଁ କଣ୍ଟକାବୃତ ହୋଇ କଣ୍ଟକାକୀର୍ଣ୍ଣ ଶାଲ୍ମଳିତରୁ ସଦୃଶ ଶୋଭା ଧାରଣ କଲେ । ୬ ।

ହେ ମହାରାଜ ! ସେ ଦୁହେଁ ଶେଷରେ ଆରକ୍ତଲୋଚନ ହୋଇ ପରସ୍ପର ପରସ୍ପରକୁ ଦଗ୍ଧ କରିବା ଭଳି ନିଜ ନିଜ ନୟନଦ୍ୱୟ ବିସ୍ତାରଣ ପୂର୍ବକ ପରସ୍ପର ପ୍ରତି ଦୃଷ୍ଟିପାତ କଲେ । ୮ । ତଦନନ୍ତର ଆପଣଙ୍କ ଶ୍ୟାଳକ ଶକୁନି ଅତିଶୟ କ୍ରୋଧାବିଷ୍ଟ ହୋଇ ଗୋଟିଏ ନିଶିତ କର୍ଣ୍ଣିକାସ୍ତ୍ର ଦ୍ୱାରା ମାଦ୍ରୀନନ୍ଦନଙ୍କର ବକ୍ଷଃସ୍ଥଳ ବିଦ୍ଧ କଲେ । ୯ । ପାଣ୍ଡୁନନ୍ଦନ ନକୁଳ ଆପଣଙ୍କ ଶ୍ୟାଳକ ଧନୁର୍ଦ୍ଧର ଶକୁନିକର୍ତ୍ତୃକ ଗାଢ଼ବିଦ୍ଧ ହୋଇ ବିମୂଢ଼ ଭାବରେ ରଥମଧ୍ୟରେ ଉପବେଶନ କଲେ ।

ଶକୁନି ଅତିଶୟ ବୈରଭାବାପନ୍ନ ତେଜସ୍ୱୀ ଶତ୍ରୁ ନକୁଳଙ୍କୁ ତଦବସ୍ଥ ଦେଖି ବର୍ଷାକାଳୀନ ଜଳଧର ସଦୃଶ ଗର୍ଜନ କଲେ । ୧୧ । କିଛିକ୍ଷଣ ପରେ ନକୁଳ ସଂଜ୍ଞା ଲାଭ କରି ବ୍ୟାଦିତାନନ କୃତାନ୍ତସଦୃଶ ସୁବଳନନ୍ଦନଙ୍କ ପ୍ରତି ଧାବିତ ହେଲେ । ୧୨ । ସେ କ୍ରୋଧାବିଷ୍ଟ ହୋଇ ଶକୁନିଙ୍କୁ

ଷଷ୍ଟିସଂଖ୍ୟକ ବାଣରେ ବିଦ୍ଧ କରି ପୁନର୍ବାର ଏକଶତ ଶରଦ୍ୱାରା ତାହାଙ୍କ ବକ୍ଷଃସ୍ଥଳ ଭେଦ କଲେ । ୧୩ । ତତ୍ପରେ ଅବଲୀଳାକ୍ରମେ ତାହାଙ୍କର ଶର-ସମନ୍ୱିତ ଶରାସନର ମୁଷ୍ଟିଦେଶକୁ ଓ ଧ୍ୱଜଦଣ୍ଡକୁ ଦ୍ୱିଖଣ୍ଡିତ କରି ଭୂତଳରେ ପାତିତ କଲେ । ୧୪ ।

ଅନନ୍ତର ପାଣ୍ଡୁନନ୍ଦନ ନକୁଳ ଗୋଟିଏ ପୀତ ଓ ନିଶିତ ଶରରେ ତାହାଙ୍କର ଊରୁଦ୍ୱୟ ଭେଦକରି ସପକ୍ଷ ଶ୍ୟେନପକ୍ଷୀଙ୍କ ପରି ତାହାଙ୍କୁ ତତ୍କ୍ଷଣାତ୍ ରଥମଧ୍ୟରୁ ନିପାତିତ କଲେ । ହେ ମହାରାଜ ! ଆପଣଙ୍କର ଶ୍ୟାଳକ ଗାଢ଼ଭାବରେ ବିଦ୍ଧ ହୋଇ କାମୁକ ପୁରୁଷ କାମିନୀର କଣ୍ଠାଶ୍ଳେଷ-ପୂର୍ବକ ଅବସ୍ଥାନ କଲାପ୍ରାୟ ଧ୍ୱଜଯଷ୍ଟିକୁ ଆଶ୍ରୟ କରି ରଥମଣ୍ଡଳରେ ଉପବିଷ୍ଟ ହେଲେ ।

ହେ ଅନଘ ! ମହାରାଜ ! ଆପଣଙ୍କ ଶ୍ୟାଳକ ସମରସ୍ଥଳରେ ସଂଜ୍ଞାଶୂନ୍ୟ ହୋଇ ପତିତ ହୁଅନ୍ତେ ତାହାଙ୍କର ସାରଥି ସତ୍ୱର ସେନାମୁଖରୁ ରଥ ନେଇ ପ୍ରସ୍ଥାନ କଲେ । ତାହା ଦେଖି ଅନୁଚରଗଣସମବେତ ପାଣ୍ଡବମାନେ ଉଚ୍ଚୈଃସ୍ୱରରେ ସିଂହନାଦ କଲେ । ୧୮ । ଶତ୍ରୁତାପନ ନକୁଳ ଏହିପରି ବିପକ୍ଷ ଶକୁନିଙ୍କୁ ପରାଜୟ କରି କ୍ରୋଧରେ ସାରଥିକୁ କହିଲେ ଆମ୍ଭଙ୍କୁ ଦ୍ରୋଣସୈନ୍ୟ ମଧ୍ୟକୁ ନେଇଯାଅ । ୧୯ । ସାରଥି ଧୀମାନ୍ ମାଦ୍ରୀତନୟଙ୍କର ଆଦେଶ ଶ୍ରବଣ କରି ଦ୍ରୋଣାଚାର୍ଯ୍ୟ ଯେଉଁଠାରେ ଯୁଦ୍ଧ କରୁଥିଲେ ସେହି-ଠାରେ ରଥ ଉପସ୍ଥିତ କଲେ । ୨୦ ।

ଏହି ସମୟରେ ଶାରଦ୍ୱତ କୃପ ଯତ୍ନବାନ୍ ହୋଇ ଦ୍ରୋଣ-ବଧାର୍ଥୀ ଶିଖଣ୍ଡୀଙ୍କ ପ୍ରତି ବେଗରେ ଧାବିତ ହେଲେ । ୨୧ । ଦ୍ରୋଣଙ୍କର ସାହାଯ୍ୟାର୍ଥ ତାହାଙ୍କ ନିକଟରେ ଉପସ୍ଥିତ ଶତ୍ରୁଦମନକାରୀ କୃପଙ୍କୁ ଶିଖଣ୍ଡୀ ହାସ୍ୟ ବଦନରେ ନଅଗୋଟି ଭଲ୍ଲଦ୍ୱାରା ବିଦ୍ଧ କଲେ । ୨୨ । ହେ ମହାରାଜ ! ଆପଣଙ୍କ ପୁତ୍ରମାନଙ୍କର ପ୍ରିୟକାରୀ ଆଚାର୍ଯ୍ୟ କୃପ ଶିଖଣ୍ଡୀଙ୍କୁ ପ୍ରଥମରେ ପାଞ୍ଚଗୋଟି ବାଣରେ ବିଦ୍ଧ କଲେ । ୨୩ । ସୁରାସୁର ସମର ସମୟରେ ଯେପରି ସୁରରାଜ ଓ ଶମ୍ବରାସୁରଙ୍କର ସମର ହୋଇଥିଲା ସେହିପରି ସେହି ବୀରଦ୍ୱୟଙ୍କ ମଧ୍ୟରେ ଅତି ଭୟଙ୍କର ଘୋର ଯୁଦ୍ଧ ଆରମ୍ଭ ହେଲା । ୨୪ ।

ହେ ମହାରାଜ ! ସେହି ପ୍ରଗାଢ଼ ତମିସ୍ରାଚ୍ଛନ୍ନ ନିଶାକାଳରେ ନଭୋମଣ୍ଡଳ ସ୍ୱଭାବତଃ ଘୋର ରୂପ ହୋଇଥିଲା । ତହିଁରେ ପୁଣି ରଣଦୁର୍ମଦ ମହାରଥୀ କୃପ ଓ ଶିଖଣ୍ଡୀ ଏ ଦୁହେଁ ବର୍ଷାକାଳୀନ ଜଳଧରଯୁଗଳ ସଦୃଶ ଶରଜାଳ ଦ୍ୱାରା ଆକାଶ ମଣ୍ଡଳକୁ ସମାଚ୍ଛନ୍ନ କରନ୍ତେ ତାହା ଅତିଶୟ ଭୟଙ୍କର ହେଲା । ବିଶେଷତଃ ସେହି ଘୋରରୂପ ଭୟାବହ ରଜନୀ ସମରପ୍ରବୃତ୍ତ ଯୋଦ୍ଧାମାନଙ୍କ ପକ୍ଷରେ କାଳରାତ୍ରି ସ୍ୱରୂପ ହେଲା ।

ତଦନନ୍ତର ଶିଖଣ୍ଡୀ ଅର୍ଦ୍ଧଚନ୍ଦ୍ର ବାଣରେ ଗୌତମନନ୍ଦନଙ୍କର ଜ୍ୟାଯୁକ୍ତ ସଶର ଶରାସନକୁ ଛେଦନ କଲେ । ତଦ୍ଦ୍ୱାରା କୃପାଚାର୍ଯ୍ୟ ରୋଷାବିଷ୍ଟ ହୋଇ ସୁବର୍ଣ୍ଣଦଣ୍ଡାନ୍ୱିତ କୁଣ୍ଠିତାଗ୍ର କର୍ମାରପରିମାର୍ଜିତ ଗୋଟିଏ ଭୟଙ୍କର ଶକ୍ତି ଗ୍ରହଣ କରି ଶିଖଣ୍ଡୀଙ୍କ ପ୍ରତି ନିକ୍ଷେପ କଲେ । ଶିଖଣ୍ଡୀ ସେହି ମହାପ୍ରଭାବଶାଳୀ ପ୍ରଦୀପ୍ତ ଶକ୍ତିକୁ ବହୁସଂଖ୍ୟକ ଶରଦ୍ୱାରା ଛେଦନ କରନ୍ତେ ତାହା ପୃଥିବୀକୁ ଉଦ୍ଭାସିତ କରି ନିପତିତ ହେଲା । ଏହି ଅବସରରେ ରଥିପ୍ରବର କୃପାଚାର୍ଯ୍ୟ ଅପର ଗୋଟିଏ ଶରାସନ ଗ୍ରହଣ ପୂର୍ବକ ନିଶିତ ଶରସମୂହ ଦ୍ୱାରା ଶିଖଣ୍ଡୀଙ୍କୁ ସମାଚ୍ଛନ୍ନ କଲେ । ରଥିଶ୍ରେଷ୍ଠ ଶିଖଣ୍ଡୀ ଯଶସ୍ୱୀ କୃପଙ୍କର ଶରଜାଲରେ ସମାବୃତ ହୋଇ ରଥନୀଡ଼ରେ ଅବସନ୍ନ ହେଲେ ।

ହେ ମହାରାଜ ! ଶାରଦ୍ୱତ କୃପ ତାହାଙ୍କୁ ଅବସନ୍ନ ଦେଖି ତାହାଙ୍କୁ ବିନାଶ କରିବା ମାନସରେ ବହୁସଂଖ୍ୟକ ଶରଦ୍ୱାରା ପ୍ରହାର କଲେ । ପାଞ୍ଚାଳ ଓ ସୋମକମାନେ ମହାରଥୀ ଯାଜ୍ଞସେନଙ୍କୁ ସମରରେ ବିମୁଖ ଅବଲୋକନ କରି ତାହାଙ୍କର ଚତୁର୍ଦ୍ଦିଗ ପରିବେଷ୍ଟନ କଲେ । ସେହିପରି ଆପଣଙ୍କ ପୁତ୍ରମାନେ ମଧ୍ୟ ମହତୀ ସେନାସହ ଦ୍ୱିଜସତ୍ତମ ଦ୍ରୋଣଙ୍କୁ ପରିବେଷ୍ଟନ କରନ୍ତେ ଉଭୟପକ୍ଷ ମଧ୍ୟରେ ଘୋରତର ସଂଗ୍ରାମ ଉପସ୍ଥିତ ହେଲା । ସେହି ସମୟରେ ରଥୀମାନେ ପରସ୍ପର ପରସ୍ପର ପ୍ରତି ଧାବିତ ହୁଅନ୍ତେ ସମରାଙ୍ଗଣରେ ଶରାୟୁମାନ ଜଳଦାବଳୀ ସଦୃଶ ତୁମୁଳ ଶବ୍ଦ ହେଲା । ସେହି କାଳରେ ଅଶ୍ୱାରୋହୀ ଓ ଗଜାରୋହୀ ମାନେ ପରସ୍ପର ବିନାଶରେ ପ୍ରବୃତ୍ତ ହେବାରୁ ରଣସ୍ଥଳ ଅତି କ୍ରୂରମୂର୍ତ୍ତି ଧାରଣ କଲା ।

ଏହିପରି ପରସ୍ପର ଧାବମାନ ପଦାତିମାନଙ୍କର ପଦ ଶବ୍ଦରେ ବସୁନ୍ଧରା ଭୟକମ୍ପିତା କାମିନୀସଦୃଶ କମ୍ପିତା ହେଲା । ହେ ରାଜନ୍ ! ଦ୍ରୁତଗାମୀ ରଥରେ ସମାରୂଢ଼ ବହୁସଂଖ୍ୟକ ରଥୀ ଅତି ଦ୍ରୁତ ହୋଇ ବାୟୁସଗଣ ଶଲଭ ଶ୍ରେଣୀକୁ ନିଗୃହୀତ କଲାପ୍ରାୟ ପ୍ରତିପକ୍ଷ ରଥୀମାନଙ୍କୁ ନିଗୃହୀତ କଲେ । ସେହି ସ୍ଥାନରେ ଗଳିତମଦ ମହାମାତଙ୍ଗସମୂହ ସନ୍ନିହିତ ହୋଇ ବିପକ୍ଷପକ୍ଷୀୟ ଗଳିତମଦ ମାତଙ୍ଗମାନଙ୍କୁ ଆଘାତ କଲେ । ଏହିପରି ସାଦୀ ଓ ପଦାତିମାନେ ଅତିଶୟ ସଂରମ୍ଭମାଣ ହୋଇ ପରସ୍ପର ଆକ୍ରମଣ ପୂର୍ବକ କେହି କାହାରିକୁ ଅତିକ୍ରମ କରି ପାରିଲେ ନାହିଁ । ସେହି ନିଶାକାଳରେ ସୈନ୍ୟମାନଙ୍କର ଗମନ, ପଳାୟନ ଓ ପୁନରାବର୍ତ୍ତନ ଦ୍ୱାରା ରଣାଙ୍ଗନରେ ତୁମୁଳ ଶବ୍ଦ ଉତ୍‌ଥିତ ହେଲା ।

ହେ ମହାରାଜ ! ତୁରଙ୍ଗ, ମାତଙ୍ଗ ଓ ଶତାଙ୍ଗ ପରିଜ୍ୱଳିତ ଦୀପ ସମୂହ ଆକାଶଚ୍ୟୁତ ମହୋଲ୍‌କାସଦୃଶ ହେଲା । ରଣସ୍ଥଳର ଚତୁର୍ଦ୍ଦିଗସ୍ଥ ପ୍ରଦୀପ ପ୍ରଭାବରେ ପ୍ରଦୀପ୍ତ ହୋଇ ସେହି ଅନ୍ଧତମସାବୃତ ରଜନୀ ଦିବସପ୍ରଭା ଧାରଣ କଲା । ପ୍ରଭାକର ପ୍ରଭାବରେ ଯେପରି ଜଗତର ସମସ୍ତ ତିମିରରାଶି ତିରୋହିତ ହୁଏ, ସେହିପରି ଦୀପାଲୋକରେ ରଣସ୍ଥଳସ୍ଥିତ ତିମିରରାଶି ତିରୋହିତ ହେବାରୁ ଭୂମଣ୍ଡଳ ଦିଙ୍‌ମଣ୍ଡଳ ଓ ନଭୋମଣ୍ଡଳ ଆଲୋକମୟ ହେଲା । କିନ୍ତୁ ଦୀପପ୍ରଭାବ ଦ୍ୱାରା ଚତୁର୍ଦ୍ଦିଗ ଅବଭାସିତ ହେବାରୁ ମହାତ୍ମା ଯୋଦ୍ଧାମାନଙ୍କର ଅସ୍ତ୍ର, କବଚ ଓ ମଣିମୟ ଅଳଙ୍କାରାଦିର ପ୍ରଭା ଅନ୍ତର୍ହିତ ହେଲା ।

ହେ ମହାରାଜ ! ସେହି ପ୍ରଗାଢ଼ ନିଶାକାଳରେ ତୁମୁଳ କୋଳାହଳମୟ ସଂଗ୍ରାମ ଉପସ୍ଥିତ ହୁଅନ୍ତେ ଯୋଦ୍ଧାମାନେ ଆତ୍ମଜ୍ଞାନ ବିସ୍ମୃତ ହେଲେ । ମୋହବଶରୁ ସେହି କାଳରେ ପିତା ପୁତ୍ରକୁ, ପୁତ୍ର ପିତାଙ୍କୁ, ମାତୁଳ ଭଗିନେୟଙ୍କୁ, ଭଗିନେୟ ମାତୁଳଙ୍କୁ ଓ ସଖା ସଖାଙ୍କୁ ସଂହାର କରିବାରେ ପ୍ରବୃତ୍ତ ହେଲେ । ଏହିପରି ଆତ୍ମୀୟମାନେ ଆତ୍ମୀୟମାନଙ୍କୁ ଓ ଶତ୍ରୁଗଣ ଶତ୍ରୁଗଣଙ୍କୁ ପରସ୍ପର ପ୍ରହାର କରିବାରେ ପ୍ରବୃତ୍ତ ହୁଅନ୍ତେ ସେହି ରଜନୀ ସମୟରେ ଯୋଦ୍ଧୃମାନଙ୍କର ଭୟଜନକ ନିର୍ମର୍ଯ୍ୟାଦ ଯୁଦ୍ଧ ଆରମ୍ଭ ହେଲା । ୫୦ ।

---

# ୧୭୦ ଅଧ୍ୟାୟ

ସଞ୍ଜୟ କହିଲେ—ହେ ମହାରାଜ ! ସେହି ଭୟାବହ ତୁମୁଳ ସଂଗ୍ରାମ ସମୁପସ୍ଥିତ ହୁଅନ୍ତେ ଧୃଷ୍ଟଦ୍ୟୁମ୍ନ ସୁମହତ୍ ଶରାସନ ଗ୍ରହଣ ପୂର୍ବକ ପୁନଃ ପୁନଃ ଜ୍ୟାକର୍ଷଣ କରୁ କରୁ ଦ୍ରୋଣଙ୍କର ସୁବର୍ଣ୍ଣବିଭୂଷିତ ରଥାଭିମୁଖକୁ ଧାବମାନ ହେଲେ । ୨ । ସେ ଦ୍ରୋଣବଧ ନିମିତ୍ତ ଗମନ କରନ୍ତେ ପାଣ୍ଡବ ପାଞ୍ଚାଳମାନେ ତାହାଙ୍କର ଅନୁବର୍ତ୍ତୀ ବଳ ହୋଇ ଆଚାର୍ଯ୍ୟଙ୍କୁ ପରିବେଷ୍ଟନ କଲେ । ୩ । ଆପଣଙ୍କ ପୁତ୍ରମାନେ ଆଚାର୍ଯ୍ୟଶ୍ରେଷ୍ଠ ଦ୍ରୋଣଙ୍କୁ ମହାସମରରେ ତାଦୃଶ ପରିବୃତ ଅବଲୋକନ କରି ସର୍ବପ୍ରଯତ୍ନରେ ତାହାଙ୍କୁ ରକ୍ଷା କରିବାରେ ପ୍ରବୃତ୍ତ ହେଲେ । ୪ । ପ୍ରଚଣ୍ଡବାତୋଦ୍ଧୂତ ସାଗରଦ୍ୱୟ ଯେପରି କ୍ଷୁବ୍ଧଗମ୍ଭୀର ହୋଇ ଭୟଙ୍କର ମୂର୍ତ୍ତି ଧାରଣ ପୂର୍ବକ ମିଳିତ ହୁଏ, ସେହିପରି ସେହି ନିଶୀଥ ସମୟରେ ଉଭୟପକ୍ଷୀୟ ସୈନ୍ୟ-ସାଗର ଯୁଦ୍ଧାର୍ଥ ପରସ୍ପର ମିଳିତ ହେଲେ । ୫ । ଅନନ୍ତର ପାଞ୍ଚାଳନନ୍ଦନ ଧୃଷ୍ଟଦ୍ୟୁମ୍ନ ତ୍ୱରାନ୍ୱିତ ହୋଇ ପାଞ୍ଚଗୋଟି ବାଣରେ ଦ୍ରୋଣଙ୍କର ବକ୍ଷଃସ୍ଥଳ ବିଦ୍ଧ କରି ସିଂହନାଦ କଲେ । ୬ । ତେତେବେଳେ ଦ୍ରୋଣ ପଞ୍ଚବିଂଶତି ଶରରେ ଧୃଷ୍ଟଦ୍ୟୁମ୍ନଙ୍କୁ ବିଦ୍ଧ କରି ଭଲ୍ଲାସ୍ତ୍ରଦ୍ୱାରା ମହାଶବ୍ଦରେ ତାହାଙ୍କର ଶରାସନ ଛେଦନ କଲେ । ୭ ।

ହେ ମହାରାଜ ! ପ୍ରତାପବାନ୍ ଧୃଷ୍ଟଦ୍ୟୁମ୍ନ ଦ୍ରୋଣଙ୍କ ଶରରେ ଗାଢ଼ତର ବିଦ୍ଧ ହୋଇ କ୍ରୋଧରେ ଅଧରଦଂଶନ ପୂର୍ବକ ଛିନ୍ନ ଶରାସନକୁ ପରିତ୍ୟାଗ କରି ଦ୍ରୋଣଙ୍କର ବିନାଶ କାମନାରେ ଗୋଟିଏ ମହତ୍ କାର୍ମୁକ ଗ୍ରହଣ କଲେ । ୯ । ଅନନ୍ତର ସେହି ପରବୀରହନ୍ତା ଧୃଷ୍ଟଦ୍ୟୁମ୍ନ ବିଚିତ୍ର ଶରାସନକୁ ଆକର୍ଣ୍ଣ ଆକର୍ଷଣ କରି ଦ୍ରୋଣବିନାଶକ୍ଷମ ଭୟଙ୍କର ଗୋଟିଏ ଶର ନିକ୍ଷେପ କଲେ । ୧୦ । ହେ ମହାରାଜ ! ମହାସମରରେ ସେହି ଭୟାନକ ଶର ବଳବାନ୍ ଧୃଷ୍ଟଦ୍ୟୁମ୍ନଙ୍କ କର୍ତ୍ତୃକ ନିକ୍ଷିପ୍ତ ହୋଇ ଉଦିତ ଦିବାକର ସଦୃଶ ସେହି ସୈନ୍ୟମାନଙ୍କୁ ସନ୍ତାପିତ କଲା । ସେହିକାଳରେ ସେହି ଭୟଙ୍କର ଶରକୁ ସନ୍ଦର୍ଶନ କରି ଦେବଗନ୍ଧର୍ବ ଓ ମାନବମାନେ "ସମରରେ ଦ୍ରୋଣଙ୍କର ମଙ୍ଗଳ ହେଉ" ଏହି ସ୍ୱସ୍ତିବାକ୍ୟ ଉଚ୍ଚାରଣ କଲେ । ୧୨ ।

ପରନ୍ତୁ କର୍ଣ୍ଣ ଆଗ୍ନେୟାଙ୍କ ରଥପ୍ରତି ସମାପ୍ତାତ ସେହି ଶରକୁ ହସ୍ତଲାଘବ ପ୍ରଦର୍ଶନ ପୂର୍ବକ ଦ୍ୱାଦଶ ଖଣ୍ଡ କରି ଛେଦନ କଲେ । ୧୩ । ସେହି ଶର ଧନୁର୍ଦ୍ଧର କର୍ଣ୍ଣଙ୍କ କର୍ତ୍ତୃକ ବହୁଧା ଛିନ୍ନ ହୋଇ ନିର୍ବିଷଭୁଜଗ ସଦୃଶ ଅବଳମ୍ବେ ଧରାତଳରେ ପତିତ ହେଲା । ୧୪ । ସେତେବେଳେ କର୍ଣ୍ଣ ଦଶଗୋଟି ଶରରେ ଧୃଷ୍ଟଦ୍ୟୁମ୍ନଙ୍କୁ ବିଦ୍ଧ କଲେ । ତତ୍ପରେ ଦ୍ରୋଣପୁତ୍ର ଅଶ୍ୱତ୍ଥାମା ପାଞ୍ଚଗୋଟି ବାଣରେ, ସ୍ୱୟଂ ଦ୍ରୋଣ ସାତଗୋଟି ବାଣରେ, ଶଲ୍ୟ ନଅଗୋଟି, ଦୁଃଶାସନ ତିନିଗୋଟି, ଦୁର୍ଯ୍ୟୋଧନ ବିଂଶତିଗୋଟି ଓ ଶକୁନି ସାତଗୋଟି ଶରଦ୍ୱାରା ତ୍ୱରାସହ ପାଞ୍ଚାଳନନ୍ଦନ ଧୃଷ୍ଟଦ୍ୟୁମ୍ନଙ୍କୁ ବିଦ୍ଧ କଲେ । ସ୍ୱୟଂ ଦ୍ରୋଣଙ୍କଦ୍ୱାରା ଓ ତାହାଙ୍କ ରକ୍ଷାର୍ଥୀ ଛଅଜଣ ରଥୀଙ୍କ ଦ୍ୱାରା ପାଞ୍ଚାଳନନ୍ଦନ ଧୃଷ୍ଟଦ୍ୟୁମ୍ନ ବିଦ୍ଧ ହୋଇ ଦ୍ରୋଣ, ଅଶ୍ୱତ୍ଥାମା, କର୍ଣ୍ଣ ଓ ଆପଣଙ୍କ ଆତ୍ମଜ ପ୍ରଭୃତି ସମସ୍ତଙ୍କୁ ତିନିତିନି ଗୋଟି ଶରଦ୍ୱାରା ବିଦ୍ଧ କଲେ । ୧୮ । ସେହି ରଥୀପ୍ରବରମାନେ ସମରରେ ଧନୁର୍ଦ୍ଧର ଧୃଷ୍ଟଦ୍ୟୁମ୍ନଙ୍କ କର୍ତ୍ତୃକ ବିଦ୍ଧ ହୋଇ ପ୍ରତ୍ୟେକେ ତାହାଙ୍କୁ ବେଗରେ ପ୍ରତିବିଦ୍ଧ କଲେ । ୧୯ ।

ହେ ମହାରାଜ ! ସେହି ସମୟରେ ଦ୍ରୁମସେନ ଅତି କ୍ରୋଧାନ୍ୱିତ ହୋଇ ଧୃଷ୍ଟଦ୍ୟୁମ୍ନଙ୍କୁ ଗୋଟିଏ ଶରରେ ବିଦ୍ଧ କରି 'ରହ ରହ' ବୋଲି କହି ପୁନର୍ବାର ଅବିଳମ୍ବେ ତାହାଙ୍କୁ ଆଉ ତିନିଗୋଟି ଶରରେ ବିଦ୍ଧ କଲେ । ୨୦ । ସେତେବେଳେ ବୀର୍ଯ୍ୟବାନ୍ ଧୃଷ୍ଟଦ୍ୟୁମ୍ନ ସୁବର୍ଣ୍ଣ ପୁଙ୍ଖାନ୍ୱିତ ଶିଳାଧୌତ ତୀକ୍ଷ୍ଣତର ପ୍ରାଣାନ୍ତକର ଅବହଗାମୀ ତିନିଗୋଟି ବାଣରେ ଦ୍ରୁମସେନଙ୍କୁ ବିଦ୍ଧ କଲେ । ୨୧ । ତତ୍ପରେ ଭଲ୍ଲାସ୍ତ୍ରଦ୍ୱାରା ତାହାଙ୍କର ଉଜ୍ଜ୍ୱଳ ସୁବର୍ଣ୍ଣକୁଣ୍ଡଳାଳଙ୍କୃତ ମସ୍ତକକୁ ଦେହରୁ ବିଚ୍ଛିନ୍ନ କଲେ । ୨୨ ।

ହେ ମହାରାଜ ! ଦ୍ରୁମସେନଙ୍କର ସନ୍ଦଷ୍ଟାଧରବିଶିଷ୍ଟ ମସ୍ତକ ଧୃଷ୍ଟଦ୍ୟୁମ୍ନଙ୍କ ଶରଦ୍ୱାରା ଛିନ୍ନ ହୋଇ ପ୍ରଚଣ୍ଡ ବାତୋଦ୍ଧୂତ ପକ୍ୱ ତାଳ ଫଳସଦୃଶ ଭୂତଳରେ ପତିତ ହେଲା । ୨୩ । ଅନନ୍ତର ମହାବୀର ପାଞ୍ଚାଳ ରାଜନନ୍ଦନ ସୁନିଶିତ ଶରସମୂହ ଦ୍ୱାରା ପୁନର୍ବାର ସେହି ମହାରଥୀ ବୀରମାନଙ୍କୁ ବିଦ୍ଧ କଲେ ଓ ଭଲ୍ଲାସ୍ତ୍ରଦ୍ୱାରା ବିଚିତ୍ରଯୋଧୀ ରାଧାନନ୍ଦନଙ୍କର ଶରାସନ ଛେଦନ କଲେ । ୨୪ ।

ହେ ମହାରାଜ ! ମୃଗେନ୍ଦ୍ର ଯେପରି ସ୍ୱୀୟ ଲାଙ୍ଗୁଳ ଚ୍ଛେଦନକୁ ସହି ନ ପାରେ, ସେହିପରି ରାଧାନନ୍ଦନ କର୍ଣ୍ଣ ମଧ୍ୟ ଶରାସନ ଚ୍ଛେଦନରୂପ ସେହି ଉଗ୍ର କର୍ମ୍ମକୁ ସହି ପାରିଲେ ନାହିଁ । ୨୫ । ସେ କ୍ରୋଧସଂରକ୍ତ-ଲୋଚନରେ ନିଃଶ୍ୱାସ ପରିତ୍ୟାଗ କରି ଅନ୍ୟ ଗୋଟିଏ ଶରାସନ ଗ୍ରହଣ-ପୂର୍ବକ ଶରବର୍ଷଣ କରୁ କରୁ ମହାବଳଶାଳୀ ଧୃଷ୍ଟଦ୍ୟୁମ୍ନଙ୍କ ପ୍ରତି ଧାବମାନ ହେଲେ । ୨୬ । ସେହି ସମୟରେ ଅଶ୍ୱତ୍ଥାମା ପ୍ରଭୃତି ଅପର ଛଅଜଣ ରଥୀ କର୍ଣ୍ଣଙ୍କୁ କ୍ରୁଦ୍ଧ ଅବଲୋକନ କରି ଧୃଷ୍ଟଦ୍ୟୁମ୍ନଙ୍କ ବିନାଶ ବାସନାରେ ତାହାଙ୍କୁ ସତ୍ୱର ପରିବେଷ୍ଟନ କଲେ । ୨୭ । ହେ ମହାରାଜ ! ସେହି ସମୟରେ ଆମ୍ଭେମାନେ ଧୃଷ୍ଟଦ୍ୟୁମ୍ନଙ୍କୁ ସେହି ଛଅ ଜଣ ରଥିପ୍ରବରମାନଙ୍କର ସମ୍ମୁଖବର୍ତ୍ତୀ ଅବଲୋକନ କରି ତାହାଙ୍କୁ ମୃତ୍ୟୁମୁଖଗତ ବୋଲି ମନେ କଲୁଁ । ୨୮ ।

ଏହି ସମୟରେ ଦାଶାର୍ହ ସାତ୍ୟକି ଧୃଷ୍ଟଦ୍ୟୁମ୍ନଙ୍କ ପରିତ୍ରାଣାର୍ଥ ଶରଜାଲ ବିକୀରଣ କରୁ କରୁ ତାହାଙ୍କ ନିକଟରେ ଉପସ୍ଥିତ ହେଲେ । ୨୯ । ଏହିପରି ମହାଧନୁର୍ଦ୍ଧର ରଣଦୁର୍ମ୍ମଦ ସାତ୍ୟକି ସେଠାକୁ ଆଗମନ କରନ୍ତେ ରାଧାନନ୍ଦନ କର୍ଣ୍ଣ ତାହାଙ୍କୁ ଅବକ୍ରଗାମୀ ଦଶଗୋଟି ଶରଦ୍ୱାରା ବିଦ୍ଧ କଲେ । ୩୦ । ହେ ମହାରାଜ ! ଅନନ୍ତର ସାତ୍ୟକି ସମସ୍ତ ଶୂର-ମାନଙ୍କର ସମକ୍ଷରେ ‘ତୁମ୍ଭେ ପଳାୟନ କରନାହିଁ, ଅବସ୍ଥାନ କର” । କର୍ଣ୍ଣଙ୍କୁ ଏହି କଥା କହି ତାହାଙ୍କୁ ଦଶଗୋଟି ଶରରେ ବିଦ୍ଧ କଲେ । ୩୧ ।

ବଳୀ ଓ ବାସବଙ୍କ ସଂଗ୍ରାମ ସଦୃଶ, ବଳଶାଳୀ ମହାତ୍ମା କର୍ଣ୍ଣ ଓ ସାତ୍ୟକିଙ୍କ ମଧ୍ୟରେ ସଂଗ୍ରାମ ଉପସ୍ଥିତ ହେଲା । ୩୨ । କ୍ଷତ୍ରିୟଶ୍ରେଷ୍ଠ ସାତ୍ୟକି ତଳ-ଧ୍ୱନିଦ୍ୱାରା ସମସ୍ତ କ୍ଷତ୍ରିୟମାନଙ୍କୁ ତ୍ରାସିତ କରି ରାଜୀବ-ଲୋଚନ କର୍ଣ୍ଣଙ୍କୁ ବିଦ୍ଧ କଲେ । ୩୩ । ବଳଶାଳୀ କର୍ଣ୍ଣ ମଧ୍ୟ ଶରାସନ ଶବ୍ଦରେ ବସୁଧା କମ୍ପିତ କରି ସାତ୍ୟକିଙ୍କ ସହିତ ସଂଗ୍ରାମ କଲେ । ୩୪ । କର୍ଣ୍ଣ ବିପାଠ, ନାରାଚ, ବତ୍ସଦନ୍ତ ଓ କ୍ଷୁର ପ୍ରଭୃତି ଶତଶତ ଅସ୍ତ୍ରଦ୍ୱାରା ଶିନିପୌତ୍ରଙ୍କୁ ବିଦ୍ଧ କଲେ । ୩୫ । ବୃଷ୍ଣିବଂଶୀୟ ରଥିପ୍ରବର ଯୁଯୁଧାନ ମଧ୍ୟ ସେହିପରି ଶରବୃଷ୍ଟି ଦ୍ୱାରା କର୍ଣ୍ଣଙ୍କୁ ବିଦ୍ଧ କରିବାରୁ କିଛିକାଳ ନିମନ୍ତେ ସେହି ଯୁଦ୍ଧ ସମଭାବରେ ରହିଲା । ୩୬ । ତଦନନ୍ତର ଆପଣଙ୍କ ପକ୍ଷୀୟ ରଥୀମାନେ ଓ କର୍ଣ୍ଣଙ୍କ

ପୁତ୍ରଗଣ ସନ୍ନାହିତ ହୋଇ ଚତୁର୍ଦ୍ଦିଗରୁ ଶରସମୂହ ଦ୍ୱାରା ବେଗସହ ସାତ୍ୟକଙ୍କୁ ବିଦ୍ଧ କଲେ । ୩୭ ।

ତହୁଁ ସାତ୍ୟକ ଅତିଶୟ କ୍ରୋଧାବିଷ୍ଟ ହୋଇ କର୍ଣ୍ଣ ଓ ତାହାଙ୍କ ପୁତ୍ରମାନଙ୍କର ନିକ୍ଷିପ୍ତ ଅସ୍ତ୍ରସମୂହକୁ ନିରାକୃତ କରି ବୃଷସେନଙ୍କ ବକ୍ଷଃସ୍ଥଳ ବିଦ୍ଧ କଲେ । ୩୮ । ବୀର୍ଯ୍ୟବାନ୍ ବୃଷସେନ ସାତ୍ୟକଙ୍କର ସେହି ଶର-ପ୍ରହାରରେ ଗାଢ଼ବିଦ୍ଧ ହୋଇ ଶରାସନ ପରିତ୍ୟାଗପୂର୍ବକ ବିମୂଢ଼ ଭାବରେ ରଥମଧ୍ୟରେ ନିପତିତ ହେଲେ । ୩୯ । ତହୁଁ କର୍ଣ୍ଣ ବୃଷସେନଙ୍କୁ ନିହତ ମନେ କରି ପୁତ୍ରଶୋକରେ ଅତିଶୟ ସନ୍ତପ୍ତ ହୋଇ ଶରସମୂହରେ ସାତ୍ୟକଙ୍କୁ ପ୍ରପୀଡ଼ିତ କଲେ । ୪୦ । ମହାରଥୀ ଯୁଯୁଧାନ କର୍ଣ୍ଣଙ୍କ କର୍ତ୍ତୃକ ପୀଡ଼ୟମାନ ହୋଇ ଭୀମସହ କର୍ଣ୍ଣଙ୍କୁ ବହୁସଂଖ୍ୟକ ଶରଦ୍ୱାରା ବାରମ୍ବାର ବିଦ୍ଧ କଲେ । ୪୧ । ତତ୍ପରେ ସେ କର୍ଣ୍ଣଙ୍କୁ ଦଶଗୋଟି ବାଣରେ ବିଦ୍ଧ କରି ଉଭୟଙ୍କର ହସ୍ତାବାପ ସହ ଶରାସନଦ୍ୱୟକୁ ଛେଦନ କଲେ । ୪୨ । ତେତେବେଳେ କର୍ଣ୍ଣ ଓ ବୃଷସେନ ଅତିଭୀଷଣ ଅନ୍ୟ ଦୁଇଗୋଟି ଧନୁରେ ଜ୍ୟା-ରୋପଣ କରି ଚତୁର୍ଦ୍ଦିଗରୁ ନିଶିତ ଶରସମୂହ ଦ୍ୱାରା ସାତ୍ୟକଙ୍କୁ ବିଦ୍ଧ କଲେ । ୪୩ ।

ହେ ମହାରାଜ ! ସେହି ବୀରକ୍ଷୟକର ମହାସଂଗ୍ରାମ କାଳରେ ଆମ୍ଭେମାନେ ଗାଣ୍ଡୀବର ଭୀଷଣ ଶବ୍ଦ ଶ୍ରବଣ କଲୁଁ । ୪୪ । ସୂତପୁତ୍ର କର୍ଣ୍ଣ ସେହି ଗାଣ୍ଡୀବ ନିସ୍ୱନ ଓ ରଥନିର୍ଘୋଷ ଶ୍ରବଣ କରି ଦୁର୍ଯ୍ୟୋଧନଙ୍କୁ ଏହି କଥା କହିଲେ । ୪୫ । ହେ ମହାରାଜ ! ଯେଉଁଠାରେ ଗର୍ଜନକାରୀ ବାସବ-ଙ୍କର ପ୍ରଚଣ୍ଡ କୋଦଣ୍ଡାସ୍ଫାଳନ ଶବ୍ଦ ସଦୃଶ ନିୟତ ଗାଣ୍ଡୀବଶବ୍ଦ ଓ ରଥ-ନିର୍ଘୋଷ ଶ୍ରୁତ ହେଉଅଛି, ସେହିଠାରେ ନିଶ୍ଚୟ ପୃଥାନନ୍ଦନ ମହାଧନୁର୍ଦ୍ଧର ଧନଞ୍ଜୟ ସମସ୍ତ ସୈନ୍ୟ ଓ ନରଶ୍ରେଷ୍ଠ ପୌରବମାନଙ୍କୁ ସଂହାର କରି ସୁମହତ୍ ଶରାସନ ଆସ୍ଫାଳନ କରୁଅଛନ୍ତି । ୪୬ । ସ୍ପଷ୍ଟ ବୋଧ ହେଉଅଛି ଯେ, ଅର୍ଜ୍ଜୁନ ଆତ୍ମାନୁରୂପ କାର୍ଯ୍ୟ କରୁଅଛନ୍ତି । ଦେଖନ୍ତୁ, ଏହି ଭାରତୀ ଚମୂ ବହୁଧା ବିକୀର୍ଣ୍ଣ ହେଉଅଛି । ୪୮ । ପ୍ରଚଣ୍ଡ ପବନୋଦ୍ଧୂତ ଜଳଦଜାଲ ଛିନ୍ନଭିନ୍ନ ହେଲା ପ୍ରାୟ ଧନଞ୍ଜୟଙ୍କ କର୍ତ୍ତୃକ ସୈନ୍ୟମାନେ ଛିନ୍ନଭିନ୍ନ ହୋଇ କୌଣସି ପ୍ରକାରେ ସ୍ଥିର ହୋଇ ରହି ପାରୁନାହାନ୍ତି । ଯେପରି ନୌକା

ସାଗର-ତରଙ୍ଗ ବେଗରେ ଛିନ୍ନଭିନ୍ନ ହୁଏ ସେହିପରି ସୈନ୍ୟମାନେ ସବ୍ୟସାଚୀଙ୍କର ଶରବେଗରେ ବିଦୀର୍ଣ୍ଣ ହେଉଅଛନ୍ତି ।

ହେ ରାଜଶାର୍ଦ୍ଦୂଳ ! ଦେଖନ୍ତୁ, ଗାଣ୍ଡୀବନିର୍ମୁକ୍ତଶରବିଦ୍ଧ, ପଳାୟନପରାୟଣ, ଶତଶତ ଯୋଦ୍ଧୃଶ୍ରେଷ୍ଠମାନଙ୍କର ସୁମହାନ୍ ଶବ୍ଦ ଶ୍ରୁତ ହେଉଅଛି । ଶ୍ରବଣ କରନ୍ତୁ, ନିଶୀଥ ସମୟରେ ଅମ୍ବରସ୍ଥିତ ମେଘଗର୍ଜନସଦୃଶ ଧନଞ୍ଜୟଙ୍କ ରଥ ସମୀପରେ ଦୁନ୍ଦୁଭିନିର୍ଘୋଷ, ହାହାକାର ରବ, ସିଂହ ପ୍ରଭୃତି ଶବ୍ଦ ନାଦ ବହୁ ପରିମାଣରେ ଶ୍ରୁତ ହେଉଅଛି । ଆମ୍ଭମାନଙ୍କ ମଧ୍ୟସ୍ଥିତ ସାତ୍ତ୍ୱତପ୍ରବର ଏହି ସାତ୍ୟକଙ୍କୁ ଯଦି ଲକ୍ଷ୍ୟରୂପରେ ଲାଭ କରିପାରୁଁ, ତାହାହେଲେ ସମସ୍ତ ଶତ୍ରୁମାନଙ୍କୁ ନିଶ୍ଚୟ ପରାଜିତ କରି ପାରିବୁଁ ।

ଦ୍ରୋଣାଚାର୍ଯ୍ୟଙ୍କ ସହିତ ସମରପ୍ରବୃତ୍ତ ପାଞ୍ଚାଳରାଜପୁତ୍ର ଧୃଷ୍ଟଦ୍ୟୁମ୍ନ ଆପଣଙ୍କର ଶୂରସହୋଦରମାନଙ୍କ କର୍ତ୍ତୃକ ସର୍ବଦିଗରେ ପରିବୃତ ହୋଇଅଛନ୍ତି । ଏହି ସମୟରେ ଯଦି ଆମ୍ଭେମାନେ ସାତ୍ୟକ ଓ ପୃଷତନନ୍ଦନ ଧୃଷ୍ଟଦ୍ୟୁମ୍ନଙ୍କୁ ନିହତ କରିପାରୁଁ ତାହାହେଲେ ଆମ୍ଭମାନଙ୍କର ନିଶ୍ଚୟ ବିଜୟ ହେବ । ସୁଭଦ୍ରାନନ୍ଦନ ଅଭିମନ୍ୟୁଙ୍କୁ ନିହତ କଲାପ୍ରାୟ ଆମ୍ଭେମାନେ ଏହି ବୃଷ୍ଣିବୀର ସାତ୍ୟକ ଓ ପୃଷତବଂଶୀୟ ଧୃଷ୍ଟଦ୍ୟୁମ୍ନ ମହାରଥୀଦ୍ୱୟଙ୍କୁ ଚତୁର୍ଦ୍ଦିଗରୁ ପରିବେଷ୍ଟନପୂର୍ବକ ନିହତ କରିବାକୁ ଯତ୍ନ କରିବୁଁ । ଦେଖନ୍ତୁ, ସବ୍ୟସାଚୀ ଧନଞ୍ଜୟ ସାତ୍ୟକଙ୍କୁ ବହୁସଂଖ୍ୟକ କୁରୁବୀରମାନଙ୍କ ସହିତ ଯୁଦ୍ଧରେ ସମାସକ୍ତ ହେବାର ଅବଗତ ହୋଇ ଦ୍ରୋଣ ସୈନ୍ୟାଭିମୁଖକୁ ଆଗମନ କରୁଅଛନ୍ତି । ଅତଏବ ସାତ୍ୟକ ବହୁସଂଖ୍ୟକ ଯୋଦ୍ଧୃଗଣଙ୍କ କର୍ତ୍ତୃକ ପରିବେଷ୍ଟିତ ହୋଇଅଛନ୍ତି ବୋଲି ବିଶେଷରୂପେ ଅବଗତ ହେବା ପୂର୍ବରୁ ଆମ୍ଭପକ୍ଷୀୟ ବହୁସଂଖ୍ୟକ ପ୍ରଧାନ ପ୍ରଧାନ ରଥିସତ୍ତମବୃନ୍ଦ ତାହାଙ୍କ ଆଗମନରେ ବାଧା ଜନ୍ମାଇବା ନିମିତ୍ତ ସେ ସ୍ଥାନକୁ ଅବିଳମ୍ବେ ଗମନ କରନ୍ତୁ । ଏହି ସକଳ ଶୂରମାନେ ନିରନ୍ତର ଶରବୃଷ୍ଟି କରିବାରେ ଉଦ୍ୟୁକ୍ତ ହେଉନ୍ତୁ ଯଦ୍ଦ୍ୱାରା କି ମଧୁବଂଶୀୟ ସାତ୍ୟକ ଶୀଘ୍ର ଶମନଭବନକୁ ଗମନ କରିବେ ।

ହେ ମହାରାଜ ! ଆପଣ ସୁମାଙ୍କ ସୁଯୁକ୍ତ ଅବଲମ୍ବନପୂର୍ବକ ଏହା ସମ୍ପାଦନ କରନ୍ତୁ । ୭୦ । ହେ ମହାରାଜ ! ଆପଣଙ୍କପୁତ୍ର ଦୁର୍ଯ୍ୟୋଧନ କର୍ଣ୍ଣଙ୍କର ଅଭିପ୍ରାୟ ଅବଗତ ହୋଇ ଇନ୍ଦ୍ର ଯେପରି ଯଶସ୍ୱୀ ବିଷ୍ଣୁଙ୍କୁ କହିଥିଲେ, ସେହିପରି ସୁବଳନନ୍ଦନ ଶକୁନିଙ୍କୁ କହିଲେ । ୭୧ । ହେ ମାତୁଳ ! ତୁମ୍ଭେ ସମରରେ ଅନିବର୍ତ୍ତୀ ଦଶସହସ୍ର ହସ୍ତୀ ଓ ଦଶସହସ୍ର ରଥମାନଙ୍କ ଦ୍ୱାରା ପରିବୃତ ହୋଇ ସତ୍ୱର ଧନଞ୍ଜୟଙ୍କ ପ୍ରତିପକ୍ଷରେ ଯାତ୍ରା କର । ୭୨ । ଦୁଃଶାସନ, ଦୁର୍ବିସହ, ସୁବାହୁ ଓ ଦୁଷ୍ପ୍ରଧର୍ଷଣ ଆମ୍ଭର ଏହି ଭ୍ରାତାମାନେ ବହୁସଂଖ୍ୟକ ପଦାତି ସୈନ୍ୟରେ ପରିବୃତ ହୋଇ ଆପଣଙ୍କ ଅନୁଗମନ କରିବେ । ୭୩ । ହେ ମହାବାହୋ ମାତୁଳ ! ଆପଣ କୃଷ୍ଣାର୍ଜ୍ଜୁନ, ଧର୍ମ୍ମରାଜ ଯୁଧିଷ୍ଠିର, ନକୁଳ, ସହଦେବ ଓ ଭୀମସେନଙ୍କୁ ବିନାଶ କରନ୍ତୁ । ଦେବତାମାନେ ଯେପରି ଇନ୍ଦ୍ରଙ୍କଠାରେ ଜୟାଶା ରଖନ୍ତି, ସେହିପରି ଆମ୍ଭେ ଆପଣଙ୍କଠାରେ ଜୟାଶା ରଖିଅଛୁଁ । ଯେପରି କାର୍ତ୍ତିକେୟ ଅସୁର ସୈନ୍ୟମାନଙ୍କୁ ସଂହାର କରିଥିଲେ ସେହିପରି ଆପଣ ମଧ୍ୟ କୁନ୍ତୀନନ୍ଦନମାନଙ୍କୁ ସଂହାର କରନ୍ତୁ । ୭୫ ।

ସଞ୍ଜୟ କହିଲେ, ହେ ମହାରାଜ ! ସୁବଳନନ୍ଦନ ଶକୁନି ଆପଣଙ୍କପୁତ୍ର ଦୁର୍ଯ୍ୟୋଧନଙ୍କର ଆଦେଶାନୁସାରେ ଦୁଃଶାସନ ପ୍ରଭୃତି ଆପଣଙ୍କପୁତ୍ରଗଣ ଓ ମହତି ସେନାସହ ଦୁର୍ଯ୍ୟୋଧନଙ୍କର ପ୍ରିୟ କାମନାରେ କୁନ୍ତୀନନ୍ଦନମାନଙ୍କର ସଂହାରାଭିଳାଷରେ ଗମନ କଲେ ।

ଏହିପରି ଶକୁନି ପାଣ୍ଡବସୈନ୍ୟ ମଧ୍ୟରେ ପ୍ରବେଶ କରନ୍ତେ ବିପକ୍ଷମାନଙ୍କ ସହିତ ଆପଣଙ୍କପକ୍ଷୀୟ ସୈନ୍ୟମାନଙ୍କର ଘୋର ସଂଗ୍ରାମ ଆରମ୍ଭ ହେଲା । ପୁଣି ସୂତପୁତ୍ର କର୍ଣ୍ଣ ସୁମହତ୍ ସୈନ୍ୟଦ୍ୱାରା ପରିବୃତ ହୋଇ ଅସଂଖ୍ୟ ଶରବର୍ଷଣ କରୁ କରୁ ତ୍ୱରାସହ ସାତ୍ୟକିଙ୍କ ପ୍ରତି ଧାବିତ ହେଲେ । ତତ୍ପରେ ସମସ୍ତ ପାର୍ଥିବଗଣ ସାତ୍ୟକିଙ୍କୁ ପରିବେଷ୍ଟନ କଲେ । ୭୯ । ସେହି ନିଶାକାଳରେ ଭରଦ୍ୱାଜନନ୍ଦନ ଦ୍ରୋଣ ଧୃଷ୍ଟଦ୍ୟୁମ୍ନଙ୍କ ପ୍ରତି ଗମନ କରନ୍ତେ ମହାବୀର ଧୃଷ୍ଟଦ୍ୟୁମ୍ନ ଓ ପାଞ୍ଚାଳଗଣଙ୍କ ସହିତ ଦ୍ରୋଣାଚାର୍ଯ୍ୟଙ୍କର ଅତି ଅଦ୍ଭୁତ ଯୁଦ୍ଧ ଆରମ୍ଭ ହେଲା । ୮୦ ।

---

# ୧୭୧ ଅଧ୍ୟାୟ

ସଞ୍ଜୟ କହିଲେ—ହେ ମହାରାଜ ! ତଦନନ୍ତର କୌରବପକ୍ଷୀୟ ରଣଦୁର୍ମ୍ମଦ ବୀରମାନେ ଅସହିଷ୍ଣୁ ହୋଇ ସଂରମ୍ଭରେ ଅନ୍ତଶଯ୍ୟ ବେଗସହିତ ସାତ୍ୟକଙ୍କର ରଥାଭିମୁଖକୁ ଧାବମାନ ହେଲେ । ୧ । ସେମାନେ ସୁବର୍ଣ୍ଣ ଓ ରଜତବିଭୂଷିତ ନାନା ଉପକରଣକଳ୍ପିତ ରଥ, ଅଶ୍ୱାରୋହୀ ଓ ହସ୍ତୀ-ସମୂହଦ୍ୱାରା ସାତ୍ୟକଙ୍କୁ ପରିବେଷ୍ଟନ କଲେ ।

ଏହାପରେ ସେହି ମହାରଥୀମାନେ ତାହାଙ୍କୁ ଚତୁର୍ଦ୍ଦିଗରୁ ଅବରୋଧ କରି ସିଂହନାଦପୂର୍ବକ ତର୍ଜ୍ଜନ କଲେ । ୩ । ମହାବୀର୍ଯ୍ୟଶାଳୀ କୌରବ-ଗଣ ମଧୁକୁଳନନ୍ଦନ ସତ୍ୟବିକ୍ରମ ସାତ୍ୟକଙ୍କୁ ବିନାଶ କରିବା ଅଭିପ୍ରାୟରେ ଅତିଶୟ ତ୍ୱରାନ୍ୱିତ ହୋଇ ତାହାଙ୍କ ପ୍ରତି ନିରନ୍ତର ତୀକ୍ଷ୍ଣତର ଅତିଶୟ ଶରବର୍ଷଣ କଲେ । ୪ । ପରବୀରହନ୍ତା ମହାବାହୁ ସାତ୍ୟକି ସେହି ବୀର-ମାନଙ୍କୁ ବେଗରେ ଆପତିତ ହେବାର ଅବଲୋକନ କରି ଅସଂଖ୍ୟ ବିଶିଖ ଜାଲ ବିସ୍ତାରପୂର୍ବକ ସେମାନଙ୍କୁ ପ୍ରତି ଗ୍ରହଣ କଲେ । ୫ । ହେ ମହାରାଜ ! ସେହି ସମୟରେ ସେହି ମଧୁ ବଂଶୀୟ ଧନୁର୍ଦ୍ଧରଶ୍ରେଷ୍ଠ ସମରଦୁର୍ମ୍ମଦ ମହାବୀର ସାତ୍ୟକି ସନ୍ନତପର୍ବ ଉଗ୍ରତର ଶର ଓ କ୍ଷୁରପାସ୍ତ୍ରସମୂହ ଦ୍ୱାରା କୌରବ-ପକ୍ଷୀୟ ଯୋଦ୍ଧାମାନଙ୍କର ମସ୍ତକ ଓ ବାହୁ ସକଳ ଓ ଅସଂଖ୍ୟ ହସ୍ତୀଶୁଣ୍ଡ ଓ ତୁରଙ୍ଗମାନଙ୍କର ଗ୍ରୀବାସବୁ ଛେଦନ କଲେ । ୭ । ସେହି ସମୟରେ ସେହି ସମରଭୂମି ଇତସ୍ତତଃ ନିପତିତ ଚାମର ଓ ଶୁଭ୍ରବର୍ଣ୍ଣ ଛତ୍ରସମୂହଦ୍ୱାରା ନକ୍ଷତ୍ରମାଳାବିରାଜିତ ନଭୋମଣ୍ଡଳସଦୃଶ ଶୋଭିତ ହେଲା । ୮ । ପୁଣି ସାତ୍ୟକଙ୍କ ସହିତ ସମରପ୍ରବୃତ୍ତ ଯୋଦ୍ଧାମାନଙ୍କର ଏପରି ତୁମୁଳ ଶବ୍ଦ ହେଲା ଯେ, ବୋଧ ହେଲା ଯେପରି ପ୍ରେତଗଣ ରୋଦନ କରୁଅଛନ୍ତି । ୯ । ସେହି ସୁମହାନ୍ ଶବ୍ଦଦ୍ୱାରା ବସୁନ୍ଧରା ପରିପୂର୍ଣ୍ଣା ହେଲା । ବିଭାବରୀ ଅତିଶୟ ନିଷ୍ଠୁର ମୂର୍ତ୍ତି ଧାରଣ କରି ପ୍ରାଣିମାନଙ୍କର ଭୟପ୍ରଦା ହେଲା । ୧୦ ।

ସେହି ଲୋମହର୍ଷଣକର ନିଶୀଥ ସମୟରେ ଆପଣଙ୍କ ପୁତ୍ର ରଥୀ-ପ୍ରବର ଦୁର୍ଯ୍ୟୋଧନ ସାତ୍ୟକଙ୍କ ସାୟକ ପ୍ରହାରରେ ସେମାନଙ୍କୁ ପ୍ରଭଗ୍ନ ହେବାର ଦେଖି ଓ ବିପୁଳନାଦ ଶ୍ରବଣ କରି ସାରଥିକୁ ବାରମ୍ବାର କହିଲେ,

ଯେ ଯେଉଁଠାରେ ଏହି ଉଦ୍ଧଙ୍କର ଶବ୍ଦ ହେଉଅଛି ସେହିଠାକୁ ଅଶ୍ୱଚାଳନା କର । ୧୨ । ସାରଥି ତାହାଙ୍କର ଆଦେଶାନୁସାରେ ସେହି ଉତ୍କୃଷ୍ଟ ଅଶ୍ୱ-ମାନଙ୍କୁ ଯୁଯୁଧାନଙ୍କର ଆଦେଶାନୁସାରେ ଯୁଯୁଧାନଙ୍କର ରଥପ୍ରତି ଚାଳନା କଲେ । ୧୩ । ଅନନ୍ତର ଜିତକ୍ଳମ ବିଚିତ୍ରଯୋଧୀ ଲଘୁହସ୍ତ ଦୃଢ଼ଧନ୍ୱା କୁରୁପତି ଦୁର୍ଯ୍ୟୋଧନ କ୍ରୋଧଭରେ ସାତ୍ୟକିଙ୍କ ସମୀପସ୍ଥ ହୋଇ ଶୋଣିତ-ଭୋଜୀ ଦ୍ୱାଦଶଗୋଟି ଶର ଆକର୍ଣ୍ଣ ଆକର୍ଷଣପୂର୍ବକ ତାହାଙ୍କ ଉପରକୁ ନିକ୍ଷେପ କରି ତାହାଙ୍କର ହୃଦୟ ଭେଦ କଲେ । ୧୫ । ଶିନିପୌତ୍ର ପ୍ରଥମରେ ଦୁର୍ଯ୍ୟୋଧନଙ୍କ ଶରାଘାତରେ ଅତିଶୟ ପ୍ରପୀଡ଼ିତ ହୋଇ ଅମର୍ଷ-ସହ ଦଶଗୋଟି ଶରଦ୍ୱାରା ତାହାଙ୍କୁ ପ୍ରତିବିଦ୍ଧ କଲେ । ୧୬ ।

ସେହି ସମୟରେ କୌରବ ଓ ପାଞ୍ଚାଳମାନଙ୍କ ମଧ୍ୟରେ ଅତି ନିଦାରୁଣ ତୁମୁଳ ସଂଗ୍ରାମ ଉପସ୍ଥିତ ହେଲା । ୧୭ । ତଦନନ୍ତର ସାତ୍ୟକି ସମରରେ ଅତି କ୍ରୁଦ୍ଧ ହୋଇ ଅଶୀତି ସଂଖ୍ୟକ ସାୟକଦ୍ୱାରା ଆପଣଙ୍କ ମହାରଥୀ ପୁତ୍ରଙ୍କର ବକ୍ଷଃସ୍ଥଳ ବିଦ୍ଧ କଲେ । ବହୁସଂଖ୍ୟକ ଶରଦ୍ୱାରା ତାହାଙ୍କର ଅଶ୍ୱମାନଙ୍କୁ ନିହତ କରି ଅବିଳମ୍ବେ ଗୋଟିଏ ସାୟକଦ୍ୱାରା ସାରଥିକୁ ରଥଗାଡ଼ିରୁ ଭୂତଳରେ ପାତିତ କଲେ । ୧୯ । ହେ ରାଜନ୍ ! ଆପଣଙ୍କ ପୁତ୍ର ସେହି ହତତୁରଙ୍ଗ ରଥରେ ଅବସ୍ଥାନପୂର୍ବକ ସାତ୍ୟକିଙ୍କ ରଥପ୍ରତି ଶାଣିତ ପଞ୍ଚାଶତ ଶର ନିକ୍ଷେପ କଲେ । ୨୦ ।

ତେତେବେଳେ ସାତ୍ୟକି ହସ୍ତଲାଘବ ପ୍ରଦର୍ଶନପୂର୍ବକ ଦୁର୍ଯ୍ୟୋଧନଙ୍କ ନିକ୍ଷିପ୍ତ ଶରଜାଲକୁ ନିବାରଣ କରି ଅତି ବେଗରେ ଗୋଟିଏ ଭଲ୍ଲାସ୍ତ୍ରଦ୍ୱାରା ଆପଣଙ୍କ ପୁତ୍ରଙ୍କର ମହତ୍ ଶରାସନର ମୁଷ୍ଟିଦେଶ ଛେଦନ କଲେ । ୨୨ । ସେହି କାଳରେ ସମସ୍ତଲୋକର ପ୍ରଭୁ ଓ ଈଶ୍ୱର କୁରୁରାଜ ଛିନ୍ନଶରାସନ ଓ ରଥଭ୍ରଷ୍ଟ ହୋଇ ଅବିଳମ୍ବେ କୃତବର୍ମ୍ମାଙ୍କର ଭାସ୍କର ରଥରେ ଆରୋହଣ କଲେ । ୨୩ । ହେ ବଂଶାପତେ ! ସେହି ନିଶାକାଳରେ ଆପଣଙ୍କପୁତ୍ର ପରାଙ୍ମୁଖ ହୁଅନ୍ତେ ସାତ୍ୟକି ଶରବର୍ଷଣପୂର୍ବକ ଆତ୍ମପକ୍ଷୀୟ ସୈନ୍ୟମାନଙ୍କୁ ବିଦ୍ରାବିତ କଲେ । ୨୪ । ସେହି ସମୟରେ ଶକୁନି ସହସ୍ର ସହସ୍ର ରଥୀ, ହସ୍ତୀ ଓ ଅଶ୍ୱସୈନ୍ୟମାନଙ୍କ ଦ୍ୱାରା ଅର୍ଜ୍ଜୁନଙ୍କୁ ଚତୁର୍ଦ୍ଦିଗରୁ ଅବରୋଧ କରି ତାହାଙ୍କ ପ୍ରତି ନିୟତ ଶସ୍ତ୍ରବର୍ଷଣ କଲେ ।

ହେ ମହାରାଜ ! ସେହି କ୍ଷତ୍ରିୟମାନେ କାଳପ୍ରେରିତ ହୋଇ ମହାସ୍ତ୍ର ସମୂହ ବିକିରଣ କରି ଅର୍ଜ୍ଜୁନଙ୍କ ସହିତ ସଂଗ୍ରାମରେ ପ୍ରବୃତ୍ତ ହେଲେ । ସେତେବେଳେ ଅର୍ଜ୍ଜୁନ କ୍ରୋଧରେ ବିପୁଳ ସୈନ୍ୟକ୍ଷୟ କରିବାରେ ପ୍ରବୃତ୍ତ ହୋଇ ସହସ୍ର ସହସ୍ର ଗଜ ଓ ଅଶ୍ୱ ଏବଂ ରଥିମାନଙ୍କୁ ନିବାରଣ କଲେ । ଧନଞ୍ଜୟ ଏହିପରି ଶତ୍ରୁସଂହାର କରନ୍ତେ ମହାବୀର ସୁବଳନନ୍ଦନ ଶକୁନି ତାହାଙ୍କୁ ସହାସ୍ୟ ବଦନରେ ସାୟକସମୂହ ଦ୍ୱାରା ଗାଢ଼ବିଦ୍ଧ କଲେ । ତତ୍ପରେ ଶତ ଶତ ଶରଜାଲ ବିସ୍ତାରପୂର୍ବକ ଅର୍ଜ୍ଜୁନଙ୍କର ବୃହତ୍ କପିଧ୍ୱଜ ରଥକୁ ସମାଚ୍ଛନ୍ନ କଲେ । ୨୯ । ଅନନ୍ତର ଧନଞ୍ଜୟ ବିଂଶତି ଗୋଟି ଶରରେ ଶକୁନିଙ୍କୁ ଓ ତିନିତିନି ଗୋଟି ବାଣରେ ଅପରାପର ମହାଧନୁର୍ଦ୍ଧର-ମାନଙ୍କୁ ବିଦ୍ଧ କଲେ ।

ହେ ମହାରାଜ ! ମହାବୀର ଅର୍ଜ୍ଜୁନ ଏହି ସମସ୍ତ ମଧ୍ୟରେ ଶତ୍ରୁନିକ୍ଷିପ୍ତ ଶରସମୂହ ନିରାକୃତ କରି ବଜ୍ରବେଗଗାମୀ ଉତ୍କୃଷ୍ଟ ଶରନିକର ଦ୍ୱାରା ଆପଣଙ୍କ ପକ୍ଷୀୟ ଯୋଦ୍ଧାମାନଙ୍କୁ ସଂହାର କଲେ । ୩୧ । ସେହିକାଳରେ ବୀରଗଣଙ୍କର କରିକରୋପମ ଛିନ୍ନ ଭୁଜସମୂହ ଚତୁର୍ଦ୍ଦିଗରେ ନିପତିତ ହୁଅନ୍ତେ ରଣାଙ୍ଗନ ପଞ୍ଚଶୀର୍ଷ ପନ୍ନଗଗଣଦ୍ୱାରା ସମାକୀର୍ଣ୍ଣ ହେଲାପ୍ରାୟ ବୋଧହେଲା । ଏହିପରି ନିଷ୍କଚୂଡ଼ାମଣିକିରୀଟ ଓ କୁଣ୍ଡଳାଳଂକୃତ ସୁନ୍ଦର-ନାସିକାସମନ୍ୱିତ ମସ୍ତକ ସମୂହ ନିପତିତ ହେଲା । କ୍ଷତ୍ରିୟମାନଙ୍କର ଯେଉଁ ବଦନ ସମୂହରୁ ସର୍ବଦା ପ୍ରିୟ ବାକ୍ୟମାନ ନିର୍ଗତ ହେଉଥିଲା ବର୍ତ୍ତମାନ ସେସମସ୍ତ କ୍ରୋଧବଶରୁ ସଂଦଷ୍ଟାଧର ଓ ଉଦ୍‌ବୃତ୍ତଲୋଚନ ହୋଇଥିଲା । ଈଦୃଶ ଅବସ୍ଥାରେ ସେହି ବଦନସମନ୍ୱିତ ମସ୍ତକରାଶି ଛିନ୍ନ ହୋଇ ଭୂତଳରେ ଇତସ୍ତତଃ ପତିତ ହେବାରୁ ବିନ୍ୟସ୍ତ ପଙ୍କଜରାଜି ସଦୃଶ ସଂଗ୍ରାମ-ଭୂମିକୁ ଶୋଭିତ କଲା । ୩୪ ।

ଉଗ୍ରପରାକ୍ରମଶାଳୀ ଧନଞ୍ଜୟ ତାଦୃଶ ଭୟଙ୍କର କାର୍ଯ୍ୟ କରି ପୁନର୍ବାର ପାଞ୍ଚଗୋଟି ଶରରେ ଶକୁନିଙ୍କୁ ଓ ତିନିଗୋଟି ଶରରେ ତାହାଙ୍କର ପୁତ୍ର ଉଲୂକକୁ ତାଡ଼ିତ କଲେ । ଉଲୂକ ସେହିପ୍ରକାରେ ବିଦ୍ଧ ହୋଇ ବାସୁଦେବଙ୍କୁ ଶରନିକରରେ ନିପୀଡ଼ିତ କଲେ । ୩୬ । ତତ୍ପରେ ବସୁନ୍ଧରା ପରିପୂରିତ କରି ଉଲୂକ ସିଂହନାଦ କରିବାରେ ପ୍ରବୃତ୍ତ ହେଲେ । ସେହି

ସମୟରେ ଧନଞ୍ଜୟ ଶରନିକର ଦ୍ୱାରା ଶକୁନିଙ୍କର ଶରାସନ ଛେଦନ କରି ତାହାଙ୍କର ଅଶ୍ୱଚତୁଷ୍ଟୟକୁ ନିହତ କଲେ । ଶକୁନି ହତାଶ୍ୱରଥରୁ ଲମ୍ଫ-ପ୍ରଦାନ ପୂର୍ବକ ଅବିଳମ୍ବେ ଉଲୂକଙ୍କ ରଥରେ ଆରୋହଣ କଲେ ।

ହେ ନରନାଥ ! ଯେପରି ଜଳଧରଯୁଗଳ ଅଚଳପୃଷ୍ଠରେ ବାରିଧାରା ବର୍ଷଣ କରେ ସେହିପରି ଗୋଟିଏ ରଥରେ ପିତା ପୁତ୍ର ଦୁହେଁ ଆରୂଢ଼ ହୋଇ ଧନଞ୍ଜୟଙ୍କ ପ୍ରତି ନିରନ୍ତର ଶରଧାରା ବର୍ଷଣ କଲେ । ଅନନ୍ତର ପାଣ୍ଡୁନନ୍ଦନ ଧନଞ୍ଜୟ ନିଶିତ ଶରନିକରଦ୍ୱାରା ସେ ଦୁହିଁଙ୍କୁ ବିଦ୍ଧ କରି ଆପଣଙ୍କ ପକ୍ଷୀୟ ବ୍ୟୂହିତ ଅସଂଖ୍ୟ ସେନାକୁ ଶରାନଳରେ ଦଗ୍ଧ କଲେ । ଅନିଳ କର୍ତ୍ତୃକ ଅଭ୍ରରାଶି ଛିନ୍ନଭିନ୍ନ ହେଲାପ୍ରାୟ କୌରବ ସୈନ୍ୟଗଣ ଚତୁର୍ଦ୍ଦିଗରେ ଛିନ୍ନଭିନ୍ନ ହେଲେ । ହେ ବଂଶାପତେ ! ସେହି ନିଶାକାଳରେ ଭୟାର୍ଦ୍ଦିତ ସୈନିକମାନେ ଧନଞ୍ଜୟଙ୍କ କର୍ତ୍ତୃକ ବଧମାନ ହୋଇ ଚତୁର୍ଦ୍ଦିଗ ନିରୀକ୍ଷଣ କରୁକରୁ ବେଗରେ ପଳାୟନ କଲେ । ସେହି ଦାରୁଣ ଅନ୍ଧକାର ସମୟରେ ପଳାୟନପର ଯୋଦ୍ଧାମାନଙ୍କ ମଧ୍ୟରେ କେହି କେହି ବୀରମାନେ ତୁରଙ୍ଗ ମାତଙ୍ଗ ପ୍ରଭୃତି ସ୍ୱ ସ୍ୱ ବାହନମାନଙ୍କୁ ସତ୍ୱର ସଞ୍ଚାଳନ କରି କେହି କେହି ଅବା ବାହନମାନଙ୍କୁ ପରିତ୍ୟାଗ କରି ଧାବିତ ହେଲେ ।

ହେ ଭାରତ ! ବାସୁଦେବ ଓ ଧନଞ୍ଜୟ ଏହିପରି କୌରବମାନଙ୍କୁ ପରାଜିତ କରି ପ୍ରୀତିସହ ଶଙ୍ଖଧ୍ୱନି କଲେ । ଏହି ସମୟରେ ଧୃଷ୍ଟଦ୍ୟୁମ୍ନ ଦ୍ରୋଣଙ୍କୁ ତିନିଗୋଟି ଶରରେ ବିଦ୍ଧ କରି ଅବିଳମ୍ବେ ଗୋଟିଏ ଶରଦ୍ୱାରା ତାହାଙ୍କ ଶରାସନର ଗୁଣ ଛେଦନ କଲେ । ତେତେବେଳେ କ୍ଷତ୍ରିୟ-ମର୍ଦ୍ଦନକାରୀ ମହାବୀର ଦ୍ରୋଣ ରଥମଣ୍ଡଳରେ ଛିନ୍ନଶରାସନକୁ ସ୍ଥାପନ କରି ଅତି ବେଗସହ ସାରବାନ୍ ଅପର ଗୋଟିଏ ଶରାସନ ଗ୍ରହଣ କଲେ । ତତ୍ପରେ ସେ ଧୃଷ୍ଟଦ୍ୟୁମ୍ନଙ୍କୁ ଶୀଘ୍ରଗାମୀ ସାତଗୋଟି ଶରରେ ବିଦ୍ଧ କରି ପାଞ୍ଚଗୋଟି ଶରରେ ତାହାଙ୍କର ସାରଥିକୁ ବିଦ୍ଧ କଲେ । ହେ ମହାରାଜ ! ମହାରଥୀ ଧୃଷ୍ଟଦ୍ୟୁମ୍ନ ଶରବୃଷ୍ଟିଦ୍ୱାରା ମୁହୂର୍ତ୍ତକ ମଧ୍ୟରେ ଦ୍ରୋଣଙ୍କୁ ନିବାରଣ କରି ଦେବରାଜ ଆସୁରୀ ସୈନ୍ୟଙ୍କୁ ଦଳନ କଲାପ୍ରାୟ କୌରବୀସେନାକୁ ବିମର୍ଦ୍ଦନ କଲେ ।

ହେ ମହାରାଜ ! ଏହିପରି ଆପଣଙ୍କ ପୁତ୍ରଙ୍କର ସୈନ୍ୟମାନେ ବଧ୍ୟମାନ ହୁଅନ୍ତେ ଉଭୟପକ୍ଷର ସୈନ୍ୟ ମଧ୍ୟରେ ଯମଲୋକସ୍ଥିତ ବୈତରଣୀ ତୁଲ୍ୟ ଭୀଷଣମୂର୍ତ୍ତି ଶୋଣିତ-ତରଙ୍ଗିଣୀ ଗୋଟିଏ ନଦୀ ସମୁତ୍ପନ୍ନ ହେଲା । ସେହି ନଦୀରେ ତୁରଙ୍ଗ, ମାତଙ୍ଗ ଓ ଶତାଙ୍ଗ ସମୂହ ନୌକା ଓ ଜଳଜନ୍ତୁ ସଦୃଶ ହୋଇ ନିରନ୍ତର ପ୍ରବାହିତ ହେଲା । ହେ ମହାରାଜ ! ସେହିକାଳରେ ପ୍ରତାପବାନ୍ ଧୃଷ୍ଟଦ୍ୟୁମ୍ନ ସେହି ସୈନ୍ୟମାନଙ୍କୁ ବିଦାରଣ ପୂର୍ବକ ଶୂରଗଣ ପରିବେଷ୍ଟିତ ମହାତେଜା ସୁରପତିଙ୍କ ସଦୃଶ ରଣାଙ୍ଗନରେ ବିରାଜିତ ହେଲେ । ପାଣ୍ଡୁନନ୍ଦନ ବୃକୋଦର ଯମଜ ନକୁଳ ସହଦେବ, ସାତ୍ୟକି ଓ ଶିଖଣ୍ଡୀଙ୍କ ସହିତ ମିଳିତ ହୋଇ ଉଚ୍ଚୈଃସ୍ୱରରେ ଶଙ୍ଖଧ୍ୱନି କଲେ । ଏହିପରି ରଣୋତ୍କଟ ଜୟ ପ୍ରଭାବାନ୍ୱିତ ମହାରଥୀ ପାଣ୍ଡବମାନେ ଆପଣଙ୍କ ପୁତ୍ର ଦୁର୍ଯୋଧନ, କର୍ଣ୍ଣ, ମହାବୀର ଦ୍ରୋଣ ଓ ଅଶ୍ୱତ୍ଥାମାଙ୍କ ସମକ୍ଷରେ କୌରବପକ୍ଷୀୟ ସହସ୍ର ସହସ୍ର ରଥମାନଙ୍କୁ ସଂହାର କରି ସିଂହସଦୃଶ ଘୋର ନିନାଦ କଲେ । ୫୪ ।

---

# ୧୬୨ ଅଧ୍ୟାୟ

ସଞ୍ଜୟ କହିଲେ—ହେ ମହାରାଜ ! ଆପଣଙ୍କ ପୁତ୍ର ରାଜା ଦୁର୍ଯୋଧନ ପାଣ୍ଡବ ପକ୍ଷୀୟ ସେହି ମହାତ୍ମା ବୀରଗଣଙ୍କ କର୍ତ୍ତୃକ ବଧ୍ୟମାନ ଓ ପଳାୟନପର ଅବଲୋକନ କରି କ୍ରୋଧରେ ଅଧୀର ହୋଇ ଜୟଶାଳୀ-ପ୍ରବର ଦ୍ରୋଣ ଓ କର୍ଣ୍ଣଙ୍କ ସମୀପରେ ସହସା ଉପସ୍ଥିତ ହେଲେ ଓ ବାକ୍‌ପଟୁତା ପ୍ରକାଶ ପୂର୍ବକ ଏହି କଥା କହିଲେ ଯେ, ସମରାଙ୍ଗଣରେ ସବ୍ୟସାଚୀଙ୍କ କର୍ତ୍ତୃକ ସିନ୍ଧୁରାଜ ଜୟଦ୍ରଥଙ୍କୁ ନିହତ ନିରୀକ୍ଷଣ କରି ଆପଣ-ମାନେ କ୍ରୋଧବଶରୁ ଏହି ସମରାନଳ ପ୍ରଜ୍ୱଳିତ କରିଅଛନ୍ତି । ୩ । ବର୍ତ୍ତମାନ ପାଣ୍ଡବ ସୈନ୍ୟଙ୍କ କର୍ତ୍ତୃକ ଆମ୍ଭପକ୍ଷୀୟ ସୈନ୍ୟମାନଙ୍କୁ ବିନଷ୍ଟ ହେବାର ଅବଲୋକନ କରି ଆପଣମାନେ ଅରାତି ନିପାତନରେ ସମର୍ଥ ହୋଇ ମଧ୍ୟ ଏକାନ୍ତ ଅଶକ୍ତତୁଲ୍ୟ ଉପେକ୍ଷା କରୁଅଛନ୍ତି । ୪ । ଆମ୍ଭଙ୍କୁ ଯଦି ଆପଣ-ମାନଙ୍କର ତ୍ୟାଗ କରିବାର ଅଭିଳାଷ ଥିଲା ତେବେ ଆମ୍ଭେମାନେ ସମରରେ ପାଣ୍ଡୁପୁତ୍ରମାନଙ୍କୁ ପରାଜୟ କରିବୁ" ଏପରି କହିବା ଉଚିତ ନ ଥିଲା ।

କାରଣ ଆପଣମାନଙ୍କର ତାଦୃଶ ଅଭିପ୍ରାୟ ଆମ୍ଭେ ଅବଗତ ହୋଇଥିଲେ କଦାଚ ପୃଥାପୁତ୍ରମାନଙ୍କ ସହିତ ଈଦୃଶ ଲୋକକ୍ଷୟକର ଶତ୍ରୁତା ଉତ୍ପାଦନ କରି ନ ଥାନ୍ତୁ । ୬ । ହେ ପୁରୁଷଶ୍ରେଷ୍ଠଦ୍ୱୟ ! ଯଦି ଆମ୍ଭେ ଆପଣମାନଙ୍କର ପରିତ୍ୟାଜ୍ୟ ନ ହେଉଁ ତାହାହେଲେ ଆପଣ ଦୁହେଁ ଯାଦୃଶ ବିକ୍ରମସମ୍ପନ୍ନ ତଦ୍ରୂପ ସଂଗ୍ରାମ କରନ୍ତୁ । ୭ ।

ହେ ମହାରାଜ ! ମହାବୀର ଦ୍ରୋଣ ଓ କର୍ଣ୍ଣ ଦୁହେଁ ବାକ୍ୟରୂପ ପ୍ରତୋଦଦ୍ୱାରା ପରିଚାଳିତ ହୋଇ ଦଣ୍ଡମର୍ଦ୍ଦିତ ଭୁଜଙ୍ଗସଦୃଶ ସମରରେ ପ୍ରବୃତ୍ତ ହେଲେ । ୮ ।

ଏହି ପ୍ରକାରେ ସର୍ବଲୋକଧନୁର୍ଦ୍ଧର ରଥିଶ୍ରେଷ୍ଠ ଦ୍ରୋଣ ଓ କର୍ଣ୍ଣ ଏ ଦୁହେଁ ସାତ୍ୟକି ପ୍ରଭୃତି ପାଣ୍ଡବମାନଙ୍କ ପ୍ରତି ଧାବମାନ ହୁଅନ୍ତେ ପାଣ୍ଡବ-ମାନେ ମଧ୍ୟ ତାଦୃଶ ପ୍ରକାରେ ସ୍ୱ ସ୍ୱ ସୈନ୍ୟଦ୍ୱାରା ପରିବୃତ ହୋଇ ବାରମ୍ବାର ଗର୍ଜନକାରୀ ସେହି ବୀରଦ୍ୱୟଙ୍କର ଅଭିମୁଖକୁ ଧାବିତ ହେଲେ । ୧୦ । ତଦନନ୍ତର ସର୍ବଶସ୍ତ୍ରଧାରୀପ୍ରବର ଧନୁର୍ଦ୍ଧରାଗ୍ରଗଣ୍ୟ ଦ୍ରୋଣ ରୋଷପରବଶ ହୋଇ ସତ୍ୱର ଶିନିପୁଙ୍ଗବ ସାତ୍ୟକିଙ୍କୁ ଦଶଗୋଟି ଶରଦ୍ୱାରା ବିଦ୍ଧ କଲେ । ୧୧ । ତତ୍ପରେ କର୍ଣ୍ଣ ଦଶଗୋଟି, ଆପଣଙ୍କ ପୁତ୍ର ସାତଗୋଟି, ବୃଷସେନ ଦଶଗୋଟି ଓ ସୁବଳନନ୍ଦନ ଶକୁନି ସପ୍ତଗୋଟି ଶରରେ ତାହାଙ୍କୁ ବିଦ୍ଧ କଲେ । ୧୨ । ତତ୍କାଳରେ ସମସ୍ତେ ସମରରେ ଶିନିପୁଙ୍ଗବ ସାତ୍ୟକିଙ୍କୁ ଶରଜାଳରେ ଅବରୋଧ କଲେ । ସୋମକମାନେ ଦ୍ରୋଣାଚାର୍ଯ୍ୟଙ୍କୁ ତାଦୃଶ ଭାବରେ ପାଣ୍ଡବସୈନ୍ୟ ସଂହାରରେ ପ୍ରବୃତ୍ତ ହେବାର ଦେଖି ଚତୁର୍ଦ୍ଦିଗରୁ ତାହାଙ୍କ ପ୍ରତି ଅତିବେଗରେ ଶରବର୍ଷଣ କଲେ । ସେହି ସମୟରେ ଦ୍ରୋଣାଚାର୍ଯ୍ୟ ପ୍ରଭାକର ଚତୁର୍ଦ୍ଦିଗରେ କିରଣରାଶି ବିକିରଣ କରି ତିମିର-ସମୂହକୁ ଧ୍ୱଂସ କଲାପ୍ରାୟ ଶରଜାଲ ପ୍ରୟୋଗ କରି କ୍ଷତ୍ରିୟମାନଙ୍କର ପ୍ରାଣ ହରଣ କଲେ ।

ସେହି କାଳରେ ଦ୍ରୋଣଙ୍କକର୍ତ୍ତୃକ ବଧ୍ୟମାନ ପରସ୍ପର ନିନାଦକାରୀ ପାଞ୍ଚାଳମାନଙ୍କର ତୁମୁଳ ଶବ୍ଦ ଶ୍ରୁତ ହେଲା । ସେହି ସମୟରେ ସେମାନେ ଜୀବନାର୍ଥୀ ହୋଇ କେହି ପୁତ୍ରକୁ, କେହି ପିତାକୁ, କେହି ଭ୍ରାତାକୁ, କେହି

ମାତୁଳଙ୍କୁ, କେହି ଭାଗିନେୟଙ୍କୁ, କେହି ବୟସ୍ୟଙ୍କୁ, କେହି ଅଥବା ସମ୍ବନ୍ଧୀ ବା ବନ୍ଧୁବାନ୍ଧବଙ୍କୁ ପରିତ୍ୟାଗ ପୂର୍ବକ ସତ୍ୱର ପଳାୟନ କଲେ । କେହି କେହି ଯୋଦ୍ଧା ହତମୋହିତ ହୋଇ ଦ୍ରୋଣାଭିମୁଖକୁ ଧାବିତ ହେଲେ । ସେହି ଯୁଦ୍ଧରେ ପାଣ୍ଡବପକ୍ଷୀୟ ଅସଂଖ୍ୟ ସୈନ୍ୟ ଶମନଭବନକୁ ଗମନ କଲେ । ୧୮ । ସେହି ନିଶାକାଳରେ ପାଣ୍ଡବସୈନ୍ୟମାନେ ମହାତ୍ମା ଦ୍ରୋଣଙ୍କ କର୍ତ୍ତୃକ ଏହିପରି ନିପୀଡ଼ିତ ହୋଇ ଧର୍ମ୍ମନନ୍ଦନ ଯୁଧିଷ୍ଠିର, ଭୀମସେନ, ଧନଞ୍ଜୟ, ବାସୁଦେବ, ଯମଜ ନକୁଳ ସହଦେବ ଓ ଧୃଷ୍ଟଦ୍ୟୁମ୍ନଙ୍କ ସମକ୍ଷରେ ହସ୍ତସ୍ଥିତ ସହସ୍ର ସହସ୍ର ଭଲ୍ଲ ନିକ୍ଷେପପୂର୍ବକ ପଳାୟନ କଲେ । ୨୦ । ଭଲ୍ଲସମୂହ ଭୂତଳରେ ପତିତ ହେବାରୁ ଚତୁର୍ଦ୍ଦିଗ ଉଦ୍ଭାସିତ ହେଲା । କିଛିମାତ୍ର ଅବଗତ ହେବାର ସମ୍ଭାବନା ନ ଥିଲେହେଁ କୌରବପକ୍ଷୀୟ ଦୀପାଲୋକ ପ୍ରଭାବରେ ପଳାୟନପର ଶତ୍ରୁଗଣ ସ୍ପଷ୍ଟରୂପେ ନୟନଗୋଚର ହୋଇ-ଥିଲେ । ୨୧ ।

ହେ ମହାରାଜ ! ମହାରଥୀ ଦ୍ରୋଣ ଓ କର୍ଣ୍ଣ ସେହି ପଳାୟନପରାୟଣ ସୈନ୍ୟମାନଙ୍କୁ ପୃଷ୍ଠଦେଶରୁ ବହୁ ଶରଜାଲ ବିସ୍ତାର କରି ପ୍ରହାର କଲେ । ୨୨ । ଏହିପରି ପାଞ୍ଚାଳଗଣ ଚତୁର୍ଦ୍ଦିଗରେ ଭଗ୍ନ ଓ ବିନଷ୍ଟ ହୁଅନ୍ତେ ଜନାର୍ଦ୍ଦନ ଖିନ୍ନମନା ହୋଇ ଫାଲ୍‌ଗୁନଙ୍କୁ କହିଲେ । ୨୩ । ହେ କୁନ୍ତୀ-ନନ୍ଦନ ! ଧନୁର୍ଦ୍ଧରାଗ୍ରଗଣ୍ୟ ଦ୍ରୋଣ ଓ କର୍ଣ୍ଣ ପାଞ୍ଚାଳଗଣସମବେତ ଧୃଷ୍ଟଦ୍ୟୁମ୍ନ ଓ ସାତ୍ୟକିଙ୍କ ପ୍ରତି ଅତିଶୟ ଶରାଘାତ କରୁଅଛନ୍ତି । ସେମାନଙ୍କ ଶରବୃଷ୍ଟି ପ୍ରଭାବରୁ ଆମ୍ଭପକ୍ଷୀୟ ମହାରଥୀଗଣ ଭଗ୍ନ ହୁଅନ୍ତେ ସୈନ୍ୟମାନେ ବାରମ୍ବାର ନିବାରିତ ହୋଇ ମଧ୍ୟ ଅବସ୍ଥାନ କରୁନାହାନ୍ତି । ୨୪ । ଅତଏବ ଆଗମନ କର, ଆମ୍ଭେ ଦୁହେଁ ସେମାନଙ୍କୁ ନିବାରଣ କରିବାର ଚେଷ୍ଟା କରିବା । ତେତେବେଳେ କେଶବ ଓ ଅର୍ଜ୍ଜୁନ ପଳାୟମାନ ସୈନ୍ୟମାନଙ୍କୁ ସମ୍ବୋଧନ କରି କହିଲେ, ହେ ବୀରଗଣ ! ତୁମ୍ଭେମାନେ ଭୀତ ହୋଇ ପଳାୟନ କର ନାହିଁ, ଭୟ ପରିତ୍ୟାଗ କର । ଆମ୍ଭେ ଦୁହେଁ ଉଦ୍ୟତାୟୁଧ ବ୍ୟୂହିତ ସୈନ୍ୟ-ମାନଙ୍କ ସହିତ ମିଳିତ ହୋଇ ସୂତନନ୍ଦନ କର୍ଣ୍ଣ ଓ ଦ୍ରୋଣଙ୍କୁ ବାଧାଦେବା ନିମିତ୍ତ ଧାବମାନ ହେଉଅଛୁଁ । ୨୬ ।

ଏହି ସମୟରେ ବାସୁଦେବ ଧନଞ୍ଜୟଙ୍କୁ କହିଲେ ଯେ, କୃତାସ୍ତ୍ର, ବଳଶାଳୀ ଓ ଜୟପ୍ରଭାବାନ୍ୱିତ ଏହି ବୀରଦ୍ୱୟଙ୍କୁ ଆମ୍ଭେମାନେ ଉପେକ୍ଷା କରିବାରୁ ସେମାନେ ଏହି ରାତ୍ରିକାଳରେ ତୁମ୍ଭର ସୈନ୍ୟ କ୍ଷୟ କରୁଅଛନ୍ତି । ୨୮ । ବାସୁଦେବ, ଧନଞ୍ଜୟ ଏହିପରି ମନ୍ତ୍ରଣା କରୁଅଛନ୍ତି, ଏପରି ସମୟରେ ଭୀମକର୍ମା ମହାବଳଶାଳୀ ବୃକୋଦର ଅବଲମ୍ବରେ ପଳାୟିତ ସୈନ୍ୟ-ମାନଙ୍କୁ ପ୍ରତ୍ୟାବୃତ୍ତ କରି ରଣମୁଖକୁ ଆଗମନ କଲେ । ୨୯ । ଭୀମସେନ ସସୈନ୍ୟରେ ଆଗମନ କରୁଅଛନ୍ତି ତାହା ଦେଖି କୃଷ୍ଣ ଧନଞ୍ଜୟଙ୍କୁ ଏହା ପ୍ରଦର୍ଶନ ପୂର୍ବକ କହିଲେ, ହେ ପାଣ୍ଡୁନନ୍ଦନ ! ଦେଖ, ସମରଶ୍ଳାଘୀ ଭୀମସେନ କ୍ରୋଧରେ ସୋମକ ଓ ପାଣ୍ଡବଗଣଦ୍ୱାରା ପରିବୃତ ହୋଇ ବେଗସହକାରେ ମହାରଥୀ ଦ୍ରୋଣ ଓ କର୍ଣ୍ଣଙ୍କ ଅଭିମୁଖକୁ ଗମନ କରୁଅଛନ୍ତି । ୩୧ । ତୁମ୍ଭେ ସ୍ୱପକ୍ଷୀୟ ସମସ୍ତ ସୈନ୍ୟମାନଙ୍କୁ ଆଶ୍ୱାସପ୍ରଦାନାର୍ଥ ମହାରଥୀ ପାଞ୍ଚାଳଗଣ ଓ ଭୀମସେନଙ୍କ ସହିତ ସମବେତ ହୋଇ ବିପକ୍ଷ ସହିତ ସମରରେ ପ୍ରବୃତ୍ତ ହୁଅ । ୩୨ ।

ହେ ମହାରାଜ ! ପୁରୁଷଶାର୍ଦ୍ଦୂଳ ! ମାଧବ ଓ ପାଣ୍ଡୁନନ୍ଦନ ଧନଞ୍ଜୟ ଏହିପରି ମନ୍ତ୍ରଣାପୂର୍ବକ ଦ୍ରୋଣ ଓ କର୍ଣ୍ଣଙ୍କ ପ୍ରତି ଲକ୍ଷ୍ୟ କରି ରଣମୁଖରେ ଅବସ୍ଥାନ କଲେ । ୩୩ । ଯୁଧିଷ୍ଠିରଙ୍କ ସୁମହତ୍ ସୈନ୍ୟବୃନ୍ଦ ଯେଉଁଠାରେ ଦ୍ରୋଣ ଓ କର୍ଣ୍ଣ ଶତ୍ରୁବିମର୍ଦ୍ଦନ କରୁଥିଲେ ସେହିଠାକୁ ପୁନରାବର୍ତ୍ତିତ ହୁଅନ୍ତେ ପୂର୍ଣ୍ଣଚନ୍ଦ୍ରୋଦୟରେ ପ୍ରବୃଦ୍ଧ ସାଗରଦ୍ୱୟସଦୃଶ ସେହି ନିଶାକାଳରେ କୌରବ ଓ ପାଣ୍ଡବମାନଙ୍କ ମଧ୍ୟରେ ତୁମୁଳ ସଂଗ୍ରାମ ଉପସ୍ଥିତ ହେଲା । ୩୫ ।

ଅନନ୍ତର ଆପଣଙ୍କପକ୍ଷୀୟ ସୈନ୍ୟମାନେ ଉନ୍ମତ୍ତସଦୃଶ ହୋଇ କରସ୍ଥିତ ଦୀପସମୂହର ଆଲୋକରେ ଅସମ୍ଭ୍ରାନ୍ତଚିତ୍ତରେ ପାଣ୍ଡବମାନଙ୍କ ସହିତ ଯୁଦ୍ଧ କଲେ । ୩୬ । ପରନ୍ତୁ ଅନ୍ଧକାର ଓ ଧୂଳିପଟଳରେ ରଣସ୍ଥଳ ସମାଚ୍ଛନ୍ନ ହୁଅନ୍ତେ ଜୟୈଷୀଗଣ କେବଳ ନାମ ଓ ଗୋତ୍ରାଦିଦ୍ୱାରା ଅବଗତ ହୋଇ ଯୁଦ୍ଧରେ ପ୍ରବୃତ୍ତ ହେଲେ । ୩୭ ।

ହେ ମହାରାଜ ! ଯେପରି ସ୍ୱୟମ୍ବର ସ୍ଥଳରେ ଆଗନ୍ତୁକମାନଙ୍କର ନାମ ଓ ଗୋତ୍ରାଦି ଶ୍ରୁତ ହୁଏ, ସେହିପରି ରଣସ୍ଥଳରେ ମଧ୍ୟ ପ୍ରହାରପ୍ରବୃତ୍ତ

ନରପତିଗଣଙ୍କ କର୍ତ୍ତୃକ ଶ୍ରାବ୍ୟମାଣ ନାମ ଓ ଗୋତ୍ରସକଳ ଶ୍ରୁତ ହେଲା । ୩୮ । ହେ ମହାରାଜ ! ସେହି ସମୟରେ ରଣସ୍ଥଳ ମୁହୂର୍ତ୍ତେ କାଳ ସହସା ଶବ୍ଦଶୂନ୍ୟ ହେଲା । କିନ୍ତୁ ପରକ୍ଷଣରେ ଯେତେବେଳେ ସୈନ୍ୟମାନେ କ୍ରୋଧାବିଷ୍ଟ ହୋଇ ସଂଗ୍ରାମରେ ପ୍ରବୃତ୍ତ ହେଲେ ତେତେବେଳେ ପରାଜିତ ବିଜୟୀ ଦୁଇପକ୍ଷରୁ ପୁନର୍ବାର ତୁମୁଳ ଶବ୍ଦ ସମୁତ୍ଥିତ ହେଲା । ୩୯ ।

ହେ କୁରୁନାଥ ! ସେହି କାଳରେ ଯେଉଁ ଯେଉଁଠାରେ ଦୀପାଲୋକ ଦୃଷ୍ଟ ହେଲା ବୀରଗଣ ପତଙ୍ଗ ସଦୃଶ ସେହି ସେହିଠାରେ ନିପତିତ ହେଲେ । ୪୦ । ଏହିପରି କୌରବ ଓ ପାଣ୍ଡବଗଣ ସମରରେ ପ୍ରବୃତ୍ତ ହୁଅନ୍ତେ ସେହି ମହାନିଶା କ୍ରମରେ ଅତି ପ୍ରଗାଢ଼ତର ହେଲା । ୪୧ ।

---

# ୧୭୩ ଅଧ୍ୟାୟ

ସଞ୍ଜୟ କହିଲେ—ହେ ମହାରାଜ ! ତଦନନ୍ତର ପରବୀରହନ୍ତା କର୍ଣ୍ଣ ପୃଷତକୁଳନନ୍ଦନ ଧୃଷ୍ଟଦ୍ୟୁମ୍ନଙ୍କୁ ସମରରେ ଅବଲୋକନ କରି ତାହାଙ୍କର ବକ୍ଷଃସ୍ଥଳରେ ମର୍ମଭେଦୀ ଦଶଗୋଟି ଶର ପ୍ରହାର କଲେ । ୧ । ତହୁଁ ଧୃଷ୍ଟଦ୍ୟୁମ୍ନ ପ୍ରହୃଷ୍ଟ ଚିତ୍ତରେ ରହ ରହ ବୋଲି କହି କର୍ଣ୍ଣଙ୍କୁ ଦଶଗୋଟି ଶରରେ ବିଦ୍ଧ କଲେ । ୨ । ଏହିପରି ସେହି ଦୁଇ ମହାରଥୀ ଆକର୍ଣ୍ଣାକୃଷ୍ଟ ଶରସମୂହଦ୍ୱାରା ପରସ୍ପର ପରସ୍ପରକୁ ସମାଚ୍ଛାଦିତ କରି ବିଦ୍ଧ କଲେ । ୩ । ତତ୍ପରେ ସୂତନନ୍ଦନ କର୍ଣ୍ଣ ରଣସ୍ଥଳରେ ପାଞ୍ଚାଳପ୍ରଧାନ ଧୃଷ୍ଟଦ୍ୟୁମ୍ନଙ୍କର ଅଶ୍ୱଚତୁଷ୍ଟୟ ନିହତ କରି ବହୁସଂଖ୍ୟକ ଶରଦ୍ୱାରା ତାହାଙ୍କର ସାରଥିକୁ ବିଦ୍ଧ କଲେ । ନିଶିତ ଶରସମୂହଦ୍ୱାରା ତାହାଙ୍କର ସୁମହତ୍ କୋଦଣ୍ଡକୁ ଖଣ୍ଡ ଖଣ୍ଡ କରି ଭଲ୍ଲାସ୍ତ୍ରଦ୍ୱାରା ସାରଥିକୁ ରଥମାଡ଼ରୁ ନିପାତିତ କଲେ । ୫ । ତେତେବେଳେ ଧୃଷ୍ଟଦ୍ୟୁମ୍ନ ଅଶ୍ୱ ଓ ସାରଥିବିହୀନ ରଥରୁ ଭୂତଳରେ ଅବତୀର୍ଣ୍ଣ ହୋଇ ଗୋଟିଏ ଭୟଙ୍କର ପରିଘ ଗ୍ରହଣ କରି କର୍ଣ୍ଣଙ୍କର ଅଶ୍ୱ-ସମୂହକୁ ନିଷ୍ପିଷ୍ଟ କଲେ । ୬ । ସେ କର୍ଣ୍ଣଙ୍କନିକ୍ଷିପ୍ତ ବିଷଧର ସଦୃଶ ଶର-ନିକରଦ୍ୱାରା ଗାଢ଼ତର ବିଦ୍ଧ ହେବାରୁ ପାଦଚାରୀ ହୋଇ ଯୁଧିଷ୍ଠିରଙ୍କ ସୈନ୍ୟ ମଧ୍ୟରେ ପ୍ରବିଷ୍ଟ ହେଲେ ଓ ସହଦେବଙ୍କ ରଥରେ ଆରୋହଣପୂର୍ବକ

ପୁନର୍ବାର କର୍ଣ୍ଣ ସମୀପକୁ ଗମନୋଦ୍ୟତ ହୁଅନ୍ତେ ଧର୍ମ୍ମନନ୍ଦନ ଯୁଧିଷ୍ଠିର ତାହାଙ୍କୁ ନିବାରଣ କଲେ । ୮ । ସେହି ସମୟରେ ମହାତେଜସ୍ୱୀ କର୍ଣ୍ଣ ସିଂହନାଦ, ଧନୁଷ୍ଟଙ୍କାର ଓ ଶଙ୍ଖଧ୍ୱନି କଲେ । ୯ ।

ହେ ମହାରାଜ ! ସେହି ସମୟରେ ମହାରଥ ପାଞ୍ଚାଳଗଣ ଧୃଷ୍ଟ-ଦ୍ୟୁମ୍ନଙ୍କୁ ସମରରେ ପରାଜିତ ଅବଲୋକନ କରି ରୋଷସହକାରେ ଅସ୍ତ୍ରଶସ୍ତ୍ର ଗ୍ରହଣପୂର୍ବକ ଜୀବନରେ ନିରପେକ୍ଷ ହୋଇ କର୍ଣ୍ଣଙ୍କର ଅଭିମୁଖୀନ ହେଲେ । ୧୧ । କର୍ଣ୍ଣଙ୍କର ସାରଥି ମଧ୍ୟ ତତ୍କ୍ଷଣାତ୍ ଉତ୍ତମ ବହନକ୍ଷମ ଶଙ୍ଖସବର୍ଣ୍ଣ ମହାବେଗଗାମୀ ସିନ୍ଧୁଦେଶୀୟ ଅଶ୍ୱମାନଙ୍କୁ ରଥରେ ଯୋଜନା କଲେ । ୧୨ । ହେ ମହାରାଜ ! ସଜଳଜଳଧର ଯେପରି ଅଚଳୋପରି ଜଳଧାରା ବର୍ଷଣ କରେ, ସେହିପରି ଲବ୍ଧଲକ୍ଷ୍ୟ ରାଧେୟ କର୍ଣ୍ଣ ରୋଷାବିଷ୍ଟ ହୋଇ ପାଞ୍ଚାଳ ପକ୍ଷୀୟ ମହାରଥିମାନଙ୍କୁ ଶରବୃଷ୍ଟି ଦ୍ୱାରା ନିପୀଡ଼ିତ କଲେ । ୧୩ । ପାଞ୍ଚାଳଗଣ କର୍ଣ୍ଣଙ୍କର ବାଣରେ ନିପୀଡ଼ିତ ହୋଇ ମୃଗେନ୍ଦ୍ରତାଡ଼ିତ ମୃଗସଦୃଶ ଭୟରେ ଚତୁର୍ଦ୍ଦିଗକୁ ପଳାୟନ କଲେ । ୧୪ । ଆମ୍ଭେ ଦେଖିଲୁଁ ଯେ ସେହି ସମୟରେ ମାନବଗଣ କର୍ଣ୍ଣଙ୍କର ସାୟକ ଦ୍ୱାରା ନିକୃତ୍ତ କଳେବର ହୋଇ ତୁରଙ୍ଗ, ମାତଙ୍ଗ ଓ ରଥାଙ୍ଗରୁ ନିପତିତ ମହୀତଳରେ ନିପତିତ ହେଉ ଅଛନ୍ତି । ୧୫ ।

ସେହି ମହାସମର ସମୟରେ ଯେଉଁ ସମସ୍ତ ପଦାତି, ହସ୍ତ୍ୟାରୋହୀ ବା ଅଶ୍ୱାରୋହୀ ପଳାୟନ କରୁଥିଲେ, କର୍ଣ୍ଣ କ୍ଷୁରପାସ୍ତ୍ର ଦ୍ୱାରା ସେମାଙ୍କ ମଧ୍ୟରୁ ଅନେକଙ୍କର ବାହୁ କୁଣ୍ଡଳାଳଂକୃତ ମସ୍ତକ ଓ ଉରୁଦେଶ ଛେଦନ କଲେ । ୧୬ । ସେହି ସମୟରେ ବହୁସଂଖ୍ୟକ ମହାରଥିମାନେ ମଧ୍ୟ ପଳାୟନରେ ପ୍ରବୃତ୍ତ ହେଲେ । କିନ୍ତୁ ପଳାୟନ କାଳରେ ସେମାନଙ୍କର ବାହନ ବା କଳେବର କେତେବେଳେ ଯେ ଛିନ୍ନ ହୋଇ ପତିତ ହେଲା ତାହା ସେମାନଙ୍କୁ ଜଣାଗଲା ନାହିଁ । ୧୮ । ହେ ମହାରାଜ ! ସେହି ବଧ୍ୟମାନ ପାଞ୍ଚାଳ ଓ ସୃଞ୍ଜୟମାନେ ସେହି କାଳରେ ଏପରି ବିମୋହିତ ହେଲେ ଯେ ତୃଣମାତ୍ର ସ୍ପନ୍ଦନ ହେଲେ ତାହାକୁ ସୂତପୁତ୍ର କର୍ଣ୍ଣ ବୋଲି ମନେକଲେ । ସ୍ୱପକ୍ଷୀୟ ପଳାୟନପର ଯୋଦ୍ଧାଙ୍କୁ ଧାବମାନ ହୋଇ ଆସିବାର ଦେଖି ସେହି ପାଞ୍ଚାଳ ଓ ସୃଞ୍ଜୟମାନେ କର୍ଣ୍ଣ ଆସୁଅଛି ବୋଲି

ବୋଧକରି ଭୟରେ ପଳାୟନ କଲେ ।୨୦। କିନ୍ତୁ କର୍ଣ୍ଣ ସେହି ପଳାୟନପର ପ୍ରଭଗ୍ନ ସୈନ୍ୟମାନଙ୍କ ପ୍ରତି ପଶ୍ଚାତ୍ ଭାଗରୁ ଶରଜାଲ ବିକିରଣ କରୁ କରୁ ଧାବମାନ ହେଲେ । ୨୧ । ମହାତ୍ମା କର୍ଣ୍ଣଙ୍କ କର୍ତ୍ତୃକ ଆକ୍ରାନ୍ତ ସେହି ବିମୋହିତ ସୈନ୍ୟମାନେ ଆପଣା ଆପଣାର କର୍ତ୍ତବ୍ୟ ସ୍ଥିରକରି ନ ପାରି କେବଳ ପରସ୍ପର ପରସ୍ପରଙ୍କ ପ୍ରତି ଅବଲୋକନ କଲେ । କୌଣସି ପ୍ରକାରେ ରଣସ୍ଥଳରେ ଅବସ୍ଥାନ କରି ପାରିଲେ ନାହିଁ । ୨୨ । ଏହିପରି ପାଞ୍ଚାଳଗଣ ଦ୍ରୋଣ ଓ କର୍ଣ୍ଣଙ୍କର ମହାସ୍ତ୍ର ଦ୍ୱାରା ସମାହତ ହୋଇ ଚତୁର୍ଦ୍ଦିଗକୁ ନିରୀକ୍ଷଣ କରୁ କରୁ ବେଗରେ ପଳାୟନ କଲେ । ୨୩ ।

ତଦନନ୍ତର ରାଜା ଯୁଧିଷ୍ଠିର ସ୍ୱକୀୟ ସୈନ୍ୟମାନଙ୍କୁ ପଳାୟନ କରିବାର ଦେଖି ସ୍ୱୟଂ ରଣସ୍ଥଳରୁ ପ୍ରସ୍ଥାନ କରିବା ମାନସରେ ଫାଲ୍‌ଗୁନଙ୍କୁ କହିଲେ, ହେ ଫାଲ୍‌ଗୁନ ! ଦେଖ, ମହାଧନୁର୍ଦ୍ଧର କର୍ଣ୍ଣ କାର୍ମୁକ ହସ୍ତରେ ଅବସ୍ଥାନ କରି ଏହି ନିଦାରୁଣ ନିଶୀଥ ସମୟରେ ମଧ୍ୟ ଆମ୍ଭର ସୈନ୍ୟମାନଙ୍କୁ ପ୍ରଖର ପ୍ରଭାକରସଦୃଶ ଉତ୍ତାପିତ କରୁଅଛି । ୨୫ । ତୁମ୍ଭର ଆତ୍ମବନ୍ଧୁମାନେ ତାହାଙ୍କ ଶରରେ କ୍ଷତବିକ୍ଷତ ହୋଇ ଅନାଥ ସଦୃଶ ଉଚ୍ଚ ନିନାଦ କରିବାରୁ ନିୟତ ଏହି ସୁମହତ୍ କୋଳାହଳ ଶ୍ରୁତିଗୋଚର ହେଉଅଛି । ୨୬ । ପୁଣି ଏହି ସୂତପୁତ୍ର କର୍ଣ୍ଣ ଯେପରି ଶରସନ୍ଧାନ ଓ ବିମୋଚନ କରୁଅଛି ତହିଁରେ କୌଣସି ଛିଦ୍ର ଲକ୍ଷିତ ହେଉନାହିଁ । ଅତଏବ ସେ ନିଶ୍ଚୟ ଆମ୍ଭମାନଙ୍କୁ ସଂହାର କରିବ । ୨୭ । ହେ ଧନଞ୍ଜୟ, ଏହି ଉପସ୍ଥିତ ସମୟରେ କର୍ଣ୍ଣବଧ ବିଷୟରେ ଯାହା କର୍ତ୍ତବ୍ୟ ତାହା ବିବେଚନା କରି ଅନୁଷ୍ଠାନ କର ।

ହେ ମହାରାଜ ! ଧନଞ୍ଜୟ ଯୁଧିଷ୍ଠିରଙ୍କ ବାକ୍ୟ ଶ୍ରବଣ କରି କୃଷ୍ଣଙ୍କୁ କହିଲେ, ହେ ମଧୁସୂଦନ ! ଅଦ୍ୟ ଧର୍ମନନ୍ଦନ ରାଜା ଯୁଧିଷ୍ଠିର ରାଧାନନ୍ଦନ କର୍ଣ୍ଣଙ୍କର ପରାକ୍ରମ ଦେଖି ଭୀତ ହୋଇ ଅଛନ୍ତି । ୨୯ । କର୍ଣ୍ଣଙ୍କର ସୈନ୍ୟମାନେ ଯେତେବେଳେ କ୍ରମଶଃ ଏହିପରି ବିକ୍ରାନ୍ତ ହେଉଅଛନ୍ତି, ତେତେବେଳେ ସେମାନଙ୍କ ପ୍ରତି ବର୍ତ୍ତମାନ ଯାହା କର୍ତ୍ତବ୍ୟ ତାହା ଅନୁଷ୍ଠାନ କର । କାରଣ ଅସ୍ମତ୍‌ପକ୍ଷୀୟ ସୈନ୍ୟମାନେ ପଳାୟନ କରୁଅଛନ୍ତି । ୩୦ । ହେ ମଧୁସୂଦନ ! ଆମ୍ଭମାନଙ୍କର ସୈନ୍ୟଗଣ ଦ୍ରୋଣଙ୍କର ଶରରେ ପ୍ରଥମରୁ କ୍ଷତବିକ୍ଷତ ଓ ଭଗ୍ନପ୍ରାୟ ହୋଇ ବର୍ତ୍ତମାନ ପୁଣି କର୍ଣ୍ଣଙ୍କ କର୍ତ୍ତୃକ ସନ୍ତାସିତ

ହେବାରୁ ରଣସ୍ଥଳରେ ଅବସ୍ଥାନ କରିପାରୁ ନାହାନ୍ତି । ୩୧ । ଆମ୍ଭେ ଦେଖୁଅଛୁଁ ଯେ କର୍ଣ୍ଣ ଆମ୍ଭପକ୍ଷୀୟ ମହାରଥିମାନଙ୍କ ପ୍ରତି ଶାଣିତ ଶର-ସମୂହ ବର୍ଷଣପୂର୍ବକ ନିର୍ଭୀକସଦୃଶ ବିଚରଣ କରୁଅଛନ୍ତି । ୩୨ । ହେ ବୃଷ୍ଣିଶାର୍ଦ୍ଦୂଳ କୃଷ୍ଣ ! ଭୁଜଙ୍ଗ ଯେପରି କାହାର ପାଦସ୍ପର୍ଶ ସହିପାରେ ନାହିଁ, ସେହିପରି ଏହି ରଣସ୍ଥଳରେ ଆମ୍ଭମାନଙ୍କର ସାକ୍ଷାତରେ ସୂତପୁତ୍ରର ଏପରି ବ୍ୟବହାର ଆମ୍ଭେ ସହିବାକୁ ସମର୍ଥ ହେଉନାହୁଁ । ୩୩ । ଅତଏବ ହେ ବାସୁଦେବ ! ତୁମ୍ଭେ ସତ୍ୱର କର୍ଣ୍ଣ ସମୀପକୁ ରଥଚାଳନା କର । ଅଦ୍ୟ ହୁଏ ତ ଆମ୍ଭେ ତାହାକୁ ନିହତ କରିବୁଁ, ନୋହିଲେ ସେ ଆମ୍ଭଙ୍କୁ ବଧ କରିବ । ୩୩ ।

ଏହାଶୁଣି ବାସୁଦେବ କହିଲେ, ହେ କୁନ୍ତୀନନ୍ଦନ ! ଅଦ୍ୟ ଆମ୍ଭେ ଅତିମାନୁଷବିକ୍ରମ ନରଶାର୍ଦ୍ଦୂଳ କର୍ଣ୍ଣଙ୍କୁ ସୁରରାଜ ଇନ୍ଦ୍ରଙ୍କସଦୃଶ ସମରରେ ବିଚରଣ କରିବାର ଦେଖୁଅଛୁଁ । ୩୫ । ହେ ପୁରୁଷବ୍ୟାଘ୍ର ! ତୁମ୍ଭ ବ୍ୟତୀତ ଅଥବା ରାକ୍ଷସ ଘଟୋତ୍କଚ ବ୍ୟତୀତ ଅପର କୌଣସି ବ୍ୟକ୍ତି ବର୍ତ୍ତମାନ ସମରରେ ସୂତପୁତ୍ରର ପ୍ରତିଦ୍ୱନ୍ଦୀ ହୋଇ ପାରିବନାହିଁ ।୩୬। କିନ୍ତୁ ଯେ ପର୍ଯ୍ୟନ୍ତ ତାହା ନିକଟରେ ମହୋଲ୍‌କାସଦୃଶ ଦୀପ୍ୟମାନ ବାସବଦତ୍ତ ଶକ୍ତି ବର୍ତ୍ତମାନ ଅଛି ସେ ପର୍ଯ୍ୟନ୍ତ ତୁମ୍ଭର ତାହା ସହିତ ଦ୍ୱୈରଥ ଯୁଦ୍ଧରେ ମିଳିତ ହେବାର ଉପଯୁକ୍ତ ନୁହେ । କାରଣ କର୍ଣ୍ଣ ସେହି ଶକ୍ତିକୁ ତୁମ୍ଭର ନିମିତ୍ତ ରଖିଅଛି ଏବଂ ସେହି ଶକ୍ତି ପ୍ରଭାବରୁ ଅତିଭୟଙ୍କର ମୂର୍ତ୍ତିଧାରଣ କରି ରଣସ୍ଥଳରେ ଅବସ୍ଥାନ କରୁଅଛି । ଅତଏବ ମହାବଳଶାଳୀ ଘଟୋ-ତ୍କଚ ବର୍ତ୍ତମାନ ରାଧାନନ୍ଦନ ପ୍ରତିପକ୍ଷରେ ଯାତ୍ରା କରୁ । ୩୯ । ସେହି ମହାବୀର ଭୀମସେନଙ୍କଠାରୁ ଜାତ ଓ ନିଜେ ମଧ୍ୟ ଅତିଶୟ ସୁରସମ ପରାକ୍ରମଶାଳୀ । ଦିବ୍ୟ ରାକ୍ଷସ ଓ ଆସୁର ପ୍ରଭୃତି ବହୁବିଧ ଅସ୍ତ୍ର ତାହା-ଠାରେ ପ୍ରତିଷ୍ଠିତ ଅଛି । ୪୦ । ଘଟୋତ୍କଚ ତୁମ୍ଭମାନଙ୍କର ସତତ ଅନୁରକ୍ତ ଓ ହିତାକାଂକ୍ଷୀ । ସେ ଯେ ରଣସ୍ଥଳରେ କର୍ଣ୍ଣଙ୍କୁ ପରାଜୟ କରିବେ, ଏଥିରେ ଆମ୍ଭର ସଂଶୟ ନାହିଁ । ୪୧ । ହେ ମହାରାଜ ! କମଳଲୋଚନ ମହାବାହୁ ବାସୁଦେବ ଅର୍ଜ୍ଜୁନଙ୍କୁ ଏହିପରି କହି ଘଟୋତ୍କଚକୁ ଆହ୍ୱାନ କଲେ । ୪୨ ।

ଆହ୍ୱାନ ମାତ୍ରକେ ଘଟୋତ୍କଚ ବଦ୍ଧସନ୍ନାହ ହୋଇ ଖଡ୍‌ଗ ଓ ସଶର ଶରାସନ ଧାରଣପୂର୍ବକ ତାହାଙ୍କ ସମୀପରେ ଉପସ୍ଥିତ ହେଲା । କୃଷ୍ଣାର୍ଜୁନଙ୍କୁ ଅଭିବାଦନ କରି କହିଲା, ଆମ୍ଭେ ଆସି ଉପସ୍ଥିତ ହେଲୁଁ, କି କାର୍ଯ୍ୟ କରିବାକୁ ହେବ ଆଜ୍ଞା କରନ୍ତୁ । ୪୩ । ତଦନନ୍ତର ଦାଶାର୍ହ କୃଷ୍ଣ ଉଜ୍ଜ୍ୱଳ କୁଣ୍ଡଳାଳଂକୃତ ପ୍ରଘାସ୍ତବଦନସୁଶୋଭିତ ମେଘସଙ୍କାଶ ହିଡ଼ିମ୍ବାନନ୍ଦନଙ୍କୁ ହସି ହସି କହିଲେ । ୪୪ । ହେ ପୁତ୍ର ଘଟୋତ୍କଚ ! ଆମ୍ଭେ ଯାହା କହୁଅଛୁଁ ତାହା ଅବଧାରଣ କର । ବର୍ତ୍ତମାନ ତୁମ୍ଭର ପରାକ୍ରମ ପ୍ରକାଶ କରିବାର ସମୟ ଉପସ୍ଥିତ ହୋଇଅଛି । ଅନ୍ୟ କାହାରି ବିକ୍ରମ ଦ୍ୱାରା ବର୍ତ୍ତମାନ କାର୍ଯ୍ୟ ସିଦ୍ଧ ହେବନାହିଁ । ୪୫ । ତୁମ୍ଭଠାରେ ବହୁବିଧ ଅସ୍ତ୍ର ଓ ବହୁପ୍ରକାର ରାକ୍ଷସୀ ମାୟା ପ୍ରତିଷ୍ଠିତ ଅଛି । ଅତଏବ ତୁମ୍ଭେ ସମର ସାଗରରେ ନିମଗ୍ନ-ପ୍ରାୟ ଏହି ବନ୍ଧୁମାନଙ୍କର ପ୍ଳବସ୍ୱରୂପ ହୁଅ । ୪୬ । ଦେଖ, ରଣାଙ୍ଗଣରେ ପାଣ୍ଡବମାନଙ୍କର ଅମାକମା ଗୋପାଳ କର୍ତ୍ତୃକ ଆଯୂତ୍ତ ଗୋ-ଯୂଥସଦୃଶ କର୍ଣ୍ଣ କର୍ତ୍ତୃକ ଆକ୍ରାନ୍ତ ହୋଇଅଛି । ୪୭ । ସେହି ମହାଧନୁର୍ଦ୍ଧର ଦୃଢ଼ବିକ୍ରମ ମତିମାନ୍ କର୍ଣ୍ଣ ପାଣ୍ଡବସୈନ୍ୟ ମଧ୍ୟରୁ ପ୍ରଧାନ ପ୍ରଧାନ କ୍ଷତ୍ରିୟମାନଙ୍କୁ ସଂହାର କରୁଅଛି । ୪୮ । ଦୃଢ଼ଧନ୍ୱା କ୍ଷତ୍ରିୟଗଣ ସୁମହତ୍ ଶରବୃଷ୍ଟି କଲେ ମଧ୍ୟ ସେମାନେ ଶରାନଳରେ ନିପୀଡ଼ିତ ହୋଇ କୌଣସି ପ୍ରକାରେ ରଣସ୍ଥଳରେ ଅବସ୍ଥାନ କରିପାରୁ ନାହାନ୍ତି । ୪୯ । ଏହି ଘୋର ନିଶୀଥ ସମୟରେ ପାଞ୍ଚାଳଗଣ ସୂତପୁତ୍ରର ଶରବୃଷ୍ଟି ଦ୍ୱାରା ପୀଡ଼ିୟମାନ ହୋଇ ସିଂହତ୍ରାସିତ ମୃଗଗଣସଦୃଶ ପଳାୟନ କରୁଅଛନ୍ତି । ୫୦ ।

ହେ ମହାବାହୋ ! ଭୀମପରାକ୍ରମ ଭୀମନନ୍ଦନ ! ବର୍ତ୍ତମାନ ସମରରେ ସୂତପୁତ୍ର ଯେପରି ପ୍ରବୃତ୍ତ ହୋଇଅଛି ତହିଁରେ ତୁମ୍ଭ ବ୍ୟତୀତ ଅପର କୌଣସି ପୁରୁଷ ତାହାକୁ ନିବାରଣ କରିପାରିବ ନାହିଁ । ୫୧ । ଅତଏବ ତୁମ୍ଭେ ପିତୃକୁଳ, ମାତୃକୁଳ ଓ ଆପଣାର ତେଜସ୍ୱିତା ଓ ଅସ୍ତ୍ରବଳର ଅନୁରୂପ କାର୍ଯ୍ୟକରିବାରେ ପ୍ରବୃତ୍ତ ହୁଅ । ୫୨ । ହେ ହିଡ଼ିମ୍ବାନନ୍ଦନ ! ଯେ କୌଣସି ଉପାୟରେ ହେଉ ପୁତ୍ର, ଆମ୍ଭମାନଙ୍କୁ ଦୁଃଖରୁ ଉଦ୍ଧାର କରିବ । ଏଥିନିମିତ୍ତ ମାନବମାନେ ପୁତ୍ରକାମନା କରନ୍ତି । ଅତଏବ ତୁମ୍ଭେ ସ୍ୱୀୟ ବନ୍ଧୁମାନଙ୍କୁ ଏହି ବିପଦରୁ ଉଦ୍ଧାର କର । ୫୩ ।

ହେ ଘଟୋତ୍କଚ ! ମାନବଗଣ ପୁତ୍ରଦ୍ୱାରା ଇହଲୋକରେ ଦୁଃଖରୁ ବିମୁକ୍ତ ହେବାନିମିତ୍ତ ଓ ପରଲୋକରେ ଉତ୍କୃଷ୍ଟ ଗତି ପ୍ରାପ୍ତ ହେବା ଆଶାରେ ପୁତ୍ରକାମନା କରନ୍ତି ।୫୪। ହେ ଭୀମନନ୍ଦନ ! ତୁମ୍ଭେ ଯଦି ସଂଗ୍ରାମ ସ୍ଥଳରେ ନିଯୁକ୍ତ ଯୁଦ୍ଧ କରିବ ତେବେ କୌଣସି ବ୍ୟକ୍ତି ତୁମ୍ଭର ମାୟା ଓ ଭୟାନକ ଅସ୍ତ୍ରବଳରୁ ଉତ୍ତୀର୍ଣ୍ଣ ହୋଇ ପାରିବ ନାହିଁ । ୫୫ ।

ହେ ଶତ୍ରୁତାପନ ! ତୁମ୍ଭେ ଏହି ନିଶାକାଳରେ କର୍ଣ୍ଣବାଣପ୍ରଭଗ୍ନ କୌରବ-ସୈନ୍ୟସାଗରରେ ନିମଗ୍ନପ୍ରାୟ ପାଣ୍ଡବମାନଙ୍କର ତଟସ୍ୱରୂପ ହୁଅ । ୫୬ । ଯେହେତୁ ରାତ୍ରିକାଳରେ ଶୂର ରାକ୍ଷସଗଣ ଅପରିମିତ ବଳଶାଳୀ ଦୁର୍ଦ୍ଧର୍ଷ ଓ ପ୍ରତାପବାନ୍ ହୁଅନ୍ତି । ୫୭ । ଅତଏବ ତୁମ୍ଭେ ଏହି ସମୟରେ ସ୍ୱୀୟ ମାୟା ପ୍ରଭାବରେ ରଣସ୍ଥିତ ରାଧାନନ୍ଦନଙ୍କୁ ବିନାଶ କର । ତାହାହେଲେ ଧୃଷ୍ଟଦ୍ୟୁମ୍ନପ୍ରମୁଖ ପାଣ୍ଡବମାନେ ଦ୍ରୋଣଙ୍କୁ ସଂହାର କରିପାରିବେ । ୫୮ ।

ସଞ୍ଜୟ କହିଲେ—ହେ ମହାରାଜ ! ବାସୁଦେବଙ୍କ ବାକ୍ୟ ଶ୍ରବଣ କରି ସେହି ସମୟରେ ଧନଞ୍ଜୟ ମଧ୍ୟ ଅରିନ୍ଦମ ଘଟୋତ୍କଚକୁ କହିଲେ, ହେ ଘଟୋତ୍କଚ ! ଆମ୍ଭମାନଙ୍କର ଏହି ସୈନ୍ୟ ମଧ୍ୟରେ ଭୀମସେନ, ଦୀର୍ଘବାହୁ ସାତ୍ୟକି ଓ ତୁମ୍ଭେ ଏହି ତିନିଜଣ ଆମ୍ଭ ମତରେ ସର୍ବପ୍ରଧାନ ଅଟ । ୬୦ । ଅତଏବ ତୁମ୍ଭେ ଏହି ନିଶାକାଳରେ କର୍ଣ୍ଣ ସହିତ ଦ୍ୱୈରଥ ଯୁଦ୍ଧରେ ପ୍ରବୃତ୍ତ ହୁଅ । ଏହି ଯୁଦ୍ଧରେ ମହାରଥୀ ସାତ୍ୟକି ତୁମ୍ଭର ପୃଷ୍ଠ-ରକ୍ଷକ ହେବେ । ୬୧ । ପୂର୍ବେ ଦେବରାଜ ଇନ୍ଦ୍ର କାର୍ତ୍ତିକେୟଙ୍କ ସହିତ ସମବେତ ହୋଇ ଯେପରି ତାରକାସୁରଙ୍କୁ ସଂହାର କରିଥିଲେ ସେହିପରି ତୁମ୍ଭେ ମଧ୍ୟ ସାତ୍ୟକିଙ୍କ ସାହାଯ୍ୟରେ ସମରସ୍ଥଳରେ ମହାବୀର କର୍ଣ୍ଣଙ୍କୁ ସଂହାର କର । ୬୨ । କୃଷ୍ଣାର୍ଜ୍ଜୁନଙ୍କର ଏହି ସମସ୍ତ ବାକ୍ୟ ଶ୍ରବଣ କରି ଘଟୋତ୍କଚ କହିଲା, ହେ ପୁରୁଷସତ୍ତମଦ୍ୱୟ ! ସଂଗ୍ରାମରେ ଦ୍ରୋଣ ହେଉ, କର୍ଣ୍ଣ ହେଉ କିମ୍ବା ଅପରାପର କୃତାସ୍ତ୍ର କ୍ଷତ୍ରିୟଗଣ ହେଉନ୍ତୁ, ଆମ୍ଭେ ସେ ସମସ୍ତଙ୍କ ସହିତ ଯୁଦ୍ଧ କରିବାକୁ ସକ୍ଷମ । ୬୩ । ଆଜି ଏହି ନିଶାକାଳରେ ସୂତପୁତ୍ର ସହିତ ଆମ୍ଭେ ଏପରି ଯୁଦ୍ଧ କରିବୁଁ ଯେ ମନୁଷ୍ୟମାନେ ତାହା ପୃଥିବୀ ଥିବାପର୍ଯ୍ୟନ୍ତ କୀର୍ତ୍ତନ କରୁଥିବେ । ୬୪ । ଏହି ଯୁଦ୍ଧରେ କୌଣସି

ସାଠ ସାଠ ବା ବଦ୍ଧାଞ୍ଜଳି ହେଲେ ମଧ୍ୟ ତାହାଙ୍କୁ ପରିତ୍ୟାଗ କରିବୁ ନାହିଁ । ଆମ୍ଭେ ରାକ୍ଷସଧର୍ମ ଅବଲମ୍ବନ ପୂର୍ବକ ସମସ୍ତଙ୍କୁ ସଂହାର କରିବୁ । ୬୫ ।

ସଞ୍ଜୟ କହିଲେ—ହେ ମହାରାଜ ! ପରବୀରହନ୍ତା ମହାବାହୁ ହିଡ଼ମ୍ବାନନ୍ଦନ ଆପଣଙ୍କ ସୈନ୍ୟମାନଙ୍କୁ ସଂତାସିତ କରି ଉନ୍ମତ୍ତ ସଂଗ୍ରାମସ୍ଥିତ କର୍ଣ୍ଣଙ୍କ ଅଭିମୁଖକୁ ଧାବିତ ହେଲେ । ୬୬ । ଧନୁର୍ଦ୍ଧରାଗ୍ରଗଣ୍ୟ ସୂତନନ୍ଦନ ପ୍ରଦୀପ୍ତାସ୍ୟ ଭୁଜଙ୍ଗ ସଦୃଶ କ୍ରୋଧରେ ଆପତିତ ଘଟୋତ୍କଚ ପ୍ରତି ଶରଜାଲ ବିସ୍ତାର ପୂର୍ବକ ତାହାକୁ ପ୍ରତିଗ୍ରହ କଲେ । ୬୭ । ହେ ରାଜଶାର୍ଦ୍ଦୂଳ ମହାରାଜ ! ତତ୍ପରେ ଗର୍ଜନକାରୀ ସେହି ରାକ୍ଷସ ଓ କର୍ଣ୍ଣଙ୍କ ମଧ୍ୟରେ ଇନ୍ଦ୍ର ପ୍ରହ୍ଲାଦ ଯୁଦ୍ଧ ସଦୃଶ ଘୋରତର ସଂଗ୍ରାମ ଆରମ୍ଭ ହେଲା । ୬୮ ।

---

## ୧୭୪ ଅଧ୍ୟାୟ

ସଞ୍ଜୟ କହିଲେ—ହେ ମହାରାଜ ! ଆପଣଙ୍କ ପୁତ୍ର ଦୁର୍ଯ୍ୟୋଧନ ରଣାଙ୍ଗନରେ ଘଟୋତ୍କଚକୁ ଜିଘାଂସାପରବଶ ହୋଇ ସତ୍ୱର ସୂତପୁତ୍ରଙ୍କ ପ୍ରତି ଆଗମନ କରିବାର ଦେଖି ଦୁଃଶାସନଙ୍କୁ କହିଲେ ଯେ ଏହି ନିଶାଚର ସମରରେ କର୍ଣ୍ଣଙ୍କର ବିକ୍ରମ ଅବଲୋକନ କରି ତ୍ୱରାସହକାରେ ତାହାଙ୍କ ପ୍ରତିପକ୍ଷରେ ଧାବିତ ହେଉଅଛି । ଅତଏବ ତୁମ୍ଭେ ଅବିଳମ୍ବେ ସେହି ମହାରଥୀକୁ ନିବାରଣ କର । ମହାବଳଶାଳୀ ସୂର୍ଯ୍ୟନନ୍ଦନ କର୍ଣ୍ଣ ସେହି ରାକ୍ଷସ ସହିତ ଯୁଦ୍ଧ କରିବା ଅଭିଳାଷରେ ଯେଉଁ ସ୍ଥାନରେ ଅବସ୍ଥିତ ଅଛନ୍ତି ତୁମ୍ଭେ ମହତ୍ତୀ ସେନାଦ୍ୱାରା ପରିବୃତ ହୋଇ ସେହି ସ୍ଥାନକୁ ଗମନ କର ।

ହେ ମାନଦ ! ତୁମ୍ଭେ ସୈନ୍ୟସହିତ ଯତ୍ନପର ହୋଇ କର୍ଣ୍ଣଙ୍କୁ ରକ୍ଷା କର । ୪ । ଏହି ଭୟଙ୍କର ନିଶାଚର ଯେପରି ଅନବଧାନତା ହେତୁ ତାହାଙ୍କୁ ବିନାଶ ନ କରେ ତାହାର ଯତ୍ନ କର । ହେ ମହାରାଜ ! ଦୁର୍ଯ୍ୟୋଧନ ଏହିରୂପ ଆଦେଶ କରୁଅଛନ୍ତି, ଏମନ୍ତ ସମୟରେ ଯୋଦ୍ଧାଶ୍ରେଷ୍ଠ ମହାବଳଶାଳୀ ଜଟାସୁର ପୁତ୍ର ତାହାଙ୍କର ସମୀପସ୍ଥ ହୋଇ କହିଲା,

ହେ ମହାରାଜ ! ଆମ୍ଭେ ଆପଣଙ୍କ କର୍ତ୍ତୃକ ଆଦିଷ୍ଟ ହୋଇ ଆପଣଙ୍କ ଶତ୍ରୁ ରଣଦୁର୍ମ୍ମଦ ପାଣ୍ଡବମାନଙ୍କୁ ଅନୁଚରବର୍ଗ ସହିତ ସଂହାର କରିବାକୁ ଅଭିଳାଷ କରୁଅଛୁଁ । କାରଣ ସେହି ନୀଚସ୍ୱଭାବ କୁନ୍ତୀପୁତ୍ରଗଣ ପୂର୍ବେ ଆମ୍ଭର ପିତା ରାକ୍ଷସପ୍ରଧାନ ଜଟାସୁରକୁ ରକ୍ଷୋଘ୍ନ କର୍ମ୍ମାନୁଷ୍ଠାନ ପୂର୍ବକ ନିପାତିତ କରିଅଛନ୍ତି । ଅତଏବ ଆମ୍ଭେ ଆପଣଙ୍କ ଆଜ୍ଞାନୁସାରେ ଶତ୍ରୁ-ମାନଙ୍କର ଶୋଣିତ ମାଂସଦ୍ୱାରା ପିତାଙ୍କର ପୂଜା ସମାପନ କରି ତାହାଙ୍କ ଋଣ ପରିଶୋଧର ବାସନା କରିଅଛୁଁ ।୮। କୁରୁପତି ଦୁର୍ଯ୍ୟୋଧନ ବାରମ୍ବାର ସେହି ରାକ୍ଷସ କର୍ତ୍ତୃକ ପ୍ରସାଦିତ ହୋଇ ଏହିପରି କହିଲେ ଯେ ଆମ୍ଭେ ଦ୍ରୋଣ ଓ କର୍ଣ୍ଣାଦି ସହିତ ସମବେତ ହୋଇ ଆମ୍ଭ ଶତ୍ରୁ ପାଣ୍ଡବ ମାନଙ୍କର ବିନାଶରେ ସମର୍ଥ ହେବୁଁ ।୯। ବର୍ତ୍ତମାନ ତୁମ୍ଭଙ୍କୁ ଅନୁମତି ଦେଉଅଛୁ ଯେ ତୁମ୍ଭେ ରଣସ୍ଥଳକୁ ଗମନ କରି ମାନୁଷ ଓ ରାକ୍ଷସସଂଭୂତ କ୍ରୂରକର୍ମ୍ମା ନିଶାଚର ଘଟୋତ୍କଚକୁ ସଂହାର କର ।୧୦। ସେହି ଦୁରାତ୍ମା ସମରରେ ନିଯୁକ୍ତ ପାଣ୍ଡବମାନଙ୍କ ହିତାକାଙ୍କ୍ଷୀ ହୋଇ ହସ୍ତୀ, ଅଶ୍ୱ ଓ ରଥୀମାନଙ୍କୁ ସଂହାର କରୁଅଛି । ଅତଏବ ପ୍ରଥମେ ସେହି ନିଶାଚର ରାକ୍ଷସକୁ ଯମ ସଦନକୁ ପ୍ରେରଣ କର ।୧୧।

କୁରୁରାଜଙ୍କର ଏହି ଆଦେଶ ଶ୍ରବଣ କରି ମହାକାୟ ଜଟାସୁର-ତନୟ ତାହା ସ୍ୱୀକାର ପୂର୍ବକ ଭୀମସେନନନ୍ଦନ ଘଟୋତ୍କଚକୁ ଆହ୍ୱାନ ପୂର୍ବକ ତାହା ପ୍ରତି ବହୁବିଧ ଶସ୍ତ୍ର ବିକିରଣ କଲା ।୧୨। ହେ ମହାରାଜ! ପ୍ରଚଣ୍ଡ ପ୍ରଭଞ୍ଜନ ଯେପରି ମେଘସମୂହକୁ ଛିନ୍ନଭିନ୍ନ କରେ, ସେହିପରି ଘଟୋତ୍କଚ ଏକାକୀ ହୋଇ ରାକ୍ଷସ ଅଳମ୍ବୁଷ, କର୍ଣ୍ଣ ଓ ଦୁସ୍ତର କୌରବ ସୈନ୍ୟମାନଙ୍କୁ ପ୍ରମଥିତ କଲା ।୧୩। ଅନନ୍ତର ମହାବଳଶାଳୀ ଅଳମ୍ବୁଷ ଘଟୋତ୍କଚକୁ ମାୟାବଳସମ୍ପନ୍ନ ଅବଲୋକନ କରି ଅବିଳମ୍ବେ ବହୁବିଧ ଶରଦ୍ୱାରା ତାହାକୁ ନିପୀଡ଼ିତ କଲା ।୧୪। ଏହିପରି ତାହାକୁ ବହୁସଂଖ୍ୟକ ବାଣରେ ବିଦ୍ଧ କରି ପଶ୍ଚାତ୍ ଶରସମୂହ ଦ୍ୱାରା ପାଣ୍ଡବ ସୈନ୍ୟମାନଙ୍କୁ ବିଦ୍ରାବିତ କରିବାରେ ପ୍ରବୃତ୍ତ ହେଲା ।୧୫। ସେହି ନିଶୀଥ କାଳରେ ପାଣ୍ଡବ ସୈନ୍ୟମାନେ ଅଳମ୍ବୁଷ ଶରରେ ସଂତାଡ଼ିତ ହୋଇ ସମୀରଣ ସଞ୍ଚାଳିତ ଘନପଟଳୀ ସଦୃଶ ଚତୁର୍ଦ୍ଦିଗକୁ ଛିନ୍ନଭିନ୍ନ ହୋଇଗଲେ ।୧୬।

ସେହି ସମୟରେ କୌରବ ସୈନ୍ୟମାନେ ମଧ୍ୟ ଘଟୋତ୍କଚର ଶର-ନିକରରେ କ୍ଷତବିକ୍ଷତ ହୋଇ ହସ୍ତସ୍ଥିତ ସହସ୍ର ସହସ ଜ୍ୱଳନ୍ତ ଉଲ୍‌କାସବୁ ପରିତ୍ୟାଗ କରି ପଳାୟନ କଲେ । ୧୭ । ସେହି ମହାସମରରେ ଅଳମ୍ବୁଷ କ୍ରୁଦ୍ଧ ହୋଇ ଅଙ୍କୁଶଦ୍ୱାରା ମାତଙ୍ଗଙ୍କୁ ଆହତ କଲାପ୍ରାୟ ଦଶଗୋଟି ଶରଦ୍ୱାରା ଘଟୋତ୍କଚକୁ ପ୍ରହାର କଲା । ୧୮ । ତହୁଁ ଘଟୋତ୍କଚ ଅଳମ୍ବୁଷର ରଥ, ସାରଥି ଓ ଆୟୁଧ ସମସ୍ତଙ୍କୁ ତିଳ ତିଳ କରି ଛିନ୍ନ କଲା ଓ ଭୈରବରବରେ ନିନାଦ କଲା । ୧୯ । ସେହି ସମୟରେ ଘଟୋତ୍କଚ ଅକମ୍ପିତ ମେରୁପୃଷ୍ଠରେ ଧାରାବର୍ଷୀ ବାରିଦସଦୃଶ କର୍ଣ୍ଣ ଅଳମ୍ବୁଷ ଓ ଅନ୍ୟାନ୍ୟ ସହସ୍ର ସହସ୍ର କୌରବମାନଙ୍କ ପ୍ରତି ଶର ବୃଷ୍ଟି କଲା । ୨୦ ।

ହେ ମହାରାଜ ! ସେହି ସମୟରେ ସେହି ଚତୁରଙ୍ଗିଣୀ କୌରବ-ସେନା ନିଶାଚର କର୍ତ୍ତୃକ ନିପୀଡ଼ିତ ହୋଇ ଏପରି କ୍ଷୁଭିତ ହେଲା ଯେ, ଯୋଦ୍ଧାମାନେ ପରସ୍ପର ପରସ୍ପରକୁ ବିମର୍ଦ୍ଦିତ କଲେ । ୨୧ । ତାହା ଦେଖି ରଥ ଓ ସାରଥିବିହୀନ ଜଟାସୁରତନୟ ଅତିଶୟ କ୍ରୁଦ୍ଧ ହୋଇ ଘଟୋତ୍କଚକୁ ଦୃଢ଼ତର ମୁଷ୍ଟି ପ୍ରହାର କରନ୍ତେ ଭୂମିକମ୍ପ ସମୟରେ ତରୁଗୁଳ୍ମସମବେତ ପର୍ବତ କମ୍ପିତ ହେଲାପ୍ରାୟ ଘଟୋତ୍କଚ ସେହି ମୁଷ୍ଟିପ୍ରହାରଦ୍ୱାରା ବିଚଳିତ ହେଲା । ୨୩ । ତତ୍ପରେ ଘଟୋତ୍କଚ ଶତ୍ରୁକୁଳନାଶନ ପରିଘାକାର ଆପଣାର ବାହୁ ଆସ୍ଫାଳନପୂର୍ବକ ଅଳମ୍ବୁଷକୁ ଭୀଷଣ ମୁଷ୍ଟିଦ୍ୱାରା ତାଡ଼ିତ କଲା । ପୁଣି କ୍ରୋଧରେ ତାହାକୁ ପ୍ରମଥିତ କରି ଉଚ୍ଛ୍ରିତ ଇନ୍ଦ୍ରଧ୍ୱଜ ସଦୃଶ ଭୁଜଦଣ୍ଡଦ୍ୱାରା ଅବିଳମ୍ବେ ଭୂତଳରେ ନିକ୍ଷେପପୂର୍ବକ ନିଷ୍ପିଷ୍ଟ କରିବାରେ ପ୍ରବୃତ୍ତ ହେଲା ।

ଅନନ୍ତର ବଳଶାଳୀ ଅଳମ୍ବୁଷ କୌଣସି ପ୍ରକାରେ ଘଟୋତ୍କଚ ହସ୍ତରୁ ମୁକ୍ତ ହୋଇ ବେଗରେ ଉତ୍‌ଥାନ ପୂର୍ବକ ତାହାପ୍ରତି ଧାବିତ ହେଲା ଓ କ୍ରୁଦ୍ଧ ହୋଇ ଘଟୋତ୍କଚକୁ ଉତ୍‌କ୍ଷେପଣ ଓ ଅଧଃକ୍ଷେପଣ ପୂର୍ବକ ମହୀ-ତଳରେ ନିଷ୍ପେଷଣ କଲା । ୨୭ । ହେ ମହାରାଜ ! ବୃହତ୍‌କଳେବରସମ୍ପନ୍ନ ନିଶାଚର ଘଟୋତ୍କଚ ଓ ଅଳମ୍ବୁଷ ମଧ୍ୟରେ ଲୋମହର୍ଷଣକର ତୁମୁଳ ଯୁଦ୍ଧ ଉପସ୍ଥିତ ହେଲା । ୨୮ । ବଳି ଓ ବାସବଙ୍କ ସଦୃଶ ମହାବଳଶାଳୀ ଅତ୍ୟନ୍ତ ମାୟାବୀ ସେହି ବୀରଦ୍ୱୟ କ୍ଷଣକ୍ଷଣକେ ଅନ୍ୟୋନ୍ୟରେ ମାୟାଧିକ୍ୟ ପ୍ରକାଶ କରି ଘୋର ସଂଗ୍ରାମ କଲେ । ୨୯ ।

ସେହିକାଳରେ ସେ ଦୁହେଁ ପରସ୍ପରର ବଧାକାଂକ୍ଷୀ ହୋଇ ଶତ ଶତ ମାୟାସର୍ଜନପୂର୍ବକ କେତେବେଳେ ପାବକ ଓ ଅମ୍ବୁନିଧି, କେତେବେଳେ ଗରୁଡ଼ ଓ ତକ୍ଷକ, କେତେବେଳେ ମହାମେଘ ଓ ମହାବାୟୁ, କେତେବେଳେ ବଜ୍ର ଓ ଭୂଧର, କେତେବେଳେ କୁଞ୍ଜର ଓ ଶାର୍ଦ୍ଦୂଳ, କେତେବେଳେ ଅବା ରାହୁ ଓ ଭାନୁ ଏହିପରି ମୂର୍ତ୍ତିସମୂହ ପରସ୍ପର ଧାରଣ କରି ଗଦା, ପରିଘ, ପ୍ରାସ, ମୁଦ୍‌ଗର, ପଟ୍ଟିଶ ଓ ଗିରିଶୃଙ୍ଗସଦୃଶ ମୂଷଳ ପ୍ରଭୃତି ନାନାବିଧ ଅସ୍ତ୍ରଦ୍ୱାରା ଅନ୍ୟୋନ୍ୟକୁ ପ୍ରହାର କରି ଅତି ଆଶ୍ଚର୍ଯ୍ୟ ଭାବରେ ଯୁଦ୍ଧ ଆରମ୍ଭ କଲେ । ହେ ମହାରାଜ ! ଏହିପରି ମାୟାମୟ ରାକ୍ଷସ-ପ୍ରଧାନ ଘଟୋତ୍କଚ ଓ ଅଳମ୍ବୁଷ କେତେବେଳେ ଗଜାରୂଢ଼, କେତେବେଳେ ଅଶ୍ୱାରୂଢ଼ ଓ କେତେବେଳେ ରଥାରୂଢ଼ ହୋଇ, କେତେବେଳେ ଅବା ପଦାତିସ୍ୱରୂପ ଯୁଦ୍ଧ କଲେ । ତହୁଁ ଘଟୋତ୍କଚ ଅତିଶୟ କ୍ରୁଦ୍ଧ ହୋଇ ଅଳମ୍ବୁଷକୁ ବିନାଶ କରିବା ବାସନାରେ ଊର୍ଦ୍ଧ୍ୱକୁ ଉତ୍ଥିତ ହୋଇ ଶ୍ୟେନ-ପକ୍ଷୀ ସଦୃଶ ତାହା ଉପରେ ବେଗରେ ନିପତିତ ହେଲା । ପୁଣି ତାହାକୁ ଗ୍ରହଣ କରି ଉତ୍‌କ୍ଷେପଣ ପୂର୍ବକ ବିଷ୍ଣୁ ମୟଦାନବକୁ ରଣସ୍ଥଳରେ ନିକ୍ଷିପ୍ତ କଲାପ୍ରାୟ ଭୂତଳରେ ନିକ୍ଷିପ୍ତ କଲା ।

ଏଥିରେ ସେହି ଭୀଷଣମୂର୍ତ୍ତି ଶତ୍ରୁ ଅଳମ୍ବୁଷ ଭୈରବ ନିନାଦ କରିବାରୁ ଅମିତବିକ୍ରମ ଘଟୋତ୍କଚ ଅଦ୍ଭୁତାକାର ଖଡ଼୍‌ଗ ଉଦ୍ୟତ କରି କରି ତାହାର ସେହି ବିକୃତଦର୍ଶନ ଭୀଷଣ ମସ୍ତକକୁ କଳେବରରୁ ପୃଥକ୍ କଲା । ତତ୍ପରେ ରକ୍ତାକ୍ତ ସେହି ମସ୍ତକର କେଶ ଗ୍ରହଣ କରି ଉଗ୍ରସହକାରେ ଦୁର୍ଯ୍ୟୋଧନଙ୍କର ରଥାଭିମୁଖକୁ ଧାବିତ ହେଲା । ହେ ରାଜନ୍ ! ତଦନନ୍ତର ରାକ୍ଷସ ଘଟୋତ୍କଚ ଅଳମ୍ବୁଷର ସେହି ବିକୃତବଦନ ଓ ବିକୃତ କୁନ୍ତଳଯୁକ୍ତ ଛିନ୍ନମସ୍ତକକୁ ଦୁର୍ଯ୍ୟୋଧନଙ୍କ ରଥ ମଧ୍ୟକୁ ନିକ୍ଷେପ କରି ବର୍ଷାକାଳୀନ ମେଘ ସଦୃଶ ଭୀଷଣ ଗର୍ଜ୍ଜନପୂର୍ବକ ଗର୍ବିତ ଭାବରେ ଏହି କଥା କହିଲା, ହେ ଦୁର୍ଯ୍ୟୋଧନ ! ତୁମ୍ଭେ ଏହିକ୍ଷଣି ଯାହାର ବିକ୍ରମ ଅବଲୋକନ କରିଥିଲ ଏହି ତୁମର ସେହି ବନ୍ଧୁ ବର୍ତ୍ତମାନ ନିହତ ହେଲା । ବର୍ତ୍ତମାନ ବିକ୍ରମସମ୍ପନ୍ନ କର୍ଣ୍ଣର ମଧ୍ୟ ତଦ୍ରୂପ ଅବସ୍ଥା ଅବଲୋକନ କରିବ ଓ ତୁମ୍ଭଙ୍କୁ ମଧ୍ୟ ସେହିପରି ଦଶା ଭୋଗ କରିବାକୁ ହେବ ।

ଯେଉଁମାନେ ଧର୍ମ, ଅର୍ଥ, କାମକୁ ବାଞ୍ଛା କରନ୍ତି, ସେମାନଙ୍କର ଶକ୍ତିପାଣି ହୋଇ ରାଜା, ବ୍ରାହ୍ମଣ ଓ ସ୍ତ୍ରୀମାନଙ୍କୁ ସାକ୍ଷାତ କରିବା ଉଚିତ ନୁହେ । ଆମ୍ଭେ ଯେ ପର୍ଯ୍ୟନ୍ତ କର୍ଣ୍ଣଙ୍କୁ ବିନାଶ କରିନାହୁଁ ସେ ପର୍ଯ୍ୟନ୍ତ ତୁମ୍ଭେ ପ୍ରୀତମନା ହୋଇ ଅବସ୍ଥାନ କର ।

ହେ ମହାରାଜ ! ଘଟୋତ୍କଚ ଏହିକଥା କହି କର୍ଣ୍ଣଙ୍କର ମସ୍ତକୋପରି ତୀକ୍ଷ୍ଣତର ଶତ ଶତ ଶରଜାଲ ବିକିରଣ କରୁ କରୁ ତାହାଙ୍କ ସମ୍ମୁଖକୁ ଧାବିତ ହେଲା । ଅନନ୍ତର ସେହି ମନୁଷ୍ୟ ଓ ରାକ୍ଷସ ମଧ୍ୟରେ ଲୋକ-ବିସ୍ମୟକର ଅତି ଭୟଙ୍କର ଘୋରତର ଯୁଦ୍ଧ ଆରମ୍ଭ ହେଲା । ୪୫ ।

---

## ୧୭୫ ଅଧ୍ୟାୟ

ଧୃତରାଷ୍ଟ୍ର କହିଲେ—ହେ ସଞ୍ଜୟ ! ସୂର୍ଯ୍ୟନନ୍ଦନ କର୍ଣ୍ଣ ଓ ରାକ୍ଷସ ଘଟୋତ୍କଚ ଏ ଦୁହେଁ ସେହି ନିଶୀଥ ସମୟରେ ସମରରେ ସମାସକ୍ତ ହେଲାରୁ ସେ ଦୁହିଁଙ୍କ ମଧ୍ୟରେ କିପରି ଯୁଦ୍ଧ ହୋଇଥିଲା ? ୧ । ଯୁଦ୍ଧ ସମୟରେ ସେହି ଘୋରରୂପ ରାକ୍ଷସ କିପରି ମୂର୍ତ୍ତି ଧାରଣ କଲା ଓ ତାହାର ରଥ, ଅଶ୍ୱ ଓ ଅସ୍ତ୍ରସମୂହ କାଦୃଶ ହୋଇଥିଲା ? ୨ । ପୁଣି ତାହାର ଶରାସନ ଓ ରଥଧ୍ୱଜ, ଅଶ୍ୱମାନଙ୍କର ଧୈର୍ଯ୍ୟ ଓ ପରିସରର ପ୍ରମାଣ କିପରି ଥିଲା ? ତାହାର ବର୍ମ୍ମ ଓ ଶିରସ୍ତ୍ରାଣ ଅବା କିପରି ହୋଇଥିଲା ? ତୁମ୍ଭେ ବାକ୍ୟକୁଶଳ, ଅତଏବ ଆମ୍ଭେ ଯାହା ପଚାରିଲୁଁ ତାହା ସମ୍ପୂର୍ଣ୍ଣରୂପେ କୀର୍ତ୍ତନ କର ।

ସଞ୍ଜୟ କହିଲେ – ହେ ମହାରାଜ ! ବୃହତ୍‌କାୟ ରାକ୍ଷସ ଘଟୋତ୍କଚ ଊର୍ଦ୍ଧ୍ୱରୋମା ନିମ୍ନୋଦର ଓ ଲୋହିତଲୋଚନ ଥିଲା । ତାହାର ଗଣ୍ଡସ୍ଥଳ ଅତିଶୟ ସ୍ଥୂଳ, କର୍ଣ୍ଣଦ୍ୱୟ ଶଙ୍କୁସଦୃଶ, ଶ୍ମଶ୍ରୁଲୋମ ସିଂହକେଶର ତୁଲ୍ୟ, ମୁଖମଣ୍ଡଳ ତାମ୍ରବର୍ଣ୍ଣ ଓ ଆକର୍ଣ୍ଣ ବିଦାରିତ । ହନୁଦ୍ୱୟ ଅତିଶୟ ପ୍ରଶସ୍ତ । ମୁଖମଧ୍ୟରେ ଉନ୍ନତ ଦନ୍ତ ଚତୁଷ୍ଟୟ ଓ ତୀକ୍ଷ୍ଣଦନ୍ତସମୂହ ଥିବାରୁ ସେ ଅତିଶୟ ଭୟଙ୍କର ଦୃଷ୍ଟ ହେଉଥିଲା । ତାହାର ଜିହ୍ୱା ଓ ଓଷ୍ଠ ତାମ୍ର-ବର୍ଣ୍ଣ ଓ ଦୀର୍ଘ, ଭ୍ରୂଯୁଗଳ ଲମ୍ବମାନ, ନାସିକା ସ୍ଥୂଳ, ଅଙ୍ଗସବୁ ନୀଳବର୍ଣ୍ଣ, ଗ୍ରୀବା ଲୋହିତବର୍ଣ୍ଣ ଓ କଳେବର ପର୍ବତସଦୃଶ ଭୟଙ୍କର ଥିଲା । ୬ ।

ସେହି ମହାକାୟ ମହାବଳଶାଳୀ ମହାବାହୁ ବିକୃତରୂପ ନିଶାଚରର ମସ୍ତକ ଅତି ବୃହତ୍ । ଶରୀରସ୍ଥ ଚର୍ମ ଅତିଶୟ କର୍କଶ, ଜାନୁର ଅଧୋଦେଶସ୍ଥ ମାଂସଳଭାଗ ବିକଟ ରୂପରେ ଊର୍ଦ୍ଧ୍ୱକୁ ସ୍ଫୀତ, କଟିର ପଶ୍ଚାଦ୍‌ଭାଗ ଅତିଶୟ ସ୍ଥୂଳ ଓ ନାଭିସ୍ଥଳ ଗୂଢ଼ ଥିଲା । ସେହି ମହାମାୟାବିଶାରଦ ମହାନିଶାଚର ଅନାୟାସରେ ଆପଣାର ଅଭିଳଷିତ ଦ୍ରବ୍ୟାଦି ଆହରଣ କରିବାରେ ସମର୍ଥ । ହେ ମହାରାଜ ! ପର୍ବତ ଅଗ୍ନିମାଳା ଧାରଣ କଲାସଦୃଶ ସେ କଣ୍ଠଦେଶରେ ସୁବର୍ଣ୍ଣ ନିର୍ମିତ ନିଷ୍କ ଓ ଅଙ୍ଗଦ ପ୍ରଭୃତି ହସ୍ତାଭରଣ ଧାରଣ କରିଥିଲା । ସେହି ସମୟରେ ତାହାର ଉତ୍ତମାଙ୍ଗରେ ଶ୍ୱେତବର୍ଣ୍ଣ ତୋରଣାକୃତି ବହୁବିଧରତ୍ନଜଡ଼ିତ ହେମମୟ କିରୀଟ ଗୋଟିଏ ବିଶିଷ୍ଟ ଶୋଭା ପାଉଥିଲା । ସେହି ନିଶାଚର ନବୋଦିତ ଦିନମଣିପ୍ରଭାସଦୃଶ କୁଣ୍ଡଳଯୁଗଳ ଦ୍ୱାରା ଓ ହେମମୟୀ ମାଳାରେ ସମଳଂକୃତ ହୋଇ ମହାପ୍ରଭାବାନ୍ୱିତ ବିପୁଳ କାଂସ୍ୟବର୍ମ୍ମ ଧାରଣପୂର୍ବକ ଶତ ଶତ କିଙ୍କିଣୀନିନାଦିତ ଲୋହିତ ଧ୍ୱଜପଟମଣ୍ଡିତ ଋକ୍ଷଚର୍ମପରିବେଷ୍ଟିତ ଉତ୍କୃଷ୍ଟ ଅସ୍ତ୍ରନିକରପରିପୂର୍ଣ୍ଣ ବହୁବିଧ ଧ୍ୱଜମାଳାସୁଶୋଭିତ ଅଷ୍ଟଚକ୍ରସଂଯୁକ୍ତ ମେଘଗମ୍ଭୀରନିନାଦୀ ଚତୁଃଶତହସ୍ତପରିମିତ ଗୋଟିଏ ମହତ୍ ରଥବରରେ ସମାରୂଢ଼ ହୋଇଥିଲା । ସେହି ରଥରେ ମତ୍ତମାତଙ୍ଗ ସଙ୍କାଶ ଲୋହିତଲୋଚନ ଇଚ୍ଛାନୁରୂପବର୍ଣ୍ଣଧାରୀ, ଅତି ବେଗବାନ୍ ମହାବଳଶାଳୀ ଭୀଷଣମୂର୍ତ୍ତି ଶତଗୋଟିଅଶ୍ୱ ଯୋଜିତ ହୋଇଥିଲେ । ସେହି ଜିତଶ୍ରମ ବିପୁଳଜଟାଜାଳମଣ୍ଡିତ ଅଶ୍ୱଗଣ ମୁହୁର୍ମୁହୁ ହ୍ରେଷାରବ କରୁ କରୁ ସେହି ଘୋରରୂପ ନିଶାଚରକୁ ବହନ କରୁଥିଲେ ।

ହେ ମହାରାଜ ! ଉଜ୍ଜ୍ୱଳକୁଣ୍ଡଳାଳଂକୃତ ପ୍ରଦୀପ୍ତାସ୍ୟ ବିରୂପାକ୍ଷ ଜଣେ ରାକ୍ଷସ ତାହାର ସାରଥି ଥିଲା । ସେହି ସାରଥି ସୂର୍ଯ୍ୟରଶ୍ମିସନ୍ନିଭ ଅଶ୍ୱରଶ୍ମି ଗ୍ରହଣପୂର୍ବକ ଅଶ୍ୱମାନଙ୍କୁ ସଂଯତ କରୁଥିଲା । ହେ ମହାରାଜ ! ଘଟୋତ୍କଚ ତାଦୃଶ ରଥ ଓ ସାରଥି ସହିତ ସମବେତ ହୋଇ ପ୍ରକାଣ୍ଡମେଘସଂଯୁକ୍ତ ଉତ୍ତୁଙ୍ଗପର୍ବତତୁଲ୍ୟ ଓ ଅରୁଣସମବେତଦିବାକର ସଦୃଶ ଅବସ୍ଥାନ କଲା । ତାହାର ସମୁଚ୍ଛ୍ରିତ ସୁମହାନ୍ ରଥକେତୁ ଆକାଶକୁ ସ୍ପର୍ଶ କରୁଥିଲା । ୧୭ । ତାହା ଉପରେ ଲୋହିତମସ୍ତକ ମାଂସାଶୀ ଅତିଭୟଙ୍କର ଗୋଟିଏ ଗୃଧ୍ର ବସିଥିଲା । ଘଟୋତ୍କଚ ତାଦୃଶ ରଥରେ ଆରୂଢ଼ ହୋଇ ପରିସରରେ ଏକହସ୍ତ ପରିମିତ ଦୈର୍ଘ୍ୟରେ ଦ୍ୱାଦଶ ଅରତ୍ନିପରିମିତ

ସାକ୍ଷାତ୍ ଇନ୍ଦ୍ରାଶନିସଦୃଶ ଶବ୍ଦାୟମାନ ଦୃଢ଼ତର ଜ୍ୟାଯୁକ୍ତ ଶରାସନ ବିସ୍ତାରପୂର୍ବକ ଇଥାକ୍ଷପରିମିତ ଶରସମୂହ ଦ୍ୱାରା ସମସ୍ତଦିଗକୁ ସମାଚ୍ଛାଦିତ କରୁ କରୁ ସେହି ବୀରପଦାଚାରିଣୀ ନିଶାକାଳରେ କର୍ଣ୍ଣଙ୍କ ପ୍ରତି ଧାବିତ ହେଲା ।

ହେ ମହାରାଜ ! ସେ ସ୍ୱୀୟ ରଥରେ ଅବସ୍ଥିତ ହୋଇ ଧନୁକୁ ବିକ୍ଷେପ କରିବାକୁ ଆରମ୍ଭ କରନ୍ତେ ସେହି ସମୟରେ ସମସ୍ତ ଶବ୍ଦ ସ୍ତମ୍ଭିତ ହୋଇ ବଜ୍ରନିର୍ଘୋଷ ସଦୃଶ କେବଳ ସେହି ଶରାସନ ନିର୍ଘୋଷ ଶ୍ରୁତ ହେଲା । ତହୁଁ ଆପଣଙ୍କପକ୍ଷୀୟ ସମସ୍ତ ସୈନ୍ୟମାନେ ସନ୍ତ୍ରାସିତ ହୋଇ ସାଗରତରଙ୍ଗ ସଦୃଶ କମ୍ପିତ ହେଲେ । ସେହି ସମୟରେ ରାଧାନନ୍ଦନ କର୍ଣ୍ଣ ଭୟଯୁକ୍ତ ହୋଇ ସେହି ଖ୍ରୀଷଣମୂର୍ତ୍ତି ବିକଟଲୋଚନ ନିଶାଚରକୁ ଆଗମନ କରିବାର ଦେଖି ଅବଲୀଳାକ୍ରମେ ତାହାକୁ ନିବାରଣ କରିବାରେ ପ୍ରବୃତ୍ତ ହେଲେ । ମାତଙ୍ଗ ଓ ଯୂଥପତି ବୃଷଭ ଯେପରି ପ୍ରତିପକ୍ଷ ମାତଙ୍ଗ ଓ ବୃଷଭ ପ୍ରତି ଯଥାକ୍ରମେ ଧାବିତ ହୁଅନ୍ତି ସେହିପରି କର୍ଣ୍ଣ ଶରବର୍ଷଣ କରୁ କରୁ ଶରଜାଲ ବିକିରଣକାରୀ ଘଟୋତ୍କଚ ପ୍ରତି ଅଭିଦ୍ରୁତ ହେବଲେ ।

ହେ ବିଶାଂପତେ ! ସେହି କାଳରେ କର୍ଣ୍ଣ ଓ ରାକ୍ଷସ ଘଟୋତ୍କଚ ମଧ୍ୟରେ ଇନ୍ଦ୍ର ଓ ସମ୍ବରାସୁରର ଯୁଦ୍ଧ ସଦୃଶ ତୁମୁଳ ସଂଗ୍ରାମ ଆରମ୍ଭ ହେଲା । ସେ ଦୁହେଁ ମହାବେଗସଂପନ୍ନ ଖ୍ରୀଷଣନିଃସ୍ୱନ ଶରାସନ ଗ୍ରହଣପୂର୍ବକ ପରସ୍ପର ପରସ୍ପରକୁ ମହାସ୍ତ୍ରଦ୍ୱାରା କ୍ଷତବିକ୍ଷତ କରି ଶରଜାଲରେ ସମାଚ୍ଛାଦିତ କଲେ । ଅନନ୍ତର ଆକର୍ଣ୍ଣାକୃଷ୍ଟନିକ୍ଷିପ୍ତ ସନ୍ନତପର୍ବ ଶରନିକର ଦ୍ୱାରା ପରସ୍ପର ପରସ୍ପରର କାଂସ୍ୟନିର୍ମିତ ଅଙ୍ଗାବରଣ ଭେଦ କରି କଳେବର ବିଦାରଣ କଲେ । ଶାର୍ଦ୍ଦୂଳଦ୍ୱୟ ଯେପରି ନଖଦ୍ୱାରା ଓ ମାତଙ୍ଗଦ୍ୱୟ ଦନ୍ତଦ୍ୱାରା ଯୁଦ୍ଧ କରନ୍ତି ସେହିପରି ସେ ଦୁହେଁ ରଥଶକ୍ତି ଓ ବିଶିଖଜାଲ ବର୍ଷଣପୂର୍ବକ ଦୁହେଁ ଦୁହିଁଙ୍କୁ କ୍ଷତବିକ୍ଷତ କଲେ । ଏହିପରି ସେ ଦୁହେଁ କେତେବେଳେ ଶରସନ୍ଧାନ କେତେବେଳେ ଗାତ୍ରଚ୍ଛେଦ, କେତେବେଳେ ଅବା ପରସ୍ପର ପରସ୍ପରକୁ ଶରାନଳରେ ଦଗ୍ଧ କରି ଜନମାନଙ୍କର ଦୁଷ୍ପ୍ରେକ୍ଷଣୀୟ ହେଲେ । ସେହି ସମୟରେ ଉଭୟେ ଶରବିକ୍ଷତାଙ୍ଗ ଓ ଶୋଣିତପରିପ୍ଲୁତ ହୋଇ ଲୋହିତଜଳସ୍ରାବୀ ଗୈରିକାଚଳ ଦ୍ୱୟ ସଦୃଶ

ଶୋଭା ପାଇଲେ । ପରସ୍ପର ଶରାଗ୍ରପୀଡ଼ିତ ମହାଦ୍ୟୁତିସମ୍ପନ୍ନ ସେହି ବୀରଦ୍ୱୟ ପରସ୍ପରର ଦେହକୁ ଭେଦ କଲେ । କିନ୍ତୁ ଯତ୍ନପରାୟଣ ହେବାରୁ କେହି କାହାରିକୁ ବିଚଳିତ କରି ପାରିଲେ ନାହିଁ ।

ହେ ମହାରାଜ ! ପ୍ରାଣପଣକାରୀ କର୍ଣ୍ଣ ଓ ଘଟୋତ୍କଚ ଏ ଦୁହିଁଙ୍କର ସେହି ରାତ୍ରିଯୁଦ୍ଧ ଦୀର୍ଘକାଳ ସମଭାବରେ ରହିଲା । ପରନ୍ତୁ ଘଟୋତ୍କଚ ଅନାସକ୍ତ ଭାବରେ ତୀକ୍ଷ୍ଣତର ଶରସମୂହ ସନ୍ଧାନ ଓ ବିମୋଚନ କରନ୍ତେ ଉଭୟ ପକ୍ଷୀୟ ସୈନ୍ୟମାନେ ତାହାର ସେହି କାର୍ମ୍ମୁକନିର୍ଘୋଷ ଶୁଣି ଅତିଶୟ ଭୀତ ହେଲେ । ହେ ମହାରାଜ ! ଅସ୍ତ୍ରଜ୍ଞପ୍ରବର କର୍ଣ୍ଣ ଯେତେବେଳେ କୌଣସି ପ୍ରକାରେ ଘଟୋତ୍କଚକୁ ଅତିକ୍ରମ କରି ନ ପାରିଲେ ସେତେବେଳେ ସେ ଦିବ୍ୟାସ୍ତ୍ର ପ୍ରାଦୁର୍ଭାବ କଲି । ତହୁଁ ସେ ମୁହୂର୍ତ୍ତକ ମଧ୍ୟରେ ଶୂଳମୁଦ୍‌ଗର-ପାଦପଧାରୀ ପାଷାଣହସ୍ତ ଭୀଷଣମୂର୍ତ୍ତି ମହତ୍‌ ରାକ୍ଷସସୈନ୍ୟ ଦ୍ୱାରା ପରିବୃତ ହେଲା । ନରପତିମାନେ ଉଗ୍ରତର କାଳଦଣ୍ଡଧାରୀ ଭୂତାନ୍ତକର ଅନ୍ତକ-ସଦୃଶ ଘଟୋତ୍କଚକୁ ତାଦୃଶ ସେନାଗଣ ପରିବୃତ ହୋଇ ଉଦ୍ୟତଶରାସନ ହସ୍ତରେ ଆଗମନ କରିବାର ଦେଖି ବ୍ୟଥିତ ହେଲେ । ସେହି ସମୟରେ ମାତଙ୍ଗଗଣ ତାହାର ସିଂହନାଦରେ ଭୀତ ହୋଇ ମୂତ୍ର ପରିତ୍ୟାଗ କଲେ । ସୈନ୍ୟମାନେ ଅତିଶୟ କାତର ହେଲେ ।

ତତ୍ପରେ ରାତ୍ରି ହେତୁ ଅଧିକ ବଳସମ୍ପନ୍ନ ରକ୍ଷସ ସୈନ୍ୟମାନେ ରଣସ୍ଥଳରେ ଚତୁର୍ଦ୍ଦିଗରୁ ଘୋରତର ଶିଳାବୃଷ୍ଟି କଲେ । ଲୌହମୟ ଚକ୍ର, ଭୂଷଣ୍ଡୀ, ଶକ୍ତି, ତୋମର, ଶୂଳ, ଶତଘ୍ନୀ ଓ ପଟ୍ଟିଶ ପ୍ରଭୃତି ବହୁବିଧ ଅସ୍ତ୍ର ଅବିରତ ପତିତ ହେଲା । ହେ ମହାରାଜ ! ଆପଣଙ୍କ ପୁତ୍ରମାନେ ଓ ସମସ୍ତ ଯୋଦ୍ଧୃବୃନ୍ଦ ସେହି ଅତି ଭୟାବହ ଉଗ୍ରତର ଯୁଦ୍ଧ ଅବଲୋକନ କରି ଭୟରେ ଚତୁର୍ଦ୍ଦିଗକୁ ପଳାୟନ କଲେ । ସେହି ସମୟରେ କେବଳ ଅସ୍ତ୍ରବଳ-ଶ୍ଳାଘୀ ମାନୀ କର୍ଣ୍ଣ ବ୍ୟଥିତ ହେଲେ ନାହିଁ । ୪୧ । ଶରବୃଷ୍ଟି ଦ୍ୱାରା କର୍ଣ୍ଣ ଘଟୋତ୍କଚସମ୍ଭୂତ ମାୟାକୁ ଭସ୍ମୀଭୂତ କଲେ । ମାୟା ବିନଷ୍ଟ ହୁଅନ୍ତେ, ଘଟୋତ୍କଚ କ୍ରୁଦ୍ଧ ହୋଇ ସୂତପୁତ୍ରଙ୍କ ପ୍ରତି ଘୋରତର ବାଣବର୍ଷଣ କରିବାରୁ ସେହି ସମସ୍ତ ବାଣ ତାହାଙ୍କ ଶରୀରରେ ପ୍ରବିଷ୍ଟ ହେଲା ।

ହେ ମହାରାଜ ! ସେହି ବାଣସମୂହ କର୍ଣ୍ଣଙ୍କର କଳେବର ଭେଦ କରି ରୁଧିରବିଲିପ୍ତ ହୋଇ କ୍ରୁଦ୍ଧ ଭୁଜଙ୍ଗସଦୃଶ ଭୂଗର୍ଭରେ ପ୍ରବେଶ କଲା । ସେତେବେଳେ ଲଘୁହସ୍ତ ପ୍ରତାପବାନ୍ କର୍ଣ୍ଣ କ୍ରୋଧାବିଷ୍ଟ ହୋଇ ଘଟୋ-ତ୍କଚକୁ ଅତିକ୍ରମପୂର୍ବକ ଦଶଟିଗୋଟି ଶରଦ୍ୱାରା ତାହାର କଳେବରକୁ ଭେଦ କଲେ ।

ଘଟୋତ୍କଚ ସୂତପୁତ୍ରଙ୍କକର୍ତ୍ତୃକ ମର୍ମସ୍ଥଳରେ ତାଡ଼ିତ ଓ ଅତିଶୟ ବ୍ୟଥିତ ହୋଇ ତାହାଙ୍କୁ ବିନାଶ କରିବା ବାସନାରେ କ୍ରୋଧରେ ନବୋ-ଦିତଦିବାକରତୁଲ୍ୟ ମଣିରତ୍ନଜଡ଼ିତ ଏକସହସ୍ରଅରବିଶିଷ୍ଟ ଦେବନିର୍ମିତ କ୍ଷୁରଧାର ଗୋଟିଏ ଚକ୍ର ଧାରଣ କରି ତାହାଙ୍କ ଉପରକୁ ନିକ୍ଷେପ କଲା । ଯେପରି ଦୁର୍ଭାଗ୍ୟ ବ୍ୟକ୍ତିର ମନୋରଥ ବ୍ୟର୍ଥ ହୁଏ, ସେହିପରି ଅତିଶୟ ବେଗୋଦ୍‌ଭ୍ରାମିତ ସେହି ଚକ୍ର କର୍ଣ୍ଣଙ୍କର ଶରପ୍ରଭାବରେ ବ୍ୟର୍ଥ ହୋଇ ଭୂତଳରେ ନିପତିତ ହେଲା । ଚକ୍ର ନିଷ୍ଫଳ ହେବାର ଅବଲୋକନ କରି ଘଟୋତ୍କଚ ଅତିଶୟ ରୋଷାବିଷ୍ଟ ହୋଇ ରାହୁ ଭାସ୍କରଙ୍କୁ ଆଚ୍ଛନ୍ନ କଲା ସଦୃଶ କର୍ଣ୍ଣଙ୍କୁ ଶରଜାଳରେ ସମାଚ୍ଛାଦିତ କଲା । ତହୁଁ ରୁଦ୍ର, ଉପେନ୍ଦ୍ର ଓ ଇନ୍ଦ୍ରତୁଲ୍ୟ ପରାକ୍ରମଶାଳୀ ସୂତନନ୍ଦନ କର୍ଣ୍ଣ ଅସମ୍ଭ୍ରାନ୍ତ ଚିତ୍ତରେ ଘଟୋତ୍କଚର ରଥକୁ ସତ୍ୱର ଶରଜାଲ ଦ୍ୱାରା ଆବୃତ କଲେ । ତହିଁରେ ଘଟୋତ୍କଚ କ୍ରୁଦ୍ଧ ହୋଇ ହେମାଙ୍ଗଦବିଭୂଷିତ ଗୋଟିଏ ଗଦା ଉଦ୍‌ଭ୍ରାମିତ କରି ନିକ୍ଷେପ କରନ୍ତେ ତାହା କର୍ଣ୍ଣଙ୍କର ଶରଦ୍ୱାରା ଅଭିହତ ହୋଇ ଭୂତଳରେ ପତିତ ହେଲା । ଅନନ୍ତର ମହାକାୟ ଘଟୋତ୍କଚ ଅନ୍ତରୀକ୍ଷକୁ ଉତ୍ଥିତ ହୋଇ ପ୍ରଳୟକାଳୀନ ମେଘସଦୃଶ ଗର୍ଜ୍ଜନପୂର୍ବକ ନଭଃସ୍ଥଳରୁ ବୃକ୍ଷବୃଷ୍ଟି ଆରମ୍ଭ କଲା । ତାହା ଦେଖି ସୂତନନ୍ଦନ ପ୍ରଭାକର କିରଣସମୂହଦ୍ୱାରା ମେଘମଣ୍ଡଳକୁ ଭେଦ କଲା ପ୍ରାୟ ଅମ୍ବରସ୍ଥିତ ମାୟାକୁଶଳ ଭୀମସେନଙ୍କ ତନୟର କଳେ-ବରକୁ ଭେଦ କଲେ ଓ ତାହାର ଅଶ୍ୱସମୂହକୁ ନିହତ ଓ ରଥକୁ ଶତଧା ଛେଦନ କରି ବର୍ଷଣଶୀଳ ପର୍ଜ୍ଜନ୍ୟସଦୃଶ ଶରବୃଷ୍ଟି ଆରମ୍ଭ କଲେ । ସେହି ସମୟରେ ଘଟୋତ୍କଚର ଶରୀରରେ ଦୁଇଅଙ୍ଗୁଳ ମାତ୍ର ସ୍ଥାନ ଅନିର୍ଭିନ୍ନ ଅବସ୍ଥାରେ ନ ଥିଲା । ସେ ମୁହୂର୍ତ୍ତକ ମଧ୍ୟରେ କଣ୍ଟକାବୃତ ଶଲ୍ଲକୀସଦୃଶ ପ୍ରତୀୟମାନ ହେଲା ।

ହେ ମହାରାଜ ! ସେହିକାଳରେ ଅଶ୍ୱ, ରଥ ଓ ଧ୍ୱଜ ସମେତ ଘଟୋତ୍କଚ କର୍ଣ୍ଣଙ୍କ ଶରଜାଲରେ ସମାଚ୍ଛନ୍ନ ହୁଅନ୍ତେ କେହି ତାହାକୁ ଦେଖିବାକୁ ସମର୍ଥ ହେଲେ ନାହିଁ । କିନ୍ତୁ ମାୟାକୁଶଳ ଘଟୋତ୍କଚ ସ୍ୱୀୟ ଅସ୍ତ୍ରପ୍ରଭାବରେ କର୍ଣ୍ଣପ୍ରେରିତ ଦିବ୍ୟାସ୍ତ୍ରକୁ ଦୂରୀକୃତ କରି ମାୟାବଳରେ ତାହାଙ୍କ ସହିତ ଯୁଦ୍ଧ କଲେ । ସେହି ସମୟରେ ମାୟା ଓ ହସ୍ତ ଲାଘବ ଦ୍ୱାରା ସେ କର୍ଣ୍ଣଙ୍କ ସହିତ ଯୁଦ୍ଧ କରିବାରୁ ନଭୋମଣ୍ଡଳରୁ ଅଲକ୍ଷିତଭାବରେ ଅସଂଖ୍ୟ ଶରଜାଲ ନିପତିତ ହେଲା ।

ହେ କୁରୁସତ୍ତମ ! ସୁମହତ୍ ମାୟାବଳସମ୍ପନ୍ନ ସେହି ବୃହତ୍‌କାୟ ନିଶାଚର ଏହିପରି ମାୟା ପ୍ରଭାବରୁ ସମସ୍ତ ସୈନ୍ୟମାନଙ୍କୁ ବିମୋହିତ କରି ସମରସ୍ଥଳରେ ବିଚରଣ କଲା । ତାହାର ମୁଖମଣ୍ଡଳ ସ୍ୱଭାବତଃ ଅଶୁଭ, ତହିଁରେ ପୁଣି ସେ ମୁଖମଣ୍ଡଳକୁ ବିକଟାକାରରେ ବ୍ୟାଦାନ କରି ସୂତପୁତ୍ର-ପ୍ରେରିତ ଦିବ୍ୟାସ୍ତ୍ରସମୂହକୁ ମାୟାବଳରେ ଗ୍ରାସ କଲା । ତତ୍ପରେ ସେହି ବୃହତ୍‌କାୟ ନିଶାଚର ସମରରେ ନିରୁତ୍ସାହ ଓ ଗତାସୁ ତୁଲ୍ୟ ଶତଧା ଛିନ୍ନ ହୋଇ ଗଗନମଣ୍ଡଳରୁ ପତିତ ହେବାର ଦୃଷ୍ଟ ହେଲା । ତାହା ଦେଖି କୁରୁପୁଙ୍ଗବମାନେ ତାହାକୁ ନିହତ ମନେକରି ନିନାଦ କରନ୍ତେ ସେ ତତ୍-କ୍ଷଣାତ୍ ମାୟାକଳ୍ପିତ ଅପର ବହୁସଂଖ୍ୟକ ନୂତନ ଦେହ ଧାରଣ କରି ଏକ କାଳରେ ସମସ୍ତ ଦିଗରୁ ଦୃଷ୍ଟ ହେଲା । ସେ ମାୟା ପ୍ରଭାବରେ କେତେବେଳେ ଏକଶତ ମସ୍ତକ, ଏକଶତ ଉଦର ଓ ବୃହତ୍ କଳେବର ଧାରଣ କରି ମୈନାକ ପର୍ବତପରି ଦୃଷ୍ଟ ହେଲା । କେତେବେଳେ ଅଙ୍ଗୁଷ୍ଠମାତ୍ର ହୋଇ ପୁନର୍ବାର ଉଦ୍ଧୃତ ସାଗରର ତରଙ୍ଗସଦୃଶ ବକ୍ରଭାବରେ ଊର୍ଦ୍ଧ୍ୱକୁ ପରିବର୍ଦ୍ଧିତ ହେଲା । କେତେବେଳେ ଅବା ବସୁନ୍ଧରା ବିଦାରଣପୂର୍ବକ ସଲିଳମଧ୍ୟରେ ନିମଗ୍ନ ହୋଇ କ୍ଷଣକ ପରେ ଅନ୍ୟସ୍ଥାନରେ ଦୃଷ୍ଟ ହେଲା ।

ଏହିପରି ସେହି ନିଶାଚର ମାୟାବଳରେ ପୃଥିବୀ ଅନ୍ତରୀକ୍ଷ ଓ ଦିକ୍‌ସମୂହ ବିଚରଣପୂର୍ବକ ପରିଶେଷରେ ପ୍ରକାଶ୍ୟରୂପେ ବଦ୍ଧସନ୍ନାହ ହୋଇ ପୁନର୍ବାର ହେମପରିଷ୍କୃତ ରଥରେ ଅବସ୍ଥିତ ହେଲା । ଦୋଦୁଲ୍ୟମାନ କୁଣ୍ଡଳଯୁଗଳ ଧାରଣ କରି ସୂତପୁତ୍ରଙ୍କର ରଥ ସମୀପକୁ ଗମନପୂର୍ବକ ନିର୍ଭୀକ ଚିତ୍ତରେ କହିଲା, "ଆହେ ସୂତନନ୍ଦନ, ଅବସ୍ଥାନ କର" ବର୍ତ୍ତମାନ

ଆମ୍ଭଠାରୁ ଜୀବନ ଘେନି କେଉଁଠାକୁ ଯିବ ? ଅଦ୍ୟ ସଂଗ୍ରାମରେ ତୁମ୍ଭର ଯୁଦ୍ଧ ଲାଳସା ଅପନୟନ କରିବୁଁ ।

ହେ ମହାରାଜ ! କ୍ରୂରପରାକ୍ରମଶାଳୀ ଘଟୋତ୍କଚ ଏହି କଥା କହି ରୋଷରେ ତାମ୍ରଲୋଚନ ହୋଇ ନଭୋମଣ୍ଡଳକୁ ଉତ୍ଥିତ ହେଲା । ବିକୃତ ସ୍ୱରରେ ହାସ୍ୟ କରି କେଶରୀ ଗଜେନ୍ଦ୍ରକୁ ଆଘାତ କଲା ପ୍ରାୟ କର୍ଣ୍ଣଙ୍କ ପ୍ରତି ଶରାଘାତ କଲା । ୬୯ । ଏହି ସମୟରେ ଧାରାବର୍ଷୀ ତୋୟଦସଦୃଶ ଘଟୋ-ତ୍କଚ ରଥୀପ୍ରବର କର୍ଣ୍ଣଙ୍କ ପ୍ରତି ରଥାକ୍ଷପରିମିତ ଶସ୍ତ୍ରସମୂହ ବର୍ଷଣ କଲା । କିନ୍ତୁ କର୍ଣ୍ଣ ସେହି ଅସ୍ତ୍ରସମୂହ ନିକଟସ୍ଥ ନ ହେଉଣୁଁ ସେ ସମସ୍ତଙ୍କୁ ନିରାକୃତ କଲେ । ହେ ଭରତ ଶ୍ରେଷ୍ଠ ! କର୍ଣ୍ଣଙ୍କକର୍ତ୍ତୃକ ନିଜର ମାୟା ପ୍ରତିହତ ହେବାର ଦେଖି ଘଟୋତ୍କଚ ପୁନର୍ବାର ଅନ୍ତର୍ହିତ ହୋଇ ମାୟାନ୍ତର ସୃଷ୍ଟି କଲା । ସେହିକାଳରେ ସେହି ମାୟା ପ୍ରଭାବରୁ ଶୂଳ, ପ୍ରାସ, ଅସି ଓ ମୂଷଳ ପ୍ରଭୃତି ଶସ୍ତ୍ର ରୂପ ଜଳପ୍ରସ୍ରବଣବ୍ୟାପୃତ ବହୁଶିଖରସୁଶୋଭିତ ତରୁଗଣ-ସମାକୀର୍ଣ୍ଣ ଅତିଶୟ ଉଚ୍ଚ ଗୋଟିଏ ମହତ୍ ପର୍ବତରୂପ ଧାରଣ କଲା ।

ହେ ମହାରାଜ ! ଅଞ୍ଜନସନ୍ନିଭ ଉଗ୍ରତର ଶସ୍ତ୍ରରୂପ ସଲିଳପ୍ରବାହ-ଯୁକ୍ତ ସେହି ଅଚଳକୁ କର୍ଣ୍ଣ ଅବଲୋକନ କରି କିଅନ୍ମାତ୍ର କ୍ଷୁଭିତ ହେଲେ-ନାହିଁ । ସେ ଉତ୍ସାହ ସହକାରେ ଦିବ୍ୟାସ୍ତ୍ର ପ୍ରାଦୁର୍ଭୂତ କଲେ । ୭୪ । ସେହି ଅସ୍ତ୍ର ପ୍ରଭାବରେ ଶୈଳେନ୍ଦ୍ର ବହୁଧା ବିକ୍ଷିପ୍ତ ହୋଇ କ୍ଷଣକ ମଧ୍ୟରେ ବିନଷ୍ଟ ହେଲା । ତହୁଁ ଘଟୋତ୍କଚ ନଭୋମଣ୍ଡଳରେ ଇନ୍ଦ୍ରାୟୁଧସୁଶୋଭିତ ନୀଳ-ଜଳଧର ମୂର୍ତ୍ତି ଧାରଣ କରି ସୂତପୁତ୍ରଙ୍କ ପ୍ରତି ଉଗ୍ରତର ପ୍ରସ୍ତର ବୃଷ୍ଟି କଲା । ତେତେବେଳେ ଅସ୍ତ୍ରଜ୍ଞପ୍ରବର ମହାତେଜା ସୂର୍ଯ୍ୟନନ୍ଦନ କର୍ଣ୍ଣ ବାୟବ୍ୟାସ୍ତ୍ର ସନ୍ଧାନପୂର୍ବକ ସେହି କାଳସ୍ୱରୂପ ମେଘମଣ୍ଡଳକୁ ଦୂରୀକୃତ କଲେ । ତତ୍ପରେ ସେ ଶରବୃଷ୍ଟି ଦ୍ୱାରା ଦିକ୍‌ସମୂହକୁ ସମାଚ୍ଛାଦିତ କରି ଘଟୋତ୍କଚନିକ୍ଷିପ୍ତ ଅସ୍ତ୍ର-ସବୁକୁ ପ୍ରତିହତ କଲେ ।

ଅନନ୍ତର ମହାବଳପରାକ୍ରାନ୍ତ ଭୀମସେନତନୟ ରଣାଙ୍ଗନରେ ଉଚ୍ଚୈଃସ୍ୱରରେ ହାସ୍ୟ କରି ମହାରଥୀ କର୍ଣ୍ଣଙ୍କ ନିକଟରେ ମହାମାୟା ପ୍ରକାଶ କଲା । ସେହି କାଳରେ ରଥୀପ୍ରବର ଘଟୋତ୍କଚ ଅଶ୍ୱାରୂଢ଼, ଗଜାରୂଢ଼

ଓ ରଥାରୂଢ଼ ବଦ୍ଧ କବଚବଭୂଷିତ ନାନାଶସ୍ତ୍ରଧାରୀ ମତ୍ତମାତଙ୍ଗତୁଲ୍ୟ-ପରାକ୍ରମଶାଳୀ ସିଂହ ଓ ଶାର୍ଦ୍ଦୂଳ ସଦୃଶ ଭୀଷଣମୂର୍ତ୍ତି ବହୁସଂଖ୍ୟକ କ୍ରୂର ନିଶାଚର ସୈନ୍ୟମାନଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ମରୁଦ୍‌ଗଣପରିବୃତ ବାସବସଦୃଶ ଅସମ୍ଭ୍ରାନ୍ତଚିତ୍ତରେ ରଥାରୋହଣପୂର୍ବକ ପୁନର୍ବାର ଆସୁଥିବାର ଦେଖି ମହାଧନୁର୍ଦ୍ଧର କର୍ଣ୍ଣ ଅନାକୁଳିତ ଚିତ୍ତରେ ତାହା ସହିତ ଯୁଦ୍ଧରେ ପ୍ରବୃତ୍ତ ହେଲେ । ୮୨ । ଘଟୋତ୍କଚ କର୍ଣ୍ଣଙ୍କୁ ପ୍ରଥମରେ ଲୌହମୟ ପାଞ୍ଚ-ଗୋଟି ବାଣରେ ବିଦ୍ଧ କରି ଓ ସମସ୍ତ ପାର୍ଥିବଗଣଙ୍କୁ ସନ୍ତାସିତ କରି ଭୈରବ ରବରେ ନିନାଦ କଲା । ତତ୍ପରେ ତ୍ୱରାନ୍ୱିତ ହୋଇ ଅଞ୍ଜଳିକାସ୍ତ୍ର ଦ୍ୱାରା କର୍ଣ୍ଣଙ୍କର କରସ୍ଥିତ ଶର ଓ ଗୁଣସହ ଶରାସନ ଛେଦନ କଲା । ୮୪ ତେତେବେଳେ କର୍ଣ୍ଣ ଦୃଢ଼ତର ଇନ୍ଦ୍ରାୟୁଧସଦୃଶ ସୁଦୀର୍ଘ ଅତିଭାରସହ ଗୋଟିଏ ମହତ୍ ଶରାସନ ଗ୍ରହଣ କରି ବଳପୂର୍ବକ ଆକର୍ଷଣ କଲେ ଓ ନଭୋମଣ୍ଡଳସ୍ଥିତ ନିଶାଚରମାନଙ୍କ ପ୍ରତି ସୁବର୍ଣ୍ଣପୁଙ୍ଖାନ୍ୱିତ ଶତ୍ରୁଘାତୀ ଶର-ସମୂହ ନିକ୍ଷେପ କଲେ ।

ହେ ମହାରାଜ ! ପୀନବକ୍ଷ ରାକ୍ଷସଗଣ ସେହି ଶରସମୂହରେ ନିପୀଡ଼ିତ ହୋଇ ସିଂହପ୍ରପୀଡ଼ିତ ବନ୍ୟ ଗଜଯୂଥ ସଦୃଶ ଆକୁଳିତ ହେଲେ । ୮୭ । ଯୁଗାନ୍ତ ସମୟରେ ଭଗବାନ୍ ବହ୍ନି ଯେପରି ସମସ୍ତ ପ୍ରାଣିମାନଙ୍କୁ ଦଗ୍‌ଧ କରନ୍ତି, ସେହିପରି ସମରଦକ୍ଷ ସୂତନନ୍ଦନ ତୁରଙ୍ଗ ଓ ମାତଙ୍ଗ ସହିତ ରାକ୍ଷସମାନଙ୍କୁ ବଳପୂର୍ବକ ଶରାନଳରେ ଦଗ୍‌ଧ କଲେ । ୮୮ । ହେ ରାଜନ୍ ! ପୂର୍ବକାଳରେ ଦେବ ମହେଶ୍ୱର ଆକାଶସ୍ଥିତ ତ୍ରିପୁରକୁ ଦଗ୍‌ଧ କରି ଶୋଭା ଧାରଣ କରିଥିଲେ; ସୂତନନ୍ଦନ କର୍ଣ୍ଣ ରାକ୍ଷସୀସେନା ସଂହାର କରି ଶୋଭମାନ ହେଲେ । ୮୯ । ସେହି ସମୟରେ ପାଣ୍ଡବପକ୍ଷୀୟ ସହସ୍ର ନୃପଗଣ ମଧ୍ୟରେ ଭୟାନକ ବଳବୀର୍ଯ୍ୟସମ୍ପନ୍ନ କ୍ରୁଦ୍ଧ, କୃତାନ୍ତସଦୃଶ ମହାବଳଶାଳୀ ରାକ୍ଷସେନ୍ଦ୍ର ଘଟୋତ୍କଚ ବ୍ୟତୀତ ଅନ୍ୟ କେହି କର୍ଣ୍ଣଙ୍କୁ ନିରୀକ୍ଷଣ କରିବାକୁ ସମର୍ଥ ହେଲେ ନାହିଁ । ୯୧ ।

ସେହି କାଳରେ ସେହି ନିଶାଚର ଏପରି କ୍ରୁଦ୍ଧ ହେଲା ଯେ ମହୋଲ୍‌କାନିଃସୃତସଶିଖତୈଳବିନ୍ଦୁସଦୃଶ ତାହାର ନୟନଦ୍ୱୟରୁ ନିରନ୍ତର ଅଗ୍ନିସ୍ଫୁଲିଙ୍ଗସମୂହ ନିର୍ଗତ ହେଲା । ୯୨ । ଅନନ୍ତର ସେ ପିଶାଚବଦନାକୃତି

ଗଜସଦୃଶବୃହତ୍‌କାୟ, ବହୁସଂଖ୍ୟକ ଖରଯୋଜିତ ମାୟାକଳ୍ପିତ ରଥରେ ଆରୋହଣ ପୂର୍ବକ କ୍ରୋଧରେ ଅଧରଦଂଶନ ଓ କରତଳଧୂନନ କରି ସାରଥିକୁ କହିଲା ଯେ, ଆମ୍ଭଙ୍କୁ ସୂତପୁତ୍ରଙ୍କ ସମୀପକୁ ନେଇଯାଅ । ୯୫ । ହେ ପ୍ରଜାନାଥ ! ସେହି ରଥିପ୍ରବର ନିଶାଚର ଏହି ଘୋରରୂପ ରଥରେ ଆରୂଢ଼ ହୋଇ ପୁନର୍ବାର ସୂତପୁତ୍ରଙ୍କ ସହିତ ଦ୍ୱୈରଥ ଯୁଦ୍ଧାର୍ଥ ଗମନ କଲା ଓ ଅତିଶୟ କ୍ରୋଧାବିଷ୍ଟ ହୋଇ ଦୁଇ ଯୋଜନ ଉଚ୍ଚ ଏକ ଯୋଜନ ଆୟତ ଅଷ୍ଟଚକ୍ରସମନ୍ୱିତ ସକେଶରକଦମ୍ବକୁସୁମସଦୃଶ ବହୁଳକଣ୍ଟକାସ୍ତ୍ରସମାଚିତ ଲୌହମୟ ମହାଭୟଙ୍କର ରୁଦ୍ରନିର୍ମିତ ଗୋଟିଏ ଅଶନି ଗ୍ରହଣପୂର୍ବକ ସୂତ-ପୁତ୍ରଙ୍କ ପ୍ରତି ନିକ୍ଷେପ କଲା । ୯୭ । ତାହା ଦେଖି କର୍ଣ୍ଣ ମହତ୍ ଶରାସନ ସ୍ଥାପନପୂର୍ବକ ରଥରୁ ଅବତୀର୍ଣ୍ଣ ହୋଇ ସେହି ଅଶନିକୁ ଧାରଣ କରି ପୁନର୍ବାର ତାହାକୁ ଘଟୋତ୍କଚ ଉପରକୁ ନିକ୍ଷେପ କରନ୍ତେ, ସେ ତତ୍‌କ୍ଷଣାତ୍ ରଥରୁ ଲମ୍ଫପ୍ରଦାନପୂର୍ବକ ଭୂତଳରେ ପତିତ ହେଲା । ୯୮ ।

ପରନ୍ତୁ କର୍ଣ୍ଣହସ୍ତନିର୍ମୁକ୍ତ ସେହି ମହାପ୍ରଭାବଶାଳୀ ଅଶନି ଘଟୋ-ତ୍କଚର ଅଶ୍ୱ, ସାରଥି, ଧ୍ୱଜ ଓ ରଥକୁ ଭସ୍ମସାତ୍ କରି ବସୁନ୍ଧରାରେ ପ୍ରବିଷ୍ଟ ହେଲା । ତଦ୍ଦ୍ୱାରା ଦେବଗଣ ଅତିଶୟ ବିସ୍ମୟାପନ୍ନ ହେଲେ । ୯୯ । ସେହି ସମୟରେ ସୂତନନ୍ଦନ ସହସା ଲମ୍ଫପ୍ରଦାନ ପୂର୍ବକ ଦେବନିର୍ମିତ ସେହି ଅଶନିକୁ ଧାରଣ କରିବାରୁ ସମସ୍ତ ପ୍ରାଣୀ ତାହାଙ୍କର ପ୍ରଶଂସା କଲେ । ୧୦୦ । ଅନନ୍ତର ଶତ୍ରୁତାପନ କର୍ଣ୍ଣ ରଣସ୍ଥଳରେ ଏହିପରି ଦୁଷ୍କର କାର୍ଯ୍ୟ କରି ପୁନର୍ବାର ରଥାରୋହଣପୂର୍ବକ ଘଟୋତ୍କଚ ପ୍ରତି ନାରାଚସମୂହ ନିକ୍ଷେପ କଲେ । ୧୦୧ ।

ହେ ମାନଦ ! କୌରବେଶ୍ୱର ! ସେହି ଭୟଙ୍କର ସମରରେ କର୍ଣ୍ଣ ଯେପରି ଅଦ୍ଭୁତ କାର୍ଯ୍ୟ କଲେ, ପ୍ରାଣିମାନଙ୍କ ମଧ୍ୟରେ କେହି ସେହି କାର୍ଯ୍ୟ କରିବାକୁ ସମର୍ଥ ନୁହନ୍ତି । ୧୦୨ । ପର୍ବତ ଯେପରି ବାରିଧାରାଦ୍ୱାରା ସମାହତ ହୁଏ, ସେହିପରି ଘଟୋତ୍କଚ କର୍ଣ୍ଣଙ୍କନିକ୍ଷିପ୍ତ ନାରାଚସମୂହରେ ତାଡ଼ିତ ହୋଇ ଗନ୍ଧର୍ବ ନଗର ସଦୃଶ ପୁନର୍ବାର ଅନ୍ତର୍ହିତ ହେଲା । ୧୦୩ । ହେ ମହାରାଜ ! ମହାମାୟାବୀ ଶତ୍ରୁସୂଦନ ସେହି ନିଶାଚର ଏହି ପ୍ରକାର ମାୟା ଓ ଲଘବ ଦ୍ୱାରା ସୂତପୁତ୍ରପ୍ରେରିତ ଦିବ୍ୟାସ୍ତ୍ରମାନଙ୍କୁ ସଂହାର କଲା । ୧୦୪ । ପରନ୍ତୁ

ମହାମାୟା ପ୍ରଭାବରେ ବାରମ୍ବାର ଅସ୍ତ୍ରସମୂହ ବିନଷ୍ଟ ହେଲେ ମଧ୍ୟ କର୍ଣ୍ଣ ଅସମ୍ଭ୍ରାନ୍ତ ଚିତ୍ତରେ ତାହା ସହିତ ସଂଗ୍ରାମ କଲେ । ୧୦୫ । ତାହା ଦେଖି ମହାବଳଶାଳୀ ଭୀମସେନତନୟ କ୍ରୁଦ୍ଧ ହୋଇ ଆପଣାକୁ ବହୁଧା ବିଭକ୍ତ କଲା । ୧୦୬ । ତହୁଁ ସିଂହ, ବ୍ୟାଘ୍ର, ତରକ୍ଷୁ, ଅଗ୍ନିଜିହ୍ୱ-ଭୁଜଙ୍ଗ ଓ ଲୌହମୁଖ-ବିହଙ୍ଗ ପ୍ରଭୃତି ବହୁବିଧ ମୂର୍ତ୍ତି ଧାରଣ କରି ଚତୁର୍ଦ୍ଦିଗନ୍ତ୍ରୁ ଆଗମନ କଲେ । ୧୦୭ ।

ହେ ମହାରାଜ ! ସେହି ନିଶାଚର ତାଦୃଶ ଭାବରେ ଉପସ୍ଥିତ ହେଲେହେଁ କର୍ଣ୍ଣଙ୍କ ଚାପଚ୍ୟୁତ ଶରସମୂହଦ୍ୱାରା ସମାକୀର୍ଣ୍ଣ ହୋଇ ସମ୍ମୁଖ-ସମରରେ ଅବସ୍ଥାନ କରିବାକୁ ଅସମର୍ଥ ହୋଇ ଇନ୍ଦ୍ରଜାଲସମ୍ଭୂତ ନଗର ପର୍ବତ ଓ ଅରଣ୍ୟ ସଦୃଶ ତତ୍‌କ୍ଷଣାତ୍ ଅନ୍ତର୍ହିତ ହେଲା । ୧୦୮ । ତତ୍ପରେ ବିକୃତାନନ ବହୁସଂଖ୍ୟକ ନିଶାଚର, ପିଶାଚ, ଶାଳାବୃକ ଓ ବୃକ ଏମାନେ କର୍ଣ୍ଣଙ୍କୁ ଭକ୍ଷଣ କରିବାନିମିତ୍ତ ଚତୁର୍ଦ୍ଦିଗରୁ ଧାବିତ ହେଲେ । ପୁଣି ସେହି କାଳରେ ସେମାନେ ଶୋଣିତଲିପ୍ତ ବହୁବିଧ ଭୟଙ୍କର ଆୟୁଧମାନ ଉଦ୍ୟତ କରି କର୍ଣ୍ଣଙ୍କୁ କଠୋର ବାକ୍ୟଦ୍ୱାରା ଶାସିତ କରନ୍ତେ, ସେ ସେମାନଙ୍କର ପ୍ରତ୍ୟେକକୁ ବହୁସଂଖ୍ୟକ ଶରଦ୍ୱାରା ବିଦ୍ଧ କଲେ । ୧୧୧ । ଅନନ୍ତର ଦିବ୍ୟାସ୍ତ୍ର ପ୍ରଭାବରେ ରାକ୍ଷସୀମାୟା ପ୍ରତିହତ କରି ସନ୍ନତପର୍ବ ଶରସମୂହଦ୍ୱାରା ଘଟୋତ୍କଚର ଅଶ୍ୱସମୂହକୁ ସମାହତ କଲେ । ୧୧୨ । ଅଶ୍ୱମାନେ କର୍ଣ୍ଣଙ୍କର ଶରପ୍ରହାରରେ ଭଗ୍ନପୃଷ୍ଠ ଓ କ୍ଷତବିକ୍ଷତ ହୋଇ ଘଟୋତ୍କଚ ସମକ୍ଷରେ ନିପତିତ ହେଲେ । ୧୧୩ ।

ହେ ମହାରାଜ ! ଏହାପରି ମାୟା ବିନଷ୍ଟ ହୁଅନ୍ତେ ହିଡ଼ିମ୍ବାନନ୍ଦନ କର୍ଣ୍ଣଙ୍କୁ କହିଲା, ବର୍ତ୍ତମାନ ତୁମ୍ଭ ମୃତ୍ୟୁର ବିଧାନ କରୁଅଛି । ଏହା କହି ପୁନର୍ବାର ଅନ୍ତର୍ହିତ ହେଲା । ୧୧୪ ।

---

# ୧୭୭ ଅଧ୍ୟାୟ

ସଞ୍ଜୟ କହିଲେ—ହେ ମହାରାଜ ! କର୍ଣ୍ଣ ଓ ଘଟୋତ୍କଚ ଏ ଦୁହିଁଙ୍କର ସେହି ସଂଗ୍ରାମ ସମୟରେ ବୀର୍ଯ୍ୟଶାଳୀ ରାକ୍ଷସେନ୍ଦ୍ର ଅଳାୟୁଧ ପୂର୍ବତନ ବୈରଭାବ ସ୍ମରଣ କରି ନାନାବେଶଧାରୀ ସହସ୍ର ସହସ୍ର ବିକୃତରୂପ ମହତ୍ ରାକ୍ଷସସୈନ୍ୟଦ୍ୱାରା ପରିବୃତ ହୋଇ ଦୁର୍ଯ୍ୟୋଧନଙ୍କ ସମୀପରେ ଉପସ୍ଥିତ ହେଲା । ପୂର୍ବେ ଭୀମସେନ ତାହାର ଜ୍ଞାତି ବିକ୍ରମଶାଳୀ ବ୍ରାହ୍ମଣଭକ୍ଷକ ବକ ଓ କିର୍ମ୍ମୀରଙ୍କୁ ଓ ତାହାର ସଖା ମହାତେଜା ହିଡ଼ିମ୍ବଙ୍କୁ ବିନାଶ କରିଥିଲେ । ବର୍ତ୍ତମାନ ସେ ନିଶାଯୁଦ୍ଧ ବିଷୟ ଅବଗତ ହୋଇ ସେହି ଚିରସଞ୍ଚିତ ଜ୍ଞାତିବଧ ସ୍ମରଣ କରି ସଂଗ୍ରାମରେ ଭୀମସେନଙ୍କୁ ସଂହାର କରିବାକୁ ଅଭିଳାଷ କଲା । ସେହି ମତ୍ତମାତଙ୍ଗ ତୁଲ୍ୟ ନିଶାଚର ସମରାଭିଳାଷରେ ଭୁଜଙ୍ଗସଦୃଶ ରୋଷାବିଷ୍ଟ ହୋଇ ଦୁର୍ଯ୍ୟୋଧନଙ୍କ ନିକଟରେ ଏହିପରି ନିବେଦନ କଲା ଯେ, ହେ ମହାରାଜ ! ପୂର୍ବେ ଭୀମସେନ ଆମ୍ଭର ବାନ୍ଧବ ନିଶାଚର ବକ, କିର୍ମ୍ମୀର ଓ ହିଡ଼ିମ୍ବଙ୍କୁ ଯେପରି ସଂହାର କରିଥିଲେ ସେସମସ୍ତ ଆପଣଙ୍କୁ ବିଦିତ ଅଛି । ସେ ଅନ୍ୟାନ୍ୟ ନିଶାଚର ଓ ଆମ୍ଭମାନଙ୍କୁ ଅବମାନନା କରି କନ୍ୟା ଅବସ୍ଥାରେ ହିଡ଼ିମ୍ବାର ଧର୍ମ୍ମ ଲୋପ କରିଅଛନ୍ତି । ଅତଏବ ଆମ୍ଭେ ଅଦ୍ୟ ହସ୍ତୀ, ଅଶ୍ୱ, ରଥ ଓ ଅନୁଚରବର୍ଗ ସହିତ ସେହି ଭୀମସେନଙ୍କୁ ଓ ଅମାତ୍ୟଗଣପରିବୃତ ହିଡ଼ିମ୍ବାନନ୍ଦନ ଘଟୋତ୍କଚଙ୍କୁ ବିନାଶ କରିବା ମାନସରେ ସ୍ୱୟଂ ଉପସ୍ଥିତ ହୋଇଅଛୁଁ । ଅଦ୍ୟ ଆମ୍ଭେ ବାସୁଦେବ ପ୍ରମୁଖ କୁନ୍ତୀପୁତ୍ରମାନଙ୍କୁ ବିନାଶପୂର୍ବକ ଅନୁଚରବର୍ଗସହିତ ମିଳିତ ହୋଇ ସେମାନଙ୍କୁ ଭକ୍ଷଣ କରିବୁଁ । ଅତଏବ ଆପଣ ସ୍ୱୀୟ ସୈନ୍ୟମାନଙ୍କୁ ସଂଗ୍ରାମରୁ ପ୍ରତିନିବୃତ୍ତ କରନ୍ତୁ । ଆମ୍ଭେମାନେ ପାଣ୍ଡବମାନଙ୍କ ସହିତ ସଂଗ୍ରାମ କରିବୁଁ । ୧୦ ।

ଭ୍ରାତୃଗଣପରିବୃତ ରାଜା ଦୁର୍ଯ୍ୟୋଧନ ଅଳାୟୁଧର ବାକ୍ୟ ଶ୍ରବଣ କରି ପ୍ରହୃଷ୍ଟ ହୋଇ ତାହାଙ୍କୁ ପ୍ରତିଗ୍ରହପୂର୍ବକ କହିଲେ । ୧୧ । ହେ ବୀର ! ଆମ୍ଭର ସୈନ୍ୟମାନେ ସମସ୍ତେ ବୈରନିର୍ଯ୍ୟାତନରେ ଉତ୍ସୁକ ହୋଇ ଅଛନ୍ତି । ସେମାନେ କୌଣସି ପ୍ରକାରେ ସ୍ଥିରଚିତ୍ତରେ ସମରରେ ଅବସ୍ଥାନ କରିବାକୁ ସମର୍ଥ ହେବେ ନାହିଁ । ଅତଏବ ଆମ୍ଭେମାନେ ତୁମ୍ଭଙ୍କୁ ଓ ତୁମ୍ଭ

ସୈନ୍ୟମାନଙ୍କୁ ପୁରୋବର୍ତ୍ତୀ କରି ଶତ୍ରୁମାନଙ୍କ ସହିତ ସମରରେ ପ୍ରବୃତ୍ତ ହେବୁଁ । ୧୨ । ସଞ୍ଜୟ କହିଲେ—ହେ ମହାରାଜ ! ରାକ୍ଷସଶ୍ରେଷ୍ଠ ଅଳାୟୁଧ "ତାହା ହେଉ" ବୋଲି ଦୁର୍ଯୋଧନଙ୍କୁ କହି ଘଟୋତ୍କଚ ଶରୀରସଦୃଶ ପ୍ରଦୀପ୍ତକଳେବର ଧାରଣ କରି ଭାସ୍କରସମଭାସ୍ୱର ଗୋଟିଏ ରଥରେ ସମାରୂଢ଼ ହୋଇ ନରଭୋଜୀ ରାକ୍ଷସସୈନ୍ୟସହ ସତ୍ୱର ଭୀମତନୟ ଘଟୋତ୍କଚ ପ୍ରତି ଧାବିତ ହେଲା । ଅଳାୟୁଧର ମଧ୍ୟ ସେହି ମହାରଥ ଏକ ନଲ୍ୱପରିମିତ ଅତୁଳ ନିର୍ଘୋଷବାନ୍ ଭଲ୍ଲୁକଚର୍ମ୍ମସମାବୃତ ଓ ବହୁସଂଖ୍ୟକ ତୋରଣଦ୍ୱାରା ଶୋଭିତ ହୋଇଥିଲା । ୧୫ । ତାହାର ରଥଯୋଜିତ ଅଶ୍ୱମାନେ ଘଟୋତ୍କଚର ଅଶ୍ୱସଦୃଶ ଶୀଘ୍ରଗାମୀ, ହସ୍ତୀତୁଲ୍ୟ ବୃହତ୍‌କାୟ, ରାସଭସଦୃଶ ନିନାଦକାରୀ ଓ ମାଂସଶୋଣିତଭୋଜୀ ଥିଲେ ଓ ସଂଖ୍ୟାରେ ମଧ୍ୟ ଏକଶତରୁ ନ୍ୟୂନ ନ ଥିଲେ । ୧୭ । ତାହାର ସୁମହତ୍ ଶରାସନ ମଧ୍ୟ ଘଟୋତ୍କଚର ଶରାସନ ସଦୃଶ ଦୃଢ଼ତର ଜ୍ୟାଯୁକ୍ତ ଓ ସୁବର୍ଣ୍ଣଦ୍ୱାରା ଉଦ୍ଭାସିତ ଥିଲା । ତାହାର ରଥସ୍ୱନ ମହାମେଘଗର୍ଜ୍ଜନସଦୃଶ ଓ ଶରସମୂହ ଅକ୍ଷପରିମିତ ଶିଳାଶାଣିତ ଓ ସୁବର୍ଣ୍ଣପୁଙ୍ଖାନ୍ୱିତ ଥିଲା । ପୁରୋବର୍ତ୍ତୀ ରଥଧ୍ୱଜ ମଧ୍ୟ ଅନଳ ଓ ତପନସଦୃଶ ପ୍ରଦୀପ୍ତ ଓ ଗୋମାୟୁବଳଦ୍ୱାରା ପରିରକ୍ଷିତ ହୋଇଥିଲା । ସେ ନିଜେ ଘଟୋତ୍କଚ ସଦୃଶ ସୁମହତ୍‌ଭୁଜସମ୍ପନ୍ନ, ଶୂର, ଶ୍ରୀମାନ୍, ଲୋକବ୍ୟାକୁଳକର ଓ ଦୀପ୍ତାସ୍ୟ ଥିଲା । ୧୯ ।

ହେ ମହାରାଜ ! ସେହିକାଳରେ ମାତଙ୍ଗ ସଦୃଶ କଳେବରଧାରୀ ସେହି ରାକ୍ଷସ ଅଳାୟୁଧ ଉଜ୍ଜ୍ୱଳ କିରୀଟ ଅଙ୍ଗଦାଦି ଅଳଙ୍କାର ଉଷ୍ଣୀଷ ଓ ମାଳା ପ୍ରଭୃତି ବିବିଧ ପରିଚ୍ଛଦରେ ସୁଶୋଭିତ ହୋଇ ଶରାସନ, ପରିଘ-ଖଡ୍‌ଗ, ଗଦା, ଭୁଷଣ୍ଡୀ, ମୂଷଳ ଓ ହଳ ପ୍ରଭୃତି ବହୁବିଧ ଅସ୍ତ୍ର ଗ୍ରହଣ କରି ପୂର୍ବବର୍ଣ୍ଣିତ ଅନଳତୁଲ୍ୟ ଦେଦୀପ୍ୟମାନ ରଥରେ ସମାରୂଢ଼ ହୋଇ ଚତୁର୍ଦ୍ଦିଗରେ ପାଣ୍ଡବ ସେନାକୁ ବିଦ୍ରାବିତ କରି ନଭୋମଣ୍ଡଳସ୍ଥ ଚପଳାଯୁକ୍ତ ଭ୍ରାମ୍ୟମାନ ମେଘସଦୃଶ ରଣାଙ୍ଗଣରେ ବିରାଜିତ ହେଲା । ୨୧ ।

ତାହାଦେଖି ଅସ୍ମତ୍ ପକ୍ଷୀୟ ମହାବଳଶାଳୀ ନରପତିପ୍ରବରମାନେ ଚର୍ମ୍ମ ଓ ବର୍ମ୍ମାଦିଦ୍ୱାରା ସୁସଜ୍ଜିତ ହୋଇ ପ୍ରହୃଷ୍ଟଚିତ୍ତରେ ପାଣ୍ଡବପକ୍ଷୀୟ ବୀରମାନଙ୍କ ସହ ସମରରେ ପ୍ରବୃତ୍ତ ହେଲେ । ୨୨ ।

---

# ୧୭୭ ଅଧ୍ୟାୟ

ସଞ୍ଜୟ କହିଲେ—ହେ ମହାରାଜ ! ସେହି ସମୟରେ କୌରବମାନେ ସେହି ଭୀମକର୍ମା ନିଶାଚରକୁ ସମରରେ ସମାଗତ ହେବାର ଦେଖି ଅତିଶୟ ଆହ୍ଲାଦିତ ହେଲେ । ୧ । ଦୁର୍ଯ୍ୟୋଧନ ପ୍ରଭୃତି ଆପଣଙ୍କ ପୁତ୍ରମାନେ ସିନ୍ଧୁତରଣେଚ୍ଛୁ ପ୍ଲବ-ବିହୀନ ବ୍ୟକ୍ତି ପ୍ଲବ ପ୍ରାପ୍ତ ହେବା ସଦୃଶ ପୁରୁଷଶ୍ରେଷ୍ଠ ରାକ୍ଷସେନ୍ଦ୍ର ଅଳାୟୁଧକୁ ପ୍ରାପ୍ତ ହୋଇ ଆପଣା ଆପଣାର ପୁନର୍ଜନ୍ମ ହେଲପ୍ରାୟ ବୋଧକରି ତାହାକୁ ସ୍ୱାଗତାଦି ପ୍ରଶ୍ନଦ୍ୱାରା ପୂଜା କଲେ ।

ହେ ଭାରତ ! କର୍ଣ୍ଣ ଓ ଘଟୋତ୍କଚ ସମ୍ଭୂତ ଦୁର୍ଦ୍ଦର୍ଶନୀୟ ମହାଭୟଙ୍କର ଅଲୌକିକ ସେହି ରାତ୍ରି ଯୁଦ୍ଧରେ ହିଡ଼ିମ୍ବାନନ୍ଦନର ସେହିପରି ଦୁଷ୍କର କାର୍ଯ୍ୟ ଅବଲୋକନ କରି ଶତ୍ରୁପକ୍ଷୀୟ ନୃପତିମାନେ ଓ ପାଞ୍ଚାଳଗଣ ବିସ୍ମିତ ହୋଇ କେବଳ ଦର୍ଶକ ହୋଇ ରହିଲେ । ଆପଣଙ୍କ ପକ୍ଷୀୟ ଦ୍ରୋଣ, ଅଶ୍ୱତ୍ଥାମା ଓ କୃପାଚାର୍ଯ୍ୟ ପ୍ରଭୃତି ମହାରଥୀମାନେ ସମ୍ଭ୍ରାନ୍ତ ହୋଇ 'ସମସ୍ତ ବିନଷ୍ଟ ହେଲା', ଏହି କଥା କହି ଚିତ୍କାର କଲେ । ୬ । ଆପଣଙ୍କ ସୈନ୍ୟମାନେ କର୍ଣ୍ଣଙ୍କର ଜୀବନରକ୍ଷା ବିଷୟରେ ନିରାଶ ହୋଇ ଅତିଶୟ ଉତ୍କଣ୍ଠା ହେତୁରୁ ଅଚେତନ ସଦୃଶ ହାହାକାର କଲେ । ୭ । ସେହି ସମୟରେ କୁରୁରାଜ ଦୁର୍ଯ୍ୟୋଧନ କର୍ଣ୍ଣଙ୍କୁ ଅତିଶୟ ନିପୀଡ଼ିତ ହେବାର ଦେଖି ରାକ୍ଷସେନ୍ଦ୍ର ଅଳାୟୁଧକୁ ଆହ୍ୱାନପୂର୍ବକ ଏହିକଥା କହିଲେ, ହେ ଅଳାୟୁଧ ଅବଲୋକନ କର ! ବୈକର୍ତ୍ତନ କର୍ଣ୍ଣ ହିଡ଼ିମ୍ବାନନ୍ଦନ ଘଟୋତ୍କଚ ସହିତ ସମରରେ ସମାସକ୍ତ ହୋଇ ସ୍ୱୀୟ ବଳବୀର୍ଯ୍ୟ ଅନୁରୂପ କାର୍ଯ୍ୟ କରୁଅଛନ୍ତି । ତଥାତ ଅସ୍ମତ୍ ପକ୍ଷୀୟ ଶୂରପାର୍ଥିବମାନେ ଭୀମସେନନନ୍ଦନ ଘଟୋତ୍କଚର ବହୁବିଧ ଶସ୍ତ୍ରଦ୍ୱାରା ସମାହତ ହୋଇ ଖଣ୍ଡିଭଗ୍ନ-ପାଦପ ସମୂହସଦୃଶ ରଣସ୍ଥଳରେ ନିପତିତ ହେଉଅଛନ୍ତି । ୧୦ ।

ଅତଏବ ହେ ବୀର ! ସେହି ପାପାତ୍ମା ଘଟୋତ୍କଚ ମାୟା ଅବଲମ୍ବନପୂର୍ବକ ଶତ୍ରୁ-କର୍ଷଣ କର୍ଣ୍ଣଙ୍କୁ ସଂହାର କରିବା ପୂର୍ବରୁ ତୁମ୍ଭେ ବିକ୍ରମ ପ୍ରକାଶ କରି ତାହାକୁ ସଂହାର କର । କାରଣ ତୁମ୍ଭର ଅନୁମତି

ଅନୁସାରେ ରାଜାମାନଙ୍କ ମଧ୍ୟରେ ସେହି ନିଶାଚରକୁ ସଂଗ୍ରାମରେ ତୁମ୍ଭର ଭାଗସ୍ୱରୂପ ନିର୍ଦ୍ଦେଶ କରିଅଛୁ । ୧୨ । ରାଜା ଦୁର୍ଯ୍ୟୋଧନ ଏହିପରି ଆଦେଶ କରନ୍ତେ ଭୀମପରାକ୍ରମ ମହାବାହୁ ରାକ୍ଷସ ଅଳାୟୁଧ ତାହା ସ୍ୱୀକାର କରି ଘଟୋତ୍କଚ ପ୍ରତି ଧାବିତ ହେଲା । ୧୩ । ଭୀମସେନନନ୍ଦନ ଘଟୋତ୍କଚ ସମରରେ କର୍ଣ୍ଣଙ୍କୁ ପରିତ୍ୟାଗ କରି ସମାଗତ ଶତ୍ରୁ ଅଳାୟୁଧକୁ ଶର-ନିକରରେ ନିପୀଡ଼ିତ କଲା । ୧୪ ।

ହେ ମହାରାଜ ! ସେହି ସମୟରେ କ୍ରୋଧାବିଷ୍ଟ ରାକ୍ଷସେନ୍ଦ୍ର ଘଟୋତ୍କଚ ଓ ଅଳାୟୁଧ ଏ ଦୁହିଙ୍କ ମଧ୍ୟରେ କରିଣୀ ନିମିତ୍ତ ମତ୍ତମାତଙ୍ଗ-ଦ୍ୱୟର ଯୁଦ୍ଧ ସଦୃଶ ଘୋରତର ଯୁଦ୍ଧ ଆରମ୍ଭ ହେଲା । ୧୫ । ରଥିପ୍ରବର କର୍ଣ୍ଣ ନିଶାଚରଠାରୁ ମୁକ୍ତ ହୋଇ ତପନତୁଲ୍ୟ ଜ୍ୟୋତିଷ୍ମାନ୍ ରଥରେ ଆରୋହଣ ପୂର୍ବକ ଭୀମସେନଙ୍କ ସମ୍ମୁଖକୁ ଧାବିତ ହେଲେ । ୧୬ ।

ହେ ମହାରାଜ ! କର୍ଣ୍ଣ ସେହିପରି ଆଗମନ କଲେ ହେଁ ଯୋଦ୍ଧା-ଗଣାଗ୍ରଗଣ୍ୟ ଭୀମସେନ ସ୍ୱୀୟପୁତ୍ର ଘଟୋତ୍କଚକୁ ସିଂହକବଳିତ ବୃଷସଦୃଶ ଅଳାୟୁଧ ଦ୍ୱାରା ଗ୍ରସ୍ତ ହେବାର ଦେଖି କର୍ଣ୍ଣଙ୍କୁ ଉପେକ୍ଷା କରି ଭାସ୍କରସନ୍ନିଭ ଭାସ୍ୱର ରଥରେ ଆରୋହଣ ପୂର୍ବକ ଅସଂଖ୍ୟ ଶରଜାଲ ବିସ୍ତାର କରୁକରୁ ଅଳାୟୁଧର ରଥାଭିମୁଖକୁ ଗମନ କଲେ । ୧୮ । ଅଳାୟୁଧ ଭୀମସେନଙ୍କୁ ଆଗମନ କରିବାର ଦେଖି ଘଟୋତ୍କଚକୁ ପରିତ୍ୟାଗପୂର୍ବକ ଯୁଦ୍ଧାର୍ଥ ତାହାଙ୍କୁ ଆହ୍ୱାନ କଲା । ୧୯ । ରାକ୍ଷସାନ୍ତକାରୀ ଭୀମସେନ ସୈନ୍ୟଗଣ ସମବେତ ରାକ୍ଷସେନ୍ଦ୍ର ଅଳାୟୁଧକୁ ସହସା ଆକ୍ରମଣ ପୂର୍ବକ ଶରସମୂହଦ୍ୱାରା ସମାକୀର୍ଣ୍ଣ କଲେ । ୨୦ । ସେହିପରି ଅଳାୟୁଧ ମଧ୍ୟ ବାରମ୍ବାର ଭୀମସେନଙ୍କ ପ୍ରତି ଶିଳାଧୌତ ସରଳଗାମୀ ଶରସମୂହ ବର୍ଷଣ କଲା । ୨୧ । ତାହାର ଅନୁଚର ଭୀମମୂର୍ତ୍ତି ରାକ୍ଷସମାନେ କୌରବମାନଙ୍କର ଜୟାଭିଳାଷୀ ହୋଇ ନାନା-ପ୍ରକାର ପ୍ରହରଣ ଗ୍ରହଣପୂର୍ବକ ଭୀମଙ୍କ ପ୍ରତି ଧାବିତ ହେଲେ । ମହା-ବଳଶାଳୀ ଭୀମସେନ ଏହିପରି ରାକ୍ଷସଗଣଙ୍କ କର୍ତ୍ତୃକ ତାଡ଼ିତ ହୋଇ ସେମାନଙ୍କର ପ୍ରତ୍ୟେକକୁ ପାଞ୍ଚପାଞ୍ଚ ଗୋଟି ଶାଣିତ ଶରଦ୍ୱାରା ବିଦ୍ଧ କଲେ । ୨୩ । ଖରବଂଶୀୟ ନିଶାଚରମାନେ ଭୀମଙ୍କର ଶରନିକରରେ ବଧ୍ୟମାନ ହୋଇ ତୁମୁଳ ନିନାଦ କରୁକରୁ ଦଶଦିଗକୁ ପଳାୟନ କଲେ । ୨୪ ।

ମହାବଳବାନ୍ ରାକ୍ଷସ ଅଳାୟୁଧ ସ୍ୱୀୟ ସୈନ୍ୟମାନଙ୍କୁ ସନ୍ତ୍ରାସିତ ହେବାର ଦେଖି ବେଗରେ ଅଭିଦ୍ରୁତ ହୋଇ ଭୀମସେନଙ୍କୁ ଶରଜାଳରେ ସମାକୀର୍ଣ୍ଣ କଲା । ୨୫ । ଭୀମସେନ ମଧ୍ୟ ତାହାକୁ ତୀକ୍ଷ୍ଣାଗ୍ର ଶରସମୂହ ଦ୍ୱାରା ବିଦ୍ଧ କରନ୍ତେ ଅଳାୟୁଧ ସେହି ନିକ୍ଷିପ୍ତ ଶରସମୂହ ମଧ୍ୟରୁ କେତେଗୋଟି ଶରଦ୍ୱାରା ଛିନ୍ନ ହେଲା ଓ କେତେକଗୋଟି ଶରକୁ ସତ୍ୱର ଗ୍ରହଣ କଲା । ତାହା ଦେଖି ଭୀମପରାକ୍ରମ ଭୀମସେନ ବଜ୍ରବେଗଗାମୀ ଗୋଟିଏ ଗଦା ମହାବେଗରେ ନିକ୍ଷେପ କଲେ ।

ହେ ମହାରାଜ ! ଅଳାୟୁଧ ଅଗ୍ନିଜ୍ୱାଳାସମାକୁଳ ଆପତିତ ସେହି ଗଦାକୁ ସ୍ୱୀୟ ଗଦାଦ୍ୱାରା ତାଡ଼ିତ କରନ୍ତେ ତାହା ଭୀମସେନଙ୍କ ପ୍ରତି ପ୍ରତ୍ୟାବୃତ୍ତ ହେଲା । ଅନନ୍ତର କୁନ୍ତୀନନ୍ଦନ ଭୀମ ରାକ୍ଷସେନ୍ଦ୍ର ଅଳାୟୁଧକୁ ଅସଂଖ୍ୟ ଶରସମୂହ ଦ୍ୱାରା ସମାକୀର୍ଣ୍ଣ କଲେ । ୨୯ । ନିଶିତ ଶରସମୂହ ଦ୍ୱାରା ଅଳାୟୁଧ ଭୀମନିକ୍ଷିପ୍ତ ସେହି ସମସ୍ତ ଶରକୁ ନିଷ୍ଫଳ କଲା । ସେହି ନିଶା-କାଳରେ ଭୀମପରାକ୍ରମ ନିଶାଚରମାନେ ରାକ୍ଷସେନ୍ଦ୍ର ଅଳାୟୁଧର ଆଦେଶା-ନୁସାରେ ପାଣ୍ଡବପକ୍ଷୀୟ ହସ୍ତିମାନଙ୍କୁ ବିନାଶ କଲେ । ସେହି ସମୟରେ ବୃହତ୍ ମାତଙ୍ଗ ଓ ତୁରଙ୍ଗ, ପାଞ୍ଚାଳ ଓ ସୃଞ୍ଜୟ ପ୍ରଭୃତି ବୀରମାନେ ନିଶାଚରଗଣ କର୍ତ୍ତୃକ ନିପୀଡ଼ିତ ହୋଇ କୌଣସି ପ୍ରକାରେ ଶାନ୍ତିଲାଭ କଲେ ନାହିଁ । ପୁଣ୍ଡରୀକାକ୍ଷ ବାସୁଦେବ ସେହି ମହାଭୟଙ୍କର ମହାସଂଗ୍ରାମ ଉପସ୍ଥିତ ହେବାର ଦେଖି ଧନଞ୍ଜୟଙ୍କୁ କହିଲେ, ହେ ଅର୍ଜ୍ଜୁନ ! ଅବଲୋକନ କର । ମହାବାହୁ ଭୀମସେନ ନିଶାଚର ଅଳାୟୁଧର ବଶୀଭୂତ ହୋଇ ଅଛନ୍ତି । ଅତଏବ ତୁମ୍ଭେ କୌଣସି ବିଷୟ ବିଚାର ନ କରି ତାହାଙ୍କ ସାହାଯ୍ୟ ନିମିତ୍ତ ଗମନ କର ।

ହେ ପୁରୁଷଶାର୍ଦ୍ଦୂଳ ! ତୁମ୍ଭର ଆଦେଶାନୁସାରେ ମହାରଥୀ ଧୃଷ୍ଟଦ୍ୟୁମ୍ନ, ଶିଖଣ୍ଡୀ, ଯୁଧାମନ୍ୟୁ, ଉତ୍ତମୌଜା ଓ ଦ୍ରୌପଦୀ-ପୁତ୍ରମାନେ ସମସ୍ତେ ମିଳିତ ହୋଇ କର୍ଣ୍ଣଙ୍କ ପ୍ରତିପକ୍ଷରେ ଗମନ କରନ୍ତୁ । ବୀର୍ଯ୍ୟଶାଳୀ ଯୁଯୁଧାନ, ନକୁଳ ଓ ସହଦେବ ଅଳାୟୁଧର ଅନୁଚର ରାକ୍ଷସମାନଙ୍କୁ ସଂହାର କରନ୍ତୁ । ଦ୍ରୋଣପୁରୋବର୍ତ୍ତୀ ଏହି ବ୍ୟୂହିତ ସୈନ୍ୟମାନଙ୍କୁ ତୁମ୍ଭେ ସ୍ୱୟଂ ନିବାରଣ କର । କାହିଁକି ନା—ବର୍ତ୍ତମାନ ମହତ୍ ଭୟ ଉପସ୍ଥିତ

ହୋଇଅଛୁ । କୃଷ୍ଣ ଏହିପ୍ରକାରେ କହନ୍ତେ ଉଲ୍ଲିଖିତ ମହାରଥୀମାନେ ଯେପରି ଆଦିଷ୍ଟ ହେଲେ ସେହିପରି ବୈକର୍ତ୍ତନ କର୍ଣ୍ଣ ଓ ନିଶାଚରମାନଙ୍କ ପ୍ରତି ଧାବିତ ହେଲେ ।

ହେ ମହାରାଜ ! ସେହି ସମୟରେ ମହାବଳଶାଳୀ ପ୍ରତାପବାନ୍ ରାକ୍ଷସେନ୍ଦ୍ର ଅଳାୟୁଧ ଆଶୀବିଷୋପମ ଶରସମୂହ ଦ୍ୱାରା ଭୀମସେନଙ୍କ ଶରାସନ ଛିନ୍ନକରି ଅଶ୍ୱ ଓ ସାରଥିଙ୍କୁ ସଂହାର କଲେ । ସାରଥି ଓ ଅଶ୍ୱମାନେ ନିହତ ହୁଅନ୍ତେ ଭୀମସେନ ରଥମଣ୍ଡରୁ ଅବତୀର୍ଣ୍ଣ ହୋଇ ଗୁରୁତର ଗୋଟିଏ ଗଦା ଗ୍ରହଣ କରି ଗର୍ଜ୍ଜନସହକାରେ ସେହି ନିଶାଚର ପ୍ରତି ନିକ୍ଷେପ କଲେ । ସେହି ମହାଗଦା ଭୟଙ୍କର ନିନାଦସହ ଆପତିତ ହୁଅନ୍ତେ ଘୋରରୂପ ନିଶାଚର ଅଳାୟୁଧ ସ୍ୱୟଂ ଗଦାଦ୍ୱାରା ତାହାକୁ ପ୍ରତିହତ କରି ନିନାଦ କଲା ।

ହେ ମହାରାଜ ! ଭୀମସେନ ନିଶାଚରଶ୍ରେଷ୍ଠ ଅଳାୟୁଧର ତାଦୃଶ ଘୋରତର ଭୟାବହ କାର୍ଯ୍ୟ ଦର୍ଶନ କରି ଆହ୍ଲାଦିତ ଚିତ୍ତରେ ପୁନର୍ବାର ଗଦା ଗ୍ରହଣ କଲେ । ଏହିପରି ସେହି ନର ଓ ନିଶାଚର ଦୁହିଁଙ୍କ ମଧ୍ୟରେ ଘୋରତର ସଂଗ୍ରାମ ଚଳିଲା । ୪୩ । ଗଦାନିପାତ ଶବ୍ଦରେ ଭୂମଣ୍ଡଳ ଅତିଶୟ କମ୍ପିତ ହେଲା । ଅନନ୍ତର ସେଦୁହେଁ କ୍ରୁଦ୍ଧ ହୋଇ ଗଦା ପରିତ୍ୟାଗପୂର୍ବକ ପରସ୍ପର ପରସ୍ପରକୁ ଗ୍ରହଣ କରି ବଜ୍ରନିନାଦିତ ମୁଷ୍ଟିଦ୍ୱାରା ଅନ୍ୟୋନ୍ୟକୁ ପ୍ରହାର କଲେ । ପୁଣି ରଥଚକ୍ର, ଯୁଗକାଷ୍ଠ, ଅକ୍ଷ, ଅଧିଷ୍ଠାନ ଓ ଉପସ୍କର ପ୍ରଭୃତି ନିକଟରେ ଯାହା କିଛି ପ୍ରାପ୍ତ ହେଲେ ସେସମସ୍ତ ଗ୍ରହଣ କରି ପରସ୍ପରକୁ ପ୍ରହାର କଲେ । ତଦନନ୍ତର ପରସ୍ପର ପରସ୍ପରକୁ ଗ୍ରହଣପୂର୍ବକ ମହାମତ୍ତମାତଙ୍ଗ ସଦୃଶ ପୁନଃ ପୁନଃ ଆକର୍ଷଣ କରନ୍ତେ ଦୁହିଁଙ୍କର କଳେବରରୁ ରୁଧିରଧାରା ବିଗଳିତ ହେଲା । ପାଣ୍ଡବହିତୈଷୀ ହୃଷୀକେଶ ତାହା ଅବଲୋକନ କରି ଭୀମସେନଙ୍କର ରକ୍ଷାର୍ଥ ଘଟୋତ୍କଚ ପ୍ରତି ବକ୍ଷ୍ୟମାଣ ଆଦେଶ ପ୍ରଦାନ କଲେ । ୪୮ ।

---

# ୧୭୮ ଅଧ୍ୟାୟ

ସଞ୍ଜୟ କହିଲେ—ହେ ମହାରାଜ ! ବାସୁଦେବ ସଂଗ୍ରାମରେ ଭୀମସେନଙ୍କୁ ରାକ୍ଷସ-ଗ୍ରସ୍ତ ଅବଲୋକନ କରି ଘଟୋତ୍କଚକୁ କହିଲେ, ହେ ତେଜସ୍ୱୀଶ୍ରେଷ୍ଠ ମହାବାହୁ ଘଟୋତ୍କଚ ! ଦେଖ, ଭୀମସେନ ତୁମ୍ଭର ଓ ସମସ୍ତ ସୈନ୍ୟମାନଙ୍କର ସମକ୍ଷରେ ନିଶାଚର ଅଳାୟୁଧର ବଶୀଭୂତ ହେଉଅଛନ୍ତି । ଅତଏବ ତୁମ୍ଭେ କର୍ଣ୍ଣଙ୍କୁ ପରିତ୍ୟାଗ କରି ରାକ୍ଷସେନ୍ଦ୍ର ଅଳାୟୁଧକୁ ଶୀଘ୍ର ସଂହାର କର । ପଶ୍ଚାତ୍ କର୍ଣ୍ଣଙ୍କୁ ନିହତ କରିବ । ୩ । ବୀର୍ଯ୍ୟଶାଳୀ ଘଟୋ-ତ୍କଚ ବୃଷ୍ଣିନନ୍ଦନ ବାସୁଦେବଙ୍କ ବଚନ ଶ୍ରବଣ କରି ସଂଗ୍ରାମରେ କର୍ଣ୍ଣଙ୍କୁ ପରିତ୍ୟାଗ ପୂର୍ବକ ବକଭ୍ରାତା ରାକ୍ଷସଶ୍ରେଷ୍ଠ ଅଳାୟୁଧ ସହିତ ଯୁଦ୍ଧାରମ୍ଭ କଲା । ୪ । ଅନନ୍ତର ସେହି ନିଶାକାଳରେ ସେହି ନିଶାଚରଦ୍ୱୟଙ୍କ ମଧ୍ୟରେ ଅତିଶୟ ଉଗ୍ର ଓ ତୁମୁଳ ସଂଗ୍ରାମ ଉପସ୍ଥିତ ହେଲା । ଏହି ସମୟରେ ଅଳାୟୁଧର ସୈନିକ ଶୂର ଭୀମଦର୍ଶନ ନିଶାଚରଗଣ ଧନୁ ଗ୍ରହଣ କରି ଆପତିତ ହେବାରୁ ଗୃହୀତାସ୍ତ୍ର ମହାରଥୀ ସାତ୍ୟକି, ନକୁଳ ଓ ସହଦେବ ଅତିଶୟ କ୍ରୁଦ୍ଧ ହୋଇ ନିଶିତ ଶରସମୂହଦ୍ୱାରା ସେମାନଙ୍କୁ ଖଣ୍ଡ ଖଣ୍ଡ କଲେ । ୭ । କିରୀଟମାଳୀ ବିଭତ୍ସୁ ଚତୁର୍ଦ୍ଦିଗରେ ଶରଜାଲ ବିସ୍ତାର କରି ପ୍ରଧାନ ପ୍ରଧାନ କ୍ଷତ୍ରିୟମାନଙ୍କୁ ବିକ୍ଷିପ୍ତ କଲେ । ୮ । ସେହି ସମୟରେ ଧୃଷ୍ଟଦ୍ୟୁମ୍ନ ଓ ଶିଖଣ୍ଡୀପ୍ରଭୃତି ପାଞ୍ଚାଳପକ୍ଷୀୟ ମହାରଥୀ ନରପତିମାନଙ୍କୁ ସୂତପୁତ୍ର କର୍ଣ୍ଣ ବିଦ୍ରାବିତ କଲେ । ୯ । ଭୀମପରାକ୍ରମ ଭୀମସେନ ସେମାନଙ୍କୁ ବଧ୍ୟମାନ ଅବଲୋକନ କରି ଶରବୃଷ୍ଟି କରୁ କରୁ ଦ୍ରୁତବେଗରେ କର୍ଣ୍ଣା-ଭିମୁଖକୁ ଧାବମାନ ହେଲେ । ୧୦ ।

ହେ ମହାରାଜ ! ସେହି ସମୟରେ ମହାରଥୀ ସାତ୍ୟକି, ନକୁଳ ଓ ସହଦେବ କ୍ଷଣକ ମଧ୍ୟରେ ନିଶାଚରମାନଙ୍କୁ ସଂହାର କରି ଯେଉଁ ସ୍ଥାନରେ ସୂତପୁତ୍ର ଅବସ୍ଥାନ କରୁଥିଲେ ସେହି ସ୍ଥାନରେ ଉପସ୍ଥିତ ହେଲେ । ୧୧ । ତତ୍ପରେ ସେମାନେ କର୍ଣ୍ଣଙ୍କ ସହିତ ସମରରେ ପ୍ରବୃତ୍ତ ହୁଅନ୍ତେ, ପାଞ୍ଚାଳ-ଗଣ ଦ୍ରୋଣଙ୍କ ପ୍ରତି ଧାବିତ ହେଲେ । ଅଳାୟୁଧ ଅତିଶୟ ରୋଷାବିଷ୍ଟ ହୋଇ ଗୋଟିଏ ବୃହତ୍ ପରିଘ ଦ୍ୱାରା ଅରିନ୍ଦମ ଘଟୋତ୍କଚ ମସ୍ତକରେ ପ୍ରହାର କଲେ । ୧୨ । ବୀର୍ଯ୍ୟବାନ୍ ଭୀମତନୟ ପରିଘଦ୍ୱାରା ସମାହତ ହୋଇ

ମୂର୍ଚ୍ଛିତ ପ୍ରାପ୍ତ ହେଲା । ତତ୍ପରେ ଆପଣାକୁ ପ୍ରକୃତିସ୍ଥ କରି ଶତଘଣ୍ଟା-ସମଳଂକୃତ ଘୃତାଗ୍ନିସଙ୍କାଶକାଞ୍ଚନବିଭୂଷିତ ଗୋଟିଏ ଗଦା ଗ୍ରହଣ କରି ଅଳାୟୁଧ ପ୍ରତି ନିକ୍ଷେପ କଲା । ୧୪ ।

ହେ ମହାରାଜ ! ସେହି ଗଦା ଭୀମକର୍ମା ଘଟୋତ୍କଚ କର୍ତ୍ତୃକ ବେଗରେ ନିକ୍ଷିପ୍ତ ହୋଇ ମହାଶବ୍ଦସହକାରେ ଅଳାୟୁଧର ଅଶ୍ୱ, ସାରଥି ଓ ରଥକୁ ଚୂର୍ଣ୍ଣିତ କଲା । ୧୫ । ତେତେବେଳେ ଅଳାୟୁଧ ସେହି ଭଗ୍ନ ଚକ୍ରାକ୍ଷ ବିଶୀର୍ଣ୍ଣଧ୍ୱଜ ଛିନ୍ନକୂବର ହତାଶ୍ୱରଥରୁ ଅବଳମ୍ଫରେ ଉତ୍ଥିତ ହୋଇ ରାକ୍ଷସୀମାୟା ଅବଲମ୍ବନପୂର୍ବକ ରୁଧିର ବର୍ଷଣ କଲା । ସେହି ସମୟରେ ଗଗନମଣ୍ଡଳ ବିଦ୍ୟୁତ୍‌ବିରାଜିତ ତିମିରମୟ ମେଘମାଳା ଦ୍ୱାରା ସମାଚ୍ଛନ୍ନ ହେଲା ଓ ଅଶନି ନିଃସ୍ୱନ ମେଘ-ଗର୍ଜନ ଓ ବଜ୍ରପାତ ହେବାରୁ ସେହି ମହାସମରରେ ଘୋର ଚଟଚଟା ଶବ୍ଦ ସମୁତ୍ଥିତ ହେଲା । ୧୮ । ହିଡ଼ିମ୍ବାନନ୍ଦନ ଅଳାୟୁଧର ସେହି ମହତୀ ମାୟା ଅବଲୋକନ କରି ନଭୋ-ମଣ୍ଡଳକୁ ଉତ୍ଥିତ ହେଲା ଓ ମୁହୂର୍ତ୍ତକ ମଧ୍ୟରେ ସ୍ୱୀୟ ମାୟାପ୍ରଭାବରୁ ତାହାର ମାୟାକୁ ବିନଷ୍ଟ କଲା । ୧୯ । ମାୟାବୀ ଅଳାୟୁଧ ନିଜର ମାୟାକୁ ବିନଷ୍ଟ ହେବାର ଦେଖି ଘଟୋତ୍କଚ ପ୍ରତି ଘୋରତର ପ୍ରସ୍ତର ବୃଷ୍ଟି କଲା । ୨୦ । ତାହାଦେଖି ବୀର୍ଯ୍ୟଶାଳୀ ବୃକୋଦରନନ୍ଦନ ଘଟୋତ୍କଚ ଶରସମୂହ ବର୍ଷଣପୂର୍ବକ ଚତୁର୍ଦ୍ଦିଗକୁ ସମାଚ୍ଛାଦିତ କରି କ୍ଷଣକ ମଧ୍ୟରେ ସେହି ପାଷାଣ ବୃଷ୍ଟିକୁ ନିରାକୃତ କଲା । ତାହା ଅଦ୍‌ଭୁତ ସଦୃଶ ହେଲା । ୨୧ ।

ତଦନନ୍ତର ସେ ଦୁହେଁ ପରସ୍ପର ଲୌହମୟ ପରିଘ, ଶୂଳ, ଗଦା, ମୂଷଳ, ମୁଦ୍‌ଗର, ପିନାକ, ତୋମର, ପ୍ରାସ, କମ୍ପନ, ନାରାଚ ନିଶିତଭଲ୍ଲ, ଶର, ଚକ୍ର, ପରଶ୍ୱଧ, ଅୟୋଗୁଡ଼, ଭିନ୍ଦିପାଳ, ଗୋ-ଶୀର୍ଷ ଓ ଉଲୂଖଳ ପ୍ରଭୃତି ନାନାପ୍ରକାର ପ୍ରହରଣ ଗ୍ରହଣ କରି ପରସ୍ପର ଉପରେ ବର୍ଷଣ କଲେ । ବୃହତ୍ ବୃହତ୍ ଶାଖାସମନ୍ୱିତ ଶମୀ, ପୀଲୁ, କଦମ୍ବ, ଚମ୍ପକ, ଇଙ୍ଗୁଦ, ବଦରୀ, ପୁଷ୍ପିତ କାଞ୍ଚନ, ପଲାଶ, ଅରିମେଦ, ପ୍ଲକ୍ଷ, ନ୍ୟଗ୍ରୋଧ ଓ ପିପ୍ପଳ ବହୁବିଧ ମହାମହୀରୁହ ଓ ନାନାବିଧ ଧାତୁସମନ୍ୱିତ ବିପୁଳ ଅଚଳଶୃଙ୍ଗ ସବୁ ଉତ୍ପାଟନ ପୂର୍ବକ ପରସ୍ପର ଉପରେ ପ୍ରହାର କଲେ । ସେହି ପର୍ବତ-ସମୂହର ପରସ୍ପର ପ୍ରତିଘାତ ଦ୍ୱାରା ଅଶନିନିଷ୍ପେଷଣସଦୃଶ ମହାନ୍ ଶବ୍ଦ ସମୁତ୍ଥିତ ହେଲା ।

ହେ ମହାରାଜ ! ପୂର୍ବକାଳରେ ବାନରେନ୍ଦ୍ର ବାଳି ଓ ସୁଗ୍ରୀବଙ୍କ ମଧ୍ୟରେ ଯେପରି ସଂଗ୍ରାମ ହୋଇଥିଲା, ରାକ୍ଷସ ଘଟୋତ୍କଚ ଓ ଅଳାୟୁଧ ଏ ଦୁହିଁଙ୍କ ମଧ୍ୟରେ ସେହିପରି ଘୋରତର ସଂଗ୍ରାମ ହେଲା । ଏହିପରି ସେହି ମହାକାୟ ମହାବଳଶାଳୀ ରାକ୍ଷସଦ୍ୱୟ ସୁଦୀର୍ଘକାଳ ବହୁବିଧ ଅସ୍ତ୍ର ଓ ଶସ୍ତ୍ରାଦି ଦ୍ୱାରା ଯୁଦ୍ଧ କରି ଉଭୟେ ଶାଣିତ ଖଡ୍‌ଗ ଗ୍ରହଣ ପୂର୍ବକ ପରସ୍ପରକୁ ପ୍ରହାର କରିବାରେ ପ୍ରବୃତ୍ତ ହେଲେ ଏବଂ ଦୁହେଁ ମହାବେଗରେ ଧାବମାନ ହୋଇ ପରସ୍ପରର କେଶ ଗ୍ରହଣ କଲେ । ୨୯ । ହେ ମହାରାଜ ! ସେହି ସମୟରେ ସେ ଦୁହିଙ୍କର ଏପରି ଘର୍ମାକ୍ତ କଳେବର ହେଲା ଯେ ଶୈଳଦେହରୁ ବାରି-ଧାରା ନିର୍ଗତ ହେଲା ପ୍ରାୟ ସେଦୁହିଁଙ୍କର ବୃହତ୍ ଶରୀରରୁ ସ୍ୱେଦଜଳ ଓ ରୁଧିର ଧାରା କ୍ଷରିତ ହେଲା । ୩୦ ।

ଅନନ୍ତର ହିଡ଼ିମ୍ବାନନ୍ଦନ ବେଗରେ ଉପସ୍ଥିତ ହୋଇ ବଳପୂର୍ବକ ଅଳାୟୁଧକୁ ଉଦ୍‌ଭ୍ରାମିତ ଓ ନିକ୍ଷେପ କରି ଶିର ଛେଦନ କଲା । ୩୧ । ସେହି ସମୟରେ ମହାବଳଶାଳୀ ଘଟୋତ୍କଚ ତାହାର ସେହି କୁଣ୍ଡଳ-ବିଭୂଷିତ ମସ୍ତକକୁ ଛିନ୍ନକରି ମହା ନିନାଦ କଲା ।୩୨। ପାଞ୍ଚାଳ ଓ ପାଣ୍ଡବ ଗଣ ବକର ଜ୍ଞାତି ଅରିନ୍ଦମ ମହାକାୟ ଅଳାୟୁଧକୁ ନିହତ ହେବାର ଦେଖି ଆହ୍ଲାଦରେ ଘୋରତର ସିଂହନାଦ କଲେ ଓ ସହସ୍ର ସହସ୍ର ଭେରୀ ଓ ଅୟୁତ ଅୟୁତ ଶଙ୍ଖ ପ୍ରଭୃତି ବିବିଧ ବାଦ୍ୟିତ ବାଦିତ ହେଲା ।

ହେ ମହାରାଜ ! ସମରରେ ରାକ୍ଷସ ଅଳାୟୁଧ ନିହତ ହୁଅନ୍ତେ ଚତୁର୍ଦ୍ଦିଗ ଦୀପାଲୋକମାଳାରେ ପ୍ରଦୀପ୍ତ ହେବାରୁ ସେହି ରାତ୍ରି ପାଣ୍ଡବ-ମାନଙ୍କ ପକ୍ଷରେ ବିଜୟପ୍ରଦ ସ୍ୱରୂପ ଅତୀବ ଶୋଭାପ୍ରାପ୍ତ ହେଲା । ୩୫ । ସେହି ସମୟରେ ମହାବଳଶାଳୀ ଭୀମତନୟ ଘଟୋତ୍କଚ ଅଳାୟୁଧର ଛିନ୍ନ ମସ୍ତକ ଗ୍ରହଣ କରି ହତଚେତନ ଦୁର୍ଯ୍ୟୋଧନଙ୍କ ସମ୍ମୁଖରେ ନିକ୍ଷେପ କଲା ।

ହେ ଭାରତ ! ରାଜା ଦୁର୍ଯ୍ୟୋଧାନ ଅଳାୟୁଧକୁ ନିହତ ଅବ-ଲୋକନ କରି ସୈନ୍ୟମାନଙ୍କ ସହିତ ଅତିଶୟ ଉଦ୍‌ବିଗ୍ନ ହେଲେ । କାରଣ ଅଳାୟୁଧ ପାଣ୍ଡବମାନଙ୍କ ପ୍ରତି ପୂର୍ବ ବୈର ସ୍ମରଣ କରି ସ୍ୱୟଂ ଆଗମନ

ପୂର୍ବକ 'ଆମ୍ଭେ ଭୀମସେନଙ୍କୁ ବିନାଶ କରିବୁଁ' ଏହିପରି ପ୍ରତିଜ୍ଞା କରିଥିଲି । ତଦ୍ଦ୍ୱାରା ଦୁର୍ଯ୍ୟୋଧନ ମନେ କରିଥିଲେ ଯେ, ଏହାଦ୍ୱାରା ନିଶ୍ଚୟ ଭୀମସେନ ନିପତିତ ହେବ ଏବଂ ସେ ନିଜେ ଓ ତାହାଙ୍କ ଭ୍ରାତୃମାନେ ଦୀର୍ଘକାଳ ନିରାପଦରେ ରହିବେ । କିନ୍ତୁ ବର୍ତ୍ତମାନ ଭୀମନନ୍ଦନ ଘଟୋତ୍କଚ କର୍ତ୍ତୃକ ସେହି ଅଳାୟୁଧକୁ ନିପାତିତ ହେବାର ଦେଖି ଦୁର୍ଯ୍ୟୋଧନ ମନେକଲେ ଯେ, ଭୀମସେନଙ୍କର ପ୍ରତିଜ୍ଞା ନିଶ୍ଚୟ ପୂର୍ଣ୍ଣ ହେବ । ୪୦ ।

---

# ୧୭୯ ଅଧ୍ୟାୟ

ସଞ୍ଜୟ କହିଲେ—ହେ ମହାରାଜ ! ଘଟୋତ୍କଚ ରାକ୍ଷସ ଅଳାୟୁଧକୁ ନିହତ କରି ଆପଣଙ୍କ ସେନାମୁଖରେ ଅବସ୍ଥାନ ପୂର୍ବକ ନାନାବିଧ ସ୍ୱରରେ ଆନନ୍ଦସହକାରେ ଘୋରତର ନିନାଦ କଲା । ୧ । ତାହାର ସେହି କୁଞ୍ଜର-କମ୍ପନକାରୀ ଭୀଷଣନିନାଦଶ୍ରବଣକାରୀ ଆପଣଙ୍କପକ୍ଷୀୟ ଯୋଦ୍ଧାମାନଙ୍କ ମନରେ ସୁଦାରୁଣ ଭୟର ସଞ୍ଚାର ହେଲା । ୨ । ହେ ଭାରତ ! ଏହି ଘଟଣାର ପୂର୍ବରୁ ମହାବାହୁ କର୍ଣ୍ଣ ବଳଶାଳୀଶ୍ରେଷ୍ଠ ଭୀମନନ୍ଦନଙ୍କୁ ଅଳାୟୁଧ ସହିତ ସମରରେ ସମାସକ୍ତ ହେବାର ଦେଖି ପାଞ୍ଚାଳମାନଙ୍କ ସହିତ ଯୁଦ୍ଧରେ ପ୍ରବୃତ୍ତ ହୋଇଥିଲେ । ୩ । ସେହି ସମରରେ କର୍ଣ୍ଣ ଆକର୍ଣ୍ଣାକୃଷ୍ଟ ସନ୍ନତପର୍ବ ଦଶଗୋଟି ଲେଖାଏଁ ବାଣ ଦୃଢ଼ରୂପେ ସନ୍ଧାନ କରି ଧୃଷ୍ଟଦ୍ୟୁମ୍ନ ଓ ଶିଖଣ୍ଡୀଙ୍କୁ ବିଦ୍ଧ କଲେ ଓ ଉତ୍କୃଷ୍ଟ ନାରାଚସମୂହ ବିସ୍ତାରପୂର୍ବକ ଯୁଧାମନ୍ୟୁ, ଉତ୍ତମୌଜା ଓ ମହାରଥୀ ସାତ୍ୟକିଙ୍କୁ କମ୍ପିତ କଲେ । ତେତେବେଳେ ସେମାନେ ଦକ୍ଷିଣ ଓ ବାମକରରେ ବାଣ ନିକ୍ଷେପ କରିବାରୁ କେବଳ ମଣ୍ଡଳାକାର କାର୍ମ୍ମୁକ ପରିଦୃଷ୍ଟ ହେଲା । ୨ । ସେହି ନିଶାକାଳରେ ସେମାନଙ୍କର ଜ୍ୟା-ଘୋଷ, ତଳଧ୍ୱନି, ନେମିଶବ୍ଦ ବାର୍ଷାକାଳୀନ ମେଘଗର୍ଜନ ସଦୃଶ ଭୟଙ୍କର ହେଲା । ୬ ।

ହେ ରାଜନ୍ ! ଜ୍ୟାଶବ୍ଦ ଓ ନେମିନିର୍ଘୋଷ ମେଘଗର୍ଜ୍ଜନତୁଲ୍ୟ, ଧ୍ୱଜସ୍ଥିତ ପତାକା ଓ ଶରାସନ ବିଦ୍ୟୁତ୍ କୁଣ୍ଡଳସଦୃଶ ଓ ଶରବର୍ଷଣ ବାରିଧାରାସ୍ୱରୂପ ହେବାରୁ ସେହି ରଣସ୍ଥଳ ମେଘରୂପରେ ପରିକଳ୍ପିତ ହେଲା । ୮ । ପରନ୍ତୁ ମହାଚଳ ସଦୃଶ ସାରବାନ୍, ଅଚଳତୁଲ୍ୟ ଅପ୍ରକମ୍ପ୍ୟ,

ଶତ୍ରୁବିମର୍ଦ୍ଦନ କର୍ଣ୍ଣ ସମରରେ ଅବସ୍ଥାନ ପୂର୍ବକ ସେହି ଉଦ୍ଧତ ଶରବର୍ଷଣକୁ ବିଧ୍ୱଂସ କଲେ । ତତ୍ପରେ ସେହି ମହାତ୍ମା ଆପଣଙ୍କପୁତ୍ରର ହିତାର୍ଥୀ ହୋଇ ବଜ୍ରବେଗତୁଲ୍ୟ ଦୁଳାସ୍ତ୍ର ଓ କାଞ୍ଚନଖଚିତପୁଙ୍ଖବିଶିଷ୍ଟ ତୀକ୍ଷ୍ଣଧାର ଶରନିକର ଦ୍ୱାରା ଶତ୍ରୁମାନଙ୍କୁ ବିମର୍ଦ୍ଦନ କଲେ । ୧୦ । ସେହି ସମୟରେ ସାତ୍ୟକି ପ୍ରଭୃତି ପାଣ୍ଡବପକ୍ଷୀୟ ବୀରମାନେ ମୁହୂର୍ତ୍ତକ ମଧ୍ୟରେ କର୍ଣ୍ଣଙ୍କର ଶରପ୍ରହାର ଦ୍ୱାରା ନିପୀଡ଼ିତ, କେହି କ୍ଷତାଙ୍ଗ, କେହି ଛିନ୍ନଧ୍ୱଜ, କେହି ସାରଥିଶୂନ୍ୟ ଓ କେହି ଅବା ଅଶ୍ୱଶୂନ୍ୟ ହେଲେ । କୌଣସି ପ୍ରକାରେ ସେମାନେ ସମରରେ ସ୍ଥିରଭାବରେ ଅବସ୍ଥାନ କରିବାକୁ ସମର୍ଥ ନ ହୋଇ ଶେଷରେ ଯୁଧିଷ୍ଠିରଙ୍କ ସୈନ୍ୟମଧ୍ୟରେ ପ୍ରବିଷ୍ଟ ହେଲେ । ଘଟୋତ୍କଚ ସେମାନଙ୍କୁ ସଂଗ୍ରାମରେ ପରାଙ୍ମୁଖ ଓ ପ୍ରଭଗ୍ନ ହେବାର ଦେଖି କ୍ରୋଧରେ ଅଧୀର ହୋଇ କାଞ୍ଚନରତ୍ନଖଚିତ ଉତ୍କୃଷ୍ଟ ରଥରେ ଆରୋହଣପୂର୍ବକ ଘୋରତର ସିଂହନାଦ କରୁ କରୁ କର୍ଣ୍ଣଙ୍କର ସମୀପସ୍ଥ ହୋଇ ତାହାଙ୍କୁ ବଜ୍ରସଦୃଶ ଶରଦ୍ୱାରା ବିଦ୍ଧ କଲା । ୧୩ ।

ଅନନ୍ତର ସେ ଦୁହେଁ କର୍ଣ୍ଣୀ, ନାରାଚ, କୁନ୍ତ, ଅସନ, ବତ୍ସଦନ୍ତ, ବରାହକର୍ଣ୍ଣ, ବିପାଠ, ଶୃଙ୍ଗ ଓ କ୍ଷୁରପ୍ର ପ୍ରଭୃତି ଶରସମୂହ ବର୍ଷଣପୂର୍ବକ ଅମ୍ବର-ମଣ୍ଡଳକୁ ଭେଦ କଲେ । ୧୪ । ସେହି ସୁବର୍ଣ୍ଣପୁଙ୍ଖାନ୍ୱିତ ଅଗ୍ନିପ୍ରଦ ଶର-ସମୂହର ପ୍ରବାହ ତିର୍ଯ୍ୟକ ଗତିଦ୍ୱାରା ଉତ୍ଥିତ ହୁଅନ୍ତେ ନଭୋମଣ୍ଡଳ ବିଚିତ୍ର କୁସୁମମାଳାରେ ସମାବୃତ ହେଲା ପ୍ରାୟ ବୋଧ ହେଲା । ୧୫ । ଅପ୍ରତିମପ୍ରଭାବ ସେହି ବୀରଦ୍ୱୟ ସମରରେ ସମାହିତ ହୋଇ ଉତ୍ତମାସ୍ତ୍ର ଦ୍ୱାରା ପରସ୍ପର ପ୍ରହାର କରିବାରେ ପ୍ରବୃତ୍ତ ହୁଅନ୍ତେ କେହି ସେ ଦୁହିଁଙ୍କର ବିଶିଷ୍ଟତା ଲକ୍ଷ୍ୟ କରିବାକୁ ସମର୍ଥ ହେଲେନାହିଁ । ୧୬ । ହେ ମହାରାଜ ! ସେହିକାଳରେ ଅମ୍ବରସ୍ଥିତ ରାହୁ ଓ ସୂର୍ଯ୍ୟସଦୃଶ ଘଟୋତ୍କଚ ଓ କର୍ଣ୍ଣ ଏ ଦୁହିଁଙ୍କ ମଧ୍ୟରେ ଶସ୍ତ୍ରସମ୍ପାତସମାକୁଳ ଲୋକସନ୍ତାପକର ଅତିଭୟଙ୍କର ସେହି ସଂଗ୍ରାମ ଅତିଶୟ ଅଦ୍ଭୁତ ହୋଇଥିଲା । ୧୭ ।

ସଞ୍ଜୟ କହିଲେ—ହେ ମହାରାଜ ! ତଦନନ୍ତର ଅସ୍ତ୍ରଜ୍ଞପ୍ରବର କର୍ଣ୍ଣ ସମରରେ ଘଟୋତ୍କଚକୁ ଅତିକ୍ରମ କରି ନ ପାରି ଗୋଟିଏ ଉଗ୍ରଅସ୍ତ୍ର ପ୍ରାଦୁର୍ଭୂତ କଲେ । ୧୮ । ତଦ୍ଦ୍ୱାରା ଘଟୋତ୍କଚର ତୁରଙ୍ଗ, ଶତାଙ୍ଗ ଓ

ଓ ସାରଥି ଭସ୍ମୀଭୂତ ହୁଅନ୍ତେ ସେ ରଥଭ୍ରଷ୍ଟ ହୋଇ ତତ୍‌କ୍ଷଣାତ୍ ଅନ୍ତର୍ହିତ ହେଲା । ୧୯ ।

ଧୃତରାଷ୍ଟ୍ର କହିଲେ—ହେ ସଞ୍ଜୟ ! ସେହି କୂଟଯୋଧୀ ନିଶାଚର କ୍ଷିପ୍ର ଅନ୍ତର୍ହିତ ହେବାରୁ ଆମ୍ଭପକ୍ଷୀୟ ଯୋଦ୍ଧାମାନେ ଯେଉଁ କାର୍ଯ୍ୟ କରିଥିଲେ ତାହା ଆମ୍ଭଠାରେ କୀର୍ତ୍ତନ କର । ୨୦ ।

ସଞ୍ଜୟ କହିଲେ—ହେ ମହାରାଜ ! କୌରବମାନେ ଘଟୋତ୍କଚକୁ ଅନ୍ତର୍ହିତ ହେବାର ଦେଖି ଚିତ୍କାର କରି କହିଲେ—ଏହି କୂଟଯୋଧୀ ନିଶାଚର ଅଦୃଶ୍ୟ ହୋଇ ସଂଗ୍ରାମରେ କର୍ଣ୍ଣଙ୍କୁ କାହିଁକି ଅବା ସଂହାର କରି ନ ପାରିବ ? ୨୧ । ଅନନ୍ତର ଲଘୁହସ୍ତ ବିଚିତ୍ରଯୋଧୀ କର୍ଣ୍ଣ ଶରଜାଲରେ ଦିକ୍‌ସମୂହକୁ ସମାଚ୍ଛନ୍ନ କରନ୍ତେ ନଭୋମଣ୍ଡଳ ଏପରି ଅନ୍ଧକାରବୃତ ହେଲା ଯେ, ସେ ସ୍ଥଳକୁ କେହି ଗମନାଗମନ କରିପାରିଲେ ନାହିଁ । ୨୨ ।

ହେ ମହାରାଜ ! ସେହି ସମୟରେ କର୍ଣ୍ଣ ଶରଜାଲ ବିମୋଚନ ପୂର୍ବକ ଗଗନମଣ୍ଡଳକୁ ସମାଚ୍ଛାଦିତ କରିବା ସମୟରେ ତାହାଙ୍କ ହସ୍ତ-ଲାଘବପ୍ରଯୁକ୍ତ ସେ କେତେବେଳେ ବାଣଗ୍ରହଣ, କେତେବେଳେ ବାଣସନ୍ଧାନ ଓ କେତେବେଳେ ଅବା କରାଗ୍ରଦ୍ୱାରା ତୂଣୀର ସ୍ପର୍ଶ କରୁଥିଲେ, ତାହା କାହାରି ଦୃଷ୍ଟ ହେଉ ନ ଥିଲା । ୨୩ ।

ତତ୍ପରେ ଘଟୋତ୍କଚ ନଭୋମଣ୍ଡଳରେ ଅତି ନିଦାରୁଣ ଭୟଙ୍କର ମାୟାସୃଷ୍ଟି କରିବାରୁ ଆମ୍ଭେମାନେ ସେଠାରେ ଦେଦୀପ୍ୟମାନ ଉଗ୍ରତର ଅନଳଶିଖା ସଦୃଶ ଲୋହିତପ୍ରଭ ଖଣ୍ଡିଏ ମେଘ ଉତ୍‌ଥିତ ହେବାର ଅବଲୋକନ କଲୁଁ । ତହିଁରେ ମୁହୁର୍ମୁହୁଃ ବିଦ୍ୟୁତ୍ ଓ ଶତଶତ ଉଲ୍‌କା ପ୍ରଜ୍ୱଳିତ ହେଲା । ପୁଣି ସହସ୍ର ସହସ୍ର ଦୁନ୍ଦୁଭି ନିନାଦ ସଦୃଶ ଘୋରତର ନିନାଦ ଆରମ୍ଭ ହେଲା । ୨୫ । ତତ୍ପରେ କନକପୁଙ୍ଖାନ୍ୱିତ ଶର, ଶକ୍ତି, ଋଷ୍ଟି, ପ୍ରାସ, ମୁଷଳ, ତୈଳଧୌତ ପରଶ୍ୱଧ, ପ୍ରଦୀପ୍ତ ଖଡ୍‌ଗ, ଉଗ୍ରତର ତୋମର, ପଟ୍ଟିଶ, ଷ୍ଫୁଟ୍‌ଚକ୍‌ଶାଳୀ ଲୌହବଦ୍ଧ ପରିଘ, ଅତିଶୟ ଗୁରୁତର ସୁବର୍ଣ୍ଣପଟ୍ଟବଦ୍ଧ ଶତଘ୍ନୀ, ଗଦା, ନିଶିତ ଧାର, ଶୂଳ, ସହସ୍ର ସହସ୍ର ମହାଶିଳାଖଣ୍ଡ, ସାଗ୍ନିକ ଓ ନିରଗ୍ନି ବଜ୍ର, ଚକ୍ର ଓ ଅନଳପ୍ରଭ ଅସଂଖ୍ୟ

କ୍ଷୁରପ୍ର ପ୍ରଭୃତି ଶସ୍ତ୍ରସମୂହ ଚତୁର୍ଦ୍ଦିଗରୁ ନିପତିତ ହେଲା । ୨୮ । ଜ୍ୱଳନ-ଜ୍ୱାଳାସଦୃଶ ସେହି ବିଶାଳ ଶକ୍ତି, ପାଷାଣ, ପରଶ୍ୱଧ, ପ୍ରାସ ଓ ମୁଦ୍‌ଗର ପ୍ରଭୃତି ଶସ୍ତ୍ର ବୃଷ୍ଟି ହେବାରୁ କର୍ଣ୍ଣ ଶରସମୂହ ଦ୍ୱାରା ସେ ସମସ୍ତଙ୍କୁ ନିବାରଣ କରି ପାରିଲେ ନାହିଁ । ୨୯ ।

ସେହି ସମୟରେ ଶରାହତ ତୁରଙ୍ଗ ବଜ୍ରାସ୍ତ୍ରନିହତ ମାତଙ୍ଗ ଓ ଶିଳାଚୂର୍ଣ୍ଣିତ ମହାରଥୀମାନେ ନିପାତିତ ହେବାରୁ ରଣସ୍ଥଳରେ ମହା ଆର୍ତ୍ତନାଦ ଉପସ୍ଥିତ ହେଲା । ୩୦ । ହେ ମହାରାଜ ! ଘଟୋତ୍କଚର ଭୟଙ୍କର ନାନାବିଧ ଶସ୍ତ୍ରସମ୍ପାତଦ୍ୱାରା ଅଭିହତ ଓ ନିପୀଡ଼ିତ ହୋଇ ଦୁର୍ଯ୍ୟୋଧନଙ୍କ ସୈନ୍ୟମାନେ ଇତସ୍ତତଃ ଭ୍ରମଣ କରନ୍ତେ ଜଳାବର୍ତ୍ତସଦୃଶ ବୋଧ ହେଲା । ଏହି ସମୟରେ ସେମାନେ ଚତୁର୍ଦ୍ଦିଗରେ ପରିଭ୍ରମଣ ଓ ହାହାକାର କରୁକରୁ ଠାବେଠାବେ ବିଷଣ୍ଣ ବିବର୍ଣ୍ଣ ହେଲେ । କିନ୍ତୁ ପୁରୁଷ-ପ୍ରବୀର ମହାରଥମାନେ ଆର୍ଯ୍ୟଭାବ ହେତୁ କୌଣସି ପ୍ରକାରେ ସଂଗ୍ରାମରୁ ପରାଙ୍ମୁଖ ହେଲେ ନାହିଁ । ୩୨ । ଆପଣଙ୍କ ପୁତ୍ରମାନେ ମହାଭୟଙ୍କର ଘୋରତର ଶସ୍ତ୍ରବୃଷ୍ଟି ଦେଖି ଓ ସ୍ୱପକ୍ଷୀୟମାନଙ୍କର ବହୁ ସୈନ୍ୟକ୍ଷୟ ଅବଲୋକନ କରି ଅତିଶୟ ଭୟାବିଷ୍ଟ ହେଲେ । ପୁଣି ଚତୁର୍ଦ୍ଦିଗରେ ଅନଳତୁଲ୍ୟପ୍ରଦୀପ୍ତଜିହ୍ୱ ଶତଶତ ଶିବାଗଣ ଭୀଷଣ ନିନାଦରେ ଚିତ୍କାର କରୁଥିବାର ଶୁଣି ଓ ରାକ୍ଷସଗଣ ଗର୍ଜ୍ଜନ କରୁଥିବାର ଶୁଣି ପୁଣି ରାକ୍ଷସଗଣ ଗର୍ଜ୍ଜନ କରୁଥିବାର ଦେଖି ଯୋଦ୍ଧାମାନେ ଅତିଶୟ କାତର ହେଲେ ।୩୪। ପ୍ରଦୀପ୍ତଜିହ୍ୱାନନବିଶିଷ୍ଟ ତୀକ୍ଷ୍ଣଦଂଷ୍ଟ୍ରାସମନ୍ୱିତ ଅଚଳସଦୃଶକଳେବରଧାରୀ ଶକ୍ତିହସ୍ତ ଭୟଙ୍କର ନିଶାଚରଗଣ ନଭୋମଣ୍ଡଳରୁ ଧାରାବର୍ଷୀ ଜଳଧର-ସଦୃଶ ଉଗ୍ରତର ଶସ୍ତ୍ରବୃଷ୍ଟି କଲେ । ୩୫ ।

ସେହି ସମୟରେ ଶର, ଶକ୍ତି, ଶୂଳ, ଉଗ୍ରତର ଗଦା, ପ୍ରଦୀପ୍ତପରିଘ, କୁଳିଶତୁଲ୍ୟପ୍ରହାରକ୍ଷମ ପିନାକ, ଅଶନି ଓ ଶତଘାତି ଚକ୍ର ପ୍ରଭୃତି ଶସ୍ତ୍ରଦ୍ୱାରା ବିମଥିତ ହୋଇ ବହୁସଂଖ୍ୟକ ଯୋଦ୍ଧା ନିପତିତ ହେଲେ । ଶୂଳ, ଭୁଷଣ୍ଡୀ, ଅଶ୍ମଗରୁଡ଼ ଓ କୃଷ୍ଣବର୍ଣ୍ଣଲୌହନିର୍ମିତ ଶତଘ୍ନୀ, ସ୍ଥୁଣାସମୂହ ଆପଣଙ୍କ ପୁତ୍ରଙ୍କର ସୈନ୍ୟମାନଙ୍କ ଉପରେ ନିପତିତ ହେବାରୁ ଘୋର ଅନିଷ୍ଟ ସମୁତ୍ପନ୍ନ ହେଲା । ୩୭ । ଏହି ସମୟରେ କାହାର ଅନ୍ତ୍ରସମୂହ ବହିର୍ଗତ,

କାହାର ମସ୍ତକ ଚୂର୍ଣ୍ଣିତ ; କାହାର ଅବା ହସ୍ତପଦାଦି ଭଗ୍ନ ହେବାରୁ ବହୁ-ସଂଖ୍ୟକ ବୀରଗଣ ସମରଶାୟୀ ହେଲେ । ଏହିପରି ତୁରଙ୍ଗ, ମାତଙ୍ଗ ସମୂହ ଅସ୍ତ୍ରଦ୍ୱାରା ଛିନ୍ନ ଓ ରଥସମୂହ ଶିଳାଦ୍ୱାରା ଭଗ୍ନ ଓ ଚୂର୍ଣ୍ଣିତ ହୋଇ ଭୂତଳରେ ପତିତ ହେଲା । ୨୮ । ହେ ମହାରାଜ ! ଘଟୋତ୍କଚର ମାୟା-ସମୁତ୍ପନ୍ନ ସର୍ବଲୋକଭୟଙ୍କର ନିଶାଚରଗଣ ଏହିପ୍ରକାରେ ସୁମହତ୍ ଶସ୍ତ୍ର-ବର୍ଷଣ ପୂର୍ବକ ପ୍ରାଣଭିକ୍ଷାର୍ଥୀ ଓ ଭୀତ ଜନଙ୍କୁ ମଧ୍ୟ ପରିତ୍ୟାଗ କଲେ ନାହିଁ । ୩୯ । କାଳ-ନିୟନ୍ତ୍ରିତ କ୍ଷତ୍ରିୟନାଶକ ସେହି ଘୋରତର କୌରବବିମର୍ଦ୍ଦନ ସମୟରେ ସହସାପ୍ରଭଗ୍ନ ଯୋଦ୍ଧାମାନେ ଚିତ୍କାର କରି କହିଲେ— ହେ କୌରବଗଣ ! ଅଦ୍ୟ ପାଣ୍ଡବମାନଙ୍କର ଉପକାର ନିମିତ୍ତ ନିଶ୍ଚୟ ଦେବରାଜ ଇନ୍ଦ୍ର ଦେବଗଣଙ୍କ ସହିତ ମିଳିତ ହୋଇ ଆମ୍ଭମାନଙ୍କୁ ବିନାଶ କରୁଅଛନ୍ତି । ଅଦ୍ୟ କିଛି ହିଁ ଅବଶିଷ୍ଟ ରହିବ ନାହିଁ । ଅତଏବ ତୁମ୍ଭେମାନେ ପଳାୟନ କର । ଏହି କଥା କହି ଚିତ୍କାର କରୁକରୁ ବେଗରେ ପଳାୟନ କରିବାରେ ପ୍ରବୃତ୍ତ ହେଲେ ।

ହେ ମହାରାଜ ! ତାଦୃଶ ବିପଦସାଗରରେନିମଗ୍ନ ପ୍ରକୌରବ-ମାନଙ୍କର କେବଳ ସୂତ-ପୁତ୍ର ହିଁ ଦ୍ୱୀପସ୍ୱରୂପ ହେଲେ । ୪୧ । ସେହି ତୁମୁଳ ସମର ଉପସ୍ଥିତ ହେବା ସମୟରେ କୌରବ ସୈନ୍ୟମାନେ କ୍ଷୀଣ ଓ ଭଗ୍ନ ହେଲେ, ବ୍ୟୂହସବୁ ବିଶୃଙ୍ଖଳ ହେଲା । କେଉଁମାନେ କୌରବପକ୍ଷୀୟ, କେଉଁମାନେ ଅବା ପାଣ୍ଡବପକ୍ଷୀୟ କିଛି ହିଁ ଜଣାଗଲା ନାହିଁ । ସେହି ନିର୍ମର୍ଯ୍ୟାଦ ଭୟଙ୍କର ଉପଦ୍ରବ ସମୟରେ ଆମ୍ଭେମାନେ ସମସ୍ତ ଦିଗ ଶୂନ୍ୟପ୍ରାୟ ଦେଖିଲୁଁ ।

ସେହି ସମୟରେ ଆମ୍ଭେମାନେ କେବଳ ସୂତପୁତ୍ରଙ୍କୁ ସେହି ବିପୁଳ ଶସ୍ତ୍ରବୃଷ୍ଟି ବକ୍ଷରେ ଧାରଣ କରିବାର ଦେଖିଲୁଁ । ସେହି ସମୟରେ ଧୀମାନ୍ କର୍ଣ୍ଣ କିଞ୍ଚିନ୍ମାତ୍ର ମୋହିତ ହେଲେ ନାହିଁ । ଆର୍ଯ୍ୟଜନୋଚିତ ଦୁଷ୍କର କର୍ମ କରିବା ନିମିତ୍ତ ଓ ରାକ୍ଷସର ଦିବ୍ୟ ମାୟାକୁ ମହାଭିଳାଷରେ ନଭୋ-ମଣ୍ଡଳକୁ ଶରଜାଲରେ ସମାବୃତ କଲେ । ତଦ୍ଦ୍ୱାରା ସିନ୍ଧୁ ଓ ବାହ୍ଲୀକ-ଦେଶୀୟ ବୀରମାନେ ଭୀତ ହୋଇ ସ୍ଥିର ନୟନରେ ନିରୀକ୍ଷଣ କଲେ ଓ ଘଟୋତ୍କଚକୁ ବିଜୟଲାଭରେ ଅସମର୍ଥ ଓ କର୍ଣ୍ଣଙ୍କର ଅତିମୋହିତ ଭାବ

ଅବଲୋକନ କରି ସମସ୍ତେ ତାହାଙ୍କର ପ୍ରଶଂସା କଲେ । ଏହି ସମୟରେ ଘଟୋତ୍କଚନିକ୍ଷିପ୍ତ ଚକ୍ରଯୁକ୍ତ ଗୋଟିଏ ଶତଘ୍ନୀ ସହସା ସୂତ-ପୁତ୍ରଙ୍କର ଅଶ୍ୱଚତୁଷ୍ଟୟକୁ ସଂହାର କଲା । ତତାସୁ ଅଶ୍ୱମାନେ ଦନ୍ତ, ନେତ୍ର ଓ ରସନା ନିର୍ଗତ କରି ଜାନୁଦ୍ୱୟକୁ ସଂକୋଚନ ପୂର୍ବକ ଭୂତଳଶାୟୀ ହେଲେ । ୪୭ । ଅନନ୍ତର ଘଟୋତ୍କଚ ମାୟା ପ୍ରଭାବରେ ପୁନଃ ପୁନଃ ଦିବ୍ୟାସ୍ତ୍ର ସମୂହ ପ୍ରତିହତ ଓ କୌରବଗଣ ବିଦ୍ରୁତ ହୁଅନ୍ତେ କର୍ଣ୍ଣ ଉଦ୍‌ଭଗ୍ନ ଚିତ୍ତରେ ହତାଶ୍ୱ-ରଥରୁ ଅବତରଣ କଲେ । କିନ୍ତୁ ସେ ବିମୋହିତ ନ ହୋଇ ତତ୍‌କାଳୋଚିତ କର୍ତ୍ତବ୍ୟ ବିଷୟ ଚିନ୍ତା କଲେ ।

ସେହି ସମୟରେ କୌରବମାନେ ଘଟୋତ୍କଚର ଭୟଙ୍କର ମାୟା ଅବଲୋକନ କରି କର୍ଣ୍ଣଙ୍କୁ କହିଲେ—ହେ କର୍ଣ୍ଣ ! ଅଦ୍ୟ କୌରବପକ୍ଷୀୟ ସମସ୍ତ ସୈନ୍ୟମାନେ ବିନାଶୋନ୍ମୁଖ ହୋଇଅଛନ୍ତି । ଅତଏବ ତୁମ୍ଭେ ସେହି ବାସବୀ ଶକ୍ତିଦ୍ୱାରା ଏହି ନିଶାଚରକୁ ସତ୍ୱର ସଂହାର କର । ୪୮ । ଭୀମାର୍ଜ୍ଜୁନ ଆମ୍ଭମାନଙ୍କର କଅଣ କରିବେ ? ତୁମ୍ଭେ ଏହି ନିଶୀଥସମୟରେ ସସୈନ୍ୟ-ସନ୍ତାପକାରୀ ପାପାତ୍ମା ରାକ୍ଷସକୁ ବିନାଶ କର । ଆମ୍ଭମାନଙ୍କ ମଧ୍ୟରୁ ଯେ କେହି ଏହି ଭୟଙ୍କର ଯୁଦ୍ଧରୁ ନିର୍ମୁକ୍ତ ହେବ, ସେ ନିଶ୍ଚୟ ସସୈନ୍ୟ ପାଣ୍ଡୁ-ପୁତ୍ରମାନଙ୍କ ସହିତ ସଂଗ୍ରାମ କରିବ । ୪୯ । ହେ ସୂତନନ୍ଦନ ! ଇନ୍ଦ୍ରସଦୃଶ କୌରବମାନେ ସମସ୍ତ ଯୋଦ୍ଧୃବୃନ୍ଦସହ ଏହି ରାତ୍ରିଯୁଦ୍ଧରେ ଯେପରି ବିନାଶ ପ୍ରାପ୍ତ ନ ହୁଅନ୍ତି, ତୁମ୍ଭେ ସେହି ବାସବଦତ୍ତ ଶକ୍ତିଦ୍ୱାରା ଏହି ଘୋରରୂପ ରାକ୍ଷସକୁ ସଂହାର କର । ୫୦ ।

କର୍ଣ୍ଣ ସେହି ନିଶୀଥ ସମୟରେ ସୈନ୍ୟମାନଙ୍କୁ ସନ୍ତାପିତ ହେବାର ଦେଖି ଓ କୌରବମାନଙ୍କର ବିପୁଳ ଆର୍ତ୍ତନାଦ ଶ୍ରବଣ କରି ଓ ନିଜେ ମଧ୍ୟ ସେହି ନିଶାଚରକର୍ତ୍ତୃକ ବଧ୍ୟମାନ ହୋଇ ବାସବଦତ୍ତ ଶକ୍ତି-ମୋଚନରେ ଅଭିଳାଷୀ ହେଲେ । ୫୧ । ଅମର୍ଷସ୍ୱଭାବ ସୂତନନ୍ଦନ ସିଂହ-ସଦୃଶ କ୍ରୁଦ୍ଧ ହୋଇ ଘଟୋତ୍କଚର ଅସ୍ତ୍ରପ୍ରତିଘାତ ସହି ପାରିଲେ ନାହିଁ । ସେ ରାକ୍ଷସକୁ ବଧକରିବା ଅଭିଳାଷରେ ଅସହ୍ୟ ସେହି ଉତ୍କୃଷ୍ଟ ବୈଜୟନ୍ତୀ ଶକ୍ତିକୁ ଗ୍ରହଣ କଲେ । ୫୨ । ହେ ମହାରାଜ ! ସୂତପୁତ୍ର ସଂଗ୍ରାମରେ ଧନଞ୍ଜୟଙ୍କ ବଧାର୍ଥ ଯାହାକୁ ବହୁବର୍ଷ ପର୍ଯ୍ୟନ୍ତ ସମାଦରପୂର୍ବକ ରଖିଥିଲେ,

ପୂର୍ବେ ଯାହା ସୁରରାଜ ଇନ୍ଦ୍ର ପ୍ରଦାନ କରିଥିଲେ ଓ ସ୍ୱୀୟ କୁଣ୍ଡଳଦ୍ୱୟ ପରିବର୍ତ୍ତରେ ଯେଉଁ ପ୍ରଧାନ ଶକ୍ତିକୁ ପ୍ରାପ୍ତ ହୋଇଥିଲେ, ମୃତ୍ୟୁରସହୋଦର ପ୍ରଜ୍ୱଳିତକାଳରାତ୍ରିସଦୃଶ, ଅଗ୍ନିସ୍ୱରୂପ ଲେଲିହାନ ସେହି ପ୍ରଦୀପ୍ତ ଶକ୍ତିକୁ ବର୍ତ୍ତମାନ ଗ୍ରହଣ କରି ଘଟୋତ୍କଚ ପ୍ରତି ନିକ୍ଷେପ କଲେ । ୫୪ ।

ହେ ମହାରାଜ ! ଘଟୋତ୍କଚ କର୍ଣ୍ଣଙ୍କ କରସ୍ଥିତ ପରକାୟବିଦାରଣ ଜ୍ୱଳନ୍ତଅନଳତୁଲ୍ୟ ସେହି ବାସବଦତ୍ତ ଶକ୍ତିରୁ ଅବଲୋକନ କରି ଭୟରେ ବିନ୍ଧ୍ୟଗିରିସଦୃଶ କଳେବର ଧାରଣ କରି ପଳାୟନ କରିବାକୁ ଚେଷ୍ଟା କଲା । ୫୫ । କର୍ଣ୍ଣଙ୍କ କରସ୍ଥିତ ସେହି ଶକ୍ତିକୁ ଦର୍ଶନ କରି ନଭୋମଣ୍ଡଳସ୍ଥ ପ୍ରାଣିମାନେ ଭୟରେ ନିନାଦ କଲେ । ସେହି ସମୟରେ ପ୍ରଚଣ୍ଡ ବାୟୁ ନିର୍ଘାତସହ ପ୍ରବାହିତ ହେଲା । ଅଶନିସମୂହ ବସୁନ୍ଧରାକୁ ବିଦାରଣ କରି ଭୂଗର୍ଭରେ ପ୍ରବିଷ୍ଟ ହେଲା । ୫୬ । ଏହି ସମୟରେ କର୍ଣ୍ଣନିକ୍ଷିପ୍ତ ଜ୍ୱଳନ୍ତ ଅନଳତୁଲ୍ୟ ସେହି ଶକ୍ତି ସମସ୍ତ ମାୟାକୁ ଭସ୍ମସାତ୍ କରି ଘଟୋତ୍କଚର ହୃଦୟଦେଶକୁ ପ୍ରଗାଢ଼ଭାବରେ ବିଦାରଣପୂର୍ବକ ପ୍ରଦୀପ୍ତ ହୋଇ ଊର୍ଦ୍ଧ୍ୱମୁଖରେ ଗମନପୂର୍ବକ ନକ୍ଷତ୍ରମଣ୍ଡଳରେ ପ୍ରବିଷ୍ଟ ହେଲା । ୫୭ । ହେ ମହାରାଜ ! ମହାବୀର ଘଟୋତ୍କଚ ବିବିଧ ବିଚିତ୍ରଶସ୍ତ୍ରସମୂହଦ୍ୱାରା ନର ଓ ରାକ୍ଷସାଦିମାନଙ୍କ ସହିତ ଭୟଙ୍କର ବିବିଧନିନାଦପୂର୍ବକ ଯୁଦ୍ଧ କରି ପରିଶେଷରେ ବାସବୀ ଶକ୍ତିଦ୍ୱାରା ଇଷ୍ଟପ୍ରାଣକୁ ପରିତ୍ୟାଗ କଲା । ୫୮ । ସେହିକାଳରେ ସେହି ରାକ୍ଷସ ଶକ୍ତିଦ୍ୱାରା ଭିନ୍ନମର୍ମ୍ମା ହୋଇ ମଧ୍ୟ ଶତ୍ରୁବିନାଶାର୍ଥ ଅତିଶୟ ଆଶ୍ଚର୍ଯ୍ୟ ମୂର୍ତ୍ତି ଧାରଣ କରି ଗିରି ଓ ବାରିଧରସଦୃଶ ପ୍ରତିଭାତ ହେଲା । ୫୯ ।

ହେ ମହାରାଜ ! ବିଦୀର୍ଣ୍ଣକଳେବର ଭୀମକର୍ମ୍ମା ଭୀମସେନତନୟ ରାକ୍ଷସେନ୍ଦ୍ର ଘଟୋତ୍କଚ ଜୀବନତ୍ୟାଗ ସମୟରେ ମଧ୍ୟ ଏପରି ଭୀଷଣମୂର୍ତ୍ତି ଧାରଣ କଲା ଯେ ସେହି ବୃହତ୍କଳେବରରେ ନଭୋମଣ୍ଡଳରୁ ବେଗରେ ପତିତ ହୋଇ ସ୍ୱୀୟ ଶରୀରଦ୍ୱାରା ଆପଣଙ୍କ ସେନାର ଏକଅଂଶକୁ ବିପୋଥିତ କଲା । ୬୧ । ହେ ମହାରାଜ ! ସେହି ନିଶାଚର ଏହିପରି ହତ ଓ ଜୀବିତ ହୋଇ ମଧ୍ୟ ଆପଣାର ପ୍ରକାଣ୍ଡ ଶରୀରଦ୍ୱାରା ଆପଣଙ୍କର ଏକଅକ୍ଷୌହିଣୀ ସୈନ୍ୟ ସଂହାର କରି ପାଣ୍ଡବମାନଙ୍କର ପ୍ରିୟ ସାଧନ କଲା । ଅନନ୍ତର କୌରବମାନେ ମାୟା ଭସ୍ମୀଭୂତ ହେବାର ଦେଖି ଓ ଘଟୋତ୍କଚକୁ

ନିହତ ନିରୀକ୍ଷଣ କରି ଆନନ୍ଦରେ ସିଂହନାଦ କଲେ । ସେହି ସିଂହନାଦ ସହିତ ମିଳିତ ହୋଇ ଆନକ, ମୁରଜ, ଶଙ୍ଖ ଓ ଭେରୀ ପ୍ରଭୃତି ବିବିଧ ବାଦ୍ୟ ନିନାଦିତ ହେଲା । ୭୩ । ବୃତ୍ରାସୁର ବଧକାଳରେ ଦେବରାଜ ଇନ୍ଦ୍ର ଯେପରି ଦେବଗଣଙ୍କ କର୍ତ୍ତୃକ ପୂଜିତ ହୋଇଥିଲେ, କର୍ଣ୍ଣ ମଧ୍ୟ କୌରବଗଣଙ୍କ ଦ୍ୱାରା ସେହିପରି ସମାଦୃତ ହୋଇ ହୃଷ୍ଟଚିତ୍ତରେ ରଥାରୂଢ଼ ଆପଣଙ୍କ ପୁତ୍ର ଦୁର୍ଯ୍ୟୋଧନଙ୍କର ପଶ୍ଚାତ୍ ପଶ୍ଚାତ୍ ଗମନପୂର୍ବକ ସ୍ୱୀୟ ସୈନ୍ୟମଧ୍ୟରେ ପ୍ରବିଷ୍ଟ ହେଲେ । ୭୪ ।

---

# ୧୮୦ ଅଧ୍ୟାୟ

ସଞ୍ଜୟ କହିଲେ—ହେ ମହାରାଜ ! ବିଶୀର୍ଣ୍ଣ ପର୍ବତତୁଲ୍ୟ ହିଡ଼ିମ୍ବା-ନନ୍ଦନଙ୍କୁ ନିହତ ନିରୀକ୍ଷଣ କରି ପାଣ୍ଡବମାନେ ଶୋକରେ ବ୍ୟାକୁଳିତ ହେଲେ । କିନ୍ତୁ ବାସୁଦେବ ଅତିଶୟ ଆନନ୍ଦରେ ପରିପୂର୍ଣ୍ଣ ହୋଇ ବାରମ୍ବାର ସିଂହନାଦ ପୂର୍ବକ ଅର୍ଜ୍ଜୁନଙ୍କୁ ଆଲିଙ୍ଗନ କଲେ । ୨ । ସେହି ସମୟରେ ସେ ଅଶ୍ୱ-ରଶ୍ମି ସଂଯତ କରି ସିଂହନାଦ ପୂର୍ବକ ସମୀରଣ ପରିଚାଳିତ ମହୀରୁହ ସଦୃଶ ନୃତ୍ୟ କଲେ । ୩ । ରଥସ୍ଥିତ ଧୀମାନ୍ ଅଚ୍ୟୁତ ଅର୍ଜ୍ଜୁନଙ୍କୁ ଆପଣା ଅଭିମୁଖକୁ ପରିବର୍ତ୍ତିତ କରି ବାରମ୍ବାର ବାହ୍ୱାସ୍ଫୋଟନ ପୂର୍ବକ ପୁନର୍ବାର ଗମ୍ଭୀର ନିନାଦ କଲେ । ୪ । ମହାବଳଶାଳୀ ଅର୍ଜ୍ଜୁନ ବାସୁଦେବଙ୍କୁ ଅତିଶୟ ଆନନ୍ଦିତ ଦେଖି ଅନତିହୃଷ୍ଟ ଚିତ୍ତରେ ବାସୁଦେବଙ୍କୁ କହିଲେ, ହେ ମଧୁସୂଦନ ହିଡ଼ିମ୍ବାନନ୍ଦନର ବିନାଶରେ ସମସ୍ତଙ୍କର ଶୋକ ଉପସ୍ଥିତ ହୋଇଅଛି । କିନ୍ତୁ ଏହି ଅନୁଚିତ ସମୟରେ ତୁମ୍ଭର ହର୍ଷ ଅବଲୋକନ କରୁଅଛୁଁ । ୬ । ଦେଖ, ଘଟୋତ୍କଚଙ୍କୁ ନିହତ ହେବାର ଦେଖି ଅସ୍ମତ୍ ପକ୍ଷୀୟ ସମସ୍ତ ସୈନ୍ୟମାନେ ପରାଙ୍ମୁଖ ହୋଇ ଅଛନ୍ତି । ତାହାର ନିପାତନ ହେତୁ ଆମ୍ଭେମାନେ ମଧ୍ୟ ଅତିଶୟ ଉଦ୍‌ବିଗ୍ନ ହୋଇଅଛୁଁ । ହେ ଜନାର୍ଦ୍ଦନ ! ଆମ୍ଭର ବୋଧହୁଏ ଏଥିରେ କୌଣସି ବିଶେଷ କାରଣ ଅଛି । ତୁମ୍ଭେ ସତ୍ୟବାଦୀମାନଙ୍କର ଅଗ୍ରଗଣ୍ୟ, ଅତଏବ ଏହା ଆମ୍ଭଠାରେ ସତ୍ୟ କରି କହ । ୮ । ଅଦ୍ୟ ତୁମ୍ଭର ଏହି କାର୍ଯ୍ୟ ସମୁଦ୍ରଶୋଷଣ ଓ ମେରୁ ବିଘର୍ଷଣ ସଦୃଶ ଅସମ୍ବଦ୍ଧ ବୋଧ ହେଉଅଛି । ଅତଏବ ଯଦି ଏହା

ଗୋପନୀୟ ନ ହୁଏ ତେବେ ଆମ୍ଭମାନଙ୍କର ଏହି ଧୈର୍ଯ୍ୟଚ୍ୟୁତିର କାରଣ ପ୍ରକାଶ କର । ୧୦ ।

ଧନଞ୍ଜୟଙ୍କର ଏହି ବାକ୍ୟ ଶ୍ରବଣ କରି ବାସୁଦେବ ଉତ୍ତର କଲେ, ହେ ମହାମତି ଧନଞ୍ଜୟ ! ଆମ୍ଭର ସହସା ଅତି ଚିତ୍ତପ୍ରସନ୍ନକର ଅସମ୍ଭବ ହର୍ଷୋଦୟର କାରଣ ଶ୍ରବଣ କର । ୧୧ । ଅଦ୍ୟ ଘଟୋତ୍କଚ ବିନାଶଦ୍ୱାରା ଇନ୍ଦ୍ରପ୍ରଦତ୍ତ ଶକ୍ତି ଅନ୍ତରିତ ହେବାରୁ କର୍ଣ୍ଣଙ୍କୁ ନିହତ ବୋଲି ମନେ କର । ୧୨ । କାର୍ତ୍ତିକେୟତୁଲ୍ୟ ଶକ୍ତିହସ୍ତ ହୋଇ ସେହି କର୍ଣ୍ଣ ସମରରେ ଅବସ୍ଥାନ କଲେ, ଏହି ଭୂମଣ୍ଡଳରେ ଏପରି କୌଣସି ବୀରପୁରୁଷ ନାହାନ୍ତି ଯେ କି ତାହାଙ୍କ ସମ୍ମୁଖରେ ଅବସ୍ଥାନ କରିବାକୁ ସମର୍ଥ ହେବେ । ୧୩ । ହେ ଅର୍ଜ୍ଜୁନ ! ଭାଗ୍ୟକ୍ରମେ କର୍ଣ୍ଣ ପୂର୍ବରୁ କବଚ ଓ କୁଣ୍ଡଳରୁ ବିଚ୍ୟୁତ ହୋଇଥିଲେ । ବର୍ତ୍ତମାନ ଭାଗ୍ୟରୁ ତାହାର ସେହି ଅମୋଘ ବାସବୀଶକ୍ତି ଘଟୋତ୍କଚ ଉପରେ ନିକ୍ଷିପ୍ତ ହେଲା ।୧୪। ଯଦି କେବଳ କର୍ଣ୍ଣ ସେହି କବଚ ଓ କୁଣ୍ଡଳରେ ସନ୍ନାହିତ ହୋଇ ରଣସ୍ଥଳରେ ଉପସ୍ଥିତ ହୁଅନ୍ତେ ତେବେ ସେ ଅମରଗଣ ସହ ତ୍ରିଲୋକ ପରାଜୟ କରିବାକୁ ସମର୍ଥ ହୁଅନ୍ତେ । ୧୫ । ଇନ୍ଦ୍ର, କୁବେର, ଜଳେଶ୍ୱର ବରୁଣ ଓ ଯମ ଏମାନଙ୍କ ମଧ୍ୟରୁ କେହି ସମରରେ ତାହାଙ୍କ ପ୍ରତିପକ୍ଷ ହେବାକୁ ସମର୍ଥ ହୁଅନ୍ତେ ନାହିଁ । ତୁମ୍ଭେ ଗାଣ୍ଡୀବ ଶରାସନ ଓ ଆମ୍ଭେ ସୁଦର୍ଶନ ଚକ୍ର ଉଦ୍ୟତ କରି ମଧ୍ୟ ସେହି ନରଶ୍ରେଷ୍ଠ କର୍ଣ୍ଣଙ୍କୁ ପରାଜୟ କରି ପାରନ୍ତୁ ନାହିଁ । ୧୬ ।

ହେ ଅର୍ଜ୍ଜୁନ ! ପୂର୍ବେ ଦେବରାଜ ଇନ୍ଦ୍ର ତୁମ୍ଭର ହିତାର୍ଥେ ପରପୁରଞ୍ଜୟ କର୍ଣ୍ଣଙ୍କୁ ମାୟା ପ୍ରଭାବରେ କବଚ ଓ କୁଣ୍ଡଳବିହୀନ କରି ଅଛନ୍ତି । ୧୮ । ମହାବୀର କର୍ଣ୍ଣ ବିମଳ କୁଣ୍ଡଳଯୁଗଳ ଓ କବଚ ଛେଦନ କରି ଦେବରାଜ ଇନ୍ଦ୍ରଙ୍କୁ ପ୍ରଦାନ କରୁଥିଲେ ବୋଲି ବୈକର୍ତ୍ତନ ନାମରେ ବିଖ୍ୟାତ ହୋଇ ଅଛନ୍ତି । ୧୯ । କିନ୍ତୁ ବର୍ତ୍ତମାନ କର୍ଣ୍ଣ ମନ୍ତ୍ରପ୍ରଭାବରେ ସ୍ତମ୍ଭିତବୀର୍ଯ୍ୟ କ୍ରୁଦ୍ଧ ଭୁଜଙ୍ଗସଦୃଶ ଓ ପ୍ରଶାନ୍ତତେଜା ଅନଳତୁଲ୍ୟ ପ୍ରତିଭାତ ହେଉଅଛନ୍ତି । ୨୦ ।

ହେ ଧନଞ୍ଜୟ ! ଯେଉଁ ଶକ୍ତିକୁ ମହାତ୍ମା ପୁରନ୍ଦର ସୂତ-ପୁତ୍ରଙ୍କୁ ପ୍ରଦାନ କରିଥିଲେ, ଅଦ୍ୟ ତାହା ଘଟୋତ୍କଚ ପ୍ରତି ନିକ୍ଷିପ୍ତ ହୋଇ ପ୍ରଶାନ୍ତ

ହେଲ । କର୍ଣ୍ଣ ସ୍ୱୀୟ ଦିବ୍ୟ କବଚ ଓ କୁଣ୍ଡଳ ଯୁଗଳର ବିନାମୟରେ ସେହି ଶକ୍ତିକୁ ଗ୍ରହଣ କରିଥିଲେ ଓ ତାହାକୁ ପ୍ରାପ୍ତହେବା ଦିନଠାରୁ ରଣସ୍ଥଳରେ ତୁମ୍ଭଙ୍କୁ ନିହତ ବୋଲି ମନେ କରୁଥିଲେ ।୨୨। ହେ ପୁରୁଷଶାର୍ଦ୍ଦୁଳ ! ଆମ୍ଭେ ସତ୍ୟଦ୍ୱାରା ଶପଥ କରି କହୁଅଛୁଁ ଯେ କର୍ଣ୍ଣ କବଚ କୁଣ୍ଡଳ ଓ ଅମୋଘ ଶକ୍ତିରୁ ବଞ୍ଚିତ ହୋଇଥିଲେ ହେଁ ତୁମ୍ଭ ଭିନ୍ନ ଅପର କେହି ତାହାଙ୍କୁ ରଣସ୍ଥଳରେ ନିହତ କରିବାକୁ ସମର୍ଥ ହେବ ନାହିଁ । ୨୩ । କର୍ଣ୍ଣ ନିୟତ ବ୍ରତାରୂଢ଼, ସତ୍ୟବାଦୀ, ତପସ୍ୱୀ ଓ ବ୍ରହ୍ମାନୁଷ୍ଠାୟୀ । ଅରାତିମାନଙ୍କ ପ୍ରତି ମଧ୍ୟ ସେ ନିୟତ ଦୟାବାନ୍ । ଏହି ନିମିତ୍ତ କର୍ଣ୍ଣ ଇହଲୋକରେ ବୃଷ ନାମରେ ବିଖ୍ୟାତ ହୋଇଅଛନ୍ତି ।୨୪। ସେହି ରଣଦକ୍ଷ ମହାବାହୁ ନିୟତଉଦ୍ଧ୍ୟତକାର୍ମୁକ କର୍ଣ୍ଣ ବନରେ କେଶରୀ ମତ୍ତମାତଙ୍ଗ ଯୂଥପତିମାନଙ୍କୁ ବିମର୍ଦ୍ଦନ କଲପ୍ରାୟ ସମରାଙ୍ଗଣରେ ପ୍ରତିପକ୍ଷ ରଥିଶ୍ରେଷ୍ଠମାନଙ୍କ ଗର୍ବରହିତ କରେ । ହେ ପୁରୁଷ-ବ୍ୟାଘ୍ର ଧନଞ୍ଜୟ ! ତୁମ୍ଭପକ୍ଷୀୟ ପ୍ରଧାନ ପ୍ରଧାନ ମହାତ୍ମା ଯୋଦ୍ଧାମାନେ ଯେଉଁ କର୍ଣ୍ଣଙ୍କୁ ଶରଜାଲରୂପ ସହସ୍ର କିରଣପ୍ରଦୀପ୍ତ ଶରତ୍‌କାଳୀନ ମଧ୍ୟ ଦିନର ପ୍ରଚଣ୍ଡମାର୍ତ୍ତଣ୍ଡ ସଦୃଶ ଦର୍ଶନ କରିବାକୁ ସମର୍ଥ ନୁହନ୍ତି, ସେହି କର୍ଣ୍ଣ ବର୍ଷାକାଳର ବାରିଦ ସକଳ ନିରନ୍ତର ବାରିଧାରା ବର୍ଷଣ କଲ ପ୍ରାୟ ସତତ ସଲିଳରାଶିପୂର୍ଣ୍ଣ ମେଘସଦୃଶ ନିୟତ ଦିବ୍ୟାସ୍ତ୍ରରୂପ ବାରିଧାରା ବର୍ଷଣ କରିବା ସମୟରେ ଚତୁର୍ଦ୍ଦିଗରୁ ଶରବୃଷ୍ଟି କରି ତାହାଙ୍କୁ ଦେବଗଣ ମଧ୍ୟ ପରାଜୟ କରିବାକୁ ସମର୍ଥ ନୁହନ୍ତି । ବରଂ ସେମାନଙ୍କ ଦେହରୁ ମାଂସଶୋଣିତ ସ୍ରାବ ହୁଏ । ୨୯ ।

ଅଦ୍ୟ ସେହି କର୍ଣ୍ଣ କବଚକୁଣ୍ଡଳ ଓ ବାସବଦତ୍ତ ଶକ୍ତିବିହୀନ ହୋଇ ମନୁଷ୍ୟଭାବ ପ୍ରାପ୍ତ ହୋଇଅଛନ୍ତି । ୩୦ । କିନ୍ତୁ ତାହାଙ୍କ ବଧ ବିଷୟରେ ଗୋଟିଏ ବିଶେଷ ଉପାୟ ଅଛି । ଦ୍ୱୈରଥ ଯୁଦ୍ଧକାଳରେ ତାହାଙ୍କ ରଥଚକ୍ର ପୃଥିବୀରେ ନିମଗ୍ନ ହେଲେ, ସେ ଯେତେବେଳେ ପ୍ରମତ୍ତ ଓ ବିପନ୍ନ ହେବେ ସେହି ସମୟରେ ତୁମ୍ଭେ ସତର୍କ ହୋଇ ଆମ୍ଭ ସଙ୍କେତ ଅନୁସାରେ ତାହାଙ୍କୁ ସଂହାର କରିବ । କାରଣ ସେହି ଅପରାଜିତ କର୍ଣ୍ଣ ଉଦ୍ୟତାସ୍ତ୍ର ହୋଇ ସଂଗ୍ରାମରେ ଅବସ୍ଥାନ କରୁଥିବା ସମୟରେ ବୀରଗଣାଗ୍ରଗଣ୍ୟ ବଳ-ହନ୍ତା ଇନ୍ଦ୍ର ମଧ୍ୟ ଯଦି ବଜ୍ରହସ୍ତ ହୋଇ ଆଗମନ କରନ୍ତି, ତଥାପି ତାହାଙ୍କୁ ବିନାଶ କରି ପାରିବେ ନାହିଁ । ହେ ଅର୍ଜୁନ ! ପୂର୍ବେ ତୁମ୍ଭମାନଙ୍କର ହିତ

ନିମିତ୍ତ ମହାତ୍ମା ମହାବାହୁ ଜରାସନ୍ଧ, ଚେଦିରାଜ ଶିଶୁପାଳ ଓ ନିଷାଦାଧିପତି ଏକଲବ୍ୟ ଏହି ବୀରମାନଙ୍କୁ ବିବିଧ ଉପାୟଦ୍ୱାରା ଗୋଟିଏ ଗୋଟିଏ କରି ନିପାତିତ କରିଅଛୁଁ । ଏହାପରେ ରାକ୍ଷସେନ୍ଦ୍ର ହିଡ଼ିମ୍ବ, କର୍ମ୍ମୀର, ବକ, ବିପକ୍ଷ-ସୈନ୍ୟବିମର୍ଦ୍ଦନକାରୀ ଅଳାୟୁଧ ଓ ଉଗ୍ରକର୍ମ୍ମା ତରସ୍ୱୀ ଘଟୋତ୍କଚ ପ୍ରଭୃତି ରାକ୍ଷସ ଓ ଅନ୍ୟାନ୍ୟ ବୀରମାନେ ବିବିଧ ଉପାୟଦ୍ୱାରା ନିହତ ହୋଇ-ଅଛନ୍ତି । ୩୩ ।

---

# ୧୮୧ ଅଧ୍ୟାୟ

ବାସୁଦେବଙ୍କର ଏହି ବାକ୍ୟମାନ ଶ୍ରବଣ କରି ଅର୍ଜ୍ଜୁନ କହିଲେ, ହେ ଜନାର୍ଦ୍ଦନ ! ତୁମ୍ଭେ କିପରି ଆମ୍ଭମାନଙ୍କର ହିତନିମିତ୍ତ ଓ କେଉଁ କେଉଁ ଉପାୟରେ ଜରାସନ୍ଧ ପ୍ରଭୃତି ଭୂପାଳମାନଙ୍କୁ ବିନାଶ କରିଅଛ ? ୧ । ବାସୁଦେବ କହିଲେ—ହେ ଅର୍ଜ୍ଜୁନ ! ମଗଧରାଜ ଜରାସନ୍ଧ, ଚେଦିରାଜ ଶିଶୁପାଳ ଓ ମହାବଳଶାଳୀ ନିଷାଦରାଜ ଏକଲବ୍ୟ ପ୍ରଭୃତି ଦୁଷ୍ଟ ରାଜଗଣ ଯଦି ପୂର୍ବରୁ ନିହତ ହୋଇ ନ ଥାନ୍ତେ, ତାହାହେଲେ ସେମାନେ ଅତି ଭୟଙ୍କର ହୁଅନ୍ତେ । ୨ । କାରଣ ଏହି ସମୟରେ ଦୁର୍ଯ୍ୟୋଧନ ସେହି ରଥୀସତ୍ତମମାନଙ୍କୁ ଅବଶ୍ୟ ବରଣ କରନ୍ତା । ସେମାନେ ଆମ୍ଭମାନଙ୍କର ନିୟତ ବିଦ୍ୱେଷୀ ଥିବାରୁ ନିଃସନ୍ଦେହରେ କୌରବପକ୍ଷୀୟ ଆଶ୍ରୟ କରନ୍ତେ । ତାହାହେଲେ ସେହି ଧନୁର୍ଦ୍ଧରାଗ୍ରଗଣ୍ୟ ଦୃଢ଼ଯୋଧୀ କୃତାସ୍ତ୍ର ବୀରମାନେ ସମରରେ ଅମରଗଣଙ୍କ ସଦୃଶ କୌରବ୍ୟସେନାଙ୍କୁ ରକ୍ଷା କରନ୍ତେ । ୪ । ସୂତପୁତ୍ର କର୍ଣ୍ଣ ମଗଧରାଜ ଜରାସନ୍ଧ, ଚେଦିରାଜ ଶିଶୁପାଳ ଓ ନିଷାଦାଧିପତି ଏକଲବ୍ୟ ଏମାନେ ସମବେତ ହୋଇ ସୁଯୋଧନଙ୍କୁ ଆଶ୍ରୟ କଲେ ସମସ୍ତ ଭୂମଣ୍ଡଳକୁ ସନ୍ତାପିତ କରନ୍ତେ । ୫ ।

ହେ ଧନଞ୍ଜୟ ! ସେମାନେ ଯେଉଁ ଯେଉଁ ଉପାୟଦ୍ୱାରା ହତ ହୋଇ ଅଛନ୍ତି ତାହା ଶ୍ରବଣ କର । ସେମାନେ କଦାଚ ଉପାୟ ବ୍ୟତୀତ ନିହତ ହୋଇ ନ ଥାନ୍ତେ । କାରଣ ସମରରେ ସେହି ଅପରାଜେୟ ବୀରଗଣ ସୁରଗଣ କର୍ତ୍ତୃକ ମଧ୍ୟ ଅବଧ ଥିଲେ । ୬ । ସେମାନଙ୍କ ମଧ୍ୟରୁ ପ୍ରତ୍ୟେକଙ୍କର

ଏପରି କ୍ଷମତା ଥିଲା ଯେ, ଲୋକପାଳମାନଙ୍କ ଦ୍ୱାରା ପରିରକ୍ଷିତ ସମସ୍ତ ସୁରବାହିନୀ ସହିତ ସେମାନେ ପୃଥକ୍ ପୃଥକ୍ ହୋଇ ଯୁଦ୍ଧ କରି ପାରନ୍ତେ । ୭ । ପୂର୍ବେ ଜରାସନ୍ଧ ରୋହିଣୀନନ୍ଦନ ବଳଦେବଙ୍କ କର୍ତ୍ତୃକ ତାଡ଼ିତ ହୋଇ କ୍ରୋଧରେ ଗୋଟିଏ ରକ୍ତବର୍ଣ୍ଣ ଗଦା ଆମ୍ଭମାନଙ୍କ ବଧାର୍ଥ ନିକ୍ଷେପ କଲା । ୮ । ଅନଳଜ୍ୱାଳା ପ୍ରଭାନ୍ୱିତ ସେହି ଗଦାର ପତନ କାଳରେ ବୋଧ ହେଲା, ଯେପରି ଇନ୍ଦ୍ରନିକ୍ଷିପ୍ତ ଅଶନି ନଭୋମଣ୍ଡଳର ସୀମନ୍ତ ଶୋଭା ବିସ୍ତାର କରୁ କରୁ ଧରାତଳରେ ପତିତ ହେଉଅଛି । ୯ । ରୋହିଣୀନନ୍ଦନ ବଳଦେବ ସେହି ଗଦାକୁ ଆପତିତ ହେବାର ଦେଖି ତାହାର ପ୍ରତିଘାତାର୍ଥ ସ୍ଥୂଣାକର୍ଣ୍ଣ ନାମକ ଗୋଟିଏ ଅସ୍ତ୍ର ପରିତ୍ୟାଗ କଲେ । ୧୦ । ସେହି ଅସ୍ତ୍ରର ବେଗରେ ଗଦା ପ୍ରତିହତ ହୁଅନ୍ତେ ବୋଧ ହେଲା ଯେପରି ସେହି ଗଦା ଅଚଳସମୂହ କମ୍ପିତ ଓ ଧରାଦେବୀଙ୍କୁ ବିଦୀର୍ଣ୍ଣ କରି ନିପତିତ ହେଲା । ୧୧ ।

ହେ ଅର୍ଜ୍ଜୁନ ! ଯେଉଁ ସ୍ଥଳରେ ଗଦା ନିପତିତ ହେଲା ସେହି ସ୍ଥଳରେ ଲଘୁବିକ୍ରମସମ୍ପନ୍ନା ଜରାନାମ୍ନୀ ଘୋରରୂପା ଗୋଟିଏ ରାକ୍ଷସୀ ବାସ କରୁଥିଲା । ସେହି ରାକ୍ଷସୀ ପୂର୍ବେ ଶତ୍ରୁଦମନକାରୀ ଜରାସନ୍ଧକୁ ଜନ୍ମକାଳରେ ସଂଯୋଜିତ କରିଥିଲା । କାରଣ ସେହି ରାଜକୁମାର ଜନ୍ମକାଳରେ ଉଭୟ ମାତାଙ୍କର ଗର୍ଭରୁ ଅର୍ଦ୍ଧ ଅର୍ଦ୍ଧ ଭାଗରେ ନିଃସୃତ ହୋଇଥିଲା । ସେହି ଜରା ରାକ୍ଷସୀ କର୍ତ୍ତୃକ ସେହି ଅର୍ଦ୍ଧ ଅର୍ଦ୍ଧ ଭାଗ ସନ୍ଧିତ ହୋଇଥିବାରୁ ସେ ଜରାସନ୍ଧ ନାମରେ ବିଖ୍ୟାତ ହୋଇଥିଲା । ୧୩ । ସେହି ଜରାରାକ୍ଷସୀ ସ୍ଥୂଣାକର୍ଣ୍ଣ ଓ ଗଦାର ଯୁଗପତ୍ ପତନବେଗରେ ଧରାତଳରେ ନିଷ୍ପିଷ୍ଟ ହୋଇ ପୁତ୍ର ଓ ବାନ୍ଧବାଦି ସହିତ ନିହତ ହେଲା । ଜରାସନ୍ଧ ଗଦାରହିତ ହୋଇ ତୁମ୍ଭ ସପକ୍ଷରେ ମହାସମରରେ ଭୀମସେନଙ୍କ କର୍ତ୍ତୃକ ବିନଷ୍ଟ ହେଲା । ୧୫ ।

ଯଦି ସେହି ପ୍ରତାପବାନ୍ ଜରାସନ୍ଧ ଗଦାପାଣି ହୋଇ ସଂଗ୍ରାମରେ ଅବସ୍ଥିତ ହୋଇଥାଆନ୍ତା, ତେବେ ଇନ୍ଦ୍ରାଦି ଦେବଗଣ ମଧ୍ୟ ତାହାକୁ ସଂଗ୍ରାମରେ ସଂହାର କରିବାକୁ ସମର୍ଥ ହୁଅନ୍ତେ ନାହିଁ । ୧୬ । ଦେଖ, ପୂର୍ବେ ଦ୍ରୋଣ ତୁମ୍ଭର ହିତାର୍ଥ ଛଦ୍ମବେଶରେ ଗମନପୂର୍ବକ ଆଚାର୍ଯ୍ୟତ୍ୱ ଜ୍ଞାପନ କରି ସତ୍ୟବିକ୍ରମ ନିଷାଦରାଜକୁ ଅଙ୍ଗୁଷ୍ଠହୀନ କରିଥିଲେ । ୧୭ ।

କାରଣ ସେହି ଦୃଢ଼ବିକ୍ରମଶାଳୀ ନିଷାଦରାଜ ଏକଲବ୍ୟ ଅଙ୍ଗୁଳିତ୍ରାଣ ଧାରଣ କରି ବନଚାରୀ ହୋଇ ନିରନ୍ତର ଅସ୍ତ୍ର ଅଭ୍ୟାସ କରି ଦ୍ୱିତୀୟ ରାମଙ୍କ ପରି ପ୍ରତୀୟମାନ ହୋଇଥିଲା । ସେ ଅଙ୍ଗୁଷ୍ଠଯୁକ୍ତ ହୋଇ ଅବସ୍ଥାନ କଲେ ଦେବ, ଦାନବ, ରାକ୍ଷସ, ବିଷଧର ପ୍ରଭୃତି କେହି ସମରରେ ତାହାକୁ ପରାଜୟ କରି ପାରନ୍ତେ ନାହିଁ । ମନୁଷ୍ୟମାନେ କ'ଣ ତାହାକୁ ଦେଖିବାକୁ ସମର୍ଥ ହୁଅନ୍ତେ ? ସେହି ଦୃଢ଼ମୁଷ୍ଟିସମ୍ପନ୍ନ, କୃତୀ ନିତ୍ୟଅସ୍ତ୍ରନିକ୍ଷେପରେସମର୍ଥ ନିଷାଦରାଜକୁ ଆମ୍ଭେ ତୁମ୍ଭର ହିତନିମିତ୍ତ ସମରାଙ୍ଗଣରେ ସଂହାର କରିଅଛୁଁ । ପୁଣି ଆମ୍ଭେ ସଂଗ୍ରାମରେ ସୁରାସୁରଙ୍କର ଅଜେୟ ମହାପରାକ୍ରାନ୍ତ ଚେଦିରାଜଙ୍କୁ ତୁମ୍ଭ ସମକ୍ଷରେ ନିହତ କରିଅଛୁଁ । ହେ ନରଶାର୍ଦ୍ଦୂଳ ଅର୍ଜ୍ଜୁନ ! ତୁମ୍ଭେ ନିଶ୍ଚୟ କରି ଜାଣ ଯେ ଆମ୍ଭେ ଏହି ଜଗତର ହିତକାମନାରେ ଶିଶୁପାଳ ଓ ଅପରାପର ସୁରଦ୍ୱେଷୀମାନଙ୍କର ବିନାଶାର୍ଥ ତୁମ୍ଭ ସହିତ ଜନ୍ମଗ୍ରହଣ କରି-ଅଛୁଁ । ଏଣୁ ବ୍ରାହ୍ମଣ ଓ ଯଜ୍ଞବିଘାତକ ହିଡ଼ମ୍ବ, ବକ ଓ କିର୍ମ୍ମୀର ପ୍ରଭୃତି ନିଶାଚରମାନେ ରାବଣ ତୁଲ୍ୟ ବଳଶାଳୀ ହେଲେ ହେଁ ଭୀମସେନ ଆତ୍ମ ପ୍ରଭାବରୁ ସେମାନଙ୍କୁ ବିନାଶ କରିବାକୁ ସମର୍ଥ ହୋଇଅଛନ୍ତି । ଏହିପରି ମାୟାବୀ ଅଳାୟୁଧ ହିଡ଼ମ୍ବନନ୍ଦନ ଘଟୋତ୍କଚ କର୍ତ୍ତୃକ ନିହତ ହେଲା । ଉପାୟଦ୍ୱାରା ଘଟୋତ୍କଚକୁ ମଧ୍ୟ କର୍ଣ୍ଣଙ୍କ ଶକ୍ତିଦ୍ୱାରା ନିହତ କରାଇଲୁଁ । କିନ୍ତୁ କର୍ଣ୍ଣ ଯଦି ବାସବୀ ଶକ୍ତି ଦ୍ୱାରା ଅଦ୍ୟ ଘଟୋତ୍କଚକୁ ନିହତ କରି ନ ଥାନ୍ତା, ତାହାହେଲେ ଆମ୍ଭେ ଭବିଷ୍ୟତରେ ତ ତାହାକୁ ନିହତ କରନ୍ତୁ । ଆମ୍ଭେ ଯେ ପୂର୍ବରୁ ତାହାକୁ ବିନାଶ କରି ନାହୁଁ ତାହା କେବଳ ତୁମ୍ଭ-ମାନଙ୍କର ପ୍ରିୟକାମନା ନିମିତ୍ତ ଜାଣିବ । ୨୭ । କାରଣ ସେହି ନିଶାଚର ନିତ୍ୟ ଯଜ୍ଞ ଓ ବ୍ରାହ୍ମଣଦ୍ୱେଷ୍ଟା, ଧର୍ମବିଲୋପକାରୀ ପାପାତ୍ମା ଥିଲା । ଏଣୁ ସେ ସମରରେ ବିନଷ୍ଟ ହେଲା । କୌଶଳକ୍ରମେ କର୍ଣ୍ଣଙ୍କର ସେହି ଇନ୍ଦ୍ରଦତ୍ତ ଶକ୍ତିକୁ ଅନ୍ତରିତ କଲୁଁ ।

ହେ ଧନଞ୍ଜୟ ! ଆମ୍ଭେ ଧର୍ମ୍ମସଂସ୍ଥାପନ ନିମିତ୍ତ ପୂର୍ବେ ଏହିପରି ଦୃଢ଼ ପ୍ରତିଜ୍ଞା କରିଅଛୁଁ ଯେ, ଏହି ଭୂମଣ୍ଡଳରେ ଯେଉଁମାନେ ଧର୍ମ୍ମବିଲୋପକାରୀ ହେବେ, ଆମ୍ଭେ ନିଶ୍ଚୟ ସେମାନଙ୍କୁ ସଂହାର କରିବୁଁ । ତୁମ୍ଭ ନିକଟରେ ସତ୍ୟ ଓ ଶପଥଦ୍ୱାରା କହୁଅଛୁଁ ଯେ ଯେଉଁଠାରେ ବେଦ, ସତ୍ୟ, ଇନ୍ଦ୍ରିୟ-ସଂଯମ, ପବିତ୍ରତା, ଧର୍ମ, ଲଜ୍ଜା, ସୌଭାଗ୍ୟ, ଧୃତି ଓ କ୍ଷମା ଅବସ୍ଥିତ, ଆମ୍ଭେ

ନିତ୍ୟ ସେହିଠାରେ ଅବସ୍ଥାନ କରୁ । କର୍ଣ୍ଣଙ୍କ ବଧ ନିମିତ୍ତ ତୁମ୍ଭେ ବିଷଣ୍ଣ ହୁଅ ନାହିଁ । ସେ ବିଷୟରେ ଆମ୍ଭେ ତୁମ୍ଭଙ୍କୁ ଏପରି ଉପଦେଶ ଦେବୁଁ ଯେ ତଦ୍ଦ୍ୱାରା ତୁମ୍ଭେ ତାହାଙ୍କୁ ଅନାୟାସରେ ବିନାଶ କରି ପାରିବ । ପୁଣି ପାଣ୍ଡୁନନ୍ଦନ ବୃକୋଦର ସଂଗ୍ରାମରେ ଦୁର୍ଯ୍ୟୋଧନଙ୍କୁ ଯେପରି ବିନାଶ କରି ପାରିବେ, ଆମ୍ଭେ ତହିଁର ଉପାୟ ମଧ୍ୟ ତୁମ୍ଭ ନିକଟରେ ବ୍ୟକ୍ତ କରିବୁଁ । ବର୍ତ୍ତମାନ ସେନାମାନଙ୍କର ପରିତ୍ରାଣାର୍ଥ ଯତ୍ନ କର । କାରଣ ଶତ୍ରୁସୈନ୍ୟମାନେ ତୁମୁଳ ଶବ୍ଦ କରୁଅଛନ୍ତି ଓ ତୁମ୍ଭପକ୍ଷୀୟ ସୈନ୍ୟମାନେ ଚତୁର୍ଦ୍ଦିଗକୁ ପଳାୟନ କରୁଅଛନ୍ତି । ଦେଖ, କୌରବମାନେ ଲବ୍ଧଲକ୍ଷ୍ୟ ହୋଇ ତୁମ୍ଭମାନଙ୍କର ବ୍ୟୂହ ଭେଦ କରିବାକୁ ପ୍ରବୃତ୍ତ ହୋଇଅଛନ୍ତି । ଯୋଦ୍ଧୃପ୍ରବର ଦ୍ରୋଣ ମଧ୍ୟ ତୁମ୍ଭମାନଙ୍କର ସେନାକୁ ଦଗ୍ଧ କରୁଅଛନ୍ତି । ୩୩ ।

---

# ୧୮୨ ଅଧ୍ୟାୟ

ଧୃତରାଷ୍ଟ୍ର କହିଲେ—ହେ ସଞ୍ଜୟ ! କର୍ଣ୍ଣଙ୍କଠାରେ ଯେଉଁ ଶକ୍ତି ଥିଲା, ତାହା ଯଦି ଏକମାତ୍ର ବୀରକୁ ନିହତ କରି ନିଷ୍ଫଳ ହେବ ବୋଲି ସେ ଜାଣିଥାନ୍ତେ, ତେବେ ଅନ୍ୟ ସମସ୍ତଙ୍କୁ ପରିତ୍ୟାଗ କରି କେବଳ ପାର୍ଥଙ୍କ ପ୍ରତି କାହିଁକି ସେହି ଶକ୍ତିକୁ ନିକ୍ଷେପ କଲେନାହିଁ ? ୧ । କେବଳ ଧନଞ୍ଜୟ ବିନଷ୍ଟ ହୋଇଥିଲେ ପାଣ୍ଡବ ଓ ସୃଞ୍ଜୟମାନେ ସମସ୍ତେ ନିହତ ହୋଇଥାନ୍ତେ । କେବଳ ଗୋଟିଏ ବୀରକୁ ବିନାଶ କଲେ ଯେଉଁଠାରେ ଜୟଲାଭର ସମ୍ଭାବନା, ତାଦୃଶ ଜୟକୁ କି ନିମିତ୍ତ ପ୍ରାପ୍ତ ନ ହେଲୁଁ ? ୨ । ଆମ୍ଭେ ଯୁଦ୍ଧରେ ଆହୂତ ହେଲେ କଦାଚ ନିବୃତ୍ତ ହେବୁନାହିଁ । ଧନଞ୍ଜୟଙ୍କର ଏପରି ମହାବ୍ରତ ଥାଉ ଥାଉ ସୂତପୁତ୍ର କର୍ଣ୍ଣଙ୍କର ତାହାଙ୍କୁ ଯୁଦ୍ଧରେ ଆହ୍ୱାନ କରିବା କର୍ତ୍ତବ୍ୟ ଥିଲା ।୩। ହେ ସଞ୍ଜୟ ! ଏପରି ସ୍ଥଳରେ କର୍ଣ୍ଣ କି ନିମିତ୍ତ ଫାଲ୍‌ଗୁନଙ୍କୁ ଦ୍ୱୈରଥ ଯୁଦ୍ଧରେ ଆହ୍ୱାନ କରି ତାହାଙ୍କୁ ବାସବଦତ୍ତ ଶକ୍ତିଦ୍ୱାରା ସଂହାର କଲେ ନାହିଁ ? ତୁମ୍ଭେ ଏ ସମସ୍ତ ଆମ୍ଭ ନିକଟରେ କୀର୍ତ୍ତନ କର । ୪ । ବର୍ତ୍ତମାନ ଆମ୍ଭର ପୁତ୍ର ନିତାନ୍ତ ସହାୟଶୂନ୍ୟ ଓ ହତବୁଦ୍ଧି ହୋଇଅଛି, ସନ୍ଦେହ ନାହିଁ । ଯେତେବେଳେ ଶତ୍ରୁମାନେ ତାହାଙ୍କୁ ଏହିପରି ନିରୁପାୟ କରିଅଛନ୍ତି । ତେତେବେଳେ ଆଉ ସେ କିପରି

ସେମାନଙ୍କୁ ପରାଜିତ କରିବ ? ୫ । ଯେଉଁ ବାସବଶକ୍ତି ଆମ୍ଭ ପୁତ୍ରର ପରମଶକ୍ତି ଓ ଜୟଲାଭର ପରମ ଆଶ୍ରୟସ୍ୱରୂପ ଥିଲା, ବାସୁଦେବ ତାଦୃଶ ଶକ୍ତିକୁ ଘଟୋତ୍କଚ ପ୍ରତି ନିକ୍ଷିପ୍ତ କରାଇ ନିଷ୍ଫଳ କରିଅଛନ୍ତି ।

ହେ ସଞ୍ଜୟ ! ଯେପରି କୁଷ୍ଠାଦିପୀଡ଼ିତ ବ୍ୟକ୍ତିର ଦୁର୍ବଳହସ୍ତସ୍ଥିତ ଶ୍ରୀଫଳ କୌଣସି ବଳୀୟାନ ପୁରୁଷ କର୍ତ୍ତୃକ ଅପହୃତ ହୁଏ, ସେହିପରି କର୍ଣ୍ଣହସ୍ତସ୍ଥିତ ସେହି ଅମୋଘଶକ୍ତି ଘଟୋତ୍କଚ ପ୍ରତି ନିକ୍ଷିପ୍ତ ହୋଇ ନିଷ୍ଫଳ ହେଲା । ୭ । ହେ ବିଦ୍ୱାନ୍ ! ଯେପରି ପରସ୍ପର ଯୁଦ୍ଧରେ ପ୍ରବୃତ୍ତ ବରାହ ଓ କୁକ୍କୁର ମଧ୍ୟରୁ ଅନ୍ୟତର ବିନଷ୍ଟ ହେଲେ ଚଣ୍ଡାଳର ଲାଭ ହୁଏ, ସେହିପରି ଆମ୍ଭ ବିବେଚନାରେ କର୍ଣ୍ଣ ଘଟୋତ୍କଚ ଯୁଦ୍ଧରେ ବାସୁଦେବଙ୍କର ଲାଭ ହୋଇଅଛି । ୮ । ରଣସ୍ଥଳରେ ଘଟୋତ୍କଚ ଯଦି ସୂତପୁତ୍ରଙ୍କୁ ନିହତ କରେ ତାହାହେଲେ ପାଣ୍ଡବମାନଙ୍କର ପରମ ଉପକାର ହେବ । ଆଉ ଯଦି ସୂତପୁତ୍ର ଘଟୋତ୍କଚକୁ ନିହତ କରନ୍ତି ତେବେ ଅମୋଘ ଶକ୍ତି ବିନଷ୍ଟରୂପ ମହତ୍ କାର୍ଯ୍ୟ ସାଧିତ ହେବ । ପ୍ରଜ୍ଞାବାନ୍ ନରସିଂହ ବାସୁଦେବ ବୁଦ୍ଧି ଦ୍ୱାରା ଏହିପରି ବିଚାର କରି ନିଶ୍ଚୟ ପାଣ୍ଡବମାନଙ୍କର ପ୍ରିୟ ଓ ହିତ କାମନାରେ ନିଶାଚର ଘଟୋତ୍କଚକୁ ସମରରେ ସୂତପୁତ୍ରଙ୍କ ଦ୍ୱାରା ନିହତ କରାଇଲେ ।

ସଞ୍ଜୟ କହିଲେ—ହେ ମହାରାଜ ! ମଧୁସୂଦନ ମହାବୁଦ୍ଧି ଜନାର୍ଦ୍ଦନ କର୍ଣ୍ଣଙ୍କର ଏହିପରି ଅଭିଳାଷ ଅବଗତ ହୋଇ ସେହି ପୁରନ୍ଦର ଶକ୍ତିକୁ ବିଫଳ କରିବା ମାନସରେ ମହାବୀର୍ଯ୍ୟଶାଳୀ ରାକ୍ଷସେଶ୍ୱର ଘଟୋତ୍କଚକୁ କର୍ଣ୍ଣଙ୍କ ସହିତ ଦ୍ୱୈରଥ ଯୁଦ୍ଧରେ ପ୍ରବର୍ତ୍ତିତ କରିଥିଲେ । କିନ୍ତୁ ଏହି ଦୁର୍ଘଟଣା ଆପଣଙ୍କ ଦୁର୍ମନ୍ତ୍ରଣା ହେତୁ ହୋଇଅଛି । ୧୨ । ହେ କୁରୁଶ୍ରେଷ୍ଠ ! କୃଷ୍ଣ ଯଦି ରଣାଙ୍ଗଣରେ ଅର୍ଜ୍ଜୁନଙ୍କୁ ମହାରଥୀ କର୍ଣ୍ଣଙ୍କ ହସ୍ତରୁ ରକ୍ଷା କରି ନ ଥାନ୍ତେ, ତାହାହେଲେ ଆମ୍ଭେମାନେ ସେହି ସମୟରେ ନିଶ୍ଚୟ କୃତକାର୍ଯ୍ୟ ହୋଇ ଥାଆନ୍ତୁ । ୧୩ । ସେହି ସର୍ବଶକ୍ତିମାନ୍ ଯୋଗେଶ୍ୱର ଜନାର୍ଦ୍ଦନ ନ ଥିଲେ ଧନଞ୍ଜୟ ନିଶ୍ଚୟ ଅଶ୍ୱ, ରଥ ଓ ଧ୍ୱଜ ସହିତ ଭୂତଳଶାୟୀ ହୋଇ-ଥାନ୍ତେ । ୧୪ । ଅର୍ଜ୍ଜୁନ କୃଷ୍ଣଙ୍କ କର୍ତ୍ତୃକ ବିବିଧ ଉପାୟରେ ରକ୍ଷିତ ହୁଅନ୍ତି ବୋଲି ସଂଗ୍ରାମରେ ଅଭିମୁଖୀ ହୋଇ ଶତ୍ରୁ ଜୟରେ ସମର୍ଥ ହୁଅନ୍ତି । ୧୫ । ବାସୁଦେବ ସେହି ବାସବଦତ୍ତ ଅମୋଘ ଶକ୍ତିଠାରୁ ଅର୍ଜ୍ଜୁନଙ୍କୁ ବିଶେଷରୂପେ

ରକ୍ଷା କରିଅଛନ୍ତି । ନଚେତ୍ କର୍ଣ୍ଣନିକ୍ଷିପ୍ତ ସେହି ଶକ୍ତି କୁନ୍ତୀନନ୍ଦନ ଅର୍ଜୁନଙ୍କୁ ବଜ୍ରବିଦୀର୍ଣ୍ଣ ଦ୍ରୁମସଦୃଶ ବିଦୀର୍ଣ୍ଣ କରିଥାନ୍ତା । ୧୬ ।

ଧୃତରାଷ୍ଟ୍ର କହିଲେ—ହେ ସଞ୍ଜୟ ! ଆମ୍ଭର ଆତ୍ମଜ ଦୁର୍ଯ୍ୟୋଧନ କେବଳ ପ୍ରଜ୍ଞାମାନୀ, ବିରୋଧୀ ଓ କୁମନ୍ତ୍ରଣାନିପୁଣ, ସେହି ହେତୁ ଅର୍ଜୁନଙ୍କର ବଧୋପାୟ ଈଦୃଶ ବିଫଳ ହେଲା । ୧୭ । ସର୍ବଶସ୍ତ୍ରଧାରିଶ୍ରେଷ୍ଠ ମହାବୁଦ୍ଧି-ମାନ୍ କର୍ଣ୍ଣ ଅବା କି ନିମିତ୍ତ ଧନଞ୍ଜୟଙ୍କ ପ୍ରତି ସେହି ଅମୋଘ ଶକ୍ତିକୁ ନିକ୍ଷେପ କଲେ ନାହିଁ ।୧୮। ହେ ଗବଲ୍‌ଗଣନନ୍ଦନ ସଞ୍ଜୟ ! ସେହିକାଳରେ ତୁମ୍ଭର ବୁଦ୍ଧି କ'ଣ ଭ୍ରାନ୍ତ ହୋଇଥିଲା ? ତାହା ନୋହିଲେ ତୁମ୍ଭେ କି ନିମିତ୍ତ ଶକ୍ତି ନିକ୍ଷେପ ବିଷୟ କର୍ଣ୍ଣଙ୍କୁ ସ୍ମରଣ କରାଇ ଦେଲନାହିଁ ! ୧୯ ।

ସଞ୍ଜୟ କହିଲେ—ହେ ମହାରାଜ ! ଦୁର୍ଯ୍ୟୋଧନ, ଶକୁନି, ଦୁଃଶାସନ ଓ ଆମ୍ଭେ ସମସ୍ତେ ପ୍ରତିଦିନ ରଜନୀକାଳରେ ବୁଦ୍ଧିଦ୍ୱାରା ସ୍ଥିର କରି ଏହିପରି କହୁଁ, ହେ କର୍ଣ୍ଣ ! କାଲି ପ୍ରଭାତରେ ତୁମ୍ଭେ ସମସ୍ତଙ୍କୁ ଛାଡ଼ି ଏକା ଧନଞ୍ଜୟଙ୍କୁ ସଂହାର କର । ତାହାହେଲେ ଆମ୍ଭେମାନେ ଅପରାପର ପାଣ୍ଡବ ଓ ପାଞ୍ଚାଳମାନଙ୍କୁ କିଙ୍କର ସଦୃଶ ଆଯତ୍ତ କରି ସମସ୍ତ ପୃଥିବୀ ଭୋଗ କରିବୁଁ । ୨୧ । ଅଥବା ଅର୍ଜୁନ ନିହତ ହେଲେ ବୃଷ୍ଣିନନ୍ଦନ କୃଷ୍ଣ ପାଣ୍ଡବମାନଙ୍କ ମଧ୍ୟରୁ ଅନ୍ୟ କାହାକୁ କାଳେ ସମରରେ ଦୀକ୍ଷିତ କରନ୍ତି, ଏହି ହେତୁରୁ କୃଷ୍ଣଙ୍କୁ କେବଳ ସଂହାର କର । ୨୨ ।

କୃଷ୍ଣ ହିଁ ପାଣ୍ଡବ ମାନଙ୍କର ମୂଳ, ଅର୍ଜୁନ ତାହାର ସ୍କନ୍ଧରୂପରେ ଉଦ୍‌ଗତ ହୋଇଅଛନ୍ତି । ଅନ୍ୟାନ୍ୟ ପାଣ୍ଡବମାନେ ତାହାର ଶାଖା ଓ ପାଞ୍ଚାଳମାନେ ତାହାର ପତ୍ରସ୍ୱରୂପ । ୨୩ । କୃଷ୍ଣ ହିଁ ପାଣ୍ଡବମାନଙ୍କର ଆଶ୍ରୟ, ବଳ ଓ ସହାୟ । ଯେପରି ଚନ୍ଦ୍ର ସମସ୍ତ ଜ୍ୟୋତିଷ୍କମାନଙ୍କର ଆଶ୍ରୟ, ସେହିପରି କୃଷ୍ଣ ମଧ୍ୟ ପାଣ୍ଡବମାନଙ୍କର ପରମାଶ୍ରୟସ୍ୱରୂପ । ଅତଏବ ହେ କର୍ଣ୍ଣ ! ତୁମ୍ଭେ ଶାଖା ଓ ପତ୍ରସମୂହକୁ ପରିତ୍ୟାଗ କରି ପାଣ୍ଡବ-ବୃକ୍ଷର ସର୍ବତୋଭାବରେ ମୂଳସ୍ୱରୂପ କୃଷ୍ଣଙ୍କୁ ବିନାଶ କର ।୨୪ । ହେ ମହାରାଜ ! ଆମ୍ଭେମାନେ କର୍ଣ୍ଣଙ୍କୁ ଏହିପରି କହି ଦୁର୍ଯ୍ୟୋଧନଙ୍କୁ କହୁଥିଲୁଁ ଯେ, ହେ ରାଜନ୍ ! ସୂତ-ପୁତ୍ର କର୍ଣ୍ଣ ଯଦି ଯଦୁକୁଳ-ନନ୍ଦନ

ଦାଶାର୍ହ କୃଷ୍ଣଙ୍କୁ ନିହତ କରି ପାରନ୍ତି, ତାହାହେଲେ ନିଶ୍ଚୟ ଏ ବସୁନ୍ଧରା ଆପଣଙ୍କର ବଶୀଭୂତ ହେବ । ୨୬ । ହେ ନରେନ୍ଦ୍ର ! ଯାଦବ ଓ ପାଣ୍ଡବ-ମାନଙ୍କର ଆନନ୍ଦବର୍ଦ୍ଧନ ମହାତ୍ମା ବାସୁଦେବ ଯଦି ନିହତ ହୋଇ ଭୂତଳ-ଶାୟୀ ହୁଅନ୍ତି, ତାହାହେଲେ ନିଶ୍ଚୟ ଏହି ଅରଣ୍ୟ, ଭୂଧର ଓ ସାଗର ସମବେତ ଧରାତଳ ଆପଣଙ୍କ କରତଳସ୍ଥ ହେବ । ୨୭ ।

ହେ ମହାରାଜ ! ନିୟତଜାଗ୍ରତ ତ୍ରିଦଶେଶ୍ୱର ଅପ୍ରମେୟ ହୃଷୀ-କେଶଙ୍କର ବଧ ବିଷୟରେ ପ୍ରତି ରଜନୀରେ ଆମ୍ଭମାନଙ୍କର ବୁଦ୍ଧି ଏହିପରି ସ୍ଥିରୀକୃତ ହେଲେ ମଧ୍ୟ ଯୁଦ୍ଧକାଳରେ ବିମୋହିତ ହୁଏ । ୨୮ । ଯେପର୍ଯ୍ୟନ୍ତ କର୍ଣ୍ଣଙ୍କ ନିକଟରେ ବାସବଦତ୍ତ ଶକ୍ତି ଥିଲା ସେପର୍ଯ୍ୟନ୍ତ ବାସୁଦେବ ନିୟତ ସେହି ଶକ୍ତିଠାରୁ ଧନଞ୍ଜୟଙ୍କୁ ରକ୍ଷା କରୁଥିଲେ । ସେ ସଂଗ୍ରାମରେ କର୍ଣ୍ଣଙ୍କ ସମ୍ମୁଖରେ କଦାଚ ରଥ ରଖୁ ନ ଥିଲେ । ୨୯ । କିପରି ରାଧାନନ୍ଦନଙ୍କର ଅମୋଘ ଶକ୍ତିକୁ ନିଷ୍ଫଳ କରିବେ, ଏହିପରି ଚିନ୍ତା କରି ସେ ପାଣ୍ଡବପକ୍ଷୀୟ ଅନ୍ୟାନ୍ୟ ମହାରଥିମାନଙ୍କୁ କର୍ଣ୍ଣଙ୍କ ସମୀପକୁ ପ୍ରେରଣ କରୁଥିଲେ । ୩୦ ।

ହେ ମହାରାଜ ! ପୁରୁଷୋତ୍ତମ ମହାତ୍ମା ବାସୁଦେବ ଯେତେବେଳେ ଧନଞ୍ଜୟଙ୍କୁ କର୍ଣ୍ଣଙ୍କ ହସ୍ତରୁ ରକ୍ଷା କରିଅଛନ୍ତି, ତେତେବେଳେ ଆପଣାକୁ କି ସେ ରକ୍ଷା କରିବାକୁ ସମର୍ଥ ହେବେ ନାହିଁ ! ଅତଏବ ଆମ୍ଭେ ବିଶେଷ ବିବେଚନା କରି ଦେଖୁଅଛୁଁ ଯେ ଏହି ତ୍ରିଲୋକ ମଧ୍ୟରେ ଏପରି କୌଣସି ପୁରୁଷ ନାହିଁ, ଯେ କି ଚକ୍ରାୟୁଧଧାରୀ ଅରିନ୍ଦମ ଜନାର୍ଦ୍ଦନଙ୍କୁ ବିନାଶ କରି ପାରିବ । ୩୨ ।

ରଥିଶାର୍ଦ୍ଦୂଳ ! ସତ୍ୟବିକ୍ରମ ମହାରଥୀ ସାତ୍ୟକି ମଧ୍ୟ କର୍ଣ୍ଣଙ୍କ ବିଷୟରେ କୃଷ୍ଣଙ୍କୁ ପଚାରିଥିଲେ—ହେ କୃଷ୍ଣ ! ଇନ୍ଦ୍ରଦତ୍ତ ଶକ୍ତି ଯେ ଅମିତବିକ୍ରମା ଓ ଅମୋଘା, ଏହା କର୍ଣ୍ଣଙ୍କର ଦୃଢ଼ ବିଶ୍ୱାସ ଥିଲା । ତେବେ ସେ କି ନିମିତ୍ତ ସେହି ଶକ୍ତିକୁ ଫାଲ୍‌ଗୁନଙ୍କ ପ୍ରତି ନିକ୍ଷେପ କଲେ ନାହିଁ ?

ତହିଁରେ ବାସୁଦେବ ଉତ୍ତର କଲେ, ହେ ଶିନିପ୍ରବର ! ଦୁର୍ଯ୍ୟୋଧନ ଦୁଃଶାସନ, ଶକୁନି, ସିନ୍ଧୁରାଜ ଜୟଦ୍ରଥ, ଏମାନେ ପ୍ରତିଦିନ ମନ୍ତ୍ରଣା କରି

କର୍ଣ୍ଣଙ୍କୁ କହୁଥିଲେ ଯେ "ହେ ଅମିତପରାକ୍ରମ କର୍ଣ୍ଣ ! ଆହେ ମହାଧନୁର୍ଦ୍ଧର ଜୟଶାଳୀପ୍ରବର ! କୁନ୍ତୀପୁତ୍ର ମହାରଥୀ ଧନଞ୍ଜୟଙ୍କ ବ୍ୟତୀତ ତୁମ୍ଭେ ସେହି ଅମୋଘ ଶକ୍ତିକୁ ଅନ୍ୟ କାହାରି ପ୍ରତି ନିକ୍ଷେପ କରିବ ନାହିଁ । କାରଣ ଧନଞ୍ଜୟ ଦେବଗଣଙ୍କ ମଧ୍ୟରେ ଇନ୍ଦ୍ରସଦୃଶ, ପାଣ୍ଡବମାନଙ୍କ ମଧ୍ୟରେ ପ୍ରଧାନ ଓ ଯଶସ୍ୱୀ । ୩୭ । ସେହି ଧନଞ୍ଜୟ ନିହତ ହେଲେ ଅଗ୍ନିହୀନ ଦେବଗଣ ସଦୃଶ ସୃଞ୍ଜୟ ସମବେତ ପାଣ୍ଡବମାନେ ବିନଷ୍ଟ ହେବେ" ।୩୮। ହେ ଶିନି-ପୁଙ୍ଗବ ! କର୍ଣ୍ଣ ଏହା ଶ୍ରବଣ କରି ସେହି କଥା ହେବ ବୋଲି ପ୍ରତିଜ୍ଞା କରି ଥିଲେ । ସେହିଦିନଠାରୁ ତାହାଙ୍କ ଅନ୍ତଃକରଣରେ ଗାଣ୍ଡୀବଧନ୍ୱା ଧନଞ୍ଜୟଙ୍କ ବିଷୟ ନିୟତ ସ୍ଥିରୀକୃତ ହୋଇଥିଲା । ୩୯ । କେବଳ ଆମ୍ଭେ ସେହି ଯୋଧପ୍ରବର ରାଧେୟଙ୍କୁ ବିମୋହିତ କରିଥିଲୁଁ ବୋଲି ସେ ଶ୍ୱେତବାହନ ଅର୍ଜ୍ଜୁନଙ୍କ ପ୍ରତି ସେହି ଶକ୍ତି ପ୍ରୟୋଗ କରି ନ ଥିଲେ । ୪୦ । ହେ ଯୋଦ୍ଧୃ-ପ୍ରବର ଶିନିନନ୍ଦନ ! ଆମ୍ଭେ ସେହି ଅମୋଘ ବାସବୀଶକ୍ତିକୁ ଅନିବାର୍ଯ୍ୟ ମୃତ୍ୟୁସ୍ୱରୂପ ଜାଣି ଅନ୍ତଃକରଣରୁ ହର୍ଷ ଓ ନିଦ୍ରା ପରିତ୍ୟାଗ କରିଥିଲୁଁ । ୪୧ । ଅଦ୍ୟ ରାକ୍ଷସରାଜ ଘଟୋତ୍କଚ ପ୍ରତି ସେହି ଶକ୍ତି ନିକ୍ଷିପ୍ତ ହୋଇ କର୍ଣ୍ଣଙ୍କ ହସ୍ତରୁ ଅନ୍ତରିତ ହେବାର ଦେଖି ଅର୍ଜ୍ଜୁନଙ୍କୁ ମୃତ୍ୟୁମୁଖରୁ ବିମୁକ୍ତ ବୋଲି ମନେକରୁଅଛୁଁ । ସଂଗ୍ରାମ ସ୍ଥଳରେ ଅର୍ଜ୍ଜୁନ ଆମ୍ଭର ଯାଦୃଶ ରକ୍ଷଣୀୟ ପିତାମାତା ତୁମ୍ଭେମାନେ କିମ୍ବା ଭ୍ରାତୃଗଣ କେହି ଆମ୍ଭର ତାଦୃଶ ରକ୍ଷଣୀୟ ନୁହନ୍ତି । ଆମ୍ଭର ନିଜ ପ୍ରାଣ ମଧ୍ୟ ତାଦୃଶ ରକ୍ଷଣୀୟ ନୁହେ । ୪୩ ।

ହେ ସାତ୍ୟକି ! ଯଦି ଏହି ତ୍ରୈଲୋକ୍ୟ ଅପେକ୍ଷା ଅନ୍ୟ କୌଣସି ଦୁର୍ଲ୍ଲଭ ପଦାର୍ଥ ଥାଏ, ଆମ୍ଭେ ଧନଞ୍ଜୟଙ୍କ ବ୍ୟତୀତ ତାହା ମଧ୍ୟ ଅଭିଳାଷ କରୁନାହୁଁ । ୪୪ । ଅତଏବ ଧନଞ୍ଜୟଙ୍କୁ ଅଦ୍ୟ ମୃତ୍ୟୁମୁଖରୁ ପୁନରାଗତ ବୋଧକରି ଆମ୍ଭେ ଈଦୃଶ ହର୍ଷାନ୍ୱିତ ହୋଇଅଛୁଁ । ୪୫ । ପୁଣି ଆମ୍ଭେ ଘଟୋତ୍କଚକୁ ଯୁଦ୍ଧାର୍ଥ କର୍ଣ୍ଣଙ୍କ ନିକଟକୁ ଯେ ପ୍ରେରଣ କରିଥିଲୁଁ ତାହାର କାରଣ ଆମ୍ଭେ ଏହିପରି ନିଶ୍ଚୟ କରିଥିଲୁଁ ଯେ ଅଦ୍ୟ ରାତ୍ରିକାଳରେ କର୍ଣ୍ଣଙ୍କୁ ଅପର କୌଣସି ବୀର ନିବାରଣ କରି ପାରିବ ନାହିଁ । ୪୬ ।

ସଞ୍ଜୟ କହିଲେ—ହେ ମହାରାଜ ! ଧନଞ୍ଜୟଙ୍କର ନିୟତ ପ୍ରିୟ ଓ ହିତନିରତ ଦେବକୀ-ନନ୍ଦନ ଶ୍ରୀକୃଷ୍ଣ ସାତ୍ୟକଙ୍କୁ ସେହି ସମୟରେ ଏହିପରି କହିଥିଲେ । ୪୭ ।

---

# ୧୮୩ ଅଧ୍ୟାୟ

ଧୃତରାଷ୍ଟ୍ର କହିଲେ—ହେ ବତ୍ସ ସଞ୍ଜୟ ! କର୍ଣ୍ଣ, ଦୁର୍ଯ୍ୟୋଧନ ଓ ସୁବଳନନ୍ଦନ-ଶକୁନିଙ୍କର ବିଶେଷତଃ ତୁମ୍ଭର ଅତ୍ୟନ୍ତ ମତିବିଭ୍ରମ କାର୍ଯ୍ୟ ହୋଇଅଛି । କାରଣ ଯେତେବେଳେ ତୁମ୍ଭେମାନେ ନିଶ୍ଚୟରୂପେ ଅବଗତ ଥିଲ ଯେ ସେହି ଅନିବାର୍ଯ୍ୟ ଶକ୍ତି ଇନ୍ଦ୍ରାଦି ଦେବଗଣଙ୍କର ମଧ୍ୟ ଅସହ୍ୟ ଓ ରଣସ୍ଥଳରେ ଜଣେ ବୀରକୁ ଅବଶ୍ୟ ସଂହାର କରିବ, ତେତେବେଳେ କର୍ଣ୍ଣ ସଂଗ୍ରାମ ଆରମ୍ଭରୁ ଅର୍ଜ୍ଜୁନ ବା ଦେବକୀପୁତ୍ରଙ୍କ ପ୍ରତି କି ନିମିତ୍ତ ତାହାକୁ ନିକ୍ଷେପ କଲେ ନାହିଁ ?

ସଞ୍ଜୟ କହିଲେ—ହେ କୁରୁଶ୍ରେଷ୍ଠ ମହାରାଜ ! ଆମ୍ଭେମାନେ ପ୍ରତିଦିନ ସଂଗ୍ରାମରୁ ନିବୃତ୍ତ ହୋଇ ଶିବିରକୁ ପ୍ରତ୍ୟାଗମନ କଲାଉତ୍ତାରୁ ରଜନୀରେ ଏପରି ମନ୍ତ୍ରଣା କରି କର୍ଣ୍ଣଙ୍କୁ କହୁଥାଉଁ, ହେ କର୍ଣ୍ଣ ! ତୁମ୍ଭେ କାଲି ପ୍ରଭାତରେ ବାସୁଦେବ କିମ୍ବା ଅର୍ଜ୍ଜୁନଙ୍କ ପ୍ରତି ନିଶ୍ଚୟ ସେହି ଅମୋଘଶକ୍ତି ପ୍ରୟୋଗ କରିବ ।" କିନ୍ତୁ ପ୍ରଭାତ ହେବାମାତ୍ରେ ଦୈବ ପ୍ରଭାବରୁ କି କର୍ଣ୍ଣ, କି ଅପରାପର ଯୋଦ୍ଧା ସମସ୍ତଙ୍କର ବୁଦ୍ଧିଭ୍ରଷ୍ଟ ହୋଇଯାଏ । ୨ । ଯେତେ-ବେଳେ କର୍ଣ୍ଣଙ୍କ ହସ୍ତରେ ଅଦ୍ଭୁତ ଅମୋଘଶକ୍ତି ଥାଉଁ ଥାଉଁ ଦେବକୀପୁତ୍ର କୃଷ୍ଣ ଅଥବା ଧନଞ୍ଜୟ କେହି ନିହତ ହୋଇ ନାହାନ୍ତି, ତେତେବେଳେ ଆମ୍ଭ ବିବେଚନାରେ ଦୈବ କେବଳ ବଳବାନ୍ ବୋଧ ହେଉଅଛି । ୭ । ହେ ମହାରାଜ ! କର୍ଣ୍ଣ ନିଶ୍ଚୟ ଦୈବମାୟା ପ୍ରଭାବରୁ ହତବୁଦ୍ଧି ଓ ବିମୋହିତ ହୋଇ ଦେବକୀପୁତ୍ର କୃଷ୍ଣ ଅଥବା ଦେବସଦୃଶ ଅର୍ଜ୍ଜୁନଙ୍କ ପ୍ରତି ଏହି ହସ୍ତସ୍ଥିତ କାଳରାତ୍ରିରୂପିଣୀ ବାସବୀଶକ୍ତିକୁ ବିମୋଚନ କରି ନାହାନ୍ତି ।

ହେ ସଞ୍ଜୟ ! ତୁମ୍ଭମାନଙ୍କର ନିଜ ନିଜ ବୁଦ୍ଧି ଦୈବ ଓ ବାସୁଦେବଙ୍କ ପ୍ରଭାବରୁ ବିନଷ୍ଟ ହେଲା । କାହିଁକି ନା ତାଦୃଶ ଅମୋଘ

ଇନ୍ଦ୍ରଶକ୍ତି ତୃଣତୁଲ୍ୟ ଘଟୋତ୍କଚକୁ ବିନାଶ କରି ନିଷ୍ଫଳ ହେଲା । ୧୦ । ଏହି ଦୁର୍ନୀତି ଦୋଷରୁ ଆମ୍ଭର ପୁତ୍ରମାନେ, କର୍ଣ୍ଣ ଓ ଅପରାପର ପାର୍ଥିବମାନେ ସମସ୍ତଙ୍କୁ ଆମ୍ଭେ ମୃତ୍ୟୁଲୋକଗତ ବୋଲି ମନେ କରୁଅଛୁଁ । ୧୧ ।

ସେ ଯାହାହେଉ ହିଡ଼ିମ୍ବାନନ୍ଦନ ନିହତ ହୁଅନ୍ତେ ସେହିକାଳରେ କୌରବ ଓ ପାଣ୍ଡବମାନଙ୍କର ପୁନର୍ବାର କିପରି ଯୁଦ୍ଧ ହେଲା, ତାହା କୀର୍ତ୍ତନ କର । ୧୨ । ପୁଣି ପାଣ୍ଡବପକ୍ଷୀୟ କେଉଁ କେଉଁ ଯୋଦ୍ଧାମାନେ ସେହିସମୟରେ ସେନାଦ୍ୱାରା ବ୍ୟୂହିତ ହୋଇ ଦ୍ରୋଣଙ୍କ ପ୍ରତି ଧାବିତ ହେଲେ ଓ ସୃଞ୍ଜୟସମବେତ ପାଞ୍ଚାଳମାନେ ଅବା ତାହାଙ୍କ ସହିତ କିପରି ଯୁଦ୍ଧ କଲେ ? ୧୩ । ହେ ସଞ୍ଜୟ ! ଆଚାର୍ଯ୍ୟ ଦ୍ରୋଣ ସୋମଦତ୍ତନନ୍ଦନ ଭୂରିଶ୍ରବା ଓ ସିନ୍ଧୁରାଜ ଜୟଦ୍ରଥଙ୍କର ବିନାଶ ହେତୁ ଅତିଶୟ କ୍ରୋଧାବିଷ୍ଟ ଓ ଜୀବିତନିରପେକ୍ଷ ହୋଇ ଜୃମ୍ଭମାଣ ଶାର୍ଦ୍ଦୂଳ ଓ ବ୍ୟାଦିତାନନ କୃତାନ୍ତ ସଦୃଶ ପାଣ୍ଡବସୈନ୍ୟ ମଧ୍ୟରେ ପ୍ରବେଶ କରି ନିରନ୍ତର ଶରନିକ୍ଷେପ କରନ୍ତେ, ପାଣ୍ଡବ ଓ ସଞ୍ଜୟଗଣ ତାହାଙ୍କ ପ୍ରତି କିପରି ପ୍ରତ୍ୟୁଦ୍‌ଗତ ହେଲେ ? ୧୫ । ହେ ବତ୍ସ ସଞ୍ଜୟ ! ସେହି ଘୋରତର ସମର ସମୟରେ ଯେଉଁ ଯେଉଁ ବୀରମାନେ ଆଚାର୍ଯ୍ୟଙ୍କୁ ରକ୍ଷା କଲେ ଓ କୃପାଚାର୍ଯ୍ୟ, ଅଶ୍ୱତ୍ଥାମା, କର୍ଣ୍ଣ, ଓ ଦୁର୍ଯ୍ୟୋଧନପ୍ରମୁଖ ମହାରଥମାନେ ଯେପରି କାର୍ଯ୍ୟରେ ପ୍ରବୃତ୍ତ ହେଲେ ପୁଣି ଦ୍ରୋଣବଧାଭିଳାଷୀ ଧନଞ୍ଜୟ ଓ ବୃକୋଦରଙ୍କୁ ମତ୍‌ପକ୍ଷୀୟ ଯୋଦ୍ଧାମାନେ ଅବା କିପରି ନିପୀଡ଼ିତ କଲେ ? ଜୟଦ୍ରଥ ବଧ ହେତୁ କୌରବମାନେ ଓ ଘଟୋତ୍କଚ ବଧ ନିମିତ୍ତ ପାଣ୍ଡବମାନେ ଅସହିଷ୍ଣୁ ଓ ଅତିଶୟ କ୍ରୁଦ୍ଧ ହୋଇ ସେହି ନିଶାକାଳରେ ଯେଉଁପରି ସଂଗ୍ରାମ କରିଥିଲେ, ସେସମସ୍ତ କୀର୍ତ୍ତନ କର । ୧୮ ।

ସଞ୍ଜୟ କହିଲେ—ହେ ମହାରାଜ ! ସେହି ପ୍ରଗାଢ଼ ରଜନୀରେ କର୍ଣ୍ଣଙ୍କ କର୍ତ୍ତୃକ ନିଶାଚର ଘଟୋତ୍କଚ ନିହତ ହେଲାରୁ ଆପଣଙ୍କପକ୍ଷୀୟ ଯୋଦ୍ଧାମାନେ ସମରାଭିଳାଷୀ ହୋଇ ପ୍ରହୃଷ୍ଟ ଚିତ୍ତରେ ସିଂହନାଦ କରୁ କରୁ ମହାବେଗରେ ଆଗମନପୂର୍ବକ ପାଣ୍ଡବ ସୈନ୍ୟମାନଙ୍କୁ ବିନାଶ କରିବାରେ ପ୍ରବୃତ୍ତ ହୁଅନ୍ତେ ମହାବାହୁ ରାଜା ଯୁଧିଷ୍ଠିର ଅତିଶୟ ଦୀନତାପ୍ରାପ୍ତ ହୋଇ ଭୀମସେନଙ୍କୁ ଏହିପରି ଆଦେଶ କଲେ—ହେ ମହାବାହୋ

ଭୀମ ! ହିଡ଼ିମ୍ବାନନ୍ଦନର ବିନାଶରେ ଆମ୍ଭେ ବିମୋହିତ ହୋଇଅଛୁଁ ।
ଅତଏବ ତୁମ୍ଭେ ବର୍ତ୍ତମାନ ଏକାକୀ କୌରବମାନଙ୍କୁ ନିବାରଣ କର । ରାଜା ଯୁଧିଷ୍ଠିର ଭୀମସେନଙ୍କୁ ଏହିପରି ଆଦେଶ କରି ରଥମଧ୍ୟରେ ଉପବେଶନପୂର୍ବକ ଅଶ୍ରୁପୂର୍ଣ୍ଣ ବଦନରେ ପୁନଃ ପୁନଃ ଦୀର୍ଘନିଃଶ୍ୱାସ ପରିତ୍ୟାଗ କଲେ ଓ କର୍ଣ୍ଣଙ୍କର ଭୟଙ୍କର ବିକ୍ରମ ସନ୍ଦର୍ଶନ କରି ବିହ୍ୱଳ ହେଲେ ।୨୩।

ମହାତ୍ମା ବାସୁଦେବ ତାହାଙ୍କୁ ବ୍ୟଥିତ ହେବାର ଦେଖି, କହିଲେ, ହେ ଭରତପ୍ରବର କୁନ୍ତୀନନ୍ଦନ ଯୁଧିଷ୍ଠିର ! ଆପଣ ଏପରି କାତର ଭାବ ପରିତ୍ୟାଗ କରନ୍ତୁ । ପ୍ରାକୃତ ପୁରୁଷସଦୃଶ ଆପଣଙ୍କର ଏପରି ଅବସନ୍ନତା ଉଚିତ ନୁହେ । ହେ ମହାରାଜ ! ଆପଣ ଉତ୍ଥିତ ହୋଇ ସୁମହତ୍ ସମରଭାର ବହନ କରନ୍ତୁ । ଏସମୟରେ ଆପଣ ଏପରି କାତର ହେଲେ ଜୟଲାଭରେ ସଂଶୟ ହେବ ।

ଧର୍ମରାଜ ଯୁଧିଷ୍ଠିର କୃଷ୍ଣଙ୍କର ବାକ୍ୟ ଶ୍ରବଣ କରି କରତଳ ଦ୍ୱାରା ନେତ୍ରବାରି ମାର୍ଜ୍ଜନ ପୂର୍ବକ ତାହାଙ୍କୁ ଏହିପରି କହିଲେ । ହେ ମହାବାହୋ ଜନାର୍ଦ୍ଦନ ! ଧର୍ମ୍ମର ପରମଗତି ଆମ୍ଭଙ୍କୁ ବିଦିତ ଅଛି । ଯେଉଁ ବ୍ୟକ୍ତି ଅନ୍ୟକୃତ ଉପକାରକୁ ସ୍ମରଣ ନ କରେ, ସେ ନିଶ୍ଚୟ ବ୍ରହ୍ମହତ୍ୟାର ଫଳଭାଗୀ ହୁଏ । ଆମ୍ଭେ ଏହା ଜାଣି ସୁଦ୍ଧା କପରି ସୁସ୍ଥିର ହେବୁଁ ? ଆମ୍ଭମାନଙ୍କର ବନବାସ ସମୟରେ ମହାତ୍ମା ହିଡ଼ିମ୍ବାନନ୍ଦନ ବାଳକ ହୋଇ ମଧ୍ୟ ଅନେକ ସାହାଯ୍ୟ କରିଥିଲା । ଯେଉଁ ସମୟରେ ଶ୍ୱେତବାହନ ଅର୍ଜ୍ଜୁନ ଅସ୍ତ୍ରଶିକ୍ଷାର୍ଥ ସୁରଲୋକକୁ ଗମନ କରିଥିଲେ ସେହି ସମୟରେ ସେହି ମହାଧନୁର୍ଦ୍ଧର କାମ୍ୟକ ବନରେ ଆମ୍ଭମାନଙ୍କ ନିକଟରେ ଉପସ୍ଥିତ ହୋଇ ଅର୍ଜ୍ଜୁନଙ୍କର ଆସିବା ପର୍ଯ୍ୟନ୍ତ ସେହିଠାରେ ବାସ କରିଥିଲା ଓ ଗନ୍ଧମାଦନକୁ ଗମନ କରିବା ବେଳେ ସେହି ମହାତ୍ମା ଆମ୍ଭମାନଙ୍କୁ ଅନେକ ଦୁର୍ଗମ ସ୍ଥଳରୁ ପରିତ୍ରାଣ କରିଥିଲା । ବିଶେଷତଃ ପରିଶ୍ରାନ୍ତା ପାଞ୍ଚାଳୀଙ୍କୁ ପୃଷ୍ଠରେ ବହନ କରିଥିଲା । ୩୧ ।

ପୁଣି ଏହି ଯୁଦ୍ଧର ଆରମ୍ଭରୁ ମହାତ୍ମା ଘଟୋତ୍କଚ ମହାସମରରେ ଆମ୍ଭ ନିମିତ୍ତ ଯେଉଁ ସମସ୍ତ କାର୍ଯ୍ୟ କରିଅଛି, ତାହା ଅନ୍ୟଦ୍ୱାରା ଅସାଧ୍ୟ

ବୋଲି ସ୍ୱୀକାର କରିବାକୁ ହେବ । ୩୨ । ହେ ଜନାର୍ଦ୍ଦନ ! ସହଦେବଙ୍କ ପ୍ରତି ଆମ୍ଭର ଯେପରି ସ୍ୱାଭାବିକୀ ପ୍ରୀତି ଅଛି, ରାକ୍ଷସେନ୍ଦ୍ର ଘଟୋତ୍କଚ ପ୍ରତି ମଧ୍ୟ ଆମ୍ଭର ସେହିପରି ପରମ ପ୍ରୀତି ଥିଲା । ସେହି ମହାବାହୁ ଆମ୍ଭର ଅତିଶୟ ଭକ୍ତ ଓ ପରମପ୍ରିୟ ଓ ଆମ୍ଭେ ମଧ୍ୟ ତାହାର ଅତିଶୟ ପ୍ରିୟ । ଏଣୁ ଆମ୍ଭେ ଶୋକସନ୍ତପ୍ତ ଓ ବିମୋହିତ ହୋଇଅଛୁ । ୩୪ । ହେ ବୃଷ୍ଣି-ନନ୍ଦନ ! ଦେଖ, ଆମ୍ଭମାନଙ୍କର ସୈନ୍ୟମାନେ କୌରବଗଣଙ୍କ କର୍ତ୍ତୃକ ବିଦ୍ରାବିତ ହେଉଅଛନ୍ତି । ଦ୍ରୋଣ ଓ କର୍ଣ୍ଣ ସଂଗ୍ରାମରେ ଅତିଶୟ ସମ୍ଭ-ପରାୟଣ ହୋଇ ଅଛନ୍ତି । ୩୫ ।

ଯେପରି ମତ୍ତ ମାତଙ୍ଗଦ୍ୱୟ ବୃହତ୍ ନଳବନକୁ ବିମର୍ଦ୍ଦନ କରନ୍ତି, ସେହିପରି ଏହି ବୀରଦ୍ୱୟ ଆମ୍ଭମାନଙ୍କର ସୈନ୍ୟଙ୍କୁ ବିମର୍ଦ୍ଦନ କରୁଅଛନ୍ତି । ୩୬ । ହେ ମାଧବ, ଅବଲୋକନ କର । ରାଜା ଦୁର୍ଯ୍ୟୋଧନ, ଦ୍ରୋଣ ଓ କର୍ଣ୍ଣ ପ୍ରଭୃତି ବୀରମାନେ ଅର୍ଜ୍ଜୁନଙ୍କର ଅସ୍ତ୍ରକୌଶଳ ପରାକ୍ରମ ଓ ତେଜକୁ ଅବମାନନା କରି ଓ ଭୀମସେନଙ୍କର ଭୁଜବଳକୁ ଅନାଦରପୂର୍ବକ ସଂଗ୍ରାମରେ ନିଶାଚର ଘଟୋତ୍କଚକୁ ନିହତ କରି ଆନନ୍ଦରେ ସିଂହନାଦ କରୁଅଛନ୍ତି । ହେ ଜନାର୍ଦ୍ଦନ ! ତୁମ୍ଭେ ଓ ଆମ୍ଭେ ସମସ୍ତେ ଜୀବିତ ଥାଉଥାଉ ସୂତ-ପୁତ୍ର କିପରି ଘଟୋତ୍କଚକୁ ସଂହାର କରିବାକୁ ସମର୍ଥ ହେଲା ! ୩୯ । ଆମ୍ଭ ସମସ୍ତଙ୍କୁ ନିରସ୍ତ କରି ସବ୍ୟସାଚୀଙ୍କ ସମକ୍ଷରେ ମହାବଳଶାଳୀ ଭୀମତନୟ ଘଟୋତ୍କଚକୁ ବିନାଶ କଲା । ୪୦ ।

ହେ କୃଷ୍ଣ ! ଯେଉଁ ସମୟରେ ଦୁରାତ୍ମା କୌରବମାନେ ଅଭିମନ୍ୟୁଙ୍କୁ ବିନାଶ କଲେ, ସେତେବେଳେ ମହାରଥୀ ସବ୍ୟସାଚୀ ସେହି ରଣସ୍ଥଳରେ ଉପସ୍ଥିତ ନ ଥିଲେ ଓ ଆମ୍ଭେମାନେ ସମସ୍ତେ ଦୁରାତ୍ମା ସିନ୍ଧୁରାଜ ଜୟଦ୍ରଥଙ୍କ କର୍ତ୍ତୃକ ନିବାରିତ ହୋଇଥିଲୁଁ । ସେହି ସମୟରେ ସପୁତ୍ର ଦ୍ରୋଣ ଅଭିମନ୍ୟୁର ମୃତ୍ୟୁର କାରଣସ୍ୱରୂପ ହୋଇଥିଲେ । ୪୨ । କାହିଁକି ନା ଆଚାର୍ଯ୍ୟ ସ୍ୱୟଂ ଅଭିମନ୍ୟୁଙ୍କ ବଧୋପାୟ ନିର୍ଦ୍ଦେଶ କରି ଦେଇଥିଲେ । ଯେତେବେଳେ ଅଭିମନ୍ୟୁ କେବଳ ଅସି ଅବଲମ୍ବନ ପୂର୍ବକ ଯୁଦ୍ଧ କରିଥିଲେ, ସେତେବେଳେ ଗୁରୁ ତାହାଙ୍କର ସେହି ଖଡ୍ଗକୁ ଦୁଇଖଣ୍ଡ କରି ଛେଦନ କରିଥିଲେ । ୪୩ । କୃତବର୍ମା ନିଶଂସ ସଦୃଶ ବ୍ୟବହାର

କରି ସହସା ବିପକ୍ଷ ସାଗରନିମଗ୍ନ ସେହି ବାଳକର ଅଶ୍ୱ ଓ ପୃଷ୍ଠରକ୍ଷକ ଦ୍ୱୟଙ୍କୁ ନିହତ କଲେ । ୪୯ । ଅନ୍ୟାନ୍ୟ ମହାଧନୁର୍ଦ୍ଧରମାନେ ଏକତ୍ରିତ ହୋଇ ଏହିପରି ନାନା ଉପାୟଦ୍ୱାରା ସମରରେ ସୁଭଦ୍ରାନନ୍ଦନଙ୍କୁ ନିପାତିତ କଲେ ।

ହେ କୃଷ୍ଣ ! ଗାଣ୍ଡୀବଧନ୍ୱା ଧନଞ୍ଜୟ ଅତି ସାମାନ୍ୟ ଅପରାଧରେ ସିନ୍ଧୁରାଜ ଜୟଦ୍ରଥଙ୍କୁ ନିହତ କରି ଅଛନ୍ତି । ସୁତରାଂ ଏହା ଆମ୍ଭର ବିଶେଷ ପ୍ରିୟକାର୍ଯ୍ୟ ହୋଇନାହିଁ । ହେ ଯାଦବଶ୍ରେଷ୍ଠ ! ପାଣ୍ଡବମାନଙ୍କର ଯଦି ଶତ୍ରୁବଧ କରିବା କର୍ତ୍ତବ୍ୟ ହୁଏ, ତାହାହେଲେ ଆମ୍ଭ ବିବେଚନାରେ ପ୍ରଥମେ ଦ୍ରୋଣ ଓ କର୍ଣ୍ଣ ଏ ଦୁହିଙ୍କୁ ବିନାଶ କରିବା କର୍ତ୍ତବ୍ୟ । ଏହି ଦୁଇଜଣ ଆମ୍ଭମାନଙ୍କର ସମସ୍ତ ଦୁଃଖର ମୂଳ । ସେମାନଙ୍କୁ ପ୍ରାପ୍ତ ହୋଇ ଦୁର୍ଯ୍ୟୋଧନ ଅତିଶୟ ଆଶ୍ୱସ୍ତ ହୋଇଅଛି । ମହାବାହୁ ଅର୍ଜ୍ଜୁନଙ୍କର ଦ୍ରୋଣ ଓ ସାନୁଗ ସୂତପୁତ୍ର ଏ ଦୁହିଁଙ୍କୁ ବଧ କରିବା ଉଚିତ ଥିଲା । ମାତ୍ର ସେ ତାହା ନ କରି ଦୂରବାସୀ ଜୟଦ୍ରଥଙ୍କୁ ବଧ କଲେ । ସୂତପୁତ୍ରଙ୍କର ନିଗ୍ରହ ସାଧନ କରିବା ଆମ୍ଭର ଏକାନ୍ତ କର୍ତ୍ତବ୍ୟ । ଏହି ସମୟରେ ମହାବାହୁ ବୃକୋଦର ଦ୍ରୋଣସୈନ୍ୟଙ୍କ ସହିତ ଯୁଦ୍ଧ କରୁଅଛନ୍ତି । ଆମ୍ଭେ ସ୍ୱୟଂ କର୍ଣ୍ଣବଧାର୍ଥୀ ହୋଇ ଗମନ କରିବୁଁ । ୫୦ । ତରସ୍ୱୀ ଯୁଧିଷ୍ଠିର ଏହା କହି ଅତି ବେଗରେ ସୁମହତ୍ ଶରାସନ ବିସ୍ଫାରଣ କରି ଓ ଭୟଙ୍କର ଶଙ୍ଖଧ୍ୱନି କରି ଗମନ କଲେ । ୫୧ ।

ତଦନନ୍ତର ପାଞ୍ଚାଳ ରାଜନନ୍ଦନ ଶିଖଣ୍ଡୀ ଏକସହସ୍ର ରଥୀ, ତିନିଶତ ହସ୍ତୀ, ପଞ୍ଚସହସ୍ର ଅଶ୍ୱ, ପଞ୍ଚସହସ୍ର ପାଞ୍ଚାଳ ଓ ପ୍ରଭଦ୍ରକ ସୈନ୍ୟରେ ପରିବୃତ ହୋଇ ସତ୍ୱର ଯୁଧିଷ୍ଠିରଙ୍କର ଅନୁଗାମୀ ହେଲେ । ସେହି ସମୟରେ ଯୁଧିଷ୍ଠିରପ୍ରମୁଖ ବଦ୍ଧସନ୍ନାହ ପାଣ୍ଡବ ଓ ପାଞ୍ଚାଳଗଣ ଶତଶତ ଶଙ୍ଖ ଓ ଭେରୀ ନିନାଦ କଲେ ।

ତାହା ଦେଖି ବାସୁଦେବ ଧନଞ୍ଜୟଙ୍କୁ କହିଲେ, ହେ ଧନଞ୍ଜୟ ! ଦେଖ, ଧର୍ମ୍ମରାଜ ଯୁଧିଷ୍ଠିର ଅତିଶୟ କ୍ରୋଧାବିଷ୍ଟ ହୋଇ ସୂତପୁତ୍ରଙ୍କର ବିନାଶ ବାସନାରେ ସ୍ୱୟଂ ଗମନ କରୁଅଛନ୍ତି । ଅତଏବ ଏ ବିଷୟରେ

ତୁମ୍ଭର ଉପେକ୍ଷା କରିବା କର୍ତ୍ତବ୍ୟ ହେଉନାହିଁ । ୫୫ । ହୃଷୀକେଶ ଏହି କଥା କହି ବେଗରେ ଅଶ୍ୱମାନଙ୍କୁ ସଞ୍ଚାଳିତ ପୂର୍ବକ ଦୂରଗାମୀ ଯୁଧିଷ୍ଠିରଙ୍କର ପଶ୍ଚାତ୍ ପଶ୍ଚାତ୍ ଗମନ କଲେ । ୫୬ ।

ସେହି ସମୟରେ ବ୍ୟାସଦେବ ଅଗ୍ନିଦଗ୍ଧ ବସ୍ତୁସଦୃଶ ଯୁଧିଷ୍ଠିରଙ୍କୁ ଶୋକସନ୍ତପ୍ତ ଚିତ୍ତରେ ସହସା ସୂତପୁତ୍ରଙ୍କର ବିନାଶ ନିମିତ୍ତ ଗମନ କରିବାର ଦେଖି ତାହାଙ୍କ ସମୀପରେ ଉପସ୍ଥିତ ହୋଇ କହିଲେ, ହେ ବତ୍ସ ଯୁଧିଷ୍ଠିର ! ଅର୍ଜ୍ଜୁନ ସଂଗ୍ରାମରେ ଅନେକଥର କର୍ଣ୍ଣଙ୍କର ନିକଟସ୍ଥ ହୋଇ ମଧ୍ୟ ଭାଗ୍ୟକ୍ରମେ ଜୀବିତ ଅଛନ୍ତି । କାରଣ କର୍ଣ୍ଣ ଧନଞ୍ଜୟଙ୍କ ବଧନିମିତ୍ତ ବାସବଦତ୍ତ ଶକ୍ତିକୁ ରଖିଥିଲେ । ଭାଗ୍ୟକ୍ରମେ ଜିଷ୍ଣୁ ଏପର୍ଯ୍ୟନ୍ତ କର୍ଣ୍ଣଙ୍କ ସହିତ ଦ୍ୱୈରଥ ଯୁଦ୍ଧରେ ପ୍ରବୃତ୍ତ ହୋଇନାହାନ୍ତି । ଧନଞ୍ଜୟ ଯେବେ କର୍ଣ୍ଣଙ୍କ ସହିତ ଯୁଦ୍ଧରେ ପ୍ରବୃତ୍ତ ହୋଇଥାନ୍ତେ, ତାହାହେଲେ ଉଭୟେ ସ୍ପର୍ଦ୍ଧାବାନ୍ ହୋଇ ଦିବ୍ୟାସ୍ତ୍ର ସମୂହ ଅବଶ୍ୟ ପ୍ରୟୋଗ କରିଥାଆନ୍ତେ । ଧନଞ୍ଜୟଙ୍କର ଶର ପ୍ରଭାବରୁ ପୁନଃ ପୁନଃ କର୍ଣ୍ଣଙ୍କର ଅସ୍ତ୍ରସମୂହ ବ୍ୟର୍ଥ ହୋଇଥିଲେ ସେ ନିଜେ ଅସ୍ତ୍ରାନଳରେ ନିପୀଡ଼ିତ ହୋଇ ନିଶ୍ଚୟ ବାସବଦତ୍ତ ଶକ୍ତି ପ୍ରୟୋଗ କରିଥାନ୍ତେ, ତାହାହେଲେ ତୁମ୍ଭର ନିଦାରୁଣ ବ୍ୟସନ ଉପସ୍ଥିତ ହୋଇଥାନ୍ତା । ୬୧ ।

ହେ ଯୁଧିଷ୍ଠିର ! ତୁମ୍ଭର ସୌଭାଗ୍ୟରୁ ସୂତପୁତ୍ର ସେହି ଅମୋଘ ଇନ୍ଦ୍ରଦତ୍ତ ଶକ୍ତିଦ୍ୱାରା ନିଶାଚର ଘଟୋତ୍କଚକୁ ବିନାଶ କରିଅଛନ୍ତି । ପୁରନ୍ଦରପ୍ରଦତ୍ତ ଶକ୍ତି କେବଳ ନିମିତ୍ତ ମାତ୍ର । ପ୍ରକୃତ କାଳ ହିଁ ଘଟୋତ୍କଚକୁ ବିନାଶ କରିଅଛି । ୬୨ । ହେ ବତ୍ସ ! ତୁମ୍ଭର ମଙ୍ଗଳ ନିମିତ୍ତ ସମରରେ ଘଟୋତ୍କଚ ନିହତ ହୋଇଅଛି । ଅତଏବ ତୁମ୍ଭେ ମାନସିକ ଶୋକ ଓ କ୍ରୋଧ ସମ୍ବରଣ କର, ଯେହେତୁ ସମସ୍ତ ପ୍ରାଣିଙ୍କର ଏହିପରି ଗତି ହୁଏ । ବର୍ତ୍ତମାନ ତୁମ୍ଭେ ମହାତ୍ମା ଭ୍ରାତୃଗଣ ଓ ସମସ୍ତ ପାର୍ଥିବମାନଙ୍କ ସହିତ ମିଳିତ ହୋଇ କୌରବମାନଙ୍କ ସହ ଯୁଦ୍ଧ କର । ହେ ପୁରୁଷଶ୍ରେଷ୍ଠ ! ଆଜିଠାରୁ ପଞ୍ଚମଦିବସରେ ନିଶ୍ଚୟ ଏହି ବସୁନ୍ଧରା ତୁମ୍ଭର କରାୟତ୍ତ ହେବ । ତୁମ୍ଭେ ସର୍ବଦା ଧର୍ମ୍ମର ଅନୁସରଣ କର ଓ ପରମପ୍ରୀତ ମାନସରେ ଅନୃଶଂସ୍ୟ-

ତପସ୍ୟା, ଦାନ ଓ କ୍ଷମାଦି ଗୁଣରେ ନିରତ ହୁଅ । କାରଣ ଯେଉଁଠାରେ ଧର୍ମ, ସେହିଠାରେ ଜୟ ।

ସଞ୍ଜୟ କହିଲେ, ହେ ମହାରାଜ ! ସତ୍ୟବତୀନନ୍ଦନ ମହର୍ଷି ବେଦବ୍ୟାସ ଯୁଧିଷ୍ଠିରଙ୍କୁ ଏହି କଥା କହି ସେହିଠାରେ ଅନ୍ତର୍ହିତ ହେଲେ ।

---

# ୧୮୪ ଅଧ୍ୟାୟ

ସଞ୍ଜୟ କହିଲେ—ହେ ଭରତଶ୍ରେଷ୍ଠ ! ମହାରାଜ ! ଧର୍ମନନ୍ଦନ ଯୁଧିଷ୍ଠିର ବେଦବ୍ୟାସଙ୍କର ଏହି ସମସ୍ତ ବାକ୍ୟ ଶ୍ରବଣ କରି ସ୍ୱୟଂ କର୍ଣ୍ଣ-ବିନାଶରେ ଅଭିଳାଷ ନ କରି ନିବୃତ୍ତ ହେଲେ । କିନ୍ତୁ ସୂତପୁତ୍ରଙ୍କ କର୍ତ୍ତୃକ ଘଟୋତ୍କଚ ନିହତ ହେତୁରୁ ଦୁଃଖ ଓ କ୍ରୋଧରେ ଅତ୍ୟନ୍ତ ଅଭିଭୂତ ହେଲେ । ୨ । ସେହି ସମୟରେ ସେ ଭୀମସେନଙ୍କୁ ଏକାକୀ ସମସ୍ତ କୌରବ ସୈନ୍ୟମାନଙ୍କୁ ନିବାରଣ କରିବାର ଦେଖି ଧୃଷ୍ଟଦ୍ୟୁମ୍ନଙ୍କୁ କହିଲେ, ତୁମ୍ଭେ ଦ୍ରୋଣଙ୍କୁ ନିବାରଣ କର । ୩ । ହେ ଶତ୍ରୁତାପନ ! ତୁମ୍ଭେ ଦ୍ରୋଣ ବିନାଶ ନିମିତ୍ତ ଖଡ୍ଗ, କବଚ, ଶର ଓ ଶରାସନସହ ଅଗ୍ନିକୁଣ୍ଡ ମଧ୍ୟରୁ ସମୁତ୍ପନ୍ନ ହୋଇଅଛ । ଅତଏବ ଦ୍ରୋଣଙ୍କଠାରୁ ତୁମ୍ଭର କିଛିମାତ୍ର ଭୟ ନାହିଁ, ତୁମ୍ଭେ ପ୍ରହୃଷ୍ଟ ଚିତ୍ତରେ ତାହାଙ୍କ ପ୍ରତି ଧାବିତ ହୁଅ । ଜନମେଜୟ, ଶିଖଣ୍ଡୀ ଓ ଦୌର୍ମ୍ମୁଖୀ ପ୍ରଭୃତି ବୀରମାନେ ଯଶଃପ୍ରାର୍ଥୀ ହୋଇ ହୃଷ୍ଟଚିତ୍ତରେ ଦ୍ରୋଣଙ୍କ ପ୍ରତିପକ୍ଷରେ ଗମନ କରନ୍ତୁ । ତତ୍ପରେ ନକୁଳ, ସହଦେବ, ଦ୍ରୌପଦୀଙ୍କ ପୁତ୍ରମାନେ, ପ୍ରଭଦ୍ରକଗଣ, ପୁତ୍ର ଓ ଭ୍ରାତୃଗଣସମନ୍ୱିତ ମହାରାଜ ବିରାଟ, ଦ୍ରୁପଦ ଓ ସାତ୍ୟକି ପୁଣି ପାଣ୍ଡୁପୁତ୍ର ଧନଞ୍ଜୟ ଏମାନେ ସମସ୍ତେ ଦ୍ରୋଣବଧ ବାସନାରେ ବେଗରେ ଗମନ କରନ୍ତୁ । ଆତ୍ମପକ୍ଷୀୟ ରଥୀ, ହସ୍ତ୍ୟାରୋହୀ, ଅଶ୍ୱାରୋହୀ, ପଦାତି ଯେସମସ୍ତ ସୈନ୍ୟ ଅଛନ୍ତି, ସେସମସ୍ତ ଏକତ୍ରିତ ହୋଇ ରଣସ୍ଥଳରେ ମହାରଥୀ ଦ୍ରୋଣଙ୍କୁ ନିପାତିତ କରନ୍ତୁ ।

ହେ ମହାରାଜ ! ମହାତ୍ମା ପାଣ୍ଡୁନନ୍ଦନ ଯୁଧିଷ୍ଠିର ଏହିପରି ଆଦେଶ ଦେବାରୁ ସେହିସମସ୍ତ ରଥୀ ଓ ପଦାତି ପ୍ରଭୃତି ସୈନ୍ୟ ଓ ସୈନ୍ୟପତିମାନେ

ଏକତ୍ରିତ ହୋଇ ମହାବେଗରେ ଦ୍ରୋଣବଧାର୍ଥ ଧାବମାନ ହେଲେ । ପାଣ୍ଡବ-ପକ୍ଷୀୟ ବୀରଗଣ ସର୍ବପ୍ରକାର ଉଦ୍‌ଯୋଗ ସହ ସହସା ଆଗମନ କରନ୍ତେ ଶସ୍ତ୍ରଧାରିପ୍ରବର ଦ୍ରୋଣ ତତ୍‌କ୍ଷଣାତ୍ ସେମାନଙ୍କୁ ଯୁଦ୍ଧାର୍ଥ ପ୍ରତିଗ୍ରହ କଲେ । ଦୁର୍ଯ୍ୟୋଧନ ମଧ୍ୟ ଦ୍ରୋଣଙ୍କ ଜୀବନ ରକ୍ଷା ନିମିତ୍ତ ସର୍ବୋଦ୍‌ଯୋଗ ସହିତ କ୍ରୋଧାବିଷ୍ଟ ହୋଇ ପାଣ୍ଡବମାନଙ୍କ ପ୍ରତି ଧାବମାନ ହେଲେ । ଅନନ୍ତର ସେହି ଶ୍ରାନ୍ତବାହନ ଶ୍ରାନ୍ତସୈନ୍ୟ ପାଣ୍ଡବ ଓ କୌରବମାନେ ପରସ୍ପର ଗର୍ଜ୍ଜନପୂର୍ବକ ଘୋର ସମରରେ ପ୍ରବୃତ୍ତ ହେଲେ ।

ହେ ମହାରାଜ ! ସେହି ମହାରଥିମାନେ ଯୁଦ୍ଧ କରି ପରିଶ୍ରାନ୍ତ ହୋଇଥିଲେ । ତହିଁରେ ପୁଣି ନିଦ୍ରାରେ ଅନ୍ଧପ୍ରାୟ ହେବାରୁ ସେହି ସମୟରେ ସେମାନେ ସଂଗ୍ରାମରେ ନିଶ୍ଚେଷ୍ଟବତ୍ ହେଲେ । ସେହି ଘୋରରୂପା ଅତିଶୟ ଭୟାବହା ପ୍ରାଣହାରିଣୀ ତ୍ରିଯାମା ରଜନୀ ସେମାନଙ୍କ ପକ୍ଷରେ ସହସ୍ରଯାମ ତୁଲ୍ୟ ପ୍ରତୀୟମାନ ହେଲା । ସେହି ନିଦ୍ରାନ୍ଧ ଯୋଦ୍ଧାମାନେ ପରସ୍ପର ପରସ୍ପରକୁ ପ୍ରହାର ଓ ନିହତ କରୁକରୁ ଯାମିନୀର ଅର୍ଦ୍ଧଭାଗ ଅତୀତ ହେଲା । କିନ୍ତୁ ସେହି କାଳରେ କି କୌରବ, କି ପାଣ୍ଡବ ଉଭୟପକ୍ଷୀୟ କ୍ଷତ୍ରିୟମାନେ ଅତିଶୟ କାତର ଓ ନିରୁତ୍ସାହ ହୋଇ ଅସ୍ତ୍ରଶସ୍ତ୍ର ପରିତ୍ୟାଗ ପୂର୍ବକ ଗତାସୁ ସଦୃଶ ହେଲେ । ତଥାପି ସେହି କ୍ଷମତାଶାଳୀ ପ୍ରଧାନ ପ୍ରଧାନ ବୀରମାନେ ସ୍ୱଧର୍ମ୍ମକୁ ଅନୁସରଣ କରି ଲଜ୍ଜା ହେବା ସମ୍ଭାବନାରେ ସ୍ୱ ସ୍ୱ ବ୍ୟୂହ ପରିତ୍ୟାଗ କଲେ ନାହିଁ । ପରନ୍ତୁ ଅପରାପର ଯୋଦ୍ଧାମାନେ ନିଦ୍ରାନ୍ଧ ହୋଇ ଅସ୍ତ୍ରଶସ୍ତ୍ର ପରି-ତ୍ୟାଗ କରି କେହି ରଥରେ, କେହି ଗଜରେ, କେହି କେହି ଅବା ଅଶ୍ୱ ଉପରେ ଶୟନ କଲେ ।

ସେହି ସମୟରେ ନରପାଳମାନେ ଏପରି ନିଦ୍ରାତୁର ହେଲେ ଯେ, ଅନ୍ୟାନ୍ୟ ଯୋଦ୍ଧାମାନେ ତାହାଙ୍କୁ ବିନାଶ କଲେ ସୁଦ୍ଧା ସେମାନେ କିଛି ଜାଣି ପାରିଲେ ନାହିଁ । ଅନ୍ୟ କେତେକ ନିଦ୍ରାନ୍ଧ ଯୋଦ୍ଧା ସ୍ୱପ୍ନରେ ଶତ୍ରୁ-ଜ୍ଞାନ କରି ନାନାପ୍ରକାର ବାକ୍ୟ ଉଚ୍ଚାରଣପୂର୍ବକ ଅଜ୍ଞାନତାବଶରୁ ନିଜନିଜକୁ, କେହି କେହି ସ୍ୱପକ୍ଷୀୟମାନଙ୍କୁ, କେହି କେହି ଅବା ଶତ୍ରୁମାନଙ୍କୁ ବିନାଶ କଲେ । ହେ ମହାରାଜ ! ସେହି ସମୟରେ ଶତ୍ରୁମାନଙ୍କ ଅପେକ୍ଷା ଆମ୍ଭ

ପକ୍ଷୀୟ ବହୁସଂଖ୍ୟକ ବୀର ନିଦ୍ରାସକ୍ତ ହୋଇ ମଧ୍ୟ ସମର କାମନାରେ ଅବସ୍ଥିତ ଥିଲେ ।

ସେହି ନିଦାରୁଣ ଅନ୍ଧକାର ସମୟରେ ଅନେକ ନିଦ୍ରାନ୍ଧ ବୀରପୁରୁଷ ପରସ୍ପର ଚରଣଦ୍ୱାରା ବିମର୍ଦ୍ଦିତ ହୋଇ ନିହତ ହେଲେ । ୨୩ । ଅନେକ ବୀର ନିଦ୍ରାରେ ଏପରି ମୋହିତ ହେଲେ ଯେ, ସେମାନେ ଶତ୍ରୁକର୍ତ୍ତୃକ ନିହତ ହେବା ସମୟରେ କିଛିମାତ୍ର ଅବଗତ ହୋଇ ପାରିଲେ ନାହିଁ । ୨୪ । ହେ ମହାରାଜ ! ଏହି ସମୟରେ ବୀଭତ୍ସୁ ଉଭୟପକ୍ଷୀୟ ବୀରମାନଙ୍କର ତାଦୃଶ କଷ୍ଟକର ଅବସ୍ଥା ଅବଲୋକନ କରି ଉଚ୍ଚୈଃସ୍ୱରରେ ଦିଗସମୂହକୁ ନିନାଦିତ କରି କହିଲେ, ହେ କୌରବ ଓ ପାଣ୍ଡବପକ୍ଷୀୟ ବୀରଗଣ ! ତୁମ୍ଭେମାନେ ସମସ୍ତେ ଆପଣା ଆପଣା ବାହନସହିତ ଅତିଶୟ ଶ୍ରାନ୍ତ ଓ ନିଦ୍ରାନ୍ଧ ହୋଇଅଛ, ସୈନ୍ୟମାନେ ମଧ୍ୟ ଅପରିମିତ ଧୂଳିପଟଳ ଓ ପ୍ରଗାଢ଼ ଅନ୍ଧକାରରେ ସମାଚ୍ଛନ୍ନ ହୋଇଅଛନ୍ତି, ଅତଏବ ଯେବେ ତୁମ୍ଭମାନଙ୍କର ଇଚ୍ଛା ହୁଏ, ତେବେ ମୁହୂର୍ତ୍ତକ ପାଇଁ ସମରରୁ ବିରତ ହୋଇ ଏହି ରଣଭୂମିରେ ନିଦ୍ରିତ ହୁଅ । ୨୭ ।

ଅନନ୍ତର ଚନ୍ଦ୍ରମା ଉଦିତ ହେଲେ ତୁମ୍ଭେମାନେ ନିଦ୍ରା ଓ ଶ୍ରାନ୍ତି ନିରାକୃତ କରି ପୁନର୍ବାର ସ୍ୱର୍ଗ କାମନାରେ ଆପଣା ଆପଣା କର୍ତ୍ତବ୍ୟ ସାଧନା କର । ୨୮ । ହେ ବିଶାଂପତେ ! ଧର୍ମଜ୍ଞ ସେନାପତି ଓ ସୈନ୍ୟମାନେ ଧାର୍ମିକପ୍ରବର ଧନଞ୍ଜୟଙ୍କର ସେହି ସଦୟବାକ୍ୟ ଶ୍ରବଣ କରି ତହିଁରେ ସମ୍ମତ ହେଲେ ଓ ପରସ୍ପର ଉଚ୍ଚୈଃସ୍ୱରରେ କହିଲେ, ହେ କର୍ଣ୍ଣ ! କର୍ଣ୍ଣ ! ହେ ମହାରାଜ ! ଦୁର୍ଯ୍ୟୋଧନ ! ଦେଖିବା ହେଉନ୍ତୁ, ପାଣ୍ଡବସୈନ୍ୟମାନେ ସଂଗ୍ରାମରୁ ନିବୃତ୍ତ ହେଉଅଛନ୍ତି, ଆପଣମାନେ ମଧ୍ୟ ସମରରୁ ନିବୃତ୍ତ ହେଉନ୍ତୁ । ୩୦ ।

ସଞ୍ଜୟ କହିଲେ—ହେ ମହାରାଜ ! ଫାଲ୍‌ଗୁନିଙ୍କର ସେହି ବାକ୍ୟ ଅନୁସାରେ କୌରବ ଓ ପାଣ୍ଡବପକ୍ଷୀୟ ସୈନ୍ୟମାନେ ସଂଗ୍ରାମରୁ ବିରତ ହେଲେ । ୩୧ । ସେହି ସମୟରେ ଦେବଗଣ, ମହାତ୍ମା ଋଷିଗଣ ଓ ସମସ୍ତ ସୈନ୍ୟଗଣ ଆହ୍ଲାଦିତ ହୋଇ ଧନଞ୍ଜୟଙ୍କ ସେହି ମହତ୍ୱବାକ୍ୟର ଅତିଶୟ

ପ୍ରଶଂସା କଲେ । ସେହି ଶ୍ରାନ୍ତ ସୈନ୍ୟମାନେ ଅର୍ଜ୍ଜୁନଙ୍କର ତାଦୃଶ ସଦୟ ବାକ୍ୟକୁ ସମାଦର କରି କିଛିକ୍ଷଣ ନିମିତ୍ତ ସମସ୍ତେ ନିଦ୍ରିତ ହେବାକୁ ଉପକ୍ରମ କଲେ । ୩୩ । ହେ ମହାରାଜ ! ଆପଙ୍କପକ୍ଷୀୟ ସୈନ୍ୟମାନେ ବିଶ୍ରାମ ଓ ସୁଖ ପ୍ରାପ୍ତ ହୋଇ ଅର୍ଜ୍ଜୁନଙ୍କର ଏହିପରି ପ୍ରଶଂସା ଓ ମଙ୍ଗଳକାମନା କଲେ । ହେ ମହାବାହୋ, ଧନଞ୍ଜୟ ! ହେ ବୀର, ତୁମ୍ଭଠାରେ ସମସ୍ତ ବେଦବୁଦ୍ଧି ପରାକ୍ରମ, ଧର୍ମ ଓ ଅସ୍ତ୍ରସମୂହ ଦେଦୀପ୍ୟମାନ ହୋଇ ରହିଅଛି, ସମସ୍ତ ପ୍ରାଣିମାନଙ୍କଠାରେ ତୁମ୍ଭର ଦୟା ଅଛି । ଅତଏବ ହେ ପୃଥାନନ୍ଦନ ! ଆମ୍ଭେମାନେ ଆଶ୍ୱସ୍ତ ହୋଇ ତୁମ୍ଭର ଯେପରି ମଙ୍ଗଳ କାମନା କରୁଅଛୁଁ ତାହା ଅବଶ୍ୟ ସିଦ୍ଧ ହେବ, ତୁମ୍ଭେ ଅବିଳମ୍ବେ ସ୍ୱୀୟ ଅଭିଷ୍ଟ ଲାଭ କର ।

ଏହିପରି ସେହି ମହାରଥମାନେ ନରଶାର୍ଦ୍ଦୂଳ ଅର୍ଜ୍ଜୁନଙ୍କର ପ୍ରଶଂସା କରୁକରୁ ନିଦ୍ରାଭିଭୂତ ହୋଇ ତୁଷ୍ଣୀଭାବ ଅବଲମ୍ବନ କଲେ । ୩୭ । ତତ୍ପରେ କେହି ଗଜସ୍କନ୍ଧରେ, କେହି ଅଶ୍ୱପୃଷ୍ଠରେ, କେହି ରଥମଣ୍ଡରେ, କେହି ଅବା ଧରାତଳରେ ଶୟନ କଲେ । ସେହି ସମୟରେ ସେହି ମାନବ-ଗଣ ଗଦାଦିଭୂଷଣ, ଖଡ୍‌ଗ, ପରଶ୍ୱଧ ଓ ପ୍ରାସାଦି ଅସ୍ତ୍ରସହିତ ପୃଥକ୍ ପୃଥକ୍ ନିଦ୍ରିତ ହେଲେ । ୩୯ । ନିଦ୍ରାନ୍ଧ ମାତଙ୍ଗଗଣ ଭୂ-ରେଣୁ-ଭୂଷିତ ପନ୍ନଗ-ଭୋଗସଦୃଶ ଶୁଣ୍ଡଦ୍ୱାରା ଘ୍ରାଣଗ୍ରହଣ ଓ ନିଃଶ୍ୱାସ ପରିତ୍ୟାଗ ପୂର୍ବକ ବସୁ-ନ୍ଧରାକୁ ଶୀତଳ କଲେ । ସେମାନେ ଭୂତଳରେ ନିଦ୍ରିତ ହୋଇ ନିଃଶ୍ୱାସ ତ୍ୟାଗରେ ପ୍ରବୃତ୍ତ ମହାଭୁଜଙ୍ଗଗଣପରିବେଷ୍ଟିତ ଇତସ୍ତତଃବିକୀର୍ଣ୍ଣ ଶୈଳସମୂହ ତୁଲ୍ୟ ଶୋଭମାନ ହେଲେ । ୪୧ । ପୁଣି କାଞ୍ଚନମୟ ଯୋକ୍ତ୍ରସମନ୍ୱିତ କେଶରାଲମ୍ବିତ ଯୁଗକାଷ୍ଠରେ ଆବଦ୍ଧ ତୁରଙ୍ଗଗଣ ଖୁରାଗ୍ରଦ୍ୱାରା କ୍ଷୌଣୀଖନନ ପୂର୍ବକ ସମର ଭୂମିକୁ ବିଷମ କଲେ । ସେମାନେ ରଥାଦି ବହନୀୟ ବସ୍ତୁରେ ନିଯୋଜିତ ଥାଇ ନିଦ୍ରିତ ହେଲେ । ହେ ମହାରାଜ ! ଏହିପରି ଅତିଶୟ ଶ୍ରମାନ୍ୱିତ ସେହି ତୁରଙ୍ଗ, ମାତଙ୍ଗ ଓ ଯୋଧଗଣ ସମରରୁ ନିବୃତ୍ତ ହୋଇ ଗାଢ଼ଭାବରେ ନିଦ୍ରିତ ହେଲେ । ୪୩ । ସେହିକାଳରେ ସେମାନେ ଏପରି ନିଶ୍ଚେଷ୍ଟ ଭାବରେ ନିଦ୍ରିତ ହେଲେ ଯେ, ବୋଧ ହେଲା, ଯେପରି ସୁନିପୁଣ ଶିଳ୍ପିଗଣ ତୁରଙ୍ଗ, ମାତଙ୍ଗ ଓ ମନୁଷ୍ୟସମାକୁଳ ସେହି ରଣଭୂମିକୁ ଚିତ୍ରପଟରେ ଚିତ୍ରିତ କରିଅଛନ୍ତି । ୪୪ ।

ହେ ମହାରାଜ ! ପରସ୍ପର ନିକ୍ଷିପ୍ତ ଶରସମୂହଦ୍ୱାରା କ୍ଷତବିକ୍ଷତାଙ୍ଗ ଓ କୁଣ୍ଡଳାଳଂକୃତ ସେହି ଯୁବା କ୍ଷତ୍ରିୟମାନେ କରିକୁମ୍ଭୋପରି ନିଦ୍ରିତ ହୁଅନ୍ତେ ବୋଧ ହେଲା ଯେପରି କାମିନୀମାନଙ୍କ କୁଚ ଯୁଗଳରେ ସଂଲଗ୍ନ ହୋଇ ଶୟନ କରିଅଛନ୍ତି । ୪୫ । ତଦନନ୍ତର କାମିନୀ ଗଣ୍ଡଦେଶ ସଦୃଶ ପାଣ୍ଡୁବର୍ଣ୍ଣ ନେତ୍ରାନନ୍ଦକର କୁମୁଦନାଥ ଚନ୍ଦ୍ର ମାହେନ୍ଦ୍ର ଦିଗକୁ ଅଳଂକୃତ କଲେ ।୪୬। କେଶରୀ ଯେପରି ବାରଣଯୂଥକୁ ବିଦାରଣ କରେ ସେହିପରି ଚନ୍ଦ୍ର ତିମିର-ରାଶିକୁ ବିଦାରଣପୂର୍ବକ କିରଣରୂପ କେଶରଦ୍ୱାରା ଚତୁର୍ଦ୍ଦିଗକୁ ଉଦ୍ଭାସିତ କରି ପୂର୍ବଦିଗରୂପ ଗୁହାରୁ ନିଃସୃତ ହେଲେ । ହେ ମହାରାଜ ! ହର-ବୃଷଭ ସଦୃଶ ଶୁଭ୍ରକାନ୍ତି, ନବବଧୂର ମନ୍ଦହାସ୍ୟ ସଦୃଶ ମନୋହର, ହିରଣ୍ମୟ ସଦୃଶ ମଣ୍ଡଳାକାର ସେହି ଭଗବାନ୍ କୁମୁଦବାନ୍ଧବ ଚନ୍ଦ୍ରମା ଉଦିତ ହେଲେ । ସେହି ଶଶଲାଞ୍ଛନ ପ୍ରଭୁ ଚନ୍ଦ୍ରମା ମୁହୂର୍ତ୍ତିକ ମଧ୍ୟରେ ସମସ୍ତ ଜ୍ୟୋତି-ପଦାର୍ଥର ପ୍ରଭାକୁ ଗ୍ରାସ କରି ପ୍ରଥମରେ ଅରୁଣ ବର୍ଣ୍ଣ ହେଲେ । ତତ୍ପରେ ସୁବର୍ଣ୍ଣ ବର୍ଣ୍ଣ ଧାରଣ କରି ରଶ୍ମିଜାଲକୁ ଧୀରେ ଧୀରେ ବିସ୍ତାର କଲେ । ୫୦ । ସେହି ସମୟରେ ଚନ୍ଦ୍ର କିରଣ-ପ୍ରଭାଦ୍ୱାରା ତିମିରଜାଲ ନିରାକୃତ କରି କ୍ରମେ ସମସ୍ତ ଦିଗ, ଆକାଶ ଓ ଭୂମଣ୍ଡଳକୁ ବ୍ୟାପ୍ତ କଲେ । ତେତେବେଳେ ସମସ୍ତ ଭୂମଣ୍ଡଳ ମୁହୂର୍ତ୍ତିକ ମଧ୍ୟରେ ଜ୍ୟୋତିର୍ମୟ ହେଲା । ତିମିରରାଶି ଶୀଘ୍ର ତିରୋହିତ ହେଲେ । ୫୨ । ଏହିପରି ଚନ୍ଦ୍ରୋଦୟରେ ଲୋକସକଳ ପ୍ରକାଶ-ମାନ ହୁଅନ୍ତେ, ନିଶାଚରମାନଙ୍କ ମଧ୍ୟରୁ କେହି କେହି ବିଚରଣ କଲେ, କେହି କେହି ଅବା ବିଚରଣ କଲେନାହିଁ ।

ହେ ମହାରାଜ ! ସୂର୍ଯ୍ୟ ରଶ୍ମିଦ୍ୱାରା ଯେପରି ଶତପତ୍ର କାନନ ପ୍ରକାଶମାନ ହୁଏ, ସେହିପରି ସେହି ନିଦ୍ରିତ ସୈନ୍ୟମାନେ ସୁଧାଂଶୁ କିରଣ ଦ୍ୱାରା ପ୍ରବୋଧିତ ହେଲେ । ୫୪ । ପୁଣି ଚନ୍ଦ୍ରୋଦୟରେ ସାଗର ଯେପରି ଉଦ୍ଧୂତ ଓ କ୍ଷୁଭିତ ହୁଏ, ସେହିପରି ସେହି ସୈନ୍ୟସାଗର ଉଦ୍ଧୂତ ଓ କ୍ଷୁଭିତ ହେଲା । ୫୫ । ଅନନ୍ତର ପରଲୋକଗମନାଭିଳାଷୀ ସେହି ବୀରମାନଙ୍କ ମଧ୍ୟରେ ଲୋକବିନାଶ ନିମିତ୍ତ ପୁନର୍ବାର ଘୋର ଯୁଦ୍ଧ ଆରମ୍ଭ ହେଲା ।୫୬।

# ୧୮୫ ଅଧ୍ୟାୟ

ସଞ୍ଜୟ କହିଲେ—ହେ ମହାରାଜ ! ସେହି ସମୟରେ ରାଜା ଦୁର୍ଯ୍ୟୋଧନ ଅମର୍ଷାନ୍ୱିତ ହୋଇ ଦ୍ରୋଣାଚାର୍ଯ୍ୟଙ୍କ ସମୀପକୁ ଗମନ କରି ତାହାଙ୍କର ତେଜ ଓ ହର୍ଷର ଉଦ୍ଦୀପନପୂର୍ବକ ତାହାଙ୍କୁ ଏହିପରି କହିଲେ । ହେ ଆଚାର୍ଯ୍ୟ ! ରଣସ୍ଥଳରେ ଶତ୍ରୁଗଣ ଦୀନମନା ଓ ଶ୍ରାନ୍ତ ହୋଇ ବିଶ୍ରାମାର୍ଥ ପ୍ରାର୍ଥନା କଲେ । ଲବ୍ଧଲକ୍ଷ୍ୟ ବୀରମାନଙ୍କର ସେହିକାଳରେ କଦାଚ କ୍ଷମା କରିବା କର୍ତ୍ତବ୍ୟ ନୁହେ । ବଳବତ୍ତର ପାଣ୍ଡବମାନେ ଶ୍ରାନ୍ତ ହୋଇଥିଲେ ହେଁ ସେମାନଙ୍କୁ କେବଳ ଆପଣଙ୍କ ପ୍ରିୟକାମନାରେ ଆମ୍ଭେମାନେ କ୍ଷମା କରିଅଛୁଁ । ୩ । ଦେଖନ୍ତୁ, ଆପଣଙ୍କ କର୍ତ୍ତୃକ ରକ୍ଷିତ ହୋଇ ପାଣ୍ଡବଗଣ ପୁନଃ ପୁନଃ ପରିବର୍ଦ୍ଧିତ ହେଉଅଛନ୍ତି ଓ ଆମ୍ଭେମାନେ କ୍ରମଶଃ ତେଜ ଓ ବଳବୀର୍ଯ୍ୟଶୂନ୍ୟ ହେଉଅଛୁ । ୪ ।

ଆମ୍ଭେ ନିଶ୍ଚୟ ଜାଣୁ ଯେ ଏହି ଜଗତରେ ବ୍ରାହ୍ମ ଓ ଦିବ୍ୟ ପ୍ରଭୃତି ଯେତେପ୍ରକାର ଅସ୍ତ୍ରଶସ୍ତ୍ର ଅଛି, ସେ ସମସ୍ତ ଆପଣଙ୍କଠାରେ ବିଦ୍ୟମାନ ଅଛି । ଅତଏବ ଆମ୍ଭେ ଆପଣଙ୍କ ନିକଟରେ ସତ୍ୟ କହୁଅଛୁଁ ଯେ, ଆପଣ ସଂଗ୍ରାମରେ ପ୍ରବୃତ୍ତ ହେଲେ କି ପାଣ୍ଡବମାନେ କି ଆମ୍ଭେମାନେ କିମ୍ବା ପୃଥିବୀସ୍ଥ ଅପରାପର ଧନୁର୍ଦ୍ଧରାଗ୍ରଗଣ୍ୟମାନେ କେହି ଆପଣଙ୍କ ତୁଲ୍ୟ ହୋଇ ପାରିବେନାହିଁ । ହେ ଦ୍ୱିଜୋତ୍ତମ ! ଆପଣଙ୍କୁ ଯେପରି ଦିବ୍ୟାସ୍ତ୍ରସମୂହ ବିଦିତ ଅଛି, ତଦ୍ଦ୍ୱାରା ଦେବ, ଦାନବ ଓ ଗନ୍ଧର୍ବସମବେତ ଏହି ସମସ୍ତ ଲୋକଙ୍କୁ ଆପଣ ବିନାଶ କରିପାରନ୍ତି । ୭ । ପାଣ୍ଡବମାନେ ଆପଣଙ୍କଠାରୁ ବିଶେଷରୂପେ ହୀନ ହୋଇଲେହେଁ ଶିଷ୍ୟତ୍ୱ ହେତୁରୁ ଅଥବା ଆମ୍ଭର ଦୁର୍ଭାଗ୍ୟ ବଶତଃ ଆପଣ ସର୍ବଦା ସେମାନଙ୍କୁ କ୍ଷମା କରନ୍ତି । ୮ ।

ସଞ୍ଜୟ କହିଲେ, ହେ ମହାରାଜ ! ମହାବୀର ଦ୍ରୋଣ ଆପଣଙ୍କ ପୁତ୍ର ଦୁର୍ଯ୍ୟୋଧନଙ୍କ କର୍ତ୍ତୃକ ଏହିପରି କୁପିତ ଓ ଉତ୍ତେଜିତ ହୋଇ କ୍ରୋଧରେ ତାହାଙ୍କୁ ଏହିପରି ଉତ୍ତର ଦେଲେ । ହେ ଦୁର୍ଯ୍ୟୋଧନ ! ଆମ୍ଭେ ବୃଦ୍ଧ ହୋଇ ମଧ୍ୟ ପରମଶକ୍ତି ଅନୁସାରେ ଯୁଦ୍ଧ କରୁଅଛୁଁ । ଅତଃପର ଆମ୍ଭେ ତୁମ୍ଭର ଜୟାକାଂକ୍ଷୀ ହୋଇ ଅତି ନୀଚ କାର୍ଯ୍ୟରେ ପ୍ରବୃତ୍ତ ହେବୁଁ । ୧୦ ।

ଏହି ସମୁଦାୟ ସୈନ୍ୟମାନେ ଅସ୍ତ୍ର ବିଷୟରେ ଅନଭିଜ୍ଞ । ଆମ୍ଭେ ଅସ୍ତ୍ରାଭିଜ୍ଞ ହୋଇ ସେମାନଙ୍କୁ ବିନାଶ କରିବୁଁ । ଯେତେବେଳେ ତୁମ୍ଭେ ଏହିପରି ବ୍ୟକ୍ତ କରୁଅଛ ତେତେବେଳେ ଶୁଭ ହେଉ ବା ଅଶୁଭ ହେଉ ଆମ୍ଭେ ତୁମ୍ଭ ବାକ୍ୟ ଅନୁସାରେ ଅବଶ୍ୟ ତାହା ସଂପାଦନ କରିବୁଁ । ହେ ରାଜନ୍ ! ଏହି ଆୟୁଧ ସ୍ପର୍ଶକରି ଆମ୍ଭେ ଶପଥ କରୁଅଛୁଁ ଯେ ଅଦ୍ୟ ଆମ୍ଭେ ପରାକ୍ରମ ପ୍ରକାଶ ପୂର୍ବକ ସଂଗ୍ରାମରେ ସମସ୍ତ ପାଞ୍ଚାଳମାନଙ୍କୁ ବିନାଶ କରି ତପୂରେ କବଚ ପରିତ୍ୟାଗ କରିବୁଁ । ହେ କୌରବ ! ତୁମ୍ଭେ ଯେ କୁନ୍ତୀନନ୍ଦନ ଧନଞ୍ଜୟଙ୍କୁ ସଂଗ୍ରାମରେ ଶାନ୍ତ ବୋଲି ବୋଧ କରୁଅଛ, ତାହା ତୁମ୍ଭର କେବଳ ଭ୍ରମ । ଆମ୍ଭେ ତାହାଙ୍କର ପ୍ରକୃତ ବାହୁବଳ ବିଷୟ କୀର୍ତ୍ତନ କରୁଅଛୁଁ ଶ୍ରବଣ କର ।

ଧନଞ୍ଜୟ କୁପିତ ହେଲେ ଦେବ, ଗନ୍ଧର୍ବ, ଯକ୍ଷ ବା ରାକ୍ଷସ କେହି ତାହାଙ୍କୁ ପରାଜୟ କରିବାକୁ ଉତ୍ସାହୀ ହୁଅନ୍ତି ନାହିଁ । ଖାଣ୍ଡବ ଦହନ ସମୟରେ ଭଗବାନ ସୁରପତି ଇନ୍ଦ୍ର ବାରିବର୍ଷଣ କରନ୍ତେ ସେ ମହାତ୍ମା କେବଳ ଶସ୍ତ୍ର ପ୍ରଭାବରେ ତାହାଙ୍କୁ ନିବାରଣ କରିଥିଲେ । ସେହି ସମୟରେ ଯକ୍ଷ, ନାଗ ଓ ଦାନବ ପ୍ରଭୃତି ଯେ କେହି ବଳଦର୍ପିତ ହୋଇ ତାହାଙ୍କର ଅଭିମୁଖୀନ ହୋଇଥିଲେ ସେହି ପୁରୁଷଶ୍ରେଷ୍ଠ ଅର୍ଜ୍ଜୁନ ସେ ସମସ୍ତଙ୍କୁ ନିହତ କରିଥିଲେ । ତାହା ତୁମ୍ଭଙ୍କୁ ବିଦିତ ଅଛି । ଘୋଷଯାତ୍ରା କାଳରେ ଯେତେ-ବେଳେ ଚିତ୍ରସେନାଦି ଗନ୍ଧର୍ବମାନେ ତୁମ୍ଭମାନଙ୍କୁ ହରଣ କରି ନେଇଥିଲେ, ତେତେବେଳେ ସେହି ଦୃଢ଼ଧନ୍ୱା ଧନଞ୍ଜୟ ସେମାନଙ୍କୁ ପରାଜିତ କରି ତୁମ୍ଭ-ମାନଙ୍କୁ ବିମୁକ୍ତ କରିଥିଲେ । ପୁଣି ନିବାତକବଚାଦି ଦାନବଗଣ ଦେବ-ଗଣଙ୍କର ଚିରକାଳରୁ ଶତ୍ରୁ ଥିଲେ । ଦେବତାମାନେ କୌଣସି ପ୍ରକାରେ ସେମାନଙ୍କୁ ସଂହାର କରିପାରୁ ନ ଥିଲେ । କିନ୍ତୁ ପୁରୁଷଶ୍ରେଷ୍ଠ ଧନଞ୍ଜୟ ରଣସ୍ଥଳରେ ସେମାନଙ୍କୁ ଓ ହିରଣ୍ୟପୁରବାସୀ ସହସ୍ର ଦାନବମାନଙ୍କୁ ନିପାତିତ କରିଅଛନ୍ତି । ୧୯ ।

ଅତଏବ ତାଦୃଶ ଅର୍ଜ୍ଜୁନଙ୍କୁ ମନୁଷ୍ୟ କିପରି ପରାଜିତ କରିପାରିବ ? ହେ ବିଶାମ୍ପତେ, ଦୁର୍ଯ୍ୟୋଧନ ! ଆମ୍ଭେମାନେ ବିଶେଷ ଯତ୍ନବାନ ହେଲେ ହେଁ, ସେ ଯେପରି ତୁମ୍ଭମାନଙ୍କର ସୈନ୍ୟମାନଙ୍କୁ କ୍ଷୟ କରୁଅଛନ୍ତି, ତାହା ତୁମ୍ଭେ ସ୍ୱୟଂ ପ୍ରତ୍ୟକ୍ଷ କରୁଅଛ ।

ସଞ୍ଜୟ କହିଲେ—ହେ ମହାରାଜ ! ମହାବୀର ଦ୍ରୋଣ ଉପର୍ଯ୍ୟୁକ୍ତ ପ୍ରକାରେ ଧନଞ୍ଜୟଙ୍କର ପ୍ରଶଂସା କଲାରୁ ଦୁର୍ଯ୍ୟୋଧନ କୁପିତ ହୋଇ ପୁନର୍ବାର ଏହି କଥା କହିଲେ ଯେ, ଅଦ୍ୟ ଆମ୍ଭେ, ଦୁଃଶାସନ, କର୍ଣ୍ଣ ଓ ଆମ୍ଭର ମାତୁଳ ଶକୁନି ଏହି କେତେ ଜଣ ଏକତ୍ରିତ ହୋଇ ସୈନ୍ୟ-ମାନଙ୍କୁ ଦୁଇଭାଗରେ ବିଭକ୍ତ କରି ଯୁଦ୍ଧରେ ଅର୍ଜୁନଙ୍କୁ ବିନାଶ କରିବୁଁ । ଭରଦ୍ୱାଜନନ୍ଦନ ଦ୍ରୋଣାଚାର୍ଯ୍ୟ ଦୁର୍ଯ୍ୟୋଧନଙ୍କର ଏହି ବାକ୍ୟ ଶ୍ରବଣ କରି କୌଣସି ପ୍ରତିବାଦ ନ କରି ହସି ହସି କହିଲେ, ହେ ମହାରାଜ ! ତୁମ୍ଭର ମଙ୍ଗଳ ହେଉ । କିନ୍ତୁ ଅନଳପ୍ରଭାବ ଓ ସଂଗ୍ରାମରେଅକ୍ଷୟ କ୍ଷତ୍ରିୟ-ଶ୍ରେଷ୍ଠ ଗାଣ୍ଡୀବଧନ୍ୱା ଧନଞ୍ଜୟଙ୍କୁ ବିନାଶ କରିପାରିବା ଭଳି କ୍ଷତ୍ରିୟ ଏ ଭୂମଣ୍ଡଳରେ କିଏ ଅଛି ? ଅର୍ଜୁନ ସଶସ୍ତ୍ର ଥିଲେ ଧନାଧିପତି କୁବେର, ଦେବରାଜ ଇନ୍ଦ୍ର, ଲୋକାନ୍ତକର କୃତାନ୍ତ, ବରୁଣ, ଅସୁର, ଭୁଜଙ୍ଗ ଓ ରାକ୍ଷସ ପ୍ରଭୃତି ମଧ୍ୟ ତାହାଙ୍କୁ ସଂହାର କରିବାକୁ ସମର୍ଥ ନୁହନ୍ତି ।

ହେ ମହାରାଜ ! ତୁମ୍ଭେ ଯେଉଁ କଥା କହିଲ, ମୂଢ଼ ଲୋକେ ଏହିପରି ଅସମ୍ଭବ କଥା କହିଥାନ୍ତି । କେଉଁ ବ୍ୟକ୍ତି ସଂଗ୍ରାମରେ ଅର୍ଜୁନଙ୍କ ସହିତ ସଂଗତ ହୋଇ ନିର୍ବିଘ୍ନରେ ଗୃହକୁ ପ୍ରସ୍ଥାନ କରିପାରେ ? ତୁମ୍ଭେ ଅତିଶୟ ପାପମତି ଓ କ୍ରୂରାତ୍ମା । ତୁମ୍ଭେ ସମସ୍ତଙ୍କ ପ୍ରତି ଶଙ୍କା କର । ଏଣୁ ତୁମ୍ଭର ହିତନିରତ ବ୍ୟକ୍ତିମାନଙ୍କ ପ୍ରତି ତୁମ୍ଭେ ଏହିପରି କଟୂକ୍ତି ପ୍ରୟୋଗ କରିଥାଅ । ହେ ମହାରାଜ ! ତୁମ୍ଭେ ତ ସତ୍‌କୁଳସମ୍ଭୂତ କ୍ଷତ୍ରିୟ ଓ ସେହି କୁନ୍ତୀନନ୍ଦନ ଧନଞ୍ଜୟଙ୍କ ସହିତ ଯୁଦ୍ଧ କରିବାକୁ ତୁମ୍ଭେ ସର୍ବଦା ଅଭିଳାଷ କରିଥାଅ । ଅତଏବ ତୁମ୍ଭେ ସ୍ୱକୀୟ କାର୍ଯ୍ୟ ସାଧନାର୍ଥ ସ୍ୱୟଂ ସଂଗ୍ରାମକୁ ଗମନ କରି ଅବିଳମ୍ବେ ତାହାଙ୍କୁ ସଂହାର କର । ବିଶେଷତଃ ତୁମ୍ଭେ ଏହି ଶତ୍ରୁତାର ମୂଳସ୍ୱରୂପ ଅଟ । ତେବେ ତୁମ୍ଭର ଏହିସମସ୍ତ ନିରପରାଧ କ୍ଷତ୍ରିୟମାନଙ୍କୁ ବିନାଶ କରାଇବାରେ ପ୍ରୟୋଜନ କଅଣ ? ତୁମ୍ଭେ ସ୍ୱୟଂ ଅର୍ଜୁନଙ୍କ ସହିତ ସଂଗ୍ରାମରେ ପ୍ରବୃତ୍ତ ହୁଅ । ହେ ଗାନ୍ଧାରୀନନ୍ଦନ ! ସମସ୍ତ ଅନିଷ୍ଟର ମୂଳସ୍ୱରୂପ ଦ୍ୟୂତକ୍ରୀଡ଼ା-ବ୍ୟବସାୟୀ ପ୍ରାଜ୍ଞ ଓ କ୍ଷତ୍ରିୟଧର୍ମ୍ମନିରତ ତୁମ୍ଭର ଏହି ମାତୁଳ ଶକୁନି ମଧ୍ୟ ଧନଞ୍ଜୟଙ୍କ ପ୍ରତିପକ୍ଷରେ ଯାତ୍ରା କରନ୍ତୁ । ସେ କୁଟିଳ, କପଟମତି, ଶଠ ଓ ପ୍ରତାରକ, ଅକ୍ଷବିଦ୍ୟାରେ ମଧ୍ୟ କୁଶଳ । ଏ ପଣ ରଖି ଦ୍ୟୂତକ୍ରୀଡ଼ା କରିଥିଲେ । ବର୍ତ୍ତମାନ ସମରରେ ପାଣ୍ଡବମାନଙ୍କୁ

ଅବଶ୍ୟ ପରାଜିତ କରିବେ । ପୁଣି ତୁମ୍ଭେ କର୍ଣ୍ଣଙ୍କ ସହିତ ହୃଷ୍ଟଚିତ୍ତରେ ଅଜ୍ଞାନତା ବଶତଃ ବାରମ୍ବାର ଧୃତରାଷ୍ଟ୍ରଙ୍କର ସମକ୍ଷରେ ଏହିପରି ନିରର୍ଥକ ଶ୍ଲାଘା କରିଥିଲ ଯେ, ହେ ପିତଃ ! ଆମ୍ଭେ, କର୍ଣ୍ଣ ଓ ଆମ୍ଭର ଭ୍ରାତା ଦୁଃଶାସନ ଏହି ତିନିଜଣ ସମବେତ ହୋଇ ସମରରେ ପାଣ୍ଡୁପୁତ୍ରମାନଙ୍କୁ ସଂହାର କରିବୁଁ । ପୂର୍ବେ ପ୍ରାୟ ପ୍ରତି ସଭାରେ ତୁମ୍ଭର ଏହିପରି ଶ୍ଲାଘାପୂର୍ଣ୍ଣ ବଚନ ଶ୍ରବଣ କରିଥିଲୁଁ । ବର୍ତ୍ତମାନ କର୍ଣ୍ଣାଦିଙ୍କ ସହିତ ସମବେତ ହୋଇ ସେହି ପ୍ରତିଜ୍ଞା ପୂରଣ କରି ଆପଣା ବାକ୍ୟକୁ ସତ୍ୟ କର । ଦେଖ, ଦୁର୍ଜ୍ଜୟ ଶତ୍ରୁ ପାଣ୍ଡୁପୁତ୍ର ଧନଞ୍ଜୟ ତୁମ୍ଭ ଅଗ୍ରରେ ଅବସ୍ଥାନ କରୁଅଛନ୍ତି । ୩୫ । ବର୍ତ୍ତମାନ ତୁମ୍ଭେ କ୍ଷତ୍ରିୟ ଧର୍ମ୍ମାନୁସାରେ କାର୍ଯ୍ୟ କର । ତୁମ୍ଭର ଯଦି ଜୟ ନ ହୁଏ, ତଥାପି ଏସମୟରେ ଜୟଲାଭ ଅପେକ୍ଷା ବିନାଶ ତୁମ୍ଭପକ୍ଷରେ ଶ୍ଲାଘ୍ୟତର ।

ହେ ଦୁର୍ଯ୍ୟୋଧନ ! ଏହି ପୃଥିବୀରେ ତୁମ୍ଭେ ଦାନ, ଅଧ୍ୟୟନ ଓ ଭୋଗାଦି ଅନେକ କରିଅଛ ଓ ଅଭିଳଷିତ ସମସ୍ତ ଐଶ୍ୱର୍ଯ୍ୟ ମଧ୍ୟ ଲାଭ କରିଅଛ । ଦେବ ଓ ପିତୃଋଣମୁକ୍ତ ହୋଇ ବର୍ତ୍ତମାନ କୃତକାର୍ଯ୍ୟ ହୋଇଅଛ । ଅତଏବ ଆଉ ଭୟ ନ କରି ସ୍ୱୟଂ ଅର୍ଜ୍ଜୁନଙ୍କ ସହିତ ସମରରେ ପ୍ରବୃତ୍ତ ହୁଅ ।

ମହାବୀର ଦ୍ରୋଣାଚାର୍ଯ୍ୟ ରାଜା ଦୁର୍ଯ୍ୟୋଧନଙ୍କୁ ଏହି କଥା କହି ଯେଉଁଠାରେ ଶତ୍ରୁମାନେ ଯୁଦ୍ଧାର୍ଥ ପ୍ରସ୍ତୁତ ଥିଲେ, ସେହିଠାରେ ଉପସ୍ଥିତ ହେଲେ । ଦୁର୍ଯ୍ୟୋଧନ ମଧ୍ୟ ସୈନ୍ୟମାନଙ୍କୁ ଦୁଇଭାଗରେ ବିଭକ୍ତ କରି ସଂଗ୍ରାମରେ ପ୍ରବୃତ୍ତ ହେଲେ । ୩୭ ।

---

# ୧୮୭ ଅଧ୍ୟାୟ

ସଞ୍ଜୟ କହିଲେ—ହେ ମହାରାଜ ! ରଜନୀର ତୃତୀୟଭାଗ ଗତ ହେଲାରୁ ଚତୁର୍ଥଭାଗରେ ସେହି ପ୍ରହୃଷ୍ଟଚିତ୍ତ କୌରବ ଓ ପାଣ୍ଡବମାନଙ୍କ ମଧ୍ୟରେ ଘୋରତର ଯୁଦ୍ଧ ଉପସ୍ଥିତ ହେଲା । ୧ । ତଦନନ୍ତର ଅରୁଣ ଚନ୍ଦ୍ରଙ୍କ ପ୍ରଭାକୁ ହରଣ କରି ଓ ଦିବାକରଙ୍କର ଅଗ୍ରବର୍ତ୍ତୀ ହୋଇ ତାହାଙ୍କୁ

ତାମ୍ରବର୍ଣ୍ଣଯୁକ୍ତ କରି ଉଦିତ ହେଲେ । ୨ । ରବିମଣ୍ଡଳ ଅରୁଣ କିରଣରେ ଲୋହିତବର୍ଣ୍ଣ ହୋଇ ତପ୍ତକାଞ୍ଚନନିର୍ମିତ ଚକ୍ରସଦୃଶ ପୂର୍ବଦିଗରେ ବିରାଜିତ ହେଲା । ୩ ।

ସେହି ସମୟରେ କୌରବ ଓ ପାଣ୍ଡବପକ୍ଷୀୟ ଯୋଦ୍ଧାମାନେ ଗଜାଙ୍ଗ, ତୁରଙ୍ଗ ଓ ମନୁଷ୍ୟ-ଯାନସମୂହ ପରିତ୍ୟାଗ ପୂର୍ବକ ପ୍ରଭାକରଙ୍କର ଅଭିମୁଖୀନ ହୋଇ ସନ୍ଧ୍ୟୋପାସନା ନିମିତ୍ତ ଯୋଡ଼ ହସ୍ତରେ ଦଣ୍ଡାୟମାନ ହେଲେ । ୪ । ସେହି ସମୟରେ କୌରବ ସୈନ୍ୟମାନେ ଦ୍ୱିଧାବିଭକ୍ତ ହୁଅନ୍ତେ ଦ୍ରୋଣ ଦୁର୍ଯୋଧନଙ୍କୁ ପୁରୋବର୍ତ୍ତୀ କରି ସୋମକ ପାଣ୍ଡବ ଓ ପାଞ୍ଚାଳମାନଙ୍କ ପ୍ରତି ଧାବମାନ ହେଲେ । ୫ । କୃଷ୍ଣ କୌରବମାନଙ୍କୁ ଦ୍ୱିଧାବିଭକ୍ତ ହେବାର ଦେଖି ଅର୍ଜ୍ଜୁନଙ୍କୁ କହିଲେ, ହେ ସବ୍ୟସାଚିନ୍ ! ତୁମ୍ଭେ ଏହି ଶତ୍ରୁମାନଙ୍କୁ ବାମଦିଗସ୍ଥ କର । ୬ ।

ଅର୍ଜ୍ଜୁନ କେଶବଙ୍କୁ କହିଲେ, ସେହି ପ୍ରକାର କର । ଏହା କହି ଧନୁର୍ଦ୍ଧରାଗ୍ରଗଣ୍ୟ ଦ୍ରୋଣ ଓ କର୍ଣ୍ଣଙ୍କୁ ଆପଣାର ବାମଭାଗସ୍ଥ କଲେ । ୭ ।

ପରସ୍ପର ବିଜୟୀ ଭୀମସେନ କୃଷ୍ଣଙ୍କର ଅଭିପ୍ରାୟ ଅବଗତ ହୋଇ ସମରାଙ୍ଗନସ୍ଥିତ ଅର୍ଜ୍ଜୁନଙ୍କୁ କହିଲେ, ହେ ଅର୍ଜ୍ଜୁନ ! ହେ ବୀଭତ୍ସୋ ! ଆମ୍ଭ ବାକ୍ୟ ଶ୍ରବଣ କର । କ୍ଷତ୍ରିୟ-କାମିନୀମାନେ ଯେଉଁ କାର୍ଯ୍ୟ ସାଧନ ନିମନ୍ତେ ପୁତ୍ରପ୍ରସବ କରନ୍ତି, ସେହି କାର୍ଯ୍ୟ ସାଧନ କରିବାର ସମୟ ଉପସ୍ଥିତ ହୋଇଅଛି । ହେ ଯୋଧଶ୍ରେଷ୍ଠ ! ଏପରି ସମୟ ପ୍ରାପ୍ତ ହୋଇ ଯଦି ତୁମ୍ଭେ ଶ୍ରେୟଃସାଧନ ନ କର ତେବେ ଅତିଶୟ ନୃଶଂସତାର କାର୍ଯ୍ୟ ହେବ ଓ ତୁମ୍ଭେ ଲୋକମଧ୍ୟରେ ଅସମ୍ମାନିତ ହେବ । ୧୦ । ଅତଏବ ତୁମ୍ଭେ ଏହି ବାମଭାଗସ୍ଥିତ କୌରବମାନଙ୍କୁ ଭେଦକରି ସେମାନଙ୍କୁ ତୁମ୍ଭର ଦକ୍ଷିଣ-ଦିଗରେ ରଥ ଓ ସ୍ୱୀୟ ବୀର୍ଯ୍ୟ ପ୍ରଭାବରେ ସତ୍ୟ, ଧର୍ମ୍ମ, ଯଶ ଓ ଶ୍ରୀ ନିକଟରେ ଅନୃଣୀ ହୁଅ । ୧୧ ।

ହେ ମହାରାଜ ! ମହାବୀର ଅର୍ଜ୍ଜୁନ, ବାସୁଦେବ ଓ ବୃକୋଦରଙ୍କର ଏହିରୂପ ଆଦେଶ ଅନୁସାରେ ଦ୍ରୋଣ ଓ କର୍ଣ୍ଣଙ୍କୁ ଅତିକ୍ରମ ପୂର୍ବକ ସମସ୍ତ ସୈନ୍ୟମାନଙ୍କୁ ଆକ୍ରମଣ କଲେ । ୧୨ । ସେହି ପରାକ୍ରାନ୍ତ ବୀରଶ୍ରେଷ୍ଠ

ଦ୍ୱାରା କ୍ଷତ୍ରିୟଶ୍ରେଷ୍ଠମାନଙ୍କୁ ଦଗ୍ଧ କରୁ କରୁ ସମସ୍ତଙ୍କୁ ଆଗମନ କରନ୍ତେ ପ୍ରବୃଦ୍ଧ ପର୍ବତକୁ ଯେପରି କେହି ନିବାରଣ କରିପାରନ୍ତି ନାହିଁ, ସେହିପରି କୌରବପକ୍ଷୀୟ ପ୍ରଧାନ ପ୍ରଧାନ ଯୋଦ୍ଧାମାନେ ଯଥାସାଧ୍ୟ ଯତ୍ନପର ହୋଇ ମଧ୍ୟ ତାହାଙ୍କୁ ନିବାରଣ କରିପାରିଲେ ନାହିଁ । ତେତେବେଳେ ଦୁର୍ଯ୍ୟୋଧନ, କର୍ଣ୍ଣ ଓ ସୁବଳନନ୍ଦନ ଶକୁନି କୁନ୍ତୀପୁତ୍ର ଧନଞ୍ଜୟଙ୍କ ପ୍ରତି ଅସଂଖ୍ୟ ଶରବୃଷ୍ଟି କଲେ । ସବ୍ୟସାଚୀବର ଅର୍ଜ୍ଜୁନ ସେମାନଙ୍କର ନିକ୍ଷିପ୍ତ ଶସ୍ତ୍ରସମୂହକୁ ନିଷ୍ଫଳ କରି ଶରଜାଲ ବିକିରଣ କରିବାରେ ପ୍ରବୃତ୍ତ ହେଲେ ।

ଏହିପରି ସେ ହସ୍ତଲାଘବପ୍ରଯୁକ୍ତ ସେମାନଙ୍କର ଅସ୍ତ୍ରସମୂହକୁ ନିରାକୃତ କରି ପ୍ରତ୍ୟେକଙ୍କୁ ଦଶଦଶଗୋଟି ଶରରେ ବିଦ୍ଧ କଲେ । ସେହି ସମୟରେ ଧୂଳିପଟଳ, ନିରନ୍ତର ଶସ୍ତ୍ରବୃଷ୍ଟି, ଅନ୍ଧକାର ଓ ଭୟଙ୍କର ବୀରନାଦ ଏକତ୍ର ମିଳିତ ହୋଇ ଭୀଷଣ ଶବ୍ଦ ସମୁତ୍ଥିତ ହେଲା । ତଦ୍ଦ୍ୱାରା ନଭୋମଣ୍ଡଳ, ଭୂମଣ୍ଡଳ ଓ ଦିଙ୍ମଣ୍ଡଳ କିଛି ହିଁ ଦୃଷ୍ଟିଗୋଚର ହେଲା ନାହିଁ । ପୁଣି ସୈନ୍ୟମାନଙ୍କର ପାଦୋତ୍କ୍ଷିପ୍ତ ଧୂଳିପଟଳ ପ୍ରଭାବରୁ ସମସ୍ତେ ଅନ୍ଧପ୍ରାୟ ହେଲେ । ଏହି ସମୟରେ ଶତ୍ରୁମାନେ ଓ ଆମ୍ଭେମାନେ ପରସ୍ପର କେହି କାହାରିକୁ ଚିହ୍ନିପାରିଲୁଁ ନାହିଁ । ୧୯ । ଭୂପାଳମାନେ କେବଳ ଅନୁମାନ ଦ୍ୱାରା ଯୁଦ୍ଧ କଲେ । ରଥୀମାନେ ରଥଭ୍ରଷ୍ଟ ହୋଇ ପରସ୍ପର ପରସ୍ପର ବାହୁ ବର୍ମ୍ମ ଓ କେଶାକର୍ଷଣପୂର୍ବକ ସମରରେ ସମାସକ୍ତ ହେଲେ । କୌଣସି କୌଣସି ରଥୀ ଅଶ୍ୱ ଓ ସାରଥିବିହୀନ ଓ ଭୟପୀଡ଼ିତ ହୋଇ ଜୀବିତ ଥାଉଁ ଥାଉଁ ନିଶ୍ଚେଷ୍ଟ ଭାବରେ ପଡ଼ିରହିବାରୁ ବୋଧ ହେଲା ଯେପରି ସମସ୍ତେ ନିହତ ହୋଇଅଛନ୍ତି । ଏହିପରି ଅଶ୍ୱାରୋହୀମାନେ ଅଶ୍ୱ ସହିତ ପର୍ବତା-କାର ନିହତ ହସ୍ତିମାନଙ୍କ ଶରୀରରେ ସଂଲଗ୍ନ ହୋଇ ଗତାସୁସଦୃଶ ପ୍ରତୀୟମାନ ହେଲେ ।

ଏହି ସମୟରେ ଦ୍ରୋଣାଚାର୍ଯ୍ୟ ରଣସ୍ଥଳରୁ ଉତ୍ତର ଦିଗକୁ ଗମନ କରି ଧୂମଶୂନ୍ୟ ଜ୍ୱଳନ୍ତଅନଳସଦୃଶ ଅବସ୍ଥାନ କଲେ । ପାଣ୍ଡବସୈନ୍ୟମାନେ ତାହାଙ୍କୁ ଉତ୍ତର ଦିଗରେ ଅବସ୍ଥାନ କରିବାର ଦେଖି ତ୍ରାସରେ କମ୍ପିତ ହେଲେ ।

ହେ ମହାରାଜ ! ସେହି ସମୟରେ ଶତ୍ରୁମାନେ ଆଚାର୍ଯ୍ୟଙ୍କୁ ଦିବ୍ୟାସ୍ତ୍ର-ସମନ୍ୱିତ ଓ ପ୍ରଭାରେ ଜ୍ୱଳଦଗ୍ନିସଦୃଶ ପ୍ରଦୀପ୍ତ ଅବଲୋକନ କରି ବାସିତ, ମଳିନ ଓ ବିଚଳିତ ହେଲେ । ଦାନବଗଣ ଯେପରି ଦେବରାଜ ଇନ୍ଦ୍ରଙ୍କର ପରାଜୟ ବିଷୟରେ ହତାଶ ହୋଇଥିଲେ, ସେହିପରି ପାଣ୍ଡବମାନେ ଶତ୍ରୁସୈନ୍ୟ ଆହ୍ୱାନକାରୀ ଗଜଚିତମଦମାତଙ୍ଗତୁଲ୍ୟ ଆଚାର୍ଯ୍ୟଙ୍କୁ ପରାଜୟ କରିବା ବିଷୟରେ ନିରାଶ ହେଲେ । ନରପତିମାନଙ୍କ ମଧ୍ୟରୁ ଅନେକେ ନିରୁତ୍ସାହ ଓ ବିସ୍ମିତ ହେଲେ । କୌଣସି କୌଣସି ନିର୍ଭୀକଚିତ୍ତ ଶୂର କ୍ରୁଦ୍ଧ ଓ ଅସହିଷ୍ଣୁ ହୋଇ କରଦ୍ୱାରା କରାଗ୍ର ନିଷ୍ପେଷଣ କଲେ । କେହି କ୍ରୋଧମୂର୍ଚ୍ଛିତ ହୋଇ ଅଧର ଦଂଶନ କଲେ । କେହି ଅବା ଆୟୁଧ ବିକ୍ଷେପଣ ଓ କେହି କେହି ଭୁଜମର୍ଦ୍ଦନ କଲେ । ୨୯ । କୌଣସି କୌଣସି ମହାବଳଶାଳୀ ବୀର ଜୀବନରେ ନିରପେକ୍ଷ ହୋଇ ବେଗରେ ଦ୍ରୋଣଙ୍କ ପ୍ରତି ଧାବିତ ହେଲେ । ପାଞ୍ଚାଳମାନେ ଦ୍ରୋଣ ବାଣରେ ନିପୀଡ଼ିତ ଓ ଅତିଶୟ ବେଦନାତୁର ହୋଇ ଘୋରତର ସଂଗ୍ରାମରେ ସମାସକ୍ତ ହେଲେ । ଏହି ସମୟରେ ରଣଦୁର୍ମ୍ମଦ ଦ୍ରୋଣାଚାର୍ଯ୍ୟ ତାଦୃଶ ପ୍ରବଳବେଗରେ ସମରା-ଙ୍ଗଣରେ ବିଚରଣ କରନ୍ତେ ପାଞ୍ଚାଳରାଜ ଦ୍ରୁପଦ ଓ ମତ୍ସ୍ୟରାଜ ବିରାଟ ତାହାଙ୍କ ସହିତ ସମରରେ ସଙ୍ଗତ ହେଲେ ।

ହେ ମହାରାଜ ! ତତ୍ପରେ ଦ୍ରୁପଦ ରାଜାଙ୍କର ତିନି ପୌତ୍ର ଓ ମହାଧନୁର୍ଦ୍ଧର ଚେଦିଗଣ ଦ୍ରୋଣାଭିମୁଖକୁ ଧାବମାନ ହେଲେ । ଦ୍ରୋଣ ତିନିଗୋଟି ନିଶିତ ଶରଦ୍ୱାରା ଦ୍ରୁପଦଙ୍କର ତିନିଗୋଟି ପୌତ୍ରଙ୍କର ପ୍ରାଣ ହରଣ କରି ସେମାନଙ୍କୁ ଭୂତଳରେ ନିପାତିତ କଲେ । ଅନନ୍ତର ଭରଦ୍ୱାଜନନ୍ଦନ ମହାରଥୀ ଦ୍ରୋଣ ସମରସ୍ଥିତ ଚେଦି, କେକେୟ, ସୃଞ୍ଜୟ ଓ ସମଗ୍ର ମତ୍ସ୍ୟମାନଙ୍କୁ ପରାଜୟ କଲେ । ତାହା ଦେଖି ନରପତି ଦ୍ରୁପଦ ଓ ବିରାଟ କ୍ରୁଦ୍ଧ ହୋଇ ଦ୍ରୋଣଙ୍କ ପ୍ରତି ଶରବୃଷ୍ଟି କଲେ । ତେତେବେଳେ କ୍ଷତ୍ରିୟମର୍ଦ୍ଦନକାରୀ ଦ୍ରୋଣ ସେହି ଶରବୃଷ୍ଟି ନିବାରଣ କରି ବିରାଟ ଓ ଦ୍ରୁପଦରାଜଙ୍କୁ ଶରଜାଲରେ ସମାଚ୍ଛନ୍ନ କଲେ । ତହୁଁ କ୍ରୋଧନ-ସ୍ୱଭାବ ସେହି ନରପତିଦ୍ୱୟ ଅତିଶୟ କ୍ରୁଦ୍ଧ ହୋଇ ଦ୍ରୋଣଙ୍କୁ ଅସଂଖ୍ୟ ଶରଦ୍ୱାରା ବିଦ୍ଧ କଲେ ।

ହେ ମହାରାଜନ୍ ! ସେହି ସମୟରେ ଦ୍ରୋଣାଚାର୍ଯ୍ୟ କ୍ରୋଧରେ ଅଧୀର ହୋଇ ଅତି ତୀକ୍ଷ୍ଣଧାର ଦୁଇଗୋଟି ଭଲ୍ଲଦ୍ୱାରା ସେହି ଦୁହିଁଙ୍କର କାର୍ମୁକ ଛେଦନ କଲେ । ତହୁଁ ସେ ଦୁହେଁ କୁପିତ ହୋଇ ଦ୍ରୋଣଙ୍କର ବଧାଭିଳାଷୀ ହେଲେ । ବିରାଟରାଜ ଦଶଗୋଟି ତୋମର ଓ ଦଶଗୋଟି ବାଣ ଓ ଦ୍ରୁପଦରାଜ ପନ୍ନଗସଦୃଶ ସୁବର୍ଣ୍ଣବିଭୂଷିତ ଲୌହମୟୀ ଗୋଟିଏ ଶକ୍ତି ଦ୍ରୋଣଙ୍କର ରଥ ଉପରକୁ ନିକ୍ଷେପ କଲେ । ତାହା ଦେଖି ଦ୍ରୋଣ ନିଶିତ ଭଲ୍ଲସମୂହ ଦ୍ୱାରା ବିରାଟଙ୍କ ନିକ୍ଷିପ୍ତ ସେହି ଦଶଗୋଟି ତୋମରକୁ ଛିନ୍ନ କରି ବହୁସଂଖ୍ୟକ ଶରଦ୍ୱାରା ଦ୍ରୁପଦରାଜଙ୍କର ସେହି କନକବୈଦୂର୍ଯ୍ୟ-ଭୂଷିତ ଶକ୍ତିକୁ ନିରାକୃତ କଲେ । ତତ୍ପରେ ଶତ୍ରୁମର୍ଦ୍ଦନକାରୀ ଆଚାର୍ଯ୍ୟ ଦ୍ରୋଣ ଦୁଇଗୋଟି ସୁପୀତ ଭଲ୍ଲଦ୍ୱାରା ବିରାଟ ଓ ଦ୍ରୁପଦ ଏ ଦୁହିଁଙ୍କୁ ଶମନ ଭବନକୁ ପ୍ରେରଣ କଲେ ।

ହେ ମହାରାଜ ! ନରପତି ଦ୍ରୁପଦ ଓ ବିରାଟ ବହୁସଂଖ୍ୟ କେକେୟ, ଚେଦି, ମତ୍ସ୍ୟ ଓ ପାଞ୍ଚାଳ ସୈନ୍ୟ ଏବଂ ଦ୍ରୁପଦରାଜଙ୍କର ତିନିଗୋଟି ବୀର ପୌତ୍ର ନିହତ ହୁଅନ୍ତେ ମହାମନା ଧୃଷ୍ଟଦ୍ୟୁମ୍ନ ଦ୍ରୋଣଙ୍କର ସେହି ଭୟଙ୍କର କାର୍ଯ୍ୟ ସନ୍ଦର୍ଶନ କରି ଦୁଃଖ ଓ କ୍ରୋଧରେ ପରିପୂର୍ଣ୍ଣ ହୋଇ ସମସ୍ତ ରଥୀମାନଙ୍କ ମଧ୍ୟରେ ଏହିପରି ଶପଥ କଲେ । ୪୫ । ଅଦ୍ୟ ଯଦି ଆମ୍ଭେ ସଂଗ୍ରାମରେ ଦ୍ରୋଣଙ୍କ କର୍ତ୍ତୃକ ପରାଜିତ ହେଉଁ ଅଥବା ସେ ଯଦି ଆମ୍ଭ ହସ୍ତରୁ ମୁକ୍ତିଲଭ କରିପାରନ୍ତି, ତେବେ ଆମ୍ଭେ ବ୍ରହ୍ମତେଜ କ୍ଷାତ୍ରତେଜ ଓ ଇଷ୍ଟାପୂର୍ତ୍ତରୁ ପରିଭ୍ରଷ୍ଟ ହେବୁଁ । ୪୬ । ଏହିପରି ପରବୀରହନ୍ତା ପାଞ୍ଚାଳ ରାଜନନ୍ଦନ ସମସ୍ତ ଧନୁର୍ଦ୍ଧରମାନଙ୍କ ସାକ୍ଷାତରେ ପ୍ରତିଜ୍ଞା କରି ସୈନ୍ୟଙ୍କ ଦ୍ୱାରା ପରିବୃତ ହୋଇ ଦ୍ରୋଣାଭିମୁଖକୁ ଯାତ୍ରା କଲେ । ୪୭ । ସେହି ସମୟରେ ସମସ୍ତ ପାଣ୍ଡବ ପାଞ୍ଚାଳଗଣ ଏକତ୍ରିତ ହୋଇ ଦ୍ରୋଣଙ୍କୁ ପ୍ରହାର କଲେ । ତାହା ଦେଖି ପ୍ରଧାନ ପ୍ରଧାନ ଭ୍ରାତୃଗଣପରିବୃତ ରାଜା ଦୁର୍ଯ୍ୟୋଧନ, କର୍ଣ୍ଣ ଓ ସୁବଳନନ୍ଦନ ଶକୁନି ଆଚାର୍ଯ୍ୟଙ୍କ ରକ୍ଷାରେ ପ୍ରବୃତ୍ତ ହେଲେ । ଦ୍ରୋଣ ସେହି ସମସ୍ତ ମହାରଥୀଙ୍କ କର୍ତ୍ତୃକ ସୁରକ୍ଷିତ ହେବାରୁ ପାଞ୍ଚାଳମାନେ ଯତ୍ନପର ହୋଇ ମଧ୍ୟ ତାହାଙ୍କୁ ନିରୀକ୍ଷଣ କରିବାକୁ ସମର୍ଥ ହେଲେ ନାହିଁ ।

ସେହି ସମୟରେ ଭୀମସେନ ଅତିଶୟ କ୍ରୁଦ୍ଧ ହୋଇ ଉଗ୍ରବାକ୍ୟ ଦ୍ୱାରା ଧୃଷ୍ଟଦ୍ୟୁମ୍ନଙ୍କର ମର୍ମଚ୍ଛେଦ କରି ତାହାଙ୍କୁ କହିଲେ, ମହାରାଜ ଦ୍ରୁପଦଙ୍କ କୁଳରେ ଜନ୍ମଗ୍ରହଣ କରି ଓ ସମସ୍ତ ଅସ୍ତ୍ରରେ ଅଭିଜ୍ଞ ଓ କ୍ଷତ୍ରିୟାଭିମାନୀ ହୋଇ କେଉଁ ପୁରୁଷ ସମ୍ମୁଖସ୍ଥିତ ଶତ୍ରୁକୁ ଉପେକ୍ଷା କରେ ? ବିଶେଷତଃ ପିତୃ ଓ ପୁତ୍ରମାନଙ୍କର ବଧ ସନ୍ଦର୍ଶନ କରି ସମସ୍ତ ନୃପଗଣ ମଧ୍ୟରେ ଦୃଢ଼ତର ପ୍ରତିଜ୍ଞା କରି କେଉଁ ବ୍ୟକ୍ତି ଶତ୍ରୁକୁ ପରିପାଳନ କରେ ? ବର୍ତ୍ତମାନ ଦ୍ରୋଣ ଶରରୂପରୂପ କାଷ୍ଠରେ ପ୍ରଜ୍ୱଳିତ ହୋଇ ଜ୍ୱଳନ୍ତ ଅଗ୍ନି ସଦୃଶ କ୍ଷତ୍ରିୟମାନଙ୍କୁ ଦଗ୍ଧ କରୁଅଛନ୍ତି । ଅତଏବ ତୁମ୍ଭେମାନେ ସେହିସ୍ଥାନରେ ଅବସ୍ଥାନପୂର୍ବକ ଆମ୍ଭର କାର୍ଯ୍ୟ ଅବଲୋକନ କର । ପାଣ୍ଡବସେନା ନିଃଶେଷିତ କରିବା ପୂର୍ବରୁ ଆମ୍ଭେ ସ୍ୱୟଂ ତାହାଙ୍କ ପ୍ରତିପକ୍ଷରେ ଗମନ କରିବୁଁ । ଏହା କହି ବୃକୋଦର ଅତିଶୟ ରୋଷାବିଷ୍ଟ ହୋଇ ଆକର୍ଣ୍ଣାକୃଷ୍ଟ ଦୃଢ଼ତର ଶରଜାଲ ବିସ୍ତାରପୂର୍ବକ କୌରବବାହିନୀକୁ ବିଦ୍ରାବିତ କରୁ କରୁ ବ୍ୟୂହ ମଧ୍ୟରେ ପ୍ରବିଷ୍ଟ ହେଲେ । ସେହି ସମୟରେ ପାଞ୍ଚାଳ ରାଜନନ୍ଦନ ଧୃଷ୍ଟଦ୍ୟୁମ୍ନ ସେହି ମହାବ୍ୟୂହ ମଧ୍ୟରେ ପ୍ରବିଷ୍ଟ ହୋଇ ଯୁଦ୍ଧାର୍ଥ ଦ୍ରୋଣଙ୍କ ସହିତ ସଙ୍ଗତ ହୁଅନ୍ତେ ମହାତୁମୁଳ ଯୁଦ୍ଧ ଉପସ୍ଥିତ ହେଲା ।

ହେ ମହାରାଜ ! ସେହି ସୂର୍ଯ୍ୟୋଦୟ ସମୟରେ ଯେପରି ସଂଗ୍ରାମ ଆରମ୍ଭ ହେଲା ପୂର୍ବେ ଆମ୍ଭେମାନେ ତାଦୃଶ ଯୁଦ୍ଧ କଦାଚ ଦେଖି ନ ଥିଲୁଁ କିମ୍ବା ଶୁଣି ନ ଥିଲୁଁ । ସେହି ସମୟରେ ପରସ୍ପର ସଂଶ୍ଳିଷ୍ଟ ବହୁସଂଖ୍ୟକ ରଥ ଓ ମନୁଷ୍ୟମାନଙ୍କର ରାଶି ରାଶି ହତ ଓ ବଶୀର୍ଣ୍ଣ ଶରୀର ଦୃଷ୍ଟ ହେଲା । କୌଣସି କୌଣସି ରଣପରାଙ୍ମୁଖ ବୀରମାନେ ପଳାୟନ କାଳରେ ପଥ ମଧ୍ୟରେ ଅନ୍ୟକର୍ତ୍ତୃକ ଆହତ ଏବଂ କେହି କେହି ପଶ୍ଚାଦ୍ଦେଶରୁ ଓ ପାର୍ଶ୍ୱଭାଗରୁ ତାଡ଼ିତ ହେଲେ । ଏହିପରି ସେହି ଅତି ନିଦାରୁଣ ସଂଗ୍ରାମ ଆରବ୍ଧ ହୁଅନ୍ତେ କ୍ଷଣକ ମଧ୍ୟରେ ସୂର୍ଯ୍ୟଦେବ ସମୁଦିତ ହେଲେ । ୭୦ ।

# ୧୮୭ ଅଧ୍ୟାୟ

ସଞ୍ଜୟ କହିଲେ—ହେ ମହାରାଜ ! ସହସ୍ର କିରଣବିଶିଷ୍ଟ ଆଦିତ୍ୟ ଉଦିତ ହୋଇଅଛନ୍ତି ଦେଖି ସମରାଙ୍ଗଣସ୍ଥିତ ବର୍ମ୍ମଧାରୀ ବୀରବର କୌରବ ଓ ପାଣ୍ଡବଗଣ ତାହାଙ୍କର ଉପାସନା କଲେ । ୧ । ସେହି ତପ୍ତକାଞ୍ଚନ-ସଦୃଶପ୍ରଭଶାଳୀ ପ୍ରଭାକରଙ୍କର ଉଦୟଦ୍ୱାରା ସମୁଦାୟ ଲୋକ ପ୍ରକାଶିତ ହୁଅନ୍ତେ ପୁନର୍ବାର ଘୋରତର ଯୁଦ୍ଧ ଆରମ୍ଭ ହେଲା । ୨ । ସୂର୍ଯ୍ୟୋଦୟ ପୂର୍ବରୁ ଯେ ଯାହା ସହିତ ସମରରେ ସମାସକ୍ତ ଥିଲା, ସେ ସେହି ବ୍ୟକ୍ତିଙ୍କ ସହିତ ପୁନର୍ବାର ସମରରେ ପ୍ରବୃତ୍ତ ହେଲା । ଅଶ୍ୱାରୋହୀମାନେ ରଥୀମାନଙ୍କ ସହିତ ଅସଂଖ୍ୟ ଗଜାରୋହୀମାନେ ଅଶ୍ୱାରୋହୀଙ୍କ ସହିତ, ମାତଙ୍ଗମାନେ ମାତଙ୍ଗଗଣ ସହିତ କେଉଁ କେଉଁ ପଦାତିମାନେ ହସ୍ତ୍ୟାରୋହୀମାନଙ୍କ ସହିତ ଓ କୌଣସି କୌଣସି ପଦାତିମାନେ ପଦାତିମାନଙ୍କ ସହିତ ସମରରେ କେତେବେଳେ ସମାସକ୍ତ କେତେବେଳେ ବା ବିଶ୍ଳିଷ୍ଟ ହୋଇ ଘୋରତର ସଂଗ୍ରାମ କଲେ ।

ହେ ମହାରାଜ ! ଯୋଧାଗଣ ରଜନୀରେ ଯଥାସାଧ୍ୟ ଯୁଦ୍ଧକାର୍ଯ୍ୟ କରିଥିବାରୁ ପ୍ରାତଃକାଳରେ ସୂର୍ଯ୍ୟୋଦୟପରେ ଅତିଶୟ ଶ୍ରାନ୍ତ ଓ କ୍ଷୁତ୍-ପିପାସାରେ ପୀଡ଼ିତ ହୋଇ ବିହ୍ୱଳ ହେଲେ । ୩ । ସେହି ସମୟରେ ଅନବରତ ଶଙ୍ଖନିନାଦ, ଭେରୀନିର୍ଘୋଷ, ମୃଦଙ୍ଗଧ୍ୱନି, ମାତଙ୍ଗବୃଂହଣ, ଶରାସନ ସମୂହର ବାରମ୍ବାର ଆକର୍ଷଣ ଓ ବିସ୍ଫାରଣ ଶବ୍ଦ, ପ୍ରଧାବିତ ପଦାତିମାନଙ୍କର ଚିତ୍କାରଧ୍ୱନି, ନିପାତ୍ୟମାନ ଶସ୍ତ୍ରଶବ୍ଦ, ଅଶ୍ୱମାନଙ୍କର ହ୍ରେଷାରବ ଓ ଇତସ୍ତତଃ ପ୍ରଚଳିତ ରଥସମୂହର ଘର୍ଘର ଶବ୍ଦ ମିଳିତ ହୋଇ ଏପରି ପ୍ରବୃଦ୍ଧ ହେଲା ଯେ, ତାହା ଗଗନମଣ୍ଡଳକୁ ସ୍ପର୍ଶ କରି ଦିକ୍‌ସମୂହକୁ ପରିପୂରଣ କରିବାନନ୍ତର ଅତିଶୟ ଭୟଙ୍କର ହେଲା ।

ହେ ମହାରାଜ ! ସେହି ସମୟରେ ବିବିଧ ଅସ୍ତ୍ରଘାତରେ କ୍ଷତବିକ୍ଷତ-କଳେବର ପତିତ ଓ ପାତ୍ୟମାନ ପଦାତି, ରଥୀ, ଅଶ୍ୱବାର ଓ ଗଜାରୋହୀ-ମାନେ ଇତସ୍ତତଃ ଅଙ୍ଗବିକ୍ଷେପ ପୂର୍ବକ ଚିତ୍କାର କରନ୍ତେ ସମରଭୂମିରେ ନିରନ୍ତର ଆର୍ତ୍ତନାଦ ଶ୍ରୁତ ହେଲା । ତଦ୍ଦ୍ୱାରା ଅତି ଶୋଚନୀୟ ଅବସ୍ଥା

ଉପସ୍ଥିତ ହେଲା । ଏହାପରେ ସମୁଦାୟ ସୈନ୍ୟମାନେ ସମରରେ ସମାସକ୍ତ ହୁଅନ୍ତେ କି ଅସ୍ମତ୍‌ପକ୍ଷୀୟ, କି ପାଣ୍ଡବପକ୍ଷୀୟ ସମସ୍ତେ ଏପରି ବିମୋହିତ ହେଲେ ଯେ, ସେ ସମୟରେ ସେମାନେ ଆତ୍ମପର ବିବେଚନା ନ କରି ଯେ ଯାହାକୁ ସମ୍ମୁଖରେ ପ୍ରାପ୍ତ ହେଲା, ସେ ତାହାକୁ ପ୍ରହାର କଲା । ୧୨ । ବୀରମାନଙ୍କର ବାହୁନିକ୍ଷିପ୍ତ ଖଡ୍‌ଗସମୂହ ହସ୍ତୀ ଓ ଯୋଦ୍ଧାମାନଙ୍କର ଉପରେ ପତିତ ହେବାରୁ ତାହା ପ୍ରକ୍ଷାଳନସ୍ଥାନନିକ୍ଷିପ୍ତ ବସନଶ୍ରେଣିତୁଲ୍ୟ ପ୍ରତୀୟମାନ ହେଲା । ଉଦ୍ୟତ ଖଡ୍‌ଗସମୂହ ବିପକ୍ଷ ବୀରମାନଙ୍କ ଦ୍ୱାରା ପ୍ରତିହତ ହୁଅନ୍ତେ ପ୍ରକ୍ଷାଲ୍ୟମାନ ବସନର ଶବ୍ଦସଦୃଶ ଶବ୍ଦ ହେଲା । କ୍ରମେ କ୍ରମେ ସେମାନେ ନିକଟବର୍ତ୍ତୀ ହୋଇ ଅର୍ଦ୍ଧାସିଖଡ୍‌ଗ, ତୋମର ଓ ପରଶ୍ୱଧାଦି ଦ୍ୱାରା ନିଦାରୁଣ ସମରରେ ସମାସକ୍ତ ହେଲେ । ୧୫ । ତତ୍ପରେ ଶସ୍ତ୍ରରୂପ ମତ୍ସ୍ୟପରିପୂର୍ଣ୍ଣ ମାଂସଶୋଣିତରୂପ କର୍ଦ୍ଦମବିଶିଷ୍ଟ ହସ୍ତୀ ଓ ଅଶ୍ୱାଦିର ଶରୀରସ୍ଥ ଶୋଣିତରୁ ଗୋଟିଏ ନଦୀ ସମୁତ୍ପନ୍ନ ହେଲା । ୧୬ । ବୀରମାନଙ୍କର ଆର୍ତ୍ତନାଦ ସେହି ନଦୀର ଜଳକଲ୍ଲୋଳ-ଶବ୍ଦ, ବସ୍ତ୍ର ପତାକା ତାହାର ଫେଣ ଓ ସେହି ନଦୀ ପରଲୋକ ପର୍ଯ୍ୟନ୍ତ ପ୍ରବାହିତ ହୋଇ ମୃତ ନରକଳେବରମାନ ବୋହି ନେଉଥିଲା ।

ହେ ମହାରାଜ ! ଅଶ୍ୱ ଓ ହସ୍ତ୍ୟାଦି ବାହନସମୂହ ନିଶା ଯୁଦ୍ଧକାଳରେ ଶରଶକ୍ତି ପ୍ରଭୃତି ନାନାପ୍ରକାର ଶସ୍ତ୍ରଦ୍ୱାରା ନିପୀଡ଼ିତ ହୋଇ ବିମୋହିତ ଓ ଦୁର୍ବଳ ହୋଇଥିଲେ । ସୁତରାଂ ପ୍ରାତଃକାଳରେ ସେମାନେ ନିତାନ୍ତ କ୍ଲାନ୍ତ ହୋଇ ଶରୀର ସ୍ତମ୍ଭିତ କରି ସ୍ଥାଣୁ ସଦୃଶ ଅବସ୍ଥାନ କଲେ । ୧୮ । ସେହିକାଳରେ ଛିନ୍ନବାହୁ, କବଚ, ଶସ୍ତ୍ର, ରୁଚିରକୁଣ୍ଡଳମଣ୍ଡିତ ବହୁ ମସ୍ତକ ଅନେକପ୍ରକାର ଯୁଦ୍ଧୋପକରଣ ମୃତ ଅର୍ଦ୍ଧମୃତ କଳେବର ଓ ସମାଗତ ଭୂରି ଭୂରି ମାଂସାଶୀ ପ୍ରାଣୀମାନଙ୍କ ଦ୍ୱାରା ରଣସ୍ଥଳ ଏପରି ପୂର୍ଣ୍ଣ ହେଲା ଯେ, ରଥବର୍ତ୍ମ ସୁଦ୍ଧା ରହିଲା ନାହିଁ । ୨୦ । ସେହି ଶୋଣିତ କର୍ଦ୍ଦମମୟ ଭୂମିରେ ରଥଚକ୍ରମାନ ନିମଗ୍ନ ହୁଅନ୍ତେ ସତ୍‌କୁଳ-ସମ୍ଭୂତ ମହାବଳଶାଳୀ ମାତଙ୍ଗସଦୃଶ ତୁରଙ୍ଗଗଣ ଶରପୀଡ଼ିତ, ଶ୍ରାନ୍ତ ଓ କମ୍ପମାନ ହୋଇ ଯଥାସାଧ୍ୟ ବଳ ପ୍ରକାଶ ପୂର୍ବକ ସେହି ରଥସମୂହକୁ ବହନ କଲେ ।

ହେ ମହାରାଜ ! ସେହି ସମୟରେ କେବଳ ଦ୍ରୋଣ ଓ ଅର୍ଜୁନଙ୍କ ବ୍ୟତୀତ ଉଭୟପକ୍ଷୀୟ ସୈନ୍ୟମାନେ ଉଦ୍‌ଭ୍ରାନ୍ତ ଭୟାତୁର ଓ ବିହ୍ୱଳ ହେଲେ । ସେହି ସମୟରେ ଉଲ୍ଲିଖିତ ବୀରଦ୍ୱୟ ସମସ୍ତ ଲୋକମାନଙ୍କର ସଂହାରକର୍ତ୍ତା ଓ ଭୟାର୍ତ୍ତମାନଙ୍କର ଆଶ୍ରୟସ୍ୱରୂପ ହୋଇଥିଲେ । ୨୩ । ସେହି ଦୁଇ ବୀରଙ୍କୁ ପ୍ରାପ୍ତ ହୋଇ ଉଭୟ ପକ୍ଷୀୟ ଅନେକ ବୀର ଶମନ ଭବନକୁ ଗମନ କଲେ ।

ହେ ରାଜନ ! କୌରବ ଓ ପାଞ୍ଚାଳମାନଙ୍କର ସେହି ସୁମହତ୍ ସୈନ୍ୟସମୂହ ଉଦ୍‌ବିଗ୍ନ ହୋଇ ଘୋରତର ସଂଗ୍ରାମରେ ସମାସକ୍ତ ହୁଅନ୍ତେ ଆଉ କିଛି ମାତ୍ର ଜଣାଗଲା ନାହିଁ । କୃତାନ୍ତର କ୍ରୀଡ଼ାଭୂମିସଦୃଶ ଭୀରୁ-ମାନଙ୍କର ଭୟବର୍ଦ୍ଧନ ପୃଥିବୀର ସମସ୍ତ ରାଜକୁଳର ମହାକ୍ଷୟ ସମୟରେ ସଂଗ୍ରାମସଙ୍ଗତ ସୈନ୍ୟମାନଙ୍କର ପଦୋତ୍‌କ୍ଷିପ୍ତ ଧୂଳିପଟଳରେ ସମସ୍ତ ରଣସ୍ଥଳ ସମାବୃତ ହୁଅନ୍ତେ, କି କର୍ଣ୍ଣ, କି ଦ୍ରୋଣ, କି ଅର୍ଜୁନ, କି ଯୁଧିଷ୍ଠିର, କି ଭୀମସେନ, କି ନକୁଳ, କି ସହଦେବ, କି ଧୃଷ୍ଟଦ୍ୟୁମ୍ନ, କି ସାତ୍ୟକି, କି ଦୁଃଶାସନ, କି ଅଶ୍ୱତ୍ଥାମା, କି ଦୁର୍ଯୋଧନ, କି ଶକୁନି, କି କୃପ, କି ଶଲ୍ୟ, କି କୃତବର୍ମ୍ମା, କି ଦିକ୍‌ସମୂହ, କି ପୃଥିବୀ, କି ସ୍ୱୟଂ, କି ଅପର କିଛି ହିଁ ଦୃଷ୍ଟିଗୋଚର ହେଲା ନାହିଁ । ସେହି ଲୋକ ସଂଭ୍ରମକର, ଅତି ଭୟାନକ ତୁମୁଳ ରଜୋମେଘ ସମୁତ୍‌ଥିତ ହୁଅନ୍ତେ ସମସ୍ତେ ପୁନର୍ବାର ନିଶାକାଳ ଉପସ୍ଥିତ ହୋଇଅଛି ବୋଲି ମନେ କଲେ । ସେହି ସମୟରେ କୌରବ, ପାଞ୍ଚାଳ, ଅବା ପାଣ୍ଡବମାନେ କେହି ଅବଧାରିତ ହୋଇ-ପାରିଲେ ନାହିଁ । ଦିଙ୍‌ମଣ୍ଡଳ, ନଭୋମଣ୍ଡଳ ଓ ଭୂମଣ୍ଡଳ ସମ ଓ ବିଷମ ପ୍ରଦେଶ ସମସ୍ତ କିଛି ହିଁ ଜାଣିହେଲା ନାହିଁ ।

ସେହି ସମୟରେ ବିଜୟାଭିଳାଷୀ ଯୋଦ୍ଧାମାନେ କି ଆତ୍ମପକ୍ଷ କି ଶତ୍ରୁପକ୍ଷ ସେମାନଙ୍କ ମଧ୍ୟରୁ ହସ୍ତସ୍ପର୍ଶ ଦ୍ୱାରା ଯାହାଙ୍କୁ ପ୍ରାପ୍ତ ହେଲେ ତାହାଙ୍କୁ ନିପାତିତ କଲେ । ଅନନ୍ତର ବାୟୁବେଗବଶତଃ ବହୁ ପରିମାଣରେ ଧୂଳିପଟଳ ଗଗନମଣ୍ଡଳକୁ ଉଦ୍ଧୂତ ହେଲା । ଅବଶିଷ୍ଟ ଧୂଳିରାଶି ଶୋଣିତ ପ୍ରସେକଦ୍ୱାରା ଅଭିଷିକ୍ତ ହେବାରୁ ସମରଭୂମିସ୍ଥ ସମସ୍ତ ଧୂଳିରାଶି ପ୍ରଶାନ୍ତ ହେଲା । ତଦ୍ଦ୍ୱାରା

ହସ୍ତୀ, ଅଶ୍ୱ, ରଥୀ ଓ ପଦାତି ପ୍ରଭୃତି ଯୋଦ୍ଧାମାନେ ରୁଧିରକ୍ତ କଳେବର ହୋଇ ପାରିଜାତ କାନନ ସଦୃଶ ଶୋଭା ଧାରଣ କଲେ ।

ହେ ମହାରାଜ ! ସେହି ସମୟରେ ଦୁର୍ଯ୍ୟୋଧନ, କର୍ଣ୍ଣ, ଦ୍ରୋଣ ଓ ଦୁଃଶାସନ ଏହି ଚାରିଜଣ ବୀରମାନଙ୍କ ସହିତ ସମରରେ ସମାସକ୍ତ ହେଲେ । ଭ୍ରାତୃସହ ଦୁର୍ଯ୍ୟୋଧନ ନକୁଳ ଓ ସହଦେବଙ୍କ ସହିତ, କର୍ଣ୍ଣ ଭୀମସେନଙ୍କ ସହିତ ଓ ଧନଞ୍ଜୟ ଦ୍ରୋଣାଚାର୍ଯ୍ୟଙ୍କ ସହିତ ସଂଗ୍ରାମରେ ସଙ୍ଗତ ହେଲେ । ସେହିକାଳରେ ସମସ୍ତେ ସମୀପସ୍ଥ ହୋଇ ସେହି ଉଗ୍ରତର ରଥିଶ୍ରେଷ୍ଠମାନଙ୍କର ମହା ଆଶ୍ଚର୍ଯ୍ୟକର ଭୟଙ୍କର ଓ ଅଲୌକିକ ସଂଗ୍ରାମ ସନ୍ଦର୍ଶନ କଲେ । ସମସ୍ତ ରଥିମାନେ ସେହି ରଥଯୋଧୀ ବୀରମାନଙ୍କର ବିଚିତ୍ର ରଣସଞ୍ଚାଳନ କୌଶଳାଦିଦ୍ୱାରା ପରସ୍ପରଙ୍କର ରଥସଙ୍କୁଳ ଯୁଦ୍ଧକୁ ବିସ୍ମୟର ସହିତ ଅବଲୋକନ କଲେ । ସେହି ଦ୍ରୋଣ ପ୍ରଭୃତି ପରାକ୍ରାନ୍ତ ବୀରମାନେ ପରସ୍ପର ଜିଗୀଷା ପରବଶ ଓ ଯତ୍ନବାନ୍ ହୋଇ ବର୍ଷାକାଳୀନ ମେଘ ପଙ୍କ୍ତି ସଦୃଶ ଶରବୃଷ୍ଟି କଲେ । ସେହି ପୁରୁଷପ୍ରବରମାନେ ସୂର୍ଯ୍ୟସମଦୀପ୍ତିଯୁକ୍ତ ରଥରେ ସମାରୂଢ଼ ହୋଇ ସବିଦ୍ୟୁତ୍ ଶାରଦୀୟ ମେଘସଦୃଶ ଶୋଭା ପାଇଲେ ।

ହେ ମହାରାଜ ! ସେହି ସମୟରେ ଅନ୍ୟାନ୍ୟ ମହାଧନୁର୍ଦ୍ଧର ଯୋଦ୍ଧାମାନେ କ୍ରୋଧରେ ଅଧୀର ହୋଇ ଶରାସନ ଗ୍ରହଣପୂର୍ବକ ଯତ୍ନ ଓ ସ୍ପର୍ଦ୍ଧା ସହିତ ଶ୍ରେଷ୍ଠ ମତ୍ତମାତଙ୍ଗ ସଦୃଶ ପରସ୍ପର ପରସ୍ପରଙ୍କ ପ୍ରତି ଧାବିତ ହେଲେ ।୪୧। କାଳ ପୂର୍ଣ୍ଣ ନ ହେଲେ ଏହି ଦେହ ବିନଷ୍ଟ ହୁଅଇ ନାହିଁ । ଏହି ରଥିମାନେ ସମସ୍ତେ ଏକସମୟରେ ବିଶୀର୍ଣ୍ଣ ହେଲେ ନାହିଁ । ୪୨ । ସେହି ସମୟରେ କୌଣସି ସ୍ଥଳରେ ଛିନ୍ନ ବାହୁଚରଣ, ରାଶିରାଶି କୁଣ୍ଡଳ-ମଣ୍ଡିତ ମସ୍ତକ, କାର୍ମ୍ମୁକ, ବିଶିଖ, ପ୍ରାସ, ଖଡ୍‌ଗ, ପରଶୁ, ପଟ୍ଟିଶ, ନାଳୀକ, କ୍ଷୁର, ନାରାଚ, ନଖର, ଶକ୍ତି, ତୋମର ଓ ଅପରାପର ବହୁବିଧ ଉତ୍ତମୋ-ତ୍ତମ ଅସ୍ତ୍ରସମୂହ ଓ ବିବିଧାକାର ବର୍ମ୍ମ, ଭଗ୍ନ ବିଚିତ୍ରରଥ, ନିହତ ହସ୍ତୀ ଓ ଅଶ୍ୱସମୂହ ନିପତିତ ହୋଇଅଛନ୍ତି । କେଉଁଠାରେ ନାନାଅଳଂକାରଭୂଷିତ ବୀର ରଥିମାନେ ନିହତ ହେବାରୁ ହତସାରଥି, ସନ୍ତ୍ରସ୍ତ ଅଶ୍ୱଗଣ ଛିନ୍ନଧ୍ୱଜ, ଯୋଧଶୂନ୍ୟ, ନଗରାକାର ରଥସମୂହକୁ ଇତସ୍ତତଃ ଆକର୍ଷଣ କରିବା ସମୟରେ ସମୀରଣସଞ୍ଚାଳିତ ବସ୍ତୁସଦୃଶ ପ୍ରତୀୟମାନ ହେଉଥିଲା । କେଉଁସ୍ଥାନରେ

ବ୍ୟଜନ, କବଚ, ଧ୍ୱଜ, ଛତ୍ର, ବହୁବିଧ ଆଭରଣ, ଅସ୍ତ୍ର, ସୁଗନ୍ଧମାଲ୍ୟ, କିରୀଟ, ମୁକୁଟ, ଉଷ୍ଣୀଷ, କିଂକିଣୀଜାଳ, ମଣିମୟ କଣ୍ଠାଭରଣ, ନିଷ୍କ ଓ ଚୂଡ଼ାମଣି ପ୍ରଭୃତି ବିବିଧ ଅଳଂକାରସବୁ ସମାକୀର୍ଣ୍ଣ ହୋଇଥିବାରୁ ରଣସ୍ଥଳ ତାରାଗଣବିମଣ୍ଡିତ ନଭୋମଣ୍ଡଳସଦୃଶ ଶୋଭା ପାଉଥିଲା । ୪୯ ।

ଅନନ୍ତର ଅସହିଷ୍ଣୁ ରାଜା ଦୁର୍ଯ୍ୟୋଧନ କ୍ରୁଦ୍ଧ ହୋଇ ଅସହନଶୀଳ କ୍ରୋଧାବିଷ୍ଟ ନକୁଳଙ୍କ ସହିତ ସଂଗ୍ରାମରେ ସଂଗତ ହେଲେ । ୫୦ । ହେ ମହାରାଜ ! ମାଦ୍ରୀପୁତ୍ର ଆପଣଙ୍କ ପୁତ୍ରଙ୍କୁ ବାମଭାଗସ୍ଥ କରି ହୃଷ୍ଟଚିତ୍ତରେ ତାହାଙ୍କ ପ୍ରତି ଏକଶତ ଶର ପ୍ରହାର କରନ୍ତେ ସେଠାରେ ତୁମୁଳ କୋଳାହଳ ହେଲା । ୫୧ । ତତ୍ପରେ ଅତ୍ୟନ୍ତ ଅମର୍ଷସ୍ୱଭାବ ରାଜା ଦୁର୍ଯ୍ୟୋଧନ ଭ୍ରାତୃବ୍ୟ ନକୁଳଙ୍କ କର୍ତ୍ତୃକ ସଂଗ୍ରାମରେ ବାମଦିଗସ୍ଥ ହୋଇ କୌଣସି ପ୍ରକାରେ ତାହା ସହି ପାରିଲେ ନାହିଁ । ସେ ନକୁଳଙ୍କୁ ଅବିଳମ୍ବେ ବାମଦିଗସ୍ଥ କରିବାକୁ ଚେଷ୍ଟା କଲେ । ତେତେବେଳେ ବିଚିତ୍ରସମର-ପଥାଭିଜ୍ଞ ତେଜସ୍ୱୀ ନକୁଳ ଅପସବ୍ୟଗମନେଚ୍ଛୁ ଆପଣଙ୍କ ପୁତ୍ର ଦୁର୍ଯ୍ୟୋ-ଧନଙ୍କୁ ତହିଁରୁ ନିବାରଣ କଲେ । ସେ କୁରୁରାଜଙ୍କୁ ସର୍ବତୋଭାବରେ ନିବାରଣ କଲେ ଓ ଶରଜାଲରେ ତାହାଙ୍କୁ ନିପୀଡ଼ିତ କରି ପରାଙ୍ମୁଖ କଲେ । ଆପଣଙ୍କର ଦୁର୍ମନ୍ତ୍ରଣାଜନିତ ପ୍ରାପ୍ତ ଦୁଃଖସମୂହକୁ ସ୍ମରଣ କରି ନକୁଳ ତାହାଙ୍କୁ ରହ ରହ ବୋଲି କହି ତର୍ଜନା କଲେ । କାର୍ଯ୍ୟତର ସୈନ୍ୟ-ମାନେ ନକୁଳଙ୍କର ପ୍ରଶଂସା କଲେ । ୫୨ ।

---

## ୧TT ଅଧ୍ୟାୟ

ସଞ୍ଜୟ କହିଲେ — ହେ ମହାରାଜ ! ତଦନନ୍ତର ଦୁଃଶାସନ କ୍ରୁଦ୍ଧ ହୋଇ ତୀବ୍ର ରଥବେଗରେ ଭୂମଣ୍ଡଳକୁ କମ୍ପିତ କରି ସହଦେବଙ୍କ ପ୍ରତି ଧାବିତ ହେଲେ । ୧ । ସେହି ଅମିତ୍ରକର୍ଷଣ ଏହିପରି ଆଗମନ କରନ୍ତେ ମାଦ୍ରୀପୁତ୍ର ଗୋଟିଏ ଭଲ୍ଲାସ୍ତ୍ର ଦ୍ୱାରା ଅବିଳମ୍ବେ ତାହାଙ୍କ ସାରଥିର ଶିରସ୍ତ୍ରାଣ-ସମନ୍ୱିତ ମସ୍ତକକୁ ଛେଦନ କଲେ । ୨ । ହେ ମହାରାଜ ! ସାରଥି ସହଦେବଙ୍କ ଶରରେ ଛିନ୍ନମସ୍ତକ ହୁଅନ୍ତେ, ସେ କେତେବେଳେ ଯେ ନିହତ

ହେଲ, ତାହା ଦୁଃଶାସନ କିମ୍ବା ଅନ୍ୟାନ୍ୟ ସେନାପତିମାନେ ସହଦେବଙ୍କ ଲାଘବ ହେତୁ ଲକ୍ଷ୍ୟ କରି ପାରିଲେ ନାହିଁ । ୩ । ରଶ୍ମି ସଂଯତ ନ ହେବାରୁ ଅଶ୍ୱମାନେ ଯଥେଚ୍ଛାଗୃହୀ ହୋଇ ଇତସ୍ତତଃ ଗମନ କରନ୍ତେ ଦୁଃଶାସନ ସାରଥିକୁ ଗତାସୁ ବୋଲି ଜାଣିପାରିଲେ । ୪ ।

ସେହି ସମୟରେ ଅଶ୍ୱବିଦ୍ୟା-ବିଶାରଦ ରଥିପ୍ରବର ଦୁଃଶାସନ ସ୍ୱୟଂ ଅଶ୍ୱମାନଙ୍କୁ ସଂଯତ କରି ବିଚିତ୍ର ଲାଘବ ଓ ସୌଷ୍ଠବାଦି କୌଶଳମାନ ପ୍ରଦର୍ଶନପୂର୍ବକ ସଂଗ୍ରାମ କଲେ । ୫ । ସମରାଙ୍ଗଣରେ ସେ ସାରଥି-ବିହୀନ ହୋଇ ମଧ୍ୟ ନିର୍ଭୟଚିତ୍ତରେ ରଥ-ବର୍ତ୍ମରେ ବିଚରଣ କରିବାରୁ କି ଆତ୍ମପକ୍ଷୀୟ କି ଶତ୍ରୁପକ୍ଷୀୟ ସମସ୍ତେ ତାହାଙ୍କର ସେହି କାର୍ଯ୍ୟକୁ ପ୍ରଶଂସା କଲେ । ୬ । ତେତେବେଳେ ସହଦେବ ତାହାଙ୍କର ସେହି ଅଶ୍ୱମାନଙ୍କ ପ୍ରତି ତୀକ୍ଷ୍ଣତର ଶରନିକର ନିକ୍ଷେପ କରନ୍ତେ ତଦ୍ଦ୍ୱାରା ସେମାନେ ଅତିଶୟ ପୀଡ଼ିତ ହୋଇ ବେଗରେ ଚତୁର୍ଦ୍ଦିଗକୁ ଧାବମାନ ହେଲେ । ୭ । ଦୁଃଶାସନ ଅଶ୍ୱରଜ୍ଜୁ ଗ୍ରହଣ କାଳରେ ଶରାସନ ପରିତ୍ୟାଗ କରୁଥିଲେ ଓ ଶରାସନ ଗ୍ରହଣକାଳରେ ଅଶ୍ୱରଜ୍ଜୁ ପରିତ୍ୟାଗ କରୁଥିଲେ । ଏହି ଅବକାଶ ମଧ୍ୟରେ ମାଦ୍ରୀତନୟ ତାହାଙ୍କୁ ଅସଂଖ୍ୟ ଶରଜାଲରେ ସମାଚ୍ଛନ୍ନ କଲେ । କର୍ଣ୍ଣ ତାହାଙ୍କ ରକ୍ଷାଭିଳାଷରେ ସେଠାରେ ଉପସ୍ଥିତ ହେଲେ । ୯ । ତାହା ଦେଖି ବୃକୋଦର ଅତିଶୟ ଯତ୍ନସହ ତିନିଗୋଟି ଭଲ୍ଲ ଗ୍ରହଣ କରି ଆକର୍ଣ୍ଣ ସନ୍ଧାନପୂର୍ବକ କର୍ଣ୍ଣଙ୍କର ବାହୁ ଓ ବକ୍ଷଃସ୍ଥଳରେ ପ୍ରହାର କରି ଚିତ୍କାର କଲେ । ୧୦ ।

ତେତେବେଳେ ସୂତପୁତ୍ର କର୍ଣ୍ଣ ପଦଦଳିତ ଉରଗସଦୃଶ ପ୍ରତି-ନିବୃତ୍ତ ହୋଇ ଶାଣିତ ଶରଜାଲ ବିସ୍ତାରପୂର୍ବକ ଭୀମସେନଙ୍କୁ ନିବାରଣ କରିବାକୁ ପ୍ରବୃତ୍ତ ହେଲେ । ସେ ଦୁହିଁଙ୍କ ମଧ୍ୟରେ ଘୋରତର ଯୁଦ୍ଧ ଉପସ୍ଥିତ ହେଲା । ସେ ଦୁହେଁ ନେତ୍ରବିଘୂର୍ଣ୍ଣନ ପୂର୍ବକ ରୋଷାନ୍ୱିତ ହୋଇ ବୃଷଭସଦୃଶ ଗର୍ଜନପୂର୍ବକ ମହାବେଗରେ ପରସ୍ପର ପରସ୍ପରଙ୍କ ପ୍ରତି ଧାବିତ ହେଲେ । ସେହି ସମୟରେ ରଣୋନ୍ମତ୍ତ ସେହି ବୀରଦ୍ୱୟଙ୍କର ରଥଦ୍ୱୟ ଏପରି ସଂଶ୍ଳିଷ୍ଟ ହେଲା ଯେ ପରସ୍ପର ପ୍ରତି ଶରନିକ୍ଷେପ କରିବାର ଉପାୟ ରହିଲା ନାହିଁ । ତହୁଁ ଦୁହିଁଙ୍କୁ ଗଦାଯୁଦ୍ଧ କରିବାକୁ ହେଲା ।

ଅନନ୍ତର ଭୀମସେନ ଗଦାଦ୍ୱାରା କର୍ଣ୍ଣଙ୍କର ରଥ-କୂବରକୁ ଶତଧା ଭଗ୍ନ କଲେ । ତାହା ଅଦ୍ଭୁତ ସଦୃଶ ହେଲା । ସେତେବେଳେ ବୀର୍ଯ୍ୟବାନ୍ ରାଧାନନ୍ଦନ ଗୋଟିଏ ଗଦା ଉଦ୍‌ଭ୍ରାମିତ କରି ଭୀମସେନଙ୍କ ପ୍ରତି ନିକ୍ଷେପ କରନ୍ତେ ଭୀମସେନ ସ୍ୱୀୟ ଗଦାଦ୍ୱାରା ତାହାକୁ ନିବାରିତ କଲେ । ଅନନ୍ତର ବୃକୋଦର ପୁନର୍ବାର ଗୋଟିଏ ଗୁର୍ବୀଗଦା ଗ୍ରହଣ କରି ଅଧିରଥନନ୍ଦନଙ୍କ ପ୍ରତି ନିକ୍ଷେପ କଲେ । ୧୭ । ତାହା ଦେଖି କର୍ଣ୍ଣ ସୁପୁଙ୍ଖାନ୍ୱିତ ମହାବେଗଶାଳୀ ଦଶଗୋଟି ବାଣ ଓ ତତ୍ପରେ ଅସଂଖ୍ୟ ଶରଦ୍ୱାରା ସେହି ଗଦାକୁ ଆଘାତ କରିବାରୁ ମନ୍ତ୍ରାଭିହତଭୁଜଙ୍ଗସଦୃଶ ସେହି ଗଦା କର୍ଣ୍ଣବାଣ ପ୍ରଭାବରୁ ପୁନର୍ବାର ଭୀମାଭିମୁଖରେ ଧାବିତ ହେଲା ।

ହେ ମହାରାଜ ! ସେହି ଗଦା ପ୍ରତ୍ୟାବର୍ତ୍ତିତ ହୋଇ ଭୀମସେନଙ୍କ ରଥରେ ପତିତ ହୁଅନ୍ତେ, ସେହି ଆଘାତରେ ତାହାଙ୍କ ସାରଥି ମୋହିତ ହେଲା । ବିପୁଳ ଧ୍ୱଜ ରଥରୁ ବିଚ୍ୟୁତ ହୋଇ ଭୂପୃଷ୍ଠରେ ପତିତ ହେଲା । ନରବୀରହନ୍ତା ମହାବଳଶାଳୀ ବୃକୋଦର ସେହି ସମୟରେ କ୍ରୋଧରେ ମୂର୍ଚ୍ଛିତ ହୋଇ ଆଠଗୋଟି ବାଣ ଗ୍ରହଣପୂର୍ବକ କର୍ଣ୍ଣଙ୍କ ପ୍ରତି ନିକ୍ଷେପ କଲେ ପୁଣି ସେହି ପୀତ ଓ ନିଶିତ ଶରସମୂହଦ୍ୱାରା ଅମ୍ଳାନବଦନରେ ସୂତପୁତ୍ରଙ୍କର ଶରାସନ, ଶରାବାପ ଓ ଧ୍ୱଜ ଛେଦନ କଲେ । କର୍ଣ୍ଣ ମଧ୍ୟ ସ୍ୱର୍ଣ୍ଣପୃଷ୍ଠ ଦୁରାସଦ ଗୋଟିଏ କାର୍ମ୍ମୁକ ଗ୍ରହଣ କରି ରଥଶକ୍ତିଦ୍ୱାରା ଭୀମଙ୍କର ଋକ୍ଷବର୍ଣ୍ଣବିଶିଷ୍ଟ ଅଶ୍ୱମାନଙ୍କୁ ଓ ପୃଷ୍ଠରକ୍ଷକଦ୍ୱୟଙ୍କୁ ସଂହାର କଲେ । ୨୨ । ଅଶ୍ୱ ପ୍ରଭୃତି ବିନଷ୍ଟ ହୁଅନ୍ତେ ସିଂହ ଯେପରି ଗିରିଶୃଙ୍ଗ ଆରୋହଣ କରେ, ସେହିପରି ଶତ୍ରୁଦମନକାରୀ ଭୀମ ସ୍ୱୀୟ ରଥରୁ ଲମ୍ଫପ୍ରଦାନପୂର୍ବକ ନକୁଳଙ୍କ ରଥରେ ଆରୋହଣ କଲେ । ୨୩ ।

ହେ ମହାରାଜ ! ମହାରଥୀ ଆଚାର୍ଯ୍ୟ ଦ୍ରୋଣ ଓ ଶିଷ୍ୟ ଅର୍ଜ୍ଜୁନ ଏ ଦୁହେଁ ଶୀଘ୍ରତର ସନ୍ଧାନ ଓ ଯୋଜନା ଏବଂ ନାନାପ୍ରକାର ରଥର ବିଚିତ୍ର ଗତିଦ୍ୱାରା ତତ୍ରତ୍ୟ ସମସ୍ତ ମାନବମାନଙ୍କର ନୟନକୁ ଇନ୍ଦ୍ରଜାଲକୃଷ୍ଟ କରି ଓ ମନକୁ ବିମୋହିତ କରି ବିଚିତ୍ର ଯୁଦ୍ଧ କଲେ । ୨୫ । ଏହି ସମୟରେ ଯୋଦ୍ଧାମାନେ ସେହି ଗୁରୁ ଶିଷ୍ୟ ଦୁହିଁଙ୍କର ଅଦୃଷ୍ଟପୂର୍ବ ସଂଗ୍ରାମ ଦର୍ଶନ କରି ସମରରୁ ବିରତ ହେଲେ ।୨୬। ପରନ୍ତୁ ମହାବୀର ଦ୍ରୋଣାର୍ଜ୍ଜୁନ

ସେହି ସୈନ୍ୟ ମଧ୍ୟରେ ବିଚିତ୍ର କୌଶଳ ଦ୍ୱାରା ରଥବର୍ତ୍ମ ଭେଦ କରି ପରସ୍ପର ପରସ୍ପରକୁ ବାମଦ୍ୱାରଗସ୍ତ କରିବାକୁ ଚେଷ୍ଟା କଲେ । ୨୬ । ଯୋଦ୍ଧାମାନେ ଅତି ବିସ୍ମୟରେ ସେ ଦୁହିଁଙ୍କର ପରାକ୍ରମ ଦର୍ଶନ କଲେ । ଗଗନମଣ୍ଡଳସ୍ଥିତ ଆମିଷାର୍ଥୀ ଶ୍ୟେନପକ୍ଷୀଦ୍ୱୟର ଯୁଦ୍ଧସଦୃଶ ଦ୍ରୋଣାର୍ଜ୍ଜୁନଙ୍କ ମଧ୍ୟରେ ସୁମହତ୍ ଯୁଦ୍ଧ ହେଲା । ସେହି କାଳରେ ଦ୍ରୋଣାଚାର୍ଯ୍ୟ ଧନଞ୍ଜୟଙ୍କର ପରାଜୟାଭିଳାଷରେ ଯେଉଁସବୁ ଅସ୍ତ୍ରର ପ୍ରାଦୁର୍ଭାବ କଲେ ଧନଞ୍ଜୟ ଅବିଳମ୍ବେ ହାସ୍ୟ କରି ସେସମସ୍ତଙ୍କୁ ନିରାକୃତ କଲେ ।

ହେ ମହାରାଜ ! ଅସ୍ତ୍ରବିଦ୍ୟାବିଶାରଦ ଦ୍ରୋଣ ଯେତେବେଳେ କୌଣସି ପ୍ରକାରେ ପାଣ୍ଡୁନନ୍ଦନ ଅର୍ଜ୍ଜୁନଙ୍କଠାରୁ ବିଶିଷ୍ଟ ହୋଇ ପାରିଲେ ନାହିଁ, ତେତେବେଳେ ଦିବ୍ୟାସ୍ତ୍ର ପ୍ରାଦୁର୍ଭାବ କଲେ । ସେହି ସମୟରେ ଐନ୍ଦ୍ର, ପାଶୁପତ, ତ୍ୱାଷ୍ଟ୍ର, ବାୟବ୍ୟ ଓ ବାରୁଣ ପ୍ରଭୃତି ଯେଉଁ ଯେଉଁ ଅସ୍ତ୍ର ଦ୍ରୋଣଙ୍କ ଶରାସନରୁ ବିମୁକ୍ତ ହେଲା ଧନଞ୍ଜୟ ସେସମସ୍ତ ନିରାକୃତ କଲେ । ଏହିପରି ପାଣ୍ଡୁନନ୍ଦନ ଅର୍ଜ୍ଜୁନ ଯେତେବେଳେ ସ୍ୱୀୟ ଅସ୍ତ୍ରପ୍ରଭାବରେ ସମସ୍ତ ଅସ୍ତ୍ରକୁ ଯଥାବିଧି ନିବାରିତ କଲେ ତେତେବେଳେ ଆଚାର୍ଯ୍ୟ ପରମ ଦିବ୍ୟାସ୍ତ୍ରଦ୍ୱାରା ତାହାଙ୍କୁ ସମାକୀର୍ଣ୍ଣ କଲେ । ସେହି ସମୟରେ ଦ୍ରୋଣ ଧନଞ୍ଜୟଙ୍କୁ ଜୟକରିବା ମାନସରେ ଯେଉଁ ଯେଉଁ ଅସ୍ତ୍ର ପ୍ରୟୋଗ କଲେ, ଅର୍ଜ୍ଜୁନ ତାହାର ପ୍ରତିଘାତାର୍ଥ ସେହି ସେହି ଅସ୍ତ୍ର ଆବିର୍ଭାବ କଲେ । ଏହିପରି ବାରମ୍ବାର ନ୍ୟାୟାନୁସାରେ ଅର୍ଜ୍ଜୁନଙ୍କର ଅସ୍ତ୍ର ପ୍ରଭାବରୁ ସ୍ୱୀୟ ଅସ୍ତ୍ରସମୂହ ବିଫଳ ହେଲେ ହେଁ ଶତ୍ରୁତାପନ ଦ୍ରୋଣ ମନେ ମନେ ଅର୍ଜ୍ଜୁନଙ୍କୁ ଅତିଶୟ ପ୍ରଶଂସା କଲେ । ଆପଣାର ଶିଷ୍ୟ ତାଦୃଶ ଗୁଣବାନ୍ ହୋଇଥିବାରୁ ପୃଥିବୀସ୍ଥ ସମସ୍ତ ଅସ୍ତ୍ରଜ୍ଞ ପୁରୁଷମାନଙ୍କ ଅପେକ୍ଷା ଆପଣାକୁ ଅଧିକ ବୋଲି ମନେ କଲେ । ପୁଣି ସେ ସଂଗ୍ରାମରେ ଯତ୍ନପର ଥିଲେହେଁ ସେହି ମହାତ୍ମା ରାଜାମାନଙ୍କ ମଧ୍ୟରେ ଧନଞ୍ଜୟଙ୍କ କର୍ତ୍ତୃକ ନିବାରିତ ହୋଇ ମଧ୍ୟ ଅଧିକ ପ୍ରୀତି ପ୍ରାପ୍ତ ହେଲେ ।

ତଦନନ୍ତର ନଭୋମଣ୍ଡଳରେ ଦେବ ଗନ୍ଧର୍ବ ସହସ୍ର ସହସ୍ର ଋଷି ଓ ସିଦ୍ଧଗଣ ସମର ଦର୍ଶନାଭିଳାଷରେ ଅବସ୍ଥିତ ହେଲେ । ଗଗନମଣ୍ଡଳ କ୍ରମେ ଯକ୍ଷ, ରାକ୍ଷସ ଓ ଅପ୍‌ସରାଗଣଙ୍କ ଦ୍ୱାରା ସମାକୀର୍ଣ୍ଣ ହୁଅନ୍ତେ ମେଘାବୃତସଦୃଶ

ଅତିଶୟ ସୁଶୋଭିତ ହେଲା । ସେହି ସ୍ଥାନରୁ ପୁନଃ ମହାତ୍ମା ଦ୍ରୋଣାର୍ଜୁନଙ୍କର ସୁତିସମନ୍ୱିତ ଅଲକ୍ଷିତ ବାକ୍ୟସମୂହ ଉକ୍ତ ହେଲା । ସେହି ଦୁଇ ମହାତ୍ମାଙ୍କର ପରିତ୍ୟକ୍ତ ଶରଜାଲ ପ୍ରଭାବରେ ଦଶଦିଗ ଆଲୋକମୟ ହେଲା ।

ଅନ୍ତରୀକ୍ଷସମାଗତ ସିଦ୍ଧ ଓ ଋଷିଗଣ ଏହିପରି କଥୋପକଥନ କଲେ ଯେ ଏହି ଯୁଦ୍ଧ ମାନୁଷ, ଆସୁର, ରାକ୍ଷସ, ଦୈବ କମ୍ବା ଗାନ୍ଧର୍ବ ନୁହେ; ଏହା ନିଶ୍ଚୟ ପରମବ୍ରହ୍ମ ଯୁଦ୍ଧ । ଏପରି ବିଚିତ୍ର ଓ ବିସ୍ମୟକର ସଂଗ୍ରାମ କଦାଚ ଦୃଷ୍ଟ ବା ଶ୍ରୁତ ହୋଇନାହିଁ । କେତେବେଳେ ଆଚାର୍ଯ୍ୟ ଅର୍ଜୁନଙ୍କୁ, କେତେବେଳେ ଅର୍ଜୁନ ଆଚାର୍ଯ୍ୟଙ୍କୁ ଅତିକ୍ରମ କରୁଅଛନ୍ତି, ଅପର କୌଣସି ବ୍ୟକ୍ତି ଏମାନଙ୍କର ଛିଦ୍ର ଲକ୍ଷ୍ୟ କରିବାକୁ ସମର୍ଥ ନୁହନ୍ତି ।୪୩। ଶିବ ନିଜକୁ ବିଭକ୍ତ କରି ଆପେ ଆପଣା ସହିତ ଯୁଦ୍ଧ କଲେ, ତାହା ଏହି ଯୁଦ୍ଧର ଉପମା ହୋଇ ପାରିବ । ଅନ୍ୟଥା ଏହାର ତୁଳନା ଅନ୍ୟ କୌଣସିଠାରେ ସମ୍ଭବ ନୁହେ ।୪୪। ଯେପରି ସମବେତ ଜ୍ଞାନ ଆଚାର୍ଯ୍ୟଙ୍କଠାରେ ଅଧିଷ୍ଠିତ, ସେହିପରି ସମବେତ ଜ୍ଞାନ ଓ ଯୋଗ ଏ ଉଭୟ ଅର୍ଜୁନଙ୍କଠାରେ ବିଦ୍ୟମାନ ଅଛି । ଆଚାର୍ଯ୍ୟ ଯେପରି ଏକତ୍ରିତ ଶୌର୍ଯ୍ୟରାଶିର ଆଧାର, ସେହିପରି ଧନଞ୍ଜୟ ମଧ ବଳ ଓ ଶୌର୍ଯ୍ୟର ଆଧାର । ଏ ଦୁଇ ମହାଧନୁର୍ଦ୍ଧରଙ୍କୁ ସଂଗ୍ରାମରେ କୌଣସି ଶତ୍ରୁ ପରାଜିତ କରିବାକୁ ସମର୍ଥ ନୁହନ୍ତି । ଏମାନେ ଇଚ୍ଛାକଲେ ଦେବଗଣଙ୍କ ସହିତ ସମୁଦାୟ ଜଗତକୁ ବିଧ୍ୱଂସ କରିପାରନ୍ତି । ୪୫ ।

ହେ ମହାରାଜ ! ସେହି ପୁରୁଷଶ୍ରେଷ୍ଠଦ୍ୱୟଙ୍କର ଅଲୌକିକ କାର୍ଯ୍ୟ ସନ୍ଦର୍ଶନ କରି କି ଅଲକ୍ଷିତ କି ପ୍ରକାଶିତ ସମସ୍ତ ପ୍ରାଣିମାନେ ଏହିପରି କୁହାକୁହି ହେଲେ । ୪୬ । ଅନନ୍ତର ମହାମତି ଦ୍ରୋଣାଚାର୍ଯ୍ୟ ସମରରେ ଧନଞ୍ଜୟଙ୍କୁ ଓ ସମସ୍ତ ଅନ୍ତର୍ହିତ ପ୍ରାଣିମାନଙ୍କୁ ସନ୍ତାପିତ କରି ବ୍ରାହ୍ମଅସ୍ତ୍ରର ପ୍ରାଦୁର୍ଭାବ କଲେ । ୪୮ । ତଦ୍ଦ୍ୱାରା ପର୍ବତ ଓ କାନନସମବେତ ସମୁଦାୟ ଭୂମଣ୍ଡଳ କମ୍ପିତ ଓ ସମୀରଣ ବିଷମଭାବରେ ପ୍ରବାହିତ ହେଲା ; ସାଗରସମୂହ କ୍ଷୁଭିତ ହେଲା । ୪୯ । ମହାତ୍ମା ଦ୍ରୋଣ ବ୍ରାହ୍ମଅସ୍ତ୍ର ପ୍ରାଦୁର୍ଭାବ କରନ୍ତେ କୌରବ ଓ ପାଣ୍ଡବପକ୍ଷୀୟ ସୈନ୍ୟପ୍ରଭୃତି ସମସ୍ତ ପ୍ରାଣିମାନଙ୍କ ଅନ୍ତଃକରଣରେ ମହାନ୍ ତ୍ରାସ ଉତ୍ପନ୍ନ ହେଲା । କିନ୍ତୁ ଅର୍ଜୁନ ଅସମ୍ଭ୍ରାନ୍ତ

ତଦନ୍ତରେ ବ୍ରାହ୍ମଅସ୍ତ୍ର ଦ୍ୱାରା ଦ୍ରୋଣାସ୍ତ୍ରକୁ ପ୍ରତିହତ କରିବାରୁ ଦିଗସମୂହ ପ୍ରଶାନ୍ତ ହେଲା । ୫୧ । ଏହାପରେ ସେଦୁହିଁଙ୍କ ମଧ୍ୟରୁ କେହି ଯେତେବେଳେ ଦିବ୍ୟାସ୍ତ୍ରଦ୍ୱାରା ଜୟଲାଭ କରି ପାରିଲେ ନାହିଁ, ସେତେବେଳେ ଉଭୟ ବ୍ରହ୍ମାସ୍ତ୍ର ପରିତ୍ୟାଗରୁ ନିବୃତ୍ତ ହୋଇ ଅବିଚ୍ଛେଦରେ ଶରବୃଷ୍ଟି କଲେ । ୫୨।

ହେ ମହାରାଜ ! ଦ୍ରୋଣାର୍ଜୁନଙ୍କର ସେହି ଶସ୍ତ୍ରସଂକୁଳ ତୁମୁଳ ସଂଗ୍ରାମ ଉପସ୍ଥିତ ହୁଅନ୍ତେ ଆଉ କୌଣସି ବିଷୟ ଅବଗତ ହୋଇ ପାରିଲୁଁ ନାହିଁ ।୫୩। ଏହି ସମୟରେ ନଭୋମଣ୍ଡଳ ମେଘଜାଲରେ ସମାବୃତ ହେବା ସଦୃଶ ଶରଜାଲରେ ସମାକୀର୍ଣ୍ଣ ହୁଅନ୍ତେ ନଭସ୍ଥର କୌଣସି ପ୍ରାଣୀ ସେଠାକୁ ଗମନ କରି ପାରିଲେ ନାହିଁ । ୫୪ ।

---

# ୧୮୯ ଅଧ୍ୟାୟ

ସଞ୍ଜୟ କହିଲେ— ହେ ମହାରାଜ ! ତୁରଙ୍ଗ-ମାତଙ୍ଗ-କ୍ଷୟକର ସେହି ତୁମୁଳ ସମର ସମୟରେ ଦୁଃଶାସନ ଧୃଷ୍ଟଦ୍ୟୁମ୍ନଙ୍କ ସହିତ ସମବେତ ହେଲେ । ୧ । ସେହି କାଳରେ ଧୃଷ୍ଟଦ୍ୟୁମ୍ନ ଦ୍ରୋଣଙ୍କ ସହିତ ସମରରେ ସମାସକ୍ତ ଥିଲେ । କିନ୍ତୁ ଆପଣଙ୍କ ପୁତ୍ରଙ୍କର ଶରସମୂହଦ୍ୱାରା ନିପୀଡ଼ିତ ହୋଇ କ୍ରୋଧରେ ତାହାଙ୍କର ରଥାଶ୍ୱସମୂହ ଶରଜାଲରେ ସମାକୀର୍ଣ୍ଣ କଲେ । ୨ । କ୍ଷଣକ ମଧ୍ୟରେ ଦୁଃଶାସନଙ୍କର ରଥ, ସାରଥି ଓ ଧ୍ୱଜ ପୃଷତନନ୍ଦନ ଧୃଷ୍ଟଦ୍ୟୁମ୍ନଙ୍କର ଶରଜାଲରେ ଏପରି ସମାଚ୍ଛିତ ହେଲା ଯେ ଆଉ କିଛି ଦୃଷ୍ଟିଗୋଚର ହେଲାନାହିଁ । ଦୁଃଶାସନ ମହାତ୍ମା ପାଞ୍ଚାଳନନ୍ଦନ ଧୃଷ୍ଟଦ୍ୟୁମ୍ନଙ୍କର ଶରନିକରରେ ନିପୀଡ଼ିତ ହୋଇ ତାହାଙ୍କ ସମ୍ମୁଖରେ ରହି ପାରିଲେ ନାହିଁ । ୪ । ପାଞ୍ଚାଳନନ୍ଦନ ଏହାପରେ ଦୁଃଶାସନଙ୍କୁ ପରାଙ୍ମୁଖ କରି ସହସ୍ର ଶରଜାଲ ବିକିରଣ କରୁ କରୁ ଦ୍ରୋଣାଭିମୁଖକୁ ଗମନ କଲେ । ୫ । ତାହା ଦେଖି ହୃଦିକାତ୍ମଜ କୃତବର୍ମା ଓ ତିନିଜଣ ରାଜ-ସହୋଦର ଏକତ୍ରିତ ହୋଇ ଧୃଷ୍ଟଦ୍ୟୁମ୍ନଙ୍କୁ ପରିବେଷ୍ଟନ କରି ନିବାରଣ କଲେ । ଏହି ସମୟରେ ପୁରୁଷଶ୍ରେଷ୍ଠ ନକୁଳ ଓ ସହଦେବ ପ୍ରଦୀପ୍ତ ଅନଳ ସଦୃଶ ଧୃଷ୍ଟଦ୍ୟୁମ୍ନଙ୍କୁ ଦ୍ରୋଣାଭିମୁଖକୁ ଗମନ କରିବାର ଦେଖି ତାହାଙ୍କର ରକ୍ଷକ ହୋଇ ପଶ୍ଚାତ୍ ପଶ୍ଚାତ୍ ଗମନ କଲେ । ୭ ।

ହେ ମହାରାଜ ! ଏହିପରି ଉଭୟ ପକ୍ଷୀୟ ବୀର୍ଯ୍ୟବାନ୍ ଓ ଅମର୍ଷାନ୍ୱିତ ସେହି ସାତଜଣ ମହାରଥୀ ମରଣକୁ ଅଗ୍ରବର୍ତ୍ତୀ କରି ଘୋରତର ସମରରେ ପ୍ରବୃତ୍ତ ହେଲେ । ୮ । ପରସ୍ପର ବିଜୟାଭିଳାଷୀ ବିଶୁଦ୍ଧାତ୍ମା ସଦାଚାରସଂପନ୍ନ ସେହି ବୀରମାନେ ସ୍ୱର୍ଗକାମୀ ହୋଇ ନ୍ୟାୟାନୁସାରେ ଯୁଦ୍ଧ କଲେ । ସେମାନେ ସମସ୍ତେ ବିଶୁଦ୍ଧବଂଶଜ ସତ୍‌କର୍ମଶାଳୀ ମତିମାନ୍ ଓ ମନୁଷ୍ୟମାନଙ୍କର ପ୍ରଭୁ । ଅତଏବ ଉତ୍ତମଗତି ପ୍ରାପ୍ତିମାନସରେ ସମସ୍ତେ ଧର୍ମ ଯୁଦ୍ଧ କଲେ । ୧୦ । ସେଠାରେ ଶଠତାପୂର୍ଣ୍ଣ ବା ଶାସ୍ତ୍ରବହିର୍ଭୂତ ଯୁଦ୍ଧ ହୋଇ ନ ଥିଲା । ସେଠାରେ କର୍ଣ୍ଣୀ ଅସ୍ତ୍ର, ନାଳୀକ ଅସ୍ତ୍ର, ବିଷଲିପ୍ତ ଅସ୍ତ୍ର, ବସ୍ତିକ ଅସ୍ତ୍ର, ବହୁଳ କଣ୍ଟକମୟ ସୂଚୀ ଅସ୍ତ୍ର, ଛତ୍ରକଣ୍ଟକବିଶିଷ୍ଟ କପିଶ ଅସ୍ତ୍ର, ଗୋ-ଶୃଙ୍ଗ, ଗଜାସ୍ଥିନିର୍ମିତ ଅସ୍ତ୍ର, ପୂତିଗନ୍ଧଯୁକ୍ତ ସଂଶ୍ଳିଷ୍ଟ ଓ କୁଟିଳଗାମୀ ପ୍ରଭୃତି କୌଣସି ପ୍ରକାର ଅସ୍ତ୍ର ପ୍ରୟୋଗ ହୋଇ ନ ଥିଲା । ୧୨ । ସେମାନେ ଧର୍ମଯୁଦ୍ଧ ଦ୍ୱାରା ପରଲୋକ ଓ କୀର୍ତ୍ତିପ୍ରାପ୍ତି କାମନାରେ ଅତି ସରଳ ଓ ବିଶୁଦ୍ଧ ଅସ୍ତ୍ରସମୂହ ଧାରଣ କରିଥିଲେ । ୧୩ । ସେହି ସମୟରେ ପାଣ୍ଡବପକ୍ଷୀୟ ସେହି ତିନଜଣ ବୀରମାନଙ୍କ ସହିତ ଆପଣଙ୍କପକ୍ଷୀୟ ଚାରିଜଣ ରଥୀଙ୍କର ସର୍ବଦୋଷବିବର୍ଜିତ ତୁମୁଳ ସଂଗ୍ରାମ ହେଲା । ୧୪ । ଅନନ୍ତର ଧୃଷ୍ଟଦ୍ୟୁମ୍ନ ଯେତେବେଳେ ଦେଖିଲେ ଯେ କେବଳ ନକୁଳ ଓ ସହଦେବ ଏହି ଦୁହେଁ କୌରବପକ୍ଷୀୟ ଚାରିଜଣ ରଥୀଶ୍ରେଷ୍ଠଙ୍କୁ ନିବାରଣ କରୁଅଛନ୍ତି, ସେତେବେଳେ ସେ ସ୍ୱୟଂ ଲଘୁହସ୍ତରେ ଅସ୍ତ୍ରଜାଲ ବିମୋଚନ କରୁ କରୁ ଦ୍ରୋଣାଭିମୁଖକୁ ଗମନ କଲେ । ୧୫ । ଅସ୍ମତ୍‌ପକ୍ଷୀୟ କୃତବର୍ମା ପ୍ରଭୃତି ସେହି ଚାରିଜଣ ରଥୀ ପୁରୁଷସିଂହ ନକୁଳ ଓ ସହଦେବଙ୍କ କର୍ତ୍ତୃକ ନିବାରିତ ହୋଇ ପ୍ରଚଣ୍ଡ ବାୟୁବେଗରେ ପର୍ବତ ଉପରେ ପତିତ ହେଲପ୍ରାୟ ସେ ଦୁଇ ଭ୍ରାତାଙ୍କ ଉପରେ ପତିତ ହେଲେ । ୧୬ । ହେ ମହାରାଜ ! ରଥସତ୍ତମ ଯମଜ ନକୁଳ ଓ ସହଦେବ ଏ ଦୁହେଁ ଅସ୍ମତ୍‌ପକ୍ଷୀୟ ଚାରିଜଣ ବୀରଙ୍କ ସହିତ ଓ ଧୃଷ୍ଟଦ୍ୟୁମ୍ନ ଦ୍ରୋଣଙ୍କ ସହିତ ସମରରେ ସମାସକ୍ତ ହେଲେ । ୧୭ । ଏହି ସମୟରେ ରାଜା ଦୁର୍ଯ୍ୟୋଧନ ଯୁଦ୍ଧଦୁର୍ମ୍ମଦ ପାଞ୍ଚାଳନନ୍ଦନଙ୍କୁ ଦ୍ରୋଣଙ୍କ ସହିତ ଓ କୃତବର୍ମା ପ୍ରଭୃତିଙ୍କୁ ନକୁଳ ସହଦେବଙ୍କ ସହିତ ସଂଗ୍ରାମରେ ସଂଗତ ହେବାର ଦେଖି ଶୋଣିତଭୋଜୀ ଶରଜାଲ ବିକୀରଣ କରୁ କରୁ ସେଠାରେ ଉପସ୍ଥିତ ହେଲେ । ତାହା ଦେଖି ସାତ୍ୟକି ଅବିଳମ୍ବରେ ଦୁର୍ଯ୍ୟୋଧନଙ୍କର

ପ୍ରତିପକ୍ଷରେ ଧାବିତ ହୁଅନ୍ତେ କୁରୁ ଓ ମଧୁବଂଶୀୟ ସେହି ଦୁଇ ନର-ଶାର୍ଦ୍ଦୂଳ ପରସ୍ପର ସମୀପସ୍ଥ ହୋଇ ନର୍ତ୍ତକ ଗତିରେ ଯୁଦ୍ଧାର୍ଥ ସଙ୍ଗତ ହେଲେ । ୨୦ ।

ହେ ମହାରାଜ ! ସେ ଦୁହେଁ ବାଲ୍ୟବୃତ୍ତାନ୍ତସମୂହ ମନେ ମନେ ସ୍ମରଣ କରି ଅତ୍ୟନ୍ତ ପ୍ରୀତିମାନ୍ ହେଲେ । ପରସ୍ପର ପରସ୍ପରକୁ ଅବଲୋକନ କରି ପୁନଃ ପୁନଃ ହାସ୍ୟ କଲେ । ୨୧ । ଅନନ୍ତର ରାଜା ଦୁର୍ଯ୍ୟୋଧନ ଆପଣାର କ୍ଷତ୍ରିୟ ଧର୍ମର ନିନ୍ଦା କରି ପ୍ରିୟସଖା ସାତ୍ୟକଙ୍କୁ କହିଲେ, ହେ ସଖେ ! କ୍ରୋଧ, ଲୋଭ, ମୋହ ଓ ଅମର୍ଷକୁ ଧିକ୍ । ଆମ୍ଭମାନଙ୍କର କ୍ଷତ୍ରିୟ ଆଚାର, ବଳ, ଓ ପୌରୁଷକୁ ଧିକ୍ । ଯେହେତୁ ଆମ୍ଭେ ଦୁହେଁ ଦୁହିଁଙ୍କ ପ୍ରତି ଶର ସନ୍ଧାନରେ ଉଦ୍ୟତ ହୋଇଅଛୁଁ । ଆମ୍ଭେ ବାଲ୍ୟବୃତ୍ତାନ୍ତ ସକଳ ସ୍ମରଣ କରି ଦେଖୁଅଛୁଁ ଯେ, ସେହି ସମୟରେ ଆମ୍ଭେମାନେ ଉଭୟେ ଉଭୟଙ୍କର ପ୍ରାଣ ଅପେକ୍ଷା ପ୍ରିୟତର ଥିଲୁଁ ! ବର୍ତ୍ତମାନ ଏହି ସମରାଙ୍ଗଣରେ ଉପସ୍ଥିତ ହେବାରୁ ଆମ୍ଭମାନଙ୍କର ବାଲ୍ୟସଖ୍ୟ ଜୀର୍ଣ୍ଣ ହେଲା । କାହିଁକି ନା—ଆମ୍ଭେମାନେ ବର୍ତ୍ତମାନ ଯୁଦ୍ଧରେ ପ୍ରବୃତ୍ତ ହୋଇଅଛୁଁ । କ୍ରୋଧ ଓ ଲୋଭ ଅପେକ୍ଷା ଅନଷ୍ଟକର ଆଉ କ'ଣ ଅଛି ? ରାଜା ଦୁର୍ଯ୍ୟୋଧନ ଏହିପରି କହନ୍ତେ, ପରମାସ୍ତ୍ରଜ୍ଞ ସାତ୍ୟକି ତୀକ୍ଷ୍ଣତର ଶସ୍ତ୍ର ଉଦ୍ୟତ କରି ହସି ହସି ଏହିପରି ପ୍ରତ୍ୟୁତ୍ତର କଲେ ।

ହେ ରାଜପୁତ୍ର ! ପୂର୍ବେ ଆମ୍ଭେମାନେ ଯେଉଁଠାରେ ଏକତ୍ରିତ ହୋଇ କ୍ରୀଡ଼ା କରୁଥିଲୁଁ ଏହି ରଣଭୂମି ସେହି ସଭାସ୍ଥଳ ବା ଆଚାର୍ଯ୍ୟଙ୍କ ନିକେତନ ନୁହେଁ ।

ତହୁଁ ଦୁର୍ଯ୍ୟୋଧନ କହିଲେ, ହେ ଶିନିପୁଙ୍ଗବ ! ଆମ୍ଭମାନଙ୍କର ସେହି ବାଲ୍ୟକ୍ରୀଡ଼ା କେଉଁଆଡ଼େ ଗଲା ? ବର୍ତ୍ତମାନ ଅଶୁଭବମୀୟ ଏହି ଯୁଦ୍ଧ କେଉଁଠାରୁ ଆସିଲା ? କାଳ ଦୁରତିକ୍ରମଣୀୟ ଅଟେ । ଧନଲାଭ ଇଚ୍ଛାରେ ଆମ୍ଭମାନଙ୍କର ଏହି ଯୁଦ୍ଧ ସଂଘଟିତ ହୋଇଅଛି । ଏହି ଧନଲୋଭ ହେତୁ ଆମ୍ଭେମାନେ ସମସ୍ତେ ଏକତ୍ରିତ ହୋଇ ସଂଗ୍ରାମରେ ପ୍ରବୃତ୍ତ ହୋଇଅଛୁଁ ।

ସଞ୍ଜୟ କହିଲେ—ହେ ମହାରାଜ ! ରାଜା ଦୁର୍ଯ୍ୟୋଧନ ଏହିକଥା କହିବାରୁ ମଧୁକୁଳସମ୍ଭୂତ ସାତ୍ୟକ କହିଲେ, ହେ ରାଜନ୍ ! କ୍ଷତ୍ରିୟମାନଙ୍କର ଏହି ବୃତ୍ତି ଯେ ସେମାନେ ସଂଗ୍ରାମରେ ଗୁରୁଙ୍କ ପ୍ରତି ମଧ ଅସ୍ତ୍ର ପ୍ରହାର କରନ୍ତି । ହେ ଭାରତ ଶ୍ରେଷ୍ଠ ! ଯଦି ଆମ୍ଭେ ତୁମ୍ଭର ପ୍ରିୟ, ତେବେ ତୁମ୍ଭେ ଶୀଘ୍ର ଆମ୍ଭଙ୍କୁ ବିନାଶ କର । ତାହାହେଲେ ତୁମ୍ଭକର୍ତ୍ତୃକ ଆମ୍ଭେ ସୁକୃତ ଲୋକକୁ ଗମନ କରିବୁଁ । ହେ ଦୁର୍ଯ୍ୟୋଧନ ! ତୁମ୍ଭର ଯେତେ ଶକ୍ତି ଓ ବଳ ଅଛି, ସେ ସମସ୍ତକୁ ଆମ୍ଭଠାରେ ଦେଖାଅ । ଆମ୍ଭେ ଆତ୍ମୀୟମାନଙ୍କର ଏହି ସୁମହତ୍ ବ୍ୟସନ ନିରୀକ୍ଷଣ କରିବାକୁ ଅଭିଳାଷ କରୁନାହୁଁ । ସାତ୍ୟକ ଏହିପରି ଉତ୍ତର ପ୍ରତ୍ୟୁତ୍ତର କରି ନିର୍ଭୟ ଓ ଅବ୍ୟଗ୍ରଚିତ୍ତରେ ଶୀଘ୍ର ଦୁର୍ଯ୍ୟୋଧନଙ୍କ ଅଭିମୁଖକୁ ଧାବିତ ହେଲେ । ମହାବାହୁ ଶିନିନନ୍ଦନ ସେହିପରି ଆଗମନ କରନ୍ତେ, ଆପଣଙ୍କ ପୁତ୍ର ଅସଂଖ୍ୟ ଶରଜାଲ ବିକିରଣ କରି ତାହାଙ୍କୁ ପ୍ରତିରୋଧ କଲେ ।

ହେ ମହାରାଜ ! କୁରୁ ଓ ମଧୁବଂଶୀୟ ସେହି ଦୁଇ ନରସିଂହ କ୍ରୁଦ୍ଧ ମୃଗେନ୍ଦ୍ର ଓ ମାତଙ୍ଗ ସଦୃଶ ଘୋରତର ସଂଗ୍ରାମରେ ପ୍ରବୃତ୍ତ ହେଲେ । ଅନନ୍ତର ରାଜା ଦୁର୍ଯ୍ୟୋଧନ ରୋଷାବିଷ୍ଟ ହୋଇ ଆକର୍ଣ୍ଣ ସନ୍ଧାନ ପୂର୍ବକ ଦଶଗୋଟି ଶରଦ୍ୱାରା ରଣଦୁର୍ମ୍ମଦ ସାତ୍ୟକଙ୍କୁ ବିଦ୍ଧ କଲେ । ଏହିପରି ସାତ୍ୟକ ମଧ ପ୍ରଥମରେ ପଞ୍ଚାଶତ, ତତ୍ପରେ ତ୍ରିଂଶତ୍ ଗୋଟି ଶରରେ କୁରୁପତିଙ୍କୁ ପ୍ରତିବିଦ୍ଧ କରି ଶେଷରେ ଅସଂଖ୍ୟ ଶରଜାଲ ଦ୍ୱାରା ତାହାଙ୍କୁ ସମାକୀର୍ଣ୍ଣ କଲେ । ତାହାଦେଖି ଆପଣଙ୍କ ପୁତ୍ର ଅମ୍ଳାନବଦନରେ ଆକର୍ଣ୍ଣ ସନ୍ଧାନପୂର୍ବକ ତ୍ରିଂଶତ୍ ଶାଣିତ ଶରରେ ସାତ୍ୟକଙ୍କୁ ବିଦ୍ଧ କରି ଗୋଟିଏ କ୍ଷୁରପ୍ରହାରେ ତାହାଙ୍କର ସଶର ଶରାସନକୁ ଦୁଇଖଣ୍ଡ କରି ଛେଦନ କଲେ । ୩୯ । ତେତେବେଳେ ଶିନିନନ୍ଦନ ଶୀଘ୍ରହସ୍ତରେ ଅପର ଗୋଟିଏ ଦୃଢ଼ତର ଶରାସନ ଗ୍ରହଣପୂର୍ବକ ଆପଣଙ୍କ ପୁତ୍ରଙ୍କ ପ୍ରତି ବହୁସଂଖ୍ୟକ ଶର ବିମୋଚନ କଲେ । ୪୦ । କୁରୁରାଜ ସେହି ଆତ୍ମବିନାଶକର ଆପତିତ ଶରସମୂହକୁ ଖଣ୍ଡ ଖଣ୍ଡ କରି ଛେଦନ କରନ୍ତେ ସୈନ୍ୟମାନେ ଚିତ୍କାର କଲେ । ୪୧ ।

ସେହି ସମୟରେ ଦୁର୍ଯ୍ୟୋଧନ ଆକର୍ଣ୍ଣାକୃଷ୍ଟ ଶିଳାଧୌତ ସୁବର୍ଣ୍ଣପୁଙ୍ଖସମନ୍ୱିତ ସପ୍ତଦଶ ବାଣ ମହାବେଗରେ ବିମୋଚନ କରି ସାତ୍ୟକଙ୍କୁ

ଗ୍ରୀଡ଼ିତ କଲା ପରେ ପୁନର୍ବାର ଶରସନ୍ଧାନରେ ପ୍ରବୃତ୍ତ ହେଲେ । ତେତେବେଳେ ଶିନିପୌତ୍ର କୁରୁରାଜଙ୍କର ଶରସନ୍ଧାନ ସମୟରେ ସେହି ସଶର ଶରାସନକୁ ଅବିଳମ୍ବେ ଛେଦନ କରି ତାହାଙ୍କୁ ଅସଂଖ୍ୟ ଶରନିକରଦ୍ୱାରେ ବିଦ୍ଧ କଲେ । ୪୩ । କୁରୁରାଜ ଦାଶାର୍ହ ସାତ୍ୟକିଙ୍କର ଶରପ୍ରଭାବରେ ଗାଢ଼ବିଦ୍ଧ ଓ ବ୍ୟଥିତ ହୋଇ ରଥ ଯୋଗେ ପ୍ରସ୍ଥାନ କଲେ । ୪୪ । ତତ୍ପରେ ଆଶ୍ୱସ୍ତ ହୋଇ ପୁନର୍ବାର ଶରଜାଲ ବର୍ଷଣ କରୁ କରୁ ଯୁଯୁଧାନଙ୍କ ରଥାଭିମୁଖକୁ ଗମନ କଲେ । ୪୫ । ସାତ୍ୟକି ମଧ୍ୟ ଦୁର୍ଯ୍ୟୋଧନଙ୍କର ରଥକୁ ଲକ୍ଷ୍ୟ କରି ଅନବରତ ଶରବର୍ଷଣ କରନ୍ତେ ଭୟଙ୍କର ଶରସଙ୍କୁଳ ହେଲା । ୪୬ । ସେହି ନିକ୍ଷିପ୍ତ ଶରସମୂହ ସୈନ୍ୟମାନଙ୍କ ଉପରେ ପତିତ ହୁଅନ୍ତେ ତୃଣରାଶି ଉପରେ ପ୍ରକ୍ଷିପ୍ତ ହୁତାଶନସଦୃଶ ସୁମହାନ୍ ଶବ୍ଦ ହେଲା । ୪୭ । ସେହି ସମୟରେ ସେ ଦୁହିଁଙ୍କର ସହସ୍ର ସହସ୍ର ଶରଜାଲରେ ଧରାତଳ ସମାଚ୍ଛନ୍ନ ଓ ନଭୋମଣ୍ଡଳ ଆକାଶଚର ପ୍ରାଣିମାନଙ୍କର ଅଗମ୍ୟ ହେଲା । ୪୮ । ତନ୍ମଧ୍ୟରେ ମଧୁକୁଳସମ୍ଭୂତ ରଥୀସତ୍ତମ ସାତ୍ୟକିଙ୍କୁ ଅଧିକ ବଳଶାଳୀ ଅବଲୋକନ କରି କର୍ଣ୍ଣ ଆପଣଙ୍କ ପୁତ୍ରଙ୍କର ଜୀବନ ରକ୍ଷା-ବାସନାରେ ଅବିଳମ୍ବେ ସେଠାରେ ଉପସ୍ଥିତ ହେଲେ । ୪୯ । ପରନ୍ତୁ ମହାବଳଶାଳୀ ଭୀମସେନ ତାହା ସହି ନ ପାରି ବହୁସଂଖ୍ୟକ ଶରବୃଷ୍ଟି ବିକରଣ କରୁକରୁ ସତ୍ୱର କର୍ଣ୍ଣଙ୍କ ପ୍ରତିପକ୍ଷରେ ଧାବମାନ ହେଲେ । ତାହା ଦେଖି କର୍ଣ୍ଣ ହସି ହସି ଭୀମଙ୍କର ଶିତଧାର ଶରସମୂହକୁ ପ୍ରତିହତ କରି ତାହାଙ୍କର ସଶର ଶରାସନକୁ ଛେଦନ ପୂର୍ବକ ସାରଥିଙ୍କୁ ପ୍ରହାର କଲେ । ୫୧ ।

ସେହି ସମୟରେ ମହାବଳପରାକ୍ରାନ୍ତ ପାଣ୍ଡୁନନ୍ଦନ ବୃକୋଦର କ୍ରୋଧାନ୍ୱିତ ହୋଇ ଗଦାଗ୍ରହଣ ପୂର୍ବକ ରାଧାନନ୍ଦନଙ୍କର ଧ୍ୱଜ, ଧନୁ ଓ ସାରଥିକୁ ବିମର୍ଦ୍ଦିତ କରି ରଥର ଗୋଟିଏ ଚକ୍ରକୁ ଭଗ୍ନ କଲେ । କର୍ଣ୍ଣ-ଅଚଳସଦୃଶ ଅବିଚଳିତ ଭାବରେ ସେହି ଭଗ୍ନଚକ୍ର ରଥରେ ଅବସ୍ଥିତ ହୋଇ ରହିଲେ । ୫୩ ।

ହେ ମହାରାଜ ! ସେହି ସମୟରେ ଅଶ୍ୱମାନେ କର୍ଣ୍ଣଙ୍କର ସେହି ଏକଚକ୍ର ରଥକୁ ସୁଚିରକାଳ ପର୍ଯ୍ୟନ୍ତ ବହନ କଲେ । ସପ୍ତାଶ୍ୱବାହନୀପୂ

ସୂର୍ଯ୍ୟଙ୍କର ଏକଚକ୍ର ରଥସଦୃଶ ତାହା ପ୍ରଶସ୍ତୀୟମାନ ହେଲା । ୫୪ । ଚନ୍ଦ୍ରାଦି ଭଗ୍ନ ହୁଅନ୍ତେ ସୂତପୁତ୍ର ଅତିଶୟ ଅମର୍ଷାନ୍ୱିତ ହୋଇ ବହୁବିଧ ଅସ୍ତ୍ର ଓ ଶସ୍ତ୍ର ଦ୍ୱାରା ଭୀମଙ୍କ ସହିତ ଯୁଦ୍ଧ କଲେ । ଭୀମସେନ ମଧ୍ୟ କ୍ରୁଦ୍ଧ ହୋଇ ତାହାଙ୍କ ସହିତ ସଂଗ୍ରାମରେ ପ୍ରବୃତ୍ତ ହେଲେ । ତାଦୃଶ ଯୁଦ୍ଧ ସମୟରେ ଧର୍ମ୍ମନନ୍ଦନ ଯୁଧିଷ୍ଠିର ନରଶ୍ରେଷ୍ଠ ମତ୍ସ୍ୟ ଓ ପାଞ୍ଚାଳଗଣଙ୍କ ପ୍ରତି ଏହି ଆଦେଶ ଦେଲେ ।

ହେ ବୀରଗଣ ! ଯେଉଁ ପୁରୁଷଶ୍ରେଷ୍ଠ ମହାରଥୀମାନେ ଆମ୍ଭମାନଙ୍କର ପ୍ରାଣ ଓ ମସ୍ତକସ୍ୱରୂପ, ସେମାନେ ସମସ୍ତେ କୌରବମାନଙ୍କ ସହିତ ସମରରେ ସମାସକ୍ତ ହୋଇଅଛନ୍ତି । ବର୍ତ୍ତମାନ ତୁମ୍ଭେମାନେ କି ନିମିତ୍ତ ବିମୋହିତ ଜଡ଼ସଦୃଶ ଅବସ୍ଥାନ କରୁଅଛ ? ଯେଉଁଠାରେ ଅସ୍ମତ୍ ପକ୍ଷୀୟ ବୀରମାନେ ଯୁଦ୍ଧ କରୁଅଛନ୍ତି, ତୁମ୍ଭେ ଅବିଳମ୍ବେ ସେଠାକୁ ଗମନ କର । କ୍ଷତ୍ରିୟ ଧର୍ମ୍ମାନୁସାରେ ନିଃଶଙ୍କ ଚିତ୍ତରେ ଯୁଦ୍ଧକରି ନିହତ ହେଲେ ମଧ୍ୟ ଜୟଯୁକ୍ତ ହୋଇ ଆପଣା ଆପଣା ଅଭିଳଷିତ ଗତି ଲାଭକରି ପାରିବ । ଅତଏବ ସମରରେ ଶତ୍ରୁମାନଙ୍କୁ ପରାଜିତ କରି ଭୂରିଦକ୍ଷିଣ ବହୁବିଧ ଯଜ୍ଞାଦି କର । ନତୁବା ସେମାନଙ୍କ କର୍ତ୍ତୃକ ନିହତ ହୋଇ ଦିବ୍ୟଶରୀର ଧାରଣ ପୂର୍ବକ ପବିତ୍ର ଲୋକକୁ ଗମନ କର ।

ହେ ମହାରାଜ ! ସେହି ମହାରଥୀମାନେ ରାଜା ଯୁଧିଷ୍ଠିରଙ୍କ ଆଦେଶାନୁସାରେ କ୍ଷତ୍ରିୟ ଧର୍ମ୍ମକୁ ପୁରୋବର୍ତ୍ତୀ କରି ସତ୍ୱର ଦ୍ରୋଣାଭିମୁଖକୁ ଧାବିତ ହେଲେ । ସେହି ସମୟରେ ପାଞ୍ଚାଳମାନେ ଦୁଇଭାଗରେ ବିଭକ୍ତ ହୋଇ ଭୀମସେନଙ୍କୁ ଅଗ୍ରବର୍ତ୍ତୀ କରି ଏକଦିଗରୁ ତାହାଙ୍କୁ ପ୍ରହାର କଲେ । ଅନନ୍ତର ପାଣ୍ଡବପକ୍ଷୀୟ ନକୁଳ, ସହଦେବ ଓ ଭୀମସେନ ଏହି ତିନିଜଣ ମହାରଥୀ କୌଟିଲ୍ୟ ବ୍ୟବହାର ପୂର୍ବକ ଚିତ୍କାର କରି ଧନଞ୍ଜୟଙ୍କୁ ଆହ୍ୱାନ କଲେ । ହେ ଅର୍ଜ୍ଜୁନ ! ଶୀଘ୍ର ଆଗମନ କରି ଦ୍ରୋଣଙ୍କ ନିକଟରୁ କୌରବ-ମାନଙ୍କୁ ଦୂରୀକୃତ କର । କାରଣ ଦ୍ରୋଣ ଅରକ୍ଷିତ ହେଲେ ପାଞ୍ଚାଳମାନେ ତାହାଙ୍କୁ ଅନାୟାସରେ ସଂହାର କରିପାରିବେ । ମହାବୀର ଧନଞ୍ଜୟ ଏହା ଶ୍ରବଣ କରି ସହସା କୌରବମାନଙ୍କ ପ୍ରତିପକ୍ଷରେ ଅଭିଦ୍ରୁତ ହେଲେ ।

ଦ୍ରୋଣାଗୃର୍ଯ୍ୟ ମଧ୍ୟ ସେହି ପଞ୍ଚମଦିବସରେ ଧୃଷ୍ଟଦ୍ୟୁମ୍ନ ପ୍ରଭୃତି ପାଞ୍ଚାଳମାନଙ୍କୁ ମର୍ଦ୍ଦିତ କରିବାରେ ପ୍ରବୃତ୍ତ ହେଲେ । ୭୭ ।

---

# ୧୯୦ ଅଧ୍ୟାୟ

ସଞ୍ଜୟ କହିଲେ—ହେ ମହାରାଜ ! ପୂର୍ବକାଳରେ ଦେବରାଜ ଇନ୍ଦ୍ର ଯେପରି ରୋଷାବିଷ୍ଟ ହୋଇ ସମରରେ ଦାନବମାନଙ୍କୁ ସଂହାର କରିଥିଲେ, ସେହିପରି ଦ୍ରୋଣ ଅନବରତ ପାଞ୍ଚାଳ ସୈନ୍ୟମାନଙ୍କୁ ବିଧ୍ୱଂସ କଲେ । କିନ୍ତୁ ବୀର୍ଯ୍ୟବାନ୍ ମହାରଥ ପାଞ୍ଚାଳମାନେ ଦ୍ରୋଣାସ୍ତ୍ରରେ ନିପୀଡ଼ିତ ହୋଇ ମଧ୍ୟ କିଞ୍ଚିନ୍ମାତ୍ର ଭୀତ ହେଲେ ନାହିଁ । ୨ । ଏକତ୍ର ମିଳିତ ପାଞ୍ଚାଳ ଓ ସୃଞ୍ଜୟଗଣ ସମରରେ ସମସ୍ତ ରଥିମାନଙ୍କୁ ବିମୋହିତ କରି ଦ୍ରୋଣଙ୍କ ପ୍ରତି ଅଭିଦ୍ରୁତ ହେଲେ । ୩ । ଅନନ୍ତର ସେମାନେ ଶରବୃଷ୍ଟି ଦ୍ୱାରା ସମାଚ୍ଛନ୍ନ ଓ ନିହତ ହୁଅନ୍ତେ ଭୟଙ୍କର କୋଳାହଳ ହେଲା । ୪ ।

ଏହିପରି ସମରାଙ୍ଗନରେ ପାଞ୍ଚାଳଗଣ ବଧ୍ୟମାନ ହେବାରୁ ଓ ମହାତ୍ମା ଦ୍ରୋଣଙ୍କର ଅସ୍ତ୍ରଜାଲ କ୍ରମଶଃ ଭୀଷଣ ରୂପରେ ଚତୁର୍ଦ୍ଦିଗରେ ସମାକୀର୍ଣ୍ଣ ହେବାରୁ ପାଣ୍ଡବମାନେ ଭୀତ ହେଲେ । ୫ । ସେହି ସମୟରେ ସେମାନେ ରଥାଶ୍ୱାଦି ଚତୁରଙ୍ଗିଣୀ ସେନାର ବିପୁଳ କ୍ଷୟ ସନ୍ଦର୍ଶନ କରି ଜୟାଶାରେ ନିରାଶ ହେଲେ । ମନେ ମନେ ଏହିପରି ଚିନ୍ତାକଲେ ଯେ, ବୋଧହୁଏ ବସନ୍ତ ସମୟରେ ପ୍ରଜ୍ୱଳିତ ପାବକ ଯେପରି ତୃଣରାଶିକୁ ଦଗ୍‌ଧ କରେ, ସେହିପରି ପରମାସ୍ତ୍ରଜ୍ଞ ଦ୍ରୋଣ ଆମ୍ଭସମସ୍ତଙ୍କୁ ଅଦ୍ୟ ବିନାଶ କରିବେ । ୭ । ବର୍ତ୍ତମାନ କେହି ଏହାଙ୍କୁ ନିରୀକ୍ଷଣ କରିବାକୁ ସମର୍ଥ ନୁହନ୍ତି । ଧର୍ମଜ୍ଞ ଧନଞ୍ଜୟ କଦାଚିତ୍ ଏହାଙ୍କ ସହିତ ଯୁଦ୍ଧ କରିବେ ନାହିଁ । ୮ ।

ଏହି ସମୟରେ ପାଣ୍ଡବମଙ୍ଗଳାକାଙ୍‌କ୍ଷୀ ଧୀମାନ୍ ବାସୁଦେବ କୁନ୍ତୀପୁତ୍ରମାନଙ୍କୁ ଦ୍ରୋଣ ଶରରେ ନିପୀଡ଼ିତ ଓ ସନ୍ତ୍ରସ୍ତ ଦେଖି ଅର୍ଜ୍ଜୁନ ପ୍ରଭୃତି ସମସ୍ତଙ୍କୁ କହିଲେ—ହେ ପାଣ୍ଡବଗଣ ! ଧନୁର୍ଦ୍ଧରାଗ୍ରଗଣ୍ୟ ଦ୍ରୋଣ ଶରାସନ-ହସ୍ତ ହୋଇ ରଣାଙ୍ଗଣରେ ଅବସ୍ଥିତ ଥିବା ସମୟରେ ଇନ୍ଦ୍ରାଦି ଦେବଗଣ

ମଧ୍ଯ ତାହାଙ୍କୁ ପରାଜିତ କରିପାରିବେ ନାହିଁ । କିନ୍ତୁ ଶସ୍ତ୍ରହୀନ ହେଲେ ସାମାନ୍ୟ ମନୁଷ୍ୟ ମଧ୍ୟ ତାହାଙ୍କୁ ବିନାଶ କରିପାରିବ । ଅତଏବ ବର୍ତ୍ତମାନ୍ ଧର୍ମଯୁଦ୍ଧ ପରିତ୍ୟାଗ କରି ଯଦ୍ଦ୍ୱାରା ରକ୍ତବର୍ଣ୍ଣାଶ୍ୱଯୋଜିତରଥାରୋହୀ ଦ୍ରୋଣ ତୁମ୍ଭ ସମସ୍ତଙ୍କୁ ବିନାଶ କରି ନ ପାରନ୍ତି, ସେହିପରି ଉପାୟ ଅବଲମ୍ବନ କର । ଆମ୍ଭର ବୋଧହୁଏ, ଅଶ୍ୱତ୍ଥାମା ନିହତ ହୋଇଅଛନ୍ତି । ଏହା ଶ୍ରବଣ କଲେ, ସେ ଆଉ ଯୁଦ୍ଧ କରିବାକୁ ସକ୍ଷମ ହେବେ ନାହିଁ ।

ଅତଏବ କୌଣସି ବ୍ୟକ୍ତି ତାହାଙ୍କ ନିକଟକୁ ଗମନ କରି ଅଶ୍ୱତ୍ଥାମାଙ୍କର ବିନାଶ ବାର୍ତ୍ତା ପ୍ରକାଶ କରୁ ।୧୨। କୁନ୍ତୀନନ୍ଦନ ଧନଞ୍ଜୟ କୃଷ୍ଣଙ୍କ ବାକ୍ୟ ଶ୍ରବଣ କରି ତହିଁରେ ସମ୍ମତ ହେଲେନାହିଁ । କିନ୍ତୁ ଅପରାପର ସମସ୍ତେ ସମ୍ମତ ହେଲେ । ରାଜା ଯୁଧିଷ୍ଠିର ମଧ୍ଯ ଅତିକଷ୍ଟରେ ସ୍ୱୀକାର କଲେ । ସେହି ସମୟରେ ମହାବାହୁ ଭୀମସେନ ଆପଣଙ୍କ ସୈନ୍ୟମଧ୍ୟରେ ପ୍ରବିଷ୍ଟ ହୋଇ ମାଳବଦେଶୀୟ ରାଜା ଇନ୍ଦ୍ରବର୍ମାଙ୍କର ଅଶ୍ୱତ୍ଥାମା ନାମକ ଶତ୍ରୁପ୍ରମଥନ ଗୋଟିଏ ଭୟଙ୍କର ହସ୍ତୀକୁ ଗଦାପ୍ରହାରରେ ସଂହାର କରି ସଲଜ୍ଜଭାବରେ ସମରସ୍ଥିତ ଦ୍ରୋଣଙ୍କ ସମୀପକୁ ଗମନ କରି ଅଶ୍ୱତ୍ଥାମା ନିହତ ହୋଇଅଛନ୍ତି ବୋଲି ଉଚ୍ଚୈଃସ୍ୱରରେ ଚିତ୍କାର କଲେ । ୧୬ । ଭୀମ ଏହି କଥା କହିବା ସମୟରେ ଅଶ୍ୱତ୍ଥାମା ନାମକ ହସ୍ତୀ ନିହତ ହୋଇଅଛି, ଏହିପରି ମନେ ମନେ କହି ପ୍ରକାଶ୍ୟରେ ସ୍ପଷ୍ଟ ମିଥ୍ୟା କହିଲେ । ୧୭ ।

ହେ ମହାରାଜ ! ଦ୍ରୋଣ ଭୀମସେନଙ୍କର ସେହି ନିଦାରୁଣ ଅପ୍ରିୟ-ବାକ୍ୟ ଶ୍ରବଣ କରି ଜଳସ୍ପୃଷ୍ଟ ବାଲୁକାଭୂମିତୁଲ୍ୟ ଅନ୍ତରରେ ଅବସନ୍ନ ହେଲେ । କିନ୍ତୁ ସେ ଆପଣା ପୁତ୍ରର ବଳବିକ୍ରମ ଅବଗତ ଥିଲେ, ତେଣୁ ଏହା ମିଥ୍ୟା ବୋଲି ସତର୍କ କରି ନିହତ ହେବାର ସମ୍ବାଦ ଶୁଣି ମଧ୍ୟ ଧୈର୍ଯ୍ୟଚ୍ୟୁତ ହେଲେନାହିଁ । ୧୯ । କ୍ଷଣକ ପରେ ସେ ପ୍ରକୃତିସ୍ଥ ହୋଇ ପୁତ୍ରର ପରାକ୍ରମ ଅରାତିମାନଙ୍କର ଅସହନୀୟ ବିବେଚନା କରି ଆପଣାକୁ ପ୍ରବୋଧିତ କଲେ ଓ ସ୍ୱୀୟ ମୃତ୍ୟୁସ୍ୱରୂପ ପୃଷତନନ୍ଦନ ଧୃଷ୍ଟଦ୍ୟୁମ୍ନଙ୍କ ଅଭି-ମୁଖକୁ ଗମନପୂର୍ବକ ତାହାଙ୍କୁ ବିନାଶ କରିବା ବାସନାରେ କଙ୍କପକ୍ଷଶୋଭିତ ସହସ୍ର ସହସ୍ର ଶାଣିତଶରଜାଲ ବିକିରଣ କଲେ । ୨୧ । ତେତେବେଳେ

ପାଞ୍ଚାଳଦେଶୀୟ ବିଂଶତିସହସ୍ର ମହାରଥ ସେହି ରଣଶ୍ଳାଘୀ ଦ୍ରୋଣାଚାର୍ଯ୍ୟଙ୍କ ଉପରେ ଚତୁର୍ଦ୍ଦିଗରୁ ଶରବର୍ଷଣ କଲେ । ୨୨ । ମହାରଥୀ ଆଚାର୍ଯ୍ୟ ସେମାନଙ୍କ ଶରଜାଲରେ ସମାବୃତ ହୋଇ ବର୍ଷାକାଳୀନ ଜଳଦସମାଚ୍ଛନ୍ନ ଭାସ୍କରସଦୃଶ ଅବରୁଦ୍ଧ ହେବାରୁ ଆମ୍ଭେମାନେ ଆଉ ତାହାଙ୍କୁ ଦେଖି ପାରିଲୁ ନାହିଁ । ୨୩ ।

ଅନନ୍ତର ଶତ୍ରୁତାପନ ମହାରଥୀ ଦ୍ରୋଣ ଅମର୍ଷାନ୍ୱିତ ହୋଇ ପାଞ୍ଚାଳମାନଙ୍କର ଶରସମୂହକୁ ନିରାକୃତ କରି ସେମାନଙ୍କ ବଧାର୍ଥ ଭୟାନକ ବ୍ରହ୍ମାସ୍ତ୍ର ପ୍ରାଦୁର୍ଭାବ କଲେ । ସେହି ମହାସମରରେ ସେ ବହୁସଂଖ୍ୟକ ସୋମକମାନଙ୍କୁ ସଂହାର କରି ପାଞ୍ଚାଳମାନଙ୍କର କନକଭୂଷିତ ପରିଘାକାର ବାହୁ ଓ ମସ୍ତକସମୂହକୁ ପାତିତ କଲେ । ୨୬ । ପାଞ୍ଚାଳମାନେ ଦ୍ରୋଣଙ୍କ କର୍ତ୍ତୃକ ନିହତ ହୋଇ ବାୟୁଭଗ୍ନ ମହୀରୁହ ସଦୃଶ ଧରାତଳରେ ନିପତିତ ହେଲେ । ୨୭ । ନିପତିତ ତୁରଙ୍ଗ ଓ ମାତଙ୍ଗମାନଙ୍କର ମାଂସଶୋଣିତରୂପ କର୍ଦ୍ଦମଦ୍ୱାରା ରଣଭୂମି ଅଗମ୍ୟା ହେଲା । ୨୮ ।

ଏହାପରେ ପ୍ରତାପବାନ୍ ଭରଦ୍ୱାଜନନ୍ଦନ ଦ୍ରୋଣ କ୍ଷଣକ ମଧ୍ୟରେ ପାଞ୍ଚାଳପକ୍ଷୀୟ ବିଂଶତିସହସ୍ର ରଥୀସୈନ୍ୟମାନଙ୍କୁ ସଂହାର କରି ସମରାଙ୍ଗନରେ ନିର୍ଧୂମ ଜ୍ୱଳଦଗ୍ନିସଦୃଶ ଅବସ୍ଥାନ କଲେ । ୨୯ । ତତ୍ପରେ ସେ ପୁନର୍ବାର କ୍ରୋଧାବିଷ୍ଟ ହୋଇ ଭଲ୍ଲାସ୍ତ୍ରଦ୍ୱାରା ବସୁଦାନଙ୍କ ଶରୀରରୁ ମସ୍ତକକୁ ପୃଥକ୍ କଲେ । ପଞ୍ଚଶତ ମତ୍ସ୍ୟଦେଶୀୟ ବୀର, ଷଟ୍‌ସହସ୍ର ସୃଞ୍ଜୟ, ଅୟୁତ ହସ୍ତୀ ଓ ଅୟୁତ ଅଶ୍ୱ ଯମାଳୟକୁ ପ୍ରେରଣ କଲେ । ୩୧ ।

ହେ ମହାରାଜ ! ଏହି ସମୟରେ ଋଷିମାନେ ଦ୍ରୋଣଙ୍କୁ କ୍ଷତ୍ରିୟକୁଳ ସଂହାର କରିବାର ଦେଖି ହବ୍ୟବାହଙ୍କୁ ଅଗ୍ରବର୍ତ୍ତୀ କରି ସତ୍ୱର ସେଠାକୁ ଆଗମନ କଲେ । ୩୨ । ବିଶ୍ୱାମିତ୍ର, ଜମଦଗ୍ନି, ଭରଦ୍ୱାଜ, ଗୌତମ, ବଶିଷ୍ଠ, କଶ୍ୟପ, ଅତ୍ରି, ସିକତ, ପୃଶ୍ନି, ଗର୍ଗ, ବାଳଖିଲ୍ୟ, ମରୀଚ, ଭୃଗୁ ଓ ଅଙ୍ଗିରା ଗୋତ୍ରୀୟ ଓ ଅନ୍ୟାନ୍ୟ ସୂକ୍ଷ୍ମବର୍ତ୍ମାବଲମ୍ବୀ ମହର୍ଷିମାନେ ସମରଶୋଭୀ ଦ୍ରୋଣଙ୍କୁ ବ୍ରହ୍ମଲୋକକୁ ନେବାଇଚ୍ଛାରେ କହିଲେ -- ହେ ଦ୍ରୋଣ ! ତୁମ୍ଭେ ଧର୍ମ୍ମାନୁସାରେ ଯୁଦ୍ଧ କରୁଅଛ, ତୁମ୍ଭର ନିଧନକାଳ ଉପସ୍ଥିତ ହୋଇ

ଅଛୁ । ୩୫ । ବର୍ତ୍ତମାନ ତୁମ୍ଭେ ଆୟୁଧ ପରିତ୍ୟାଗ କରି ଆମ୍ଭମାନଙ୍କ ପ୍ରତି ଦୃଷ୍ଟିପାତ କର, ଆଉ ଇତରର କାର୍ଯ୍ୟରେ ପ୍ରବୃତ୍ତ ହୁଅ ନାହିଁ । ୩୬ । ତୁମ୍ଭେ ବେଦବେଦାଙ୍ଗ ପାରଦର୍ଶୀ ବିଶେଷତଃ ସତ୍ୟଧର୍ମ୍ମନିରତ ବ୍ରାହ୍ମଣ, ଅତଏବ ଏହା ତୁମ୍ଭର ଉପଯୁକ୍ତ କାର୍ଯ୍ୟ ନୁହେଁ । ୩୭ । ହେ ଅମୋଘାସ୍ତ୍ର ! ତୁମ୍ଭର ମନୁଷ୍ୟଲୋକରେ ଅବସ୍ଥାନ କରିବାର କାଳ ପରିପୂର୍ଣ୍ଣ ହୋଇଅଛୁ, ଅତଏବ ଆୟୁଧ ପରିତ୍ୟାଗ କରି ଶାଶ୍ୱତପଥରେ ଅବସ୍ଥାନ କର । ୩୮ । ହେ ବିପ୍ର ! ତୁମ୍ଭେ ଯେ ଅସ୍ତ୍ରାନଭିଜ୍ଞ ମନୁଷ୍ୟମାନଙ୍କୁ ବ୍ରହ୍ମାସ୍ତ୍ରଦ୍ୱାରା ଦଗ୍ଧ କରୁଅଛ, ତାହା ତୁମ୍ଭ ପକ୍ଷରେ ସତ୍‌କାର୍ଯ୍ୟ ହେଉ ନାହିଁ । ୩୯ । ତୁମ୍ଭେ ଅବିଳମ୍ବେ ଅସ୍ତ୍ର ପରିତ୍ୟାଗ କର, ଏପରି ପାପିଷ୍ଠତର କର୍ମ୍ମରେ ଆଉ ପ୍ରବୃତ୍ତ ହୁଅ ନାହିଁ । ୪୦ ।

ହେ ମହାରାଜ ! ଦ୍ରୋଣ ଋଷିମାନଙ୍କର ଉପଦେଶ ଶ୍ରବଣ କରି ଓ ଭୀମସେନଙ୍କର ସେହି ପୂର୍ବୋକ୍ତ ବାକ୍ୟ ସ୍ମରଣପୂର୍ବକ ବିଶେଷତଃ ସମ୍ମୁଖରେ ଧୃଷ୍ଟଦ୍ୟୁମ୍ନଙ୍କୁ ଅବଲୋକନ କରି ସମରରେ ବିମନା ହେଲେ । ୪୧ । ସେହି ସମୟରେ ସେ ଶୋକାନଳରେ ଦଗ୍ଧ ଓ କାତର ହୋଇ କୁନ୍ତୀପୁତ୍ର ଯୁଧିଷ୍ଠିରଙ୍କୁ ସମ୍ବୋଧନପୂର୍ବକ ପଚାରିଲେ, ହେ ଯୁଧିଷ୍ଠିର ! ଆମ୍ଭ ପୁତ୍ର ଅଶ୍ୱତ୍ଥାମା ଜୀବିତ ଅଛି କି ହତ ହୋଇଅଛି ? ଦ୍ୱିଜଶ୍ରେଷ୍ଠ ଦ୍ରୋଣଙ୍କର ଏହିପରି ନିଶ୍ଚୟ ବୋଧ ଥିଲା ଯେ, ଯୁଧିଷ୍ଠିର ତ୍ରୈଲୋକ୍ୟର ଐଶ୍ୱର୍ଯ୍ୟ ପ୍ରାପ୍ତ ହେଲେ ମଧ୍ୟ କଦାଚ ମିଥ୍ୟା କହିବେ ନାହିଁ । ୪୩ । କାରଣ ଦ୍ରୋଣ ଧର୍ମ୍ମରାଜଙ୍କୁ ବାଲ୍ୟକାଳରୁ ସତ୍ୟବାଦୀ ବୋଲି ଜାଣୁଥିଲେ । ସେହି ହେତୁ ଅପର କାହାରିକୁ ବିଶ୍ୱାସ ନ କରି କେବଳ ତାହାଙ୍କୁ ପଚାରିଲେ । ୪୪ ।

ଯୋଧଶ୍ରେଷ୍ଠ ଦ୍ରୋଣ ଆଉ କିଛି କାଳ ଜୀବିତ ରହିଲେ ଏହି ପୃଥିବୀକୁ ନିଷ୍ପାଣ୍ଡବା କରିବେ, ଏହା ବିବେଚନା କରି ବାସୁଦେବ କାତର ହୋଇ ଯୁଧିଷ୍ଠିରଙ୍କୁ କହିଲେ । ୪୫ । ହେ ମହାରାଜ ! ଆମ୍ଭେ ସତ୍ୟ କହୁଅଛୁଁ ଯେ, ଯଦି ଦ୍ରୋଣ କ୍ରୋଧାବିଷ୍ଟ ହୋଇ ଆଉ ଅର୍ଦ୍ଧଦିବସ ଯୁଦ୍ଧ କରନ୍ତି, ତାହାହେଲେ ଆପଣଙ୍କ ସମସ୍ତ ସୈନ୍ୟ ନିଶ୍ଚୟ ବିନଷ୍ଟ ହେବେ । ୪୬ । ଅତଏବ ଦ୍ରୋଣଙ୍କଠାରୁ ଆମ୍ଭମାନଙ୍କର ପରିତ୍ରାଣ ନିମିତ୍ତ ଆପଣଙ୍କର ବର୍ତ୍ତମାନ ସତ୍ୟ ଅପେକ୍ଷା ମିଥ୍ୟା କହିବା ଶ୍ରେୟ, ଜୀବନରକ୍ଷାର୍ଥ ମିଥ୍ୟା ବ୍ୟବହାର କଲେ ମନୁଷ୍ୟ ପାପଲିପ୍ତ ହୁଅଇ ନାହିଁ । ୪୭ ।

ମହାତ୍ମା ଦ୍ରୋଣଙ୍କର ବଧ ବିଷୟରେ କୃଷ୍ଣ ଓ ଯୁଧିଷ୍ଠିରଙ୍କ ମଧ୍ୟରେ ଏହିପରି କଥୋପକଥନ ହେଉଥିବାର ଶୁଣି ଭୀମସେନ କହିଲେ । ୪୮ । ହେ ମହାରାଜ ! ଆମ୍ଭେ କୌରବସୈନ୍ୟ ମଧ୍ୟରେ ପ୍ରବିଷ୍ଟ ହୋଇ ବିକ୍ରମ ପ୍ରକାଶ ପୂର୍ବକ ମାଳବରାଜ ଇନ୍ଦ୍ରବର୍ମ୍ମାଙ୍କର ଐରାବତ ସଦୃଶ ବିଖ୍ୟାତ ଅଶ୍ୱତ୍ଥାମା ନାମକ ହସ୍ତୀକୁ ସଂହାର କରି ଦ୍ରୋଣଙ୍କ ନିକଟରେ କହିଥିଲୁଁ ଯେ, ହେ ବ୍ରହ୍ମନ୍ ! ଅଶ୍ୱତ୍ଥାମା ନିହତ ହୋଇଅଛି, ଅତଏବ ଆପଣ ସଂଗ୍ରାମରୁ ନିବୃତ୍ତ ହେଉନ୍ତୁ" କିନ୍ତୁ ସେହି ଦ୍ୱିଜଶ୍ରେଷ୍ଠ ଆମ୍ଭର ସେହି ବାକ୍ୟକୁ ବିଶ୍ୱାସ କଲେ ନାହିଁ । ୫୧ । ଅତଏବ ଆପଣ ଆମ୍ଭମାନଙ୍କର ଜୟାଭିଳାଷୀ ବାସୁଦେବଙ୍କର ବାକ୍ୟ ରକ୍ଷା କରି ଦ୍ରୋଣଙ୍କ ନିକଟରେ ଅଶ୍ୱତ୍ଥାମା ନିହତ ହୋଇଅଛନ୍ତି ବୋଲି ପ୍ରକାଶ କରନ୍ତୁ । ଆପଣ ଏହା କହିଲେ ଦ୍ରୋଣ କଦାଚ ଯୁଦ୍ଧ କରିବେ ନାହିଁ । ଯେହେତୁ ଏହି ତ୍ରିଲୋକ ମଧ୍ୟରେ ଆପଣ ସତ୍ୟବାଦୀ ବୋଲି ବିଖ୍ୟାତ । ୫୩ । ଯୁଧିଷ୍ଠିର ଭୀମଙ୍କର ସେହି ବାକ୍ୟ ଶ୍ରବଣ କରି ବିଶେଷତଃ ବାସୁଦେବଙ୍କ ଆଦେଶ ଅନୁସାରେ ଭବିତବ୍ୟତା ହେତୁରୁ ମିଥ୍ୟା କହିବାରେ ପ୍ରବୃତ୍ତ ହେଲେ । ୫୪ । ହେ ମହାରାଜ ! ସେହି କାଳରେ ଧର୍ମ୍ମନନ୍ଦନ ମିଥ୍ୟା ଭୟରେ ନିମଗ୍ନ ଅଥଚ ଜୟାସକ୍ତଚିତ୍ତ ହୋଇ ଅବ୍ୟକ୍ତ ସ୍ୱରରେ କୁଞ୍ଜର ଶବ୍ଦ ଉଚ୍ଚାରଣ କରି ସୁସ୍ପଷ୍ଟ ଭାବରେ "ଅଶ୍ୱତ୍ଥାମା ନିହତ ହୋଇଅଛି" ବୋଲି କହିଲେ । ୫୫ ।

ଏହା ପୂର୍ବରୁ ଯୁଧିଷ୍ଠିରଙ୍କର ରଥ ପୃଥିବୀ ଉପରୁ ଚତୁରଙ୍ଗୁଳ ପରିମାଣ ଊର୍ଦ୍ଧ୍ୱରେ ଅବସ୍ଥାନ କରୁଥିଲା । କିନ୍ତୁ ଏହିପରି ମିଥ୍ୟା କହିବାରୁ ବର୍ତ୍ତମାନ ତାହାଙ୍କର ରଥଚକ୍ର ଓ ବାହନଗଣ ଭୂତଳ ସ୍ପର୍ଶ କଲେ ।୫୬। ମହାରଥୀ ଦ୍ରୋଣ ଯୁଧିଷ୍ଠିରଙ୍କର ମୁଖରୁ ପୁତ୍ରର ତାଦୃଶ ବ୍ୟସନବାର୍ତ୍ତା ଶ୍ରବଣ କରି ଶୋକାନଳରେ ସନ୍ତପ୍ତ ଓ ଜୀବନରେ ନିରାଶ ହେଲେ । ୫୭ । ଦ୍ରୋଣ ଋଷିବାକ୍ୟ ଶ୍ରବଣ କରି ମହାତ୍ମା ପାଣ୍ଡବମାନଙ୍କ ନିକଟରେ ଆପଣାକୁ ଅପରାଧୀ ବିବେଚନା କରି ଓ ସ୍ୱୀୟ ପୁତ୍ରର ନିଧନବାର୍ତ୍ତା ଶ୍ରବଣ କରି ଅତ୍ୟନ୍ତ ଉଦ୍‌ବିଗ୍ନ ଓ ଅଚେତନପ୍ରାୟ ହୋଇଥିଲେ । ପୁଣି ସମ୍ମୁଖରେ ଧୃଷ୍ଟଦ୍ୟୁମ୍ନଙ୍କୁ ଅବଲୋକନ କରି ପୂର୍ବପରି ଯୁଦ୍ଧ କରିବାକୁ ସମର୍ଥ ହେଲେ-ନାହିଁ ।

---

# ୧୯୧ ଅଧ୍ୟାୟ

ସଞ୍ଜୟ କହିଲେ—ହେ ମହାରାଜ ! ରାଜା ଦ୍ରୁପଦ ଦେବାରାଧନା କରି ମହାଯଜ୍ଞରେ ଯାହାଙ୍କୁ ଲାଭ କରିଥିଲେ, ଯେ ଦ୍ରୋଣ ବିନାଶ ନିମିତ୍ତ ପ୍ରଜ୍ୱଳିତ ପାବକ ମଧ୍ୟରୁ ସମୁତ୍ଥିତ ହୋଇଥିଲେ, ସେହି ପାଞ୍ଚାଳକୁଳନନ୍ଦନ ଧୃଷ୍ଟଦ୍ୟୁମ୍ନ ଦ୍ରୋଣଙ୍କୁ ଅତିଶୟ ଉଦ୍‌ବିଗ୍ନ ଓ ଶୋକରେ ଅଚେତନ ପ୍ରାୟ ଦେଖି ମେଘଗମ୍ଭୀରନିଃସ୍ୱନ ଦୃଢ଼ଜ୍ୟାଯୁକ୍ତ ଶତ୍ରୁକୁଳବିଜୟୀ ଉପ୍ଯାନକ ଦିବ୍ୟଶରାସନ ଓ ଆଶୀବିଷୋପମ ଶର ଗ୍ରହଣ ପୂର୍ବକ ତାହାଙ୍କ ପ୍ରତି ଧାବିତ ହେଲେ । ପୁଣି ପ୍ରଚଣ୍ଡ ଜ୍ୱଳଦଗ୍ନିସଦୃଶ ଦ୍ରୋଣଙ୍କ ବିନାଶ ଅଭିଳାଷରେ ଅନଳତୁଲ୍ୟ ସେହି ଶରକୁ ଶରାସନରେ ସନ୍ଧାନ କଲେ ।୪। ହେ ମହାରାଜ ! ସେହି ସମୟରେ ଧୃଷ୍ଟଦ୍ୟୁମ୍ନଙ୍କର କାର୍ମୁକଜ୍ୟାମଧ୍ୟବର୍ତ୍ତୀ ସେହି ଶର ଶରତ୍ କାଳରେ ମଣ୍ଡଳମଧ୍ୟବର୍ତ୍ତୀ ପ୍ରଖରକିରଣବିରାଜିତ ସୂର୍ଯ୍ୟଙ୍କ ମୂର୍ତ୍ତି ଧାରଣ କଲା । ୫ । ଅସ୍ମତ୍‌ପକ୍ଷୀୟ ସୈନ୍ୟମାନେ ଧୃଷ୍ଟଦ୍ୟୁମ୍ନଙ୍କୁ ସେହି ପ୍ରଜ୍ୱଳିତ ଶରାସନ ଗ୍ରହଣ କରିବାର ଦେଖି ଅନ୍ତିମ କାଳ ଉପସ୍ଥିତ ହୋଇଅଛି ବୋଲି ମନେ କଲେ । ୬ । ପ୍ରତାପବାନ୍ ଭରଦ୍ୱାଜନନ୍ଦନ ଦ୍ରୋଣ ମଧ୍ୟ ସେହି ଶରକୁ ସଂଯୋଜିତ ହେବାର ଦେଖି ନିଜର ମୃତ୍ୟୁ ଅତି ନିକଟ ବୋଲି ସ୍ଥିର କଲେ । ୭ । ଅନନ୍ତର ମହାତ୍ମା ଆଚାର୍ଯ୍ୟ ସେହି ଶରକୁ ନିବାରଣ କରିବା ନିମନ୍ତେ ବିଶେଷ ଯତ୍ନବାନ୍ ହେଲେ । କିନ୍ତୁ ତାହାଙ୍କର ଅସ୍ତ୍ରସମୂହ ଆଉ ପ୍ରାଦୁର୍ଭୂତ ହେଲା ନାହିଁ । ୮ ।

ହେ ମହାରାଜ ! ଦ୍ରୋଣ ଚତୁର୍ଦ୍ଦିବସ ଓ ଏକରାତ୍ର ନିରନ୍ତର ଶର ନିକ୍ଷେପ କରିଥିଲେ । ପଞ୍ଚମ ଦିନର ତୃତୀୟ ଭାଗ ସମୟରେ ତାହାଙ୍କର ଶସ୍ତ୍ରସମୂହ ନିଃଶେଷିତ ହୋଇଥିଲା । ୯ । ଏହିପରି ସେ କ୍ଷୀଣଶସ୍ତ୍ର ଓ ପୁତ୍ର-ଶୋକରେ ପ୍ରପୀଡ଼ିତ ହୋଇ ଅପ୍ରସନ୍ନତା ହେତୁ ଅନେକ ଦିବ୍ୟାସ୍ତ୍ରମାନଙ୍କୁ ବିସ୍ମୃତ ହୋଇଥିଲେ । ପୁଣି ଋଷିମାନଙ୍କର ଆଦେଶାନୁସାରେ ଶସ୍ତ୍ର ପରିତ୍ୟାଗ କାମନାରେ ପୂର୍ବବତ୍ ତେଜସହକାରେ ଆଉ ଯୁଦ୍ଧ କଲେନାହିଁ । ୧୧ ।

ସେହି ସମୟରେ ଦ୍ରୋଣ ଅଙ୍ଗିରାପ୍ରଦତ୍ତ ଦିବ୍ୟ ଶରାସନ ଓ ବ୍ରହ୍ମ-ଦଣ୍ଡ ସଦୃଶ ଶରସମୂହ ଗ୍ରହଣ କରି ଧୃଷ୍ଟଦ୍ୟୁମ୍ନଙ୍କ ସହିତ ସମରରେ ପ୍ରବୃତ୍ତ ହେଲେ । ମୁହୂର୍ତ୍ତକ ମଧ୍ୟରେ ଦ୍ରୋଣ ଅମର୍ଷସ୍ୱଭାବ କ୍ରୁଦ୍ଧ ଧୃଷ୍ଟଦ୍ୟୁମ୍ନଙ୍କୁ

ସୁମହତ୍ ଶରବୃଷ୍ଟିଦ୍ୱାରା ସମାକୀର୍ଣ୍ଣ କରି କ୍ଷତବିକ୍ଷତ କଲେ । ୧୩ । ତତ୍ପରେ ସେ ନିଶିତ ଶରପ୍ରଭାବରେ ପାଞ୍ଚାଳନନ୍ଦନଙ୍କ ନିକ୍ଷିପ୍ତ ସହସ୍ର ସହସ୍ର ଶର-ଜାଲକୁ ଶତଧା ଛିନ୍ନ କରି ତାହାଙ୍କ ରଥ, ଧ୍ୱଜ, ଧନୁ ଓ ସାରଥିଙ୍କୁ ଛେଦନ କରି ଭୂତଳରେ ନିପାତିତ କଲେ । ୧୪ । ସେହି ସମୟରେ ଧୃଷ୍ଟଦ୍ୟୁମ୍ନ ହାସ୍ୟପୂର୍ବକ ଅନ୍ୟ ଗୋଟିଏ ଶରାସନ ଗ୍ରହଣ କରି ଶିତଧାର ଶରଦ୍ୱାରା ଦ୍ରୋଣଙ୍କ ବକ୍ଷଃସ୍ଥଳରେ ବିଦ୍ଧ କଲେ । ୧୫ । ମହାଧନୁର୍ଦ୍ଧର ଦ୍ରୋଣ ଗାଢ଼ଭାବରେ ବିଦ୍ଧ ହୋଇ ନିମେଷକାଳ ଭ୍ରାନ୍ତ ହେଲେ । କ୍ଷଣକ ପରେ ଶିତଧାର ଭଲ୍ଲଦ୍ୱାରା ପୁନର୍ବାର ଧୃଷ୍ଟଦ୍ୟୁମ୍ନଙ୍କର ଶରାସନ ଛେଦନ କଲେ । ୧୬ । ସେହିକାଳରେ ଶତ୍ରୁତାପନ ଦୁର୍ଦ୍ଧର୍ଷ ଆଚାର୍ଯ୍ୟ ପାଞ୍ଚାଳ-ନନ୍ଦନଙ୍କର ଗଦା ଓ ଖଡ୍ଗବ୍ୟତୀତ ଶରରାଜ ଓ ଶରାସନ ପ୍ରଭୃତି ସମସ୍ତ ଆୟୁଧକୁ ଛେଦନ କଲେ । ପୁଣି କ୍ରୁଦ୍ଧ ହୋଇ ରୋଷାବିଷ୍ଟ ଧୃଷ୍ଟଦ୍ୟୁମ୍ନଙ୍କୁ ଜୀବନାନ୍ତକ ନଅଗୋଟି ଶରଦ୍ୱାରା ବିଦ୍ଧ କଲେ । ୧୮ ।

ତତ୍ପରେ ଅମେୟାତ୍ମା ମହାରଥୀ ଦ୍ରୋଣ ବ୍ରହ୍ମାସ୍ତ୍ର ପ୍ରାଦୁର୍ଭାବ କରି ସ୍ୱୀୟ ରଥାଶ୍ୱମାନଙ୍କ ସହିତ ଧୃଷ୍ଟଦ୍ୟୁମ୍ନଙ୍କ ଅଶ୍ୱମାନଙ୍କୁ ମିଳିତ କଲେ । ହେ ମହାରାଜ ! ପାରାବତବର୍ଣ୍ଣବିଶିଷ୍ଟ ଅଶ୍ୱମାନେ ଶୋଣବର୍ଣ୍ଣ ବାୟୁବେଗ-ଗାମୀ ଦ୍ରୋଣଙ୍କର ଅଶ୍ୱମାନଙ୍କ ସହିତ ମିଳିତ ହେବାରୁ ଅପୂର୍ବ ଶୋଭା ହେଲା । ୨୦ । ଜଳଦାଗମ ସମୟରେ ବିଦ୍ୟୁନ୍ମଣ୍ଡିତ ଗର୍ଜ୍ଜନକାରୀ ମେଘ-ସମୂହର ଯେପରି ଶୋଭା ହୁଏ, ରଣାଙ୍ଗନସ୍ଥିତ ସେହି ମିଳିତ ଉଭୟବର୍ଣ୍ଣ-ବିଶିଷ୍ଟ ଅଶ୍ୱମାନଙ୍କର ସେହିପରି ଶୋଭା ହେଲା । ୨୧ । ସେହି ସମୟରେ ବ୍ରାହ୍ମଣ ଦ୍ରୋଣ ଧୃଷ୍ଟଦ୍ୟୁମ୍ନଙ୍କର ଈଶାବନ୍ଧ, ଚକ୍ରବନ୍ଧ ଓ ରଥବନ୍ଧ ଛେଦନ କଲେ । ୨୨ । ସେହି ସମୟରେ ମହାବୀର ପାଞ୍ଚାଳନନ୍ଦନ ଛିନ୍ନଧନ୍ୱା ଧ୍ୱଜବିହୀନ ଓ ହତସାରଥି ହୋଇ ସେହି ଉତ୍ତମ ବିପଦସମୟରେ ଗଦା ଗ୍ରହଣ କଲେ । ତହୁଁ ସତ୍ୟପରାକ୍ରମ ମହାରଥୀ ଆଚାର୍ଯ୍ୟ କ୍ରୋଧାବିଷ୍ଟ ହୋଇ ଶରପ୍ରଭାବରେ ତାହାକୁ ମଧ୍ୟ ଛେଦନ କଲେ । ୨୪ ।

ଗଦା ପ୍ରତିହତ ହେବାର ଅବଲୋକନ କରି ଧୃଷ୍ଟଦ୍ୟୁମ୍ନ ବିମଳଖଡ୍ଗ ଓ ଦୀପ୍ତିମାନ୍ ଶତଚନ୍ଦ୍ରଯୁକ୍ତ ଚର୍ମ୍ମ ଗ୍ରହଣ କଲେ । ୨୫ । ହେ ମହାରାଜ ! ଧୃଷ୍ଟଦ୍ୟୁମ୍ନ ତାଦୃଶ ଅବସ୍ଥାରେ ମଧ୍ୟ କ୍ଷୁଭିତ ନ ହୋଇ ଆଚାର୍ଯ୍ୟପ୍ରଧାନ

ମହାତ୍ମା ଦ୍ରୋଣଙ୍କୁ ବଧ କରିବାର ପ୍ରକୃତ ଉପଯୁକ୍ତ କାଳ ଉପସ୍ଥିତ ହୋଇଅଛି ବୋଲି ମନେ କଲେ ଓ ଦୁଷ୍କର କର୍ମ୍ମ କରଣାଭିଳାଷରେ ସେ ସେହି ପ୍ରଭାପ୍ରଶତଚନ୍ଦ୍ରଯୁକ୍ତ ଚର୍ମ ଓ ନିଷ୍କାସିତ ବିମଳ ଖଡ଼୍‌ଗକୁ ଉଦ୍ୟତ କରି ସ୍ୱୀୟ ରଥର ଈଶାଦଣ୍ଡ ଅବଲମ୍ବନପୂର୍ବକ ରଥମଣ୍ଡଳସ୍ଥ ଆଚାର୍ଯ୍ୟଙ୍କ ସମୀପକୁ ଗମନ କଲେ । ୨୭ ।

ହେ କୁରୁନାଥ ! ପାଞ୍ଚାଳନନ୍ଦନ ମହାରଥୀ ଧୃଷ୍ଟଦ୍ୟୁମ୍ନ ଦ୍ରୋଣଙ୍କ ବକ୍ଷଃସ୍ଥଳ ବିଦୀର୍ଣ୍ଣ କରଣାର୍ଥ କେତେବେଳେ ଯୁଗକାଷ୍ଠ ମଧ୍ୟରେ କେତେ-ବେଳେ ସନ୍ନଦ୍ଧଭାଗରେ, କେତେବେଳେ ବା ଜଘନାର୍ଦ୍ଧଭାଗରେ ବିଚରଣ କଲେ । ଏହା ଦେଖି ସୈନିକମାନେ ପ୍ରଶଂସା କଲେ । ସେହି ଯୁଗପାଳୀ ଓ ରକ୍ତାଶ୍ୱମାନଙ୍କ ଉପରେ ଧୃଷ୍ଟଦ୍ୟୁମ୍ନ ଅଧିଷ୍ଠାନ କଲା ସମୟରେ ସ୍ୱୟଂ ଦ୍ରୋଣ ତାହାଙ୍କର କୌଣସି ଛିଦ୍ର ଲକ୍ଷ୍ୟ କରିପାରିଲେ ନାହିଁ । ଏହା ଅଦ୍ଭୁତ ସଦୃଶ ହେଲା । ୩୦ । ଶ୍ୟେନପକ୍ଷୀ ଆମିଷାର୍ଥୀ ହୋଇ ବେଗରେ ବିଚରଣ କଲେ ଯେପରି ବୋଧହୁଏ, ଦ୍ରୋଣବଧାର୍ଥୀ ଧୃଷ୍ଟଦ୍ୟୁମ୍ନଙ୍କର ଗତି ସେହିପରି ପ୍ରତୀୟମାନ ହେଲା । ୩୧ ।

ତତ୍ପରେ ମହାବୀର ଦ୍ରୋଣ ରଥଶକ୍ତିଦ୍ୱାରା ଧୃଷ୍ଟଦ୍ୟୁମ୍ନଙ୍କ ପାରାବତ-ବର୍ଣ୍ଣବିଶିଷ୍ଟ ଅଶ୍ୱମାନଙ୍କୁ ବିନାଶ କରି ସ୍ୱୀୟ ଶୋଣାଶ୍ୱମାନଙ୍କୁ ବିଶ୍ଳେଷିତ କଲେ । ୩୨ । ସେହି ସମୟରେ ଧୃଷ୍ଟଦ୍ୟୁମ୍ନଙ୍କ ଅଶ୍ୱମାନେ ଗତାସୁ ହୋଇ ଭୂତଳରେ ପତିତ ହୁଅନ୍ତେ ଦ୍ରୋଣଙ୍କର ରକ୍ତବର୍ଣ୍ଣ ଅଶ୍ୱମାନେ ରଥ-ବନ୍ଧରୁ ମୁକ୍ତ ହେଲେ । ୩୩ । ଦ୍ୱିଜଶ୍ରେଷ୍ଠ ଦ୍ରୋଣଙ୍କର ଶରପ୍ରଭାବରେ ଅଶ୍ୱସମୂହ ନିହତ ହେବାର ଦେଖି ଖଡ଼୍‌ଗଯୁଦ୍ଧବିଶାରଦ ଯୋଧଶ୍ରେଷ୍ଠ ଯଜ୍ଞସେନନନ୍ଦନ ମହାରଥ ଧୃଷ୍ଟଦ୍ୟୁମ୍ନ ତାହା ସହି ନ ପାରି ରଥଭ୍ରଷ୍ଟ ହୋଇ ମଧ୍ୟ କେବଳ ଖଡ଼୍‌ଗଗ୍ରହଣ କରି ଭୁଜଙ୍ଗଗ୍ରହଣାର୍ଥୀ ବୈନତେୟ ସଦୃଶ ବେଗରେ ଦ୍ରୋଣଙ୍କପ୍ରତି ଧାବିତ ହେଲେ । ୩୪ ।

ହେ ମହାରାଜ ! ପୂର୍ବେ ହିରଣ୍ୟକଶିପୁ ବଧକାଳରେ ବିଷ୍ଣୁଙ୍କର ଯେପରି ଭୟଙ୍କର ମୂର୍ତ୍ତି ହୋଇଥିଲା, ଦ୍ରୋଣବଧାର୍ଥୀ ଧୃଷ୍ଟଦ୍ୟୁମ୍ନଙ୍କର ମଧ୍ୟ ସେହିପରି ମୂର୍ତ୍ତି ହେଲା । ୩୭ । ସେହି ସମୟରେ ସେ ଦ୍ରୋଣଙ୍କର ବଧାଭିଳାଷୀ ହୋଇ ଖଡ଼୍‌ଗଚର୍ମହସ୍ତରେ ବହୁବିଧ ଶିକ୍ଷାସହ ଭ୍ରାନ୍ତ,

ଉଦ୍‌ଭ୍ରାନ୍ତ, ଆବିଦ୍ଧ, ଆପ୍ଲୁତ, ପ୍ରସୃତ, ପରିବୃତ, ନିବୃତ୍ତ, ସମ୍ପାତ, ସମୁଦୀର୍ଣ୍ଣ, ଭାରତ, କୌଶିକ ଓ ସାତ୍ୱତ ପ୍ରଭୃତି ଏକବିଂଶତି ପ୍ରକାର ଉତ୍କୃଷ୍ଟ ଗତିକୁ ପ୍ରଦର୍ଶନ କରି ବିଚରଣ କଲେ । ହେ ମହାରାଜ ! ସେ ସେହି ଖଡ୍‌ଗଚର୍ମ୍ମଧାରଣ ପୂର୍ବକ ବିବିଧ ଶିକ୍ଷାଗତି ଅନୁସାରେ ସମରାଙ୍ଗଣରେ ବିଚରଣ କରନ୍ତେ ତତ୍ରତ୍ୟ ସମସ୍ତ ଯୋଧଗଣ ଓ ସମରଦର୍ଶନାର୍ଥୀ ସୁରଗଣ ବିସ୍ମୟାନ୍ୱିତ ହେଲେ ।

ତଦନନ୍ତର ଦ୍ୱିଜ ଦ୍ରୋଣ ସେହି ମହାବିପଦ ସମୟରେ ଏକ ସହସ୍ର ଶରଦ୍ୱାରା ଧୃଷ୍ଟଦ୍ୟୁମ୍ନଙ୍କର ଶତଚନ୍ଦ୍ରବିଭୂଷିତ ଚର୍ମ୍ମ ଓ ଖଡ୍‌ଗକୁ ଛିନ୍ନ କରି ଭୂତଳରେ ପାତିତ କଲେ । ସେହି ସମୟରେ ଦ୍ରୋଣ ଯେଉଁସବୁ ଶର ପ୍ରୟୋଗ କଲେ, ସେ ସମସ୍ତ ବିତସ୍ତିପରିମିତ । ପରସ୍ପର ନିକଟବର୍ତ୍ତୀ ହୋଇ ଯୁଦ୍ଧ କରିବା ସମୟରେ ଅନ୍ୟ ଶର ପ୍ରୟୋଗର ଉପାୟ ନ ଥିଲେ ଏହି ବିତସ୍ତିପରିମିତ ଶର ପ୍ରୟୋଗ କରାଯାଏ । ଆସନ୍ନ ଶତ୍ରୁସନ୍ନିକଟ ଯୁଦ୍ଧୋପଯୋଗୀ ଏହି ଶରସମୂହ ଶାରଦ୍ୱତ କୃପ, ପୃଥାନନ୍ଦନ ଧନଞ୍ଜୟ, ଅଶ୍ୱତ୍ଥାମା, କର୍ଣ୍ଣ, ପ୍ରଦ୍ୟୁମ୍ନ, ସାତ୍ୟକି ଓ ଅଭିମନ୍ୟୁ ବ୍ୟତୀତ ଅନ୍ୟ କାହାରିକୁ ଜଣା ନ ଥିଲା । ଦ୍ରୋଣ ପୁତ୍ରତୁଲ୍ୟଶିଷ୍ୟ ପାଞ୍ଚାଳ ରାଜକୁମାରଙ୍କର ବିନାଶ ବାସନାରେ ଦୃଢ଼ତର ଗୋଟିଏ ଦିବ୍ୟାସ୍ତ୍ର ଗ୍ରହଣ କରନ୍ତେ ଶିନିପୁଙ୍ଗବ ସାତ୍ୟକି ମହାତ୍ମା କର୍ଣ୍ଣ ଓ ରାଜା ଦୁର୍ଯ୍ୟୋଧନଙ୍କ ସମକ୍ଷରେ ତାହାକୁ ଦଶଗୋଟି ଶରରେ ଛେଦନ କରି ଆଚାର୍ଯ୍ୟଗ୍ରସ୍ତ ଧୃଷ୍ଟଦ୍ୟୁମ୍ନଙ୍କୁ ବିମୁକ୍ତ କଲେ ।

ସେହି ସମୟରେ ମହାତ୍ମା ବାସୁଦେବ ଓ ଧନଞ୍ଜୟ ସେଠାରେ ଉପସ୍ଥିତ ହୋଇ ବୃଷ୍ଣିନନ୍ଦନ ସତ୍ୟବିକ୍ରମ ଅଚ୍ୟୁତ ସାତ୍ୟକିଙ୍କୁ ଦ୍ରୋଣ, କର୍ଣ୍ଣ ଓ କୃପ ପ୍ରଭୃତି ରଥିମଣ୍ଡଳୀ ମଧ୍ୟରେ ବିଚରଣ କରିବାର ଓ ସେମାନଙ୍କର ପ୍ରେରିତ ଦିବ୍ୟାସ୍ତ୍ରସମୂହକୁ ପ୍ରତିହତ କରିବାର ଦେଖି ସାଧୁ ସାଧୁ ବୋଲି ପ୍ରଶଂସା କଲେ । ୪୯ । ତତ୍ପରେ ଅର୍ଜୁନ କୃଷ୍ଣଙ୍କୁ ସମ୍ବୋଧନ କରି କହିଲେ, ହେ କେଶବ ! ଦେଖ, ମଧୁକୁଳସମ୍ଭୂତ ଶତ୍ରୁନାଶନ ସାତ୍ୟକି ଆଚାର୍ଯ୍ୟ ପ୍ରମୁଖ ରଥିମାନଙ୍କ ମଧ୍ୟରେ ରଣକ୍ରୀଡ଼ା କରି ନକୁଳ, ସହଦେବ, ଭୀମସେନ, ରାଜା ଯୁଧିଷ୍ଠିର ଓ ଆମ୍ଭଙ୍କୁ ଅତିଶୟ ଆନନ୍ଦିତ କରୁଅଛନ୍ତି । ୫୧ । ସେହି

ବୃଷ୍ଣିକୁଳକୀର୍ତ୍ତିବର୍ଦ୍ଧନ ଅଦ୍ଭୁତ ଶିକ୍ଷା ବଳ ଥିଲେ ହେଁ ଅନୁଦ୍ଧତ ଭାବରେ ପ୍ରତିପକ୍ଷ ମହାରଥିମାନଙ୍କ ସହିତ କ୍ରୀଡ଼ା କଲାପ୍ରାୟ ସମର କ୍ଷେତ୍ରରେ ବିଚରଣ କରୁଅଛନ୍ତି । ୫୨ । ସମୁଦାୟ ସିଦ୍ଧମାନେ ଓ ସୈନ୍ୟମାନେ ବିସ୍ମୟାପନ୍ନ ହୋଇ ଯୁଯୁଧାନଙ୍କୁ ସମରରେ ଅପରାଜେୟ ଅବଲୋକନ କରି ସାଧୁ ସାଧୁ ଶବ୍ଦରେ ଧନ୍ୟବାଦ ଦେଉଅଛନ୍ତି ଓ ଉଭୟପକ୍ଷୀୟ ସେନାମାନେ ତାହାଙ୍କର ଅଲୌକିକ କାର୍ଯ୍ୟକୁ ଅତିଶୟ ପ୍ରଶଂସା କରୁଅଛନ୍ତି । ୫୩ ।

---

# ୧୯୨ ଅଧ୍ୟାୟ

ସଞ୍ଜୟ କହିଲେ—ହେ ମହାରାଜ ! ସେହି ସମୟରେ ଦୁର୍ଯ୍ୟୋଧନ ପ୍ରଭୃତି ବୀରମାନେ ସାତ୍ୟକିଙ୍କ ତାଦୃଶ କାର୍ଯ୍ୟ ଅବଲୋକନ କରି ଅତିଶୟ କ୍ରୋଧାନ୍ୱିତ ହୋଇ ସମ୍ପୂର୍ଣ୍ଣ ଯତ୍ନ ଓ ପରାକ୍ରମସହ ତାହାଙ୍କୁ ନିବାରଣ କଲେ । ୧ । ଅନନ୍ତର କୃପ, କର୍ଣ୍ଣ ଓ ଆପଣଙ୍କ ପୁତ୍ରମାନେ ସମରରେ ସମାଗତ ହୋଇ ଯୁଯୁଧାନଙ୍କୁ ନିଶିତ ଶରନିକରଦ୍ୱାରା ପୀଡ଼ିତ କରିବାରେ ପ୍ରବୃତ୍ତ ହେଲେ । ୨ । ତାହା ଦେଖି ରାଜା ଯୁଧିଷ୍ଠିର, ବଳଶାଳୀ ଭୀମସେନ ଓ ମାଦ୍ରୀତନୟ ନକୁଳ ଓ ସହଦେବ ସାତ୍ୟକିଙ୍କୁ ପରିବେଷ୍ଟନ କରି ଅବସ୍ଥିତ ହେଲେ । ୩ । ଗୌତମନନ୍ଦନ ମହାରଥୀ କୃପ, କର୍ଣ୍ଣ ଓ ଦୁର୍ଯ୍ୟୋଧନ ପ୍ରଭୃତି ରାଜପୁତ୍ରମାନେ ଏକତ୍ରିତ ହୋଇ ଘୋରତର ଶରବର୍ଷଣପୂର୍ବକ ସାତ୍ୟକିଙ୍କୁ ସମାଚ୍ଛନ୍ନ କଲେ । ୪ । ଶିନିକୁଳନନ୍ଦନ ମହାବୀର ସାତ୍ୟକି ସହସା ସମୁତ୍ଥିତ ସେହି ଘୋର ଶରବୃଷ୍ଟିକୁ ନିବାରଣ କରି ଏକାକୀ ସେହି-ସମସ୍ତ ମହାରଥୀମାନଙ୍କ ସହିତ ସଂଗ୍ରାମ କଲେ । ସେହି ମହାତ୍ମାମାନଙ୍କର କୃତସନ୍ଧାନ ଦିବ୍ୟାସ୍ତ୍ର ସମୂହକୁ ସ୍ୱୀୟ ଦିବ୍ୟାସ୍ତ୍ର ପ୍ରଭାବରେ ଯଥାବିଧି ନିରାକୃତ କଲେ ।୫। ସେହି ମହାସମର ସମୟରେ ରଣାଙ୍ଗନ ପୂର୍ବକାଳୀନ ପଶୁକୁଳ-ସଂହାରକ ରୋଷାବିଷ୍ଟ ରୁଦ୍ରଦେବଙ୍କର କ୍ରୀଡ଼ାଭୂମିସଦୃଶ ଭୟଙ୍କର ମୂର୍ତ୍ତି ଧାରଣ କଲା । ୬ । ଇତସ୍ତତଃ ନିପତିତ ରାଶିରାଶି ଛିନ୍ନମସ୍ତକ, ବାହୁ, ଶରାସନ, ଖଣ୍ଡିତଛତ୍ର, ଅସଂଖ୍ୟଚାମର, ଭଗ୍ନଚକ୍ର, ଚୂର୍ଣ୍ଣିତରଥ, ବୃହତ୍ ବୃହତ୍ ଧ୍ୱଜ ଓ ନିହତ ଅଶ୍ୱାରୋହିଗଣଙ୍କ ଦ୍ୱାରା ରଣସ୍ଥଳ ସମାକୀର୍ଣ୍ଣ ହେଲା ।

ସେହି ସମୟରେ ଶରପାତରେ କ୍ଷତବିକ୍ଷତକଳେବର ଯୋଦ୍ଧା-ମାନଙ୍କୁ ଅତିଶୟ ଯତ୍ନପରାୟଣ ହେବାର ଦେଖାଗଲା । ସେହି ସୁରାସୁର ସମରସଦୃଶ ଘୋର ସମରକାଳରେ ଯୁଧିଷ୍ଠିର କ୍ଷତ୍ରିୟମାନଙ୍କୁ ଆହ୍ୱାନ ପୂର୍ବକ କହିଲେ, ହେ ମହାରଥଗଣ ! ତୁମ୍ଭେ ସମସ୍ତେ ପରମ ଯତ୍ନସହ କୁମ୍ଭସମ୍ଭୂତ ମହାରଥୀ ଦ୍ରୋଣଙ୍କ ବିପକ୍ଷରେ ଧାବିତ ହୁଅ । ୧୨ । ମହାବୀର ଧୃଷ୍ଟଦ୍ୟୁମ୍ନ ଦ୍ରୋଣାଚାର୍ଯ୍ୟଙ୍କ ସହିତ ସଙ୍ଗତ ହୋଇ ତାହାଙ୍କୁ ଆୟତ୍ତ କରିବା ନିମିତ୍ତ ଯଥାସାଧ୍ୟ ଚେଷ୍ଟା କରୁଅଛନ୍ତି ।୧୩। ବର୍ତ୍ତମାନ ଯେପରି ଧୃଷ୍ଟଦ୍ୟୁମ୍ନଙ୍କର ଭୟଙ୍କର ମୂର୍ତ୍ତି ଦୃଷ୍ଟ ହେଉଅଛି, ସେ ଅବଶ୍ୟ ନିଶ୍ଚୟ ଏହି ମହା-ସମରରେ କ୍ରୋଧାବିଷ୍ଟ ହୋଇ ଦ୍ରୋଣଙ୍କୁ ସଂହାର କରିବେ । ଅତଏବ ତୁମ୍ଭେମାନେ ଏକତ୍ରିତ ହୋଇ ଦ୍ରୋଣଙ୍କ ସହିତ ସମରରେ ପ୍ରବୃତ୍ତ ହୁଅ ।

ହେ ମହାରାଜ ! ରାଜା ଯୁଧିଷ୍ଠିର ଏହିପରି ଆଦେଶ କରନ୍ତେ ମହାରଥୀ ସୃଞ୍ଜୟମାନେ ଅତିଶୟ ଯତ୍ନପର ହୋଇ ଦ୍ରୋଣଜିଘାଂସା ନିମିତ୍ତ ଧାବମାନ ହେଲେ । ସେମାନେ ତାଦୃଶଭାବରେ ସମାଗତ ହୁଅନ୍ତେ, ଭରଦ୍ୱାଜନନ୍ଦନ ମହାରଥୀ ଦ୍ରୋଣ ମରଣରେ କୃତନିଶ୍ଚୟ ହୋଇ ମହାବେଗରେ ଅଗ୍ରସର ହେଲେ । ସେହି ସତ୍ୟସନ୍ଧ ମହାବୀର ଦ୍ରୋଣାଚାର୍ଯ୍ୟ ମହାରଥୀମାନଙ୍କ ପ୍ରତି ଗମନ କରିବା ସମୟରେ ସମସ୍ତ ସୈନ୍ୟମାନଙ୍କୁ ସନ୍ତାସିତ କରି ନିର୍ଘାତ ବାୟୁ ପ୍ରବାହିତ ହେଲା ଓ ମେଦିନୀ କମ୍ପିତ ହେଲା । ସେହି ସମୟରେ ଭୟପ୍ରଦର୍ଶୀୟ ସେନାମାନଙ୍କୁ ସନ୍ତାପିତ କରି ମହାଭୟସୂଚକ ମହୋଲ୍କା-ସମୂହ ଆଦିତ୍ୟମଣ୍ଡଳରୁ ନିଃସୃତ ହେଲା । ପୁଣି ମହାରଥ ଭରଦ୍ୱାଜନନ୍ଦନ-ଦ୍ରୋଣଙ୍କର ଶସ୍ତ୍ରସମୂହ ପ୍ରଜ୍ୱଳିତ ହେଲା । ତାହାଙ୍କର ରଥ ଗର୍ଜନ କଲା ଓ ଅଶ୍ୱମାନେ ଅଶ୍ରୁବିସର୍ଜନ କଲେ । ସେହି ସମୟରେ ମହାରଥ ଦ୍ରୋଣ ନିତାନ୍ତ ନିସ୍ତେଜ ହେଲେ । ତାହାଙ୍କର ବାମନେତ୍ର ଓ ବାମବାହୁ ସ୍ପନ୍ଦିତ ହେଲା । ପୁଣି ସେ ଧୃଷ୍ଟଦ୍ୟୁମ୍ନଙ୍କୁ ସମ୍ମୁଖରେ ଅବଲୋକନ କରି ଯୁଦ୍ଧରେ ବିମନା ହେଲେ । ୨୧ । ଅନନ୍ତର ସେ ବ୍ରହ୍ମବାଦୀ ଋଷିମାନଙ୍କର ବାକ୍ୟ ଶ୍ରବଣ କରି ସ୍ୱର୍ଗଗମନାର୍ଥ ଧର୍ମ୍ମଯୁଦ୍ଧ ଅନୁସାରେ ପ୍ରାଣତ୍ୟାଗ କରିବାକୁ ପ୍ରବୃତ୍ତ ହେଲେ । ୨୨ ।

ଦ୍ରୁପଦସୈନ୍ୟମାନେ ତାହାଙ୍କୁ ଚତୁର୍ଦ୍ଦିଗରୁ ପରିବେଷ୍ଟନ କରନ୍ତେ ସେ ବହୁସଂଖ୍ୟକ କ୍ଷତ୍ରିୟମାନଙ୍କୁ ଦଗ୍ଧ କରି ରଣସ୍ଥଳରେ ବିଚରଣ କଲେ ।

ସେହି ସମୟରେ କ୍ଷତ୍ରିୟମର୍ଦ୍ଦନକାରୀ ଆଚାର୍ଯ୍ୟ ଦ୍ରୋଣ ତୀକ୍ଷ୍ଣାଗ୍ର-ଶାଣିତ ଶରସମୂହଦ୍ୱାରା ଏକଲକ୍ଷ ବିଂଶତି ସହସ୍ର ଯୋଦ୍ଧାମାନଙ୍କୁ ଶମନ ଭବନକୁ ପ୍ରେରଣ କଲେ । ୨୪ । ତଦନନ୍ତର ସେ କ୍ଷତ୍ରିୟକୁଳ ନିର୍ମୂଳ-କରଣାର୍ଥ ବ୍ରହ୍ମଅସ୍ତ୍ର ପ୍ରାଦୁର୍ଭାବ କରି ରଣସ୍ଥଳରେ ନିର୍ଧୂମ ପାବକସଦୃଶ ଅବସ୍ଥାନ କଲେ । ୨୫ ।

ତହୁଁ ମହାବଳଶାଳୀ ଅରିମର୍ଦ୍ଦନ ଭୀମସେନ ରଥଭ୍ରଷ୍ଟ ନିରସ୍ତ୍ର ବିପଦ୍‌ଗ୍ରସ୍ତ ସେହି ମହାତ୍ମା ଧୃଷ୍ଟଦ୍ୟୁମ୍ନଙ୍କ ସମୀପସ୍ଥ ହୋଇ ତାହାଙ୍କୁ ନିଜର ରଥରେ ଆରୋହଣ କରାଇଲେ ଓ ଦ୍ରୋଣଙ୍କୁ ନିରନ୍ତର ଶସ୍ତ୍ର ନିକ୍ଷେପ କରିବାର ଅବଲୋକନ କରି ଧୃଷ୍ଟଦ୍ୟୁମ୍ନଙ୍କୁ କହିଲେ, ହେ ବୀର ! ଏଠାରେ ତୁମ୍ଭ ବ୍ୟତୀତ ଏପରି କୌଣସି ପୁରୁଷ ନାହିଁ ଯେ କି ଆଚାର୍ଯ୍ୟ ଦ୍ରୋଣଙ୍କର ଯୁଦ୍ଧକୁ ସହନ କରିପାରିବ । ଅତଏବ ତୁମ୍ଭେ ଅବିଳମ୍ବେ ତାହାଙ୍କ ବଧ-ନିମିତ୍ତ ଗମନ କର । କାରଣ ଏହି ଯୁଦ୍ଧର ଭାର ତୁମ୍ଭଠାରେ ଅର୍ପିତ ହୋଇଅଛି । ୨୮ ।

ଭୀମଙ୍କର ତାଦୃଶ ବାକ୍ୟ ଶ୍ରବଣ କରି ମହାବାହୁ ପାଞ୍ଚାଳନନ୍ଦନ ଅବିଳମ୍ବେ ଦୃଢ଼ତର ଆୟୁଧପ୍ରବର ସର୍ବଭାରସହ ଗୋଟିଏ ନୂତନ ଶରାସନ ଗ୍ରହଣପୂର୍ବକ ରଣଦୁର୍ବାରଣ ଦ୍ରୋଣଙ୍କୁ ନିବାରଣ କରିବା ନିମିତ୍ତ ମହା ସଂରମ୍ଭସହ ଶରଜାଲ ବିସ୍ତାର କରି ତାହାଙ୍କୁ ସମାଚ୍ଛନ୍ନ କଲେ । ରଣଦକ୍ଷ ସେହି ବୀରଦ୍ୱୟ ଅତିଶୟ ସଂରବ୍ଧ ହୋଇ ରଣସ୍ଥଳରେ ଅପୂର୍ବ ଶୋଭା ଧାରଣପୂର୍ବକ ଦିବ୍ୟ ଓ ବ୍ରାହ୍ମଅସ୍ତ୍ର ସମୂହ ପ୍ରାଦୁର୍ଭୂତ କଲେ । ୩୧ । ଅନନ୍ତର ଅଚ୍ୟୁତ ଧୃଷ୍ଟଦ୍ୟୁମ୍ନ ସ୍ୱୀୟ ମହାସ୍ତ୍ର ପ୍ରଭାବରେ ଦ୍ରୋଣାସ୍ତ୍ରକୁ ନିବାରଣ କରି ତାହାଙ୍କୁ ଅସଂଖ୍ୟ ଶରଜାଲରେ ସମାଚ୍ଛନ୍ନ କଲେ । ତତ୍ପରେ ଦ୍ରୋଣଙ୍କର ରକ୍ଷାର୍ଥ ଅବସ୍ଥିତ ଶିବି, ବଶାତି, ବାହ୍ଲୀକ ଓ କୌରବମାନଙ୍କୁ ଦଗ୍‌ଧ କଲେ । ୩୩ । ସେହି ସମୟରେ ପାଞ୍ଚାଳନନ୍ଦନ ଶରଜାଲରେ ଦିକ୍‌ସମୂହକୁ ସମାବୃତ କରି ଗଭସ୍ତିରାଜସମନ୍ୱିତ ପ୍ରଚଣ୍ଡ ଦିବାକରସଦୃଶ ପ୍ରଦୀପ୍ୟମାନ ହେଲେ । ୩୪ ।

ତଦନନ୍ତର ଦ୍ରୋଣାଚାର୍ଯ୍ୟ ଦ୍ରୁପଦତନୟ ଧୃଷ୍ଟଦ୍ୟୁମ୍ନଙ୍କର ବକ୍ଷଃସ୍ଥଳ ବିଦ୍ଧ କରନ୍ତେ ସେ ଅତିଶୟ କାତର ହେଲେ । ୩୫ । ସେହି ସମୟରେ

ଭୀମସେନ ଅତିଶୟ କୋଧାବିଷ୍ଟ ହୋଇ ଦ୍ରୋଣଙ୍କର ରଥ ଧାରଣପୂର୍ବକ ମୃଦୁସ୍ୱରରେ କହିଲେ, ଯଦି ଅସ୍ତ୍ରଶିକ୍ଷିତ ବ୍ରାହ୍ମଣାଧମମାନେ ସ୍ୱଜାତୀୟ କର୍ତ୍ତବ୍ୟାନୁଷ୍ଠାନରେ ଅସନ୍ତୁଷ୍ଟ ହୋଇ ଯୁଦ୍ଧ ନ କରନ୍ତେ, ତାହାହେଲେ କ୍ଷତ୍ରିୟବଂଶ କଦାଚ ଧ୍ୱଂସ ହୁଅନ୍ତା ନାହିଁ । ୩୭ । ହେ ବ୍ରହ୍ମନ୍ ! ଦେଖନ୍ତୁ, ସର୍ବପ୍ରାଣୀମାନଙ୍କଠାରେ ଅହିଂସାଭାବକୁ ପଣ୍ଡିତମାନେ ଶ୍ରେଷ୍ଠଧର୍ମ ବୋଲି ଜାଣନ୍ତି । ବ୍ରାହ୍ମଣ ସେହି ଧର୍ମର ଆଶ୍ରୟସ୍ୱରୂପ ଓ ଆପଣ ମଧ୍ୟ ବ୍ରହ୍ମଜ୍ଞ-ମାନଙ୍କର ଅଗ୍ରଗଣ୍ୟ । ପୁତ୍ର, ଦାର ଓ ଧନଲାଳସାରେ ଅଜ୍ଞାନତାହେତୁ ବିମୂଢ଼ ଚଣ୍ଡାଳସଦୃଶ ମ୍ଳେଚ୍ଛ ପ୍ରଭୃତି ବିବିଧ ଜାତିର ପ୍ରାଣିମାନଙ୍କୁ ସଂହାର କରୁଛନ୍ତି । ଆପଣ କେବଳ ଗୋଟିଏ ପୁତ୍ରନିମିତ୍ତ ଏପରି ଅକାର୍ଯ୍ୟ କରି ଲଜ୍ଜିତ ହେଉନାହାଁନ୍ତି । ୪୦ । ଆପଣ ଯାହାଙ୍କ ନିମିତ୍ତ ଶସ୍ତ୍ରଗ୍ରହଣ ପୂର୍ବକ ସଂଗ୍ରାମ କରୁଅଛନ୍ତି ଓ ଯାହାଙ୍କ ନିମିତ୍ତ ଜୀବନ ଧାରଣ କରୁଅଛନ୍ତି ସେହି ଅଶ୍ୱତ୍ଥାମା ଆପଣଙ୍କ ଅଗୋଚରରେ ଅଦ୍ୟ ପଶ୍ଚାଦ୍‌ଭାଗରେ ସଂଗ୍ରାମରେ ନିହତ ହୋଇ ଭୂତଳରେ ଶୟନ କରି ଅଛନ୍ତି । ଆପଣ ଧର୍ମରାଜ ଯୁଧିଷ୍ଠିରଙ୍କ କଥିତ ବାକ୍ୟକୁ କଦାଚ ସନ୍ଦେହ କରିବେ ନାହିଁ ।

ହେ ମହାରାଜ ! ଧର୍ମାତ୍ମା ଦ୍ରୋଣ ଭୀମସେନଙ୍କର ଏହି ସମସ୍ତ ବାକ୍ୟ ଶ୍ରବଣ କରି ଅସ୍ତ୍ରପରିତ୍ୟାଗ କାମନାରେ ସେହି ଶରାସନ ପରିତ୍ୟାଗ ପୂର୍ବକ କହିଲେ, ଆହେ ମହାଧନୁର୍ଦ୍ଧର କର୍ଣ୍ଣ, ହେ କର୍ଣ୍ଣ, ହେ କୃପ, ଆହେ ଦୁର୍ଯ୍ୟୋଧନ, ଆମ୍ଭେ ପୁନଃ ପୁନଃ କହୁଅଛୁଁ, ତୁମ୍ଭେମାନେ ସମରରେ ଯତ୍ନବାନ୍ ହୁଅ । ପାଣ୍ଡବମାନଙ୍କଠାରୁ ତୁମ୍ଭମାନଙ୍କର ଅମଙ୍ଗଳ ନ ହେଉ । କିନ୍ତୁ ଆମ୍ଭେ ଶସ୍ତ୍ରପରିତ୍ୟାଗ କଲୁଁ । ୪୪ । ହେ କୁରୁନାଥ ! ସେହି ସମୟରେ ମହାତ୍ମା ଦ୍ରୋଣ ଏହି କଥା କହି ଅଶ୍ୱତ୍ଥାମାଙ୍କର ନାମ ଉଚ୍ଚାରଣ ପୂର୍ବକ ଉଚ୍ଚୈଃସ୍ୱରରେ ରୋଦନ କଲେ ଓ ସେହି ସଂଗ୍ରାମ ସ୍ଥଳରେ ଶସ୍ତ୍ର ପରିତ୍ୟାଗ କରି ରଥ ମାଡ଼ରେ ଉପବେଶନ ପୂର୍ବକ ଯୋଗଯୁକ୍ତ ପୁରୁଷ ସଦୃଶ ସମସ୍ତ ପ୍ରାଣୀମାନଙ୍କୁ ଅଭୟ ପ୍ରଦାନ କଲେ ।

ପ୍ରତାପବାନ୍ ଧୃଷ୍ଟଦ୍ୟୁମ୍ନ ସେହି ଛିଦ୍ର ଅବଲୋକନ କରି ଶରସମନ୍ୱିତ ସେହି ଭୀଷଣ ଶରାସନକୁ ରଥମାଡ଼ରେ ସଂସ୍ଥାପନ କଲେ ଓ ଖଡ଼୍‌ଗ ପ୍ରହରଣ କରି ସହସା ରଥରୁ ଲମ୍ଫପ୍ରଦାନ ପୂର୍ବକ ଦ୍ରୋଣଙ୍କପ୍ରତି ଧାବମାନ ହେଲେ ।

୪୭ । ହେ ମହାରାଜ ! ଦ୍ରୋଣଙ୍କୁ ତାଦୃଶ ଭାବରେ ଧୃଷ୍ଟଦ୍ୟୁମ୍ନଙ୍କର ବଶୀଭୂତ ଅବଲୋକନ କରି ମନୁଷ୍ୟ ଓ ଅପରାପର ପ୍ରାଣିମାନେ ଧିକ୍, ହା ଧିକ ଏହିପରି ଶବ୍ଦ ଉଚ୍ଚାରଣପୂର୍ବକ ହାହାକାର କଲେ । ମହାତପା ଦ୍ରୋଣାଚାର୍ଯ୍ୟ ମଧ୍ୟ କର୍ଣ୍ଣାଦିବୀରମାନଙ୍କୁ ପୂର୍ବୋକ୍ତ ବାକ୍ୟସମୂହ କହି ଶସ୍ତ୍ର ପରିତ୍ୟାଗପୂର୍ବକ ପରମସାମ୍ୟଭାବ ଅବଲମ୍ବନ କଲେ ଓ ଯୋଗବଳରେ ଜ୍ୟୋତିର୍ମୟ ମୂର୍ତ୍ତି ଧାରଣ କରି ସନାତନ ପରମପୁରୁଷ ବିଷ୍ଣୁଙ୍କୁ ମନେ ମନେ ଚିନ୍ତାକଲେ । ୫୦ । ତଦନନ୍ତର ସେହି ଜ୍ୟୋତିର୍ମୟ ମୂର୍ତ୍ତି ମହାତପା ଦ୍ରୋଣ ଅଗ୍ରଭାଗରେ ମୁଖକୁ ଈଷତ୍ ଉନ୍ନାମିତ ଓ ବକ୍ଷଃସ୍ଥଳକୁ ସ୍ତମ୍ଭିତ କରି ନିମୀଳିତଲୋଚନ ଓ ବିଶୁଦ୍ଧଭାବାପନ୍ନ ହୋଇ ହୃଦୟରେ ସାତ୍ତ୍ୱିକ ଭାବ ଅବଲମ୍ବନପୂର୍ବକ ସୃଷ୍ଟିସ୍ଥିତିଲୟକର୍ତ୍ତା ଦେବଦେବେଶ ଅନଶ୍ୱର ଓଁକାର-ରୂପ ଏକାକ୍ଷର ପରଂବ୍ରହ୍ମଙ୍କୁ ସ୍ମରଣ କରି ପୂର୍ବୋକ୍ତ ଋଷିଗଣଙ୍କ ସହିତ ଦୁର୍ଲ୍ଲଭ ସ୍ୱର୍ଗକୁ ଗମନ କଲେ ।

ହେ ମହାରାଜ ! ସେ ତଦବସ୍ଥ ଥିବାସମୟରେ ତାହାଙ୍କ ରଥଠାରୁ ନଭୋମଣ୍ଡଳ ପର୍ଯ୍ୟନ୍ତ ଜ୍ୟୋତିରେ ପରିପୂର୍ଣ୍ଣ ହେଲା ଓ ଆମ୍ଭେମାନେ ଦୁଇ ଗୋଟି ଦିବାକର ଉଦିତ ହୋଇ ଅଛନ୍ତି ବୋଲି ମନେକଲୁଁ । ପ୍ରକୃତରେ ଦ୍ରୋଣଙ୍କର ନିଧନ କାଳରେ ସୂର୍ଯ୍ୟଙ୍କର ଜ୍ୟୋତି ସମଧିକ ପ୍ରଭାଶାଳୀ ହୋଇଥିଲା । କିନ୍ତୁ ନିମେଷକ ମଧ୍ୟରେ ସେହି ଜ୍ୟୋତି ତିରୋହିତ ହେଲା ।

ଏହିପରି ଦ୍ରୋଣାଚାର୍ଯ୍ୟ ବ୍ରହ୍ମଲୋକ ପ୍ରାପ୍ତ ଓ ଧୃଷ୍ଟଦ୍ୟୁମ୍ନ ବିମୋହିତ ହୁଅନ୍ତେ ପ୍ରହୃଷ୍ଟଚିତ୍ତ ଦେବଗଣଙ୍କର ସୁମହତ୍ କଳକଳା ଶବ୍ଦ ସମୁଦ୍ଭୂତ ହେଲା । ହେ ମହାରାଜ ! ଯୋଗଯୁକ୍ତ ମହାତ୍ମା ଦ୍ରୋଣ ଯେତେବେଳେ ପରମଗତି ପ୍ରାପ୍ତ ହେଲେ ସେତେବେଳେ ସମସ୍ତ ମନୁଷ୍ୟମାନଙ୍କ ମଧ୍ୟରୁ କେବଳ ଆମ୍ଭେ, ପୃଥାପୁତ୍ର ଧନଞ୍ଜୟ, ଶରଦ୍‌ବାନକୁମାର କୃପ, ବୃଷ୍ଣିନନ୍ଦନ ବାସୁଦେବ ଓ ଧର୍ମପୁତ୍ର ଯୁଧିଷ୍ଠିର ଏହି ପାଞ୍ଚଜଣ ତାହା ଦର୍ଶନ କରିଥିଲୁ । ଦେବଗଣଙ୍କର ଦୁର୍ବିଜ୍ଞେୟ ପରମବ୍ରହ୍ମଲୋକଗାମୀ ଯୋଗଯୁକ୍ତ ଧୀମାନ୍ ଭରଦ୍ୱାଜନନ୍ଦନ ଦ୍ରୋଣଙ୍କର ସେହି ମହିମାକୁ ଅନ୍ୟ କୌଣସି ବ୍ୟକ୍ତି ଅବଗତ ହୋଇ ପାରିଲେ ନାହିଁ । ୫୯ । ଶତ୍ରୁଦମନକାରୀ ଆଚାର୍ଯ୍ୟ-ଙ୍କର ପରମଗତି ପ୍ରାପ୍ତି ବିଷୟ ମନୁଷ୍ୟମାନେ ଅବଗତ ହୋଇ ପାରିଲେ

ନାହିଁ । ସେ ଯେଉଁ ଯୋଗବଳରେ ଋଷିଶ୍ରେଷ୍ଠମାନଙ୍କ ସହିତ ବ୍ରହ୍ମଲୋକକୁ ଗମନ କଲେ, ତାହା ମଧ୍ୟ କେହି ଦେଖିପାରିଲେ ନାହିଁ ।

ଏହି ସମୟରେ ପାଞ୍ଚାଳନନ୍ଦନ ଧୃଷ୍ଟଦ୍ୟୁମ୍ନ ଦ୍ରୋଣଙ୍କର ସେହି ଶରବର୍ଷିତ ନ୍ୟସ୍ତଶସ୍ତ୍ର ରକ୍ତାକ୍ତ କଳେବରକୁ ଆକ୍ରମଣ କରିବାରୁ ସମସ୍ତ ପ୍ରାଣିମାନେ ତାହାଙ୍କୁ ଧିକ୍‌କାର କଲେ । ପାଞ୍ଚାଳନନ୍ଦନ ମୌନାବଲମ୍ବୀ, ନିର୍ଜୀବକଳେବର ଆଚାର୍ଯ୍ୟଙ୍କର କେଶାକର୍ଷଣ ପୂର୍ବକ ଅସିଦ୍ୱାରା ଶିର-ଚ୍ଛେଦନ କଲେ । ଏହିପ୍ରକାରେ ଭରଦ୍ୱାଜନନ୍ଦନ ଦ୍ରୋଣ ନିପାତିତ ହୁଅନ୍ତେ ଧୃଷ୍ଟଦ୍ୟୁମ୍ନ ମହାହର୍ଷସହ ଖଡ୍‌ଗ ଉଦ୍‌ଭ୍ରାମିତ କରି ସିଂହନାଦ କଲେ ।

ହେ ମହାରାଜ ! ସେହି ଶ୍ୟାମାଙ୍ଗ ଆଚାର୍ଯ୍ୟ ଆକର୍ଣ୍ଣପଳିତକେଶ ଓ ପଞ୍ଚାଶୀତି ବର୍ଷ ବୟସ୍କ ହୋଇ ମଧ୍ୟ ଆପଣଙ୍କ ନିମିତ୍ତ ରଣସ୍ଥଳରେ ଷୋଡ଼ଶ ବର୍ଷୀୟ ଯୁବାସଦୃଶ ବିଚରଣ କରୁଥିଲେ । ତାହାଙ୍କ ବଧ ସମୟରେ କୁନ୍ତୀନନ୍ଦନ ମହାବାହୁ ଅର୍ଜ୍ଜୁନ ପୁନଃପୁନଃ ଧୃଷ୍ଟଦ୍ୟୁମ୍ନଙ୍କୁ କହିଲେ, ହେ ଦ୍ରୁପଦାତ୍ମଜ ! ଆଚାର୍ଯ୍ୟଙ୍କୁ ବିନାଶ କର ନାହିଁ । ତୁମ୍ଭେ ତାହାଙ୍କୁ ଜୀବିତାବସ୍ଥାରେ ଆନୟନ କର । ସମସ୍ତ ସେନାଧ୍ୟକ୍ଷମାନେ ମଧ୍ୟ ସେହି ସମୟରେ ଚିତ୍କାର କରି କହିଲେ, ବିନାଶ କରନାହିଁ, ବିନାଶ କରନାହିଁ । ବିଶେଷତଃ ଧନଞ୍ଜୟ ଚିତ୍କାର କରୁ କରୁ ତାହାଙ୍କ ଅଭିମୁଖକୁ ଧାବିତ ହେଲେ ।

ହେ ମହାରାଜ ! ଅର୍ଜ୍ଜୁନ ଓ କ୍ଷିତିପତିମାନେ ତାଦୃଶ ଭାବରେ ଚିତ୍କାର କଲେ ହେଁ ପାଞ୍ଚାଳନନ୍ଦନ ସେହି ରଥୋପସ୍ଥ ନରଶ୍ରେଷ୍ଠ ଦ୍ରୋଣଙ୍କୁ ବିନାଶ କଲେ । ହେ କୁରୁନାଥ ! ଯେତେବେଳେ ଆଚାର୍ଯ୍ୟ ରକ୍ତାକ୍ତ କଳେବର ହୋଇ ରଥରୁ ଭୂତଳରେ ପତିତ ହେଲେ, ସେତେବେଳେ ବୋଧହେଲା ଯେପରି ଲୋହିତାଙ୍ଗ ଆଦିତ୍ୟ ଭୂତଳରେ ପତିତ ହେଲେ । ଏହିପରି ସମସ୍ତ ସୈନିକମାନେ ସମରରେ ଆଚାର୍ଯ୍ୟଙ୍କୁ ନିହତ ହେବାର ଅବଲୋକନ କଲେ । ୬୯ । ମହାଧନୁର୍ଦ୍ଧର ଦ୍ରୁପଦପୁତ୍ର ଧୃଷ୍ଟଦ୍ୟୁମ୍ନ ଭରଦ୍ୱାଜନନ୍ଦନଙ୍କର ଶିରଶ୍ଛେଦନ କରି ଆପଣଙ୍କ ପକ୍ଷୀୟ ସୈନ୍ୟମାନଙ୍କ ସମକ୍ଷରେ ନିକ୍ଷେପ କଲେ । ୭୦ । କୌରବମାନେ ଦ୍ରୋଣଙ୍କର ସେହି ଛିନ୍ନ ମସ୍ତକ ଅବଲୋକନ କରି ହତୋତ୍ସାହ ହୋଇ

ଚତୁର୍ଦ୍ଦିଗକୁ ପଳାୟନ କଲେ । ଏହି ସମୟରେ ଦ୍ରୋଣାଚାର୍ଯ୍ୟ ଯେ ଗଗନମାର୍ଗ ଅତିକ୍ରମ କରି ନକ୍ଷତ୍ରମଣ୍ଡଳରେ ପ୍ରବିଷ୍ଟ ହେଲେ ତାହାଙ୍କ ସେହି ବିଷୟ ପୂର୍ବୋକ୍ତ ବୃଷ୍ଣିନନ୍ଦନ ବାସୁଦେବ, ଧନଞ୍ଜୟ, କୃପ, ଯୁଧିଷ୍ଠିର ଓ ସତ୍ୟବତୀନନ୍ଦନ ଭଗବାନ୍ ବ୍ୟାସଦେବଙ୍କ ପ୍ରସାଦରୁ ଆମ୍ଭେ ମଧ୍ୟ ଦର୍ଶନ କଲୁଁ । ଯେତେବେଳେ ସେହି ମହାମତି ଧୂମଶୂନ୍ୟ ପ୍ରଜ୍ୱଳିତ ଉଲ୍କା ସଦୃଶ ଗଗନମାର୍ଗରେ ଗମନ କଲେ, ସେତେବେଳେ ସ୍ପଷ୍ଟଭାବରେ ଆମ୍ଭେ ତାହା ନିରୀକ୍ଷଣ କଲୁଁ ।

ଦ୍ରୋଣ ନିହତ ହୁଅନ୍ତେ ପାଣ୍ଡବ ଓ ସୃଞ୍ଜୟମାନେ ନିରୁତ୍ସାହ କୌରବମାନଙ୍କ ପ୍ରତି ମହାବେଗରେ ଧାବିତ ହେଲେ । ତହୁଁ କ୍ଷଣକ ମଧ୍ୟରେ ସୈନ୍ୟମାନେ ଛିନ୍ନଭିନ୍ନ ହୋଇଗଲେ । ପଳାୟନ ସମୟରେ ସେମାନଙ୍କ ମଧ୍ୟରୁ ଅନେକେ ବିପକ୍ଷମାନଙ୍କର ନିଶିତ ଶରରେ ହତ ଓ ଆହତ ହେଲେ । ଦ୍ରୋଣାଚାର୍ଯ୍ୟ ନିହତ ହେବାରୁ ଆପଣଙ୍କପକ୍ଷୀୟ ସୈନ୍ୟମାନେ ଗତାସୁପ୍ରାୟ ହେଲେ । କୌରବମାନେ ସେହି ସମୟରେ ପରାଜିତ ହେବାରୁ ପରିଣାମରେ ମହାଭୟ ଉପସ୍ଥିତ ହେବ ବୋଲି ମନେକରି ଏପରି ନିସ୍ତେଜ ହେଲେ ଯେ ଆଉ କୌଣସି ପ୍ରକାରେ ସୁସ୍ଥିର ହୋଇ ପାରିଲେ ନାହିଁ । ସେହିକାଳରେ ସୈନ୍ୟାଧ୍ୟକ୍ଷ ନରପତିମାନେ ସେହି ଅସଂଖ୍ୟ କବନ୍ଧସମାକୀର୍ଣ୍ଣ ସମରାଙ୍ଗଣରେ ଦ୍ରୋଣଙ୍କ ମୃତ ଶରୀର ଅନ୍ୱେଷଣ କରି ମଧ୍ୟ ପ୍ରାପ୍ତ ହେଲେ ନାହିଁ । ପାଣ୍ଡବମାନେ ସେହି ସମୟରେ ଜୟଲାଭ କରି ଓ ଭବିଷ୍ୟତରେ ସୁମହତ୍ ଯଶୋଲାଭ କରିବାର ସମ୍ଭାବନାରେ ଅତିଶୟ ଆହ୍ଲାଦିତ ହୋଇ ଶରଣବ ଶଙ୍ଖଧ୍ୱନି ଓ ଘୋରତର ସିଂହନାଦ କଲେ ।

ଏହି ସମୟରେ ପୃଷତନନ୍ଦନ ଧୃଷ୍ଟଦ୍ୟୁମ୍ନ ବ୍ୟୂହ ମଧ୍ୟରେ ଭୀମସେନଙ୍କୁ ସାକ୍ଷାତ କଲେ ଓ ପରସ୍ପର ପରସ୍ପରକୁ ଆଲିଙ୍ଗନ କଲେ । ଭୀମସେନ ଶତ୍ରୁତାପନ ଧୃଷ୍ଟଦ୍ୟୁମ୍ନଙ୍କୁ କହିଲେ, ହେ ପାଞ୍ଚାଳରାଜ କୁମାର ! ପାପାତ୍ମା ସୂତପୁତ୍ର ଓ ଦୁର୍ଯ୍ୟୋଧନ ଏ ଦୁହେଁ ସମରରେ ନିହତ ହେଲେ ତୁମ୍ଭେ ଯେତେବେଳେ ବିଜୟଲାଭ କରିବ ସେତେବେଳେ ଆମ୍ଭେ ତୁମ୍ଭଙ୍କୁ ପୁନର୍ବାର ଆଲିଙ୍ଗନ କରିବୁଁ । ୮୧ । ମହାତ୍ମା ବୃକୋଦର ଏହି କଥା

କହି ଅତିଶୟ ହର୍ଷସହ ବାହୁଶବ୍ଦ କରି ଧରାତଳକୁ କମ୍ପିତ କଲେ । ୮୨ । ଆପଣଙ୍କ ପକ୍ଷୀୟ ସୈନ୍ୟମାନେ ତାହାଙ୍କର ବାହାସ୍ଫୋଟ ଶବ୍ଦରେ ସନ୍ତ୍ରସ୍ତ ହୋଇ କ୍ଷାତ୍ରଧର୍ମ୍ମ ପରିତ୍ୟାଗ ପୂର୍ବକ ଚତୁର୍ଦ୍ଦିଗକୁ ପଳାୟନ କଲେ । ୮୩ । ହେ ମହାରାଜ ! ଏହିପରି ପାଣ୍ଡବମାନେ ଜୟଲାଭ କରି ପ୍ରହୃଷ୍ଟଚିତ୍ତ ହେଲେ ଓ ସେମାନଙ୍କର ପ୍ରବଳ ଶତ୍ରୁ ଦ୍ରୋଣାଚାର୍ଯ୍ୟ ସମରରେ ନିହତ ହେଲେ ବୋଲି ସେମାନେ ଅପାର ସୁଖ ଅନୁଭବ କଲେ । ୮୪ ।

---

# ୧୯୩ ଅଧ୍ୟାୟ

ସଞ୍ଜୟ କହିଲେ—ହେ ମହାରାଜ ! ଦ୍ରୋଣ ଓ ପ୍ରଧାନ ପ୍ରଧାନ ବୀରଗଣ ନିହତ ହୁଅନ୍ତେ ଶସ୍ତ୍ରପୀଡ଼ିତ କୌରବମାନେ ବିଧ୍ୱସ୍ତ ଓ ଅତିଶୟ ଶୋକପରାୟଣ ହେଲେ । ବିଶେଷତଃ ପାଣ୍ଡବମାନଙ୍କୁ ପୁନଃପୁନଃ ମହାନନ୍ଦିତ ଅବଲୋକନ କରି ଅଶ୍ରୁପୂର୍ଣ୍ଣଲୋଚନ ଓ ଘୀନଶ୍ରୀବାପନ୍ନ ହେଲେ । ୨ । ହେ ମହାରାଜ ! ପୂର୍ବକାଳରେ ହିରଣ୍ୟାକ୍ଷ ନିପାତିତ ହୁଅନ୍ତେ ଦୈତ୍ୟମାନେ ଯେପରି ରକ୍ତାକ୍ତକଳେବର ଓ ବେପମାନ ହୋଇ ଦଶଦିଗ୍ ନିରୀକ୍ଷଣ କରୁ କରୁ ଅଶ୍ରୁକଣ୍ଠ ପୂର୍ବକ ହିରଣ୍ୟକଶିପୁକୁ ପରିବେଷ୍ଟନ କରିଥିଲେ, ସେହିପରି କୌରବମାନେ ବୁଦ୍ଧିଭ୍ରଂଶ ହେତୁ ହତୋତ୍ସାହ ଓ ହୀନତେଜା ହୋଇ ଅତିଶୟ ଆର୍ତ୍ତନାଦ କରୁ କରୁ ଆପଣଙ୍କ ପୁତ୍ର ଦୁର୍ଯ୍ୟୋଧନଙ୍କୁ ପରିବେଷ୍ଟନ କଲେ । ୪ । ରାଜା ଦୁର୍ଯ୍ୟୋଧନ କ୍ଷୁଦ୍ର କୁରଙ୍ଗକୁଳ ସଦୃଶ ଅତିଶୟ ଭୀତ ସେହି କୌରବଗଣଙ୍କ କର୍ତ୍ତୃକ ପରିବୃତ ହୋଇ ସେଠାରେ ଆଉ ଅବସ୍ଥାନ କରି ନ ପାରି ପଳାୟନ କଲେ । ୫ । ପୂର୍ବରୁ ଆପଣଙ୍କ ପକ୍ଷୀୟ ଯୋଦ୍ଧାମାନେ କ୍ଷୁତ୍‌ପିପାସାକାତର ହୋଇଥିଲେ । ୬ । ସମୁଦ୍ର-ଶୋଷଣ ଭାସ୍କରଙ୍କର ଭୂପତନ, ସୁମେରୁର ପରିବର୍ତ୍ତନ ଓ ଦେବରାଜଙ୍କର ରଣପରାଜୟ ସଦୃଶ ଭରଦ୍ୱାଜନନ୍ଦନ ଦ୍ରୋଣଙ୍କର ନିପାତନରୂପ ସେହି ଅସମ୍ଭବ ବ୍ୟାପାର ଅବଲୋକନ କରି କୌରବସୈନ୍ୟମାନେ ଅତିଶୟ ଭୟ ହୋଇ ପଳାୟନ କଲେ । ୮ ।

ଗାନ୍ଧାରରାଜ ଶକୁନି ଦ୍ରୋଣଙ୍କର ନିଧନ ବାର୍ତ୍ତା ଶ୍ରବଣ କରି ଅତିଶୟ ଭୀତ ହୋଇ ଭୟ ରଥୀମାନଙ୍କ ସହିତ ପଳାୟନ କଲେ । ୯ ।

ସୂତପୁତ୍ର କର୍ଣ୍ଣ ମଧ୍ୟ ବେଗରେ ପଳାୟମାନା ପତାକାସମନ୍ୱିତା ବ୍ୟୂହିତା ମହାସେନାକୁ ପ୍ରତ୍ୟାହାର ପୂର୍ବକ ଭୟରେ ପଳାୟନ କଲେ । ୧୦ । ମହାରାଜ ଶଲ୍ୟ, ତୁରଙ୍ଗ, ମାତଙ୍ଗ ଓ ଶତାଙ୍ଗ ସମାକୁଳ ସୈନ୍ୟମାନଙ୍କୁ ଅଗ୍ରବର୍ତ୍ତୀ କରି ଚତୁର୍ଦ୍ଦିଗକୁ ନିରୀକ୍ଷଣ କରୁ କରୁ ଭୟରେ ପ୍ରସ୍ଥାନ କଲେ । ୧୧ । ଶାରଦ୍ୱତ କୃପ ବହୁଳ ପତାକାଶୋଭିତ ବୀରଶୂନ୍ୟ ଅସଂଖ୍ୟ ହସ୍ତୀ ସୈନ୍ୟରେ ପରିବୃତ ହୋଇ 'କି କଷ୍ଟ ହେଲା', 'କି କଷ୍ଟ ହେଲା', ଏପରି କହୁ କହୁ ପଳାୟନ କଲେ । ୧୨ । କୃତବର୍ମ୍ମା ସୁଶିକ୍ଷିତ ଭୋଜ, କଳିଙ୍ଗ ଆରଟ୍ଟ ଓ ବାହ୍ଲୀକଦେଶୀୟ ସୈନ୍ୟରେ ପରିବୃତ ହୋଇ ମହାବେଗଗାମୀ ହୟରେ ଆରୋହଣ ପୂର୍ବକ ପ୍ରସ୍ଥାନ କଲେ । ୧୩ । ଶକୁନିପୁତ୍ର ଉଲୂକ ଦ୍ରୋଣଙ୍କୁ ନିପାତିତ ହେବାର ଦେଖି ଅତ୍ୟନ୍ତ ଭୟାର୍ତ୍ତ ହୋଇ ପଦାତିଗଣ ସହ ବେଗରେ ପଳାୟନ କଲେ । ୧୪ । ଶୌର୍ଯ୍ୟଲକ୍ଷଣ ଓ ଦର୍ଶନୀୟ ଯୁବା ଦୁଃଶାସନ ଅତିଶୟ ଉଦ୍‌ବିଗ୍ନ ହୋଇ ଗଜସୈନ୍ୟସହ ପଳାୟନ କଲେ । ୧୫ । କର୍ଣ୍ଣପୁତ୍ର ବୃଷସେନ ଦ୍ରୋଣଙ୍କୁ ନିପାତିତ ହେବାର ଦେଖି ଅୟୁତେ ରଥୀ ଓ ତିନିସହସ୍ର ହସ୍ତୀ-ସୈନ୍ୟରେ ପରିବୃତ ହୋଇ ଶୀଘ୍ର ପ୍ରସ୍ଥାନ କଲେ । ୧୬ । ମହାରଥୀ ରାଜା ଦୁର୍ଯ୍ୟୋଧନ ହସ୍ତୀ, ଅଶ୍ୱ, ପଦାତି ଓ ରଥୀ ପ୍ରଭୃତି ଚତୁରଙ୍ଗିଣୀ ସେନାଦ୍ୱାରା ପରିବୃତ ହୋଇ ପଳାୟନପର ହେଲେ । ୧୭ । ସଂଶପ୍ତକ ସେନାନାୟକ ସୁଶର୍ମ୍ମା ଦ୍ରୋଣଙ୍କୁ ନିହତ ଅବଲୋକନ କରି କିରୀଟୀଙ୍କର ବାଣହତାବଶିଷ୍ଟ ସଂଶପ୍ତକମାନଙ୍କୁ ସଙ୍ଗରେ ଘେନି ପ୍ରସ୍ଥାନ କଲେ । ୧୮ । ଦ୍ରୋଣାଚାର୍ଯ୍ୟଙ୍କୁ ନିହତ ଦେଖି କୌରବ ବୀରମାନେ ଅପରର ଅଶ୍ୱ ବା ରଥରେ ମଧ୍ୟ ଆରୋହଣ କରି ପଳାୟନ କଲେ । କେହି ପିତାଙ୍କୁ, କେହି ଭ୍ରାତାଙ୍କୁ, କେହି ମାତୁଳଙ୍କୁ, କେହି ପୁତ୍ରମାନଙ୍କୁ, କେହି ବୟସ୍ୟଙ୍କୁ, କେହି ଆପଣାର ସୈନ୍ୟମାନଙ୍କୁ, କେହି ଭାଗିନେୟମାନଙ୍କୁ ଓ କେହି ଅବା ବନ୍ଧୁ ଓ ପ୍ରକୀର୍ତ୍ତିକେଶ ଆତ୍ମୀୟମାନଙ୍କୁ ଈରାନ୍ୱିତ କରି ବିବିଧ ଦିଗକୁ ପଳାୟନ କଲେ । ସେହି ସମୟରେ ସେମାନଙ୍କ ମଧ୍ୟରୁ କେହି ଦୁଇଜଣ ଏକତ୍ର ହୋଇ ଗମନ କଲେ ନାହିଁ । ଆଜ କାହାରି ରକ୍ଷା ହେବ ନାହିଁ, ଏହିପରି ବିବେଚନା କରି ହତପ୍ରଭ ଓ ନିରୁତ୍ସାହ ହୋଇ କବଚ ମହୀରୁହକୁ ପରିତ୍ୟାଗ ପୂର୍ବକ ଉଚ୍ଚୈଃସ୍ୱରରେ ପରସ୍ପରକୁ ଆହ୍ୱାନ କରି ପଳାୟନ କଲେ । ୨୩ ।

ହେ ମହାରାଜ ! ସେମାନେ ଅପରକୁ ତିଷ୍ଠ ତିଷ୍ଠ ବୋଲି କହି ନିଜେ ସେଠାରେ ଅବସ୍ଥାନ ନ କରି ପଳାୟନ କଲେ । ସେମାନେ ଏପରି ବ୍ୟଗ୍ର ହୋଇଥିଲେ ଯେ ସୁନ୍ଦର ଅଳଙ୍କାରଯୁକ୍ତ ସାରଥିଶୂନ୍ୟ ରଥରୁ ଅଶ୍ୱମାନଙ୍କୁ ଉନ୍ମୋଚନ କରି ସେମାନଙ୍କ ପୃଷ୍ଠରେ ଶୀଘ୍ର ଆରୋହଣପୂର୍ବକ ପଦଦ୍ୱାରା ସେମାନଙ୍କୁ ପରିଚାଳିତ କଲେ । ୨୫ । ସେହି ହୀନତ୍ରାଣ ସନ୍ତ୍ରସ୍ତ ସୈନ୍ୟମାନଙ୍କର ପଳାୟନ ସମୟରେ କେବଳ ଦ୍ରୋଣପୁତ୍ର ଅଶ୍ୱତ୍ଥାମା ସ୍ରୋତର ପ୍ରତିକୂଳଗାମୀ ଗ୍ରାହସଦୃଶ ଶତ୍ରୁମାନଙ୍କ ବିପକ୍ଷରେ ଧାବିତ ହେଲେ । ୨୬ । ଏହି ସମୟରେ ଶିଖଣ୍ଡୀ ପ୍ରମୁଖ ପାଞ୍ଚାଳ, ପ୍ରଭଦ୍ରକ, ଚେଦି ଓ କେକୟମାନଙ୍କ ସହିତ ଅଶ୍ୱତ୍ଥାମାଙ୍କର ସୁମହତ୍ ଯୁଦ୍ଧ ଉପସ୍ଥିତ ହେଲା । ଅନନ୍ତର ମତ୍ତଦ୍ୱିରଦବିକ୍ରମ ଯୁଦ୍ଧଦୁର୍ମ୍ମଦ ଅଶ୍ୱତ୍ଥାମା ପାଣ୍ଡବପକ୍ଷୀୟ ବହୁସୈନ୍ୟ ସଂହାରପୂର୍ବକ ଅତିକଷ୍ଟରେ ସେହି ସଙ୍କଟରୁ ମୁକ୍ତ ହେଲେ । । ୨୭ । ତତ୍ପରେ ସେ କୌରବ ସୈନ୍ୟମାନଙ୍କୁ ପଳାୟନପର ଓ ଧାବମାନ ହେବାର ସନ୍ଦର୍ଶନ କରି ଦୁର୍ଯ୍ୟୋଧନଙ୍କ ନିକଟକୁ ଗମନପୂର୍ବକ ତାହାଙ୍କୁ କହିଲେ । ୨୮ ।

ହେ ଭାରତ ! ଆପଣଙ୍କର ଏହି ସୈନ୍ୟମାନେ କି ନିମିତ୍ତ ଭୀତ ହୋଇ ଧାବମାନ ହେଉଅଛନ୍ତି ? ଆପଣ ଏମାନଙ୍କୁ ପଳାୟନପର ଅବଲୋକନ କରି ସୁଦ୍ଧା କି ନିମିତ୍ତ ଯୁଦ୍ଧରେ ଅବସ୍ଥାପିତ କରୁନାହାନ୍ତି । । ୨୯ । ଆପଣ ମଧ୍ୟ ପୂର୍ବପରି ପ୍ରକୃତିସ୍ଥ ଥିବାର ବୋଧ ହେଉନାହାନ୍ତି । ବିଶେଷତଃ କର୍ଣ୍ଣ ପ୍ରଭୃତି ସେନାଧ୍ୟକ୍ଷମାନେ ମଧ୍ୟ ଅବସ୍ଥାନ କରୁନାହାନ୍ତି । ଅପର କୌଣସି ଯୁଦ୍ଧରେ ସୈନ୍ୟମାନେ ତ ଏପରି ପଳାୟନ କରି ନ ଥିଲେ । ହେ ମହାବାହୋ ! ମହାରାଜ ! ଆପଣଙ୍କ ସେନାମଧ୍ୟରେ ସମସ୍ତ ମଙ୍ଗଳ ତ ? କେଉଁ ରଥୀପ୍ରବର ନିହତ ହେବାରୁ ଆପଣଙ୍କର ସୈନ୍ୟମାନେ ଈଦୃଶ ଅବସ୍ଥାପ୍ରାପ୍ତ ହୋଇ ଅଛନ୍ତି ତାହା ଆମ୍ଭ ନିକଟରେ ପ୍ରକାଶ କରି କହନ୍ତୁ । ୩୨ । ହେ ମହାରାଜ ! ପାର୍ଥିବଶ୍ରେଷ୍ଠ ଦୁର୍ଯ୍ୟୋଧନ ଭଗ୍ନ ନୌକାସଦୃଶ ଶୋକରୂପ ମହାର୍ଣ୍ଣବରେ ନିମଗ୍ନ ହୋଇ ବାଷ୍ପାକୁଳିତ ଲୋଚନରେ ରଥସ୍ଥ ଗୁରୁପୁତ୍ର ଅଶ୍ୱତ୍ଥାମାଙ୍କୁ ଅବଲୋକନ କରି ଓ ତାହାଙ୍କ ବାକ୍ୟ ଶ୍ରବଣ କରି ଦ୍ରୋଣବଧରୂପ ଘୋର ଅପ୍ରିୟ ସମ୍ବାଦ କହିବାକୁ ସମର୍ଥ ହେଲେ ନାହିଁ । ୩୪ । ସେ ଏଣିକି ଭାବରେ କୃପାଚାର୍ଯ୍ୟଙ୍କୁ ଏହିପରି

କହିଲେ ଯେ, ସେମାନେ କି ନିମିତ୍ତ ବେଗରେ ପଳାୟନ କରୁଅଛନ୍ତି, ତାହା ଆପଣ ଗୁରୁପୁତ୍ରଙ୍କ ନିକଟରେ ବ୍ୟକ୍ତ କରନ୍ତୁ । ୪୫ । ତେତେବେଳେ ଶାରଦ୍ବତ କୃପ ପୁନଃ ପୁନଃ ଶୋକ ପ୍ରକାଶପୂର୍ବକ ଯେପରି ଦ୍ରୋଣ ନିପାତିତ ହୋଇଥିଲେ ସେସମସ୍ତ ଅଶ୍ୱତ୍ଥାମାଙ୍କ ନିକଟରେ କହିବାକୁ ଆରମ୍ଭ କଲେ । ୩୬ ।

ପୃଥିବୀର ସମସ୍ତ ରଥିମାନଙ୍କର ଅଗ୍ରଗଣ୍ୟ ସେହି ମହାବୀର ଦ୍ରୋଣଙ୍କୁ ପୁରୋବର୍ତ୍ତୀ କରି ଆମ୍ଭେମାନେ କେବଳ ପାଞ୍ଚାଳମାନଙ୍କ ସହିତ ଯୁଦ୍ଧରେ ପ୍ରବୃତ୍ତ ହୋଇଥିଲୁଁ । ୩୭ । ଅନନ୍ତର ଯୁଦ୍ଧାର୍ଥ ମିଳିତ କୌରବ ଓ ସୋମକଗଣ ଗର୍ଜନପୂର୍ବକ ଶସ୍ତ୍ରଦ୍ୱାରା ପରସ୍ପର ପରସ୍ପରକୁ ପାତିତ କରିବାରେ ପ୍ରବୃତ୍ତ ହେଲେ । ତାଦୃଶ ଯୁଦ୍ଧରେ କୌରବ ପକ୍ଷୀୟ ବହୁସଂଖ୍ୟକ ସେନା ବିନାଶପ୍ରାପ୍ତ ହେବାରୁ ତୁମ୍ଭର ପିତା ଅତିଶୟ କୁପିତ ହୋଇ ବ୍ରାହ୍ମଅସ୍ତ୍ର ପ୍ରାଦୁର୍ଭାବ କଲେ । ୩୯ । ତତ୍ପରେ ସେହି ନରଶ୍ରେଷ୍ଠ ଦ୍ରୋଣ ଭଲ୍ଲାସ୍ତ୍ରଦ୍ୱାରା ଶତ୍ରୁମାନଙ୍କର ଶତ ଶତ ସହସ୍ର ସହସ୍ର ଯୋଦ୍ଧାମାନଙ୍କୁ ସଂହାର କଲେ । ୪୦ । ପାଣ୍ଡବପକ୍ଷୀୟ କେକୟ ଓ ମତ୍ସ୍ୟ ବିଶେଷତଃ ପାଞ୍ଚାଳମାନେ କାଳପ୍ରେରିତ ହୋଇ ଦ୍ରୋଣଙ୍କ ରଥ ସମୀପସ୍ଥ ହେବାମାତ୍ର ବିନଷ୍ଟ ହେଲେ । ୪୧ । ଏହି ସମୟରେ ସେ ବ୍ରହ୍ମାସ୍ତ୍ର ପ୍ରଭାବରେ ଏକସହସ୍ର ପ୍ରଧାନ ଯୋଦ୍ଧା ଓ ଦୁଇ ସହସ୍ର ହସ୍ତୀଙ୍କୁ ନିହତ କଲେ । ୪୨ । ସେହି ଶ୍ୟାମବର୍ଣ୍ଣ ଆଚାର୍ଯ୍ୟ ଦ୍ରୋଣ ଆକର୍ଣ୍ଣପଳିତ କେଶ ଓ ଅଶୀତି ବର୍ଷରୁ ଅଧିକ ବୃଦ୍ଧ ହୋଇ ମଧ୍ୟ ସମରରେ ଷୋଡ଼ଶ ବର୍ଷୀୟ ଯୁବାସଦୃଶ ବିଚରଣ କଲେ । ୪୩ । ଏହିପରି ପାଣ୍ଡବପକ୍ଷୀୟ ସୈନ୍ୟମାନେ କ୍ଳିଷ୍ଟ ଓ ରାଜାମାନେ ବିନଷ୍ଟ ହେବାରୁ ପାଞ୍ଚାଳଗଣ କ୍ରୋଧାବିଷ୍ଟ ହୋଇ ମଧ୍ୟ ସମ୍ମୁଖୀନ ହୋଇ ପାରିଲେ ନାହିଁ । ୪୪ । ସେମାନଙ୍କ ମଧ୍ୟରୁ କେତେକ ନିହତ ଓ କେତେକ ପରାଙ୍ମୁଖ ହୁଅନ୍ତେ ଶତ୍ରୁବିଜୟୀ ଆଚାର୍ଯ୍ୟ ଦିବ୍ୟାସ୍ତ୍ର ପ୍ରଭାବରେ ସୂର୍ଯ୍ୟସଦୃଶ ପ୍ରକାଶମାନ ହେଲେ । ୪୫ । ସେହି ସମୟରେ ତୁମ୍ଭର ପିତା ପାଣ୍ଡବ ସୈନ୍ୟର ମଧ୍ୟଗତ ହୋଇ ଶରରୂପ କିରଣଜାଲ ଦ୍ୱାରା ମଧ୍ୟାହ୍ନକାଳୀନ ଜଳଦତ ପ୍ରଚଣ୍ଡ ମାର୍ତ୍ତଣ୍ଡସଦୃଶ ଦୁଷ୍ପ୍ରେକ୍ଷଣୀୟ ହେଲେ । ପାଣ୍ଡବ ସୈନ୍ୟମାନେ କିରଣରାଜି ବିରାଜିତ ସୂର୍ଯ୍ୟସଦୃଶ ସମରସ୍ଥିତ ଦ୍ରୋଣଙ୍କର

ଅସ୍ତ୍ରାନଳରେ ଦଗ୍ଧ ହୋଇ ତେଜୋହୀନ ନିରୁତ୍ସାହ ଓ ବିଚେତନ ପ୍ରାପ୍ତ ହେଲେ । ୪୭ ।

ପାଣ୍ଡବହିତୈଷୀ ମଧୁସୂଦନ ସେମାନଙ୍କୁ ଦ୍ରୋଣଙ୍କ ଶରରେ ନିପୀଡ଼ିତ ହେବାର ଦେଖି ଏହିପରି ଉପଦେଶ ଦେଲେ । ୪୮ । ଏହି ରଥଯୂଥପତିମାନଙ୍କ ଯୂଥପତି ଶସ୍ତ୍ରଧାରିପ୍ରବର ଦ୍ରୋଣଙ୍କୁ ମାନବମାନେ କଦାଚ ପରାଜିତ କରି ପାରିବେ ନାହିଁ । ବୃହଦହନ୍ତା ଇନ୍ଦ୍ରମଧ୍ୟ ଏହାଙ୍କୁ ପରାଜୟ କରିବାକୁ ସମର୍ଥ ହେବେନାହିଁ । ୪୯ । ହେ ପାଣ୍ଡବଗଣ ! ଶ୍ୱେତାଶ୍ୱ ଦ୍ରୋଣ ଯେପରି ତୁମ୍ଭସମସ୍ତଙ୍କୁ ନିହତ ନ କରନ୍ତି, ସେ ବିଷୟରେ ବର୍ତ୍ତମାନ ସତର୍କ ହୁଅ । ଆମ୍ଭ ବିବେଚନାରେ ତୁମ୍ଭେମାନେ ବର୍ତ୍ତମାନ ଧର୍ମ୍ମ ପରିତ୍ୟାଗ କରି ଜୟଲାଭ ନିମିତ୍ତ ଯତ୍ନ କର । ୫୦ । ବୋଧହୁଏ ଅଶ୍ୱତ୍ଥାମା ହତ ହୋଇଅଛନ୍ତି, ଏହି କଥା ଶ୍ରବଣ କଲେ ସେ ଆଉ ଯୁଦ୍ଧ କରି ପାରିବେ ନାହିଁ । ଅତଏବ କୌଣସି ବ୍ୟକ୍ତି ଅଶ୍ୱତ୍ଥାମା ନିହତ ହୋଇ ଅଛନ୍ତି, ଏହି ମିଥ୍ୟା ବାକ୍ୟ ଆଚାର୍ଯ୍ୟଙ୍କ ନିକଟରେ ବ୍ୟକ୍ତ କରୁ ।

କୁନ୍ତୀନନ୍ଦନ ଧନଞ୍ଜୟ ବାସୁଦେବଙ୍କର ଏହି ବାକ୍ୟରେ ସମ୍ମତ ହେଲେ ନାହିଁ । ଅପର ସମସ୍ତେ ତହିଁରେ ସମ୍ମତ ହେଲେ, କିନ୍ତୁ ଧର୍ମ୍ମରାଜ ଯୁଧିଷ୍ଠିର ଅତି କଷ୍ଟରେ ସମ୍ମତ ହେଲେ । ୫୨ । ତଦୂପରେ ଭୀମସେନ ସଲଜ୍ଜ ଭାବରେ ତୁମ୍ଭ ପିତାଙ୍କ ନିକଟକୁ ଗମନ କରି ଅଶ୍ୱତ୍ଥାମା ନିହତ ହୋଇ ଅଛନ୍ତି, ଏହିପରି କହିବାରୁ ସେ ତହିଁରେ ବିଶ୍ୱାସ କଲେନାହିଁ । । ୫୩ । କିନ୍ତୁ ସେହି ମିଥ୍ୟା ଶଙ୍କାଯୁକ୍ତ ହୋଇ ତୁମ୍ଭପ୍ରତି ବାତ୍ସଲ୍ୟ ହେତୁ ଏକଥା ସତ୍ୟ କି ମିଥ୍ୟା ତାହା ଜାଣିବା ନିମିତ୍ତ ଯୁଧିଷ୍ଠିରଙ୍କୁ ପଚାରିଲେ ।

ମିଥ୍ୟା ଭୟରେ ଅଥଚ ଜୟାସକ୍ତଚିତ୍ତ ଯୁଧିଷ୍ଠିର ମାଳବରାଜା ଇନ୍ଦ୍ରବର୍ମାଙ୍କର ଅଚଳସଦୃଶ ଅଶ୍ୱତ୍ଥାମା ନାମକ ହସ୍ତୀ ମହାରାଜା ଭୀମଙ୍କ କର୍ତ୍ତୃକ ନିହତ ହୋଇଥିବାର ଦେଖି ଦ୍ରୋଣଙ୍କ ସମ୍ମୁଖକୁ ଗମନପୂର୍ବକ ଉଚ୍ଚୈଃ ସ୍ୱରରେ କହିଲେ । ୫୬ । ହେ ଆଚାର୍ଯ୍ୟ ! ଆପଣ ଯାହାଙ୍କ ନିମିତ୍ତ ଅସ୍ତ୍ର ଧାରଣ କରି ଅଛନ୍ତି, ଆପଣଙ୍କ ସହିତ ପ୍ରିୟପୁତ୍ର ସେହି ଅଶ୍ୱତ୍ଥାମା ନିହତ ହୋଇ ଅରଣ୍ୟସ୍ଥ ସିଂହଶିଶୁ ସଦୃଶ ରଣସ୍ଥଳରେ

ଶୟନ କରଅଛନ୍ତି । ୫୮ । ହେ ବତ୍ସ ! ଅଶ୍ୱତ୍ଥାମାନ୍ ! ଯୁଧିଷ୍ଠିର ମିଥ୍ୟା କଥନର ସମସ୍ତ ଅବଗତ ଥାଇ ସୁଦ୍ଧା ସେହି ଦ୍ୱିଜସତ୍ତମଙ୍କ ସମୀପରେ ଏହି ମିଥ୍ୟା ବାକ୍ୟସମୂହ ଉଚ୍ଚାରଣ କରି ପରିଶେଷରେ ଅବ୍ୟକ୍ତ ସ୍ୱରରେ କୁଞ୍ଜର ହତ ହୋଇଅଛି ବୋଲି କହିଲେ । ୫୯ । ଅନନ୍ତର ଦ୍ରୋଣ ସଂଗ୍ରାମ ସ୍ଥଳରେ ତୁମ୍ଭର ନିଧନ ବାର୍ତ୍ତା ଶ୍ରବଣ କରି ଅତ୍ୟନ୍ତ ଶୋକସନ୍ତପ୍ତ ଚିତ୍ତରେ ଦିବ୍ୟାସ୍ତ୍ରସମୂହକୁ ପ୍ରତିସଂହାର ପୂର୍ବକ ଆଉ ପୂର୍ବ ପରି ଯୁଦ୍ଧ କଲେ ନାହିଁ । ୬୦ ।

ସେତେବେଳେ ନିଷ୍ଠୁରସ୍ୱଭାବ ପାଞ୍ଚାଳ ରାଜପୁତ୍ର ଧୃଷ୍ଟଦ୍ୟୁମ୍ନ ତାହାଙ୍କୁ ଅତିଶୟ ଉଦ୍‌ବିଗ୍ନ କରି ବେଗରେ ତାହାଙ୍କ ଅଭିମୁଖକୁ ଧାବମାନ ହେଲେ । ୬୧ । ସେହି ଲୋକତତ୍ତ୍ୱବିଚକ୍ଷଣ ଆଚାର୍ଯ୍ୟ ଧୃଷ୍ଟଦ୍ୟୁମ୍ନଙ୍କୁ ବଧକର୍ତ୍ତା ମୃତ୍ୟୁସ୍ୱରୂପ ଅବଗତ ହୋଇ ଦିବ୍ୟାସ୍ତ୍ରସମୂହକୁ ପରିତ୍ୟାଗପୂର୍ବକ ସେହି ରଣାଙ୍ଗନରେ ପ୍ରାୟୋପବେଶନ କଲେ । ୬୨ । ତଦନନ୍ତର ବୀର-ମାନେ ଚିତ୍କାର କରି ନିଷେଧ କଲେ ସୁଦ୍ଧା ପୃଷତନନ୍ଦନ ଧୃଷ୍ଟଦ୍ୟୁମ୍ନ ବାମ ହସ୍ତରେ ତାହାଙ୍କ କେଶ ଗ୍ରହଣପୂର୍ବକ ଦକ୍ଷିଣ କରସ୍ଥ ଖଡ୍‌ଗଦ୍ୱାରା ଶିରଚ୍ଛେଦନ କଲେ । ୬୩ । ସେହି ସମୟରେ ସମସ୍ତେ 'ବିନାଶ କରନାହିଁ, ବିନାଶ କରନାହିଁ' ବୋଲି ଚିତ୍କାର କଲେ । ଧର୍ମଜ୍ଞ ଧନଞ୍ଜୟ ଅବିଳମ୍ବେ ରଥରୁ ଅବତରଣ କରି ବାହୁଦ୍ୱୟ ଉଦ୍ୟତ କରି ଆଚାର୍ଯ୍ୟଙ୍କୁ ବଧ କର ନାହିଁ, ତାହାଙ୍କୁ ଜୀବିତ ଅବସ୍ଥାରେ ଆନୟନ କର, ଏହିପରି ପୁନଃପୁନଃ କହୁଁ କହୁଁ ସେହି ଦିଗକୁ ଧାବିତ ହେଲେ । କୌରବଗଣ ଓ ଅର୍ଜୁନ ସେହି ପ୍ରକାରେ ନିବାରଣ କଲେ ମଧ୍ୟ ସେହି ନୃଶଂସ ଧୃଷ୍ଟଦ୍ୟୁମ୍ନ ତୁମ୍ଭ ପିତାଙ୍କୁ ନିହତ କଲା । ୬୬ । ହେ ଅନଘ ! ନରଶ୍ରେଷ୍ଠ ! ଅଶ୍ୱତ୍ଥାମାନ୍ ! ଏହିପରି ତୁମ୍ଭର ପିତା ନିହତ ହେବାରୁ ସୈନ୍ୟମାନେ ଓ ଆମ୍ଭେ ସମସ୍ତେ ଭୟଭୀତ ଓ ନିରୁତ୍ସାହ ହୋଇ ପଳାୟନ କରୁଅଛୁଁ । ୬୭ ।

ସଞ୍ଜୟ କହିଲେ—ହେ ମହାରାଜ ! ଅଶ୍ୱତ୍ଥାମା ସଂଗ୍ରାମରେ ପିତାଙ୍କର ନିଧନ ବାର୍ତ୍ତା ଶ୍ରବଣ କରି ପଦାହତ ଉରଗସଦୃଶ ତୀବ୍ରତର ରୋଷାବିଷ୍ଟ ହେଲେ । ୬୮ । ହୁତାଶନ ଯେପରି ଇନ୍ଧନ ପ୍ରାପ୍ତ ହୋଇ ପ୍ରଜ୍ୱଳିତ ହୁଅନ୍ତି ତଦ୍ରୂପ ଦ୍ରୋଣନନ୍ଦନ କ୍ରୋଧରେ ପ୍ରଦୀପ୍ତ ହେଲେ ଓ

କରତରେ କର ନିଷ୍ପେଷଣ ଓ ଦନ୍ତଘର୍ଷଣ ପୂର୍ବକ ସର୍ପସଦୃଶ ମୁହୁର୍ମୁହୁଃ ନିଃଶ୍ୱାସ ପରିତ୍ୟାଗ କରି ଲୋହିତଲୋଚନ ହେଲେ ।

---

# ୧୯୪ ଅଧ୍ୟାୟ

ଧୃତରାଷ୍ଟ୍ର କହିଲେ—ହେ ସଞ୍ଜୟ ! ଅଶ୍ୱତ୍ଥାମା ବୃଦ୍ଧପିତା ବ୍ରାହ୍ମଣ ଦ୍ରୋଣ ଅଧର୍ମ ଦ୍ୱାରା ଧୃଷ୍ଟଦ୍ୟୁମ୍ନ କର୍ତ୍ତୃକ ନିହତ ହୋଇ ଥିବାର ଶୁଣି କଅଣ କହିଲେ ? ଯାହାଙ୍କଠାରେ ମାନୁଷ, ବାରୁଣ, ଆଗ୍ନେୟ, ବୀର୍ଯ୍ୟଶାଳୀ ବ୍ରାହ୍ମ, ଐନ୍ଦ୍ର ଓ ନାରାୟଣ ପ୍ରଭୃତି ଅସ୍ତ୍ର ସମୂହ ନିୟତ ପ୍ରତିଷ୍ଠିତ ଥିଲା, ତାଦୃଶ ଧାର୍ମିକପ୍ରବର ଆଚାର୍ଯ୍ୟ ନିହତ ହୋଇ ଅଛନ୍ତି, ଏହା ଶ୍ରବଣ କରି ତାହାଙ୍କ ପୁତ୍ର କି କାର୍ଯ୍ୟ କଲେ ? ୩ । ମହାତ୍ମା ଦ୍ରୋଣାଚାର୍ଯ୍ୟ ଭୃଗୁନନ୍ଦନ ରାମଙ୍କଠାରୁ ସମସ୍ତ ଧନୁର୍ବେଦ ପ୍ରାପ୍ତ ହୋଇ ସ୍ୱୀୟ ପୁତ୍ରଙ୍କୁ ଅଧିକ କୃତବିଦ୍ୟ କରିବା ମାନସରେ ସେହି ସମସ୍ତ ତାହାଙ୍କୁ ଶିକ୍ଷା ଦେଇଥିଲେ । ଏହି ସଂସାରରେ ପୁରୁଷ ସ୍ୱୀୟ ପୁତ୍ରକୁ ଆପଣାଠାରୁ ମଧ୍ୟ ଅଧିକ ଗୁଣବାନ୍ କରିବାକୁ ଇଚ୍ଛା କରେ । ଅପର ବ୍ୟକ୍ତିକୁ ସେପରି କରିବାକୁ ଇଚ୍ଛା କରେ ନାହିଁ । ଏହା ସଂସାରର ରୀତି । ୫ । ମହାତ୍ମା ଆଚାର୍ଯ୍ୟମାନଙ୍କୁ ଯେ ସମସ୍ତ ରହସ୍ୟ ଜଣାଥାଏ, ସେମାନେ ତାହା ପୁତ୍ର ବା ଅନୁଗତ ଶିଷ୍ୟଙ୍କୁ ପ୍ରଦାନ କରନ୍ତି । । ୬ ।

ଶୌର୍ଯ୍ୟବାନ୍ ଶାରଦ୍ୱତ ପୁତ୍ର ଅଶ୍ୱତ୍ଥମା ତାହାଙ୍କର ପୁତ୍ର ଓ ଶିଷ୍ୟ । ସୁତରାଂ ସେ ଆଚାର୍ଯ୍ୟ ପିତାଙ୍କ ଠାରୁ ଦିବ୍ୟାସ୍ତ୍ର ସମୂହ ପ୍ରାପ୍ତ ହୋଇ ପିତାଙ୍କ ସଦୃଶ ହୋଇ ଅଛନ୍ତି । । ୭ । ଯୁବା ଅଶ୍ୱତ୍ଥାମା ଶସ୍ତ୍ର ବିଦ୍ୟାରେ ରାମଙ୍କ ସଦୃଶ, ସମରରେ ପୁରନ୍ଦର ସଦୃଶ, ବୀର୍ଯ୍ୟରେ କାର୍ତ୍ତବୀର୍ଯ୍ୟ ସଦୃଶ, ବୁଦ୍ଧିରେ ବୃହସ୍ପତିଙ୍କ ସଦୃଶ, ସ୍ଥୈର୍ଯ୍ୟରେ ଶୈଳ ସଦୃଶ, ତେଜରେ ଅଗ୍ନି ସଦୃଶ, ଗାମ୍ଭୀର୍ଯ୍ୟରେ ସାଗର ସଦୃଶ, କ୍ରୋଧରେ ଆଶୀବିଷ ସଦୃଶ, ସେ ଜିତକ୍ଲମ ଦୃଢ଼ଧନ୍ୱା ଓ ପୃଥିବୀର ସମସ୍ତ ଧନୁର୍ଦ୍ଧର ମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ । ସେ ସମଗ୍ର ରଣାଙ୍ଗଣରେ କ୍ରୁଦ୍ଧ କୃତାନ୍ତ ସଦୃଶ ଓ ବେଗଗାମୀ ଅନିଳ ତୁଲ୍ୟ ବିଚରଣ କରନ୍ତି । ରଣସ୍ଥଳରେ ଯେ ଶର ବୃଷ୍ଟି କଲେ

ଧରଣୀ ନିପୀଡ଼ିତା ହୁଏ, ଯେଉଁ ସତ୍ୟପରାକ୍ରମ ବୀର ସଂଗ୍ରାମରେ କଦାଚ ବ୍ୟଥିତ ହୁଅନ୍ତ ନାହିଁ, ଯେ ଯଥା ନିୟମରେ ବେଦ ଅଧ୍ୟୟନ ପୂର୍ବକ ବ୍ରହ୍ମଚର୍ଯ୍ୟ ସମାପ୍ତ କରି ଧନୁର୍ବେଦରେ ଦଶରଥପୁତ୍ର ରାମଙ୍କ ତୁଲ୍ୟ ପାରଦର୍ଶୀ ଓ ମହୋଦଧି ତୁଲ୍ୟ ଅକ୍ଷୋଭଣୀୟ ହୋଇଅଛନ୍ତି, ସେହି ଅଶ୍ୱତ୍ଥାମା ଧାର୍ମିକଶ୍ରେଷ୍ଠ ଆଚାର୍ଯ୍ୟ ଦ୍ରୋଣ ଅଧର୍ମ ଦ୍ୱାରା ଧୃଷ୍ଟଦ୍ୟୁମ୍ନଙ୍କ କର୍ତ୍ତୃକ ବିନଷ୍ଟ ହୋଇ ଥିବାର ଶୁଣି କି କାର୍ଯ୍ୟ କଲେ ? ହେ ସଞ୍ଜୟ ! ବିଧାତା ଯେପରି ଧୃଷ୍ଟଦ୍ୟୁମ୍ନଙ୍କୁ ଦ୍ରୋଣଙ୍କର ମୃତ୍ୟୁ ସ୍ୱରୂପ ସୃଷ୍ଟି କରି ଅଛନ୍ତି, ସେହିପରି ଅଶ୍ୱତ୍ଥାମାଙ୍କୁ ମଧ୍ୟ ଧୃଷ୍ଟଦ୍ୟୁମ୍ନଙ୍କ ମୃତ୍ୟୁ ସ୍ୱରୂପ ସୃଷ୍ଟି କରି ଅଛନ୍ତି । ୧୪ । ଅତଏବ ସେହି କ୍ରୂର ଅଦୀର୍ଘଦର୍ଶୀ ପାପାତ୍ମା ନୃଶଂସ ଧୃଷ୍ଟଦ୍ୟୁମ୍ନ ପିତା ଦ୍ରୋଣଙ୍କୁ ବିନାଶ କରିଥିବାର ଶୁଣି ଅଶ୍ୱତ୍ଥମା କଅଣ କହିଲେ ? ୧୫ ।

---

## ୧୯୫ ଅଧ୍ୟାୟ

ସଞ୍ଜୟ କହିଲେ—ହେ ମହାରାଜ ! ପାଣ୍ଡବମାନଙ୍କର କପଟତା-ଦ୍ୱାରା ପାପକର୍ମା ଧୃଷ୍ଟଦ୍ୟୁମ୍ନଙ୍କ କର୍ତ୍ତୃକ ନିଜ ପିତା ନିହତ ହୋଇଥିବାର ଶୁଣି ଅଶ୍ୱତ୍ଥାମା କ୍ରୋଧରେ ପରିପୂରିତ ହେଲେ, ତାହାଙ୍କ ଲୋଚନଦ୍ୱୟ ବାଷ୍ପରେ ପରିପୂର୍ଣ୍ଣ ହେଲା । ୧ । ସେହି ସମୟରେ କୁପିତ ଅଶ୍ୱତ୍ଥାମାଙ୍କର କଳେବର ଯୁଗାନ୍ତକାଳୀନ ପ୍ରାଣିସଂହାରାଭିଳାଷୀ କ୍ରୁଦ୍ଧ କୃତାନ୍ତସଦୃଶ ପ୍ରତୀତ ହେଲା । ୨ । ଅନନ୍ତର ସେ ତୋୟପୂର୍ଣ୍ଣ ନେତ୍ରଦ୍ୱୟକୁ ପୁନଃପୁନଃ ପରିମାର୍ଜିତ କରି କୋପରେ ନିଃଶ୍ୱାସ ପରିତ୍ୟାଗପୂର୍ବକ ଦୁର୍ଯ୍ୟୋଧନଙ୍କୁ କହିଲେ, ହେ ମହାରାଜ ! ନୀଚପ୍ରକୃତିକ ଲୋକେ ଯେପରି ପିତାଙ୍କୁ ଅସ୍ତ୍ର ପରିତ୍ୟାଗ କରାଇ ନିପାତିତ କରିଅଛନ୍ତି ଓ ଧର୍ମଧ୍ୱଜୀ ଯୁଧିଷ୍ଠିର ଯେପରି ପାପାଚରଣ କରି ଅଛନ୍ତି, ସେ ସମସ୍ତ ବିଦିତ ହେଲୁଁ । ସେହି ଅନାର୍ଯ୍ୟ ନୃଶଂସ ଧର୍ମପୁତ୍ରର ସମସ୍ତ ବିବରଣ ଶ୍ରବଣ କଲୁଁ ।

ସମରରେ ପ୍ରବୃତ୍ତ ବ୍ୟକ୍ତିମାନଙ୍କର ଜୟ ଓ ପରାଜୟ ଅବଶ୍ୟ-ମ୍ଭାବୀ । ଏହା ସ୍ୱୟଂ ଉପସ୍ଥିତ ହୋଇଥାଏ । କିନ୍ତୁ ପରାଜୟ ଅପେକ୍ଷା ମୃତ୍ୟୁ

ପ୍ରଶଂସମୀୟ । ରଣକାଳରେ ରଣକାରୀ ପୁରୁଷଙ୍କର ନ୍ୟାୟାନୁସାରେ ମୃତ୍ୟୁ ହେଲେ ତହିଁରେ ଦୁଃଖ ହୁଏ ନାହିଁ । କାରଣ ପଣ୍ଡିତମାନେ ଯୁଦ୍ଧାର୍ଥିମାନଙ୍କର ତାଦୃଶ ମୃତ୍ୟୁ ନିର୍ଦ୍ଦେଶ କରି ଅଛନ୍ତି । ଆମ୍ଭ ପିତା ମଧ୍ୟ ନିଶ୍ଚୟ ବୀରଲୋକକୁ ଗମନ କରିଅଛନ୍ତି । ଅତଏବ ହେ ପୁରୁଷଶାର୍ଦ୍ଦୂଳ-ମହାରାଜ ! ଯେତେବେଳେ ସେ ତାଦୃଶ ମୃତ୍ୟୁ ଲାଭ କରି ଅଛନ୍ତି, ସେତେବେଳେ ତାହାଙ୍କ ନିମିତ୍ତ ଆଉ ଶୋକ କରିବା ଉଚିତ ହେଉନାହିଁ । କିନ୍ତୁ ସେ ନ୍ୟସ୍ତ-ଶସ୍ତ୍ର ହୋଇ ଈଶ୍ୱର ଚିନ୍ତାରେ ପ୍ରବୃତ୍ତ ହେବା ସମୟରେ ସର୍ବସୈନ୍ୟଙ୍କ ସମକ୍ଷରେ କେଶାକର୍ଷଣ ଦୁଃଖ ଅନୁଭବ କରି ଅଛନ୍ତି । ତହିଁରେ ଆମ୍ଭର ମର୍ମଚ୍ଛେଦ ହେଉଅଛି । ଆମ୍ଭେ ଜୀବିତ ଥାଉଁଥାଉଁ ଯେତେବେଳେ ସେ କେଶାକୃଷ୍ଟ ହେଲେ ତେତେବେଳେ ଅନ୍ୟ ଲୋକେ କାହିଁକି ପୁତ୍ର କାମନା କରିବେ ? ମନୁଷ୍ୟମାନେ କାମ, କ୍ରୋଧ, ଦର୍ପ, ପରିଭବ, ଅଜ୍ଞାନତା ବା ଚପଳତା ହେତୁ ଅଧର୍ମ୍ମକାର୍ଯ୍ୟ କରନ୍ତି । ଦୁରାତ୍ମା ନୃଶଂସ ଧୃଷ୍ଟଦ୍ୟୁମ୍ନ ମଧ୍ୟ ଆମ୍ଭଙ୍କୁ ଅବଜ୍ଞା କରି ଏହି ମହତ୍ ଅଧର୍ମ୍ମକାର୍ଯ୍ୟ କରିଅଛି । ଏଥିରେ ସନ୍ଦେହ ନାହିଁ । ଅତଏବ ସେ ଅଳ୍ପକାଳ ମଧ୍ୟରେ ଏହାର ସୁଦାରୁଣ ଫଳ ପ୍ରାପ୍ତ ହେବ । ୧୨ ।

ସେହି ମିଥ୍ୟାବାଦୀ ଧର୍ମ୍ମପୁତ୍ର ଯୁଧିଷ୍ଠିର ଅତିଶୟ ଅସତ୍ କାର୍ଯ୍ୟ କରିଅଛି । ପୃଥିବୀ ଅଦ୍ୟ ନିଶ୍ଚୟ ତାହାର ଶୋଣିତ ପାନ କରିବ । ହେ ମହାରାଜ ! ଆମ୍ଭେ ପ୍ରତିଜ୍ଞା କରୁଅଛୁଁ ଯେ, ଯଦି ସମସ୍ତ ପାଞ୍ଚାଳ-ମାନଙ୍କୁ ବିନାଶ ନ କରି ଜୀବନଧାରଣ କରୁଁ, ତାହାହେଲେ ଆମ୍ଭେ ସତ୍ୟ ଓ ଇଷ୍ଟା ପୂର୍ତ୍ତିରୁ ଭ୍ରଷ୍ଟ ହେବୁଁ । ପାଞ୍ଚାଳମାନଙ୍କର ବଧ ନିମିତ୍ତ ଯଥାସାଧ୍ୟ ଯତ୍ନ କରିବୁଁ । ବିଶେଷତଃ ପାପକାରୀ ଧୃଷ୍ଟଦ୍ୟୁମ୍ନକୁ ଆମ୍ଭେ ନିଶ୍ଚୟ ସମରରେ ସଂହାର କରିବୁଁ । ହେ କୁରୁରାଜ ! ମୃଦୁତା ଦ୍ୱାରା ହେଉ, ବା ଦାରୁଣ କର୍ମ୍ମଦ୍ୱାରା ହେଉ, ଯେ କୌଣସି ଉପାୟରେ ଆମ୍ଭେ ପାଞ୍ଚାଳ-ମାନଙ୍କୁ ସଂହାର କରି ଶାନ୍ତି ଲାଭ କରିବୁଁ । ହେ ନରଶାର୍ଦ୍ଦୂଳ ! ମାନବ-ଗଣ ଇହଲୋକ ଓ ପରଲୋକରେ ମହାଭୟରୁ ପରିତ୍ରାଣ ପାଇବା ନିମିତ୍ତ ପୁତ୍ର କାମନା କରନ୍ତି । ଆମ୍ଭେ ସ୍ୱୟଂ ମେରୁ ସଦୃଶ ପୁତ୍ର ଓ ଶିଷ୍ୟ ଜୀବିତ ଥାଉଁ ଥାଉଁ ଆମ୍ଭର ପିତା ବନ୍ଧୁହୀନ ସଦୃଶ ଦୁରବସ୍ଥା ପ୍ରାପ୍ତ ହେଲେ । ଦ୍ରୋଣାଚାର୍ଯ୍ୟ ଯେତେବେଳେ ଆମ୍ଭଙ୍କୁ ପୁତ୍ର ପ୍ରାପ୍ତ ହୋଇ କେଶାକୃଷ୍ଟ

ହେଲେ ତେତେବେଳେ ଆମ୍ଭର ଦିବ୍ୟାସ୍ତ୍ର, ବାହୁବୀର୍ଯ୍ୟ ଓ ପରାକ୍ରମକୁ ଧିକ୍। ହେ ଭରତସତ୍ତମ ! ଆମ୍ଭେ ଅବଶ୍ୟ ସେହିପରି କାର୍ଯ୍ୟ କରିବୁଁ । ଯଦ୍ଦ୍ୱାରା ପରଲୋକଗତ ପିତାଙ୍କ ଋଣରୁ ମୁକ୍ତ ହୋଇ ପାରିବୁଁ । ଆର୍ଯ୍ୟ ବ୍ୟକ୍ତି-ମାନଙ୍କର ଆତ୍ମ ପ୍ରଶଂସା କରିବା କଦାଚ ଉଚିତ ନୁହେଁ। କିନ୍ତୁ ପିତୃବଧରେ ଅସହିଷ୍ଣୁ ହୋଇ ଅଦ୍ୟ ଆତ୍ମପୌରୁଷର ବର୍ଣ୍ଣନା କରିବୁଁ । ଅଦ୍ୟ ଜନାର୍ଦ୍ଦନ ସମବେତ ପାଣ୍ଡବଗଣ ଆମ୍ଭର ପରାକ୍ରମ ସନ୍ଦର୍ଶନ କରନ୍ତୁ । ୨୨ । ଆମ୍ଭେ ପ୍ରଳୟକର୍ତ୍ତା ସଦୃଶ୍ୟ ସର୍ବସୈନ୍ୟ ବିମର୍ଦ୍ଦନ କରି ବିଚରଣ କରିବୁଁ ।

ହେ ନରଶ୍ରେଷ୍ଠ ! ଅଦ୍ୟ ଆମ୍ଭେ ରଥାରୂଢ଼ ହୋଇ ସମରରେ ଅବସ୍ଥିତ ହେଲେ ସୁର, ଅସୁର, ଗନ୍ଧର୍ବ ବା ରାକ୍ଷସ କେହି ଆମ୍ଭଙ୍କୁ ପରାଜୟ କରି ପାରିବେ ନାହିଁ । ଏହି ଭୂମଣ୍ଡଳ ମଧ୍ୟରେ କୌଣସି ବ୍ୟକ୍ତି ଆମ୍ଭର ଓ ଅର୍ଜ୍ଜୁନଙ୍କ ତୁଲ୍ୟ ଅସ୍ତ୍ରଜ୍ଞ ନାହାନ୍ତି । ୨୪ । ଅଦ୍ୟ ଆମ୍ଭେ ପ୍ରଜ୍ଜଳିତ ମୟୂଖ-ରାଜି ମଧ୍ୟବର୍ତ୍ତୀ ଅଂଶୁମାନ ସଦୃଶ ତେଜଃସମ୍ପନ୍ନ ହୋଇ ସୈନ୍ୟମାନଙ୍କ ମଧ୍ୟରେ ଅବସ୍ଥାନ ପୂର୍ବକ ଦିବ୍ୟାସ୍ତ୍ରଜାଲ ବର୍ଷଣ କରିବୁଁ । ୨୫ । ଅଦ୍ୟ ମହାସମରରେ ଆମ୍ଭର ଶରାସନରୁ ନିରନ୍ତରନିର୍ଗତ ଶରସମୂହ ଅତ୍ତିବ୍ରତର ପରାକ୍ରମ ଦେଖାଇ ପାଣ୍ଡବମାନଙ୍କୁ ପ୍ରମଥିତ କରିବ । ୨୬ । ହେ ମହାରାଜ ! ଅଦ୍ୟ କୌରବପକ୍ଷୀୟମାନେ ମହୀୟ ସଲିଳଧାରାସଦୃଶ ଶରଧାରାଦ୍ୱାରା ଦିଗ୍‌ମାନଙ୍କୁ ସମାଚ୍ଛନ୍ନ ଅବଲୋକନ କରିବେ । ୨୭ । ଆମ୍ଭେ ଚତୁର୍ଦ୍ଦିଗରେ ଶରଜାଲ ବିକିରଣ କଲେ, ପ୍ରଚଣ୍ଡ ସମୀରଣ କର୍ତ୍ତୃକ ପାଦପ ସମୂହ ଭଗ୍ନ ହୋଇ ଭୀଷଣ ନିଃସ୍ୱନରେ ଭୂତଳରେ ପତିତ ହେଲା ପ୍ରାୟ ଶତ୍ରୁମାନେ ଭୟଙ୍କର ଚିତ୍କାର କରୁ କରୁ ନିପତିତ ହେବେ । ୨୮ । ହେ କୌରବ ! ପ୍ରୟୋଗ ଓ ଉପସଂହାର ସହିତ ଯେଉଁ ସବୁ ଅସ୍ତ୍ର ଆମ୍ଭଠାରେ ପ୍ରତିଷ୍ଠିତ ଅଛି, ତାହା ଅର୍ଜ୍ଜୁନ, ଜନାର୍ଦ୍ଦନ, ଭୀମସେନ, ନକୁଳ, ସହଦେବ, ରାଜା-ଯୁଧିଷ୍ଠିର, ସାତ୍ୟକି, ଶିଖଣ୍ଡୀ କିମ୍ବା ଦୁରାତ୍ମା ଧୃଷ୍ଟଦ୍ୟୁମ୍ନ କେହି ଅବଗତ ନାହାନ୍ତି । ୩୦ ।

ପୂର୍ବେ କୌଣସି ସମୟରେ ଭଗବାନ୍ ନାରାୟଣ ବ୍ରାହ୍ମଣ ରୂପ ଧାରଣ କରି ଆମ୍ଭ ପିତାଙ୍କ ନିକଟରେ ଉପସ୍ଥିତ ହେବାରୁ ପିତା ତାହାଙ୍କୁ ଯଥାବିଧି ପ୍ରଣାମ ପୂର୍ବକ ପୂଜା ପ୍ରଦାନ କରିଥିଲେ । ନାରାୟଣ ସେହି ପୂଜା

ପ୍ରତିଗ୍ରହ କରି ବରଦାନରେ ଉଦ୍ୟତ ହୁଅନ୍ତେ ପିତା ତାହାଙ୍କଠାରୁ ନାରାୟଣ ନାମକ ପରମାସ୍ତ୍ର ପ୍ରାର୍ଥନା କଲେ ।୩୨। ତେତେବେଳେ ଭଗବାନ୍ କହିଲେ, ହେ ଦ୍ରୋଣ ! ଏହି ଅସ୍ତ୍ର ପ୍ରଭାବରୁ ରଣସ୍ଥଳରେ ଅନ୍ୟ କୌଣସି ବ୍ୟକ୍ତି ତୁମ୍ଭ ସଦୃଶ ଯୋଦ୍ଧା ହେବେନାହିଁ । ୩୩ । କିନ୍ତୁ ସହସା କେବେହେଁ ଏହି ଅସ୍ତ୍ରକୁ ପ୍ରୟୋଗ କରିବ ନାହିଁ । କାରଣ ଏହା ଶତ୍ରୁକୁ ବଧ ନ କରି ପ୍ରତିନିବୃତ୍ତ ହୁଏ ନାହିଁ ।୩୪। ହେ ବ୍ରହ୍ମନ୍ ! ତୁମ୍ଭେ ଏପରି ଜ୍ଞାନ କର ନାହିଁ ଯେ, ଏହି ଅସ୍ତ୍ର କୌଣସି ପ୍ରାଣୀ ବିଶେଷକୁ ବିନାଶ କରି ପାରିବ ନାହିଁ । ଏହି ଅସ୍ତ୍ର ଅବଧ୍ୟ ପ୍ରାଣୀକୁ ମଧ୍ୟ ବିନାଶ କରିବାକୁ ସମର୍ଥ ହେବ । ଅତଏବ ସଙ୍କଟ ନ ପଡ଼ିଲେ ଏହାକୁ ପ୍ରୟୋଗ କରିବା କର୍ତ୍ତବ୍ୟ ନୁହେଁ । ୩୫ । ହେ ପରନ୍ତପ ! କଦାଚିତ୍ ଏହି ଅସ୍ତ୍ର ଯଦି ପ୍ରୟୋଗ କରାଯାଏ, ତେବେ ଏହାର ନିବାରଣର ଉପାୟ କେବଳ ରଥାଦି ବାହନ ଓ ଶସ୍ତ୍ର ସମୂହର ପରିତ୍ୟାଗ ଅଥବା ଶତ୍ରୁ ଯାଚମାନ ବା ଶରଣାଗତ ହେଲେ ଏହା ନିବୃତ୍ତ ହେବ । ଅନ୍ୟଥା କୌଣସି ଉପାୟରେ ଏହାକୁ ନିବାରଣ କରି ହେବ ନାହିଁ । ପରନ୍ତୁ ଯେତେବେଳେ ସର୍ବପ୍ରକାରେ ଶତ୍ରୁ କର୍ତ୍ତୃକ ନିପୀଡ଼ିତ ହେବ, ତେତେବେଳେ ଏହି ଅସ୍ତ୍ର ପ୍ରୟୋଗ କରିବ ମାତ୍ର ସେହି ଶତ୍ରୁ ଅବଧ୍ୟ ହେଲେ ମଧ୍ୟ ଏହା ତାହାକୁ ସଂହାର କରିବ । ୩୬ ।

ହେ ମହାରାଜ ! ଭଗବାନ୍ ନାରାୟଣ ଏହା କହି ସେହି ମହାସ୍ତ୍ର ପ୍ରଦାନ କରନ୍ତେ ପିତା ତାହା ଗ୍ରହଣ କଲେ । ତେତେବେଳେ ସେହି ସର୍ବଶକ୍ତିମାନ୍ ପ୍ରଭୁ ନାରାୟଣ ଆମ୍ଭଙ୍କୁ କହିଲେ, ହେ ଅଶ୍ୱତ୍ଥାମାନ୍ ! ତୁମ୍ଭେ ମଧ୍ୟ ଏହି ଅସ୍ତ୍ର ପ୍ରଭାବରେ ରଣସ୍ଥଳରେ ତେଜୋଦୀପ୍ତ ଅସଂଖ୍ୟ ଅସ୍ତ୍ର ବର୍ଷଣ କରିବାକୁ ସମର୍ଥ ହେବ । ସର୍ବଶକ୍ତିମାନ୍ ଭଗବାନ ଏପରି ଆଦେଶ ଦେଇ ପିତାଙ୍କୁ ଅସ୍ତ୍ର ପ୍ରଦାନ ପୂର୍ବକ ଆକାଶ ପଥରେ ଗମନ କଲେ । ପିତା ଏହିପରି ନାରାୟଣାସ୍ତ୍ର ପ୍ରାପ୍ତ ହୋଇ କିଛିଦିନ ପରେ ଆମ୍ଭଙ୍କୁ ତାହାର ଯଥାବିଧି ଉପଦେଶ ଦେଲେ । ହେ ମହାରାଜ ! ଶଚୀପତି ଇନ୍ଦ୍ର ଯେପରି ଦାନବମାନଙ୍କୁ ବିମର୍ଦ୍ଦନ କରିଥିଲେ, ସେହିପରି ଆମ୍ଭେ ମଧ୍ୟ ଅଦ୍ୟ ସେହି ଅସ୍ତ୍ର ପ୍ରଭାବରୁ ପାଣ୍ଡବ, ପାଞ୍ଚାଳ, ମତ୍ସ୍ୟ ଓ କେକୟମାନଙ୍କୁ ବିଦ୍ରାବିତ କରିବୁଁ । ହେ ମହାରାଜ ! ଅଦ୍ୟ ଆମ୍ଭେ ଯେଉଁ ଯେଉଁ ସ୍ଥାନରେ ଇଚ୍ଛାକରିବୁଁ ସେହି ସେହି ସ୍ଥାନରେ ଶତ୍ରୁମାନେ ନିହତ ହୋଇଥିଲେ ମଧ୍ୟ

ସେମାନଙ୍କ ଉପରେ ଘଣି ଘଣି ଶରଜାଲ ନିପତିତ ହେବ । ଏହି ସୁମହତ୍ ନାରାୟଣାସ୍ତ୍ର ପ୍ରଭାବରୁ ପାଣ୍ଡବମାନଙ୍କୁ ପରାଜିତ କରି ଅନବରତ ପ୍ରଚୁର ଶିଳାଖଣ୍ଡ ଅୟୋମୁଖ ଆକାଶଗାମୀ ବାଣ ଓ ନିଶିତ ପରଶ୍ୱଧାଦି-ଅସ୍ତ୍ର ସମୂହ ବର୍ଷଣ ପୂର୍ବକ ମହାରଥୀ ଶତ୍ରୁମାନଙ୍କୁ ବିଦ୍ରାବିତ ଓ ସଂହାର କରିବୁଁ ।୪୭। ମିତ୍ର ବ୍ରାହ୍ମଣ ଓ ଗୁରୁଦ୍ରୋହୀ ସର୍ବଲୋକନିନ୍ଦିତ କୁଟିଳସ୍ୱଭାବ ପାଞ୍ଚାଳକୁଳାପସଦ ଧୃଷ୍ଟଦ୍ୟୁମ୍ନ ଅଦ୍ୟ କଦାଚ ଆମ୍ଭ ନିକଟରୁ ଜୀବନ ଘେନି ପଳାଇ ଯାଇପାରିବ ନାହିଁ । ୪୫ ।

ହେ ମହାରାଜ ! ପଳାୟନପର କୌରବସେନା ଦ୍ରୋଣପୁତ୍ରଙ୍କର ଉକ୍ତ ବାକ୍ୟ ସମୂହ ଶ୍ରବଣ କରି ସମରାଭିମୁଖୀ ହେଲେ ଓ ପୁରୁଷଶ୍ରେଷ୍ଠ ସେନାଧ୍ୟକ୍ଷମାନେ ହୃଷ୍ଟଚିତ୍ତରେ ଶଙ୍ଖଧ୍ୱନି କଲେ । ତତ୍ପରେ ସହସ୍ର ସହସ୍ର ଭେରୀ ଓ ଡିଣ୍ଡିମ ପ୍ରଭୃତି ବିବିଧ ବାଦିତ୍ର ନିନାଦିତ ହେଲା । ଧରାତଳ ଖୁର ଓ ରଥଚକ୍ର ଦ୍ୱାରା ପ୍ରପୀଡ଼ିତ ହୋଇ ଏପରି ଶବ୍ଦ କଲା ଯେ, ସେହି ଭୁମୁଳ ଶବ୍ଦ ଦିଙ୍ମଣ୍ଡଳ, ନଭୋମଣ୍ଡଳ, ଓ ଭୂମଣ୍ଡଳ, ଏ ସମସ୍ତଙ୍କୁ ନିନାଦିତ କଲା । ପାଣ୍ଡବପକ୍ଷୀୟ ପ୍ରଧାନ ରଥୀମାନେ ଜଳଦନିନାଦସଦୃଶ ସେହି ଭୀଷଣ ନିଃସ୍ୱନ ଶ୍ରବଣ କରି ଏକତ୍ରିତ ହୋଇ ମନ୍ତ୍ରଣା କଲେ । ଆଚାର୍ଯ୍ୟପୁତ୍ର ଅଶ୍ୱତ୍ଥାମା ମଧ୍ୟ ଜଳସ୍ପର୍ଶ ପୂର୍ବକ ଶୁଚି ହୋଇ ନାରାୟଣ ନାମକ ସେହି ଦିବ୍ୟାସ୍ତ୍ର ପ୍ରାଦୁର୍ଭାବ କଲେ । ୫୦ ।

---

## ୧୯୭ ଅଧ୍ୟାୟ

ସଞ୍ଜୟ କହିଲେ—ହେ ମହାରାଜ ! ସେହି ନାରାୟଣାସ୍ତ୍ରର ପ୍ରାଦୁର୍ଭାବ ସମୟରେ ନଭୋମଣ୍ଡଳ ମେଘଶୂନ୍ୟ ଥିଲେହେଁ ଜଳବିନ୍ଦୁ-ସମନ୍ୱିତ ମହାଶବ୍ଦାୟମାନ ପ୍ରଭଞ୍ଜନ ପ୍ରବାହିତ ହେଲା । ପୃଥିବୀ ପ୍ରକମ୍ପିତ, ସାଗର ସଂକ୍ଷୁଭିତ, ନଦୀସମୂହ ବିପରୀତ ଦିଗରେ ପ୍ରବାହିତ, ଗିରିଶୃଙ୍ଗସମୂହ ବିଶୀର୍ଣ୍ଣ ହେଲା । ମୃଗମାନେ ପାଣ୍ଡବପକ୍ଷୀୟ ସୈନ୍ୟମାନଙ୍କୁ ଦକ୍ଷିଣ ଦିଗସ୍ଥ କରିବାରେ ପ୍ରବୃତ୍ତ ହେଲେ । ୩ । କ୍ରମେ ପ୍ରଭାକର ହୀନପ୍ରଭ ଓ ଦିକ୍‌ସମୂହ ତମସାଚ୍ଛନ୍ନ ହେଲା । ଏହି ସମୟରେ ନଭୋମଣ୍ଡଳରୁ ପ୍ରହୃଷ୍ଟଚିତ୍ତ ମାଂସାଶୀ

ପ୍ରାଣିଗଣ ମହାକୋଳାହଳରେ ନିପତିତ ହେଲେ । ୪ । ସେହି ଭୟଙ୍କର ବ୍ୟାପାର ଅବଲୋକନ କରି ଦେବ, ଦାନବ ଓ ଗନ୍ଧର୍ବମାନେ ସନ୍ତ୍ରସ୍ତ ହେଲେ । 'କଅଣ କରିବା' 'କଅଣ କରିବା' ଏହିପରି କଥୋପକଥନ ଶ୍ରୁତିଗୋଚର ହେଲା । ସମସ୍ତ ମହୀପତିମାନେ ଦ୍ରୋଣ-ପୁତ୍ରଙ୍କର ସେହି ଘୋର-ରୂପ ଭୟାବହ ଅସ୍ତ୍ରକୁ ଅବଲୋକନ କରି ଅତ୍ୟନ୍ତ ବ୍ୟଥିତ ଓ ଭୀତ ହେଲେ ।

ଧୃତରାଷ୍ଟ୍ର କହିଲେ—ହେ ସଞ୍ଜୟ ! ପିତୃବଧ-କ୍ରୋଧୀ ଶୋକ-ସନ୍ତପ୍ତ ଅଶ୍ୱତ୍ଥାମା ମତ୍ପକ୍ଷୀୟ ସୈନ୍ୟମାନଙ୍କୁ ସମରାଭିମୁଖୀ କରନ୍ତେ, କୌରବମାନଙ୍କୁ ପୁନର୍ବାର ବେଗରେ ଆଗମନ କରିବାର ଦେଖି ଧୃଷ୍ଟଦ୍ୟୁମ୍ନଙ୍କ ରକ୍ଷା ବିଷୟରେ ପାଣ୍ଡବମାନେ ଯେପରି ମନ୍ତ୍ରଣା କରିଥିଲେ, ସେ ସମସ୍ତ ଆମ୍ଭ ନିକଟରେ କୀର୍ତ୍ତନ କର । ୮ ।

ସଞ୍ଜୟ କହିଲେ—ହେ ମହାରାଜ ! ରାଜା ଯୁଧିଷ୍ଠିର କୌରବ-ମାନଙ୍କୁ ପ୍ରଥମେ ପଳାୟନ କରିବାର ଅବଲୋକନ କରିଥିଲେ । ପୁନର୍ବାର ସେମାନଙ୍କର ତୁମୁଳ ଗର୍ଜନନାଦ ଶ୍ରବଣ କରି ଅର୍ଜୁନଙ୍କୁ କହିଲେ, ହେ ଧନଞ୍ଜୟ ! ପୂର୍ବେ ବଜ୍ରପାଣି ପୁରନ୍ଦର ଯେପରି ମହାସୁର ବୃତ୍ରକୁ ବିନାଶ କରିଥିଲେ, ସେହିପରି ଧୃଷ୍ଟଦ୍ୟୁମ୍ନ ଦ୍ରୋଣାଚାର୍ଯ୍ୟଙ୍କୁ ନିହତ କରନ୍ତେ କାତରଭାବାପନ୍ନ କୌରବଗଣ ଆତ୍ମପରିତ୍ରାଣାର୍ଥୀ ହୋଇ ଓ ଜୟ ବିଷୟରେ ନିରାଶ ହୋଇ ରଣସ୍ଥଳରୁ ପଳାୟନ କରିଥିଲେ । ଯେଉଁ ସମସ୍ତ ରଥର ଧ୍ୱଜ, ଛତ୍ର, ପତାକା ଓ କୁବର ବିଶୀର୍ଣ୍ଣ ହୋଇଥିଲା, ପୃଷ୍ଠରକ୍ଷକ ଓ ସାରଥି ନିହତ ହୋଇଥିଲେ, ଅଶ୍ୱସବୁ ବିକଳ ହୋଇଥିଲେ ; ନୀଡ଼, ଅକ୍ଷ, ଚକ୍ର ଓ ଯୁଗକାଷ୍ଠ ଭଗ୍ନ ହୋଇଥିଲା, ସେହି ସମସ୍ତ ଇତସ୍ତତଃ ଭ୍ରାମ୍ୟମାଣ ରଥରେ ଆରୂଢ଼ ହୋଇ ବହୁ ରାଜଗଣ ଚତୁକାଳରେ ସ୍ଥାନାନ୍ତରିତ ହୋଇ-ଥିଲେ । କୌଣସି କୌଣସି ରଥୀ ବିଶୀର୍ଣ୍ଣ ରଥ ପରିତ୍ୟାଗ କରି ପଦ-ବ୍ରଜରେ ପଳାୟନ କରିଥିଲେ । କେଉଁ କେଉଁ ରଥୀ ଭୀତ ହୋଇ ସ୍ୱୟଂ ପଦାଘାତରେ ଅଶ୍ୱସଞ୍ଚାଳନ କରି ପଳାୟନ କରିଥିଲେ । ୧୪ । ଅଶ୍ୱା-ରୋହୀମାନେ ଅର୍ଦ୍ଧସ୍ଖଳିତାସନ ହୋଇ ମଧ୍ୟ ସେହି ଅବସ୍ଥାରେ ଧାବମାନ ହେଉଥିଲେ । କୌଣସି କୌଣସି ବୀର ଅସ୍ମତ୍ପକ୍ଷୀୟ ନାରାଚ ଦ୍ୱାରା ଆସନ-

ଭ୍ରଷ୍ଟ ହେବାରୁ ଗଜସ୍କନ୍ଧରେ ଗ୍ରଥିତ ହୋଇ ଶରପୀଡ଼ିତ ଓ ପଳାୟନପର ସେହି ମାତଙ୍ଗମାନଙ୍କ କର୍ତ୍ତୃକ ଦିକ୍‌ଦିଗନ୍ତରକୁ ନୀତ ହୋଇଥିଲେ । ସେହି ସମୟରେ ଶସ୍ତ୍ର ଓ କବଚବିହୀନ ଅନେକ ବୀରମାନେ ବାହନ ଉପରୁ ଭୂତଳରେ ପତିତ ହୋଇ ରଥଚକ୍ରଦ୍ୱାରା ଛିନ୍ନ ଓ ଅଶ୍ୱ ଗଜର ପଦଦ୍ୱାରା ବିମର୍ଦ୍ଦିତ ହୋଇଥିଲେ । ଅନେକ ଯୋଦ୍ଧା ମୋହାଭିଭୂତ ହୋଇ ପରସ୍ପର ପରସ୍ପରକୁ ଅବଗତ ହୋଇ ନ ପାରି ହେ ପିତଃ ! ହେ ପୁତ୍ର ! ଏହା କହି ଭୟରେ ଚିତ୍କାରସହ ପଳାୟନ କରିଥିଲେ । କେହି କେହି ପିତା, ପୁତ୍ର, ଭ୍ରାତା ଓ ସଖା ପ୍ରଭୃତିଙ୍କୁ ସ୍ଥାନାନ୍ତରିତ କରି ସେମାନଙ୍କ ଶରୀରରୁ କବଚ ବିମୋଚନ ପୂର୍ବକ ଜଳସେଚନ କରିଥିଲେ ।

ହେ ଧନଞ୍ଜୟ ! ଦ୍ରୋଣ ନିହତ ହୁଅନ୍ତେ କୌରବ ସୈନ୍ୟମାନେ ତାଦୃଶ ଅବସ୍ଥା ପ୍ରାପ୍ତ ହୋଇ କି ନିମିତ୍ତ ପୁନରାବର୍ତ୍ତିତ ହେଲେ ? ତୁମ୍ଭେ ଯଦି ଏ ବିଷୟ ଅବଗତ ହୋଇଥାଅ ତେବେ ତାହା କୀର୍ତ୍ତନ କର । ଦେଖ, ତୁରଙ୍ଗମାନଙ୍କର ହ୍ରେଷାରବ ଓ ମାତଙ୍ଗମାନଙ୍କର ବୃଂହିତଧ୍ୱନି ରଥ-ନିର୍ଘୋଷସହ ମିଳିତ ହୋଇ ମହାନ୍ ଶବ୍ଦ ଶ୍ରୁତିଗୋଚର ହେଉଅଛି । କୌରବସୈନ୍ୟସାଗରସମୁତ୍‌ଥିତ ଏହି କଠୋର ନିନାଦ ବାରମ୍ବାର ଉତ୍‌ଥିତ ହୋଇ ଅସ୍ମତ୍‌ପକ୍ଷୀୟମାନଙ୍କୁ ପ୍ରକମ୍ପିତ କରୁଅଛି । ବର୍ତ୍ତମାନ ଯେପରି ତୁମୁଳ ଲୋମହର୍ଷଣ ଶବ୍ଦ ଶ୍ରୁତିଗୋଚର ହେଉଅଛି, ବୋଧହୁଏ, ତାହା ଇନ୍ଦ୍ରାଦି ଦିଗପାଳସହ ତ୍ରୈଲୋକ୍ୟକୁ ଧ୍ୱଂସ କରିପାରେ । ଏଥିରେ ସନ୍ଦେହ ନାହିଁ, ଅଥବା ଏହି ଭୟଙ୍କର ନିନାଦ ବଜ୍ରଧର ଇନ୍ଦ୍ରଙ୍କର ହୋଇଥିବ । ୨୩ । ଦ୍ରୋଣାଚାର୍ଯ୍ୟ ନିହତ ହେବାରୁ କୌରବମାନଙ୍କର ହିତାର୍ଥ ନିଶ୍ଚୟ ଦେବରାଜ ଆଗମନ କରୁଅଛନ୍ତି । ହେ ଅର୍ଜ୍ଜୁନ ! ଆମ୍ଭ-ମାନଙ୍କର ପ୍ରଧାନ ପ୍ରଧାନ ରଥୀମାନେ ଏହି ଭୀଷଣ ନିଃସ୍ୱନ ଶ୍ରବଣ କରି ଉଦ୍‌ବିଗ୍ନ ଓ ରୋମାଞ୍ଚିତକଳେବର ହୋଇ ଅଛନ୍ତି । ବିଶେଷ ଇନ୍ଦ୍ର ତୁଲ୍ୟ କେଉଁ ମହାରଥୀ ଏହି ପଳାୟନପର କୌରବମାନଙ୍କୁ ବ୍ୟବସ୍ଥାପିତ କରି ସଂଗ୍ରାମାଭିମୁଖୀ କରୁଅଛନ୍ତି ?

ଯୁଧିଷ୍ଠିରଙ୍କର ଏହି ସମସ୍ତ ବାକ୍ୟ ଶ୍ରବଣ କରି ଅର୍ଜ୍ଜୁନ କହିଲେ, ହେ ମହାରାଜ ! ନ୍ୟସ୍ତଶସ୍ତ୍ର ଗୁରୁ ଦ୍ରୋଣ ନିହତ ହୁଅନ୍ତେ ଛିନ୍ନଭିନ୍ନ

କୌରବମାନଙ୍କୁ କେଉଁ ବୀର ବ୍ୟବସ୍ଥାପିତ କରି ସିଂହନାଦ କରୁଅଛନ୍ତି ବୋଲି ଆପଣଙ୍କର ଏହି ଯେଉଁ ସଂଶୟ ଉପସ୍ଥିତ ହୋଇଅଛି ଓ ଯାହାଙ୍କର ପରାକ୍ରମ ଅବଲମ୍ବନ ପୂର୍ବକ କୌରବଗଣ ଉଗ୍ରତର କାର୍ଯ୍ୟରେ ଉଦ୍ୟତ ହୋଇ ପରାକ୍ରମସହ ଶଙ୍ଖ ଧ୍ୱନି କରୁଅଛନ୍ତି, ଆମ୍ଭେ ସେହି ମତ୍ତମାତଙ୍ଗଗାମୀ କୁରୁକୁଳର ଅଭୟପ୍ରଦ ଉଗ୍ରକର୍ମା ଶ୍ରୀମାନ୍ ମହାବାହୁ ବୀରଙ୍କର ବିଷୟ କୀର୍ତ୍ତନ କରୁଅଛୁ, ଶ୍ରବଣ କରନ୍ତୁ ।

ଯାହାଙ୍କର ଜନ୍ମକାଳରେ ଦ୍ରୋଣାଚାର୍ଯ୍ୟ ମହାମାନ୍ୟ ବ୍ରାହ୍ମଣମାନଙ୍କୁ ଏକ ସହସ୍ର ଗୋ ଦାନ କରିଥିଲେ, ଏ ସେହି ଅଶ୍ୱତ୍ଥାମା ଗର୍ଜ୍ଜନ କରୁ ଅଛନ୍ତି । ଯେଉଁ ବୀର ଜାତହେବା ମାତ୍ରେ ଉଚ୍ଚୈଃଶ୍ରବା ଅଶ୍ୱସଦୃଶ ଚିତ୍କାର କରିବାରୁ ତ୍ରୈଲୋକ୍ୟ ପ୍ରକମ୍ପିତ ହୋଇଥିଲା ଓ ସେହି ଶବ୍ଦ ଶ୍ରବଣ କରି କୌଣସି ଅରକ୍ଷିତ ପ୍ରାଣୀ ସେହି ସମୟରେ ତାହାଙ୍କର ନାମ ଅଶ୍ୱତ୍ଥାମା ଦେଇଥିଲେ, ଅଦ୍ୟ ସେହି ଶୂର, ଅଶ୍ୱତ୍ଥାମା ସମରରେ ସିଂହନାଦ କରୁଅଛନ୍ତି । ପୃଷତନନ୍ଦନ ଧୃଷ୍ଟଦ୍ୟୁମ୍ନ ଯାହାଙ୍କୁ ଅନାଥ ସଦୃଶ ଆକ୍ରମଣ କରି ଅତିଶୟ ନୃଶଂସ କାର୍ଯ୍ୟାନୁଷ୍ଠାନ ପୂର୍ବକ ନିହତ କରି ଅଛନ୍ତି, ବର୍ତ୍ତମାନ ତାହାଙ୍କର ନାଥସ୍ୱରୂପ ଅଶ୍ୱତ୍ଥାମା ସମରରେ ଉପସ୍ଥିତ ହୋଇ ଅଛନ୍ତି । ପାଞ୍ଚାଳନନ୍ଦନ ଯେତେବେଳେ ଆମ୍ଭ ଗୁରୁଙ୍କର କେଶ ଗ୍ରହଣ ପୂର୍ବକ ଧର୍ଷଣ କରି ଅଛନ୍ତି, ତେତେବେଳେ ନିଜର ପୌରୁଷାଭିଜ୍ଞ ଅଶ୍ୱତ୍ଥାମା କଦାଚ ତାହା କ୍ଷମା କରିବେ ନାହିଁ । ହେ ମହାରାଜ ! ଆପଣ ଧର୍ମ୍ମଜ୍ଞ ହୋଇ ରାଜ୍ୟ ନିମିତ୍ତ ଯେ ଗୁରୁଙ୍କଠାରେ ମିଥ୍ୟା ପ୍ରୟୋଗ କଲେ, ଏହାଦ୍ୱାରା ଆପଣ ଘୋରତର ଅଧର୍ମ୍ମରେ ପତିତ ହେଲେ । କପଟତା ଦ୍ୱାରା ଦ୍ରୋଣାଚାର୍ଯ୍ୟଙ୍କୁ ନିପାତିତ କରିବାରୁ ରାମଚନ୍ଦ୍ରଙ୍କର ବାଲିବଧ ସଦୃଶ ତ୍ରିଲୋକ ମଧ୍ୟରେ ଏହି ଅକୀର୍ତ୍ତି ଚିରସ୍ଥାୟିନୀ ହେବ । ଯେ ହେତୁ "ଯୁଧିଷ୍ଠିର ସର୍ବଧର୍ମ୍ମଜ୍ଞ ଓ ଆମ୍ଭର ଶିଷ୍ୟ । ଏ କଦାଚ ଆମ୍ଭଠାରେ ମିଥ୍ୟା କହିବେ ନାହିଁ ।" ଆଚାର୍ଯ୍ୟ ଏହିପରି ମନେକରି ଆପଣଙ୍କଠାରେ ବିଶ୍ୱାସ କରିଥିଲେ । କିନ୍ତୁ ଆପଣ "କୁଞ୍ଜର ହତ ହୋଇଅଛି", ଈଦୃଶ ସତ୍ୟ କଞ୍ଚୁକ ମିଥ୍ୟା ଗୁରୁଙ୍କ ନିକଟରେ ପ୍ରକାଶ କଲେ । ହେ ମହାରାଜ ! ଆଚାର୍ଯ୍ୟ ସର୍ବଶତ୍ରୁ ବିନାଶକ୍ଷମ ହୋଇ ମଧ୍ୟ ଆପଣଙ୍କ ବାକ୍ୟ ଶ୍ରବଣ କରି ଶସ୍ତ୍ର ପରିତ୍ୟାଗ ପୂର୍ବକ ସଂଯତେନ୍ଦ୍ରିୟ ହୋଇ ନିର୍ମ୍ମମ ଓ ଅଚୈତନ୍ୟପ୍ରାପ୍ତ ଅବସ୍ଥାନ କରିଥିଲେ ।

ତାହା ଆପଣ ମଧ୍ୟ ପ୍ରତ୍ୟକ୍ଷ କରିଅଛନ୍ତି । ଆପଣ ତାହାଙ୍କର ଶିଷ୍ୟ ହୋଇ ମଧ୍ୟ ସନାତନ ଧର୍ମ୍ମ ପରିତ୍ୟାଗ ପୂର୍ବକ ପୁତ୍ରବତ୍ସଳ ଶୋକାବିଷ୍ଟ ସମରପରାଙ୍ମୁଖ ଗୁରୁଙ୍କୁ ନିପାତିତ କଲେ । ଆପଣ ଅଧର୍ମ୍ମ ଦ୍ୱାରା ନ୍ୟସ୍ତ-ଶସ୍ତ୍ର ଗୁରୁଙ୍କୁ ବିନାଶ କରିଅଛନ୍ତି । ବର୍ତ୍ତମାନ ଯଦି ସାମର୍ଥ୍ୟ ଥାଏ ତେବେ ଅମାତ୍ୟଗଣରେ ପରିବୃତ ହୋଇ ଧୃଷ୍ଟଦ୍ୟୁମ୍ନଙ୍କୁ ରକ୍ଷା କରନ୍ତୁ । ଅଦ୍ୟ ଆମ୍ଭେମାନେ ସମସ୍ତେ ଏକତ୍ରିତ ହୋଇ ମଧ୍ୟ ପିତୃ-ବଧାମର୍ଷୀ ଆଚାର୍ଯ୍ୟ-ପୁତ୍ରଙ୍କ ଗ୍ରାସରୁ ପାଞ୍ଚାଳନନ୍ଦନଙ୍କୁ ରକ୍ଷା କରିପାରିବୁ ନାହିଁ । ଯେ ସର୍ବ-ପ୍ରାଣୀଙ୍କଠାରେ ସୌହାର୍ଦ୍ଦ୍ୟ ପ୍ରକାଶ କରନ୍ତି, ସେହି ଅତିମାନୁଷ-ବିକ୍ରମ ଅଶ୍ୱତ୍ଥାମା ପିତାଙ୍କର କେଶାକର୍ଷଣ ବିଷୟ ଶ୍ରବଣ କରି ରଣାଙ୍ଗନରେ ଅଦ୍ୟ ଆମ୍ଭ ସମସ୍ତଙ୍କୁ ଦଗ୍ଧ କରିବେ । ୪୨ । ଆଚାର୍ଯ୍ୟଙ୍କ ଜୀବନ ରକ୍ଷା ନିମିତ୍ତ ଆମ୍ଭେ ପୁନଃ ପୁନଃ ଚିତ୍କାର କଲେହେଁ ଧୃଷ୍ଟଦ୍ୟୁମ୍ନ ଧର୍ମ୍ମପରିତ୍ୟାଗୀ ଶିଷ୍ୟ ହୋଇ ଗୁରୁଙ୍କୁ ସଂହାର କଲେ । ୪୩ । ଆମ୍ଭମାନଙ୍କର ଆୟୁର ଅଧିକାଂଶ ସମୟ ଗତ ହୋଇଅଛି । ବର୍ତ୍ତମାନ ଅଳ୍ପମାତ୍ର ଅବଶିଷ୍ଟ ଥିବାରୁ ସେହି ବୟୋଧର୍ମ୍ମ ଜନିତ ବିକାର ଉପସ୍ଥିତ ହୋଇଅଛି । ଏଣୁ ଆମ୍ଭମାନ-ଙ୍କର ମହାନ୍ ଅଧର୍ମ୍ମ ହୋଇଅଛି ।

ହେ ମହାରାଜ ! ଯେ ସର୍ବଦା ସୌହାର୍ଦ୍ଦ୍ୟ ଧର୍ମ୍ମ ହେତୁ ଆମ୍ଭ-ମାନଙ୍କର ପିତା ସଦୃଶ ଥିଲେ, ସେହି ଗୁରୁଙ୍କୁ ଅଳ୍ପକାଳ ସ୍ଥାୟୀ ରାଜ୍ୟ ନିମିତ୍ତ ଆପଣ ନିପାତିତ କଲେ । ୪୫ । କୁରୁରାଜ ଧୃତରାଷ୍ଟ୍ର ସ୍ୱୀୟ ପୁତ୍ରମାନଙ୍କ ସହିତ ଏହି ସମଗ୍ରାବସୁନ୍ଧରାକୁ ଖିଷ୍ଟ, ଦ୍ରୋଣଙ୍କଠାରେ ସମର୍ପଣ କରିଥିଲେ । ୪୬ । ଗୁରୁ ତାଦୃଶ ବୃତ୍ତି ଲାଭ କରି ଓ କୌରବଗଣଙ୍କ କର୍ତ୍ତୃକ ସତତ ସତ୍କୃତ ହୋଇ ମଧ୍ୟ ସ୍ୱୀୟ ପୁତ୍ର ଅପେକ୍ଷା ଆମ୍ଭଙ୍କୁ ଅଧିକତର ସ୍ନେହ କରୁଥିଲେ । ୪୭ । ହେ ମହାରାଜ ! ଆଚାର୍ଯ୍ୟ କେବଳ ଆପଣଙ୍କୁ ଓ ଆମ୍ଭଙ୍କୁ ଅବଲୋକନ କରି ଅସ୍ତ୍ରତ୍ୟାଗ ପୂର୍ବକ ନିହତ ହୋଇ ଅଛନ୍ତି । ନଚେତ୍ ସେ ଯୁଦ୍ଧ କରିଥିଲେ ଦେବରାଜ ମଧ୍ୟ ତାହାଙ୍କୁ ବିନାଶ କରି ପାରି ନ ଥାନ୍ତେ । ୪୮ । ଆମ୍ଭେମାନେ ଅତି ନିର୍ବୋଧ, ଯେହେତୁ ରାଜ୍ୟନିମିତ୍ତ ତାଦୃଶ ନିତ୍ୟୋପକାରୀ ବୃଦ୍ଧ ଆଚାର୍ଯ୍ୟଙ୍କଠାରେ ଆମ୍ଭେମାନେ ଅନ୍ୟାୟ ପୂର୍ବକ ବିଦ୍ରୋହାଚରଣ କଲୁଁ । ୪୯ ।

ହା ! ଆମ୍ଭେମାନେ ରାଜ୍ୟ-ସୁଖ ଲୋଭ ହେତୁରୁ ଯେତେବେଳେ ଆଚାର୍ଯ୍ୟଙ୍କୁ ନିପାତିତ କରିଅଛୁଁ, ତେତେବେଳେ ଅତି ନିଦାରୁଣ ପାପ କରିଅଛୁଁ । ଏଥିରେ ସନ୍ଦେହ ନାହିଁ ।୫୦। ଗୁରୁ ନିଶ୍ଚୟ ଜାଣିଥିଲେ ଯେ, ବାସବପୁତ୍ର ଧନଞ୍ଜୟ ଆମ୍ଭର ସୌହାର୍ଦ୍ଦ୍ୟ ଅନୁରୋଧରେ ପିତା, ପୁତ୍ର, ଭ୍ରାତା, ଦାରା, ଜୀବନ ଏ ସମସ୍ତଙ୍କୁ ମଧ୍ୟ ପରିତ୍ୟାଗ କରିପାରେ । ୫୧ । ମାତ୍ର ରାଜ୍ୟ ଲୋଭରେ ଆମ୍ଭେ ସେହି ମହାତ୍ମାଙ୍କର ନିଧନ ସମୟରେ ଉପେକ୍ଷା କଲୁଁ । ଅତଏବ ନିଶ୍ଚୟ ଆମ୍ଭଙ୍କୁ ପରଲୋକରେ ଅବାକ୍ଶିର ହୋଇ ନରକ ଭୋଗ କରିବାକୁ ହେବ । ୫୨ । ଅଦ୍ୟ ଯେତେବେଳେ ଆମ୍ଭେମାନେ ମୌନବ୍ରତାବଲମ୍ବୀ ନ୍ୟସ୍ତାସ୍ତ୍ର ବୃଦ୍ଧବ୍ରାହ୍ମଣ ଆଚାର୍ଯ୍ୟଙ୍କୁ ରାଜ୍ୟ ନିମିତ୍ତ ନିହତ କରିଅଛୁଁ, ତେତେବେଳେ ଆମ୍ଭମାନଙ୍କ ଜୀବନରେ କିଛି ପ୍ରୟୋଜନ ନାହିଁ । ମରଣ ଆମ୍ଭମାନଙ୍କ ପକ୍ଷରେ ଶ୍ରେୟସ୍କର ଅଟେ । ୫୩ ।

---

## ୧୯୭ ଅଧ୍ୟାୟ

ସଞ୍ଜୟ କହିଲେ, ମହାରାଜ ! ଅର୍ଜ୍ଜୁନଙ୍କ ବାକ୍ୟ ଶ୍ରବଣକରି ମହାରଥୀମାନେ ପ୍ରିୟ ବା ଅପ୍ରିୟ କିଛି ପ୍ରତ୍ୟୁତ୍ତର କଲେ ନାହିଁ । ପରନ୍ତୁ ଭୀମସେନ କ୍ରୋଧାବିଷ୍ଟ ହୋଇ ଅର୍ଜ୍ଜୁନଙ୍କୁ ନିନ୍ଦା କରି କହିଲେ, ହେ ଅର୍ଜ୍ଜୁନ ! କାନନବାସୀ ମୁନି ଓ ଜିତେନ୍ଦ୍ରିୟ ସଂଶିତବ୍ରତ ବ୍ରାହ୍ମଣ ଯେପରି ଧର୍ମ୍ମ ସମ୍ବନ୍ଧୀୟ ଉପଦେଶ କରନ୍ତି, ଆମ୍ଭେ ଦେଖୁଅଛୁଁ ଯେ ତୁମ୍ଭେ ମଧ୍ୟ ସେହିପରି ଉପଦେଶ କରୁଅଛ । ୩ । ଯେଉଁ କ୍ଷତ୍ରିୟ ସ୍ତ୍ରୀ ଓ ସାଧୁ ଲୋକଙ୍କୁ କ୍ଷମା କରନ୍ତି ; କ୍ଷତରୁ ଆପଣାକୁ ଓ ଅନ୍ୟକୁ ତ୍ରାଣ କରିବାକୁ ସମର୍ଥ, ସେହି କ୍ଷତ୍ରିୟ ଅବିଳମ୍ବେ କ୍ଷିତି, ଧର୍ମ୍ମ, ଯଶ ଓ ଶ୍ରୀ ଲାଭ କରି ପାରନ୍ତି । ତୁମ୍ଭେ ସେହି ସମସ୍ତ କ୍ଷତ୍ରିୟମାନଙ୍କର ଗୁଣସମନ୍ବିତ ଓ କୁଳୋଦ୍‌ବହ । କିନ୍ତୁ ଅଦ୍ୟ ମୂର୍ଖସଦୃଶ ବାକ୍ୟ ପ୍ରୟୋଗ କରିବା ତୁମ୍ଭର କର୍ତ୍ତବ୍ୟ ନୁହେ । ୫ । ହେ ପାର୍ଥ ! ତୁମ୍ଭେ ପରାକ୍ରମରେ ଶଚୀପତି ଇନ୍ଦ୍ରଙ୍କ ତୁଲ୍ୟ । ସାଗର ଯେପରି ବେଳାଭୂମିକୁ ଅତିକ୍ରମ କରେ ନାହିଁ, ତୁମ୍ଭେ ସେହିପରି ଧର୍ମ୍ମ ମର୍ଯ୍ୟାଦାର ଲଙ୍ଘନ କର ନାହିଁ । ୬ । ତୁମ୍ଭେ ତପ ତ୍ରୟୋଦଶ ବର୍ଷ ଜନିତ

ନୋଧକୁ ପଶ୍ଚାତ୍ କର ବର୍ତ୍ତମାନ ଧର୍ମାଭିଳାଷୀ ହୋଇଅଛ, ଏଥିରେ କିଏ ତୁମ୍ଭଙ୍କୁ ପ୍ରଶଂସା ନ କରିବ ? ୭ । ହେ ବତ୍ସ ! ଭାଗ୍ୟକ୍ରମେ ତୁମ୍ଭର ମନ ବର୍ତ୍ତମାନ ସ୍ୱଧର୍ମାନୁଗାମୀ ହେଉଅଛି । ଭାଗ୍ୟକ୍ରମେ ତୁମ୍ଭର ବୁଦ୍ଧି ନିରନ୍ତର ଅନୃଶଂସତା ଅନୁସରଣ କରୁଅଛି । ୮ ।

ମହାରାଜ ଯୁଧିଷ୍ଠିର ସର୍ବଦା ଧର୍ମରେ ପ୍ରବୃତ୍ତ ଥିଲେ ହେଁ ଶତ୍ରୁମାନେ ଅଧର୍ମଦ୍ୱାରା ରାଜ୍ୟ ହରଣ ଓ ଦ୍ରୌପଦୀଙ୍କୁ ସଭାସ୍ଥଳକୁ ଆନୟନ ପୂର୍ବକ ଅପମାନ କରି ଅଛନ୍ତି ଓ ଆମ୍ଭେମାନେ ପ୍ରକୃତ ରାଜ୍ୟାଧିକାରୀ ହେଲେ ହେଁ ବିପକ୍ଷମାନେ ଆମ୍ଭମାନଙ୍କୁ ବଲ୍‌କଳାଜିନ ପରିଧାନ କରାଇ ତ୍ରୟୋଦଶ ବର୍ଷ ନିମିତ୍ତ ନିର୍ବାସିତ କରିଥିଲେ । ୧୦ । ଏ ସମସ୍ତ ଅସହ୍ୟ ବିଷୟ ହେଲେ ହେଁ ଆମ୍ଭେ କ୍ଷତ୍ରିୟ ଧର୍ମାନୁରତ ହୋଇ ମଧ୍ୟ ତାହା ସହନ କରି ସେମାନଙ୍କ କୃତ ସମସ୍ତ ନିୟମକୁ ପାଳନ କରିଅଛୁଁ । ହେ ଅର୍ଜୁନ ! ବର୍ତ୍ତମାନ ସେହି ଅଧର୍ମର ପ୍ରତିଫଳ ଦେବାନିମିତ୍ତ ରାଜ୍ୟାପହାରୀମାନଙ୍କୁ ସବାନ୍ଧବରେ ବିନାଶ କରିବୁଁ ବୋଲି ତୁମ୍ଭସହିତ ଏକତ୍ରିତ ହୋଇ ଏହି ସଂଗ୍ରାମରେ ପ୍ରବୃତ୍ତ ହୋଇଅଛୁଁ । ୧୨ । ବିଶେଷତଃ ପୂର୍ବେ ତୁମ୍ଭେ ଆଶ୍ୱାସ ପ୍ରଦାନ କରିଥିଲ ବୋଲି ଆମ୍ଭେମାନେ ଏହି ଯୁଦ୍ଧରେ ଉପସ୍ଥିତ ହୋଇଅଛୁ ଓ ଯଥାସାଧ୍ୟ ଯୁଦ୍ଧ ମଧ୍ୟ କରୁଅଛୁଁ । କିନ୍ତୁ ତୁମ୍ଭେ ଆମ୍ଭମାନଙ୍କୁ ବର୍ତ୍ତମାନ ନିନ୍ଦା କରୁଅଛ । ୧୩ । ବୁଝିଲୁଁ, ତୁମ୍ଭେ ସ୍ୱଧର୍ମ ଜାଣିବାକୁ ଅଭିଳାଷୀ ନୁହ । ଏ ହେତୁରୁ ତୁମ୍ଭେ ବୃଥା ଜଳ୍ପନା କରୁଅଛ । ଏ ସମୟରେ ଅସ୍ମତ୍‌ପକ୍ଷୀୟ ସମସ୍ତ ସୈନ୍ୟମାନେ ଭୟାର୍ତ୍ତ ହୋଇଅଛନ୍ତି । ତହିଁରେ ପୁଣି ତୁମ୍ଭେ କ୍ଷତ ସ୍ଥଳରେ କ୍ଷାର ପ୍ରଦାନତୁଲ୍ୟ ବାକ୍ୟବାଣରେ ଆମ୍ଭମାନଙ୍କର ମର୍ମଚ୍ଛେଦନ କରୁଅଛ ।

ହେ ଅର୍ଜୁନ ! ତୁମ୍ଭର ବାକ୍‌ଶଲ୍ୟରେ ପୀଡ଼ିତ ହୋଇ ଆମ୍ଭ ହୃଦୟ ବିଦୀର୍ଣ୍ଣ ହେଉଅଛି । ତୁମ୍ଭେ ସ୍ୱୟଂ ଓ ଆମ୍ଭେମାନେ ପ୍ରଶଂସାର ଯୋଗ୍ୟ ହେଲେ ହେଁ ତୁମ୍ଭେ ଯେ ପ୍ରଶଂସା କରୁନାହଁ, ତଦ୍ଦ୍ୱାରା ତୁମ୍ଭର ଅତି ଅଧର୍ମ ସଞ୍ଚାର ହେଉଅଛି । ତୁମ୍ଭେ ଧାର୍ମିକ ହୋଇ ମଧ୍ୟ ତାହା ବୁଝି ପାରୁନାହଁ । ୧୬ । ହେ ଧନଞ୍ଜୟ ! ବାସୁଦେବ ତୁମ୍ଭ ନିକଟରେ ଥିଲେ ଯେ ତୁମ୍ଭର ଷୋଡ଼ଶାଂଶର ଏକାଂଶ ମଧ୍ୟ ନୁହେ, ତୁମ୍ଭେ ତାଦୃଶ ଦ୍ରୋଣପୁତ୍ରର

ପ୍ରଶଂସା କରୁଅଛ । ୧୭ । ତୁମ୍ଭେ ନିଜ ମୁଖରେ ଆତ୍ମଦୋଷ କୀର୍ତ୍ତନ କରିବାରୁ ତୁମ୍ଭର କି ଲଜ୍ଜା ହେଉନାହିଁ ? ଆମ୍ଭେ କ୍ରୁଦ୍ଧ ହେଲେ ସମସ୍ତ ପର୍ବତ ଚୂର୍ଣ୍ଣ କରିପାରୁଁ ଓ ଧରାତଳ ବିଦୀର୍ଣ୍ଣ କରିପାରୁଁ । ଏହି କାଞ୍ଚନ-ମାଳମୟୀ ଗୁର୍ବୀଗଦା ଉଦ୍‌ଭ୍ରାମିତ କରି ଶୈଳସଦୃଶ ବୃକ୍ଷସମୂହକୁ ବାୟୁ ଭଗ୍ନ କଲପ୍ରାୟ ଭଗ୍ନ କରିପାରୁଁ । ଆମ୍ଭେ ଶର ପ୍ରଭାବରେ ସୁରପତିଙ୍କ ସହିତ ସମାଗତ ସମସ୍ତ ସୁର, ଅସୁର, ରାକ୍ଷସ ଓ ସର୍ପଗଣସମନ୍ୱିତ ସମସ୍ତ ମନୁଷ୍ୟଙ୍କୁ ବିନାଶ କରିପାରୁଁ । ୨୦ ।

ହେ ଅର୍ଜ୍ଜୁନ ! ତୁମ୍ଭେ ସ୍ୱୟଂ ଅମିତପରାକ୍ରମଶାଳୀ ଅଟ । ଆମ୍ଭେ ତୁମ୍ଭର ଏବଂବିଧ ଭ୍ରାତା ବର୍ତ୍ତମାନ ଅଛୁଁ, ଏହା ଜାଣି ତୁମ୍ଭର ଦ୍ରୋଣ-ପୁତ୍ରକୁ ଭୟ କରିବାର ଉଚିତ ହେଉନାହିଁ । ୨୧ । ନୋହିଲେ ତୁମ୍ଭେ ଏଠାରେ ସମସ୍ତ ଭ୍ରାତାମାନଙ୍କ ସହିତ ଅବସ୍ଥାନ କର । ଆମ୍ଭେ ଏକାକୀ ଗଦାପାଣି ହୋଇ ମହାସମରରେ ଦ୍ରୋଣ-ପୁତ୍ରକୁ ଜୟ କରିବୁଁ । ୨୨ ।

ତଦନନ୍ତର ନୃସିଂହରୂପଧାରୀ କ୍ରୁଦ୍ଧ ନାରାୟଣ ଗର୍ଜ୍ଜନ କରୁଥିବା ସମୟରେ ତାହାଙ୍କୁ ହିରଣ୍ୟକଶିପୁ ଯେପରି କହିଥିଲେ, ସେହିପରି ଧୃଷ୍ଟଦ୍ୟୁମ୍ନ ମଧ୍ୟ ଧନଞ୍ଜୟଙ୍କୁ କହିଲେ । ୨୩ । ହେ ବୀଭତ୍ସୋ ! ମନୀଷିମାନେ ଅଧ୍ୟୟନ, ଅଧ୍ୟାପନ, ଯଜନ, ଯାଜନ, ଦାନ ଓ ପ୍ରତିଗ୍ରହ ଏହି ଷଟ୍ କର୍ମ୍ମକୁ ବ୍ରାହ୍ମଣମାନଙ୍କର ଅନୁଷ୍ଠେୟ ବୋଲି ନିର୍ଣ୍ଣୟ କରିଅଛନ୍ତି । ସେହି ଷଟ୍‌କର୍ମ୍ମମାନଙ୍କ ମଧ୍ୟରୁ ଦ୍ରୋଣ କେଉଁ କର୍ମ୍ମରେ ପ୍ରତିଷ୍ଠିତ ଥିଲେ ? ଆମ୍ଭେ ତାଦୃଶ ଦୁଷ୍କର୍ମ୍ମଶୀଳ ବ୍ରାହ୍ମଣଙ୍କୁ ନିହତ କରିଅଛୁଁ ବୋଲି ତୁମ୍ଭେ କି ନିମିତ୍ତ ଆମ୍ଭଙ୍କୁ ନିନ୍ଦା କରୁଅଛ ? ୨୪ । ଯେଉଁ ନୀଚକର୍ମକାରୀ ସ୍ୱଧର୍ମ୍ମରୁ ବିଚ୍ୟୁତ ହୋଇ କ୍ଷତ୍ରିୟ ଧର୍ମାବଲମ୍ବନ ପୂର୍ବକ ଅମାନୁଷ ଅସ୍ତ୍ରଦ୍ୱାରା ଆମ୍ଭମାନଙ୍କର ସେନା ବିନଷ୍ଟ କରୁଥିଲି, ତାଦୃଶ ଅସହ୍ୟ ମାୟାବୀ ବ୍ରାହ୍ମଣକୁ ଯେଉଁ ବ୍ୟକ୍ତି ମାୟାଦ୍ୱାରା ବିନାଶ କରିଅଛି, ତାହାପ୍ରତି ସଦ୍‌ବ୍ୟବହାର କରିବା କି ତୁମ୍ଭର ଉଚିତ ନୁହେଁ ? ୨୬ । ଆମ୍ଭେ ସେହି ଦୁଃଶୀଳ ବ୍ରାହ୍ମଣକୁ ନିହତ କରିଅଛୁ ବୋଲି ଅଶ୍ୱତ୍ଥାମା କୁପିତ ହୋଇ ଭୟଙ୍କର ସିଂହନାଦ କରୁଅଛି । ତହିଁରେ ଆମ୍ଭର କ୍ଷତି କଅଣ ? ଦ୍ରୋଣନନ୍ଦନ ଯେ ଏ ସମୟରେ ଗର୍ଜ୍ଜନ କରିବ ତାହା ଆମ୍ଭେ ଆଶ୍ଚର୍ଯ୍ୟ ବୋଧ କରୁନାହୁଁ ।

ସେ କେବଳ ଗର୍ଜ୍ଜନଦ୍ୱାରା କୌରବମାନଙ୍କୁ ସଂଗ୍ରାମରେ ପ୍ରବର୍ତ୍ତିତ କରି ପରିଶେଷରେ ପରିତ୍ରାଣରେ ଅସମର୍ଥ ହୋଇ ସମସ୍ତଙ୍କୁ ବିନଷ୍ଟ କରିବ । ୨୯ ।

ହେ ଧନଞ୍ଜୟ ! ତୁମ୍ଭେ ଧାର୍ମିକ ହୋଇ ମଧ୍ୟ ଯେ ଆମ୍ଭଙ୍କୁ ଗୁରୁଘାତୀ ବୋଲି ନିନ୍ଦା କରୁଅଛ, ତୁମ୍ଭେ କ'ଣ ଜାଣନାହିଁ ଯେ, ଆମ୍ଭେ ଦ୍ରୋଣ ବଧନିମିତ୍ତ ହୁତାଶନ ମଧ୍ୟରୁ ପାଞ୍ଚାଳରାଜଙ୍କର ପୁତ୍ରସ୍ୱରୂପ ଜାତ ହୋଇଅଛୁଁ ? ୩୦ । ହେ ପାର୍ଥ ! ସଂଗ୍ରାମରେ ଯାହାଙ୍କର କାର୍ଯ୍ୟାକାର୍ଯ୍ୟ ସମାନ ଥିଲା, ତୁମ୍ଭେ ତାଦୃଶ ବ୍ୟକ୍ତିକୁ ବ୍ରାହ୍ମଣ ବା କ୍ଷତ୍ରିୟ ବୋଲି କିପରି ଗଣ୍ୟ କରିବ ? ୩୧ । ଯେ କ୍ରୋଧାନ୍ଧ ହୋଇ ଅସ୍ତ୍ରାନଭିଜ୍ଞ ବ୍ୟକ୍ତିମାନଙ୍କୁ ବ୍ରହ୍ମାସ୍ତ୍ରଦ୍ୱାରା ବିନଷ୍ଟ କରେ, ତାହାକୁ ଯେ କୌଣସି ଉପାୟରେ ବଧ କରିବା ଉଚିତ ନୁହେଁ ? ହେ ଧର୍ମାର୍ଥତତ୍ତ୍ୱବିତ୍ ଧନଞ୍ଜୟ ! ଧର୍ମ୍ମଜ୍ଞମାନେ ବିଧର୍ମୀକୁ ଗରଳତୁଲ୍ୟ ବୋଲି କୀର୍ତ୍ତନ କରିଅଛନ୍ତି । ତୁମ୍ଭେ ତାହା ଜାଣି ସୁଦ୍ଧା କି ନିମିତ୍ତ ଆମ୍ଭଙ୍କୁ ନିନ୍ଦା କରୁଅଛ ? ୩୩ । ସେହି ନୃଶଂସ ବ୍ରାହ୍ମଣକୁ ଆମ୍ଭେ ରଥ ମଧ୍ୟରେ ଆକ୍ରମଣ ପୂର୍ବକ ନିପାତିତ କରିଅଛୁ । ତହିଁରେ ଆମ୍ଭେ ଅଭିନନ୍ଦନର ଯୋଗ୍ୟ ହେଲେ ହେଁ ତୁମ୍ଭେ କି ନିମିତ୍ତ ଆମ୍ଭଙ୍କୁ ଅଭିନନ୍ଦନ କରୁନାହଁ ? ୩୪ । ହେ ବୀଭତ୍ସୋ ! ଆମ୍ଭେ କାଳାନଳ ଓ ପ୍ରଦୀପ୍ତ ଦିବାକର ସଦୃଶ ଭୟାନକ ହୋଇ ଦ୍ରୋଣର ଶିରଶ୍ଛେଦନ କଲୁଁ । ଏଥିରେ ତୁମ୍ଭେ କି ନିମିତ୍ତ ଆମ୍ଭର ପ୍ରଶଂସା କରୁନାହଁ ? ୩୫ । ଦ୍ରୋଣ କେବଳ ଆମ୍ଭର ବନ୍ଧୁବର୍ଗଙ୍କୁ ବିନାଶ କରିଅଛି । ଆମ୍ଭେ ତାହାର ମସ୍ତକ ଛେଦନ କରି ମଧ୍ୟ ପରିତାପ-ଶୂନ୍ୟ ହୋଇନାହୁଁ । ୩୬ । ଜୟଦ୍ରଥଙ୍କ ମସ୍ତକ ସଦୃଶ ଆମ୍ଭେ ଯେ ତାହାର ମସ୍ତକକୁ ଚଣ୍ଡାଳ ସମକ୍ଷରେ ନିକ୍ଷେପ କରିନାହୁଁ, ତଦ୍ଦ୍ୱାରା ଆମ୍ଭର ମର୍ମ୍ମସ୍ଥଳ ବିଦୀର୍ଣ୍ଣ ହେଉଅଛି । ୩୭ ।

ହେ ଧନଞ୍ଜୟ ! ଏହିପରି ଶ୍ରୁତି ଅଛି ଯେ, ଶତ୍ରୁ ବଧ ନ କଲେ ଅଧର୍ମ୍ମ ହୁଏ ; ଯେ ହେତୁ ଯୁଦ୍ଧସ୍ଥଳରେ ଶତ୍ରୁକୁ ବିନାଶ କରିବ, ନଚେତ୍ ତାହାକର୍ତ୍ତୃକ ବିନଷ୍ଟ ହେବ, ଏହା ହିଁ କ୍ଷତ୍ରିୟମାନଙ୍କର ଧର୍ମ୍ମ ବୋଲି ନିର୍ଦ୍ଦିଷ୍ଟ ଅଛି । ୩୮ । ହେ ପାଣ୍ଡୁନନ୍ଦନ ଅର୍ଜ୍ଜୁନ ! ତୁମ୍ଭେ ଯେଉଁ ଧର୍ମ ଅବଲମ୍ବନ ପୂର୍ବକ ପିତୃସଖା ଭଗଦତ୍ତଙ୍କୁ ନିହତ କରିଅଛ, ଆମ୍ଭେ ମଧ୍ୟ ସେହି ଧର୍ମ

ଅବଲମ୍ବନ ପୂର୍ବକ ଆମ୍ଭର ଶତ୍ରୁକୁ ନିହତ କରିଅଛୁଁ । ୩୯ । ତୁମ୍ଭେ ଯଦି ପିତାମହଙ୍କ ବିନାଶ କରି ସେହି କାର୍ଯ୍ୟକୁ ସ୍ୱଧର୍ମ ବୋଲି ମନେ କରୁଅଛ, ତେବେ ଆମ୍ଭେ ମଧ୍ୟ ଆମ୍ଭର ଅନିଷ୍ଟକାରୀ ଶତ୍ରୁକୁ ନିହତ କରି ତାହାକୁ କି ନିମିତ୍ତ ଧର୍ମକାର୍ଯ୍ୟ ବୋଲି ମନେ କରିବୁନାହିଁ ? ୪୦ । ହେ ପାର୍ଥ ! ହସ୍ତୀ ଯେପରି ଆରୋହୀ ନିକଟରେ ଅବନତ ହୋଇ ସ୍ୱୀୟ ଶରୀରକୁ ସୋପାନ ସଦୃଶ କରେ ସେହିପରି ଆମ୍ଭେ ସମ୍ବନ୍ଧବଶତଃ ତୁମ୍ଭଠାରେ ଅବନତ ହୋଇଅଛୁଁ ବୋଲି ତୁମ୍ଭର ଆମ୍ଭ ପ୍ରତି ଈଦୃଶ ବାକ୍ୟପ୍ରୟୋଗ କରିବା ଉଚିତ ହେଉନାହିଁ । ୪୧ । କେବଳ ଦ୍ରୌପଦୀ ଓ ତାହାଙ୍କର ପୁତ୍ରମାନଙ୍କର ଅନୁରୋଧରେ ଆମ୍ଭେ ତୁମ୍ଭର କଟୂକ୍ତିର ଅପରାଧ କ୍ଷମା କଲୁଁ । ୪୨ । ହେ ପାଣ୍ଡବଗଣ ! ଆଚାର୍ଯ୍ୟଙ୍କ ସହିତ ଆମ୍ଭମାନଙ୍କର କୁଳକ୍ରମାଗତ ଶତ୍ରୁତା ଥିବା ବିଷୟ ଏହି ସମସ୍ତ ଲୋକଙ୍କୁ ଜଣାଅଛି । ତୁମ୍ଭେମାନେ ତାହା ଅବଗତ ନୁହଁ ।

ହେ ଅର୍ଜ୍ଜୁନ ! ପାଣ୍ଡବଜ୍ୟେଷ୍ଠ ଯୁଧିଷ୍ଠିର ମିଥ୍ୟାବାଦୀ ନୁହନ୍ତି ଓ ଆମ୍ଭେ ମଧ୍ୟ ଅଧାର୍ମିକ ନୋହୁଁ । ପାପାତ୍ମା ଦ୍ରୋଣ ଶିଷ୍ୟଦ୍ରୋହୀ ଥିଲା ବୋଲି ନିହତ ହୋଇଅଛି । ଅତଏବ ତୁମ୍ଭେ ଯୁଦ୍ଧ କର, ଅବଶ୍ୟ ଜୟଲାଭ ହେବ । ୪୪ ।

---

# ୧୯୮ ଅଧ୍ୟାୟ

ଧୃତରାଷ୍ଟ୍ର କହିଲେ—ହେ ସଞ୍ଜୟ ! ଯେଉଁ ମହାତ୍ମା ଯଥାବିହିତ ଅଙ୍ଗସମନ୍ୱିତ ବେଦସବୁ ଅଧ୍ୟୟନ କରିଥିଲେ, ଯାହାଙ୍କ ନିକଟରେ ଧନୁର୍ବେଦ ମୂର୍ତ୍ତିମାନ୍‌ରୂପେ ବିରାଜିତ ଥିଲା, ଯାହାଙ୍କଠାରେ ଲଜ୍ଜା ଓ ଦେବସେବା ସମ୍ପୂର୍ଣ୍ଣରୂପେ ପ୍ରତିଷ୍ଠିତ ଥିଲା, ଯାହାଙ୍କ ପ୍ରସାଦରୁ କୁରୁବରଶ୍ରେଷ୍ଠ ରାଜଗଣ ଦେବଗଣଙ୍କର ଦୁଷ୍କର ଲୌକିକ କର୍ମ କରିଥିଲେ, ସେହି ମହର୍ଷିନନ୍ଦନ ଦ୍ରୋଣ କ୍ଷତ୍ରିୟମାନଙ୍କ ସମକ୍ଷରେ ପାପକର୍ମ ନୀଚପ୍ରକୃତି ନୃଶଂସ ଗୁରୁଘାତି କ୍ଷୁଦ୍ରମତି ଧୃଷ୍ଟଦ୍ୟୁମ୍ନଙ୍କ କର୍ତ୍ତୃକ ନିହତ ହେଲେ ହେଁ ସେହି ସମୟରେ ଯେ କୌଣସି କ୍ଷତ୍ରିୟ କୁପିତ ହେଲେନାହିଁ, ଏପରି କ୍ଷତ୍ରିୟମାନଙ୍କୁ ଧିକ୍ ଓ

ସେମାନଙ୍କର କ୍ରୋଧକୁ ମଧ୍ୟ ଧିକ୍ । ହେ ସଞ୍ଜୟ ! ଧୃଷ୍ଟଦ୍ୟୁମ୍ନଙ୍କର ସେହି ବାକ୍ୟସମୂହ ଶ୍ରବଣ କରି ଧନୁର୍ଦ୍ଧର ପୃଥାପୁତ୍ର ଓ ରାଜଗଣ କିପରି ଉତ୍ତର କଲେ ତାହା ଏବେ ଆମ୍ଭ ନିକଟରେ କୀର୍ତ୍ତନ କର ।

ସଞ୍ଜୟ କହିଲେ— ହେ ମହାରାଜ ! କ୍ରୂରକର୍ମା ଦ୍ରୁପଦପୁତ୍ର ତାଙ୍କର ସେହି ସମସ୍ତ ବାକ୍ୟ ଶ୍ରବଣ କରି ରାଜାମାନେ ତୂଷ୍ଣୀ ଭାବରେ ରହିଲେ । ଧନଞ୍ଜୟ ତିର୍ଯ୍ୟକ୍ ନୟନରେ ତାହାଙ୍କ ପ୍ରତି କଟାକ୍ଷ ପାତ କରି 'ଧିକ୍' ଏହା କହି ନିଃଶ୍ୱାସ ପରିତ୍ୟାଗ ଓ ବାଷ୍ପ ମୋଚନ କଲେ । ଯୁଧିଷ୍ଠିର, ଭୀମସେନ ଯମଜ ନକୁଳ ସହଦେବ, ବାସୁଦେବ ଓ ଅନ୍ୟାନ୍ୟ ବୀରଗଣ ଲଜ୍ଜାବନତ ମୁଖରେ ଅବସ୍ଥାନ କଲେ । ତହୁଁ କେବଳ ସାତ୍ୟକି ଏହିପରି ଉତ୍ତର କଲେ । ଆହେ ! ଏଠାରେ କ'ଣ ଏପରି କୌଣସି ପୁରୁଷ ନାହାନ୍ତି, ଯେ କି ଏହି ପାପପୁରୁଷ ନରାଧମ ଅକଲ୍ୟାଣଭାଷୀକୁ ଅବିଳମ୍ବେ ବିନାଶ କରି ପାରନ୍ତି ! ଆହେ ଧୃଷ୍ଟଦ୍ୟୁମ୍ନ ! ବ୍ରାହ୍ମଣମାନେ ଯେପରି ଚଣ୍ଡାଳକୁ ନିନ୍ଦା କରନ୍ତି, ସେହିପରି ତୁମ୍ଭର ଏହି ପାପାଚରଣରେ ପାଣ୍ଡବପକ୍ଷୀୟ ସମସ୍ତ ଲୋକେ ତୁମ୍ଭର ନିନ୍ଦା କରୁଅଛନ୍ତି । ତୁମ୍ଭେ ଉତ୍କୃଷ୍ଟ ଲୋକସମାଜରେ ଈଦୃଶ ସାଧୁ-ବିଗର୍ହିତ ପାପକାର୍ଯ୍ୟ କରି ନିରୁଦ୍‌ବେଗରେ ବାକ୍ୟ ପ୍ରୟୋଗ କରିବାକୁ କି ନିମିତ୍ତ ଲଜ୍ଜିତ ହେଉନାହଁ ? ରେ ମୀଗୃଶୟ ! ତୁ କି ଗୁରୁହତ୍ୟା କରି ଅଧର୍ମରେ ପତିତ ହୋଇନାହୁଁ ? ତୋହର ରସନା ଓ ମସ୍ତକ କି ନିମିତ୍ତ ଶତଧା ବିଦୀର୍ଣ୍ଣ ହେଉନାହିଁ ! ତୁ ଏହି ଗର୍ହିତକାର୍ଯ୍ୟ କରି ଜନସମାଜରେ ଶ୍ଳାଘା କରୁଅଛୁ ? ତଦ୍ଦ୍ୱାରା ତୁ ପାଣ୍ଡବ, ବୃଷ୍ଣି ଓ ଅନ୍ଧକମାନଙ୍କ ନିକଟରେ ନିନ୍ଦନୀୟ ହୋଇଅଛୁ । ତୁ ଯେତେବେଳେ ତାଦୃଶ ଅନାର୍ଯ୍ୟ କାର୍ଯ୍ୟ କରି ମଧ୍ୟ ପୁନର୍ବାର ଆଚାର୍ଯ୍ୟଙ୍କ ନିନ୍ଦା କରୁଅଛୁ, ତେତେବେଳେ ତୁ ଆମ୍ଭମାନଙ୍କର ବଧ୍ୟ । ତୋତେ ମୁହୂର୍ତ୍ତକ ନିମନ୍ତେ ଜୀବିତ ରଖିବା ଆମ୍ଭମାନଙ୍କର ଆବଶ୍ୟକ ନାହିଁ ।

ରେ ପୁରୁଷାଧମ ! ତୋହ ବ୍ୟତୀତ ଅନ୍ୟ କେଉଁ ଅସାଧୁ ବ୍ୟକ୍ତି ଧର୍ମାତ୍ମା, ପୂଜନୀୟ ଗୁରୁଙ୍କର କେଶାକର୍ଷଣ ପୂର୍ବକ ନିଗ୍ରହ କରିବ ? ତୁ ବଂଶର ଏପରି କୁଳାଙ୍ଗାର ସନ୍ତାନ ଯେ, ତୋତେ ପ୍ରାପ୍ତ ହୋଇ ତୋହ ବଂଶର ଅଧଃ ସପ୍ତପୁରୁଷ ଓ ଊର୍ଦ୍ଧ୍ୱ ସପ୍ତପୁରୁଷ ଏହି ଚତୁର୍ଦ୍ଦଶ ପୁରୁଷ

ଯଶୋଭ୍ରଷ୍ଟ ହୋଇ ନରକରେ ନିମଗ୍ନ ହେଲେ । ତୁ ଯେ ନରସିଂହ ଧନଞ୍ଜୟଙ୍କ କର୍ତ୍ତୃକ ଭୀଷ୍ମଙ୍କ ମୃତ୍ୟୁ ବିଷୟ କହୁଥିଲୁ, ତାହା ମହାତ୍ମା ଭୀଷ୍ମ ସ୍ୱୟଂ ବିଧାନ କରିଥିଲେ । ପରନ୍ତୁ ତୋହର ସହୋଦର ପାପକାରୀ ଶ୍ରେଷ୍ଠ ଶିଖଣ୍ଡୀ ତାହାଙ୍କର ମଧ୍ୟ ହତ୍ୟାକାରୀ ଅଟେ । ୧୭ ।

ଏହି ପୃଥିବୀରେ ପାଞ୍ଚାଳରାଜପୁତ୍ରମାନଙ୍କ ବ୍ୟତୀତ ଆଉ କିଏ ପାପକାରୀ ଅଛି ? ତୋହର ପିତା ଭୀଷ୍ମଙ୍କ ବିନାଶ ନିମିତ୍ତ ଶିଖଣ୍ଡୀଙ୍କୁ ଜାତ କରିଥିଲା । ଧନଞ୍ଜୟ ରଣସ୍ଥଳରେ ଶିଖଣ୍ଡୀଙ୍କୁ ରକ୍ଷା କରିଥିଲେ । ମାତ୍ର ଶିଖଣ୍ଡୀ ମହାତ୍ମା ଭୀଷ୍ମଙ୍କର ଅନ୍ତକ ସ୍ୱରୂପ ହୋଇଥିଲା । ମିତ୍ର ଓ ଗୁରୁଦ୍ରୋହୀ ନୀଚସ୍ୱଭାବ ପାଞ୍ଚାଳଗଣ ତୋତେ ଆଉ ଶିଖଣ୍ଡୀକୁ ପୁତ୍ର ପ୍ରାପ୍ତ ହୋଇ ଧର୍ମ-ଭ୍ରଷ୍ଟ ଓ ସାଧୁ ସମାଜରେ ଧିକ୍‌କୃତ କଲେ । ତୁ ଯଦି ପୁନର୍ବାର ଆମ୍ଭ ସମୀପରେ ଆଉ ଏପରି ଅନ୍ୟାୟ ବାକ୍ୟ ପ୍ରୟୋଗ କରିବୁ ତାହାହେଲେ ଏହି ବଜ୍ରକଳ୍ପ ଗଦାଦ୍ୱାରା ତୋହର ମସ୍ତକ ଚୂର୍ଣ୍ଣ କରିବୁଁ । ରେ ପାପୀ ! ମନୁଷ୍ୟ ବ୍ରହ୍ମହତ୍ୟାକାରୀକୁ ଅବଲୋକନ କରି ସ୍ୱୀୟ ପ୍ରାୟଶ୍ଚିତ୍ତାର୍ଥ ସୂର୍ଯ୍ୟ ଦର୍ଶନ କରେ । ତୋହର ସେହି ବ୍ରହ୍ମହତ୍ୟା ପାପ ହୋଇ ଅଛି । ଅତଏବ ତୋହ ପ୍ରତି ଦୃଷ୍ଟିପାତ କଲେ ଉକ୍ତ ପ୍ରକାର ପ୍ରାୟଶ୍ଚିତ୍ତ କରିବାକୁ ହେବ । ଆରେ ଦୁର୍ବୃତ୍ତ ପାଞ୍ଚାଳନନ୍ଦନ ! ତୁ ଆମ୍ଭ ସମ୍ମୁଖରେ ଆମ୍ଭର ଗୁରୁ ଓ ଗୁରୁର ଗୁରୁଙ୍କୁ ବାରମ୍ବାର କଟୂକ୍ତି ପ୍ରୟୋଗ କରି ଲଜ୍ଜିତ ହେଉ ନାହୁଁ । ରହ ରହ, ତୁ ଆମ୍ଭର ଏହି ଗଦାର ଆଘାତକୁ ଥରେ ମାତ୍ର ସହ । ଆମ୍ଭେ ତୋହର ବହୁବାର ଗଦାଘାତ ସହନ କରିବୁଁ ।

ହେ ମହାରାଜ ! କୋପାବିଷ୍ଟ ସାତ୍ୟକି ଧୃଷ୍ଟଦ୍ୟୁମ୍ନଙ୍କୁ ଏହିପରି କଟୂକ୍ତି ଦ୍ୱାରା ତିରସ୍କାର କରନ୍ତେ ଧୃଷ୍ଟଦ୍ୟୁମ୍ନ ଅତିଶୟ କ୍ରୁଦ୍ଧ ହୋଇ ମଧ୍ୟ ହାସ୍ୟ ମୁଖରେ କହିଲେ, ହେ ମାଧବ ! ଆମ୍ଭେ ତୁମ୍ଭର ସମସ୍ତ କଥା ଶୁଣିଲୁଁ ଓ କ୍ଷମା ମଧ୍ୟ କଲୁଁ । କାରଣ ଅସାଧୁ ନୀଚ ଲୋକେ ନିୟତ ସାଧୁମାନଙ୍କୁ ଅପମାନ କରିବାକୁ ଅଭିଳାଷ କରନ୍ତି । ଇହଲୋକରେ କ୍ଷମା ଏକା ପ୍ରଶଂସନୀୟ । ପାପ କଦାଚ କ୍ଷମାଗୁଣକୁ ସ୍ପର୍ଶ କରି ପାରେ ନାହିଁ । ୨୭ । ପାପାତ୍ମାମାନେ କ୍ଷମାବାନ୍ ପୁରୁଷକୁ ପରାଜିତ ବୋଲି ମନେ କରନ୍ତି । ତୁମ୍ଭେ ସେହିପରି ନୀଚସ୍ୱଭାବ ପାପାଶୟ ଓ ନୀଚବ୍ୟବହାରୀ ।

ତୋର ପଦର ନଖାଗ୍ରଠାରୁ ମସ୍ତକର କେଶ ପର୍ଯ୍ୟନ୍ତ ନିନ୍ଦନୀୟ, ତୁ ପୁଣି ଅପରକୁ ନିନ୍ଦାକରିବାକୁ ଇଚ୍ଛାକରୁ ! ତୋତେ ବାରମ୍ବାର ସମସ୍ତେ ନିଷେଧ କଲେ ହେଁ, ତୁ ଯେ ରଣସ୍ଥଳରେ ପ୍ରାୟୋପବିଷ୍ଟ, ଛିନ୍ନବାହୁ ଭୂରିଶ୍ରବାଙ୍କୁ ନିହତ କଲୁ ତାହା ଅପେକ୍ଷା ଆଉ ଅଧିକ ପାପକାର୍ଯ୍ୟ କଅଣ ହୋଇ ପାରେ ? ରେ କ୍ରୂର ! ଦ୍ରୋଣ ନ୍ୟସ୍ତଶସ୍ତ୍ର ହୋଇଥିଲେ ହେଁ ସେ ସୈନ୍ୟ ଦ୍ୱାରା ରକ୍ଷିତ ଥିଲେ । ଆମ୍ଭେ ସେହି ସମୟରେ ତାହାଙ୍କୁ ଦିବ୍ୟ ଅସ୍ତ୍ର ଦ୍ୱାରା ନିହତ କରିଅଛୁଁ । ତହିଁରେ କପରି କି ଅଧର୍ମ ହୋଇ ପାରେ ? ହେ ସାତ୍ୟକେ ! ଯେଉଁ ଲୋକ ଛିନ୍ନବାହୁ ଯୁଦ୍ଧବିରତ ପ୍ରାୟୋପବିଷ୍ଟ ଓ ମୌନାବଲମ୍ବୀ ବ୍ୟକ୍ତିକୁ ବିନାଶ କରେ, ସେ ପୁଣି ଅନ୍ୟକୁ କଅଣ କହିବ ? ବୀର୍ଯ୍ୟବାନ୍ ଭୂରିଶ୍ରବା ଯେଉଁ ସମୟରେ ତୋତେ ଭୂତଳରେ ପାତିତ କରି ପଦାଘାତପୂର୍ବକ ବିକର୍ଷଣ କରୁଥିଲେ, ସେ ସମୟରେ ପୁରୁଷତ୍ୱ ପ୍ରକାଶକରି ତାହାଙ୍କୁ କି ନିମିତ୍ତ ବିନାଶ କରି ପାରିଲୁ ନାହିଁ ? ପ୍ରତାପବାନ୍ ଶୂରି ସୋମଦତ୍ତଙ୍କ ପୁତ୍ର ଭୂରିଶ୍ରବା ପ୍ରଥମେ ଅର୍ଜ୍ଜୁନଙ୍କ ଶରରେ ନିର୍ଜ୍ଜିତ ହୁଅନ୍ତେ ତୁ ଅସାଧୁତା ପ୍ରକାଶ ପୂର୍ବକ ତାହାଙ୍କୁ ବିନାଶ କଲୁ । କିନ୍ତୁ ଯେଉଁ ଯେଉଁ-ଠାରେ ଦ୍ରୋଣ ପାଣ୍ଡବସୈନ୍ୟମାନଙ୍କୁ ବିଦ୍ରାବିତ କରିବାକୁ ପ୍ରବୃତ୍ତ ହେଉ-ଥିଲେ ସେହି ସେହି ସ୍ଥାନରେ ଆମ୍ଭେ ସହସ୍ର ସହସ୍ର ଶରଜାଲ ବିକିରଣ କରୁଁ କରୁଁ ଉପସ୍ଥିତ ହେଉଥିଲୁଁ । ତୁ ସ୍ୱୟଂ ଚଣ୍ଡାଳ ସଦୃଶ କାର୍ଯ୍ୟକରି ଜନସମାଜରେ ନିନ୍ଦନୀୟ ହୋଇ ଆମ୍ଭଙ୍କୁ କି ନିମିତ୍ତ ପରୁଷବାକ୍ୟ କହିବାକୁ ଇଚ୍ଛା କରୁଅଛୁ ?

ରେ ବୃଷ୍ଣିକୁଳାଧମ ! ତୁ ସ୍ୱୟଂ ପାପକାର୍ଯ୍ୟର ଆବାସ ଭୂମି । ତୁ ଉଗ୍ରକର୍ମର କର୍ତ୍ତା, ଆମ୍ଭେ ନୋହୁଁ । ଅତଏବ ପୁନର୍ବାର ଆମ୍ଭପ୍ରତି କଟୂକ୍ତି ବ୍ୟବହାର କର ନା । ମିତଭାଷୀସଦୃଶ ଆମ୍ଭଙ୍କୁ ଯାହା କହିବାକୁ ଇଚ୍ଛା କରୁଅଛୁ, ତାହା କଦାଚ କହ ନାହିଁ । ମୌନୀ ହୋଇ ରହ । ପୁନର୍ବାର ମୂର୍ଖତା ବଶତଃ ଯଦି ଆଉ ଏପରି ପରୁଷବାକ୍ୟ ପ୍ରୟୋଗ କରିବୁ ତେବେ ଆମ୍ଭେ ତୋତେ ଶରସମୂହଦ୍ୱାରା ଯମାଳୟକୁ ପ୍ରେରଣ କରିବୁଁ ।

ରେ ମୂର୍ଖ ! କେବଳ ଧର୍ମ ପଥ ଅବଲମ୍ବନ କଲେ ଜୟଲାଭ ହୋଇପାରେ ନାହିଁ । ୩୮ । କୌରବମାନେ ଯେଉଁ ଅଧର୍ମାଚରଣ କରି

ଅଛନ୍ତି, ତାହା ଶ୍ରବଣ କର । ପ୍ରଥମରେ କୌରବମାନଙ୍କର କପଟଦ୍ୱାରା ରାଜା ଯୁଧିଷ୍ଠିର ବଞ୍ଚିତ ହୋଇ ଅଛନ୍ତି ଓ ଦ୍ରୌପଦୀ ବିଶେଷ କ୍ଳେଶ ପ୍ରାପ୍ତ ହୋଇ ଅଛନ୍ତି । ସେମାନେ ଅଧର୍ମାଚରଣ ଦ୍ୱାରା ପାଣ୍ଡବମାନଙ୍କୁ ସର୍ବସ୍ୱାନ୍ତ କରି ସେମାନଙ୍କୁ ପାଞ୍ଚାଳୀଙ୍କ ସହିତ ଅରଣ୍ୟକୁ ପ୍ରେରଣ କରିଥିଲେ । ପୁଣି ସେମାନେ ଅଧର୍ମଦ୍ୱାରା ମଦ୍ରରାଜ ଶଲ୍ୟଙ୍କୁ ପାଣ୍ଡବଙ୍କ ପକ୍ଷରୁ ଆକର୍ଷଣ କରି-ଅଛନ୍ତି ଓ ବାଳକ ସୁଭଦ୍ରାନନ୍ଦନଙ୍କୁ ନିପାତିତ କରି ଅଛନ୍ତି । ସେହିପରି ପାଣ୍ଡବମାନେ ମଧ୍ୟ ଅଧର୍ମଦ୍ୱାରା ପରପୁରଞ୍ଜୟୀ ଭୀଷ୍ମଙ୍କୁ ନିହତ କରି ଅଛନ୍ତି ଓ ତୁ ମଧ୍ୟ ଧର୍ମଜ୍ଞ ହୋଇ ଅଧର୍ମାବଲମ୍ବନ ପୂର୍ବକ ଭୂରିଶ୍ରବାଙ୍କୁ ବିନାଶ କରିଅଛୁ । ଏହିପରି ବୀର କୌରବ ଓ ପାଣ୍ଡବଗଣ ଧର୍ମଜ୍ଞ ହୋଇ ମଧ୍ୟ ଜୟଲାଭାର୍ଥ ଅଧର୍ମ ଆଚରଣ କରି ଅଛନ୍ତି ।

ହେ ସାତ୍ୟକେ ! ପରମ ଧର୍ମ ଓ ଅଧର୍ମ ଏ ଉଭୟ ହିଁ ଦୁର୍ଜ୍ଞେୟ । ୪୪ । ଅତଏବ ସେ କଥାରେ ଆଉ ବିତର୍କ କରିବାର ପ୍ରୟୋଜନ ନାହିଁ । ବର୍ତ୍ତମାନ ତୁ କ୍ରୁଦ୍ଧ ହୋଇ ପିତୃଭବନକୁ ଗମନ ନ କରି କୌରବମାନଙ୍କ ସହିତ ଯୁଦ୍ଧ କର ।

ସଞ୍ଜୟ କହିଲେ—ହେ ମହାରାଜ ! ଶ୍ରୀମାନ୍ ସାତ୍ୟକ ଧୃଷ୍ଟଦ୍ୟୁମ୍ନ-ଙ୍କର ଏହିପରି ପରୁଷ ଓ କ୍ରୂରବାକ୍ୟ ଶ୍ରବଣ କରି କ୍ରୋଧରେ ଅଧୀର ହେଲେ । ସେ କୋପରେ ଅରୁଣନେତ୍ର ହୋଇ ରଥ ମଧ୍ୟରେ ଶରାସନ ସ୍ଥାପନ ପୂର୍ବକ ପନ୍ନଗ ସଦୃଶ ନିଃଶ୍ୱାସ ତ୍ୟାଗ କରୁ କରୁ ଗଦା ଗ୍ରହଣ କଲେ ଓ ରଥରୁ ଲମ୍ଫପ୍ରଦାନ ପୂର୍ବକ ଭୂତଳରେ ପତିତ ହୋଇ ସରମ୍ଭରେ ପାଞ୍ଚାଳନନ୍ଦନଙ୍କୁ କହିଲେ । ୪୭ । ତୁ ବଧାର୍ହ, ଅତଏବ ତୋତେ ଆଉ ପରୁଷ ବାକ୍ୟ ନ କହି ବିନାଶ କରିବୁଁ ।

ମହାବଳଶାଳୀ ଅନ୍ତକ ସଦୃଶ ସାତ୍ୟକ ସହସା ଅନ୍ତକ ତୁଲ୍ୟ ପାଞ୍ଚାଳନନ୍ଦନଙ୍କ ପ୍ରତି ତାଦୃଶ କ୍ରୋଧରେ ଧାବିତ ହୁଅନ୍ତେ, ମହାବଳବାନ୍ ବୃକୋଦର ବାସୁଦେବଙ୍କ ଆଦେଶାନୁସାରେ ଅବିଳମ୍ବେ ରଥରୁ ଲମ୍ଫ ପ୍ରଦାନ କରି ବାହୁଦ୍ୱୟ ଦ୍ୱାରା ତାହାଙ୍କୁ ନିବାରଣ କଲେ । କ୍ରୋଧରେ ଧାବମାନ ବଳୀୟାନ୍ ସାତ୍ୟକ ସେହି ସମୟରେ ନିବାରକ ବଳଶାଳୀ

ଭୀମସେନଙ୍କୁ ଗ୍ରହଣ ପୂର୍ବକ ବେଗରେ ଗମନ କଲେ । ଅନନ୍ତର ବୃକୋଦର ବଳପୂର୍ବକ ସ୍ୱୀୟ ଚରଣଦ୍ୱୟକୁ ଭୂତଳରେ ସ୍ତମ୍ଭିତ କରି ଷଷ୍ଠପଦ ଗମନ କରି ବଳଶାଳୀ ଶିନିପୁଙ୍ଗବଙ୍କର ଗତିରୋଧ କଲେ । ହେ ମହାରାଜ ! ବଳୀୟାନ୍ ଭୀମସେନ ଅବଲମ୍ବିତ ରଥରୁ ଅବତୀର୍ଣ୍ଣ ହୋଇ ସାତ୍ୟକିଙ୍କୁ ଏହିପରି ଧାରଣ କରନ୍ତେ ସହଦେବ ତାହାଙ୍କୁ ମଧୁର ବାକ୍ୟରେ କହିଲେ, ହେ ପୁରୁଷଶାର୍ଦ୍ଦୂଳ ! ଶିନିନନ୍ଦନ, ବୃଷ୍ଣି, ଅନ୍ଧକ ଓ ପାଞ୍ଚାଳଗଣ ବ୍ୟତୀତ ଅପର କେହି ଆମ୍ଭମାନଙ୍କର ପରମ ମିତ୍ର ନାହାନ୍ତି । ବୃଷ୍ଣି ଓ ଅନ୍ଧକ-ମାନଙ୍କର ବିଶେଷତଃ କୃଷ୍ଣଙ୍କର ଆମ୍ଭମାନଙ୍କ ବ୍ୟତୀତ କେହି ପରମ ମିତ୍ର ନାହାନ୍ତି । ପାଞ୍ଚାଳମାନେ ଆସମୁଦ୍ର ପୃଥିବୀ ଅନ୍ୱେଷଣ କଲେହେଁ ବୃଷ୍ଣି ଓ ଅନ୍ଧକମାନଙ୍କ ସଦୃଶ ପରମ ମିତ୍ର କେଉଁଠାରେ ପ୍ରାପ୍ତ ହେବେ ନାହିଁ । ଅତଏବ ଯେପରି ଆପଣମାନେ ଆମ୍ଭମାନଙ୍କର ଓ ଆମ୍ଭେମାନେ ଆପଣ-ମାନଙ୍କର ମିତ୍ର ସେହିପରି ଏହି ଧୃଷ୍ଟଦ୍ୟୁମ୍ନ ଆପଣଙ୍କର ଓ ଆପଣ ତାହାଙ୍କର ମିତ୍ର ଅଟନ୍ତି । ହେ ଶିନିପୁଙ୍ଗବ ! ଆପଣ ସମସ୍ତ ଧର୍ମ୍ମ ବିଷୟରେ ଅଭିଜ୍ଞ, ବର୍ତ୍ତମାନ ଆପଣ ମିତ୍ରଧର୍ମ୍ମ ସ୍ମରଣ କରି କ୍ରୋଧ ସମ୍ବରଣ ପୂର୍ବକ ଧୃଷ୍ଟ-ଦ୍ୟୁମ୍ନଙ୍କୁ କ୍ଷମା କରନ୍ତୁ । ୫୮ । କ୍ଷମା ଅପେକ୍ଷା ଆଉ କିଛି ଶ୍ରେଷ୍ଠ ନାହିଁ । ଏଣୁ ଆମ୍ଭେମାନେ ଏ ବିଷୟରେ କ୍ଷାନ୍ତ ହେଲୁଁ । ବର୍ତ୍ତମାନ ଆପଣମାନେ ମଧ୍ୟ ପରସ୍ପର ପରସ୍ପରକୁ କ୍ଷମା କରନ୍ତୁ ।

ହେ ମହାରାଜ ! ସହଦେବ ଏହିପରି ସାତ୍ୟକିଙ୍କୁ ଶାନ୍ତ କରନ୍ତେ ପାଞ୍ଚାଳରାଜନନ୍ଦନ ହସି ହସି କହିଲେ, ହେ ଭୀମ ! ତୁମ୍ଭେ ଏହି ସମର-ମଦାନ୍ୱିତ ଶିନିପୌତ୍ର ସାତ୍ୟକିଙ୍କୁ ଶୀଘ୍ର ପରିତ୍ୟାଗ କର । ଅନିଳ ଯେପରି ଧରାଧରରେ ମିଳିତ ହୁଏ, ସେହିପରି ଏହି ସାତ୍ୟକି ଆମ୍ଭ ସହିତ ମିଳିତ ହେଉ । ଆମ୍ଭେ ତୀକ୍ଷ୍ଣ ଶର ପ୍ରଭାବରେ ତାହାର କ୍ରୋଧ, ଯୁଦ୍ଧ, ଶ୍ରଦ୍ଧା ଓ ଜୀବନ ଏସମସ୍ତକୁ ଅପନୟନ କରିବୁଁ । ଏହି ସମୟରେ କୌରବମାନେ ବେଗରେ ଆଗମନ କରୁଅଛନ୍ତି । ଆମ୍ଭେ ଆଜ ବର୍ତ୍ତମାନ ଏ ବିଷୟରେ କଅଣ କରିପାରୁଁ ? ଯେହେତୁ ପାଣ୍ଡୁପୁତ୍ରମାନଙ୍କର ବର୍ତ୍ତମାନ ସୁମହତ୍ କାର୍ଯ୍ୟ ଉପସ୍ଥିତ ହୋଇଅଛି । ଅର୍ଜ୍ଜୁନ ଯଦି କୌରବମାନଙ୍କୁ ନିବାରଣ କରିବେ ତେବେ ଆମ୍ଭେ ଶରଦ୍ୱାରା ପ୍ରଥମେ ସାତ୍ୟକିର ଶିରଚ୍ଛେଦନ କରିବୁଁ । ସାତ୍ୟକି ଆମ୍ଭଙ୍କୁ ଛିନ୍ନବାହୁ ଭୂରିଶ୍ରବା ବୋଲି ମନେ କରିଅଛି ।

ହେ ଭୀମ ! ତୁମ୍ଭେ ତାହାକୁ ପରିତ୍ୟାଗ କର । ସେ ଆମ୍ଭଙ୍କୁ ବିନାଶ କରୁ ନଚେତ୍ ଆମ୍ଭେ ତାହାକୁ ବିନାଶ କରୁଁ । ଭୀମସେନଙ୍କର ବାହୁଦ୍ୱୟ ମଧ୍ୟବର୍ତ୍ତୀ ବଳଶାଳୀ ସାତ୍ୟକି ପାଞ୍ଚାଳପୁତ୍ର ଧୃଷ୍ଟଦ୍ୟୁମ୍ନଙ୍କର ଏହିପରି ଗର୍ବୋକ୍ତି ଶ୍ରବଣ କରି କ୍ରୁଦ୍ଧ ସର୍ପ ସଦୃଶ ନିଃଶ୍ୱାସ ପରିତ୍ୟାଗ କରି କମ୍ପିତ ହେଲେ । ଏହିପରି ସେହି ବାହୁଶାଳୀ ବଳୀୟାନ ବୀରଦ୍ୱୟ ଦୁଇଗୋଟି ବୃଷଭ ସଦୃଶ ଗର୍ଜ୍ଜନ କରନ୍ତେ ବାସୁଦେବ ଓ ଧର୍ମରାଜ ଯୁଧିଷ୍ଠିର ଶୀଘ୍ର ସେଠାରେ ଉପସ୍ଥିତ ହୋଇ ଅତିଶୟ ଯତ୍ନଦ୍ୱାରା ସେ ଦୁହିଁଙ୍କୁ ନିବାରଣ କଲେ । ତତ୍ପରେ ପ୍ରଧାନ ପ୍ରଧାନ କ୍ଷତ୍ରିୟମାନେ ରୋଷାରୁଣନେତ୍ର ସେହି ମହାଧନୁର୍ଦ୍ଧର ଦ୍ୱୟଙ୍କୁ ନିବାରଣ କରି ଯୁଦ୍ଧ ଲାଳସାରେ ବିପକ୍ଷମାନଙ୍କର ସମ୍ମୁଖୀନ ହେଲେ । ୬୮ ।

---

# ୧୯୯ ଅଧ୍ୟାୟ

ସଞ୍ଜୟ କହିଲେ—ହେ ମହାରାଜ ! ଅନନ୍ତର ଦ୍ରୋଣ-ପୁତ୍ର ଯୁଗାନ୍ତ କାଳୀନ ସର୍ବପ୍ରାଣୀକ୍ଷୟକର କାଳପ୍ରେରିତ ଅନ୍ତକ ସଦୃଶ ବିପକ୍ଷ ପକ୍ଷ ମଧ୍ୟରେ ଘୋରତର ମହାମାରୀ ଉପସ୍ଥିତ କଲେ । ୧ । ସେହି ସମୟରେ ସେ ଭଲ୍ଲାସ୍ତ୍ରଦ୍ୱାରା ଶତ୍ରୁକୁଳ ସଂହାର କରି ଦେହ ସମୂହ ଦ୍ୱାରା ଗୋଟିଏ ପର୍ବତ ଉତ୍ପନ୍ନ କଲେ । ଧ୍ୱଜସମୂହ ସେହି ପର୍ବତର ବୃକ୍ଷ ହେଲା । ଶସ୍ତ୍ରସମୂହ ତାହାର ଶୃଙ୍ଗ ହେଲା । ହତ ଗଜସବୁ ତାହାର ଶିଳାଖଣ୍ଡ । ଅଶ୍ୱମାନେ କିଂପୁରୁଷ ଓ ଶରାସନ ସବୁ ଲତାସଦୃଶ ହେଲା । କ୍ରବ୍ୟାଦ ପକ୍ଷିଗଣ ଦ୍ୱାରା ସେହି ପର୍ବତ ନିନାଦିତ ହେଲା ଓ ଭୂତ, ଯକ୍ଷଗଣ ଦ୍ୱାରା ସମାକୁଳ ହେଲା । ୩ । ତଦନନ୍ତର ନରଶ୍ରେଷ୍ଠ ଅଶ୍ୱତ୍ଥାମା ଭୈରବ ରବରେ ଚିତ୍କାର କରି ଆପଣଙ୍କ ପୁତ୍ର ଦୁର୍ଯ୍ୟୋଧନଙ୍କୁ ସ୍ୱୀୟ ପ୍ରତିଜ୍ଞା ପୁନର୍ବାର ଶ୍ରବଣ କରାଇଲେ । ସେ କହିଲେ, ହେ ମହାରାଜ ! ଧର୍ମ କଞ୍ଚୁକା-ବୃତ କୁନ୍ତୀନନ୍ଦନ ଯୁଧିଷ୍ଠିର ଯେତେବେଳେ ସମରପ୍ରବୃତ୍ତ ଆଚାର୍ଯ୍ୟଙ୍କୁ ମିଥ୍ୟା ବାକ୍ୟ କହି ଅସ୍ତ୍ରତ୍ୟାଗ କରାଇ ଅଛନ୍ତି, ସେତେବେଳେ ଆମ୍ଭେ ତାହାଙ୍କର ସାକ୍ଷାତରେ ପାଣ୍ଡବ ସୈନ୍ୟମାନଙ୍କୁ ବିଦ୍ରାବିତ କରିବୁଁ ଓ ସମସ୍ତ ସୈନ୍ୟମାନଙ୍କୁ ବିଦ୍ରାବିତ କରି ସେହି କ୍ରୂର ପାଞ୍ଚାଳନନ୍ଦନଙ୍କୁ

ବିନାଶ କରିବୁଁ । ୭ । ହେ ମହାରାଜ ! ଆପଣ ସୈନ୍ୟମାନଙ୍କୁ ସମରାଭି-ମୁଖୀନ କରନ୍ତୁ । ଆମ୍ଭେ ଆପଣଙ୍କ ନିକଟରେ ସତ୍ୟପ୍ରତିଜ୍ଞା କରୁଅଛୁଁ ଯେ ଅଦ୍ୟ ସମରସ୍ଥଳରେ ଯେ କେହି ଆମ୍ଭ ସହିତ ଯୁଦ୍ଧ କରିବ, ଆମ୍ଭେ ତାହାକୁ ସଂହାର କରିବୁଁ । ୭ । ହେ ରାଜନ୍ ! ଆପଣଙ୍କ ପୁତ୍ର ଦୁର୍ଯ୍ୟୋଧନ, ଗୁରୁ-ପୁତ୍ରଙ୍କର ସେହି ସମସ୍ତ ବାକ୍ୟ ଶ୍ରବଣ କରି ମହା ସିଂହନାଦ ସହ ପାଣ୍ଡବମାନଙ୍କର ମହତ୍ ଭୟ ଉତ୍ପାଦନ ପୂର୍ବକ ସୈନ୍ୟମାନଙ୍କୁ ସମରାଭି-ମୁଖୀନ କଲେ । ୮ । ଅନନ୍ତର ପରିପୂର୍ଣ୍ଣ ଅର୍ଣ୍ଣବଦ୍ୱୟ ସଦୃଶ ପୁନର୍ବାର କୌରବ ଓ ପାଣ୍ଡବ ସୈନ୍ୟମାନଙ୍କ ମଧ୍ୟରେ ଘୋରତର ସଂଗ୍ରାମ ଉପସ୍ଥିତ ହେଲା । ୯ । ସେହି ସମୟରେ କୌରବମାନେ ଦ୍ରୋଣ ପୁତ୍ରମାନଙ୍କର ଆଶ୍ୱାସରେ ଗର୍ବିତ ଓ ପାଞ୍ଚାଳୀମାନେ ଦ୍ରୋଣ ନିଧନରେ ଉତ୍ସାହିତ ହୋଇଥିଲେ । ତେଣୁ ସେହି ଉଭୟପକ୍ଷ ଆପଣା ଆପଣା ପକ୍ଷର ଜୟ ହେବ ବୋଲି ବିବେଚନା କରି ଅତିଶୟ ଆହ୍ଲାଦିତ ଓ ସଂରବ୍ଧ ହେବାରୁ ତୁମୁଳ କୋଳାହଳ ସମୁତ୍ଥିତ ହେଲା ।

ହେ ମହାରାଜ ! ପର୍ବତ ପର୍ବତ ସହିତ, ଅବା ବେଗଗାମୀ ସାଗର ସାଗର ସହିତ ପ୍ରତିଘାତ ପ୍ରାପ୍ତ ହେଲେ ଯେପରି ହୁଏ, ସେହିପରି କୌରବ ଓ ପାଣ୍ଡବ ସୈନ୍ୟମାନେ ପରସ୍ପର ସମାଗତ ହେଲାରୁ ଭୟଙ୍କର ଘଟଣା ଉପସ୍ଥିତ ହେଲା । ୧୨ । ଅନନ୍ତର କୁରୁପାଣ୍ଡବ ସୈନ୍ୟମାନେ ହୃଷ୍ଟଚିତ୍ତ ସହସ୍ର ସହସ୍ର ଶଙ୍ଖ ଓ ଅୟୁତ ଅୟୁତ ଭେରୀ ନିନାଦିତ କଲେ । ୧୩ । କୌରବ ସୈନ୍ୟ ମଧ୍ୟରୁ ମଥ୍ୟମାନ ସାଗର ନିଃସ୍ୱନ ସଦୃଶ ମହାନ୍-ଶବ୍ଦ ସମୁତ୍ଥିତ ହେଲା । ୧୪ । ସେହି ସମୟରେ ଦ୍ରୋଣନନ୍ଦନ ପାଣ୍ଡବ ଓ ପାଞ୍ଚାଳ ସୈନ୍ୟମାନଙ୍କୁ ଲକ୍ଷ୍ୟ କରି ନାରାୟଣାସ୍ତ୍ର ପ୍ରାଦୁର୍ଭାବ କଲେ । ୧୫ । ସେହି ଅସ୍ତ୍ରରୁ ପ୍ରଦୀପ୍ତାସ୍ୟ ପନ୍ନଗଗଣ ସଦୃଶ ପାଣ୍ଡବ ସୈନ୍ୟକ୍ଷୟକାରୀ ସହସ୍ର ସହସ୍ର ଦୀପ୍ତାଗ୍ର ଶରସମୂହ ସମୁତ୍ପନ୍ନ ହେଲା । ମୁହୂର୍ତ୍ତକ ମଧ୍ୟରେ ସୂର୍ଯ୍ୟକିରଣ ସଦୃଶ ସେହି ପ୍ରାଦୁର୍ଭୂତ ବାଣସମୂହ ଦିଙ୍ମଣ୍ଡଳ, ନଭୋମଣ୍ଡଳ ଓ ବିପକ୍ଷ ସୈନ୍ୟମାନଙ୍କୁ ସମାଚ୍ଛନ୍ନ କଲା । ସେହି ସମୟରେ ନିର୍ମଳ ନଭୋମଣ୍ଡଳରେ ଜ୍ୟୋତିଃ ପଦାର୍ଥ ସଦୃଶ ତେଜଃ ପୁଞ୍ଜ, କୃଷ୍ଣ ଲୌହ-ନିର୍ମିତ ଗୁଡ଼ । ଚତୁଃଚକ୍ର ଓ ଦ୍ୱିଚକ୍ର ଶତଘ୍ନୀ ହୁଳ, ଗଦା ଓ ସୂର୍ଯ୍ୟ-ମଣ୍ଡଳାକୃତି କ୍ଷୁରଧାର ଚକ୍ରସମୂହ ପ୍ରକାଶିତ ହେଲା । ପାଣ୍ଡବ ପାଞ୍ଚାଳ ଓ

ସୃଞ୍ଜୟମାନେ ପ୍ରଦୀପ୍ତ ଶରସମୂହ ଦ୍ୱାରା ଗଗନମଣ୍ଡଳକୁ ସମାକୀର୍ଣ୍ଣ ଅବଲୋକନ କରି ଅତିଶୟ ଉଦ୍‌ବିଗ୍ନ ହେଲେ । ୨୦ ।

ହେ ମହାରାଜ ! ଏହି ସମୟରେ ଯେଉଁ ଯେଉଁ ସ୍ଥାନରେ ପାଣ୍ଡବ-ପକ୍ଷୀୟ ମହାରଥୀମାନେ ସମରରେ ପ୍ରବୃତ୍ତ ହୋଇଥିଲେ ସେହି ସେହି ସ୍ଥାନରେ ନାରାୟଣ ଅସ୍ତ୍ରର ପ୍ରଭାବ ପରିବର୍ଦ୍ଧିତ ହେଲା । ୨୧ । ସୈନ୍ୟମାନେ ସେହି ନାରାୟଣାସ୍ତ୍ରଦ୍ୱାରା ବଧ୍ୟମାନ ହୋଇ ଅନଳରେ ଦଗ୍ଧ ହେଲାପ୍ରାୟ ସର୍ବତୋଭାବରେ ନିପୀଡ଼ିତ ହେଲେ । ୨୨ । ଗ୍ରୀଷ୍ମ ସମୟରେ ହୁତାଶନ ଯେପରି ଶୁଷ୍କକାଷ୍ଠ ରାଶିକୁ ଦଗ୍‌ଧ କରେ ସେହିପରି ସେହି ଅସ୍ତ୍ର ବିପକ୍ଷ ସୈନ୍ୟମାନଙ୍କୁ ଦଗ୍‌ଧ କଲା । ୨୩ ।

ହେ ମହାରାଜ ! ଏହିପରି ବର୍ଦ୍ଧମାନ ସେହି ନାରାୟଣାସ୍ତ୍ର ଦ୍ୱାରା ସୈନ୍ୟକ୍ଷୟ ହୁଅନ୍ତେ ଧର୍ମପୁତ୍ର ଯୁଧିଷ୍ଠିର ଅତିଶୟ ତ୍ରାସଯୁକ୍ତ ହେଲେ । ୨୪ । ସେ ସ୍ୱୀୟ ସୈନ୍ୟମାନଙ୍କୁ ଚତୁର୍ଦ୍ଦିଗରେ ଧାବମାନ ଓ ଅଚେତନ ପ୍ରାୟ ଦେଖି ଓ ଧନଞ୍ଜୟଙ୍କୁ ମଧ୍ୟସ୍ଥ ଭାବରେ ଅବସ୍ଥିତ ହେବାର ଅବ-ଲୋକନ କରି ଏହି କଥା କହିଲେ ।

ହେ ଧୃଷ୍ଟଦ୍ୟୁମ୍ନ ! ତୁମ୍ଭେ ସମସ୍ତ ପାଞ୍ଚାଳ ସୈନ୍ୟମାନଙ୍କ ସହିତ ପଳାୟନ କର । ହେ ସାତ୍ୟକି ! ତୁମ୍ଭେ ମଧ୍ୟ ବୃଷ୍ଣି ଓ ଅନ୍ଧକମାନଙ୍କ ଦ୍ୱାରା ପରିବୃତ ହୋଇ ଗୃହକୁ ଗମନ କର । ଧର୍ମାତ୍ମା ବାସୁଦେବ ନିଜେ ଆପଣାର ରକ୍ଷାର ଉପାୟ କରିବେ । ସେ ଯେତେବେଳେ ତ୍ରୈଲୋକ୍ୟର ଶ୍ରେୟଃ ଉପଦେଶ କରନ୍ତି, ତେତେବେଳେ ସେ ଯେ ଆପଣାକୁ ରକ୍ଷାକରି ପାରିବେ ସେ ବିଷୟରେ ଆମ୍ଭର ଆଉ କହିବାର କଅଣ ଅଛି ? ହେ ସୈନ୍ୟମାନେ, ତୁମ୍ଭମାନଙ୍କୁ କହୁଅଛୁଁ, ଆଉ ଯୁଦ୍ଧ କରିବାର ପ୍ରୟୋଜନ ନାହିଁ । ଆମ୍ଭେ ସହୋଦରମାନଙ୍କ ସହିତ ଅନଳରେ ପ୍ରବେଶ କରିବୁଁ । ୨୮ । ଆମ୍ଭେ ଭୀରୁମାନଙ୍କର ଦୁସ୍ତରଣୀୟ, ଭୀଷ୍ମଦ୍ରୋଣରୂପ ସାଗରରୁ ଉତ୍ତୀର୍ଣ୍ଣ ହୋଇ ବର୍ତ୍ତମାନ ସବାନ୍ଧବରେ ଅଶ୍ୱତ୍ଥାମାରୂପ ଗୋଷ୍ପଦ ଜଳରେ ନିମଗ୍ନ ହେଲୁଁ । ଆମ୍ଭେ ମଙ୍ଗଳକାଙ୍କ୍ଷୀ ଆଚାର୍ଯ୍ୟଙ୍କୁ ସମରରେ ସଂହାର କରିଅଛୁଁ ବୋଲି ବୀଭତ୍ସୁ ଆମ୍ଭ ପ୍ରତି ଅତ୍ୟନ୍ତ ଅସନ୍ତୁଷ୍ଟ ହୋଇ ଅଛନ୍ତି । ବର୍ତ୍ତମାନ ତାହାଙ୍କର କାମନା ପୂର୍ଣ୍ଣ ହେଉ ।

ଯେ ସମରରେ ବାଳକ ସୁଭଦ୍ରାନନ୍ଦନଙ୍କୁ ରକ୍ଷା ନ କରି ବହୁସଂଖ୍ୟକ ଶୂର ରଣଦକ୍ଷ ଯୋଦ୍ଧାମାନଙ୍କ ଦ୍ୱାରା ନିପାତିତ କରିଅଛନ୍ତି, କୌରବ ସଭାରେ ଦାସୀ ଭାବାପନ୍ନ ଦ୍ରୌପଦୀ ପ୍ରଶ୍ନ କରନ୍ତେ ଯେ କି ପୁତ୍ରସହ ଉପେକ୍ଷା କରି କୌଣସି ଉତ୍ତର କଲେ ନାହିଁ, ଜୟଦ୍ରଥ-ବଧ ଦିବସରେ ସଂଗ୍ରାମ-ପ୍ରବୃତ୍ତ ଶାନ୍ତବାହନ ଧନଞ୍ଜୟଙ୍କର ବଧାଭିଳାଷୀ ଦୁର୍ଯୋଧନଙ୍କୁ ଯେ ଅମୋଘ କବଚଦ୍ୱାରା ରକ୍ଷା କରିଥିଲେ ଓ ଯେ କି ସିନ୍ଧୁରାଜଙ୍କ ରକ୍ଷା ନିମିତ୍ତ ବିଶେଷ ଯତ୍ନ କରିଥିଲେ, ଯେ କି ଆତ୍ମନିମିତ୍ତ ଯତ୍ନପରାୟଣ ସତ୍ୟଜିତ୍ ପ୍ରମୁଖ ପାଞ୍ଚାଳମାନଙ୍କୁ ବ୍ରହ୍ମାସ୍ତ୍ର ଦ୍ୱାରା ସମୂଳରେ ସଂହାର କରି ଅଛନ୍ତି, କୌରବମାନେ ଆମ୍ଭମାନଙ୍କୁ ଅଧର୍ମ ପୂର୍ବକ ରାଜ୍ୟରୁ ନିର୍ବାସିତ କରନ୍ତେ ଯେ କି ସେମାନଙ୍କୁ ନିବାରଣ କଲେ ନାହିଁ ଓ ଯେ ଯୁଦ୍ଧକାଳରେ ଆମ୍ଭମାନଙ୍କ ପକ୍ଷ ନ ହୋଇ କୌରବ ପକ୍ଷ ଅବଲମ୍ବନ କଲେ, ଯେ କି ଉପଯୁକ୍ତ ପ୍ରକାରେ ଆମ୍ଭମାନଙ୍କ ପ୍ରତି ଅତ୍ୟନ୍ତ ସୌହାର୍ଦ୍ଦ୍ୟଭାବ ପ୍ରକାଶ କରିଥିଲେ, ଆମ୍ଭମାନଙ୍କର ଈଦୃଶ ପରମ ସୁହୃଦ ଦ୍ରୋଣାଚାର୍ଯ୍ୟ ନିହତ ହୋଇ ଅଛନ୍ତି । ତେଣୁ ଆମ୍ଭମାନଙ୍କୁ ସବାନ୍ଧବରେ ଯମାଳୟକୁ ଗମନ କରିବାକୁ ହେବ । ୩୬ ।

କୁନ୍ତୀନନ୍ଦନ ଯୁଧିଷ୍ଠିର ଏହିପରି କହନ୍ତେ ଦାଶାର୍ହ କୃଷ୍ଣ ତତ୍‌କ୍ଷଣାତ୍ ବାହୁ ସଙ୍କେତ ଦ୍ୱାରା ସୈନ୍ୟମାନଙ୍କୁ ସଂଗ୍ରାମରୁ ନିବର୍ତ୍ତିତ କରି କହିଲେ । ହେ ଯୋଦ୍ଧୃଗଣ ! ତୁମ୍ଭେମାନେ ଶୀଘ୍ର ଅସ୍ତ୍ର ସମୂହ ପରିତ୍ୟାଗ କରି ଆପଣା ଆପଣା ବାହନରୁ ଅବତୀର୍ଣ୍ଣ ହୁଅ । ଭଗବାନ ନାରାୟଣ ଏହି ଅସ୍ତ୍ରର ପ୍ରତିକାର ସ୍ୱରୂପ ଏହି ଉପାୟ ବିଧାନ କରି ଅଛନ୍ତି । ୩୮ । ତୁମ୍ଭେମାନେ ଶୀଘ୍ର ନିରସ୍ତ୍ର ହୋଇ ତୁରଙ୍ଗ ହସ୍ତୀ ଓ ରଥରୁ ଅବତରଣ କର । ତାହା ହେଲେ ଏହି ଅସ୍ତ୍ର ତୁମ୍ଭମାନଙ୍କୁ ଆଉ ବିନାଶ କରିବ ନାହିଁ । ୩୯ । ଯୋଦ୍ଧାମାନେ ଯେଉଁ ଯେଉଁ ଠାରେ ଏହି ଅସ୍ତ୍ରର ପ୍ରତିପକ୍ଷରେ ଯୁଦ୍ଧ କରିବେ ସେହି ସେହି ସ୍ଥଳରେ କୌରବମାନେ ପ୍ରବଳ ହେବେ । ୪୦ । ଯେଉଁମାନେ ବାହନରୁ ଅବତୀର୍ଣ୍ଣ ହୋଇ ଅସ୍ତ୍ର ପରିତ୍ୟାଗ କରିବେ ସେମାନଙ୍କୁ ଏହି ଅସ୍ତ୍ର ନିହତ କରିବ ନାହିଁ । ୪୧ । ଯଦି କେହି ମନରେ

ଯୁଦ୍ଧ ଏବଂ ଅସ୍ତ୍ରର ପ୍ରତିକାରାଭିଳାଷୀ ହୁଏ, ତାହାହେଲେ ରସାତଳକୁ ଗମନ କଲେ ମଧ୍ୟ ବିନଷ୍ଟ ହେବ । ୪୨ ।

ହେ ଭରତନନ୍ଦନ ! ଯୋଦ୍ଧାମାନେ ବାସୁଦେବଙ୍କର ଏହି ଉପଦେଶ ବାକ୍ୟ ଶ୍ରବଣ କରି ମନଦ୍ୱାରା ଓ କାର୍ଯ୍ୟ ଦ୍ୱାରା ଅସ୍ତ୍ର ପରିତ୍ୟାଗ କରିବାକୁ ଇଚ୍ଛା କଲେ । ୪୩ । ସେହି ସମୟରେ ଭୀମସେନ ସେମାନଙ୍କୁ ଅସ୍ତ୍ର ତ୍ୟାଗାଭିଳାଷୀ ଅବଲୋକନ କରି ହର୍ଷୋତ୍ପାଦନ ପୂର୍ବକ କହିଲେ । ହେ ବୀରମାନେ ! ତୁମ୍ଭେମାନେ କଦାପି ଅସ୍ତ୍ର ତ୍ୟାଗ କର ନାହିଁ । ଆମ୍ଭେ ସ୍ୱୀୟ ଅସ୍ତ୍ର ପ୍ରଭାବରେ ଦ୍ରୋଣ ପୁତ୍ରଙ୍କର ଅସ୍ତ୍ର ନିବାରଣ କରିବୁଁ । ଅଥବା ଏହି ସୁବର୍ଣ୍ଣମୟୀ ଗୁର୍ବ୍ବୀ ଗଦାଦ୍ୱାରା ଦ୍ରୋଣନନ୍ଦନଙ୍କର ଅସ୍ତ୍ରକୁ ପ୍ରମଥିତ କରି କାଳ ପୁରୁଷ ସଦୃଶ ରଣାଙ୍ଗଣରେ ବିଚରଣ କରିବୁଁ । ୪୬ । ଯେପରି ସୂର୍ଯ୍ୟ ସଦୃଶ ଆଉ କୌଣସି ଜ୍ୟୋତିଷ୍ମାନ୍ ପଦାର୍ଥ ନାହିଁ, ସେହିପରି ଆମ୍ଭ ସଦୃଶ ବୀର ପୁରୁଷ ଏହି ରଣସ୍ଥଳରେ ଆଉ କେହି ନାହିଁ । ୪୭ । କରିକର ସଦୃଶ ଆମ୍ଭର ଏହି ଦୁଇ ବାହୁକୁ ବିଲୋକନ କର । ଏହାଦ୍ୱାରା ଆମ୍ଭେ ହିମାଳୟ ପର୍ବତକୁ ମଧ୍ୟ ଭୂତଳରେ ପାତିତ କରିପାରୁଁ । ସୁରଗଣ ମଧ୍ୟରେ ସୁରରାଜ ଇନ୍ଦ୍ର ଯେପରି ପ୍ରତିଦ୍ୱନ୍ଦୀରହିତ ସେହିପରି ଏହି ମନୁଷ୍ୟମାନଙ୍କ ମଧ୍ୟରେ ଆମ୍ଭେ ଏକା ଅୟୁତ ନାଗସମ ବଳଶାଳୀ । ୪୯ । ଅଦ୍ୟ ସମସ୍ତ ଯୋଦ୍ଧାମାନେ ଅଶ୍ୱତ୍ଥାମାର ଜ୍ୱଳନ୍ତ ଅସ୍ତ୍ର ନିବାରଣ ବିଷୟରେ ଆମ୍ଭର ଏହି ପୀବର ବାହୁ ଦ୍ୱୟର ପରାକ୍ରମ ଅବଲୋକନ କରନ୍ତୁ । ୫୦ । ଯଦି ଏହି ନାରାୟଣାସ୍ତ୍ରର କେହି ପ୍ରତିଯୋଦ୍ଧା ବିଦ୍ୟମାନ ନ ଥାଏ ତେବେ ଅଦ୍ୟ ଆମ୍ଭେ ଏହି କୁରୁ ପାଣ୍ଡୁ ସୈନ୍ୟ ସମକ୍ଷରେ ତାହା ପ୍ରତିପକ୍ଷରେ ଯୁଦ୍ଧ କରିବୁ । ୫୧ । ହେ ଅର୍ଜ୍ଜୁନ ! ହେ ବୀଭତ୍ସୋ ! ତୁମ୍ଭେ ଗାଣ୍ଡୀବ ଧନୁ ପରିତ୍ୟାଗ କର ନାହିଁ । ତାହାହେଲେ ତୁମ୍ଭର ନିର୍ମ୍ମଳ ଯଶର ଲାଘବ ହେବ । ୫୨ । ଅର୍ଜ୍ଜୁନ ଭୀମଙ୍କର ବାକ୍ୟ ଶ୍ରବଣ କରି କହିଲେ । ହେ ଭୀମ ! ନାରାୟଣାସ୍ତ୍ର, ଗୋ ଓ ବ୍ରାହ୍ମଣ ଏମାନଙ୍କ ବିପକ୍ଷରେ ଆମ୍ଭେ ଗାଣ୍ଡୀବ ଧାରଣ କରୁଁ ନାହିଁ । ଏହା ଆମ୍ଭର ଉତ୍କୃଷ୍ଟ ବ୍ରତ । ୫୩ । ଭୀମସେନ ଅର୍ଜ୍ଜୁନଙ୍କର ବାକ୍ୟ ଶ୍ରବଣ କରି ଆଦିତ୍ୟ ସଦୃଶ ତେଜଃ ପ୍ରଦୀପ୍ତ ମେଘ ନିଃସ୍ୱନ ରଥରେ ଆରୋହଣ ପୂର୍ବକ ଅରିନ୍ଦମ ଦ୍ରୋଣ-ପୁତ୍ରଙ୍କ ପ୍ରତିପକ୍ଷରେ ଧାବିତ ହେଲେ । ୫୪ । ସେହି ଲଘୁବିକ୍ରମ କୁନ୍ତୀନନ୍ଦନ

ହସ୍ତଲାଘବପ୍ରଯୁକ୍ତ ନିମେଷ ମାତ୍ରକେ ଦ୍ରୋଣପୁତ୍ରଙ୍କୁ ଶରଜାଲରେ ସମାକୀର୍ଣ୍ଣ କଲେ । ୫୬ । ଦ୍ରୋଣନନ୍ଦନ ଅଭିମୁଖକୁ ଧାବମାନ ଭୀମଙ୍କୁ ହାସ୍ୟ ପୂର୍ବକ ଆହ୍ୱାନ କରି ଅନଳୋଦ୍‌ଗାରୀ ଦୀପ୍ତାସ୍ୟ ପନ୍ନଗ ସଦୃଶ ଅଭିମନ୍ତ୍ରିତ ଦୀପ୍ତାଗ୍ର ଶରସମୂହ ଦ୍ୱାରା ସମାଚ୍ଛନ୍ନ କରନ୍ତେ ସେ କାଞ୍ଚନ ବର୍ଣ୍ଣ ସ୍ଫୁଲିଙ୍ଗ ରାଶିଦ୍ୱାରା ସମାକୀର୍ଣ୍ଣ ହେଲେ । ୫୭ । ହେ ମହାରାଜ ! ସେହି ସମୟରେ ଭୀମସେନଙ୍କ ମୂର୍ତ୍ତି ସନ୍ଧ୍ୟାକାଳୀନ ଖଦ୍ୟୋତ ସମୂହ ପରିବୃତ ପର୍ବତ ସଦୃଶ ଦୃଷ୍ଟ ହେଲା । ୫୮ । ଦ୍ରୋଣପୁତ୍ରଙ୍କର ସେହି ଅସ୍ତ୍ର ଭୀମଙ୍କ ପ୍ରତି ନିକ୍ଷିପ୍ତ ହୁଅନ୍ତେ ଅନଳୋଦ୍ଧୃତ ଅଗ୍ନି ସଦୃଶ ବର୍ଦ୍ଧିତ ହେଲା । ୫୯ । ହେ ମହାରାଜ ! ସେହି ଭୀମପରାକ୍ରମ ବର୍ଦ୍ଧମାନ ନାରାଣାସ୍ତ୍ର ସମସ୍ତ ପାଣ୍ଡବ ସୈନ୍ୟମାନଙ୍କୁ ପରିତ୍ୟାଗ ପୂର୍ବକ କେବଳ ଭୀମଙ୍କୁ ଲକ୍ଷ୍ୟ କରି ମହାଭୟଜନକ ହେଲା । ତାହା ଦେଖି ପାଣ୍ଡବ ପକ୍ଷୀୟ ସମସ୍ତ ଯୋଦ୍ଧା ଶସ୍ତ୍ର ପରିତ୍ୟାଗ ପୂର୍ବକ ହସ୍ତୀ, ଅଶ୍ୱ ଓ ରଥରୁ ଅବତୀର୍ଣ୍ଣ ହେଲେ । ଏହାପରେ ଯୋଦ୍ଧାମାନେ ଅସ୍ତ୍ର ସମୂହ ପରିତ୍ୟାଗ କରି ବାହନରୁ ଭୂତଳରେ ଅବତୀର୍ଣ୍ଣ ହୁଅନ୍ତେ ସେହି ଅସ୍ତ୍ର ପ୍ରବଳ ରୂପରେ କେବଳ ଭୀମସେନଙ୍କ ଉପରେ ନିପତିତ ହେଲା । ସେହି ସମୟରେ ଭୀମଙ୍କୁ ସେହି ଅନଳ ସମାଚ୍ଛନ୍ନ ଅବଲୋକନ କରି ସମସ୍ତ ପ୍ରାଣୀମାନେ ବିଶେଷତଃ ପାଣ୍ଡବମାନେ ହାହାକାର କଲେ । ୬୩ ।

## ୨୦୦ ଅଧ୍ୟାୟ

ସଞ୍ଜୟ କହିଲେ, ହେ ମହାରାଜ ! ଧନଞ୍ଜୟ ଭୀମସେନଙ୍କୁ ନାରାୟଣାସ୍ତ୍ର ନିକ୍ଷେପ ଦ୍ୱାରା ସମାବୃତ ହେବାର ଦେଖି ଅସ୍ତ୍ର ତେଜ ପ୍ରତିଘାତାର୍ଥ ତାହାଙ୍କୁ ବାରୁଣାସ୍ତ୍ର ଦ୍ୱାରା ଆବରଣ କଲେ । ୧ । ସେ ସେହି ଅଗ୍ନିଶିଖା ମଧ୍ୟରେ ବାରୁଣାସ୍ତ୍ର ଦ୍ୱାରା ଭୀମଙ୍କୁ ଆବୃତ କଲେ । ତାହାଙ୍କର ହସ୍ତ ଲାଘବ ହେତୁ ଓ ଅସ୍ତ୍ରତେଜଃ ଦ୍ୱାରା ସମ୍ବୃତଥିବା ହେତୁ ସେହି ଅସ୍ତ୍ର ପ୍ରୟୋଗକୁ କେହି ଲକ୍ଷ୍ୟ କରି ପାରିଲେ ନାହିଁ । ୨ । ଅଶ୍ୱ ଓ ସାରଥି ସମବେତ ଭୀମସେନ ଦ୍ରୋଣପୁତ୍ରଙ୍କର ଅସ୍ତ୍ରରେ ସମାଚ୍ଛାଦିତ ହୋଇ ଅଗ୍ନିମିଳିତ ଜ୍ୱାଳାମାଳୀ ମହାଅଗ୍ନି ତୁଲ୍ୟ ଦୁର୍ନିରୀକ୍ଷ ହେଲେ । ୩ ।

ନିଶାବସାନରେ ଯେପରି ଜ୍ୟୋତିଃ ପଦାର୍ଥ ସମୂହ ଅସ୍ତାଚଳକୁ ଗମନ କରନ୍ତି, ସେହିପରି ରାଶି ରାଶି ପ୍ରଧାସ୍ତ୍ର ବାଣ ସମୂହ ଭୀମସେନଙ୍କ ରଥୋପରି ପତିତ ହେଲା । ୪ । ସେହି ସମୟରେ ଅଶ୍ୱ ଓ ସାରଥିଯୁକ୍ତ ଭୀମସେନ ଦ୍ରୋଣପୁତ୍ରଙ୍କର ଅସ୍ତ୍ରରେ ସଂବୃତ ହୋଇ ଅନଳ ମଧ୍ୟରେ ଅବସ୍ଥାନ କଲେ ।

ହେ ମହାରାଜ ! ଭୀମସେନ ସେହି ଅସ୍ତ୍ରରେ ସମାବୃତ ହୁଅନ୍ତେ ବୋଧ ହେଲା, ଯେପରି ପ୍ରଳୟକାଳୀନ ଅଗ୍ନି ସଚରାଚର ସମସ୍ତ ଜଗତକୁ ଦଗ୍ଧକରି ଭଗବାନଙ୍କ ମୁଖ ମଧ୍ୟରେ ପ୍ରବିଷ୍ଟ ହେଉଅଛି । ୬ । ସୂର୍ଯ୍ୟରେ ଅଗ୍ନି ଅଥବା ଅଗ୍ନିରେ ସୂର୍ଯ୍ୟ ପ୍ରବିଷ୍ଟ ହେଲେ ଯେପରି ପ୍ରତିଭାତ ହୁଏ, ଭୀମସେନ ପ୍ରବିଷ୍ଟ, ସେହି ତେଜୋରାଶି ମଧ୍ୟ ତଦ୍ରୂପ ବୋଧ ହେଲା । ୭ । ସେହି ସମୟରେ ଦ୍ରୋଣନନ୍ଦନଙ୍କୁ ସମରାଙ୍ଗଣରେ ପ୍ରତିଦ୍ୱନ୍ଦୀବିବର୍ଜ୍ଜିତ ପାଣ୍ଡବପକ୍ଷୀୟ ନ୍ୟସ୍ତଶସ୍ତ୍ର ସମସ୍ତ ସୈନ୍ୟମାନଙ୍କୁ ଅଚେତନବତ୍ ଏବଂ ଯୁଧିଷ୍ଠିର ପ୍ରମୁଖ ମହାରଥୀମାନଙ୍କୁ ସମରବିମୁଖ ଓ ଭୀମସେନଙ୍କର ରଥୋପରି ନିରନ୍ତ ଶସ୍ତ୍ରଜାଲ ସମାକୀର୍ଣ୍ଣ ହେବାର ଦେଖି ମହାତେଜା ବାସୁଦେବ ଓ ଅର୍ଜ୍ଜୁନ ରଥରୁ ଲମ୍ଫପ୍ରଦାନ ପୂର୍ବକ ଭୀମାଭିମୁଖକୁ ବେଗରେ ଗମନ କଲେ । ୧୦ । ସେହି ସମୟରେ ମହାବଳଶାଳୀ ସେହି ବୀରଦ୍ୱୟ ମାୟା ବଳରେ ଦ୍ରୋଣପୁତ୍ରଙ୍କର ଅସ୍ତ୍ରସମ୍ଭୂତ ତେଜୋରାଶି ମଧ୍ୟରେ ପ୍ରବେଶ କଲେ । ୧୧ ।

ହେ ମହାରାଜ ! ସେ ଦୁହେଁ ନ୍ୟସ୍ତଶସ୍ତ୍ର ଥିଲେ । ପୁଣି ସେମାନଙ୍କର ଅସାଧାରଣ ବୀର୍ଯ୍ୟବତ୍ତା ଥିଲା । ବାରୁଣାସ୍ତ୍ରର ପ୍ରୟୋଗ ମଧ୍ୟ ହୋଇଥିଲା । ଏଣୁ ସେହି ଅସ୍ତ୍ରଜାତ ଅନଳ ସେ ଦୁହିଁଙ୍କୁ ଦଗ୍ଧ କରିବାକୁ ସମର୍ଥ ହେଲା ନାହିଁ ।

ଅନନ୍ତର ସେହି ନରନାରାୟଣ କୃଷ୍ଣ ଓ ଅର୍ଜ୍ଜୁନ ନାରାୟଣାସ୍ତ୍ରର ଶାନ୍ତି ନିମିତ୍ତ ଭୀମଙ୍କ ନିକଟରୁ ଅସ୍ତ୍ରସମୂହ ଆକର୍ଷଣ ପୂର୍ବକ ତାହାଙ୍କୁ ରଥରୁ ଅବତରଣ କରାଇବା ନିମିତ୍ତ ଆକର୍ଷଣ କଲେ । ୧୩ । ତତେବେଳେ ମହାରଥ ବୃକୋଦର ସେହି ବୀରଦ୍ୱୟଙ୍କ କର୍ତ୍ତୃକ ଆକୃଷ୍ୟ-ମାଣ ହୋଇ ଭୈରବ ରବରେ ନିନାଦ କରନ୍ତେ ଦ୍ରୋଣନନ୍ଦନଙ୍କର ସେହି

ଦୁର୍ଜ୍ଜୟ ଅସ୍ତ୍ର ଭୟାନକରୂପରେ ପରିବର୍ଦ୍ଧିତ ହେଲା । ୧୪ । ସେହି ସମୟରେ ବାସୁଦେବ କହିଲେ, ହେ ପାଣ୍ଡୁନନ୍ଦନ ! ତୁମ୍ଭେ ଯେ ନିବାରିତ ହୋଇ ମଧ୍ୟ ଯୁଦ୍ଧରୁ କ୍ଷାନ୍ତ ହେଉନାହଁ, ଏ ତୁମ୍ଭର କି ପ୍ରକାର ମୋହ ଉପସ୍ଥିତ ହୋଇଅଛି । ଏହି ସମୟରେ କୌରବମାନଙ୍କୁ ସମରରେ ଯଦି ଜୟ କରାଯାଇ ପାରନ୍ତା, ତେବେ ଏହି ନରଶ୍ରେଷ୍ଠମାନଙ୍କ ସହିତ ଏକତ୍ରିତ ହୋଇ ଆମ୍ଭେମାନେ ମଧ୍ୟ ନିଶ୍ଚୟ ଯୁଦ୍ଧ କରନ୍ତୁ । ଦେଖ, ଆମ୍ଭେମାନେ ସମସ୍ତେ ରଥରୁ ଅବତୀର୍ଣ୍ଣ ହୋଇଅଛୁ । ଅତଏବ ତୁମ୍ଭେ ମଧ୍ୟ ଅବିଳମ୍ବେ ରଥରୁ ଅବରୋହଣ କର । ୧୭ ।

ଏହି କଥା କହି କୃଷ୍ଣଭୁଜଙ୍ଗ ସଦୃଶ ନିଃଶ୍ୱାସତ୍ୟାଗରେ ପ୍ରବୃତ୍ତ ରୋଷାରୁଣନୟନ ଭୀମସେନଙ୍କୁ ରଥରୁ ଭୂତଳରେ ଅବରୋହଣ କରାଇଲେ । ୧୮ । ମହାରାଜ ! କୃଷ୍ଣାର୍ଜ୍ଜୁନ ଭୀମସେନଙ୍କଠାରୁ ଶସ୍ତ୍ରାଦି ଆକର୍ଷଣ ପୂର୍ବକ ତାହାଙ୍କୁ ରଥରୁ ଅବତରଣ କରାଇବା ମାତ୍ରେ ସେହି ଶତ୍ରୁତାପନକାରୀ ନାରାୟଣାସ୍ତ୍ର ପ୍ରଶାନ୍ତ ହେଲା । ୧୯ । ଏହିପରି ଉପାୟରେ ସେହି ସୁଦୁଃସହ ଓ ଅତି ଦୁର୍ଜୟ ଅସ୍ତ୍ରତେଜଃ ପ୍ରଶାନ୍ତ ହୁଅନ୍ତେ ପୂର୍ବବତ୍ ମଙ୍ଗଳଜନକ ବାୟୁ ପ୍ରବାହିତ ହେଲା । ଦିକ୍ ସବୁ ନିର୍ମଳ ହେଲା । କୁରଙ୍ଗ ଓ ବିହଙ୍ଗଗଣ ସୁସ୍ଥ ଚିତ୍ତ ଓ ବାହନ ସମୂହ ପ୍ରହୃଷ୍ଟ ହେଲେ । ୨୧ । ବିଶେଷତଃ ସେହି ଅଗ୍ନି ପ୍ରଶାନ୍ତ ହୁଅନ୍ତେ ଭୀମସେନ ନିଶାବସାନରେ ଉଦିତ ସୁଶୋଭିତ ସୂର୍ଯ୍ୟସଦୃଶ ପ୍ରକାଶମାନ ହେଲେ । ୨୨ । ଏହିପରି ନାରାୟଣାସ୍ତ୍ର ନିବୃତ୍ତ ହୁଅନ୍ତେ ହତାବଶିଷ୍ଟ ପାଞ୍ଚାଳମାନେ ଦୁର୍ଯ୍ୟୋଧନଙ୍କର ବିନାଶ କାମନାରେ ପୁନର୍ବାର ରଣାଙ୍ଗଣରେ ଅବସ୍ଥାନ କଲେ ।

ହେ ମହାରାଜ ! ନାରାୟଣାସ୍ତ୍ର ପ୍ରତିହତ ଓ ପାଣ୍ଡବ ସୈନ୍ୟଗଣ ଯୁଦ୍ଧାର୍ଥ ଅବସ୍ଥିତ ହେବାର ଦେଖି ରାଜା ଦୁର୍ଯ୍ୟୋଧନ ଦ୍ରୋଣ-ପୁତ୍ରଙ୍କୁ କହିଲେ, ହେ ଅଶ୍ୱତ୍ଥାମା ! ଦେଖ, ପାଞ୍ଚାଳମାନେ ପୁନର୍ବାର ବିଜୟ କାମନାରେ ସମରାଙ୍ଗଣରେ ଉପସ୍ଥିତ ହୋଇଅଛନ୍ତି । ତୁମ୍ଭେ ଏହି ସମୟରେ ସତ୍ୱର ସେହି ନାରାୟଣାସ୍ତ୍ରକୁ ପ୍ରୟୋଗ କର । ୨୫ । ଦ୍ରୋଣ-ନନ୍ଦନ ଦୁର୍ଯ୍ୟୋଧନଙ୍କର ଏହି ବାକ୍ୟ ଶ୍ରବଣ କରି ଅତି ଦୀନଭାବରେ ନିଃଶ୍ୱାସ ପରିତ୍ୟାଗ କରି ତାହାଙ୍କୁ ଏହିପରି ଉତ୍ତର କଲେ । ୨୬ ।

ହେ ରାଜନ୍ ! ତାହା ଆଜ ହୋଇପାରିବ ନାହିଁ । ଯେହେତୁ ନାରାୟଣାସ୍ତ୍ରକୁ ଦୁଇଥର ପ୍ରୟୋଗ କରିବା ନିଷେଧ ଅଛି । ଯଦି ପ୍ରୟୋଗ କରିବାକୁ ଚେଷ୍ଟା କରାଯାଏ, ତାହାହେଲେ ସେହି ଅସ୍ତ୍ର ପ୍ରୟୋଗକର୍ତ୍ତାଙ୍କୁ ନିଶ୍ଚୟ ବିନାଶ କରେ । ୨୭ । ହେ ମହାରାଜ ! ଆମ୍ଭେ କ'ଣ କହିବୁଁ ? ବାସୁଦେବ କୌଶଳକ୍ରମେ ଏହି ଅସ୍ତ୍ରର ପ୍ରତିଘାତ ଉପାୟ କହିଦେଲେ । ନଚେତ୍ ନିଶ୍ଚୟ ଶତ୍ରୁମାନେ ସଂଗ୍ରାମରେ ନିହତ ହୋଇଥାନ୍ତେ । ୨୮ । ଯୁଦ୍ଧସ୍ଥଳରେ ପରାଜୟ ଅବା ମୃତ୍ୟୁ ହୋଇଥାଏ । କିନ୍ତୁ ପରାଜୟ ଅପେକ୍ଷା ମୃତ୍ୟୁ ଶ୍ରେୟସ୍କର । ଶତ୍ରୁମାନେ ଯେତେବେଳେ ପରାଜିତ ହୋଇ ଶସ୍ତ୍ର ପରିତ୍ୟାଗ କରିଅଛନ୍ତି ତେତେବେଳେ ସେମାନଙ୍କୁ ମୃତବୋଲି ମନେ କରନ୍ତୁ । ୨୯ ।

ଦୁର୍ଯ୍ୟୋଧନ କହିଲେ, ହେ ଅସ୍ତ୍ରଜ୍ଞଗଣଙ୍କର ଅଗ୍ରଗଣ୍ୟ ଆଚାର୍ଯ୍ୟ ପୁତ୍ର ! ଯଦି ଏହି ଅସ୍ତ୍ରକୁ ଦୁଇଥର ପ୍ରୟୋଗ କରିବାର ଉପାୟ ନ ଥାଏ, ତେବେ ଅନ୍ୟାନ୍ୟ ଅସ୍ତ୍ରଦ୍ୱାରା ଗୁରୁହନ୍ତାମାନଙ୍କୁ ବିନାଶ କରନ୍ତୁ । ୩୦ । ଅମିତତେଜା ଭଗବାନ ମହାଦେବଙ୍କଠାରେ ଓ ଆପଣଙ୍କଠାରେ ସମସ୍ତ ଦିବ୍ୟାସ୍ତ୍ର ବର୍ତ୍ତମାନ ଅଛି । ଆପଣ ଇଚ୍ଛାକଲେ କ୍ରୁଦ୍ଧ ଦେବରାଜ ମଧ୍ୟ ଆପଣଙ୍କଠାରୁ ମୁକ୍ତ ହୋଇ ପାରିବେ ନାହିଁ । ୩୧ ।

ଧୃତରାଷ୍ଟ୍ର କହିଲେ—ହେ ସଞ୍ଜୟ ! କପଟତା ଦ୍ୱାରା ଦ୍ରୋଣାଚାର୍ଯ୍ୟ ନିହତ ହୋଇଥିଲେ । ନାରାୟଣାସ୍ତ୍ର ପ୍ରତିହତ ହୁଅନ୍ତେ ଦୁର୍ଯ୍ୟୋଧନ ଉପଯୁକ୍ତ ବାକ୍ୟମାନ ପ୍ରକାଶ କରିଥିଲେ । ଏହା ଶୁଣି ଓ ନାରାୟଣାସ୍ତ୍ରବିମୁକ୍ତ ପାଣ୍ଡବ-ମାନଙ୍କ ପୁନର୍ବାର ଯୁଦ୍ଧାର୍ଥ ସମାଗତ ଦେଖି ଓ ସେମାନଙ୍କ ସେନାମୁଖରେ ବିଚରଣ କରିବାର ଅବଲୋକନ କରି ଦ୍ରୋଣନନ୍ଦନ ଅଶ୍ୱତ୍ଥାମା କି କାର୍ଯ୍ୟ କଲେ ? ୩୩ ।

ସଞ୍ଜୟ କହିଲେ—ହେ ମହାରାଜ ! ସେହି ସିଂହଲାଙ୍ଗୁଳ ପରି-ଶୋଭିତ ରଥାରୂଢ଼ ଅଶ୍ୱତ୍ଥାମା ପୃଷତନନ୍ଦନ ଧୃଷ୍ଟଦ୍ୟୁମ୍ନଙ୍କୁ ପିତୃନିଧନର କାରଣ ବିଦିତ ହୋଇ ଅତିଶୟ କ୍ରୋଧରେ ଭୟ ପରିତ୍ୟାଗ ପୂର୍ବକ ତାହାଙ୍କ ପ୍ରତି ଧାବିତ ହେଲେ । ପ୍ରଥମରେ ବିଂଶତି କ୍ଷୁଦ୍ରକାସ୍ତ୍ର ଦ୍ୱାରା

ତତ୍ପରେ ମହାବେଗଶାଳୀ ପାଞ୍ଚଗୋଟି ବାଣଦ୍ୱାରା ଧୃଷ୍ଟଦ୍ୟୁମ୍ନଙ୍କୁ ବିଦ୍ଧ କଲେ । ୩୫ । ତହୁଁ ଧୃଷ୍ଟଦ୍ୟୁମ୍ନ ମଧ୍ୟ ଜ୍ୱଳନ୍ତ ପାବକ ତୁଲ୍ୟ ସେହି ଦ୍ରୋଣପୁତ୍ରଙ୍କୁ ତିରିଷ୍ଟି ଶରରେ ବିଦ୍ଧ କଲେ । ୩୬ । ସେତେବେଳେ ଅଶ୍ୱତ୍ଥାମା ସୁବର୍ଣ୍ଣ ପୁଙ୍ଖଯୁକ୍ତ ଶିଳାଶାଣିତ ବିଂଶତି ଶରରେ ଧୃଷ୍ଟଦ୍ୟୁମ୍ନଙ୍କର ସାରଥିକୁ ଓ ଚାରିଗୋଟି ନିଶିତ ଶରରେ ତାହାଙ୍କର ଅଶ୍ୱଚତୁଷ୍ଟୟକୁ ବିଦ୍ଧ କଲେ ।୩୭। ଏହାପରେ ଦ୍ରୋଣନନ୍ଦନ ପୁନଃ ପୁନଃ ବିଦ୍ଧ କରି ଭୂମଣ୍ଡଳକୁ କମ୍ପନପୂର୍ବକ ସିଂହନାଦ କଲେ । ତଦ୍ଦ୍ୱାରା ବୋଧ ହେଲା ଯେ, ସେହି ମହାସମରରେ ସେ ଯେପରି ପ୍ରାଣସମୂହର ପ୍ରାଣକୁ ଆକର୍ଷଣ କରିବାରେ ପ୍ରବୃତ୍ତ ହୋଇ ଅଛନ୍ତି । ୩୮ । କୃତାସ୍ତ୍ର ଧୃଷ୍ଟଦ୍ୟୁମ୍ନ ମଧ୍ୟ ଦୃଢ଼ସଂକଳ୍ପ ଓ ଜୀବନରେ ନିରପେକ୍ଷ ହୋଇ ଦ୍ରୋଣନନ୍ଦନଙ୍କ ସମୀପକୁ ଗମନ କଲେ । ୩୯ । ତତ୍ପରେ ଅମିତ-ପରାକ୍ରମଶାଳୀ ରଥିପ୍ରବର ପାଞ୍ଚାଳନନ୍ଦନ ଅଶ୍ୱତ୍ଥାମାଙ୍କର ମସ୍ତକ ଉପରେ ନିରନ୍ତର ଶରବୃଷ୍ଟି କଲେ । ତହିଁରେ ଅଶ୍ୱତ୍ଥାମା ଅତିଶୟ କ୍ରୁଦ୍ଧ ହୋଇ ଧୃଷ୍ଟଦ୍ୟୁମ୍ନଙ୍କୁ ଅସଂଖ୍ୟ ଶରଜାଲରେ ସମାଚ୍ଛନ୍ନ କଲେ ଓ ପିତୃବଧ ଅନୁସ୍ମରଣ ପୂର୍ବକ ଦଶଗୋଟି ବାଣରେ ତାହାଙ୍କର ଶରୀର ବିଦ୍ଧ କଲେ । ୪୧ । ତତ୍ପରେ ଦୁଇଗୋଟି କ୍ଷୁରପ୍ର ଦ୍ୱାରା ତାହାଙ୍କର ଧ୍ୱଜ ଓ ଶରାସନ ଛେଦନ କରି ଅନ୍ୟାନ୍ୟ ଶରଦ୍ୱାରା ତାହାଙ୍କୁ ବିମର୍ଦ୍ଦିତ କଲେ । ୪୨ । ଏହାପରେ ଦ୍ରୋଣନନ୍ଦନ ପାଞ୍ଚାଳ ରାଜକୁମାର ଧୃଷ୍ଟଦ୍ୟୁମ୍ନଙ୍କୁ ଅଶ୍ୱ, ସାରଥି ଓ ରଥ ବିହୀନ କରି ଶରନିକର ଦ୍ୱାରା ତାହାଙ୍କର ଅନୁଚରମାନଙ୍କୁ ବିଦ୍ରାବିତ କଲେ । ୪୩ । ତହୁଁ ପାଞ୍ଚାଳସୈନ୍ୟଗଣ ଆର୍ତ୍ତ ଓ ଉଦ୍ଭ୍ରାନ୍ତ ହୋଇ କେହି କାହାରପ୍ରତି ଦୃଷ୍ଟିପାତ କରିବାକୁ ସମର୍ଥ ହେଲେ ନାହିଁ ।

ଏହି ସମୟରେ ଶିନିକୁଳନନ୍ଦନ ସାତ୍ୟକି ପାଞ୍ଚାଳସୈନ୍ୟମାନଙ୍କୁ ବିମୁଖ ଓ ଧୃଷ୍ଟଦ୍ୟୁମ୍ନଙ୍କୁ ଶରପୀଡ଼ିତ ଅବଲୋକନ କରି ତ୍ୱରାନ୍ୱିତ ହୋଇ ଅଶ୍ୱତ୍ଥାମାଙ୍କ ଅଭିମୁଖକୁ ସ୍ୱୀୟ ରଥ ଚାଳନା କଲେ ଓ ଅସହିଷ୍ଣୁ ହୋଇ ଅଶ୍ୱତ୍ଥାମାଙ୍କୁ ପ୍ରଥମରେ ଆଠଗୋଟି ନିଶିତଶର ଦ୍ୱାରା ପରେ ନାନାପ୍ରକାର ବିଂଶତିଗୋଟି ବାଣଦ୍ୱାରା ନିପୀଡ଼ିତ କଲେ । ୪୬ । ତଦନନ୍ତର ଅଶ୍ୱତ୍-ଥାମାଙ୍କର ସାରଥିକୁ ବିଦ୍ଧ କରି ଚାରିଗୋଟି ବାଣରେ ତାହାଙ୍କର ଅଶ୍ୱ-ଚତୁଷ୍ଟୟକୁ ବିଦ୍ଧ କଲେ ଓ ହସ୍ତଲାଘବ ପୂର୍ବକ ଅନ୍ୟାନ୍ୟ ଶରଦ୍ୱାରା ତାହାଙ୍କର ଧନୁ ଓ ଧ୍ୱଜ ଛେଦନ କଲେ । ୪୭ । ତଦନନ୍ତର ସାତ୍ୟକି

ଦ୍ରୋଣନନ୍ଦନଙ୍କର କାଞ୍ଚନମଣ୍ଡିତ ତୁରଙ୍ଗସମନ୍ୱିତ ରଥକୁ ଚୂର୍ଣ୍ଣିତ କରି ତାହାଙ୍କର ବକ୍ଷଃସ୍ଥଳକୁ ତିଂଶତ୍ ଗୋଟି ବାଣଦ୍ୱାରା ଗାଢ଼ ବିଦ୍ଧ କଲେ ।୪୮। ମହାବଳଶାଳୀ ଅଶ୍ୱତ୍ଥାମା ସାତ୍ୟକଙ୍କ ଶରଜାଲରେ ପରିବୃତ ଓ ଦୃଢ଼ରୂପେ ନିପୀଡ଼ିତ ହୋଇ କର୍ତ୍ତବ୍ୟ ସ୍ଥିରକରି ପାରିଲେ ନାହିଁ । ୪୯ ।

ହେ ମହାରାଜ ! ଗୁରୁପୁତ୍ର ଈଦୃଶ ଅବସ୍ଥା ପ୍ରାପ୍ତ ହୁଅନ୍ତେ ଆପଣଙ୍କପୁତ୍ର ମହାରଥୀ ଦୁର୍ଯ୍ୟୋଧନ, କୃପ ଓ କର୍ଣ୍ଣ ପ୍ରଭୃତି ଶତ ଶତ ଯୋଦ୍ଧା ସହିତ ଶିନିନନ୍ଦନଙ୍କୁ ବେଷ୍ଟନ କଲେ । ୫୦ । ଦୁର୍ଯ୍ୟୋଧନ ବିଂଶତି, କୃପାଚାର୍ଯ୍ୟ ତିନଗୋଟି; କୃତବର୍ମ୍ମା ଦଶଗୋଟି, କର୍ଣ୍ଣ ପାଞ୍ଚଗୋଟି ଦୁଃଶାସନ ଶତଗୋଟି ଓ ବୃଷସେନ ସାତଗୋଟି ବାଣ ତାହାଙ୍କ ପ୍ରତି ନିକ୍ଷେପ କଲେ । ଏହିପରି ସେମାନେ ସମସ୍ତେ ଚତୁର୍ଦ୍ଦିଗରୁ ଅବିଳମ୍ବେ ନିଶିତ ଶରନିକର ଦ୍ୱାରା ସାତ୍ୟକଙ୍କୁ ବିଦ୍ଧ କଲେ । ୫୨ । ତାହା ଦେଖି ସାତ୍ୟକ କ୍ଷଣକ ମଧ୍ୟରେ ସେହି ମହାରଥୀମାନଙ୍କ ରଥଭ୍ରଷ୍ଟ ଓ ପରାଙ୍ମୁଖ କଲେ । ୫୩ । ସେହି ସମୟରେ ଅଶ୍ୱତ୍ଥାମା ସଂଜ୍ଞାଲାଭ କରି ମନୋଦୁଃଖରେ ପୁନଃ ପୁନଃ ନିଃଶ୍ୱାସ ପରିତ୍ୟାଗ ପୂର୍ବକ ଚିନ୍ତା କଲେ ଓ ଅନ୍ୟ ଗୋଟିଏ ରଥରେ ଆରୋହଣ କରି ଶତ ଶତ ଶରଜାଲ ବିକରଣ ପୂର୍ବକ ସାତ୍ୟକଙ୍କୁ ନିବାରଣ କରିବାରେ ପ୍ରବୃତ୍ତ ହେଲେ । ୫୫ ।

ମହାରଥୀ ଶିନିନନ୍ଦନ ଦ୍ରୋଣପୁତ୍ରଙ୍କୁ ପୁନର୍ବାର ରଣସ୍ଥଳକୁ ଆଗମନ କରିବାର ଦେଖି ପୁନଶ୍ଚ ତାହାଙ୍କୁ ରଥ-ବିହୀନ ଓ ବିମୁଖ କଲେ । ୫୬ । ଏହି ସମୟରେ ପାଣ୍ଡବଗଣ ସାତ୍ୟକଙ୍କର ପରାକ୍ରମ ଦର୍ଶନ କରି ପ୍ରୀତ ମାନସରେ ସମସ୍ତେ ଶଙ୍ଖନାଦ ଓ ସିଂହନାଦ କଲେ । ୫୭ । ହେ ମହାରାଜ ! ସତ୍ୟବିକ୍ରମ ସାତ୍ୟକ ଏହିପରି ଅଶ୍ୱତ୍ଥାମାଙ୍କୁ ରଥ-ବିହୀନ କରି ବୃଷସେନଙ୍କର ଅନୁଚର ତିସହସ୍ର ମହାରଥ, କୃପାଚାର୍ଯ୍ୟଙ୍କର ଅୟୁତ ହସ୍ତ୍ୟାରୋହୀ ସୈନ୍ୟ ଓ ଶକୁନିଙ୍କର ପଞ୍ଚଅୟୁତ ଅଶ୍ୱାରୋହୀ ସୈନ୍ୟମାନଙ୍କୁ ସଂହାର କଲେ । ୫୯ । ତହୁଁ ବୀର୍ଯ୍ୟବାନ୍ ଦ୍ରୋଣନନ୍ଦନ କ୍ରୁଦ୍ଧ ହୋଇ ପୁନଶ୍ଚ ଅପର ଗୋଟିଏ ରଥରେ ଆରୋହଣପୂର୍ବକ ସାତ୍ୟକଙ୍କର ବଧ ବାସନାରେ ଅଗ୍ରସର ହେଲେ । ୬୦ । ଶତ୍ରୁଦମନକାରୀ ସାତ୍ୟକ ପୁନର୍ବାର ଦ୍ରୋଣପୁତ୍ରଙ୍କୁ ସମାଗତ ହେବାର ଦେଖି ପୁନଃ ପୁନଃ ଭୟଙ୍କର ନିଶିତ

ଶରସମୂହ ନିକ୍ଷେପପୂର୍ବକ ତାହାଙ୍କର କଳେବର ବିଦାର୍ଣ୍ଣ କଲେ । ମହା-ଧନୁର୍ଦ୍ଧର ଅଶ୍ୱତ୍ଥାମା ଯୁଯୁଧାନଙ୍କର ନାନାପ୍ରକାର ଶର ପ୍ରହାରରେ ଅତିଶୟ ବିଦ୍ଧ ହୋଇ କ୍ରୋଧରେ ଅଧୀର ହେଲେ ଓ ହସି ହସି ତାହାଙ୍କୁ କହିଲେ, ହେ ଶିନିନନ୍ଦନ ! ଗୁରୁଘାତୀ ଧୃଷ୍ଟଦ୍ୟୁମ୍ନ ପ୍ରତି ତୁମ୍ଭର ଯେ ସ୍ନେହ ଅଛି ତାହା ଆମ୍ଭେ ଜାଣୁ । କିନ୍ତୁ ଆମ୍ଭେ କବଳିତ କଲେ ତୁମ୍ଭେ ତାହାଙ୍କୁ ରକ୍ଷାକରି ପାରିବ ନାହିଁ କିମ୍ବା ଆପଣାକୁ ମଧ୍ୟ ରଖିବାକୁ ସମର୍ଥ ହେବ ନାହିଁ । ୬୩ । ଆମ୍ଭେ ତୁମ୍ଭ ନିକଟରେ ସତ୍ୟ ଓ ତପସ୍ୟା ଦ୍ୱାରା ଶପଥ କରି କହୁଅଛୁଁ ଯେ ସମସ୍ତ ପାଞ୍ଚାଳମାନଙ୍କୁ ବିନାଶ ନ କରି ଆମ୍ଭେ କଦାଚ ଶାନ୍ତିଲାଭ କରିବୁ ନାହିଁ । ୬୪ । ପାଣ୍ଡବ ଓ ବୃଷ୍ଣିମାନଙ୍କର ଯେତେ ସୈନ୍ୟ ଅଛନ୍ତି ସେ ସମସ୍ତଙ୍କୁ ଏକତ୍ରିତ କର । ଆମ୍ଭେ ନିଶ୍ଚୟ ସେମାନଙ୍କୁ ବଧ କରିବୁଁ । ୬୫ । ଏହି କଥା କହି ଦ୍ରୋଣନନ୍ଦନ ସୂର୍ଯ୍ୟରଶ୍ମି ପ୍ରଭ ସୁତୀକ୍ଷ୍ଣ ଗୋଟିଏ ଉତ୍କୃଷ୍ଟ ଶର ଗ୍ରହଣପୂର୍ବକ ଇନ୍ଦ୍ର ବୃତ୍ରାସୁର ପ୍ରତି ଅଶନି ନିକ୍ଷେପ କଲାପ୍ରାୟ ସାତ୍ୟକିଙ୍କ ପ୍ରତି ନିକ୍ଷେପ କଲେ । ୬୬ । ଦ୍ରୋଣପୁତ୍ର ନିକ୍ଷିପ୍ତ ସେହି ଶର ସାତ୍ୟକିଙ୍କ କବଚସମବେତ କଳେବରକୁ ଭେଦକରି ଭୁଜଙ୍ଗ ନିଃଶ୍ୱାସ ପରିତ୍ୟାଗ କରୁ କରୁ ଯେପରି ବିଳ ମଧ୍ୟରେ ପ୍ରବିଷ୍ଟ ହୁଏ ସେହିପରି ଭୂଗର୍ଭରେ ପ୍ରବିଷ୍ଟ ହେଲା ।

ମହାବୀର ସାତ୍ୟକି ଭିନ୍ନବର୍ମ୍ମା, ବିକ୍ଷତ ଓ ରକ୍ତାକ୍ତ କଳେବର ହୋଇ ଶରାସନ ପରିତ୍ୟାଗ ପୂର୍ବକ ପୀଡ଼ିତ ଗଜ ସଦୃଶ ଅବସନ୍ନ ହୋଇ ରଥମାଡ଼ରେ ଉପବେଶନ କଲେ । ତାହାଙ୍କର ସାରଥି ସତ୍ୱର ତାହାଙ୍କୁ ଦ୍ରୋଣପୁତ୍ରଙ୍କ ନିକଟରୁ ସ୍ଥାନାନ୍ତରିତ କଲା । ୬୯ । ତେତେବେଳେ ପରନ୍ତପ ଅଶ୍ୱତ୍ଥାମା ସୁପୁଙ୍ଖାନ୍ୱିତ ଆନତପର୍ବ ଗୋଟିଏ ଶରଦ୍ୱାରା ଧୃଷ୍ଟଦ୍ୟୁମ୍ନଙ୍କର ଭ୍ରୂମଧ୍ୟରେ ପ୍ରହାର କଲେ । ୭୦ । ପାଞ୍ଚାଳନନ୍ଦନ ପୂର୍ବରୁ ଅତିଶୟ ବିଦ୍ଧ ହୋଇଥିଲେ । ବର୍ତ୍ତମାନ ଅତିଶୟ ଶରପୀଡ଼ିତ ହୋଇ ବିଷଣ୍ଣ ଭାବରେ ଧ୍ୱଜଯଷ୍ଟି ଅବଲମ୍ବନ କଲେ । ୭୧ ।

ହେ ମହାରାଜ ! ସିଂହ-ପୀଡ଼ିତ ହସ୍ତୀସଦୃଶ ଧୃଷ୍ଟଦ୍ୟୁମ୍ନଙ୍କୁ ଅଶ୍ୱତ୍ଥାମାଙ୍କର ଶରସମୂହରେ ନିପୀଡ଼ିତ ହେବାର ଦେଖି ଅର୍ଜ୍ଜୁନ, ଭୀମସେନ, ପୁରୁବଂଶୀୟ ବୃଦ୍ଧକ୍ଷତ୍ର, ଚେଦିଦେଶୀୟ ଯୁବରାଜ ଓ ମାଳବରାଜ

ସୁଦର୍ଶନ, ଏହି ପାଞ୍ଚଜଣ ଶୂରରଥୀ ଶରାସନ ଗ୍ରହଣ ପୂର୍ବକ ପାଣ୍ଡବପକ୍ଷରୁ ନିର୍ଗତ ହୋଇ ହାହାକାର କରୁକରୁ ଦ୍ରୁତବେଗରେ ଗମନ କରି ଦ୍ରୋଣ-ନନ୍ଦନଙ୍କୁ ଚତୁର୍ଦ୍ଦିଗରୁ ପରିବେଷ୍ଟନ କଲେ । ୭୨ । ସେମାନେ ବିଂଶତି ପଦ ଅଗ୍ରସର ହୋଇ ପ୍ରତ୍ୟେକେ ଦ୍ରୋଣ-ପୁତ୍ରଙ୍କୁ ପାଞ୍ଚ ପାଞ୍ଚ ଗୋଟି ବାଣରେ ଏକସମୟରେ ପ୍ରହାର କଲେ । ୭୫ । ଅଶ୍ୱତ୍ଥାମା ଆଶୀବିଷ ସଦୃଶ ପଞ୍ଚବିଂଶତି ଗୋଟି ଶରଦ୍ୱାରା ସେମାନଙ୍କ ନିକ୍ଷିପ୍ତ ପଞ୍ଚବିଂଶତି ବାଣକୁ ଯୁଗପତ୍ ଛେଦନ କଲେ ।୭୬। ତତ୍ପରେ ସେ ସାତ ଗୋଟି ନିଶିତ ଶରରେ ପୌରବ ବୃଦ୍ଧକ୍ଷତ୍ରଙ୍କୁ, ତିନିଗୋଟି ବାଣରେ ମାଳବ ରାଜଙ୍କୁ, ଗୋଟିଏ ବାଣରେ ଅର୍ଜ୍ଜୁନଙ୍କୁ ଓ ଛଅଗୋଟି ବାଣରେ ବୃକୋଦରଙ୍କୁ ନିପୀଡ଼ିତ କଲେ । ୭୭ ।

ଅନନ୍ତର ପାଣ୍ଡବପକ୍ଷୀୟ ମହାରଥୀମାନେ କେତେବେଳେ ଏକ ସମୟରେ କେତେବେଳେ ବା ପୃଥକ୍ ପୃଥକ୍ ଭାବରେ ସ୍ୱର୍ଣ୍ଣପୁଙ୍ଖାନ୍ୱିତ ଶିଳାଶାଣିତ ଶରସମୂହ ଦ୍ୱାରା ଅଶ୍ୱତ୍ଥାମାଙ୍କୁ ବିଦ୍ଧ କଲେ । ୭୮ । ପୁନଶ୍ଚ ଚେଦିଦେଶୀୟ ଯୁବରାଜ ବିଂଶତି ଗୋଟି ଶରଦ୍ୱାରା, ଅର୍ଜ୍ଜୁନ ଆଠ ଗୋଟି ଶରଦ୍ୱାରା ଓ ଅନ୍ୟମାନେ ତିନିତିନି ଗୋଟି ବାଣଦ୍ୱାରା ଅଶ୍ୱତ୍ଥାମାଙ୍କୁ ପ୍ରହାର କଲେ । ୭୯ । ତେତେବେଳେ ଦ୍ରୋଣ-ପୁତ୍ର ଅର୍ଜ୍ଜୁନଙ୍କୁ ଛଅଗୋଟି ବାଣରେ, ବାସୁଦେବ ଓ ଭୀମସେନଙ୍କୁ ଦଶ ଦଶ ଗୋଟି ବାଣରେ, ମାଳବ ଓ ପୌରବମାନଙ୍କୁ ଦୁଇଦୁଇ ଗୋଟି ବାଣରେ ବିଦ୍ଧ କଲେ । ୮୦ । ତଦନନ୍ତର ଛଅ ଗୋଟି ବାଣରେ ଭୀମଙ୍କର ସାରଥିକୁ ବିଦ୍ଧ କଲେ ଓ ଅସଂଖ୍ୟ ଶରଦ୍ୱାରା ଅର୍ଜ୍ଜୁନଙ୍କୁ ବିଦ୍ଧ କରି ପୁନର୍ବାର ଦୁଇଗୋଟି ବାଣରେ ଭୀମସେନଙ୍କର ଧ୍ୱଜ ଓ କାର୍ମ୍ମୁକ ଛେଦନ ପୂର୍ବକ ଘୋରତର ସିଂହନାଦ କଲେ । ୮୧ ।

ହେ ମହାରାଜ ! ଦ୍ରୋଣନନ୍ଦନ ତାଦୃଶ ଭାବରେ ନିଶିତ ଓ ପୀତ-ଧାର ଶରସମୂହ ନିକ୍ଷେପ କରନ୍ତେ ତାହାଙ୍କର ଅଗ୍ର ଓ ପଶ୍ଚାତ୍ ଦିଗରୁ ଭୂମଣ୍ଡଳ, ନଭୋମଣ୍ଡଳ ଓ ନକ୍ଷତ୍ରମଣ୍ଡଳ ପ୍ରଭୃତି ସମସ୍ତ ଦିକ୍ ବିଦିକ୍ କେବଳ ଭୟାନକ ଶରଜାଳରେ ସମାଚ୍ଛନ୍ନ ହୋଇଥିବାର ବୋଧ ହେଲା । ୮୨ । ତତ୍ପରେ ସେହି ଇନ୍ଦ୍ରତୁଲ୍ୟ ପରାକ୍ରମୀ, ତୀବ୍ରତେଜା ଅଶ୍ୱତ୍ଥାମା ସ୍ୱୀୟ

ରଥସମୀପସ୍ଥ ସୁଦର୍ଶନଙ୍କର ଇନ୍ଦ୍ରଧ୍ୱଜସଦୃଶ ଭୁଜଯୁଗଳ ଓ ମସ୍ତକକୁ ତିନିଗୋଟି କ୍ଷୁରାସ୍ତ୍ର ଦ୍ୱାରା ଯୁଗପତ୍ ଛେଦନ କଲେ ଓ ପୌରବ ବୃଦ୍ଧକ୍ଷତ୍ରଙ୍କ ପ୍ରତି ଗୋଟିଏ ଶକ୍ତି ନିକ୍ଷେପପୂର୍ବକ ବାଣଦ୍ୱାରା ତାହାଙ୍କର ରଥକୁ ତିଳ ତିଳ କରି ଛେଦନ କଲେ ଓ ଭଲ୍ଲାସ୍ତ୍ରରେ ତାହାଙ୍କର ଚନ୍ଦନଚର୍ଚ୍ଚିତ ବାହୁ ଓ ମସ୍ତକକୁ ଛେଦନ କଲେ । ୮୪ । ତତ୍ପରେ ନୀଳୋତ୍ପଳସମଦ୍ୟୁତି ଯୁବା ଚେଦିରାଜଙ୍କୁ ଆକ୍ରମଣପୂର୍ବକ ଜ୍ୱଳନ୍ତ ଅନଳତୁଲ୍ୟ ବାଣଦ୍ୱାରା ବିଦ୍ଧ କରି ଅଶ୍ୱ ଓ ସାରଥି ସହିତ ତାହାଙ୍କୁ ଯମସଦନକୁ ପ୍ରେରଣ କଲେ । ୮୫ । ପାଣ୍ଡୁନନ୍ଦନ ମହାବାହୁ ଭୀମସେନ ମାଳବ, ପୌରବ ଓ ଯୁବରାଜ ଚେଦିରାଜଙ୍କୁ ଦ୍ରୋଣପୁତ୍ରଙ୍କ କର୍ତ୍ତୃକ ନିଜ ସମକ୍ଷରେ ନିହତ ହେବାର ଦେଖି ଅତିଶୟ କ୍ରୁଦ୍ଧ ହେଲେ ଓ ସେହି ଶତ୍ରୁତାପନ ଭୀମସେନ କ୍ରୁଦ୍ଧ ଭୁଜଙ୍ଗସଦୃଶ ଶତଶତ ସୁତୀକ୍ଷ୍ଣ ଶରସମୂହ ସନ୍ଧାନପୂର୍ବକ ଦ୍ରୋଣନନ୍ଦନଙ୍କୁ ସମାଚ୍ଛନ୍ନ କଲେ । ତହୁଁ ମହାତେଜା ଅଶ୍ୱତ୍ଥାମା କ୍ରୋଧରେ ଅଧୀର ହୋଇ ଭୀମନିକ୍ଷିପ୍ତ ସେହି ଶରବୃଷ୍ଟି ନିବାରଣ କରି ନିଶିତଶରସମୂହ ଦ୍ୱାରା ତାହାଙ୍କୁ ବିଦ୍ଧ କଲେ । ତେତେବେଳେ ମହାବଳଶାଳୀ ମହାବାହୁ ବୃକୋଦର କ୍ଷୁରପାସ୍ତ୍ରରେ ଅଶ୍ୱତ୍ଥାମାଙ୍କ ଶରାସନ ଛେଦନ କରି ଅନ୍ୟ ଶରଦ୍ୱାରା ତାହାଙ୍କୁ ବିଦ୍ଧ କଲେ । ମହାମନା ଦ୍ରୋଣନନ୍ଦନ ସେହି ଛିନ୍ନଚାପ ପରିତ୍ୟାଗପୂର୍ବକ ଅନ୍ୟ ଗୋଟିଏ ଶରାସନ ଗ୍ରହଣ କରି ଅସଂଖ୍ୟ ଶରଜାଳରେ ଭୀମଙ୍କୁ ବିଦ୍ଧ କଲେ । ଏହିପରି ମହାବଳଶାଳୀ ପରାକ୍ରାନ୍ତ ଅଶ୍ୱତ୍ଥାମା ଓ ଭୀମସେନ ଏ ଦୁହେଁ ସମରାଙ୍ଗଣରେ ବୃଷ୍ଟିମାନ୍ ବାରିଦଯୁଗଳ ତୁଲ୍ୟ ଅନବରତ ଶରବର୍ଷଣ କଲେ । ସେହି ସମୟରେ ଭୀମନାମାଙ୍କିତ ସୁବର୍ଣ୍ଣପୁଙ୍ଖ ଶିଳାଶାଣିତ ଶରସମୂହ ମେଘମଣ୍ଡଳୀ ଭାସ୍କରଙ୍କୁ ଆଚ୍ଛାଦନ କଲାପ୍ରାୟ ଅଶ୍ୱତ୍ଥାମାଙ୍କୁ ସମାବୃତ କଲା । ସେହିରୂପ ଦ୍ରୋଣନନ୍ଦନନିର୍ମୁକ୍ତ ଶତଶତ ସହସ୍ର ସହସ୍ର ସନ୍ନତପର୍ବ ଶରଜାଳଦ୍ୱାରା କ୍ଷଣକ ମଧ୍ୟରେ ଭୀମସେନ ମଧ୍ୟ ସମାକୀର୍ଣ୍ଣ ହେଲେ ।

ହେ ମହାରାଜ ! ଭୀମସେନ ସମରଦକ୍ଷ ଅଶ୍ୱତ୍ଥାମାଙ୍କର ଶରସମୂହରେ ଏହିପରି ସମାଚ୍ଛନ୍ନ ହୋଇ ମଧ୍ୟ ବ୍ୟଥିତ ହେଲେ ନାହିଁ । ଏହା ଅଦ୍ଭୁତ ସଦୃଶ ହେଲା । ତତ୍ପରେ ମହାବାହୁ ଭୀମସେନ ଯମଦଣ୍ଡସଦୃଶ କାଞ୍ଚନବିଭୂଷିତ ନିଶିତ ଦଶଗୋଟି ନାରାଚ ଅଶ୍ୱତ୍ଥାମାଙ୍କ ପ୍ରତି ନିକ୍ଷେପ

କଲେ । ସେହି ନାରାଚସମୂହ ଦ୍ରୋଣପୁତ୍ରଙ୍କର ଜତ୍ରୁଦେଶ ଭେଦ କରି ବଲ୍ମୀକପ୍ରବେଶକାରୀ ଭୁଜଙ୍ଗସଦୃଶ ବେଗରେ ଭୂଗର୍ଭରେ ପ୍ରବିଷ୍ଟ ହେଲା । ଅଶ୍ୱତ୍ଥାମା ମହାତ୍ମା ପାଣ୍ଡୁନନ୍ଦନଙ୍କର ନାରାଚସମୂହରେ ଗାଢ଼ବିଦ୍ଧ ହୋଇ ଧ୍ୱଜଯଷ୍ଟି ଅବଲମ୍ବନପୂର୍ବକ ନିମୀଳିତ ନେତ୍ରରେ ଅବସ୍ଥାନ କଲେ । ହେ ମହାରାଜ ! ମୁହୂର୍ତ୍ତିକ ପରେ ସେ ସଂଜ୍ଞା ଲାଭକରି ଶୋଣିତାକ୍ତ କଳେବରରେ ଅତିଶୟ ରୋଷାନ୍ୱିତ ହୋଇ ଯୁଦ୍ଧାର୍ଥ ପ୍ରସ୍ତୁତ ହେଲେ । ମହାତ୍ମା ଭୀମଙ୍କ କର୍ତ୍ତୃକ ଦୃଢ଼ରୂପେ ଅଭିହତ ହୋଇ ତାହାଙ୍କ ରଥପ୍ରତି ମହାବେଗରେ ଗମନ କଲେ । ସେହି ସମୟରେ ବିଷଧରସଦୃଶ ତୀକ୍ଷ୍ଣତର ଗୋଟିଏ ଶରକୁ ଆକର୍ଣ୍ଣ ସନ୍ଧାନ କରି ଭୀମଙ୍କ ପ୍ରତି ନିକ୍ଷେପ କଲେ । ସମରଶ୍ଳାଘୀ ପାଣ୍ଡୁନନ୍ଦନ ଭୀମସେନ ମଧ୍ୟ ତାହାଙ୍କର ସେହି ଶରନିକ୍ଷେପକୁ ଲକ୍ଷ୍ୟ ନ କରି ଉଗ୍ରତର ଶରବୃଷ୍ଟି କଲେ । ତହୁଁ ଅଶ୍ୱତ୍ଥାମା କୁପିତ ହୋଇ ଭୀମସେନଙ୍କର ଶର ଛେଦନପୂର୍ବକ ନିଶିତ ଶରସମୂହ ଦ୍ୱାରା ତାହାଙ୍କ ବକ୍ଷଃସ୍ଥଳରେ ପ୍ରହାର କଲେ । ତେତେବେଳେ ବୃକୋଦର କ୍ରୋଧରେ ଅଧୀର ହୋଇ ଅନ୍ୟ ଗୋଟିଏ କାର୍ମୁକ ଗ୍ରହଣ କରି ତୀକ୍ଷ୍ଣତର ପାଞ୍ଚଗୋଟି ବାଣରେ ଦ୍ରୋଣନନ୍ଦନଙ୍କୁ ବିଦ୍ଧ କଲେ ।

ଏହିପରି ଉଭୟେ କ୍ରୋଧରେ ଅରୁଣନୟନ ହୋଇ ବର୍ଷାକାଳୀନ ଜଳଧରଦ୍ୱୟ ସଦୃଶ ନିରନ୍ତର ଶରବର୍ଷଣପୂର୍ବକ ପରସ୍ପର ପରସ୍ପରକୁ ସମାଚ୍ଛନ୍ନ ଓ ଅତିଶୟ ସଂରମ୍ଭ ସହ ପରସ୍ପର ପ୍ରତିକାରାଭିଳାଷୀ ହୋଇ ଘୋରତର ତଳ ଶବ୍ଦଦ୍ୱାରା ପରସ୍ପରକୁ ତ୍ରାସିତ କରି ଯୁଦ୍ଧ କଲେ । ଅନନ୍ତର ଅଶ୍ୱତ୍ଥାମା ଭୀମସେନଙ୍କୁ ଶର ନିକ୍ଷେପ କରିବାର ଦେଖି ଶାରଦୀୟ ମଧ୍ୟାହ୍ନ-କାଳୀନ ଦୀପ୍ତରଶ୍ମି ଦିବାକର ସଦୃଶ ପ୍ରଦୀପ୍ତ ହୋଇ ସୁବର୍ଣ୍ଣାଳଂକୃତ ଶରାସନକୁ ବିସ୍ତାରଣ କରି ତାହାଙ୍କୁ ପ୍ରତିଶର ନିକ୍ଷେପ କଲେ । ୧୦୭ । ତତ୍ପରେ ସେ ଶର ଗ୍ରହଣ, ସନ୍ଧାନ, ବିକର୍ଷଣ ଓ ବିମୋଚନ କରନ୍ତେ ମନୁଷ୍ୟମାନେ କେହି ତାହାଙ୍କର ଅବକାଶ ଲକ୍ଷ୍ୟ କରିବାକୁ ସମର୍ଥ ହେଲେ ନାହିଁ । ୧୦୮ । ସେହି ସମୟରେ ବାଣବର୍ଷଣକର ଦ୍ରୋଣନନ୍ଦନଙ୍କର ଅସ୍ତ୍ର-ସମୂହ ଅଲାତଚକ୍ର ସଦୃଶ ମଣ୍ଡଳାକାରରେ ପ୍ରତିଭାତ ହେଲା । ୧୦୯ । ତାହାଙ୍କର ଶରାସନନିଃସୃତ ଶତଶତ ସହସ୍ର ସହସ୍ର ଶରସମୂହ ନଭୋ-ମଣ୍ଡଳରେ ଶଲଭଶ୍ରେଣୀ ସଦୃଶ ଦୃଷ୍ଟ ହେଲା । ୧୧୦ ।

ହେ ମହାରାଜ ! ସେହିସକଳ କାଞ୍ଚନବିଭୂଷିତ ଭୟଙ୍କର ଶର ନିରନ୍ତର ଭୀମସେନଙ୍କ ରଥୋପରି ପତିତ ହେଲା । ୧୧୧ । କିନ୍ତୁ ସେହି-ଠାରେ ଆମ୍ଭେମାନେ ଭୀମସେନଙ୍କର ଅଦ୍ଭୁତ ବଳ, ବିକ୍ରମ, ଶୌର୍ଯ୍ୟ, ପ୍ରଭାବ ଓ କାର୍ଯ୍ୟ ଅବଲୋକନ କଲୁଁ । ୧୧୨ । ସେ ଚତୁର୍ଦ୍ଦିଗରେ ଆପତିତ ସେହି ମହାଭୟଙ୍କର ଶରବୃଷ୍ଟିକୁ ବର୍ଷାକାଳୀନ ମେଘନିର୍ମୁକ୍ତ ପ୍ରକୃତ ବାରି ବୃଷ୍ଟି ବୋଲି ମନେ କଲେ । ଭୀମପରାକ୍ରମ ଭୀମସେନ ମଧ୍ୟ ଦ୍ରୋଣପୁତ୍ରଙ୍କର ବଧ-ବାସନାରେ ବର୍ଷାକାଳୀନ ମେଘସଦୃଶ ଶରବର୍ଷଣ କଲେ । ୧୧୪ । ହେ ମହାରାଜ ! ସେହି ସମୟରେ ତାହାଙ୍କର ସୁବର୍ଣ୍ଣପୃଷ୍ଠଶୋଭିତ ପୁନଃପୁନଃ ଆକୃଷ୍ୟମାଣ ସେହି ଭୀଷଣ ଶରାସନ ଦ୍ୱିତୀୟ ଇନ୍ଦ୍ରଧନୁ ତୁଲ୍ୟ ଶୋଭା ପାଇଲା । ୧୧୫ । ସେହି ଶରାସନରୁ ନିରନ୍ତର ନିର୍ଗତ ଶତଶତ ସହସ୍ର ସହସ୍ର ଶରସମୂହ ସମରଶୋଭୀ ଦ୍ରୋଣନନ୍ଦନଙ୍କୁ ସମାଚ୍ଛନ୍ନ କଲା । ୧୧୬ । ସେମୁହେଁ ଏହିପରି ଶରଜାଲ ବିକିରଣ କରନ୍ତେ ବାୟୁ ମଧ୍ୟ ତାହା ମଧ୍ୟରେ ପ୍ରବେଶ କରିବାକୁ ଅସମର୍ଥ ହେଲା । ୧୧୭ ।

ଅନନ୍ତର ଅଶ୍ୱତ୍ଥାମା ଭୀମଙ୍କର ବଧାର୍ଥୀ ହୋଇ ତୈଳଧୌତ ନିର୍ମଳାଗ୍ର କାଞ୍ଚନବିଭୂଷିତ ଶରସମୂହ ନିକ୍ଷେପ କଲେ । ୧୧୮ । ବଳବାନ୍ ପାଣ୍ଡୁନନ୍ଦନ ଭୀମସେନ ଅଶ୍ୱତ୍ଥାମାଙ୍କ ଅପେକ୍ଷା ବିଶେଷ ହସ୍ତଲାଘବ ପ୍ରକାଶ ପୂର୍ବକ ସେହି ସମସ୍ତ ବାଣକୁ ଆକାଶ ମାର୍ଗରେ ସ୍ୱୀୟ ଶରପ୍ରଭାବରେ ତିନି ତିନି ଖଣ୍ଡ କରି ଛେଦନ କଲେ ଓ କ୍ରୋଧରେ ରହରହ ବୋଲି କହି ଅଶ୍ୱତ୍ଥାମାଙ୍କ ବଧାର୍ଥ ଅତି ଉଗ୍ର ବାକ୍ୟସମୂହ ବିମୋଚନ କଲେ । ୧୨୦ । ସେହି ସମୟରେ ମହାସ୍ତ୍ରବେତ୍ତା ଦ୍ରୋଣପୁତ୍ର ଅଶ୍ୱତ୍ଥାମା ଅସ୍ତ୍ରମାୟା ପ୍ରଭାବରେ ଭୀମନିର୍ମୁକ୍ତ ସେହି ଶରବୃଷ୍ଟିକୁ ଅବଲମ୍ବେ ନିବାରଣ କରି ତାହାଙ୍କର ଶରାସନକୁ ଛେଦନ କଲେ ଓ କ୍ରୋଧଭରରେ ତାହାଙ୍କୁ ମଧ୍ୟ ଅସଂଖ୍ୟ ଶରଜାଲରେ ବିଦ୍ଧ କଲେ । ବଳଶାଳୀ ବୃକୋଦର ଛିନ୍ନଶରାସନ ହୋଇ ସୁଦାରୁଣ ଗୋଟିଏ ଶକ୍ତି ଗ୍ରହଣ ପୂର୍ବକ ବେଗରେ ଅଶ୍ୱତ୍ଥାମାଙ୍କର ରଥ ଉପରକୁ ନିକ୍ଷେପ କଲେ । ମହୋଲ୍‌କା ସଦୃଶ ସେହି ଶକ୍ତିକୁ ଆଗମନ କରିବାର ଦେଖି ଦ୍ରୋଣନନ୍ଦନ ହସ୍ତଲାଘବ ପ୍ରଦର୍ଶନପୂର୍ବକ ଦଶ ଗୋଟି ଶାଣିତ ଶରଦ୍ୱାରା ସହସା ତାହାକୁ ଛେଦନ କଲେ ।

ଏହି ଅବକାଶରେ ବୃକୋଦର ଦୃଢ଼ତର ଗୋଟିଏ ଶରାସନ ଗ୍ରହଣ କରି ହାସ୍ୟପୂର୍ବକ ଶରନିକରରେ ଦ୍ରୋଣନନ୍ଦନଙ୍କୁ ବିଦ୍ଧ କଲେ । ତହୁଁ ଅଶ୍ୱତ୍ଥାମା ଆନତପର୍ବ ଗୋଟିଏ ଶରରେ ଭୀମଙ୍କ ସାରଥିର ଲଲାଟଦେଶ ବିଦୀର୍ଣ୍ଣ କଲେ । ସାରଥି ବଳଶାଳୀ ଦ୍ରୋଣକୁମାର କର୍ତ୍ତୃକ ଅତିଶୟ ବିଦ୍ଧ ହେବାରୁ ବିମୋହିତ ହୋଇ ଅଶ୍ୱରଶ୍ମି ପରିତ୍ୟାଗ କଲା । ହେ ମହାରାଜ ! ଭୀମଙ୍କ ସାରଥି ମୋହିତ ହେବାରୁ ରଥାଶ୍ୱସମୂହ ସମସ୍ତ ଧନୁର୍ଦ୍ଧରମାନଙ୍କ ସମକ୍ଷରେ ବେଗରେ ଧାବମାନ ହେଲେ । ଶତ୍ରୁମାନଙ୍କର ଅଜେୟ ଅଶ୍ୱତ୍ଥାମା ସେହି ଧାବମାନ ଅଶ୍ୱଗଣ କର୍ତ୍ତୃକ ଭୀମଙ୍କୁ ସ୍ଥାନାନ୍ତରିତ ହେବାର ଦେଖି ଆହ୍ଲାଦରେ ବୃହତ୍ ଶଙ୍ଖଧ୍ୱନି କଲେ । ଏହାପରେ ଭୀମସେନ ବିମୁଖ ହୁଅନ୍ତେ ସମସ୍ତ ପାଞ୍ଚାଳଗଣ ଧୃଷ୍ଟଦ୍ୟୁମ୍ନଙ୍କ ରଥ ପରିତ୍ୟାଗପୂର୍ବକ ଭୟରେ ଚତୁର୍ଦ୍ଦିଗକୁ ପଳାୟନ କଲେ । ଏହି ସମୟରେ ଦ୍ରୋଣତନୟ ଅଶ୍ୱତ୍ଥାମା ସେହି ପ୍ରଭଗ୍ନ ସୈନ୍ୟମାନଙ୍କର ପୃଷ୍ଠଦେଶରୁ ଶରଜାଲ ବିକିରଣ ପୂର୍ବକ ଆକ୍ରମଣ କରି ବେଗରେ ସେମାନଙ୍କର ପଶ୍ଚାଦ୍‌ଗାମୀ ହେଲେ । ହେ ମହାରାଜ ! ସେହି ସମୟରେ ସେହି କ୍ଷତ୍ରିୟମାନେ ଦ୍ରୋଣପୁତ୍ରଙ୍କ କର୍ତ୍ତୃକ ବଧ୍ୟମାନ ହୋଇ ଭୟରେ ସର୍ବଦିଗରେ ଦ୍ରୋଣପୁତ୍ରଙ୍କୁ ଦେଖୁଅଛନ୍ତି ବୋଲି ମନେ କଲେ । ୧୩ ।

---

## ୨୦୧ ଅଧ୍ୟାୟ

ହେ ମହାରାଜ ! ଅମେୟାତ୍ମା କୁନ୍ତୀନନ୍ଦନ ଧନଞ୍ଜୟ ସେହି ସମସ୍ତ ସୈନ୍ୟମାନଙ୍କୁ ଛିନ୍ନଭିନ୍ନ ହେବାର ଦେଖି ଦ୍ରୋଣପୁତ୍ରଙ୍କୁ ଜୟ କରିବା ମାନସରେ ସେମାନଙ୍କୁ ନିବାରଣ କଲେ । କିନ୍ତୁ ସେନାମାନେ କୌଣସି ପ୍ରକାରେ ଅବସ୍ଥାନ କଲେ ନାହିଁ । ତତ୍ପରେ କୃଷ୍ଣ ଓ ଅର୍ଜ୍ଜୁନ ଅତିଶୟ ଯତ୍ନ ସହ ସେମାନଙ୍କୁ ଅବସ୍ଥାପିତ କଲେ । ୨ । ସେହି ସମୟରେ ବୀଭତ୍ସୁ ଏକାକୀ ସୋମକ ଓ ମତ୍ସ୍ୟସୈନ୍ୟମାନଙ୍କୁ ଏକତ୍ରିତ କରି କୌରବମାନଙ୍କ ସହିତ ସମରରେ ପ୍ରବୃତ୍ତ ହେଲେ । ୩ ।

ଅନନ୍ତର ସବ୍ୟସାଚୀ ସିଂହଲାଙ୍ଗୁଳଧ୍ୱଜଶୋଭିତ ରଥାରୂଢ଼ ମହାଧନୁର୍ଦ୍ଧର ଅଶ୍ୱତ୍ଥାମାଙ୍କୁ ଦ୍ରୁତବେଗରେ ଆକ୍ରମଣ କରି କହିଲେ, ହେ ଅଶ୍ୱତ୍ଥାମନ୍, ତୁମ୍ଭର ଧୃତରାଷ୍ଟ୍ରପୁତ୍ରମାନଙ୍କ ପ୍ରତି ଯାଦୃଶ ପ୍ରୀତି ଓ ଆମ୍ଭମାନଙ୍କ ପ୍ରତି ଯାଦୃଶ ବିଦ୍ୱେଷ ଭାବ ତୁମ୍ଭର ଯେତେ ବିଜ୍ଞାନ, ଶକ୍ତି, ପୁରୁଷକାର ଓ ଯାହା କିଛି ପ୍ରଭାବ ଅଛି ସେହି ସମସ୍ତ ଅଦ୍ୟ ଆମ୍ଭଠାରେ ପ୍ରକାଶ କର। ସେହି ଦ୍ରୋଣହନ୍ତା ପୃଷତନନ୍ଦନ ତୁମ୍ଭର ଦର୍ପୋଚ୍ଛେଦନ କରିବ। ୬। ଅରାତିମାନଙ୍କର ଅନ୍ତକାରୀ ସମରରେ କାଳାନଳସଦୃଶ ଧୃଷ୍ଟଦ୍ୟୁମ୍ନଙ୍କ ସହିତ ଓ କେଶବ ସମବେତ ଆମ୍ଭସହିତ ସଂଗ୍ରାମ କର। ତୁମ୍ଭେ ଅତିଶୟ ଉଦ୍ଧତ ହୋଇଅଛ। ଅଦ୍ୟ ସମରରେ ତୁମ୍ଭର ଗର୍ବ ଚୂର୍ଣ୍ଣ କରିବୁଁ। ୭।

ଧୃତରାଷ୍ଟ୍ର କହିଲେ—ହେ ସଞ୍ଜୟ ! ବଳବାନ୍ ଆଚାର୍ଯ୍ୟପୁତ୍ର ସମସ୍ତଙ୍କର ପୂଜନୀୟ, ବିଶେଷତଃ ଅର୍ଜ୍ଜୁନଙ୍କ ପ୍ରତି ତାହାଙ୍କର ଅତିଶୟ ପ୍ରୀତି ଓ ସେ ମଧ୍ୟ ଅର୍ଜ୍ଜୁନଙ୍କର ପ୍ରିୟ। ଏଥିପୂର୍ବେ ଧନଞ୍ଜୟ କଦାଚ ଈଦୃଶ ପରୁଷବାକ୍ୟ ପ୍ରୟୋଗ କରି ନ ଥିଲେ। ସେହି କୁନ୍ତୀନନ୍ଦନ ସଖା ଅଶ୍ୱତ୍ଥାମାଙ୍କୁ କି ନିମିତ୍ତ ଏପରି ରୁକ୍ଷବାକ୍ୟ ପ୍ରୟୋଗ କଲେ ? ୯।

ସଞ୍ଜୟ କହିଲେ—ହେ ମହାରାଜ ! ଚେଦିଦେଶୀୟ ଯୁବରାଜ, ପୁରୁବଂଶୀୟ ଓ ଶସ୍ତ୍ରବିଦ୍ୟାବିଶାରଦ ମାଳବରାଜ ସୁଦର୍ଶନ ନିହତ ହୁଅନ୍ତେ ଓ ଧୃଷ୍ଟଦ୍ୟୁମ୍ନ, ସାତ୍ୟକି ଓ ଭୀମସେନ ପରାଜିତ ହୁଅନ୍ତେ ପୁଣି ଯୁଧିଷ୍ଠିରଙ୍କ ଆକ୍ଷେପୋକ୍ତି ଦ୍ୱାରା ତାହାଙ୍କ ଚିତ୍ତ ବିକ୍ଷୁବ୍ଧ ହେବାରୁ ପୁଣି ସ୍ୱପକ୍ଷ ମଧ୍ୟରେ ଅନ୍ତର୍ଭାବ ଉପସ୍ଥିତ ହେବାରୁ ଅର୍ଜ୍ଜୁନ ସେହି ସମସ୍ତ ଦୁଃଖ ସ୍ମରଣ କରି ଯୁଗପତ୍ ଦୁଃଖ ଓ କ୍ରୋଧର ବଶବର୍ତ୍ତୀ ହୋଇଥିଲେ। ସେଥିପାଇଁ ସେ କାପୁରୁଷ ସଦୃଶ ହୋଇ ଆଚାର୍ଯ୍ୟତନୟ ଅଶ୍ୱତ୍ଥାମାଙ୍କ ପ୍ରତି ତାଦୃଶ ଅଶ୍ଳୀଳ ଅପ୍ରୀତିକର ଓ ଅମାନ୍ୟକର ବାକ୍ୟ ପ୍ରୟୋଗ କଲେ। ୧୩।

ହେ ମହାରାଜ ! ଧନୁର୍ଦ୍ଧରାଗ୍ରଗଣ୍ୟ ଦ୍ରୋଣନନ୍ଦନ ଧନଞ୍ଜୟଙ୍କର ସେହି କ୍ରୋଧୋକ୍ତି ମର୍ମ୍ମଭେଦୀ ପରୁଷ ବାକ୍ୟ ଶ୍ରବଣ କରି ଅର୍ଜ୍ଜୁନ ଓ କୃଷ୍ଣଙ୍କ ପ୍ରତି ଅତିଶୟ କ୍ରୁଦ୍ଧ ହେଲେ। ତତ୍ପରେ ସେହି ପରବୀରହନ୍ତା ବୀର୍ଯ୍ୟବାନ୍ ଅଶ୍ୱତ୍ଥାମା ଯତ୍ନସହ ରଣାଙ୍ଗଣରେ ଅବସ୍ଥିତ ହୋଇ ସଲିଳ ସ୍ପର୍ଶପୂର୍ବକ

ଦୃଶ୍ୟ ଓ ଅଦୃଶ୍ୟ ଶତ୍ରୁମାନଙ୍କ ଉଦ୍ଦେଶ୍ୟରେ ଦେବଗଣଙ୍କର ମଧ୍ୟ ଦୁଃସହ ଆଗ୍ନେୟାସ୍ତ୍ର ଗ୍ରହଣ କଲେ ଓ କ୍ରୋଧାନ୍ୱିତ ହୋଇ ନିର୍ଦ୍ଧୂମ ପାବକ ସଦୃଶ ସେହି ପବିତ୍ର ଶରକୁ ଅଭିମନ୍ତ୍ରିତ କରି ନିକ୍ଷେପ କଲେ । ୧୭ । ଅନନ୍ତର ଅମ୍ବରମଣ୍ଡଳରୁ ଅନଳଶିଖା ସମାକୀର୍ଣ୍ଣ ଉଜ୍ଜ୍ୱଳ ଶରବୃଷ୍ଟି ହୋଇ ଅର୍ଜ୍ଜୁନଙ୍କୁ ସମାଚ୍ଛନ୍ନ କଲା । ୧୮ । ସେହି ସମୟରେ ଅନ୍ତରୀକ୍ଷରୁ ଉଲ୍କା ସମୂହ ନିପତିତ ଓ ସୈନ୍ୟବ୍ୟୂହ ସହସା ତମସାଚ୍ଛନ୍ନ ହୁଅନ୍ତେ ଦିକ୍‌ବିଦିକ୍ ଜଣାଗଲା ନାହିଁ । ୧୯ । ନିଶାଚର ଓ ପିଶାଚଗଣ ଏକତ୍ରିତ ହୋଇ ଭୟଙ୍କର ନିନାଦ କଲେ । ଅଶିବ ବାୟୁ ପ୍ରବାହିତ ହେଲା । ସୂର୍ଯ୍ୟ ଆଉ ପୂର୍ବବତ୍ ତାପ ପ୍ରଦାନରେ ସମର୍ଥ ହେଲେ ନାହିଁ । ୨୦ । ବାୟସଗଣ ଚତୁର୍ଦ୍ଦିଗରେ ଭୈରବ ରବରେ ଚିତ୍କାର କଲେ । ବାରିଦପଟଳ ଗମ୍ଭୀର ଗର୍ଜ୍ଜନପୂର୍ବକ ରୁଧିର ବର୍ଷଣ କଲା । ୨୧ । ତହୁଁ ପକ୍ଷୀ, ଗୋ-ପ୍ରଭୃତି ପଶୁମାନେ, ଧୃତିବ୍ରତ ସଂଯତମନା ମୁନିଗଣ କେହି ଶାନ୍ତିଲାଭ କଲେ ନାହିଁ । ସହସ୍ର କିରଣ ଦିବାକର ପ୍ରଭାଶୂନ୍ୟ ଓ ମହାପ୍ରାଣୀଗଣ ଭ୍ରାନ୍ତ ହେଲେ । ଏହିପରି ତ୍ରୈଲୋକ୍ୟ ହତପ୍ରଭ ହୁଅନ୍ତେ ସମସ୍ତେ ବିଚଳିତ ହେଲେ । ୨୩ । ସେହି ସମୟରେ ମାତଙ୍ଗଗଣ ଅସ୍ତ୍ରତେଜରେ ସର୍ବତୋଭାବରେ ସନ୍ତାପିତ ହୋଇ ସେହି ଉତ୍ତାପରୁ ମୁକ୍ତିଲାଭ ଇଚ୍ଛାରେ ବାରମ୍ବାର ନିଃଶ୍ୱାସ ପରିତ୍ୟାଗ କରି ଭୂତଳଶାୟୀ ହେଲେ । ୨୪ । ଜଳଜନ୍ତୁମାନେ ଦଗ୍ଧ ହେଲେ । ସେମାନେ ଏପରି ପ୍ରତପ୍ତ ହେଲେ ଯେ କୌଣସି ପ୍ରକାରେ ଶାନ୍ତିଲାଭ କରି ପାରିଲେ ନାହିଁ । ୨୫ । ଏହି ସମୟରେ ଦିକ୍‌ବିଦିକ୍ ନଭୋମଣ୍ଡଳରୁ ଗରୁଡ଼ ଓ ପବନତୁଲ୍ୟ ବେଗଗାମୀ ନାନାପ୍ରକାର ଶରବୃଷ୍ଟି ହେଲା । ୨୬ । ଶତ୍ରୁମାନେ ଦ୍ରୋଣପୁତ୍ରଙ୍କର ସେହି ବଜ୍ରବେଗତୁଲ୍ୟ ଶରନିକରରେ ସମାହତ ହୋଇ ଅଗ୍ନିଦଗ୍ଧ ବନସ୍ପତି ସଦୃଶ ଦଗ୍ଧ ଓ ପତିତ ହେଲେ । ୨୭ । କେତେକ ହସ୍ତୀ ପୂର୍ବେ ଅରଣ୍ୟରେ ଥିବା ସମୟରେ ଦାବାଗ୍ନି ସମାବୃତ ହୋଇ ଭୟରେ ଯେପରି ଚତୁର୍ଦ୍ଦିଗକୁ ଧାବିତ ହେଉଥିଲେ ସେହିପରି ବର୍ତ୍ତମାନ ଇତସ୍ତତଃ ଧାବମାନ ହେଲେ । ୨୯ । ଦାବାନଳରେ ବୃକ୍ଷର ଅଗ୍ରଭାଗ ଦଗ୍ଧ ହେଲେ ସେହି ବୃକ୍ଷସମୂହ ଯେପରି ଦୃଷ୍ଟ ହୁଅନ୍ତି, ଅଶ୍ୱ ଓ ରଥ-ସମୂହ ସେହିପରି ଦୃଷ୍ଟ ହେଲେ । ୩୦ । ସେହିକାଳରେ ସେହି ରଣାଙ୍ଗନ ମଧ୍ୟରେ ସହସ୍ର ସହସ୍ର ରଥୀମାନେ ନିପତିତ ହେଲେ ।

ହେ ମହାରାଜ ! ଏହିପରି ସେହି ଅସ୍ତ୍ରାଗ୍ନି ସର୍ବପ୍ରାଣୀ ସଂହାରକ ଯୁଗାନ୍ତକାଳୀନ ସମ୍ବର୍ତ୍ତ ଅନଳସଦୃଶ ଉଦ୍ଭୂତ ହୋଇ ପାଣ୍ଡବ ସୈନ୍ୟମାନଙ୍କୁ ଦଗ୍ଧ କଲା । କୌରବମାନେ ସେହି ମହା ସମରରେ ପାଣ୍ଡବ ସୈନ୍ୟମାନଙ୍କୁ ଦଗ୍ଧ ହେବାର ଦେଖି ପ୍ରହୃଷ୍ଟମାନସରେ ସିଂହନାଦ କଲେ ଓ ଆପଣ-ମାନଙ୍କର ସୈନ୍ୟମାନେ ଜୟପ୍ରାପ୍ତିର ଲକ୍ଷଣ ଦେଖି ହୃଷ୍ଟଚିତ୍ତରେ ତତ୍କ୍ଷଣାତ୍ ସହସ୍ର ସହସ୍ର ତୂର୍ଯ୍ୟ ପ୍ରଭୃତି ବିବିଧ ବାଦ୍ୟ ନିନାଦିତ କଲେ । ହେ ମହାରାଜ ! ସମସ୍ତ ରଣାଙ୍ଗନ ତମିସ୍ରାଚ୍ଛନ୍ନ ହୁଅନ୍ତେ ଏକ ଅକ୍ଷୌହିଣୀ ସେନାସମବେତ ପାଣ୍ଡୁତନୟ ଧନଞ୍ଜୟ ଆଉ ଦୃଷ୍ଟିଗୋଚର ହେଲେ ନାହିଁ । ସେହିକାଳରେ କ୍ରୋଧାବିଷ୍ଟ ଦ୍ରୋଣପୁତ୍ର ସେହି ଅସ୍ତ୍ରପ୍ରାଦୁର୍ଭାବ କରନ୍ତେ ଯେପରି ଅଦ୍ଭୁତ ବ୍ୟାପାର ସଂଘଟିତ ହେଲା ଆମ୍ଭେମାନେ ଏଥିପୂର୍ବେ ଆଉ କଦାପି ସେପରି ଦର୍ଶନ ବା ଶ୍ରବଣ କରିନାହୁଁ ।

ଅନନ୍ତର ଅର୍ଜୁନ ସମସ୍ତ ଅସ୍ତ୍ର ପ୍ରତିଘାତ ନିମିତ୍ତ ପଦ୍ମଯୋନି ବିହିତ ବ୍ରହ୍ମାସ୍ତ୍ର ପ୍ରାଦୁର୍ଭାବ କଲେ । ତଦ୍ଦ୍ୱାରା ମୁହୂର୍ତ୍ତକ ମଧ୍ୟରେ ଅନ୍ଧକାର ନିରାକୃତ ହୁଅନ୍ତେ ଶୀତଳ ଅନିଳ ପ୍ରବାହିତ ହେଲା ଓ ଦିକ୍‌ସମୂହ ନିର୍ମଳ ହେଲା । ପରନ୍ତୁ ସେଠାରେ ଆମ୍ଭେମାନେ ଗୋଟିଏ ଆଶ୍ଚର୍ଯ୍ୟ ବ୍ୟାପାର ଅବଲୋକନ କଲୁଁ ଯେ ସେହି ଏକ ଅକ୍ଷୌହିଣୀ ସେନା ଅଶ୍ୱତ୍ଥାମାଙ୍କ ଅସ୍ତ୍ରତେଜରେ ସମସ୍ତଙ୍କର ଅଲକ୍ଷିତଭାବରେ ଭସ୍ମୀଭୂତ ହୋଇ ନିହତ ହେଲେ । ଅଥଚ ଏକ ରଥସ୍ଥିତ ମହାଧନୁର୍ଦ୍ଧର ମହାବୀର ବାସୁଦେବ ଓ ଅର୍ଜୁନ ଅକ୍ଷତ ଶରୀରରେ ଘୋର ଅନ୍ଧକାରରୁ ବିମୁକ୍ତ ହୋଇ ମେଘାନ୍ତରିତ ନଭୋ-ମଣ୍ଡଳରେ ଉଦିତ ଚନ୍ଦ୍ର ସୂର୍ଯ୍ୟଙ୍କ ସଦୃଶ ସମସ୍ତଙ୍କର ଦୃଷ୍ଟିଗୋଚର ହେଲେ । ପତାକା, ଧ୍ୱଜ, ଅଶ୍ୱ, ଅନୁକର୍ଷ ଓ ଉତ୍କୃଷ୍ଟ ଅସ୍ତ୍ରାଦି ବିଭୂଷିତ କୌରବ ପକ୍ଷର ଭୟପ୍ରଦ ସେହି କପିଧ୍ୱଜ ରଥ ସେନାମଧ୍ୟରେ ପ୍ରତିଭାତ ହେଲା । ୪୦ । ତତ୍ପରେ ପ୍ରହୃଷ୍ଟଚିତ୍ତ ପାଣ୍ଡବପକ୍ଷୀୟ ଯୋଦ୍ଧାମାନଙ୍କ ମଧ୍ୟରୁ ତତ୍କ୍ଷଣାତ୍ ଶଙ୍ଖ ଓ ଭେରୀ ଶବ୍ଦ ମିଳିତ ମହା କଳକଳା ଶବ୍ଦ ସମୁତ୍ଥିତ ହେଲା । ୪୨ ।

ହେ ମହାରାଜ ! ପୂର୍ବେ କୌରବ ଓ ପାଣ୍ଡବ ସୈନ୍ୟମାନେ କେଶବ ଓ ଅର୍ଜୁନ ଦୁଇଜଣଙ୍କୁ ତେଜୋଦ୍ୱାରା ସମାଚ୍ଛନ୍ନ ଦେଖି ମନେ

କରିଥିଲେ ଯେ, 'ଏ ଦୁହେଁ ଅଦ୍ୟ ନିହତ ହେଲେ' । ପରେ ସେ ଦୁହିଁଙ୍କୁ ଅକ୍ଷତ ଶରୀରରେ ନିର୍ମୁକ୍ତ ଓ ଆହ୍ଲାଦରେ ଦିବ୍ୟ ଶଙ୍ଖଧ୍ୱନି କରିବାର ଦେଖି ପୁଣି ପାଣ୍ଡବ ସୈନ୍ୟମାନଙ୍କୁ ପ୍ରହୃଷ୍ଟଚିତ୍ତ ହେବାର ଅବଲୋକନ କରି କୌରବମାନେ ଅତ୍ୟନ୍ତ ବ୍ୟଥିତ ହେଲେ । ୪୪ । ଦ୍ରୋଣନନ୍ଦନ ଅଶ୍ୱତ୍ଥାମା ମହାତ୍ମା କୃଷ୍ଣାର୍ଜ୍ଜୁନଙ୍କୁ ଆଗ୍ନେୟାସ୍ତ୍ରରୁ ବିମୁକ୍ତ ଦେଖି ଅତିଶୟ ଦୁଃଖିତ ଚିତ୍ତରେ 'ଏହା କିପରି କଅଣ ହେଲା' ଏହିପରି ମୁହୂର୍ତ୍ତେକାଳ ଚିନ୍ତା କଲେ । ତତ୍ପରେ ସେ ଚିନ୍ତା ଓ ଶୋକରେ ଅଭିଭୂତ ହୋଇ ଦୀର୍ଘ ଓ ଉଷ୍ଣ ନିଃଶ୍ୱାସ ପରିତ୍ୟାଗ କରୁକରୁ ଅତିଶୟ ବିଷଣ୍ଣ ହେଲେ ଓ ଶରାସନ ପରିତ୍ୟାଗ ପୂର୍ବକ ରଥ ଉପରୁ ବେଗରେ ଲମ୍ଫପ୍ରଦାନ କରି 'ଧିକ୍ ଧିକ୍ ଏ ସମସ୍ତ ମିଥ୍ୟା' । ଏହା କହି ରଣସ୍ଥଳରୁ ପ୍ରସ୍ଥାନ କଲେ ।

ହେ ମହାରାଜ ! ଏହି ସମୟରେ ଦ୍ରୋଣନନ୍ଦନ ସ୍ନିଗ୍ଧ ଅମ୍ବୁଜ ସଦୃଶ ପ୍ରସନ୍ନ ମୂର୍ତ୍ତି ଚତୁର୍ବେଦର ଆବାସ ଭୂମି ସାକ୍ଷାତ୍ ଧର୍ମ୍ମସ୍ୱରୂପ ନିଷ୍ପାପ-ଶରୀର ବ୍ୟାସଦେବଙ୍କୁ ସମ୍ମୁଖରେ ଦର୍ଶନ କଲେ । ୪୫ । ଦ୍ରୋଣତନୟ ମହାତ୍ମା କୃଷ୍ଣ ଦ୍ୱୈପାୟନଙ୍କୁ ସମ୍ମୁଖରେ ଅବସ୍ଥିତ ଦେଖି ତାହାଙ୍କୁ ଅଭିବାଦନ ପୂର୍ବକ ଅତି ଦୀନ ଭାବରେ କ୍ଷୀଣକଣ୍ଠରେ ପଚାରିଲେ, ହେ ଭଗବନ୍ ! —ଏହାକି ଦୈବୀ ମାୟା, କିମ୍ବା ଅପର କିଛି, ଜାଣିପାରୁ ନାହୁଁ । ଏହି ଅସ୍ତ୍ର ବିଫଳ ହେବାର କାରଣ କ'ଣ ? ଆମ୍ଭର କ'ଣ କୌଣସି ବ୍ୟତିକ୍ରମ ଘଟିଥିଲା ? ଏହା କ'ଣ ସମସ୍ତ ଲୋକର ବିପର୍ଯ୍ୟାସ ଓ ଧ୍ୱଂସର କାଳ ଉପସ୍ଥିତ ହୋଇଅଛି ? କାରଣ ସେହି କୃଷ୍ଣାର୍ଜ୍ଜୁନ ଜୀବିତ ଅବସ୍ଥାରେ ମୁକ୍ତିଲାଭ କରି ଅଛନ୍ତି । କାଳ ହିଁ ଦୁରତିକ୍ରମଣୀୟ ନଚେତ୍ ମତ୍‌ପ୍ରେରିତ ଆଗ୍ନେୟାସ୍ତ୍ରକୁ ଅସୁର, ଗନ୍ଧର୍ବ, ପିଶାଚ, ନିଶାଚର, ଭୁଜଙ୍ଗ, ମାତଙ୍ଗ କିମ୍ବା ମନୁଷ୍ୟ କେହି ଅନ୍ୟଥା କରିବାକୁ ସମର୍ଥ ହୁଅନ୍ତେ ନାହିଁ । କିନ୍ତୁ ବର୍ତ୍ତମାନ ମତ୍‌ପ୍ରଯୁକ୍ତ ସର୍ବସଂହାରକ ଜ୍ୱଳନ୍ତ ପାବକ ତୁଲ୍ୟ ସେହି ନିଦାରୁଣ ଅସ୍ତ୍ର କେବଳ ଏକ ଅକ୍ଷୌହିଣୀ ସୈନ୍ୟ ସଂହାର କରି ଶାନ୍ତ ହେଲା ! ହେ ମହର୍ଷେ ! ଆମ୍ଭେ ପଚାରୁଅଛୁଁ, କୃଷ୍ଣ ଓ ଅର୍ଜ୍ଜୁନ ଏ ଦୁହେଁ ମର୍ତ୍ତ୍ୟ ଧର୍ମ୍ମାବଲମ୍ବୀ । ତେବେ ଆମ୍ଭ ନିକ୍ଷିପ୍ତ ଅସ୍ତ୍ର କି ନିମିତ୍ତ ସେମାନଙ୍କୁ ବିନାଶ କଲାନାହିଁ ? ଏହି ସମସ୍ତ ଯଥାଯଥ ଆମ୍ଭ ସମୀପରେ କୀର୍ତ୍ତନ କରନ୍ତୁ । ଆମ୍ଭେ ଏହାର ପ୍ରକୃତ ବିଷୟ ଶ୍ରବଣ କରିବାକୁ ଅଭିଳାଷ କରୁଁ । ୪୬ ।

ବ୍ୟାସ କହିଲେ—ହେ ଦ୍ରୋଣପୁତ୍ର ! ତୁମ୍ଭେ ବିସ୍ମୟାନ୍ୱିତ ହୋଇ ଏହି ଯେଉଁ ମହତ୍ ବିଷୟ ଆମ୍ଭଙ୍କୁ ପ୍ରଶ୍ନ କଲ ଆମ୍ଭେ ସେ ସମସ୍ତ କୀର୍ତ୍ତନ କରୁଅଛୁଁ । ମନଯୋଗପୂର୍ବକ ଶ୍ରବଣ କର । ୫୬ । ପ୍ରଜାପତିମାନଙ୍କର ମଧ୍ୟ ପୂର୍ବପୁରୁଷ ଯେ ନାରାୟଣ ନାମରେ ଖ୍ୟାତ, ସେହି ବିଶ୍ୱାଧାର ପ୍ରଭୁ କୌଣସି କାର୍ଯ୍ୟ ସିଦ୍ଧିନିମିତ୍ତ ଧର୍ମ୍ମଙ୍କ ପୁତ୍ର ସ୍ୱରୂପ ଅବତୀର୍ଣ୍ଣ ହୋଇଥିଲେ । ୫୭ । ଅମ୍ବୁଜ ନେତ୍ର ପ୍ରଭାକର ସଦୃଶ ପ୍ରଦୀପ୍ତ ସେହି ମହାତେଜା ହିମାଳୟ ପର୍ବତରେ ଊର୍ଦ୍ଧ୍ୱବାହୁ ହୋଇ ତୀବ୍ରତର ତପସ୍ୟା କଲେ । ସେ ଛଷଠି ସହସ୍ର ବର୍ଷ ବାୟୁଭକ୍ଷଣ କରି ତପସ୍ୟା ଦ୍ୱାରା ଶରୀର ଶୋଷଣ କଲେ । ପୁନଶ୍ଚ ତହିଁର ଦ୍ୱିଗୁଣ ପରିମିତ କାଳ ତପସ୍ୟା କରି ତେଜୋଦ୍ୱାରା ଦ୍ୟାବା ଓ ପୃଥିବୀକୁ ପରିପୂର୍ଣ୍ଣ କଲେ । ୬୦ । ଯେତେବେଳେ ସେହି ତପଃ ପ୍ରଭାବରେ ସାକ୍ଷାତ୍ ବ୍ରହ୍ମରୂପ ହେଲେ ସେତେବେଳେ ଜଗତର ପାଳନ କର୍ତ୍ତା, ବିଶ୍ୱକାରଣ, ଅତି ଦୁର୍ନିରୀକ୍ଷ, ଦେବଗଣ ବନ୍ଦିତ, ବୃହତ୍ ଅପେକ୍ଷା ବୃହତ୍ତମ, ସୂକ୍ଷ୍ମ ଅପେକ୍ଷା ସୂକ୍ଷ୍ମତମ ବିଶ୍ୱେଶ୍ୱରଙ୍କର ଦର୍ଶନ ଲାଭ କଲେ ।୬୨। ସେହି ବିଶ୍ୱେଶ୍ୱର ରୁଦ୍ର ଈଶାନ, ରୁଷଭ, ହର, ଶମ୍ଭୁ, କପର୍ଦ୍ଦୀ, ଚେତନସ୍ୱରୂପ ଓ ସ୍ଥାବର ଜଙ୍ଗମର ପରମ କାରଣ । ସେ ଦୁର୍ନିବାର ଦୁର୍ଦ୍ଦୃଶ୍ୟ ତିଗ୍ମମନ୍ୟୁ ମହାତ୍ମା, ସର୍ବହର୍ତ୍ତା ପ୍ରଚେତା ଦିବ୍ୟ ଶରାସନ ଓ ତୂଣୀରଧାରୀ, ହିରଣ୍ୟବର୍ମ୍ମା ଓ ଅନନ୍ତ ବୀର୍ଯ୍ୟ । ସେ ପିନାକ, ବଜ୍ରପ୍ରଦୀପ୍ତ ଶୂଳ, ପରଶ୍ୱଧ, ଗଦା ଓ ଆୟତ ଅସିଧାରୀ । ତାହାଙ୍କ ଲଲାଟରେ ଚନ୍ଦ୍ର ଓ ମସ୍ତକରେ ଜଟାଭାର । ତାହାଙ୍କର ଭ୍ରୂଯୁଗଳ ଅତି ସୁନ୍ଦର । ସେ ବ୍ୟାଘ୍ର ଚର୍ମ୍ମ ପରିଧାୟୀ ଓ ପରିଘ ଓ ଦଣ୍ଡପାଣି । ୬୫ । ତାହାଙ୍କର କଣ୍ଠ ଦେଶରେ ଭୁଜଙ୍ଗର ଯଜ୍ଞୋପବୀତ ଓ ବାହୁରେ ମନୋହର ଅଙ୍ଗଦ ବିରାଜିତ । ସେ ସମସ୍ତ ଦେବଗଣ ଓ ଭୂତଗଣଙ୍କ ଦ୍ୱାରା ପରିବୃତ । ସେ ସର୍ବଦା ଏକରୂପ, ତପସ୍ୟାର ନିଧାନ ସ୍ୱରୂପ, ପ୍ରାଚୀନ ଋଷିମାନେ ତାହାଙ୍କୁ ଇଷ୍ଟବାକ୍ୟ ଦ୍ୱାରା ସ୍ତୁତି କରିଥାନ୍ତି । ୬୬ । ଯେ ପୃଥିବୀ, ସଲିଳ, ଆକାଶ, ବାୟୁ, ଅଗ୍ନି, ଚନ୍ଦ୍ର ଓ ସୂର୍ଯ୍ୟ ସମନ୍ୱିତ ସମସ୍ତ ଜଗତର ପ୍ରତାପକ, ଦୁରାଚାରଗଣ ବ୍ରହ୍ମଦ୍ୱେଷୀହନ୍ତା ସେହି ଅମୃତାକର ଅଜନ୍ମା ପୁରୁଷଙ୍କୁ କଦାଚ ଦର୍ଶନ କରିବାକୁ ସମର୍ଥ ହୁଅନ୍ତି ନାହିଁ । ୬୭ । ଶୋକାହଙ୍କାରରହିତ, ସାଧୁଚରିତ୍ର, ନିଷ୍ପାପ ବ୍ରାହ୍ମଣଗଣ ଜ୍ଞାନଚକ୍ଷୁରେ ତାହାଙ୍କୁ ଦର୍ଶନ କରି ପାରନ୍ତି । ସେହି ଜଗତ୍ ବନ୍ଦନୀୟ ସାକ୍ଷାତ୍ ଧର୍ମ୍ମ ବିଶ୍ୱରୂପ ଶିବଙ୍କୁ ବାସୁଦେବ

ନାରାୟଣ ଋଷି ତପଃପ୍ରଭାବରୁ ଦର୍ଶନ କରି ପାରନ୍ତି । ସେହି ଜଗତବନ୍ଦନୀୟ ସାକ୍ଷାତ୍ ଧର୍ମ୍ମ ବିଶ୍ୱରୂପ ଶିବଙ୍କୁ ବାସୁଦେବ ନାରାୟଣ ଋଷି ତପଃପ୍ରଭାବରୁ ଦର୍ଶନ କରିବାକୁ ସମର୍ଥ ହେଲେ ।

ହେ ମହାରାଜ ! କମଳଲୋଚନ ନାରାୟଣ ଋଷି ତେଜୋନିଧାନ, ଅକ୍ଷମାଳାଧାରୀ ବିଶ୍ୱଉତ୍ପାଦକ, ବରଦ, ଅତିମନୋହରାଙ୍ଗୀ ପାର୍ବତୀଙ୍କ ସହିତ ନିତ୍ୟକ୍ରୀଡ଼ାମାନ, ଭୂତଗଣପରିବୃତ, ଅଜ, ଅବ୍ୟକ୍ତ, କାରଣାତ୍ମା, ମହାତ୍ମା ରୁଦ୍ର, ଈଶାନଙ୍କୁ ଦର୍ଶନ କରି ବାକ୍ୟ ଓ ମନ ସହିତ ପୁଲକିତାଙ୍ଗ ହୋଇ ଅସୀମ ଆନନ୍ଦ ପ୍ରକାଶ ପୂର୍ବକ ବନ୍ଦନା କଲେ ଓ ସେ ସେହି ଅନ୍ଧକାସୁର ନିପାତକାରୀ ବିରୂପାକ୍ଷ ରୁଦ୍ର ଦେବଙ୍କୁ ଭକ୍ତିସହ ଅଭିବାଦନକାରୀ ଏହି ପରି ସ୍ତବ କଲେ ।

ହେ ବରେଣ୍ୟ ! ହେ ଦେବ ! ଯେଉଁମାନେ ଏହି ବିଶ୍ୱରକ୍ଷକ ପ୍ରାଣୀମାନଙ୍କର ଉତ୍ପାଦକ ଓ ଦେବଗଣଙ୍କର ମଧ୍ୟ ପୂର୍ବକ ପ୍ରଜାପତି, ସେମାନେ ତୁମ୍ଭଠାରୁ ଉତ୍ପନ୍ନ ହୋଇ ବସୁଧା ମଧ୍ୟରେ ପ୍ରବେଶ କରି ତୁମ୍ଭ ନିର୍ମ୍ମିତ ପୁରାତନୀ ସୃଷ୍ଟିକରୁ ଅଛନ୍ତି । ସୁର, ଅସୁର, ଗନ୍ଧର୍ବ, ଯକ୍ଷ, ରାକ୍ଷସ, ଭୁଜଙ୍ଗ ଓ ବିହଙ୍ଗ ପ୍ରଭୃତି ସମସ୍ତ ପ୍ରାଣୀ ଯେ ତୁମ୍ଭଠାରୁ ଉତ୍ପନ୍ନ ହୋଇ ଅଛନ୍ତି ତାହା ଆମ୍ଭଙ୍କୁ ବିଦିତ ଅଛି । ଇନ୍ଦ୍ର, ଯମ, ବରୁଣ, କୁବେର ଓ ସୋମ ପ୍ରଭୃତି ଦିକ୍‌ପାଳଗଣ ଓ ତ୍ୱଷ୍ଟା ପ୍ରଭୃତି ପ୍ରଜାପତିଗଣ ତୁମ୍ଭ ପ୍ରଭାବରୁ ସ୍ୱ ସ୍ୱ ଅଧିକୃତ କାର୍ଯ୍ୟ ନିର୍ବାହ କରୁ ଅଛନ୍ତି । ଶବ୍ଦ, ସ୍ପର୍ଶ, ରୂପ, ଜ୍ୟୋତିଃ, ସୁସ୍ୱାଦୁ ପୃଥିବୀ, ଗନ୍ଧ, ଆକାଶ, ବାୟୁ, କାଳ, ବ୍ରହ୍ମା, ବେଦ, ଓ ବ୍ରାହ୍ମଣ ଏହି ସମସ୍ତ ସ୍ଥାବର ଜଙ୍ଗମ ତୁମ୍ଭଠାରୁ ଉତ୍ପନ୍ନ । ଯେପରି ଜଳବିମ୍ବ ଜଳରୁ ଉତ୍ପନ୍ନ ହୋଇ ଜଳରେ ବିଲୀନ ହୁଏ, ସେହିପରି ଏହି ବିଶ୍ୱ ସଂସାର ପ୍ରଳୟ କାଳରେ ପୁନର୍ବାର ତୁମ୍ଭଠାରେ ପ୍ରବେଶ କରେ । ତତ୍ତ୍ୱଜ୍ଞାନସମ୍ପନ୍ନ ପଣ୍ଡିତ ତୁମ୍ଭଙ୍କୁ ଏହିପରି ପ୍ରାଣୀମାନଙ୍କର ଉତ୍ପତ୍ତି ଓ ଲୟର କାରଣ ଅବଗତ ହୋଇ ତୁମ୍ଭର ସାଯୁଜ୍ୟ ଲାଭ କରନ୍ତି । ୭୫ । ହେ ଦେବ ! ତୁମ୍ଭେ ମାନସ ବୃକ୍ଷାରୁଢ଼ ଜୀବ ଓ ଈଶ୍ୱରରୂପ ଦୁଇଗୋଟି ପକ୍ଷୀ । ବେଦୋକ୍ତ ବହୁଶାଖାସମନ୍ୱିତ ସପ୍ତଲୋକରୂପ ଫଳର ଭୋକ୍ତା ଓ ଦ୍ରଷ୍ଟା । ସମସ୍ତ ଶରୀରର ପ୍ରତିପାଳକ ଦଶ ଇନ୍ଦ୍ରିୟଙ୍କୁ ସୃଷ୍ଟି କରି ସ୍ୱୟଂ ପୃଥକ୍‌ରୂପେ ଅବସ୍ଥିତ

ଅଛ । ୭୬ । ତୁମ୍ଭେ ଭୂତ, ଭବିଷ୍ୟତ୍ ଓ ବର୍ତ୍ତମାନ ଏହି ତିନି କାଳରେ ଅବସ୍ଥାନ କର । ଏହି ସମସ୍ତ ବିଶ୍ୱ ତୁମ୍ଭଠାରୁ ଉତ୍ପନ୍ନ ହୋଇଅଛୁ । ଆମ୍ଭେ ତୁମ୍ଭର ଅତିଶୟ ଭକ୍ତ । ତୁମ୍ଭେ ଆମ୍ଭ ପ୍ରତି ସଦୟ ହୁଅ । ଆମ୍ଭେ ଯେ ତୁମ୍ଭର କପଟ ଭକ୍ତ ତାହା ତୁମ୍ଭଙ୍କୁ ବିଦିତ ଅଛି । ଅତଏବ ଆମ୍ଭଙ୍କୁ ନିରାଶ କର ନାହିଁ । ୭୭ ।

ହେ ଦେବବର୍ଯ୍ୟ ! ତତ୍ତ୍ୱଦର୍ଶୀ ପୁରୁଷମାନେ ତୁମ୍ଭଙ୍କୁ ସ୍ୱୀୟ ଆତ୍ମା ସହିତ ଅଭିନ୍ନ ଜାଣି ସେହି ନିଷ୍କଳ ବ୍ରହ୍ମଙ୍କୁ ପ୍ରାପ୍ତ ହୁଅନ୍ତି । ଆମ୍ଭେ ତୁମ୍ଭଙ୍କୁ ଆତ୍ମସ୍ୱରୂପ ଜାଣି ସୁଦ୍ଧା କେବଳ ତୁମ୍ଭର ସମ୍ମାନ ଇଚ୍ଛାରେ ତୁମ୍ଭର ସ୍ତବ କରୁଅଛୁଁ । ତୁମ୍ଭେ ଆମ୍ଭକର୍ତ୍ତୃକ ସମ୍ୟକ୍ ଭାବରେ ସ୍ତୁତ ହୋଇ ଆମ୍ଭର ଅଭିଳଷିତ ଦୁର୍ଲ୍ଲଭ ବର ପ୍ରଦାନ କର । ଆମ୍ଭ ପ୍ରତି ଅନୁକୂଳ ହୁଅ । ୭୮ ।

ବ୍ୟାସ କହିଲେ—ପିନାକଧାରୀ ଅଚିନ୍ତ୍ୟାତ୍ମା ନୀଳକଣ୍ଠ ସେହି ଦେବମୁଖ୍ୟ ଋଷିଙ୍କକର୍ତ୍ତୃକ ଏହିପରି ସ୍ତୁତ ହୋଇ ତାହାଙ୍କୁ ଅଭିଳଷିତ ବର ପ୍ରଦାନ କଲେ । ୭୯ ।

ଭଗବାନ୍ କହିଲେ—ହେ ନାରାୟଣ ଋଷେ ! ତୁମ୍ଭେ ଆମ୍ଭପ୍ରସାଦରୁ ଦେବ, ଗନ୍ଧର୍ବ, ଭୁଜଙ୍ଗ ଓ ମନୁଷ୍ୟ ମଧ୍ୟରେ ଅପ୍ରମେୟ ବଳଶାଳୀ ହେବ । ୮୦ । ଦେବ, ଅସୁର, ମହୋରଗ, ପିଶାଚ, ଗନ୍ଧର୍ବ, ଯକ୍ଷ, ରାକ୍ଷସ, ସୁପର୍ଣ୍ଣ, ନାଗ କିମ୍ବା ଅଯୋନିଜାତ ପ୍ରାଣିମାନେ ସମସ୍ତେ ତୁମ୍ଭର ସଂଗ୍ରାମକୁ ସହନ କରି ପାରିବେ ନାହିଁ । ଦେବଗଣ ମଧ୍ୟରେ କେହି ତୁମ୍ଭଙ୍କୁ ସଂଗ୍ରାମରେ ପରାଜିତ କରି ପାରିବେ ନାହିଁ । ୮୨ । କୌଣସି ପ୍ରକାର ଶସ୍ତ୍ର ବଜ୍ର, ଅଗ୍ନି ବାୟୁ, ଜଳାଦି ଦ୍ରବ ପଦାର୍ଥ କିମ୍ବା ଶୁଷ୍କ ପାଷାଣାଦି ସ୍ଥାବର ପଦାର୍ଥ ଦ୍ୱାରା କୌଣସି ବ୍ୟକ୍ତି ଆମ୍ଭ ପ୍ରସାଦରୁ ତୁମ୍ଭର ପୀଡ଼ା ଉତ୍ପାଦନ କରିପାରିବେ ନାହିଁ । ରଣସ୍ଥଳରେ ତୁମ୍ଭେ ଆମ୍ଭ ଅପେକ୍ଷା ମଧ୍ୟ ଅତିଶୟ ପରାକ୍ରାନ୍ତ ହେବ । ୮୪ । ହେ ଅଶ୍ୱତ୍ଥାମନ୍ ! ପୂର୍ବେ ନାରାୟଣ ମହାଦେବଙ୍କଠାରୁ ଏହିପରି ବରଲାଭ କରିଥିଲେ । ବର୍ତ୍ତମାନ ସେହି ଦେବ କୃଷ୍ଣରୂପରେ ଜଗତ୍ ମୋହିତ କରି ବିଚରଣ କରୁଅଛନ୍ତି । ସେହି ନାରାୟଣଦେବଙ୍କର ତପସ୍ୟା ସମ୍ଭୂତ ହୋଇ ତାହାଙ୍କ ତୁଲ୍ୟ ପ୍ରଭାବସମ୍ପନ୍ନ ଯେ ପୁରୁଷ ନରଋଷି

ନାମରେ ବିଖ୍ୟାତ, ତାହାଙ୍କୁ ବର୍ତ୍ତମାନ ଅର୍ଜୁନ ବୋଲି ଜାଣ । ୮୭ । ସେ ଦୁହେଁ ଦେବତାମାନଙ୍କର ପୂର୍ବତନ ପରମ ଋଷି ବୋଲି ବେଦରେ ଉକ୍ତ ହୋଇ ଅଛନ୍ତି । ସେମାନେ ଲୋକଯାତ୍ରା ବିଧାନ ନିମିତ୍ତ ଯୁଗେ ଯୁଗେ ଜନ୍ମଗ୍ରହଣ କରନ୍ତି । ତୁମ୍ଭେ ମଧ୍ୟ ସେହିପରି ସମସ୍ତ କର୍ମରୂପ ସୁମହତ୍ ତପଃ ପ୍ରଭାବରୁ ତେଜ ଓ କ୍ରୋଧ ଧାରଣ ପୂର୍ବକ ରୁଦ୍ରଅଂଶରେ ଜନ୍ମଗ୍ରହଣ କରିଅଛ । ୮୮ । ପୂର୍ବେ ଜଣେ ମହାପ୍ରାଜ୍ଞ ମୁନି ଥିଲେ । ଏହି ଜଗତ୍‌କୁ ଶିବମୟ ଜାଣି ତାହାଙ୍କ ପ୍ରୀତିକାମନାରେ ତପୋନିୟମ ଦ୍ୱାରା ଶରୀର କର୍ଷଣ କରିଥିଲେ । ୮୯ ।

ହେ ମାନଦ ! ତୁମ୍ଭେ ଜପ, ହୋମ ଓ ଉପହାରାଦିଦ୍ୱାରା ସ୍ୱୀୟ ଶରୀରକୁ ନିଷ୍ପାପ କରି ସେହି ଦେବଙ୍କର ପୂଜା କରିଥିଲ । ଏହିପରି ସେହି ଦେବାଦିଦେବ ମହାଦେବ ତୁମ୍ଭର ପୂର୍ବୋପ୍ସନ୍ନ ହୋଇ-ଥିଲେ । ହେ ବିଦ୍ୱାନ୍ ! ସେହିହେତୁ ସେ ତୁମ୍ଭର ଅଶେଷ ଉତ୍କୃଷ୍ଟ ବର ପ୍ରଦାନ କରିଥିଲେ । ଅତଏବ ନରନାରାୟଣ ଋଷି ଓ ତୁମ୍ଭର ଜନ୍ମକର୍ମ ଓ ତପସ୍ୟାର ଉତ୍କର୍ଷ ଅଛି । ସେ ଦୁହେଁ ଯୁଗେ ଯୁଗେ ସେହି ମହାଦେବଙ୍କୁ ସୂକ୍ଷ୍ମ ଶରୀରରେ ଅର୍ଚ୍ଚନା କରିଅଛନ୍ତି । ତୁମ୍ଭେ ସେହି ଦେବଙ୍କୁ ପ୍ରତିମାରେ ଅର୍ଚ୍ଚନା କରିଅଛ । ୯୨ । ରୁଦ୍ରଭକ୍ତ ରୁଦ୍ରାଧିଷ୍ଠାନ କେଶବ ପ୍ରଭୁ ମହା-ଦେବଙ୍କୁ ବିଶେଷରୂପେ ଅବଗତ ହୋଇ ସୂକ୍ଷ୍ମ ଶରୀରରେ ପୂଜା କରିଥିଲେ । ସେହିହେତୁ ଆତ୍ମଯୋଗ ଓ ଶସ୍ତ୍ରଯୋଗ କେଶବଙ୍କଠାରେ ପ୍ରତିଷ୍ଠିତ ଅଛି । ସିଦ୍ଧଗଣ, ପରମ ଋଷିଗଣ ଓ ଦେବଗଣ ସେହି ମହା-ଦେବଙ୍କୁ ଏହିପରି ସୂକ୍ଷ୍ମଶରୀରରେ ପୂଜାକରି ପରମ ସ୍ଥାନ ପ୍ରାର୍ଥନା କରନ୍ତି । ଭଗବାନ୍ ବାସୁଦେବ ଶିବଙ୍କୁ ସର୍ବଭୂତର ଉତ୍ପତ୍ତିର କାରଣ ଜାଣି ତାହାଙ୍କୁ ସୂକ୍ଷ୍ମ ଶରୀରରେ ପୂଜା କରନ୍ତି ବୋଲି ସେହି ବୃଷଭଧ୍ୱଜ ତାହାଙ୍କ ପ୍ରତି ଅତ୍ୟନ୍ତ ପ୍ରୀତ ହୋଇ ଅଛନ୍ତି । ଅତଏବ ବିବିଧ ଯଜ୍ଞାନୁଷ୍ଠାନ ପୂର୍ବକ କୃଷ୍ଣଙ୍କର ଅର୍ଚ୍ଚନା କରିବା ଅବଶ୍ୟ କର୍ତ୍ତବ୍ୟ । ୯୭ ।

ସଞ୍ଜୟ କହିଲେ—ହେ ମହାରାଜ ! ମହାରଥୀ ଦ୍ରୋଣପୁତ୍ର ବେଦ-ବ୍ୟାସଙ୍କର ଏହି ସମସ୍ତ ବାକ୍ୟ ଶ୍ରବଣ କରି ରୁଦ୍ରଦେବଙ୍କୁ ନମସ୍କାର କଲେ ଓ ବାସୁଦେବଙ୍କୁ ଅତି ପୂଜନୀୟ ବୋଲି ମନେକଲେ । ୯୭ । ତଦନନ୍ତରେ

ବଶୀକୃତାତ୍ମା ଅଶ୍ୱତ୍ଥାମା ଲୋମାଞ୍ଚିତ କଳେବର ହୋଇ ମହର୍ଷି ବ୍ୟାସ-ଦେବଙ୍କୁ ଅଭିବାଦନ ପୂର୍ବକ ସୈନ୍ୟମଧ୍ୟକୁ ଗମନ କରି ସେମାନଙ୍କୁ ପ୍ରତ୍ୟାହାର କଲେ । ୯୮ । ପାଣ୍ଡବମାନେ ମଧ୍ୟ ଏହା ଦେଖି ଆପଣା ସୈନ୍ୟମାନଙ୍କୁ ପ୍ରତ୍ୟାହାର କଲେ । ହେ ବିଶାମ୍ପତେ ! ସମରାଙ୍ଗଣରେ ଦ୍ରୋଣାଚାର୍ଯ୍ୟ ନିପାତିତ ହୁଅନ୍ତେ ଦୀନଭାବାପନ୍ନ କୌରବମାନେ ଓ ପ୍ରହୃଷ୍ଟ-ଚିତ୍ତ ପାଣ୍ଡବମାନେ ଏହିପରି ଆପଣା ଆପଣା ସୈନ୍ୟମାନଙ୍କୁ ଅବହାର କଲେ । ୯୯ । ବେଦପାରଗ ବ୍ରାହ୍ମଣ ଦ୍ରୋଣ ପଞ୍ଚଦିବସ କାଳ ଯୁଦ୍ଧ କରି ଶତ୍ରୁସୈନ୍ୟମାନଙ୍କୁ ସଂହାର ପୂର୍ବକ ବ୍ରହ୍ମଲୋକକୁ ଗମନ କଲେ । ୧୦୦ ।

---

## ୨୦୨ ଅଧ୍ୟାୟ

ଧୃତରାଷ୍ଟ୍ର କହିଲେ—ହେ ସଞ୍ଜୟ ! ସେହି ଅତିରଥ ଦ୍ରୋଣ ଧୃଷ୍ଟଦ୍ୟୁମ୍ନଙ୍କ କର୍ତ୍ତୃକ ନିହତ ହେବାରୁ ଆମ୍ଭପକ୍ଷୀୟ ଓ ପାଣ୍ଡବପକ୍ଷୀୟମାନେ ତତ୍ପରେ କି କାର୍ଯ୍ୟ କଲେ । ୧ ।

ସଞ୍ଜୟ କହିଲେ—ହେ ମହାରାଜ ! ଅତିରଥ ଦ୍ରୋଣ ପୃଷତ-ନନ୍ଦନଙ୍କ କର୍ତ୍ତୃକ ନିହତ ଓ କୌରବ ସୈନ୍ୟମାନେ ସମରରେ ଭଗ୍ନ ହୁଅନ୍ତେ ଧନଞ୍ଜୟ ଆପଣାର ବିସ୍ମୟକର ବିଜୟବ୍ୟାପାର ଅବଲୋକନ କରି ସ୍ୱେଚ୍ଛାଗତ ବ୍ୟାସଦେବଙ୍କୁ ପଚାରିଲେ, ହେ ମହର୍ଷେ ! ଆମ୍ଭେ ଯେଉଁ ସମୟରେ ବିମଳ ଶରସମୂହଦ୍ୱାରା ସଂଗ୍ରାମରେ ବିପକ୍ଷମାନଙ୍କୁ ବିନାଶ କରିଥିଲୁଁ, ସେହି ସମୟରେ ପାବକପ୍ରଭ ଗୋଟିଏ ପୁରୁଷଙ୍କୁ ଆମ୍ଭସମ୍ମୁଖରେ ଦେଖିଲୁଁ । ୪ । ସେ ପ୍ରଦୀପ୍ତଶୂଳ ଉଦ୍ୟତ କରି ଯେଉଁ ଦିଗକୁ ଧାବିତ ହେଲେ, ସେହି ଦିଗର ବିପକ୍ଷ ସୈନ୍ୟମାନେ ବିଶୀର୍ଣ୍ଣ ହେଲେ । ୫ । ସେହି ମହାପୁରୁଷଙ୍କ କର୍ତ୍ତୃକ ପ୍ରଭଗ୍ନ ସୈନ୍ୟମାନଙ୍କୁ ଲୋକେ ଆମ୍ଭ କର୍ତ୍ତୃକ ଭଗ୍ନ ହୋଇଅଛନ୍ତି ବୋଲି ମନେକଲେ । କିନ୍ତୁ ଆମ୍ଭେ ସେହି ପଳାୟନପର ସୈନ୍ୟମାନଙ୍କୁ ପଶ୍ଚାଦ୍‌ଭାଗରୁ ତାଡ଼ିତ କରିଥିଲୁଁ । ସେ ପଦ ଦ୍ୱାରା ଭୂମି ସ୍ପର୍ଶ କରି ନଥିଲେ କିମ୍ବା ତାହାଙ୍କ ହସ୍ତସ୍ଥିତ ଶୂଳ ନିକ୍ଷେପ କରି ନଥିଲେ । ତାହାଙ୍କ ତେଜଃ ପ୍ରଭାବରୁ ଯେହି ହସ୍ତସ୍ଥ ଶୂଳରୁ ସହସ୍ର ସହସ୍ର ଶୂଳ ନିର୍ଗତ

ହୋଇଥିଲା । ହେ ଭଗବନ୍ ! ସୂର୍ଯ୍ୟସନ୍ନିଭ ପ୍ରଭାବଶାଳୀ ଶୂଳପାଣି ମହତ୍ କୃଷ୍ଣବର୍ଣ୍ଣ ସେହି ପୁରୁଷୋତ୍ତମ କିଏ ? ଆପଣ ତାହା ଆମ୍ଭ ନିକଟରେ କୀର୍ତ୍ତନ କରନ୍ତୁ । ୮ ।

ବ୍ୟାସ କହିଲେ—ହେ ପାର୍ଥ ! ଯେ ପ୍ରଜାପତି ପୂର୍ବରୁ ଅଛନ୍ତି, ଯେ ନିଗ୍ରହାନୁଗ୍ରହସମର୍ଥ ଓ ଯେ ତ୍ରୈଲୋକ୍ୟଶରୀର ସର୍ବଲୋକନିୟନ୍ତା ସର୍ବବ୍ୟାପୀ, ତେଜୋରୂପ, ଶଙ୍କର, ବରଦାତା, ଈଶାନ ଓ ତୈଜସ ପୁରୁଷ ତୁମ୍ଭେ ତାହାଙ୍କୁ ଦର୍ଶନ କରିଅଛ । ଅତଏବ ତୁମ୍ଭେ ସେହି ବରଦ ଭୁବନେଶ୍ୱରଙ୍କର ଶରଣାଗତ ହୁଅ । ୧୦ । ସେ ମହାଦେବ ମହାତ୍ମା, ଈଶାନ, ଜଟିଳ, ଶିବ, ତ୍ରିନେତ୍ର, ମହାଭୁଜ, ରୁଦ୍ର, ଶିଖୀ, ଚୀରବାସା, ମହାଧୃତିମାନ୍, ହର, ସ୍ଥାଣୁ, ବରଦ, ଜଗନ୍ନିୟନ୍ତା, ଜଗତ୍‌ପ୍ରଧାନ, ଅଜେୟ, ଜଗତ୍‌ପତି ଓ ସମସ୍ତଙ୍କର ଅଧୀଶ୍ୱର । ସେ ଏହି ସମସ୍ତ ଜଗତର ଉତ୍ପାଦକ ଓ ମୂଳସ୍ୱରୂପ, ସର୍ବଜୟୀ, ଜଗତର ଗତିସ୍ୱରୂପ, ବିଶ୍ୱାତ୍ମା, ବିଶ୍ୱସ୍ରଷ୍ଟା, ବିଶ୍ୱମୂର୍ତ୍ତି, ଯଶସ୍ୱୀ, ବିଶ୍ୱେଶ୍ୱର, ବିଶ୍ୱଚର, ସକଳ କର୍ମର ନିୟୋଗକର୍ତ୍ତା, ପ୍ରଭୁ, ଶମ୍ଭୁ, ସ୍ୱୟମ୍ଭୁ, ସମସ୍ତ ପ୍ରାଣିଙ୍କର ଈଶ୍ୱର, ଭୂତ ଭବିଷ୍ୟତ୍ ବର୍ତ୍ତମାନ କାଳତ୍ରୟର ଉଦ୍‌ଭାବନକର୍ତ୍ତା, ଯୋଗମୂର୍ତ୍ତି, ଯୋଗେଶ୍ୱର ଓ ସର୍ବ । ସମସ୍ତ ଲୋକମାନଙ୍କର ଈଶ୍ୱର ଓ ନିୟନ୍ତା । ସେ ସର୍ବଶ୍ରେଷ୍ଠ, ଜଗତ୍‌ଶ୍ରେଷ୍ଠ, ବରିଷ୍ଠ, ପରମେଷ୍ଠୀ, ତ୍ରୈଲୋକ୍ୟର ବିଧାତା ଓ ଲୋକତ୍ରୟର ଏକମାତ୍ର ସହାୟ । ଶୁଦ୍ଧାତ୍ମା, ଭବ, ଭୀମ, ଶଶାଙ୍କମୌଳୀ, ଶାଶ୍ୱତ, ଭୂଧର, ଦେବ, ସର୍ବବାଗୀଶ୍ୱରମାନଙ୍କର ଶ୍ରେଷ୍ଠ, ସୁଦୁର୍ଜ୍ଜୟ, ଜଗନ୍ନାଥ, ଜନ୍ମମୃତ୍ୟୁଜରାରହିତ । ସେ ଜ୍ଞାନାତ୍ମା, ଜ୍ଞାନଗମ୍ୟ, ଜ୍ଞାନପ୍ରଧାନ ଓ ସୁଦୁର୍ଜ୍ଞେୟ ଏବଂ ଭକ୍ତମାନଙ୍କର ଅଭିଳଷିତ ବରଦାତା । ୧୮ । ବାମନ, ଜଟିଳ, ମୁଣ୍ଡ, ହ୍ରସ୍ୱଗ୍ରୀବ, ମହୋଦର, ମହାକାୟ, ମହୋତ୍ସାହ ଓ ମହାକର୍ଣ୍ଣ ପ୍ରଭୃତି ବିକୃତାନନ ବିକୃତଚରଣ ଓ ବିକୃତ ବେଶ, ବହୁବିଧରୂପଧାରୀ, ଦିବ୍ୟମୂର୍ତ୍ତି, ଏମାନେ ତାହାଙ୍କର ପାରିଷଦ । ସେହି ମହେଶ୍ୱର ଉକ୍ତ ପ୍ରକାର ପାରିଷଦଗଣଙ୍କ ଦ୍ୱାରା ସତତ ପୂଜିତ ହୋଇଥାନ୍ତି ।

ହେ ବତ୍ସ ! ପାର୍ଥ ! ସେହି ତେଜସ୍ୱୀ ଶିବ ତୁମ୍ଭଠାରେ ପ୍ରସନ୍ନ ହୋଇ ରଣସ୍ଥଳରେ ତୁମ୍ଭ ଅଗ୍ରରେ ଗମନ କରନ୍ତି । ୨୧ । ଧନୁର୍ଦ୍ଧରାଗ୍ରଗଣ୍ୟ

ବହୁରୂପଧାରୀ ଦେବାଦିଦେବ ମହେଶ୍ୱରଙ୍କ ବ୍ୟତୀତ ସେହି ଭୟଙ୍କର ଲୋମହର୍ଷଣ ସଂଗ୍ରାମରେ ଦ୍ରୋଣ, କର୍ଣ୍ଣ, କୃପ ପ୍ରଭୃତି ରଣଦକ୍ଷ ମହାଧନୁର୍ଦ୍ଧରଗଣଙ୍କ କର୍ତ୍ତୃକ ରକ୍ଷିତ କୌରବମାନଙ୍କୁ ମନରେ ସୁଦ୍ଧା କି କେହି ପରାଭୂତ କରିବାପାଇଁ ଉତ୍ସାହୀ ହୋଇ ପାରିବେ ? ସେହି ମହାଦେବ ଅଗ୍ରଭାଗରେ ଅବସ୍ଥିତ ଥିଲେ କେହି ସମ୍ମୁଖରେ ରହିବାକୁ ଉତ୍ସାହ କରି ପାରନ୍ତି ନାହିଁ । କାରଣ ଏହି ତ୍ରୈଲୋକ୍ୟ ମଧ୍ୟରେ କେହି ତାହାଙ୍କ ସଦୃଶ ପରାକ୍ରମୀ ନାହିଁ । ୨୪ । ସଂଗ୍ରାମସ୍ଥଳରେ ସେ କ୍ରୁଦ୍ଧ ହୋଇ ଅବସ୍ଥିତ ହେଲେ ଶତ୍ରୁମାନେ ତାହାଙ୍କୁ ଦେଖିବା ମାତ୍ର ବିସଂଜ୍ଞ , କମ୍ପିତ ଓ ପତିତ ହୁଅନ୍ତି ଓ ଅନେକେ ନିହତ ହୁଅନ୍ତି । ୨୫ । ଦେବଗଣ, ମାନବଗଣ, ସ୍ୱର୍ଗବାସୀ, ମନୁଷ୍ୟଗଣ ସେହି ମହାଦେବଙ୍କୁ ନମସ୍କାର କରି ସ୍ୱର୍ଗବାସ କରନ୍ତି । ୨୬ । ଯେଉଁମାନେ ଅତିଶୟ ଭକ୍ତି ସହିତ ସେହି ବରଦାତା ରୁଦ୍ରଦେବ ଉମାପତି ଶିବଙ୍କୁ ପ୍ରଣାମ କରନ୍ତି ସେମାନେ ଇହଲୋକରେ ପରମ ସୁଖ ପ୍ରାପ୍ତ ହୋଇ ଶେଷରେ ପରମ ଗତି ଲାଭ କରନ୍ତି ।

ହେ ପାର୍ଥ ! ସେହି ଶାନ୍ତ, ରୁଦ୍ର, ଶିତିକଣ୍ଠ, କନିଷ୍ଠ, ମହାତେଜସ୍ୱୀ, କପର୍ଦ୍ଦୀ, କରାଳ ହରିତନେତ୍ର, ବରଦାତା, ଯାମ୍ୟ, ଅବ୍ୟକ୍ତକେଶ, ସଦାଚାର, ଶଙ୍କର, କାମ୍ୟଦେବ, ପିଙ୍ଗଳନେତ୍ର, ସ୍ଥାଣୁ, ପୁରୁଷ ପ୍ରଧାନ, ପିଙ୍ଗଳ କେଶ, ମୁଣ୍ଡ, କୃଷ, ଉଦ୍ଧାରକର୍ତ୍ତା, ଭାସ୍କର, ସୁତୀର୍ଥ, ବେଗବାନ, ବହୁରୂପ, ସର୍ବପ୍ରିୟ, ପ୍ରିୟବାସା ଦେବଙ୍କୁ ତୁମ୍ଭେ ନମସ୍କାର କର । ସେହି ଉଷ୍ଣୀଷଧାରୀ ସୁବକ୍ତ୍ର, ସହସ୍ରାକ୍ଷ, ମୀଢୁଷ୍ଟମ, ପ୍ରଶାନ୍ତ, ଯତିସ୍ୱରୂପ, ଚୀରବାସା, ଗିରିଶ, କପର୍ଦ୍ଦୀ, କରାଳ, ଉଗ୍ର; ଦିକ୍‌ପତି, ପର୍ଜ୍ଜନ୍ୟ ପତି, ଭୂତସ୍ୱାମୀଙ୍କୁ ନମସ୍କାର । ସେହି ବନସ୍ପତିପତି ଓ ଗୋ-ପତିଙ୍କୁ ନମସ୍କାର ।୩୭। ଯାହାଙ୍କର ଶରୀରସ୍ଥାନ ବହୁବିଧ ବୃକ୍ଷଦ୍ୱାରା ସୁଶୋଭିତ ସେହି ସେନାନାୟକ, ଅନ୍ତର୍ଯ୍ୟାମୀ, ସ୍ରୁବହସ୍ତ, ଧନ୍ୱୀ ଭାର୍ଗବ, ବହୁରୂପ, ବିଶ୍ୱପତି, ଚୀରବାସା, ସହସ୍ରମସ୍ତକ ସହସ୍ରନେତ୍ର, ସହସ୍ର ବାହୁ, ସହସ୍ରଚରଣ ଦେବଙ୍କୁ ନମସ୍କାର । ହେ ଅର୍ଜ୍ଜୁନ ! ସେହି ଦକ୍ଷଯଜ୍ଞବିନାଶକାରୀ ବିରୂପାକ୍ଷ, ବରଦାତା, ତ୍ରିଲୋକେଶ୍ୱର ଉମାପତିଙ୍କର ଶରଣାଗତ ହୁଅ । ଆମ୍ଭେ ମଧ୍ୟ ସେହି ପ୍ରଜାପତି, ଅବ୍ୟଗ୍ର, ଅବ୍ୟୟ, ଭୂତପତି, କପର୍ଦ୍ଦୀ, ବୃଷାବର୍ତ୍ତ, ବୃଷନାଭି, ବୃଷଧ୍ୱଜ, ବୃଷଦର୍ପ, ବୃଷପତି, ବୃଷଶୃଙ୍ଗ, ବୃଷଶ୍ରେଷ୍ଠ, ବୃଷାଙ୍କ, ବୃଷଭୋଦର, ବୃଷଭ, ବୃଷଭେକ୍ଷଣ, ବୃଷାୟୁଧ, ବୃଷଶର

ବୃଷମୂର୍ତ୍ତି, ମହେଶ୍ୱର, ମହୋଦର, ମହାକାୟ, ଦ୍ୱୀପିଚର୍ମ୍ମପରିଧାୟୀ, ଲୋକେଶ୍ୱର, ବରଦାତା, ମୁଣ୍ଡ, ବ୍ରହ୍ମଣ୍ୟ, ବ୍ରାହ୍ମଣପ୍ରିୟ, ତ୍ରିଶୂଳପାଣି, ବରପ୍ରଦ, ଖଡ୍‌ଗଚର୍ମଧାରୀ, ପିନାକୀ, ଖଣ୍ଡପରଶୁ, ଲୋକପତିମାନଙ୍କର ଈଶ୍ୱର, ଚୀରବାସା, ଶରଣ୍ୟ, ଦେବଙ୍କର ଶରଣାପନ୍ନ ହେଲୁଁ । ସେହି ବୈଶ୍ରବଣସଖା ସୁରେଶଙ୍କୁ ନମସ୍କାର । ୫୩ । ସୁବାସା, ସୁଧନ୍ୱୀ, ସୁବ୍ରତଙ୍କୁ ସର୍ବଦା ନମସ୍କାର । ସେହି ଧନୁର୍ଦ୍ଧର, ପ୍ରିୟଧନ୍ୱା, ଧନ୍ୱୀ, ଧନ୍ୱନ୍ତର, ଧନୁର୍ବ-ଗ୍ରର୍ଯ୍ୟ ଓ ଧନୁର୍ମୂର୍ତ୍ତି ଦେବଙ୍କୁ ନମସ୍କାର । ସେହି ଉଗ୍ରାୟୁଧ ସୁରଶ୍ରେଷ୍ଠ ଦେବଙ୍କୁ ନମସ୍କାର । ବହୁମୂର୍ତ୍ତି ଓ ବହୁଧନ୍ୱଙ୍କୁ ନମସ୍କାର । ସ୍ଥାଣୁ ଓ ସୁଧନ୍ୱଙ୍କୁ ସର୍ବଦା ନମସ୍କାର । ୫୬ । ସେହି ତ୍ରିପୁର ଓ ଉଗ୍ରହନ୍ତାଙ୍କୁ ନମସ୍କାର । ବନସ୍ପତିପତି ଓ ନରପତିଙ୍କୁ ନମସ୍କାର । ୫୭ । ସେହି ଗୋପତି ଓ ଯଜ୍ଞ-ପତିଙ୍କୁ ସର୍ବଦା ନମସ୍କାର । ମାତୃପତି ଓ ଗଣପତିଙ୍କୁ ସର୍ବଦା ନମସ୍କାର । ସେହି ସଲିଳପତି ଓ ସୁରପତିଙ୍କୁ ସର୍ବଦା ନମସ୍କାର । ପୂଷାରଦନ୍ତଭଗ୍ନକାରୀ ତ୍ରିନେତ୍ର, ବରଦାତା, ନୀଳକଣ୍ଠ, ପିଙ୍ଗଳବର୍ଣ୍ଣ, ସୁବର୍ଣ୍ଣକେଶ ସେହି ଶିବଙ୍କୁ ନମସ୍କାର ।

ହେ କୁନ୍ତୀନନ୍ଦନ ! ସେହି ଧୀମାନ୍, ମହାଦେବଙ୍କର ଯେଉଁସବୁ ଦିବ୍ୟ କର୍ମ୍ମମାନ ଶ୍ରବଣ କରିଅଛୁଁ ଆମ୍ଭେ ଆପଣାର ବୋଧ ଅନୁସାରେ ସେ ସମସ୍ତ ତୁମ୍ଭ ନିକଟରେ କୀର୍ତ୍ତନ କରିବୁଁ, ଶ୍ରବଣ କର । ସେ କୁପିତ ହେଲେ ଦେବ ଅସୁର, ଗନ୍ଧର୍ବ, ରାକ୍ଷସ ଏମାନଙ୍କ ମଧ୍ୟରୁ ଯେ କେହି ପାତାଳରେ ପ୍ରବେଶ କଲେ ହେଁ ସୁଖଲାଭର ଆଶା କରିପାରନ୍ତି ନାହିଁ । ପୂର୍ବେ ପ୍ରଜାପତି ଦକ୍ଷ ଯଥାବିଧି ଯଜ୍ଞାରମ୍ଭ କରନ୍ତେ ମହାଦେବ ସେହି ଯଜ୍ଞରେ ଆପଣାର ଭାଗ ପ୍ରାପ୍ତ ନ ହେବାରୁ କ୍ରୋଧରେ ନିର୍ଦ୍ଦୟ ହୋଇ ଯଜ୍ଞ ଧ୍ୱଂସ କଲେ । ସେହି ସମୟରେ ସେ ଶରାସନ ଗ୍ରହଣପୂର୍ବକ ଶରମୋଚନ ଓ ମହାଶବ୍ଦ ସହକାରେ ସିଂହନାଦ କରନ୍ତେ ଦେବଗଣ କୌଣସିଠାରେ ମଧ୍ୟ ଶାନ୍ତିଲାଭ କରିପାରିଲେ ନାହିଁ । ଏହାପରେ ମହେଶ୍ୱର କୁପିତ ହୋଇ ସହସା ଯଜ୍ଞ ବିନାଶରେ ପ୍ରବୃତ୍ତ ହୁଅନ୍ତେ ତାହାଙ୍କର ସେହି ଶରାସନର ଜ୍ୟା-ଘୋଷ ଓ ତାଳ ଶବ୍ଦରେ ସମସ୍ତ ଲୋକ ବ୍ୟାକୁଳିତ ହେଲା । ହେ ଅର୍ଜ୍ଜୁନ ! ସେହି ସମୟରେ ସୁର, ଅସୁର ସମସ୍ତେ ତାହାଙ୍କର ବଶବର୍ତ୍ତୀ ହୋଇ ନିପତିତ ହେଲେ । ସାଗର-ସଲିଳ କ୍ଷୁଭିତ ଓ ବସୁନ୍ଧରା କମ୍ପିତ ହେଲା । ପର୍ବତ

ସମୂହ ବିଶୀର୍ଣ୍ଣ ହେଲା । ଦିଗ୍‌ଗଜମାନେ ମୋହିତ ହେଲେ । ଚତୁର୍ଦ୍ଦିଗ ଏପରି ଅନ୍ଧକାରମୟ ହେଲା ଯେ, କିଛି ହିଁ ଦୃଷ୍ଟିଗୋଚର ହେଲାନାହିଁ । ତଦନନ୍ତର ସେ ସୂର୍ଯ୍ୟ ଓ ଅନ୍ୟାନ୍ୟ ଜ୍ୟୋତିଷ୍ମାନ୍ ପଦାର୍ଥମାନଙ୍କର ପ୍ରଭା ପ୍ରତିହତ କଲେ । ୫୭ । ତାହା ଦେଖି ଋଷିମାନେ ଭୟରେ ଚିତ୍କାର କଲେ । ପରେ ନିଜନିଜର ଓ ସମସ୍ତ ପ୍ରାଣିମାନଙ୍କର ସୁଖଇଚ୍ଛାରେ ପ୍ରଶାନ୍ତ ହେଲେ । ୫୮ ।

ଏହି ସମୟରେ ପୂଷାନାମରେ ସୂର୍ଯ୍ୟଦେବ ଯଜ୍ଞୀୟ ହବି ଭୋଜନ କରୁଥିବାର ଦେଖି ଶଙ୍କର ତାହାଙ୍କ ପ୍ରତି ଧାବିତ ହେଲେ ଓ ହାସ୍ୟ-ପୂର୍ବକ ତାହାଙ୍କର ଦନ୍ତଭଗ୍ନ କଲେ । ତହୁଁ ଦେବତାମାନେ ତ୍ରାସରେ କମ୍ପାନ୍ୱିତ ହୋଇ ପଳାୟନ କଲେ । ସେହି ସମୟରେ ମହାଦେବ ପୁନର୍ବାର ଶରାସନ ଗ୍ରହଣ କରି ଦେବଗଣଙ୍କ ପ୍ରତି ବିଦ୍ୟୁତ୍‌ଜ୍ୱାଳ ତୋୟଦ-ସନ୍ନିଭ ସଧୂମ ଓ ବିସ୍ଫୁଲିଙ୍ଗସମନ୍ୱିତ ଜ୍ୱଳନ୍ତ ଅନଳ ସଦୃଶ ଧାର ନିଶିତ ବାଣସମୂହ ନିକ୍ଷେପ କଲେ । ତାହା ଦେଖି ଦେବଗଣ ଭୟରେ ସେହି ରୁଦ୍ରଦେବଙ୍କୁ ପ୍ରଣିପାତ କରି ତାହାଙ୍କ ନିମିତ୍ତ ବିଶିଷ୍ଟ ଯଜ୍ଞଭାଗ ସ୍ଥାପନ ପୂର୍ବକ ତାହାଙ୍କର ଶରଣାପନ୍ନ ହେଲେ । ୭୨ । ସେହି ସମୟରେ କୋପ ପରିତ୍ୟାଗ ପୂର୍ବକ ସେହି ମହାଦେବ ଯଜ୍ଞ ସମ୍ପୂର୍ଣ୍ଣ କଲେ । ପଳାୟନପର ସୁରମାନଙ୍କୁ ପୁନର୍ବାର ସଂସ୍ଥାପିତ କଲେ । କିନ୍ତୁ ଦେବଗଣ ଏ ପର୍ଯ୍ୟନ୍ତ ମଧ୍ୟ ତାହାଙ୍କଠାରେ ଭୀତ ଅଛନ୍ତି । ୭୩ ।

ପୂର୍ବେ ନଭୋମଣ୍ଡଳରେ ବୀର୍ଯ୍ୟଶାଳୀ ଅସୁରମାନଙ୍କର ଲୌହ, ରଜତ ଓ ସୁବର୍ଣ୍ଣ ନିର୍ମିତ ଅତିମହତ୍ତ୍ୱ ତିନିଗୋଟି ପୁରୀ ବିଦ୍ୟମାନ ଥିଲା ।୭୪। ତନ୍ମଧ୍ୟରୁ ସୁବର୍ଣ୍ଣପୁରୀ କମଳାକ୍ଷର, ରଜତପୁରୀ ତାରକାକ୍ଷର ଓ ଲୌହ-ମୟପୁରୀ ବିଦ୍ୟୁନ୍ମାଳିର ଥିଲା । ୭୫ । ଦେବରାଜ ଇନ୍ଦ୍ର ସ୍ୱକୀୟ ସମସ୍ତ ଅସ୍ତ୍ରଦ୍ୱାରା ମଧ୍ୟ ସେହି ତ୍ରିପୁରକୁ ଭେଦ କରିପାରି ନଥିଲେ । ତତ୍ପରେ ଅସୁରଗଣନିପୀଡ଼ିତ ଦେବସମୂହ ମିଳିତ ହୋଇ ମହାତ୍ମା ରୁଦ୍ରଙ୍କର ଶରଣାପନ୍ନ ହେଲେ ଓ କହିଲେ, ହେ ଦେବଦେବେଶ ! ତ୍ରିପୁରବାସୀ ଭୟଙ୍କର ଅସୁରମାନେ ବ୍ରହ୍ମାଙ୍କ ନିକଟରୁ ବର ଲାଭ କରି ସେହି ବର-ଦର୍ପରେ ଦର୍ପିତ ହୋଇ ବର୍ତ୍ତମାନ ସମସ୍ତ ଲୋକଙ୍କୁ ଅତିଶୟ ପୀଡ଼ା ପ୍ରଦାନ

କରୁଅଛନ୍ତି । ହେ ପ୍ରଭୁ ମହାଦେବ ! ଆପଣଙ୍କ ବ୍ୟତୀତ ଅପର କେହି ସେହି ଦୈତ୍ୟଗଣଙ୍କୁ ସଂହାର କରି ପାରିବ ନାହିଁ । ଅତଏବ ଆପଣ ସେହି ସୁରଦ୍ୱେଷୀମାନଙ୍କୁ ବିନାଶ କରନ୍ତୁ । ହେ ଭୁବନେଶ୍ୱର ! ଆପଣ ଯଦି ସେହି ଅସୁରମାନଙ୍କୁ ବିନାଶ କରନ୍ତି, ତାହାହେଲେ ଅପରାପର ପ୍ରାଣିଗଣ ସମସ୍ତେ ଯଥାବିହିତ କାର୍ଯ୍ୟରେ ନିଯୁକ୍ତ ରହିବେ । ପ୍ରତାପବାନ୍ ପିନାକଧାରୀ ତ୍ରିନେତ୍ର ଶଙ୍କର ଦେବଗଣଙ୍କର ଏହି ବାକ୍ୟ ଶ୍ରବଣ କରି 'ତାହା ହେଉ' ବୋଲି ସ୍ୱୀକାର କଲେ । ତତ୍ପରେ ସେମାନଙ୍କ ହିତାର୍ଥେ ସେହି ତ୍ର୍ୟମ୍ବକ ମହାଦେବ ସାଗର ସାଗରକାନନାନ୍ତବର୍ତ୍ତୀ ବସୁନ୍ଧରାକୁ ରଥସ୍ୱରୂପ କଲେ । ଗନ୍ଧମାଦନ ଓ ବିନ୍ଧ୍ୟାଚଳକୁ ସେହି ରଥର ବଂଶ ଧ୍ୱଜ ରୂପରେ ନିରୂପିତ କଲେ । ୭୧ । ନାଗେନ୍ଦ୍ର ଅନନ୍ତ ସେହି ରଥର ଅକ୍ଷକାଷ୍ଠ ହେଲେ । ଚନ୍ଦ୍ର ଓ ସୂର୍ଯ୍ୟ ତାହାର ଚକ୍ର, ଏଲପତ୍ର ପୁଷ୍ପଦନ୍ତ ତାହାର ଯୂପସ୍ୱରୂପ, ମଳୟା-ଚଳ ତାହାର ଯୁଗକାଷ୍ଠ, ତକ୍ଷକ ତାହାର ଯୁଗବନ୍ଧୁର, ଭୂତଗଣ ତାହାର ଯୋକ୍ତ୍ରାଙ୍ଗ, ଚାରି ବେଦ ତାହାର ଚାରି ଅଶ୍ୱ ଓ ଉପବେଦସମୂହ ସେହି ଅଶ୍ୱର ମୁଖବନ୍ଧ ହେଲା । ଗାୟତ୍ରୀ ଓ ସାବିତ୍ରୀ ସେହି ଅଶ୍ୱସମୂହର ପ୍ରଗ୍ରହ, ଓଁକାର ପ୍ରତୋଦ ହେଲା । ବ୍ରହ୍ମା ସେହି ରଥର ସାରଥି ହେଲେ । ଅନନ୍ତର ସେହି ସର୍ବସାମରିକ ଶ୍ରେଷ୍ଠ, ଲୋକ ତ୍ରୟେଶ୍ୱର, ସ୍ଥାଣୁ, ସର୍ବଦେବ-ମୟ ଶିବ ମନ୍ଦର ଗିରିକୁ ଗାଣ୍ଡୀବ, ବାସୁକିଙ୍କୁ ଧନୁର୍ଗୁଣ, ବିଷ୍ଣୁଙ୍କୁ ଉତ୍କୃଷ୍ଟ ଶର, ଅନଳକୁ ଶଲ୍ୟ, ଅନିଳକୁ ଶରର ପକ୍ଷଦ୍ୱୟ, ବୈବସ୍ୱତ ଯମଙ୍କୁ ସେହି ଶରର ପୁଙ୍ଖ, ବିଦ୍ୟୁତ୍‌କୁ ନିର୍ଯ୍ୟାଣ ଓ ସୁମେରୁକୁ ରଣାଗ୍ରଜାୟୀ ଧ୍ୱଜସ୍ୱରୂପ କରି ଉଲ୍ଲିଖିତ ଦିବ୍ୟ ରଥରେ ଆରୋହଣ ପୂର୍ବକ ତ୍ରିପୁରଧ୍ୱଂସ ନିମିତ୍ତ ଯାତ୍ରା କଲେ ।

ହେ ପାର୍ଥ ! ସେହି ସମୟରେ ସେହି ଅସୁରାନ୍ତକାରୀ ଅତୁଳପରାକ୍ରମ ଶ୍ରୀମାନ୍ ମହାଦେବ ତପଃପରାୟଣ ଋଷି ଓ ଦେବଗଣଙ୍କ କର୍ତ୍ତୃକ ସ୍ତୂୟମାନ ହୋଇ ମହେଶ୍ୱର ନାମକ ଗୋଟିଏ ଦିବ୍ୟସ୍ଥାନ ନିର୍ଣ୍ଣୟ କରି ତ୍ରିପୁର ଏକତ୍ରିତ ହେବା ଅପେକ୍ଷାରେ ଅଚଳ ଭାବରେ ଏକ ସହସ୍ର ବର୍ଷ ଅବସ୍ଥାନ କଲେ । ଯେତେବେଳେ ସେହି ତ୍ରିପୁର ଅନ୍ତରୀକ୍ଷରେ ମିଳିତ ହେଲା, ସେତେବେଳେ ସେ ତ୍ରିପର୍ବ ଓ ତ୍ରିଶଲ୍ୟଯୁକ୍ତ ଶରଦ୍ୱାରା ତାହାକୁ ଭେଦ କଲେ । ଦାନବଗଣ ବିଷ୍ଣୁ ସୋମସମାଯୁକ୍ତ, କାଳାଗ୍ନିସଂଯୁକ୍ତ ଶର ଅବା

ପୁର କଣ୍ଟୁ ହିଁ ନିରୀକ୍ଷଣ କରିପାରିଲେ ନାହିଁ । ତ୍ରିପୁର ଦଗ୍ଧ ସମୟରେ ଦେବୀ ଭଗବତୀ ପଞ୍ଚଶିଖାଯୁକ୍ତ ଗୋଟିଏ ବାଳକକୁ କୋଡ଼ରେ ଘେନି ତାହା ଦେଖିବାକୁ ଗମନ କଲେ । ଅନନ୍ତର ଉମା ଏହି ବାଳକ କିଏ ? ଏହି କଥା ଦେବତାମାନଙ୍କୁ ପଚ୍ଛରନ୍ତେ ଦେବରାଜ ଅସୂୟା ପରବଶ ହୋଇ ସେହି ବାଳକ ପ୍ରତି ବଜ୍ର ପ୍ରହାର କରିବାକୁ ଉଦ୍ୟତ ହେଲେ । ତେତେବେଳେ ନିଗ୍ରହାନୁଗ୍ରହସମର୍ଥ ସର୍ବଲୋକେଶ୍ୱର ବିଭୁ ଭଗବାନ୍ ତ୍ରିଲୋଚନ ହାସ୍ୟ କରି ସେହି କ୍ରୁଦ୍ଧ ପୁରନ୍ଦରଙ୍କର ସବଜ୍ର ଭୁଜକୁ ତତ୍‌କ୍ଷଣାତ୍ ସ୍ତମ୍ଭିତ କଲେ । ଏହିପରି ଶଚୀପତିକୁ ସ୍ତମ୍ଭିତବାହୁ ହୋଇ ଦେବଗଣଙ୍କର ସମଭିବ୍ୟା-ହାରରେ ସୃଷ୍ଟି କର୍ତ୍ତା ଅବ୍ୟୟ ବ୍ରହ୍ମାଙ୍କ ନିକଟକୁ ସତ୍ୱର ଗମନ ପୂର୍ବକ ତାହାଙ୍କର ଶରଣାଗତ ହେଲେ । ସମସ୍ତେ ତାହାଙ୍କୁ ପ୍ରଣାମ ପୂର୍ବକ କୃତାଞ୍ଜଳି ପୁଟରେ କହିଲେ, ହେ ବ୍ରହ୍ମନ୍ ! ପାର୍ବତୀଙ୍କ କୋଡ଼ରେ ବାଳକ ରୂପଧାରୀ ଗୋଟିଏ ଅଦ୍ଭୁତ ମୂର୍ତ୍ତି ଦର୍ଶନ କଲୁ । ମାତ୍ର ସେ କିଏ ତାହା ଆମ୍ଭେମାନେ କିଛି ଲକ୍ଷ୍ୟ କରି ପାରିଲୁ ନାହିଁ ।୮୮। ସେ ବାଳକ ହୋଇ ମଧ୍ୟ ବିନା ଯୁଦ୍ଧରେ ଆମ୍ଭସମସ୍ତଙ୍କୁ ଅବଲୀଳାକ୍ରମେ ପରାଜିତ କଲେ । ଅତଏବ ଆପଣଙ୍କୁ ପଚ୍ଛରୁଅଛୁଁ ସେ କିଏ ? ୮୯ । ବ୍ରହ୍ମବିଦାମ୍ବର ସ୍ୱୟମ୍ଭୁ ଭଗବାନ୍ ବ୍ରହ୍ମା ସେହି ଅମିତତେଜ ଦେବଗଣଙ୍କର ବାକ୍ୟ ଶ୍ରବଣ କରି କିଛିକ୍ଷଣ ଚିନ୍ତାକରି କହିଲେ, ହେ ଦେବଗଣ ! ଉମାଙ୍କ ସହିତ ଯେଉଁ ଅମିତଦ୍ୟୁତି ପୁରୁଷଙ୍କୁ ଦର୍ଶନ କରିଅଛ, ସେ ଏହି ଚରାଚର ଜଗତର ପ୍ରଭୁ ଭଗବାନ୍ ହର । ସେହି ମହେଶ୍ୱରଙ୍କ ଅପେକ୍ଷା ଆଉ କିଛି ଶ୍ରେଷ୍ଠ ବସ୍ତୁ ନାହିଁ । ସେହି ପଶୁପତି ପାର୍ବତୀଙ୍କ ନିମିତ୍ତ ବାଳକରୂପ ଧାରଣ କରିଥିଲେ । ସେ ସମସ୍ତଙ୍କର ପ୍ରଭୁ, ଷଡ଼ୈଶ୍ୱର୍ଯ୍ୟଶାଳୀ ଆନନ୍ଦରୂପ ଓ ସମସ୍ତ ଲୋକର ନିୟନ୍ତା । ଅତଏବ ଆମ୍ଭେମାନେ ସମସ୍ତେ ମିଳିତ ହୋଇ ତାହାଙ୍କର ଶରଣାଗତ ହେବା । ପ୍ରଜାପତି ପ୍ରଭୃତି ଦେବଗଣ କେହି ସେହି ବାଳକ ସଦୃଶ ପ୍ରଭୁ ଭୁବନେଶ୍ୱରଙ୍କୁ ଚିହ୍ନିପାରିଲେ ନାହିଁ । ଅନନ୍ତର ପିତାମହ ବ୍ରହ୍ମା ସେଠାରେ ଉପସ୍ଥିତ ହୋଇ ମହେଶ୍ୱରଙ୍କୁ ଦର୍ଶନ କଲେ ଓ ତାହାଙ୍କୁ ସର୍ବଲୋକଶ୍ରେଷ୍ଠ ଜାଣି ତାହାଙ୍କର ଏହିପରି ବନ୍ଦନା କଲେ ।

ବ୍ରହ୍ମା କହିଲେ—ହେ ଦେବ ! ତୁମ୍ଭେ ଏହି ଭୁବନର ଯଜ୍ଞସ୍ୱରୂପ ଗତି ଓ ଆଶ୍ରୟ । ତୁମ୍ଭେ ମହାଦେବ, ଭବ, ପରମଧାମ ଓ ପରମପଦ । ଏହି

ଚରାଚର ସମସ୍ତ ଜଗତ୍ ତୁମ୍ଭଦ୍ୱାରା ବ୍ୟାପ୍ତ ହୋଇଅଛି । ୯୭ । ତୁମ୍ଭେ ଭୂତ ଭବିଷ୍ୟତ ଓ ବର୍ତ୍ତମାନ କାଳର ଈଶ୍ୱର, ଲୋକନାଥ ଓ ଜଗତ୍ପତି । ହେ ଦେବ ! ଶତ୍ରୁ ତୁମ୍ଭ କ୍ରୋଧାଗ୍ନିରେ ଦଗ୍ଧପ୍ରାୟ ହୋଇ ଅଛନ୍ତି । ତାହାଙ୍କଠାରେ ପ୍ରସନ୍ନ ହୁଅ । ୯୮ ।

ବ୍ୟାସ କହିଲେ—ମହେଶ୍ୱର ପଦ୍ମଯୋନିଙ୍କର ଏହିପରି ସ୍ତୁତି ବାକ୍ୟ ଶ୍ରବଣ କରି ପ୍ରୀତ ହେଲେ ଓ ପ୍ରସନ୍ନ ବଦନରେ ଅଟ୍ଟହାସ କଲେ । ୯୯ । ତାହା ଦେଖି ଅମରଗଣ ଉମାଙ୍କ ସହିତ ସେହି ରୁଦ୍ରଦେବଙ୍କୁ ପ୍ରସନ୍ନ କଲେ । ତହୁଁ ଇନ୍ଦ୍ରଙ୍କ ବାହୁ ପୂର୍ବବତ୍ ପ୍ରକୃତିସ୍ଥ ହେଲା । ୧୦୦ । ହେ ପାର୍ଥ ! ଏହିପରି ସେହି ତ୍ରିଦଶଶ୍ରେଷ୍ଠ ଦକ୍ଷଯଜ୍ଞବିନାଶକାରୀ ଉମାସମନ୍ୱିତ ଭଗବାନ୍ ବୃଷଭଧ୍ୱଜ ଦେବଗଣଙ୍କ ପ୍ରତି ପ୍ରସନ୍ନ ହେଲେ । ୧୦୧ । ସେହି ଦେବ ରୁଦ୍ର, ଶିବ, ଅଗ୍ନି, ସର୍ବଜ୍ଞ, ସର୍ବଇନ୍ଦ୍ର, ବାୟୁ, ଅଶ୍ୱିନୀକୁମାରଯୁଗଳ ଓ ବିଦ୍ୟୁତ୍‌ରୂପ । ସେ ଭବ, ମହାଦେବ, ସନାତନ ଈଶାନ, ଚନ୍ଦ୍ର ସୂର୍ଯ୍ୟ, ବରୁଣ ଓ ପର୍ଜ୍ଜନ୍ୟ ମୂର୍ତ୍ତି । ସେ କାଳରୂପୀ, ଅନ୍ତକ, ମୃତ୍ୟୁ, ଯମ, ରାତ୍ରି ଓ ଦିନ । ସେ ପକ୍ଷ, ମାସ, ଋତୁ, ଉଭୟ ସନ୍ଧ୍ୟା ଓ ସମ୍ବତ୍ସର । ସେ ଧାତା, ବିଧାତା ବିଶ୍ୱାତ୍ମା, ବିଶ୍ୱକର୍ମା । ସେ ଶରୀର ବିହୀନ ହୋଇ ମଧ୍ୟ ସମସ୍ତ ଦେବ ରୂପରେ ଅବସ୍ଥାନ କରୁଅଛନ୍ତି । ଏହି କାରଣରୁ ଅମରଗଣ ତାହାଙ୍କୁ ଶତ, ସହସ୍ର ଲକ୍ଷ ଓ ବହୁରୂପ ବୋଲି ସ୍ତବ କରନ୍ତି । ୧୦୬ । ବେଦଜ୍ଞ ବ୍ରାହ୍ମଣଗଣ ସେହି ଦେବାଦିଦେବଙ୍କର ଘୋର ଓ ଶିବା ନାମ୍ନୀ ଦୁଇଗୋଟି ମୂର୍ତ୍ତି ଅଛି ବୋଲି ଜାଣନ୍ତି, କିନ୍ତୁ ସେହି ଦୁଇଗୋଟି ମୂର୍ତ୍ତି ବହୁରୂପରେ ବିସ୍ତୃତ ।୧୦୭। ବିଷ୍ଣୁ, ଅଗ୍ନି, ଭାସ୍କର ତାହାଙ୍କର ଘୋର ମୂର୍ତ୍ତି ଓ ଚନ୍ଦ୍ରମା, ଜଳ ଓ ଜ୍ୟୋତିଃ ପଦାର୍ଥ ସମୂହ ତାହାଙ୍କ ସୌମ୍ୟମୂର୍ତ୍ତି । ପୁରାଣ, ବେଦାଙ୍ଗ ଓ ଉପ-ନିଷଦ ପ୍ରଭୃତି ଯେଉଁ ସବୁ ଗୋପ୍ୟ ବସ୍ତୁ ଅଛି, ସେ ସମସ୍ତ ସେହି ସ୍ୱପ୍ରକାଶ ମହେଶ୍ୱର । ୧୦୯ । ହେ ଅର୍ଜ୍ଜୁନ ! ଜନ୍ମାଦି ରହିତ ସେହି ଭଗବାନ୍ ମହାଦେବ ଈଦୃଶ ଅଟନ୍ତି । ଏହାଠାରୁ ମଧ୍ୟ ଅତିରିକ୍ତ ।

ହେ ପାଣ୍ଡୁନନ୍ଦନ ! ଆମ୍ଭେ ସହସ୍ର ବର୍ଷ ନିୟତ କୀର୍ତ୍ତନ କଲେ ହେଁ ସେହି ଭଗବାନ ଶଙ୍କରଙ୍କର ଗୁଣ ବର୍ଣ୍ଣନା କରି ପାରିବୁ ନାହିଁ । ମନୁଷ୍ୟ-ମାନେ ଯଦି ସମସ୍ତ ଗ୍ରହକର୍ତ୍ତୃକ ଆକ୍ରାନ୍ତ ଓ ସର୍ବ ପାପରେ ପରିପୂର୍ଣ୍ଣ ହୋଇ

ମଧ୍ୟ ତାହାଙ୍କର ଶରଣାଗତ ହୁଅନ୍ତି, ତେବେ ସେ ସେମାନଙ୍କ ପ୍ରତି ପ୍ରୀତ ହୋଇ ସେମାନଙ୍କୁ ସମସ୍ତ ପ୍ରକାର ବିପଦରୁ ମୁକ୍ତ କରନ୍ତି । ସେ ସଦୟ ହେଲେ ମାନବମାନଙ୍କୁ ଆୟୁ, ଆରୋଗ୍ୟ, ଐଶ୍ୱର୍ଯ୍ୟ, ଧନ ଓ ଉତ୍ତମ ଉତ୍ତମ ଅଭିଳଷିତ ଶ୍ରେୟବସ୍ତୁ ସମୂହ ପ୍ରଦାନ କରନ୍ତି ଏବଂ କୁପିତ ହେଲେ ବିପଦରେ ନିକ୍ଷେପ କରନ୍ତି । ଇନ୍ଦ୍ରାଦି ଦେବଗଣଙ୍କଠାରେ ଯେଉଁସବୁ ଐଶ୍ୱର୍ଯ୍ୟ ଲକ୍ଷିତ ହୁଏ, ସେସମସ୍ତ ତାହାଙ୍କର ଐଶ୍ୱର୍ଯ୍ୟ ବୋଲି କୀର୍ତ୍ତିତ ହୁଏ । କାରଣ ସେ ମନୁଷ୍ୟମାନଙ୍କର ଶୁଭାଶୁଭ କାର୍ଯ୍ୟରେ ବ୍ୟାପୃତ ଅଛନ୍ତି । ସେ ସ୍ୱୀୟ ଐଶ୍ୱର୍ଯ୍ୟ ପ୍ରଭାବରେ ସମସ୍ତ କାମନା ପୂରଣ କରିବାକୁ ସମର୍ଥ ଓ ମହାଭୂତଗଣଙ୍କର ନିୟନ୍ତା ହେତୁ ତାହାଙ୍କୁ ଈଶ୍ୱର ଓ ମହେଶ୍ୱର ବୋଲି କୀର୍ତ୍ତନ କରନ୍ତି । ସେ ଅସଂଖ୍ୟ ରୂପଦ୍ୱାରା ଏହି ଜଗତବ୍ୟାପି ଅବସ୍ଥାନ କରୁଅଛନ୍ତି । ସେହି ଦେବଙ୍କର ଯେଉଁ ବକ୍ତ୍ର ସମୁଦ୍ରରେ ଅବସ୍ଥିତ ହୋଇ ସଲିଳମୟ ହବିଃ ପାନ କରୁଅଛି, ତାହା ବଡ଼ବାମୁଖ ବୋଲି ବିଖ୍ୟାତ । ୧୧୬ ।

ସେହି ଜ୍ୟୋତିଷ୍ମାନ୍ ପୁରୁଷ ସର୍ବଦା ଶ୍ମଶାନରେ ବାସ କରନ୍ତି । ମନୁଷ୍ୟମାନେ ତାହାଙ୍କୁ ସେଠାରେ ବୀରସ୍ଥାନସ୍ଥିତ ଈଶ୍ୱର ବୋଲି ଅର୍ଚ୍ଚନା କରନ୍ତି । ୧୧୭ । ତାହାଙ୍କର ବହୁସଂଖ୍ୟକ ପ୍ରଦୀପ୍ତ ଓ ଭୟାନକ ରୂପ ଅଛି । ମନୁଷ୍ୟମାନେ ସେହିସବୁ ରୂପକୁ ନିୟତ ପୂଜା ଓ କୀର୍ତ୍ତନ କରନ୍ତି । କର୍ମମହତ୍ତ୍ୱ ଓ ବିଭୁତ୍ୱହେତୁ ଲୋକେ ତାହାଙ୍କର ଅସଂଖ୍ୟ ସାର୍ଥକ ନାମରେ କୀର୍ତ୍ତନ କରନ୍ତି । ୧୧୯ । ବେଦରେ ସେହି ମହାତ୍ମା ରୁଦ୍ରଙ୍କର ଶତରୁଦ୍ରୀୟ ଓ ଅନନ୍ତରୁଦ୍ରୀୟ ଉପାସନା ବିଷୟ କୀର୍ତ୍ତିତ ଅଛି । ୧୨୦ । ସେ ମନୁଷ୍ୟ ଓ ଦେବଗଣଙ୍କର ଅଭୀଷ୍ଟ ଫଳଦାତା । ସେ ବିଶ୍ୱବ୍ୟାପକ, ମହତ୍, ନିଗ୍ରହାନୁଗ୍ରହ-ସମର୍ଥ, ସ୍ୱୟମ୍ଭୂ ଓ ବିଭୁ । ୧୨୧ । ସେ ଦେବଗଣଙ୍କର ଆଦି । ତାହାଙ୍କ ମୁଖରୁ ଅନଳାଦି ଉତ୍ପନ୍ନ ହୋଇଅଛି । ଏହିନିମିତ୍ତ ବ୍ରାହ୍ମଣ ଓ ମୁନିମାନେ ତାହାଙ୍କୁ ଜ୍ୟେଷ୍ଠଭୂତ କହନ୍ତି । ସେ ସର୍ବତୋଭାବରେ ଜୀବମାନଙ୍କର ପାଳନ, ସେମାନଙ୍କ ସହିତ କ୍ରୀଡ଼ା ଓ ସେମାନଙ୍କ ଉପରେ ଐଶ୍ୱର୍ଯ୍ୟ ବିସ୍ତାର କରନ୍ତି । ଏଥିପାଇଁ ତାହାଙ୍କୁ ଲୋକେ ପଶୁପତି ବୋଲି କୀର୍ତ୍ତନ କରନ୍ତି । ୧୨୩ । ତାହାଙ୍କର ଗୋଟିଏ ମୂର୍ତ୍ତି ବ୍ରହ୍ମଚର୍ଯ୍ୟରେ ନିୟତ ଅବସ୍ଥିତ ଥାଇ ଲୋକମାନଙ୍କୁ ଆନନ୍ଦିତ କରୁଅଛି । ସେଥିନିମିତ୍ତ ଲୋକେ ତାହାଙ୍କୁ

ମହେଶ୍ୱର ବୋଲି କୀର୍ତ୍ତନ କରନ୍ତି । ୧୨୪ । ଦେବ, ଗନ୍ଧର୍ବ ଓ ଋଷିମାନେ ସର୍ବଦା ତାହାଙ୍କର ସେହି ମୂର୍ତ୍ତିକୁ ଅର୍ଚ୍ଚନା କରନ୍ତି । ସେହି ଦେବମୂର୍ତ୍ତି ଊର୍ଦ୍ଧ୍ୱମୁଖରେ ଅବସ୍ଥିତ । ୧୨୫ । ସେହି ମଙ୍ଗଳମୟ ମହେଶ୍ୱର ମୂର୍ତ୍ତିଙ୍କୁ ପୂଜା କଲେ ସେ ପ୍ରୀତ ଓ ପ୍ରସନ୍ନ ହୁଅନ୍ତି । ୧୨୬ । ଭୂତ ଭବିଷ୍ୟତ୍ ବର୍ତ୍ତମାନ ଓ ସ୍ଥାବର ଜଙ୍ଗମାତ୍ମକାଦି ତାହାଙ୍କର ଅସଂଖ୍ୟ ରୂପ ଅଛି । ଏଥିନିମିତ୍ତ ସେ ବହୁରୂପ ବୋଲି କୀର୍ତ୍ତିତ । ୧୨୭ । ସେ ଏକ ଚକ୍ଷୁ ବା ସର୍ବଚକ୍ଷୁ ହୋଇ ନାନାପ୍ରାଣୀମାନ ରୂପରେ ବିରାଜିତ । ସେ କ୍ରୋଧାବିଷ୍ଟ ହୋଇ ଏହି ଲୋକ ମଧ୍ୟରେ ପ୍ରବେଶ କରିଥିଲେ । ଏଥିନିମିତ୍ତ ଲୋକେ ତାହାଙ୍କୁ ସର୍ବ ବୋଲି କୀର୍ତ୍ତନ କରନ୍ତି ।୧୨୮। ଧୂମ୍ରବର୍ଣ୍ଣ ବୋଲି ତାହାଙ୍କର ଗୋଟିଏ ମୂର୍ତ୍ତି ଅଛି । ଏଣୁ ସେ ଧୂର୍ଜ୍ଜଟି ବୋଲି କୀର୍ତ୍ତିତ । ସମସ୍ତ ଦେବଗଣ ତାହାଙ୍କ-ଠାରେ ପ୍ରତିଷ୍ଠିତ ଅଛନ୍ତି । ଏଥିନିମିତ୍ତ ତାହାଙ୍କର ନାମ ବିଶ୍ୱରୂପ । ୧୨୯ । ପୃଥିବୀ, ଜଳ ଓ ଆକାଶ, ଏହି ତିନିଗୋଟି ଦେବମୂର୍ତ୍ତି ନିୟତ ତାହାଙ୍କୁ ଭଜନ କରନ୍ତି । ଏଣୁ ତାହାଙ୍କୁ ତ୍ରିଅମ୍ବକ କହନ୍ତି । ୧୩୦ । ସେ ସମସ୍ତ କାର୍ଯ୍ୟରେ ଅର୍ଥସମୂହକୁ ଅଭିବର୍ଦ୍ଧିତ ଓ ମାନବମାନଙ୍କର ମଙ୍ଗଳ ଅଭିଳାଷ କରନ୍ତି । ଏଣୁ ସେ ଶିବ ନାମରେ ପ୍ରସିଦ୍ଧ । ୧୩୧ । ସେ ସହସ୍ରାକ୍ଷ, ଅଯୁତାକ୍ଷ ଓ ସର୍ବତଃଚକ୍ଷୁ ବୋଲି କଥିତ । ସେ ଏହି ମହତ୍ ବିଶ୍ୱକୁ ପାଳନ କରନ୍ତି ବୋଲି ମହାଦେବ ନାମରେ କୀର୍ତ୍ତିତ ହୁଅନ୍ତି । ୧୩୨ । ସେ ନିରନ୍ତର ଊର୍ଦ୍ଧ୍ୱରେ ସ୍ଥିତ ହୋଇ ପ୍ରଜ୍ୱଳିତ ହେଉଅଛନ୍ତି । ପ୍ରାଣର ଉତ୍ପତ୍ତି ଓ ସ୍ଥିତିର କାରଣ ଓ ସର୍ବଦା ସ୍ଥିର ମୂର୍ତ୍ତି । ଏଣୁ ତାହାଙ୍କୁ ସ୍ଥାଣୁ ବୋଲି ନିର୍ଦ୍ଦେଶ କରାଯାଏ । ୧୩୩ । ସୂର୍ଯ୍ୟ ଓ ଚନ୍ଦ୍ର ଏହି ତ୍ର୍ୟମ୍ବକଙ୍କର ତେଜୋରାଶି ଗ୍ରହଣ କରି ସର୍ବଲୋକରେ ପ୍ରକାଶ କରନ୍ତି । ଏଣୁ ସେ ବ୍ୟୋମକେଶ ବୋଲି କୀର୍ତ୍ତିତ । ୧୩୪ । ଭୂତ, ଭବିଷ୍ୟତ୍ ଓ ବର୍ତ୍ତମାନ ଏହି ତିନିକାଳ ସେହି ମହାଦେବଙ୍କଠାରୁ ଉତ୍ପନ୍ନ, ଏଣୁ ସେ ଭୂତ, ଭବିଷ୍ୟତ୍ ଓ ବର୍ତ୍ତମାନର ଆଧାର ଭୂତ ବୋଲି କଥିତ ହୁଅନ୍ତି । ୧୩୫ । କପି ଶବ୍ଦର ଅର୍ଥ ଶ୍ରେଷ୍ଠ । ବୃଷ ଶବ୍ଦର ଅର୍ଥ ଧର୍ମ୍ମ । ଏଣୁ ସେହି ଭଗବାନ ଦେବଦେବ ବୃଷାକପି ନାମରେ କୀର୍ତ୍ତିତ । ୧୩୬ । ସେ ବ୍ରହ୍ମା, ଇନ୍ଦ୍ର, ବରୁଣ, ଯମ ଓ କୁବେରଙ୍କୁ ନିଗୃହୀତ କରି ସଂହାର କରନ୍ତି ବୋଲି ତାହାଙ୍କ ନାମ ହର ।

ସେହି ମହେଶ୍ୱରଙ୍କ ଉନ୍ମିଳିତ ନୟନଦ୍ୱୟରୁ ବଳପୂର୍ବକ ଗୋଟିଏ ନେତ୍ର ଲଲାଟଦେଶରେ ସୃଷ୍ଟି କରିଅଛନ୍ତି । ଏଣୁ ତାହାଙ୍କର ନାମ ତ୍ର୍ୟକ୍ଷ । ୧୩୮ । ସେ ପ୍ରାଣିମାନଙ୍କର ଶରୀର ମଧ୍ୟରେ ସମବିଷମସ୍ଥ ବାୟୁ ଓ ସେମାନଙ୍କ ଶରୀର ବିଷମସ୍ଥ ହେଲେ ସେ ପ୍ରାଣ ଓ ଅପାନ ବାୟୁ ନାମରେ କଥିତ । ୧୩୯ । ଯେଉଁ ବ୍ୟକ୍ତି ସେହି ମହାତ୍ମା ମହାଦେବଙ୍କର ଲିଙ୍ଗମୂର୍ତ୍ତି ପୂଜା କରନ୍ତି ସେ ସର୍ବଦା ମହାସୌଭାଗ୍ୟ ଲାଭ କରନ୍ତି । ୧୪୦ । ତାହାଙ୍କର ଊରୁଦ୍ୱୟର ଅଗ୍ରଭାଗ ଆଗ୍ନେୟ, ଅର୍ଦ୍ଧଭାଗ ସୌମ୍ୟ ଓ ଅବଶିଷ୍ଟ ଭାଗ ଶିବା ମୂର୍ତ୍ତି । ପୁଣି ଏହିପରି ମଧ୍ୟ କଥିତ ଅଛି ଯେ, ତାହାଙ୍କର ସମସ୍ତ ଶରୀରର ଅର୍ଦ୍ଧଭାଗ ଆଗ୍ନେୟ ଓ ଅର୍ଦ୍ଧଭାଗ ସୌମ୍ୟମୂର୍ତ୍ତି । ୧୪୧ । ତାହାଙ୍କର ଯେଉଁ ମହା ତେଜୋମୟ ମୂର୍ତ୍ତି ଦେବଲୋକରେ ବିରାଜିତ, ତାହା ତାହାଙ୍କର ଶିବା ମୂର୍ତ୍ତି । ସୂର୍ଯ୍ୟ ସଦୃଶ ଯେଉଁ ତେଜୋମୟ ମୂର୍ତ୍ତି ମନୁଷ୍ୟଲୋକରେ ପ୍ରତିଷ୍ଠିତ, ତାହା ତାହାଙ୍କର ଘୋରନାମ୍ନୀ ଅଗ୍ନିମୟ ମୂର୍ତ୍ତି । ୧୪୨ । ସେହି ପରମେଶ୍ୱର ସ୍ୱୀୟ ଶିବାତନୁ ଦ୍ୱାରା ବ୍ରହ୍ମଚର୍ଯ୍ୟ ଓ ଘୋରନାମ୍ନୀ ମୂର୍ତ୍ତି ଦ୍ୱାରା ଲୋକ ସଂହାର କରନ୍ତି । ସେହି ପ୍ରତାପବାନ୍ ମହାଦେବ ଅଗ୍ନି, ତୀକ୍ଷ୍ଣ ଓ ଉଗ୍ରମୂର୍ତ୍ତି । ସେହି ମୂର୍ତ୍ତିସମୂହ ଦ୍ୱାରା ସେ ମାଂସ, ଶୋଣିତ ଓ ମଜ୍ଜା ଭକ୍ଷଣ କରନ୍ତି । ଏଣୁ ତାହାଙ୍କର ନାମ ରୁଦ୍ର ବୋଲି କଥିତ । ୧୪୪ ।

ହେ ଅନଘ ! ଧନଞ୍ଜୟ ! ରଣସ୍ଥଳରେ ତୁମ୍ଭେ ଯେଉଁ ଦେବଙ୍କୁ ତୁମ୍ଭର ଅଗ୍ରଭାଗରେ ବିପକ୍ଷପକ୍ଷୀୟ ସେନାମାନଙ୍କୁ ସଂହାର କରିବାର ଅବଲୋକନ କରିଅଛ ଓ ସିନ୍ଧୁରାଜ ଜୟଦ୍ରଥ ବଧ ପ୍ରତିଜ୍ଞା ଦିବସରେ କୃଷ୍ଣ ତୁମ୍ଭଙ୍କୁ ସ୍ୱପ୍ନଯୋଗରେ କୈଳାସ ପର୍ବତ ଉପରେ ଯାହାଙ୍କୁ ଦର୍ଶନ କରାଇଥିଲେ, ସେ ସେହି ପିନାକଧାରୀ ମହାଦେବ ଅଟନ୍ତି । ୧୪୬ । ଯେଉଁ ଦେବ ସମରାଙ୍ଗଣରେ ତୁମ୍ଭ ରଥର ସମ୍ମୁଖରେ ଗମନ କରନ୍ତି ଓ ଯେ ତୁମ୍ଭଙ୍କୁ ପାଶୁପତ ପ୍ରଭୃତି ଅସ୍ତ୍ରସମୂହ ପ୍ରଦାନ କରିଥିଲେ ଓ ଯେଉଁ ଅସ୍ତ୍ରଦ୍ୱାରା ତୁମ୍ଭେ ଦୁର୍ଜ୍ଜୟ ଦାନବକୁଳକୁ ସଂହାର କରିଅଛ, ସେ ସେହି ଭଗବାନ୍ ଶିବ । ୧୪୭ ।

ହେ ପାର୍ଥ ! ଲୋକଯଶସ୍କର, ଆୟୁବୃଦ୍ଧିକର, ଧନ୍ୟ ଓ ପବିତ୍ରକର, ବେଦସମ୍ମତ ସେହି ଶତରୁଦ୍ରୀୟ ବ୍ୟାଖ୍ୟା କଲୁଁ । ଏହା ଅତି ପୁଣ୍ୟଜନକ । ସର୍ବାର୍ଥ ସାଧନକର, ସମସ୍ତପାପ ଉପଶମନକାରୀ, ମନୋମାଳିନ୍ୟାପହାରୀ ସମସ୍ତ

ଦୁଃଖ ଓ ଭୟନାଶକ । ୧୪୯ । ଯେଉଁ ମନୁଷ୍ୟ ଏହି ଚତୁର୍ବିଧ ସ୍ତୋତ୍ର ଶ୍ରବଣ କରନ୍ତି ସେ ଶତ୍ରୁକୁଳକୁ ଜୟ କରି ରୁଦ୍ରଲୋକକୁ ନିଶ୍ଚୟ ଗମନ କରନ୍ତି । ୧୫୦ । ଯେ ମହାତ୍ମା ମହାଦେବଙ୍କର ଏହି ଦିବ୍ୟ ଓ ମଙ୍ଗଳ-ଜନକ ସଂଗ୍ରାମିକ ବିବରଣ ଓ ଶତରୁଦ୍ରୀୟ ପାଠ କରନ୍ତି ସେ ସତତ ଉନ୍ନତ ହୁଅନ୍ତି । ୧୫୧ । ମନୁଷ୍ୟଲୋକରେ ଯେଉଁ ବ୍ୟକ୍ତି ସେହି ବିଶ୍ୱେଶ୍ୱର ତ୍ର୍ୟମ୍ବକ ଦେବଙ୍କୁ ପ୍ରସନ୍ନ କରିପାରେ ସେ ଅଳ୍ପ ସମୟ ମଧ୍ୟରେ ଆପଣା ଅଭିଳଷିତ ବିଷୟ ପ୍ରାପ୍ତ ହୁଏ । ୧୫୨ ।

ହେ କୁନ୍ତୀନନ୍ଦନ ! ଜନାର୍ଦ୍ଦନ ଯେତେବେଳେ ସହାୟ, ରକ୍ଷକ ଓ ମନ୍ତ୍ରୀ ତେତେବେଳେ ତୁମ୍ଭର କଦାଚ ପରାଜୟ ହେବ ନାହିଁ । ଅତଏବ ଗମନ କର, ଯୁଦ୍ଧରେ ପ୍ରବୃତ୍ତ ହୁଅ । ୧୫୩ ।

ସଞ୍ଜୟ କହିଲେ, ହେ ମହାରାଜ ! ପରାଶରପୁତ୍ର ବ୍ୟାସ ସମରା-ଙ୍ଗଣ ମଧ୍ୟରେ ଅର୍ଜ୍ଜୁନଙ୍କୁ ଏହି କଥା କହି ଯଥାସ୍ଥାନକୁ ଗମନ କଲେ ।୧୫୪। ମହାବଳଶାଳୀ ବ୍ରାହ୍ମଣ ଦ୍ରୋଣ ଏହିପରି ପଞ୍ଚଦିବସକାଳ ଭୟଙ୍କର ଯୁଦ୍ଧ କରି ସଂଗ୍ରାମରେ ନିହତ ହୋଇ ବ୍ରହ୍ମଲୋକକୁ ଗମନ କଲେ । ୧୫୫ ।

ଏହି ପର୍ବରେ ରଣନିର୍ଭୟ କ୍ଷତ୍ରିୟମାନଙ୍କର ମହତ୍ ଯଶ ଓ ମୁକ୍ତି ବିଷୟ ବର୍ଣ୍ଣିତ ଅଛି । ଏହା ପାଠକଲେ ବେଦାଧ୍ୟୟନର ଫଳପ୍ରାପ୍ତି ହୁଏ । ୧୫୬ । ଯେଉଁ ବ୍ୟକ୍ତି ପ୍ରତ୍ୟହ ଏହି ପର୍ବ ପାଠକରନ୍ତି, ଶ୍ରବଣ କରନ୍ତି ସେ ଭୟାବହ କୃତକର୍ମ୍ମ ଓ ମହାପାପରୁ ମୁକ୍ତ ହୁଅନ୍ତି । ୧୫୭ । ଏହା ପାଠ-କଲେ ବ୍ରାହ୍ମଣମାନେ ଯଜ୍ଞଫଳ ପ୍ରାପ୍ତ ହୁଅନ୍ତି ଓ କ୍ଷତ୍ରିୟମାନଙ୍କର ଯୁଦ୍ଧରେ ଜୟ ଲାଭ ହୁଏ, ବୈଶ୍ୟ ପ୍ରଭୃତି ଅବଶିଷ୍ଟ ବର୍ଣ୍ଣମାନେ ଅଭିଳଷିତ ପୁତ୍ର, ପୌତ୍ର ଓ କାମ୍ୟ ବିଷୟସମୂହ ଲାଭ କରନ୍ତି । ୧୫୮ ।

---

ଦ୍ରୋଣପର୍ବ ସମାପ୍ତ ।

